ଆଦିକବି ବାଲ୍ମୀକି ମହର୍ଷି ରଚିତ

# ଯୋଗବାଶିଷ୍ଠ ରାମାୟଣ



ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ ମହାରାମାୟଣ

ବୈରାଗ୍ୟ ପ୍ରକରଣ,
ମୁମୁକ୍ଷୁ ପ୍ରକରଣ ଓ ଉତ୍ପତ୍ତି ପ୍ରକରଣ;
ସ୍ଥିତି ପ୍ରକରଣ ଓ ଉପଶମ ପ୍ରକରଣ;
ନିର୍ବାଣ ପ୍ରକରଣ ପୂର୍ବଭାଗ ଓ
ନିର୍ବାଣ ପ୍ରକରଣ ଉତ୍ତରଭାଗ

(ଭାବାନୁବାଦ)

ଅନୁବାଦକ

୰ ଶ୍ରୀ ମର୍ଦ୍ଦଗାଜି ରାୟ

ଅନୁବାଦକ :
ଓଁ ଶ୍ରୀ ମର୍ଦ୍ଦଗାଜି ରାୟ

•

ପ୍ରକାଶକ ଓ ପ୍ରାପ୍ତିସ୍ଥାନ :
ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶାବଜାର, କଟକ-୨
ଫୋନ୍ : (୦୬୭୧) ୨୫୦୮୨୯୬

•

ପ୍ରଥମ ସଂସ୍କରଣ :
ଶ୍ରୀଗୁଣ୍ଡିଚା ତା୨୬।୬।୧୯୭୯
ଦ୍ୱିତୀୟ ସଂସ୍କରଣ :
ଶ୍ରୀଗୁଣ୍ଡିଚା ତା୨୫।୬।୨୦୧୭

•

ମୂଲ୍ୟ :
ତିନିଶହ କୋଡ଼ିଏ ଟଙ୍କା ମାତ୍ର
(ବନ୍ଧାଇ ସହିତ)

# ସୂଚୀପତ୍ର

## ବୈରାଗ୍ୟପ୍ରକରଣ



✪

## ମୁମୁକ୍ଷୁ ପ୍ରକରଣ



✪

## ଉତ୍ପତ୍ତି ପ୍ରକରଣ

# ମୁଖ ବନ୍ଧ

ଭାରତୀୟ ଅଧ୍ୟାତ୍ମ ଶାସ୍ତ୍ରରେ ମୁକ୍ତି ବା କୈବଲ୍ୟ ଲାଭ ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ ବୋଲି ସ୍ୱୀକୃତ । ସେହି ମୁକ୍ତି ବା ମୋକ୍ଷ ପାଇଁ କର୍ମ ଓ ଜ୍ଞାନ, ଏ ଦୁଇଟି ଯାକ ପନ୍ଥା ବେଦ ସମ୍ମତ । ଅନ୍ୟାନ୍ୟ ଶାସ୍ତ୍ର ମଧ୍ୟ ଏ ଦୁଇ ପ୍ରଧାନ ପନ୍ଥା ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରି ଯାଇଛନ୍ତି । ବେଦର କେଉଁଠି କର୍ମ ବନ୍ଧନର କାରଣ ବୋଲି ପ୍ରତିପାଦିତ ହୋଇଛି ତ, ଅନ୍ୟତ୍ର କର୍ମ ମୁକ୍ତିର କାରଣ ବୋଲି ଦର୍ଶାଯାଇଛି । ପୁଣି ଜ୍ଞାନ ହିଁ ମୁକ୍ତିର ପ୍ରଧାନ ଉପାୟ ବୋଲି କେଉଁଠାରେ ଦୃଢ଼ ଭାବରେ ଦର୍ଶାଇ ଦିଆଯାଇଛି । ତେଣୁ ମୁକ୍ତି-ଲାଭ ପାଇଁ କେବଳ ଜ୍ଞାନ ବା କେବଳ କର୍ମ ଯଥେଷ୍ଟ ଅଥବା ଉଭୟ ଜ୍ଞାନ-ଓ କର୍ମର ଆବଶ୍ୟକତା ରହିଛି ଏହି ସନ୍ଦେହ ଅନେକଙ୍କ ମନରେ ଜାତ ହେବା ସ୍ୱାଭାବିକ ।

ଯୋଗବାଶିଷ୍ଠରେ ଆଦିକବି ବାଲ୍ମୀକି ମହର୍ଷି ଉକ୍ତ ପ୍ରଶ୍ନଟି ଉତ୍‌ଥାପନ କରାଇ ପ୍ରଥମରୁ ହିଁ ଜ୍ଞାନ ଓ କର୍ମ ଉଭୟଙ୍କର ପ୍ରୟୋଜନ ଦର୍ଶାଇ ଦେଇଛନ୍ତି । ସେହି ତତ୍ତ୍ୱ ପ୍ରତିପାଦନ ପାଇଁ ଅଦ୍ୱୈତବାଦର ସ୍ତମ୍ଭ ସ୍ୱରୂପ ଯୋଗବାଶିଷ୍ଠ ରାମାୟଣ ବା ବଶିଷ୍ଠ-ମହାରାମାୟଣ ଅଧ୍ୟାତ୍ମଶାସ୍ତ୍ରାଗାରକୁ ଆଦିକବିଙ୍କର ବିଶିଷ୍ଟ ଦାନ । ଶ୍ରୀରାମ ବଶିଷ୍ଠଙ୍କ ଗାଥା ସ୍ଥଳରେ ଏ ଶାସ୍ତ୍ରରେ ମୋକ୍ଷର ଉପାୟମାନ ପ୍ରାଞ୍ଜଳ ଭାବରେ ବର୍ଣ୍ଣନ କରାଯାଇଛି । ଏହି ଶାସ୍ତ୍ର ଶ୍ରବଣ କରି ଶ୍ରୀରାମଙ୍କ ସ୍ୱଭାବ କିପରି ବଦଳି ଗଲା ଓ ସେ କିପରି ଜୀବନ୍ମୁକ୍ତ ଭାବରେ ସଂସାରରେ ବିଚରଣ କଲେ ତାହା ଦର୍ଶାଇ ଦିଆଯାଇଛି । ସମସ୍ତ ଦ୍ୱୈତ ଜ୍ଞାନ ତଥା ଅଜ୍ଞାନର ନାଶ ପାଇଁ ଏ ଶାସ୍ତ୍ର ଯୁକ୍ତି ସମ୍ମତ ବହୁ ଉପମାରେ ପରିପୂର୍ଣ୍ଣ । ଅଧ୍ୟାତ୍ମିକ ମାର୍ଗରେ ଗତି କରିବାକୁ ହେଲେ ମାନବକୁ ଦୈନନ୍ଦିନ ଯେଉଁ ସବୁ ସମସ୍ୟାର ସମ୍ମୁଖିନ ହେବାକୁ ପଡ଼ିଥାଏ, ସେ ସବୁର ସମାଧାନ ପନ୍ଥା ଏହି ଗ୍ରନ୍ଥରେ ସୁସ୍ପଷ୍ଟ ଭାବରେ ନିର୍ଣ୍ଣିତ ହୋଇଛି ।

ଅଦ୍ୱୈତବାଦ ପ୍ରତିପାଦନ ପାଇଁ ଏହି ବିରାଟ ଗ୍ରନ୍ଥରେ ତତ୍ତ୍ୱ ଉପଦେଶ ମାଧ୍ୟମରେ ଅନେକ ଆଖ୍ୟାନ ଓ ଉପାଖ୍ୟାନ ଭିତରେ ଦେଶ, କାଳ, ପାତ୍ର, ନଦ, ନଦୀ, ପର୍ବତ, ଅରଣ୍ୟ, ଗ୍ରାମ, ଯୁଦ୍ଧ, ଯୁଦ୍ଧାସ୍ତ୍ର, ସୃଷ୍ଟି, ସ୍ଥିତି, ପ୍ରଳୟ ଇତ୍ୟାଦି ବିଷୟରେ ଯୁକ୍ତିଯୁକ୍ତ ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ସେ ସବୁ ବର୍ଣ୍ଣନା ଏଡ଼େ ଚିତ୍ତାକର୍ଷକ ଯେ ତହିଁରେ ମଜ୍ଜିଗଲେ ତହିଁରୁ ତତ୍ତ୍ୱଜ୍ଞାନ ଆହରଣ କରିବା କଷ୍ଟକର ହୋଇପଡ଼ିବାର ସମ୍ଭାବନା ଅସ୍ୱୀକାର କରି ହେବ ନାହିଁ । ତେଣୁ ଏ ଶାସ୍ତ୍ରର ସାରତତ୍ତ୍ୱ "ସର୍ବ ଖଲ୍ୱିଦଂ ବ୍ରହ୍ମ" ବା "ବ୍ରହ୍ମାସ୍ମି" ଇତ୍ୟାଦି ଅଦ୍ୱୈତ ତତ୍ତ୍ୱ ସେହି ସବୁ ବିସ୍ତୃତ ବର୍ଣ୍ଣନା ମଧ୍ୟରେ ନିମଗ୍ନ ହୋଇଯିବାର ସମ୍ଭାବନା ରହିଛି । ତେଣୁ ଏ ଶାସ୍ତ୍ରର ଅଙ୍ଗହାନୀ ନ କରି ସେହି ସବୁ ଆଖ୍ୟାନ ବା ଉପାଖ୍ୟାନର ମୁଖ୍ୟ ଅଂଶ ଗ୍ରହଣ ପୂର୍ବକ ଲେଖକ ଏ ଗ୍ରନ୍ଥଟିକୁ ସମ୍ୟକ୍ ସଂକ୍ଷିପ୍ତ ଭାବରେ ପ୍ରକାଶ କରିଅଛନ୍ତି । ସେଥିପାଇଁ ଏହାକୁ ବିଶିଷ୍ଠ-ମହାରାମାୟଣର ଭାବାନୁବାଦ ବୋଲି ନାମିତ କରିଛନ୍ତି । ନବାକ୍ଷରୀ ବୃତ୍ତରେ ରଚନା କରିବାକୁ ଲେଖକ ପ୍ରଥମେ ଚେଷ୍ଟା କରିଥିଲେ । ମାତ୍ର ତହିଁରେ କୃତକାର୍ଯ୍ୟ ହେବା ଅତି କଠିନ ବା ଅସମ୍ଭବ ମନେ ହେବାରୁ ଚଉଦ ଅକ୍ଷରୀ ବୃତ୍ତରେ ଭାବାତ୍ମକ ଅନୁବାଦ କରିବାକୁ ଚେଷ୍ଟା କଲେ । ସେଥିରେ କେତେଦୂର ସଫଳତା ହାସଲ କରି ପାରିଛନ୍ତି, ଜ୍ଞାନୀ ସୁଧୀଜନ ତାର ବିଚାର କରିବେ ।

ଓଡ଼ିଆ ଭାଷାରେ ଗଦ୍ୟାକାରରେ ଏ ଶାସ୍ତ୍ରର ଅନୁବାଦ ହୋଇଛି ମାତ୍ର ପୂର୍ଣ୍ଣାଙ୍ଗ ଭାବରେ ତାହା ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ପାରି ନାହିଁ । ଗଦ୍ୟାନୁବାଦ ଅପେକ୍ଷା ସାରଳା ମହାଭାରତ ଢଙ୍ଗରେ ପଦ୍ୟାନୁବାଦ ଓଡ଼ିଶାର ପାଠକ ପାଠିକା ମାନଙ୍କର ମନକୁ ଆକର୍ଷଣ କରିବ ବୋଲି ମୋର ବିଶ୍ୱାସ । ମାତୃଭାଷାରେ ଯୋଗବାଶିଷ୍ଠର ତତ୍ତ୍ୱଜ୍ଞାନ ପରିବେଷଣ ଓଡ଼ିଶା ପୁର-ପଲ୍ଲୀରେ ସାଧାରଣ ପାଠକ ପାଠିକା ମାନଙ୍କର ଉନ୍ନତ ଅଧ୍ୟାତ୍ମ ଜୀବନର ପଥ ପ୍ରଦର୍ଶକ ହେବ ବୋଲି ଆଶା ।

**ମାଧବାନନ୍ଦ ଷଡ଼ଙ୍ଗୀ**

# ମୁଁ କାହିଁକି ଯୋଗବାଶିଷ୍ଠ ଲେଖିବାକୁ ଗଲି ।

ଯୋଗବାଶିଷ୍ଠ ପଢୁ ପଢୁ ନିର୍ବାଣ ପ୍ରକରଣରେ ଦେଖେ ଯେ ଗୁରୁଦେବ ବଶିଷ୍ଠ ରାମଚନ୍ଦ୍ରଙ୍କୁ କହୁଛନ୍ତି, "ଏ ରାମାବତାର ପରେ ଦ୍ୱାପର ଯୁଗରେ କୃଷ୍ଣ ଅବତାର ହେବ । ଶ୍ରୀକୃଷ୍ଣ ସଖା ଅର୍ଜୁନଙ୍କୁ ଉପଦେଶ ଛଳରେ ଶ୍ରୀମଦ୍‌ଭଗବତ୍ ଗୀତା କହିବେ ।" ଆଖିରୁ ଲୁହ ଗଡ଼ି ଆସିଲା । ବାସ୍ତବିକ୍ ଶ୍ରୀମଦ୍‌ଭଗବତ୍ ଗୀତାରେ ଯାହା ଯାହା ଲେଖାଅଛି, ସେହି କଥାମାନ ଅତି ସୁନ୍ଦର ଚିତ୍ତାକର୍ଷକ ଭାବେ ଗୁରୁ ବଶିଷ୍ଠ ଯୋଗାବାଶିଷ୍ଠ ମହାରାମାୟଣରେ ତ୍ରେତା ଯୁଗରେ କହିଯାଇଛନ୍ତି । ଶ୍ରୀମଦ୍‌ଭଗବତ୍ ଗୀତା ବର୍ଣ୍ଣିତ ବିଶ୍ୱରୂପ ଦର୍ଶନ ଅପେକ୍ଷା ଯୋଗବାଶିଷ୍ଠ ବର୍ଣ୍ଣିତ ବିଶ୍ୱରୂପ ଯେ କେତେ ଗୁଣରେ ମର୍ମସ୍ପର୍ଶୀ, କହିହେବ ନାହିଁ । ଏ କଥାତ କାହାରିଠାରୁ ପୂର୍ବେ ଶୁଣି ନଥିଲି ବା କୌଣସିଠାରେ ପଢ଼ି ନଥିଲି । ଗ୍ରନ୍ଥଟି ପଢ଼ିବା ସଙ୍ଗେ ସଙ୍ଗେ ଆଗ୍ରହ ବଢ଼ି ଚାଲିଥାଏ । ତେଣୁ ଓଡ଼ିଆ ଭାଷାରେ ପୁରାଣ ଢ଼ାଞ୍ଚାରେ ଅନୁବାଦ କରିବାକୁ ଇଚ୍ଛାହେଲା । ୧୯୬୯ ମସିହାରେ ଏହାକୁ ନବାକ୍ଷରୀ ବୃତ୍ତରେ ଲେଖିବାକୁ ଆରମ୍ଭ କରେ । କିନ୍ତୁ ଅତିବାହିତ, ଆଧିଭୌତିକ ଇତ୍ୟାଦି ଶବ୍ଦମାନଙ୍କୁ ନବାକ୍ଷରୀ ବୃତ୍ତରେ ଦେଇ ହେବ ନାହିଁ ଦେଖି ସେ ଚେଷ୍ଟାରୁ କ୍ଷାନ୍ତ ହେଲି । ଅନେକ ସମୟରେ ପାରିଲି ନାହିଁ ବୋଲି ଦୁଃଖ ଆସେ । ମୋର ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ପ୍ରହ୍ଲାଦ ସ୍ୱାଇଁଙ୍କ ବାରମ୍ବାର ଅନୁରୋଧ ଏଡ଼ି ନ ପାରି ଚଉଦଅକ୍ଷରୀ ବୃତ୍ତରେ ୧୯୭୫ ମସିହା ଚୈତ୍ରମାସ ଶ୍ରୀରାମ ନବମୀ ତିଥିରେ ଆରମ୍ଭ କରିବାକୁ ସାହସ କରେ । କାଳେ ଗ୍ରନ୍ଥଲେଖା ଶେଷ କରିବାକୁ ଅପାରଗ ହେବି, ଏ ଆଶଙ୍କା ମନକୁ ଛଟପଟ କରୁଥାଏ । ସ୍ୱନାମଧନ୍ୟ ଅବସରପ୍ରାପ୍ତ କଟକ ରେଭେନ୍‌ସା କଲେଜର ସଂସ୍କୃତ ଅଧ୍ୟାପକ ପଣ୍ଡିତ ଶ୍ରୀ ନାରାୟଣ ତ୍ରିପାଠୀଙ୍କ ନିକଟକୁ ଯାଇ ତାଙ୍କୁ କହିଲି ମୁଁ ଏ ମହତ କାର୍ଯ୍ୟଟି ଶେଷ କରି ପାରିବି କି ନାହିଁ, ଆପଣଙ୍କ ଦିବ୍ୟଦୃଷ୍ଟି ବଳରେ ଚିନ୍ତାକରି ମୋତେ କହନ୍ତୁ । ନହେଲେ ମୁଁ ଏ ଉଦ୍ୟମ ଛାଡ଼ିଦେବି । ଏ ମହାଶୟ କେତେ ସମୟ ଚିନ୍ତାକରି କହିଲେ "ହଁ ତୁମେ ନିର୍ଦ୍ଦିଷ୍ଟ ସମୟରେ ସାରି ପାରିବ ଏବଂ ତାହା ଆଦୃତ ହେବ, କର ।" ଏହା ଶୁଣି ମୋର ଉତ୍ସାହ ବଢ଼ିଯାଏ ଏବଂ ପଣ୍ଡିତ ମହାଶୟଙ୍କର ଏହି ବାଣୀ ମୋର ସାହସକୁ ବଢ଼ାଇଦିଏ । ସେଥିପାଇଁ ମୁଁ ପଣ୍ଡିତ ମହାଶୟଙ୍କଠାରେ କୃତଜ୍ଞ । ତା'ପରେ ମୁଁ ଗ୍ରନ୍ଥଟିକୁ ଲେଖିବାରେ ଲାଗିପଡ଼ିଲି । ଲେଖିଲାବେଳେ ସେହି କାଳିଆ ଠାକୁରଙ୍କର ଛବି ଆଖି ଆଗରେ ନାଚୁଥାଏ । ପଦ ନଦିଶିଲା ବେଳେ ସତେକି କେହି ଜଣେ କହିଦେଉଛି ବୋଲି ବୋଧ ହୁଏ । ସେ କଥା ବାକ୍ୟରେ ପ୍ରକାଶ କରିହେବ ନାହିଁ । ଶ୍ରଦ୍ଧେୟ ଆଇନ୍‌ଛାତ୍ର ଅଶୋକ କୁମାର ପାଢ଼ୀଙ୍କ ପ୍ରେରଣା ଓ ଅକ୍ଳାନ୍ତ ଶ୍ରମ ଉତ୍ସାହକୁ ବହୁଦୂର ଆଗେଇ ଦିଏ । ଏ ଉଭୟଙ୍କ ଶ୍ରମଦାନ ପାଇଁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି ଏବଂ ସେମାନଙ୍କର ଏ ସଦିଚ୍ଛା ଯେପରି ଉତ୍ତରୋତ୍ତର ବୃଦ୍ଧିପାଏ ସେହି କାଳିଆ ଠାକୁରଙ୍କଠାରେ ଜଣାଉଅଛି । ଆଖିକୁ ଦେଖା ଯାଉ ନଥିବାରୁ ଅକ୍ଷର ଉପରେ ଅକ୍ଷର ଚଢ଼ିଯିବା ଦୋଷ ମାର୍ଜନା କରିବା ପାଇଁ ସେମାନେ ସମ୍ପୂର୍ଣ୍ଣ ଗ୍ରନ୍ଥଟି ମୋଠାରୁ ଶୁଣି ଲେଖିଛନ୍ତି ।

ଉପତ୍ତି ପ୍ରକରଣ ମଧ୍ୟ ଭାଗରେ ଶ୍ରଦ୍ଧେୟ ଡାକ୍ତର ମାଧବାନନ୍ଦ ଷଡ଼ଙ୍ଗୀଙ୍କ ଆଖି ଏଥିରେ ପଡ଼େ । ତାଙ୍କୁ ଭଲ ଲାଗିବାରୁ ସେ ମଧ୍ୟ ଲେଖିବା ଏବଂ ତର୍କ କରିବା ଇତ୍ୟାଦି କଷ୍ଟ ସାଧ୍ୟଶ୍ରମ କରିନେବାକୁ ବଦ୍ଧ ପରିକର ହୋଇ ଗ୍ରନ୍ଥଟି ଯତ୍ପରୋନାସ୍ତି ଚିତ୍ତାକର୍ଷକ କରିବାରେ ସାହାଯ୍ୟ କଲେ । ଅନ୍ୟ କେତେକ ହିତୈଷୀ ବନ୍ଧୁ ମଧ୍ୟେ ମଧ୍ୟେ ଆଲୋଚନାରେ ଭାଗନେଇ ଉତ୍ସାହିତ କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଯୋଗବାଶିଷ୍ଠ ମହାରାମାୟଣରେ ମୁଖବନ୍ଧ ଲେଖିବାକୁ ଗଲେ ଗୋଟିଏ ବଡ଼ ଗ୍ରନ୍ଥ ହେବ । ପ୍ରତ୍ୟେକ ପଦର ଉପାଦେୟତା ପାଠକ ମାତ୍ରେ ଉପଲବ୍ଧି କରିବେ । 'ମନ' 'ଇନ୍ଦ୍ରିୟ' ମାନଙ୍କର ଗୁରୁ । ବ୍ରହ୍ମଦର୍ଶନ ପଥରେ ତାହା କିପରି ଅନ୍ତରାୟ, ଏ ଗ୍ରନ୍ଥର ପତ୍ରେ ପତ୍ରେ ଜାଜ୍ଜ୍ୱଲ୍ୟମାନ ରହିଛି । ମନକୁ ଅମନ କରିବା ପାଇଁ କିପରି ପଦ୍ଧତି ଧରିବାକୁ ହେବ, ଏହାର ସୁଗମବାଟ ଏଥିରେ ପ୍ରାଞ୍ଜଳ ଭାବରେ ବତାଇ ଦିଆଯାଇଛି । 'ବିଦେହ ମୁକ୍ତ' 'ଜୀବନ୍ ମୁକ୍ତ' ହେବାର ସରଳ କୌଶଳ ହିଁ ମନର ବିନାଶ । ଧୀରେ ଧୀରେ ବାରମ୍ବାର ପ୍ରତ୍ୟେକ ପଦକୁ ଆବୃତ୍ତି କଲେ ତାହା ରସ ବୁଝାଯିବ ।

ଯୋଗବାଶିଷ୍ଠ ଭାରତୀୟ ଦର୍ଶନ ଶାସ୍ତ୍ର ଏବଂ ଅଧ୍ୟାତ୍ମ ଶାସ୍ତ୍ରର ଶ୍ରେଷ୍ଠ ସମ୍ପଦ । ଏହା ବୈରାଗ୍ୟ ପାଇଁ ପ୍ରେରଣା ଦିଏ । ସଂସାରର ମାୟାବନ୍ଧନରୁ ମୁକ୍ତି ପାଇଁ ଆଲୋକ ପ୍ରଦାନ କରେ । କେହି ଯଦି ନିଆଁ ମାଡ଼ି ପକାଏ, ପାଦ୍‌ଜ୍ୱାଳା ସହି ନପାରି ଇତସ୍ତତ ଭ୍ରମୁଥାଏ । କେଉଁଠି ହେଲେ ମୁହୂର୍ତ୍ତକପାଇଁ ମଧ୍ୟ ସ୍ଥିର ହୋଇ ବସିପାରେ ନାହିଁ । ଧନ ସେହିପରି ମନୁଷ୍ୟକୁ ହଇରାଣ କରିଥାଏ । ନାନା ଆପଦ ସୃଷ୍ଟିକରି ତାଙ୍କୁ ଛଟପଟ କରେ । ଏହି ଦୃଷ୍ଟାନ୍ତ ଦେଇ ରାମଚନ୍ଦ୍ର ମା ଲକ୍ଷ୍ମୀଙ୍କର ଘୋର ନିନ୍ଦାବାଦ କରିଛନ୍ତି । "ଲକ୍ଷ୍ମୀ

ନୈରାଶ୍ୟ" ଅଧ୍ୟାୟ ପଢ଼ିଲେ ପାଠକ ମନରେ ଧନ ସମ୍ପତ୍ତି ପ୍ରତି ବିତୃଷ୍ଣା ଆସେ । ଗୁରୁବାର ଦିନ ପାହାନ୍ତିଆରୁ ଘରଦ୍ୱାରରେ ଝୋଟି ଦେବାରେ ଅଣହେଳା ଦେଖି ଶାଶୁମାନେ ନବାଗତା କୁଳବଧୂ ମାନଙ୍କୁ ଶ୍ରୀୟା ଚଣ୍ଡାଳୁଣୀର ଦ୍ୱାହି ଦେଇ ଗଞ୍ଜଣା ଦେବାଟା ତେବେ କଣ ଭୁଲ୍ ? ବାସ୍ତବିକ ଶ୍ରୀରାମଙ୍କ ଅଭିମତ ସାଧାରଣ ହିନ୍ଦୁ ମନରେ ଗୋଟିଏ ଆକସ୍ମିକ କୁଠାରାଘାତ କରୁଛି । କିନ୍ତୁ କଥାଟିକୁ ତଳେଇ କରି ଦେଖିଲେ ବୁଝାଯିବ ଯେ ମାନବର ଶାନ୍ତିମୟ ଜୀବନକୁ ଧନ କିପରି ଅଶାନ୍ତିପୂର୍ଣ୍ଣ ବିଭିଷିକା ମଧ୍ୟକୁ ଟାଣିନିଏ । ଗୁରୁ ବଶିଷ୍ଠ ଶ୍ରୀରାମଚନ୍ଦ୍ରଙ୍କ ଆଗରେ ଅଦ୍ୱୈତ ଦର୍ଶନର ବ୍ୟାଖ୍ୟା ଉପସ୍ଥାପିତ କରିବା ନିମନ୍ତେ ଯାହା ଯାହା କହିଛନ୍ତି ତାହାହିଁ ଯୋଗବାଶିଷ୍ଠ ।

ଯୋଗବାଶିଷ୍ଠ ଛଅଟି ପ୍ରକରଣରେ ବିଭକ୍ତ । ସର୍ବ ସଂହିତା ସାର ଏହି ଶାସ୍ତ୍ରରେ ୩୨୦୦୦ ଶ୍ଳୋକ ଅଛି । ଏହା ଅଧିକାରୀ ପୁରୁଷକୁ ନିର୍ବାଣ ଦିଏ । ତେଣୁ ଏହାକୁ ମୋକ୍ଷ ଶାସ୍ତ୍ର ବୋଲି କହନ୍ତି । ନିଜେ ପଢ଼ି ବା ଅନ୍ୟାଠାରୁ ଶୁଣି ହୃଦୟଙ୍ଗମ କରିପାରିଲେ ଏହା ସଂସାର ଭ୍ରମ ଦୂରକରେ ।

ବୈରାଗ୍ୟ ପ୍ରକରଣରେ ଶ୍ରୀରାମଚନ୍ଦ୍ରଙ୍କର ସରଳ ଦାର୍ଶନିକ ପ୍ରଶ୍ନ ଦେଖିବାକୁ ମିଳେ । ଏଥିରେ ଏକ ହଜାର ପାଞ୍ଚସହ ଶ୍ଳୋକ ରହିଛି । ବୈରାଗ୍ୟ ପ୍ରକରଣ, ପାଠକ ମନରେ ବୈରାଗ୍ୟ ଆଣିଦିଏ ।

ମୁମୁକ୍ଷୁ ପ୍ରକରଣ ଏକହଜାର ଶ୍ଳୋକ ସମ୍ବଳିତ । ଏଥିରେ ମୁମୁକ୍ଷୁ ମାନଙ୍କର ସ୍ୱଭାବ ଓ ଚରିତ୍ର ବର୍ଣ୍ଣନ ଅତୀବ ଚିତ୍ତାକର୍ଷକ ।

ଉତ୍ପତ୍ତି ପ୍ରକରଣର ଶ୍ଳୋକ ସଂଖ୍ୟା ସାତ ହଜାର । ଏଥିରେ ନାନା ଦୃଷ୍ଟାନ୍ତ ସହ ତତ୍ତ୍ୱ ବୋଧାତ୍ମକ ଆଠଗୋଟି ଗଳ୍ପ ଦେଖିବାକୁ ମିଳେ । ସେହି ଆଠଗୋଟି ଗଳ୍ପ ପାଠକଲେ ସଂସାରର ଅସାରତା ଉପଲବ୍ଧ ହୁଏ ।

ସ୍ଥିତି ପ୍ରକରଣରେ ଶ୍ଳୋକ ସଂଖ୍ୟା ତିନିହଜାର । ଏଥିରେ ଦିଗ୍‌ମଣ୍ଡଳ ମଣ୍ଡିତ ଜଗତର ସ୍ୱରୂପ, କ୍ରମ, ପ୍ରଭାବ ଓ ଅହଙ୍କାର ଇତ୍ୟାଦି ପାଠକଙ୍କୁ କେଉଁ ଅଜଣା ରାଇଜକୁ ଟାଣି ନିଏ । ଭୃଗୁ ସୂତ ଶୁକ୍ର, ଦାମ, ବ୍ୟାଳ, କଟ; ଭୀମ, ଭାଷ, ଦୃଢ଼ ଓ ଦାସୁର ଉପାଖ୍ୟାନ ତତ୍ତ୍ୱଜ୍ଞାନ ଦେବାରେ କେହି କାହାକୁ ଊଣା ନୁହନ୍ତି ।

ଉପଶମ ପ୍ରକରଣର ଶ୍ଳୋକ ସଂଖ୍ୟା ତିନିହଜାର ପାଞ୍ଚସହ । ଏଥିରେ ଏଗାର ଗୋଟି ଆଖ୍ୟାନ ଅଛି । ଏହି ଗଳ୍ପମାନ ପାଠକର ସଂସାର ଭ୍ରମ, ମନରୁ ଏକାବେଳକେ ପୋଛି ଦେବାକୁ ସକ୍ଷମ ।

ନିର୍ବାଣ ବା ମୋକ୍ଷ ପ୍ରକରଣ ଦୁଇ ଭାଗରେ ବିଭକ୍ତ । ପୂର୍ବଭାଗ ଏବଂ ଉତ୍ତର ଭାଗ ଉଭୟର ଶ୍ଳୋକ ସଂଖ୍ୟା ଷୋଳ ହଜାର । ଏଥିରେ ଛବିଶ ଗୋଟି ଆଖ୍ୟାନ ରହିଛି । ଏହି ପ୍ରକରଣ ଅନୁଶୀଳନରେ ଯାବତୀୟ କଳ୍ପନା ବିନଷ୍ଟ ହୋଇ ନିର୍ବାଣ ଲାଭ ହୋଇଥାଏ ।

ରଥଯାତ୍ରା ବେଳକୁ ଏ ଗ୍ରନ୍ଥର ମୁଦ୍ରଣ ଶେଷ ହୋଇ କିପରି ତାହା ରଥପାଖରେ ପଢ଼ାଯିବ ଏଥିପାଇଁ ସହକାରୀ ବନ୍ଧୁ ଏବଂ ମୁଦ୍ରାକର ମାନେ ଅଚଳ ଅଟଳ ରହି ଯେପରି କଷ୍ଟ ବରଣ କରି ଏ **"ଦାଣ୍ଡଭେଟିଂକୁ"** ଶେଷକଲେ ତାହା ସେହି କାଳିଆ ଠାକରୁଙ୍କ କୃପାଛଡ଼ା ଆଉକିଛି ନୁହେଁ । ମୁଦ୍ରାକରମାନଙ୍କୁ ସେଥିପାଇଁ ଅନ୍ତରର ଧନ୍ୟବାଦ ଦେଉଛି । ରଥପାଖରେ, ନନ୍ଦିଘୋଷ ରଥରେ, ଗୁଣ୍ଡିଚାବାଡ଼ିରେ, ବଡ଼ଦାଣ୍ଡରେ ପାଠକମାନେ ଯେଉଁ ଉତ୍ସାହ ଦେଖାଇ ତାହା ପାଠକରି ଶେଷ କରିପାରିଲେ ଏହା ସେହି କାଳିଆର କୃପାଛଡ଼ା ଆଉ କ'ଣ ହୋଇପାରେ ?

ଏ ଗ୍ରନ୍ଥ ବ୍ରହ୍ମ ଉପଲବ୍ଧି ପାଇଁ ପାଠକପାଠିକା ମାନଙ୍କର ଏକମାତ୍ର ଅଦ୍ୱିତୀୟ ସହଚର ହେବ ବୋଲି ଆଶା । ଦୁଃଖର କଥା କାର୍ଯ୍ୟ ଓ ସମୟର ସ୍ୱଳ୍ପତା ଦୃଷ୍ଟିରୁ ମୁଦ୍ରାଣରେ କେତେକ ପ୍ରମାଦ ରହିଯାଇଛି । ଆଶା ପାଠକ ପାଠିକାମାନେ ଉଦାର ଗୁଣରେ କ୍ଷମା ଦେବେ । ଉତ୍କଳର ଭକ୍ତସମାଜ ପୁରାଣ ଢ଼ାଞ୍ଚାକୁ ବେଶି ଆଦର କରନ୍ତି ବୋଲି ଏ ଗ୍ରନ୍ଥକୁ ପୁରାଣର ଢ଼ାଞ୍ଚା ଦିଆଯାଇଛି ।

କେତେକ ବଦାନ୍ୟ ଭକ୍ତଙ୍କ ସାହାଯ୍ୟ ଯୋଗୁ ଏହି ଗ୍ରନ୍ଥର ମୁଦ୍ରଣ ସମ୍ଭବ ହୋଇ ପାରିଛି । ତାଙ୍କ ପୁରସ୍କାର ସେହି କାଳିଆଠାକୁର ଦେବେ ।ଇତି

ଅନୁବାଦକ
**ମର୍ଦ୍ଦଗାଜି ରାୟ**



## ଦାଣ୍ଡ ଭେଟି

ହେ ଅନନ୍ତ ପଡ଼ିଆରୀ
ଯୁଧିଷ୍ଠି ଯାଗକୁ ଥିଲ ସଜାଡ଼ି, ହେ କଳାବଦନ,
ପଡ଼ିଆରୀ ପଣ କରି, ହେ କଳାବଦନ ।

ଏ ଦେଶ ଦୁର୍ଦ୍ଦଶା ମୂଳ
ସ୍ୱାର୍ଥମେଧ ଯଜ୍ଞ ଯାଉ ପାଶୋର, ହେ କଳାବଦନ,
ମାଗୁଣି ଏତିକି ମୋର, ହେ କଳାବଦନ ।

ମାନବ ବାସନା-ବ୍ୟାଧି
ହଟି ଯାଉ ଦୂରେ ହେ କୃପାନିଧି, ହେ କଳାବଦନ,
ତୁମେ ତ ତାର ଔଷଧି, ହେ କଳାବଦନ ।

ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ-ମହାରାମାୟଣ

## ବୈରାଗ୍ୟ ପ୍ରକରଣ

---

## ମଙ୍ଗଳାଚରଣ

ଯାହାଙ୍କଠାରୁ ସକଳ ଭୂତ ଉତପତି
ଯାହାଙ୍କଠାରେ ସକଳ ଭୂତଙ୍କର ସ୍ଥିତି ।
ଯା'ଠାରେ ସକଳ ଭୂତ ହୁଅନ୍ତି ବିଲୀନ
ସେ ସତ୍ୟ ପରଂବ୍ରହ୍ମଙ୍କୁ ମୋହର ପ୍ରଣାମ ।
ଜ୍ଞେୟ, ଜ୍ଞାନ, ଜ୍ଞାତା, ଦୃଶ୍ୟ, ଦ୍ରଷ୍ଟା, ଦରଶନ
କ୍ରିୟା, ହେତୁ, କର୍ତ୍ତା ଯା' କାରଣୁ ପ୍ରକାଶନ ।
ସାକ୍ଷାତ ଜ୍ଞାନ ସ୍ୱରୂପ ସେ ବ୍ରହ୍ମଙ୍କୁ ମୋର
ଅନ୍ତର ଗଭୀର ଦେଶୁ କୋଟି ନମସ୍କାର ।
ଯେ ମହାନନ୍ଦ ସିନ୍ଧୁର ଏକ କଣା ମାତ୍ର
ବିଷୟାନନ୍ଦ ରୂପରେ ଯେ ରହି ସର୍ବତ୍ର,
ଦେବତା ମାନବ ଜୀବଗଣଙ୍କ ମଧ୍ୟରେ
ପ୍ରକାଶିତ ହେଉଛନ୍ତି ଯେହୁ ନିରନ୍ତରେ,
ଆନନ୍ଦକଣା ଯାହାର ଜୀବନ ସବୁରି
ସେ ପରମ ଆତ୍ମାଙ୍କୁ ମୁଁ ନମସ୍କାର କରି ।

## ୧ମ ସର୍ଗଃ

## ବୈରାଗ୍ୟ ପ୍ରକରଣ ଉପକ୍ରମ

ସୁତୀକ୍ଷ୍ଣ ମୁନି ଚଳିଲେ ଅଗସ୍ତି ଆଶ୍ରମ
ଗୁରୁଦେବଙ୍କ ଶ୍ରୀପଦେ କଲେକ ପ୍ରଣାମ ।
ବିଧିମତେ ଶତକୋଟି ଦଣ୍ଡବତ କରି
କୃତାଞ୍ଜଳିପୁଟେ ଉଭା ହେଲେ ତପଚାରୀ ।
"ଦୁଇଟି ସଂଶୟ ମୋର ମନେ ଜାତ ହୋଇ
ତେଣୁ କରି ତବ ପାଶେ ଆସିଲଇଁ ମୁହିଁ ।
ତୁମପରି ସର୍ବତତ୍ତ୍ୱ ସର୍ବ ଶାସ୍ତ୍ରବେତ୍ତା
ନଥିବେ ଏ ଧରାତଳେ ଆହେ ମହାମତା ।
ମୋ ମନ ସଂଶୟ ମୁନି ଦିଅନ୍ତୁ ମେଣ୍ଟାଇ
ଜନ୍ମେ ଜନ୍ମେ ଦାସ ହୋଇ ରହିବି ଯେ ମୁହିଁ ।
ମାନବର ସର୍ବଶ୍ରେଷ୍ଠ ଆଦର୍ଶ ହିଁ ମୋକ୍ଷ
ମୋକ୍ଷ ବିନା ନରଜନ୍ମ ସର୍ବମତେ ତୁଚ୍ଛ ।
ମୋକ୍ଷ ପାଇଁ ବାଟ ମୋତେ ଦିଅନ୍ତୁ ବତାଇ
ଯେପରି ମୋହର ମନ ଯିବ ଶାନ୍ତ ହୋଇ ।
**କରମ** ସାଧନ ଅଟେ ମୁକତିର ପଥ
କେତେକଙ୍କ ମତେ ଏହା ଅଟଇ ଯଥାର୍ଥ ।
ଆଉ କେତେକଙ୍କ ମତେ **ଜ୍ଞାନ** ହିଁ ମୁକତି
ଜ୍ଞାନ ବିନା ମୁକ୍ତିପାଇଁ ନାହିଁ ଅନ୍ୟ ଗତି ।
ମୋକ୍ଷ ପାଇଁ ଯେ କୌଣସି ଗୋଟିକ ସାଧନା
ଯଥେଷ୍ଟ ହେବ କି କହ ଆହେ ମହାମନା ?
ଅଥବା ଉଭୟ ମାର୍ଗ ଆଶ୍ରୟ ନକଲେ
ମୋକ୍ଷ ପଦର ପ୍ରାପତି ହେବ ନାହିଁ ଭଲେ ।
ସଂଶୟ ହେବାରୁ ମନେ ଏତେ ପଥ ବାହି
ଆସିଅଛି ତବ ପାଶେ ବୁଝିବା ଗୋସାଇଁ ।"
କହନ୍ତି ଅଗସ୍ତି ଶୁଣ ହେ ବିପ୍ର ତନୟ
ଯଦ୍ୱାରା ଫିଟିବ ତୁମ ମନର ସଂଶୟ ।
କେବଳ କର୍ମ ସାଧନେ ମୋକ୍ଷ ନ ମିଳଇ
କେବଳ ଜ୍ଞାନ ପ୍ରାପ୍ତିରେ ମୋକ୍ଷ ଅବା କାହିଁ ?
ମୋକ୍ଷ ପ୍ରାପ୍ତି ପାଇଁ ଲୋଡ଼ା ଉଭୟ ମାରଗ
ଏହି ତତ୍ତ୍ୱ ସଦା ବାଢ଼ିଛନ୍ତି ସୁଧୀବର୍ଗ ।
କରମ ସାଧନ ଅନ୍ତଃଶୁଦ୍ଧି ଉପୁଜାଏ
ଅନ୍ତଃଶୁଦ୍ଧି ହାସଲରେ ଜ୍ଞାନ ପ୍ରାପ୍ତ ହୁଏ ।
ତେବେ ଯାଇଁ ମୋକ୍ଷପ୍ରାପ୍ତ ହୋଇବ ମାନବ
ନର ଜନ୍ମ ଶ୍ରେଷ୍ଠ ଆଦର୍ଶକୁ ପ୍ରାପ୍ତହେବ ।
ପକ୍ଷୀ ଲୋଡ଼େ ଦୁଇଡେଣା ଉଡ଼ିବା ପାଇଁ କି
ଗୋଟିକରେ ଉଡ଼ିବାଟା ସମ୍ଭବି ପାରେ କି ?
ଦୁଇ ଡେଣା ଥିଲେ ପକ୍ଷୀ ସୁଖରେ ଉଡ଼ିବ
ଏକ ର ଅଭାବେ ତାକୁ ବଳ କିଏ ଦେବ ?
ସେହିପରି **କର୍ମ, ଜ୍ଞାନ** ମୋକ୍ଷ ପାଇଁ ଲୋଡ଼ା
ଗୋଟିକ ଅଭାବେ ନର ଖାଇବ କଚଡ଼ା ।
ଶୁଣ ଆହେ ଦ୍ୱିଜବର ଇତିହାସ କଥା
ଅଗ୍ନିବେଶ୍ୟ ଋଷିପୁତ୍ର **କାରୁଣ୍ୟ** ବାରତା ।
ଋଷିପୁତ୍ର କାରୁଣ୍ୟ ଯେ ଗୁରୁ ଗୃହେ ଗଲେ
ଚାରି ବେଦ, ଷଡ଼-ଅଙ୍ଗ ଅଧ୍ୟୟନ କଲେ ।
ଗୃହେ ଫେରି କିଛି କାମଦାମ ସେ ନକରି
ଚୁପ୍‌ଚାପ୍ ବସିରହେ ଦିବସ ଶର୍ବରୀ ।
ପାନ ଭୋଜନ ଆଦିରେ ନଥାଏ ଆଶକ୍ତି
ନୀରବ ହୋଇ ବସନ୍ତି ଯଥା ମୌନବ୍ରତୀ ।
ଏହା ଦେଖି ଅଗ୍ନିବେଶ୍ୟ ପୁଚ୍ଛନ୍ତି ବଚନ
କିମ୍ପା ତୋର ଏହି ଦଶା କହରେ କାରୁଣ୍ୟ ?
କର୍ମ ବିମୁଖ କିମ୍ପା ତୁ ରହୁ ପୁତ୍ରମଣି
କର୍ମ ବିନା କେସନ ତୁ ମୁକ୍ତ ହେବୁ ପୁଣି ?
କହନ୍ତି କାରୁଣ୍ୟ ମୁନି ଶୁଣ ପିତୃଦେବ
ଯାହାଘେନି ସଂଶୟ ମୋ ମନେ କରେ ଠାବ ।
ଅଗ୍ନି ହୋତ୍ରାଦିକ କର୍ମ ଜୀବ ଥିବାଯାଏ
ବେଦ କହେ କରୁଥିବ ନଲଘଁ ବିଶ୍ୱାଏ ।
ଅନ୍ୟତ୍ର ବେଦ କହଇ ଶୁଣିବା ହେ ତାତ
କର୍ମ କିମ୍ବା ଧନଦ୍ୱାରା ମୋକ୍ଷ ନୋହେ ପ୍ରାପ୍ତ ।
ପୁତ୍ର ପୌତ୍ରାଦି ଜନ୍ମିଲେ ମୋକ୍ଷ ପ୍ରାପ୍ତହେବ
ଏ ଧାରଣା ଭ୍ରମ ବୋଲି ଅବଶ୍ୟ ଜାଣିବ ।
ଯୋଗ ସାଧନ ମାର୍ଗରେ ମୋକ୍ଷପ୍ରାପ୍ତି ଆଶା
ମରୀଚିକା ସମ ଜାଣ ଆହେ ମହାଯଶା ।
କର୍ମ କଲେ ମୁକ୍ତି, ପୁଣି କର୍ମେ ମୁକ୍ତି ନାହିଁ
ଏହି ଉକ୍ତି ମୋର ମନେ ଭ୍ରମ ଜନମାଇ ।
ଏଣୁ ମୁହିଁ କେଉଁ ପଥ କରିବି ବରଣ ?
ଦୟାକରି ପିତୃଦେବ କହନ୍ତୁ ଆପଣ ।
ପିତା କହନ୍ତିରେ ପୁତ୍ର ! ପୂର୍ବ କଥା ଶୁଣ
ଧୀର ସ୍ଥିର ଚିତ୍ତେ ତାହା କର ତୁ ଚିନ୍ତନ ।

ତେଣିକି ଯେ ଇଚ୍ଛା ତୋର ଆଚରିବୁ ତାହା
ସେ ଚିନ୍ତନ ଯୋଗୁଁ ତୋର ଉପୁଜିବ ସ୍ପୃହା ।
ହିମାଳୟ ପର୍ବତର ଏକ ଶୃଙ୍ଗପରେ
ଗଙ୍ଗାର ଲହରୀମାଳା ମୋଦେ ଖେଳାକରେ ।
ଦେବତା ଗନ୍ଧର୍ବ ତହିଁ କରନ୍ତି ବିହାର
ଅପ୍‌ସରାମାନଙ୍କ ନୃତ୍ୟ କେ କରୁ ବିଚ୍ଚର ।
ସୁରୁଚି ନାମ୍ନୀ ଅପ୍‌ସରା ତହିଁ ବସିଥିଲା
ଆକାଶ ମାର୍ଗରେ ଦେବଦୂତଙ୍କୁ ଦେଖିଲା ।
ପାଶେ ହୁଅନ୍ତେ ପ୍ରବେଶ ସେହି ଇନ୍ଦ୍ରଦୂତ
ସ୍ୱର୍ଗବାଳା କହେ 'ତୁମେ କେଉଁ ଦଇବତ ?
କି କାରଣେ ଆଗମନ ଯିବ କେଉଁ ଦିଗେ !
ବାରତା କହି ସନ୍ଦେହ ଫେଡ଼ ମହାଭାଗେ ।'
'ଅରିଷ୍ଟନେମୀ ନାମକ ଧର୍ମାତ୍ମା ରାଜନ
ପୁତ୍ରେ ରାଜ୍ୟ ଦେଇ କଲା ବୈରାଗ୍ୟ ବରଣ ।
ବିଷୟ ଲାଳସା ସବୁ ମନୁ ପୋଛି ଦେଇ
ଗନ୍ଧମାର୍ଦ୍ଦନରେ ଯାଇଁ ତପ ଆଚରଇ ।
କାର୍ଯ୍ୟବଶେ ଯାଇଥିଲି ତାହାଙ୍କର ପାଶ
ଫେରି ଯାଇଣ ଇନ୍ଦ୍ରଙ୍କୁ ଦେଲି ଏ ସନ୍ଦେଶ ।'
'କି କାରଣେ ଯାଇଥିଲ ତପସ୍ୱୀଙ୍କ ପାଶ
ବର୍ଣ୍ଣନାକରି ବଢ଼ାଅ ମୋହର ଉଲ୍ଲାସ ।
ତୁମଙ୍କୁ ମୁଁ ଅତିପ୍ରିୟ ମଣି ପୁଚ୍ଛାକରେ
ସକଳ ବୃତ୍ତାନ୍ତ କହି ମୋଦ ଦେବା ମୋରେ ।
ମହାପୁରୁଷଙ୍କୁ ଯେଉଁ ପ୍ରଶ୍ନ ପଚ୍ଚରନ୍ତି
ଉଦ୍‌ବିଗ୍ନ ନୋହି ସେମାନେ ସଂଶୟ ଫିଟାନ୍ତି ।'
ଏବେ ଦେବଦୂତ କହେ 'ଆଗୋ ଭଦ୍ରେ ଶୁଣ
ଖୋଲିକରି ସବୁକଥା କରଇ ବର୍ଣ୍ଣନ ।
ଗନ୍ଧମାର୍ଦ୍ଦନ ପର୍ବତେ ବସିଣ ରାଜନ
କଠୋର ତପ କରନ୍ତେ ଟଳେ ଇନ୍ଦ୍ରାସନ ।'
ମୋତେ ଡାକି ଆଜ୍ଞାଦେଲେ ଇନ୍ଦ୍ରଦେବ ସ୍ୱାମୀ
'ଚଳ ତୁ ସେ ରାଜା ପାଶେ ଦଳବଳ ଘେନି ।
ଅପ୍‌ସରାଗଣ ବୋଲିବେ ସଙ୍ଗୀତ ଲହରୀ
ତାଳ ମୃଦଙ୍ଗ ସହିତେ ଗଗନ ଉଚ୍ଛୁଳି ।
ବିମାନେ ଘେନି ସମ୍ଭୋଗ ଦେଖାଇ ମିଳିବୁ
ରାଜାର ମନ ଭୁଲାଇ ସ୍ୱର୍ଗକୁ ଆଣିବୁ ।'
ବିମାନେ ସାମଗ୍ରୀମାନ ଧରି ମୁଁ ଚଳିଲି
ରାଜାଙ୍କୁ ସମସ୍ତ କଥା ବୁଝାଇ କହିଲି ।
ତୁମ ପାଇଁ ବାୟୁଯାନ ଆଣିଅଛି ମୁହିଁ
ଯାନେ ବସ, ସ୍ୱର୍ଗଦେଶେ ଘେନିଯିବି ମୁହିଁ ।
ଦେବଯୋଗ୍ୟ, ଭୋଗମାନ ଭୁଞ୍ଜିବ ରାଜନ
ବୃଥା ତପସ୍ୟାରେ କିମ୍ପା ଦେହ କର କ୍ଷୀଣ ?'
ତଦନ୍ତେ ରାଜନ ବୋଲେ ଶୁଣ ଦେବଦୂତ
'ପ୍ରଥମେ କହିବା ମୋତେ ସ୍ୱର୍ଗର ବୃତ୍ତାନ୍ତ ।
ଦୋଷ, ଗୁଣମାନ ସବୁ କର ତୁ ବର୍ଣ୍ଣନ
ମନକୁ ପାଇଲେ ଯିବି ତୋର ସଙ୍ଗତେଣ ।'
ମୁଁ କହିଲି 'ସ୍ୱର୍ଗେ ଦିବ୍ୟ ଭୋଗ-ଯେ ଅପାର
ପୁଣ୍ୟବଳେ ଜୀବ ଭୋଗ କରେ ସେ ସମ୍ଭାର ।
ଉତ୍ତମ ପୁଣ୍ୟ ଯାହାର ଶ୍ରେଷ୍ଠ ସୁଖ ପାଇ
ମଧ୍ୟମ ପୁଣ୍ୟବାନ ଯେ ମଧ୍ୟମ ଲଭଇ ।
କନିଷ୍ଠ ପୁଣ୍ୟବାନଙ୍କୁ ଲଘୁଭୋଗ ମିଳେ
ପୁଣ୍ୟର ପ୍ରାଚୁର୍ଯ୍ୟମତେ ପୁଣ୍ୟଫଳ ଫଳେ ।
ସ୍ୱର୍ଗପୁର ଗୁଣମାନ ଶୁଣିଲ ରାଜନ
ଏବେ ଅବଗୁଣମାନ ଶୁଣ ଦେଇ ମନ ।
ସ୍ୱଳ୍ପ ସ୍ୱର୍ଗସୁଖ ଭୋଗ କରେ ଯେଉଁ ଜନ
ଉତ୍ତମ ଭୋଗୀ ତା' କରିଥାନ୍ତି ହେୟ ଜ୍ଞାନ ।
ସମସ୍ୱର୍ଗ ଭୋଗୀମାନେ ପରସ୍ପର ପ୍ରତି
ଈର୍ଷା, ସ୍ପର୍ଦ୍ଧା, ବିଦ୍ୱେଷାଦି ଭାବ ପୋଷିଥାନ୍ତି ।
ଉତ୍ତମ ସରଗ ଭୋଗୀ ନିଜଠାରୁ ନିମ୍ନ-
ପାବଚ୍ଛେ ଥିବା ଜନଙ୍କୁ କରି ଦରଶନ ।
ଆତ୍ମସନ୍ତୋଷ ଲଭନ୍ତି ଜାଣ ହେ ରାଜନ
ତାଙ୍କ ଉତ୍କର୍ଷତା ତାଙ୍କ ଗର୍ବର କାରଣ ।
କନିଷ୍ଠ ପାବଚ୍ଛେ ଦେଖି ଅନ୍ୟ ପୁଣ୍ୟବାନ
ଅଭିମାନବଶେ ଘୃଣା ଆସେ ତାର ମନ ।
ନିଜକୁ ଶ୍ରେଷ୍ଠ ମଣିଣ ଫୁଲି ଉଠେ ମନ
ଗର୍ବ ଯୋଗୁଁ ଅସହିଷ୍ଣୁ ରହେ ଅନୁକ୍ଷଣ ।
ଅନ୍ୟ ଅବଗୁଣଗୋଟି ଶୁଣ ହେ ରାଜନ
ପୁଣ୍ୟ କ୍ଷୟ ହେଲେ ଜୀବ ଖସେ ମୃତ୍ୟୁ ଧାମ ।
କ୍ଷଣମାତ୍ର ତାର ସ୍ଥାନ ନାହିଁ ସ୍ୱର୍ଗଲୋକ
ଖସିଆସି ଭୁଞ୍ଜେ ପୁଣି ଦୁଃଖ, ମୃତ୍ୟୁଲୋକ ।
ଶୁଣ ଭଦ୍ରେ ରାଜା ଶୁଣି ମୋର ଏ ବଚନ
'ସେ ସ୍ୱର୍ଗ ଭୋଗକୁ ସେହୁଁ କଲେ ତୁଚ୍ଛ ଜ୍ଞାନ ।
ଅଧିକନ୍ତୁ ସ୍ୱର୍ଗ ଇଚ୍ଛା ନାହିଁ ତାର ବୋଲି
କହି ସେ ରାଜନ ଉଗ୍ର ତପସ୍ୟା ଆଚରି ।

'ଜୀର୍ଣ୍ଣମଣି କାତି ଯଥା ତେଜଇ ଉରଗ
ତେସନ ତେଜିବି ଦେହ ଆଚରିଣ ଯୋଗ ।
ଦେବଦୂତ ତୁମକୁ ମୋ କୋଟି ନମସ୍କାର
ଯାନ ଘେନି ଏବେ ବାହୁଡ଼ ତୁ ସ୍ୱର୍ଗପୁର ।'
ଶୁଣ ଦେବୀ ! ରାଜା ବାକ୍ୟ ଶୁଣି ମୁଁ ଚଳିଲି
ଦେବସଭା ମଧ୍ୟେ ଯାଇ ସବୁ ବଖାଣିଲି ।
ଦେବରାଜ ଇନ୍ଦ୍ର ଶୁଣି ମୋହର ବଚନ
ରାଜା ପାଶେ ପୁଣି ପେଶିଦେଲେ ତତକ୍ଷଣ ।
'ଜଣାଯାଏ ସେ ହୋଇଛି ସଂସାର ବିରାଗୀ
ବୈରାଗ୍ୟ ବଶତଃ ସେହୁ ସର୍ବମୋହ ତ୍ୟାଗୀ ।
ଆତ୍ମପଦ ଲାଭପାଇଁ ପ୍ରଗାଢ଼ ବାସନା
ତେଣୁ ପାଗଳଙ୍କ ପରି କହେ ଏହା ସିନା ।
ଏବେ ତାଙ୍କୁ ଘେନି ଚଳ ବାଲମିକ ପାଶ
ମୁନିଙ୍କୁ ନିବେଦି କହ ଏ ମୋର ସନ୍ଦେଶ ।
ରାଜାକୁ ଏ ତତ୍ତ୍ୱବୋଧ ଉପଦେଶ ଦେବ
**ବୋଧ ଉପଦେଶ ଯୋଗ** ଏହାହିଁ ଜାଣିବ ।
ସ୍ୱରଗ ସୁଖକୁ ଯାର ନଥାଇ ପସନ୍ଦ
ବୈରାଗ୍ୟ ଜ୍ୟୋତିରେ ଝଳେ ଏ ରାଜାଙ୍କ ହୃଦ ।
ତୁମ୍ଭଠାରୁ ତତ୍ତ୍ୱବୋଧ ଉପଦେଶ ପାଇ
ସଂସାର ଦୁଃଖରୁ ମୁକ୍ତ ହେଉ ନରସାଇଁ ।'
ରାଜା ପାଶେ ଯାଇ ମୁହିଁ କହିଲି ଏସନ
ବାଲମିକ ଋଷି ପାଶେ ଚଳ ହେ ରାଜନ ।
ବାଲ୍ମୀକିଙ୍କ ପାଶେ ତାଙ୍କୁ ପହଞ୍ଚାଇ ମୁହିଁ
ଇନ୍ଦ୍ରଙ୍କ ସନ୍ଦେଶମାନ କହିଲି ବୁଝାଇ ।
କହନ୍ତି ବାଲ୍ମୀକି 'ସର୍ବ ଶୁଭ କି ରାଜନ ?'
'ତବ କୃପାବଳେ ସର୍ବ ଶୁଭ ତପୋଧନ ।'
ଅରିଷ୍ଟନେମୀ ରାଜନ ବୋଲନ୍ତି ଏସନ
ଆପଣଙ୍କୁ ଦେଖି ମୁହିଁ ଜାଣ ଭାଗ୍ୟବାନ ।
ନରଲୋକେ ତୁମପରି ଆତ୍ମତତ୍ତ୍ୱ ଜ୍ଞାନୀ
ପରମ ତତ୍ତ୍ୱଜ୍ଞ ପୁଣି ବେଦାନ୍ତ ସୁଜ୍ଞାନୀ ।
ନଥିବ ହେ ମହାମୁନି ଧ୍ରୁବ ମୋ ବଚନ
ଏହା କହି ରାଜା ଲୋଟେ ବାଲ୍ମୀକି ଚରଣ ।'
'କହନ୍ତି ବାଲ୍ମୀକି ମୁନି ଶୁଣନ୍ତୁ ରାଜନ
**ମହାରାମାୟଣ** କଥା କରୁଛି ବର୍ଣ୍ଣନ ।
ସେହି ମହାତତ୍ତ୍ୱ ହୃଦେ ଧାରଣ କରିବୁ
ତାତ୍ପର୍ଯ୍ୟ ବୁଝିଲେ ତୁହି ଜୀବନ୍ମୁକ୍ତ ହେବୁ ।
ଶ୍ରୀରାମ ବଶିଷ୍ଠ ଗାଥା ଅଟଇ ସେ ଜାଣ
ମୋକ୍ଷର ଉପାୟ ତହିଁ ହୋଇଛି ବଖାଣ ।
ଯାହା ଶୁଣି ଶ୍ରୀରାମଙ୍କ ସ୍ୱଭାବ ବଦଳେ
ଜୀବନ୍ମୁକ୍ତ ହୋଇ ବିଚରିଲେ ଧରାତଳେ ।'
'ରାଜା କହେ ମହାମୁନି ରାମଚନ୍ଦ୍ର କିଏ
କାହାର ତନୟ ସେହୁ କେସନ ସେ ରାୟେ ?
କିପରି ସେ ବିଚରଣ କଲେ ଧରାତଳ
କୃପାକରି ଶାନ୍ତକର ମୋ ପିପାସାନଳ ।'
'କହନ୍ତି ବାଲ୍ମୀକି ଶୁଣ ହେ ଅରିଷ୍ଟନେମୀ
ଦ୍ୱୈତ ଜ୍ଞାନଶୂନ୍ୟ ସେ **ସଚ୍ଚିଦାନନ୍ଦ ସ୍ୱାମୀ** ।
ଅଜ୍ଞାନକୁ ଅଙ୍ଗୀକାର କରିଣ ସେ ଜାଣ
ନର ଶରୀର ଧାରଣ କଲେ ନାରାୟଣ ।
ଅଭିଶାପ ବଶ ହୋଇ ଗୋଲକବିହାରୀ
ନର ଦେହ ଧରି ବନେ ହେଲେ ତପଚାରୀ ।'
'ରାଜା କହେ ଶୁଣ ମୁନି ଯେ ସଚ୍ଚିଦାନନ୍ଦ
ଅଭିଶାପ ତାଙ୍କୁ ଦେଲା କେବଣ ସେ ମନ୍ଦ ?'
'ମୁନି କହନ୍ତି ଯା' ଅଛି ଶାସ୍ତ୍ରରେ ବଖାଣ
ସନତକୁମାର ମୁନି ଅଟନ୍ତି ନିଷ୍କାମ ।
ଦିନେ ସେହି ତପୋଧନ ବ୍ରହ୍ମାପୁରେ ଥିଲେ
ତ୍ରୈଲୋକ୍ୟାଧିପତି ବିଷ୍ଣୁ ସେଠାରେ ମିଳିଲେ ।
ବ୍ରହ୍ମାସହ ସର୍ବ ଦେବ ଆସନ ତେଜିଲେ
ତ୍ରିଲୋକ ପତିଙ୍କ ପାଦେ ଭକ୍ତି ଅରପିଲେ ।
ସନତକୁମାରଙ୍କର କାମନା ତ ନାହିଁ
ବିଷ୍ଣୁଙ୍କୁ ଦେଖି ସ୍ୱସ୍ଥାନ ତେଜିବେ କିମ୍ପାଇଁ ?
'ବିଷ୍ଣୁ ଦେବ କହନ୍ତି ହେ ସନତକୁମାର
ନିଷ୍କାମତା ଅଭିମାନ ଢାଙ୍କେ ହୃଦ ତୋର ।
ସେଥିପାଇଁ କାମାତୁର ହେବ ତୁମ୍ଭେ ଜାଣ
ସେ ଜନ୍ମେ ସ୍ୱାମୀ କାର୍ତ୍ତିକ ହେବ ତୁମ୍ଭ ନାମ ।'
'ସନତ କହନ୍ତି ଆହେ ଦେବ ଚକ୍ରଧର
ସର୍ବଜ୍ଞାତା ଅଭିମାନ ହୃଦେ ଜାତ ତୋର ।
ତୁମ ସର୍ବଜ୍ଞାତା କିଛିକାଳେ ଲୋପ ହେବ
ଅଜ୍ଞାନ-ଅନ୍ଧାର ତୁମ ହୃଦ ଢାଙ୍କିଦେବ ।'
ପ୍ରଥମ ଅଭିଶାପ ଏ ଶୁଣ ହେ ରାଜନ
ଦ୍ୱିତୀୟ ଅଭିଶାପ ଯା କହୁଅଛି ପୁଣ ।
ପତ୍ନୀ ବିଚ୍ଛେଦରେ ଭୃଗୁ ଆତୁର ହୋଇଲେ
କାନ୍ଦି କାନ୍ଦି ଜପ ତପ ଧ୍ୟାନ ଭୁଲିଗଲେ ।

ଏହା ଦେଖି ମହାବିଷ୍ଣୁ ହୋଇ ହସ ହସ
କହିଲେ ହେ ମୁନି କିମ୍ବା ଏସନ ବିରସ ?
'କ୍ରୋଧବଶ ଭୃଗୁମୁନି ଦିଏ ଅଭିଶାପ
ମୋତେ ଦେଖି ବ୍ୟଙ୍ଗ କଲ ହେ ଜଗଦାଧିପ ।
ପତ୍ନୀ ବିଚ୍ଛେଦେ ତୁମ୍ଭଙ୍କୁ ଧରା ହେବ ବିଷ
ଭୋକ, ଶୋଷ, ନିଦ ଭୁଲି ଶର୍ବରୀ ଦିବସ ।
ବନଦେଶେ ବୁଲୁଥିବ ବନ୍ୟ ପଶୁପରି
ବନଚର ଜୀବେ ହେବେ ତୁମ ରକ୍ଷାକାରୀ ।'
'ଦେବଶର୍ମା ବିପ୍ର ଦେଲା ନୃସିଂହଙ୍କୁ ଶାପ
ସେ କଥା ଶୁଣିବା ହେଉ ତୁମ୍ଭେ ଆହେ ନୃପ ।
ଦେବଶର୍ମା ଗଙ୍ଗାକୂଳେ ତପେ ଲୀନ ଥିଲେ
ଭୀମ ରୂପୀ ନରସିଂହ ତହିଁ ପହଞ୍ଚିଲେ ।
ନୃସିଂହ ଭୀଷଣ ମୂର୍ତ୍ତି ଦେଖି ତାଙ୍କ ନାରୀ
ଭୟପାଇ ପ୍ରାଣତ୍ୟାଗ କଲାକ ସୁନ୍ଦରୀ ।
ଶାପ ଦିଏ ବିଷ୍ଣୁ ଶର୍ମା ବିଷ୍ଣୁ ନାଥେ ରହି
ଜାୟା ବିୟୋଗେ ହେ ଦେବ ! ହେଉଥିବ ଦହି ।
ଶଙ୍ଖଚୂଡ ପତ୍ନୀ ବୃନ୍ଦା ଦିଏ ଅଭିଶାପ
'ଛଳେ ମୋର ପତିବ୍ରତା ଧର୍ମ କଲ ଲୋପ ।
ତୁମ୍ଭର ପତ୍ନୀ-ବିଚ୍ଛେଦ ଘଟିବ ସେ ଘେନି
ଅଲଘ୍ୟ ଅଟଇ ଯେଣୁ ପତିବ୍ରତା ବାଣୀ ।'
'ଭୃଗୁ, ଦେବଶର୍ମା, ବୃନ୍ଦା, ସନତକୁମାର
ଏମାନଙ୍କ ଶାପ ହରି କଲେ ଅଙ୍ଗୀକାର ।
ଦଶରଥ ରାଜା ଘରେ ଜନମ ଲଭିଲେ
ରାମଚନ୍ଦ୍ର ବୋଲି ଶ୍ରଦ୍ଧା ନାମ ସେ ପାଇଲେ ।
ସେ ଯେଉଁ ଶରୀର ଧରି ଜନମ ଲଭିଲେ
ଏହାପରେ ଯେଉଁ ଯେଉଁ କାର୍ଯ୍ୟ ଦେଖାଇଲେ ।
ସେହି କଥାମାନ ଶୁଣ ମନକର୍ଣ୍ଣ ଦେଇ
ଚିତ୍ତବୃତ୍ତି ସ୍ଥିର ହେବ, ମନମୁଗ୍ଧ ହୋଇ ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଯେ ତ୍ରିଲୋକ ବିହାରୀ
ଅନ୍ତଃ ବହିଃ ଆତ୍ମତତ୍ତ୍ୱେ ଯା ଶରୀର ପୂରି ।
ସେ ସର୍ବାତ୍ମା ସର୍ବବିଜ୍ଞ ପରଂବ୍ରହ୍ମ ପଦେ
ଅନୁଭବାତ୍ମକ ମମ ଆତ୍ମା ସଦା ବନ୍ଦେ ।
ଯେଉଁ ଶାସ୍ତ୍ର ଏବେ ମୁହିଁ କରୁଛି ବର୍ଣ୍ଣନ
ବିଷୟ, ସମ୍ବନ୍ଧ, ପ୍ରୟୋଜନ ତାର ଶୁଣ ।
ତାର ଅଧିକାରୀ କିଏ, କେମନ୍ତ ତା ଚିହ୍ନ
ବିଶଦଭାବେ ସେ କଥା କରିବା ବର୍ଣ୍ଣନ ।

**ସଚ୍ଚିଦାନନ୍ଦ, ଅଚିନ୍ତ୍ୟ, ଚିନ୍ମୟ** ଯେ ସେହି
ତାଙ୍କ ବିଷୟ ବର୍ଣ୍ଣନ ଏ ଶାସ୍ତ୍ର କରଇ ।
କିପରି ପରମାନନ୍ଦ ଆତ୍ମା ପରାପତି
ଅନାତ୍ମର ଅଭିମାନ ଦୁଃଖରୁ ନିବୃତ୍ତି ।
'ପ୍ରୟୋଜନ' ବୋଲି ଏହା ଜାଣିବ ରାଜନ
'ସମ୍ବନ୍ଧ' ରୂପକୁ ଏବେ କରୁଛି ବର୍ଣ୍ଣନ ।
ଆତ୍ମା ଯେ କିପରି ବସ୍ତୁ କିପରି ତା ରୂପ
କିପରି ସେ ଯିବ ପରମାତ୍ମାଙ୍କ ସମୀପ ।
ଆତ୍ମପଦ ପ୍ରତିପାଦନର ଯେ ଉପାୟ
ଦୁଇଟି ସୋପାନ ଅଛି ବୁଝ ଆହେ ରାୟ ।
**ବ୍ରହ୍ମବିଦ୍ୟା, ମୋକ୍ଷ** ଦୁଇ ସୋପାନ ତାହାର,
ହେତୁ କରି ମନେରଖ ଆହେ ନରବର ।
ଅଦ୍ୱୈତ-ବ୍ରହ୍ମ ଜଡ଼ିତ ଆନାତ୍ମ ଦେହରେ
କିଏ ବା ତାହାଙ୍କୁ ଭିନ୍ନାଭିନ୍ନ କରିପାରେ ?
**ସଂସାରବନ୍ଧ ବୋଲିଣ ନିଜକୁ ଯେ ଜାଣେ**
**ତହିଁରୁ ମୁକତି ପାଇଁ ବାସନା ଯା' ମନେ ।**
ସେହିପରି ବ୍ୟକ୍ତି ଏହି ଶାସ୍ତ୍ରକୁ ଶୁଣିଣ
ଫଳଭାଗୀ ହୋଇପାରେ ଜାଣ ହେ ରାଜନ ।
ଦେହ ଅଭିମାନୀ ପୁଣି ଅତିଶୟ ଅଜ୍ଞ
ପୁଣି ହୋଇପାରିଛନ୍ତି ଯେ'ମାନେ ତତ୍ତ୍ୱଜ୍ଞ ।
ସେମାନଙ୍କ ପାଇଁ ଏହି ଶାସ୍ତ୍ର ନୁହେ ଯୋଗ୍ୟ
ଏହି କଥା ମନେରଖ ଆହେ ମହାଭାଗ ।
**ପରମ ଆନନ୍ଦ ପ୍ରାପ୍ତି ମୋକ୍ଷ ବୋଲି ଜାଣ**
**ଏହି ଶାସ୍ତ୍ର ଅଧ୍ୟୟନ ଦିଏ ମୋକ୍ଷ ଜ୍ଞାନ ।**
ଏହି ଶାସ୍ତ୍ର ଯେଉଁ ଜନ ଅଭ୍ୟାସ କରଇ
ଜ୍ଞାନବାନ ନର ବୋଲି ତାହାକୁ ହିଁ କହି ।
ଜନ୍ମ, ମୃତ୍ୟୁ ସଂସାରକୁ ପୁନରାଗମନ
କେଉଁ ତାର ନୁହଇଟି ହେଜ ହେ ରାଜନ ।
ଏହି ମହା-ରାମାୟଣ ଅଟଇ ପାବନ
ଶ୍ରବଣ ମାତ୍ରେ ସକଳ ପାପ ବିନାଶନ ।
ଶ୍ରୀରାମଚନ୍ଦ୍ରଙ୍କ କଥା ଏଥିରେ ବର୍ଣ୍ଣିତ
ସର୍ବାଦୌ ଭରଦ୍ୱାଜଙ୍କୁ କଲି ମୁଁ ବ୍ୟକତ ।
ଏକାଗ୍ର ଚିତ୍ତରେ ଭରଦ୍ୱାଜ ମହାମୁନି
ମୋ ପାଶେ ପ୍ରବେଶ ହେଲେ ମୋତେ ଗୁରୁମଣି ।
ଶିଷ୍ୟ ଭରଦ୍ୱାଜଙ୍କୁ ମୁଁ ଦେଲି ଉପଦେଶ
ରାମଚରିତ ମନନ କର ହେ ମୁନୀଶ ।

ବଚନ-ସାଗରୁ ସାର-ରତ୍ନ ଗୋଟି ପାଇ
ସୁମେରୁ ପର୍ବତେ ମୁନି ପ୍ରବେଶିଲେ ଯାଇଁ ।
ଦେଖିଲେ ବସିଅଛନ୍ତି ସୃଷ୍ଟି କର୍ତ୍ତା ବ୍ରହ୍ମା
ଓଳଗି ଜଣାଇ ତାଙ୍କୁ କହନ୍ତି ମହାତ୍ମା ।
'ପ୍ରସନ୍ନ ହୋଇ ବ୍ରହ୍ମାଏ କହନ୍ତି ବଚନ
ମାଗ, ମାଗ ବର ବତ୍ସ କରିବି ପ୍ରଦାନ ।'
'ଭୂତ, ଭବିଷ୍ୟ, ଈଶ୍ୱର, ଜଗତ-କାରଣ
ଉଦାର ଚିତ୍ତେ ଏ ତତ୍ତ୍ୱ କରିବା ପ୍ରଦାନ ।
ସକଳ ଜୀବ-ଜଗତ ଦୁଃଖ ମୁକ୍ତ ହୋଇ
ପରମ ପଦ କେସନ ଲଭିବେ ଗୋସାଇଁ ।
ଏଥିର ଉପାୟମାନ କହିବା ବୁଝାଇ
ଚିରପୂଜ୍ୟ ହେବେ ଏହି ପଥ ଦରଶାଇ ।'
ବ୍ରହ୍ମା କହନ୍ତି 'ରେ ବତ୍ସ ! ଘେନ ମୋ ବଚନ
ବାଲ୍ମୀକି ମୁନିଙ୍କ ପାଶେ କର ତୁ ଗମନ ।
ଯେ ଶାସ୍ତ୍ର ଆତ୍ମବୋଧକ, ମହା-ରାମାୟଣ
ସଂସାର ସାଗରୁ ଯାହା କରିବ ତାରଣ ।
ଆରମ୍ଭ କରିଅଛନ୍ତି ବାଲମିକ ମୁନି
ମହାମୋହ ସାଗରକୁ ଅଟେ ତା' ତରଣୀ ।
ସର୍ବଲୋକ ହିତୈଷୀ ଯେ ପରମେଷ୍ଠି ବ୍ରହ୍ମା
ଭରଦ୍ୱାଜଙ୍କୁ ଘେନିଣ ଆସିଲେ ମହାତ୍ମା ।
ବାଲ୍ମୀକି ଆଶ୍ରମେ ତାଙ୍କ ଅର୍ଚ୍ଚନା ସରିଲା
ଉଭୟଙ୍କ ମଧ୍ୟେ-ବାର୍ତ୍ତା ଆଳାପ ଚଳିଲା ।
ବ୍ରହ୍ମା କହନ୍ତି ବାଲ୍ମୀକି ଶୁଣିବା ବଚନ
ଆରମ୍ଭ କରିଛ ରାମ ସ୍ୱଭାବ ବର୍ଣ୍ଣନ ।
ତୁମ ଏ ସାଧୁ ଉଦ୍ୟମ କେବେ ନ ତେଜିବ
ଆମୂଳଚୂଳ ଏହାର ବର୍ଣ୍ଣନ କରିବ ।
ଏହାର କାରଣ ମୁହିଁ କହୁଛି ବୁଝାଇ
ଭବ-ସାଗର ତରଣେ ଜାହାଜ ଯେ ସେହି ।
ସକଳ ଜୀବ-ଜଗତ କୃତାର୍ଥ ହୋଇଣ
କାଳେ କାଳେ କରୁଥିବେ ଏ କୀର୍ତ୍ତି ସ୍ମରଣ ।
ଏସନ କହି ବ୍ରହ୍ମାଏ କରନ୍ତି ପ୍ରସ୍ଥାନ
ବାଲ୍ମୀକି ଭରଦ୍ୱାଜଙ୍କୁ ପଚାରନ୍ତି ପ୍ରଶ୍ନ ।
'କିସ ଉଦ୍‌ବୋଧନ ଦେଲେ ପରମେଷ୍ଠି ବ୍ରହ୍ମା
ସନ୍ଦେହ ମୋଚନ ତୁମ ହେଲାକି ମହାତ୍ମା ?'

କହୁଛନ୍ତି ଭରଦ୍ୱାଜ 'ଶୁଣ ଗୁରୁଦେବ !
ରାମ-ସ୍ୱଭାବ ବର୍ଣ୍ଣନ ଅଧା ନକରିବ ।
ଭବ-ସାଗର ତରଣେ ସେହିଟି ତରଣୀ
ଅଶେଷ ଜୀବ-ଜଗତ ତରିବେ ତା ଶୁଣି ।'
କହନ୍ତି ବାଲ୍ମୀକି 'ଶୁଣ ହେ ଅରିଷ୍ଟନେମୀ
ବ୍ରହ୍ମାଙ୍କ ଶ୍ରୀଆଜ୍ଞା ମୁଁ ଯେ ନେଲଇ ବରଣି ।
ଗ୍ରନ୍ଥ ଶେଷକରି ଭରଦ୍ୱାଜେ ଶୁଣାଇଲି
ଶ୍ରୀଆଜ୍ଞା ମାନି ନିଜକୁ କୃତାର୍ଥ ମଣିଲି ।
ବଶିଷ୍ଠଙ୍କ ଉପଦେଶେ ଯେସନ ଶ୍ରୀରାମ
ବାୟୁପରି ବିଚରିଲେ ନିଃଶଙ୍କ ହୋଇଣ ।
ତୁମ୍ଭେ ମଧ ସେହି ପନ୍ଥା କରସି ଆଶ୍ରୟ
ନଥିବ ତୁମ୍ଭର କାହିଁ କେଉଁ ଭବଭୟ ।'
କହନ୍ତି ଅରିଷ୍ଟନେମୀ 'ଶୁଣ ବାଲମିକ !
ଯେସନ ରାମ ଭ୍ରମିଲେ ହୋଇଣ ନିର୍ଭୀକ ।
ଠିକ ଠିକ କରି ତାହା କରିବା ବର୍ଣ୍ଣନ
ଅବସର ନ ରହିବ କରିବାକୁ ପ୍ରଶ୍ନ ।'
କହନ୍ତି ବାଲ୍ମୀକି ମୁନି 'ଶୁଣ ହେ ରାଜନ
ଶ୍ରୀରାମ ସକାଶେ ଜୀବନ୍ମୁକ୍ତ କେଉଁମାନ ?
ଶ୍ରୀରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘନ ଭାଇ
ସୀତା, କୌଶଲ୍ୟା, ସୁମିତ୍ରା ଦଶରଥ ରାଇ ।
କୁନ୍ତଭାସୀ, ସୁଖଧାମ, ଶ୍ରୀ ଶତବର୍ଦ୍ଧନ,
ଇନ୍ଦ୍ରଜିତ, ବିଭୀଷଣ, ଭକ୍ତ ହନୁମାନ
କୁଳ-ପୁରୋଧା ବଶିଷ୍ଠ, ମନ୍ତ୍ରୀ ବାମଦେବ
ଏମାନଙ୍କୁ ଅଷ୍ଟମନ୍ତ୍ରୀ ବୋଲିଣ ଜାଣିବ ।
ଏମାନେ ଜୀବନମୁକ୍ତ ହୋଇ ବିଚରନ୍ତି
ଅଷ୍ଟଗଣ ବାୟୁପରି ବିଚରୁଣ ଥାନ୍ତି ।
ଏମାନଙ୍କୁ ଦ୍ୱୈତଭାବ କେଉଁ ନଛୁଇଁଲା
**ଅନାମୟ ପଦ** ତାଙ୍କୁ ତୃପ୍ତି ଦେଉଥିଲା ।
କେବଳ ଚିନ୍ମାତ୍ର ସ୍ୱାଦ ଆସ୍ୱାଦନ କରି
ଶ୍ରେଷ୍ଠ ପରିତ୍ରାଣ ପ୍ରାପ୍ତି ହୋଇଲା ତାଙ୍କରି ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ ବୈରାଗ୍ୟ ପ୍ରକରଣ ଉପକ୍ରମ ବର୍ଣ୍ଣନେ ନାମ ପ୍ରଥମ ସ୍ୱର୍ଗଃ ।**

❑

# ୨ୟ ସର୍ଗଃ

## ଶ୍ରୀ ରାମଚନ୍ଦ୍ରଙ୍କ ବୈରାଗ୍ୟ ଓ ତୀର୍ଥଯାତ୍ରା

ବାଲ୍ମୀକିଙ୍କୁ ପଚାରନ୍ତି ଭରଦ୍ୱାଜ ମୁନି
'କହନ୍ତୁ ଜୀବନମୁକ୍ତ କେହ୍ନେ ହୁଏ ପ୍ରାଣୀ ।
କିପରି ଜୀବନମୁକ୍ତ ରାମଚନ୍ଦ୍ର ହେଲେ
ଆଦ୍ୟପ୍ରାନ୍ତକରି ସବୁ କହ ମୁନି ଭଲେ ।'
ବୋଲନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
'ଭାସମାନ ଏ ଜଗତ, ବାସ୍ତବତା ହୀନ ।
ଶୂନ୍ୟରୁ ଉପୁଜି ଏହା ସଦା ଶୂନ୍ୟମୟ
ବିଚାର ବଳେ ଏ ତଥ୍ୟ ଅବଶ୍ୟ ନିଶ୍ଚୟ ।
ଅବିଚାର ସିନା ପ୍ରବୃତ୍ତିକୁ ବୃଦ୍ଧି କରେ
ବିଚାର ହେତୁ ନିବୃତ୍ତି ଆସିଯାଏ ବଳେ ।
ହ୍ରଦ, ଚକ୍ଷୁ, ଆଲୋଡ଼ିତ ନଭ ନୀଳିମାରେ
ନୀଳିମାର ବାସ୍ତବତା ଅଛିକି ତହିଁରେ ?
ପର୍ବତର ଶୃଙ୍ଗଦେଶେ ଯେବେ ପ୍ରବେଶିବ
ପର୍ବତ ନୀଳିମା-ଭ୍ରମ ମନୁ ଦୂର ହେବ ।
ଯେତେଦୂର ଉଠୁଥିବ ନଭମାର୍ଗେ ଯାଇ
ଗଗନ ନୀଳିମା-ଭ୍ରମ ପ୍ରମାଣିତ ହୋଇ ।
ଏଣୁକରି ମହାମୁନେ ଅବିଚାର ବଳେ
ଏ ଜଗତ ଭାସମାନ ହୁଏ କାଳେ କାଳେ ।
ବିଚାର ବଳେ ଅସ୍ତିତ୍ୱ ନରହି ତାହାର
ସ୍ଥିର ଚିତ୍ତେ ଏହି ତଥ୍ୟ ହେଜ ମୁନିବର ।
ଯେ ପର୍ଯ୍ୟନ୍ତ ଏ ସୃଷ୍ଟିର ଅତ୍ୟନ୍ତ ଅଭାବ
ନୋହିଛି, ପରମପଦ କେସନ ସମ୍ଭବ ?
ସୃଷ୍ଟିକର୍ତ୍ତା ସର୍ଜିଛନ୍ତି ନାନା ପ୍ରଲୋଭନ
ତହିଁରେ ମୁଗଧ ରହିଛି ଏ ବେନି ନୟନ ।
ନୟନ ମୁଦି ବସିବ କେତେକାଳ ଯେବେ
ସୃଷ୍ଟି ପ୍ରଲୋଭନ କ୍ଷୟ ଲଭୁଥିବ ତେବେ ।
ଦୀର୍ଘକାଳ ମୁଦି ଯେବେ ବସିବ ନୟନ
ହୃଦରାଜ୍ୟେ ସଂଚରିବ 'ମାନସ' ନୟନ ।
ଶୁଦ୍ଧଚିତ୍ତ ନଭେ ଆତ୍ମସତ୍ତା ବିଚରିବ
ସଚ୍ଚିଦାନନ୍ଦ ସ୍ୱାମୀଙ୍କ ଆଭାସ ମିଳିବ ।
କେତେକଙ୍କ ମତେ ମହାପ୍ରଳୟେ ଏ ଦୃଶ୍ୟ
ଅଭାବ ହୋଇଣ ଯାଏ ବୁଝ ହେ ଜ୍ଞାନୀଶ ।
କିନ୍ତୁ ତ୍ରିକାଳେ ଦୃଶ୍ୟର ଅଭାବ ବର୍ଣ୍ଣନ
କରୁଛି ମୁଁ ମହାମୁନେ ! ଶୁଣ ଦେଇ ମନ ।
ଆଦ୍ୟନ୍ତ ଧ୍ୟାନ ଧାରଣା ସହ ଏହି ଶାସ୍ତ୍ର
ଶ୍ରବଣରେ ସେହି ଭ୍ରମ ହେବ ତିରୋହିତ ।
ଅଧିକନ୍ତୁ ଅବ୍ୟାକୃତ ପଦପ୍ରାପ୍ତ ହୋଇ
ଜୀବନ୍ମୁକ୍ତ ହୋଇ ଜୀବ ମହୀ ବିଚରଇ ।
ଅତଏବ ଆହେ ବତ୍ସ ! ସୃଷ୍ଟି ଭ୍ରମାତ୍ମକ
ଏ ସିଦ୍ଧାନ୍ତ ଶେଷବୋଲି ହୃଦୟରେ ରଖ ।
ଏ ସଂସାର ଭ୍ରମ-ମାତ୍ର ବୋଲି ମନେ ଧରି
ତାକୁ ଭୁଲିଯିବା, ମୁକ୍ତି ଜାଣ ତପଚାରୀ ।
ଜୀବ ବନ୍ଧନ କାରଣ ବାସନାହିଁ ଜାଣ
ବାସନାରୁ ଜୀବ ଲଭେ ଜନମ-ମରଣ ।
ବାସନା ବିନାଶେ ପରଂପଦ ପରାପତି
ପରମପଦ ପ୍ରାପତି ଜୀବର ମୁକତି ।
ବାସନାର ପ୍ରତିମାଏ ଅଛଇଟି ଜାଣ
'ମନ' ବୋଲିଣ ହୋଇଛି ତା ନାମକରଣ ।
ସଂସାର ସତ୍ୟତାରୂପ-ଶୀତଳତା ଘେନି
ଆତ୍ମା-ଜଳ ଘନୀଭୂତ ଜାଣ ମହାମୁନି ।
ସେ ଘନୀଭୂତ ଅବସ୍ଥା ମନବୋଲି ଜାଣ
ଜ୍ଞାନ ସୂର୍ଯ୍ୟୋଦୟେ ତାର ହୁଏ ବିନାଶନ ।
ସଂସାର ବୋଲିଣ ଜୀବ ଯାହାକୁଟି କହି
ସତ୍ୟତା ବୋଲି ତହିଁରେ ତିଳେମାତ୍ର ନାହିଁ ।
ସଂସାର-ରୂପୀ-ସତ୍ୟତା, ଭ୍ରମ ହିଁ ଜାଣିବ
ସଂସାର ସତ୍ୟ ମଣିଲେ ମାୟାରେ ଘାରିବ ।
ଆକାଶରୁ ବର୍ଷାବେଳେ ଜଳ ଥାଏ ଶୁଦ୍ଧ
ମହୀ ସଂଯୋଗେ ଆସି ସେ ହୁଅଇ ଅଶୁଦ୍ଧ ।
ପରମଆତ୍ମାରୁ ଜନ୍ମି ଆତ୍ମା ଶୁଦ୍ଧ ଥାଏ
ସଂସାର ଆବିଳତାରେ କଳୁଷିତ ହୁଏ ।
ଅତି ଶୀତଳତାହେତୁ ଜଳଟି ବରଫ
ଅତି ମାୟା ଜଡ଼ତାରେ ଜୀବର ସନ୍ତାପ ।
ମନ, ବାସନା, ଏ ଦୁହେଁ ନୁହନ୍ତିଟି ଭିନ୍ନ
ଉଭୟ ଅଟନ୍ତି ଏକ ପଦାର୍ଥର ନାମ ।
ମାୟାପଟଳ ଖୋଲନ୍ତେ ବାସନାର ନାଶ
ବାସନା ନାଶ ବୁଝିବ ମନର ବିନାଶ ।
ମନର ବିନାଶ ବୁଝ ପରମ କଲ୍ୟାଣ
ଯେଣୁ ତାହା କାଟିଦିଏ ଜଗତ ବନ୍ଧନ ।

ଭବ ବନ୍ଧନ କାଟିଲେ ମୁକତି ପ୍ରାପତ
ଏଣୁ ଜୀବଧାରୀମାନେ ହୁଅନ୍ତି ଜୀବନ୍ମୁକ୍ତ ।
ଏବେ ବିଚାର କରିବା **'ବାସନା'** ବିଷୟ
ଦୁଇ ପ୍ରକାର ବାସନା ହୋଇଛି ନିର୍ଣ୍ଣୟ ।
'ଶୁଦ୍ଧ' 'ଅଶୁଦ୍ଧ' ବୋଲିଣ ଜ୍ଞାନୀଏ କହନ୍ତି
ଶୁଦ୍ଧ-ବାସନା ପ୍ରଭାବ ଶୁଣ ମହାଯତି ।
ତତ୍ତ୍ୱଜ୍ଞାନ ଉପଯୋଗୀ ଅଟେ ଏ ବାସନା
ଅଶୁଦ୍ଧ-ବାସନା ଦୋଷ ଶୁଣ ମହାମନା ।
ମର ଶରୀରରେ ଆତ୍ମା ବାସ କରିଥାଏ
ପରମାତ୍ମା ଦର୍ଶନାର୍ଥେ ଘାରି ହେଉଥାଏ ।
ଆତ୍ମା ନିର୍ମଳ ଅଟଇ ସ୍ଫଟିକକୁ ଜିଣି
ଅଶୁଦ୍ଧ ବାସନା ତାକୁ କଳୁଷକୁ ଟାଣି ।
ମୋହ, ମାୟା, ଅହଙ୍କାର ଜାଲେ ତାକୁ ଫାନ୍ଦି
କାଳେ କାଳେ କବଳରେ କରିଥାଏ ବନ୍ଦି ।
ଅଭିମାନ ବୋଲି ଯେଉଁ ଦୁର୍ଗୁଣ ଅଛଇ
ଯେତେ ମାଜି ହେଉଥିଲେ ମାଡ଼ି ବସୁଥାଇ ।
ଥରକୁ ଥର ଯେପରି ଘଣ୍ଟାକଣ୍ଟା ବୁଲେ
ବାରମ୍ବାର ଜୀବ ବନ୍ଦି ହୁଏ ମାୟାଜାଲେ ।
ପଞ୍ଚଭୂତ ଶରୀରର ଦେଖ ଏ ପ୍ରମାଣ
କେବଳ ଏ ବାସନାଙ୍କ ରୂପାନ୍ତର ଜାଣ ।
ବିନା ବାସନାରେ ତାଙ୍କ ଅସ୍ତିତ୍ୱ ନଥାଇ
ମୋର କଥା ହେଜ ରଖ ଆହେ ତପୀସାଇଁ ।
ଯେସନ ସୂତା ତାଗରେ ମାଳଟି ଗ୍ରନ୍ଥିତ
ତେସନ ବାସନା ତାଗେ ଗୁନ୍ଥା ପଞ୍ଚଭୂତ ।
ସୂତା ଛିନ୍ନ ହେଲେ ମାଳି ଗୋଟି ଗୋଟି ହୋଇ
ଏଣେ ତେଣେ ଗଡ଼ିଯାଏ ଜଣାଯାଏ ନାହିଁ ।
ତେସନ ବାସନା କ୍ଷୟ ହୁଅନ୍ତେଟି ଜାଣ
ପଞ୍ଚଭୂତ ଶରୀରର ନଥାଏ ନିଶାଣ ।
ସକଳ ଅନର୍ଥ ମୂଳ ବାସନାକୁ ବୁଝ
ସର୍ବାନ୍ତକରଣେ ସର୍ବ ଚେଷ୍ଟା ସହ ଯୁଝ ।
ଜଗତର ବାସ୍ତବତା ଶୂନ୍ୟଠାରୁ ଶୂନ୍ୟ
ଶୁଦ୍ଧ-ବାସନାଟି କରେ ଏଥିର ପ୍ରମାଣ ।
ଜଗତ ବୋଲି ଯାହାକୁ ଜୀବଧାରୀ ବୁଝେ
ଅସ୍ତିତ୍ୱ ନାସ୍ତି କହିଣ, ଲଘୁ ଇଚ୍ଛା ଯୁଝେ ।
ଅଜ୍ଞାନୀ ବାସନା ଅଟେ ଜନ୍ମର କାରଣ
ସୁଜ୍ଞାନୀ ବାସନା କରେ ନିର୍ବାଣ ପ୍ରଦାନ ।
ବିହନ ଧାନ ବୁଣିଲେ ଗଛ ଉପୁଜିବ
ଉଷୁନା ଧାନୁ କି କେଭେଁ ଗଜା ସମ୍ଭବିବ ?
ଅଜ୍ଞାନୀ ବାସନା ରସ-ଯୁକତ ଅଟଇ
ତେଣୁ ଜନମ ମରଣ ଲାଗି ରହିଥାଇ ।
ସୁଜ୍ଞାନୀ ବାସନାରସ-ରହିତ ଅଟଇ
ତେଣୁ ପୁନଃ, ଆଗମନ ତାର ନ ଘଟଇ ।
ସୁଜ୍ଞାନୀ ଜନର ଚେଷ୍ଟା ଅଟେ ସ୍ୱାଭାବିକ
ତେଣୁ ପ୍ରାଣପଣେ ରଖେ ତାକୁ ସୁବିବେକ ।
ଖିଆ, ପିଆ, ଦେବା, ନେବା ସମଜ୍ଞାନ କରେ
ଚାଲ, ବୁଲ, ବାର୍ତ୍ତାଳାପ ସବୁ ତାର ଚାଲେ ।
ଏମାନ ଅଟନ୍ତି ତାର ଗୌଣ କର୍ମ ଜାଣ
ମୁଖ୍ୟ କର୍ମ କଥା ଏବେ କରିବି ବଖାଣ ।
ଅଦ୍ୱୈତ ଭାବ ତା ହୃଦେ ସର୍ବଦା ଜାଗ୍ରତ
ଦ୍ୱୈତଭାବ ଯୋଗୁଁ କେଭେଁ ନୁହେଁ କଳୁଷିତ ।
ସଦାସର୍ବଦା ସୁଜ୍ଞାନୀ ସ୍ୱଭାବସ୍ଥ ରହେ
ତେଣୁ ଜନ୍ମର କାରଣ ତାର କର୍ମ ନୁହେଁ ।
କୁମ୍ଭାର ଚକ୍ର ଘୂର୍ଣ୍ଣନ ଯଦି ବନ୍ଦହେବ
ଘଟ ଉତ୍ପନ୍ନ ତହିଁରୁ କେବେହେଁ ନୋହିବ ।
ବାସନା ସହିତ ଅହଙ୍କାର ଯେତେକାଳ
ରହିଥିବ ଜାଣିରଖ ଆହେ ମୁନିବର ।
ଜୀବର ଜନମ ଚାଲିଥିବ ତେତେକାଳ
ଅହଙ୍କାର ବିନା ଜନ୍ମ ନୁହେଁ ପୁନର୍ବାର ।
ବ୍ରହ୍ମବିଦ୍ୟା ସାଧନ ହିଁ ଏକମାତ୍ର ପନ୍ଥା
ଅଜ୍ଞାନୀ ବାସନା ନାଶ କରଇ ସର୍ବଥା ।
ମୋକ୍ଷ-ପଥର ସୋପାନ ବ୍ରହ୍ମବିଦ୍ୟା ଜାଣ
ସୁଜ୍ଞାନୀ ମତରେ ଏହା ହୋଇଛି ପ୍ରମାଣ ।
ବ୍ରହ୍ମ ବିଦ୍ୟା ଛାଡ଼ି ଯେହୁ ଗଲେ ଶାସ୍ତ୍ରଗର୍ଭେ
କଳ୍ପ କଳ୍ପ ଯାଏ ତାର ତ୍ରାହି ନାହିଁ ମର୍ତ୍ତ୍ୟେ ।
ଅକୃତ୍ରିମ-ପଦ ତାକୁ ସ୍ୱପ୍ନ ପରି ଜାଣ ।
ବ୍ରହ୍ମ-ବିଦ୍ୟା ପନ୍ଥି ଲଭେ ବ୍ରହ୍ମ ଦରଶନ ।
ମୋକ୍ଷପଦ ପାଇ ସେହୁ ବ୍ରହ୍ମେ ଯାଏ ମିଶି
ଆଉ ତାର ଦିନ କାହିଁ, ଆଉ ତାର ନିଶି ।
ରାମ-ବଶିଷ୍ଠ ସମ୍ବାଦ ସେହି ମୋକ୍ଷ ମାର୍ଗ
ଯାହାକି ମନନ ଆଉ ଚିନ୍ତନର ଯୋଗ୍ୟ ।
ଆଦ୍ୟ ପ୍ରାନ୍ତକରି ଏହା ଶୁଣ ଜ୍ଞାନବନ୍ତ
ରାମଚନ୍ଦ୍ର ଯେଉଁପରି ହେଲେ ଜୀବନ୍ମୁକ୍ତ ।

ଏକଦିନେ ରାମଚନ୍ଦ୍ର ଏମନ୍ତ ଯେ କଲେ
ଅଧ୍ୟୟନ ପରେ ବିଦ୍ୟାଳୟରୁ ଫେରିଲେ ।
ଗୃହେ ନିର୍ବେଦ ହୋଇଣ ବସିଲେକ ରାମ
ତାଙ୍କ କର୍ଣ୍ଣେ ନପଶଇ କାହାରି ବଚନ ।
ତୀର୍ଥଯାତ୍ରା ମନୋରଥ ପୋଷିଣ ଶ୍ରୀରାମ
ପିତାଙ୍କ ଚରଣ ଆସି କରନ୍ତି ବନ୍ଦନ ।
ଭୋ ପିତଃ ! ମୋର ବାସନା ତୀର୍ଥ-ପର୍ଯ୍ୟଟନ
ଆଜ୍ଞା ହେଉ ମନୋରଥ କରିବି ପୂରଣ ।
ଏ ଘରେ କାହାରି ଇଚ୍ଛା ଅପୂରଣ ନୋହି
ଅତୀତ ମୁକତ କଣ୍ଠେ ଗାୟନ କରଇ ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ଏମନ୍ତ କେ ନାହିଁ
ଯାର ମନୋରଥ ଏହି ଘରେ ପୂର୍ଣ୍ଣ ନୋହି ।
ତେଣୁ ମୋର ମନୋରଥ କରିବା ପୂରଣ
ଏ ଘରର ପରମ୍ପରା ନ ହେଉ ଭଗନ ।
ବଶିଷ୍ଠ ମହର୍ଷି ରାଜ ଦରବାରେ ଥିଲେ
ରାମଙ୍କ ପ୍ରାର୍ଥନା ଶୁଣି ବଚନ ବାଢ଼ିଲେ ।
ଆଜ୍ଞା ଦିଅ ରାମ ଯାଉ କରି ତୀର୍ଥାଟନ
ସଂସାରର ଅଭିଜ୍ଞତା କରିବ ଅର୍ଜନ ।
ସେନା, ଧନ, ମନ୍ତ୍ରୀ, ଦ୍ୱିଜେ ଥିବେ ସଙ୍ଗତରେ
ତୀର୍ଥ ପର୍ଯ୍ୟଟନ ସାରି ବାହୁଡ଼ିବେ ଘରେ ।
ଶୁଭ ଲଗ୍ନ ଦେଖି ରାଜା ଆଦେଶ ବିହିଲେ
ରାମ ଯାଇ ପିତୃ ମାତୃ ଚରଣ ବନ୍ଦିଲେ ।
ଭାଇ ମନ୍ତ୍ରୀସହ ଗଲେ ବିଧିଜ୍ଞ ବ୍ରାହ୍ମଣେ
ବଶିଷ୍ଠ ମନ ନଲାଗେ ସେ ରାଜଭବନେ ।
ଥାଟ ଚଳାଇ ବଶିଷ୍ଠ କରନ୍ତି ଗମନ
ଅନୁକୂଳ କଲେ ରାମ କରି ଦାନ ପୁଣ୍ୟ ।
ଅଯୋଧ୍ୟାବାସୀ କରନ୍ତି ପୁଷ୍ପ ବରଷଣ
ଦେବତାଙ୍କ ମନ ଈର୍ଷା କରଇ ଦହନ ।
ଗଙ୍ଗାଦି ସରିତ ତୀର୍ଥେ ସ୍ନାନ ଦାନକରି
ତୀର୍ଥାଟନ କରି ବିଚରନ୍ତି ଭାଇ ଚରି ।
ଚରି ଦିଗ, ଚରି ଧାମ, ଚତୁଃସିନ୍ଧୁ ଭ୍ରମି
ହିମାଳୟ, ମୈରୁ ଦେଶ ଭ୍ରମିଲେକ ସ୍ୱାମୀ ।
ଗଣ୍ଡକୀ, କେଦାରତୀର୍ଥ ବଦ୍ରି ନାରାୟଣ
ଏମନ୍ତ ତୀର୍ଥ ନାହିଁ ଯା ନକଲେ ଦର୍ଶନ ।
ବିଧିପୂର୍ବକ ଭ୍ରମଣ କରିଣ ଶ୍ରୀରାମ
ଦର୍ଶନ ପରେ ଫେରନ୍ତି ଅଯୋଧ୍ୟା ଭବନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ ଶ୍ରୀରାମଚନ୍ଦ୍ରଙ୍କ ବୈରାଗ୍ୟ ଓ ତୀର୍ଥ ଯାତ୍ରା ବର୍ଣ୍ଣନେ ନାମ ୨ୟ ସର୍ଗଃ ।**



## ୩ୟ ସର୍ଗଃ

## ବିଶ୍ୱାମିତ୍ରଙ୍କ ଆଗମନ

କହନ୍ତି ବାଲ୍ମୀକ ମୁନି ଶୁଣ ଭରଦ୍ୱାଜ
ଅଯୋଧ୍ୟା ଫେରିଲାବେଳେ ରାମ ରଘୁରାଜ ।
ପୁରବାସୀଏ ସୁମନ କରନ୍ତି ବର୍ଷଣ
ସ୍ୱର୍ଗରାଜ୍ୟେ ଇନ୍ଦ୍ରସୁତ ଫେରନ୍ତି ଯେସନ ।
ଗୁରୁ, ପିତୃଦେବ ପଦେ ବନ୍ଦିଲେ ଶ୍ରୀରାମ
ସଭା-ସଦଗଣେ ଦେଲେ ଯଥାବିଧି ମାନ୍ୟ ।
ଅନ୍ତଃପୁରେ ଯାଇ ମାତାଗଣଙ୍କୁ ବନ୍ଦିଲେ
ଭାଇ, ବନ୍ଧୁ, କୁଟୁମ୍ବଙ୍କୁ ସମ୍ଭାଷଣ ଦେଲେ ।
ସପତ ଦିବସ-ଯାଏ ଚଳିଲା ଉତ୍ସବ
ଦାନ, ପୁଣ୍ୟ ବିଧିମାନ ସାରିଲେ ରାଘବ ।
ବାଜନ୍ତେ ମଙ୍ଗଳ ବାଜା ଉଚ୍ଛୁଳେ ଗଗନ
ଭାଟ ଆଦି ବନ୍ଦିମାନେ କଲେ ସ୍ତୁତିଗାନ ।
ପ୍ରାତଃସ୍ନାନ୍ ପରେ ରାମ ସନ୍ଧ୍ୟାବିଧି ସାରି
ବୟସ୍ୟମାନଙ୍କ ସଙ୍ଗେ ବାର୍ତ୍ତାଳାପକରି ।
ତୀର୍ଥାଟନ ଅନୁଭୂତି କରନ୍ତି ପ୍ରକାଶ
ଶ୍ରବଣେ ସବୁରି ମନେ ଉପୁଜେ ହରଷ ।
ଦିବା ନିଶି ଏହିପରି ବିତାନ୍ତି ଶ୍ରୀରାମ
ଏହାପରେ ଯାହା ହେଲା ଶୁଣ ଦେଇ ମନ ।
ଦିନେ ପ୍ରାତଃକାଳେ ରାମ ଦଶରଥ ପାଶେ
ପ୍ରବେଶି ପଦ ବନ୍ଦନ୍ତି ମନର ହରଷେ ।
ବ୍ରହ୍ମର୍ଷିମାନେ ଦିଅନ୍ତି ଧର୍ମ ଉଦ୍‌ବୋଧନ
ବଶିଷ୍ଠ ମୁନି ସଭାକୁ କରନ୍ତି ମଣ୍ଡନ ।
ଗୁରୁଦେବ ପଦେ ରାମ କରନ୍ତେ ବନ୍ଦନ
ପିତା ଦଶରଥ ତାଙ୍କୁ କହନ୍ତି ବଚନ ।
'ଶିକାର କରିବା ପାଇଁ କର ତୁ ଗମନ
ତହିଁରେ ପାଇବୁ ବାବୁ ମନ ବିନୋଦନ ।'

ଷୋଡ଼ଶ ବର୍ଷୀୟ ଯୁବା ଥିଲେ ଦାଶରଥି
ଲକ୍ଷ୍ମଣ ଶତ୍ରୁଘ୍ନ ଦୁହେଁ ହେଲେ ତାଙ୍କ ସାଥି ।
ଭରତ ତ ସ୍ନେହବଶେ ଅଜା ଘରେ ଥିଲେ
ଶିକାର କ୍ରୀଡ଼ାରେ ତିନି ଭାଇ ମତ୍ତ ହେଲେ ।
ହିଂସ୍ରଜନ୍ତୁମାନଙ୍କୁ ସେ ଶିକାର କରନ୍ତି
ନିରୀହ ପ୍ରାଣୀ ପରାଣେ ସାନ୍ତ୍ୱନା ବଢ଼ାନ୍ତି ।
ଦିବସେ ଶିକାର କରି ସନ୍ଧ୍ୟା ଆଗମନେ
ବାଦ୍ୟନାଦ ସହ ସର୍ବେ ଫେରନ୍ତି ଭବନେ ।
ଦିନେ ରାମଚନ୍ଦ୍ର ହେଲେ ଅନ୍ତଃପୁରେ ଆସି
ବିଷାଦ କାଳିମା ମୁଖମଣ୍ଡଳକୁ ଗ୍ରାସି ।
ବିଳାସ ବ୍ୟସନ ସବୁ ଲାଗେ ତାଙ୍କୁ ପିତା
କୌଶଲ୍ୟା ମାତା ବଦନୁ ନବାହାରେ କଥା ।
ରାଣୀହଂସପୁରେ ସର୍ବେ କାନ୍ଦ କାନ୍ଦ ହୋଇ
କି କରିବେ କାହାରିକୁ ବାଟ ନଦିଶଇ ।
ଶରତ ପରଶେ ଜଳ ଯେସନ ନିର୍ମଳ
ବାସନା ବିନାଶେ ରାମ ଚିତ୍ତ ସୁନିର୍ମଳ ।
ମାତ୍ର କ୍ରମଶଃ ଶରୀର ହୁଅଇ ଦୁର୍ବଳ
ବିକଚ କମଳ ସମ ଅନ୍ତର ପ୍ରଫୁଲ୍ଲ ।
ବାହାରେ ନୀରସ ମାତ୍ର ଅନ୍ତରେ ସରସ
ସମସ୍ତେ ବ୍ୟଥିତ କିମ୍ପା ଶ୍ରୀରାମ ବିମର୍ଷ ।
ବସିଲାବେଳେ ସର୍ବଦା ଭାବନା ମଗନ
କରତଳେ ଗଣ୍ଡରଖି ସଦା ଉଦାସୀନ ।
ମନ୍ତ୍ରୀ କହେ ହେ ମଣିମା ହେଲା ଉଷାକାଳ
ସ୍ନାନ, ସନ୍ଧ୍ୟା ସାରି ମଣୋହିକି ବିଜେକର ।
ଉପବନ ବିହାରଟି କିମ୍ପା ଯାଅ ଭୁଲି
ପ୍ରକୃତି ରାଣୀ ବସିଛି ଫୁଲ ଡାଲା ମେଲି ।
ମନ୍ତ୍ରୀ ବଚନ ନରୁଚେ ଶ୍ରୀରାମ ଶ୍ରବଣ
ଉଦ୍‌ବେଗେ ଥରି ଉଠନ୍ତି ଶତ୍ରୁଘ୍ନ ଲକ୍ଷ୍ମଣ ।
ପିତା ମାତା ପାଶେ ଦେଲେ ଏସନ ତଦନ୍ତ
ଅବିଳମ୍ବେ ପହଞ୍ଚିଲେ ଆସି ଦଶରଥ ।
ଚମକି ପଡ଼ିଲେ ପିତା ପୁତ୍ର ଦଶା ଦେଖି
ଶରୀର କୃଶତା କେଉଁ କବି ପାରେ ଲେଖି ।
ଆତୁରତା ବଶ ରାଜା ପୁତ୍ରକୁ ଘେନିଲେ
କୋଳେ ବସାଇ ନାନାଦି ପ୍ରଶ୍ନ ପଚାରିଲେ ।
କବି କଳ୍ପନା ବାହାର ସେ କୋମଳ ବାଣୀ
ଶ୍ରୀରାମ ହୃଦୟ କିନ୍ତୁ ନପାରିଲା କିଣି ।

ହାୟ, ହାୟ ! ପୁତ୍ର ତୋତେ କି ଦଶା ଘାରିଲା
ନଚିନ୍ତିଲା କଥା ମୋତେ ଗ୍ରହ ଦେଖାଇଲା ।
'ହେ ପିତା ! କିଛି ତ ଦୁଃଖ ମୋତେ ଘାରି ନାହିଁ
ଏତିକି ମାତ୍ର କହିଣ, ତୁନି ରଘୁରାଇ ।
ଏହିପରି କିଛିକାଳ ଗୁଜରିଣ ଗଲା
ରାଣୀ ମହଲେ ସର୍ବଦା ଭାଳେଣି ପଡ଼ିଲା ।
ରାଜା ସହ ସବୁ ନାରୀ କରନ୍ତି ବିଚାର
ମନ୍ତ୍ରୀ ଉପଦେଶ ଦେଲେ କର ବିଭାଘର ।
ବଶିଷ୍ଠଙ୍କୁ ପୁଚ୍ଛାକଲେ ରାଜା ଦଶରଥ
'କି କାରଣେ ପୁତ୍ର ମୋର ଭଗ୍ନ ମନୋରଥ' ?
'ରାମଙ୍କର ଏ ଅବସ୍ଥା ଜାଣ ହେ ରାଜନ'
ଅକାରଣ ନୁହେ ଘେନ ବଶିଷ୍ଠ ବଚନ ।
ଅତୀବ ଗୂଢ଼ ଆବର ମହତ ଉଦ୍ଦେଶ୍ୟ
ନିହିତ ରହିଛି ତହିଁ ଅଯୋଧ୍ୟା ନରେଶ ।
ଏବେ ଶୁଣସି ତାହାର ପ୍ରମାଣ ରାଜନ
କ୍ଷିତି ଆଦି ପଞ୍ଚ ମହା ଭୂତଙ୍କର ଗୁଣ ।
ସୃଷ୍ଟି କର୍ତ୍ତା ଯେତେବେଳେ ସର୍ଜନା କରନ୍ତି
ପଞ୍ଚଭୂତେ ସେ କାଳରେ ବିକାର ଦେଖାନ୍ତି ।
ପୁଣି ଜଗତ ପ୍ରଳୟେ ପଞ୍ଚଭୂତ ଆତ୍ମା
ବିକାରବାନ ହୁଅନ୍ତି ଦେଖାଇ ଗାରିମା ।
କିଞ୍ଚିତ କାର୍ଯ୍ୟେ ନୁହନ୍ତି ସେ ବିକାରବାନ
ମହାପୁରୁଷମାନଙ୍କ ସର୍ବଦା ଲକ୍ଷଣ ।
ଲଘୁତାବଶ ବସ୍ତୁ ଏ ଲଭନ୍ତି ବିକାର
ଗୁରୁତାବଶ ମହତେ କିନ୍ତୁ ନିର୍ବିକାର ।
ରାମଚନ୍ଦ୍ର ତ ଅଟନ୍ତି ମହତ ପୁରୁଷ
ହୋଇକି ପାରିବେ କେବେ ସେ ବିକାରବଶ ?
ହେ ରାଜନ ! ଶୋକ ତେଜ, ତେଜ ମୁଁ କହଇ
ସୁନା ରୂପା ଲାଗି ଦୁଃଖି କେଉଁ ରାମ ନୋହି ।
ଭବିଷ୍ୟ ଗର୍ଭରେ ଯାଙ୍କ ସୁଖଟି ନିହିତ
ମୁକ୍ତ କଣ୍ଠେ କହୁଅଛି ହେଜ ଦଶରଥ ।'
କହନ୍ତି ବାଲ୍ମୀକ ମୁନି ଶୁଣ ଭରଦ୍ୱାଜ
ଗୁରୁ ବାଣୀ ଶୁଣୁଥିଲେ ଦଶରଥ ରାଜ ॥
ଦ୍ୱାରପାଳ ବାର୍ତ୍ତା ଆଣି କରଇ ପ୍ରଦାନ
ଗାଧିସୁତ ଦ୍ୱାରଦେଶେ ଆସି ଉଭା ଜାଣ ।
କହନ୍ତି ସେ 'ମୁହିଁ ଅଟେ ବିଶ୍ୱାମିତ୍ର ମୁନି'
ସାହାଯ୍ୟ ଭିକ୍ଷା କରନ୍ତି ଯଜ୍ଞରକ୍ଷା ଘେନି ।

ସ୍ୱର୍ଣ୍ଣ ସିଂହାସନ ତେଜି ପଦବ୍ରଜେ ଯାଇ
ବିଶ୍ୱାମିତ୍ରଙ୍କୁ ଭେଟନ୍ତି ଅଯୋଧ୍ୟାର ସାଇଁ
ଦଣ୍ଡ-ପ୍ରଣାମ ସହିତ ବୋଲେ ଦଶରଥ
'ତବ ଦର୍ଶନ ପାଇ ମୁଁ ହେଲି କୃତ କୃତ୍ୟ ।
ଭାଗ୍ୟ ବଡ଼ ପାଇଲି ମୁଁ ତବ ଦରଶନ
ଏ ସୌଭାଗ୍ୟ ମୋର ଚିର ହେଲା ବୋଲି ଜାଣ ।
ମୋ ଭାଗ୍ୟ ତପନ ଆଜ ହେଲେକ ଉଦୟ
ସର୍ବ ପାପ ତାପମାନ କ୍ଷଣେ ଗଲେ ଲୟ ।
କ୍ଷତ୍ରୀ କୂଳେ ଜନ୍ମ ତବ ବ୍ରାହ୍ମଣ ସ୍ୱଭାବ
ପ୍ରଥମ ବିଶିଷ୍ଟ ଗୁଣ ଜାଣେ ମୁହିଁ ଦେବ ।
ତୁମ୍ଭ ଦେହେ ପରିପୂର୍ଣ୍ଣ ସର୍ବ ଶୁଭ ଗୁଣ
ଏଣୁ ଭାଗ୍ୟୋଦୟ ମୋର ହେବ ହେ ମହାନ ।
କ୍ଷତ୍ରିୟ, ବ୍ରାହ୍ମଣ ହେବା ଅଟଇ ଦୁର୍ଲ୍ଲଭ
ଏ ବିରଳ ଗୁଣ ତୁମ୍ଭ ଶ୍ରୀଅଙ୍ଗେ ସମ୍ଭବ ।
ତୁମ୍ଭ ଦର୍ଶନ ମୁକତି ଶୀଘ୍ର ଦେବ ଆଣି
ଏଣୁ ମୁଁ ନିଜକୁ ଭାଗ୍ୟବାନ ବୋଲି ମଣି ।'
ଦରବାର ତେଜି ବଶିଷ୍ଠାଦି ମୁନିଗଣ
ବିଶ୍ୱାମିତ୍ରେ ଆଲିଙ୍ଗିଲେ କରି ସନମାନ ।
ତା ପରେ ବିଶ୍ୱାମିତ୍ରଙ୍କୁ ଦଶରଥ ନେଲେ
ଅନ୍ତଃପୁରେ ସ୍ୱର୍ଣ୍ଣସିଂହାସନେ ବସାଇଲେ ।
ପାଦ୍ୟ, ଅର୍ଘ୍ୟ ଦେଇ ପୂଜାବିଧିରେ ଅର୍ଚ୍ଚନ
କରି ମୁନି ତପସ୍ୱୀଙ୍କୁ କଲେ ପ୍ରଦକ୍ଷିଣ ।
ଅଭିବାଦନ ଦେଲେକ ବଶିଷ୍ଠ ମହର୍ଷି
ଅଭିବାଦନ କରନ୍ତି ବିଶ୍ୱାମିତ୍ର ଋଷି ।
ପରସ୍ପରେ ପୂଜାବିଧି ଶେଷ ହେବା ପରେ
ଯଥାଯୋଗ୍ୟ ସ୍ଥାନେ ସର୍ବେ ଉପବିଷ୍ଟ ହେଲେ ।
ପୁଣି ଦଶରଥ ରାଜା କହନ୍ତି ବଚନ
'ଭାଗ୍ୟବଳେ ପାଇଛି ମୁଁ ତବ ଦରଶନ ।
ସୂର୍ଯ୍ୟୋଦୟେ ପଦ୍ମବନ ଯଥା ଉଲ୍ଲସିତ
ଅନୁଗୃହୀତ ଆମକୁ କଲ ତପୋବନ୍ତ ।
ଆମ ପାଇଁ ଦେବ ତବ ଶୁଭ ଆଗମନ
ଅମୃତଲାଭ ସମାନ ହୋଇଲାଟି ଜାଣ ।
ଅନ୍ଧ ଦୃଷ୍ଟିଶକ୍ତି ତାର ପାଇଲା କି ଫେରି
ଅନାବୃଷ୍ଟି କାଳେ ହେଲ ବର୍ଷାଧାରାସରି ।
ସୁଖ, ତୃପ୍ତି ଲଭି ଆମେ ଲଭିଲୁ ଆଶ୍ୱାସ
ତବ ଶୁଭ-ଆଗମନ ଆମର ଆଶିଷ ।
କେଉଁ କାର୍ଯ୍ୟେ ଆଗମନ କହିବା ଗୋସାଇଁ
ତବ ପଦେ ଅଦାତବ୍ୟ ମୋର କିଛି ନାହିଁ ।'

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ବିଶ୍ୱାମିତ୍ରଙ୍କ ଆଗମନ ବର୍ଣ୍ଣନେ**
**ନାମ ୩ୟ ସର୍ଗଃ ।**



## ୪ର୍ଥ ସର୍ଗଃ
## ଦଶରଥଙ୍କ ବିଷାଦ

ରାଜା ବାଣୀ ଶୁଣି ଗାଧିସୁତ ହେଲେ ତୋଷ
ପୂର୍ଣ୍ଣିମା ସାଗର ଯଥା ଲଭଇ ଉଲ୍ଲାସ
'ଧନ୍ୟ ରାଜା ଦଶରଥ, ହେ ରାଜ ଶାର୍ଦ୍ଦୁଳ
ତୁମ୍ଭ ବଚନେ ତୁମ୍ଭେ ବା କିସ ନକହିଲ ?
ଦୁଇଗୁଣ ତୁମ୍ଭଠାରେ କରନ୍ତି ନିବାସ
ପ୍ରଥମେ ଜନ୍ମ ଲଭିଛ ତୁମେ ରଘୁବଂଶ ।
ଦ୍ୱିତୀୟରେ ଗୁରୁ ବଶିଷ୍ଠଙ୍କ ଆଜ୍ଞା ଘେନି
ରାଜକାର୍ଯ୍ୟ ଚଳାଉଛ ସର୍ବ ଶତ୍ରୁ ଜିଣି ।
ମୋର ଅଭିଳାଷ ଏବେ କରଇ ବର୍ଣ୍ଣନ
ପୂର୍ଣ୍ଣ କରିବ କି ନାହିଁ କହ ହେ ରାଜନ ?
ଦଶରାତ୍ର ଯଜ୍ଞ ମୁହିଁ କରେ ଆୟୋଜନ
ବିନଷ୍ଟ କରନ୍ତି ତାହା ଖର ଓ ଦୂଷଣ ।
ନିଶାଚର ବଳ ଘେନି କରନ୍ତି ବିପ୍ଲାତ
ବର୍ଷଣ କରନ୍ତି ଆଣି ଅସ୍ଥି ଓ ରକତ ।
ମୋର ଯଜ୍ଞସ୍ଥଳ ଅପବିତ୍ର କରିଦ୍ୟନ୍ତି
ଯେ ସ୍ଥାନେ ଯାଏ ସେ ସ୍ଥାନେ ବିଘ୍ନ ଆଚରନ୍ତି ।
ତାଙ୍କ ନାଶ ପାଇଁ ଆସିଅଛି ତୁମ୍ଭ ପାଶ
ମୋର ଦୁର୍ବଳତା ବୁଝିଛନ୍ତି ସେ ରାକ୍ଷସ ।
ମୋ ଯଜ୍ଞର ଏକ ଅଂଶ ଅଟେ କ୍ଷମାଗୁଣ
ଶାପ ଦେଲେ କ୍ଷମାଗୁଣ ହୋଇଯିବ ବିଘ୍ନ ।
ବିନା କ୍ରୋଧେ ଶାପ ଦେବା ସମ୍ଭବ ନୁହଇ
କ୍ରୋଧବଳେ ଯଜ୍ଞ ଫଳ ନିଷ୍ଫଳ ହୁଅଇ ।
ମୋର ନୀରବତା ଦେଖି ରାକ୍ଷସେ ମାତନ୍ତି
ଅପବିତ୍ର ବସ୍ତୁ ଫିଙ୍ଗି ବିଘ୍ନ ଆଚରନ୍ତି ।
ଏଥିପାଇଁ ତୁମ୍ଭଠାରେ ପଶିଲି ଶରଣ
ଶରଣାର୍ଥୀକୁ ରାଜନ କର ପରିତ୍ରାଣ ।
ହେ ରାଜା ! ରାମଚନ୍ଦ୍ରଙ୍କୁ ଦିଅ ମୋର ସଙ୍ଗ
ରାକ୍ଷସ ବିନାଶି ରକ୍ଷା କରିବେ ମୋ ଯାଗ ।

ନ ଭାବ ରାଜନ ରାମ ସାମାନ୍ୟ ବାଳକ
ସୁରବୀର ଅଟନ୍ତି ସେ ଇନ୍ଦ୍ର ସମକକ୍ଷ ।
ସିଂହ ଆଗେ ମୃଗ ଯଥା ପାଏ ନାହିଁ ପ୍ରାଣ
ରାମ ଶରେ ସେ ଦୁର୍ଦ୍ଧର୍ଷେ ହାରିବେ ଜୀବନ ।
ମୋର ଦିବ୍ୟ ତେଜବଳେ ହୋଇ ସୁରକ୍ଷିତ
ରାକ୍ଷସ ନାଶନେ ରାମ ହୋଇବ ସମର୍ଥ ।
ନାନାଦି ମଙ୍ଗଳ ଅନୁଷ୍ଠାନ ରାମ ପାଇଁ
କରିବାକୁ ସୁଯୋଗଟି ମୋତେ ମିଳିବଇ ।
ତା ଫଳେ ରାମ ହୋଇବେ ତିନିକାଳେ ପୂଜ୍ୟ
ଏ ମୋ ନିରାଧାର ବାଣୀ ଦଶରଥ ରାଜ ।
ଯଦି ତୁମେ ରାମକୁ ମୋ ସଙ୍ଗତରେ ଦେବ
ଯଶ, ଧର୍ମ, ଦୁଇଗୁଣ ଅର୍ଜନ କରିବ ।
ଅଧିକନ୍ତୁ ମୋର କାର୍ଯ୍ୟ ହେବ ସମ୍ପାଦନ
ଏଥକୁ ହେ ରାଜା ତୁମେ ନମଣିବ ଆନ ।
ଏମନ୍ତ କି କାର୍ଯ୍ୟ ରାଜା ! ଅଛି ତ୍ରିଜଗତେ
ଯାହା ହୋଇ ନପାରିବ ଶ୍ରୀରାମଙ୍କ ହସ୍ତେ ।
ଅତଏବ ହେ ରାଜନ ରାମେ ମୋତେ ଦେବ
ଅମଙ୍ଗଳର ଆଶଙ୍କା କିଛି ନକରିବ ।
ତୁମ୍ଭର ପୁତ୍ର ଯେ କିଏ ଆମ୍ଭଙ୍କୁ ତା ଜଣା
ବଶିଷ୍ଠ ଋଷିଙ୍କୁ ପୁଣି ନୁହେ ତା ଅଜଣା ।
କାଳ ଜାଣି ଯେହୁ କାର୍ଯ୍ୟ କରିଯାଏ ଜାଣ
ଅନାୟାସେ ତାହା କରିପାରେ ସମ୍ପାଦନ ।
ଗଡ଼ିଯାନ୍ତେ କାଳ ଯେବେ କାର୍ଯ୍ୟ ଆଚରିବ
କାର୍ଯ୍ୟ ନୋହି, ଶ୍ରମବାଧା କେବଳ ପାଇବ ।
ପ୍ରବଳ ଦୈତ୍ୟ ଅଟନ୍ତି ଖର ଓ ଦୂଷଣ
ମୋର କାର୍ଯ୍ୟେ ସଦା ଆଚରନ୍ତି ବିଘ୍ନମାନ ।
ରାମେ ଦେଖି ପଳାୟନ କରିବେ ସେମାନେ
ରାମ ଆଗେ ସ୍ଥିରହୋଇ ନପାରିବେ କ୍ଷଣେ ।
ଯୁଦ୍ଧ କଥା ତ ରାଜନ ବହୁଦୂର ବୁଝ
ରାମ ଆଗେ ଠିଆହେବ, କାର ଅଛି ତେଜ ?
ସୂର୍ଯ୍ୟ ପ୍ରକାଶରେ ତାରାଗଣ ଯାନ୍ତି ମ୍ଳାନ
ରାମ ଦର୍ଶନେ ରାକ୍ଷସେ କ୍ଷଣେ ହେବେ ଲୀନ ।'
ବାଲ୍ମୀକି କହନ୍ତି ଆହେ ଭରଦ୍ୱାଜ ଶୁଣ
ବିଶ୍ୱାମିତ୍ର ବାକ୍ୟେ ରାଜା ହେଲେ ହତଜ୍ଞାନ ।
ପହରେ କାଳ ବିତିଲା ନଯାଏ ନିଶ୍ୱାସ
ସର୍ବ ସଭାସଦଗଣ ଲଭିଲେ ହତାଶ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ଦଶରଥଙ୍କ ବିଷାଦ ବର୍ଣ୍ଣନେ**
**ନାମ ୪ର୍ଥ ସର୍ଗଃ ।**



## ୫ମ ସର୍ଗଃ

## ଦଶରଥଙ୍କ ଉକ୍ତି

ଭରଦ୍ୱାଜଙ୍କୁ କହନ୍ତି ବାଲମିକ ମୁନି
ପ୍ରହରକ ଅନ୍ତେ ରାଜା ଚେତାପାଇ ପୁଣି ।
ବିଶ୍ୱାମିତ୍ରଙ୍କୁ କହନ୍ତି ଆହେ ମହାମୁନି
ମୋ ରାମ ବାଳକ ମାତ୍ର କିମ୍ପା ଯିବ ଘେନି ।
ଅସ୍ତ୍ର ଶସ୍ତ୍ର-ବିଦ୍ୟା ଶିକ୍ଷା କିଛି ନାହିଁ ତାର
କେମନ୍ତେ ଭାବୁଛ କରିପାରିବ ସମର ?
ବାଳକଙ୍କ ମେଳେ ଖେଳ-କୁଦ ତାକୁ ଜଣା
ଫୁଲ ଶେଯେ ନିଦ୍ରା ଯାଏ କଷଣ ଅଜଣା ।
ଅନ୍ତଃପୁର ନାରୀମେଳେ ଚୁପ୍‌ଚପ ବସି
ରମଣୀମାନେ ତାହାକୁ ଦେଖି ହୁଅନ୍ତି ଖୁସି ।
କେବେଁ ଦେଖିନାହିଁ ରଣଭୂମି ଭୟଙ୍କର
ଭ୍ରୂକୁଟି ଚଢ଼ାଇ କେବେଁ ମାରିନାହିଁ ଶର ।
ଦଇତ ସଙ୍ଗେ ଲଢ଼ିବ କେସନ ମୋ ପୁଅ
କହିବା ହେଉ ହେ ମୁନି ହୃଦ ହେଉ ଥୟ ।
ପଥର, ଫୁଲ ମଧ୍ୟରେ ଯୁଦ୍ଧ କି ସମ୍ଭବ
ଅଧୈର୍ଯ୍ୟ ହୃଦୟ ମୋର ସହିକି ପାରିବ ?
ବୟସ ହୋଇଛି ମୋର ବୁଝ ତପୋଧନ
ଲଭିଛି ଏ ବୃଦ୍ଧକାଳେ ଚାରୋଟି ସନ୍ତାନ ।
ଏବେ ରାମର ବୟସ ଷୋହଳ ମାତର
ରାମ ଯେ ମୋ ପ୍ରାଣପ୍ରିୟ, ପ୍ରାଣୁ ପ୍ରିୟତର ।
ରାମ ବିନା ମୋ ଜୀବନ କ୍ଷଣେ ନରହିବ
ତାକୁ ନେଲେ ମୋର ପ୍ରାଣପକ୍ଷୀ ଉଡ଼ିଯିବ ।
କେବଳ ଯେ ରାମ ମୋର ପ୍ରିୟ, ନବୁଝିବ
ମାତାଗଣଙ୍କର ହୃଦ ସଙ୍ଖାଳି ରାଘବ ।
ଭ୍ରତ, ଶତ୍ରୁଘ୍ନ, ଲକ୍ଷ୍ମଣ ତିନିଙ୍କର ପ୍ରାଣ
ପ୍ରାଣରୁ ଅଧିକ ଜାଣ ଅଟଇ ଶ୍ରୀରାମ ।
କେସନ ଧଇର୍ଯ୍ୟ ଧରି ରହିବେ ଏମାନେ
ବିଚାର କରିବା ହେଉ ଆହେ ମହାମୁନେ ।

ରାମଙ୍କୁ ନେଲେ ସମସ୍ତେ ଜୀବନ ହାରିବେ
ସବୁଙ୍କୁ ମାରିବାହେଲେ ରାମେ ନିଅ ତେବେ ।
ମୋର ହୃଦଦେଶେ ରାମ ଷୋଳପଣପୁରି
ରହିଛି ଅଟଳ ବୁଝ ଆହେ ତପଚାରୀ ।
ରାମକୁ ଦେଖିଲାମାତ୍ରେ ମୋ ଚିତ୍ତ ପ୍ରସନ୍ନ
ସେ କଥା ବର୍ଣ୍ଣିବା ପାଇଁ ଜାଣ ମୁଁ ଅକ୍ଷମ ।
ରାମ ବିନା କେସନ ମୁଁ ଧରିବି ଜୀବନ
ପ୍ରତିକାର କହି ଫେଡ଼ ମୋ ହୃଦ ଦହନ ।
ସ୍ତିରୀ, ଧନ, ଧାନ୍ୟ, ସବୁ ନଗଣଇ କିଛି
ମୋ ନୟନ ତାରା ରାମେ ନପାରେ ମୁରୁଛି ।
ତୁମ୍ଭର ବଚନ ଶୁଣି ଘାରେ ମୋତେ ଶୋକ
ମୋ ଦୁର୍ଭାଗ୍ୟ ବଡ଼ ତୁମେ ବଢ଼ାଅ ମୋ ଦୁଃଖ ।
କେବେହେଁ ରାମକୁ ମୋର ଦେଇ ନ ପାରଇ
ଅନ୍ତର କଥାଟି ମୋର ଖୋଲି କହିଲଇଁ ।
କହିବ ତ ନିଜେ ଯିବି ସଙ୍ଗେ ଧରି ସୈନ୍ୟ
ଅସୁର ବଳ ସହିତ କରିବି ମୁଁ ରଣ ।
କ୍ଷୌଣୀ କ୍ଷୌଣୀ ସୈନ୍ୟବଳ ଥିବେ ମୋ ସଙ୍ଗତ
ଅସ୍ତ୍ର ଶସ୍ତ୍ର ବିଶାରଦ ଜଗତ ବିଖ୍ୟାତ ।
ସମସ୍ତଙ୍କୁ ଯୁଦ୍ଧେ ମୁହିଁ କରିପାରେ ହତ
ଶର ଧରି ନପାରିବ ରାବଣ ସହିତ ।
ଖର ଦୂଷଣ ଅଟନ୍ତି ରାବଣର ଚର
ତାଙ୍କ ବିନାଶେ ରୁଷିବ ରାବଣ ଅସୁର ।
ସୃଷ୍ଟି ବିଖ୍ୟାତ ଯୋଦ୍ଧା ମୁଁ ଥିଲି ଯୁବାକାଳେ
ମୋ ନାମେ ଥରି ଉଠନ୍ତି ସର୍ବେ ତେତେବେଳେ ।
ତ୍ରିଜଗତେ ମୋର ସମ ନଥିଲେକ କେହି
ଶନିଗ୍ରହକୁ ହଟାଇ ଦେଇଥିଲି ମୁହିଁ ।
ତେତେବେଳେ ରାବଣର ନାମ ଶୁଣିକରି
ଥରି ଉଠୁଥିଲି ମୁହିଁ ରମ୍ଭାପତ୍ର ପରି ।
ଯଦି ରାବଣକୁ ଯୁଦ୍ଧେ ମୁହିଁ ନପାରିବି
ପିଲା ପୁଅ ରାମକୁ ମୋ କେମନ୍ତେ ଛାଡିବି ?
କି ରୋଗ ଘାରିଛି ତାକୁ ନଜାଣଇ ମୁହିଁ
ଖିଆ, ପିଆ ଛାଡି ସେହି ବସେ ମୂକ ହୋଇ ।
ନାରୀମହଲେ ସର୍ବଦା ବସି କାଳ କାଟେ
ସେ ଜାଣେ ତା କାଳ କିମ୍ଵା କଟେ ଛଟପଟେ ।
ଶରୀର କୃଶତା ଯୋଗୁଁ ଚିହ୍ନି ନହୁଅଇ
ହଳଦିଆ ଦିଶେ କାମଳ କି ଗ୍ରାସିଛଇ ।
ଯୁଦ୍ଧକୁ ସାମର୍ଥ୍ୟ ଅବା ଅଛି ତାର କାହିଁ ?
ଖରଦୂଷଣେ ମାରିବ ବା ମରିବ ସେହି ।
ଅଯୋଧ୍ୟା ଛାଡ଼ି ବାହାରେ କେଭେଁ ଯାଇନାହିଁ
କି ଲାଭ ହେବ ତୁମ୍ଭର ରାମ ସଙ୍ଗେ ନେଇ ?

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ଦଶରଥଙ୍କ ଉକ୍ତି ବର୍ଣ୍ଣନେ**
**ନାମ ୫ମ ସର୍ଗଃ ।**



## ଷଷ୍ଠ ସର୍ଗଃ
## ରାମ-ସମାଜ

ଭରଦ୍ୱାଜଙ୍କୁ କହନ୍ତି ବାଲମିକ ତପୀ
ରାଜା କଥା ଶୁଣି ବିଶ୍ୱାମିତ୍ର ହେଲେ କୋପୀ ।
'ଧମକ ଦେଇ କହନ୍ତି ମୁନି ଗାଧି ସୁତ
ନିଜ ଧର୍ମ ହେଜକର ରାଜା ଦଶରଥ ।
ଯାଚଞ୍ଚା ପୂରଣ ପାଇଁ ବାକ୍ୟଦେଇ ମୋରେ
ଏବେ ପଛଘୁଞ୍ଚା ଦିଅ ବୁଝି ମୁଁ ନପାରେ ।
ସିଂହବରଂ ହୋଇ ତୁମେ ମୃଗପରି ଭୀରୁ
କାପୁରୁଷ ନଥିଲେ କେ, ତୁମ୍ଭର ପୂର୍ବରୁ ।
ଏବେ ତୁମ ଇଚ୍ଛା ଯାହା ତାହା ତୁମେ କର
ଆଗନ୍ତୁକ ମୁଁ, ଫେରୁଛି ରିକ୍ତ ହସ୍ତେ ମୋର ।
ରାଜା ହୋଇ ରାଜ୍ୟ ତୁମେ ବୁଝାସୁଝା କର
ପଛକୁ ବୁଝିବ ରାଜା କରଣୀ ମୋହର ।'
କହନ୍ତି ବାଲ୍ମୀକି ବିଶ୍ୱାମିତ୍ର କୋପ ଫଳେ
ପଚାଶ କୋଟି ଯୋଜନ ପୃଥ୍ୱୀ କମ୍ପେ ଥରେ ।
ଇନ୍ଦ୍ର ଆଦି ଦେବଗଣ ଭୟଭୀତ ହେଲେ
କି ହେଲା କି ହେଲା ବୋଲି ବୋବାଳି ଛାଡ଼ିଲେ ।
'ବଶିଷ୍ଠ କହନ୍ତି ରାଜା ଇକ୍ଷ୍ୱାକୁ ବଂଶରେ
ସର୍ବେ ପରମାର୍ଥୀ ଥିଲେ ଆହେ ନରବରେ ।
କିମ୍ପାଇଁ ଧର୍ମ ପାଶୋରି ଦେଉଛ ରାଜନ
ଧର୍ମ ହିଁ ଏ ଧରିତ୍ରୀ କି କରିଛି ଧାରଣ ।
ହେ ରାଜା ମୋ ଆଗେ ତୁମେ କରିଛ ପ୍ରତିଜ୍ଞା
ପୂରଣ କରିବ ବିଶ୍ୱାମିତ୍ରଙ୍କ ଯାଚଞ୍ଚା ।
ଶ୍ରୀରାମଙ୍କୁ ବିଶ୍ୱାମିତ୍ର ସଙ୍ଗେ ଦିଅ ଛାଡ଼ି
ପୁତ୍ରର ରକ୍ଷା କରିବେ ଆଶିଷ ଅଜାଡ଼ି ।
କାହାରି ବଳ ନପାଏ ବିଶ୍ୱାମିତ୍ର ସଙ୍ଗେ
ମୂର୍ତ୍ତିମନ୍ତ ମୃତ୍ୟୁ କିବା କ୍ରୀଡ଼ାକରେ ରଙ୍ଗେ ।

ବିଶ୍ୱାମିତ୍ର ସମ ତପୀ ସଂସାରେ କେ ନାହିଁ
ଅସ୍ତ୍ର-ଶସ୍ତ୍ର ବିଦ୍ୟାରେ ଯେ ତାଙ୍କ ସରି ସେହି ।
ଜୟା, ସୁଭଗା ଉଭୟେ ଦକ୍ଷରାଜ ଜେମା
ତାଙ୍କୁ ବିଭାହେଲେ ବିଶ୍ୱାମିତ୍ର ମହାତମା ।
ପାଞ୍ଚଟି ଲେଖେଁ ବଳିଷ୍ଠ ପୁତ୍ର ଜନମିଲେ
ଦୈତ୍ୟ ନାଶି ସର୍ବ ସମାଧାନ ସେ ବିହିଲେ ।
ସେ ଦୁଇ ଭଗିନୀ ଯେବେ ବିଶ୍ୱମୂର୍ତ୍ତି ଧରି
ଯୁଦ୍ଧକ୍ଷେତ୍ରେ କିଏସେ ବା ହେବ ତାଙ୍କ ସରି ?
ତାଙ୍କ ସହ ବିଶ୍ୱାମିତ୍ର ମୁନି ରହିଥାନ୍ତେ
ଯୁଦ୍ଧେ ଯେ ପଶେ ସେ ଶୀଘ୍ର ଚଳେ ଯମ ପଥେ ।
ସଂଶୟ ନରଖି ରାମେ ଦିଅ ବିଶ୍ୱାମିତ୍ରେ
ଟିପ ଦେଇ ନପାରିବେ କେହି ରାମ ଗାତ୍ରେ ।
ସୂର୍ଯ୍ୟୋଦୟେ ଅନ୍ଧକାର ତିରୋହିତ ହୋଇ
ବିଶ୍ୱାମିତ୍ର ତେଜେ ଦୁଃଖ ଅପସରି ଯାଇ ।
ରାମଙ୍କର ଭୟ ନାହିଁ ଥିଲେ ଗାଧିସୁତ
ମୋ ଆଜ୍ଞା ପ୍ରମାଣେ ପୁତ୍ରେ ଦିଅ ଦଶରଥ ।
ଇକ୍ଷ୍ୱାକୁ କୁଳରେ ଜନ୍ମ ଲଭିଛ ରାଜନ
ଦଶରଥ ବୋଲି ଧ୍ୱଜା ଉଡ଼େ ମର୍ତ୍ତ୍ୟ ଧାମ ।
ତୁମ୍ଭେ ଯେବେ ନକରିବ ଧରମ ପାଳନ
କେମନ୍ତେ ପାଳିବେ ତାହା ଅନ୍ୟ ଜୀବଗଣ ।
ମହତେ ଯେଉଁ ଆଦର୍ଶ ବାଢ଼ିଣ ବସନ୍ତି
ଅନ୍ୟ ଜନମାନେ ସେହି ପଥ ଆଚରନ୍ତି ।
ସ୍ୱ ବଚନ ଯେବେ ତୁମେ ନପାଳ ରାଜନ
କେଉଁ ପଥ ବରିବେଟି ଅନ୍ୟ ଜନଗଣ ?
ତୁମ୍ଭ ପୂର୍ବ ବଂଶେ କେହି ବଚନ ନହୁଡ଼ି
ବଚନ ପାଳନ ଧର୍ମ ସକଳେ ଆଚରି ।
କିପରି ରାଜନ ତୁମେ ହୁଡ଼ିବ ବଚନ
ଅନ୍ତର ମଧ୍ୟରେ ଏହା କର ଅନୁଧାନ ।
ଦୈତ୍ୟ ଭୟେ ଶୋକାକୁଳ ନୁହସି ହେ ବିଜ୍ଞ
ଭୁଲି ଯାଉଛ କି ଦେବ ତୁମେ ଯେ ସୁବିଜ୍ଞ ?
କାଳ ଯେବେ ମୂର୍ତ୍ତିଧରି ଆଗେ ଠିଆହେବ
ବିଶ୍ୱାମିତ୍ର ଥାନ୍ତେ ରାମେ ସେ କିସ କରିବ ?
ଯାର ରକ୍ଷାକାରୀ ଏହି ବିଶ୍ୱାମିତ୍ର ରାହୁ
ଅସ୍ତ୍ର ଶସ୍ତ୍ର ଜ୍ଞାନ ତାର ଥାଉ ବା ନଥାଉ ।
ବହ୍ନି ପ୍ରାଚୀର ରକ୍ଷିତ ସୁଧାଭାଣ୍ଡ ସମ
ତା ସମକ୍ଷ ନ ହୋଇବେ ଯାତୁଧାନ ଗଣ ।
ବିଶ୍ୱାମିତ୍ରଙ୍କୁ ଗୋଚର ଯେଉଁ ସବୁ ଅସ୍ତ୍ର
ତ୍ରିଭୁବନେ ଅନ୍ୟ କିଏ ପାଇବ ତା ଅନ୍ତ ?
ଭବିଷ୍ୟରେ ମଧ୍ୟ କେହି ନପାରିବେ ଜାଣି
ସର୍ବ ଅସ୍ତ୍ର ଶସ୍ତ୍ର ବେତ୍ତା ବିଶ୍ୱାମିତ୍ର ମୁନି ।
ଯାହାର ରକ୍ଷକ ହେବେ ବିଶ୍ୱାମିତ୍ର ଋଷି
ମୃତ୍ୟୁ ମଧ୍ୟ ତା ନିକଟେ ନପାରିବ ପଶି ।
ଶୋଚନା ନକରି ରାମେ ବିଶ୍ୱାମିତ୍ରେ ଦିଅ
ଅକ୍ଷୟ କୀରତି ଯୁଗ ଯୁଗ ପାଇଁ ଥୁଅ ।
ଦ୍ୱିପ୍ରକାର ହାନି ତୁମ ଘଟିବ ଅବଶ୍ୟ
ପୁତ୍ରକୁ ନଦେଲେ ନିନ୍ଦା ରଟିବ ଭବିଷ୍ୟ ।
କୂପ, ବାପି, ପୁଷ୍କରିଣୀ ଖୋଳାଇବା କୀର୍ତ୍ତି
ନାଶ ଯିବ, ଅରଜିବ ସଦା ଅପକୀର୍ତ୍ତି ।
ତପ, ବ୍ରତ, ଯଜ୍ଞ, ଦାନ, ତୀର୍ଥସ୍ନାନ ଫଳ
ନାଶଯାଇ ଲକ୍ଷ୍ମୀହାନି ଘଟିବ ତୋ ପୁର ।
ମୋହ ଶୋକ ତେଜି ରାଜା ରାମଙ୍କୁ ପଠାନ୍ତୁ
ତ୍ରିଭୁବନ ତୁମ୍ଭ ଯଶ ସଦା ଗାଉଥାନ୍ତୁ ।
ବୁଝି ବିଚାରି ବଚନ ସଦା ଦେଉଥିବ
ଅବିଚାର ପରିଣାମ-ଦୁଃଖଦାୟୀ ହେବ'' ।
ବଶିଷ୍ଠ ବଚନେ ରାଜା ହେଲେ ଧୈର୍ଯ୍ୟବାନ
ମହାବାହୁ ଭୃତ୍ୟକୁ ସେ କରନ୍ତି ଆହ୍ୱାନ ।
'ଯାଅ ମହାବାହୁ ବେଗେ ମୋ ରାମକୁ ଆଣ
**ବିଶ୍ୱାମିତ୍ର ଶ୍ରୀହସ୍ତରେ କରିବି ପ୍ରଦାନ ।'**
ଆଜ୍ଞା ପାଇ ଭୃତ୍ୟମାନେ ବେଗେ ଚଳିଗଲେ
ଧ୍ୟାନ ମଗ୍ନ ରାମଙ୍କୁ ସେ ଭିତରେ ଦେଖିଲେ ।
ମୁହୂର୍ତ୍ତକେ ଫେରିଆସି ଦିଅନ୍ତି ଖବର
'ଚିନ୍ତାମଗ୍ନ ରାମଙ୍କୁ କେ ଆଣିବ ଏଠାର'' ?
ଭୃତ୍ୟର ବଚନେ ରାଜା ଏମନ୍ତ ଯେ କଲେ
ରାମଙ୍କ ଭୃତ୍ୟମାନଙ୍କୁ ଡକାଇ ଆଣିଲେ' ।
'କି କାରଣେ ରାମ ମୋର ବିଷାଦେ ନିମଗ୍ନ
ଆମୂଳଚୂଳ ସେ କଥା କରରେ ବର୍ଣ୍ଣନ' ।
'କୃଶତନୁ ଶ୍ରୀରାମଙ୍କୁ ଦେଖି ଆମ୍ଭ ମନ
ପୋଡ଼ିଯାଏ, ତେଣୁ ଆମ୍ଭେ କୃଶତନୁ ଜାଣ ।
ତୀର୍ଥାଟନୁ ଫେରି ରାମ ଚିନ୍ତାମଗ୍ନଛନ୍ତି
ଚିନ୍ତା ଖାଏ ଗଣ୍ଡି ତେଣୁ କୃଶତନୁ ଅତି ।
ମନ କାହିଁ ବୁଲେ ତେଣୁ ଭୋଜନ ଭୁଲନ୍ତି
ସୁସ୍ୱାଦୁ କୁସ୍ୱାଦୁ ପ୍ରତି ନାହିଁ ଆସ୍ତି ନାସ୍ତି ।

କୌଣସି ପଦାର୍ଥ ପ୍ରତି ନଥାଇ ଆଦର
ଲୋଭ ଦେଖାନ୍ତେ କରନ୍ତି ସବୁ ନିରାଦର ।
ହୀରାମଣି ଭୂଷଣାଦି ମାତା ଯା ଅର୍ପନ୍ତି
ଅଚିରେ ତାହାକୁ ତଳେ ଫୋପାଡ଼ି ଦିଅନ୍ତି ।
ଅଥବା ତାକୁ କୌଣସି ନିର୍ଧନ ଜନକୁ
ଡାକିଆଣି ଅକାତରେ ଦିଅନ୍ତି ତାହାଙ୍କୁ ।
କୌଣସି କାର୍ଯ୍ୟରେ ତାଙ୍କ ନଥାଇ ପ୍ରବୃତ୍ତି
ଅନୁରୋଧ କଲେ କରୁଛନ୍ତି ପୂଜା ସ୍ତୁତି ।
ସ୍ନାନ, ଦାନ, ଦେବାର୍ଚ୍ଚନ ପ୍ରତିଗ୍ରହମାନ
ଅନାସକ୍ତଭାବେ ସବୁ ହୁଏ ସମ୍ପାଦନ ।
ନାରୀ-ସୁଲଭ ଲକ୍ଷଣ ଦେଖାନ୍ତି ଅବଳା
ବିଷପରି ମଣି ତାକୁ କରିଦ୍ୟନ୍ତି ହେଳା ।
ଇନ୍ଦ୍ରିୟ ଲାଳସା ନାସ୍ତି, ନାହିଁ ରାଜ୍ୟ ଇଚ୍ଛା
ଜଣା ତ ନଯାଏ ତାଙ୍କ କେଉଁଥିକି ବାଞ୍ଛା ।
ଉନ୍ମାଦପରି ସର୍ବଦା ନୀରବ ରହନ୍ତି
ପ୍ରଲୋଭନ ଦେଖାଇଲେ କ୍ରୋଧ ପ୍ରକାଶନ୍ତି ।
ଘର ବଖରାକେ ରହି ପଦ୍ମାସନେ ସ୍ଥିତ
ବାମଗାଲେ ହାତ ଦେଇ ମୌନବ୍ରତେ ରତ ।
ନଜାଣୁତ କିସ ଚିନ୍ତା ଘାରିଛି ତାହାଙ୍କୁ
ଦେଖିଲାମାତ୍ରକେ ଛାତି ହୁଏ ଦୁକୁ ଦୁକୁ ।
ମନ ଭୁଲାଇବା ପାଇଁ ଯା କିଛି କହିଲେ
ଉତ୍ତର ନଦିଶେ ତାଙ୍କ ଉତ୍ତର ଶୁଣିଲେ ।
'ଯାହାକୁ ସମ୍ପଦ ବୋଲି କୁହ ତୁମ୍ଭେମାନେ
ଆପଦ ରହିଛି ପୂର୍ଣ୍ଣ ତହିଁ ଶତଗୁଣେ ।
ଯାହାକୁ ଆପଦ ବୋଲି କୁହ ତୁମ୍ଭେମାନେ
ଆପଦ ନୁହଁଟି ତାହା ବୁଝ ତତ୍ତ୍ୱଜ୍ଞାନେ ।
ଯାକୁ ରମଣୀୟ ବୋଲି ବୋଲଇ ସଂସାର
ଭରି ରହିଛି ତହିଁରେ ଗରଳ ଅପାର ।
ମୃଗତୃଷ୍ଣା ଜଳପରି ଅଟନ୍ତି ସେମାନ
ନିର୍ବୋଧ-ମୃଗିଣୀ ଧାଏଁ କରିବାକୁ ପାନ ।
ଏହି ଅସାର ସାଗରେ ବୁଡିଛି ସଂସାର
ସମ୍ପଦ, ଗୃହ, ଅଭିଷ୍ଟ ଏ ସବୁ ଅସାର ।
ସଂସାରୀ ଯେବେ କି କିଛି କରିବାକୁ ବସେ
ଏହି ପ୍ରବଞ୍ଚନା ମଧ୍ୟେ ମନ ତାର ରସେ' ।
'ସୁଖ ଭୋଗ ବୋଲି ଯାହା ମଣଇ ସଂସାର
ବନ୍ଧନ କାରଣ ମାତ୍ର ମଣେ ରଘୁବୀର ।

ଉତ୍ତମ ପଦାର୍ଥ ଯାହା ପଡ଼ଇ ନୟନେ
ଆନନ୍ଦ ନଆଣେ ତାହା କେଉଁ ତାଙ୍କୁ ମନେ ।
ପକ୍ଷାନ୍ତରେ କ୍ରୋଧ ଉପୁଜଇ ତାଙ୍କ ମନେ
କେହି ପଶି ନ ପାରନ୍ତି ତାଙ୍କ ସନ୍ନିଧାନେ ।
ବର୍ଷାଜଳ ନ ପାଇଲେ ଚାତକ ବିମୁଖ
ବିଷୟ ଅନଳେ ରାମଙ୍କର ମହାଦୁଃଖ ।
ରାମ ହୃଦେ ସୁଖ ବିଷାଦର ଚିହ୍ନ ନାହିଁ
ଦୁଃଖ ହରଷର ସତ୍ତା ଖୋଜିଲେ ନପାଇ ।
ତାଙ୍କ ଗତି ବୁଝିବାକୁ ବୁଦ୍ଧି ନାହିଁ ମୋର
ତାଙ୍କ କାର୍ଯ୍ୟକ୍ରମ ମୋର କଳ୍ପନା ବାହାର ।
ହିମକାଳ ଆଗମନେ ବୃକ୍ଷଲତାଗଣ
ଶୁଖି କୃଶତା ଲଭନ୍ତି, ଦିଶନ୍ତି ବିବର୍ଣ୍ଣ ।
ସେହିପରି ଦିନୁଦିନ ଶ୍ରୀରାମଙ୍କ ତନୁ
କ୍ଷୀଣ ବିବର୍ଣ୍ଣ ଦିଶଇ, ନଯାଇ ତା ମନୁ ।
ଯେଉଁ ପଦାର୍ଥକୁ ଲୋଭ କରୁଥିଲେ ଆଗେ
ଫୋପାଡ଼ି ଦିଅନ୍ତି ତାକୁ ମନର ବିରାଗେ ।
ବରଷା ବିନ୍ଦୁରେ ଦୋହଲେକି ଗିରିବର
ରାମଚନ୍ଦ୍ର ସେହିପରି ଅଚଳ ଅଟଳ ।
ଯଦି ସେ କଥା କହନ୍ତି, କହନ୍ତି ଏମନ୍ତ''
"ରାଜ୍ୟଭୋଗ ନୁହେଁ ସତ ନୁହେଁ ଏ ଜଗତ ।
ଭ୍ରାତା ନୁହେଁ ସତ, ସତ ନୁହଇଟି ମିତ୍ର
ମୂଢ଼ ଯନ୍‌ବାନ ମିଥ୍ୟା ପଦାର୍ଥ ନିମିତ୍ତ ।
ସତ୍ୟ ସୁଖପ୍ରଦ ଯାକୁ ବୋଲଇ ସଂସାର
ବନ୍ଧନ କାରଣ ତାହା ବୁଝିବ ମୂକର ।
ଯଦି କେହି ରାଜା ଅବା ପଣ୍ଡିତ ଆସନ୍ତି
ପଶୁ ଆଖ୍ୟା ଦେଇ ତାଙ୍କୁ ତାଚ୍ଛଲ୍ୟ କରନ୍ତି ।
କହନ୍ତି ଏ ପଶୁଗଣ ଆଶା ଫାଶେ ବଦ୍ଧ
ବନ୍ଧନ ଅମୃତ ତାଙ୍କୁ ଆହା କି ନିର୍ବୋଧ" !
ଯୋଗ୍ୟ ପଦାର୍ଥ ଦେଖିଲେ କ୍ରୋଧେ ଯାନ୍ତି ଜଳି
ଅଯୋଗ୍ୟ ପଦାର୍ଥମାନ ନିଅନ୍ତି ଆବୋରି ।
ଚାତକ ବୃଷ୍ଟି ନ ଦେଖି ବିଷାଦ ଲଭଇ
ବିଷୟାକୁ ବିଷ ବୋଲି ଶ୍ରୀରାମ ମଣଇ ।
ଅନୁମାନ କରେ ପରଂପଦ ପ୍ରାପ୍ତି ପାଇଁ
ଇଚ୍ଛୁକ ସେ, କିନ୍ତୁ ତାଙ୍କ ମୁଖୁଁ ଶୁଣିନାହିଁ ।
ତିଳେହେଲେ ନାହିଁ ତାଙ୍କ ତ୍ୟାଗ ଅଭିମାନ
କେବେ ଗୀତ ଗାନ୍ତି କେବେ କଥୋପକଥନ ।

"ହାୟ ମୁଁ ଅନାଥ ଖାଲି ବୃଥାରେ ମରୁଛି
ହାୟରେ ମୂଢ଼ ମୁଁ ଭବସାଗରେ ବୁଡ଼ିଛି ।
ଯାହାକି ସଂସାର ସେ ତ ଅନର୍ଥ କାରଣ
ସୁଖଭୋଗ ଆଶା ତହିଁ ମରୀଚିକା ସମ ।
ଉପାୟ କାହିଁ ତହିଁରୁ କିପରି ଉବୁରି
ଆୟୁ-କ୍ଷୟ କରୁଅଛି ଭ୍ରମଜାଲେ ପଡ଼ି" ।
"ଭାବୁଛନ୍ତି ଧନ ଅଟେ ବିପଦ କାରଣ
ପ୍ରାର୍ଥୀଙ୍କୁ ତେଣୁ ତା କରିଦ୍ୟନ୍ତି ବିତରଣ ।
ଧନ ସଦା ଆପଦର ଦ୍ୱିତୀୟ ନିବାସ
ଧନପାଇଁ ତେବେ କିମ୍ପା ପୋଷିବ ପ୍ରୟାସ ।
ଏ ଅଟେ '**ଆପଦ**' ପୁଣି ଏ ଅଟେ '**ବିପଦ**'
ଏ ତ '**ମୋହ**'ର ମହିମା, ଏତ '**ମନ**' ଖେଦ" ।
ଶତ୍ରୁମିତ୍ର ପିତାମାତା ଆତ୍ମା ବା ସମ୍ପତ୍ତି
ଟିକିଏ ମମତା ତାଙ୍କ ନାହିଁ ଏଥିପ୍ରତି ।
କୌଣସି ବିଷୟ ପ୍ରତି ନାହିଁ ତାଙ୍କ ଆଶ
ଦେଖା ନଯାଇ ତାଙ୍କଠିଁ ମମତା ପ୍ରୟାସ ।
ପିତା, ମାତା, ରାଜ୍ୟ ପୁଣି ବନ୍ଧୁ ଓ ବାନ୍ଧବ
ମୋକ୍ଷ ପଥର କଣ୍ଟକ ମଣନ୍ତି ରାଘବ ।
କାହାରି ସହିତ ରାମ ନ କହନ୍ତି କଥା
ସବୁରି ସଙ୍ଗତେ ହସ ବର୍ଜନ୍ତି ସର୍ବଥା ।
ଯଦି ଶୁଣନ୍ତି ଆକାଶେ ଅଛି ଫୁଲବନ
ଫୁଲ ଆଣି ଦେବ କିଏ କହନ୍ତି ଶ୍ରୀରାମ ।
ଭ୍ରମେ ସେ ପଡ଼ିଛି ବୋଲି ବୁଝି ଏ ତାତ୍ପର୍ଯ୍ୟ
କଦାପି ତ ରାମଚନ୍ଦ୍ର ନୁହନ୍ତି ଆଶ୍ଚର୍ଯ୍ୟ ।
କାହିଁରେ ନଥାଇ ତାଙ୍କ ହରଷ ବିଷାଦ
କିଏ ବାଢ଼ି ପାରିବ ସେ ରୋଗକୁ ଔଷଧ ?
ଭୋଗ ବିଳାସ ରାମଙ୍କୁ କେଉଁଠେ ନ ଘାରଇ
ଖାଇବା ପିନ୍ଧିବା ପାଇଁ ଖାତିରି ନଥାଇ ।
ଦେଖା ଚାହାଁ କରିବାକୁ ନଥାଇ ପିପାସା
ବିଷତୁଲ୍ୟ ମଣନ୍ତି ସେ ବୋଲିବାକୁ ଭାଷା ।
କୌଣସି କାର୍ଯ୍ୟ କରଣେ ନାହିଁ ତାଙ୍କ ସ୍ପୃହା
ମରଣ ପାଇଁ କି ସୁଦ୍ଧା ନଥାଇ ପରବା ।
ଯଦି କେହି କହେ ରାମ ତୁମେ ଦୀର୍ଘାୟୁଷ
ଚକ୍ରବର୍ତ୍ତୀ ହେବ ତୁମେ ଜାଣ ରାଜବଂଶ ।
ଶୁଣିଲାକ୍ଷଣି ଏ ଉକ୍ତି କଟୁଲାଗେ ତାଙ୍କୁ
ନିଷ୍ଠୁର ବାଣୀ ଶୁଣନ୍ତି ଫାଟିବ କି ବୁକୁ ?

ନ ବୁଝ କେବଳ ରାମ, ଗ୍ରସ୍ତ ଏ ବ୍ୟାଧିରେ
ଲକ୍ଷ୍ମଣ ଶତ୍ରୁଘ୍ନଙ୍କୁ ବି ଏହି ବ୍ୟାଧି ଘାରେ ।
ଏମନ୍ତ କେ ବୈଦ୍ୟ ଅଛି ଏ ସାରା ସଂସାରେ
କୁମାରଙ୍କ ରୋଗ ଭଲ କରିବ ସତ୍ୱରେ ।
ନୋହିଲେ ମହା ବିପଦ ଆସୁଅଛି ମାଡ଼ି
ଡେରିହେଲେ ସର୍ବେ ଥିବ ପଡ଼ି ମୁହଁ ମାଡ଼ି ।
ରାମଙ୍କୁ ଘାରିଛି ସବୁ ବସ୍ତୁରେ ବିତୃଷ୍ଣା
ବସନ ଖଣ୍ଡିକ ବିନା ନାହିଁ ଅନ୍ୟ ତୃଷ୍ଣା ।
ଉପାୟକରି ନିବୃତ୍ତି ଆଣ ତାହାଙ୍କର
ବେଳ ଗଡ଼ିଗଲେ ଭାବୁଥିବ ନରବର'' ।
କହନ୍ତି ଯେ ଗାଧିସୁତ ଶୁଣି ଏ ବଚନ
'ତାହାହେଲେ ଶ୍ରୀରାମଙ୍କୁ ମୋ ପାଶକୁ ଆଣ ।
ତାଙ୍କର ଦୁଃଖ ବିନାଶ କରିବଇଁ ମୁହିଁ
ବିପତ୍ତି ବା କ୍ରୋଧବଶେ ଏହି ଦଶା ନୋହି ।
ରୋଗକୁ ମହାଔଷଧି ମୋତେ ଏକା ଜଣା
ରୋଗ ବିନାଶ ଦେଖିଣ ସର୍ବେ ହେବ ବଶା ।
ରୋଗର ନିଦାନ ଏବେ କହୁଅଛି ଶୁଣ
ବିବେକ, ବୈରାଗ୍ୟ ଦୁହେଁ ରୋଗର କାରଣ ।
ବିବେକ ବୈରାଗ୍ୟ ରୋଗ ଯାକୁ କରେ ଗ୍ରାସ
ଜାଗତିକ ବସ୍ତୁମାନ ଉଡାନ୍ତି ତା ହୋସ ।
**ମହାଫଳ ବୋଧ** ଏହି ରୋଗର ଲକ୍ଷଣ
ତତ୍ତ୍ୱଜ୍ଞାନ ଲାଭର ଏ ପୂର୍ବାଭାସ ଜାଣ ।
**ପରମାନନ୍ଦ** ପଦ ତ ଲାଭ କରିନାହିଁ
ପରମାନନ୍ଦ ଲାଭର ପୂର୍ବାଭାସ ଏହି ।
ଯୁକ୍ତିବଳେ ଯେବେ ତାଙ୍କ ଅନ୍ତରସ୍ଥ ମୋହ
ଘୁଞ୍ଚିପାରେ, ମୋପରି ସେ ହେବେ ନିଃସନ୍ଦେହ
ଯେବେଟି ପରମପଦ ହେବ ତାଙ୍କ ଲାଭ
ତେବେ ଯାଇଁ ଏହି ରୋଗ ଉପଶମ ହେବ ।
ଅମୃତ-ପାନର ଲାଭ ଏମାନେଟି ଜାଣ
ସତ୍ୟ, ପ୍ରଜ୍ଞା, ଶାନ୍ତି, ପୁଷ୍ଟି ଆଲୋଡ଼ନ୍ତି ମନ ।
ମୁଦିତା, ତାପ-ଶୂନ୍ୟତା, ରୂପଲାବନ୍ୟତା
ଜାଗ୍ରତ କରାଇ ଦ୍ୟନ୍ତି ଜୀବ ଅନ୍ତଃସତ୍ତା ।
ମୋଠାରୁ ଯେବେ ରାଘବ ଶୁଣେ ମୋକ୍ଷ ବାଣୀ
ସୁଖ ଦୁଃଖରୁ ଅତୀତ ହେବ ତତକ୍ଷଣି ।
ଲୋଷ୍ଟ୍ର, କାଞ୍ଚନ ସମାନ, ବୁଝିବ ତା ମନ
ଶ୍ରେଷ୍ଠ ତତ୍ତ୍ୱ ଜ୍ଞାନରେ ସେ ହୋଇବ ନିପୁଣ ।

ଉତ୍କୃଷ୍ଟ ପରା-ବିଦ୍ୟାରେ ହେବ ମହାଜ୍ଞାନୀ
ମହା ସତ୍ୟ ସାଧନରେ ହେବ ସେ ଅଗ୍ରଣୀ ।
ଧନ୍ୟ ଧନ୍ୟ ତୁମ୍ଭେ ଆହେ ରାଜା ଦଶରଥ
ଯାର ସନ୍ତାନ ବିବେକ-ବଇରାଗ୍ୟ ପ୍ରାପ୍ତ ।
ତୁମ ପୁତ୍ରକୁ ପରମ ପଦ ଦିଆଇବି
ସକଳ କଷଣ ତାର ମେଣ୍ଟଣ କରିବି ।
ବଶିଷ୍ଠାଦି ସହ ମୁହିଁ ଯୁକ୍ତିଏ ବାଢ଼ିବି
ଆତ୍ମପଦ-ବସ୍ତୁ ଆଣି ରାମ ହସ୍ତେ ଦେବି ।
କ୍ଷତ୍ରିୟକୂଳ, କୌଳିକ ଆଚର ବେଭାର
ଦେଖାଇଣ ତୁମ୍ଭ ପୁତ୍ର ହେବେ କ୍ଷତ୍ରୀବର ।
ହୃଦୟେ ଉଦାସଭାବ କରିବେ ବାରଣ
ତୁମର କୁଳ କୃତାର୍ଥ କରିବେ ଶ୍ରୀରାମ ।
ହେ ରାଜନ ଏବେ ଶୀଘ୍ର ରାମକୁ ଅଣାଅ
ଅଲୌକିକ କୀର୍ତ୍ତି ଜଗତରେ ରଖିଯାଅ ।
କହନ୍ତି ବାଲ୍ମୀକି ମୁନି ଶୁଣ ଭରଦ୍ୱାଜ
ମୁନୀନ୍ଦ୍ର ବଚନ ଶୁଣି ଦଶରଥରାଜ ।
ଭୃତ୍ୟକୁ ଆଦେଶ ଦେଲେ ବେଗକରି ଚଳ
ରାମ, ଲକ୍ଷ୍ମଣ, ଶତୃଘ୍ନ ସଙ୍ଗେ ଘେନି ଫେର ।
ଭୃତ୍ୟଙ୍କ ବଚନେ ରାମଚନ୍ଦ୍ର ବିଜେ କଲେ
ଲକ୍ଷ୍ମଣ, ଶତୃଘ୍ନ ଦୁହେଁ ସଙ୍ଗତରେ ଥିଲେ ।
ଦେଖନ୍ତି ବଶିଷ୍ଠ, ବିଶ୍ୱାମିତ୍ର, ରାଜଶିରେ
ଚାମର ଢଳାଯାଉଛି ଅତି ଚମତ୍କାରେ ।
ବିଖ୍ୟାତ ମଣ୍ଡଳେଶ୍ୱରମାନେ ବସିଛନ୍ତି
ରାମ ଝଡ଼ିଯିବା ଦେଖି ବିଷାଦ ଲଭନ୍ତି ।
ଶିବ କାର୍ତ୍ତିକଙ୍କୁ ଦେଖି ଯେପରି ପ୍ରସନ୍ନ
ରାମେ ଦେଖି ଦଶରଥ ତଥା ତୋଷ ମନ ।
ପିତା ପାଦେ ରାମଚନ୍ଦ୍ର କଲେକ ପ୍ରଣାମ
ମୁନିମାନଙ୍କ ଚରଣ କରନ୍ତି ବନ୍ଦନ ।
ରାମଙ୍କୁ ମଣ୍ଡଳେଶ୍ୱରମାନେ ଓଲଗନ୍ତି
ଶ୍ରୀରାମ ଦର୍ଶନେ ଆତ୍ମ-ପ୍ରତିଷ୍ଠା ଲଭନ୍ତି ।
ପୁତ୍ରକୁ କୋଳେ ବସାଇ ଦଶରଥ ରାଣ
ଶିରେ ଚୁମ୍ବଦେଇ କହନ୍ତିରେ ପୁତ୍ର ଶୁଣ ।
ବିରକ୍ତି ଦେଇପାରେକି କେଉଁ ପରଂପଦ
ଗୁରୁଦେବଙ୍କ ଆଶିଷ, ଯୁକ୍ତି ତୋ ସମ୍ପଦ ।
ବଶିଷ୍ଠ ଦ୍ୟନ୍ତି ଆଶିଷ ଶ୍ରୀରାମଚନ୍ଦ୍ରଙ୍କୁ
ଶୁଣ ତୁ ଯେଣୁ ଜିଣିଛୁ ବିଷୟା ଶତ୍ରୁଙ୍କୁ ।
କହୁଛନ୍ତି ଗାଧିସୁତ ଶୁଣ ରଘୁବୀର
ଅନ୍ତଃକରଣ ଚପଲ୍ୟ ତେଜ ହେ ସତ୍ୱର ।
ଯା କିଛି ସନ୍ଦେହମାନ ଜାତ ତୁମ ମନ
ସେ ସକଳ ଖୋଲିକରି କରହେ ବର୍ଣ୍ଣନ ।
କି କାରଣେ ମୋହ ତୋତେ ଗ୍ରାସିଛିରେ ପୁତ୍ର
ସେ 'ମୋହ'ର ମାତ୍ରା କେତେ କହ ମୋ ଅଗ୍ରତ ।
ଯାହା କି ତୋ ମନେ ବାଞ୍ଛା କର ତୁ ପ୍ରକାଶ
ତୋ ଇଚ୍ଛାମାନ ପୂରଣ କରିବି ଅବଶ୍ୟ ।
ସେହି ପଦ ପରାପତ କରାଇବି ତୋତେ
ଦୁଃଖ ଶୋକ ନ ଭୋଗିବୁ ବାବୁ କଦାଚିତେ ।
ଆକାଶକୁ କେଉଁ ମୂଷା କାଟିକି ପାରିବ
ସେହିପରି ତୋତେ କିଛି ପୀଡ଼ା ନ ଲାଗିବ ।
ସକଳ ସଂସାର ଦୁଃଖ ହେବ ତୋ ମୋଚନ
ବିନା ସଂଶୟେ ତୋ ଇଚ୍ଛା କର ତୁ ବର୍ଣ୍ଣନ ।
ବାଲ୍ମୀକି କହନ୍ତି ଶୁଣ ମୁନି ଭରଦ୍ୱାଜ
ବିଶ୍ୱାମିତ୍ର ବାକ୍ୟେ ବଢ଼ିଗଲା ରାମ ତେଜ ।
ମେଘ ଦେଖି କେକୀ ମନ ହୁଅଇ ପ୍ରସନ୍ନ
ରାମ ମନ ବିଶ୍ୱାମିତ୍ର କଲେ ଆଲୋଡ଼ନ ।
ଅନ୍ତଃକରଣେ ନିଶ୍ଚିତ କଲେକ ଶ୍ରୀରାମ
ଅଭିଷ୍ଟ ପଦ ପ୍ରାପ୍ତ ମୋ ଧ୍ରୁବ ବୋଲି ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ରାମ-ସମାଜ ବର୍ଣ୍ଣନେ**
**ନାମ ୬ଷ୍ଠ ସର୍ଗଃ ।**



## ୭ମ ସର୍ଗଃ
## ଶ୍ରୀରାମଙ୍କ ବୈରାଗ୍ୟ

କହନ୍ତି ଶ୍ରୀରାମ ଆଜ୍ଞା ତୁମ୍ଭ ସମ୍ମୁଖରେ
ବର୍ଣ୍ଣନ କରୁଛି ଇଚ୍ଛା ହୃଦ ଆବେଗରେ ।
ଦଶରଥ ରାଜାଘରେ ହେଲି ମୁଁ ଜନମ
ସ୍ନେହରେ ସେ କଲେ ମୋର ପାଳନ ପୋଷଣ ।
ଚାରିବେଦ ପାଠକରି ବ୍ରହ୍ମଚର୍ଯ୍ୟ ବ୍ରତ
ପାଳନ କଲଇଁ ଶୁଣ ଆହେ ଗାଧିସୁତ ।
ଗୃହେ ଫେରି ତୀର୍ଥାଟନେ ହେଲା ମୋର ଇଚ୍ଛା
ଦେବାଦେବୀ ଦରଶନେ ବଢ଼ିଲା ମୋ ବାଞ୍ଛା ।
ପିତୃ ଆଜ୍ଞା ପାଇ ମୁହିଁ କଲି ତୀର୍ଥାଟନ
ଗଙ୍ଗାଦି ସକଳ ତୀର୍ଥେ କଲି ସ୍ନାନ ଦାନ ।

ଶାଳଗ୍ରାମ, କେଦାରାଦି ଦରଶନ ସାରି
ବାହୁଡ଼ି ଆସିଲି ଗୃହେ ହୃଦବୋଧ କରି ।
ତଦପରେ ଉତ୍ସାହ ମୋ ଜନମଇ ମନ
ଆହ୍ନିକାଦି କ୍ରିୟା ଆଚରିବି ପ୍ରତିଦିନ ।
ପ୍ରାତଃସ୍ନାନ ଜପ, ତପ, ସନ୍ଧ୍ୟାଆଦି ସାରି
ଭୋଜନ ଅନ୍ତେ ମୁଁ ବସେ ଚିତ୍ତ ସ୍ଥିରକରି ।
ଏହିମନ୍ତେ କିଛିଦିନ ହୋଇଯାନ୍ତେ ଗତ
ମୋ ମନେ ଭାବନା ଏକ ହୁଏ ଆସି ଜାତ ।
ସଂସାର ଅସାର ବୋଲି ଆସଇ ମୋ ମନ
ସେହି ଚିନ୍ତା ହୃଦ ମୋର କଲାକ ଦହନ ।
ନଦୀତଟେ ଥାଏ ଯେଉଁ ତୃଣ, ଗଛ ପତ୍ର
ଭସାଇ ନିଅଇ ତାକୁ ବନ୍ୟା ଖରସ୍ରୋତ ।
ମୋ ହୃଦୟେ ଆଶା-ରୂପୀ ଯେଉଁ ବୃକ୍ଷ ଥିଲା
ବିଚାର-ରୂପୀ ପ୍ରବାହ ତାକୁ ତାଡ଼ି ନେଲା ।
ଏଣୁ ମୁଁ ଭାବଇ ରାଜ୍ୟଭୋଗ ବା ଜଗତ
ଏସବୁ କେବଳ ସିନା ଅଟେ ଭ୍ରମ ମାତ୍ର ।
ଅବିବେକୀ ଜନ ସିନା ଏ ବାସନା ପୋଷି
ଭ୍ରମ ଜାଲେ ପଡ଼ି ସଦା ଦେଉଥାଏ ପେଶୀ ।
କି ଜଗତ, କି ସ୍ଥାବର କି ଜଙ୍ଗମ ଜାଣ
ଏ ସକଳ ମିଥ୍ୟା ସିନା ମରୀଚିକା ସମ ।
ହେ ମୁନେ ଦେଖୁଛି ଯେତେ ପଦାର୍ଥ ଜଗତେ
କେବଳ ମନରୁ ଜାତ ହୁଅନ୍ତି ସମସ୍ତେ ।
ଅତଏବ ମନ ଅଟେ ଭ୍ରମର ଆଧାର
ଅନହୋତା ମନ ତେଣୁ ଦୁଃଖର ଭଣ୍ଡାର ।
ଯେ ସୁଖକୁ ସତମଣି ଧାଇଁଯାଏ ମନ
ସେ ସଂସାର ସୁଖ ମୃଗତୃଷ୍ଣାର ସମାନ ।
ଭ୍ରମେ ଜନ ମୃଗ-ମରୀଚିକା ପଛେ ଧାଏଁ
ଧାଇଁ ଧାଇଁ କ୍ଳାନ୍ତିବଶ ତଳେ ପଡ଼ିଯାଏ ।
ଆଶାରେ ତା ଜଳ-ଆଶା ପରିଣତ ହୁଏ
ହା ହା ବୋଲି ହତାଶରେ ତଳେ ପଡ଼ିରହେ ।
ନିର୍ବୋଧ ପ୍ରାଣୀ ବସ୍ତୁକୁ ସୁଧାଧାର ମଣି
ନାନା ଯତ୍ନକରି ଧନ୍ଦି ହେଉଥାଏ ପୁଣି ।
ଶାନ୍ତି ବୋଲି ଯାହା, ତାହା ଶୂନ୍ୟଠାରୁ ଶୂନ୍ୟ
ଶେଷେ ବୁଝେ ତୋଳୁଥିଲା ଆକାଶ-କୁସୁମ ।
ଇନ୍ଦ୍ରିୟ ଭୋଗ ଅଟଇ ସର୍ପର ସମାନ
ଯାହାଘେନି ଲାଗିରହେ ଜୀବନ ମରଣ ।

ମରିବା ପାଇଁ ପ୍ରାଣୀଏ ଲଭନ୍ତି ଜନମ
ଜନମ ଲଭନ୍ତି ପୁଣି ମରିବା କାରଣ ।
ଭୋଗ, ଜଗତ, ସକଳ ଭ୍ରମମାତ୍ର ଜାଣ
ମହାମୂର୍ଖ ସେହି ଯେହୁ ଏହାଙ୍କ ଅଧୀନ ।
ଏହାଙ୍କର ଆଗମନ ଓ ପ୍ରତିଗମନ
ସାର ବୋଲି ବସ୍ତୁ ତହିଁ ନାହିଁ କିଛି ଆନ ।
ଯାହାର ବିନାଶ ନାହିଁ ଆବର ଯେ ନିତ୍ୟ
ଉଦ୍ଦେଶ୍ୟ ରଖିବ ତାହା ଯେସନ ପ୍ରାପତ ।
ତେଣୁ ଭୋଗର ବାସନା ବିନାଶିଛି ମୁହିଁ
ଯୁକ୍ତିଯୁକ୍ତ ନୁହଇକି କହ ମୁନି ସାଇଁ ?
ସମ୍ପଦ ସମ୍ପନ୍ନ ଯେତେ ପଦାର୍ଥ ଅଛଇ
ଆପଦ ସଦ୍ମ ସେସବୁ ବୁଝିବା ଗୋସାଇଁ ।
ତିଳେ ମାତ୍ର ସୁଖ ତହିଁ ନାହିଁ ହେ ମୁନିନ୍ଦ୍ର
ବୃଥା ଭ୍ରମି ଜୀବ ମଣୁଥାଏ ନିଜେ ଇନ୍ଦ୍ର ।
ସମ୍ପଦ ବିୟୋଗେ ମନ କାହିଁ ନଲାଗଇ
କଣ୍ଟାଫୋଡ଼ି ହେଲାପରି ଛଟପଟ ହୋଇ ।
ଇନ୍ଦ୍ରିୟ ଉପଭୋଗରେ ନିଶା ଘାରିଥାଏ
ରୋଷ ବିଦ୍ୱେଷରେ ଜୀବ ଜଳି ପୋଡ଼ିଯାଏ ।
ସମ୍ପଦ ଅଭାବେ ଜୀବ ତୃଷ୍ଣାଗ୍ରସ୍ତ ହୋଇ
ଛଟପଟ ହେଉଥାଏ ଲୋଭାଗ୍ନିରେ ଦହି ।
ସଂସାର ମର୍ତ୍ତରେ ଯାହା ଭୋଗର କାରଣ
ମୁଁ ଜାଣେ ତାହା କେବଳ ଦୁଃଖର ବରଣ ।
ଶିଳାରେ ଛିଦ୍ର ଯେପରି ରହି ନପାରଇ
ଭୋଗରୂପୀ ଶିଳା ମଧ୍ୟେ ସୁଖଛିଦ୍ର କାହିଁ ?
ବିଷୟ ତୃଷ୍ଣାରେ ମୁହିଁ ବହୁ ଦୀର୍ଘକାଳୁ
ଜଳି ପୋଡ଼ି ମରୁଅଛି ଆହେ ଜ୍ଞାନ ମେରୁ ।
କଞ୍ଚା ଗଛେ ନିଆଁ ଲାଗି ଧୂଆଁ ହେଲାପରି
ଭୋଗାଗ୍ନିରେ ମନ ଦଗ୍ଧ ହୁଅଇ ସେପରି ।
ଧନ ସମ୍ପଦରେ ସୁଖ ନାହିଁ ଲେଶ ମାତ୍ର
ଖାଲି ତା, ଦୁଃଖ ସାଗର ବୁଝନ୍ତି ପଣ୍ଡିତ ।
ଖାଇପରେ ତୃଣ ଆଚ୍ଛାଦିତ ହୋଇଥାଇ
ଅଜ୍ଞାତରେ ପଡ଼ି ମୃଗ ବର୍ତ୍ତି ନପାରଇ ।
ତେସନ ଭୋଗକୁ ସୁଖ ମଣି ଅପଣ୍ଡିତ
ବିଷୟାରେ ରତ ଥାଇ ହୁଏ ଜୀବନ୍ମୃତ ।
ଜନ୍ମଜନ୍ମାନ୍ତରରୂପୀ ଖାଲରେ ସେ ପଡ଼ି
ଦୁଃଖ ଭୋଗ କରୁଥାଏ ନପାରେ ଉବୁରି ।

ଅଜ୍ଞାନ ନିଶାରେ ଭୋଗରୂପୀ ଚୋର ବୁଲି
ଆତ୍ମାଧନକୁ ସତତ ନେଉଥାଏ ହରି ।
ଭୋଗ ଶେଷେ ଦୁଃଖ ଆସି ଘାରେ ତାର ମନ
ଭୋଗହିଁ ଜାଣିବା ସଦା ଦୁଃଖର କାରଣ ।
ଶାନ୍ତି ବିନା ଜୀବ ବୁଲେ ହାହାକାର କରି
କହୁଣୀଯାଏ ତ ଗୁଡ଼ ଯାଇଅଛି ଗଡ଼ି ।
ଜୀବ ଅଭିମାନ କରେ ଶରୀରକୁ ନେଇ
ଦେହ ଅସାର, ନଶ୍ୱର, ତର୍କ ପାରେନାହିଁ ।
ଦୈହିକ ଭୋଗ ଶୁଖିଲା ବାଂଶ କଣାପରି
ବାୟୁ ଯିବା ଆସିବାରେ ଶବ୍ଦମାତ୍ର ତୋଳି ।
ଅର୍ଥ ଅନର୍ଥ କାରଣ ଧ୍ରୁବ ଏ ବଚନ
ଉଭେଇ ଯାଆନ୍ତି ସବୁ ସଦଗୁଣମାନ ।
**ଉଦାରତା, କୋମଳତା, ବୈରାଗ୍ୟ, ବିଚାର**
**ଶୀଳତା, ସନ୍ତୋଷ, ଧର୍ମ ହୁଅନ୍ତି ଅନ୍ତର ।**
ସୁଖ ଛାଡ଼ି ଦୁଃଖ ଆସି ବସିଯାଏ ଘେରି
ହା ହତୋସ୍ମି ହୋଇ ଜୀବ ଛାଡ଼ଇ ବୋବାଳି ।
ଏଣୁ ମୁଁ ଏ ଭୋଗ ଇଚ୍ଛା କରିଛି ବର୍ଜନ
ମୋର ମନକଥା ଦେବ କଲି ନିବେଦନ ।
ଯେତେକାଳଯାଏ ଲକ୍ଷ୍ମୀ ଅପ୍ରାପ୍ତ ରହଇ
ତୃଷ୍ଣାଗ୍ରସ୍ତ ହୋଇ ଜୀବ ଘାରି ହେଉଥାଇ ।
ଲକ୍ଷ୍ମୀ ଆସନ୍ତେ ସକଳ ଗୁଣ ନାଶଯାନ୍ତି
ସବୁ ସଦଗୁଣମାନ ବିନାଶ ଲଭନ୍ତି ।
ଲକ୍ଷ୍ମୀ ନଆସିଲାଯାଏ କୋମଳ ବଚନ
ଲକ୍ଷ୍ମୀ ପ୍ରାପ୍ତିରେ କଠୋର ହୁଏ ତା କଥନ ।
ଧନ ସମ୍ପଦ ଅଟଇ ବିପଦର ମୂଳ
ତା ଅଭାବେ ଦୁଃଖ ବଢ଼େ ଯଥା ଦାବାନଳ ।
ଜଳତରଙ୍ଗ, ବିଜୁଳିପରି କ୍ଷଣସ୍ଥାୟୀ
ଚଞ୍ଚଳା, ଚଞ୍ଚଳା ଜାଣ ଆହେ ତପୀସାଇଁ ।
ସ୍ପର୍ଶ କରିନାହିଁ ସର୍ପ ଦୁଗ୍ଧ ଯେ ପର୍ଯ୍ୟନ୍ତ
ଅକ୍ଷୁଣ୍ଣ ରହେ ମିଷ୍ଟତା ତାର ସେ ପର୍ଯ୍ୟନ୍ତ ।
ସାପ ମୁହଁ ମାରିଦେଲେ ଦୁଧ ହୁଏ ବିଷ
ଭୋଗ ତୃଷ୍ଣା ସମ୍ପଦକୁ କରିଦିଏ ବିଷ ।
ବିଚିତ୍ର ରଙ୍ଗେ ରଞ୍ଜିତ ଇନ୍ଦ୍ରଧନୁ ସମ
କ୍ଷଣସ୍ଥାୟୀ, ଲକ୍ଷ୍ମୀ ହରେ ମାନବଙ୍କ ମନ ।
**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ଶ୍ରୀରାମଙ୍କ ବୈରାଗ୍ୟ କଥନେ**
**ନାମ ୭ମ ସର୍ଗଃ ।**



## ଅଷ୍ଟମ ସର୍ଗଃ

## ଲକ୍ଷ୍ମୀ ନୈରାଶ୍ୟ

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିଶ୍ୱର
ମହାଲକ୍ଷ୍ମୀ ଦେଖିବାକୁ ମନ ମୁଗ୍ଧକର ।
ଧନ ପ୍ରାପ୍ତିରେ ସୁଗୁଣମାନ ଯାନ୍ତି ନାଶ
ତାଳପତ୍ର ମେଲି ଅବଗୁଣଙ୍କ ବିକାଶ ।
ଦେଖିବାକୁ ବିଷଫଳ କେଡ଼େ ମନୋହର
ପରଶ କରନ୍ତେ ମୃତ୍ୟୁ ହେବାଟି ମୁକର ।
ଲକ୍ଷ୍ମୀପ୍ରାପ୍ତି ହେଲେ ଜୀବ ଆତ୍ମପଦଠାରୁ
ବହୁଦୂରେ ରହିଯାଏ, ଭାଙ୍ଗେ ହାଡ଼ ମେରୁ ।
ଲକ୍ଷ୍ମୀସ୍ଥିରା ବୋଲି ସିନା ମଣେ ମୂଢ଼ଜନ
ଧନ ଅଚିର, ଅଶ୍ରେଷ୍ଠ, ଧ୍ରୁବ ଏ ବଚନ ।
ଅର୍ଥ ଅନର୍ଥର ମୂଳ "ମୋହ"ର କାରଣ
ବିପଥରେ ଗମି ଜୀବ ହୁଏ ହତଜ୍ଞାନ ।
ଯେପରି ବର୍ଷା କାଳରେ ବଢ଼େ ସ୍ରୋତସ୍ୱତୀ
ଅନ୍ୟ ନଦୀ ସହ ମିଶି ହୁଏ ବଳବତୀ ।
ଆତଙ୍କ ଜନ୍ମାଇ ପୁଣି ନିଏ ଗ୍ରାମ ଧୋଇ
ଲକ୍ଷ୍ମୀ ବୃଦ୍ଧିରେ ଅବାଟମାନ ଖୋଲିଯାଇ ।
ମହା ବିପଦ ତରଙ୍ଗ ମଧ୍ୟେ ଦିଏ ପେଲି
ସାମର୍ଥ୍ୟ ହରାଇ ଜୀବ ଡାକେ ମଲି ମଲି ।
ପୋତାଧନ ଘରେଅଛି ବୋଲି ଭାବେ ଜୀବ
ଖୋଳି ନ କାଢ଼ିବାଯାଏ ଶାନ୍ତି କି ସମ୍ଭବ ?
ଅଜ୍ଞାନ ଆବୋରିଅଛି ସଦା ଜୀବ ଚିତ୍ତ
ତହିଁରେ ଜ୍ଞାନ ପ୍ରଦୀପ ଉଇଁବା ପର୍ଯ୍ୟନ୍ତ ।
ଅଶାନ୍ତି ବହ୍ନିରେ ସଦା ହେଉଥାଏ ଦହି
ଦୂରରୁ ସୁଦୂରତର ମୁକ୍ତି ତାଙ୍କ ପାଇଁ ।
**ଜ୍ଞାନୀଏ କହନ୍ତି ଶାନ୍ତି ଆତ୍ମାର ଆନନ୍ଦ**
**ଆତ୍ମାନନ୍ଦ ପାଇଁ ଧନ ଘଟାଏ ପ୍ରମାଦ ।**
ଧନ ପ୍ରାପତିରେ ଜୀବ ହୋଇଯାଏ ଅନ୍ଧ
ବିଚାରହୀନ, ନ ଜାଣେ କିଛି ଭଲ ମନ୍ଦ ।
ଦୀପ ଜାଳିଲେ ଆଲୋକ କରେ ବିତରଣ
ଲିଭିଗଲେ ଘର ହୁଏ ଅନ୍ଧକାରାଚ୍ଛନ୍ନ
ପ୍ରକାଶ ଯାଇ କାଳିମା ମାତ୍ର ଯାଏ ରହି
ଧନଗଲେ ତୃଷ୍ଣାରୂପୀ ବାସନା ରହଇ ।

ସେ ତୃଷ୍ଣା ଅନେକ ଜନ୍ମ ମରଣ ଘଟାଏ
ତେବେ ଆଉ ଶାନ୍ତିଧନ ଦେଲା ପୁଣି କିଏ ?
ଶାନ୍ତି-ଜାତ ଗୁଣମାନ ବିନଷ୍ଟ ହୁଅନ୍ତି
ପବନ ବହିଲେ ଯଥା ମେଘେ ଉଡ଼ିଯାନ୍ତି ।
ଧନହେଲେ ଜନମନ୍ତି ଅବଗୁଣମାନ
ମନରେ ଗର୍ବ ଉପୁଜି ଜୀବ ହୀନିମାନ ।
ଶୂରବୀର ହୋଇ ଯେହୁ ଗର୍ବ ନ ଦେଖାଇ
ନିଜର ପ୍ରଶଂସା ନିଜେ ଗାଇ ନ ବୁଲଇ ।
ଦୁର୍ଲଭ ସେପରି ଜନ ରଚଇ ଜଗତ
ଧନ୍ୟ ସେହି ପିତା ମାତା ଯାହାର ସେ ପୁତ୍ର ।
ସାମର୍ଥ୍ୟବାନ, କାହାକୁ ଅବଜ୍ଞା ନକରେ
ସମବୁଦ୍ଧି ପ୍ରକାଶଇ ସର୍ବଜନଠାରେ ।
ଧନୀ ହୋଇ ସଦଗୁଣମାନ ଥାଇ ଯାର
ଦୁର୍ଲଭ ସେ ଜନ ବୋଲି ବୋଲଇ ସଂସାର ।
ତୃଷ୍ଣା ସର୍ପର ଗରଳ ବୃଦ୍ଧିପାଇଁ ଜାଣ
ଧନରୂପୀ ଦୁଗ୍ଧ ତହିଁ ହୁଅଇ କାରଣ ।
ଧନରୂପୀ ଦୁଗ୍ଧ ଯେବେ ପାନକରେ ଜୀବ
ପବନ ସ୍ୱରୂପ ଭୋଗ-ତୃପତି ଲଭିବ ।
ବାସନାକୁ ଜାଣ ମହା ମୋହରୂପ କରୀ
ଲକ୍ଷ୍ମୀରୂପୀ ଉପବନ ତା ବିହାରସ୍ଥଳୀ ।
ବାସନାଟି ଜାଣ ମତ୍ତ ହସ୍ତିର ସମାନ
ଧନ ଦୌଲତ ଅଟେ ତା ବିହାରର ସ୍ଥାନ ।
ସୂର୍ଯ୍ୟ କିରଣେ କମଳ ଫୁଟି ରହିଥାଏ
ରଜନୀ ଆଗମେ ଦୁଃଖେ ମୁଦି ହୋଇଯାଏ ।
ଧନରୂପୀ ରଜନୀର ହେଲେ ଆଗମନ
ସଦ୍‌ଗୁଣ ରୂପୀ କମଳ ହୋଇଯାଏ ମ୍ଳାନ ।
ଚନ୍ଦ୍ରମା ଉଦୟ ଦେଖି ହସେ କୁମୁଦିନୀ
ଧନାଗମେ ଭୋଗବାଞ୍ଛା ଉଲ୍ଲସେ ଉଜାଣୀ ।
ଶିଶିର ପରଶେ ଯଥା କମଳ ବିନାଶ
ଧନ ଆଗମେ ବୈରାଗ୍ୟ-ସମ୍ପଦର ନାଶ ।
ସିଂଘୀକା ନନ୍ଦନ ଯଥା ଗ୍ରାସଇ ଚନ୍ଦ୍ରମା
ସଂପଦ୍ର ରାହୁ ଗ୍ରାସଇ ବିବେକ-ଚନ୍ଦ୍ରମା ।
ମୋହରୂପୀ ପେଚା ଦେଖି ସଂପଦ-ରଜନୀ
ମନଫୁଲା ଗୀତ ଗାଏ କେ ପାରିବ ବର୍ଣ୍ଣି ।
ଦୁଃଖ ବିଜୁଳି ଚମକେ ଧନ ଗଗନରେ
ବିବେକ ଆଲୋକ ନାଶ ଅଜ୍ଞାନ ତିମିରେ ।

ତୃଷ୍ଣାରୂପୀ ବୃକ୍ଷ ପ୍ରତି ଧନ ଅଟେ ମେଘ
ଶାଖା ପ୍ରଶାଖା ମେଲାଇ ସାଧେ ଅପବର୍ଗ ।
ତୃଷ୍ଣା ସୋତସ୍ୱତୀ, ଧନ ଅଟେ ତା ସାଗର
ସେ ସାଗର ସଙ୍ଗମକୁ ଧାଏଁ ଅବିରଳ ।
ଧନ କମଳିନୀ ପାଇଁ ଏ ତୃଷ୍ଣା ଭ୍ରମର
ଧନ-ମଧୁପଛେ ତୃଷ୍ଣା ଧାଏଁ ନିରନ୍ତର ।
ଦୁଃଖରୂପୀ ଜଳ ରହେ ଧନ କଳସରେ
ନଜାଣିବା ପଣେ ଜୀବ ପଡ଼େ ଭ୍ରମଜଳେ ।
ଖଣ୍ଡାଧାର ଦେଖିବାକୁ ଦିଶଇ ସୁନ୍ଦର
ପରଶ କରିବା ମାତ୍ରେ ନାଶେ କଳେବର ।
ବିଚାରରୂପୀ ମେଘର ବିନାଶ ନିମିତ୍ତ
ଧନରୂପୀ ବାୟୁ ସଦା ହୁଏ ପ୍ରବାହିତ ।
ଚିନ୍ତା, ବିଷୟ, ଉଭୟେ ଧନର ଦୁହିତା
ଧନ ଅଭାବେ ତାଙ୍କର ନରହଇ ସତ୍ତା ।
ନଦୀ ଜଳରୁ ଅସଂଖ୍ୟ ତରଙ୍ଗ ଜନମି
ବାୟୁ ହିଲ୍ଲୋଳେ ବର୍ଦ୍ଧିତ ହୋଇଥାଏ ପୁଣି ।
ବିଷୟ-ଧନରୁ ବହୁ ଚିନ୍ତା ଜନମିଣ
ନାନା ଦୁଃଖେଷ୍ଟାରେ ବୃଦ୍ଧିପାଏ ତାହା ଜାଣ ।
ନିଆଁମାଡ଼ି ପାଦଜ୍ୱାଳା ଭୋଗେ ଅଭାଗିନୀ
କାହିଁ ସ୍ଥିର ନୋହି ବୁଲେ ଯଥା ପାଗଳିନୀ ।
ବିଷୟା-ସ୍ତ୍ରୀ ସେହିପରି ଦୁରାଚାରୀ ହସ୍ତେ
ସ୍ଥିର ହୋଇ ରହି ନପାରଇ କଦାଚିତେ ।
ଦଣ୍ଡେ ହେଲେ ସ୍ଥିର ହୋଇ ନପାରଇ ରହି
ଅବ୍ୟବସ୍ଥିତ ହେତୁରୁ କ୍ରମେ କ୍ଷୟଯାଇ ।
ଦୀପଶିଖା ଏକ ସ୍ଥାନେ ଜଳେ ଯେବେ ସ୍ଥିରେ
କଳାପକାଇ ସ୍ଥାନକୁ କାଳିଆ ସେ କରେ ।
ଐଶ୍ୱର୍ଯ୍ୟ ରମଣୀ ଯାକୁ ଆଶ୍ରୟ କରଇ
ସନ୍ତାପ ଦେଇ ତା ହୃଦେ କଳୁଷ ଲଗାଇ ।
ରାଜାମାନେ ପାତ୍ରାପାତ୍ର ବିଚାର ନକରି
ପାଶ ଲୋକଠାରେ ସବୁ ନ୍ୟସ୍ତ କଲାପରି ।
ମୂଢ଼ ନର ଗୁଣାଗୁଣ ବିଚାର ନକରି
ଅଧାର୍ମିକ ହସ୍ତେ ଧନ ଦେଉଥାଏ ପେଲି ।
ଅନାଚାରୀ ଦୁରାଚାରୀ ସେ ଧନ ନିଅନ୍ତି
ଅପକର୍ମ କାର୍ଯ୍ୟେ ତାହା ସ୍ୱାହା କରିଦ୍ୟନ୍ତି
ହିମ ନଲାଗିବା ଯାଏ ବାୟୁ ସୁଖକର
ଦାନାଦିରେ ବ୍ୟୟ ଧନ ଦାତାର ମଙ୍ଗଳ ।

ଭସ୍ମ ଆଚ୍ଛାଦନେ ମଣି ଦିଶଇ ମଳିନ
ଅବିଚାର ଆଚରନ୍ତି ଜ୍ଞାନୀ ଧନବାନ ।
ବିଷଲତା ଯେଉଁପରି ଘଟାଏ ମରଣ
ବିଷୟଶ୍ରୀ ସେହିପରି ଦୁଃଖର କାରଣ ।
ମୃତ୍ୟୁର ଆଶଙ୍କା ବିଷବୃକ୍ଷର ପାଳନେ
ଆତ୍ମା ପାଏ ଅଧୋଗତି ସମ୍ପତ୍ତି ରକ୍ଷଣେ ।
ଅଜ୍ଞାନୀ ଲୋକର ଧନ, ଧନ ନୁହେଁ ଜାଣ
ବାସ୍ତବରେ ଗର୍ତ୍ତ ତାହା ଦୁଃଖ-ଭୁଜଙ୍ଗମ ।
ବିଷୟା-ରମଣୀ ବନ ନକୁଳୀ ସମାନ
ଚତୁରତା ଗୁଣେ ତାକୁ କେହି ନୁହେ ସମ ।
ଭ୍ରଷ୍ଟାନାରୀ ଜାର-ପୁରୁଷକୁ କରେ ବଶ
ଅଜ୍ଞ ଜୀବ-ଚିତ୍ତ ମୁଗ୍ଧ କରେ ଧନ ରସ ।
ଜଳ-ଢେଉ, ଦୀପ-ଶିଖା ଏମାନେ ଭଙ୍ଗୁର
ଭଙ୍ଗୁରତା ଗୁଣେ ଧନ ଗରିଷ୍ଠ ଅପାର
ଲକ୍ଷ୍ମୀବୃଦ୍ଧିର କାରଣ ପର ଧନ ଲୁଟି
ପରଧନ ବିନା କେହି ନୋହି କୋଟିପତି ।
ଅଲଭ୍ୟ ଲକ୍ଷ୍ମୀ ଜନିତ ମନ ପାଏ ଦୁଃଖ
ଦୁଃଖ ବିନା ତହିଁ ନାହିଁ ରେଣୁମାତ୍ର ସୁଖ ।
ମୋ ମତରେ ଏଥି ଯାଣ କିଛି ନାହିଁ ସୁଖ
ଏବେ ଯାହା କହୁଅଛି ହେତୁକରି ଦେଖ ।
ସନ୍ତୋଷରୂପୀ ମେଘର ଲକ୍ଷ୍ମୀ ଶରତ୍ କାଳ
ଲକ୍ଷ୍ମୀହୀନ ଜନଙ୍କର ଭାଗ୍ୟୋଦୟ ବେଳ ।
ଶୁଭ୍ର ଗୁଣମାନ ଲକ୍ଷ୍ମୀ କରଇ ବିନାଶ
ଶୁଭ୍ରଗୁଣ ବିନାଶରେ ମାନବ ହତାଶ ।
ଏମନ୍ତ ଦୁଃଖଦାୟିନୀ ସେହି ଲକ୍ଷ୍ମୀ ଯେଣୁ
ମାନସୁ ପୋଛି ଦେଇଛି ମୁହିଁ ତାଙ୍କୁ ତେଣୁ ।
ସମ୍ଭୋଗ ଉର୍ମ୍ମିର ମାଳା ବିଜୁଳି ସମାନ
ଆଭାସ ଦେଇ କମଳା ଛପିଯାନ୍ତି ଜାଣ ।
ହିମ ଲାଗି ଜଳ ଯେହ୍ନେ ବରଫ ପାଲଟେ
ଧନ ଲାଗି ଜୀବ ଜଡ଼ ତେସନ ପାଲଟେ ।
ଛଳନା-ମଣି ତାକୁ ମୁଁ କରିଛି ବର୍ଜନ
ମୋର ନିବେଦନ ଏହା ଆହେ ତପୋଧନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ଲକ୍ଷ୍ମୀ ବୈରାଗ୍ୟ ବର୍ଣ୍ଣନେ**
**ନାମ ୮ମ ସର୍ଗଃ ।**



## ୯ବମ ସର୍ଗଃ

## ସଂସାର ସୁଖ ନିଷେଧ

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିବର
ପଦ୍ମପତ୍ରେ ଜଳ କେଭେଁ ନରହଇ ସ୍ଥିର ।
ତେସନ ଧନ ଦୌଲତ କିଛି ନୁହେଁ ସ୍ଥିର
କ୍ଷଣକେ କମଳା ସବୁ କରେ ଛାରଖାର ।
ଜଳରୁ ତରଙ୍ଗ ଉଠି ଯଥା ହୁଏ ନଷ୍ଟ
ଲକ୍ଷ୍ମୀ ବୃଦ୍ଧି ପାଇ ତଥା ସବୁ ନଷ୍ଟଭ୍ରଷ୍ଟ ।
ପବନବେଗ ରୋଧିବା ଅତୀବ କଠିନ
କେହି ଅବା ତାକୁ ଧରି ରୋକିପାରେ ଜାଣ ।
ନଭକୁ ଚୂର୍ଣ୍ଣକରିବା ଅତି କଷ୍ଟକର
କେହି ଅବା ସେ କାର୍ଯ୍ୟରେ ଦେଖାଏ କୌଶଳ ।
ବିଜୁଳି ରୋକିବା ପୁଣି କଠିନୁ କଠିନ
କେହି ଅବା ତାକୁ ରୋକିପାରେ କିଛିକ୍ଷଣ ।
ଲକ୍ଷ୍ମୀକୁ ସ୍ଥିର ରଖିବା ତ୍ରିଜଗତେ ଭାଇ
ଏପରି ପୁଅ ନଥିଲେ, ନଥିବେ ବା କେହି ।
ଶଶଶୃଙ୍ଗେ କେହି କାକୁ ମାରି କି ପାରଇ
ଦର୍ପଣ ପରେ ମୋତିକୁ ରଖେ କେ ସଜାଇ ।
ଜଳ ତରଙ୍ଗରେ ଗଣ୍ଠି କେ ପକାଇ ପାରେ
ଚଞ୍ଚଳା ଚଞ୍ଚଳା ସଦା ରହେ ସେ ପ୍ରକାରେ ।
ବିଜୁଳି ଚମକପରି ଲକ୍ଷ୍ମୀଙ୍କର ଗତି
କ୍ଷଣକେ ପ୍ରକାଶି ଉଠି କ୍ଷଣେ ଅସ୍ତ ଯାନ୍ତି ।
ଧନପାଇ ଯେହୁ ଜୀବ ଅମର ହେବାକୁ
ଇଚ୍ଛା କରେ, ମୂଢ଼-ଗୁରୁ-ମଧ୍ୟେ ଗଣ ତାକୁ ।
ଲକ୍ଷ୍ମୀକି ଭୋଗିବା ପାଇଁ ଇଚ୍ଛେ ଯେଉଁ ଜନ
ମହା ବିପଦ ବରଣ କରେ ତତକ୍ଷଣ ।
ବଞ୍ଚି ରହିବା ଅପେକ୍ଷା ଶ୍ରେଷ୍ଠତା ମରଣ
ଚିରଜୀବୀ ହେବା ଇଚ୍ଛା ମୂର୍ଖତା ପ୍ରମାଣ ।
ଗର୍ଭଧାରଣ ଇଚ୍ଛିବା କ୍ଳେଶର ବରଣ
ଜୀବିତ ରହିବା ଆଶା ମୃତ୍ୟୁର କାରଣ ।
ଜ୍ଞାନୀ ଲୋକ ଯା'ର ମନ ବିଭୁପଦେ ସ୍ଥିର
ତା ବଞ୍ଚି ରହିବା ଜାଣ ସୁଖର ଭଣ୍ଡାର ।
ତାର ଜୀବନ ଧାରଣ, ଅନ୍ୟର ମଙ୍ଗଳ
ଚିନ୍ତାମଣିରୁ ଶ୍ରେଷ୍ଠ ସେ ଏହି ଧରାତଳ ।

ସ୍ୱଦା ଭୋଗ ଇଚ୍ଛାକରି ବସେ ଯେଉଁ ଜନ
ପରମ ପଦ ବିମୁଖ ହୁଏ ସେହୁ ଜାଣ ।
ତା ବଞ୍ଚି ରହିବା କାର ସୁଖେ ନଲାଗଇ
ନର ହୋଇ ଗଧଠାରୁ ହୀନତର ସେହି ।
ବୃକ୍ଷ, ପଶୁ, ପକ୍ଷୀଙ୍କର ବଞ୍ଚିବା ଯେପରି
ଜୀବନ ଧାରଣ ତାର ଅଟେ ସେହିପରି ।
ଶାସ୍ତ୍ର ପଢ଼ି ମର୍ମ ତାର ନବୁଝେ ଯେ ନର
ତା ପକ୍ଷରେ ଶାସ୍ତ୍ର ଅଟେ ଜାଣ ବୋଝ ଭାର ।
ପାଠକକୁ ଅଧ୍ୟୟନ ଅଟେ ଏକଭାର
ସାର ନବୁଝିବା ପୁଣି ଅଟେ ଅନ୍ୟ ଭାର ।
ମନ ଗଗନ ଏ ଦୁହେଁ ଅଟନ୍ତି ସମାନ
ଶାନ୍ତି ଯାର ନାହିଁ ତାକୁ ଭାର ଅଟେ ମନ ।
ନର ଦେହ ଧରି ଯାର ଅଭିମାନ ଥାଇ
ସେ ଦେହ ଧାରଣ ତାର ନିଷ୍ଫଳ ଅଟଇ ।
ନର ଜୀବନ ସାର୍ଥକ ତେବେ ସେ ଜାଣିବ
ଯେବେ ଆତ୍ମପଦ ଲାଭ କରି ସେ ପାଇବ ।
ଅଭ୍ୟାସ ଦ୍ୱାରାହିଁ ଆତ୍ମପଦ ପରାପତ
ଭୂମିକୁ ଖୋଳିଲେ ଜଳ ମିଳଇ ଯେମନ୍ତ ।
ଆତ୍ମପଦ ନପାଇ ଯେ ଆଶା ପାଶେ ବନ୍ଧ
କେଭେଁ ନସରଇ ତାର ଜନମ ବିପଦ ।
ସାଗରରେ ଉର୍ମିମାଳା ହୁଅନ୍ତି ଉତ୍ପନ୍ନ
ପଲକ ମାତ୍ରେ ତାଙ୍କର ହୁଏ ଅବସାନ ।
ତେସନ କ୍ଷଣଭଙ୍ଗୁର ଲକ୍ଷ୍ମୀଙ୍କୁ ଜାଣିବ
ଧନ ଅଭିମାନୀ ମୂର୍ଖ ମଧ୍ୟେ ଗଣ୍ୟ ହେବ ।
ମୂଷାକୁ ବିରାଡ଼ି ଯଥା ଛକି ବସିଥାଏ
ନର୍କେ ଠେଲି ଦେବା ପାଇଁ ଲକ୍ଷ୍ମୀଘରେ ରହେ ।
ଅଞ୍ଜଳିରେ ଜଳ ଯେହ୍ନେ ସ୍ଥିର ନରହଇ
ଲକ୍ଷ୍ମୀଙ୍କୁ ସ୍ଥିର କେବେହେଁ କରି ନହୁଅଇ ।
କ୍ଷଣ ଭଙ୍ଗୁର ଏ ଦେହ, ଲକ୍ଷ୍ମୀ କ୍ଷଣସ୍ଥାୟୀ
ମହାମୂର୍ଖ ସେହି, ଭୋଗ ତୃଷ୍ଣା ଯେ ପୋଷଇ ।
ମୃତ୍ୟୁ ମୁଖେ ପଡ଼ି ସୁଦ୍ଧା ବଞ୍ଚିବାର ଆଶା
ସର୍ପମୁଖେ ଥାଇ ଯଥା ବେଙ୍ଗର ଭରସା ।
ମୃତ୍ୟୁ ମୁଖେ ଥାଇ ତାର ନତୁଟେ ଲାଳସା
ହାବୁଡ଼େ ପଡ଼ିଲେ ଗିଳି ଦିଏ ମାଛି ମଶା ।
ମୃତ୍ୟୁମୁଖେ ପଡ଼ି ଭୋଗ ବଞ୍ଛା ଯେ କରଇ
ମହାମୂର୍ଖ ବୋଲି ତାଙ୍କୁ ଶାସ୍ତ୍ର ଅଛି କହି ।

ନଦୀ ପ୍ରବାହ ସଦୃଶ ଯୁବାକାଳ ବିତେ
ଜରାଜୀର୍ଣ୍ଣ ହେଲେ ମଧ୍ୟ ଭୟ ନାହିଁ ଚିତ୍ତେ ।
ଆସନ୍ନ ମୃତ୍ୟୁରେ ତାର ନଥାଇ ଆଶଙ୍କା
ଓଟାରି ନିଏ ଶମନ, ନୋହେ ମୁକ୍ତି ଦେଖା ।
କାମୀ ପୁରୁଷ ଯେସନ ଦେଖି ରୂପବତୀ
କ୍ଷଣେ ମାତ୍ର ନଛାଡ଼ିଣ ସଦା ରହେ କତି ।
ତେସନ ମୃତ୍ୟୁ ଜୀବକୁ ନପାରଇ ତେଜି
ପଲକ ନପଡ଼େ ସଦା ହେଉଥାଏ ଭଜି ।
ମୂର୍ଖ ଜୀବର ଜୀବନ ଦୁଃଖର ନିମିତ୍ତ
ଗର୍ଦ୍ଦଭ ଜୀବନ ବୋଝ ବୋହିବା ଯେମନ୍ତ ।
ବୃଦ୍ଧର ଜୀବନ ଦୁଃଖ ଭୋଗର କାରଣ
ଅଜ୍ଞାନୀ ବଞ୍ଚି ରହିବା ଅଟଇ କଷଣ ।
ବଞ୍ଚି ରହିବାଠାରୁ ତା ମୃତ୍ୟୁ ଶ୍ରେୟସ୍କର
ନୋହିଲେ ଜୀବନ ତାର ହୀନୁ ହୀନତର ।
ନରଦେହ ପାଇ ଯେହୁ ଆତ୍ମପଦ ପାଇଁ
ଚେଷ୍ଟିତ ନୁହେଁ ସେ ଦୀନ ଆତ୍ମଘାତୀ ହୋଇ ।
ଜଗତେ କେହି ଆମ୍ଭଙ୍କୁ କରିନି ବିକ୍ରୟ
କ୍ରୀତଦାସ ସମ ଆମେ କାଳକରୁ କ୍ଷୟ ।
ଧିକ୍ ମୂଢ଼ ଆମ୍ଭେ ଏହି ଶାକମ୍ଭରୀ ମାୟା
ଜାଣି ଅଜଣା ପରାଏ ଧରିରହୁ କାୟା ।
ମାୟାର ସ୍ୱରୂପ ଆହା କେଡ଼େ ମନୋହର
ମନକୁ ଭୁଲାଇ ଶେଷେ ନିଏ ନର୍କଦ୍ୱାର ।
କାଠ ଭିତରକୁ ପୋକ କାଟି ଖାଉଥାଏ
ବାହାର ସୌନ୍ଦର୍ଯ୍ୟ ତାର ମନ ମୋହୁଥାଏ ।
ବାହାରକୁ ଦିଶେ ଜୀବ ଲାବଣ୍ୟ ମୂରତି
ଭିତର ତା ତୃଷ୍ଣାକୀଟ କାଟୁଥାଏ ନିତି ।
ଯେ ନର ବସ୍ତୁକୁ ସତ୍ୟ ସୁଖଦାୟୀ ମଣେ
କେଭେଁ ସେ ସୁଖ ନପାଏ ତା'ସାରା ଜୀବନେ ।
ନଦୀପାର ପାଇଁ ଯେହୁ ସର୍ପାଶ୍ରୟ ଧରେ
ପାର ହୋଇ ନପାରି ସେ ମୃତ୍ୟୁମୁଖେ ପଡ଼େ ।
ସାଂସାରିକ ବସ୍ତୁକୁ ଯେ ସୁଖାଶ୍ରୟ ମଣେ
ସଂସାର ସାଗରେ ବୁଡ଼ି ନାଶଯାଏ ପ୍ରାଣେ ।
ଇନ୍ଦ୍ରଧନୁ ତୁଲ୍ୟ ଜାଣ ଏ ମାୟା ସଂସାର
ଏଥିରେ ଆସକ୍ତ ହେଲେ ହେବ ନାରଖାର ।
ଜାଣିପାରି ଏ ଜଗତ ଅଟଇ ନଶ୍ୱର
ନିର୍ବାସନିକ ହେବାକୁ ଇଚ୍ଛାହୁଏ ମୋର ।

ଧନ ଯେପରି ବୁଝିଲେ ନୁହେଁ ଚିରସ୍ଥାୟୀ
ଜୀବର ଆୟୁଷ ସେହିପରି କ୍ଷଣସ୍ଥାୟୀ ।
ପତ୍ରର ଅଗ୍ରଭାଗରେ ଶିଶିର ଯେପରି
ଚଞ୍ଚଳ, ଜୀବଧାରୀଙ୍କ ଆୟୁ ସେହିପରି ।
ବୃଥା କ୍ଷୟ କରେ ଅଜ୍ଞଜୀବ ଆୟୁଧନ
ସରଗ ପ୍ରାପତି ତାର ଜାଗ୍ରତ ସପନ ।
ଯାର ମନ ସଦା ଜର୍ଜରିତ ବିଷୟାରେ
କେବେହେଁ ବିବେକ ଉଦେ ନୁହେ ତା ହୃଦରେ ।
ବୃଥା ସେ ଜୀବର ଆୟୁ, କ୍ଲେଶର କାରଣ
ହତଭାଗ୍ୟ, ସଦା ଧନ୍ଦି ହେଉଥାଏ ଜାଣ ।
ଆମ୍ଭେ ଦେହୀ, ଦେହ ଆମ୍ଭ ସୁଖର ଆଧାର
ଜାଣିଶୁଣି ଆମ୍ଭେ ମଣୁ ପରମାୟୁ ଚିର ।
ସଂସାରକୁ ମେଘ ବୋଲି ଯେବେଟି ବୁଝିବ
କ୍ଷଣପ୍ରଭା ସମ ତହିଁ ଜୀବ ଆୟୁ ଧ୍ରୁବ ।
ଫଳତଃ ନିର୍ବାଣ ପ୍ରାପ୍ତି ରହେ ଅତି ଦୂର
ଅବିବେକୀ ଜନ କେଉଁ ବୁଝିବକି ସାର ?
ସମ୍ଭବ ହୋଇ ପାରଇ ବାୟୁର ବନ୍ଧନ
ଚୂର୍ଣ୍ଣ ଅବା କରାଯାଇପାରେ ଏ ଗଗନ
ତରଙ୍ଗମାଳା ଗୁନ୍ଥାରେ ଆସ୍ଥା ରହିପାରେ
ଆୟୁପ୍ରତି ବିଶ୍ୱାସ ମୋ କେଉଁ ନୋହି ପାରେ ।
ଶରଦ ମେଘ, ତଇଳ ହୀନ ଦୀପ ତୁଲ୍ୟ
ନଦୀ ଢେଉଠାରୁ ଆୟୁ ଅଧିକ ଚଞ୍ଚଳ ।
ମୂଢ଼ ଜୀବ କ୍ଷୀଣ-ଆୟୁ-ବୃଦ୍ଧି ଆଶା ପୋଷେ
ଗର୍ଭୋଦୟ * ଅଶ୍ୱତରୀ ସମ ଭବୁ ଖସେ ।
ଭ୍ରମଣ-ଲତିକା ତୁଲ୍ୟ ଅଟେ ଏ ସଂସାର
ସୃଷ୍ଟି-ସାଗର ମଧ୍ୟରେ ଫେଣ ଏ ଶରୀର ।
ଏପରି ଦେହ ଧରି ମୁଁ ରହିବି ଜୀବିତ
ଏ ବାସନା ନ ଆସଇ କେଉଁ ମୋର ଚିତ୍ତ ।
ଯା' ଦିଏ ଜୀବକୁ ପରଂପଦ ପୁରୁଷାର୍ଥ
ଯାହାର ପାଇଁ ଏ ଜୀବ ନୁହେ ଶୋକଗ୍ରସ୍ତ
ଯା' ପରମା-ନିବୃତ୍ତିର ଅଟଇ ସଦନ
ତାହାହିଁ ଋଷିଙ୍କ ମତେ ଶାଶ୍ୱତ ଜୀବନ ।
ବୃକ୍ଷ, ପଶୁ, ପକ୍ଷୀ ସର୍ବେ ଅଟନ୍ତି ଜୀବିତ
ଆପାତ ସତ୍ୟ ଏ ଜାଣ ଆହେ ତପୋବନ୍ତ ।
ମନନ ଫଳେ ଯେ ତତ୍ତ୍ୱଜ୍ଞାନ ନଲଭଇ
ଜୀଇଁଥିଲେ ସୁଦ୍ଧା ସେହୁ ମୃତପ୍ରାୟ ରହି ।
ବାସନା ବର୍ଜିତ ଚିତ୍ତେ ପରମ ପଦରେ
ରତଥିବା ନର ଜୀଇଁ ରହେ ଯଥାର୍ଥରେ ।
ଯେ ଜନ ଜନମ ଲଭି ଇହ ଜଗତରେ
ବଞ୍ଚି ଥାଉଁ ଥାଉଁ ପୁନଃର୍ଜନ୍ମ ଲଭିପାରେ ।
ସେହିମାନଙ୍କ ଜନ୍ମହିଁ ବାସ୍ତବ ଜନମ
ସାର୍ଥକ ଜୀବନ ତାଙ୍କ, ଧନ୍ୟ ତାଙ୍କୁ ମଣ ।
କାଳମୂଷିକ ପରାଏ ହାନିକାରୀ କେହି
ମାନବର ତ୍ରିଜଗତେ ଥିବା ଦେଖା ନାହିଁ ।
କ୍ରମାଗତ କାଟି କାଟି ମୂଷିକ ଯେସନ
ବିନଷ୍ଟ କରିପକାଏ ଗୃହ, କ୍ଷେତ୍ରମାନ ।
ଜୀବ ଦେହ ଅୟୁ, କାଳ ଅନବରତରେ
କ୍ଷୀର୍ଣ୍ଣ କରୁଥାଏ, ହାନି ନ ବୁଝନ୍ତି ନରେ ।
ବିରାଡ଼ି ମୂଷାକୁ ଯଥା ଛକି ବସିରହେ
ତେସନ ମୃତ୍ୟୁ ଜୀବକୁ ଝାମ୍ପ ଟେକି ଥାଏ ।
କୁତ୍ସିତ ଅନ୍ନକୁ ପେଟୁ ଖାତିର ନ କରେ
ଯାହା ପାଏ ତାହା ଖାଇ ହଜମ ସେ କରେ ।
ଅନୁରୂପ ଜରା-ବେଶ୍ୟା ପୁରୁଷ ଆୟୁଷ
ହରଣକରି ତାହାକୁ କରେ କାଳ ବଶ ।
କାଳବଶ ସଦାଚାରୀ କୁସଙ୍ଗୀ ସଙ୍ଗରେ
ପଡ଼ିଯାଇ ଚେତାପାଇ ପୁଣି ଉଠି ଥରେ ।
ଅବିଳମ୍ବେ କୁସଙ୍ଗୀର ସଙ୍ଗ ତ୍ୟାଗ କରେ
ଯେସନ ଯୌବନ ଦେହ ତେଜେ କାଳବଳେ ।
ଲମ୍ପଟ ପୁରୁଷ ଯଥା ସୌନ୍ଦର୍ଯ୍ୟାଭିଳାଷୀ
କୃତାନ୍ତ ତେସନ ନର ଆୟୁଷ ପ୍ରୟାସୀ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ସଂସାର ସୁଖ ନିଷେଧ ବର୍ଣ୍ଣନେ**
**ନାମ ନବମ ସର୍ଗଃ ।**



## ଦଶମ ସର୍ଗଃ

## ଅହଙ୍କାର ଦୁରାଶା

କହନ୍ତି ଶ୍ରୀରାମଚନ୍ଦ୍ର ଗୁରୁଦେବ ଶୁଣ
ଅହଙ୍କାରର ପ୍ରକୃତି କରୁଛି ବର୍ଣ୍ଣନ ।

* ଅଶ୍ୱତରୀ-ତେଲୁଣି ପୋକ-ଏହିପୋକ ଥରେମାତ୍ର ଗର୍ଭଧାରଣ କରି ଅଣ୍ଡାଦେଲା ପରେ ମରିଯାଏ ।

ଅହଙ୍କାର ଜନ୍ମଦାତ୍ରୀ ଅଟଇ ଅଜ୍ଞାନ
ଅହଙ୍କାରଠାରୁ ଦୁଷ୍ଟ ଶତ୍ରୁ ନାହିଁ ଆନ ।
ସେହି ଅହଙ୍କାର ମୋତେ ଦାବି ରଖିଅଛି
ମୋର ମନେ ନାନା ଭୟ ଜାତ ସେ କରୁଛି ।
ଅହଙ୍କାର ସର୍ବଦୁଃଖ, କ୍ଲେଶର ଭଣ୍ଡାର
ଅହଙ୍କାର ବିନା ନର ଜୀବନ ସୁନ୍ଦର ।
ଶାରୀରିକ ମାନସିକ ନାନାଦି ବିପଦ
ଅହଙ୍କାର ଏହି ବ୍ୟାଧିମାନଙ୍କ ଆସ୍ପଦ ।
ମୋ ମତରେ ଅହଙ୍କାରଠାରୁ ରୋଗ ନାହିଁ
କ୍ଷଣମାତ୍ରକେ ଜୀବକୁ କରେ ଶଯ୍ୟାଶାୟୀ ।
ସଂସାର ତ ଏକ ନୁହେଁ, ସଂସାର ଅନେକ
ସାଧ୍ୟ, ସାଧନ, ଫଳକୁ ସଂସାରରେ ଲେଖ ।
କେବଳ ଅହଙ୍କାରରୁ ଜାଣ ମୁନିବର
ଜନମ ଲଭିଛି ବହୁରୂପୀ ଏ ସଂସାର ।
ମାନବର ଚିରଶତ୍ରୁ ଅଟେ ଅହଙ୍କାର
ତେଣୁ ମୁଁ ପାନ ଭୋଜନ କରିଅଛି ଦୂର ।
ଅହଙ୍କାର ବଶ ସର୍ବ ଦାନ ପୁଣ୍ୟ ମୋର
ଜପ, ଭଜନ, ପୂଜନ, ସକଳ ଅସାର ।
ଅଣୁମାତ୍ର ପରମାର୍ଥ ସିଦ୍ଧି ନାହିଁ ଏଥି
ଅଗ୍ନି ନଥିବା ଭସ୍ମରେ ଯେସନ ଆହୁତି ।
ଦୁଃଖରୂପୀ ପାଦପର ବୀଜ ଅହଙ୍କାର
ସେ ବୃକ୍ଷ ଛେଦନେ ସର୍ବ ସୁଖି ମାନବର ।
କେମନ୍ତ ଭାବେ ନିବୃତ୍ତି ଏଥିରେ ଆସିବ
ସଦୟ ହୋଇ ଉପାୟ କହିଦେବା ଦେବ ।
ଯେଉଁ ବସ୍ତୁ ସତ୍ୟ ଅଟେ, ତାକୁ ତେଜିବାରେ
ନାନା ଦୁଃଖ ଘାରେ ମନ, ଥୟ ନୋହିପାରେ ।
ନଶ୍ୱର ବସ୍ତୁକୁ ତ୍ୟାଗ କରିବା ନିମିତ୍ତ
ଆନନ୍ଦ ଉପୁଜେ ମନେ, ଫୁଲିଉଠେ ଚିତ୍ତ ।
ମାନବକୁ ସଦା ଗ୍ରାସକରେ ଅହଙ୍କାର
ଶାନ୍ତି ଚନ୍ଦ୍ରମାକୁ ରାହୁ ଯେମନ୍ତ ପ୍ରକାର ।
ଚନ୍ଦ୍ରମାର ଶୀତଳତା, ଲାବଣ୍ୟ, ପ୍ରକାଶ
ତାଙ୍କି ଛାଡ଼ି ରହିଯାଏ ରାହୁ କଲେ ଗ୍ରାସ ।
ଅହଙ୍କାର ବୃଦ୍ଧି ହେଲେ ମମତା ସୁଗୁଣ
ପ୍ରକାଶ ନ ପାଇ, ଛପି ରହେ ତାର ଗୁଣ ।
ବର୍ଷା ମାଡ଼ି ଆସେ, ମେଘ ଗରଜନ କରି
ଉଲ୍ଲାସେ ବିକଶି ଉଠେ କରାଟକ କଳୀ ।

ଅହଙ୍କାର ମେଘ ଯେବେ ଗର୍ଜି-ଉଠୁଥିବ
ତୃଷ୍ଣା-କାମନା-ମଞ୍ଜରୀ ମୋଦେ ବିକଶିବ ।
ଅହଙ୍କାର ବିନାଶରେ ତୃଷ୍ଣାଯାଏ ଅସ୍ତ
ମେଘ ଘୋଟିଥିବା ଯାଏ ବିଜୁଳି ଯେମନ୍ତ ।
ବିବେକ-ପବନ ଯେବେ ବହିବାକୁ ଲାଗେ
ଅହଙ୍କାର-ମେଘ ନାଶ, ତୃଷ୍ଣା ବିଦ୍ୟୁତ୍ ଭାଗେ ।
ତୈଳ, ବତୀ, ଥିବାଯାଏ ପ୍ରଦୀପ ପ୍ରକାଶ
ତୈଳ, ବତୀ ଅଭାବରେ ଆଲୋକ ବିନାଶ ।
ତେଣୁ ଯେବେ ଅହଙ୍କାର ଲଭଇ ବିନାଶ
ସଙ୍ଗେ ସଙ୍ଗେ ତୃଷ୍ଣା-ବହ୍ନି ହୋଇଯାଏ ନାଶ ।
ପରମ ଦୁଃଖର ହେତୁ ଜାଣ ଅହଙ୍କାର
ଅହଙ୍କାର ବିନାଶ ହିଁ ବିନାଶ ଦୁଃଖର ।
ମନେରଖ ତପୀସାଇଁ ମୁଁ ନୁହେଁଟି ରାମ
କୌଣସି ବିଷୟପ୍ରତି ନୁହେଁ ମୁଁ ସକାମ ।
ବିନାଶ-ଲଭିଅଛଇ ମୋ ପ୍ରବୃତ୍ତି ଜାଣ
ଇଚ୍ଛାକୁ ମୋ ହୃଦଗତେ ଦେଇନାହିଁ ସ୍ଥାନ ।
ଜିତେନ୍ଦ୍ରିୟ ହୋଇ ସଦା ଲଭି ଶାନ୍ତିଧନ
ବୁଦ୍ଧପରି ରହିବାକୁ ବାଞ୍ଛେ ମୋର ମନ ।
ଶିଶିର ବିନାଶ କରେ କମଳ ଯେସନ
ଅହଙ୍କାର ବିନାଶଇ ସଦଗୁଣ ମାନ ।
ଜାଲ ବିଛାଇ ଯେସନ ବ୍ୟାଧ ପକ୍ଷୀ ଧରେ
ଅହଙ୍କାର-ବ୍ୟାଧ ତୃଷ୍ଣା-ଜାଲେ ଜୀବ ମରେ ।
ଆହାର ଲୋଭରେ ଯଥା ପକ୍ଷୀ ପଡ଼େ ଜାଲେ
ଧନଲୋଭୀ-ଜୀବ ତଥା ପଡ଼େ ମାୟାପାଲେ ।
ଅହଙ୍କାର ଯେଉଁପରି ଲଭିବ ବିନାଶ
ସେ ପଥ ଦେଖାଇ ମୋରେ କରିବାକ ତୋଷ ।
ଅହଙ୍କାର ବିନାଶରେ କାହିଁ ଆଉ ଦୁଃଖ ?
ତେବେ ଭୋଗ କରିବଇଁ ସିନା ନିତ୍ୟସୁଖ ।
ପାଗଳା ହାତୀ ଗରଜେ ବିନ୍ଧ୍ୟାଚଳେ ଥାଇ
ମନ-ମତ୍ତ-ଗଜ ଗର୍ଜେ ହୃଦଦେଶେ ରହି ।
ସର୍ବ ଅମଙ୍ଗଳ ମୂଳ ଅଟେ ଅହଙ୍କାର
ତାର ନାଶ ପାଇଁ ରଖିଅଛିକି କୁଠାର ?
ଶରତ ଯଥା ବିନାଶ କରେ ମେଘମାଳା
ବୈରାଗ୍ୟ ବିନାଶ କରେ ଅହଙ୍କାର ଜ୍ୱାଳା ।
ମୋହାଦି ବିକାର-ସର୍ପ ମାନଙ୍କର ବିଲ
ଆଉ କିଏ ହୋଇପାରେ ବିନା ଅହଙ୍କାର ।

ଲମ୍ପଟ ଯଥା ଧାରଣ କରେ ମୁକ୍ତାମାଳ
ଅହଙ୍କାର-ତୃଷ୍ଣା-ସୂତ୍ରେ ଗୁନ୍ଥା ମନଫୁଲ ।
ମେଘମାଳା ଢାଙ୍କି ରହେ ଯଥା ଆତ୍ମାସୂର୍ଯ୍ୟ
ବିବେକ-ଶରତ ନାଶେ ଅହଂକାର ତେଜ ।
ଯହିଁ ଅହଙ୍କାର ତହିଁ ସକଳ ବିପଦ
ସାଗର ଯେସନ ସ୍ରୋତସ୍ୱତୀଙ୍କ ଆସ୍ପଦ ।
ଯେଉଁ ଅହଙ୍କାର ସର୍ବ ବିପଦ କାରଣ
ଉପାୟ ବଢ଼ାନ୍ତୁ ଯେଣେ ହେବ ତା ନାଶନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ଅହଙ୍କାର ଦୁରାଶା ବର୍ଣ୍ଣନେ**
**ନାମ ଦଶମ ସର୍ଗଃ ।**



## ଏକାଦଶ ସର୍ଗଃ
## ଚିତ୍ତ ଦୌରାତ୍ମ୍ୟ

କହନ୍ତି ଶ୍ରୀରାମ ପୁଣି ଶୁଣ ତପୋଧନ
ଚିତ୍ତ ଦୌରାତ୍ମ୍ୟ ସର୍ବଦା ଦହଇ ମୋ ମନ ।
କାମାଦି ତୃଷ୍ଣାରେ ମୋର ଚିତ୍ତ ଜର୍ଜରିତ
ବୈରାଗ୍ୟ ବିଚାର ପ୍ରତି ନୋହେ ଆଲୋଡ଼ିତ ।
ଧଇର୍ଯ୍ୟ, ସନ୍ତୋଷ ସ୍ପର୍ଶ ନକରେ ମୋ ମନ
ସାଧୁସଙ୍ଗ, ସତକାର୍ଯ୍ୟ ମୋ ପ୍ରତି ସପନ ।
ବାୟୁବେଗେ କେକୀ ପୁଚ୍ଛ ଯଥା ଆଲୋଡ଼ିତ
ସେହିପରି ବିଚଳିତ ସଦା ମୋର ଚିତ୍ତ ।
ଖାଦ୍ୟପାଇଁ ଶ୍ୱାନ ଯଥା ବୁଲେ ଦ୍ୱାରେ ଦ୍ୱାରେ
ଦୁଷ୍ଟଚିତ୍ତ ତଥା ଧାଇଁ ବୁଲେ ନିରନ୍ତରେ ।
ଦ୍ୱାରେ ଦ୍ୱାରେ ବୁଲି ପୁଣି ଯାହାକିଛି ପାଏ
ତୃପତି ଅଭାବେ ପୁଣି ଧାଇଁ ବୁଲୁଥାଏ ।
ଯଥେଷ୍ଟ ପାଇଲେ ସୁଦ୍ଧା ଆଶା-ବୈତରଣୀ
ଘାରିଯାଇ ମନକୁ ତା ନେଉଥାଏ ଟାଣି ।
ବେତ ପେଟରାରେ ପାଣି ଯେତେ ଭରୁଥିବ
ଛିଦ୍ରବାଟେ ସବୁ କେଣେ ଉଭେଇଣ ଯିବ ।
ଲୋଭୀଲୋକ ମନବୋଧ ନୁହେ କଦାଚନ
ଜଳି ଉଠୁଥାଏ ସଦା ଆଶା-ହୁତାଶନ ।
ଚିତ୍ତସାଗରେ ଉତ୍ତୁଙ୍ଗ ତୃଷ୍ଣା-ଊର୍ମିମାନ
ଉଠି ନାଚି ନାଚି ଖେଳାକରେ ଅନୁକ୍ଷଣ ।
ତୃଷ୍ଣା-ସିନ୍ଧୁ-ଲହରୀରେ ତଟ ବୃକ୍ଷମାନ
ଉପୁଡ଼ି ପଡ଼ି ହୁଅନ୍ତି ଜଳେ ଭାସମାନ ।
ତୃଷ୍ଣା ଊର୍ମିମାଳା ହେତୁ ବିଷୟାଭିମାନୀ
ଅନତି ବିଳମ୍ବେ ନାଶଯାଏ ତତକ୍ଷଣି ।
ବାୟୁବେଗେ ଉଡ଼େ ଯଥା ଶୁଷ୍କ ତୃଣମାନ
ତଥା ମୋ ଚପଳ ଚିତ୍ତ ଉଡ଼େ ମହାଶୂନ୍ୟ ।
ବାସନା-ତରଙ୍ଗେ ମୋର ଅଚଳ ସ୍ୱଭାବ
ଚଳାୟମାନ ହେଉଛି ହେ ମୁନି ପୁଙ୍ଗବ ।
ସେ ଚଞ୍ଚଳ ଚିତ୍ତଘେନି ଅତି ଦୀନହୀନ
ଦୁଃଖେ ମୋ ଦିନ ସରୁଛି ହେ ମୁନୀପ୍ରବୀଣ ।
ଯୂଥହୁଡ଼ି ଯଥା ମୃଗ ହୁଏ ହଇରାଣ
ଆତ୍ମପଦ ଭୁଲି ମୁହିଁ ଏବେ ଅକିଞ୍ଚନ ।
ମନ୍ଦର ମଥନେ କ୍ଷୀର ସାଗର ଯେସନ
ସଙ୍କଳ୍ପ ବିକଳ୍ପେ ମୋର ଚିତ୍ତ ଖେଦପୂର୍ଣ୍ଣ ।
ପିଞ୍ଜରାବଦ୍ଧ କେଶରୀ ପିଞ୍ଜରାରେ ଥାଇ
ବାଧ ହୋଇ ଚଲବୁଲ କରୁଥାଏ ତହିଁ ।
ବାସନାବଦ୍ଧ ମୋ ଚିତ୍ତ ସର୍ବଦା ଅସ୍ଥିର
ବିଷୟା-ପିଞ୍ଜରା ମଧ୍ୟେ ବିଚରଣ ତାର ।
ଶୁଖିଲା ତୃଣକୁ ଯଥା ଅଗ୍ନି ଦଗ୍ଧକରେ
ଚିନ୍ତା-ଅଗ୍ନି ମୋର ଚିତ୍ତ ଦହେ ସଦାକାଳେ
ତୃଷ୍ଣା-ଧୂମ ଜନମିଣ ବାସନା-ଅଗ୍ନିରୁ
ଭୟ ଜନମାଏଁ ସଦା ଯଥା ଫଣୀଫେରୁ ।
ଦୁଗ୍ଧପାନ କରି ଜଳ ଛାଡ଼େ ରାଜହଂସ
ପରମାତ୍ମା ଭେଟପାଏ ମନୀଷୀ ମାନସ ।
ଅଜ୍ଞାନ ଘୋଟିଥିବାରୁ ମୋ ମାନସ ପଟ
ଆତ୍ମପଦ ସହ ମୋର ନ ହୁଅଇ ଭେଟ ।
ସାଗର ସଙ୍ଗମ ପାଇଁ ଯଥା ନଦୀସ୍ରୋତ
ପ୍ରବଳ ଆବେଗେ ଧାଏଁ ଚିତ୍ତ ଆହ୍ଲାଦିତ ।
ପାହାଡ଼େ ହାବୁଡ଼ି ଗଲେ ବେଗ ପାଏ ବାଧା
ପରମାତ୍ମା ଭେଟ ପାଇଁ ଚିତ୍ତ ଭାଙ୍ଗେ ଶ୍ରଦ୍ଧା ।
ହେ ମୁନୀଶ ! କହ ମୋତେ ଏମନ୍ତ ବିଧାନ
ଅସଦ୍ ଚିତ୍ତ ଶତ୍ରୁ ଯେହ୍ନେ ଲଭେ ବିନାଶନ ।
ଜୀବିତ ସ୍ୱାମୀ ଶରୀର ପତ୍ନୀର ସମ୍ପତ୍ତି
ମାୟା ମୋହ-ଜାଲେ ଜଡ଼ିଥାଏ ଦିନରାତି ।
ସ୍ୱାମୀ ମୃତ୍ୟୁ ହେଲେ ମାୟା କାଟେ ତା ମମତା
ଶ୍ମଶାନରେ ଫିଙ୍ଗିଦିଏ ଲାଗେ ତାକୁ ପିତା ।

ଭାରିଯାର ପୋଷା ଶ୍ୱାନ-ଶବକୁ ଓଟାରି
ଖାଇଲେ ହେଁ ମନ ତାର ହୁଏ ନାହିଁ ଘାରି ।
ଭାର୍ଯ୍ୟାରୂପେ ତୃଷ୍ଣା ସଦା ଖାଏ ଆମ ଗଣ୍ଡି
ଆପଦ ଜାଲେ ପକାଇ ଦେଉଥାଏ ଭଣ୍ଡି ।
ଆତ୍ମଜ୍ଞାନ ବିନା ମୁହିଁ ଶବର ସଦୃଶ
ସୁଦୂର ପରାହତ ମୋ ପରଂପଦ ରସ ।
ନିଜ ଛାଇକୁ ବାଳକ ଭୂତ ମନେକରି
ଭୟଭୀତ ହୁଏ ତୁଣ୍ଡୁ କଥା ନ ବାହାରି ।
ଜ୍ଞାନ ଉଦୟ ହୁଅନ୍ତେ ଅସ୍ତଯାଏ ଭୟ
ଭ୍ରମ ବୁଝି, ଚିନ୍ତାଛାଡ଼ି ହୁଏ ସେ ନିର୍ଭୟ ।
ଚିତ୍ତ-ଭୂତ ଘାରିଅଛି ମୋହର ମାନସ
ତେଣୁ ଭୟ-ଭୂତ ମୋତେ କରିଅଛି ଗ୍ରାସ ।
ଏଣୁକରି କହ ମୋତେ ସେ ଗାରୁଡ଼ି ମନ୍ତ୍ର
ଯଦ୍ୱାରା ସେ ଚିନ୍ତା-ଭୂତ ଛାଡ଼ିବ ମୋ ଗାତ୍ର ।
ଅଜ୍ଞାନ ବଶତ ମିଥ୍ୟା-ବେତାଳ ମୋ ଚିତ୍ତ
ମାଡ଼ିବସି ମୋତେ କରୁଅଛି ହନ୍ତସନ୍ତ ।
ଅଗ୍ନିରେ ପଶିବା ପୁଣି ପର୍ବତ ଚଢ଼ିବା
ବଜ୍ରକୁ ସୁଦ୍ଧା ବିଧାରେ ଚୂନା କରିଦେବା ।
ଏସବୁ ସମ୍ଭବପର ଜୀବ ପାଇଁ ହେବ
ଚିତ୍ତକୁ ବଶ କରିବା ଅଟେ ଅସମ୍ଭବ ।
ସଦା ସର୍ବଦା ଚଞ୍ଚଳ ଚିତ୍ତର ସ୍ୱଭାବ
ବାନର ଯେସନ ବନ୍ଧା ହୋଇଥାଏ ଖମ୍ବ ।
ଖମ୍ବରେ ବନ୍ଧା ବାନର ସର୍ବଦା ଅସ୍ଥିର
ବାସନା ଖମ୍ବରେ ବନ୍ଧା ଚିତ୍ତ ନୁହେ ସ୍ଥିର ।
ସାଗର ଶୋଷଣ କିମ୍ବା ଅଗ୍ନିକି ଭକ୍ଷଣ
ସୁମେରୁ ଲଙ୍ଘନ ହୋଇପାରେ ବା ସୁଗମ
କିନ୍ତୁ ଚିତ୍ତ ବିଜୟଟି ଅତୀବ କଠିନ
ଚଳାୟମାନ ସ୍ୱଭାବ ତାହାର କାରଣ ।
ଦ୍ରବସ୍ୱଭାବ ସାଗର କେଉଁ ନ ଛାଡ଼ଇ
ତରଙ୍ଗମାଳା ତାହାର ଉଠି ପଡୁଥାଇ ।
ସେହିପରି ଚିତ୍ତ ସଦା ଅସ୍ଥିର ଚଞ୍ଚଳ
ନାନା ବାସନା ଉପୁଜି କରେ କଲବଲ ।
ପିଲାଖେଳ ପରି ଚିତ୍ତ ସର୍ବଦା ଅସ୍ଥିର
ବାସନା ଢେଉରେ ସଦା ହୁଏ ସେ ବିକଳ ।

ସୂର୍ଯ୍ୟ ଉଦେ ହେଲେ ଦିନ, ଅସ୍ତେ ହୁଏ ରାତି
ଚିତ୍ତ-ବିକାର ଉଦୟେ ତ୍ରିଲୋକ ଉତ୍ପତ୍ତି ।
ଚିତ୍ତର ବିନାଶ ହେଲେ ଜଗତ ବିନାଶ
ଜଗତ ନାଶ ଘଟାଏ ଏ ଜୀବର ଧ୍ୱଂସ ।
ଚିତ୍ତରୂପି-ସମୁଦ୍ରରେ ବାସନାଟି ଜଳ
ଛଳସର୍ପ ସଦା ତହିଁ କରୁଥାଏ ଖେଳ ।
ଲୋଭ ବସ ଜୀବ ଯଦି ତା ନିକଟେ ଆସେ
ଅବିଶ୍ୱାସୀ-ଭୋଗ ସର୍ପ ତାକୁ ଦଂଶି ବସେ ।
ତୃଷ୍ଣା-ବିଷ ପରଶରେ ଜୀବ ପାଏ ତ୍ରାଶ
ହତଭାଗ୍ୟ ଜୀବ ତେଣୁ ହୁଅଇ ହତାଶ ।
ତୃଣ ଆଚ୍ଛାଦିତ ଗର୍ତ୍ତ ହରିତାୟମାନ
ଲୋଭବଶ ମୃଗ ଯଦି ହୁଏ ଧାବମାନ ।
ତୃଣଖିଆ ଦୂରେଥାଉ ଗର୍ତ୍ତେ ଯାଏ ପଡ଼ି
ହତାଶ ହୁଅଇ, ଶେଷେ ପ୍ରାଣ ତାର ଉଡ଼ି ।
ଚିତ୍ତ ମୃଗ ଭୋଗ, ସୁଖ ଲଭିବାର ପାଇଁ
ଧାଇଁଯାନ୍ତେ ଖସିପଡ଼େ ତୃଷ୍ଣାରୂପି ଖାଇ ।
ଜନ୍ମ ଜନ୍ମାନ୍ତର ଲାଗି ଦୁଃଖକରେ ଭୋଗ
ସାହା କେହି ନାହିଁ ଭୋଗେ ନଇରାଶ୍ୟ-ରୋଗ ।
କେବେ କେବେ ଏହି ଚିତ୍ତ ଅତୀବ ଗମ୍ଭୀର
ଚିଲପରି ଉଡୁଥାଏ ଗଗନେ ସୁଦୂର ।
ମାଂସ ଦେଖି ଲୋଭବଶ ଖସେ ଧରାତଳ
ମାଂସଧରି ଉଡ଼ିଯାଏ ଗଗନ ମଣ୍ଡଳ ।
ଯେ ଯାଏଁ ମନର ଭୋଗ ନହୋଇ ଗୋଚର
ସେ ପର୍ଯ୍ୟନ୍ତ ମନ ରହେ ଉଦାର, ଗମ୍ଭୀର ।
ବିଷୟ ଦେଖିଲେ ତାର ଆସଇ ଆଶକ୍ତି
ଆଶକ୍ତି ବଶରୁ ଭୋଗେ ନାନାଦି ବିପତ୍ତି ।
ବାସନା-ଶଯ୍ୟାରେ ମନ ସଦା ରହେ ଶୋଇ
ଆତ୍ମପଦ ପ୍ରାପ୍ତି ପାଇଁ ଭ୍ରୁକ୍ଷେପ ନଥାଇ ।
ଥିଲେ ହେଁ ପ୍ରବଣାବୃତ୍ତି ମନର ସର୍ବଦା
ଦ୍ୱୈତ କଳ୍ପନା ଶଯ୍ୟାରେ ନଭାଙ୍ଗେ ତା ନିଦ୍ରା ।
ବାସନା-ଭୂତ ସର୍ବଦା ଘାରିଛି ଏ ଚିତ୍ତ
ପରମ ପଦ ପାଇଁକି ନୁହେଁ ସେ ଚେଷ୍ଟିତ ।
ତୃଷ୍ଣା-ସୂତ୍ରରେ ନିର୍ମିତ ଚିତ୍ତ-ଜାଲେ ମଧ୍ୟ
ହତଭାଗ୍ୟ ରହିଅଛି ସଦା ମୁଁ ଆବଦ୍ଧ ।

* ପ୍ରବଣା ବୃତ୍ତି - ଆତ୍ମାଭିମୁଖୀ ବୃତ୍ତି ।

ଚକ୍ରୋଧ-ଧୂମ, ଚିନ୍ତା-ଶିଖ, ମନ-ହୁତାଶନ
ଦଗ୍ଧ ହେଉଅଛି ଜୀବ ଯଥା ଶୁଷ୍କ ତୃଣ ।
ବାସନା ରଜ୍ଜୁରେ ଜୀବ ଆବଦ୍ଧ ହୋଇଣ
ଆକାଶେ, ପାତାଳେ ସଦା କରଇ ଭ୍ରମଣ ।
ବାରଂବାର ଘଣ୍ଟା କଣ୍ଠା ବୁଲୁଥିଲା ପରି
ଅନବରତ ଏ ଜୀବ ଭ୍ରମଣ ଆଚରି ।
କିପରି ଏଥିରୁ ମୁକ୍ତି ଲଭିବଇଁ ମୁନେ
ସେ ପଥ ଦେଖାଇ କୃପାକର ମହାତ୍ମନେ ।
ମେଘାଚ୍ଛନ୍ନେ ହେବାପାଇଁ ଚନ୍ଦ୍ରମା କି ଚହେଁ ?
ଚତୁର୍ମାସ୍ୟା ମେଘ ତାକୁ ଢ଼ାଙ୍କି ରହିଥାଏ ।
ଭୋଗ ଅଭିଳାଷ ମୋର ନାହିଁଟି ମୁନିନ୍ଦ୍ର
ନ ଇଚ୍ଛେ ମୁଁ ଜଗତ୍-ଲକ୍ଷ୍ମୀ ଅବା ଇନ୍ଦ୍ରପଦ ।
କିନ୍ତୁ ମୋ ଚିତ୍ତ ସର୍ବଦା ବଡ଼ ଶତ୍ରୁ ମୋର
ଦୟା ବହି ମହାତ୍ମନେ ଏଥୁ ରକ୍ଷାକର ।
ମହାତ୍ମାମାନେ ମନକୁ ଜିଣି ଯାଇ କରି
ଲଭନ୍ତି ପରମପଦ ଯାହା ଅଶରୀରି ।
ମାନସ କରୀ ମୋହର ହେବ ଯେହ୍ନେ ବଶ
କୃପାକରି ମହାତ୍ମନେ ଦିଅ ସେ ଅଙ୍କୁଶ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ଚିତ୍ତ ଦୌରାତ୍ମ ବର୍ଣ୍ଣନେ**
**ନାମ ଏକାଦଶ ସର୍ଗଃ ।**



## ଦ୍ୱାଦଶ ସର୍ଗଃ

## ତୃଷ୍ଣା ଗାରୁଡ଼ି

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିବର
ତୃଷ୍ଣା ଗାରୁଡ଼ିର କଥା ଅତି ଚମତ୍କାର
ଚେତନାରୂପୀ ଗଗନେ ଘୋଟେ ତୃଷ୍ଣା ରାତ୍ରି
କାମକ୍ରୋଧାଦି ପେଚକେ ତହିଁ ବିଚରନ୍ତି ।
ଜ୍ଞାନ-ସୂର୍ଯ୍ୟ ଉଦେହେଲେ ଯାହେ ତୃଷ୍ଣା ରାତ୍ରି
ମୋହାଦି ପେଚକଗଣ ବିନାଶ ଲଭନ୍ତି ।
ଉଷ୍ଣତା ହେତୁ ତୁଷାର ତରଳେ ଯେସନ
ତୃଷ୍ଣା ତାପରେ ସନ୍ତୋଷ-ରସଟି ତେସନ ।
ଆତ୍ମପଦ ବିନା-ଚିତ୍ତ ଭୟାନକ ବନ
ତୃଷ୍ଣା ପିଶାଚିନୀ ତହିଁ କରେ ବିଚରଣ ।
କାମ, ମୋହାଦି ତାହାର ପରିବାରଗଣ
ମାତା ସହ ଆନନ୍ଦରେ କରନ୍ତି ଭ୍ରମଣ ।
ଚିତ୍ତ-ପର୍ବତରେ ତୃଷ୍ଣା-ନଦୀ ଧାବମାନ
ନାନା କାମନା-ତରଙ୍ଗ ତହିଁ ସୁଶୋଭନ ।
ଘନ ଆଗମନେ ଯଥା କେକୀ ଆହ୍ଲାଦିତ
ତୃଷ୍ଣା-କେକୀ ଭୋଗ-ମେଘ ଦେଖି କରେ ନୃତ୍ୟ ।
କୌଣସି ଆଦର୍ଶ ଗୁଣ କଲେ ମୁଁ ଆଶ୍ରୟ
ତୃଷ୍ଣା-ରାକ୍ଷସୀ ତହାକୁ କରିଦିଏ କ୍ଷୟ ।
ଉଚ୍ଚ ଅଭିଳାଷ ମୁହିଁ କରନ୍ତେ ପୋଷଣ
ତୃଷ୍ଣା ଶତ୍ରୁ ଖଞ୍ଜିଦିଏ ନାନା ବିଘ୍ନମାନ ।
ପାଶବଦ୍ଧ ପକ୍ଷୀ ଇଚ୍ଛେ ନଭ ବିଚରଣ
ଯେତେ ଚେଷ୍ଟା କଲେ ସବୁ ହୁଏ ଅକାରଣ ।
ଆତ୍ମା ଇଚ୍ଛେ ପାଇବାକୁ ପରମାତ୍ମା ଭେଟ
ତୃଷ୍ଣା ଘଟାଏ ସେ ପଥେ ନାନାଦି ସଙ୍କଟ ।
ସ୍ତିରୀ, ପୁରୁଷ, କୁଟୁମ୍ବ, ମୋହ-ଜାଲ ଫାନ୍ଦି
ତୃଷ୍ଣାରାଣୀ ସମସ୍ତଙ୍କୁ ରଖିଅଛି ବାନ୍ଧି ।
ଆଶା-ପାଶବଦ୍ଧ କେବେ ଉଠେ ଉପରକୁ
ଭଗ୍ନୋତ୍ସାହ ହୋଇ ପୁଣି ଖସେ ପାତାଳକୁ ।
ମ୍ଳାନ ମେଘେ ଇନ୍ଦ୍ରଧନୁ କେଡ଼େ ସୁଶୋଭନ
ମଧ୍ୟ ଭାଗ ଫମ୍ପା ତାର ଶୂନ୍ୟ ମହାଶୂନ୍ୟ ।
ନରଦେହ-ମେଘ ମଧ୍ୟେ ନାନା ଅବଗୁଣ
ବିଷୟ-ତୃଷ୍ଣାଦି ବାସ କରିଛନ୍ତି ଜାଣ ।
ଚିତ୍ର ପ୍ରତିମା ସଦୃଶ ମାନବ ସୁନ୍ଦର
ଭିତର ଚିରି ଦେଖିଲେ କେଡ଼େ ନାରଖାର !
ତୃଷ୍ଣା-ମେଘରୁ ବରଷେ ଦୁଃଖରୂପୀ-ଜଳ
ସେ ଘେନି ଜୀବଜଗତ ହୁଏ କଲବଲ ।
ତୃଷ୍ଣା-କାଳୀ-ନାଗୁଣୀର ପରଶ କୋମଳ
ଦଂଶନ ମାତ୍ରକେ ପ୍ରାଣ ବିନାଶ ଜୀବର ।
ସୂର୍ଯ୍ୟତେଜ ଢାଙ୍କିରଖେ ବାଦଲ ଯେସନ
ତୃଷ୍ଣା ଲାଗି ଆତ୍ମା ହୁଏ ମଳିନ ତେସନ ।
ପବନ ବହନ୍ତେ ମେଘ କେଣେ ଉଡ଼ିଯାଏ
ସୂର୍ଯ୍ୟ କିରଣ ପ୍ରକାଶ ଆଲୋକ ବଢ଼ାଏ ।
ଜ୍ଞାନ-ପବନ ବହନ୍ତେ ତୃଷ୍ଣା-ମେଘ ନାଶ
ତୃଷ୍ଣା-ବିନାଶେ ପରମ ଆତ୍ମାଙ୍କ ପ୍ରକାଶ ।
ଜ୍ଞାନ-ପଦ୍ମ ମୁଦି ହୁଏ ତୃଷ୍ଣା-ନିଶା ଘେନି
ବିଳେ ଲୁଚେ ସର୍ପ ଯଥା କେକୀ ନାଦ ଶୁଣି ।

ମହାଭୟାବହ ଅଟେ ତୃଷ୍ଣା-କାଳରାତ୍ରି
ଧୈର୍ଯ୍ୟଶୀଳ ଲୋକ ମଧ୍ୟ ବିଚଳିତ ଅତି ।
ଆଖିଥିବା ଲୋକ ମଧ୍ୟ ଅନ୍ଧହୋଇ ବସେ
ବୈରାଗ୍ୟ ଅଭ୍ୟାସୀ ନେତ୍ରେ ବିବେକ ନଦିଶେ ।
ସତ୍ୟ, ଅସତ୍ୟ ବିଚାରପାଇଁ ହଜେ ଜ୍ଞାନ
ସନ୍ତୋଷାଦି ଗୁଣମାନ ଲଭନ୍ତି ବିଲୀନ ।
ତୃଷ୍ଣା କନ୍ଦରରେ ଥାଇ ମୋହ-ମତ୍ତଗଜ
ଗର୍ଜନ କରନ୍ତେ ହତ ସର୍ବବଳ ତେଜ ।
ତୃଷ୍ଣା-ସାଗରକୁ ଧାଏଁ ଆପଦ-ତଟିନୀ
କି ଉପାୟେ ତୃଷ୍ଣା ଦାଉ ପାରିବି ମୁଁ ଜିଣି ?
ତୃଷ୍ଣା-ପ୍ରଦୀପ ସର୍ବଦା ଅଛି ପ୍ରଜ୍ଜ୍ୱଳିତ
ସନ୍ତୋଷ-ପତଙ୍ଗ ତହିଁ ପଡ଼ି ଭସ୍ମୀଭୂତ ।
ଜଳ ମଧ୍ୟେ ମୀନ ରହିଥାଏ କରି ବାସ
ଖାଦ୍ୟ ମଣି ଗୋଡ଼ି ବାଲି କରିଦିଏ ଗ୍ରାସ ।
କିଛି ମାତ୍ର ସ୍ୱାର୍ଥସିଦ୍ଧି ତହିଁ ନାହିଁ ତାର
କେବଳ ଶ୍ରମହିଁ ସାର, ଆଶାଟି ନିଷ୍ଫଳ ।
ତୃଷ୍ଣାପକ୍ଷୀ ସ୍ଥିରନୋହି ସଦା ଉଡ଼ିବୁଲେ
ବାନର ଅସ୍ଥିର ଯଥା ବୃକ୍ଷ ଡ଼ାଳ ପରେ ।
ତୃଷ୍ଣା-ବାନର କେବେହେଁ ତୃପତ ନୁହଏ
ଅଭୀଷ୍ଟ ପାଇଲେ ସୁଦ୍ଧା ଧାଇଁ ବୁଲୁଥାଏ ।
ଯେତେ ଘିଅ ଢାଳିଲେ ହେଁ କେଉଁ ହୋମାନଳ
ତୃପତ ନହୋଇ ଶିଖା ଟେକେ ବେଳୁବେଳ ।
ପ୍ରବଳ ପ୍ରବାହବଳେ ନଦୀରେ ଯେସନ
ତରଙ୍ଗ ଉଠିଣ ତଟ କରଇ ପ୍ଲାବନ ।
ପାଗଳ-ପରାଏ ତୃଷ୍ଣାବଢ଼ି ଆସେ ମାଡ଼ି
କୁଆଡୁ କୁଆଡେ ନିଏ ମାନବକୁ ତଡ଼ି ।
ତୃଷ୍ଣା-ନଦୀରେ ବାସ୍ନା ଢେଉ ଉଠୁଥାନ୍ତି
କେତେବେଳେ ହେଲେ ସୁଦ୍ଧା ସ୍ଥିର ନହୁଅନ୍ତି ।
ନର୍ତ୍ତକୀ ପରାଏ ତୃଷ୍ଣା ନାଚି ବୁଲୁଥାଏ
ନିଜ ଅଭିନବ ନୃତ୍ୟ ଜଗତେ ଦେଖାଏ ।
ତାହାଦେଖି ମୂଢ଼ ଜୀବ ଭୋଳେ ମାତି ଉଠେ
ସୂର୍ଯ୍ୟୋଦୟେ କମଳିନୀ ଯଥା ହସିଫୁଟେ ।
ତୃଷ୍ଣା-ବୃଦ୍ଧାନାରୀ ସଦା ଭ୍ରମି ବୁଲୁଥାଏ
ଉପେକ୍ଷା କଲେ ହେଁ ଜୀବ, ସଦା ଛକିରହେ ।
ତୃଷ୍ଣା ଡୋରେ ବନ୍ଧାରହି ଜୀବରୂପୀ ପଶୁ
ଯେତେ ଚେଷ୍ଟାକଲେ ଖସି ନପାରେ ତା ପାଶୁ ।
ଏ ଜୀବକୁ ତୃଷ୍ଣା କେଭେଁ ଛାଡ଼ି ନପାରଇ
ଛାଇପରି ସଦା ତାର କଚ୍ଛ ଧରିଥାଇ ।
ଦୁଷ୍ଟା ନାରୀଠାରୁ ତୃଷ୍ଣା କେଭେଁ ନୁହେଁ ଭିନ୍ନ
ସୁଗୁଣ ସବୁକୁ କରିଦିଏ ଅବଗୁଣ ।
ତା' ସଂସ୍ପର୍ଶେ ଆସି ମୁହିଁ ହୀନଠାରୁ ହୀନ
ମେଘ ଦେଖି ଚାତକର ଦଶାପରି ଜାଣ ।
ବର୍ଷା ବିନ୍ଦୁ ଦିଏ ତାକୁ ଯେତିକି ଆନନ୍ଦ
ପବନ ବହିଲେ ବଢ଼େ ତେତେ ତା ବିଷାଦ ।
ତୃଷ୍ଣା-ବାୟୁ ଶୁଭ ଗୁଣମାନ ନାଶକରେ
ମୋର ଦଶା ହୀନୁ ହୀନତର ବଢ଼ିଚାଲେ ।
ଆତ୍ମପଦ ପ୍ରାପ୍ତି ମୋର ଦୂରୁ ଦୂରତର
ମୋ ଅବସ୍ଥା ଭାବି ଦେଖ ଆହେ ମୁନିବର ।
କେବେ ଭ୍ରମର କମଳ ପରେ ଯାଇ ବସେ
ତଳପଟେ ବସିବାକୁ ପୁଣି ମନେ ରସେ ।
ତୃଷ୍ଣା-ଭ୍ରମର ତେସନ ସଂସାର-କମଳେ
କେଭେଁ ହେଲେ ସ୍ଥିରହୋଇ ବସି ସେ ନପାରେ ।
ଯେସନ ମୋତିରୁ ଜାତ ମୋତି ମାଳାମାନ
ତୃଷ୍ଣା-ମୋତି ଜନମାଏ ସଂସାର ଅରଣ୍ୟ ।
ଲୋଭୀଜନ ଅଭିଳାଷ କେଭେଁ ନପୂରଇ
ଆଶା ବୈତରଣୀ ତାର ବଢ଼ି ଚାଲିଥାଇ ।
ତୃଷ୍ଣା ସାଗରେ ଭରିଛି ବହୁ ଦୁଃଖ-ରତ୍ନ
ତହୁଁ ନିବୃତ୍ତି ଲଭିବି କଲେ କେଉଁ ଯତ୍ନ ?
ବୈରାଗ୍ୟରୁ ହିଁ କେବଳ ନିବୃତ୍ତି ଜନମେ
ବୈରାଗ୍ୟସମ ଔଷଧ ନାହିଁ ଧରାଧାମେ ।
ଅନ୍ୟ କେଉଁ ଉପାୟରେ ତୃଷ୍ଣାର ବିନାଶ
ବିନା ଅନ୍ଧକାର ନାଶେ ନୁହଇ ପ୍ରକାଶ ।
ତୃଷ୍ଣା-ଲଙ୍ଗଳ ତାଡ଼ଇ ଗୁଣରୂପୀ ଧରା
ତୃଷ୍ଣାରୂପୀ ମଲ୍ଲୀ ପୁଣି ଗୁଣ ରସେ ଭରା ।
ତୃଷ୍ଣା-ରୂପୀ ଧୂଳି ଉଡ଼ି ହୃଦରୂପୀ ଜଳେ
କଳୁଷିତ କରିଥାଏ ତାକୁ କାଳେ କାଳେ ।
ବର୍ଷାକାଳେ ନଦୀ ବୃଦ୍ଧିପାଇ ପୁଣି ଛିଡ଼େ
ଅଭିଷ୍ଟ-ଭୋଗ ପାଇଲେ ଜୀବ ମନ ବଢ଼େ ।
ଅଭିଷ୍ଟ-ଭୋଗ ଛିଡ଼ିଲେ ଜୀବ ହୁଏ ଦୁଃଖି
ପୁନିଅବଳେ ତ ଦଣ୍ଡେ କେ ପାରିବ ରୋକି ।
ପବନ ଉଡ଼ାଏ ଶୁଷ୍କ ତୃଣକୁ ଯେସନ
ମୋ ଚିତ୍ତ ଉଡ଼ାଇ ନିଏ ତୃଷ୍ଣାଟି ତେସନ ।

କେସନ ତୃଷ୍ଣା ବିନାଶେ, ଆତ୍ମ-ପଦ ଲାଭ
ହୋଇବ ବତାଇଦିଅ ହେ ମୁନି ପୁଙ୍ଗବ
ଦୁଃଖର ବିନାଶ ହୋଇ ମିଳିବ ଆନନ୍ଦ
ଜୀବନ-ପୁନିଅ ଚନ୍ଦ୍ର ପାଇ ଆତ୍ମପଦ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ତୃଷ୍ଣାଗାରୁଡ଼ି ବର୍ଣ୍ଣନେ**
**ନାମ ଦ୍ୱାଦଶ ସର୍ଗଃ ।**



## ତ୍ରୟୋଦଶ ସର୍ଗଃ
## ଦେହ ନୈରାଶ୍ୟ

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ମୁନିବର
ପ୍ରଥମେ ଏ ଦେହକଥା କରନ୍ତୁ ବିଚାର ।
ଆର୍ଦ୍ର ତନ୍ତୁ ଉପାଦାନେ ଗଢ଼ା ଏ ଶରୀର ।
ଏଥି ଜୀବ ଶୋହେ ଯଥା ଜଳେ ଭାନୁକର ।
ମଳ, ମୂତ୍ର, ରେତ, ରକ୍ତ ଆଦି ପରିବ୍ୟାପ୍ତ
ନାନା ଶିରା ପ୍ରଶିରାରେ ଏ ଦେହ ନିର୍ମିତ ।
ନାନାଦି ବିକାରେ ପୂର୍ଣ୍ଣ, ଏ ଦେହ ନଶ୍ୱର
କେବଳ ଦୁଃଖ ଭୋଗର କାରଣ ମାତର ।
ଏ ଦେହ ବିରୂପୀ ଏହା ଅଟେ ଯୁକ୍ତିଯୁକ୍ତ
ଅଜ୍ଞ ଏ, ଅଭିଜ୍ଞପରି ହୁଏ ପ୍ରତିଭାତ ।
ଅଭବ୍ୟ ହେଲେ ହେଁ ଏହା ଭବ୍ୟ ଅଟେ ଜାଣ
ନୁହଇ ଏ ଜଡ଼, ପୁଣି ନୁହଇ ଚେତନ ।
ଏଥିରେ କୌଣସି କାର୍ଯ୍ୟ ନୁହଇ ସାଧିତ
ତେଣୁ ଏହାର ରକ୍ଷଣେ ଉଦାସ ମୋ ଚିତ୍ତ ।
ସାଧୁ ପୁରୁଷ ଏ ଦେହେ ମୁକ୍ତିଲାଭ କରେ
ଅସାଧୁ ଜନ ଭ୍ରମୁଣ ଥାଏ ଭବାବ୍ଧିରେ ।
ଯଦି କେହି କହେ ଦେହ ଅଟଇ ଚିନ୍ମୟ
ଜାଣ ଏହା ତାର ଅଜ୍ଞତାର ପରିଚୟ ।
ଅନଳ ସଂଯୋଗେ ଲୌହ ଅଗ୍ନିପରି ଦିଶେ
ଜଳି ଉଠୁଥିଲେ। ମଧ୍ୟ ଭସ୍ମ ନୁହଇ ସେ ।
ତାଦୃଶ ଏ ଦେହ ନୁହେଁ ଜଡ଼ ବା ଚେତନ
ତହିଁର କାରଣ ଏବେ ଶୁଣ ତପୀରାଣ ।
କାର୍ଯ୍ୟକ୍ଷମ ହେତୁ ଜଡ଼ ନୁହଇ ଶରୀର
ଜ୍ଞାନାଭାବେ ଅଚେତନ ବୋଲଇ ସଂସାର ।
ମଧ୍ୟମଭାବ ଶରୀର ବୁଝିବ ସୁଜାଣ
ଯେଣୁ ଆତ୍ମା ଏଥି ମଧ୍ୟେ କରେ ବିଚରଣ ।
ଚୈତନ୍ୟ ଆତ୍ମା ଏଥିରେ ପୂରି ରହିଛନ୍ତି
ବିକାରବାନ ବସ୍ତୁରେ ଜଡ଼ି ସେ ଅଛନ୍ତି ।
ଅସ୍ଥି, ମାଂସ, ମଳ, ମୂତ୍ର, ରକ୍ତ ନାଡ଼ିଗଣ
ବିକାର ଘଟାନ୍ତି ଦେହେ ଆହେ ମୁନିରାଣ ।
ଦୁଃଖାଗ୍ନିର ଘର ଅଟେ ଏ ନର ଶରୀର
ଏଥି ବାସକରି ଆତ୍ମା ହୁଏ କଲବଲ ।
ଇଷ୍ଟକୁ ପାଇଣ ଜୀବ ହୁଏ ହରଷିତ
ଅନିଷ୍ଟ ପ୍ରାପ୍ତିରେ ଶୋକେ ହୁଏ ଦଗ୍ଧୀଭୂତ ।
ତେଣୁକରି ଏ ଶରୀରେ ଇଚ୍ଛାନାହିଁ ମୋର
ଯେଣୁ ଘାରିଛି ତାହାକୁ ଅଜ୍ଞାନ ଅନ୍ଧାର ।
ଏହି ଅମଙ୍ଗଳ ଦେହ, ଅହଂଭାବ ପୂର୍ଣ୍ଣ
ତେଣୁ ମୋ ମତରେ ଦେହ ଦୁଃଖର କାରଣ ।
ନରଦେହେ ବାସକରି ଦର୍ପୀ-ଅହଙ୍କାର
ନାନାଭାବେ ରଡ଼ିଛାଡ଼େ ଯେସନେ ମାର୍ଜାର ।
ଅହଂ, ଅହଂ ବୋଲି ସଦା କରୁଥାଏ ଧ୍ୱନି
କେବେହେଲେ ହୋଇନପାରଇ ସେ ମଉନୀ ।
ଗର୍ବ ବିରହିତ ଧ୍ୱନି କର୍ଣ୍ଣକୁ ଶୋଭନ
ଅହଙ୍କାର ଭରା ଶବ୍ଦ କଟୁ, ଅଶୋଭନ ।
ବିଜୟ ଘୋଷଣା ପାଇଁ ବାଜେ ଯେବେ ଢୋଲ
ସେ ନିନାଦ ସମସ୍ତଙ୍କୁ ଲାଗଇ ମଧୁର ।
ଶରୀର-ରୂପୀ ନଉକା ଭୋଗ-ବାଲୁକାରେ
ଅଟକି ରହିଛି ପାର ହେବ କିପ୍ରକାରେ ?
ବୈରାଗ୍ୟ-ଜଳ ବୃଦ୍ଧିର ପ୍ରବାହ ଚଳିଲେ
ଅଭ୍ୟାସ-ନଉକା ଭାସମାନ ତତକାଳେ ।
ଭବ ପାରାବାର ତଟେ ଆସି ପହଞ୍ଚଇ
ପରମାତ୍ମା ଭେଟ ଜୀବ ଅଚିରେ ଲଭଇ ।
ଶରୀର-ନଉକା ଭବସିନ୍ଧୁ ତୃଷ୍ଣା-ଜଳେ
ଅହରହ ଭାସମାନ ଲାଗିବାକୁ କୂଳେ ।
ଭୋଗ-ନକ୍ର ବାଧାଦିଏ କୂଳେ ଯିବାପାଇଁ
ଭୋଗ, ବିଳାସ କଣ୍ଟକ ଆତ୍ମପଦ ପାଇଁ ।
ବୈରାଗ୍ୟ-ବାୟୁ, ଅଭ୍ୟାସ-ଆହୁଲାର ବଳେ
ଶରୀର ନଉକା ପାରହେବ ଭବ ଜଳେ ।
ଉପାୟ କରି ଯେ ଭବ-ସିନ୍ଧୁ ପାରହୋଇ
ସୁଖି ସେହି ଜନ ସଦା ନିତ୍ୟ ସୁଖ ପାଇ ।

ନୋହିଲେ ପରମାପଦ ଜଳେ ବୁଡ଼ିମରେ
ଯେଣୁ ତୃଷ୍ଣା-ଛିଦ୍ରଥାଏ ସେ ନଉକା ତଳେ ।
ସଂସାର-ସାଗରେ ବୁଡ଼ି ପ୍ରାଣ ଉଡ଼େ ତାର
ଶେଷେ ଭୋଗ-ସାଗରର ହୁଏ ସେ ଆହାର ।
ସମାନ ନୁହନ୍ତି ଜାଣ ଜୀବ ଓ ଶରୀର
ଅଜ୍ଞଜୀବ ସ୍ୱଦେହକୁ ମଣଇ ନିଜର ।
ତୃଷ୍ଣା ଛିଦ୍ରମାନ ତାର ଦୁଃଖର କାରଣ
ନିତ୍ୟଶାନ୍ତି ପଥେ ପହୁଞ୍ଚାନ୍ତି ବିଘ୍ନମାନ ।
କ୍ଷଣେ ମାତ୍ର ଏ ଶରୀରେ ସୁଖ ଅନୁଭୂତ
ପର କ୍ଷଣରେ ବିଷାଦ ହୁଅଇ ସଂଜାତ ।
ଅତି ନିକୃଷ୍ଟ ଏ ଦେହ ଶୁଭ ଗୁଣ ହୀନ
ଯାବତ ଶୋକର ଜାଣ ଏହା ଜନ୍ମ ସ୍ଥାନ ।
ବୁଝିରଖ ଏହି ଦେହ ଅଟେ ବୃକ୍ଷସମ
ଭୁଜଦ୍ୱୟ ସେ ପାଦପ ଶାଖାବୋଲି ଜାଣ ।
ହସ୍ତ, ପଦ, ଆଙ୍ଗୁଠି ସେ ପାଦପ ବଲ୍ଲବ
ରୋଗ ବ୍ୟାଧିମାନ ଲତା ସମାନ ବୁଝିବ ।
ମସ୍ତକକୁ ବୁଝିବ ସେ ତରୁବର ଫଳ
ବୃକ୍ଷର କୋଟର ବୁଝ ନୟନ ଯୁଗଳ ।
ଜଂଘଦ୍ୱୟ ଅଟନ୍ତି ସେ ପାଦପର ସ୍ତମ୍ଭ
ଦନ୍ତଶ୍ରେଣୀ ପୁଷ୍ପରୂପେ ବଢ଼ାନ୍ତି ସୌରଭ ।
କାଠହଣା ଥଣ୍ଟମାରି ବୃକ୍ଷେ ଛିଦ୍ରକରେ
କଟୁତିକ୍ତ ବାଣୀ ପାଶେ କର୍ଣ୍ଣର ଗହ୍ୱରେ ।
ଶରୀରକୁ ଜର୍ଜରିତ କରି ସେ ପକାନ୍ତି
ଜନମ ମରଣ ଦୁଃଖ ତହିଁରେ ଭରନ୍ତି ।
କୁଠାର ବୃକ୍ଷକୁ ଛିନ୍ନ କରଇ ଯେସନ
ଶାସ୍ତ୍ର କୁଠାର ଦେହକୁ କରେ ଛିନ୍ନଭିନ୍ନ ।
ଏ ଦେହ ପାଦପ ଶୋଭା ଅତି କ୍ଷଣସ୍ଥାୟୀ
ପଲକ ମାତ୍ରକେ କେଣେ ବିଲୀନ ହୁଅଇ ।
ଏ ଦେହ-ବୃକ୍ଷର କାନ୍ତିରୂପକ ଛାୟାରେ
ଜୀବ-ରୂପକ ପଥିକ ବସି ଶ୍ରମ ହରେ ।
ଶ୍ରମମାରି ସେ ପଥିକ ତାର ବାଟେ ଯାଇ
ବୃକ୍ଷସହ ପଥିକର ସମ୍ପର୍କିତ ଏହି ।
ଦେହ, ଜୀବ ମଧ୍ୟେ ନାହିଁ ବାସ୍ତବ ସମ୍ପର୍କ
କାନ୍ତି ଉଡ଼ିଗଲେ ଚଳେ ଏ ଜୀବ-ପଥିକ ।
ଅତଏବ ଏ ଶରୀର କାହାର ନୁହଇ
ତା ପ୍ରତି ଆସ୍ଥା ଅନାସ୍ଥା ରହିବ କିମ୍ପାଇଁ ।

ପାରହେବା ପାଇଁ ଏହି ସଂସାର ସାଗର
ଜୀବ ଆଶ୍ରେ କରେ ଦେହ-ନୌକା ବାରମ୍ବାର ।
ଅଥଚ କାହାରି ଆତ୍ମ-ବୁଦ୍ଧି ନୁହେ ଜାତ
ଜୀବନ ମରଣ ଜାଲେ ଜୀବ ହରକତ ।
ଆତ୍ମତତ୍ତ୍ୱଜ୍ଞାନ ବିନା ସଂସାର ସାଗର
ପାର ହେବା କଥା ଅଟେ ବହୁ କଷ୍ଟକର ।
କ୍ଷୋଭର ବିଷୟ କିନ୍ତୁ ଏହି ଆତ୍ମଜ୍ଞାନ
କାହାରି ହୃଦରେ ସୁଦ୍ଧା ଲଭୁନାହିଁ ଜନ୍ମ ।
ଯେଉଁ ବାସଗୃହେ ବହୁ ଗର୍ତ୍ତ ରହିଥାଇ
ପ୍ରାଣର ଆଶଙ୍କାକରି କେହି ନରହଇ ।
ବୃକ୍ଷମାନଙ୍କରେ ବହୁ କୋଟର ବିରାଜେ
ବୃକ୍ଷ ମୂଳେ ବାସପାଇଁ ଜୀବ ଶଙ୍କା ଭଜେ ।
ଅଗଣିତ ଲୋମକୂପ ଏ ଦେହେ ଅଛଇ
ଆବର ନାନାଦି ଛିଦ୍ର ତହିଁ ବିରାଜଇ ।
ଜନଶୂନ୍ୟ ବନ ମଧ୍ୟେ ପ୍ରାଣର ଆଶଙ୍କା
ତହିଁ ବାସପାଇଁ ସବୁରିଙ୍କ ମନେ ଶଙ୍କା ।
ଏ ଦେହ-ବିଜନ-ବନେ ବାସ କରିବାକୁ
କାହାର ବିଶ୍ୱାସ ହେବ ଥରୁଥିବ ବୁକୁ ।
ରକ୍ତ ମାଂସାଦି ଅସାର ପଦାର୍ଥ ନିର୍ମିତ
ଏ ଦେହରେ ବାସକରିବାକୁ ମୁଁ ଦୁଃଖିତ ।
ସଂସାର-ଅରଣ୍ୟେ ଦେହ ରହିଅଛି ଉଭା
ଚିନ୍ତା-ଲତିକା ତା ମଧ୍ୟେ ପାଉଅଛି ଶୋଭା ।
କ୍ଷତ ବିକ୍ଷତ କରଇ ଦୁଃଖ ଘୁଣ ତାକୁ
ଜରା-ଜୀର୍ଣ୍ଣ ହୋଇ ତାର ପ୍ରାଣ ଦୁକୁ ଦୁକୁ ।
ଚପଳଚିତ୍ତ-ମର୍କଟ ଚଢ଼ି ତା ଉପରେ
ଅସ୍ତବ୍ୟସ୍ତ କରି ତାକୁ ପୀଡ଼େ ସଦା କାଳେ ।
ଅଶ୍ୱତ୍ଥ ବୃକ୍ଷ, ଏ ଦେହ କ୍ଷଣମାତ୍ର ମୋତେ
ସୁଖ ଦେଇ ନପାରଇ କ୍ଷୋଭ ଆସେ ଚିତ୍ତେ ।
ବିଷଧାରୀ ତୃଷ୍ଣା ସଦା ତହିଁ କରେ ବାସ
କ୍ରୋଧ-ବୟସ ସତତ କରନ୍ତି ନିବାସ ।
ଏ ଦେହ-ପାଦପ ହାସ୍ୟ-କୁସୁମେ ମଣ୍ଡିତ
ଏଥିରୁ ଶୁଭ, ଅଶୁଭ ଫଳ ସଦା ଜାତ ।
ସ୍କନ୍ଧ-ଶାଖା ସମନ୍ୱିତ ଏ ଦେହ ପାଦପ
ପ୍ରାଣ-ବାୟୁ ଦିଏ ତାକୁ ସର୍ବଦା ସନ୍ତାପ ।
ଏ ଦେହର ଜାନୁଦ୍ୱୟ ସ୍ତମ୍ଭପରି ଉଭା
ଇନ୍ଦ୍ରିୟ-ପକ୍ଷୀଏ ଏଥି ପାଉଛନ୍ତି ଶୋଭା ।

ଯୌବନ-ଛାୟା ଏହାର ଅତି ମନୋରମ
କନ୍ଦର୍ପ-ପଥିକ ଯହିଁ କରଇ ବିଶ୍ରାମ ।
ଏ ବୃକ୍ଷର ଶିରଦେଶେ କେଶ-ତୃଣ ରାଜେ
ଅହଙ୍କାର-ଗୃଧ୍ର ତହିଁ ସରାଗେ ବିରାଜେ ।
କର୍କଶ ଶବଦ ତାର ଦିଅଇ ସୂଚନା
'ଏ ସାରା ଜଗତ ମୋର ଭୋଗପାଇଁ ସିନା' ।
ଛିଦ୍ରମାନ ଭରିଛନ୍ତି ଅନ୍ତଃଦେଶେ ଯାର
ସେମାନଙ୍କୁ ମୁଦିଦେବା ଅତି କଷ୍ଟକର ।
ଏ ବୃକ୍ଷର ମୂଳ ଅଟେ କେବଳ ବାସନା
ଏ ଯେଉଁ ରସ ଶୋଷେ ତା ବିଷମାତ୍ର ସିନା ।
ସେ ରସରେ ଦେହ-ବୃକ୍ଷ ପଡ଼ଇ ଝାଉଁଳି
ସୁଖ-ଆଶାଲତା ତେଣୁ ପଡୁଛି ମଉଳି ।
ଏହି ଶରୀର ଅଟଇ ଅହଙ୍କାର ଘର
ଉଭା ଥାଉ ଅବା ଶୋଇପଡୁ ଧରାତଳ ।
ଭାଙ୍ଗିଯାଉ ଏହୁ କିମ୍ବା ରହୁ ସ୍ଥିର ହୋଇ
ତିଳେମାତ୍ର ସେଥିପ୍ରତି ଭ୍ରୂକ୍ଷେପ ମୋ ନାହିଁ ।
ଅହଙ୍କାର ସ୍ୱାମୀଙ୍କର ଭୃତ୍ୟ ଇନ୍ଦ୍ରିଗଣ
ଏ ଗୃହେ ଜାଗ୍ରତ ରହିଛନ୍ତି ସର୍ବକ୍ଷଣ ।
ବିଷୟ-ବାସନା ସେହି ସ୍ୱାମୀଙ୍କ ଘରଣୀ
କାମାଦି ରାଗମାନଙ୍କ ରଞ୍ଜିତା ସେ ପୁଣି ।
ତେଣୁକରି ଏ ଗୃହଟି ନୁହେଁ ମୋର କାମ୍ୟ
ଏ ଗୃହରୁ ମୁକ୍ତିବାଟ ବତାନ୍ତୁ ଆପଣ ।
ବାଉଁଶ ନଳିର ସମ ଏ ଶରୀର ପୋଲ
ଶିରାମାନଙ୍କେ ଆବଦ୍ଧ ଦିଶଇ ଉଜ୍ଜ୍ୱଳ ।
ରସ, ରକ୍ତ, କାଦୁଅରେ ଲିପାପୋଛା ହୋଇ
ସଦା ଏ ଜୀବ ନୟନ ମନ ହରୁଥାଇ ।
ଅସ୍ଥିମନ ଏ ଗୃହର ସ୍ତମ୍ଭର ସମାନ
ବାହୁ କାଠ ଦ୍ୱୟଦ୍ୱାରା ସ୍ଥିର ଏହା ଜାଣ ।
ଗୁଳ୍‌ଫଟି ଅଟଇ ଜଙ୍ଘ ସ୍ତମ୍ଭର ଆଧାର
ମସ୍ତକ ରହିଛି ନିଜ ଆଧାରରେ ସ୍ଥିର ।
ମୂଳଟି ଶିଥିଳ ହେଲେ ଗୃହଟି ଶିଥିଳ
କିମ୍ବା ଏ ଶିଥିଳ ଗୃହବାସ ହେବ ମୋର ?
ଇନ୍ଦ୍ରିୟ-ନନ୍ଦନ, ଚିନ୍ତା-ନନ୍ଦିନୀ ଏ ବେନି
କ୍ରୀଡ଼ାରତ ଏ ଗୃହରେ ସମୟ ନଜାଣି ।
ଏ ଢଙ୍ଗର କ୍ରୀଡ଼ା ଗୃହ ନୁହେଁ ମୋ ବାଞ୍ଛିତ
ଏଣୁ ସର୍ବାଦୌ ଏହାକୁ କରିବ ତ୍ୟକତ ।

ଯେ ଗୃହର ଶିରୋଭାଗ ଶିରାଙ୍କ ଆବାସ
କେଶ ଗୁଚ୍ଛରେ ଆବୃତ ଯାର ଶିରଦେଶ ।
କୁଣ୍ଡଳ ପରି ଶୋଭନ୍ତି ଯହିଁ କର୍ଣ୍ଣମାନ
କାଠେ ଖୋଳା ଚିତ୍ରପରି ଯା ଅଙ୍ଗୁଳିମାନ ।
ଆକର୍ଷି ପାରେ କି ସେହି ଗୃହ ମୋର ଚିତ୍ତ
କି କାରଣେ ଏଥିପ୍ରତି ହେବି ଆକର୍ଷିତ ?
ଅମଙ୍ଗଳ ଦେହ ବୃକ୍ଷେ ଇଚ୍ଛା ନାହିଁ ମୋର
ଯେଣୁ ଏ ପରମ ଦୁଃଖମାନଙ୍କ ଭଣ୍ଡାର ।
ଇନ୍ଦ୍ରିୟାଦି ମନ, ପ୍ରାଣ, ବୁଦ୍ଧି, ଅହଂଭାବ
ଏହାଙ୍କ ପ୍ରଭାବ ଯେବେ ଦେହୀ ତେଜି ଦେବ ।
ମୁକତି ପଥ ତାହାର ଫିଟିବ ଅଚିରେ
ଅନ୍ୟଥା ସମ୍ଭବ ନୁହେଁ ଭବ ତରିବାରେ ।
ପବିତ୍ର ସ୍ଥାନରେ କରିବାକୁ ବସବାସ
ଶ୍ରେଷ୍ଠ ପୁରୁଷଗଣଙ୍କ ନିୟତ ପ୍ରୟାସ
ଏ ନଶ୍ୱର ଦେହ ଚିରକାଳ ଅପବିତ୍ର
ତହିଁ ବାସ କରେ ଯେହୁଁ ସେ କାହୁଁ ପବିତ୍ର ?
ଏ ଦେହ-ଗୃହ ନିର୍ମିତ ନଶ୍ୱର ବସ୍ତୁରେ
ରକ୍ତ, ମାଂସ, ମୂତ୍ର, ବିଷ୍ଠା, ଶିରା, ପ୍ରଶିରାରେ ।
ଅହଙ୍କାର ଏ ଗୃହର ଗୃହସ୍ଥ ଅଟଇ
ଘରଣୀ ରୂପରେ ତୃଷ୍ଣା-ରାଣୀ ସେବୁଥାଇ ।
କାମ, କ୍ରୋଧ, ଲୋଭ, ମୋହ, ଏମାନେ ତ ପୁତ୍ର
କିଏ ନ କହିବ ଏହି ଗୃହ ଅପବିତ୍ର ?
ଏ ଶରୀର ରହୁ ଅବା ହୋଇଯାଉ ଲୀନ
ଏଥିରେ ମୋହର କିଛି ନାହିଁ ପ୍ରୟୋଜନ ।
ଏ ଦେହଟି ଜାଣ ଏକ ସୁବୃହତ ଘର
ଇନ୍ଦ୍ରିୟ-ପଶୁଙ୍କ ଏଥି ସଦା ଅଧିକାର ।
ଯେବେ କେହି ଏହି ଗୃହ ମଧ୍ୟେ କରେ ବାସ
ଅତି ଦୁଃଖେ ପଡ଼ି ସେହୁ ହରାଏ ସାହସ ।
ଏଥିରହି ଅହଂଭାବ ଯେହୁ ଆଚରଇ
ଇନ୍ଦ୍ରିୟ-ପଶୁ ବିଷୟ ଶୃଙ୍ଗେ ଘାତ ପାଇ ।
ତୃଷ୍ଣା-ଧୂଳି ଉଡ଼ି ତାର ଶରୀରେ ପଡ଼ଇ
ତେଣୁ କରି ତା ଶରୀର ମଳିନ ହୁଅଇ ।
ଏହି ଶରୀରକୁ ମୋର ନ ବଳଇ ଇଚ୍ଛା
କଳହ ପୁରୁଷ ଯହିଁ ବାଢ଼େ ତା ପ୍ରତିଷ୍ଠା ।
ଜ୍ଞାନ ସମ୍ପଦ ଯହିଁରେ ନକରେ ପ୍ରବେଶ
ସେ ଶରୀର ପ୍ରତିକାର ବଢ଼ିବ ପ୍ରୟାସ ।

ଏ ଶରୀରେ ବାସବରେ ତୃଷ୍ଣା ନଟ ନାରୀ
ଇନ୍ଦ୍ରିୟ-ଖିଡ଼ିକି ବାଟେ କରେ ଠରାଠରି ।
ଶମ ଦଶାଦି ସମ୍ପଦ ପଶି ନ ପାରନ୍ତି
ଅସଦ ଗୁଣମାନଙ୍କ ସଦା ତହିଁ ଗତି ।
ସୁଷୁପ୍ତି ଶଯ୍ୟା ସେଥିରେ ଶେଯା ରହିଥାଏ
ତହିଁ ଆରାମରେ ଜୀବ ସୁଖ ନିଦ୍ରା ଯାଏ ।
କ୍ଷଣିକ ସୁଖ ତାହାକୁ ଦେଖାଏ ସପନ
ଭାବୁଥାଏ ସ୍ୱର୍ଗଠାରୁ ବଡ଼ ଏ ଭୁବନ ।
କାମ କ୍ରୋଧ ଆଦି ଯେତେ ତୃଷ୍ଣା ପରିବାର
ସେ ସୁଖ ସପନେ ବାଧା ଦ୍ୟନ୍ତି ବାରମ୍ବାର ।
ସରବ ଦୁଃଖର ମୂଳ ଅଟେ ଏ ଶରୀର
ପ୍ରତ୍ୟାଖ୍ୟାନ ତାକୁ କରୁଅଛି ମୁନିବର ।
ଏହି ଶରୀରକୁ ଏକ ବୃକ୍ଷ ବୋଲି ଜାଣ
ତୃଷ୍ଣା ଡାକିନୀ ତହିଁରେ କରେ ଅବସ୍ଥାନ ।
ଦୁର୍ଗନ୍ଧ ପଦାର୍ଥ ପ୍ରତି ଡାଙ୍କୁଣୀ ଯେମନ୍ତ
ଭୋଗ ଉପଭୋଗ ପାଇଁ ତୃଷ୍ଣା ଯେ ତେମନ୍ତ ।
ବାନର ଯେସନ ଧରି ବୃକ୍ଷକୁ ହଲାଏ
କେବେହେଲେ ବୃକ୍ଷକୁ ସେ ସ୍ଥିରତା ନଦିଏ ।
ତୃଷ୍ଣା ବାନରୀ ତାଦୃଶ ସର୍ବଦା ହଲାଏ
ନର ତନୁ କେବେହେଲେ ସ୍ଥିରତା ନପାଏ ।
ଖେଦାରେ ଆବଦ୍ଧ ହୁଏ ଯଥା ମତ୍ତହସ୍ତୀ
ଶରୀର-ଖେଦାରେ ଅଜ୍ଞ ଜୀବ ପାଏ ଶାସ୍ତି ।
ଏସନ ଦୁଃଖଦାୟକ ଯେବଣ ଶରୀର
ତିଳେମାତ୍ର ତା'ରେ ମୋର ନାହିଁ ଅଙ୍ଗିକାର ।
ହାତୀର କାନ ଯେସନ ସଦା ହଲୁଥାଇ
ଜୀବକୁ ମୃତ୍ୟୁ ତେସନ ସଦା ଦୋହଲାଇ ।
ଅନତି ବିଳମ୍ବେ ମୃତ୍ୟୁ ତାକୁ ଘେନି ଯାଇ
ତେଣୁ ଏ ନଶ୍ୱର ଦେହ ମୋତେ ନ ରୁଚଇ
କୃତଘ୍ନ ଅଟଇ ଏହି ଜୀବଧାରୀ ଦେହ
ଭୋଗ ବିଳାସେ ଜୀବକୁ କରିଥାଏ ମୋହ ।
ଏ ଦେହ, ମରଣେ ନୁହେ ସଖା ମାନବର
ପରଲୋକେ ଯାଏ ଜୀବ ତେଜି ଏ ଶରୀର ।
ଭୋଗପାଇଁ ଜୀବ ବହୁ ଯତ୍ନେ ରଖେ ଦେହ
ଅବିଳମ୍ବେ ମୃତ୍ୟୁ ତାର ଭାଙ୍ଗେ ସବୁ ମୋହ ।
ଯେଉଁ ଦେହ ଗୋଟି ଅଟେ ଏସନ କୃତଘ୍ନ
ମନ୍ଦୁଁ ମୁଁ ପୋଛିଦେଇଛି ବୋଲି ତାକୁ ଜାଣ ।

ଆଶ୍ଚର୍ଯ୍ୟର କଥା ଏକା ଶୁଣିବା ଗୋସାଇଁ
ଜୀବହେତୁ ଏ ଶରୀର ନାନା ଭୋଗ ପାଇ ।
ଜୀବ ଛାଡ଼ିଗଲେ ସଙ୍ଗେ ନକରେ ଗମନ
ତେଣୁ ଏ ଶରୀର ଦେଖ କେଡ଼େ ଯେ କୃତଘ୍ନ ।
ଏହି ଦେହଲାଗି ମୋର ତିଳେନାହିଁ ବାଞ୍ଛା
ଏଥି ଘାଣ୍ଟି ହୋଇ ସଦା ଯାଉଥିବି ମୂର୍ଚ୍ଛା ।
ଧୂଳି ଉଡ଼ିଯାଏ କିନ୍ତୁ ମାର୍ଗ ଉଡ଼େ ନାହିଁ
ଜୀବ ଛାଡ଼ିଗଲେ ଦେହ ପଡ଼ି ରହିଥାଇ ।
ଶରୀର ମମତା ଭୁଲି ନପାରେ ସେ ଯେଣୁ
ପରଲୋକ-ଯାତ୍ରା ନାନା କଷ୍ଟଦିଏ ତେଣୁ ।
ପଦ୍ମପତ୍ରେ ଜଳବିନ୍ଦୁ ଯଥା ଥର ଥର
କ୍ଷଣଭଙ୍ଗୁର ଶରୀର ତେସନ ଅସ୍ଥିର ।
ଦେହକୁ ବିଶ୍ୱାସ ଯିବା ମୂର୍ଖତା କେବଳ
ଶରୀର ପ୍ରତି ମମତା ଅତି ଦୁଃଖକର ।
ଧନୀ, ଏ ଶରୀରେ ନାନା ଉପଭୋଗ କରେ
ନିର୍ଧନ ଭୋଗ ଅଭାବେ ମରେ ହାହକାରେ ।
କାହାରିକି ଜରା, ମୃତ୍ୟୁ କେଉଁ ନଛାଡନ୍ତି
ବିଶେଷତ୍ୱ ଏ ଦେହରେ ଲେଶମାତ୍ର ନାସ୍ତି ।
ତୃଷ୍ଣାବଶ ଭୋଗପାଇଁ ଜୀବ ଥାଏ ଧାଇଁ
ଦୁଃଖର କାରଣ ଏହା, ମୂର୍ଖ ନ ବୁଝଇ ।
ଘରେ ପୋଷି ଉରଗକୁ ଦୁଧ ପିଆଇଲେ
ଓଲଟି ନେବଟି ପ୍ରାଣ ଜାଣିଅଛି ଭଲେ ।
ତୃଷ୍ଣା-ନାଗୁଣୀ ସହିତ ମଇତ୍ରୀ ବସିଲେ
ଅବଶେଷେ ଜୀବକୁ ସେ ଦଂଶୀ ନାଶେ ହେଳେ ।
ତେଣୁ ଉପଭୋଗ ପାଇଁ ପ୍ରଯତ୍ନ ମୂର୍ଖତା
ଜାଣୁ ଜାଣୁ ମୂର୍ଖ ଭୁଲିଥାଏ ନିରାପତ୍ତା ।
ବିଜୁଳି ପ୍ରକାଶ ପୁଣି ପ୍ରଦୀପ ଆଲୋକ
କାହୁଁ ଆସି କାହିଁ ଯାଏ ଏ କଥା ପ୍ରତ୍ୟକ୍ଷ ।
କାହୁଁ ଆସି କାହିଁ ଯାଏ ଏ ଜୀବର ପ୍ରାଣ
ଏକଥା ଜାଣିପାରିବା କଠିନୁ କଠିନ ।
ପବନ ବହିବା ପରି ଜୀବ ଯାଆ ଆସ
ଶରୀର ଯିବା ଆସିବା ଅଟଇ ତାଦୃଶ ।
ଶରୀର ପ୍ରତି ମମତା ଦୁଃଖର କାରଣ
ଏସବୁ ଜୀବ ବୁଝିବ ଆଉ କେଉଁଦିନ ?
ମରୁସ୍ଥଳେ ମରୀଚିକା ଭ୍ରମେ ଯଥା ମୃଗ
ଆଶା ମରୀଚିକା ଭ୍ରମେ ସବୁରି ସରାଗ ।

ସାଗର ବୁଦ୍‌ବୁଦେ ଆସ୍ଥା ଯଥା ଅକାରଣ
ଏ ଦେହେ ଆସ୍ଥା ସ୍ଥାପନ ବିଫଳ ତେସନ ।
ଭରସା ନରଖ ଏହି ନଶ୍ୱର ଶରୀରେ
ଶେଷରେ ବିନାଶ, ତାକୁ ସ୍ଥିର କିଏ କରେ ?
ଶୁଖିଲା ଅହଂଭାବରେ ନାହିଁ ମୋ ମମତା
ତାର ହୃଷ୍ଟପୁଷ୍ଟ ଲାଗି ନକରେ ମୁଁ ଚିନ୍ତା ।
କାଠ ଭସ୍ମ ହେଲେ ଯଥା କାମେ ନ ଆସଇ
ଶରୀରଟି ଜଳିଯିବା ତେମନ୍ତ ଅଟଇ ।
କାଷ୍ଠ ରୂପେ ଦେହକୁ ଯେ ଜ୍ଞାନାଗ୍ନିରେ ପୋଡ଼େ
ଅଚିରେ ପରମ ସିଦ୍ଧି ଲାଭ କରିପାରେ ।
ଆଦର୍ଶ ମାରଗ ଧରି ଯେ ମୂଢ଼ ନ ଚଳେ
ଉତ୍କଟ ଦୁଃଖାନଳେ ସେ ଦଗ୍ଧେ କାଳେ କାଳେ ।
ନୁହେଁ ମୁଁ ଏ ଦେହ କିମ୍ବା ଦେହ ନୁହେଁ ମୋର
ମୁଁ ତାହାର ନୁହେଁ କିମ୍ବା ସେ ନୁହେଁ ମୋହର ।
ବାସନା ରହିତ ମୁହିଁ ଜାଣ ମୁନିଶ୍ୱର
ନିରାଶୀ ମୁଁ, ଏ ଶରୀରେ ନାହିଁ ଦରକାର ।
କିଛିମାତ୍ର ପ୍ରୟୋଜନ ନାହିଁ ଏ ଶରୀରେ
କହ କିପରି ପରମ ପଦ ଲଭିପାରେ ।
ଦେହାଭିମାନ ଯେ ନର ତ୍ୟାଗ କରିଅଛି
ପରମାନନ୍ଦ ପୁରୁଷ ମୁଁ ତାଙ୍କୁ ମଣୁଛି ।
ଦେହାଭିମାନରେ ସଢ଼ି ଯାଉଛି ଯେ ନର
ପରମ ଦୁଃଖି ସେ ଜାଣ ଆହେ ମୁନିବର ।
ଦୁଃଖ ବୋଲି କରି ଯାା କହଇ ଜଗତ
ଏ ଶରୀର ସଂଯୋଗରୁ ତାହା ସବୁ ଜାତ ।
ମାନ, ଅପମାନ, ଜରା, ମୃତ୍ୟୁ, ଦମ୍ଭ-ଭ୍ରାନ୍ତି
ମୋହ, ଶୋକ ଆଦି ସବୁ ବିକାର ଅଟନ୍ତି ।
ଦେହର ସଂଯୋଗବଶ ଏମାନଙ୍କ ଜନ୍ମ
ଦେହାଭିମାନୀଙ୍କୁ ଧିକ ଧିକ ବୋଲି ଜାଣ ।
ସର୍ବ ଆପଦ ବିପଦ ତାର ସମ୍ମୁଖୀନ
ତହୁଁ ମୁକ୍ତି ଲଭିବାକୁ ବାଟ ନାହିଁ ଜାଣ ।
ସାଗରେ ମିଳନ୍ତି ଯଥା ସର୍ବ ସ୍ରୋତସ୍ୱତୀ
ଯାବତ ଦୁଃଖ ଦେହାଭିମାନେ ହିଁ ଭୋଗନ୍ତି ।
ତ୍ୟାଗ କରିଅଛି ଯେହୁ ଦେହ ଅଭିମାନ
ଉତ୍ତମ ପୁରୁଷ ବୋଲି ଖ୍ୟାତି ପାଏ ଜାଣ ।
ଶତକୋଟି ନମସ୍କାର ମୋର ତାଙ୍କ ପାଦେ
ସରବ ସମ୍ପଦ ତାଙ୍କୁ ମିଳେ ଅପ୍ରମାଦେ ।

ମାନସରୋବରେ ଯଥା ସର୍ବ ହଂସ ଯାନ୍ତି
ଗର୍ବହୀନଠାରେ ସର୍ବ ସମ୍ପଦ ଜୁଟନ୍ତି ।
ନିଜ ଛାଇ ଦେଖି ଶିଶୁ ଭୂତ ବୋଲି ଡରେ
ଭୂତଭୟ କେଣେ ଯାଏ ଜ୍ଞାନ ଜନମିଲେ ।
ଅହଙ୍କାର-ଭୂତ ଗ୍ରାସି ଥିବାରୁ ଏ ଦେହ
ଦେହ-ଆସ୍ଥା ଦୃଢ଼ୀଭୂତ ତହିଁ ନିଃସନ୍ଦେହ ।
ଅହଙ୍କାର ପିଶାଚର ବିନାଶ ଘଟିଲେ
ଆସ୍ଥା ଫାଶ ମୋ ବେକରୁ ଫିଟିଯିବ ହେଲେ ।
ସଦୟ ହୋଇ କହନ୍ତୁ ସେ ଉପାୟମାନ
ଯାହା ଘେନି ତୁଟିବ ମୋ ସଂସ୍କାର ବନ୍ଧନ ।
ଅଜ୍ଞାନ ପିଶାଚ ମୋତେ ଘାରି ବସିଥିଲା
ଶରୀରରେ ଆସ୍ଥା ମୋର ତା'ପରେ ଜନ୍ମିଲା ।
ବୀଜରୁ ଅଙ୍କୁର ଜାତ, ଅଙ୍କୁରରୁ ବୀଜ
ଅହଂକାର ଆତ୍ମା ଦୁହେଁ ସେହିପରି ବୁଝ ।
ବାଳକ ତ ନିଜ ଛାୟା ଦେଖି ଡରିଯାଏ
ବିଚାର କରନ୍ତେ ତାର ଭୟ ଭାଜିଯାଏ ।
ଅବିଚାର ହେତୁ ଭୂତଭୟ ତାର ସିଦ୍ଧ
ଅବିଚାର ହେତୁ ସର୍ବେ ଅହଙ୍କାରବଦ୍ଧ ।
ପ୍ରକାଶ ହେତୁ ଯେସନ ଅସ୍ତ ଅନ୍ଧକାର
ବିଚାର ହେତୁ ତେସନ ନଷ୍ଟ ଅହଙ୍କାର ।
ଯେବଣ ଶରୀର ପାଇଁ ପୋଷିଅଛି ଆସ୍ଥା
ଜଳବତ ଅସ୍ଥିର ସେ ବୁଝନ୍ତୁ ମହାତ୍ମା ।
ବିଦ୍ୟୁତ ଚମକ କିମ୍ବା ଗନ୍ଧର୍ବ ନଗରୀ
ଶରୀରେ ଆସ୍ଥା ପୋଷଣ ଜାଣ ସେହିପରି ।
ଶରୀରରେ ଏ ଆସ୍ଥାକୁ ପୋଷେ ଅହଙ୍କାର
ଜାଗତିକ ବସ୍ତୁ ପ୍ରତି ଯେ କରେ ଆଦର ।
ମହାମୂର୍ଖ ତା'ଠାରୁ କେ ଜଗତରେ ନାହିଁ
ଅଭିମତ ବ୍ୟକ୍ତ କଲି ବୁଝନ୍ତୁ ଗୋସାଇଁ ।
ସ୍ୱପ୍ନବତ୍ ଜଗତ ମିଥ୍ୟା ଧ୍ରୁବ ବୋଲି ଜାଣ
ତାହାକୁ ଯେ ସତ୍ୟ ମଣେ ସେ ସିନା ଅଜ୍ଞାନ ।
ନିଜର ବନ୍ଧନ ପାଇଁ ପ୍ରଯତ୍ନ ଯେ କରେ
ଭବାବ୍ଧିରେ ଘାଣ୍ଟି ହେଉଥାଏ କାଳେ କାଳେ ।
ଘୁଣ ଯେସନ ଭ୍ରମର ମୃତ୍ୟୁର କାରଣ
ପ୍ରଦୀପ ତେସନ ନାଶେ ପତଙ୍ଗର ପ୍ରାଣ ।
ଅଜ୍ଞାନୀର ଭୋଗଇଚ୍ଛା, ଦେହ ଅଭିମାନ
ପରିଣାମ ଫଳ ତାର ଆତ୍ମ ବିନାଶନ ।

ପ୍ରାଣ ଧାରଣର ଇଚ୍ଛା କେଉଁ ନାହିଁ ମୋର
ଶରୀରାଭିମାନ ଦିଏ ଦୁଃଖ ଘୋରତର ।
ଅଭିମାନ ଛାଡ଼ିବଇଁ, ନାହିଁ ଭୋଗବାଞ୍ଛା
ପରମ ପଦ ପ୍ରାପତ ସଦା ମୋର ଇଚ୍ଛା ।
ଯେ ପଦ ଲଭିବା ପରେ ପୁନରାଗମନ
କଦାପି ନ ହେବ ସ୍ୱାମୀ କର ତା ବିଧାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ
ଦେହ ନୈରାଶ୍ୟ ବର୍ଣ୍ଣନେ
ନାମ ତ୍ରୟୋଦଶ ସର୍ଗଃ ।**



## ଚତୁର୍ଦ୍ଦଶ ସର୍ଗଃ

## ବାଲ୍ୟାବସ୍ଥା-ବୈରାଗ୍ୟ

କହନ୍ତି ଶ୍ରୀରାମ ଏବେ ଶୁଣ ମୁନିଶ୍ୱର
ବାଲ୍ୟ ଅବସ୍ଥାର ଦୁଃଖ ଅତି ଭୟଙ୍କର ।
ସଂସାର ସାଗରେ ଜନ୍ମଲାଭ କରି ଜୀବ
ଯେ ଦୁଃଖ ଭୋଗେ ସେ ତାହା କେ ବର୍ଣ୍ଣିପାରିବ ।
ପରମ ଦୀନ ଅବସ୍ଥା ଆଣେ ବାଲ୍ୟକାଳ
ନାନା ଅବଗୁଣମାନ ହୋଇଯାନ୍ତି ଠୁଳ ।
ନାନାଦି ବିକାରମାନ ଘେରିଯାନ୍ତି ତାକୁ
ନ ଦିଶଇ କିପରି ସେ ତରିବ ସେ ଦୁଃଖୁ ।
ଆଶକ୍ତତା, ଦୁର୍ବଳତା, ମନ ଚପଳତା
ଗୋଟିଏ ଗୋଟିଏ ଏ ତ ବଡ଼ ବଳବାନ
ଏକତ୍ର ଯୁଟନ୍ତେ ଜୀବ ହୁଏ ହଇରାଣ ।
ଏହି ବାଲ୍ୟାବସ୍ଥା ନାନା ବିକାରରେ ପୂର୍ଣ୍ଣ
ଅତି କଷ୍ଟକର ସେହି ବିକାର ଦମନ ।
କୌଣସି ପଦାର୍ଥ ଦେଖି ହୁଏ ଧାବମାନ
ତାର ପ୍ରାପ୍ତି ପରେ ପୁଣି ଅନ୍ୟ ପ୍ରତି ମନ ।
କେଉଁ ସ୍ଥିର ନରହଇ ବାଳକକୁ ମନ
ଗୋଟିକ ପରେ ଗୋଟିକ ପ୍ରତି ଆଲୋଡ଼ନ ।
ବାନର ପ୍ରକୃତି ଯଥା ସର୍ବଦା ଅସ୍ଥିର
କା' ଉପରେ ରାଗ ହେଲେ ଜଳେ ତା ଅନ୍ତର ।
ବଡ଼ ବଡ଼ ଇଚ୍ଛା ତାର ଜାଗିଉଠେ ମନ
ହାସଲ କରି ନ ପାରି ଜଳେ ତା ପରାଣ ।
ସଦା ସର୍ବଦା ତା ମନେ ତୃଷ୍ଣା ଜାଗରିତ,
ପ୍ରତିକ୍ଷଣ ମନ ମଧ୍ୟେ ହୁଏ ଭୟଭୀତ ।
ଭୟଭୀତ ହେତୁ ଶାନ୍ତି ତାର ଆଉ କାହିଁ
ଅନ୍ତରେ ଦହନ ହେତୁ ମନ ଜଳୁଥାଇ ।
ବାଳକ, ବାନର ତେଣୁ ଅଟନ୍ତି ସମାନ
ପ୍ରକୃତି ବଶରୁ ଶାନ୍ତ ନୁହେଁ ତାଙ୍କ ମନ ।
ଲୁହା ଶିକୁଳିରେ ହାତୀ ବନ୍ଧା ହୋଇଥାଏ
କଦଳୀ ବନ ତା ନେତ୍ରପଥେ ପଡ଼ିଯାଏ ।
ସେ ବନ ମନ୍ଥନ ପ୍ରତି ତାହାର ଲାଳସା
ବନ୍ଧନ ହେତୁ ଅପୂର୍ଣ୍ଣ ରହେ ତା ପିପାଶା ।
ଦୀନ ଦୁର୍ବଳଙ୍କ ପରି ଭାଗ୍ୟକୁ ଆଦରି
ଖୁଣ୍ଟମୂଳେ ପଡ଼ିରହେ ମନ ଯାଏ ମରି ।
ବାଳକର ମଧ୍ୟେ ରହି ଚୈତନ୍ୟ ପୁରୁଷ
ସବୁ ଜାଣେ, ମାତ୍ର ଭୋଗେ ହୁଏ ସେ ନିରାଶ ।
ଖୁଣ୍ଟବନ୍ଧା ହାତୀପରି ଯେଣୁ ବଳହୀନ
ଉପଭୋଗ ଆଶା ତାର ନହୁଏ ପୂରଣ ।
ବିନା ବିଚାରରେ ଯେଣୁ କାର୍ଯ୍ୟ କରିଯାଏ
ପରିଣାମ-ଫଳରେ ସେ ବହୁ ଦୁଃଖ ପାଏ ।
ବାଲ୍ୟ ଅବସ୍ଥା ଅଟଇ ଅଜ୍ଞାନରେ ପୂର୍ଣ୍ଣ
ସକଳ ସିଦ୍ଧି ସେ କାଳେ ସଙ୍କଟ ଆପର୍ଣ୍ଣ ।
କୌଣସି ବସ୍ତୁ ପ୍ରାପ୍ତିରେ କ୍ଷଣିକ ଆନନ୍ଦ
ସେ ଆନନ୍ଦ ଅସ୍ତ ଯାଇ ଆଣେ ନିରାନନ୍ଦ ।
ପେଚକ ସୁଖ ଉଭେଇ ଯାଏ ସୂର୍ଯ୍ୟୋଦୟେ
ବାଲ୍ୟାବସ୍ଥା ଅଜ୍ଞାନରୁ ଜୀବ ଦୁଃଖ ପାଏ ।
ବାଲ୍ୟାବସ୍ଥାର ପ୍ରଶଂସା କରେ ଯେଉଁ ଲୋକ
ମୂର୍ଖ ସେହୁ କିଛି ନବୁଝଇ ଅବିବେକ ।
ବିବେକ ବିହୀନ ଅଟେ ବାଲ୍ୟକାଳ ଜାଣ
ସଦା ଅପବିତ୍ର, ଲୋଭ ମୋହ ପରିପୂର୍ଣ୍ଣ ।
ଲୋଭବଶ ବସ୍ତୁପାଇଁ ଧାଏଁ ବାରମ୍ବାର
ଅପମାନ ପାଏ, ଶେଷେ ଧାଇଁ ବାଟା ସାର ।
ଆଶା ପୋଷି କୁତା ଧାଉଁଥାଏ ଦ୍ୱାର ଦ୍ୱାର
ଫଳ ତାର କିଛି ନାହିଁ ଗୋଇଠା ହିଁ ସାର ।
କୁକୁର ବାଳକ ଦୁହେଁ ଅଟନ୍ତି ସମାନ
ପ୍ରଲୋଭନ ଘେନି ସହୁଥାନ୍ତି ଅପମାନ ।
ନିର୍ବୋଧତା ପରିପୂର୍ଣ୍ଣ ଯେଉଁ ବାଳକାଳ
ତିଳେ ହେଲେ ମୋର ଶ୍ରଦ୍ଧା ନାହିଁ ତା ଉପର ।

ମାତା, ପିତା, ପଶୁ, ପକ୍ଷୀ ସମସ୍ତଙ୍କୁ ଡର
ଏପରି ଯେ ବାଲ୍ୟକାଳ ତାକୁ ମୋ ଜୁହାର ।
ଯେଉଁ ବାଲ୍ୟକାଳ ଅଟେ ଏଡ଼େ ଦୁଃଖ ପୂର୍ଣ୍ଣ
ତା ପ୍ରତି ମମତା ମୋର ଜନ୍ମିବା କଠିନ ।
ରମଣୀ ନୟନ ତଥା ନଦୀର ପ୍ରବାହ
ମନ ଚଞ୍ଚଳତା ତହୁଁ କ୍ଷୀପ୍ର ନିଃସନ୍ଦେହ ।
ବାଲ୍ୟ ଚପଳତା ଏମାନଙ୍କଠାରୁ ଶ୍ରେଷ୍ଠ
ଅବଶ୍ୟ ଏମାନେ ହେବେ ତାଙ୍କଠୁଁ ନିକୃଷ୍ଟ ।
ଏକ ପୁରୁଷରେ ବେଶ୍ୟା ମନ ନୁହେ ସ୍ଥିର
ଏକ ବସ୍ତୁଠାରେ ବାଳ ମନଟି ଅସ୍ଥିର ।
ମନ ଅସ୍ଥିରତା ଅଟେ ବିନାଶ କାରଣ
ଏ ଧ୍ରୁବବାଣୀ ନଛୁଏଁ କେଉଁ ବାଳ ମନ ।
ବୃଥା ଚେଷ୍ଟାରେ ବାଳକ ସଦା ଆସକତ
ଦୁଃଖ ସୁଖ ଇଚ୍ଛା ଘେନି ସର୍ବଦା ତପତ ।
ଯଥା ବୈଶାଖ-ଜ୍ୟେଷ୍ଠରେ ଧରଣୀ ତପତ
ବାଲ୍ୟାବସ୍ଥାରେ ବାଳକ ତେସନ ବ୍ୟଥିତ ।
ପାଠ ପଢ଼ିବାକୁ ଗଲେ ଗୁରୁଙ୍କୁ ତା ଡର
ଗରୁଡକୁ ଦେଖି ଯଥା ଥରେ ବିଷଧର ।
ଯମ ଡରେ ଯେଉଁପରି ରୋଗୀ ହୁଏ ଭୀତ
ନବୀନ ବିଦ୍ୟାର୍ଥୀ ଗୁରୁ ଦର୍ଶନେ ଶଙ୍କିତ ।
ଶାରୀରିକ ଅସାମର୍ଥ୍ୟ ଦିଏ ବଡ଼ ଦୁଃଖ
ସହିବାକୁ ଅସମର୍ଥ, ହୁଏ ସେ ବିମୁଖ ।
ବାକ୍‌ଶକ୍ତି ନଥିବାରୁ ନପାରେ ପ୍ରକାଶି
ଅନ୍ତରଜ୍ୱାଳା ତାହାକୁ ସଦା ଥାଏ ଗ୍ରାସି ।
ବାକ୍‌ଶକ୍ତି ବିହୁନେ ଯଥା ଜଳେ ତରୁବର
ପଶୁ ପକ୍ଷୀ ପତଙ୍ଗଙ୍କ ଯେପରି ବେଭାର ।
କ୍ଳେଶ ମୋଚନ ଶକତି ନଥାଏ ତାଙ୍କର
ଅନ୍ତର ଦେଶେ ଜଳୁଣ ଥାନ୍ତି ନିରନ୍ତର ।
ନକରିପାରି ତା ନିଜ ଯନ୍ତ୍ରଣା ପ୍ରକାଶ
ନୀରବେ ବାଳକ ସହେ ତଥା ଦୁଃଖ କ୍ଳେଶ ।
ଚରମ ବିଷାଦମୟ ଏ ବାଲ୍ୟ ଅବସ୍ଥା
ମୂଢ଼ ସେହି ଜନ ଯେହୁ ରଖେ ଏଥି ଆସ୍ଥା ।
ବିବେକ ବିଚାର ଏଥି ନଦିଅନ୍ତି କାର୍ଯ୍ୟ
ସର୍ବାଦୌ ବାଲ୍ୟଅବସ୍ଥା ଅଟେ ପରିତ୍ୟଜ୍ୟ ।
ଖାଉଥାଏ କିନ୍ତୁ କାନ୍ଦ ଜାରି ରହିଥାଏ
ନିର୍ବୋଧ ଅବସ୍ଥା ବର୍ଣ୍ଣି ପାରିବ ବା କିଏ ?
ବାଳକ ଅସ୍ଥିର ଯଥା ବୁଦ୍‌ବୁଦ ଜଳରେ
ବିଜୁଳି ଝଲକ ସମ ନଭ ପଟଳରେ ।
'ବରଫ ଟେଳାକ ମୋର ଚୂନା କରିଦିଅ
ଅଥବା ଗଗନ ଚନ୍ଦ ମୋ ହାତରେ ଥୁଅ ।'
ଏହିପରି ଜିଦ୍‌ଧରି ଏଡ଼ି ବସେ ବାଳ
ତେଣୁ ବାଲ୍ୟାବସ୍ଥା ଅଟେ କାଳର ଯେ କାଳ ।
ଅବଗୁଣ ଛଡ଼ା ଗୁଣ ଏଥିରେ ନଥାନ୍ତି
ସବୁ ଅବଗୁଣ ଯାର ଭୂଷଣ ଅଟନ୍ତି ।
କିଏ ପସନ୍ଦ କରିବ ଏସନ ଅବସ୍ଥା
ପସନ୍ଦ କରି କେବଳ ହୋଇବ ହୀନସ୍ଥା ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ବାଲ୍ୟାବସ୍ଥା ବର୍ଣ୍ଣନେ**
**ନାମ ଚତୁର୍ଦ୍ଦଶ ସର୍ଗଃ ।**



## ପଞ୍ଚଦଶ ସର୍ଗଃ

## ଯୌବନ ଗାରୁଡ଼ି

ହେ ମୁନୀଶ ! ଯାହା କହୁଅଛି ଏବେ ଶୁଣ
ବାଲ୍ୟାବସ୍ଥାପରେ ଆସି ପହଞ୍ଚେ ଯୌବନ ।
ଅଧିକ ଦୁଃଖ ଦାୟକ ଅଟେ ଯଉବନ
କାମୁଡ଼ା ଘୋଡ଼ା ଉପରେ ବସିବା ସମାନ ।
କାମରୂପୀ ପିଶାଚ ଯେ ଆସି ମାଡ଼ିବସେ
ସୁଦୃଢ଼ ଗଡ ବାନ୍ଧିଣ ନିଃଶଙ୍କରେ ହସେ ।
ଚିତ୍ତ ବିଚଳିତ କରି ସ୍ୱ ଇଚ୍ଛା ପ୍ରସାରେ
ତା କବଳୁ ମୁକ୍ତ ଅବା କିଏ କରିପାରେ ?
ସୂର୍ଯ୍ୟୋଦୟେ କମଳିନୀ ପାଖୁଡ଼ା ମେଲାଏ
ଯୌବନ ତପନ ଚିତ୍ତ-କମଳ ଫୁଲ୍ଲାଏ ।
ଇଚ୍ଛା-ପାଖୁଡ଼ା ମେଲାଇ ଦେଖାଏ ପୌରୁଷ
ନ ଜାଣେ ତା ପଉରୁଷ କ୍ଷଣେ ହେବ ଧ୍ୱଂସ ।
ନିଆଁ ଗଦାରେ ବସିଲେ ଦେହୀ ପୋଡ଼ି ମରେ
କାମବଶେ ଜୀବ ପୋଡ଼ି ମରେ କାମାନଳେ ।
ଯୁବାବସ୍ଥା ହିଁ ଯାବତ ବିଳାସର ଘର
ସଦଗୁଣମାନ ସଦା କରେ ନାରଖାର ।
ଧନହୀନ ଜନେ ରୁଣ୍ଡ ହୁଅନ୍ତି ଧନୀ ପାଶ
ଯୌବନ ପାଶେ ମିଳନ୍ତି ଆସି ସର୍ବ ଦୋଷ ।

ବିଳାସକୁ ସୁଖ ବୋଲି ଯେ ଜନ ମଣଇ
ସେ ସୁଖ ଲାଳସା ତାକୁ ବହୁ ଦୁଃଖ ଦେଇ ।
ମଦ-ଘଟ ଦେଖିବାକୁ କେଡ଼େ ମନୋହର
ପାନ କଲେ ଜାଣିବ ତା କେଡ଼େ ତିକ୍ତକର ।
ପାଗଳ ସମ ବୁଲାଇଦିଏ ଏଣେ ତେଣେ
ଧିକାର ବଚନ ସବୁ ଶୁଣୁଥାଏ କାନେ ।
ଘଉଡ଼ି ବସନ୍ତି ସର୍ବେ ତିରସ୍କାର କରି
ସବୁ ନିନ୍ଦା ସହ୍ୟକରେ ଭାଗ୍ୟକୁ ଆଦରି ।
ବିଳାସ ଭୋଗ ବାସନା ମନମୁଗ୍ଧକର
ପ୍ରତ୍ୟକ୍ଷ ଉପଭୋଗେ ତା ଯେସନ ଜହର ।
ହେତୁ ରଖ ଏ ଶରୀର ବିକାରରେ ପୂର୍ଣ୍ଣ
କାମ କ୍ରୋଧାଦି ରିପୁଏ ତସ୍କର ସମାନ ।
ଯୁବାରୂପୀ ରାତ୍ରିକାଳେ ଏ ତସ୍କରଗଣ
ଆତ୍ମଜ୍ଞାନ ବିଭବକୁ କରନ୍ତି ହରଣ ।
ଆତ୍ମଜ୍ଞାନ ଅଭାବରେ ନର ହୁଏ ଦୀନ
ମରଣରୁ ବଳେ ତାର ଜୀବନଧାରଣ ।
ଦୁଃଖପୂର୍ଣ୍ଣ ଏ ଯୌବନ ସଦା ପରିହାର୍ଯ୍ୟ
ଭଲଭାବେ ବୁଝିଛି ମୁଁ ଏହାର ତାତ୍ପର୍ଯ୍ୟ ।
ଚିତ୍ତର ସ୍ଥିରତା ପାଇଁ ଶାନ୍ତି ମହାମନ୍ତ୍ର
ଯୁବାବସ୍ଥା ହିଁ ଚିତ୍ତକୁ କରେ ଅସ୍ତବ୍ୟସ୍ତ
ଯୌବନରେ ଚିତ୍ତ ବିଷୟରେ ପଛେ ଧାଏଁ
ଲକ୍ଷ୍ୟ ଆଡ଼େ ବାଣ ଯଥା କ୍ଷିପ୍ର ବେଗେ ଯାଏଁ ।
ବିଷୟାଭିଳାଷୀ ହେଲେ ତୃଷ୍ଣା ନୋହେ ନାଶ
ଜନ୍ମଜନ୍ମାନ୍ତରେ ହୁଏ ଦୁଃଖର ଆବାସ ।
ଏସନ ଦୁଃଖଦାୟକ ଅବସ୍ଥାର ପାଇଁ
ମୋ ମନରେ ତିଳେ ହେଲେ ଅଭିଳାଷ ନାହିଁ ।
ପ୍ରଳୟରେ ସବୁ ଦୁଃଖ ହୁଅନ୍ତି ଏକତ୍ର
ଯୌବନରେ ଷଡ଼ରିପୁମାନଙ୍କ ରାଜତ୍ୱ ।
ବିଜୁଳି ଚମକ ସମ ଝଲସି ଉଠନ୍ତି
ପଲକ ମାତ୍ରକେ କେଣେ ଲୀନ ହୋଇଯାନ୍ତି ।
ସାଗର ତରଙ୍ଗ ସମ ଯୌବନ ଅଚିର
ଅନିତ୍ୟରେ ନିତ୍ୟ କାହିଁ ଆହେ ମୁନିଶ୍ୱର ?
ସ୍ୱପନରେ ଯଥା ନାରୀ ଛଳନା ଦେଖାଇ
ଚାଟୁବାକ୍ୟ କହି ଯୁବା ମନ ନିଏ ମୋହି
ଅଜ୍ଞାନବଶତଃ ଯୁବା-ଅବସ୍ଥା-ରମଣୀ
ଛଳନା କରି ଜୀବକୁ ଖାଲେ ଠେଲେ ଜାଣି ।

ଜନ୍ମାନ୍ତରବାଦ ଚକ୍ରେ ଜୀବର ଭ୍ରମଣ
ନିରାଟ ଅପ୍ରିୟ-ସତ୍ୟ ବୋଲି ଏହା ଜାଣ ।
ଜୀବର ପରମ ଶତ୍ରୁ ଏ ଯୁବା ଅବସ୍ଥା
ଏଥିରୁ ଯେ ବଞ୍ଚେ ଭାଗ୍ୟବାନ ସେ ମହାତ୍ମା ।
କାମ, କ୍ରୋଧମାନ ଯୁବା ଅବସ୍ଥାର ଶସ୍ତ୍ର
ଯେ ଜିଣିଛି ତାକୁ ନବାଧଇ ବଜ୍ରାଘାତ ।
କାମ କ୍ରୋଧରେ ଆସକ୍ତ ଯେଉଁ ନରାଧମ
ମହାପଶୁ ବୋଲି ତାକୁ ବିବେକୀ ଗଣିମ ।
ମହାକାଳ ଫଳ ପରି ଏ ଯୁବା ଅବସ୍ଥା
ତୃଷ୍ଣା ଜର୍ଜରିତ ହେତୁ କାଳେ କାଳେ ପିତା ।
ରମଣୀ ରତନ ପ୍ରତି ଆସକ୍ତି ଉଦୟ
ନ ଜାଣଇ ପ୍ରଚ୍ଛନ୍ନରେ ନରକର ଭୟ ।
ଇଷ୍ଟ ବନିତାର ଯଦି ଘଟଇ ମରଣ
ତାର ଚିନ୍ତାନଳେ ଜୀବ ହୁଅଇ ଦହନ ।
ବନାଗ୍ନିରେ ତରୁଲତା ଦହନ ଯେସନ
ଇଷ୍ଟ ବିୟୋଗ ଯୁବାକୁ ଦହଇ ତେସନ ।
ଜୀବକୁ ମଣିବ ମତ୍ତ ହସ୍ତୀର ସମାନ
ଯୁବାବସ୍ଥା ଶିକୁଳିରେ ସେ ହସ୍ତୀ ବନ୍ଧନ ।
ଶିକୁଳିରେ ବନ୍ଧା ହୋଇ ମତ୍ତ ହସ୍ତୀ ରହେ
ହଳଚଳ ହେବା ଶକ୍ତି ନଥାଏ ତା ଦେହେ ।
କାମହସ୍ତୀ ଆବନ୍ଧ ଯେ ଯୁବାବସ୍ଥା ଡୋରେ
ଭୋଗାସକ୍ତ ଜୀବ ତେଣୁ ଆବନ୍ଧ ତହିଁରେ ।
ତେଣୁ ଦେହୀ-ଆତ୍ମା କେଉଁ ଶାନ୍ତି ନ ଲଭଇ
ମହାଦୁଃଖ ସାଗରେ ସେ ଉବେଇ ଟୁବେଇ ।
ଯୌବନ ଅବସ୍ଥା ଅଟେ ଅତୀବ ଦାରୁଣ
ଧୀମାନ ବି ତହିଁ ହୋଇଯାନ୍ତି ହତଜ୍ଞାନ ।
ବର୍ଷାବାରି ନଦୀଜଳେ ମିଶିଲେ ମଳିନ
ନିର୍ମଳ ଧୀଶକ୍ତି ଯୁବାକାଳେ ଲଭେ ମ୍ଳାନ ।
ଶରୀର ବୃକ୍ଷରେ ଯଉବନ ଫୁଲ ଫୁଟେ ।
ଚିତ୍ତ-ଭ୍ରମର ତାପରେ ବସି ମଧୁ ଲୁଟେ ।
ତୃଷ୍ଣା-ସୁଗନ୍ଧିରେ ଉନମତ୍ତ ସେ ହୋଇଣ
ଆଚାର ବିଚାର ସବୁ ଭୁଲିଯାଏ ଜାଣ ।
ପ୍ରବଳ ପବନେ ଯଥା ଶୁଷ୍କ ପତ୍ର ଉଡ଼େ
ବୈରାଗ୍ୟ, ସନ୍ତୋଷ ଗୁଣ ଯୁବା ବସ୍ଥା ତଡ଼େ ।
ଦୁଃଖ-କମଳର ଯୁବାଅବସ୍ଥା ତପନ
ତା ଉଦୟେ ସର୍ବ ଦୁଃଖ ଉଲ୍ଲସିତ ଜାଣ ।

ସର୍ବ ଦୁଃଖର କାରଣ ଯଉବନ କାଳ
ଏହା ଯେ ବୁଝିଛି ସେ ଜୀବୀତ କାଳକାଳ ।
ସୂର୍ଯ୍ୟୋଦୟେ କମଳିନୀ ଯଥା ବିକଶିତ
ଯଉବନ ପରଶରେ ଚିତ୍ତ ଉତ୍‌ଫୁଲ୍ଲିତ ।
ତୃଷ୍ଣାଅଳି ବସି ଟାଣେ ବିଷୟା ସୁଗନ୍ଧ
ହୀନ ଜୀବ ବସି ତହିଁ ମୋହ-ମଦେ ମୁଗ୍ଧ ।
ତାରା ଯୋଗୁଁ ନିଶାନଭ କେଡ଼େ ସୁଶୋଭନ
ଶରୀରର ଶୋଭା ବଢ଼େ ଆସନ୍ତେ ଯୌବନ ।
ଧାନ ନଫଳିବାଯାଏ ଧାନକ୍ଷେତ୍ର ଶୋଭା
ହରିତବର୍ଣ୍ଣ କେଦାର ମନ ନେତ୍ର ଲୋଭା ।
ଧାନ ପାଚିଗଲେ ଧାନ ଗଛ ଯାଏ ଶୁଖି
ସବୁଜ ବରନ ତାର ଆଉ କିଏ ଦେଖି ।
ଯଉବନ ବଳେ ଦେହ ସୁଢ଼ଳ ସୁନ୍ଦର
ଜରା ପରବେଶେ ଦିଶେ କେଡ଼େ ଅସୁନ୍ଦର ।
ପ୍ରୌଢ଼, ବୃଦ୍ଧାବସ୍ଥା ଆସେ କ୍ରମେ ପଛେ ଧାଇଁ
ପରିପକ୍ୱ ପ୍ରାପତିରେ କ୍ଷୀଣ ହୁଏ ଦେହୀ ।
ଈଶ୍ୱର ଆଜ୍ଞାରେ ସିନ୍ଧୁ ବେଳା ନ ଲଙ୍ଘଇ
ଲହରୀମାନ ଯଦ୍ୟପି ଉଚ୍ଛୁଳି ଉଠଇ ।
ଯୌବନ ନମାନେ ଶାସ୍ତ୍ରାଚାର ଲୋକାଚାର
ଇନ୍ଦ୍ରିୟ ସଂଭୋଗେ ତାର ନଥାଏ ବିଚାର ।
ଅନ୍ଧାରେ ଅଜଣା ରହେ ପଦାର୍ଥ ବିଚାର
ଯୌବନ ନଜାଣେ ଶୁଭ ଅଶୁଭ ବେଭାର ।
ବିଚାର ବିହୁନେ ଶାନ୍ତି ମିଳିବ କିପରି
ବ୍ୟାଧି ଯନ୍ତ୍ରଣାରେ ଜୀବ ହୁଏ ସଦା ଘାରି ।
ଜଳ ବିନା ମୀନ ଯଥା ଛଟପଟ ହୋଇ
ବିଚାର ବିହୀନ ଜୀବ ଜଳି ମରୁଥାଇ ।
ଯୌବନ-ରଜନୀ ଯେବେ ହୁଅଇ ପ୍ରବେଶ
କାମ-ପିଶାଚ ଗର୍ଜନ ଟପେ ବଜ୍ର ଘୋଷ ।
ଯୁବକ କାମନା କରେ କାମୀ ଯୁବା ସଙ୍ଗ
କରିବାକୁ ବାର୍ତ୍ତାଳାପ ଯୁବତୀ ପ୍ରସଙ୍ଗ ।
ସେହି ଚିନ୍ତା ସଦା ତାକୁ ଜାଳି ପୋଡ଼ି ମାରେ
ଶାନ୍ତି ଦରବଟି ତାର ଆଉ କେଉଁଠାରେ ?
ମୃଗତୃଷ୍ଣା ଭ୍ରମେ ଯଥା ମୃଗ ଧାଇଁଥାଏ
ଜଳ ନପାଇ କେବଳ ହତାଶ ସେ ହୁଏ ।
ବିଷୟ ବାସନା ଘେନି କାମାଶକ୍ତ ନର
ଶାନ୍ତି ନପାଇ ସର୍ବଦା ରହଇ ଅସ୍ଥିର ।

ହେ ମୁନିଶ ! ନର ଜନ୍ମ ଅଟଇ ଦୁର୍ଲ୍ଲଭ
ହତଭାଗ୍ୟ ଯେହୁ ନ ଉଠାଏ ତାର ଲାଭ ।
ଚିନ୍ତାମଣି ପ୍ରାପ୍ତହୋଇ ଯେ ଅଜ୍ଞାନ ନର
ଗୁଣ ନବୁଝି ତାହାକୁ କରେ ହତାଦର ।
ମାନବ ଜନମ ପାଇ ଆତ୍ମପଦ ଲାଭ
ମୂଢ଼ ଜନ ଯେବେ ନବଳାଇ ତାର ଲୋଭ ।
ହତଭାଗ୍ୟ ବୋଲି ତାକୁ ମଣନ୍ତି ପଣ୍ଡିତେ
ମୂର୍ଖତାବଶ ସେ ଜନ୍ମ କଟାଏ ବିଅର୍ଥେ ।
ନିଜ ଦୁଃଖ-ବୀଜ ସେହୁ ବୁଣେ ଯୁବାକାଳେ
ପୁରୁଷାର୍ଥ ନାଶେ ମାନ, ମୋହ ବିକାରରେ ।
ଏସନ ବିକାରମାନ ଜାତ ଯୁବାକାଳେ
ତେଣୁ ଯଉବନ ପରିହାର୍ଯ୍ୟ ମୋ ବିଚାରେ ।
ବାୟୁବେଗେ ନଦୀ ଜଳେ ଉଠେ ଉର୍ମ୍ମିମାଳା
ଯୌବନ ଜନ୍ମାଇ ଦିଏ ବାସନାର ଖେଳା ।
ଡେଣା ବଳେ ପକ୍ଷୀ ଉଡ଼େ ଅନନ୍ତ ଗଗନ
ଭୁଜବଳେ ସିଂହ ନାଶକରେ ପଶୁଗଣ ।
ବିକ୍ଷେପ ଆଡ଼କୁ ଚିତ୍ତ ଯଉବନ ବଳେ
ପାଗଳଙ୍କପରି ଧାଇଁଥାଏ ଅକ୍ଳାନ୍ତରେ ।
ସାଗରର ବିସ୍ତୃତିରେ ଥଳକୂଳ ନାହିଁ
ମତ୍ସ୍ୟ, କୂର୍ମ, ମଗରାଦି ଗର୍ଭ ମଧ୍ୟେ ଥାଇ ।
ତଥାପି ସମ୍ଭବପର ସାଗର ତରିବା
କଳ୍ପନା ଅତୀତ ଯୁବା-ସିନ୍ଧୁ ପାରହେବା ।
ଯୁବାବସ୍ଥାରେ ନିର୍ଦ୍ଦୋଷ ରହିବା କଠିନ
ଅବଶ୍ୟ ହାରିବେ ଶିବ, ପାର୍ବତୀ-ରମଣ ।
ଏସନ ସଙ୍କଟାପନ୍ନ ଯେଉଁ ଯଉବନ
ତହିଁ ନୁହେ ବିଚଳିତ ଯେବଣ ମହାନ ।
ଧନ୍ୟ ସେ ପୁରୁଷ ସଦା ପ୍ରାତଃ ସ୍ମରଣୀୟ
ପ୍ରାତଃ ସ୍ମରଣୀୟ କିମ୍ବା ସଦା ବନ୍ଦନୀୟ ।
ଟଟ ପଟେ ବାୟୁ ଯୋଗୁଁ ଆଉଜଇ ଦଳ
ଦୁର୍ଗନ୍ଧ ଦୂଷିତ କରେ ସେ ବାୟୁମଣ୍ଡଳ ।
ଯୌବନ-ପବନ ବଳେ ଅବଗୁଣମାନ
ଚିତ୍ତଦେଶ ଢାଙ୍କି ଦ୍ୟନ୍ତି ଅନନ୍ତ କଷଣ ।
ଅବଗୁଣ ପରିପୂର୍ଣ୍ଣ ଏମନ୍ତ ଯୌବନ
ମୋ ମନରେ ଦେଇ ନପାରଇ ପ୍ରଲୋଭନ ।
ହେ ଯୌବନ ! ମୋହପରି ଦୀନଜନଠାରେ
କୃପାକରି ପ୍ରଭାବ ତୋ ନପକାଅ ବାରେ ।

ତୁମ୍ଭ ଆଗମନ ହେବ ମୋ ଦୁଃଖ କାରଣ
ତୁମ୍ଭଙ୍କୁ ଭୁଲାଇଦ୍ୟନ୍ତୁ ପ୍ରଭୁ ଭଗବାନ ।
ପୁତ୍ର ମରଣ ସଙ୍କଟ ଯେବେ କି ଆସିବ
ପିତା ହୋଇ କେହି ତାହା ସହିକି ପାରିବ ?
ଯୌବନ ପ୍ରଭାବେ ପୁତ୍ର ଅବାଟ ଧରିଲେ
ପିତୃ ହୃଦୟ କି ତାହା କେବେ ସହିପାରେ ?
ତେଣୁ ଆହେ ଯୁବାକାଳ ! ତୁମ୍ଭ ଆଗମନ
ସୁଖ ଦେବ ବୋଲି କେଭେଁ ନଆସେ ମୋ ମନ ।
ତେଣୁ ମୋରେ ଦୟାକରି ନ ଦିଅ ଦର୍ଶନ
ମୋ ସୌଭାଗ୍ୟ ରୋଧିଦେଉ ତୁମ୍ଭ ଆଗମନ ।
ଯୁବାବସ୍ଥା ପାରହେବା ଅତୀବ କଠିନ
ଯୁବକ ନିଜକୁ କେଭେଁ ନମଣେ ନିଉନ ।
ବୈରାଗ୍ୟ, ବିଚାର, ଶାନ୍ତି ଶାସ୍ତ୍ରଗୁଣମାନ
ନପାରନ୍ତି ବଦଳାଇ ଯୁବକ ଜୀବନ ।
ଆକାଶରେ ବନ ହେବା ଆଶ୍ଚର୍ଯ୍ୟ ଯେସନ
ଶାନ୍ତି, ବୈରାଗ୍ୟ, ଯୌବନେ ଆଶ୍ଚର୍ଯ୍ୟ ତେସନ ।
ଅତଏବ ହେ ମୁନିଶ ଦେଖାଅ ସେ ପଥ
ଯେସନ ଯୌବନ ଦୁଃଖୁଁ ହୋଇବି ମୁକତ ।
ଦୟାକରି ବତାଇବ ସେ କୁହୁକ ମନ୍ତ୍ର
ଯାହା ଘେନି ଆତ୍ମପଦ ହେବି ପରାପତ ।
**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ଯୌବନ ଗାରୁଡ଼ି ବର୍ଣ୍ଣନେ**
**ନାମ ପଞ୍ଚଦଶ ସର୍ଗଃ ।**



## ଷୋଡ଼ଶ ସର୍ଗଃ
## ସ୍ତ୍ରୀ ଦୁରାଶା

ଶୁଣ ହେ ମୁନିଶ ଏବେ ସ୍ତିରୀ-ରତ୍ନ କଥା
ଯାହାଲାଗି ଘୂରୁଥାଏ କାମୀଜନ ମଥା ।
ପୁରୁଷ ଇଚ୍ଛଇ ନାରୀ ରତି ସୁଖ ପାଇଁ
ସେ ନାରୀ ଅଙ୍ଗ ବର୍ଣ୍ଣନ ଶୁଣ କହୁଛଇଁ ।
ଅସ୍ଥି, ମାଂସ, ରକ୍ତ, ମେଦ, ମୂତ୍ର, ବିଷ୍ଠା ନେଇ
ଗଠିତ ଏ ନାରୀ ଅଙ୍ଗ, ଚର୍ମ ବେଢ଼ିଥାଇ ।
ତା ଅଙ୍ଗ ଗଠନ ଯେଣୁ ଏହି ଉପାଦାନେ
ଏଥିରେ ସୌନ୍ଦର୍ଯ୍ୟ କାହିଁ ରହିଲା ହେ ମୁନେ ।
ସଭାସଦ୍‌ଙ୍କୁ ସମ୍ବୋଧି କହନ୍ତି ଶ୍ରୀରାମ
ଯାହା ମୁ କହୁଛି ଏବେ ମନଦେଇ ଶୁଣ ।
ରକ୍ତ, ମାଂସ, ଚର୍ମ, ବାଷ୍ପ ଆବର ସଲିଳ
ପୃଥକ ପୃଥକ କରି ଦେଖ ଯାଙ୍କ ଖେଳ ।
ବିବେକ ଚକ୍ଷୁରେ ଯାଙ୍କୁ କର ନିରୀକ୍ଷଣ
ଶରୀରର ବାସ୍ତବତା ବୁଝିବ ତକ୍ଷଣ ।
ବାସ୍ତବରେ ଯଦି ତାହା ରମ୍ୟ ବସ୍ତୁ ହୋଇ
ବାରଣ ନକରେ ତାର ଉପଭୋଗ ପାଇଁ ।
ବୃଥାରେ ମୁଗ୍ଧ ହେବାର ନାହିଁ ପ୍ରୟୋଜନ
ଯଦି ବୁଝିଯିବ ତାର ଅଳିକ କାରଣ ।
ପ୍ରମଦାର ତନୁ-ତତ୍ତ୍ୱ ବୁଝ ହେତୁ କରି
କେଶ, ମାଂସ, ରକ୍ତ, ସିନା ଅଛି ମିଶିକରି ।
ଏମାନଙ୍କର ରମ୍ୟତା ଅଛି କେଉଁଠାରେ
ନୁହନ୍ତି କି ଘୃଣ୍ୟବସ୍ତୁ ଏମାନେ ସତରେ ?
ତେଣୁ ଏ ବିବେକୀ ପ୍ରାଜ୍ଞମାନଙ୍କର ମତ
ନାରୀ, ରକ୍ତ, କେଶ, ମାଂସ ନିନ୍ଦିବା ଯଥାର୍ଥ ।
ନାନା ଅଳଙ୍କାର ପୁଣି ସୁଗନ୍ଧ ବସ୍ତୁରେ
ନାରୀଏ ସଜାଇଥାନ୍ତି ନିଜ କଳେବରେ ।
ଶ୍ମଶାନବାସୀ ଶୃଗାଳ, ଶ୍ୱାନଆଦି ଯେତେ
ଏ ଦେହକୁ ବାଣ୍ଟି ଶେଷେ ଭୁଞ୍ଜନ୍ତି ସମସ୍ତେ ।
ଏହି ଶେଷ ପରିଣତି ଯୁବତୀ ଶରୀର
କେଉଁ ନିର୍ବୋଧ ଯାପାଇଁ ହେବ ଆଗୁସାର ।
ଯୁବତୀ ଉତ୍ତୁଙ୍ଗ ସ୍ତନ ଗିରିଶୃଙ୍ଗ ପରି
ମୁକ୍ତାମାଳ ତଥିପରେ ଗଙ୍ଗାଧାର ସରି ।
ଏହି ତ ନାରୀ ଯୌବନ ! ଏହି ତ ସୌନ୍ଦର୍ଯ୍ୟ !
ଏଥିପାଇଁ କିମ୍ପା ନଷ୍ଟ ହେବ ବଳ ବୀର୍ଯ୍ୟ ।
ଦିଗନ୍ତ ବିସ୍ତାରୀ ଅଟେ ଯେଉଁ ଶମଶାନ
ଯହିଁ ବିଚରନ୍ତି ଶ୍ୱାନ ଶୃଗାଳାଦିମାନ ।
ଅଚିରେ ସେହି ଉରଜ ଲୋଭ୍ୟ ପିଣ୍ଡପରି
ଶ୍ୱାନ ଶୃଗାଳ ଭକ୍ଷିବେ ବୁଝ ହେତୁକରି ।
ଯେସନ ବନ୍ୟ ଜନ୍ତୁଙ୍କ ଦେହ ମାଂସମୟ
ତେସନ ରକତ ମାଂସ ଭରା ନାରୀ ଦେହ ।
ତେବେ କିମ୍ପା ନାରୀ ଦେହେ ଏଡ଼େ ପ୍ରଲୋଭନ
ଯେ ଚିନ୍ତାରେ ଯୁବକର ହଜିଯାଏ ମନ ।
ଅବିଚାର ବାଳେ ନାରୀ ଅଙ୍ଗ ରମଣୀୟ ।
ଯେ ସୌନ୍ଦର୍ଯ୍ୟ ମୋହି ନିଏ ଯୁବକ ହୃଦୟ ।

ରମଣୀ ଅଟେ ବିପୁଳ ଉଲ୍ଲାସ ଦାୟିନୀ
ରମଣୀ ଯୁବକ ଚିତ୍ତ ବିକାର କାରିଣୀ ।
ରମଣୀଟି ଜାଣ କାମ-ସନ୍ତାପ ଜନନୀ
ମଦ୍ୟକୁ ଟପିଣ ଯିବ ସେ ରମଣିମଣି ।
ଅଶେଷ ଦୁଃଖ ଆକର ଅଟଇ ରମଣୀ
ଅଶେଷ ଦୁଃଖ ଦୁର୍ଦ୍ଦଶା ସନ୍ତାପ ଦାୟିନୀ ।
ବିଷଗର୍ଭା ପୟୋମୁଖୀ ଉନ୍ମାଦ କାରିଣୀ
ମୋତେ ରୁଚିକର ନୁହେଁ ସେହୁ ଆହେ ମୁନି ।
ସେ ସ୍ତନ ଯୁଗଳେ ମୋର କିସ ପ୍ରୟୋଜନ
ଲୋଡ଼ା ନାହିଁ ମୋର ସେହି ବିଶାଳ ନୟନ ।
ଏ ସକଳ ମାଂସସାର ତେଣୁକରି ଘୃଣ୍ୟ
ଭୁଲାଇ ପାରିବ ନାହିଁ ବିବେକୀ ନୟନ ।
ରକ୍ତ, ମାଂସେ ଗଢ଼ା ଏହି ରମଣୀ ଲାବଣ୍ୟ
କିୟତ୍‌କାଳ ପରେ ତାହା ଲଭଇ ବିଶୀର୍ଣ୍ଣ ।
କେଣେ ଉଡ଼ିଯାଏ ତାର ରକ୍ତ, ହାଡ଼, ମାଂସ
କେଉଁ ନିର୍ବୋଧ ବର୍ଣ୍ଣିବ ଅଛି କା ସାହସ ।
ଅପରିଣାମଦର୍ଶୀ ଯେ ନିର୍ବୋଧ ପୁରୁଷ
ପ୍ରଣୟିନୀ ମଣି ତାକୁ ଦିଏ ସେ ଆଶ୍ୱାସ ।
ଯାବତ ଅଙ୍ଗ ପ୍ରତ୍ୟଙ୍ଗ ସେହି ଅଙ୍ଗନାର
ଅଚିରେ ବିଲୀନ ହେବ ଶ୍ମଶାନ ଗର୍ଭର ।
ରେ ପୁରୁଷ ! ଆଜି ଯେଉଁ କାମିନୀ ବଦନ
ସୁଶୋଭିତ କରୁ ଖଞ୍ଜି ଅଳଙ୍କାରମାନ ।
କାଲି ତାକୁ ଥୋଇ ଦେବୁ ନେଇ ଶ୍ମଶାନରେ
ନିଜ ହସ୍ତେ ଥାପି ଦେବୁ ଜଳନ୍ତା ଅନଳେ ।
ତୋର ଅତି ପ୍ରିୟ ବସ୍ତୁ ତୋ ଆଖି ଆଗରେ
ପାଉଁଶ ହୋଇ ଉଡ଼ିବ ଗଗନ ମାର୍ଗରେ ।
ଦାହ ନ କରିଣ ଯେବେ ଆସିବୁ ନିକ୍ଷେପି
ପରିଣାମ ହେବ ଯାହା କହୁଛି ସଂକ୍ଷେପି ।
ଧୂଳିରେ ମିଶ୍ରିତ ହେବ ତା ରକତ ଧାରା
ଚାମର ପରି ଉଡ଼ିବ କେଶ କେରା କେରା ।
ମାଂସ ହେବ ଶ୍ୱାନଙ୍କର ତୃପତ-ଭୋଜନ
ଚର୍ମକୁ ଟାଣି ଛେଦାଉଥିବେ ଶିବାଗଣ ।
ହାଡ଼ମାନ ପଡ଼ିଥିବ ଶ୍ମଶାନ ଭୂମିରେ
ନକ୍ଷତ୍ର ପରି ଶୋଭିବ ଅନ୍ଧାର ରାତିରେ ।
ପ୍ରାଣବାୟୁ ମିଶିଯିବ ନୀଳ ନଭ ପଟେ
ହା ହତୋସ୍ମି ହେବୁ ସିନା ଏହି ଭବ ହାଟେ ।

ଅସ୍ଥି, ମାଂସ, ରକ୍ତ, ବିଷ୍ଠା, ମୂତ୍ରାଦିରେ ପୂରି
ଯେଉଁ ରୂପ ଧରିଅଛି ସୁନୟନା ନାରୀ ।
ସେଥିପାଇଁ ତିଳେ ମୋର ଆସକ୍ତି ତ ନାହିଁ
ଅନ୍ତର ଭାବନା ମୋର କହିଲି ଗୋସାଇଁ ।
ବିଚାର ପୂର୍ବକ ଯେହୁ ତାଙ୍କୁ ନ ଦେଖନ୍ତି
ରମଣୀୟ ବସ୍ତୁପରି ଅନ୍ତରେ ମଣନ୍ତି ।
ଦୂର ପରବତ ଯଥା ସୁନୀଳ ସୁନ୍ଦର
ନିକଟକୁ ଗଲେ ଖାଲି ପଥର, ପଥର ।
ବସନ ଭୂଷଣ ଘେନି ନାରୀ ସୁଶୋଭିତା
ସତକି ମିଛ ବୁଝିବା ଆହେ ମହାଜ୍ଞାତା !
ଦେଖିଲେ ରମଣୀ ଅଙ୍ଗ ଭିନ୍ନ ଭିନ୍ନ କଚି
କିଛି ମାତ୍ର ସାର ନାହିଁ, ଅସାରତା ଭରି ।
ନାଗ, ନାଗୁଣୀଙ୍କ ଅଙ୍ଗ କେଡ଼େ ସୁନିର୍ମଳ
ଛୁଇଁବା ମାତ୍ରକେ ହୋଇଯାନ୍ତି ସେ ଅନଳ
ଜୀବର ପରାଣ ପ୍ରତି ନକରି ଭ୍ରୂକ୍ଷେପ
ଦଂଶନ କରି ତା ପ୍ରାଣ କରିଦ୍ୟନ୍ତି ଲୋପ ।
ତାଦୃଶ ରମଣୀ ଅଙ୍ଗ ପରଶ ମାତ୍ରକେ
ବିନାଶ କରି ଯୁବାକୁ ଟାଣେ ନର୍କ ଲୋକେ ।
ବିଷଫଳ ଯେଉଁପରି ଆଖିକୁ ସୁନ୍ଦର
ଚାଖିବା ମାତ୍ରକେ, ପ୍ରାଣ ଯାଏ ଯମପୁର ।
ଶିକୁଳି ଆବଦ୍ଧ ହେଲେ ହାତୀ ରହେ ସ୍ଥିର
ତେସନ ରମଣୀ ଶକ୍ତି ଜାଣ ମୁନିଶ୍ୱର ।
ଅଜ୍ଞାନ-ଚିତ୍ତ-ମାତଙ୍ଗ କାମ-ଜଞ୍ଜିରରେ
ବନ୍ଧାହୋଇ ସ୍ଥିର ରହେ ସ୍ତ୍ରୀ-ରୂପୀ ସ୍ଥାନରେ ।
ଅଙ୍କୁଶାଘାତ ପାଇଲେ ହାତୀ ଯାଏ ଭାଗି
ଗୁରୁ ଉପଦେଶ ତଥା ଜଡ଼ ମୋହ ଭାଙ୍ଗି ।
ନିଜ ବିନାଶ ନିମିତ୍ତ କାମୁକ ପୁରୁଷ
ନାରୀଭୋଗ ଇଚ୍ଛା କରି ଶେଷେ ହୁଏ ଧ୍ୱଂସ ।
ଆନନ୍ଦରେ ହାତୀ ରମ୍ଭାବନ ଦଳୁଥାଏ
ମାଈ ହାତୀ ଦେଖିଲେ ସେ ଉନମତ୍ତ ହୁଏ ।
ଖାଲ ଢ଼ିପ କିଛି ତାକୁ ନ ଦିଶଇ ପଥେ
ଧାଇଁଯାନ୍ତେ ଗର୍ତ୍ତେ ପଡ଼ି ରହଇ ଆୟତ୍ତେ ।
ବହୁ ଦୁଃଖ ପାଏ ତହିଁ, ସୁଖ ଅବା କାହିଁ
ସକଳ ଦୁଃଖର ମୂଳ ପ୍ରମାଦ ଅଟଇ ।
ବନାଗ୍ନି ଯେସନ ପୋଡ଼ିଜାଳି ଦିଏ ବନ
ରମଣୀ-ଅଗ୍ନି ତାଠାରୁ ଅତି ବଳବାନ ।

ସ୍ପର୍ଶକଲେ ଜଣାଯାଏ ଅଗ୍ନିର ବହନ
ସ୍ମରଣ ମାତ୍ରେ ଜାଳଇ ନାରୀ-ହୁତାସନ ।
ଯେଉଁ ସୁଖ ରମଣୀୟ ହୁଅଇ ପ୍ରତୀତ
ତପୀସାଇଁ ଜାଣ ସେହି ସୁଖ ଆପାତତଃ ।
ସ୍ତିରୀ ସୁଖ ଯେଉଁ କାଳେ ହୁଅଇ ଅନ୍ତର
ସୁଖ ଭୋଗୀ ପଡ଼ିରହେ ଯଥା ମୁରୁଦାର ।
ନାରୀ-ଅଗ୍ନିରେ ଯୌବନ ସଦା ହୁଏ ନଷ୍ଟ
ନାରୀ-ସୁଖ ଯେହୁ ଇଚ୍ଛେ, ମୂର୍ଖ ଜ୍ଞାନଭ୍ରଷ୍ଟ ।
ନାରୀ ସମ୍ଭୋଗ ଆପଣା ଧ୍ୱଂସର କାରଣ
ସେହି ଶେଷେ ବୁଝେ ଯେହୁ ହୁଅଇ ଦହନ ।
ପତଙ୍ଗ ଅନଳ ଇଛି, ତେଜେ ନାଶଯାଇ
କାମୀ ଜନ ସ୍ତିରୀ ଇଚ୍ଛେ ନିଜ ନାଶ ପାଇଁ ।
ନାରୀ ବିଷବୃକ୍ଷ, ହସ୍ତ ପଦ ତାର ପତ୍ର
ଭୁଜ ତା ଅଟଇ ଡାଳ, ଫୁଲ ତାର ନେତ୍ର ।
ତହିଁ ଯାଇ ବସେ କାମୀ-ପୁରୁଷ-ଭ୍ରମର
ବିଷ-ମଧୁ ପାନକରି ହୁଏ ହରବର ।
କାମରୂପୀ ଧିବରର ନାରୀରୂପ ଜାଲେ
କାମୀ-ପୁରୁଷ-ପକ୍ଷୀଟି ପଡ଼େ ଅକ୍ଳେଶରେ ।
ଏପରି ଦୁଃଖଦାୟିନୀ ରମଣୀ ଯେ ଇଚ୍ଛେ
ମହାମୂର୍ଖ ସେହି ସଦା କଲବଲେ ବଞ୍ଚେ ।
ନାରୀ-ସର୍ପିଣୀ ଯେ ବେଳେ କରେ ଫୁଫୁକାର
ତା ସମ୍ମୁଖେ ଭସ୍ମ ହୁଏ ବୈରାଗ୍ୟ କମଳ ।
ଯେତେବେଳେ ସେ ସର୍ପିଣୀ କରଇ ଦଂଶନ
ବିଷଜ୍ୱାଳା ଖେଳିଯାଏ ସାରା ଅପଘନ ।
କେଉଟ ଯେସନ ଜାଲେ ଛାଣିଆଣେ ମୀନ
ସୁନ୍ଦରୀ ରମଣୀ ତଥା ଟାଣେ ଯୁବାମନ ।
ସ୍ନେହ ଡୋରେ ବନ୍ଧା ଯୁବା ଝିଙ୍କିହୋଇ ଆସେ
କାମ-ଅସ୍ତ୍ର ତୃଷ୍ଣା-ଛୁରୀ ତାହାକୁ ବିନାଶେ ।
ଏସନ ଦୁଃଖଦାୟିନୀ ରମଣୀ ରତନ
କେଉଁ ନକରଇ ମୋର ନେତ୍ର ଆଲୋଡ଼ନ ।
କାମ-ବ୍ୟାଧ ନାଗ-ଇନ୍ଦ୍ରିୟଙ୍କ ଜାଲ ଫାନ୍ଦି
କାମୀ-ଯୁବା-ମୃଗୁଣୀକୁ ମୋହ-ପାଶେ ବାନ୍ଧି ।
ଯୁବା-ବଳଦଟି ନାରୀ ସ୍ନେହ-ଡୋରେ ବନ୍ଧା
ରମଣୀ ବଦନ-ଚନ୍ଦ୍ର ଦେଖି କରେ ଶ୍ରଦ୍ଧା ।
ଚନ୍ଦ୍ର ଦେଖି କୁମୁଦିନୀ ହୁଏ ସୁପ୍ରସନ୍ନ
କିନ୍ତୁ ଚନ୍ଦ୍ର ନ ଘେନଇ କମଳିନୀ ମନ ।
ରମଣୀ ହରଣ କରେ କାମୀଜନ ଚିତ୍ତ
କିନ୍ତୁ ଜ୍ଞାନୀ ଜନଠାରେ ହୁଏ ସେ ପରାସ୍ତ ।
ନକୁଳ ଗର୍ତ୍ତରୁ ଟାଣି ଆଣି ବିଷଧର
ଖଣ୍ଡ ଖଣ୍ଡ କରି କାଟି କରଇ ଆହାର ।
କାମୀ ପୁରୁଷଙ୍କୁ ତଥା ରୂପବତୀ ନାରୀ
ଆତ୍ମାନନ୍ଦ ଉପଭୋଗୁଁ ଆଣଇ ଓଟାରି ।
ନାରୀ ନିକଟକୁ ଯେବେ ପୁରୁଷ ଆସଇ
ସକଳ ସଦ୍‌ଗୁଣ ତାର ଭସ୍ମୀଭୂତ ହୋଇ ।
ଅଗ୍ନି ଯଥା ଭସ୍ମକରେ ଘୃତ, ଶୁଷ୍କ ତୃଣ
କାମୀକୁ ଭସ୍ମ କରଇ ନାରୀ-ହୁତାଶନ ।
ନାରୀରୂପୀ ରାତ୍ରି ମଧ୍ୟେ ସ୍ନେହ-ଅନ୍ଧକାର
କାମ କ୍ରୋଧାଦି ଉଲ୍ଲୁକେ କରନ୍ତି ବିହାର ।
ନାରୀ ଖଡ଼୍‌ଗାଘାତୁ ଯେହୁ ଯୌବନ ଯୁଦ୍ଧରେ
ପ୍ରାଣରଖେ ଧନ୍ୟ ସେହୁ ମୋର ବିଚାରରେ ।
ନାରୀ ସମ୍ଭୋଗ ପରମ ଦୁଃଖର କାରଣ
ଏଥିପ୍ରତି ଅଭିଳାଷ ନାହିଁ ମୋର ଜାଣ ।
ରୋଗ ଅନୁସାରେ ଯେହୁ ଔଷଧ ସେବଇ
ଉପଶମ ହୁଏ ରୋଗ, ସ୍ୱଚ୍ଛନ୍ଦେ ବଞ୍ଚଇ ।
କୁପଥ୍ୟ ବଢ଼ାଇ ଦିଏ ରୋଗର ପ୍ରକୋପ
ବିଷମୟ ଫଳ ତାର ଭୋଗଇ ଲୋଲୁପ ।
ତେଣୁ ମହାମୁନେ ସେହି ଔଷଧ ବତାଅ
ଯହିଁରେ କି ମୋର ରୋଗ ହୋଇପାରେ କ୍ଷୟ ।
ଜରା, ମୃତ୍ୟୁ ହିଁ ମୋହର ବୃହତ୍ତର ବ୍ୟାଧି
ଏଥୁଁ ରକ୍ଷା ପାଇବାର ବତାନ୍ତୁ ଔଷଧି ।
ସ୍ତିରୀ ଆଦି ଯେତେ ଭୋଗ ବଢ଼ାନ୍ତି ଏ ରୋଗ
ଏମାନଙ୍କଠାରେ ମୋର ଉପୁଜେ ବିରାଗ ।
ନିଆଁରେ ଘିଅ ଢାଳିଲେ ଅତିବେଗେ ଜଳେ
ଭୋଗ ହେତୁ ଜରା, ମୃତ୍ୟୁ ରୋଗ ବଢ଼ିଚାଲେ ।
ଏ ବ୍ୟାଧି ନିବୃତ୍ତି ପଥ ଦିଅନ୍ତୁ ବତାଇ
ନୋହିଲେ ସବୁ ଛାଡ଼ି ମୁଁ ବନ ଗମିବଇ ।
ସ୍ତିରୀ ଥିଲେ ଭୋଗ ଇଚ୍ଛା ଅବଶ୍ୟ ବଢ଼ିବ
ସ୍ତିରୀ ବିନା ସେ ଲାଳସା କାହୁଁ ଉପୁଜିବ ?
ସ୍ତିରୀ ବିରାଗ ଯେ ନର, ସଂସାର ବିରାଗୀ
ସେହି ସିନା ସୁଖି, ଯେହୁ ଅଟେ ବଇରାଗୀ ।
ସ୍ତିରୀକୁ ବୁଝଇ ଏକା ସଂସାରର ମୂଳ
ସ୍ତିରୀ ବିମୁଖ ହେବାକୁ ମଣେ ମୁଁ ମଙ୍ଗଳ ।

ସେହି ଅଉଷଧ ମୋତେ ଦିଅନ୍ତୁ ବତାଇ
ଯଦ୍ୱାରା ମୋ ଜରା, ମୃତ୍ୟୁ ଯିବଟି ଉଭେଇ ।
**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ଶ୍ରୀ ଦୁରାଶା ବର୍ଣ୍ଣନେ ନାମ ଷୋଡ଼ଶ ସର୍ଗଃ ।**



## ସପ୍ତଦଶ ସର୍ଗଃ

## ଜରାବସ୍ଥା ନିରୂପଣ

ଶୁଣ ହେ ମୁନିଶ ପୁଣି ମୋର ନିବେଦନ
ବାଲ୍ୟାବସ୍ଥା ମହାଜଡ଼, ସର୍ବଶକ୍ତିହୀନ ।
ବାଳକାଳ ଅସ୍ତଯାଇ ଆସଇ ଯୌବନ
ଯଉବନ ପରେ ବୃଦ୍ଧାବସ୍ଥା ଆଗମନ ।
ଅଙ୍ଗ ଜୀର୍ଣ୍ଣ ଶୀର୍ଣ୍ଣ ପୁଣି ବୃଦ୍ଧି ହୁଏ କ୍ଷୀଣ
ମୃତ୍ୟୁ ପହଞ୍ଚନ୍ତେ ସର୍ବ କାର୍ଯ୍ୟ ସମାପନ ।
ନଦୀ ତଟେ ଥିବା ବୃକ୍ଷ ଜଳ ପ୍ରବାହରେ
ମୂଳମାଟି କ୍ଷୟ ଯୋଗୁଁ ଅସହାୟେ ଥରେ ।
ସେହିପରି ବାର୍ଦ୍ଧକ୍ୟରେ ଦେହ ଜର୍ଜରିତ
ବୃଦ୍ଧବ୍ୟକ୍ତି ଆପଣାକୁ ମଣେ ଅର୍ଦ୍ଧମୃତ ।
ପବନରେ ଶୁଷ୍କ ପତ୍ର ଉଡ଼ିଗଲାପରି
ବାର୍ଦ୍ଧକ୍ୟ ଯୋଗୁଁ ଶରୀର ବିନାଶ ସେପରି ।
ବୃଦ୍ଧକାଳେ ସବୁ ରୋଗ ଆସି ଘାରିଯାଇ
ଶରୀର କୃଶତା ଲଭେ, ସଦା ଥରୁଥାଇ ।
ସ୍ତିରୀ, ପୁତ୍ର ଆଦି ଯେତେ କୁଟୁମ୍ବ ସ୍ୱଜନ
ପରିତ୍ୟାଗ କରନ୍ତି ସେ ହୁଏ ହୀନିମାନ ।
ପାଚିଲା ଫଳକୁ ବୃକ୍ଷ ତେଜଇ ଯେପରି
କୁଟୁମ୍ବ ଜନ ତେଜନ୍ତି ବୃଦ୍ଧକୁ ସେପରି ।
ପାଗଳକୁ ଦେଖି ଲୋକେ ହସନ୍ତି ଯେପରି
ବୃଦ୍ଧକୁ ଦେଖି ତାସଲ୍ୟ କରନ୍ତି ସେପରି ।
ଶିଶିର ଆସନ୍ତେ ଯଥା ପଦ୍ମ ଯାଏ ନାଶ
ବୃଦ୍ଧ ଅବସ୍ଥାରେ ଜୀବ ହୁଅଇ ଅବଶ ।
ଲୋଳିତ୍ ଚିକ୍କଣ ଚର୍ମ, କେଶ ହୁଏ ଶ୍ୱେତ
ଶକ୍ତି କ୍ଷୟ ହେତୁ ପାଦ ପଡ଼େ ଇତସ୍ତତଃ ।
ବୁଢ଼ା ହୋଇଗଲେ ବୃକ୍ଷ ପୋକ ଯାଏ ଖାଇ
ବୃଦ୍ଧ ଶରୀରରେ ଶକ୍ତି ରହିବ ବା କାହିଁ ?
ସବୁ କରଣୀ ତାହାର ହୋଇଯାଏ କ୍ଷୀଣ
କେବଳ ଆଶକ୍ତି ରହେ କ୍ଷୟ ନ ଲଭିଣ ।
ଉଚ୍ଚ ବୃକ୍ଷ ଦେଖି ଯଥା ବସଇ ଉଲ୍ଲୁକ
କ୍ରୋଧ ତଥା ବାସକରେ ଦେଖି ବୃଦ୍ଧ ଲୋକ ।
ଦୁଃଖର ନିବାସ ସ୍ଥାନ ଅଟଇ ବାର୍ଦ୍ଧକ୍ୟ
ବାର୍ଦ୍ଧକ୍ୟ ଆସନ୍ତେ ଗୁଣ୍ଡ ହୁନ୍ତି ସବୁ ଦୁଃଖ ।
ଯୁବାବସ୍ଥାରେ ଯେପରି କାମ ବଳ ଥାଏ
ବାର୍ଦ୍ଧକ୍ୟ ଆସନ୍ତେ ସବୁ କ୍ଷୀଣ ହୋଇଯାଏ ।
ଇନ୍ଦ୍ରିୟମାନଙ୍କ ଶକ୍ତି ହୁଏ କ୍ଷୀଣତର
ସେମାନଙ୍କ ଚପଲ୍ୟକୁ ନ ରହେଟି ଡର ।
ଧନହୀନ ହେଲେ ପିତା ପୁତ୍ର ହୁଏ ଦୀନ
ବଳହୀନ ହେଲେ ଦେହ, ଇନ୍ଦ୍ରିୟେ ମଳିନ ।
ବାର୍ଦ୍ଧକ୍ୟରେ ତୃଷ୍ଣା କିନ୍ତୁ ବୃଦ୍ଧି ପାଇଥାଏ
ବାର୍ଦ୍ଧକ୍ୟ ଦୁର୍ଦ୍ଦଶା ବର୍ଣ୍ଣି ପାରିବ ବା କିଏ ।
ଜରା-ରାତି ପ୍ରବେଶନ୍ତେ କାଶ ଆସେ ମାଡ଼ି
ଆଧି ବ୍ୟାଧି ପେଚକଙ୍କ ଶୁଭେ ଘୋର ରଡ଼ି ।
ଲୋଡ଼ାନାହିଁ ମୋର ସେହି ବାର୍ଦ୍ଧକ୍ୟ ଅବସ୍ଥା
କାହାକୁ ନ ଛାଡେ ସେହୁ, ସମସ୍ତେ ହୀନସ୍ଥା ।
ଫଳଭରେ ଅବନତ ଯଥା ତରୁଗଣ
ଆୟୁଦ୍ଧରେ ନଇଁଯାନ୍ତି ତଥା ଜୀବମାନ ।
ବୁଢ଼ାବଳଦକୁ ଚାଷୀ ତେଜି ଦେଲାପରି
ବୃଦ୍ଧାଙ୍କୁ କୁଟୁମ୍ବବର୍ଗ ତେଜନ୍ତି ସେପରି ।
ତିନୋଟି ଅବସ୍ଥା ଜୀବ ଭୋଗେ ଶରୀରରେ
ବାଲ୍ୟାବସ୍ଥା ପରିପୂର୍ଣ୍ଣ ମହା ମୂର୍ଖତାରେ ।
ଯୌବନ ଅବସ୍ଥା ମହା ବିକାରରେ ପୂର୍ଣ୍ଣ
ବୃଦ୍ଧାବସ୍ଥା ଆଣି ଦିଏ ମହା ଦୁଃଖମାନ ।
ବାଲ୍ୟାବସ୍ଥାକୁ ଯୌବନ ଦଳି ଦିଏ ଆସି
ଜରା ପୁଣି ଧାଇଁ ଆସି ଯୌବନକୁ ଗ୍ରାସି ।
ମାଛକୁ ବିରାଡ଼ି ପରି ମୃତ୍ୟୁ ଗ୍ରାସେ ଜରା
ଏହି ଅଭିନୟେ ଭରା ଏ ସଂସାର ସାରା ।
କ୍ଷଣ ଭଙ୍ଗୁର ଅଟନ୍ତି ସେ ଅବସ୍ଥାମାନ୍
କି ସୁଖ ପାଇବ ପ୍ରାଣୀ ପାଇ ଏ ଜୀବନ ?
ଏ ଦୁଃଖ ମୋଚନ ପାଇଁ ଯେ ପନ୍ଥା ମୁକତ
କହିବା ହୁଅନ୍ତୁ ମୋ ଆଗରେ ତପୋବନ୍ତ ।
ବାର୍ଦ୍ଧକ୍ୟ ଛୁଇଁଲେ କ୍ରମେ ମରଣ ନିକଟ
ଦେଖୁ ଦେଖୁ ହୋଇଯାଏ ଯମରାଜା ଭେଟ ।

ସନ୍ଧ୍ୟା ଆଗମନେ ରାତ୍ରି ତତ୍‌କାଳ ପ୍ରବେଶ
ସେ କାଳେ ଦିନ ଲୋଡ଼ିବା ମୂଢ଼ତା ଅଶେଷ ।
ଜରା ଆଗମନେ ବଞ୍ଚି ରହିବାର ଆଶା
ପୋଷଣ କରିବା ଜାଣ ମୂର୍ଖର ବେଭସା ।
ମୂଷାକୁ ଯଥା ବିଲେଇ ବସିଥାଏ ଛକି
ମୃତ୍ୟୁ ମଥା ଟେକି ଅଛି ଜରାକୁ ନିରେଖି ।
ଜରା ଗ୍ରାସି ଶରୀରକୁ କରେ ଜୀର୍ଣ୍ଣ ଶୀର୍ଣ୍ଣ
ଥରିଉଠେ ଦେହ ଦୁର୍ବଳତା ପରିପୂର୍ଣ୍ଣ ।
ହିମ ପରଶେ କମଳ ହୁଏ ହୀନିମାନ
ଜରା ପରାଶେ ଶରୀର କମ୍ପୁଥାଏ ଜାଣ ।
ବନସ୍ତେ ମୃଗକୁ ଯଥା ମାରେ ମହାବଳ
କାମରୂପୀ ବ୍ୟାଘ୍ର ନାଶେ ମୃଗରୂପୀ-ବଳ ।
ଚନ୍ଦ୍ରୋଦୟ ଦେଖି ଯଥା କୁମୁଦ ହରଷ
ଜରାବସ୍ଥା ଦେଖି ମୃତ୍ୟୁ ହୁଏ ହସ ହସ ।
ବଡ଼ କ୍ରୁର ଅଟେ ଜରା ବଡ ନିଦାରୁଣ
ବଳିଷ୍ଠ ଯୋଦ୍ଧାଙ୍କୁ ସୁଦ୍ଧା କରେ ବଳହୀନ ।
ବଳାବାନ ଯୋଦ୍ଧା ଯୁଦ୍ଧେ ଲଭନ୍ତି ବିଜୟ
କିନ୍ତୁ ଜରା କରେ ତାଙ୍କୁ ବଳହୀନ କାୟ ।
ବଡ଼ ବଡ଼ ପର୍ବତକୁ ଯେ କରନ୍ତି ଚୂର୍ଣ୍ଣ
ସେମାନଙ୍କୁ ଜରା ମଧ୍ୟ କରିଦିଏ ଜୀର୍ଣ୍ଣ ।
ଏମନ୍ତ କେ ବଳୀ ଅଛି ଏ ସାରା ଜଗତେ
ବଳହୀନ ନ ହୁଅଇ ଜରାବସ୍ଥା ହସ୍ତେ ।
ବୃକ୍ଷରେ ଅଗ୍ନି ଲାଗନ୍ତେ ଧୂମ୍ର ନିରିଗତ
ଜରାଗ୍ନିରେ ଦେହ-ବୃକ୍ଷ ତୃଷ୍ଣା-ଧୂମ୍ର ଜାତ ।
ସିନ୍ଦୁକରେ ବହୁରତ୍ନ ଭରି ଥିଲା ପରି
ବହୁ ଦୁଃଖ-ରତନର ଜରା ଡବା ଭରି ।
ଜରା ଘେନି ଅଙ୍ଗ ହୀନବଳ ହୋଇଥାଏ
ତୃଷ୍ଣା ସ୍ରୋତସ୍ୱତୀ କିନ୍ତୁ ବଢ଼ି ଚାଲିଥାଏ ।
ଚନ୍ଦ୍ର ଦେଖି କମଳିନୀ ହୋଇଯାଏ ମୁଦ
ଡାକିନୀ ପିଶାଚିନୀ ଏ ଲଭନ୍ତି ଆନନ୍ଦ ।
ଜରା ରାତ୍ରି ଆଗମନେ ଶକ୍ତି-ପଦ୍ମ ହ୍ରାସ
ତୃଷ୍ଣା-ପିଶାଚିନୀ ମୋଦେ ହୁଏ ହସ ହସ ।
ଗଙ୍ଗା ତଟ ବୃକ୍ଷ ଯଥା ଗଙ୍ଗା ପ୍ରବାହରେ
ଜର୍ଜରିତ ହୋଇ ଥରେ କାଳ କବଳରେ ।
ଆୟୁ ପ୍ରବାହରେ ତଥା ଦେହ ହୁଏ କ୍ଷୀଣ
ହତଭାଗ୍ୟ ପଡ଼େ ମୃତ୍ୟୁ କବଳରେ ଜାଣ ।
ଉଡ଼ନ୍ତା ଚିଲ ଯେସନ ମାଂସଖଣ୍ଡ ଦେଖି
ନଭୁ ଖସି ମାଂସ ଘେନି ହୋଇଥାଏ ସୁଖି ।
ଜରାବସ୍ଥା ହେଲେ କାଳ-ଚିଲ କାହୁଁ ଆସି
ଶରୀର ମାଂସ ଖଣ୍ଡକୁ ଘେନେ ହସି ହସି ।
କାଳର ଭୋଜନ ହେଲା ଜୀବର ଶରୀର
କାଳ ମୁଖରେ ଏ ଜୀବ ପଡ଼ିବା ମୁକର ।
ବୃକ୍ଷ ଦେଖି ଗଜ ସୁଖେ କରଇ ଆହାର
ଜରା ଦେଖି ସମସ୍ତଙ୍କୁ ଗିଳିଦିଏ କାଳ ।
ଦେହକୁ ମୃତ୍ୟୁ ଗ୍ରାସିବା କଥା ସୁନିଶ୍ଚିତ
ଅନିଶ୍ଚିତରେ ନିଶ୍ଚିତ ରହିବ କେମନ୍ତ ?
ଜରା ଅବସ୍ଥାରେ ଦୁଃଖମୟ ଦେହଧରି
କି ଫଳ ମିଳିବ ତହୁଁ ଆହେ ତପଚ୍ଚରୀ ।
ସଂସାର ବିଜୟୀ ଜରା ସବୁଙ୍କୁ ଗ୍ରାସିବ
ଗ୍ରାସିବ ହିଁ ଗ୍ରାସିବ ସେ, କିଏ ନିବାରିବ ?

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ଜରାବସ୍ଥା ବର୍ଣ୍ଣନେ**
**ନାମ ସପ୍ତଦଶ ସର୍ଗଃ ।**



## ଅଷ୍ଟାଦଶ ସର୍ଗଃ
## କାଳ ନିରୂପଣ

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ମୁନିବର
ଗାତଟିଏ ପରି ମଣ ଏ ଘୋର ସଂସାର ।
ଅଜ୍ଞାନୀ ଜୀବ ସେଥିରେ ପଡ଼ି ଘାଣ୍ଟି ହୁଏ
ଯାବତ ଯାତନା ମଧ୍ୟେ ପଡ଼ି ସଢୁଥାଏ ।
କିନ୍ତୁ ଏ ସଂସାର-ଗର୍ତ୍ତ ପରିସର ଛୋଟ
ଅଜ୍ଞାନୀ-ଶରୀର ଜାଣ ବହୁ ଗୁଣେ ମୋଟ ।
ଅହଂମିକା ଜାଲ ତାକୁ ସଦା ଘେରିଥାଏ
କାମନା ବାସନା ମାନ ବିକଶିତ ହୁଏ ।
ସେ କାରଣୁ ବୃହତ୍ତର ଅଟେ ତା ଶରୀର
ସଂସାର ଖାତ ତା ପ୍ରତି କିଞ୍ଚିତ ମାତର ।
ମିଥ୍ୟା, ମାୟା, ଏ ସଂସାର ଜ୍ଞାନୀଙ୍କର ମତ
ସେ ମିଥ୍ୟା ଜାଲେ ପଡ଼ିବା ଅତି ଅସଙ୍ଗତ ।
ଅଜ୍ଞାନୀକୁ ମିଠାଲାଗେ ସଂସାର ବାସନା
କଟୁ, ତିକ୍ତ ମଣି ଜ୍ଞାନୀ, ଦୂରେ ରହେ ସିନା ।
ସଂସାରକୁ ସତ୍ୟ ମଣି ଅଜ୍ଞାନୀ ପୁରୁଷ
ଭୋଗ ବାଞ୍ଛାରେ ସର୍ବଦା କଟାଏ ଆୟୁଷ ।

ଦରପଣେ ପ୍ରତିବିମ୍ବ ଦେଖି ଶିଶୁ ଧାଏଁ
ଧରି ନପାରିଣ ତାକୁ କାନ୍ଦି ଉଠେ କୋହେ ।
ଅଜ୍ଞାନୀକି ଏ ସଂସାର ଦରପଣ ପରି
ବାସନାମାନ ତହିଁରେ ପ୍ରତିବିମ୍ବ ସରି ।
ପାଉ ବା ନପାଉ ତାକୁ ସତ୍ୟ ମନେକରି
ଅଜ୍ଞାନୀ ବଢ଼ାଏ ହାତ, ଧରି ତ ନପାରି ।
ମନେ ମନମାରି ସେହୁ ଦୁଃଖେ ବୁଡ଼ି ରହେ
କାହାକୁ କହିବ କିସ, ଶୁଣିବ ବା କିଏ ?
ବିନାଶ କାରଣ ଜାଣ ସେହି ସୁଖମାନ
ଯିବାପାଇଁ ସୁଖ ଆସେ ସ୍ଥିର ନୁହେଁ ଜାଣ ।
କରାଳ କାଳ ତାହାକୁ କରିଯାଏ ଗ୍ରାସ
ଶୂନ୍ୟ ଆଶା ପୋଷି ଜୀବ ଲଭଇ ନୈରାଶ୍ୟ ।
ଡାଳିମ୍ବକୁ ଖାଇଯାଏ ମୂଷିକ ଯେସନ
ସର୍ବ୍ବ ପଦାର୍ଥ କାଳର ଭୋଜନ ତେସନ ।
ସର୍ପକୁ ବିନାଶ କରି ନକୁଳ ଯେସନ
ଚର୍ବଣ କରି ଆନନ୍ଦେ କରଇ ଭକ୍ଷଣ ।
ମହା ମହାବଳୀ ଯେତେ ବଳିଷ୍ଠ ମାନବେ
କାଳେ କାଳେ କାଳ ଗ୍ରାସେ ପଡ଼ିଛନ୍ତି ସର୍ବେ ।
କାଳର କିପରି ରୂପ କେହି ଦେଖି ନାହିଁ
ହାତ, ଗୋଡ, ନାକ, କାନ କେତେ ବା ଅଛଇ ।
ଆଖି ଦେଖିନାହିଁ କିବା ଶୁଣିନାହିଁ କାନ
କେତେ ବା ଉଚ୍ଚତା ତାର କେତେ ବା ଓଜନ ।
ବର୍ଷ, ମାସ, ଦିନ, ଦଣ୍ଡ, ମୁହୂର୍ତ୍ତ ପ୍ରହର
ଅଙ୍ଗରୂପେ ସୂଚନା ଏ ଦିଅନ୍ତି କାଳର ।
ସବୁଠାରୁ ବଳବାନ ଅଟେ ଏହି କାଳ
ଯା'କିଛି ଦେଖୁଛ ହେବେ କାଳର କବଳ ।
ଉଦୁମ୍ବର ଫଳ ସମ ଅଟେ ଏ ଜଗତ
ମଞ୍ଜିରୂପେ ବହ୍ମା ତାର ମଧ୍ୟସ୍ଥଳେ ସ୍ଥିତ ।
ପ୍ରତ୍ୟେକ ମଞ୍ଜିଟି ତହିଁ ଏକଇ ଜଗତ
ଏସବୁ ଜଗତ୍ ବ୍ରହ୍ମ-ବନ ମଧ୍ୟେ ସ୍ଥିତ ।
ଏ ବ୍ରହ୍ମ ବନରେ ଯାହା କିଛି ରହିଥାଇ
କାଳର କବଳୁ କେହି ହେଲେ ନ ବର୍ତ୍ତଇ ।
ବ୍ରହ୍ମା ମଧ୍ୟ ପଡ଼ିଯାନ୍ତି ଏକାଳ ଗ୍ରାସରେ
ମିରିଗକୁ ସିଂହ ଯଥା ଟାଣି ଗ୍ରାସକରେ ।
କାହାରିକୁ ହେଲେ କାଳ ସ୍ଥିର ନ ରଖଇ
କାଳର ପ୍ରବାହେ ଆମ୍ଭେ ସବୁ ଭାସୁଥାଇଁ
କ୍ଷଣ, ଘଡ଼ି, ଦିନ, ମାସ, ପ୍ରହର ବରଷ
କଳ୍ପ, ମହାକଳ୍ପ ଭାବେ ଯାହାର ପ୍ରକାଶ ।
କାଳର ରୂପ ଭାବରେ ଗଣା ଏହିମାନ
ମାତ୍ର ତା ମୂର୍ତ୍ତି ପ୍ରକଟ ନୋହି କଦାଚନ ।
ସେହି କାଳ ଏକ ବୃକ୍ଷ ରୂପ ଅଛି ଧରି
ସେ ବୃକ୍ଷରେ ମନୋରମ ପୁଷ୍ପମାନ ଭରି ।
ଅନଳ ଦେଖି ପତଙ୍ଗ ଧାଇଁଗଲା ପରି
ଜୀବ-ଭ୍ରମର ସେ ପୁଷ୍ପେ ବସେ ସେହିପରି ।
ଅବିଳମ୍ବେ ପତଙ୍ଗର ଭାଗ୍ୟ ସେ ଭୋଗଇ
ଆହା କରିବାକୁ ସାହା ତାର କେହି ନାହିଁ ।
ଡିମିର ଗଛ ସଦୃଶ ଅଟଇ ଏ କାଳ
ଅସଂଖ୍ୟ ବ୍ରହ୍ମାଣ୍ଡ ତହିଁ ଜାଣ ତାର ଫଳ ।
ସେ ଫଳର ମଞ୍ଜିମାନ ଜୀବଗଣପରି
ସେ ଜୀବଗଣ ଭ୍ରମନ୍ତି ମଶାପଲ ସରି ।
ମଶକ ପରି ସେ ଜୀବେ ଘୁଁ ଘୁଁ ଧ୍ୱନିକରି
ମରଣ ଲଭନ୍ତି ତହୁଁ ନପାରି ଉବୁରି ।
ଶୁକ ଯେପରି ଡାଳିମ୍ବ ଫଳ ଖୁମ୍ପିକରି
ମଞ୍ଜିଯାକ ଖାଇଦିଏ ଗୋଟିଏ ନଛାଡ଼ି ।
କାଳ ତାଦୃଶ ଭେଦି ଏ ଅସତ ଜଗତ
ଜୀବଧାରୀ ଗଣଙ୍କୁ ସେ ଖାଉଛି ନିରତ ।
ଏ ଜଗତ ଅଟେ ଏକ ବୃକ୍ଷର ସମାନ
ଜୀବଧାରୀ ଗଣ ତାର ଡାଳ ପତ୍ର ଜାଣ ।
ହାତୀ ଯେପରି ଗଛର ଡାଳ ମୋଡ଼ି ଖାଏ
କାଳ-ହସ୍ତୀ ଜଗତକୁ ତଥା ଗିଳୁଥାଏ ।
କାଳ-ସିଂହ ଶୁଭା ଶୁଭ ମହୀଷକୁ ଜାଣ
ଟିକି ଟିକି କରି ସ୍ୱାହା କରେ ସର୍ବକ୍ଷଣ ।
କମଳ ଦେଖିଲେ ମୃଗ ଗୋଟିଏ ନ ଛାଡେ
କାଳ-ଭୂଜଙ୍ଗ ତେସନ କାହାକୁ ନ ହୁଡ଼େ ।
ଏକଇ ମାତ୍ର କମଳ ଅଛି ହେ ମୁନିଶ
କାଳ ବାପ ସୁଦ୍ଧା ପଶି ନପାରେ ତା ପାଶ ।
ଶାନ୍ତି, ମୈତ୍ରୀ, ସେ କମଳ ଅଙ୍କୁର ସଦୃଶ
ଚୈତନ୍ୟ ମାତ୍ର ଅଟଇ ତାହାର ପ୍ରକାଶ ।
ତେଣୁକରି ସେ କମଳ ରହିଛି ଜୀବିତ
କାଳ-ମୃଗ ପଶି ନପାରଇ ତା ପର୍ଯ୍ୟନ୍ତ ।
କିପରି ଲଭିବି ସେହି ଶାନ୍ତି ମୈତ୍ରୀ ବୀଜ
ସେହି କଥା କହିଦିଅ ଆହେ ମୁନିରାଜ ।

ତାକୁ ଧରି ଖାଇବା ତ ଅତି ଦୂର କଥା
କାଳ ଆପେ ଲୀନ ହୁଏ ନ ରହେ ତା ସତ୍ତା ।
ଅଗଣିତ ଉର୍ମିମାଳା ଜନ୍ମାଏ ସାଗର
କ୍ଷଣ କ୍ଷଣକେ ସେ ସବୁ କରଇ ସଂହାର ।
ତାଦୃଶ୍ୟ କାଳ ସର୍ଜଇ ଅଜସ୍ର ଜଗତ
ପୁଣି କ୍ଷଣମାତ୍ରେ ତାହା କରେ ଗର୍ଭସାତ ।
ପରପଞ୍ଚ ବୋଲି ଯାହା ଦେଖିବ ଜଗତେ
କାଳର ମୁଖ ଜାଣିବ ଅଟନ୍ତି ସମସ୍ତେ ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସର୍ବେ କାଳବଶ
କେହି ନାହିଁ ଯାକୁ ନ ଗ୍ରାସଇ କାଳଫାଶ ।
ମହାକ୍ରୁର ଅଟେ କାଳ ମହା ଅବିଶ୍ୱାସୀ
ଅତର୍କିତେ ପହଞ୍ଚଇ ଆଚମ୍ବିତେ ଆସି ।
ମାୟା ବା ମମତା, ଦୟା ତିଳେ ନାହିଁ ତାର
ନିର୍ମମ ଭାବେ ଭବକୁ କରଇ ସଂହାର ।
କାଳହିଁ ଉତ୍ପତ୍ତି, ସ୍ଥିତି, ପ୍ରଳୟ କାରଣ
କାଳ ସମ୍ମୁଖରେ ବ୍ରହ୍ମା ବିଷ୍ଣୁ ଅକିଞ୍ଚନ ।
ବହୁବାର ମହାକଳ୍ପ-ବିକଳ୍ପ ନାଶିଛି
ବହୁବାର ମଧ୍ୟ ନାଶ କରିବାକୁ ଅଛି ।
କାଳର ତୃପତି କେଭେଁ ନ ଆସେ ଭୋଜନେ
କେବେ ବା ତୃପ୍ତି ଆସିବ ଅଜଣା ସ୍ୱପନେ ।
ଘୃତ ଆହୂତିରେ ଅଗ୍ନି ନୁହନ୍ତି ତୃପତ
ଯେତେ ଢାଳୁଥିଲେ ଖାଇବାକୁ ସେ ଉଦ୍ୟତ ।
ଜଣା ଅଜଣାରେ ଯେତେ ବ୍ରହ୍ମାଣ୍ଡ ଅଛନ୍ତି
ସବୁଙ୍କୁ ଗ୍ରାସି କାଳର ନ ଆସଇ ତୃପ୍ତି ।
କାଳ ପାଇଁ ଅସମ୍ଭବ ହୋଇ କିଛି ନାହିଁ
ଇନ୍ଦ୍ରକୁ ଦରିଦ୍ର କରେ, ଦୀନ ଇନ୍ଦ୍ର ହୋଇ ।
ସୁମେରୁକୁ କରିପାରେ ଶୋରିଷ ସମାନ
ଶୋରିଷକୁ ପୁଣି ଦିଏ ସୁମେରୁର ସ୍ଥାନ ।
ଐଶ୍ୱର୍ଯ୍ୟଶାଳୀକୁ କରେ ଦାଣ୍ଡର ଭିକାରୀ
ଦାଣ୍ଡ ଭିକାରୀକୁ କରେ ଅଇଶ୍ୱର୍ଯ୍ୟଶାଳୀ ।
ବିନ୍ଦୁକୁ ସାଗର କରେ ସାଗରକୁ-ବିନ୍ଦୁ-
କାଳର ଏ ଶକତିକି କେହୁ ଅଛା ବିନ୍ଦୁ ।
କାଳର କରଣୀ କେଭେଁ ନୁହେଁ ପରାଧୀନ
ନିରଙ୍କୁଶ, ବିଚିତ୍ର ସେ ସର୍ବଦା ସ୍ୱାଧୀନ ।
ସୁମେରୁ ପର୍ବତ ଯାର ଉପମା ତ ନାହିଁ
କାଳ ବାୟୁ କାଳକ୍ରମେ ଦିଏ ତା ଉଡ଼ାଇ ।

କାଳର ଦୁଇଟି ଅସ୍ତ୍ର ଶୁଭ ଓ ଅଶୁଭ
ସେମାନଙ୍କୁ ନେଇ କାଳ ସାଧିପାରେ ସର୍ବ ।
ମଶକକୁ ନାଶ କଲାପରି ହେୟ ଜ୍ଞାନେ
ଅନାୟାସେ କାଳ ନାଶ କରେ ଜୀବଗଣେ ।
ଅଶୁଭ ଶୁଭ ତା ଅସ୍ତ୍ର ସର୍ବଦା ଜାଗ୍ରତ
ନିର୍ମମରେ ଜଗତକୁ କରନ୍ତି ନିପାତ ।
ଜୀବଧାରୀ ମାତ୍ରେ-ରତ୍ନ, କାଳ ତା ଫଗୁଆ
ହେଜ ମୁନେ ଆମ୍ଭେ ସେହି ଫଗୁଆରେ ଥୁଆ ।
କାଳ କଉତକୁ କ୍ରୀଡ଼ା ଦେଖ ତପୋଧନ
ନଭ ପଟେ ସୂର୍ଯ୍ୟଚନ୍ଦ୍ର ପେଣ୍ଡୁ ତାର ଜାଣ ।
ବାଳକପରି ତାହାଙ୍କୁ ତଳକୁ ଉପର
ଫିଙ୍ଗି କ୍ରୀଡ଼ା କରୁଥାଇ କାଳ ନିରନ୍ତର ।
ମହାଜ୍ଞାନୀ ଜନେ ସଦା ରହନ୍ତି ଜାଗ୍ରତ
ସୃଷ୍ଟି ପ୍ରଳୟ ମଧ୍ୟରେ ଯାବତ ପଦାର୍ଥ ।
କେଭେଁ ହେଲେ ସେଥିପ୍ରତି ମମତା ନରଖି
ଲିପ୍ତ ନୋହି ସାବଧାନେ ଥାନ୍ତି ଯଥା ସାକ୍ଷୀ ।
ନପଡ଼ନ୍ତି କି ସେମାନେ କାଳ କବଳରେ ?
ଅବଶ୍ୟ ପଡ଼ନ୍ତି ମୁନେ ! ଦେଖ କି ପ୍ରକାରେ ।
ଶିବଙ୍କ ଗଳାରେ ଯଥା ଶୋହେ ମୁଣ୍ଡମାଳ
କାଳର ଗଳାରେ ତଥା କଙ୍କାଳର ହାର ।
ବଳେ ବଳବାନ ସେହୁ ମାନ୍ୟେ ମହାମାନ୍ୟ
କାଳର ଗର୍ଭ ବ୍ୟତୀତ ନାହିଁ ତାଙ୍କ ସ୍ଥାନ ।
ସମସ୍ତଙ୍କଠାରୁ ସିନ୍ଧୁ ହେଲେ ହେଁ ବିଶାଳ
ବଡ଼ବାନଳ ତାହାକୁ କରଇ କବଳ ।
ବାୟୁବେଗେ ଭୋଜପତ୍ର ଉଡ଼ଇ ଯେସନ
କାଳର ପ୍ରଭାବେ ସର୍ବେ ଉଡ଼ନ୍ତି ତେସନ ।
କାହାର ସାମର୍ଥ୍ୟ ଅଛି ଏ ବିଶ୍ୱ ସଂସାରେ
କାଳର ସମ୍ମୁଖେ ଦୃଢ଼େ ଠିଆ ରହିପାରେ ।
ସତ୍ତ୍ୱଗୁଣେ ଗୁଣୀ ଜନ ଦେବତା ସମାନ
ରଜଗୁଣେ ଗୁଣାନ୍ୱିତ ଯେତେକ ରାଜନ ।
ତମ ଗୁଣେ ଆବୋରିତ ଦୁର୍ଦ୍ଦାନ୍ତ ଦଇତ
କାଳ ସଙ୍ଗେ ଯୋଡ଼ ଦେବ ଅଛି କା ସାମର୍ଥ୍ୟ ?
ହାଣ୍ଡିରେ ପାଣି, ଚାଉଳ ଏକାଠି ରଖିଲେ
ଜଳନ୍ତା ଚୁଲୀରେ ନେଇ ହାଣ୍ଡି ବସାଇଲେ ।
ତାପ ପାଇ ସେ ଚାଉଳ ଫୁଟି ଉଚ୍ଛୁଳିବ
ସେ ଅନ୍ନକୁ ଚଟୁଧରି ଘାଣ୍ଟି ଦେଉଥିବ ।

ଜଗତ ରୂପ ହାଣ୍ଡିରେ ଜୀବରୂପୀ ଅନ୍ନ
ରାଗ-ଅଗ୍ନି ଦ୍ୱାରା ତଥା ହୁଅଇ ରନ୍ଧନ ।
କର୍ମରୂପୀ ଚଟୁଦ୍ୱାରା ତଳକୁ ଉପର
ହୋଇ ଘଲୁଥାଏ ଅନ୍ନ-ଜୀବ ବାରମ୍ବାର ।
ସେ ଜୀବ-ଅନ୍ନ ହୁଅଇ କାଳର ଆହାର
ତଥାପି ଜୀବ ନ ବୁଝେ କାଳ ବ୍ୟବହାର ।
କାଳ ଅଟେ ମହେଶ୍ୱର ଜାଣ ମୁନିବର
ସକଳ ଦୃଶ୍ୟ ବସ୍ତୁକୁ କରେ ସେ ଆହାର ।
କାର୍ଯ୍ୟ, କାରଣ ଉଭୟ ମୂର୍ତ୍ତି ଧରି କାଳ
ପ୍ରକାଶ ପାଉଅଛଇ ଏହି ଧରାତଳ ।
ଦୃଶ୍ୟ ଭଙ୍ଗ ପ୍ରବଣ ଯେ କାର୍ଯ୍ୟ ମୂର୍ତ୍ତିରୂପେ
ଅଦୃଶ୍ୟ ଅଭଙ୍ଗ କିନ୍ତୁ କାରଣ ସ୍ୱରୂପେ ।
ଅତୀତ ହେଲେହେଁ କଳ୍ପ ପରେ କଳ୍ପମାନ
ଖେଦ ବା ଆଦର ନାହି କାଳର ଟି ଜାଣ ।
ଉଦୟାସ୍ତ ଗତି, ସ୍ଥିତି କାଳର ନଥାଇ
ଯୌବନ ରୂପ ପଦ୍ମର ନିଶାକର ସେହି ।
କରାଳ ନିର୍ଦ୍ଦୟ ପୁଣି କଠୋର ନିଷ୍ଠୁର
କିପରି କାଳ ଦାଉରୁ ହେବି ମୁହିଁ ପାର ।
ସେହି ମାର୍ଗ ଦେଖାଇବା ହେଉ ମୁନିବର ।
ଚିର କୃତଜ୍ଞ ରହିବି ତବ ଶ୍ରୀପୟର ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**କାଳ ନିରୂପଣ ବର୍ଣ୍ଣନେ**
**ନାମ ଅଷ୍ଟାଦଶ ସର୍ଗଃ ।**

❑

## ଊନବିଂଶ ସର୍ଗଃ

## କାଳ ବିଳାସ-୧



ଶ୍ରୀରାମ କହନ୍ତି ଏବେ ଶୁଣ ମୁନିବର
ଦୁଷ୍ଟ ବୁଦ୍ଧି ଅଗ୍ରଗଣ୍ୟ ଅଟଇ ଏ କାଳ ।
କାଳର ଶକତି କେତେ କିଏ ତା କଳିବ
ତା ସମ୍ମୁଖ ହେବାପାଇଁ ସକ୍ଷମ କେ ହେବ ?
ଯେ ମହାକାଳ ପୂର୍ବରୁ ହୋଇଛି ବର୍ଣ୍ଣିତ
ଏ କାଳ ତାଠାରୁ ଭିନ୍ନ ଜାଣ ମୁନିନାଥ ।
ଖଣ୍ଡକାଳ ନାମେ ଏହୁ ଅଟେ ପରିଚିତ
ସକଳ ପଦାର୍ଥ ସ୍ରଷ୍ଟା, ସଂହର୍ତ୍ତା ସେହିତ ।
କାଳ, ଦୈବ ଦୁଇନାମ ଧରେ ଖଣ୍ଡକାଳ
କ୍ରିୟା ହିଁ ତାର ସ୍ୱରୂପ ଅଟେ ମୁନିବର ।
ଜୀବ କର୍ମ ଫଳ ସମ୍ପାଦନ ତାର କାମ
ଅପର କାର୍ଯ୍ୟ ତାହାର ଦେଖା ନ ଯାଇଣ ।
ଜୀବକୃତ କାର୍ଯ୍ୟ ଜୀବ ବିନାଶ କାରଣ
ଜୀବକୃତ କାର୍ଯ୍ୟ, କାଳ ଅଟନ୍ତି ଅଭିନ୍ନ ।
କାଳ ନୃତ୍ୟ-ଗୃହ ଏହି ବିଶାଳ ଜଗତ
ଅବିଶ୍ରାନ୍ତ ଭାବେ କାଳ ରହେ ନୃତ୍ୟରତ ।
ଦୈବ ବୋଲି ଯେ କାଳକୁ କହୁଁ ଆମ୍ଭେମାନେ
କୃତାନ୍ତ ତା ଅନ୍ୟ ନାମ ଜାଣ ମହାତ୍ମନେ ।
ଏ କୃତାନ୍ତ ଭାର୍ଯ୍ୟା ନାମ ଚଣ୍ଡୀ ବା ନିୟତି
କାଳ ଆଗେ ରହି ସଦା ନୃତ୍ୟ କରୁଥାନ୍ତି ।
ନିୟତିର ଏକ ସଖି ଅଛି ମୁନିବର
'ଶୁଭ କର୍ମ' ବୋଲି ଜାଣ ନାମଟି ତାହାର ।
ଭଲ କାମ କରୁ କିମ୍ବା ମନ୍ଦ କାମ କରୁ
ବରତି ନପାରେ ଜୀବ କାଳ କବଳରୁ ।
ସେହି ରାଜପୁତ୍ର ରୂପୀ କାଳର ବର୍ଣ୍ଣନା
କରୁଅଛି ତବ ଆଗେ ଶୁଣ ମହାମନା ।
ଅନାଦି, ଅକ୍ଷର ବ୍ରହ୍ମ ଏ ଜଗତ ରାଜା
ତାଙ୍କ ତେଜ-ଜାତ-ମାୟା ତଦୀୟ ଭାରିଯା ।
ତଦ୍ୱୀୟ ଔରସେ ଜାତ ପୁତ୍ର ନାମ କାଳ
କାଳ ହେଲେ ଯୁବରାଜ ଏହି ଜଗତର ।
କାଳ ଯୁବରାଜଙ୍କର ଯୁବରାଣୀ ଚଣ୍ଡୀ
ସ୍ୱକୀୟ ଭ୍ରମଣୀ ଦ୍ୱାରା ଜଗତକୁ ଭଣ୍ଡି ।
ସକଳ ଉତ୍‌ଥାନ ପତନର ସେ କାରେଣୀ
ମାୟାମୟୀ ଅବିଦ୍ୟା ସେ ଜଗତ ମୋହିନୀ ।
ପାରିଧିକୁ ରାଜପୁତ୍ର ଯେବେ ଚଳିଯାନ୍ତି
ସର୍ବ ବନ୍ୟ ଜନ୍ତୁ ବନେ ବିପଦ ଭଜନ୍ତି ।
କାଳ ଯୁବରାଜ ଯେବେ ସଂସାର-ବନରେ
ପାରିଧି କରି ବୁଲନ୍ତି, ଭୀତ ଜୀବକୁଳେ ।
ଭୟେ ଜର୍ଜରିତ ଜୀବଗଣଙ୍କୁ ସେ କାଳ
ଭ୍ରୂକ୍ଷେପ ନକରି ପେଶିଦିଏ ଯମପୁର ।
ମହା ଭୟଙ୍କର ଅଟେ ଏ କାଳ ଭୈରବ
ସମସ୍ତଙ୍କୁ ଗ୍ରାସି ଉଦରରେ ଦିଏ ଠାବ ।
ସବୁରି ପ୍ରଳୟ ରଚେ ପ୍ରଳୟ କାଳରେ
ସମସ୍ତଙ୍କୁ ଜୀର୍ଣ୍ଣକରେ ଜଠରାନଳରେ ।

ସିଂହ, ସିଂହିନୀ ବନରେ ମୃଗ ମାରି ଖାଇ
ନିର୍ଭୟରେ ବନରାଜ୍ୟେ ନୃତ୍ୟରତ ରହି ।
ତାଦୃଶ ଜଗତ–ବନେ କାଳ ଓ କାଳିକା
ନୃତ୍ୟରେ ମାତନ୍ତି ଯଥା ନାୟକ ନାୟିକା ।
ଜୀବଧାରୀଙ୍କୁ ସେମାନେ କରନ୍ତି ଭୋଜନ
ସୃଷ୍ଟି ଯାକ ଅକାତରେ କରନ୍ତି ଭ୍ରମଣ ।
ଜଗତର ପ୍ରାଦୁର୍ଭାବ ତାଙ୍କଠାରୁ ଜାତ
ବାଗ ବଗିଚ୍ଚ ଆଦିର ସେହୁ ତାତ ମାତ ।
ଜୀବର ଉତ୍ପତ୍ତି ପୁଣି ଜୀବର ବିନାଶ
ତାଙ୍କଦ୍ୱାରା ଘଟିଥାଏ ଜାଣ ହେ ମୁନିଶ ।
ସୁନ୍ଦର ସାଗର ରଚି ଅଗ୍ନି ଦ୍ୟନ୍ତି ଜାଳି
ରମ୍ୟ ପଦ୍ମବନ ରଚି ଶିଶିର ଅଜାଡ଼ି ।
ବଡ଼ ବଡ଼ ଗ୍ରାମମାନ କରିଦ୍ୟନ୍ତି ଚୂର୍ଣ୍ଣ
ଠିଆ କରିଦ୍ୟନ୍ତି ଶୂନ୍ୟ ପ୍ରାନ୍ତେ ଗ୍ରାମମାନ ।
କାହାରିକୁ ନରଖନ୍ତି କରି ଚିର ସ୍ଥିର
ଯଥା ବୃକ୍ଷକୁ ଅସ୍ଥିର କରଇ ବାନର ।
ଭାଙ୍ଗିବା ଗଢ଼ିବା ଅଟେ କାଳର ଯେ ଖେଳ
ସେ ଖେଳର ମର୍ମ ଏକା କାଳକୁ ଗୋଚର ।
ଯେ ଜଗତ କାଳବଶ, ତହିଁରେ ବିଶ୍ୱାସ
କିପରି ରଖିବି କହ ଆହେ ମୁନିଈଶ ।
କିପରି ଏ ବିପଦରୁ ରକ୍ଷା ପାଇବଇଁ
ସୁଗମ ପଥ ଦେଖାଅ ଆହେ ତପୀସାଇଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**କାଳ ବିଳାସ ବର୍ଣ୍ଣନେ**
**ନାମ ଊନବିଂଶ ସର୍ଗଃ ।**



## ବିଂଶ ସର୍ଗଃ
## କାଳ ଜୁଗୁପ୍‌ସା

ଶ୍ରୀରାମ କହନ୍ତି ଶୁଣ ଦରବାର ଜନ
କେହିତ କିଛି ନକହି ରହିଛ୍ ମଉନ ।
ମହା ପରାକ୍ରମଶାଳୀ ଅଟେ ଏହି କାଳ
କେହି ରହି ନପାରନ୍ତି ଏହା ସମ୍ମୁଖରେ ।
ପଲକ ମାତ୍ରେ ନୀଚକୁ ଉଚ୍ଚସ୍ଥାନ ନେଇ
ଉଚ୍ଚ ସ୍ଥାନାସୀନଙ୍କୁ ସେ ନୀଚରେ ବସାଇ ।
କାହାର କ୍ଷମତା ଅଛି ବାଧାଦେବ ତାକୁ
ତା ଭୟରେ ସର୍ବ ହିୟା ହୁଏ ଦୁକୁ ଦୁକୁ ।
ମହାଭୈରବ ଏ କାଳ ସର୍ବ ବିଶ୍ୱଗ୍ରାସୀ
ତା କବଳୁ ବରତିବ କେ ଏଡ଼େ ସାହସୀ ?
ଚଣ୍ଡୀକା ଶକତି ପରି ଏହାର ଶକତି
ଏପରି କହିଲେ କେଭେଁ ନୋହିବ ଅତ୍ୟୁକ୍ତି ।
ଅତି ବଳବାନ ଅଟେ ଖର ନଦୀ ସରି
ତାକୁ ଲଙ୍ଘିବାକୁ ଶକ୍ତି ଅଛି ବା କାହାରି ।
ସେ ମହାକାଳର ନାମାନ୍ତର ଅଟେ କାଳୀ
ଆକାରରେ ଭୟଙ୍କରୀ ସେ କାଳୀ କରାଳୀ ।
କାଳର ଅପର ନାମ ରୁଦ୍ର ବୋଲି ଜାଣ
ରୁଦ୍ର କାଳିକା ଏ ଦୁହେଁ ନୁହନ୍ତି ଅଭିନ୍ନ ।
ସମସ୍ତଙ୍କୁ ଗ୍ରାସକରି ମଦେ ହୋଇ ଭୋଳ
ଭୈରବ ଭୈରବୀ ରୂପେ କରନ୍ତି ସେ ଖେଳ ।
ସେହି କାଳ କାଳିକାଙ୍କ ଆକାର ବିଶାଳ
ନିଜେ ଭୟ ଡରିଯିବ ଦେଖି ସେ ଆକାର ।
ସେହି କାଳଙ୍କର ଅନ୍ୟ ନାମ ଅଟେ ଦୈବ
ଯାବତ ସର୍ଜନାକୁ ସେ ଦ୍ୟନ୍ତି ପରାଭବ ।
ଆକାଶ ତାଙ୍କର ଶିର ପାତାଳ ଚରଣ
ଦଶ ଦିଶମାନ ତାଙ୍କ ଭୁଜ ବୋଲି ଜାଣ
ସପତ ସାଗର ତାଙ୍କ ଶ୍ରୀହସ୍ତ କଙ୍କଣ
ସମଗ୍ର ପୃଥିବୀ ତାଙ୍କ ହସ୍ତେ ପାତ୍ର ଜାଣ ।
ସେ ପୃଥିବୀ ପରେ ଯେତେ ଜୀବଜନ୍ତୁ ଥାନ୍ତି
ସେ କାଳ ଭୈରବ ତାଙ୍କୁ ଆନନ୍ଦେ ଭୁଞ୍ଜନ୍ତି ।
ସୁମେରୁ ହିମାଦ୍ରି ତାଙ୍କ କର୍ଣ୍ଣର କୁଣ୍ଡଳ
ଶ୍ରୀକରେ ଶୋଭାପାଆନ୍ତି ତ୍ରିଶୂଳ ମୁଷଳ ।
ଲୋଚନ ତାଙ୍କ ଅଟନ୍ତି ଚନ୍ଦ୍ରମା ତପନ
ଲଲାଟ ଦେଶରେ ଶୋଭା ପାନ୍ତି ତାରାଗଣ ।
ଏକ କରେ ଧରିଛନ୍ତି ଏକ ତନ୍ତୁ ଫାଶ
ସେ ଫାଶେ ଟାଣି ଜୀବଙ୍କୁ କରନ୍ତି ବିନାଶ ।
ସେହି କାଳୀ ସର୍ବ ଜୀବମାନଙ୍କୁ ନାଶନ୍ତି
ଗ୍ରାସକରି ମୁଣ୍ଡମାଳା ଗଳାରେ ଝୁଲାନ୍ତି ।
ଅଟ୍ଟହାସ୍ୟ କରି ମହା-ଭୈରବଙ୍କ ଆଗେ
ନୃତ୍ୟ କରୁଥାନ୍ତି କେଡ଼େ ମନର ସରାଗେ ।
ଭୈରବ ଆଗେ ବଞ୍ଚିବା ଶକ୍ତି ଅଛି କା'ର
ଆଗେ ପଡ଼ିଲେ ବାହାରେ ନାନାଦି ବିକାର
କ୍ଷଣକରେ ମରୁଭୂମି ନଗରରେ ପୂର୍ଣ୍ଣ
କ୍ଷଣକେ ଉର୍ବରା ଭୂମି ମରୁଭୂମି ସମ ।

ତେଣୁକରି ତାଙ୍କ ନାମ ଦୈବ ବୋଲି କହି
ଦୈବ କବଳୁ ଖସିବ ଏମନ୍ତ କେ ନାହିଁ ।
ବଡ଼ ବଡ଼ ପଦାର୍ଥକୁ ସର୍ଜନା କରେ ସେ
ସରଜିଥିବା ପଦାର୍ଥ ଅଚିରେ ବିନାଶେ ।
ଚିରସ୍ଥାୟୀ କରି କାହାକୁ ସେ ନରଖଇ
ତେଣୁ କୃତାନ୍ତ ନାମରେ ଅଭିହିତ ହୋଇ ।
କେହିତ ନୁହନ୍ତି ନିତ୍ୟ, ସେହି ଏକା ନିତ୍ୟ
ଅପରିଣାମୀ ସେ ତେଣୁ ଜାଣ ତପୋବନ୍ତ ।
କ୍ରିୟା ହିଁ ତାର ସ୍ୱରୂପ ଯେଣୁ ମୁନିବର
ଏଣୁକରି କର୍ମ ନାମ ଅଟଇ କାଳର ।
ଅଭାବ-ଧନକୁ ଯେବେ କରେ ସେ ଧାରଣ
ରାଗ, ଦ୍ୱେଷ, ଶରମାନ କରେ ନିକ୍ଷେପଣ ।
ଜୀବଗଣ ସେ ବାଣରେ ଜଳି ପୋଡ଼ି ଯାନ୍ତି
ହାହାକାରେ କର୍ମ କର୍ମ ବୋଲି ରଟୁଥାନ୍ତି ।
ପିଲାଏ ମାଟି ଖେଳନା ଗଢ଼ନ୍ତି ଯେପରି
ସୃଷ୍ଟି, ବିନାଶ, କାଳର ଖେଳ ସେହିପରି ।
କାଳ-ଧୀବର ମେଲିଛି କ୍ରିୟାଜାଲ ତାର
ଜୀବଧାରୀ-ପକ୍ଷୀ ପଶିଯାନ୍ତି ତା ମଧ୍ୟର ।
ଫାଶେ ପଡ଼ି ଶାନ୍ତି ଅବା ପାଇବେ ସେ କାହିଁ
ହାହାକାର ବିନା ଅନ୍ୟ ବାଟ ନ ଦିଶଇ ।
ବିନାଶରେ ଆଶା କିମ୍ବା ପୋଷିବଇଁ ମୁହିଁ
ଜାଗ୍ରତ ସ୍ୱପନ ଅଟେ ସୁଖଭୋଗ ଯହିଁ ?
ସ୍ଥାବର ଜଙ୍ଗମମୟ ଏ ସାରା ଜଗତ
ହୋଇତ ସାରିଛି ଦେବ କାଳ ମୁଖଗ୍ରସ୍ତ ।
ଯାହା ମୁଁ ଦେଖୁଛି ସବୁ ନାଶର ବିକାଶ
ଦିଅନ୍ତୁ କିଞ୍ଚିତ ମୁନେ ! ନିର୍ଭୟ ଆଭାସ ।
ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ
କାଳ ଜୁଗୁପ୍ସା ବର୍ଣ୍ଣନେ
ନାମ ବିଂଶ ସର୍ଗଃ ।



## ଏକବିଂଶ ସର୍ଗଃ
## କାଳ ବିଳାସ-୨

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ମୁନିବର
ଏ ନେତ୍ରକୁ ଦିଶେ ଯାହା ଅତି ଚମତ୍କାର ।
ଦିନେ ନା ଦିନେ ସେମାନେ ସର୍ବେ ଯିବେ ନାଶ
ତେବେ ମୁହିଁ କାହାଠାରେ ରଖିବଇଁ ଆଶ ?
ସେମାନଙ୍କ ପାଇଁ ଇଚ୍ଛା କରିବା ମୂର୍ଖତା
ବିବେକୀ ଜନ କିପରି କରିବ ସେ କଥା ।
ଅଜ୍ଞାନୀ ମାନବ ଯେତେ ଯେତେ ଚେଷ୍ଟାକରେ
ସେ ସବୁ ଦୁଃଖ କାରଣ ଜାଣି ସେ ନ ପାରେ
ଉପକାର ବୋଲି ତହିଁ ନାହିଁ ଲେଶମାତ୍ର
କୁହୁଡ଼ି ପହଁରା କଥା ଜାଣ ତା ନିଶ୍ଚିତ ।
ବାଲ୍ୟାବସ୍ଥାରେ ମୂଢ଼ତା ଅବଶ୍ୟ ରହିବ
ବିଚାର ଶକତି ତହିଁ କାହୁଁ ବା ଆସିବ ?
ଯଉବନ ପରଶନ୍ତେ ବିଷୟାଭିଳାଷ
ଅଜ୍ଞ ଜୀବକୁ ଏ ବ୍ୟାଧି କରିଥାଏ ଗ୍ରାସ ।
ମାନ ମୋହାଦି ବିକାର ତାକୁ ଗ୍ରାସ କରେ
ଗର୍ବାନ୍ଧ ସେ ଗୁରୁ ଗଉରବ ହେୟ କରେ ।
ସଦା ସର୍ବଦା ବିଷୟା ତୃଷ୍ଣା ତାକୁ ଘାରେ
ଶାନ୍ତି ବୋଲି କି ପଦାର୍ଥ ବୁଝି ସେ ନପାରେ ।
ଅଜ୍ଞାନର ଯାହା ସବୁ ସୁଖ-ସ୍ୱପ୍ନ-ରାଜ୍ୟ
ସେ ସବୁ ଦୁଃଖ ଆଧାର ବୋଲି ରଖ ହେଜ ।
ତୃଣଠାରୁ ବ୍ରହ୍ମଯାଏ ଯେତେ ଯେତେ ଲୋକ
ଦୁଃଖର ଆବାସ ସ୍ଥଳ, ନାହିଁ ତହିଁ ସୁଖ ।
ହେ ମୁନିଶ ! ଜୀବ ଆୟୁ ଅତୀବ ଚଞ୍ଚଳ
ତଦୁପରି ମୃତ୍ୟୁ ବେଗ ଅତି କ୍ଷିପ୍ରତର ।
ଜନମ ଲଭିବା ମାତ୍ରେ ମୃତ୍ୟୁ ଧାଏଁ ପଛେ
ଅନ୍ୟ କଥା କିଛି ନାହି ଏହି ଧରା ବକ୍ଷେ ।
ଉପଭୋଗ୍ୟ ବୋଲି ଯାହା ମଣଇ ଜଗତ
ସେ ସବୁ ରୋଗ-ଭଣ୍ଡାର ଜାଣ ସୁନିଶ୍ଚିତ ।
ସମ୍ପଦ ବୋଲି ଯାହାକି ମୂଢ଼ ଜନ ଦେଖେ
ବିପଦ ଭଣ୍ଡାର ତାହା ଜାଣୁଛି ପ୍ରତ୍ୟକ୍ଷେ ।
ସତ୍ୟ ବୋଲିଣ ଯାହାକୁ ମଣଇ ସଂସାର
ଅସତ୍ୟ ତା ପଦେ ପଦେ ଭରିଛି ତହିଁର ।
ସ୍ତିରୀ ପୁତ୍ର ଆଦି ଯାଙ୍କୁ ମିତ୍ର ବୋଲି ଗଣ
ଅନ୍ୟ କିଛି ନୁହେଁ ତାହା ବନ୍ଧନ କାରଣ ।
ଇନ୍ଦ୍ରିୟମାନେ ଅଟନ୍ତି ଜୀବଙ୍କ ବଇରୀ
ପ୍ରଲୋଭନ ଜାଲେ ତାଙ୍କୁ ରହିଛନ୍ତି ଘେରି ।
ଏ ସମସ୍ତ ମୃଗତୃଷ୍ଣା ଜଳର ସମାନ
ଅଳୀକ କଥାରେ ଜୀବ ହରାଏ ପରାଣ ।

ଏହି ନଶ୍ୱର ଶରୀର କେବଳ ବିକାର
ତହିଁ ମଧ୍ୟେ ମନ-ରାଜା ଅତୀବ ଚଞ୍ଚଳ ।
ଶାନ୍ତିହୀନ ପୁଣି ସଦା ଅହଙ୍କାର ପୂର୍ଣ୍ଣ
ତେଣୁକରି ମନ-ରାଜା ଦୀନଠାରୁ ହୀନ ।
ସୁଖଦାୟୀ ବୋଲି ଜୀବ ଯା'କୁ ଭାବୁଥାଏ
ଦୁଃଖର କାରଣ ତାହା ପଦେ ପଦେ ହୁଏ ।
ଶାନ୍ତି ପାଇ ଅବସର ଆଉ କେଉଁଠାରେ
ତେଣୁ ମୋର ମନ ନ ଲୋଭାଏ କେଉଁଥିରେ ।
ଆଖିକି ସୁନ୍ଦର ସିନା ଦିଶନ୍ତି ଏମାନ
ତହିଁ କିଛି ସୁଖ ନାହିଁ, ଅସ୍ଥିରତା ପୂର୍ଣ୍ଣ ।
ସାଗର ଲହରୀମାନେ ନୃତ୍ୟ କରୁଥାନ୍ତି
କ୍ଷଣିକ ବଡ଼ବାନଳେ ବିଲୟ ଲଭନ୍ତି ।
ପଦାର୍ଥମାନ ଉତ୍ପନ୍ନ ସଦା ହେଉଥାନ୍ତି
ଆଖି ପିଛୁଳାକେ ପୁଣି ବିନାଶ ଲଭନ୍ତି ।
ନିଜ ଆୟୁରେ କିପରି ଆସ୍ଥା ମୁଁ ରଖିବି ?
ନିର୍ବୋଧଙ୍କ ମଧ୍ୟେ ସିନା ଅଗ୍ରଗଣ୍ୟ ହେବି ।
ସୁମେରୁ ସାଗର ସୂର୍ଯ୍ୟ ଦେବତା ଦାନବ
ସିଦ୍ଧ, ଗନ୍ଧର୍ବ, ପୃଥିବୀ, ଅଗ୍ନି, ବାୟୁଦେବ ।
ଯମ, କୁବେର, ବରୁଣ, ମଘବା, ଚନ୍ଦ୍ରମା
ଧ୍ରୁବ, ଜଗତ କରତା ବିଷ୍ଣୁ, ରୁଦ୍ର, ବ୍ରହ୍ମା ।
ସର୍ବଭକ୍ଷ କାଳ ପୁଣି କାଳର ଘରଣୀ
ସବୁରି ଆଧାର ନଭ, ଏ ସାରା ଧରଣୀ
ବିନାଶ ପ୍ରାପତ୍ ହେବେ ଅବଶ୍ୟ ଏ ସର୍ବେ ।
କିଏବା ପଚାରେ ଆମ୍ଭ କଥା ଏହି ଭବେ ?
ଆସ୍ଥା ରଖିବଇଁ ମୁହିଁ କାହାର ଉପର
ଆବର କାହା ଉପରେ କରିବି ନିର୍ଭର ?
ଭ୍ରମାତ୍ମକ ଅଟେ ସିନା ଏ ସାରା ସଂସାର
ଅଜ୍ଞାନୀ କେବଳ ଆସ୍ଥା ରଖେ ଏଥି ପର ।
ଟିକେ ହେଲେ ଆସ୍ଥା ମୋର ନାହିଁ ଏ ଜଗତେ
ଭ୍ରମରୁ ଜଗତ ଜାତ ଜାଣ ମହାମତେ ।
କେବଳ ଗୋଚର ମୋତେ ଏତିକି ମାତର
କେବଳ ଅହଙ୍କାର ହିଁ କର୍ତ୍ତା ଏ ଦୁଃଖର ।
ଜୀବର ପରମ ଶତ୍ରୁ ଅଟେ ଅହଙ୍କାର
ଯେ ଘେନି ଜୀବ ଏ ଭବେ ହୁଏ ନାରଖାର ।
ସୂତ୍ରରେ ଆବଦ୍ଧ ଗୁଡ଼ି ଉଡ଼ି ଚାଲିଥାଇ
ତଳ ଉପର ହୁଅଇ ସ୍ଥିର ନ ରହଇ ।

ଅହଙ୍କାର-ରଜ୍ଜୁବଦ୍ଧ ହୋଇ ଏହି ଜୀବ
ତଳ ଉପର ହୁଅଇ ସ୍ଥିର ଅସମ୍ଭବ ।
ଅଶ୍ୱଯୋଚ୍ଚ ରଥେ ସୂର୍ଯ୍ୟ ଯଥା ଭ୍ରମେ ନଭେ
ତେସନ ଜୀବ ଭ୍ରମଇ ସଦା ଏହି ଭବେ ।
ସତ୍ୟ, ପରମାର୍ଥଠାରୁ ଅତି ଦୂରେ ରହି
ଏ ଜୀବ ଭ୍ରମଣ କରୁଥାଏ ଏହି ମହୀ ।
ଅଜ୍ଞାନବଶତଃ ଆସ୍ଥା ରଖେ ଏ ସଂସାରେ
ଭୋଗକୁ ସୁଖ ବୁଝି ସେ ବାସନାରେ ମରେ ।
ସୁଖ ବୋଲି ଯାହା ଜୀବଗଣ ନେତ୍ରେ ଦିଶେ
ବାସ୍ତବରେ ଭବଧାମେ ରୋଗ ଅଟଇ ସେ ।
ବିଷଧର ସର୍ପ ଅଟେ ପ୍ରାଣନାଶକାରୀ
ତା ଠାରେ ବିଶ୍ୱାସ ରଖି ମରେ ପ୍ରାଣଧାରୀ ।
ଏ ସବୁ ଅସତ୍ୟ, କାଳ ମୁଖେ ଛନ୍ତି ରହି
ବିଚାର ବିହୁନେ ଜୀବ ଜୀବ ନ ହରାଇ ।
ବୋଧଶକ୍ତି ଅଟେ ସିନା କଲ୍ୟାଣଦାୟକ
ସେହି ଶକ୍ତି ଅଭାବରେ ଜୀବ ପାଏ ଦୁଃଖ ।
ତୃଷ୍ଣାର ଉଦୟେ ହୁଏ ଧୈର୍ଯ୍ୟର ବିନାଶ
ସଙ୍ଗେ ସଙ୍ଗେ ଆନନ୍ଦର ହୋଇଯାଏ ହ୍ରାସ ।
ବାୟୁବେଗେ ଉଡ଼ିଯାଏ ବାରିଦ ଯେସନ
ତୃଷ୍ଣା-ଅନଳ ବିନାଶେ ବିବେକ ସୁଜ୍ଞାନ ।
ଜଗତ-ଭ୍ରମ ଧାରଣା ତୁଟିବ ଯେପରି
ସେହି ଉପଦେଶ ମୋତେ ଦିଅ ତପଚାରୀ ।
ଏ ଭ୍ରମ-ଜଗତେ ମୋର ତିଳେ ଆସ୍ଥା ନାହିଁ
ତେଣୁ ଯାହା ଇଚ୍ଛାହେବ ତାହା କରିବଇଁ ।
କରମେ ଅଛଇ ଯାହା ଦୁଃଖ ଅବା ସୁଖ
ଅବଶ୍ୟ ଘଟିବ ତାହା ମୁଁ ନୁହେ ବିମୁଖ ।
ତପସ୍ୱୀ ହୁଅ ଅଥବା ହୁଅ ମୂଢ଼ ଜୀବ
ଯାହା ଘଟିବାକୁ ଥିବ ଅବଶ୍ୟ ଘଟିବ ।
ତେଣୁ ପ୍ରଯତ୍ନ କରିବା ଅଟଇ ମୂର୍ଖତା
ମୂର୍ଖତା ପାଇଁ କିମ୍ପାଇଁ ସରବଦା ଚିନ୍ତା ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ
କାଳ ବିଳାସ ବର୍ଣ୍ଣନେ
ନାମ ଏକବିଂଶ ସର୍ଗଃ ।**

❑

# ଦ୍ୱାବିଂଶ ସର୍ଗଃ
## ସର୍ବ ପଦାର୍ଥ ଅଭାବ

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିବର
ଏ ଯେଉଁ ପଦାର୍ଥମାନ ଆଖିକି ସୁନ୍ଦର ।
ସେ ସମସ୍ତ ସିନା ବିନାଶର ରୂପାନ୍ତର
ନିର୍ବୋଧ କେବଳ ଆସ୍ଥା ରଖନ୍ତି ତହିଁର ।
ଏହାଙ୍କ ସ୍ୱରୂପ ସିନା ମନର କଳ୍ପନା
କିପରି ବିଶ୍ୱାସ ଯିବି ତହିଁ ମହାମନା ।
ନିରର୍ଥକ ଅଟେ ସିନା ଅଜ୍ଞାନୀ ଜୀବନ
ବଞ୍ଚିବା ମରିବା ଦୁହେଁ ତା ପକ୍ଷେ ସମାନ ।
କୁମାର ଅବସ୍ଥା-ବୁଦ୍ଧି ମୂର୍ଖତାରେ ପୂର୍ଣ୍ଣ
କିସ ଭଲ କିସ ମନ୍ଦ, ଏ ବିଚାର ଶୂନ୍ୟ ।
ଯୌବନରେ କାମ କ୍ରୋଧ ବିକାର ଜନମ
ପାଗଳଙ୍କପରି ସଦା ତାର ଆଚରଣ ।
ଜାଲରେ ପଡ଼ିବା ପକ୍ଷୀ ହୁଏ କଲବଲ
ଆକାଶ ମାର୍ଗ ନପାଇ ରହେଁ ବଲବଲ ।
କାମ କ୍ରୋଧାଦିରେ ଅନ୍ଧ ହୋଇଣ ଯୁବକ
ଭଲ ମନ୍ଦ ବିଚାରକୁ ନ ପାଏ ବିବେକ ।
ବୃଦ୍ଧାବସ୍ଥା ପହଞ୍ଚିଲେ ଅଙ୍ଗ ଜର୍ଜରିତ
ଦୀନ ହୀନ ହୋଇ ଶେଷେ ପଞ୍ଚତ୍ୱ ପ୍ରାପତ ।
ଶିଶିର ପଡ଼ନ୍ତେ ଯଥା କମଳ ବିନାଶ
ବାର୍ଦ୍ଧକ୍ୟ ଛୁଅନ୍ତେ ଯଉବନ ଯାଏ ନାଶ ।
ଯେ ଯାଏ ଜରା ପରଶ କରିନାହିଁ ଅଙ୍ଗ
ପ୍ରସ୍ଫୁଟିତ ଫୁଲପରି ଝଲସେ ସର୍ବାଙ୍ଗ ।
ରାହୁ ଗ୍ରାସ ନକରିବାଯାକେ ଚନ୍ଦ୍ରାଲୋକ
ସବୁରି ମନେ ହରଷ ଦିଏ ରାତ୍ରିଯାକ ।
ଗ୍ରହଣ ଲାଗିଲେ ଆଉ ଜ୍ୟୋତ୍ସ୍ନା ରାତି କାହିଁ
ଜରା ଛୁଅଁନ୍ତେ ଯୌବନ ସୌନ୍ଦର୍ଯ୍ୟ ଲୁଚଇ ।
ଜରା ପରଶନ୍ତେ ଅଙ୍ଗ କୃଶତା ଲଭଇ
ଆଶା ବୈତରଣୀ କିନ୍ତୁ ବଢ଼ି ଚାଲୁଥାଇ ।
ବରଷା କାଳରେ ନଦୀ ବୃଦ୍ଧି ପ୍ରାପ୍ତ ହୁଏ
ଜରା ଘେନି ତୃଷ୍ଣା-ନଦୀ ଫୁଲି ଉଠୁଥାଏ ।
ଯା ସବୁ କାମନାକରେ ତା ଦୁଃଖ କାରଣ
ତୃଷ୍ଣାରୁ ଜନ୍ମ ଲଭନ୍ତି ସର୍ବ ଦୁଃଖମାନ ।
ଚିତ୍ତ-ତରଣୀ ଭାସଇ ତୃଷ୍ଣା-ସାଗରରେ
ରାଗ ଦ୍ୱେଷ-ମତ୍ସ୍ୟ ଡେଇଁ ପଡ଼ନ୍ତି ତହିଁରେ ।
ଭାର ହେତୁ ସେ ନଉକା ଦବିଯାଏ ଜଳେ
ମତ୍ସ୍ୟମାନେ ପୁଣି ଡେଉଁ ପଡନ୍ତି ସାଗରେ ।
ଭାରପାଇଁ ସେ ନଉକା ଜଳେ ଦବୁଥାଏ
ଭାରଶୂନ୍ୟ ହେଲେ ପୁଣି ଊର୍ଦ୍ଧ୍ୱେ ଉଠିଯାଏ ।
କାଳ ତେସନ ଜୀବକୁ କରେ କଲବଲ
କେବେ ଉଠେ ଉଚ୍ଚେ ଜୀବ କେବେ ଗମେ ତଳ ।
କାମ ବୃକ୍ଷେ ତୃଷ୍ଣା ଲତା ମାଡ଼ିଅଛି ଜାଣ
ବିଷୟା-ପୁଷ୍ପରେ ଦିଶେ ଅତି ମନୋରମ ।
ଜୀବ-ଭ୍ରମର ତା'ପରେ ଉଡ଼ିଆସି ବସେ
ବସିବା ମାତ୍ରକେ ଯାଇଁ ମୃତ୍ୟୁ ମୁଖେ ପଶେ ।
ତୃଷ୍ଣା-ତରଙ୍ଗିଣୀ ମଧ୍ୟେ ରାଗ-ଦ୍ୱେଷ-ମୀନ
ଛଟପଟ ହୋଇ ଚିନ୍ତେ ଉଦ୍ଧାର କେସନ ।
ସେହି ବାସନା-ନଦୀରେ ଜୀବ ଛଟପଟ
ଉଦ୍ଧାର ପାଇବା ପାଇଁ ନଦିଶଇ ବାଟ ।
ଯେଉଁ ସଂସାରକୁ ଇଚ୍ଛା କରୁଥାଏ ଜୀବ
ବିନାଶର ଘର ସେହି, କେବେ ସେ ବୁଝିବ ?
ଭୀଷଣ ସାଗର ଊର୍ମିମାଳା ଯେ ଲଙ୍ଘଇ
ବୀର ବୋଲି ତାକୁ ମୁହିଁ ତିଳେ ନ ଗଣଇ ।
ଇନ୍ଦ୍ରିୟ-ସାଗର ଢେଉ ଯେ ଲଙ୍ଘି ପାରଇ
ସେହି ସିନା ସୁରବୀର ମଧ୍ୟେ ଗଣ୍ୟ ହୋଇ ।
ଅଜ୍ଞାନୀ ଜୀବ ଏମନ୍ତ କାର୍ଯ୍ୟ କରି ବସେ
ନାନା ଦୁଃଖ କଷଣରେ ପଡ଼େ ଯାଇ ଶେଷେ ।
ଯାହା କଲେ ସୁଖ ମିଳେ ନ କରେ ତା ଘେନା
ବିଷୟା ପଛରେ ଧାଇଁଥାଏ ନୀଚମନା ।
ଏହି ବାସନା ଜୀବକୁ ସୁଖ ନ ଦିଅଇ
ଦୂରର କଥା ସେ ଶାନ୍ତି, ସ୍ୱପ୍ନେ ନ ଦେଖଇ ।
ତା ଅନ୍ତର ସବୁବେଳେ ଜଳି ପୋଡୁଥାଏ
ଶାନ୍ତି-ଚନ୍ଦନ ତାହାକୁ ସ୍ୱପନ ପରାଏ ।
ଅନାତ୍ମ ପଦାର୍ଥ ପ୍ରତି ଯାହାର ବାସନା
ଶାନ୍ତି-ସମ୍ପଦ ତା ପାଇଁ ସଦା ଥାଏ ମନା ।
ତୃଷ୍ଣା-ନଦୀ ତଟେ ରାଜେ ପାଦପ ଦୁଇଟି
ଗୋଟିଏ ସନ୍ତୋଷ, ବଇରାଗ୍ୟ ଅପରଟି ।
ସେ ତୃଷ୍ଣା-ନଦୀ-ପ୍ରବାହ ଉଭୟଙ୍କୁ ନାଶେ
ଏମନ୍ତେ କେ ଅଛି ସେହି ସ୍ରୋତରେ ନଭାସେ ?

ଅତୀବ ଚଞ୍ଚଳା ଅଟେ ସେହି ତୃଷ୍ଣାରାଣୀ
କାହାକୁ ସ୍ଥିର ନରଖେ ଏ ସାରା ଅବନୀ ।
ମୋହ-ବୃକ୍ଷ ଋରିପଟେ ମାଡେ ନାରୀ-ଲତା
ବିଷପୂର୍ଣ୍ଣ ଋରୁ ପୁଷ୍ପେ ଦିଶେ ସୁଶୋଭିତା ।
ଚିତ୍ତ-ଭ୍ରମର ତା ପରେ ବସିବା ମାତ୍ରକେ
ନାଶ ପାଏ, ରହି ନପାରଇ ଭବଲୋକେ ।
ଅଜ୍ଞାନୀ-ଚିତ୍ତ ଚଞ୍ଚଳ କେକୀ ପୁଚ୍ଛପରି
ଚଞ୍ଚଳ ଚିତ୍ତ ଜୀବକୁ ମଣେ ପଶୁ ସରି ।
ଦିନବେଳେ ଗୋରୁଗାଈ ଚରିବୁଲି ଯାନ୍ତି
ଦିବାଶେଷେ ଗୃହେ ଫେରି ଖୁଣ୍ଟେ ବନ୍ଧା ହୁଅନ୍ତି ।
ଦିନବେଳେ ଲୋକମାନେ ଘର ଛାଡିଯାନ୍ତି
ରାତ୍ରରେ ଘରକୁ ଫେରି ଆନନ୍ଦେ ଶୁଅନ୍ତି ।
ପରମାର୍ଥ ଚିନ୍ତା ତହିଁ ନଥାଏ କିଞ୍ଚିତ
ବୃଥାରେ ନିଜ ଜୀବନ କରୁଥାନ୍ତି ଅସ୍ତ ।
ଅଜ୍ଞାନରେ କଟିଯାଏ ବାଳକ ଅବସ୍ଥା
ଯୌବନରେ ଆସି ଘାରେ କାମାନଳ ଚିନ୍ତା ।
ଚିତ୍ତ-ମତ୍ତହସ୍ତୀ ରହି ନାରୀ-କନ୍ଦରାରେ
କାଳ କାଟୁଥାଏ ଭ୍ରମେ ତହିଁ ଆନନ୍ଦରେ ।
କ୍ଷଣ ଭଙ୍ଗୁର ସେ ଭୋଗ ଜାଣି ନ ପାରଇ
ଯାତନା ରଜ୍ଜୁରେ ବନ୍ଧା ହୋଇ ସଢୁଥାଇ ।
ବୃଦ୍ଧ ଅବସ୍ଥାରେ ଦେହ ଲଭଇ କୃଶତା
ଭୋଗ ଶୋଷ କମେ ସିନା ବଢ଼େ ତୃଷ୍ଣା-ଲତା ।
ନର-ଗିରିଶୃଙ୍ଗ ପରେ ଜୀବ ଯାଇଁ ବସେ
ଶୂନ୍ୟ-ଭବ ଫଳ ପାଇଁ ଋହେଁ ନଭ ଦେଶେ ।
ଉହୁଙ୍କି ପଡନ୍ତେ ଆହା ଖସି ତଳେ ପଡ଼େ
ରାଗ-ଦ୍ୱେଷ-କାମ ବୃକ୍ଷେ ପଡ଼ିଯାଇ ସଢ଼େ ।
ଜାଗତିକ ଯେତେ ବସ୍ତୁ ଆକାଶ କୁସୁମ
ଆଶା ପୋଷିବା ତା ପାଇଁ ମୂର୍ଖତା ସମାନ ।
ଶବଦ ମାତର ସିନା ନାହିଁ ତା ଆକାର
ମିଥ୍ୟା ତାହା ଜାଣି ଜ୍ଞାନୀ କରେ ଅନାଦର ।
ଜ୍ଞାନୀ ଆଶା ନରଖନ୍ତି ବିଷୟ ଭୋଗରେ
ସମସ୍ତଙ୍କୁ ଦେଖେ ଆତ୍ମପ୍ରକାଶ ଦୃଷ୍ଟିରେ ।
ଅଜଣା, ଅଶୁଣା ଜ୍ଞାନବାନ ଏହିପରି
ସ୍ୱପନରେ ସୁଦ୍ଧା ନୋହି ଗୋଚର ମୋହରି ।
ଏସନ ବିରକ୍ତ ଆତ୍ମା ଦୁର୍ଲଭ ସଂସାରେ
ଭୋଗ ତ୍ୟାଗ କରି ଯେହୁ ବ୍ରହ୍ମରାଜ୍ୟେ ବୁଲେ ।

ସଂସାର ଭୋଗରେ ଲିପ୍ସା ନଥାଏ ତାଙ୍କର
ଯେଣୁ ସେ ଜାଣନ୍ତି ଅନିଶ୍ଚିତ ଏ ସଂସାର ।
ଯେ ଦିଗୁ ସମୁଦ୍ର ଦେଖ ଜଳେ ଅଛି ଭରି
ଯେ ଦିଗୁ ପର୍ବତ ଦେଖ, ପଥରରେ ପୁରି ।
ମୃତ୍ତିକାମୟ ପୃଥିବୀ ଯେଉଁଆଡୁ ଦେଖ
ଯେ ଦିଗୁ ଦେଖିଲେ କାଠ ଅଟଇତ ବୃକ୍ଷ ।
ତାଦୃଶ ଏ ନର ଦେହ ଅସ୍ଥି ମାଂସେ ଭରା
ପଞ୍ଚମହାଭୂତ ତତ୍ତ୍ୱେ ଭରିଛନ୍ତି ପରା ।
ଦେଖୁ ଦେଖୁ ଏ ଜଗତ ହେଉଅଛି ନାଶ
କାହା ନିର୍ଭରରେ ସୁଖେ କରିବି ମୁଁ ଆଶ ।
ଛଅକୋଡ଼ିଗଣ୍ଡା ଯୁଗେ ବ୍ରହ୍ମାଙ୍କର ଦିନେ
ସେ ଦିବସ ଅନ୍ତେ ବ୍ରହ୍ମା ନରହନ୍ତି କ୍ଷଣେ ।
ସୃଷ୍ଟିର ପ୍ରଳୟ ହୁଏ ନରହନ୍ତି କେହି
କୋଟି କୋଟି ବ୍ରହ୍ମା ଏହିପରି ନାଶ ଯାଇ ।
ବ୍ରହ୍ମାଙ୍କର ତ ଏ ଦଶା ଦେଖୁଛି ହେ ଋଷି
ମୋ ପରି ମାନବ କଥା କିଏ ପଋରୁଛି ?
କୌଣସି ଉପଭୋଗରେ ଇଚ୍ଛା ନାହିଁ ମୋର
ସବୁ ଚଞ୍ଚଳ, ଅସ୍ଥିର, ନଶ୍ୱର ଆବର ।
ନିର୍ବୋଧ ଜନ ରଖନ୍ତି ଏଥିରେ ବିଶ୍ୱାସ
ସେଥିପ୍ରତି ମୋର ତିଳେ ନାହିଁ ଅଭିଳାଷ ।
ମରୁ ସ୍ଥଳେ ମରୀଚିକା ଦେଖି ଧାଏଁ ମୃଗ
ଜଳ ନାହିଁ ନିରାଶରେ ଭାଙ୍ଗେ ତା ସରାଗ ।
ମୂର୍ଖ ଜୀବ ଜଗତକୁ ବାସ୍ତବ ମଣିଷ
ଆଶା ରଖି ତାର ପଛେ ଧାଏଁ ଅନୁକ୍ଷଣ ।
ଶାନ୍ତି ନପାଇ ନୈରାଶ୍ୟେ ବୁଡ଼େ ତାର ମନ
ତଥାପି ଅସାରକୁ ସେ ମଣେ ସାରପୂର୍ଣ୍ଣ ।
ଯାତ୍ରା ଦେଖିବାର ପାଇଁ ନାନାସ୍ଥାନୁ ଲୋକେ
ନାନା ଆଶା ପୋଷି ରୁଣ୍ଡ ହୁଅନ୍ତି ଯାତ୍ରାପାଖେ।
ମଉଛବେ ଭୋଗ ପାଇବାକୁ ଯେଉଁପରି
ଆଗ୍ରହରେ ପହୁଞ୍ଚନ୍ତି କୁଟୁମ୍ବଙ୍କୁ ଧରି ।
ତଥା ସ୍ତିରୀ, ପୁତ୍ର, ମିତ୍ର ଘେନି ଜୀବଗଣ
ସଂସାରେ ରୁଣ୍ଡ ହୁଅନ୍ତି ବିନା ନିମନ୍ତ୍ରଣ ।
ମାୟା ବିନା ଅନ୍ୟ କିଛି ନୁହେଁ ଏ ମିଳନ
ସବୁ ଏ ଜଗତେ ମାୟା ଦେବୀଙ୍କ ଭିଆଣ ।
ଦୀପ ଜଳୁଥାଏ, ବତୀ ଶୋଷୁଥାଏ ତେଲ
ତେଲ ବତୀ ସରିଗଲେ ପ୍ରକାଶ ନିର୍ମଳ ।

ଶତ ଶତ ସାଂସାରୀକ ସୁଖ ସେହିପରି
କାହୁଁ ଆସି କାହିଁ ଯାଏ କିଏ କହିପାରି ?
ବତୀ କି ବୁଝ କୁଟୁମ୍ବ, ତେଲ ତାର ସ୍ନେହ
ଏ ଜଗତ ଦୀପ ମଣ, ପ୍ରକାଶଟି ଦେହ ।
ଶରୀର ଆଲୋକ ଯେତେବେଳେ ଯାଏ ଲିଭି
କାହୁଁ ଆସି କେଣେ ଗଲା ନହୁଏ ତା ଭାବି ।
ବନ୍ଧୁର ମିଳନ ଜାଣ, ତୀର୍ଥଯାତ୍ରା ପରି
ଗଛମୂଳେ ବସି ଯଥା କାୟାଶ୍ରମ ହରି ।
ଶ୍ରମ ହରି ଯିବାମାତ୍ରେ ଗୋଟି ଗୋଟି ହୋଇ
ଯେଝା ବାଟ ଦେଖନ୍ତି ସେ ବୃକ୍ଷ ଏକା ରହି ।
ସେ ଯାତ୍ରୀମାନଙ୍କଠାରେ ମମତା ପ୍ରକାଶ
ମୂର୍ଖତା ନୁହେଁ କି କହ ଆହେ ମୁନି ଈଶ ।
ଅତୀବ ମୂର୍ଖତା ପୁଣି କୁଟୁମ୍ବ ସେନେହ
ହାସ୍ୟସମ୍ବରଣ କରିପାରିବ କେ କହ ?
ଘଟିଯନ୍ତ୍ରେ ବନ୍ଧା ଘଟ ତଳକୁ ଉପର
ଆଉ କି ପନ୍ଥା ତା ପାଇଁ ଅଛି ମୁନିବର ?
ଗର୍ବ, ମମତା ରସୀରେ ଆବଦ୍ଧ ଏ ଜୀବ
ଆୟତ୍ତରେ ଥାଏ ଆଉ କେଉଁ ଆଡେ ଯିବ ?
ଖୁଣ୍ଟେ ବନ୍ଧା ଗୋରୁପରି ରହିଥାଏ ସେହି
କେଉଁଆଡେ ଯିବ ପୁଣି ଶାନ୍ତି ତାର କାହିଁ ।
ଏହା ଦେଖି ଯେବେ ନର ଚେତନା ଶକତି
ଉଇଁ ଆସେ, ତା କବଳୁ ଯାଏ ସେ ବରତି ।
ପଶୁ ବାନରଙ୍କ ଦଶା ନୁହଇ ଏମନ୍ତ
ଦେହ, ଇନ୍ଦ୍ରିୟରେ ସଦା ସେମାନେ ଜଡ଼ିତ ।
ସଦା ଚାଲିଥାଏ ତାଙ୍କ ପ୍ରଳୟ ଉତ୍ପତ୍ତି
କି ବସ୍ତୁ ସେ ନ ଜାଣନ୍ତି ଆତ୍ମପଦ ପ୍ରାପ୍ତି ।
ଚେତନା ଶକତି ହେତୁ ମାନବର ଦୁଃଖ
ଆତ୍ମପଦ ଧରି ନପାରିଣ ସେ ବିମୁଖ ।
ଝଡ଼ିବା ପତ୍ର ଗଛରେ ଲାଗିବା କଠିନ
ତଥା ଆତ୍ମପଦ ପ୍ରାପ୍ତି କଠିନୁ କଠିନ ।
ଆତ୍ମପଦ ବିମୁଖକୁ ଏ ସଂସାର ସତ୍ୟ
ଆତ୍ମପଦ ଆଭାସରେ ଭବ, ବିଷବତ ।
ଏମନ୍ତ ବସ୍ତୁତ ନାହିଁ ଯା ନୁହେଁ ନଶ୍ୱର
ଯାବତ ବସ୍ତୁ ଦେଖଇ ସବୁତ ଅସ୍ଥିର ।
ଏମନ୍ତ ବସ୍ତୁ ବତାଅ ଯା ନୁହେ ନଶ୍ୱର
ଯା'ଠାରେ ମୁଁ ଆସ୍ଥା ରଖି ଚଳିବି ମୁକର ।

ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ
ସର୍ବ ପଦାର୍ଥ ଅଭାବ ବର୍ଣ୍ଣନେ
ନାମ ଦ୍ୱାବିଂଶ ସର୍ଗଃ



## ତ୍ରୟୋବିଂଶ ସର୍ଗଃ
## ଜଗତ ବିପର୍ଯ୍ୟୟ

ସ୍ଥାବର ଜଙ୍ଗମ ଆଦି ଯେତେ ଏ ଜଗତ
ସକଳ ବିନାଶ ହେବେ ଜାଣ ମୁନି ନାଥ ।
ଯେତେ ଖାଇଥିଲା ସବୁ ଏବେ ଜଳପୂର୍ଣ୍ଣ
ସାଗର ଜଳ ଶୁଖିଣ ଖାଇ ଏବେ ଜାଣ ।
ବାଗ, ବଗିଚା ସକଳ ନଭ ପରି ଶୂନ୍ୟ
ଶୂନ୍ୟସ୍ଥାନମାନ ଏବେ ବନ ଉପବନ ।
ସକଳ ବସତି ଏବେ ଗଲେଣି ଉଜୁଡ଼ି
ଉଜୁଡ଼ିବା ସ୍ଥାନମାନ ବସତିରେ ପୁରି ।
ଖାଲ ଡିଙ୍ଗର ଯେତକ ପର୍ବତେ ଆଚ୍ଛନ୍ନ
ସମତଳ ଦେଶ ଏବେ ପରବତମାନ ।
କାଳେ କାଳେ ଲାଗିଛି ଏ ବିବର୍ତ୍ତନବାଦ
ଏହିତ ଧରଣୀ ବକ୍ଷ ଏହିତ ସମ୍ପଦ ।
ଯେଉଁ ଦେହ ସମ୍ମାର୍ଜିତ ଗନ୍ଧ ଚନ୍ଦନରେ
ଯେ ଦେହ ଶୋଭା ପାଉଛି କଷାୟ ବସ୍ତ୍ରରେ ।
କାଲି ଦେଖିବ ସେ ଦେହ ଉଲଗ୍ନାବସ୍ଥାରେ
କୌଣସି ଗର୍ତ୍ତରେ ପଡ଼ି ପୂତିଗନ୍ଧ ବାଢ଼େ ।
ବିବିଧ ରୁଚି ସମ୍ପନ୍ନ ଜନପୂର୍ଣ୍ଣ ସ୍ଥଳୀ
ନିର୍ଜ୍ଜନ ଅରଣ୍ୟେ ପୂର୍ଣ୍ଣ ହେବ ତାହା କାଲି ।
ଯେଉଁ ତେଜସ୍ୱୀ ପୁରୁଷ ଆଜିର ନୃପତି
ଭସ୍ମ ସ୍ତୂପ ହେବ କାଲି ତାଙ୍କ ପରିଣତି ।
ଜଳ ଭାଗ ସ୍ଥଳ ଭାଗେ ହୁଏ ପରିଣତ
ସ୍ଥଳ ଭାଗ ଜଳ ଭାଗେ ହୁଏ ବିପର୍ଯ୍ୟସ୍ତ ।
ମରୁଭୂମି ପାଲଟିଛି କେବଣ ସାଗର
କାହିଁ ବା ସାଗର ଧରିଅଛି ମରୁସ୍ଥଳ ।
ଜଳ ତୃଣାଦିରେ ପୂର୍ଣ୍ଣ ଏ ସାରା ଜଗତ
ବିପର୍ଯ୍ୟୟ ହେତୁ ସଦା ହୁଏ ଇତସ୍ତତ ।
ଯୌବନ, ଜରା, ଶରୀର, ଯାହାକିଛି କହ
ଓଲଟପାଲଟ ହେବା ଅଟେ ନିଃସନ୍ଦେହ ।
ବଦଳି ଯାଏଟି ଯଥା ସାଗର ତରଙ୍ଗ
ସକଳ ଅସ୍ଥିର ତଥା ନକରେ ମୁଁ ବ୍ୟଙ୍ଗ ।

ପ୍ରତିଦିନ ସଂସାରରେ ଧ୍ୱଂସ ଉତପତି
ଅହରହ ହେଉଅଛି ଆହେ ମହାଯତି !
କିନ୍ତୁ ପୋଡ଼ା ସଂସାରର କାହିଁ ଅବସାନ
ହେଉ ନାହିଁ, ହେବ କେବେ ନ ଆସଇ ମନ ।
ଆଜି ମଧ୍ୟ ଏ ସଂସାରେ ଏହି ଲୀଳାଖେଳା
ଶେଷହୋଇ ନାହିଁ, ହେବ ନାହିଁ ବ୍ରହ୍ମବଳା ।
ମନୁଷ୍ୟ ହେଉଛି ପଶୁ ପଶୁଏ ମାନବ
ଦେବତା ଦାନବ ହୁଏ, ଦାନବ ଯେ ଦେବ ।
ହେ ଦେବ ! ଏ ସଂସାରରେ ସ୍ଥିର ବସ୍ତୁ କିସ
ବୁଝାଇ ଦେବକି ମୋତେ ଲଭିବି ସନ୍ତୋଷ ।
ଏହିପରି ଦେଖି ନାନା ବିପରୀତ କଥା
ସଂନ୍ଦେହ ଉପୁଜେ ମନେ ଆହେ ବ୍ରହ୍ମବେତ୍ତା ।
ଅସ୍ଥିର ଜଗତେ ନେବି ସାହାଯ୍ୟ କାହାର
ଯତ୍ନ କରିବି କା' ପାଇଁ କହ ମୁନିବର ?
ନଶ୍ୱର ଅଟନ୍ତି ଯେଣୁ ଏ ପଦାର୍ଥମାନ
ବୁଦ୍ଧି ଦିଶୁନାହିଁ କାହାପରେ ଦେବି ଧ୍ୟାନ ।
ତେଜବାନ, ବୀର୍ଯ୍ୟବାନ, ଅଇଶ୍ୱର୍ଯ୍ୟଶାଳୀ
ଧର୍ମ୍ମ ସେତୁ, ଧନ ସେତୁ ଏକୁ ଆରେ ବଳୀ ।
ସମସ୍ତେ ତ ଧରାଧାମ ତେଜିଲେ ଅଚିରେ
ମୋ ସମ ଦରିଦ୍ର ବ୍ୟକ୍ତି କଥା କେ ପଚାରେ ?
ସମସ୍ତେ ଯେବେ ବିନାଶ ଲଭିଛନ୍ତି ମୁନେ
ଦଣ୍ଡେମାତ୍ର ଲାଗିବ କି ମୋହର ଜଳନେ ।
କାହାରି ହିଁ ଏକରସ ନରହଇ ଜାଣ
ସକଳ ବସ୍ତୁ ବଦଳୁଥାନ୍ତି ଅନୁକ୍ଷଣ ।
କ୍ଷଣକେ ଧନାଢ଼୍ୟ ପୁଣି କ୍ଷଣକେ କିଙ୍କର
ପ୍ରତି କ୍ଷଣେ ବଦଳଇ ରୂପ ଏ ଧରାର ।
ବେଙ୍ଗ କହେ ବେଙ୍ଗୁଲୀଲୋ ମୋର କଥା ଶୁଣ
ପ୍ରତିକ୍ଷଣେ ଧରା ଧରେ ରୂପ ଆନ ଆନ
ବାଳକର ଚିତ୍ତ ଯଥା ସର୍ବଦା ଚଞ୍ଚଳ
ଯାବତ ଜଗତ୍ ବସ୍ତୁ ସେପରି ଅସ୍ଥିର ।
ବାଜିକର ଯଥା ନାନା ସୁଆଁଗ ଦେଖାଇ
ଭ୍ରମ ରଚି ଦର୍ଶକର ମନ ରଞ୍ଜୁ ଥାଇ ।
ତେସନ ଚଞ୍ଚଳା ଲକ୍ଷ୍ମୀ ପ୍ରତି ମୁହୂର୍ତ୍ତରେ
ଚିତ୍ରୁଛନ୍ତି ଏ ଜଗତ ବିଚିତ୍ର ପ୍ରକାରେ ।
ବର କେତେବେଳେ ଧରେ ଅଭିଶାପ ରୂପ
ଅଭିଶାପ ହୋଇଯାଏ ବରର ସ୍ୱରୂପ ।

ଚପଳା ଦୃଷ୍ଟି ସର୍ବଦା ଅଟଇ ଚପଳ
ଚପଳାରେ ସ୍ଥିର ଆଶା ହେବ କି ପ୍ରକାର ।
ଅବ୍ୟବସ୍ଥିତ ପ୍ରସାଦ ଅଟେ ଦୁହିଙ୍କର
ଚପଳା ସୃଷ୍ଟିର ଗତି ତୀବ୍ର ଭୟଙ୍କର ।
ବିନାଶରେ ଆଶା ମୁହିଁ କିପରି ରଖିବି
ମରଣରେ ଜୀବନର ସ୍ୱପ୍ନ କି ଦେଖିବି ?
ବିପର୍ଯ୍ୟୟର ନିବାସ ସଦା ଏ ଜଗତ
ଭ୍ରମର ନିଳୟ ସଦାକାଳେ ଏ ବିଦିତ ।
ବୁଦ୍ଧିମାନ ବୋଲି ଯାକୁ ବୋଲଇ ଜଗତ
କି ଆଶ୍ଚର୍ଯ୍ୟ ! ସେହୁ ପୁଣି ଏଥିରେ ମୋହିତ ।
ବର୍ତ୍ତମାନ କରାଯାଉ ଆକାଶ ବିଚାର
ଆଶ୍ଚର୍ଯ୍ୟର ଆଶ୍ଚର୍ଯ୍ୟ ଏ, କଉତୁକକର ।
କେତେବେଳେ ନୀଳବର୍ଣ୍ଣ ପଦ୍ମପରି ଦିଶେ
କେତେବେଳେ ଭୟଙ୍କର ରୂପ ପରକାଶେ ।
କଳାହାଣ୍ଡିଆ ମେଘରେ କେବେ ଆଚ୍ଛାଦିତ
ଆଉଟା ସୁନା ରଙ୍ଗରେ କେବେ ଚମତ୍କୃତ ।
ତାରକା ଗଚ୍ଛିତ ନଭ ନୟନାଭିରାମ
ପ୍ରଚଣ୍ଡ ମାର୍ତ୍ତଣ୍ଡ ରଶ୍ମି ତ୍ରାସଇ ନୟନ ।
କେତେବେଳେ ସୁଶୀତଳ ଚନ୍ଦ୍ରମା ଜ୍ୟୋଛନା
ହରଇ ନୟନ ମନ କବି କଳପନା ।
ଘଡ଼ି ଘଡ଼ି ନିନାଦର ଗମ୍ଭୀର ଗର୍ଜନ
ଆକାଶ କମ୍ପାଇ କରେ ହିୟା ଛନ ଛନ ।
ତଡ଼ିତ୍ ରେଖା ଚମକେ କେବେ ନୀଳ ମେଘେ
ହାତୀ ଶୁଣ୍ଢ ବୃଷ୍ଟି ଧାରା ହୃଦ ଭାଙ୍ଗେ କେବେ ।
ଏହି ଘଟଣା ସକଳ ଆକାଶ ସହିତ
କେବେ କି ଜଡିତ କହ ଆହେ ପ୍ରଜ୍ଞାବନ୍ତ !
ରୂପ, ରସ, ଗନ୍ଧ, ବର୍ଣ୍ଣ ବିହୀନ ଆକାଶ
କ୍ଷଣ କ୍ଷଣକରେ ନାନା ରୂପ ପରକାଶ
ଏସନ ସୁଖଦ ପୁଣି ଦୁଃଖଦାୟୀ ରୂପ
ଦର୍ଶକ ନେତ୍ରେ ଆଣଇ ଆକାଶ ଅମାପ ।
ଏ ସଂସାର ଘୋର ମାୟାମୟ ଭ୍ରାନ୍ତିପୂର୍ଣ୍ଣ
ସଂସାର, ଆକାଶ ରୂପ ନୁହଁନ୍ତି ଅଭିନ୍ନ ।
ଏହି ଯେ ଜଗତ ଆମ୍ଭ ହୁଏ ନେତ୍ରପଥ
ଉତ୍ପତ୍ତି ବିନାଶ ମୁଖେ ସଦା କବଳିତ ।
ଯେତେ ଧୈର୍ଯ୍ୟଶାଳୀ ଲୋକ ହେଉ ଏ ସଂସାରେ
ଦବି ନ ଯିବକି ଏହି କ୍ଷଣସ୍ଥାୟିତ୍ୱରେ ।

ଆଲୋକ ପ୍ରଦାନ କରୁଅଛି ଯେ ତପନ
କାଳବଶେ ତାର ମଧ୍ୟ ଘଟେ ବିନାଶନ ।
ଅମୃତଭାଣ୍ଡ ସଦୃଶ ଯେବଣ ଚନ୍ଦ୍ରମା
ଦିନେ ନା ଦିନେ ସେ ନ ଦିଶିବ ନଭସୀମା ।
ସୁମେରୁ ପର୍ବତ ପୁଣି ଲୋକାଲୋକ ଶୃଙ୍ଗ
ସପତ ସାଗର ମାନଙ୍କର ଯେ ତରଙ୍ଗ ।
ସର୍ବଲୋକ, ସର୍ବନର ଦେବତା ରାକ୍ଷସ
ବେଳ ଆସୁଅଛି ଯେବେ ସର୍ବେ ହେବେ ନାଶ ।
ଆଉ କାହା କଥା ପୁଣି କରିବି ବର୍ଣ୍ଣନ
ବ୍ରହ୍ମା ବିଷ୍ଣୁ, ମହେଶାଦି ବରିବେ ଶ୍ମଶାନ ।
ଯାହା ଯାହା ଦେଖୁଅଛି ଏ ମର ଜଗତେ
ସ୍ତିରୀ ପୁତ୍ର ବାନ୍ଧବାଦି ଅଇଶ୍ୱର୍ଯ୍ୟ ଯେତେ ।
କାଳର ଗରଭେ ସର୍ବେ ଲଭିବେ ସମାଧି
କେହି ନ ରହିବେ ହେବାପାଇଁ ପ୍ରତିବାଦୀ ।
ତେଣୁ କରି ହେ ମୁନିଶ କାହାକୁ ଭରସା
କରି ମୁଁ ନିଶ୍ୱାସ ନେବି କହ ମହାଯଶା ?
ଦୂରଦର୍ଶୀ ମାନବଙ୍କୁ ସରବ ବିଦିତ
ତେଣୁ ସେ ବିରସ ମଣେ ସକଳ ପଦାର୍ଥ ।
କୌଣସି ପଦାର୍ଥ ପ୍ରତି ନ ବଳେ ତା ଇଚ୍ଛା
ସକଳ ନଶ୍ୱର ଜାଣି ନ ରଖଇ ବାଞ୍ଛା ।
ବିଜୁଳି ସମ ଏ ଆୟୁ କ୍ଷଣକେ ବିଲୀନ
ପଲକ ମାତ୍ରକେ ତାର ହୁଏ ଅବସାନ ।
ନିଜ ଆୟୁର ପ୍ରତୀତି ଯାହାକୁ ବିଦିତ
ଅନୁକ୍ଷଣ ସ୍ୱ ଇଚ୍ଛାକୁ କରେ ସେ ନିପାତ ।
ହୋଇଅଛି ନରବଳୀ ପାଇଁ ଯେ ନିଶ୍ଚିତ
ଭୋଜନ, ପାନୀୟ ସେହୁ କରିଥାଏ ତ୍ୟକ୍ତ
ଯେ ଦେଖି ପାଉଇ ନିଜ ମରଣ ଆସନ୍ନ ।
କୌଣସି କାର୍ଯ୍ୟରେ ନ ବଳଇ ତାର ମନ ।
ଯେଣୁ ଏ ପଦାର୍ଥ ମାନ ଅଟନ୍ତି ନଶ୍ୱର
କାହା ଘେନି ସୁଖିହେବି ଆହେ ମୁନିଶ୍ୱର ?
ଯଦି କେହି ମତ୍ସ୍ୟଦେଖି ସାଗର ଗର୍ଭରେ
ତା ଉପରେ ବସି ପାରି ହେବାକୁ ବିଚାରେ ।
ମତ୍ସ୍ୟ ବୁଡ଼ିଗଲେ ତାର ହୋଇବ କି ଦଶା
ବୁଝାଇ କହନ୍ତୁ ମୋତେ ଆହେ ମହାଯଶା ।
ଏହି ଦ୍ରବ୍ୟ ମାନଙ୍କରେ ଭରସାକୁ ରଖି
ଯେଉଁଜନ ବିଚରିବ ହେବ ବୋଲି ସୁଖି ।

ଅବଶ୍ୟ ସେ ଜନ ଭୋଗିବହିଁ ଦୁଃଖକଷ୍ଟ
ଏଥିରେ ସନ୍ଦେହ ନାହିଁ କେଉଁ ମୁନିଶ୍ରେଷ୍ଠ ।
ବାସ୍ତବ ଦୃଷ୍ଟିରେ ଯେହୁ ଦେଖଇ ଜଗତ
ଉପଲବ୍ଧି ହୁଏ ତାର ଜଗତ କେମନ୍ତ ।
ଜଗତକୁ ରମଣୀୟ ଯା ନେତ୍ର ଦେଖଇ
ନାନା ପ୍ରକାର ସଙ୍କଳ୍ପେ ସଦା ମାତି ଥାଇ ।
ଜଗତ ଭ୍ରମଣ ତାର ସଦା ଚାଲୁ ରହେ
ତହିଁରୁ ନିଷ୍କୃତି ଲାଭ ସପନ ପରାଏ ।
ବାୟୁବଳେ ଧୂଳି ଯଥା ତଳକୁ ଉପର
ତାଦୃଶ ଭ୍ରମଣ ତାର ହୁଏ ନିରନ୍ତର ।
ଯେଉଁ ପଦାର୍ଥ ସେ ଜନ ଇଚ୍ଛା କରୁଥାଇ
କାଳର ଗ୍ରାସରେ ତାହା ବିଲୟ ଲଭଇ ।
ଜଗତ-ବନ-ଇନ୍ଧନେ ଲାଗି କାଳଅଗ୍ନି
ଭସ୍ମ କରି ଦେବବୋଲି ନ ପାରେ ସେ ଜାଣି ।
ଜାଗତିକ ବସ୍ତୁପାଇଁ ଯେହୁ ପୋଷେ ଆଶା
ମହାମୂର୍ଖ ସେହି ଜନ ବୁଡ଼େ ତା ଭରସା ।
ଆତ୍ମ ବିଚାର ଶକତି ଜନମିଛି ଯାର
ଭ୍ରମରୂପ ଏ ଜଗତ ନେତ୍ରକୁ ତାହାର ।
ଆତ୍ମ ବିଚାର ଶକତି ଯାର ଜନ୍ମି ନାହିଁ
ଏ ଜଗତ ରମଣୀୟ ତା ନେତ୍ରେ ଦିଶଇ ।
ଦେଖୁ ଦେଖୁ ଏ ଜଗତ ବିନଷ୍ଟ ହୁଅଇ
ଆକାଶ-କୁସୁମ ଜୀବ ତୋଳି ନ ପାରଇ ।
ସ୍ୱପ୍ନପୁରୀ ଏ ସଂସାର ଇଚ୍ଛିବି କେସନ
ଦୁଃଖର କାରଣ ଏହା ଶେଷେ ହଇରାଣ ।
ବିଷମିଶା ମିଠାଇକୁ ଯେ ଜନ ଭକ୍ଷିବ
ଦେଖୁଁ ଦେଖୁଁ ସେହି ଜନପ୍ରାଣ ହରାଇବ ।
ବିଷୟ ଉପଭୋଗରେ ବିନାଶ ତେସନ
କତରା ଘୋଡ଼ି ଶୋଇଲେ ଛାଡ଼ିବ କି ଯମ ?
କ୍ଷଣକାଳ ବ୍ୟବଧାନେ ସମ୍ପଦ ଆପଦ
ଆସି ଘେରି ଯାଉଛନ୍ତି ନ ଦେଇ ସମ୍ବାଦ ।
କେବଳ ମୁଁ କହୁନାହିଁ ସମ୍ପଦ ବିପଦ
ସେହିପରି ଆସିଯାଏ ଜନ୍ମମୃତ୍ୟୁ ମଧ୍ୟ ।
ଯା'କିଛି ଘଟିଛି, ଘଟୁଅଛି ଏ ସଂସାରେ
କ୍ଷଣମାତ୍ର ସ୍ଥାୟୀ ସେହୁ ଜାଣ ମୁନିବରେ ।
ଯାହାଥିଲା ଏ ସଂସାରେ ଏବେ ମଧ୍ୟ ଅଛି
କେବଳ ଅନ୍ୟ ରୂପରେ ପ୍ରକାଶ ପାଇଛି ।

ପୂର୍ବ ଜନ୍ମେ ଜୀବ ଯାହାଥିଲା ସେହିପରି
ଏ ଜନମେ ଜନିମିଛି ଅନ୍ୟ ରୂପଧରି ।
ଏ ଜନମ ପରେ ମଧ୍ୟ ଅନୁରୂପ ଧରି
ଜନମିବ ଏ ସଂସାରେ ଶୁଣ ତପଚାରୀ ।
ସ୍ୱତଃସିଦ୍ଧ ଏ ସଂସାରେ ସରବେ ଅସ୍ଥିର
ପରିବର୍ତ୍ତନ କେବଳ ରହିଅଛି ସ୍ଥିର ।
ଦିନେ ନା ଦିନେ ଖପରା ଗୋଡ଼ି ପାଲଟିବ
ସେହି ଗୋଡ଼ି ପୁଣି ମାଟି ରୂପକୁ ଧରିବ ।
ସେ ମାଟିରେ କପାଗଛ ପୁଣି ପଲ୍ଲବିବ.
କପାଫୁଟି ବସ୍ତ୍ରହୋଇ ବ୍ୟବହୃତ ହେବ ।
ଯାବତ ବସ୍ତୁ ସଂସାରେ ବିପରୀତ ରୂପ
ଧରି ପ୍ରକାଶ ପାଉଛି ହେ ତପୀ ଅଧିପ ।
ଯଥା ଦିବସ, ରଜନୀ, ଉତ୍ପତ୍ତି ଓ ସ୍ଥିତି
ବୃଦ୍ଧି, ହ୍ରାସ, ବିନାଶାଦି ରୂପ ବଦଳାନ୍ତି ।
ଏ ଜୀବ ମଧ୍ୟ ସେପରି ଜନ୍ମ, ବୃଦ୍ଧି, ହ୍ରାସ
ବିନାଶ, ପୁନର୍ଜନ୍ମର ହୋଇ ରହେ ଦାସ ।
ବାଳକ ଖେଳିଲା ପରି ଖେଳୁଛି ବିଧାତା
କା'କୁ ହସାଉଛି କା'କୁ ଦିଏ ମୃତ୍ୟୁଚିନ୍ତା ।
ଆପଦ ବିପଦମାନ ଏକ ପରେ ଏକ
ଘୋଟି ଆସି ଯଥାକ୍ରମେ ଦ୍ୟନ୍ତି ପରଲୋକ ।
ଅନାୟାସେ ଏହିପରି ସର୍ବଗ୍ରାସୀ କାଳ
ଜଗତକୁ ଦୋହୋଲାଇ, ସଦା ଖେଳେ ଖେଳ ।
ଭୟାବହ କାଳ କବଳରୁ କେଉଁ ପରି
ପରିତ୍ରାଣ ଲଭିବଇଁ କହ ତପଚାରୀ ?

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ଜଗତ୍ ବିପର୍ଯ୍ୟୟ ବର୍ଣ୍ଣନେ**
**ନାମ ତ୍ରୟୋବିଂଶ ସର୍ଗଃ**



## ଚତୁର୍ବିଂଶ ସର୍ଗଃ
## ସର୍ବାନ୍ତ ପ୍ରତିପାଦନ

କହୁଛନ୍ତି ରାମଚନ୍ଦ୍ର ଶୁଣ ମୁନିବର
ଏ ସଂସାର ଭୋଗ-ଅଗ୍ନି ଲୀଳା ଖେଳା ଘର ।
ସେ ଅଗ୍ନିଜ୍ୱାଳାରୁ ପରିତ୍ରାଣ ପ୍ରାପ୍ତି କଥା
ଅସମ୍ଭବଠାରୁ ଅସମ୍ଭବ ଏହି ଚିନ୍ତା ।
ସଂସାରର ଦୋଷାଦୋଷ ଯାହା ଦେଖାଇଲି
ମୋ ହୃଦ ଦହନ କରେ ତାହା ତପଚାରୀ ।
ସେଥିପାଇଁ ମୋ ମନରେ ଭୋଗର ଲାଳସା
ସ୍ଥାନ ପାଉନାହିଁ କେଉଁ ଆହେ ମହାଯଶା ।
ପଦ୍ମ ପୋଖରୀରେ ଯେବେ ହାତୀ ପଶିଯିବ
ସେ ପଦ୍ମବନ ଶୋଭାକି ଆଉ ବରତିବ ?
ତେଣୁକରି ମାନବର ଭୋଗ ସିନା ଦୁଃଖ
ବିଷମିଶା ମିଷ୍ଟାନ୍ନରେ ଥାଏ ଯଥା ସୁଖ ।
ବାୟୁବଳେ ମେଘ ଯଥା ଉଡ଼ିଯାଏ କେଣେ
ଶୁଭଗୁଣ ନାଶିଥାନ୍ତି ଷଡ଼ରିପୁ ମାନେ ।
କଣ୍ଟକିତ ସପ୍ତଫେଣୀ ପତ୍ର ଫୁଲ ସରି
ବାସନା କଣ୍ଟକ ନାଶେ ବିଷୟର ଶିରି ।
ନାଶର ବିକାର ଅଟେ ଏ ସାରା ଜଗତ
ଚିରସ୍ଥାୟୀ ବସ୍ତୁ ତହିଁ କିଛି ନାହିଁ ମାତ୍ର ।
ଇନ୍ଦ୍ରିୟ-ଗ୍ରନ୍ଥିରେ ଜୀବ ଆବଦ୍ଧ ହୋଇଣ
ବାସନା-ଜାଲରେ ପଡ଼ି ହୁଏ ଭାସମାନ ।
କାଳଗ୍ରସ୍ତ ହେତୁ ସେହୁ ହୁଏ ହଇରାଣ
ନାହିଁ ପଥ, ଯାହାବଳେ ପାଇବ ସେ ତ୍ରାଣ ।
ସେହିମାନେ ହିଁ ଉତ୍ତମ ବିବେକୀ ପୁରୁଷ
ଯାହାଙ୍କ ଚେଷ୍ଟା କିପରି ଛେଦିବେ ଏ ପାଶ ।
ବାସନା-ସୂତ୍ରରେ ଜୀବ-ମୋତି ଗୁନ୍ଥା ଥାଏ
ମନ ତାକୁ ଚଇତନ୍ୟ ଗଳାରେ ଲମ୍ବାଏ ।
ବାସନା ସୂତାଟି ଯେତେବେଳେ ଛିଣ୍ଡିଯିବ
ସେତେବେଳେ ଜୀବଭ୍ରମ ଆଉ କି ରହିବ ?
ଜୀବର ବନ୍ଧନ ଏକା ଭୋଗର ବାସନା
ଏ ଭବେ ଭ୍ରମୁ ସେ ଥାଇ ତେଣୁ ମହାମନା ।
ତେଣୁ ଭୋଗଇଚ୍ଛା ମୋର କେତେବେଳେ ନାହିଁ
ରାଜ୍ୟ, ଗୃହ, ବନ, ଇଚ୍ଛା ମୋତେ ନ ରୁଚଇ ।
ମରିଯିବ ବୋଲି ତିଳେମାତ୍ର ନାହିଁ ଦୁଃଖ
ଜୀବିତ ରହିବା ପାଇଁ ନ ମଣେ ମୁଁ ସୁଖ ।
କଉଣସି ପଦାର୍ଥରେ ସୁଖ ନାହିଁ ମୋର
ଆତ୍ମଜ୍ଞାନ ହିଁ କେବଳ ସୁଖର ଭଣ୍ଡାର ।
ସୂର୍ଯ୍ୟୋଦୟ ବିନା କାହିଁ ଅନ୍ଧାର ବିନାଶ
ଆତ୍ମଜ୍ଞାନ ବିନା କାହିଁ ଜୀବର ଉଲ୍ଲାସ ?
ଆପଣ କେବଳ ମୋତେ ଦେଖାନ୍ତୁ ଉପାୟ
ଯାହା ଘେନି ସୁଖିହେବି ନାଶ ଯାଇ ମୋହ ।

ତେଜି ତ ସାରିଛି ମୁହିଁ ସେହି ଅହଙ୍କାର
ଯେଉଁ ଅହଂକାର ଆଣେ ଭୋଗଇ ବିଚାର ।
ତେବେ କାହୁଁ ଆସିବ ମୋ ଭୋଗର ବାସନା
ଏବେ ମୋ ଦୁର୍ଦ୍ଦଶା ବୁଝୁଥିବ ମହାମନା ।
ଥରେ ସର୍ପ ଦଂଶନରେ ଜୀବ ହୁଏ ମୃତ
ବିଷୟା-ସର୍ପ ଦଂଶନ ଦହେ ଅବିରତ ।
ଜନ୍ମ ଜନ୍ମାନ୍ତରେ ଯାଏ ବିଷୟା ଦଂଶନ
ମରଣ-ସମ ଯନ୍ତ୍ରଣା ଦେଉଥାଏ ଜାଣ ।
ଗରିଷ୍ଠ ଦୁଃଖ କାରଣ ବିଷୟ ଲାଳସା
ଜନ୍ମ ଜନ୍ମାନ୍ତରେ ଲାଗିଥାଏ ସେହି ଦଶା
କରତରେ ଯେବେ କେହି କରତେ ମୋ ଅଙ୍ଗ
ବଜ୍ରାଘାତେ ଚୂର୍ଣ୍ଣକରି ଅଙ୍ଗ କରେ ବ୍ୟଙ୍ଗ ।
ସେ ସବୁ ମୁଁ ସହ୍ୟକରି ପାରଇ ହେ ମୁନେ
ବିଷୟ ଭୋଗ ନ କରି ପାରେ କଦାଚନେ ।
ତେଣୁ କରି ସେହି ବାଟ ମୋତେ ଦିଅ କହି
ଅଜ୍ଞାନ ଅନ୍ଧକାର ମୋ ଯା ଘେନି ଉଭେଇ ।
ଯଦି କିଛି ଉପଦେଶ ନ ପାଏ ତୁମ୍ଭର
ଛାତିରେ ଧୈର୍ଯ୍ୟ ପଥର ଧରିବି ମୁଁକର ।
ନ ଆଣିବି କଦାଚନ ଭୋଗଇଚ୍ଛା ମନେ
ମୋର ଏ ଦୃଢ଼ ପ୍ରତିଜ୍ଞା ଜାଣ ମହାମୁନେ ।
ବିଜୁଳି ଚମକ ଛପି ଯାଏ ଯେଉଁପରି
ଅଞ୍ଜଳିରେ ଜଳ ରହି ନ ପାରେ ଯେପରି ।
ଆୟୁଷ, ଭୋଗ ତାଦୃଶ୍ୟ ଲଭନ୍ତି ବିନାଶ
ସକଳ ବସ୍ତୁ ସଂସାରେ ଲଭୁଛନ୍ତି ନାଶ ।
ବନିଶୀ କଣ୍ଟାରେ ଯଥା କଷ୍ଟପାଏ ମୀନ
ଭୋଗ-ତୃଷ୍ଣାରେ ଏ ଜୀବ ଲଭଇ କଷଣ ।
କଉଣସି ବସ୍ତୁ ପ୍ରତି ଇଚ୍ଛା ନ ବଳଇ
ଆତ୍ମପଦ ପାଇଁ ମନ ସଦା ଝୁରୁଥାଇ ।
ଭ୍ରମବଶ ଯେହ୍ନେ ମରୀଚିକା ପଛେ ଧାଏଁ
ଜଳ ତ ପାଏନା, ଶେଷେ ଅନୁତାପେ ଦହେ ।
କଟୁ କଟୂତର ମୋତେ ଲାଗେ ଏ ସଂସାର
ଦିନୁ ଦିନ ନିମ୍ବ ଯଥା ହୁଏ କଟୂତର ।
ରାଜ୍ୟ, ଭୋଗ, ଦୁହେଁ ଯାକ ଚିନ୍ତାର ଆଧାର
ଚିନ୍ତାଶୂନ୍ୟ ବନବାସ ବଡ଼ ସୁଖକର ।
ଉଦ୍ୟାନ ନୁହଇଁ ପ୍ରୀତିକର ମୋର ପାଇଁ
ମୋ ସୁଖ କାରଣ କେଭେଁ ରମଣୀ ନୁହଇ ।
ଧନ ଉପାର୍ଜନ ମୋତେ ନ ଦିଏ ଆନନ୍ଦ
ମାନସ ଶାନ୍ତି ମୋ ପାଇଁ ସେ ଧନ ସମ୍ପଦ ।
ରାଜ୍ୟ, ଉପଭୋଗ, ପୁଣି ଧନ ଉପାର୍ଜ୍ଜନ
ଏହିପରି ଯାହା ଅହଙ୍କାରୁ ଉତପନ୍ନ ।
ବହୁ ଦୂରେ ଫିଙ୍ଗି ଦେଇ ସାରିଛି ମୋ ମନ
ଏ ସବୁ ଅକାରଣରେ ନାହିଁ ପ୍ରୟୋଜନ ।
ଆଗୁଁ ଚିତ୍ତ ଶୁଦ୍ଧି, ମନ ନ କଲେ ନିର୍ମଳ
ଭବିଷ୍ୟରେ ଅବସର ମିଳିବା ଅସ୍ଥିର ।
ନୁହେଁ ବିଷ ସେହି ଯାକୁ ବିଷ ମଣେ ଜୀବ
ବିଷୟ ସର୍ପରୁ ଜାତ ବିଷ ସେଟି ଧ୍ରୁବ ।
ସୁଖ, ଦୁଃଖ, ମିତ୍ର, ବଂଧୁ, ଜୀବନ, ମରଣ
ହେଲେହେଁ ଏ ସବୁ ଜୀବ ବନ୍ଧନ କାରଣ ।
ବିବେକୀ ଲୋକ ଚିତ୍ତକୁ ବାନ୍ଧି ନ ପାରନ୍ତି
ଯେହେତୁ ସୁଜ୍ଞାନୀ ତାର ବଶ ନ ହୁଅନ୍ତି ।
ଇଷ୍ଟ ନିଷ୍ଟ, ଆସ୍ତି, ନାସ୍ତି, କର୍ତ୍ତବ୍ୟାକର୍ତ୍ତବ୍ୟ
ଏହି ଭ୍ରମ ଚିନ୍ତା ନାଶ କରେ ମୋର ସର୍ବ ।
ମୋ ହୃଦ ଗହନ ବନେ ଅଜ୍ଞାନ କୁହୁଡ଼ି
ନିବାରିତ କର ତହିଁ ଜ୍ଞାନ ଦୀପ ଜାଳି ।
ଚନ୍ଦ୍ରୋଦୟେ ଦୂର ଯଥା ନିଶା ଅନ୍ଧକାର
ତଥା ସାଧୁ ସଙ୍ଗେ ମନପୀଡ଼ା କରେ ଦୂର ।
ଆତ୍ମପଦ-ଶାନ୍ତି ଲାଭ କେସନ ସମ୍ଭବ
ସେହି କଥା ଦୟାବହି କହ ଗୁରୁଦେବ ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ସର୍ବାନ୍ତ ପ୍ରତିପାଦନ ବର୍ଣ୍ଣନେ**
**ନାମ ଚତୁର୍ବିଂଶ ସର୍ଗଃ ।**



## ପଞ୍ଚବିଂଶ ସର୍ଗଃ

## ବୈରାଗ୍ୟ ପ୍ରୟୋଜନ

କହନ୍ତି ଶ୍ରୀରାମଚନ୍ଦ୍ର କ୍ଷୋଭବଶ ହୋଇ
ମନଦୁଃଖ ବର୍ଣ୍ଣିବାକୁ ଧୈର୍ଯ୍ୟ ନ ରହଇ ।
ସଂସାର ଗର୍ତ୍ତରେ ମୋହ-କର୍ଦ୍ଦମରେ ପଡି
ଧନ୍ଦି ହୋଇ ଜୀବ କରେ ହାହାକାର ରଡି ।
ମନ ମଧ୍ୟେ ଭ୍ରମ ଜାତ ହୁଏ ବାରମ୍ବାର
ପଦେ ପଦେ ଭୟ ଜନମଇ ନିରନ୍ତର ।

ଜୀର୍ଣ୍ଣବୃକ୍ଷେ ପତ୍ର ଯଥା ହୁଏ ଥର ହର
ତଥା କମ୍ପ ଜାତ ହୁଏ ଶରୀରେ ମୋହର ।
ଇନ୍ଦ୍ରିୟ ବଶ ଯେ ହୁଏ କ୍ଷଣ ସୁଖ ପାଇଁ
ସଂସାର-ଅନ୍ଧକୂପରେ ପଡ଼େ ଜାଣ ସେହି ।
ନିସ୍ତାର ଲଭିବା ତହୁଁ ନୁହଇ ସହଜ
ମୋହର ମିନତି ମୁନି ଦୟାକରି ହେଜ ।
ଅଜ୍ଞାନୀ ଭୋଗ ବାସନା କେଭେଁ ନ ତେଜଇ
ଭୋଗ-ତୃଷ୍ଣାଅଗ୍ନି ମଧ୍ୟେ ସଦା ଜଳୁ ଥାଇ ।
ଜାଗତିକ ବସ୍ତୁଘେନି ମୋ ବୁଦ୍ଧି ମଳିନ
ବର୍ଷାକାଳେ ନଦୀଜଳ ମଳିନ ଯେସନ ।
ଜଗତ ଶୋଭା ବିରସ କରେ ମୋର ମନ
ଶ୍ୟାମତୃଣ ଆଚ୍ଛାଦିତ ଗର୍ତ୍ତ ପରି ଜାଣ ।
ମୃଗ ଶିଶୁ ଶ୍ୟାମତୃଣ ଖାଇବାକୁ ଧାଏଁ
ଗର୍ତ୍ତମଧ୍ୟେ ପଡ଼ି ଯାଇ ଛଟପଟ ହୁଏ ।
ଗର୍ତ୍ତମଧ୍ୟେ ପଡ଼ି ମୃଗ ଯଥା ଛଟପଟ
ମୁର୍ଖକୁ ଭୋଗ ଲାଳସା ତଥା ଦିଏ କଷ୍ଟ ।
ଜଗତ ବସ୍ତୁ ଅଜ୍ଞାନୀ ନୟନେ ସୁନ୍ଦର
ଦୁଃଖର କାରଣତାହା ନ ଜାଣେ ପାମର ।
ଜଗତ ପଦାର୍ଥ ଦେଖି ମୋ ବୁଦ୍ଧି ଚଞ୍ଚଳ
ପର୍ବତ ପରି କିପରି ହେବ ତା ନିଶ୍ଚଳ ?
ନିର୍ଭୟ, ଆକାର ହୀନ ଯେ ପରମାନନ୍ଦ
ଯାହାର ପ୍ରାପ୍ତିରେ ମନେ ନ ଆସଇ ଦ୍ୱନ୍ଦ ।
ସେ ଆତ୍ମପଦ ପାଇଁ କି ନିଷ୍କଣ୍ଟକ ବାଟ
ବତାଇ ସାନ୍ତ୍ୱନା ଦିଅ ହେ ମୁନି ସମ୍ରାଟ ।
କିପରି ତା ପାଇବି ମୁଁ ନ ଦିଶଇ ବୁଦ୍ଧି
ତେଣୁ ଅଶାନ୍ତିରେ ପଡି ମରୁଛି ଦୁର୍ବୁଦ୍ଧି ।
ସଂସାର, ସଂସାରକର୍ମ "ମୋହ"ର କାରଣ
ସେ ମୋହରେ ପଡ଼ି ଶାନ୍ତି ନ ପାଏ ମୋ ପ୍ରାଣ ।
ଜନକାଦି ଶାନ୍ତିପ୍ରିୟ ମହାତ୍ମା ପୁରୁଷ
ନିର୍ଲେପ ରହନ୍ତି ଭବେ କମଳ ସଦୃଶ ।
ପଙ୍କରୁ ଜନ୍ମି ପଙ୍କଜ ସୌରଭରେ ଭରା
ପଙ୍କ ନ ଲାଗେ ତା ଦେହେ, ସର୍ବଚିତ୍ତ ହରା ।
କିପରି ସେ ସନ୍ଥ ଜନେ ରହନ୍ତି ଜଗତ
ଜଗତ ଭୋଗନ୍ତି ପୁଣି ରହନ୍ତି ନିର୍ଲିପ୍ତ ?
ଆମୂଳ ଚୂଳ ଏସବୁ ବୁଝାଇ କହିବ
ସଂଶୟ କଣ୍ଟକ ମୋର ମନୁକାଢ଼ି ଦେବ ।

ଗଜରାଜ ପଶି ଯାନ୍ତେ ପୁଷ୍କରିଣୀ ଜଳ
ନିର୍ମଳତା ତେଜି ଯଥା ଦିଶଇ ପଙ୍କିଳ ।
ସେହିପରି ମୋର ବୁଦ୍ଧି ମୋହ ଗ୍ରସ୍ତ ହୋଇ
ଅନ୍ତର ସ୍ୱଚ୍ଛତା ନାଶେ ହେ ମୁନି ଗୋସାଇଁ ।
ସେହି ଉପଦେଶ ମୋତେ ଦେବା ହେଉ ଗୁରୁ
ଚିତ୍ତସ୍ଥିର ହେବ, ବୁଦ୍ଧି ଦିଶିବ ସୂଚରୁ ।
କୁଠାର ଆଘାତେ ବୃକ୍ଷ ଯେସନ ଅସ୍ଥିର
ବାସନାଗ୍ରସ୍ତ ମୋ ବୁଦ୍ଧି ତଥା ନୁହେ ସ୍ଥିର ।
ଏ ସଂସାର ବିସୁଚିକା ମୋତେ ଘାରିଛଇ
ଉପାୟ କହନ୍ତୁ ଯେହ୍ନେ ସେ ବ୍ୟାଧି ନାଶଇ ।
ଆତ୍ମଜ୍ଞାନ-ତପନ ମୋ କେବେ ଉଦେ ହେବ
ଅଜ୍ଞାନ-ତିମିର ନାଶି ଦଶା ମୋ ଟାଳିବ ?
ଚନ୍ଦ୍ରମାକୁ ମେଘ ଯେହ୍ନେ କରେ ଆଚ୍ଛାଦିତ
ବୁଦ୍ଧି ମଳିନତା ମୋତେ କରେ କଳଙ୍କିତ,
ବତାଅ ବିହିତ ପ୍ରତିକାର ଏଥିପାଇଁ
ନିତ୍ୟ ଆତ୍ମପଦ ମୋତେ ଯେସନ ମିଳଇ ।
ଯା'ଘେନି ଅନ୍ୟ ପ୍ରାପ୍ତିର ଇଚ୍ଛା ନ ବଳଇ
ଆବର ସକଳ ଦୁଃଖ ବିନାଶ ଲଭଇ ।
ଅନ୍ତର ଦାହ ମୋହର ହୋଇବ ଶୀତଳ
ମାନସ ହ୍ରଦେ ଫୁଟିବ ଶାନ୍ତି-ଶତଦଳ ।
ଆତ୍ମଜ୍ଞାନ-ଚନ୍ଦ୍ରମାଟି ମୋର ଅଭିଳାଶ
ଯା ଜ୍ୟୋସ୍ନା ତେଜରେ ବୁଦ୍ଧି-କୁମୁଦ ବିକାଶ ।
ଯା ଅମୃତ ଧାରା ଚିତ୍ତ ବୃତ୍ତିକି ବିକଷେ
ଶାନ୍ତିଧାରା ବରଷଇ ଜୀବ ହୃଦ ଦେଶେ ।
ନାହିଁ ଗୃହେ ଇଚ୍ଛା ମୋର ନାହିଁ ବନବାସେ
ସଦା ମୋର ଇଚ୍ଛା ରହେ ଆତ୍ମପଦ ପାସେ ।
ସେହି ପଦ ଇଚ୍ଛା ମୋର ଯା'ରେ ଆଶ୍ରାକରି
ଆତ୍ମପଦ ପ୍ରାପ୍ତି ହେବି, ଶାନ୍ତି ଧାରା ସରି ।
ଆତ୍ମରେ ନିର୍ଭର କରି ସଂସାରେ ମୁଁ ଅଛି
ତାକୁ ଲଭି ନ ପାରିଣ ସଂସାର ତେଜୁଛି ।
ଦୁଇ ନାବେ ପାଦ ଦେଇ ଚଳିବା ଯେସନ
ସଂସାରେ ମୋ ଅବସ୍ଥାନ ସେହିପରି ଜାଣ ।
ସଂଶୟ ମଧ୍ୟେ ପଡ଼ି ମୁଁ ସହୁଛି କଷଣ
କାଣ୍ଡାରି ବିନା ନଉକା ଯଥା ଭାସମାନ ।
ଡ଼ାଳ ପତ୍ର ହୀନ ଥୁଣ୍ଟା ଗଛ ଦେଖି ମନେ
ଦୃଷ୍ଟି ବିଭ୍ରମରୁ ତାକୁ ଅନ୍ୟବସ୍ତୁ ମଣେ ।

ଯେଣୁ ନ ପାରଇ ଜାଣି ଆତ୍ମତତ୍ତ୍ୱେ କିସ
ସଂଶୟ ଆବିଷ୍ଟ ରହେ ସଦା ମୋ ମାନସ ।
ଯଥା ଦେବଗଣ ସ୍ୱୀୟ ଯାନ ନ ଛାଡ଼ନ୍ତି
ଯଥା ଇନ୍ଦ୍ରିଗଣ ସ୍ୱୀୟ ଧର୍ମ ଆଚରନ୍ତି ।
ତଥା ତ୍ରିଭୁବନ ଚରୀ ଏହିମୋର ଚିତ୍ତ
ଚାଞ୍ଚଲ୍ୟ ତେଜି ନ ପାରି, ବୃତ୍ତିରେ ଆସକ୍ତ ।
କହିବା ହୁଅନ୍ତୁ ମୋତେ ସେହି ସିଦ୍ଧୀପୀଠ
ଦେହଛଡ଼ା, ସର୍ବଶାନ୍ତି ଯହିଁ ସମବେତ ।
ଯେଉଁ ସ୍ଥାନେ ଜୀବ ପାଇଁ ଶୋକ, ମୋହ ନାହିଁ
ସେ ପରମ ସୁଖ ସ୍ଥଳ କେଉଁଠି ଗୋସାଇଁ ?
କେଉଁ ସ୍ଥାନରେ ରହିଲେ ସଂସାର ପଙ୍କରେ
ଘାଣ୍ଟି ନୋହି, ଜୀବ ରହେ ନିର୍ଲିପ୍ତ ଭାବରେ ?
ଆପଣମାନେ କିପରି ଜୀବନ୍ମୁକ୍ତ ହୋଇ
ନିର୍ଭୟେ ବିଚରୁଛନ୍ତି କହନ୍ତୁ ଗୋସାଇଁ ।
ସଂସାର ବିଷୟ ମାନ ବିଷଧର ସମ
ଭୋଗ-ଫଣା ଟେକେ ନିଏ ସବୁରି ପରାଣ ।
ଧନ ସମ୍ପଦ ଅଟଇ ତହିଁର ଗରଳ
କ୍ଷଣଭଙ୍ଗୁରତା ଜାଣ କୁଟିଳତା ତାର ।
ଏସନ ବିଷୟ-ଫଣୀ ମଙ୍ଗଳ ଦାୟକ
କିପରି ହୋଇ ପାରିବ ହେ ମୁନି ନାୟକ ?
ପର ଦୁଃଖକୁ ମଣିବି ନିଜ ଦୁଃଖପରି
ନିଜ ଦୁଃଖକୁ ମଣିବି ଶୁଷ୍କ ତୃଣ ସରି ।
କାମ, ସୁଖ ନଘାରିବ ହେବି ମୁଁ ଉତ୍ତମ
କେସନ ଯା ସମ୍ଭବିବ କହ ତପୋଧନ ?
ସଦା ବୈଷମ୍ୟରେ ପୂର୍ଣ୍ଣ ଏହି ଦୁନିଆରେ
କର୍ମ କରି ଶ୍ରେୟପ୍ରାପ୍ତି ହେବ କି ପ୍ରକାରେ ?
ଉଚିତ ଫଳ କେମନ୍ତେ ହୋଇପାରେ ଲାଭ
ଦୟାକରି ବତାଅ ତା ହେ ମୁନି ପୁଙ୍ଗବ ।
କି ପଦାର୍ଥ ଉପାଦେୟ, କିସ ଶ୍ରେୟସ୍କର
କେଉଁ ବସ୍ତୁ ହେୟ ପୁଣି କହ ମୁନିବର ।
ଚଞ୍ଚଳ ଚିତ୍ତ କିପରି ହୋଇପାରେ ସ୍ଥିର
ବତାଇ ମୋ ହୃଦେ ଆଶା ସଞ୍ଚରଣ କର ।
ତତ୍ତ୍ୱଜ୍ଞାନ ପରିପୂର୍ଣ୍ଣ ତପସ୍ୱୀ ଆପଣ
ଅନ୍ତର୍ଦ୍ଦେଶ ତବ ସଦା ଜ୍ଞାନ-ବୁଦ୍ଧି ପୂର୍ଣ୍ଣ ।
ନୋହିବି ଯେସନ ଦୁଃଖ ଶୋକ ସମ୍ମୁଖିନ
ସେହି କଥା ବିଷଦରେ କରନ୍ତୁ ବର୍ଣ୍ଣନ ।

ବନବାସୀ କ୍ଷୁଦ୍ରଜୀବ ମାନଙ୍କୁ ଯେସନ
କ୍ଳେଶ ଦେଇ ବଳିଆ ଯେ କରେ ହୀନିମାନ ।
ଏହି ଜଗତର ନାନା କଳ୍ପନା ଜଳ୍ପନା
ନାନାରୂପେ ମୋ ଚିତ୍ତକୁ ଦିଅନ୍ତି ଯନ୍ତ୍ରଣା ।

**ଇତିଶ୍ରୀ ଯୋଗବାଶିଷ୍ଟେ ବୈରାଗ୍ୟ ପ୍ରକରଣେ**
**ବୈରାଗ୍ୟ ପ୍ରୟୋଜନ ବର୍ଣ୍ଣନେ**
**ନାମ ପଞ୍ଚବିଂଶ ସର୍ଗଃ**



## ଷଷ୍ଠବିଂଶ ସର୍ଗଃ
## ଅନନ୍ୟ ତ୍ୟାଗ ଦର୍ଶନ

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ତପୀସାଇଁ
ଅଜ୍ଞାନୀ ଇଛନ୍ତି ବଞ୍ଚି ରହିବାର ପାଇଁ ।
ବର୍ଷାଋତୁ ପରି ଅଟେ ମାନବ ଜୀବନ
କେବେହେଁ ସ୍ଥିରତା ନାହିଁ, ଅସ୍ଥିରତା ପୂର୍ଣ୍ଣ ।
ପଦ୍ମ ପତ୍ରେ ଯଥା ଜଳ ହୁଏ ଢଳ ଢଳ
ତେସନ ଅସ୍ଥିର ଏହି ମାନବ ଶରୀର !
ଗଛ ପରେ ପତ୍ର ଅଗ୍ରେ ଜଳବିନ୍ଦୁ ସମ
ଏ ଶରୀର, ପରମାୟୁ ଚଞ୍ଚଳ ତେସନ ।
କୃଷ୍ଣ ଚତୁର୍ଦ୍ଦଶୀ ତିଥି ଚନ୍ଦ୍ରମା ଯେସନ
ଆୟୁ, ଶରୀର, ଉଭୟେ ତଥା ସ୍ଥିତିହୀନ ।
ରାବୁଥିବା ବେଙ୍ଗ କଣ୍ଠ ଅସ୍ଥିର ଯେସନ
ଚଞ୍ଚଳ ଏ ଦେହ ଆୟୁ ଅସ୍ଥିର ତେସନ
ହର ଭାଲେ ଚନ୍ଦରେଖା ଯଥା ଅତି କ୍ଷୀଣ
ମାନବର ପରମାୟୁ ତା ଠାରୁ ନିଉନ ।
ଏଥିରେ ଆସ୍ଥା ଯାହାର ଗଣ୍ଡମୂର୍ଖ ସେହି
କାଳ ଗ୍ରାସେ ପଡ଼ି ସୁଦ୍ଧା ଭୟ ନ ଜାଣଇ ।
ମୂଷିକକୁ ଲମ୍ଫମାରେ ମାର୍ଜାର ଯେସନ
କାଳ-ବିଡାଳ ଜୀବକୁ ଝାମ୍ପଇ ତେସନ ।
ବିରାଡ଼ି ମୂଷାକୁ ଗ୍ରାସେ ସମୟ ନ ଦେଇ
କାଳ, ଜୀବକୁ ତେସନ ଗ୍ରାସକରି ଥାଇ ।
ଅଜ୍ଞାନ-ମେଘ ଯେବେ କି କରଇ ଗର୍ଜନ
ଲୋଭ-ମୟୂର ନାଚଇ ହୋଇ ସୁପ୍ରସନ୍ନ ।
ଅଜ୍ଞାନ ବାରିଦ ଯେବେ କରଇ ବର୍ଷଣ
ଦୁଃଖଲତା ମାଡ଼ି ଯାଇ ହୁଏ ବର୍ଦ୍ଧମାନ ।

ଲୋଭ ବିଦ୍ୟୁତ ମାରଇ ଚକମକ ହୋଇ
ପଲକ ପଲକ ମାତ୍ରେ ଅସ୍ତ ଯାଉ ଥାଇ ।
ତୃଷ୍ଣାଜାଲେ ଜୀବପକ୍ଷୀ ଆବଧ ହୋଇଣ
କଷଣ ଭୋଗଇ ଶାନ୍ତି ତାହାକୁ ସପନ ।
ମହାୟଭଙ୍କର ଅଟେ ଏହି ଭବବ୍ୟାଧି
ତାର ନିବାରଣ ପାଇଁ ଅଛି କି ଔଷଧି ?
ଏ ଭବବ୍ୟାଧି କେସନ ହେବ ଉପଶମ
ଉପାୟ କହି ଦିଅନ୍ତୁ ହେ ମହା ମହୀମ ।
ମୂର୍ଖ ନୟନକୁ ବିଶ୍ୱ ଦିଶେ ରମଣୀୟ
ବିଶ୍ୱ ଅମୃତ ମଣେ ଯା' ଭାଗ୍ୟ ବିପର୍ଯ୍ୟୟ ।
ଏମନ୍ତ କି ବସ୍ତୁ ଅଛି ଏ ସାରା ଜଗତେ
ସ୍ୱର୍ଗଲୋକେ, ଦେବ ଲୋକେ ଅଥବା ମରତେ ।
ଯାହାକୁ କି ସୁଧିଜନ ମଣଇ ସୁନ୍ଦର
ଯାର ନେତ୍ରେ ସର୍ବ ବିଶ୍ୱବସ୍ତୁ ଭ୍ରମସାର ।
ପ୍ରତି ମୁହୂର୍ତ୍ତରେ ଦେଖ ଏ ସାରା ସଂସାର
ଦଗଧ ହେଉଛି, ସ୍ୱାଦ ବିହୀନ, ଅସାର ।
ସୁସ୍ୱାଦୁ, ସରସ ଯାହା ଜନନେତ୍ରେ ଦିଶେ
ସକଳ ବିକାର, ଜନମନ୍ତି ମୋହବଶେ ।
ବସନ୍ତ କୁସୁମେ ଯଥା ପୃଥିବୀ ସୁନ୍ଦର
ଆଶାତ୍ୟାଗୀ-ନର ଭୋଗେ ସଂସାରର ସାର ।
ପୂର୍ଣ୍ଣକାମ ହୋଇ ସେହୁ କ୍ଷୀର ସମୁଦ୍ରରେ
ସ୍ନାନ କଲାପରି ସୁଖ ଭୋଗେ କାଳେ କାଳେ ।
ତେତେବେଳେ ଶୋଭା ଦିଶେ ଏ ସାରା ସଂସାର
ନୋହିଲେ ଯା'ର ସୌନ୍ଦର୍ଯ୍ୟ ଅପାର-ଅସାର ।
ଜ୍ଞାନୀ ନେତ୍ରେ ଏ ଜଗତ ଅଟେ ଭ୍ରମମୟ
ଅଜ୍ଞାନୀ ନେତ୍ରେ ଜଗତ ଅତି ଶୋଭନୀୟ ।
ଚନ୍ଦ୍ରମା କଳଙ୍କଠାରେ ନାହିଁ ସୁନ୍ଦରତା
କଳଙ୍କ ବାହାରି ଯାନ୍ତେ ବଢ଼େ ତା ସ୍ନିଗ୍ଧତା ।
କାମ-କଳଙ୍କ ଗ୍ରାସିଛି ମୋ ଚିତ୍ତ-ଚନ୍ଦ୍ରମା
ତେଣୁକରି ବଢ଼ି ଯାଇଅଛି ତା କାଳିମା ।
କଳଙ୍କ ଦୂର ହେବାର କହନ୍ତୁ ଉପାୟ
କୃତଜ୍ଞତା ପାଶେ ବନ୍ଧ ହେବି ମୁଁ ନିଶ୍ଚୟ ।
ଫଳହୀନ ଏ ସଂସାର ନିବିଡ଼ ଅରଣ୍ୟ
ଐହିକ ବା ପାରତ୍ରିକ ସବୁ ଆଶା ଶୂନ୍ୟ ।
ଏ ଘୋର ସଂସାରେ ସାଧୁଜନଙ୍କ ସହିତ
କିପରି ମୋ ବ୍ୟବହାର ହେବା ସମୁଚିତ ।

ସେହି ଉପଦେଶ ମାନ କହନ୍ତୁ ବୁଝାଇ
ଯା'ବଳେ ଭବସାଗରୁ ତ୍ରାହି ପାଇବଇଁ ।
ହେ ମୁନିଶ ଏହି ଚିତ୍ତ ଅତୀବ ଚଞ୍ଚଳ
କିପରି ବର୍ଣ୍ଣ ପାରିବ ଏ ଜୀବନ ଭାର ।
ପାରଦ ଅଗ୍ନିରେ ପଡ଼ି ଉଡ଼ିଯାଏ ଯଥା
ତେସନ ତେଜି ନ ପାରେ ଚିତ୍ତ ଚପଳତା ।
ସଦା ବିଷୟ ଆଡ଼କୁ ହୁଏ ଧାବମାନ
ବିଷୟା-ବସ୍ତୁଟି ତାର ନୟନାଭିରାମ ।
ଚିତ୍ତ ସ୍ଥିରତା ଉପାୟ କହ ମୁନିବର
ଯେସନ ଭବ ଜଳଧି ହୋଇବି ମୁଁ ପାର ।
ଜଳ ବିନା ଜଳଚର ବଞ୍ଚି ନ ପାରଇ
ବ୍ୟବହାର କ୍ରିୟା ବିନା ଜୀବ ନ ବର୍ତ୍ତଇ ।
ସେ କ୍ରିୟାରେ ଗୁଣ ଦୋଷ ମିଳି ରହିଥାଇ
କି ଉପାୟେ ତହିଁରୁ ମୁଁ ରକ୍ଷା ପାଇବଇଁ ?
ନିଆଁ ନ ଜଳିଲେ ଶିଖା ଶୋଭା ତ ନପାଇ
ରାଗଦ୍ୱେଷେ ନ ତେଜିଲେ ଜୀବ କି ଶୋଭଇ ?
ଦୁଃଖ ସୁଖ ତ୍ୟାଗ କଲେ ବିଚାର ଶକତି
ବୃଦ୍ଧି ପାଇ, ଭଲମନ୍ଦ ବିଚାର ଦିଶନ୍ତି ।
ଦୁଃଖ ସୁଖ, ଭଲମନ୍ଦ ଅଟନ୍ତି ଅଭିନ୍ନ
ଏକ ରହଇ ଅନ୍ୟର ପ୍ରତୀକ ସମାନ ।
ବିଷୟ ସହିତ ମନ ଯୁକ୍ତ ଯେବେ ନୋହି
ମନର ଅସ୍ତିତ୍ୱ ଜାଣ ଯାଏ ଯେ ଉଭେଇ ।
ମନକୁ କରିବ ବିଷୟାରୁ ଅନାସକ୍ତ
'ମହାଯୋଗ' ବୋଲି ତାହା ଜ୍ଞାନୀଙ୍କର ମତ ।
ତତ୍ତ୍ୱଜ୍ଞାନର ବାସ୍ତବ କାରଣଟି ଏହି
ଏହି ତତ୍ତ୍ୱଜ୍ଞାନ ଜନ ମହାଯୋଗୀ ହୋଇ ।
ଆସିନାହିଁ ଯେ ପର୍ଯ୍ୟନ୍ତ ମୋର ତତ୍ତ୍ୱଜ୍ଞାନ
ସେହି ମହାଯୋଗ ଶିକ୍ଷା ଦିଅ ଜ୍ଞାନୀମାନ୍ୟ ।
ସେହି ମହାଯୋଗ ବିନା ଚିନ୍ତାଶୀଳ ମତି
ଅନାସକ୍ତ ହେବନାହିଁ ବିଦୂଷେ କହନ୍ତି ।
ଯେଉଁ ଯୁକ୍ତି ଆଶ୍ରୟରେ ଲଭିବି ମୁକତି
ସେହି ଯୁକ୍ତି ମୋତେ କହିଦିଅ ମହାମତି ।
ଶିଖାଇବା ହେଉ ମୋତେ ସେ ଉତ୍ତମ ଯୋଗ
ଯାବଳେ ସଂସାର-ବ୍ୟାଧି ମୋତେ ନ ଛୁଇଁବ ।
କି ପ୍ରକାର ସତ୍‌ଯୁକ୍ତି ମାନ ଅନୁସରି
ପୂର୍ବେ ମହାମୁନିମାନେ ଭବୁଁଗଲେ ତରି ।

ସେହି ଅମୃତ ବଚନ ଶୁଣୁ ମୋର କର୍ଣ୍ଣ
ସକଳ ମୋହ ତୁଟିବ, ଦୁଃଖ ହେବ ଚୂର୍ଣ୍ଣ ।
ସଂସାର ବନସ୍ତେ ଭୋଗ-ସର୍ପ କରେ ବାସ
ଜୀବକୁ ଦଂଶିବା ପାଇଁ ବଢ଼େ ତା ସାହସ ।
ତାଠୁଁ ରକ୍ଷା ପାଇବାର ଅଛି କି ଉପାୟ
ଦୟା ପରବଶ ହୋଇ କରନ୍ତୁ ନିର୍ଣ୍ଣୟ ।
ଯେତେ କ୍ରିୟା ଏ ସଂସାରେ ଆଚରେ ମାନବ
ସେ ସବୁରେ ରାଗ-ଦ୍ୱେଷ ଅଛି ଖର୍ବ ଖର୍ବ ।
ସେହି ଉପାୟ ଅଧୁନା କରନ୍ତୁ ବୟାନ
ଭବ ସିନ୍ଧୁ ପାର ପାଇଁ ଯେ ହେବ କାରଣ ।
ଯହିଁରେ କି ରାଗ ଦ୍ୱେଷ ସତ୍ତା ନରହିବ
ତୃଷ୍ଣା-ତରଙ୍ଗିଣୀ ତାର ବହୁଦୂରେ ଥିବ ।
ଯାହାଯୋଗୁଁ ଆପଣଙ୍କ ଅନ୍ତଃକରଣରେ
ଶୀତଳତା ରାଜ୍ୟକରେ କହ ମୋ ଆଗରେ ।
ଯଦି ଚ ତହିଁରେ କିଛି ଯୁକତି ନଥିବ
ଅବା ଥାଇକରି ମୋଠୁଁ ଗୋପନ ରଖିବ ।
ତେବେ ଏ ଅଧମ ଜାଣ ନିଶ୍ଚିତ ଶାନ୍ତିରୁ
ବଞ୍ଚିତ ରହିବ ସିନା ଆହେ ଧର୍ମମେରୁ ।
ପ୍ରତିକାର ଯଦି କିଛି ନଥିବ ତା ପାଇଁ
ଏ ଅଧମ ଇହଧାମେ ପାଇବ ତା କାହିଁ ?
ଅହଙ୍କାର ଅଭିମାନ ସବୁ ତ୍ୟାଗକରି
ଚେଷ୍ଟାଶୂନ୍ୟ ହୋଇ ରହିଅଛି ତପଚାରୀ ।
ଉତ୍କଣ୍ଠା ମାଡ଼ି ବସିଛି ତେଣୁ ମୋ ହୃଦୟ
ସ୍ନାନ, ଭୋଜନାଦି ପାଇଁ ନ ଜାଣେ ସମୟ ।
ସମ୍ପଦ ବିପଦ ଅବା ବୈଷୟିକ କାର୍ଯ୍ୟ
କାହିଁ ହେଲେ ମୋର ମନ ନ ଲାଗଇ ଆର୍ଯ୍ୟ ।
ଏକମାତ୍ର ସଙ୍କଳ୍ପ ମୋ ମନରେ ଜାଗ୍ରତ
କେସନ ଏ ମରଦେହ ହେବ ଭୂମିସାତ ।
ନିର୍ମଳ, ନିଃଶଙ୍କ ପୁଣି ନିଶ୍ଚେଷ୍ଟ ଭାବରେ
ଅନ୍ତଃକରଣୁ ମାତ୍ସର୍ଯ୍ୟ ରଖି ବହୁଦୂରେ ।
ଚିତ୍ର ପ୍ରତିମା ପରାଏ ମଉନ ଭାବରେ
ବସି ରହିଛି ହେ ଦେବ ମୃତ୍ୟୁ ଅପେକ୍ଷାରେ ।
ଅତଃପର ତେଜିବଇଁ ନିଶ୍ୱାସ ପ୍ରଶ୍ୱାସ
ବାହ୍ୟଜ୍ଞାନ ଯାହା କିଛି ଅଛି ମୋ ମାନସ ।
ପଞ୍ଚ ମହାଭୂତେ ଗଢ଼ା ଯେବଣ ଶରୀର
ତେଜିଦେଇ ଆତ୍ମାକୁ ମୋ କରିବି ନିସ୍ତାର ।
ନୁହଇ ଏ ଦେହ ମୋର ମୁଁ ନୁହେଁ ଦେହର
ଆବର ଯା କିଛି ଅଛି ଏ ଦେହ ବାହାର ।
କେହିତ ନୁହନ୍ତି ମୋର ମୁଁ ନୁହେଁ କାହାର
ଏତିକି କହିବା ଛଡ଼ା ଅନ୍ୟ ନାହିଁ ମୋର ।
ଏହି ବିବେଚନା କରି ମୋ ମାନସ ପଟେ
ତୈଳହୀନ ଦୀପପରି ଅଛି ଭବହାଟେ ।
ଏ ଦେହ କେସନ ଦେବ କରିବି ବର୍ଜ୍ଜନ
ଏ କଥା ସର୍ବଦା ଭାବେ ମୋ ଅନ୍ତଃକରଣ ।
ଭରଦ୍ୱାଜଙ୍କୁ ବାଲ୍ମୀକି କରି ସମ୍ବୋଧନ
କହନ୍ତି ହେ ଆର୍ଯ୍ୟବର ଶୁଣ ମୋ ବଚନ ।
ଗଗନ ପଟରେ କଳା ମେଘ ଦେଖିକରି
କେକୀ ରାବ କରି କରି ମୌନ ହେଲାପରି ।
ନିର୍ମଳ ନଭ ପଟରେ ସୁନିର୍ମଳ ଚନ୍ଦ୍ର
ତଥା ଶୁଦ୍ଧଚେତା ରମ୍ୟମୂର୍ତ୍ତି ରାମଚନ୍ଦ୍ର ।
ଉଲ୍ଲିଖିତ ବାକ୍ୟମାନ କରିଣ ବୟାନ
ଦରବାର ସ୍ଥଳେ ରାମ ରହିଲେ ମଉନ ।
ଗ୍ରୀଷ୍ମତାପେ ପକ୍ଷୀଗଣ ନୀରବ ନିଶ୍ଚଳ
ହେଲାପରି ବିରାଜନ୍ତି ଆହା କି ସୁନ୍ଦର ।
ଅତୀତର ମୂକ ସାକ୍ଷୀ ଗିରିବର ପରି
ପ୍ରଶାନ୍ତ, ଗମ୍ଭୀର, ନ୍ୟନ୍ତି ଚିତ୍ତବୃତ୍ତି ହରି ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ଅନନ୍ୟ ତ୍ୟାଗ ଦର୍ଶନ ବର୍ଣ୍ଣନେ**
**ନାମ ଷଡ଼ବିଂଶ ସର୍ଗଃ**



## ୨୭ଶ ସର୍ଗଃ

## ସିଦ୍ଧ ସମାଜ

ବାଲ୍ମୀକି କହନ୍ତି ଶୁଣ ତପୀ ଭରଦ୍ୱାଜ
ରାଜପୁତ୍ରଙ୍କ ବଚନେ ସରବେ ଆଶ୍ଚର୍ଯ୍ୟ ।
ରଘୁବଂଶ ଆକାଶରେ ରାମଚନ୍ଦ୍ର ଚାନ୍ଦ
ବୈରାଗ୍ୟ ବାଣୀ ଶୁଣାନ୍ତେ ସମସ୍ତେ ମୁଗଧ ।
କଥା ନ ସ୍ଫୁରଇ ଲୋମ ଟାଙ୍କୁରି ଉଠଇ
ବସ୍ତ୍ରଭେଦି ଲୋମମାନ ରହେ ଠିଆ ହୋଇ ।
କାନଡେରି ଶୁଣୁଥିବା ସଭାସଦ ଗଣ
ନିର୍ବା-ସନା ସୁଧା-ସିନ୍ଧୁ ମଧ୍ୟେ ନିମଗନ ।

ସବୁରି ମନେ ବୈରାଗ୍ୟ ତପନ ଉଦିତ
ସାଂସାରିକ ଦୁର୍ବାସନା ମାନ ଅସ୍ତମିତ ।
ବିଶ୍ୱାମିତ୍ର, ବଶିଷ୍ଠାଦି ମୁନି ଋଷିଗଣ
ଜୟନ୍ତ, ଧୃଷ୍ଟି ଇତ୍ୟାଦି ସଚୀବ ପ୍ରବୀଣ ।
ନିଜେ ଦଶରଥ ପୁଣି ଅନ୍ୟ ରାଜାଗଣ
ମୂର୍ତ୍ତିମନ୍ତ ବଳବୀର୍ଯ୍ୟ ଯେ ସାମନ୍ତ ଗଣ ।
ଲକ୍ଷ୍ମଣ, ଭ୍ରତ, ଶତୃଘ୍ନ ରାଜପୁତ୍ର ମାନ
ଭୃତ୍ୟ, ସେବକ, ପିଞ୍ଜରା ବନ୍ଧ ପକ୍ଷୀଗଣ ।
ଗୃହ ପାଳିତ ଯେତେକ କ୍ରୀଡ଼ା ମୃଗ ଥିଲେ
ଉଡ଼ନ୍ତା ପକ୍ଷୀ ସମସ୍ତେ ମଉନ ଭଜିଲେ ।
ଗବାକ୍ଷ ମାର୍ଗେ କୌଶଲ୍ୟା ଆଦି ମହିଷୀଏ
ଚିତ୍ର ପ୍ରତିମା ପରାଏ ରହିଲେ ସଭିଏଁ ।
ରାଜ ଉପବନ ମଧ୍ୟେ ତରୁ ଲତା ଗଣ
ଗଗନ ମାର୍ଗେ ପକ୍ଷୀଏ ଯେ ଉଡ୍‌ଡ୍ଡୀୟମାନ ।
ଭାବ-ରାଜ୍ୟେ ସ୍ଥିର ହୋଇ ସରବେ ଅଚଳ
ସେ ଭାବ ବରଣୀବାକୁ ମେଧା ଅଛି କା'ର ।
ସିଦ୍ଧ, ଗନ୍ଧର୍ବ, କିନ୍ନର, ଗଗନଚରୀଏ
ନାରଦ, ବ୍ୟାସ ଇତ୍ୟାଦି ଯେ ବ୍ରହ୍ମଜ୍ଞାନୀଏଁ
ରାଜା, ମହାରାଜା ପୁଣି ବିଦ୍ୟାଧର ଗଣ
ଛବିପରି ଅପଲକ ସବୁରି ନୟନ ।
ନିସ୍ପନ୍ଦରେ ଶ୍ରୀରାମଙ୍କ ବଇରାଗ୍ୟ ବାଣୀ
ଶୁଣି ମନ ହଜିଗଲା ନ ପାରନ୍ତି ଜାଣି ।
ରଘୁବଂଶ ମଣି, ରାମ ରାଜୀବ ଲୋଚନ
ନୀରବ ରହନ୍ତେ କହି ବୈରାଗ୍ୟ ବଚନ
ମୁକ୍ତି କାମୀମାନେ ଅଜାଡ଼ନ୍ତି ଧନ୍ୟବାଦ
ପୁଷ୍ପ ବରଷନ୍ତି ସିଦ୍ଧ, ବିଦ୍ୟାଧର ବୃନ୍ଦ ।
ତୁଷାର ବରଷା ପରି ବରଷେ ସୁମନ
କ୍ଷୀର ସମୁଦ୍ରରୁ କିବା ଛୁଟିଆସେ ଫେଣ ।
ଗଜମୋତି ମାଳ କିବା ବରଷନ୍ତି ଇନ୍ଦ୍ର
ଶଚୀ ଆଦି ସ୍ୱର୍ଗନାରୀ ଲଭିଲେ ପ୍ରମୋଦ ।
ଲହୁଣି ମେଞ୍ଚାକୁ ମେଞ୍ଚା ଗଗନେ କି ଉଡ଼ି
ମଡ଼ା ଦେହେ ସଂଜିବନୀ ଧାରା ଅବା ଖେଳି ।
ଭ୍ରମରର ଗୁଣୁ ସ୍ୱନ କର୍ଣ୍ଣେ ଦିଏ ମୋଦ
ଶିହରୀ ଉଠିଲେ ପୁଷ୍ପ ଗନ୍ଧେ ସଭ୍ୟବୃନ୍ଦ ।
ଘଡ଼ିକ ଯାଏ ଆକାଶୁ ପୁଷ୍ପ ବର୍ଷୁଥାଏ
ଦେବ, ଗନ୍ଧର୍ବ ଆନନ୍ଦ ବରଣିବ କିଏ ?
ପୁଷ୍ପରେ ଭ୍ରମର ଗଣ ବିଳାସରେ ଅନ୍ଧ
ସେ ବିଳାସ ଲୀଳା ଖେଳିଯାଏ ସର୍ବହୃଦ ।
'ନମୋ' ନମଃ ଶବ୍ଦ ସର୍ବ ମୁଖରୁ ବାହାରି
ସ୍ତମ୍ଭିତ ହୋଇ ରହିଲେ ସର୍ବ ଦେହଧାରୀ ।
ଏସନ ପୁଷ୍ପ ବର୍ଷଣ କେବେ ହୋଇଥିଲା
କେହି ହେଜି ନ ପାରିଲେ ଅଜ୍ଞାତ ରହିଲା ।
ଗଗନେ ଥାଇ କହନ୍ତି ସର୍ବ ସିଦ୍ଧ ଗଣ
କେଉଁଠେଁ ଶୁଣି ନ ଥିଲୁ ଏ ଅମୃତ ବଚନ
କଳ୍ପ ଆରମ୍ଭରୁ ଏହି ଗଗନ ମାର୍ଗରେ
ଭ୍ରମଣ କରୁଛୁ ଆମ୍ଭେ ସିଦ୍ଧ ବିଦ୍ୟାଧରେ
କିନ୍ତୁ ପୂଣ୍ୟଶ୍ଳୋକ ରଘୁକୁଳ ରାମଚନ୍ଦ୍ର
ବୈରାଗ୍ୟ ବାଣୀ ଶୁଣାନ୍ତେ ହୋଇଲୁ ସ୍ତବଧ ।
ଏ ପରି ଶ୍ରୁତି ମଧୁର ସୁନ୍ଦର ବଚନ
କେବେ ତ ଶୁଣି ନ ଥିଲା ଆମର ଏ କାନ ।
ଦେବ ଅଭିମାନ ଯାହା ଥିଲାଟି ଆମର
ଏ ବଚନ ଶୁଣି ତାହା ହୋଇଗଲା ଦୂର ।
ଏ ବଚନ ଶୁଣି ପରିପୂର୍ଣ୍ଣ ଆମ ବୁଦ୍ଧି
ପୂର୍ବ ପୂଣ୍ୟଫଳ ଲଭି ହୋଇଲୁ ସୁବୁଦ୍ଧି ।
ଶ୍ରୀରାମଚନ୍ଦ୍ରଙ୍କ ଏହି ଅମୃତ ବଚନ
କର୍ଣ୍ଣେ ଶୁଣି ଲଭିଅଛୁଁ ଆମେ ତତ୍ତ୍ୱଜ୍ଞାନ ।
ଯେ ବଚନ ଆଜ ତୁମ୍ଭେ କହିଲ ଶ୍ରୀରାମ
ବୃହସ୍ପତିଠାରୁ କେବେ ଶୁଣି ନାହିଁ କର୍ଣ୍ଣ ।
ପରମାନନ୍ଦ ଦାୟକ ଭବଦୀୟ ବାଣୀ
ଘେନାକର ଧନ୍ୟବାଦ ଆହେ ରଘୁମଣି ।

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ସିଦ୍ଧ ସମାଜ ବର୍ଣ୍ଣନେ**
**ନାମ ୨୭ଶ ସର୍ଗଃ**



## ଅଷ୍ଟବିଂଶ ସର୍ଗଃ

## ମୁନି ସମାଜ

କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ସିଦ୍ଧ ମାନଙ୍କ ବଚନ ଶୁଣିଲ ଆପଣ ।
ବର୍ତ୍ତମାନ ଶୁଣିବାକ ମୁନିଙ୍କ ବଚନ
ଯା' ଶ୍ରବଣେ ପାପରାଶି ହୋଇବ ଦହନ ।
ସିଦ୍ଧଗଣଙ୍କର ଏହି ଅମୂଲ୍ୟ ବଚନ

ଶୁଣିଲେ ସବୁରି ମନ ଶାନ୍ତ ହେବ ଜାଣ ।
ରାମଚନ୍ଦ୍ରଙ୍କର ଏହି ତତ୍ତ୍ୱ ବାକ୍ୟମାନ
ସିଦ୍ଧଗଣ ହୃଦୟର ବୈରାଗ୍ୟ ବର୍ଦ୍ଧନ ।
ସେଥିପାଇଁ କାଳେ କାଳେ ଏହି ରଘୁବଂଶ
ପୂଜା ପାଉଥିବ ପୁଣି ହୋଇବ ପ୍ରଶଂସ୍ୟ ।
ଏବେ ପୁଣ୍ୟଶ୍ଳୋକ ମୁନିମାନଙ୍କ ଉତ୍ତର
ଶୁଣି ଆଦର୍ଶ ଜୀବନ ଗଢ଼ିବା ଆମର ।
ପୁଷ୍ପର ସଦ୍‌ଗୁଣ ବୁଝି ଭ୍ରମର ଯେସନ
ହଲଚଲ ନୋହି ମଧୁ ଟାଣେ ଅନୁକ୍ଷଣ ।
ଦରବାର-ପୁଷ୍ପ ପରେ ସାଧୁଙ୍କ ସମାଜ
ବ୍ୟାସ, ନାରଦ ଇତ୍ୟାଦି ଦେବରଷି ରାଜ ।
ଭୃଗୁ, ଅଙ୍ଗିରା, ପୁଲସ୍ତ୍ୟ, ଯେତେକ ମହର୍ଷି
ଉଦ୍ଦାଳକ, ଶରଲୋମ ପ୍ରବେଶିଲେ ଆସି ।
ଭରଦ୍ୱାଜ, ବାଲମିକ, ଦୁର୍ବାଶା, ଚ୍ୟବନ
ସରୀତି, ପୁଲକ, ବାମଦେବ, ବାତ୍ସାୟନ ।
ଉଭାହୋଇ ବିଶ୍ୱାମିତ୍ର, ବଶିଷ୍ଠ ମହର୍ଷି
ଯଥା ମାନ୍ୟେ ତପସ୍ୱୀଙ୍କୁ କହନ୍ତି ସମ୍ଭାସି ।
ଯଥା ଯୋଗ୍ୟ ଉପଚାରେ ଦଶରଥ ରାଣ
ପୂଜାଦେଇ ସମସ୍ତଙ୍କୁ କରାନ୍ତି ଆସୀନ ।
ସୁଚାରୁ ସୁନ୍ଦର ବୀଣା ନାରଦଙ୍କ ହସ୍ତେ
ଖେଳା ନ କରଇ ମୁନିଛନ୍ତି ଭାବଗ୍ରସ୍ତେ ।
କାଳିଆ ମେଘକୁ ଜିଣି ବ୍ୟାସଦେବ ମୁନି
ନାନା ରଙ୍ଗ ବସ୍ତ୍ର ପିନ୍ଧି ନୀଳ ନଭ ଜିଣି ।
ନୀଳ ମେଘେ ତାରାଗଣ ଯଥା ଜକ ଜକ
ତେସନ ଶୋଭନ୍ତି ଏଥି ମହର୍ଷି ନାୟକ ।
ସଦା ଅଗ୍ନି ଶର୍ମା ଯେହ୍ନୁ ମହର୍ଷି ଦୁର୍ବାସା
ବାମଦେବ ଅଙ୍ଗିରାଦି ଯେତେ ମହାଯଶା ।
ତଥି ମଧ୍ୟେ ମୋ ଆସନ ନ ଥିଲା ତ ଖାଲି
ବ୍ରହ୍ମର୍ଷି-ରାଜର୍ଷି ଥିଲେ ସଭା ମଧ୍ୟେ ପୁରି ।
ସରବ ଦେବତା ଆସି ବିଜେ ସଭାସ୍ଥଳ
ଅଙ୍ଗକେ ନ ଛୁଏଁ ତାଙ୍କ ପାଦ ଧରାତଳ ।
କାହାରି କାହାରି ଜଟା ତଳେ ଲୋଟୁଥାଏ
ଉରଗ-ଭ୍ରମ ମାନସ ପଟେ ଜନମାଏ ।
କା' ଶିରେ ମୁକୁଟ ପୁଣି କା' ଶିରେ ରୁଦ୍ରାକ୍ଷ
କାହା କଣ୍ଠେ ମୋତିମାଳା କା କଣ୍ଠେ ଭଦ୍ରାକ୍ଷ ।
କାହା କରେ କମଣ୍ଡଳୁ କଣ୍ଠେ ରତ୍ନମାଳ
କାହା କଟିତଟେ ଲମ୍ବି ଥାଏ ମୃଗ ଛାଲ ।
କେ ପିନ୍ଧିଛି ଗେରୁବସ୍ତ୍ର କେ କୌପୀନଧାରୀ
କା' କଟିରେ ଶୋଭାପାଏ ସୁବର୍ଣ୍ଣ ଶିକୁଳି ।
କେ' ଅଟେ ରାଜର୍ଷି କିଏ ସାତ୍ତ୍ୱିକ ସ୍ୱଭାବ
କିଏ ବେଦ ବିଶାରଦ ସର୍ବ ତତ୍ତ୍ୱାର୍ଣ୍ଣବ ।
କିଏ ସୂର୍ଯ୍ୟପରି କିଏ ଚନ୍ଦ୍ରମା ସଦୃଶ
କିଏ ରତ୍ନସମ କାର ତାରକା ଆଭାସ ।
ସଭାସ୍ଥଳେ ଆସି ସର୍ବେ ନିଜ ନିଜ ସ୍ଥାନ
ଅଳଙ୍କୃତ କରି କଲେ ଭାଗ୍ୟ ବଳଧନ ।
ବ୍ରହ୍ମତେଜ ଫୁଟି ଉଠେ ବଦନ ମଣ୍ଡଳ
"ମାନସରେ" ଫୁଟିଛନ୍ତି କିବା ଶତଦଳ ।
ରକ୍ତ ଶୁଭ୍ର ମିଶା ତାଙ୍କ ବଦନ ମଣ୍ଡଳ
ଶତ ସୂର୍ଯ୍ୟ ଭ୍ରମଦିଏ ଦର୍ଶକ ମନର ।
ମୋହନ ମୂରତି ନମ୍ର ଭାବାପନ୍ନ ରାମ
କର କମଳ ଯୋଡ଼ିଣ ଘେନିଲେ ଆସନ
ନାରଦ, ବଶିଷ୍ଠ, ପୁଣି ବିଶ୍ୱାମିତ୍ର ମୁନି
ବିନମ୍ର ରାମଙ୍କୁ ଚାହିଁ କହନ୍ତି ଏ ବାଣୀ ।
"ଧନ୍ୟ ତୁମେ ରାମଚନ୍ଦ୍ର ଦଶରଥ ସୁତ
ଅଲୌକିକ ତୁମ ବାଣୀ କେଡ଼େ ଯେ ମହତ ।
ବୈରାଗ୍ୟ-ଗର୍ଭ ବଚନ ମଙ୍ଗଳ ଦାୟକ
ପ୍ରସାଦ ଗୁଣ ବିଶିଷ୍ଟ, ଶାନ୍ତି ପ୍ରଦାୟକ ।
ବୈରାଗ୍ୟ ବିବେକ ପୂର୍ଣ୍ଣ ତୁମ୍ଭର ବଚନ
ଆଲୋଡ଼ିତ କରିଦିଏ ସବୁରି ପରାଣ ।
ତୀକ୍ଷ୍ଣ ପ୍ରତିଭା ଆବର ଉଦାର ପରାଣ
ମହାବାକ୍ୟର ତତ୍ତ୍ୱାର୍ଥ ତୁମ୍ଭେ ଏକା ଜାଣ ।
ଯାହା ତୁମ୍ଭେ କହିଲ ତା ବିଚାର ନିଷ୍ପନ୍ନ
ଅର୍ଥର ବ୍ୟଞ୍ଜକ, ଜ୍ଞାନ ଗାରିମାରେ ପୂର୍ଣ୍ଣ ।
ଆର୍ଯ୍ୟଜନୋଚିତ ତବ ମଧୁର ବଚନ
ଜ୍ଞାନ ସନ୍ଧିସ୍ଥୁଙ୍କ ଚକ୍ଷୁ ଖୋଲି ଦିଏ ଜାଣ ।
ଦୋଷଶୂନ୍ୟ, ସ୍ୱଷ୍ଟ, ହିତ, ସନ୍ତୋଷ ଜନକ
ଶୁଣି ଆଶ୍ଚର୍ଯ୍ୟ ନୋହିବ ଅଛି କେଉଁ ଲୋକ ?
ଶତକଡ଼ା ଜଣେ, ଦୁଇଜଣ ଅବା ଥିବେ
ଅତି ଉତ୍କୃଷ୍ଟ ଉନ୍ନତ ଜ୍ଞାନ ଶୁଣାଇବେ ।
ସୂକ୍ଷ୍ମଦୃଷ୍ଟି ସୁସମ୍ପର୍ଣ୍ଣ ଜ୍ଞାନ ପରାୟଣ
ଶ୍ରୀରାମଙ୍କ ପରି ଭବେ କିଏ ହେବେ ପୁଣ ?
ତୁମପରି ଦେହଧାରୀ ନଥିବେ ତ କେହି
ଯାହାର ବିବେକ ତତ୍ତ୍ୱ ଜ୍ଞାନ ନିର୍ଦ୍ଦେଶଇ ।

ତପସ୍ୱୀମାନଙ୍କ ମଧ୍ୟେ କେହିତ ନ ଥିବେ
ତୁମପରି ସମୁଜ୍ଜ୍ୱଳ ସାଧୁ ଏହି ଭବେ ।
ଯେଉଁ ପ୍ରଜ୍ଞାଦୀପ ଶିଖା ତୁମ ହୃଦୟରେ
ଜଳୁଛି, ଜଳୁ ନ ଥିବ କାହାରି ଅନ୍ତରେ ।
ଯଦିବା କାହାରି ହୃଦେ ଏହା ଜଳୁଥିବ
ଅପ୍ରାକୃତ ଜନ ବୋଲି ତାହାକୁ ଜାଣିବ ।
ରକ୍ତ ମାଂସ ଦେହଧାରୀ ବହୁ ନର ଯନ୍ତ୍ର
ଜନ୍ମୁଛନ୍ତି ଏ ଜଗତେ ଏ କଥା ତ ସତ ।
ବାସ୍ତବ ଚେତନା କିନ୍ତୁ ନ ଥାଏ ତାଙ୍କଠି
ସଚେତନ ହେଲେ ମଧ୍ୟ ଅଚେତନ ସେଟି ।
ଶବ୍ଦ ସ୍ପର୍ଶ ବିଷୟାଦି କରି ଉପଭୋଗ
ପାରିବାପଣ ଦେଖାନ୍ତି ଅଜ୍ଞାନୀ ଏ ଭବ ।
ସତ ଅସତ ବିଚାରେ ପାରଗ ନୁହନ୍ତି
ଯାହା ଦେଖନ୍ତି ତହିଁରେ ମୁଗ୍ଧ ହୋଇଯାନ୍ତି ।
ଜନମ, ମରଣ, ଜରା କଷଣ ଲଭନ୍ତି
ତତ୍ତ୍ୱ ବିଚାର କରଣେ ସମର୍ଥ ନୁହନ୍ତି ।
ନରଦେହଧାରୀ ହୋଇଥିଲେ ହେଁ ସେମାନେ
ପଶୁଠାରୁ ହୀନ ତାଙ୍କୁ ମଣନ୍ତି ସୁଜନେ ।
ଭବ ସାଗର ତରଣେ ଯେ ହୁଏ ପ୍ରୟାସୀ
ପୁରୁଷାର୍ଥ ସାଧନରେ ଯେହୁ ଅଭିଳାଷୀ ।
ସେହି ମାନେହିଁ ବାସ୍ତବ ମାନବରେ ଗଣ୍ୟ
ଅକାଟ୍ୟ ଯୁକତି ଏହା ଯୁଗେ ଯୁଗେ ଟାଣ ।
ହେ ଶତ୍ରୁ ମର୍ଦ୍ଦନ ରାମ ! ତୁମ ପରି କେହି
ନାହିଁ, ନଥିଲେ, ନଥିବେ ଜାଣ ଏହି ମହୀ ।
ତୁମ ପରି କିଏ ପୂର୍ବାପର ବିଚାରିବ
ଅଭିଷ୍ଟ ଫଳଦାୟକ ତୁମ ପରି ହେବ ?
ସବୁଠାରେ ଆମ୍ବଗଛ ଦେଖାଯାଏ ନାହିଁ
ସୁମଧୁର ଗୁଣୀଜନ ସବୁଠି ନ ଥାଇ ।
ସୌମ୍ୟ ଦରଶନ ଜନ କେଉଁଠି ମିଳିବ
ଚଷୁ କୁଟିଲେ କି କେଭେ ତଣ୍ଡୁଳ ପାଇବ ?
ସଂସାର ଯାତ୍ରାର ଫଳ ଏଡ଼େ ପିଲାଦିନୁ
ଜାଣି ଯେ ପାରିଛ ଏହା ନ ଯିବଟି ମନୁ ।
କୋଟି କୋଟି ବୃକ୍ଷ ଲତା ଜନ୍ମନ୍ତି ଜଗତେ
ଚନ୍ଦନ ବୃକ୍ଷ କି ଜନ୍ମେ ସବୁଠି ମରତେ ?
ଗଣୁଥିଲେ ନ ସରିବ ଦେହଧାରୀ ସଂଖ୍ୟା
ତୁମରି ସରି ବିଦ୍ୱାନ ମିଳିବେ କି ଦେଖା ?

ଅସ୍ଥି, ମାଂସ, ରକ୍ତ ଗଢ଼ା ପୁତ୍ତଳିକା ପରି
ଭ୍ରମୁଛନ୍ତି ନରଗଣ କାଳ କାଳ ଧରି ।
ଚନ୍ଦ୍ର ପିତୁଳା ସମାନ ଏ ଅଜ୍ଞାନ ଜୀବ
ଜନ୍ମୁଥିବ ମରୁଥିବ କେଭେଁ ନ ସରିବ ।
ବହୁତ ହାତୀ ଅଛନ୍ତି ଏ ସାରା ଜଗତେ
ଗଜମୁକ୍ତା ମିଳିବ କି ସବୁ ହାତୀ ମାଥେ ?
ସଂଖ୍ୟା ନ ସରିବ ଗଣୁଥିଲେ ମାନବର
ପୁରୁଷାର୍ଥ ପାଇଁ ବ୍ୟଗ୍ର ଲୋକ ତ ବିରଳ ।
ସବୁଠାରେ ବୃକ୍ଷଲତା ଛନ୍ତି ପଣପଣ
ଲବଙ୍ଗଲତା କି ଦେଖାଯାଏ ସବୁ ସ୍ଥାନ ?
ଅଶେଷ ଅଶେଷ ଦୋଷେ ଭରା ଏ ସଂସାର
ସାର ପଦାର୍ଥ ମିଳିବା ଅତି କଷ୍ଟକର ।
ପ୍ରଜ୍ଞାବନ୍ତ ସେହି ଜନ ସଂସାରେ ଯେ ଥାଇ
ପ୍ରଗାଢ଼ ଚେଷ୍ଟା କରଇ ଆତ୍ମଜ୍ଞାନ ପାଇଁ ।
ଜନ୍ମ ଜନ୍ମ ଧରି ଭବେ ଖୋଜି ବୁଲୁଥିବ
ଦଶରଥ ପୁତ୍ର ପରି ଆଉ କେ ମିଳିବ ?
ତିଳେମାତ୍ର ସୂଚନା ହିଁ ଏହାଙ୍କୁ ଯଥେଷ୍ଟ
ଘାସଖାଇ ଗାଭୀ ଯଥା ଦିଏ ଦୁଗ୍ଧାମୃତ ।
ପାଣିରେ ଟୋପାଏ ତେଲ ପକାଇବା ମାତ୍ରେ
ସଙ୍ଗେ ସଙ୍ଗେ ବ୍ୟାପିଯାଏ ଦିଗ ବିଦିଗାନ୍ତେ ।
ପଦେ କଥା କହିଦେଲେ ରାମଙ୍କୁ ଯଥେଷ୍ଟ
କହିବା ଲୋକର ସାଧ ହେବ ସବୁ ଇଷ୍ଟ ।
ବୁଦ୍ଧିମାନଙ୍କ ମଧ୍ୟରେ ତୁମ୍ଭେ ବୁଦ୍ଧିମାନ
ଜ୍ଞାନ ଦୀପର ପ୍ରକାଶ ତୁମଠାରୁ ଜାଣ ।
ଆତ୍ମବୋଧର ପରମ ପାତ୍ର ତୁମ୍ଭେ ସିନା
ମେଧା କି କଳିପାରିବ ତୁମ୍ଭର ଗାରିମା ?
ଆମ୍ଭଦ୍ୱାରା ଯଦି ତୁମ ହୃଦୟାଭିଳାଷ
ସିଦ୍ଧ ହୋଇ ନ ପାରିବ ଆହେ ରଘୁବଂଶ ।
ଅମର ସକଳ ଜ୍ଞାନ ସମ୍ପୂର୍ଣ୍ଣ ବିଫଳ
ହୋଇଲା ବୋଲି ମଣିବୁ ଆହେ ରଘୁବାଳ ।
ଆମ୍ଭ ଆଗେ ତୁମ ଜ୍ଞାନ ନୋହିଲେ ଉଦୟ
ମହାମୂର୍ଖ ମଧ୍ୟେ ଗଣ୍ୟ ହେବୁ ନିଃସନ୍ଦେହ ।"

**ଇତିଶ୍ରୀ ଯୋଗବାଶିଷ୍ଠେ ବୈରାଗ୍ୟ ପ୍ରକରଣେ**
**ମୁନି ସମାଜ ବର୍ଣ୍ଣନେ**
**ନାମ ଅଷ୍ଟବିଂଶ ସର୍ଗଃ ।**



## ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

## ବା

# ବଶିଷ୍ଠ-ମହାରାମାୟଣ

## ମୁମୁକ୍ଷୁ ପ୍ରକରଣ

### ପ୍ରଥମ ସର୍ଗଃ

#### ଶୁକମୁନି ନିର୍ବାଣ

କହନ୍ତି ବାଲ୍ମୀକି ଆହେ ଭରଦ୍ୱାଜ ଶୁଣ
ସାକ୍ଷାତ ପରମାନନ୍ଦ ଏସବୁ ବଚନ ।
କଲ୍ୟାଣଦାୟକ ପୁଣି ଶ୍ରବଣ ମଧୁର
ଶୁଣିବା ସୁଯୋଗ ମିଳେ ଥିଲେ ପୁଣ୍ୟବଳ ।
ବହୁ ଜନ୍ମର ସଞ୍ଚିତ ସୁକୃତ ଭଣ୍ଡାର
ଏକତ୍ର ହୋଇଲେ ଯାହା ପାଇପାରେ ନର ।
ଯଥା ବହୁ ପୁଣ୍ୟ ବଳେ କଳ୍ପବୃକ୍ଷ ଫଳେ
ସଞ୍ଚିତ ସୁକୃତି ଥିଲେ ଏ ସୁଯୋଗ ମିଳେ ।
ଅନ୍ୟଥା ଘଟଇ ନାହିଁ ଏ ସ୍ୱର୍ଣ୍ଣ ସୁଯୋଗ
ଯେତେ ବାଡ଼େଇ କଚାଡ଼ି ହେଲେ କିସ ହେବ ?
ଦେଢ଼ସସ୍ର ଶ୍ଳୋକେ ବଇରାଗ୍ୟ ପ୍ରକରଣ
ଜୀବନମୁକ୍ତ ହେବାର ପରମ କାରଣ ।
ସ୍ୱର୍ଣ୍ଣାକ୍ଷରେ ରହିଥିବ ଏ ପୂର୍ଣ୍ଣ ବିବୃତି
ଏବେ ମୁମୁକ୍ଷୁ ବାରତା ଶୁଣ ଶୁଦ୍ଧମତି ।
କହନ୍ତି ଭରଦ୍ୱାଜଙ୍କୁ ବାଲମୀକ ମୁନି
ଦରବାରେ ଯାହା ହେଲା ଶୁଣ ତପୀମଣି ।
ଜ୍ଞାନୀଶ୍ରେଷ୍ଠ ବିଶ୍ୱାମିତ୍ର କହନ୍ତି ହେ ରାମ
'ଯାହାକି ଜ୍ଞାତବ୍ୟ ସବୁ ଜାଣ ତ ଆପଣ ।
ଦର୍ପଣ ପରାଏ ସ୍ୱଚ୍ଛ ତୁମ ଚିତ୍ତପଟ
ସେ ଚିତ୍ତ ଦର୍ପଣେ କିଛି ଧୂଳି ସମବେତ ।
ମୁକୁର ଯେସନ ଲୋଡ଼େ ସ୍ୱଚ୍ଛ ମାରଜନା
ଚିତ୍ତ-ମୁକୁରକୁ ଲୋଡ଼ା ଉପଦେଷ୍ଟ-ବଚନ ।
କିଞ୍ଚିତ ମାର୍ଜନା ତହିଁ ଜାଣ ଆବଶ୍ୟକ
ଦ୍ୱନ୍ଦ୍ୱ ଦୂର ହୋଇ ଉଦେ ହେବ ସୁବିବେକ ।
ଦଣ୍ଡ ପ୍ରଣାମ ଆଦର ଗୁରୁ ଉପଦେଶ
ଏମାନଙ୍କ ଯୋଗୁଁ ଜନ୍ମେ ସୁଦୃଢ଼ ବିଶ୍ୱାସ ।
ତୁମପରି, ଶୁକଦେବ ବ୍ୟାସମୁନି ସୁତ
ଥିଲେ ସେହୁ ବୁଦ୍ଧିମାନ ପୁଣି ଜ୍ଞାନବନ୍ତ ।
ଜ୍ଞାତବ୍ୟ ବିଷୟମାନ ତାଙ୍କର ଗୋଚର
ତୁମ୍ଭ ମଧ୍ୟେ ତାହା ସବୁ ଦେଖେ ଅବିକଳ ।
ତାଙ୍କର ଅପେକ୍ଷା ଥିଲା ବିଶ୍ରାମ ନିମିତ୍ତ
* ବିଶ୍ରାମ ଲଭନ୍ତେ ସେହୁ ହେଲେ ଧୀର ଶାନ୍ତ ।
ଏହା ଶୁଣି ରାମଚନ୍ଦ୍ର ମୁନିଙ୍କୁ ପୁଚ୍ଛିଲେ
କିପରି ଧୀମାନ ପ୍ରଜ୍ଞାବାନ ଶୁକ ଥିଲେ ?
କିଦୃଶ ବିଶ୍ରାମ ଅପେକ୍ଷାରେ ଥିଲେ ସେହି
କିପରି ତା ଲାଭ କଲେ କହ କୃପାବହି ।
ତତ୍ତ୍ୱଜ୍ଞ ଥିଲେ ହେଁ ଶୁକ ବ୍ୟାସଙ୍କ ନନ୍ଦନ
ଶାନ୍ତି-ସୁଖ ସେ କିପରି ନ ଜାଣିଲେ ପୁଣ ?
ଗୁରୁ ଉପଦେଶ ତାଙ୍କୁ ଦେଲା ଶାନ୍ତି ସୁଖ
ସେ ସବୁ କହିବା ମୋତେ ନ ହୋଇ ବିମୁଖ ।

* ବିଶ୍ରାମ – ପରିତୋଷରୂପୀ ଶାନ୍ତି

ବିଶ୍ୱାମିତ୍ର ବୋଲନ୍ତି ହେ ରାମଚନ୍ଦ୍ର ଶୁଣ
ଶୁକ କଥା, ତୁମ୍ଭ କଥା ଉଭୟ ସମାନ ।
ଯେଉଁ କ୍ରମ ଅନୁସରି ଲଭିଲେ ସେ ମୋକ୍ଷ
ସେ ବୃତ୍ତାନ୍ତ ମୋହଠାରୁ ଶୁଣ ହେ ପ୍ରତ୍ୟକ୍ଷ ।
ଅଜ୍ଞାନ ଶଇଳ ସମ ତପୋଧନ ବ୍ୟାସ
ପ୍ରଚଣ୍ଡ ମାର୍ତ୍ତଣ୍ଡପରି ତେଜ ପରକାଶ ।
ସ୍ୱର୍ଣ୍ଣ ସିଂହାସନ ପରେ ଯେ ହୋଇ ଆସୀନ
ବସିଛନ୍ତି ଦଶରଥ ଯାଙ୍କ ସନ୍ନିଧାନ ।
ସର୍ବ ଶାସ୍ତ୍ରବେତ୍ତା ଶୁକ ମୁନି ତାଙ୍କ ପୁତ୍ର
ସତ୍ୟକୁ ମଣନ୍ତି ସତ୍ୟ ଅସତ୍ୟ ଅସତ୍ୟ ।
ସଂସାର ଯାତ୍ରା ବିଚାରକରି ସେହି ଶୁକ
ତୁମପରି ଲଭିଥିଲେ ବିବେକ ଆଲୋକ ।
ନିଜ ବୁଦ୍ଧିବଳେ ଶୁକ କରିଲେ ସାଧନା
ଆତ୍ମା, ଅନାତ୍ମାର ଜ୍ଞାନ ଲଭିଲେ ମହାତ୍ମା ।
ଯା' ସତ୍ୟ ତା' ପରମାର୍ଥ ଏହି ତତ୍ତ୍ୱଜ୍ଞାନ
ଲାଭ କରିଥିଲେ ବ୍ୟାସଦେବଙ୍କ ନନ୍ଦନ ।
ଲଭି ନ ପାରନ୍ତେ ମୋକ୍ଷ ସେ ପଥ ଆଚରି
ସନ୍ଦିହାନ ହେଲେ ମୁନି ଦ୍ୱନ୍ଦ୍ୱରାଜ୍ୟେ ବୁଲି ।
କୌଣସି ବସ୍ତୁରେ ଦୃଢ଼ ବିଶ୍ୱାସ ନ ଆସେ
ତେଣୁ ପଡ଼ିଲେକ ମୁନି ଭ୍ରମଜାଲ ଫାଶେ ।
ପରମ ଆନନ୍ଦ, ଶାନ୍ତି ନ ପାରିଣ ଲଭି
ସଂଶୟ ଉପୁଜେ ମନେ, ଗଲେ ତେଣୁ ଦବି ।
"କାହିଁରେ ଆନନ୍ଦ ମୁଁ ତ ନ ପାରଇ ଜାଣି"
ବିସ୍ମୟ ସାଗରେ ମଗ୍ନ ହେଲେ ମହାମୁନି ।
ସୁମେରୁ ପର୍ବତେ ବ୍ୟାସ ମୁନିଙ୍କର ପାଶେ
ପହଞ୍ଚିଲେ ମହାମୁନି ବିରସ ମାନସେ ।
"କହନ୍ତି ହେ ପିତୃଦେବ ଶୁଣ ମୋର ବାଣୀ
ଏ ସଂସାର ତତ୍ତ୍ୱ କିଛି ନ ପାରିଲି ଜାଣି ।
ଭ୍ରମାତ୍ମକ ଏ ସଂସାର କାହୁଁ ଉପୁଜିଲା
ତାହାର ନିବୃତ୍ତି ମାର୍ଗ କହ ମୋତେ ଭଲା ।
ପୂର୍ବେ ତା ନିବୃତ୍ତି ପୁଣି କେବେ ଘଟିଥିଲା
କହନ୍ତୁ ବୁଝାଇ ମୋତେ ପରାଶର ଚେଲା ।
ଏହାର ଯେ ପରିଣାମ କହିବାକ ତାତ
କାହାର ଏ ଭ୍ରମ ପୁଣି ନ ପାଏ ତା ଅନ୍ତ" ।
କହିଗଲେ ବ୍ୟାସଦେବ ଠିକ ଠିକ କରି
ଯେପରି ସାଧନ ମାର୍ଗ ଥିଲେ ସେ ଆଚରି ।
ପରମବ୍ରହ୍ମ ପ୍ରାପତି ହେବାର ଯେ ପନ୍ଥା
କହିଗଲେ ବ୍ୟାସଦେବ ସର୍ବଶାସ୍ତ୍ର ବେତ୍ତା ।
"କହୁଛନ୍ତି ଶୁକଦେବ ଶୁଣ ଆହେ ତାତ
କହିଲତ ନାହିଁ କିଛି ନୂତନ ବୃତ୍ତାନ୍ତ ।
ଏ ସକଳ ବୃତ୍ତାନ୍ତ ମୁଁ ଆଗୁଁ ଅଛି ଜାଣି
ଶାନ୍ତିର ଆଭାସ କିଛି ପାଏ ନାହିଁ ପୁଣି" ।
ଶୁଣ ଏବେ ରାମଚନ୍ଦ୍ର ବ୍ୟାସ ଯା ଚିନ୍ତନ୍ତି
"ମୋ ବଚନ ଦେବ ନାହିଁ ପୁତ୍ରକୁ ମୋ ଶାନ୍ତି ।
ପିତା ପୁତ୍ର ସମ୍ବନ୍ଧଟି ଏଥି ଅନ୍ତରାୟ
ମୋ ବଚନେ ପୁତ୍ର ମନ ନୋହିପାରେ ଥୟ" ।
ଏସନ ବିଚାରି ବ୍ୟାସ କହନ୍ତି ରେ ପୁତ୍ର
"ମୁଁ ନୁହେଁ ସର୍ବ ତତ୍ତ୍ୱଜ୍ଞ ତେତେଡ଼େ ପ୍ରଜ୍ଞାବନ୍ତ ।
ଚଲ ଏବେ ଋଷିରାଜ ଜନକଙ୍କ ପାଶ
ସକଳ ସଂଶୟ ତୋର ତହିଁ ହେବ ନାଶ ।
ସର୍ବ ତତ୍ତ୍ୱଜ୍ଞ ଶାନ୍ତାତ୍ମା ଜନକ ରାଜର୍ଷି
ତୋହର ସକଳ ମୋହ ଦେବେ ସେ ବିନାଶି" ।
ତହୁଁ ଯାଇ ଶୁକଦେବ ମିଥିଳା ପ୍ରବେଶ
ଦ୍ୱାରପାଳ ଜନକଙ୍କୁ ଦେଲେକ ସନ୍ଦେଶ ।
"ବ୍ୟାସପୁତ୍ର ଶୁକଦେବ ସିଂହଦ୍ୱାରେ ଥାଇ
ରହିଛନ୍ତି ହଜୁରଙ୍କ ଆଜ୍ଞାକୁ ଅନାଇ" ।
ଜନକ ତ ଜାଣିଛନ୍ତି ଶୁକଙ୍କ ଜିଜ୍ଞାସା
ସର୍ବଜ୍ଞ ପୁରୁଷ ସେହୁ ସୁତୀକ୍ଷ୍ଣ ମନୀସା ।
ଅବଜ୍ଞା ଦେଖାଇ ରାଜା କିଛି ନ କହିଲେ
ଠିଆ ହୋଇଥାନ୍ତୁ ବୋଲି, ନୌକର ବୁଝିଲେ ।
ମଉନ-ବ୍ରତ ଆଚରେ ଜନକ ରାଜର୍ଷି
ସାତ ଦିନ ସାତ ରାତି ବିତିଗଲା ଆସି ।
ଠିଆ ହୋଇଥାନ୍ତି ଶୁକ ତାଳଗଛ ପରି
ଉନ୍ମନାଭାବ ବିତିଲା ସପତ ଶର୍ବରୀ ।
ମଉନ ଭାଙ୍ଗି ଜନକ ପୁଚ୍ଛନ୍ତି ଏସନ
"ଗଲେଣି କି ଶୁକ କିବା ସେ ଦଣ୍ଡାୟମାନ' ?
ଦ୍ୱାରପାଳ କହେ ଶୁଣ ମିଥିଳା ରାଜନ
ଉଭାଛନ୍ତି ଶୁକମୁନି ଅଚଳ ଯେସନ ।
ମନ ତାଙ୍କ ଅଛି କାହିଁ ଜଣା ନ ପଡ଼ଇ
ଚେତା କି ଅଚେତା କିଛି ବୁଝି ନ ହୁଅଇ ।
ଶ୍ରୀମୁଖ ମଣ୍ଡଳ ତାଙ୍କ ଦିଶଇ ଉଜ୍ଜ୍ୱଳ
ସରୋବରେ ଫୁଟିଅଛି କିବା ଶତଦଳ ।

କହନ୍ତି ରାଜନ "ତାଙ୍କୁ ଘେନି ଆସ ଯାଇ"
ପୁଣି ମଉନ ରହିଲେ ସାତଦିନ ପାଇଁ ।
ଭିତର ଫାଟକ ପାଖେ ଶୁକ ପ୍ରବେଶିଲେ
ରାଜା କେଉଁଠାରେ ବୋଲି ପ୍ରଶ୍ନ ପଚାରିଲେ ।
ପ୍ରଶ୍ନର ଉତ୍ତର ତାଙ୍କୁ ନ ମିଳଇ କିଛି
ସାତ ଦିନ ସାତ ରାତି କଟିଗଲା ଆସି ।
ପୁଚ୍ଛନ୍ତି ଦ୍ୱାରପାଳଙ୍କୁ ବିଦେହ ରାଜନ
"ଅଛନ୍ତି କି ନାହିଁ କହ ବ୍ୟାସଙ୍କ ନନ୍ଦନ" ?
ଦ୍ୱାରପାଳ କହେ ଆଜ୍ଞା ଭିତର ଫାଟକେ
ଉଭା ରହିଛନ୍ତି ଶୁକ ସାତ ଦିନ ଯାକେ ।
ରାଜାଙ୍କ ଆଦେଶ ହେଲା "ଅନ୍ତଃପୁରେ ଆଣ"
ଭୋଗ ବିଳାସର ସବୁ କରରେ ଭିଆଣ ।
ପୁଣି ସାତଦିନ ରାଜା ରହିଲେ ମଉନ
ଅନ୍ତଃପୁରେ ବିଜେ କଲେ ଶୁକ ତପୋଧନ ।
ବେଢ଼ିଥାନ୍ତି ଅନ୍ତଃପୁର ବିଳାସିନୀଗଣ
ଭୋଜ୍ୟ, ଭୋଗ୍ୟ ଦ୍ରବ୍ୟମାନ କରନ୍ତି ଅର୍ପଣ ।
ମୃଦୁ ସମୀରଣ ଯେତେ ବହୁଥିଲେ ସୁଦ୍ଧା
ଅଚଳଙ୍କୁ ଦେଇ ନ ପାରଇ କିଛି ବାଧା ।
ଅଚଳ ଅଟଳ ଅଟେ ଶୁକଙ୍କର ମନ
ତାଙ୍କୁ ଟଳି ନ ପାରିଲା ସେ ଅଭିନନ୍ଦନ ।
ସପତ ଦିବସ ଶୁକ ବିକାର ବିହୀନ
ପୁନିଅଁ ଚନ୍ଦ ପରାଏ ଦିଶନ୍ତି ଶୋଭନ ।
ମଉନ ବ୍ରତ କି ଧରିଅଛି ବିନ୍ଧ୍ୟାଚଳ
ତେସନ ଦିଶନ୍ତି ଶୁକ ଅଚଳ ଅଟଳ ।
ଦ୍ୱାରପାଳଙ୍କୁ ପୁଚ୍ଛନ୍ତି ଜନକ ରାଜନ
"କିପରି ଅଛନ୍ତି କହ ଶୁକ ତପୋଧନ" ?
ଦ୍ୱାରପାଳ କହଇ ହେ ଶୁଣିବା ରାଜନ
ଅଦ୍ଭୁତ ପୁରୁଷ ସେହୁ ଶୁକ ତପୋଧନ ।
ନ ହେଲେ ସେ ବିଚଳିତ ଅନାଦର ଦେଖି
ଭୋଗ ବିଳାସରେ କେଭେଁ ନ ହୁଅନ୍ତି ସୁଖୀ ।
ଯେତେ ତୃଷା ହେଲେ ସୁଦ୍ଧା ସେ ଚାତକ ପକ୍ଷୀ
ଆକାଶ ଜଳକୁ ସଦା ରହିଥାଏ ଚାହିଁ ।
ସେହିପରି ଶୁକଦେବ ମହାନ ପୁରୁଷ
କୌଣସି ବସ୍ତୁରେ ତାଙ୍କ ନାହିଁ ଅଭିଳାଷ ।
ତହୁଁ ରାଜା ଆଜ୍ଞାଦେଲେ ଆରେ ଦ୍ୱାରପାଳ
ଘେନି ଆସ ତାଙ୍କୁ ଯାଇ ଏଠାକୁ ଚଞ୍ଚଳ ।

ଶୁକଦେବ ଦେଖନ୍ତି ଯେ ବସିଛନ୍ତି ରାଜା
ଦୁଇପାଖେ ଦୁଇ ଗୋଟି କୁଣ୍ଡ ଅଛି ସଜା ।
ଡହ ଡହ ହୋଇ ଜଳେ ଗୋଟିକେ ଅନଳ
ଦକ୍ଷିଣ ପାଦଟି ତହିଁ ହେଇଅଛି ଜାଳ ।
ବାମ ପାଶ କୁଣ୍ଡଟିରେ ଭରିଛି ଚନ୍ଦନ
ରାଜାଙ୍କ ବାମ ପାଦଟି ତହିଁରେ ନିମଗ୍ନ ।
ବାମ ଜାନୁରେ ଅଛନ୍ତି ବସି ମହାଦେଈ
ରାଜାଙ୍କର ବାମକର ତାଙ୍କ କୁଚେ ଥାଇ ।
ସମ୍ମୁଖରେ ଜଳୁଅଛି ଯଜ୍ଞ ହୁତାଶନ
ଦକ୍ଷିଣ କରେ ଢାଳନ୍ତି ଆହୁତି ରାଜନ ।
ଏ ଅଦ୍ଭୁତ କାଣ୍ଡ ଦେଖି ଶୁକ ଯେ ଆଶ୍ଚର୍ଯ୍ୟ
ଭାବିଲେ ଏଥିରେ କିଛି ରହିଛି ତାତ୍ପର୍ଯ୍ୟ ।
ସୂକ୍ଷ୍ମ ଶରୀର ଧାରଣ କରି ଶୁକ ମୁନି
ରାଜା ଶରୀରେ ପ୍ରବେଶ କଲେ ତତକ୍ଷଣି ।
ବାହ୍ୟଜ୍ଞାନ ନାହିଁ ରାଜା-ମନ ବ୍ରହ୍ମେ ଲୀନ
ବାହାରକୁ ଏ ବିଭସ୍ତ କାଣ୍ଡ ପ୍ରକାଶନ ।
ଜନକଙ୍କ ଉଚ୍ଚକୋଟୀ ମାନସ ଅବସ୍ଥା
ବୁଝିପାରି ଶୁକମୁନି ଲଭିଲେ ନମ୍ରତା ।
ଶୁକଙ୍କୁ ଦେଖି ଜନକ ତେଜନ୍ତି ଆସନ
ପ୍ରଣାମାନ୍ତେ ଆରମ୍ଭନ୍ତି କଥୋପକଥନ ।
'ହେ ଶୁକ ! ତୁମେ ତ ଜାଣ ଜଗତ ଚରିତ
ଅଜଣା ନୁହେଁ ତୁମ୍ଭଙ୍କୁ ଅଜଣା ବୃତ୍ତାନ୍ତ ।
ସବୁ ମନୋରଥ ତୁମ ହୋଇଛି ପୂରଣ
କେଉଁ ଅଭିଳାଷ ରଖି ଆସିଛ ଆପଣ ?
ତୁମ୍ଭ ଆଗମନ ଶୁଭ ହେଉ ଶୁକଦେବ
ପୂରଣ କରିଦେବି ମୁଁ ସବୁ ଆଶା ତବ" ।
'ଜନକଙ୍କୁ କହୁଛନ୍ତି ଶୁକ-ବ୍ରହ୍ମ-ଜ୍ଞାନୀ
ଏ ସଂସାର ଆଡ଼ମ୍ବର ଜନ୍ମିଲା କି ଘେନି ?
କିପରି ଏ ଶାନ୍ତ ହେବ କହ ତପୋଧନ
ଜାଣିବାକୁ ବ୍ୟାକୁଳିତ ହୁଏ ମୋର ମନ' ।
ବିଶ୍ୱାମିତ୍ର କହିଲେକ ଶୁଣ ହେ ଶ୍ରୀରାମ
ପୂର୍ବେ ବ୍ୟାସଦେବ ଯାହା କଲେକ ବର୍ଣ୍ଣନ ।
ସେହି କଥା ଅବିକଳ ଜନକ ରାଜନ
ବଖାଣନ୍ତି, ନୂଆ କଥା କିଛି ନାହିଁ ଜାଣ ।
'ଶୁଣିକରି ଶୁକଦେବ କହନ୍ତି ଏସନ
ବିବେକ ବଳରେ ମୁହିଁ ଜାଣିଛି ଏମାନ ।

ପିତାଙ୍କୁ ପଚାରନ୍ତେ ମୁଁ ମୋତେ ଏହି କଥା
ଅବିକଳ କହିଥିଲେ ଆହେ ବ୍ରହ୍ମବେତ୍ତା ।
ଆପଣଙ୍କର ଏସବୁ ତାତ୍ତ୍ୱିକ ବଚନ
ତତ୍ତ୍ୱଶାସ୍ତ୍ର ମଧ୍ୟେ ସବୁ ହୋଇଛି ଲିଖନ ।
ଏହା ମଧ୍ୟ ମୋତେ ହୋଇଅଛି ସୁବିଦିତ
**ଏହି ଯେ ଜଗତ ନିଜ ଚିତ୍ତରୁ ସମ୍ଭୂତ ।**
ଚିତ୍ତ ନିର୍ବେଦ ହୋଇଲେ ଭ୍ରମ ଯାଏ ଅସ୍ତ
ଶାନ୍ତିଧନ ମାତ୍ର ମୋତେ ରହେ ଅପ୍ରାପତ ।
ତୁମେ ଯା' ଜାଣିଛ ପୁଣି ମୁଁ ଯାହା କହୁଛି
ଆବର ଗୁରୁଙ୍କ ମୁଖୁ ଯା' କିଛି ଶୁଣିଛି ।
ସେଥିରେ ପାର୍ଥକ୍ୟ ବୋଲି ନାହିଁ କିଛିମାତ୍ର
ସବୁବେଳେ ସବୁକାଳେ ଏହା ଧ୍ରୁବ ସତ୍ୟ ।
ଅବିଚ୍ଛିନ୍ନ ଚିନ୍ମୟ ସେହି ପରମାତ୍ମା
ତାହାଙ୍କ ବ୍ୟତୀତ ନାହିଁ ଆଉ କାହା ସତ୍ତା ।
ଅଦ୍ୱିତୀୟ ଅନାମୟ ପରମାତ୍ମା ସେହି
ସ୍ୱକୀୟ ସଙ୍କଳ୍ପ ବଳେ ଜଡ଼ୀଭୂତ ହୋଇ ।
ସଂସାର ଜୀବ ଭାବରେ ହୋଇଛି ଆବଦ୍ଧ
ବେଢ଼ି ରହିଛନ୍ତି ତାକୁ ସଦା ମାୟା, ଦ୍ୱନ୍ଦ୍ୱ ।
ଯେବେ ସେ ନିଜର ଏହି ସଂକଳ୍ପ ଛାଡ଼ିବ
ସଂସାର ବନ୍ଧନ ତେବେ ଯାଇ ମୁକ୍ତହେବ ।
ଚିତ୍ତ ସମ୍ବେଦନୁ ଜାତ ହୋଇଛି ସଂସାର
ଚିତ୍ତ ଚଞ୍ଚଳତା ଗଲେ ଭ୍ରମ ହେବ ଦୂର ।
ଆତ୍ମ-ତତ୍ତ୍ୱ ନିତ୍ୟ-ଶୁଦ୍ଧ ଯେ ପରମାନନ୍ଦ
କେବଳ ସେହି ଚୈତନ୍ୟ ଏଥି ନାହିଁ ଦ୍ୱନ୍ଦ୍ୱ ।
ତାଙ୍କୁ ଲଭିବାକୁ ଯେବେ ଅଭ୍ୟାସ କରିବ
ତେବେ ଯାଇ ଜୀବନରେ ବିଶ୍ରାନ୍ତି ଲଭିବ' ।
'କହନ୍ତି ଜନକ ଋଷି ଶୁକଦେବ ଶୁଣ
ଆତ୍ମତତ୍ତ୍ୱ ଜ୍ଞାନ ଅଧିକାରୀ ତୁମ୍ଭେ ଜାଣ ।
ତୁମ୍ଭର ଚେଷ୍ଟା ରହିଛି ଆତ୍ମପ୍ରାପ୍ତି ପାଇଁ
ବାହ୍ୟ ଦର୍ଶନ ତୁମ୍ଭର ମତେ ଗୌଣ ହୋଇ ।
ଅତି ବଡ଼ ଉଦାରାତ୍ମା ତେଣୁକରି ତୁମ୍ଭେ
ତୁମ୍ଭେ ଏକ ଅଦ୍ୱିତୀୟ, ଏକମାତ୍ର ଭବେ ।
ଭୋଗକୁ ରୋଗ କହିବା ନୁହେଁ ଅତି ଉକ୍ତି
ତାହାର ବିସ୍ମୃତି ପ୍ରାଣୀ କଳି ନ ପାରନ୍ତି ।
ଶୈଶବ କାଳରୁ ତୁମେ ତହିଁରୁ ବିରତ
ତୁମେ ଜିତେନ୍ଦ୍ରିୟ, ମହାବୀର, ସୁବିଦିତ ।
ସର୍ବଜ୍ଞାନର ଆକର ତୁମ୍ଭ ପିତା ବ୍ୟାସ
ଭିତରେ ବାହାରେ ତାଙ୍କ ନଥିଲା କଳୁଷ ।
ଯେପରି ସମ୍ପୂର୍ଣ୍ଣ ଜ୍ଞାନ ଲଭିଅଛ ତୁମେ
ଦୀର୍ଘ ତପସ୍ୟାରେ ପ୍ରାପ୍ତ ନୋହିଲେ ଆପଣେ ।
ମୁଁ ଅଟେ ବ୍ୟାସ, ବଶିଷ୍ଠ ଉଭୟଙ୍କ ଶିଷ୍ୟ
ତୁମେ ମଧ୍ୟ ବ୍ୟାସ ପୁତ୍ର ପୁଣି ତାଙ୍କ ଶିଷ୍ୟ ।
"ବ୍ୟାସଠାରୁ ମୁଁ ଅଧିକ", ଏହି କଥା ଭାବି
ଧାଇଁ ଆସିଅଛ ତୁମେ ଏହା କି ସମ୍ଭବି ?
ମୁଁ କିନ୍ତୁ କହୁଛି ତୁମେ ମୋଠାରୁ ଅଧିକ
ଭୋଗ-ବାସନା ରହିତ ହେ ମହା ନିର୍ଭୀକ ।
ବାହ୍ୟ ଚେଷ୍ଟାରେ ମୋ ଦୃଷ୍ଟି ସଦା ଆକର୍ଷିତ
ସେ ଆକର୍ଷଣ ତ ଛୁଇଁ ନାହିଁ ତୁମ୍ଭ ଚିତ୍ତ ।
ଭିତର ବାସନା ମୋର ରହିଛି ଜାଗ୍ରତ
ଭିତରେ ବାସନା ପ୍ରତି ତୁମେ ଅନାସକ୍ତ ।
ଯାହା ପାଇବାର କଥା ପାଇଛ ଆପଣ
ତୁମ୍ଭର ଚିତ୍ତ ରହିଛି ସବୁବେଳେ ପୂର୍ଣ୍ଣ ।
ଧନ୍ୟ ଧନ୍ୟ ଶୁକଦେବ ତୁମେ ତ ମୁକତ
ଏଣୁ ସଂଶୟକୁ ମନୁ କର ପରିତ୍ୟକ୍ତ' ।
ବିଶ୍ୱାମିତ୍ର କହନ୍ତି ହେ ରାମଚନ୍ଦ୍ର ଶୁଣ
ଶୁକ ଶୁଣିଣ ଜନକ ରାଜାଙ୍କ ବଚନ ।
ଚଳିଲେ ସୁମେରୁ ଦେଶେ ସଙ୍ଗେ କେହି ନାହିଁ
କୌଣସି ପ୍ରୟତ୍ନ ପ୍ରତି ଇଚ୍ଛା ନ ବଳଇ ।
ନିଃଶଙ୍କ ଭାବେ ଚଳନ୍ତି ଉଦାସୀନ ହୋଇ
ମେରୁ କନ୍ଦରରେ ବିଜେ କଲେକ ଗୋସାଇଁ ।
ନିର୍ବିକଳ୍ପ ସମାଧିରେ ହୋଇଲେ ନିମଗ୍ନ
ଦଶ ସହସ୍ର ବର୍ଷ ବିତାଇଲେ ସେହି ସ୍ଥାନ ।
ତୈଳହୀନ ଦୀପପରି ଲିଭି ଆସ୍ତେ ଆସ୍ତେ
ନିର୍ବାଣ ଲଭିଲେ ପରମାତ୍ମା ପାଦ ଗତେ ।
ଜଳବିନ୍ଦୁ ଲୀନ ଯଥା ଅତଳ ସାଗରେ
ଶୁକ ଆତ୍ମା ମିଶିଗଲା ପରମ ଆତ୍ମାରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ଶୁକମୁନି ନିର୍ବାଣ ବର୍ଣ୍ଣନେ**
**ନାମ ପ୍ରଥମ ସର୍ଗଃ ।**



# ଦ୍ୱିତୀୟ ସର୍ଗଃ
## ବିଶ୍ୱାମିତ୍ରଙ୍କ ଉପଦେଶ

ବିଶ୍ୱାମିତ୍ର କହୁଛନ୍ତି ଦଶରଥ ଶୁଣ
ଅବିକଳ ଶୁକପରି ଅଟନ୍ତି ଶ୍ରୀରାମ ।
ମାର୍ଜନାର ଲୋଡ଼ାଥିଲା ଶୁକ ମୁନି ପାଇଁ
ରାମଙ୍କ ବିଶ୍ରାନ୍ତି ପାଇଁ ତାହା ଲୋଡା ହୋଇ ।
ଉପଭୋଗ ଇଚ୍ଛା ତାଙ୍କ ଲଭିଛି ବିନାଶ
ଯାହା ସେ ଜାଣିବା କଥା ଜାଣନ୍ତି ଅବଶ୍ୟ ।
ରୋଗ ଭୋଗ ପରେ ଯଥା ରୁଚି ନ ରହଇ
ବିଷୟ୍ ଭୋଗେ ରାମଙ୍କ ଅରୁଚି ଜନ୍ମଇ ।
ପରମବ୍ରହ୍ମଙ୍କୁ ଚିତ୍ତେ ବୁଝିଛନ୍ତି ସେହୁ
ବିଷୟ ଭୋଗରୁ ରୁଚି ଆସିବ ବା କାହୁଁ ?
ବାସ୍ତବ ତତ୍ତ୍ୱ ଜ୍ଞାନରେ ବିଷୟ-ନିବୃତ୍ତି
ତତ୍ତ୍ୱ ଜ୍ଞାନ ନ ରଖଇ ବିଷୟେ ପ୍ରବୃତ୍ତି ।
ଭୋଗ ବାସନା କ୍ଷୟରେ ସଂସାର-ବନ୍ଧନ
କ୍ରମେ କ୍ଷୟ ହୋଇଯାଏ ସ୍ୱତଃସିଦ୍ଧ ଜାଣ ।
ଭୋଗ ବାସନାଟି ଯେତେ ଦୃଢ଼ ହେଉଥିବ
ସଂସାର ବନ୍ଧନ ତେତେ ବଢ଼ି ଚାଲିଥିବ ।
ବିଷୟ ବାସନା ହେତୁଁ ସଂସାର ବନ୍ଧନ
ସେ ବାସନା ବିନାଶ ହିଁ ମୋକ୍ଷ ବୋଲି ଜାଣ ।
ଏମନ୍ତ ଯୁକତି ଏବେ ଦେଖାଇବା ଆମ୍ଭେ
ଯାହାଦ୍ୱାରା ରଘୁନାଥ ବିଶ୍ରାନ୍ତି ଲଭିବେ ।
କିଞ୍ଚିତ ମାର୍ଜନା ଫଳେ ଶୁକ ପାଏ ଶାନ୍ତି
ଅବଶ୍ୟ ସେ ପଥେ ଶାନ୍ତ ହେବେ ରଘୁପତି ।
ଯଥା ଜ୍ଞାନୀଙ୍କୁ ନ ବାଧେ ଆଧ୍ୟାତ୍ମିକ ଦୁଃଖ
ଶ୍ରୀରାମଙ୍କୁ ସ୍ପର୍ଶ ନ କରଇ ଭୋଗ-ସୁଖ ।
ଭୋଗ ଲାଳସା ସର୍ବଦା ଦୁଃଖର କାରଣ
ଜ୍ଞାନୀଏ କହନ୍ତି ତାହା ସଂସାର ବନ୍ଧନ ।
ଭୋଗ ବାସନା ବିନାଶ ମଙ୍ଗଳ ଦାୟକ
ଜ୍ଞାନୀ ଜନଙ୍କ ମତରେ ତାହାହିଁଟି ମୋକ୍ଷ ।
ଯେତିକି ଭୋଗ ବାସନା ବଢ଼ି ଚାଲିଥିବ
ମୋକ୍ଷ ପଦର ଗୁରୁତ୍ୱ ତେତେ କମୁଥିବ ।
ଭୋଗ ବାସନା ଯେତିକି ଲଘୁତର ହୁଏ
ମୋକ୍ଷପଦ ଗରିଷ୍ଠତା ତେତେ ବୃଦ୍ଧି ପାଏ ।
ଆତ୍ମ ପଦର ପ୍ରକାଶ ନ ହୋଇବା ଯାଏ
ଭୋଗ ଆଶା କଦାଚନ କମିବା ନହୁଏ ।
ମଲ୍ଲୀଫୁଲ ଫୁଟିବକି ମରୁଭୂମି ବାଲି
ବିଷୟା କାହୁ ଛୁଇଁବ ଜ୍ଞାନୀ ହୃଦସ୍ଥଳୀ ।
ଫଳ ଆଶା ରଖି ଜ୍ଞାନୀ ଭୋଗ ନ ବାଞ୍ଛଇ
ଆପେ ଆପେ ତା ବାସନା କେଣେ ଉଡ଼ିଯାଇ ।
ସୂର୍ଯ୍ୟୋଦୟେ ଅନ୍ଧକାର ଦୂର ହେଲା ପରି
ରାମଙ୍କର ଭୋଗ ଲିପ୍ସା ଅସ୍ତ ସେହିପରି ।
ବିଦିତ ବେଦ ଅଧୂନା ହୋଇଛନ୍ତି ରାମ
ସବୁବେଳେ ଇଚ୍ଛା ତାଙ୍କ ଲଭିବେ ବିଶ୍ରାମ ।
ଯାହା କରିବାକୁ ହେବ ତହା ମୁଁ କରିବି
ରାମଙ୍କ ବିଶ୍ରାନ୍ତ ଯାହା ଦ୍ୱାରା କି ସମ୍ଭବି ?
ବଶିଷ୍ଠଙ୍କ ଯୁକତିରେ ରାମ ହେବେ ଶାନ୍ତ
ପୂର୍ବରୁତ ରଘୁକୁଳ ଶ୍ରୀଗୁରୁ ବଶିଷ୍ଠ ।
ଏଥିପୂର୍ବେ ରଘୁବଂଶୀ ଯେତକ ରାଜନ
ବଶିଷ୍ଠୋପଦେଶେ ହୋଇଛନ୍ତି ଜ୍ଞାନବାନ ।
ତ୍ରିକାଳଜ୍ଞ ସର୍ବଜ୍ଞାତା ବଶିଷ୍ଠ ମହର୍ଷି
ଜ୍ଞାନ-ମାର୍ତ୍ତଣ୍ଡ ସ୍ୱରୂପ ସାକ୍ଷୀ ସର୍ବଦର୍ଶୀ ।
ତାଙ୍କରି ଉପଦେଶରେ ଆମ ରାମଚନ୍ଦ୍ର
ଚିତ୍ତଶାନ୍ତି ଭୋଗିବେ ସେ ଲଭି ଆତ୍ମପଦ ।
ଯେତେବେଳେ ତୁମ ଆମ ବିବାଦ ଲାଗିଲା
ମନ୍ଦର ପର୍ବତ ପରେ ବ୍ରହ୍ମା ବିଜେ କଲା ।
ଋଷି ଆଶ୍ରମ ସଙ୍କୁଳ ସେ ଭୂଧରାଧର
ବୃକ୍ଷଲତା ସୁଶୋଭିତ ଯାର କଳେବର ।
ସେହି ଧରାଧର ପରେ କମଳ ଆସନ
ବରଷିଲେ ଯେଉଁ ହିତ ଉପଦେଶମାନ ।
ଅବଶ୍ୟ ତା ତୁମ ମନେଥିବ ଜାଗରିତ
ସଦା ଯା' ମଙ୍ଗଳପ୍ରଦ ଜଗତର ହିତ ।
ସେହି ଉପଦେଶ କର ଶ୍ରୀରାମଙ୍କୁ ଦାନ
ସୁନିର୍ମଳ ଜ୍ଞାନପାତ୍ର ଏକମାତ୍ର ରାମ ।
ଜ୍ଞାନ, ବିଜ୍ଞାନ ଆବର ନିର୍ମଳ ଯୁକତି
ସତପାତ୍ରଠାରେ ଜାଣ ସଦା ଝଟକନ୍ତି ।
ଶୁଦ୍ଧପାତ୍ର ବିନା ଶୋଭା ନ ପାନ୍ତି ସେମାନ
ଗ୍ରହଣରେ ଚନ୍ଦ୍ର ଜ୍ୟୋତି ମଳନି ଯେସନ ।
ମାଙ୍କଡ଼ ହାତରେ ଯେବେ ଦେବ ଶାଳଗ୍ରାମ
ନରଖଇ ନରଖଇ ତାର ଘେନିବ ପରାଣ ।

ଶିଷ୍ୟଭାବ ଅନୁରକ୍ତି ଯା'ଠି ନ ଦେଖିବ
ସେ ମୂର୍ଖଙ୍କୁ ଉପଦେଶ ବିଅର୍ଥ ବୁଝିବ ।
ବୀତରାଗ ଭରିଅଛି, ଶିଷ୍ୟ ଭାବ ନାହିଁ
ଏପରି ଅପାତ୍ରେ ଉପଦେଶ ନ ଯୋଗାଇ ।
ଶିଷ୍ୟଭାବ ପୂରିଅଛି ବୀତରାଗ ନାହିଁ
ଉପଦେଶ ସେ ପାତ୍ରକୁ କେଭେଁ ନଯୋଗାଇ ।
ଉତ୍ତମ ଗୁଣସମ୍ପନ୍ନ ଯାହାକୁ ଦେଖିବ
ଶିଷ୍ୟରୂପେ ଆନନ୍ଦରେ ଗ୍ରହଣ କରିବ ।
ଉପଯୁକ୍ତ ପାତ୍ର ବିନା ଉପଦେଶ ବ୍ୟର୍ଥ
ଖାଲି ବ୍ୟର୍ଥ ନୁହେଁ, ଉପଦେଶ ଅପବିତ୍ର ।
ଗୋରସ ମହା ପବିତ୍ର ଜାଣନ୍ତି ସମସ୍ତେ
ସଙ୍ଗେ ସଙ୍ଗେ ଅପବିତ୍ର ଶ୍ୱାନଚର୍ମ ପାତ୍ରେ ।
ବୈରାଗ୍ୟସମ୍ପନ୍ନ ଯେଉଁ ବ୍ୟକ୍ତି ଦେଖାଯିବ
ଯା' ହୃଦେ ଉଦାରଭାବ ଅଙ୍କୁରିତ ଥିବ ।
ମଣି ସଙ୍ଗେ କାଞ୍ଚନର ଯୋଗ ହେଲାପରି
ତୁମ ଯୋଗ୍ୟ ଶିଷ୍ୟ ସେହି ଆହେ ତପଚାରୀ ।
ତୁମେ ବୀତରାଗ, ଭୟ, କ୍ରୋଧ ବିରହିତ
ପରମ ଶାନ୍ତି ବିରାଜେ ତୁମ ହୃଦଗତ ।
ତେଣୁକରି ତୁମ ଯୋଗ୍ୟ ଉପଯୁକ୍ତ ପାତ୍ର
ଶ୍ରୀରାମଚନ୍ଦ୍ର ଅଟନ୍ତି ଆହେ ମୁନିନାଥ ।
କହନ୍ତି ବାଲ୍ମୀକି ମୁନି ଆହେ ଭରଦ୍ୱାଜ
ବିଶ୍ୱାମିତ୍ରଙ୍କ ବଚନ, ତେଜୋବନ୍ତ ଓଜ ।
ସାଧୁ ସମାଜରୁ ଉଠେ ସାଧୁ ସାଧୁବାଦ
ଗଗନ କମ୍ପାଇ ଦେଲା ତାହାଙ୍କ ନିନାଦ ।
ତେଜୋବନ୍ତ ସାଧୁଗଣ ଦଶରଥ ପାଶେ
ସବୁ ଶୁଣୁଥାନ୍ତି ବସି ମନର ଉଲ୍ଲାସେ ।
ବ୍ରହ୍ମାନନ୍ଦନ ବଶିଷ୍ଠ କହନ୍ତି ଏସନ
ହେ ଗାଧି ତନୟ ତୁମ ଆଦେଶ ଯେମାନ ।
ଅକ୍ଷରେ ଅକ୍ଷରେ ତାହା ମାନିନେଲି ଜାଣ
ନିର୍ବିଘ୍ନରେ ପଦେ ପଦେ କରିବି ସମ୍ପନ୍ନ ।
ଏପରି କେ ସୁସାମର୍ଥ ଅଛି ଏ ଜଗତ
ସନ୍ଥ ବାକ୍ୟ ଲଙ୍ଘିବାକୁ ହୋଇବ ସମର୍ଥ ।
ଯେତେକ ରାଜକୁମାର ଦଶରଥଙ୍କର
ପ୍ରତ୍ୟେକଙ୍କ ହୃଦେ ଯେଉଁ ଅଜ୍ଞାନ ଅନ୍ଧାର ।
ନିବାରିତ କରିବଇଁ ଜ୍ଞାନ-ସୂର୍ଯ୍ୟ ବଳେ
ଯଥା ସୂର୍ଯ୍ୟ ତେଜେ ତମ ହଟିଯାଏ ଦୂରେ ।
ପୂର୍ବେ ବ୍ରହ୍ମା ଯେଉଁ ଉପଦେଶ ଥିଲେ ଦେଇ
ଅବିକଳ ମୋ ହୃଦରେ ଜାଗରିତ ରହି ।
ସେହି ଉପଦେଶମାନ ଦେବହିଁ ରାମଙ୍କୁ
ନିଃସଂଶୟ ହେବେ ରାମ ଲଭିଣ ତାହାକୁ ।
ବାଲ୍ମୀକି କହନ୍ତି ଭରଦ୍ୱାଜ ମୁଖ ଚାହିଁ
ବିଶ୍ୱାମିତ୍ରଙ୍କୁ ବଶିଷ୍ଠ ଏ ବଚନ ଦେଇ ।
ରାମଚନ୍ଦ୍ରଙ୍କ ପିଠିରେ ହାତ ଥାପୁଡ଼ାଇ
ମୋକ୍ଷର ଉପାୟମାନ କହନ୍ତି ବୁଝାଇ ।
**ଇତିଶ୍ରୀ ଯୋଗବାଶିଷ୍ଟେ ଯୁମୁକ୍ଷୁ ପ୍ରକରଣେ**
**ବିଶ୍ୱାମିତ୍ର ଉପଦେଶ ନାମ ଦ୍ୱିତୀୟ ସର୍ଗଃ ।**



## ତୃତୀୟ ସର୍ଗଃ
## ଅସଂଖ୍ୟ ସୃଷ୍ଟି ପ୍ରତିପାଦନ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁରାଣ
ଜୀବର ଯେସନ ହୋଇ ପାରିବ କଲ୍ୟାଣ ।
ଅବିକଳ ତାହା ସବୁ ଅଛି ମୋ ସ୍ମରଣ
ତୁମ ଆଗେ ତାହା ସବୁ କରୁଛି ବର୍ଣ୍ଣନ ।
ଏହା ଶୁଣି ରାମଚନ୍ଦ୍ର କହନ୍ତି ବଚନ
କିଛି ପ୍ରଶ୍ନ କରିବାକୁ ଆସେ ମୋର ମନ ।
ଗୋଟିଏ ସଂଶୟ ଜାତ ହୋଇଛି ମୋ ମନେ
ଦୟାକରି ତାହା ଦୂର କରନ୍ତୁ ଆପଣେ ।
ସଂହିତା ବର୍ଣ୍ଣିତ ଯେତେ ମୋକ୍ଷର ଉପାୟ
ପରେ ବର୍ଣ୍ଣନା କରିବେ ଆହେ ତପୀରାୟ ।
ବିଶ୍ୱାମିତ୍ର କହିଗଲେ ଶୁକ ମହାମୁନି
ବିଦେହ ମୁକତି ଲଭି ହେଲେ ଶ୍ରେଷ୍ଠ ଜ୍ଞାନୀ ।
ସର୍ବଜ୍ଞ ସବୁରି ଗୁରୁ ବ୍ୟାସ ମହାମୁନି
ମହାତ୍ମା ବିଦେହମୁକ୍ତ ନହେଲେ କି ଘେନି ?
ପୁତ୍ର ହୋଇ ଶୁକ ଲଭେ ବିଦେହ ମୁକତି
ପିତା ବ୍ୟାସଦେବ କିମ୍ପା ନପାନ୍ତି ସେ ଗତି ?
ଯଥା * ତ୍ରସରେଣୁ ଉଠେ ସୂର୍ଯ୍ୟ କିରଣରେ
ପୁଣି ଲୀନ ହେଉଥାଏ ପଲକ ମାତ୍ରରେ ।

* ତ୍ରସରେଣୁ- ଛିଦ୍ରାଗତ ସୂର୍ଯ୍ୟ କିରଣରେ ଚଳନଶୀଳ ସୂକ୍ଷ୍ମ ଧୂଳିକଣା ।

କୋଟି କୋଟି ସଂଖ୍ୟା ତାର, ଗଣନା ଅତୀତ
ସେହିପରି ଏବେ ଶୁଣ ଆହେ ରଘୁନାଥ ।
ମହାନ ଆଦିତ୍ୟ ରୂପୀ ପରମାତ୍ମାଙ୍କର
ବ୍ୟକ୍ତ ଚୈତନ୍ୟର ମଧ୍ୟେ ତଥା ନିରନ୍ତର
କୋଟି କୋଟି ତ୍ରସରେଣୁ ବ୍ରହ୍ମାଣ୍ଡ ଆକାରେ
ଉଠି ପୁଣି ଲୀନ ହେଉଛନ୍ତି ସଦାକାଳେ ।
ପରମ ସୂର୍ଯ୍ୟଙ୍କ ସଂବେଦନ ପ୍ରକାଶରେ
ଉପୁଜେ ତ୍ରୈଲୋକୀ-ତ୍ରସରେଣୁ ଅଦ୍ଭୁତରେ ।
ଅନନ୍ତ ସଂଖ୍ୟାରେ ସେହୁ ହୁଅନ୍ତି ଜନମ
ଅନନ୍ତ ସଂଖ୍ୟାରେ ପୁଣି ଲଭନ୍ତି ମରଣ ।
ଅନନ୍ତ ତ୍ରିଲୋକୀ-ବ୍ରହ୍ମ ତାଙ୍କ ଗର୍ଭେ ଥାଇ
ଅସଂଖ୍ୟ ତାହାଙ୍କ ସଂଖ୍ୟା କେହି ନଜାଣଇ ।
କୌତୂହଳ ବଶ ପୁଣି ପୁଚ୍ଛନ୍ତି ଶ୍ରୀରାମ
ବୁଝାଇ କହି ବା ହେଉ ଆହେ ତପୋଧନ ।
ଯାହା ପୂର୍ବେ ସୃଷ୍ଟ ହୋଇଥିଲା ଅତୀତରେ
କିମ୍ବା ଯାହା ପୁଣିସୃଷ୍ଟ ହେବ ଭବିଷ୍ୟରେ ।
ସେମାନଙ୍କ ସଂଖ୍ୟା କେତେ କୁହନ୍ତୁ ବୁଝାଇ
ବର୍ତ୍ତମାନ ଯା' ଘଟୁଛି ଜାଣୁଛି ତ ମୁହିଁ ।
କହନ୍ତି ବଶିଷ୍ଠ ଶୁଣ ଶ୍ରୀରାମ ମୋ ବାଣୀ
ଅନନ୍ତ କୋଟି ତ୍ରିଲୋକ ଜନମି ମଲେଣି ।
କେତେ ହୋଇ ଯାଇଛନ୍ତି କେତେ ବା ହୋଇବେ
କଳି ହେବନାହିଁ କେଉଁ ତାଙ୍କ ସଂଖ୍ୟା ଭବେ ।
ଜୀବଙ୍କ ସଂଖ୍ୟା ସେପରି ଅଟଇ ଅନନ୍ତ
ଜୀବ କରେ ଜୀବ ସୃଷ୍ଟି ଏ ଅଟେ ଅଦ୍ଭୁତ ।
ଜୀବ ଯେତେବେଳେ ସଂସାରରେ ଭ୍ରମୁଥାଏ
ନାନା ବାସନା ତାହାର ହୃଦେ ଜାତ ହୁଏ ।
ଯେଉଁ ଯେଉଁ ଦୃଶ୍ୟ ତାର ଚିତ୍ତ ଆକର୍ଷଇ
ସେମାନଙ୍କ ପ୍ରାପ୍ତି ଅର୍ଥେ ବାସନା ଜନ୍ମାଇ ।
ଯେତେ ବାସନା ଆସଇ ଚେତନାବସ୍ଥାରେ
ଯେତେ ବା ଜନ୍ମ ଲଭନ୍ତି ଅର୍ଦ୍ଧ-ଚେତନାରେ ।
ଅଚେତନରେ ଯେତେକ ଜନମ ଲଭନ୍ତି
ଜୀବଧାରୀ ସେ ସବୁରୁ ମୁକତ ନୁହନ୍ତି ।
ଜୀବ ଯେତେବେଳେ ଦେହ ଛାଡ଼ି ଚାଲିଯାଏ
ସୂକ୍ଷ୍ମ ଶରୀରଟି ତାରେ ପରାପତି ହୁଏ ।
ସେ କାଳେ ବାସନାମାନ ନାଚେ ତା ନେତ୍ରରେ
ଇହଲୋକ ଭୋଗାଭୋଗ ସବୁ ମନେ ପଡ଼େ ।
ଇହଲୋକ କରଣୀରେ ପରଲୋକ ତାର
ନିର୍ଦ୍ଧାରିତ ହୁଏ ଜାଣ କୌଶଲ୍ୟା କୁମର ।
ପଞ୍ଚଭୂତ ଉପାଦାନ ସର୍ବେ ଗୁଣ୍ଡ ହୋଇ
ନିଜ ନିଜ ଆକର୍ଷଣ ଶକତି ଦେଖାଇ ।
ଗତ-ଆତ୍ମା ଆପଣାର ବାସନା ବଳରେ
ନିଜ ସୃଷ୍ଟିକି ନିଜେ ସେ ନିମନ୍ତ୍ରଣ କରେ ।
କିଏ ସେ ମାଙ୍କଡ଼ ହୁଏ କେ ହୁଏ କୁକୁର
କିଏ ସେ ଖାଦକ ହୁଏ, କିଏ ତା ଆହାର ।
ଯେତେବେଳେ ଜୀବ ନିଜ ଘଟ ଛାଡ଼ିଯାଏ
ସେ ଜନ୍ମ-ବାସନା ତାର ସୃଷ୍ଟିକୁ ଭିଆଏ ।
ବାଘ କି ସାପ ସେ ହେଲା କିବା ହେଲା ଗଜ
ସେ ଜୀବର ଭିନ୍ନ ନାମ-ରୂପ ତାହା ହେଜ ।
ସେହି ବାଘ ସେହି ପାପ ସେହି ଗଜ ମଲେ
ପଞ୍ଚଭୂତ ପଦାର୍ଥକୁ ସର୍ବ ଅଙ୍ଗ ଚଳେ ।
ପ୍ରତି ଜୀବମାନଙ୍କର ଗତି ଏହିପରି
ଏହିପରି ବିଲୟ ଯେ ହୁଅଇ ତାଙ୍କରି ।
ଅକଳନ ଯେଣୁ ଅଟେ ଜୀବ ସୃଷ୍ଟିମାନ
ବ୍ରହ୍ମା-ସୃଷ୍ଟି କିଏ କରିପାରିବ କଳନ ?
ଚକାଭଉଁରୀ ଖେଳରେ ଧରା ଭ୍ରମିବାର
ଯେସନ ଭ୍ରମ ଉପୁଜେ ଖେଳାଳୀ ମନର ।
ଡଙ୍ଗାରେ ବସିଲା ବେଳେ ତଟ ବୃକ୍ଷମାନ
ନୟନକୁ ଦେଖାଯାନ୍ତି ଚଳନ୍ତି ଯେସନ ।
ଆକାଶ ନକ୍ଷତ୍ରମାଳା ମୋତି ମାଳାପରି
ନେତ୍ରଦୋଷେ ଦେଖାଯାନ୍ତି ଭ୍ରମରେ ଯେପରି ।
ତେସନ ଜୀବଙ୍କୁ ପ୍ରତେ ଇହ ପରଲୋକ
ଭ୍ରମଦୋଷୁ ଆସିଥାଏ ହେ ରଘୁତିଳକ ।
ବସ୍ତୁତଃ ଜଗତ ରହେ ଅପରିବର୍ତ୍ତିତ
ଏକଇ ଅଦ୍ୱୈତ ବ୍ରହ୍ମ ମାତ୍ର ବିରାଜିତ ।
ଦ୍ୱୈତ-ଭ୍ରମ ଭାସୁଅଛି ଅବିଦ୍ୟା ବଶତଃ
ଅଜ୍ଞାନ ହେତୁ ଜଗତ ହୁଏ ପ୍ରତିଭାତ ।
ନିଜ ଛାଇ ଦେଖି ଶିଶୁ ଭୂତ ମନେକରି
ଭୟଭୀତ ହୋଇ ତାର ଛାତି ଉଠେ ଥରି ।
ଅଜ୍ଞାନ ଜୀବର ନିଜ କଳପନା ମାନ
ଜଗତ ରୂପରେ ତାକୁ ହୁଏ ଭାସମାନ ।
ଏ ସ୍ଥୂଳ ଶରୀରେ ତିନି ଶରୀର ବସନ୍ତି
ସ୍ଥୂଳ, ସୂକ୍ଷ୍ମ, କାରଣ ନାମରେ ତାଙ୍କ ଖ୍ୟାତି ।

ସ୍ଥୁଳ ଦେହ ନାଶେ କିନ୍ତୁ ସେ ଦୁଇ ଶରୀର
ଛାଡ଼ି ନ ପାରନ୍ତି ନିଜ ବାସନା ତାଙ୍କର ।
ଜଗତର ଅନ୍ତର୍ଗତ ସେ ତିନି ଶରୀର
ତାଙ୍କ ଯୋଗୁଁ ଜୀବ ପୁଣି ଧରେ କଳେବର ।
କଦଳୀ ବାସୁଙ୍ଗା ସମ ଏହି ସବୁ ଦେହ
ପରମ ବ୍ରହ୍ମଙ୍କୁ ଘେରିଛନ୍ତି ନିଃସନ୍ଦେହ ।
ପଞ୍ଚମହାଭୂତ ଆଦି ଏ ସାରା ଜଗତ
ଜଗତର କ୍ରମ ସହ ଅଳୀକ ସମସ୍ତ ।
ତଥାପି ଏସବୁ ତତ୍ତ୍ୱେ ଏ ଜୀବର ଭ୍ରମ
ଜାଗ୍ରତ ରହି ଅଛଇ ହେ ରଘୁନନ୍ଦନ ।
ମହା ସମୁଦ୍ରରେ ଯଥା ଜନ୍ମି ଊର୍ମିମାଳା
କ୍ଷଣ ମଧ୍ୟେ ଲୀନ ହୋଇ ପୁଣିକରେ ଖେଳା ।
ପରମାତ୍ମା-ସାଗରରେ ସର୍ଜନା ତରଙ୍ଗ
ଅବିରତ ଜନ୍ମ ପୁଣି ବିଲୀନ ତା ଅଙ୍ଗ ।
ସେ ଊର୍ମି ମଧ୍ୟରୁ କେତେ ମନେ, ଗୁଣେ ସମ
କେତେକ ଅର୍ଦ୍ଧ ସମାନ, କେତେକ ଉତ୍ତମ ।
ଦେଖନ୍ତୁ ଶ୍ରୀରାମ ଏହି ବ୍ୟାସ ମହାମୁନି
ଯା'ଙ୍କ ଗର୍ଭେ ପରିପୂର୍ଣ୍ଣ ସର୍ବ ଶାସ୍ତ୍ର-ଖଣି ।
ଯାହା ମୁଁ ଦେଖି ପାରୁଛି ଦୂରଦୃଷ୍ଟି ଘେନି
ଦ୍ୱାତ୍ରିଂଶ ତରଙ୍ଗ ଏହି ବ୍ୟାସ ମହାମୁନି ।
କୁଳ, ଆଚାର, ଜୀବନ, ଚେଷ୍ଟା, ଆୟୁଷରେ
ସର୍ବତୋଭାବେ ସମାନ ତହୁଁ ବାରଟିରେ ।
ଅନ୍ୟ ଦଶଟି ସମାନ ଜ୍ଞାନ ଆଦି ଘେନି
ବାକି ଦ୍ୱାଦଶଟି ବିଲକ୍ଷଣ କୁଳ ଘେନି ।
ଏହି ଯେ ବ୍ୟାସ, ବାଲ୍ମୀକି ଅଙ୍ଗିରାଦି ମୁନି
ଭବିଷ୍ୟରେ ଜନମିବେ ଅନ୍ୟ ରୂପ ଘେନି ।
ନର, ରାକ୍ଷସ, ଦେବତା ଋଷି ଆଦିକରି
ପୁନଃ ପୁନଃ ଜନମନ୍ତି ନାନା ଦେହଧରି ।
ବିଲୀନ ହୁଅନ୍ତି ପୁଣି ଜନମ ଲଭନ୍ତି
ସଦା ସର୍ବଦା ଚଳିଛି ଜୀବ-ଚକ୍ର ଗତି ।
ଜନ୍ମ ମରଣ ଘଟିଛି, ଘଟୁଛି, ଘଟିବ
ଏ ସତ୍ୟ ନିରାଟ ପୁଣି ଏହି ସତ୍ୟ ଧ୍ରୁବ ।
ଗମନାଗମନ ସମ ଜୀବନ ମରଣ
ସ୍ୱପ୍ନ-ଭ୍ରମପରି ସଦା ଲାଗିଛି ଶ୍ରୀରାମ ।

ବାସ୍ତବରେ କେହି ଜନ୍ମୁନାହିଁ ମରୁନାହିଁ
କେହି ଆସୁନାହିଁ କିମ୍ବା କେହି ଯାଉନାହିଁ ।
ଅଜ୍ଞାନ ହେତୁରୁ ଏହା ହୁଅଇ ପ୍ରତୀତ
ବିଚାରକରି ଦେଖିଲେ ତାହା ନୁହେଁ ସତ ।
ଏହି ବ୍ରହ୍ମକଳ୍ପ-ତ୍ରେତା ଯୁଗ କେତେବାର
ଘଟିଅଛି ଭବିଷ୍ୟରେ ଘଟିବ ଆବର ।
ଯେଉଁ ରାମ ରୂପ ତୁମେ ଏବେ ଧରିଅଛ
ପୂର୍ବେ କେତେବାର ଧରିଥିଲ ରଘୁବତ୍ସ ।
ଭବିଷ୍ୟ କାଳରେ ଏହି ରାମ ଅବତାର
ଇୟତ୍ତା ନାହିଁ ଘଟିବ କେତେ କେତେ ବାର ।
ଏ ବଶିଷ୍ଠ ମୂର୍ତ୍ତି ମୁହିଁ ପୂର୍ବେ କେତେବାର
ଧରିଥିଲି, ପୁଣି ଧରିବଇଁ ରଘୁବୀର ।
ବ୍ୟାସଙ୍କର ଅବତାର ଗୋଟି ଗୋଟି କରି
ଦଶବାର ଦେଖିଛି ହେ ବାଳ ବ୍ରହ୍ମଚାରୀ ।
କେତେ ବାର ବ୍ୟାସଆଦି ମୁନିଙ୍କ ସହିତ
ସମ ସାମୟିକ ଭାବେ ଜନ୍ମିଛି ଏ ମର୍ତ୍ତ୍ୟ ।
କେତେ ବାର ପୃଥକରେ ଜନମ ଲଭିଛି
ଏଠାରେ ତା ରାମ ସବୁ କହି ନ ପାରୁଛି ।
କେତେବେଳେ ଜନମିଛି ସଦୃଶ ରୂପରେ
ବିସଦୃଶ ରୂପେ ପୁଣି ଜନ୍ମିଛି ସଂସାରେ ।
ସମ ଅଭିଳାଷ ଘେନି ଆଉ କେତେବାର
ବିଭିନ୍ନ ରୂପେ ଜନ୍ମିବି ଏହି ମର୍ତ୍ତ୍ୟପୁର ।
କେତେବେଳେ ବିଜ୍ଞରୂପେ ଜନମିଛି ମୁହିଁ
ଅବିଜ୍ଞ ରୂପରେ କେତେବେଳେ ଜନ୍ମିଛଇଁ ।
ଆଠବାର ଜନମିବେ ପୁଣି ବ୍ୟାସମୁନି
ମହାଭାରତ ଲେଖିବେ, ଇତିହାସ ବାଣୀ ।
ବେଦ ବିଭାଗ ପ୍ରଭୃତି ଧର୍ମ୍ମ ଗ୍ରନ୍ଥମାନ
କିପରି ହେବ କୌଳିକ ପ୍ରଥାର ପାଳନ ।
ବ୍ରହ୍ମତ୍ତ୍ୱ * ଖ୍ୟାପନ କରି ଏ ଧରାଧାମରେ
ବିଦେହ ମୁକତି ଲାଭ କରିବେ ସେ କାଳେ ।
ଶୋକ ଭୟ ଆଦି ସର୍ବ କଳ୍ପନା ତେଜିଣ
ମନକୁ ଅଧୀନ କରିଛନ୍ତି ମହାତ୍ମନ ।
ତେଣୁକରି ଜୀବନ୍ମୁକ୍ତ ଅଟନ୍ତି ସେ ମୁନି
ବିଦେହ ମୁକ୍ତି ଲଭନ୍ତି ତାଙ୍କପରି ଜ୍ଞାନୀ ।

* ଖ୍ୟାପନ – ପ୍ରଚାର

ଚିତ୍ତ, ବନ୍ଧୁ, ଚେଷ୍ଟା, କର୍ମ, ବିଦ୍ୟା ଓ ବିଜ୍ଞାନ
କେବେ ସମାନ ରହନ୍ତି କେବେ ଅସମାନ ।
ଜୀବନମୁକତ ପାଇଁ ମଧ୍ୟ ଆୟୁ, କାଳ
ବିଭିନ୍ନ ଜନ୍ମେ ବିଭିନ୍ନ ରହେ ରଘୁବୀର ।
ଜୀବନ୍ମୁକ୍ତ ବୋଲି ଯାଙ୍କୁ କହନ୍ତି ଜ୍ଞାନୀଏ
ଧନ୍ୟ ସେ ଜନ ଯେ ଏହି ଦିବ୍ୟଗତି ପାଏ ।
କେତେବେଳେ ଶତ ଅବତାର ସେ ଧରନ୍ତି
ବହୁ କଳ୍ପ ଧରି କେବେ ଜନ୍ମ ନ ଲଭନ୍ତି ।
ଏହି ଯେ ପ୍ରାଣୀ ପ୍ରବାହ ସର୍ବଦା ଲାଗିଛି
ମାୟା ବ୍ୟତୀତ ତହିଁରେ ନାହିଁ ଆଉ କିଛି ।
ତେଣୁକରି ଏ ପ୍ରବାହ ଅନାଦି ଅନନ୍ତ
ଚାଲୁଅଛି ଚାଲୁଥିବ ନୋହିବ ତା ଅନ୍ତ ।
ବାରମ୍ବାର ଜନମଇ ଜୀବ ଏ ସଂସାର
ଏହି ଲୀଳା, ଏହି ଖେଳା ସେ ମାୟା ସ୍ରୋତର ।
ତତ୍ତ୍ୱଜ୍ଞାନୀମାନେ ସର୍ବ କଳ୍ପନା ତେଜିଣ
ପରମ ଶାନ୍ତି ଲଭନ୍ତି, ବିନା ଆବରଣ ।
ଆତ୍ମସତ୍ତା ଜାଗରିତ ଯା'ର ହୃଦଗତେ
ଦ୍ୱୈତଭାବ-ଭ୍ରମେ ନ ପଡ଼େ ସେ କଦାଚିତେ ।
ବ୍ୟାସଦେବ ଆତ୍ମଦର୍ଶୀ ସଦା ଶାନ୍ତ ଆତ୍ମା
ଇଚ୍ଛା ରହିତ ଅଟନ୍ତି ସେ ବ୍ୟାସ ମହାତ୍ମା ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ଅସଂଖ୍ୟ ସୃଷ୍ଟି ପ୍ରତିପାଦନେ**
**ନାମ ତୃତୀୟ ସର୍ଗଃ ।**



## ଚତୁର୍ଥ ସର୍ଗଃ
## ପୁରୁଷାର୍ଥ-ଉପକ୍ରମ

କହନ୍ତି ବଶିଷ୍ଠ ପୁଣି ହେ ରଘୁନନ୍ଦନ
ପୁରୁଷାର୍ଥ କ୍ରମ ଏବେ ଶୁଣ ଦେଇ ମନ ।
ଜୀବନ ମୁକତି ପୁଣି ବିଦେହ ମୁକତି
ଭାବନାରେ ଭିନ୍ନ, ଗୁଣେ ଅଭିନ୍ନ ଅଟନ୍ତି ।
ଜୀବନ-ମୁକତ କିମ୍ବା ବିଦେହ ମୁକତି
ଭାବନାରେ ଭିନ୍ନ, ଗୁଣେ ଅଭିନ୍ନ ଅଟନ୍ତି ।
ଜୀବନ-ମୁକତ କିମ୍ବା ବିଦେହ ମୁକତ
ନୁହନ୍ତି ପ୍ରତ୍ୟକ୍ଷ, ତୁମ୍ଭ ଅନୁଭବଗତ ।
ଯତ୍ କିଞ୍ଚିତ ଭେଦ ତହିଁ ଅଛଇ ନିହିତ
ଅସମ୍ୟକଦର୍ଶୀଙ୍କୁ ତା' ହୁଏ ଉପଗତ ।
ଅଜ୍ଞାନୀ ଜନ ଦୃଷ୍ଟିରେ ଏହି ଭେଦ ସିନା
ସୁଜ୍ଞାନୀ ଜନ ଏ ମତ ନ କରନ୍ତି ଘେନା ।
ଥାଉ ବା ନ ଥାଉ ଅବସ୍ଥାନ ଏ ଦେହର
ମୁକତି ସହ ସମ୍ପର୍କ କିଛି ନାହିଁ ତାର ।
ବନ୍ଧନ, ମୁକତି ମଧ୍ୟେ ଯେ ସମ୍ପର୍କ ଥାଇ
ବିଷୟ ବାସନା ତାହା ନିର୍ଣ୍ଣୟ କରଇ ।
ଭୋଗ ଆସ୍ୱାଦନ କରିନାହିଁ ଯେହୁ ଜନ
ଭୋଗ୍ୟଜ୍ଞାନ କେହ୍ନେ ତାକୁ କରିବ ବନ୍ଧନ ?
ଆତ୍ମା ଅଟଇ ଅସଙ୍ଗ ପୁଣି ଉଦାସୀନ
ଜାଣି ଶୁଣି ଜୀବ ହୁଡୁଥାଏ ଅନୁକ୍ଷଣ ।
ଭୋଗାଭିମାନେ ଜଡ଼ିତ ସଦା ଜୀବ ମତି
ନ ଛାଡ଼ିଲେ ତାକୁ, ନ ମିଳଇ ମୋକ୍ଷ ଗତି ।
ଏହି ଯେଉଁ ବ୍ୟାସ ବସିଛନ୍ତି ସମକ୍ଷରେ
ଜୀବନମୁକ୍ତ ଅଟନ୍ତି ସେହୁ ପ୍ରତ୍ୟକ୍ଷରେ ।
ଏ ବିଷୟେ ସନ୍ଦିହାନ ହୋଇ ଆମ୍ଭେମାନେ
ବିଶ୍ୱାସ ନ କରୁ ଜୀବନ୍ମୁକ୍ତ ମହାତ୍ମନେ ।
ନିର୍ବିଘ୍ନରେ ଭେଦଶୂନ୍ୟ ତାଙ୍କ ହୃଦଦେଶ
ଦେହ ଅଭିମାନ ଚିହ୍ନ ତହିଁ ଅପ୍ରକାଶ ।
ବାହାରେ ବିଷୟୀ କିନ୍ତୁ ଭିତରେ ବିଦେହୀ
ସୁବିଶାଳ ସୁମହତ ବିଜ୍ଞ ନିଃସନ୍ଦେହୀ ।
ଅଜ୍ଞାନ ବିନାଶ କରି ଜ୍ଞାନ ପାଏ ଶୋଭା
ବୋଧରୂପୀ ଏହି ବ୍ୟାସ ପ୍ରକାଶନ୍ତି ଆଭା ।
ବୋଧଜ୍ଞାନ ଉପୁଜିଛି ଯାହାର ଅନ୍ତରେ
ଭେଦ-ଜ୍ଞାନ ତା ଅନ୍ତରେ ସମ୍ଭବି କି ପାରେ ?
ଦେହ ଥିବା ନ ଥିବାରେ ଯାଏ ଆସେ ନାହିଁ
ବୋଧଜ୍ଞାନଟି କେବଳ ପ୍ରଭେଦ ରଚଇ ।
ଜଳ ତରଙ୍ଗ ମଧ୍ୟରେ ଯଥା ଭେଦ ନାହିଁ
ଦେହ ଅଦେହ ପ୍ରଭେଦ ମୋକ୍ଷରେ ଘୁଞ୍ଚଇ ।
ମୋକ୍ଷ ବୋଲିକରି ଯାହା ଜ୍ଞାନୀଏ ବୋଲନ୍ତି
ଏକ, ଅଦ୍ୱୟ ଅଟେ ତା ଦ୍ୱିତୀୟ ତା' ନାସ୍ତି ।
ଦେହଛାଡ଼ି ଆତ୍ମା ଯେବେ ବ୍ରହ୍ମେ ଲୀନ ହୁଏ
ମୋକ୍ଷପଦ ପ୍ରାପ୍ତ ହେଲାବୋଲି ବୁଝାଯାଏ ।
ଦେହଭାବ ଭୁଲି ଯେହୁ ବ୍ରହ୍ମେ ଲୀନ ହୁଏ
ତା ଆତ୍ମା ମୋକ୍ଷ ପାଇଲା ବୋଲି କୁହାଯାଏ ।

ଜୀବନ ମୁକତି ପୁଣି ବିଦେହ ମୁକତି
ଅଣୁମାତ୍ର ଭେଦ ତହିଁ ନାହିଁ ରଘୁପତି ।
ପବନ ବହୁ ଅଥବା ସ୍ଥିର ରହି ଥାଉ
ଉଭୟ ଅବସ୍ଥାରେ ସେ ବୋଲାଯାଏ ବାୟୁ ।
ଜ୍ଞାନୀ ମତେ ଜୀବନ୍ମୁକ୍ତି, ବିଦେହ ମୁକତି
ଏକ, ଅଭିନ୍ନ ଅଟନ୍ତି, ଅନ୍ୟ ମତ ନାସ୍ତି ।
ଅଦ୍ୱୈତବାଦ ତାଙ୍କର ଜୀବନ ଆଦର୍ଶ
ଇଚ୍ଛାକୁ ବଳି ଦେବାକୁ ସଦା ତା ପ୍ରୟାସ ।
ଯେବେ ଉପଲବ୍ଧି କରେ ଶରୀର ଅଛଇ
ଜୀବନ ମୁକତ ବୋଲି ସେ ଜୀବ ବୋଲାଇ ।
ଯେବେ ସେ ବିଶ୍ୱାସ କରେ ଦେହ ନାହିଁ ତାର
ବିଦେହ ମୁକତ ବୋଲି ବୋଲାଏ ସେ ନର ।
ପରମାର୍ଥ ଦୃଷ୍ଟିରୁ ଯା ମୁକତି ବୋଲାଏ
ସଦେହ, ଅଦେହ ଭାବ ତହିଁରେ ନଥାଏ ।
'ଭେଦ ବିବର୍ଜିତ ଏକୀଭାବ ହିଁ ମୁମତି ।'
'ମୁହିଁ ବଶିଷ୍ଠ, ଏ ବ୍ୟାସ' ଲାଭ କରଛନ୍ତି ।
ଶ୍ରବଣ ମଧୁର ଯେଉଁ ବାସ୍ତବ ପ୍ରସଙ୍ଗ
ହେ ରାମ ଆମୂଳଚୂଳ ଶୁଣିବାକ ଆଗ ।
ଯାହା କିଛି ସିଦ୍ଧିଲାଭ କରିଥାଏ ଦେହୀ
ସେ ସମସ୍ତ ନିଜ ପୁରୁଷାର୍ଥଟି ବୋଲାଇ ।
ବିନା ପ୍ରଯତ୍ନରେ ସିଦ୍ଧିଲାଭ ଅସମ୍ଭବ
ନିଜ ଭାଗ୍ୟ ନିଜ ହସ୍ତେ ଗଢ଼ିବ ମାନବ ।
କେହି କେହି ଦୈବ ପରେ କରନ୍ତି ଆଶ୍ରୟ
ଦୈବ ଯାହା କରିବ ତା ମଣନ୍ତି ନିଶ୍ଚୟ ।
ଏପରି ବିଶ୍ୱାସ ଘୋର ମୂର୍ଖତାର ଚିହ୍ନ
ବିନା ଚେଷ୍ଟାରେ କୌଣସି କାର୍ଯ୍ୟ ନୋହି ଜାଣ
ସ୍ନିଗ୍ଧ ଉଲ୍ଲାସଦାୟକ ଚନ୍ଦ୍ରମା ଆଲୋକ
ନୁହଇ କି ତାହା ପୁରୁଷାର୍ଥର ଝଲକ ?
ଯେ ପଦାର୍ଥ ପାଇଁ ଆଶା ପୋଷଣ କରିବ
ବାରମ୍ବାର ଉଦ୍ୟମରେ ନିଶ୍ଚେଷ୍ଟ ନୋହିବ ।
ଅବଶ୍ୟ ସେ ଚେଷ୍ଟାଗୋଟି ହେବ ଫଳବତୀ
ଧ୍ରୁବ ସତ୍ୟ ବୋଲି ଏହା ଜାଣ ରଘୁପତି ।
କାୟ ମନୋବାକ୍ୟେ ନୀତି ବାକ୍ୟ ଅନୁସରି
ସତ୍‌କାର୍ଯ୍ୟ ସାଧନେ ବ୍ରତୀ ହୁଅ ତପଧାରୀ ।
ତାକୁ ହିଁ ପୁରୁଷକାର କହିଛନ୍ତି ଆର୍ଯ୍ୟ
ନୁହଇ ପୁରୁଷକାର ଅନ୍ୟ ଯେତେ କାର୍ଯ୍ୟ ।
ସଜ୍ଜନ ଉପଦେଶ ସତ୍‌ଶାସ୍ତ୍ର ବାଣୀ
ମାନି, ମନକୁ ଗଢ଼ିବା ପୁରୁଷାର୍ଥ ଜାଣି ।
ତା ଛଡା ଯାବତ ଚେଷ୍ଟା, ଉଭଟ ଅଟଇ
ପୁରୁଷକାର ତା ନୁହେଁ, ଶାସ୍ତ୍ର ଅଛି କହି ।
ସତ୍‌ଚେଷ୍ଟ, ସଦୁଦ୍ଦେଶ୍ୟ ଅବଶ୍ୟ ଫଳିବ
ନିହିତ ଦେଇ ଯେବେ କି କାର୍ଯ୍ୟ କରୁଥିବ ।
ଏହି ଜୀବ ଇନ୍ଦ୍ର ହୁଏ ପୁରୁଷାର୍ଥ ବଳେ
ଋକ୍ଷୁସ ପ୍ରମାଣ ବିଶ୍ୱାମିତ୍ର ମୁନିବରେ ।
ଏହି ଜୀବ ବ୍ରହ୍ମା ହୁଏ ପୁରୁଷାର୍ଥ ବଳେ
ପୁରୁଷାର୍ଥ ବଳେ ତାକୁ ଶିବପଦ ମିଳେ ।
ଅର୍ଦ୍ଧାଙ୍ଗେ ପାର୍ବତୀ ଧରେ, ମସ୍ତକେ ଚନ୍ଦ୍ରମା
କିଏ ବର୍ଣ୍ଣିପାରେ ନୀଳକଣ୍ଠର ସୁଷମା ?
ଚିତ୍ତ ନିରାମୟ, ଶାନ୍ତି ମାନସ ପଟରେ
ଅଲୌକିକ ଏ ଅବସ୍ଥା କବି ବଚନରେ ।
ଆତ୍ମତତ୍ତ୍ୱରେ ଜାଗ୍ରତ ଯେଉଁ ଚଇତନ୍ୟ
ସାମ୍ୟଭାବ ପରକାଶେ, ଅଚିନ୍ତ୍ୟ, ଅଗମ୍ୟ ।
ସ୍ୱୀୟ ପୁରୁଷାର୍ଥବଳେ ବ୍ରହ୍ମପଦ ପାଇ
ନିରାଲମ୍ବ, ନିରାମୟ ଭାବେ ବିଚରଇ ।
ପୁରୁଷାର୍ଥ ବଳେ ସିନା ଏ ବିଭବ ପ୍ରାପ୍ତି
ଆଉ ବା କିସ କହିବି ଆହେ ରଘୁପତି ।
ଆତ୍ମତତ୍ତ୍ୱ ମଧ୍ୟେ ଯେଉଁ ଚୈତନ୍ୟ ସଂବିତ
ସଂବେଦନ ରୂପ ଧରି ହୁଅଇ ସ୍ଫୁରିତ
ସ୍ପନ୍ଦରୂପେ ପ୍ରକାଶିତ ଚିତ୍ତ ସଂବେଦନ
ପୁରୁଷାର୍ଥ ଗୁଣେ ସବୁ କରେ ସମ୍ପାଦନ ।
ଏହି ଚିତ୍ତ ସଂବେଦନ ପୁରୁଷାର୍ଥ ବଳେ
ଗରୁଡ଼ ଆରୁଢ଼ ହୋଇ ସର୍ବତ୍ର ବିଚରେ ।
ଚୂର୍ଣ୍ଣୀଭୂତ କରିପାରେ ସୁମେରୁ ପର୍ବତ
ହେତୁ ରଖ ସବୁ ପୁରୁଷାର୍ଥର ସାମର୍ଥ୍ୟ ।
ପୂର୍ବ ଜନ୍ମ ଅରଜିତ ଦୁଷ୍କୃତି ଯେ ମାନ
ଇହ ଜନ୍ମ ସୁକୃତିରେ ସୁଧୁରନ୍ତି ଜାଣ ।
ଲେଡ଼ିରେ ଚରଣାମୃତ ନେଇ ପାଇବାକୁ
ଅସମର୍ଥ ଯେଉଁ ନର ଶୁଣ ତା କଥାକୁ ।
ସେ ଦୁର୍ବଳ ଜନ ଆଚରିଲେ ପୁରୁଷାର୍ଥ
ଖଣ୍ଡ ଖଣ୍ଡ କରିପାରେ ପୃଥିବୀ ସମସ୍ତ ।
ଶୁଣ ରାମଚନ୍ଦ୍ର ପୁରୁଷାର୍ଥ ଦ୍ୱି' ପ୍ରକାର
'ପ୍ରାକ୍ତନ' ଏକ ବୋଲାଇ 'ଐହିକ' ଆବର ।

ଐହିକ ଯେ ପ୍ରାକ୍ତନକୁ କରେ ଅଭିଭୂତ
ଐହିକ ପ୍ରବଳ ହେଲେ ହୁଏ ତା ସାଧିତ ।
ଉତ୍ସାହୀ ଯତନଶୀଳ ଦୃଢ଼ାଭ୍ୟାସ ବଳେ
ଅସାଧ ସାଧନ କରିପାରେ ଧରାତଳେ ।
ଶ୍ୱେତ, ପୀତ, ରକ୍ତ ଆଦି ବର୍ଣ୍ଣ ପ୍ରକାଶର
ଆଲୋକ କାରଣ ଯଥା ଆହେ ରଘୁବୀର ।
ଶାସ୍ତ୍ରାନୁଧାୟି ବ୍ୟକ୍ତିଙ୍କ ଉଦ୍ଦେଶ୍ୟ ସିଦ୍ଧିର
'ପ୍ରବୃତ୍ତି' ହିଁ ତା କାରଣ ତଥା ରଘୁବୀର ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ପୁରୁଷାର୍ଥ ଉପକ୍ରମ ବର୍ଣ୍ଣନେ**
**ନାମ ଚତୁର୍ଥ ସର୍ଗଃ**



## ପଞ୍ଚମ ସର୍ଗଃ
## ପୁରୁଷାର୍ଥ ନିରୂପଣ

ମନ ମଧ୍ୟେ ଯାହା ବାଞ୍ଛା କରୁଥାଏ ନର
ତାହା ଯେବେ ନ କରଇ ଶାସ୍ତ୍ର ଅନୁସାର ।
ଶାସ୍ତ୍ର ନିନ୍ଦିତ କରମ ସବୁ ପଣ୍ଡ କରେ
ତେଣୁ ପୁରୁଷାର୍ଥ ତାର ନ ଫଳଇ ହେଲେ ।
ଆଶା ନ ଫଳିବା ହେତୁ ଦୁଃଖ ଆସେ ମାଡ଼ି
ନୀରବରେ ଘାରି ହୁଏ ମନ ଯାଏ ପୋଡ଼ି ।
ଶାସ୍ତ୍ରୀୟ, ଅଶାସ୍ତ୍ରୀୟ ଏ ଦୁଇ ନାମ ଦେଇ
ପୌରୁଷକୁ ପ୍ରକାଶନ୍ତି ସର୍ବ ତପୀସାଇଁ ।
ଶାସ୍ତ୍ର ତେଜି ଯେହୁ ନିଜ ଇଚ୍ଛାରେ ଚଳଇ
ସିଦ୍ଧିଲାଭ ତା ପକ୍ଷରେ ସମ୍ଭବ ନୁହଇ ।
ଶାସ୍ତ୍ର ଅନୁସାରେ ପୁରୁଷାର୍ଥ ଯେ ଆଚରେ
ଅସମ୍ଭବ ନୁହେଁ ତାର ସିଦ୍ଧି ଲଭିବାରେ ।
ସେ ପୁରୁଷ କେଉଁ ହେଲେ ଦୁଃଖ ନ ଭୋଗଇ
ସିଦ୍ଧି ତାର ପଛେ ପଛେ ସଦା ଧାଇଁଥାଇ ।
ଅନୁଭବରୁ ସ୍ମରଣ ଜନମ ହୁଅଇ
ସ୍ମରଣରୁ ଅନୁଭବ ଆବର ଜନ୍ମଇ ।
ପ୍ରାକ୍ତନ ଐହିକ ମଧ୍ୟେ ସର୍ବଦା ସଂଘର୍ଷ
ଲାଗି ରହିଛି କହନ୍ତି ତତ୍ତ୍ୱଜ୍ଞ ପୁରୁଷ ।
ଦୁଇ ଛେଳି ମଧ୍ୟେ ଯୁଦ୍ଧ ଲାଗିଥିଲା ପରି
ବଳିଷ୍ଠ ଜୟୀ, ଦୁର୍ବଳ ପରାଜୟେ ଜଳି ।
ଯତ୍ନ ସହ ଆଳସ୍ୟକୁ ତେଜିବ ମାନବ
ଶାସ୍ତ୍ରୋକ୍ତ ପୁରୁଷାର୍ଥକୁ ଆଚରୁଣ ଥିବ ।
ସଦ୍‌ଗୁରୁ ସେବା ଆବର ସଦ୍‌ଗୁଣାଚରଣ
ସାଧୁସହ ବାସ ପୁଣି ସତ୍‌ଶାସ୍ତ୍ର ପଠନ ।
ବାଲ୍ୟକାଲୁ ନିୟମିତ ରୂପେ ଆଚରିଲେ
ଅଭିଷ୍ଟ ସାଧନ ନର କରିପାରେ ଭଲେ ।
ଅଜ୍ଞାନୀ ଜନେ ଯାହାକୁ ଦଇବ କହନ୍ତି
ଚିତ୍ତଭ୍ରମ ବୋଲି ତାକୁ ବିବୁଧେ ବୋଲନ୍ତି ।
ମୂଢ଼ଜନେ ଭାଗ୍ୟ ପରେ ନିର୍ଭର କରନ୍ତି
ବଳିଷ୍ଠେ କରଣୀ ଦ୍ୱାରା ଭାଗ୍ୟକୁ ଗଢ଼ନ୍ତି ।
ପୂର୍ବ ସଂସ୍କାର ଯାହାର ଯେତିକି ବଳିଷ୍ଠ
ତେତିକି ବଳବତ୍ତର ତାହାର ଅଭିଷ୍ଟ ।
ଐହିକ ପୌରୁଷ ଯେତେ ବଳିଷ୍ଠ ହୋଇବ
ପ୍ରାକ୍ତନକୁ ତେତେ ଶୀଘ୍ର ପରାସ୍ତ କରିବ ।
କୌଣସି ପିତାର ଯେବେ ଥାନ୍ତି ଦୁଇପୁତ୍ର
ଦୁହିଁଙ୍କ ମଧ୍ୟରେ ଯେବେ ହୁଏ ଦ୍ୱନ୍ଦ୍ୱ ଜାତ ।
ଯେହୁ ବଳବାନ ସେହୁ ଲଭଇ ବିଜୟ
ଅପର ନୀରବ ରହେ ପାଇ ପରାଜୟ ।
ସେହିପରି ପୁରୁଷାର୍ଥ, ଐହିକ, ପ୍ରାକ୍ତନ
ଉଭୟଙ୍କ ମଧ୍ୟେ ସଦା ଲାଗେ ସଂଘର୍ଷଣ ।
ଯଦ୍ୟପି, ଏକ ଅନ୍ୟଠୁଁ ହୁଏ ପରାଜିତ
ପୁରୁଷାର୍ଥ ଉଭୟଙ୍କ ମଧ୍ୟରେ ନିହତ ।
ସତ୍‌ସଙ୍ଗ, ସତଶାସ୍ତ୍ର ଅଧ୍ୟୟନ ବଳେ
ପକ୍ଷୀପରି ଯଦି ଭବ ବୃକ୍ଷ ଆଡ଼େ ଉଡ଼େ ।
ପୂର୍ବ ସଂସ୍କାର କାରଣୁ ସ୍ଥିର ସେ ନ ରହି
ଅନୁକ୍ଷଣ ଉଚ୍ଚସ୍ତର କଥା ଚିନ୍ତୁ ଥାଇ ।
ତେଣୁ ଜୀବ କେଉଁ ନ ତେଜିବ ପୁରୁଷାର୍ଥ
ଏ ଆଦର୍ଶ, ଜୀବନକୁ କରିବ କୃତାର୍ଥ ।
ପୂର୍ବ ସଂସ୍କାର କେବେହେଁ ଅଯଥା ନ ହୁଏ
ଅଧିକନ୍ତୁ ସେ ସଂସ୍କାର ବଳଶାଳୀ ହୁଏ ।
ଅଧିକୁ ଅଧିକତର 'ସତ୍‌ସଙ୍ଗ, ସତ୍‌ଶାସ୍ତ୍ର
ଦୃଢ଼ାଭ୍ୟାସେ ବଢ଼ି ଟପେ ପୂର୍ବ ପୁରୁଷାର୍ଥ ।
ପୂର୍ବରୁ ଅର୍ଜିତ ଯାହା କିଛି ହିଁ ଦୁଷ୍କୃତ
ଖଣ୍ଡିତ କରିବ ତାକୁ ଏବର ସୁକୃତ ।
କେବଳ ପୌରୁଷଦ୍ୱାରା ଏ ସବୁ ସମ୍ଭବ
ପଦେ ପଦେ ଏହି କଥା ମନେ ହେଉଥିବ ।
ହେଜରଖ ପୁରୁଷାର୍ଥ କିପରି ପଦାର୍ଥ
ତା ବଳେ ଜୀବର କେଉଁ ସିଦ୍ଧି ପରାପତ ।

ସନ୍ଥ ଜନମାନଙ୍କର ଜ୍ଞାନ ଉପଦେଶ
ବ୍ରହ୍ମ ବିଦ୍ୟା ଯାହା ସାର ସର୍ବ ସତଶାସ୍ତ୍ର ।
ଅନୁସରି ଯେଉଁ କାର୍ଯ୍ୟ କରାଯାଉଥାଏ
ପୁରୁଷାର୍ଥ ବୋଲି ତାକୁ କହନ୍ତି ଜ୍ଞାନୀଏ ।
ପୁରୁଷାର୍ଥ ବଳେ ଜୀବ ଚିହ୍ନିପାରେ ଆତ୍ମା
ସଂସାର ସାଗର ଟପି ଲଭେ ପରମାତ୍ମା ।
ପୁରୁଷାର୍ଥ ବଳେ ଜୀବ ସିଦ୍ଧି ହୁଏ ଜାଣ
ଦୈବ କରଣୀର ତହିଁ ନାହିଁ ଚିହ୍ନବର୍ଣ୍ଣ ।
ଶାସ୍ତ୍ରୀୟ ପୁରୁଷାର୍ଥକୁ କରି ବିସ୍ମରଣ
ଯେଉଁ ଜନ କହୁଥାଏ ଏସନ ବଚନ ।
'ଯାହା କିଛି ଘଟିଅଛି ଏ ମର ସଂସାରେ
ଦୈବ କରେ, ପୁରୁଷାର୍ଥ କିଛି ହିଁ ନ କରେ ।'
ଏପରି ଯେ କହେ ସେହୁ ଗଧ ସଙ୍ଗେ ସରି
ଦୁଃଖାନଳେ ଦଗ୍ଧ ହେବ ତା ସଙ୍ଗ ଯେ ଧରି ।
ପୁଣି ବଶିଷ୍ଠ କହନ୍ତି ଶୁଣ ହେ ରାଘବ
ବର୍ଣ୍ଣାଶ୍ରମ ଧରମଟି ସଦା ପାଳୁଥିବ ।
ଅଶୁଭ ଗୁଣମାନଙ୍କୁ ପରିତ୍ୟାଗ କରି
ଶୁଭ ଗୁଣଙ୍କୁ ସର୍ବଦା ଥିବଟି ଆଚରି ।
ସନ୍ଥ ସଙ୍ଗ ସଦା ସରବଦା କରୁଥିବ
ସତ ଶାସ୍ତ୍ରମାନ ସଦା ଅଭ୍ୟାସ କରିବ ।
ସେ କଷଟିରେ ସୁଗୁଣ ଅବଗୁଣ ମାନ
ତୁଳି କରି ବୁଝିଥିବ ତହିଁର ଓଜନ ।
ଦିବା ରାତ୍ର ମଧ୍ୟେ ଯାହା ଶୁଭ ବା ଅଶୁଭ
ଧୀର ଚିତ୍ତେ ତାହା ସବୁ ନିର୍ଣ୍ଣୟ କରିବ ।
ସାକ୍ଷୀରଖି ଆପଣାକୁ ସଦା ସଜାଡ଼ିବ
ଯେସନ ସନ୍ତୋଷ, ଧୈର୍ଯ୍ୟ ବଢ଼ି ଚାଲୁଥିବ ।
ବିରାଗ, ବିଚାର ପୁଣି ଅଭ୍ୟାସ ଏମାନ
ଶୁକ୍ଳପକ୍ଷ ଚନ୍ଦ୍ରପରି ବଢ଼ଇ ଯେସନ ।
ଯଥାଶକ୍ତି ଦୋଷ ତଥା କରିବ ବର୍ଜନ
ତେବେ ବୁଝିବ ଗଢୁଛ ଆଦର୍ଶ ଜୀବନ ।
ଏପରି ପୁରୁଷାର୍ଥକୁ ଯେବେ ବରଗିବ
ଆତ୍ମତତ୍ତ୍ୱ, ପରଂପଦ ତେବେ ପ୍ରାପ୍ତ ହେବ ।
ଏବେ ଶୁଣ ରାମଚନ୍ଦ୍ର ବନମୃଗ ଯଥା
ଘାସ ପତ୍ର ଖାଇ ମୋଦେ ବଞ୍ଚଇ ସର୍ବଥା ।
ରସାଳ ତୃଣାଦି ପତ୍ର ତା ନୟନ ହରେ
ଅତୁଳ ବିଭବ ଭୋଗ କଲାପରି ଚରେ ।

ତେସନ ଗୃହସ୍ଥ ଧର୍ମେ ନିମଗ୍ନ ହୋଇବ
ବନ୍ଧୁ ବାନ୍ଧବ ସହିତ ସୁଖେ ବିଳସିବ ।
କିନ୍ତୁ ସୂକ୍ଷ୍ମବୁଦ୍ଧି ନର ଏମନ୍ତ କରିବ
ପଦ୍ମପତ୍ରେ ଜଳପରି ସଂସାରେ ଚଳିବ ।
ମନ ସଂଯମରେ ପୁଣି ବିରକ୍ତି ଆଚରି
ଦାନ୍ତରେ ଦାନ୍ତ ଚେପାଇ କଷ୍ଟ ସହ୍ୟକରି ।
ଭବ ଜଳଧିରୁ କେହ୍ନେ ଉଧୁରି ପାରିବ
ସେଥିପାଇଁ ଯଥାସାଧ୍ୟ ପ୍ରଯତ୍ନ କରିବ ।
ବଳ ଖଟାଇ କେଶରୀ ଯନ୍ତା ଭାଙ୍ଗି ଦେଇ
ସ୍ୱଚ୍ଛନ୍ଦରେ ବନେ ଯଥା ଆନନ୍ଦେ ବୁଲଇ ।
ତଥା ମନ ଟାଣ କରି ସଂସାର ବନ୍ଧନ
ତ୍ୟାଗ କରିବାଟି ପୁରୁଷାର୍ଥ ବୋଲି ଜାଣ ।
ଯଦି କେହି ସିଦ୍ଧି ଲାଭ କରିଛି ସଂସାରେ
ତାହା ସେ ଲଭିଛି ସେହି ପୁରୁଷାର୍ଥ ବଳେ ।
ସନ୍ଥ ଜନ ସତ୍‌ଶାସ୍ତ୍ରମାନଙ୍କ କଥନ
ଯୁକ୍ତି ଯୁକ୍ତ ଯତ୍ନ ସହ ଆଚରଣ ଜନ ।
ଆତ୍ମପଦ ପରାପତ ଯେବେ ହୋଇପାରେ
ପୁରୁଷାର୍ଥ ତାହା ଜାଣ ଜ୍ଞାନୀଙ୍କ ମତରେ ।
ବିନା ପ୍ରକାଶରେ ବସ୍ତୁ ଯଥା ଚିହ୍ନିନୋହି
ପୁରୁଷାର୍ଥ ବିନା ଆତ୍ମପଦ ନ ମିଳଇ ।
ପୁରୁଷାର୍ଥ ଛାଡ଼ି ଯେହୁ ଦୈବେ ଆଶ୍ରା କରେ
କେବେହେଲେ ସିଦ୍ଧିଲାଭ ତାର ନୋହି ପାରେ ।
ପଥର ଚିପୁଡିଲେ କି ତେଲ ବାହାରିବ ?
ଦଇବ କଲ୍ୟାଣ ଦେବା, ତଥା ଅସମ୍ଭବ ।
ତେଣୁକରି ହେ ଶ୍ରୀରାମ ଦୈବ ଆଶା ଛାଡ଼
ପୁରୁଷାର୍ଥ ପରେ ସଦା କର ହେ ନିର୍ଭର ।
ପୁରୁଷାର୍ଥ ଛାଡ଼ ଯେହୁ ଦୈବ ଆଶ୍ରାକରେ
ଲକ୍ଷ୍ମୀ ଛଡ଼ା ହୋଇ ସେହୁ ବୁଲଇ ସଂସାରେ ।
ଅଦୃଷ୍ଟରେ ଯାହାଅଛି ତାହାହିଁ ହୋଇବ
ଏ ଧାରଣା ଧରି ଚଳୁଥାଏ ଯେ ମାନବ ।
ନିଜ ବାହୁ ଦେଖି ଯା'ର ହୁଏ ସର୍ପ ଭ୍ରମ
ସେ ପୁରୁଷ ସେହିପରି ଜାଣ ହେ ଶ୍ରୀରାମ ।
ଅନୁସରି ସତ୍‌ସଙ୍ଗ ସତ୍ ଶାସ୍ତ୍ରମାନ
ଦୂର କରିଦିଅ ବୁଦ୍ଧି ମଳିନତା ମାନ ।
ଅନୁସରି ଶାସ୍ତ୍ରାଚାର କୁଳାଚାର ମାନ
ଆଦର୍ଶ ଜୀବନ ଯେହୁ କରଇ ଯାପନ ।

ଇହର୍ଲୋକେ ପରଲୋକେ ସୁଖ ସିଦ୍ଧିଲାଭ
କରି ଧନ୍ୟ ଧନ୍ୟ ହେଉଥାଏ ସେହି ଜୀବ ।
ଶାସ୍ତ୍ରାଚାର ପରିହରି, ସ୍ୱେଚ୍ଛାଚାର ମତେ
କର୍ମ ମାର୍ଗ ଆଚରିଣ ଚଲଇ ସେ ନିତ୍ୟେ ।
ସେହି କୁଳାଙ୍ଗାର ପାଇଁ ସୁଖ, ସିଦ୍ଧିଭୋଗ
ଦିବସ ସପନ ସମ ଜାଣ ହେ ରାଘବ ।
ତେଣୁ ସର୍ବଦା ସତର୍କ ଥିବ ହେ ରାଘବ
ସଂସାର ଜାଲେ ଯେପରି ଆବଦ୍ଧ ନୋହିବ ।
ଅତର୍କିତେ ସେ ବନ୍ଧନ କାହୁଁ ଘେରିଆସି
ଜୀବ ଗ୍ରୀବାରେ ବାନ୍ଧଇ ଯଥା କାଳ ଫାଶୀ ।
ସେହି ସିନା ପୁରୁଷାର୍ଥ ଯାର ଶକ୍ତି ବଳେ
ସତଶାସ୍ତ୍ର ଚର୍ଚ୍ଚା ସତ ସଙ୍ଗ ଯହୁଁ ମିଳେ ।
ବୋଧ କଲମକୁ ଭରି ବିଚାର କାଳିରେ
ସତ୍‌ଶାସ୍ତ୍ରର ଅର୍ଥମାନ ହୃଦୟ-ପତ୍ରରେ ।
ଲିପିବଦ୍ଧ କରିବା ହିଁ ପୁରୁଷାର୍ଥ ଜାଣ
ଅନ୍ୟଥା ନ ମଣ ଏହା ଜ୍ଞାନୀଙ୍କ ବଚନ ।
ଏପରି ପୁରୁଷାର୍ଥର ଆଦର୍ଶ ଦେଖାଇ
ଭବପଥେ ଅଗ୍ରସର ହେଉଥିବ ଦେହୀ ।
ତେବେ ଭବଜାଲେ ସେହୁ କେଉଁ ନ ପଡ଼ିବ
ମୁକତି ପଥ ତାପାଇଁ ସଦା ମୁକ୍ତ ଥିବ ।
ଆଦ୍ୟରୁ ନିଶ୍ଚିତ ଅଛି ଘଟ ଥିବ ଘଟ
ପଟର ନାମ ସର୍ବଦା ରହିଥିବ ପଟ ।
ପଟକୁ ଘଟ କହିବା ହୋଇବ ପ୍ରମାଦ
ଘଟକୁ ପଟ କହିବା ନୁହେଁ ଅପ୍ରମାଦ ।
ସୁନା ଲୁହା ଦୁହିଙ୍କର ଗୁଣ ଏବେ ଶୁଣ
ସ୍ୱତନ୍ତ୍ର ଅଟଇ ସେହି ମାନଙ୍କର ଧର୍ମ ।
ପରିବର୍ତ୍ତିତ କେବେ ହେଁ ନୋହି ତାଙ୍କ ଗୁଣ
ବଦଳି ନ ପାରେ ତାଙ୍କ ସ୍ୱନାମ କରଣ ।
ପୁରୁଷକାରକୁ କେଭେ ନ ମଣ ଅସୀମ
ପୁରୁଷକାର ସର୍ବଦା ଅଟଇ ସସୀମ ।
ଆତ୍ମତତ୍ତ୍ୱ ପ୍ରାପ୍ତି ପାଇଁ ପୁରୁଷାର୍ଥ ବାଟ
ପ୍ରଗାଢ଼ ପୌରୁଷ ଆଣେ ବ୍ରହ୍ମଙ୍କର ଭେଟ ।
ସତସଙ୍ଗ ସତ୍‌ଶାସ୍ତ୍ର ତତ୍ତ୍ୱାନୁଶୀଳନ
ପରଂପଦ ପଥ ପ୍ରାପ୍ତି କରଇ ସୁଗମ ।
ପରୁଷାର୍ଥ ବିନା ସେହି ପଥ ସୁଗମତା
ସମ୍ଭବ ନୁହଇ ଆହେ ସଉମିତ୍ରି ଭ୍ରାତା ।

ନିହତ, ଅଦମ୍ୟ ଚେଷ୍ଟା, ସ୍ୱ ଆତ୍ମପରୀକ୍ଷା
ଅବଲମ୍ବନରେ ହେବ ହାସଲ ସେ ଦୀକ୍ଷା ।
ଅମୃତ ଭାଣ୍ଡ ନିକଟେ ସଦା ବସିଥିବ
ପାନ ନ କଲେ କି କେଉଁ ଅମର ହୋଇବ ?
ତେସନ ଅଭ୍ୟାସ ବିନା ଆତ୍ମପଦ ପ୍ରାପ୍ତି
ସମ୍ଭବ ନୁହଇ କେଉଁ ଆହେ ରଘୁପତି ।
ଅଜ୍ଞାନୀ ନିଜ ଜୀବନ ବ୍ୟର୍ଥେ ନଷ୍ଟକରେ
ଶେଷେ ଅନୁତାପାନଳେ ଦହୀ ହୋଇ ମରେ ।
ବାଲ୍ୟାବସ୍ଥାରେ ମୂଢ଼ତା ବଶହୁଏ ଜୀବ
ବିକାର ସେବାରେ ଯଉବନ କଟିଯିବ ।
ଜରାବସ୍ଥା ଆଣି ଦିଏ ନାନା ପୀଡ଼ାମାନ
ସମ୍ଭାଳି ନ ପାରି କ୍ଳେଶ ଜର୍ଜରିତ ପ୍ରାଣ ।
ଏହିପରି ଜୀବଦଶା ବିଅର୍ଥରେ ନଷ୍ଟ
କି କରିବି, କି କରିବି ଭାବଇ ପାପିଷ୍ଠ ।
ପୁରୁଷାର୍ଥ ତେଜି ଯେହୁ ଦୈବ ଆଶ୍ରା କରେ
ଆତ୍ମଘାତୀ ସେହିଜନ ଜାଣ ରଘୁବୀରେ ।
କାହିଁ ଆଉ ସୁଖଭୋଗ, ତା ସ୍ୱପ୍ନ ରାଇଜ
ହାହାକାର ବିନା ଆଉ କାହିଁ ତେଜ ବୀର୍ଯ୍ୟ ?
ପୁରୁଷାର୍ଥ ତେଜି ପରମାର୍ଥ ତେଜ୍ୟାକରେ
ମହା ମୂଢ଼ ସେହି ଜନ ପଶୁ ପରି ମରେ ।
ବହୁ ଚିନ୍ତା କରି ମୁହିଁ ତୁମ୍ଭଙ୍କୁ କହୁଛି
ପୁରୁଷାର୍ଥ ଆଶ୍ରା କେଉଁ ନ ଦିଅ ମୂରୁଛି ।
ସତସଙ୍ଗ ସତଶାସ୍ତ୍ର ଆଦର୍ଶକୁ ବରି
ନିଜ ଦୋଷ ଗୁଣମାନ ବୁଝ ଯତ୍ନକରି ।
ପରିହର ଅବଗୁଣ, ଘେନ ସଦଗୁଣ
ଅଭ୍ୟାସ କର ଶାସ୍ତ୍ରର ସୁସିଦ୍ଧାନ୍ତମାନ ।
ଦୃଢ଼ ଅଭ୍ୟାସ ବଳରେ ଆଶୁ ଫଳ ପାଇ
ଆନନ୍ଦ ଲାଭ କରିବ ଆହେ ରଘୁସାଇଁ ।
ଅଭ୍ୟାସ, ବିଶ୍ୱାସ, ଦୁହେଁ ବେନି ସହୋଦର
ଗୋଟିକ ଉପରେ ଅନ୍ୟ କରଇ ନିର୍ଭର ।
ଯେତେ ଅଭ୍ୟାସ କଲେ ହେଁ ବିଶ୍ୱାସ ନଥିଲେ
ସିଦ୍ଧି ପରାପତ କେଉଁ ନୁହେଁ ରଘୁବୀରେ ।
କହନ୍ତି ବାଲ୍ମୀକ ଶୁଣ ଆହେ ଭରଦ୍ୱାଜ
ବଶିଷ୍ଠ କଥା ଚାଲିଛି, ଅସ୍ତ ହେଲେ ସୂର୍ଯ୍ୟ ।
ପରସ୍ପରେ ଯଥାମାନ୍ୟ ଦେଇ ସଭ୍ୟଗଣ
ନିଜ ନିଜ ସଦନକୁ କଲେକ ଗମନ ।

ଆହ୍ନିକ ସନ୍ଧ୍ୟା ବନ୍ଦନା ଆଦି ଶେଷକରି
ସକଳେ ସୁଖ ନିଦ୍ରାରେ ଯାପିଲେ ଶର୍ବରୀ ।
ଦେଖନ୍ତେ ପ୍ରାଚୀ ନଭରେ ଉଷାର ଆଭାସ
ସର୍ବ ସଭ୍ୟଗଣ ଆସି ସଭାରେ ପ୍ରବେଶ ।
ସର୍ବେ ସ୍ୱ ସ୍ୱ ଆସନରେ ହେଲେ ଉପବିଷ୍ଟ
ବଶିଷ୍ଠ ଆରମ୍ଭ କଲେ ବଚନ ସ୍ୱାଦିଷ୍ଟ ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷ ପ୍ରକରଣେ**
**ପୂରୁଷାର୍ଥ ନିରୂପଣ ବର୍ଣ୍ଣନେ**
**ନାମ ପଞ୍ଚମ ସର୍ଗଃ ।**



## ଷଷ୍ଠ ସର୍ଗଃ
## ପରମ ପୁରୁଷାର୍ଥ

କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ପୁରୁଷାର୍ଥ ବୋଲି ଯାହା କରିଛି ବର୍ଣ୍ଣନ ।
ସେହିଟି ଦଇବ ଏହା ଅନ୍ୟଥା ନ ମଣ
ଜନ୍ମ ଜନ୍ମାନ୍ତର କର୍ମ ଧରେ ଦୈବ ନାମ ।
ସତ୍‌ସଙ୍ଗ, ସତଶାସ୍ତ୍ର, ପୁରୁଷାର୍ଥ ବଳେ
ହୃଦୟଙ୍ଗମ ହେବ ତା ସୁବିଚାର କଲେ ।
ପୂର୍ବ ସଂସ୍କାର ମାନଙ୍କୁ ଜିଣି ହେବ ହେଲେ
ପୁରୁଷାର୍ଥ ବଳ ରାମ ବୁଝ ଏବେ ଭଲେ ।
ଶାସ୍ତ୍ରମାର୍ଗେ ଇଷ୍ଟଲାଭ କରିବା ନିମିତ୍ତ
ଯତ୍ନବାନ ହେଲେ ଜୀବ ଲଭିବ ଅଭିଷ୍ଟ ।
ଅନ୍ୟଥା ନୋହିଛି, ନୋହୁଛି ବା ନ ହୋଇବ
ଯଥା ଦୁଇ ଦୁଇ ମିଶି ଚାରି ହେବା ଧ୍ରୁବ ।
ପୂର୍ବ କୃତ କର୍ମ ଫଳେ ଦୁଃଖ ପାଇ ମୂର୍ଖ
'ହାୟରେ ଦଇବ ! ଖାଲି ଦେଉଅଛୁ ଦୁଃଖ ।
ପୂର୍ବ ପୁରୁଷାର୍ଥ ତାର ଦଇବ ବୋଲାଇ
ଦଇବ ବୋଲିଣ ଅନ୍ୟ ଶକ୍ତି କିଛି ନାହିଁ ।
ଦୈବ ଅନ୍ୟ ବୋଲି ଯେହୁ କଳ୍ପନା କରନ୍ତି
ପାଷାଣ୍ଡଙ୍କ ମଧ୍ୟେ ସେହୁ ଅଗ୍ରଗଣ୍ୟ ହୁନ୍ତି ।
ପୂର୍ବ ଜନ୍ମର ସୁକୃତ ସୁଖ ରୂପେ ମିଳେ
ବିଜୟୀ ହୁଅଇ ଜୀବ ସେ ସୁକୃତ ଫଳେ ।
ପୂର୍ବଜନ୍ମ ଦୁଷ୍କୃତି ଯା ପୁଞ୍ଜିଭୂତ ଥାଇ
ଇହ ଜନ୍ମେ ପୁରୁଷାର୍ଥ ଯେବେ ଆଚରଇ ।
ସତ୍‌ସଙ୍ଗ କରି ଶାସ୍ତ୍ର ଉପଦେଶ ଶୁଣେ
କାର୍ଯ୍ୟରେ ଆଚରେ ତତପରେ ଅନୁକ୍ଷଣେ ।
ପୂର୍ବ ପାପ ଫଳମାନ ଅସ୍ତ ଯାନ୍ତି ତାର
ବିଜୟଲକ୍ଷ୍ମୀ ସର୍ବଦା ରାଜନ୍ତି କାନ୍ଧର ।
କାଲିର ପାପ ଆଜିର ବେଶି ପୁଣ୍ୟ ଫଳେ
ଦଗ୍‌ଧ ହୋଇ ସାଧକର ସିଦ୍ଧି ବୃଦ୍ଧି କରେ ।
ଏହିପରି ପୁରୁଷାର୍ଥ ବଳ ପ୍ରୟୋଗରେ
ପୂର୍ବ ସଂସ୍କାରକୁ ଜୀବ ଜିଣେ ସହଜରେ ।
ଯାହା କିଛି ସିଦ୍ଧି ଲାଭ କରଇ ସାଧକ
ପୁରୁଷାର୍ଥ ବଳ ତହିଁ ତାର ନିୟାମକ ।
ଏକ ମନେ, ଏକ ଧ୍ୟାନେ ପ୍ରଯତ୍ନ କରଣ
ପୁରୁଷାର୍ଥ ବୋଲି କହିଛନ୍ତି ମୁନିଗଣ ।
ସେହି ପଥ ଅନୁସରି ଚଳିବ ଯେ ଜନ
ଅବଶ୍ୟ ହୋଇବ ତାର ଅଭିଷ୍ଟ ସାଧନ ।
ଦୈବ ବିଶ୍ୱାସରେ ଯେହୁ ପୁରୁଷାର୍ଥ ତେଜେ
ଶାନ୍ତି ତେଜି ଦୁଃଖ ଦୁର୍ବିପାକ ଶେଷେ ଭୁଞ୍ଜେ ।
ହେ ରାମ ମିଥ୍ୟା ଦୈବକୁ ମନୁ ପରିହର
ସ୍ୱ ପୁରୁଷାର୍ଥ ବଳକୁ ଅଙ୍ଗୀକାର କର ।
ପୁରୁଷାର୍ଥର ତର୍ଜମା ଆଉ ଏକ ଶୁଣ
ଶାସ୍ତ୍ରବାଣୀ, ସନ୍ଥ ଉପଦେଶମାନ ଘେନ ।
ଯୁକ୍ତି ସହିତ ତହିଁରେ ହୋଇ ଯତ୍ନବାନ
ଅଭ୍ୟାସ ସହିତ କର ତା ଅନୁଶୀଳନ ।
ଏହି ପଥ ଅନୁସରି ଆତ୍ମପଦ ଲାଭ
ପରମ ପୁରୁଷାର୍ଥ ତା' ଜାଣ ହେ ରାଘବ ।
ଆଲୋକ ହେତୁ ପଦାର୍ଥ-ଜ୍ଞାନ ଲାଭ ପରି
ପୁରୁଷାର୍ଥ ଆତ୍ମପଦ ପଥ ଦିଏ ଖୋଲି ।
ପୂର୍ବ କର୍ମ ଘେନି ଯେହୁ ଥାଏ ବଡ଼ ପାପୀ
ଇହ ଦୃଢ଼ ପୁରୁଷାର୍ଥ କରେ ତାକୁ ତପୀ ।
ଦୃଢ଼ ପୁରୁଷାର୍ଥ ବଳେ ସେ ପାପ ଦହନ
ହୋଇ ଯାଇଥାଏ ଆହେ ରଘୁଙ୍କ ନନ୍ଦନ ।
ବାୟୁ ବେଗେ ନାଶ ଯାଏ ବାରିଦ ଯେସନ
ପକ୍ୱ ଶସ୍ୟ କ୍ଷେତ୍ର ନାଶେ ବରଫ ବର୍ଷଣ ।
ସେହିପରି ପୁରୁଷର ପ୍ରାକ୍ତନ କରମ
ବଦଳାଇ ଦିଏ ତାକୁ ଇହ-ଜନ୍ମ-କର୍ମ ।
ଆହେ ରାମ ଶ୍ରେଷ୍ଠ ଏକା ସେହି ବ୍ୟକ୍ତି ଜାଣ
ସତ୍‌ସଙ୍ଗ ସତ୍‌ଶାସ୍ତ୍ର ବଳେ ବୁଦ୍ଧି ଯାର ତୀକ୍ଷଣ ।
ଭବ ସାଗର ତରଣେ ଦେଖାଏ ପୌରୁଷ
ଆଉ କରିବା ପାଇଁ କି ରହିଲା ତା' କିସ ?

ଏ ସବୁ ନ କରି ଯେହୁ ଦୈବେ ଆଶ୍ରାକରେ
କ୍ରମେ କ୍ରମେ ନୀଚ ଗତି ଲଭଇ ସଂସାରେ ।
ଶ୍ରେଷ୍ଠ ପୁରୁଷ ହିଁ ସ୍ୱୀୟ ପୁରୁଷାର୍ଥ ବଳେ
ପରମାନନ୍ଦ ପଦକୁ ଲଭିପାରେ ହେଳେ ।
ସେ ପଦ ଲଭିବା ମାତ୍ରେ ନ ରହଇ ଦୁଃଖ
ଦୁଃଖ ପରିବର୍ତ୍ତେ ସଦା ଲଭେ ନିତ୍ୟ ସୁଖ ।
ପୁରୁଷ ପ୍ରଯତ୍ନ ବଳେ ସରବ ସମ୍ପଦ
ଆସି ଯୁଟିଯାନ୍ତି ସେହି ପୁରୁଷର ପାଦ ।
ପରମାନନ୍ଦ ପଦରେ ସଦା ତାର ମତି
ମଜ୍ଜି ରହି ଭୋଗ କରେ ସକଳ ବିଭୂତି ।
ରତ୍ନାକର ଯେଉଁ ପରି ରତ୍ନେ ଅଛି ଭରା
ପରମାନନ୍ଦେ ମଜ୍ଜି ଯେ ହୁଏ ଆତ୍ମହରା,
ନିଜ ପୁରୁଷାର୍ଥ ବଳେ ସେ ଶ୍ରେଷ୍ଠ ପୁରୁଷ
ସଂସାର ବନ୍ଧନ କାଟି ପାଏ ଆତ୍ମତୋଷ ।
ବାହୁବଳେ ସିଂହ ଯଥା ପିଞ୍ଜରାକୁ ଭାଙ୍ଗି
ମୁକ୍ତ ବାୟୁମଣ୍ଡଳରେ ହୁଏ ଆତ୍ମଭୋଗୀ ।
ଯେଉଁ ବ୍ୟକ୍ତି ସଦାଚାରୀ କୌଶଳ ସମ୍ପନ୍ନ
ଭବ-ମୋହ ପଞ୍ଜୁରୀକି ଭାଙ୍ଗେ ସିଂହସମ ।
ଯେ ପୁରୁଷ ଅନ୍ୟ କିଛି କରି ନ ପାରିବ
ବର୍ଣ୍ଣାଶ୍ରମ ଧରମକୁ ଯତନେ ପାଳିବ ।
ନିଜ ପୁରୁଷାର୍ଥ ଜଗତକୁ ଦେଖାଇଣ
ସ୍ୱଚ୍ଛନ୍ଦେ ବିହରୁଥିବ ଛାତି ଫୁଲାଇଣ ।
ଶାସ୍ତ୍ରାନୁମୋଦିତ ପୁରୁଷାର୍ଥ ନ ଆଚରି
ଦୈବେ ଯେ ନିର୍ଭର କରେ ସୁଖ ଆଶାକରି,
ଜନମ ମରଣ ତାର ସଦା ଲାଗିଥାଏ
ଶାନ୍ତି ଭୋଗ ତାର ଭାଗ୍ୟେ ସପନ ପରାଏ ।
ଜୀବକୁ ଗ୍ରାସ କରିଛି ଭବ-ବିସୂଚିକା
ଯହିଁରେ ଆରୋଗ୍ୟ ହେବ ଶୁଣ ତା ତାଲିକା ।
ସଜ୍ଜନ ସତଶାସ୍ତ୍ର ଆଦେଶ ମାନିବ
ଦୃଢ଼ତା ସହିତ ତାର ଭାବାର୍ଥ ଚିନ୍ତିବ ।
ବିଶ୍ୱାସ ସହିତ ପୁନଃ ପୁନଃ ଅଭ୍ୟାସିବ
ସର୍ବ ବାଞ୍ଛା ପରିହରି ଏକାନ୍ତେ ଚିନ୍ତିବ ।
ତା ଯୋଗୁଁ ପରମ ପଦ ହୋଇବ ପ୍ରାପତ
ଶାନ୍ତି ସୁଖର ଜୀବନ ହେବ ସୁନିଶ୍ଚିତ ।
ଦ୍ୱୈତଭାବ-ବିସୂଚିକା କୀଟ ଯିବେ ନାଶ
ଅଦ୍ୱୈତ ଭାବ-ଆରୋଗ୍ୟ, ଲଭିବ ଅବଶ୍ୟ ।
ସାଧୁସେବା ମହୌଷଧି ଭବରୋଗ ପାଇଁ
ସେବନ କଲେ ଅବ୍ୟର୍ଥ ଫଳ ସେ ଦିଅଇ ।
ତେଣୁକରି ସାଧୁ, ସନ୍ଥ ସେବା ବରଣୀୟ
ଯାହାଘେନି ମନବଳ ବଢ଼ିବ ନିଶ୍ଚୟ ।
ମନବଳ, ଏକାଗ୍ରତା ଲାଭ ସଙ୍ଗେ ଜାଣ
ଆତ୍ମପଦ ଲଭେ ଜୀବ ଏକଥା ପ୍ରମାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ପରମ ପୁରୁଷାର୍ଥ ବର୍ଣ୍ଣନେ**
**ନାମ ଷଷ୍ଠ ସର୍ଗଃ ।**



## ସପ୍ତମ ସର୍ଗଃ
## ପୁରୁଷାର୍ଥୋପମା

କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ପୁରୁଷାର୍ଥ ସଞ୍ଜୀବନୀ ନର ଜୀବନର ।
ପୁରୁଷାର୍ଥ ତେଜି ଯେହୁ ଦୈବେ ଆଶ୍ରାକରେ
ଆଧ୍ୟାତ୍ମିକ ଆଦି ତାପ ଆସି ତାକୁ ଘେରେ ।
କେବେହେଲେ ଶାନ୍ତି ନ ଲଭଇ ତାର ମନ
ଶାନ୍ତି ବିନା ସର୍ବ ଭୋଗ ହୁଏ ଅକାରଣ ।
ଏ ଜନ୍ମେ ନିରୋଗ ଦେହ, ପୁନର୍ଜନ୍ମୁ ମୁକ୍ତି
ନରର ଆଦର୍ଶ ଏଇ ଦୁଇ ରଘୁପତି ।
ସେଥିପାଇଁ ବାଟ ହେଲା ଚିତ୍ତ ସମାଧାନ
ଯାହାବଳେ ବିକଶଇ ଏକାଗ୍ରତା ଗୁଣ ।
ଦୈବକୁ ଜିଣିବା ପାଇଁ ପୁରୁଷାର୍ଥ ବଳେ
ଅଭିଳାଷୀ ଯେଉଁ ଜନ ଦୃଢ଼ ଚେଷ୍ଟାକରେ,
ଇହଲୋକେ ପରଲୋକେ ବାଞ୍ଛାସିଦ୍ଧି ଫଳ
ଲାଭ କରିବାକୁ ଶକ୍ତି ବୃଦ୍ଧିପାଏ ତାର ।
ରୋଗୀ ନ ହେବାକୁ ଅବା ମୁକ୍ତି ଲଭିବାକୁ
ଦଇବ କେଉଁ ସହାୟ ନୋହିବ ତୁମ୍ଭଙ୍କୁ ।
ତୁମ ପୁରୁଷାର୍ଥ ତୁମ ହସ୍ତେ ତାହା ଦେବ
ଦଇବେ ନିର୍ଭର ରାମ କାର୍ଯ୍ୟେ ନ ଲାଗିବ ।
ଜନ୍ମ ମରଣ ବନ୍ଧନୁ ଦେବ ନ ରଖିବ
କେବଳ ପୁରୁଷାର୍ଥ ହିଁ ତୁମକୁ ତା ଦେବ ।
ପୁରୁଷାର୍ଥ ବରଜି ଯେ ଦୈବେ ଆଶ୍ରାକରେ
ଧର୍ମ, ଅର୍ଥ, କାମ, ମୋକ୍ଷ ସ୍ୱପ୍ନ ତା ପକ୍ଷରେ ।
ବୁଡ଼ିଗଲା ଲୋକ ଗୋଡ଼ ତଳକୁ ତଳକୁ
ସେହିପରି ତାର ଦଶା, କେ ତାରିବ ତାକୁ ?

ଶୁଦ୍ଧ ଚୈତନ୍ୟ ଯେ ଆପେ ଆପେ ପ୍ରକାଶିତ
ଯା' ଆଭାରେ ସାରା ବିଶ୍ୱ ହୁଏ ଆଲୋକିତ ।
* ଇନ୍ଦ୍ରିୟସ୍ପନ୍ଦ, ସଂବିତସ୍ପନ୍ଦ, ମନସ୍ପନ୍ଦ
ଶୁଦ୍ଧ ଚୈତନ୍ୟକୁ ଜନ୍ମି ତହିଁରେ ଆବଦ୍ଧ ।
ଏମାନେ ଅଟନ୍ତି ଏକ ଏକ ପୁରୁଷାର୍ଥ
ଏମାନଙ୍କଠାରୁ ଯେଉଁ ପଉରୁଷ ଜାତ ।
ସଙ୍କଳ୍ପିତ ଫଳ ତହିଁ ମଧ୍ୟରୁ ଉଦିତ
କର୍ମବନ୍ଧନ ମୁକ୍ତିର ସହାୟକ ପଥ ।
* ସଂବେଦନ ଯେତେ ଯେତେ ହୁଅଇ ବର୍ଦ୍ଧିତ
ତଦ ଅନୁସାରେ ମନ ହୁଅଇ ସ୍ପନ୍ଦିତ ।
କର୍ମେନ୍ଦ୍ରିୟେ ତାହାଦ୍ୱାରା ପ୍ରଭାବିତ ହୁନ୍ତି
ମନ ଅନୁସାରେ ଏଣୁ କର୍ମ କରୁଥାନ୍ତି ।
ଚିତ୍ତ ମଧ୍ୟେ ଉପୁଜଇ ଜ୍ଞାନର ତରଙ୍ଗ
କ୍ରମଶଃ ବୃଦ୍ଧି ଲଭଇ ସେ ତରଙ୍ଗ ଅଙ୍ଗ ।
ମହାଜ୍ଞାନ ତରଙ୍ଗରୁ ଉପୁଜି କମ୍ପନ
କ୍ଷିପ୍ର କ୍ଷିପ୍ରତର ହୋଇ ଉଠେ ଅନୁକ୍ଷଣ ।
ମନ ମଳିନତା ସବୁ ଧୋଇ ଯାଉଥାଏ
ପରଂପଦ ପ୍ରାପ୍ତିପଥ ସୁଗମ କରାଏ ।
ଇନ୍ଦ୍ରିୟମାନେ ଚଳିତ ଅହଙ୍କାର ଘେନି
ଭଲ ମନ୍ଦ ଭାବ ଏଥୁଁ ବୁଝିବେ ସୁଜ୍ଞାନୀ ।
ଏହି ଅହଙ୍କାରେ ଜୀବ ଉର୍ଦ୍ଧ୍ୱଗାମୀ ହୁଏ
ଏହି ଅହଙ୍କାର ପୁଣି ନୀଚ ପଥେ ନିଏ ।
ଶାସ୍ତ୍ରନୁମୋଦିତ ପଥ ଶୁଭପ୍ରଦ ହୁଏ
ଶାସ୍ତ୍ର ବିରୁଦ୍ଧ ମାର୍ଗରେ ହାନି ଘଟିଥାଏ ।
ବାସନାବଶ ହେବାରୁ ପୁନରାବର୍ତ୍ତନ
ଘଟୀଯନ୍ତ୍ର ପରି ଜୀବ ହୁଏ ଚିରଦିନ ।
ଯାହା କିଛି ସିଦ୍ଧି ଲାଭ କରିଥାଏ ଜୀବ
ପୁରୁଷାର୍ଥ ବଳେ ଫଳିଥାଏ ତା ରାଘବ ।
ପୁରୁଷାର୍ଥ ବିନା ସିଦ୍ଧି ଲାଭ ନ ହୁଅଇ
ଏ ନିୟମ ବ୍ୟତିକ୍ରମ କଦାପି ନୁହଇ ।
ମାନବ ପଶୁ ମଧ୍ୟରେ କିଛି ହିଁ ପାର୍ଥକ୍ୟ
ସିଦ୍ଧି ଲାଭ ପାଇଁ ନ ରହଇ ଜାଣିରଖ ।
ଯଦି କେହି ଯାଚେ ମୋତେ କୌଣସି ପଦାର୍ଥ
ହାତ ବଢ଼ାଇ ନେବାଟା ମୋହର ଉଚିତ ।

ଯଦି କୌଣସି ସ୍ଥାନକୁ ଯିବାର ମୋ ଥାଏ
ପଦବ୍ରଜ କରି ଚଳିଯିବା ତ ଯୋଗାଏ ।
ହାତ ବଢ଼ାଇବା କିମ୍ବା ପଦବ୍ରଜେ ଯିବା
ପୁରୁଷାର୍ଥ ବୋଲି ତାକୁ ସକଳେ ବୁଝିବା ।
ଦଇବ ଯାହା କରିବ, ତାହାହିଁ ହୋଇବ
ମୂର୍ଖ ସିନା ଏହା କହି ସନ୍ତୁଷ୍ଟ ରହିବ ।
ଆହେ ରାମ ଦୈବ ବୋଲି ଆଉ କିଛି ନାହିଁ
ଯାହାକୁ ପୌରୁଷ ବୋଲି ଦଇବ ଯେ ସେହି ।
ମୂର୍ଖଙ୍କ ପ୍ରଚାରେ ସେହି ଦଇବ ଶବଦ
"ଦଇବ ଦଉଡ଼ି, ନର ଗାଈ ଆଦି ଦ୍ୱନ୍ଦ୍ୱ" ।
ବିପଦ ପଡ଼ିଲେ ସେହୁ ଅଥୟ ହୁଅନ୍ତି
ଦୈବ ଏହା କଲା ବୋଲି ଗାଳି ହେଉଥାନ୍ତି ।
ମୂର୍ଖ ଅଳସୁଆମାନେ ଦଇବର ଭକ୍ତ
ନବୁଝି ଦଇବେ କରୁଥାନ୍ତି ଦୋଷନ୍ୟସ୍ତ ।
ଦୈବେ ଆଶ୍ରାକଲେ ସିଦ୍ଧି ପ୍ରାପତ ନୋହିବ
ଜ୍ଞାନୀ ଜନଠାରୁ ସଦା ନିନ୍ଦା ଶୁଣୁଥିବ ।
ପୁରୁଷାର୍ଥ ବଳେ ବୃହସ୍ପତି ଦେବଗୁରୁ
ଶୁକ୍ରାଚାର୍ଯ୍ୟ ଦୈତ୍ୟ ଗୁରୁ ପୁରୁଷାର୍ଥ ବଳୁ ।
ଶତ ଶତ ଦୀନହୀନ ପୁରୁଷାର୍ଥ ବଳେ
ଇନ୍ଦ୍ରପଦ ଲାଭ କରିଛନ୍ତି ଏ ବିଶ୍ୱରେ ।
ପୁରୁଷାର୍ଥ ଦୋଷେ ଅତି ବଳଶାଳୀ ଧନୀ
ସର୍ବସ୍ୱାନ୍ତ ହୋଇ ଗଡ଼ି ମରନ୍ତି ଅବନୀ ।
ଶୌର୍ଯ୍ୟ, ବୀର୍ଯ୍ୟ, ସୌନ୍ଦର୍ଯ୍ୟରେ ସମ ହୋଇଥିବ
ପୁରୁଷାର୍ଥ ପ୍ରଚେଷ୍ଟାରୁ ନିଶ୍ଚେଷ୍ଟ ରହିବ,
ଧନଶାଳୀ ହେଲେ ମଧ୍ୟ ହୋଇବ ଗରିବ
ପୌରୁଷ ବଳେ ନିର୍ଦ୍ଧନ ଧନବାନ ହେବ ।
ଯେତିକି ପୌରୁଷ ଯାର ତେତିକି ତା ସିଦ୍ଧି
ପଉରୁଷ ବଳ ଜାଣ ଅଟେ ମହାବିଧି ।
ରାଜ୍ୟ, ପ୍ରଜା, ଧନ, ମାନ, ନିଉନ ଲଭନ୍ତି
ଶାସ୍ତ୍ର-ମତ ପୁରୁଷାର୍ଥ ଯେହୁ ନ ମାନନ୍ତି ।
ସିଦ୍ଧି ଲାଭ ହେଲେ ପୁରୁଷାର୍ଥ ତା ବୋଲାଏ
ଅପୁରୁଷାର୍ଥ ବୋଲାଏ ଅନର୍ଥ ଯେ ଦିଏ ।
ଶୁଭଗୁଣ ବଢ଼ାଇଲେ ପୁରୁଷାର୍ଥ ବଳେ
ଦୟା, ଧୈର୍ଯ୍ୟ, ସନ୍ତୋଷାଦି, ବଢ଼ିଯାନ୍ତି ହେଳେ ।

* ଇନ୍ଦ୍ରିୟସ୍ପନ୍ଦ - କାର୍ଯ୍ୟ ପ୍ରବୃତ୍ତି ।
* ସଂବେଦନ - ଜ୍ଞାନ ସ୍ଫୁରଣ(ସ୍ଫୁର୍ତ୍ତି) ।
* ସଂବିତସ୍ପନ୍ଦ - ତତ୍ତ୍ୱଜ୍ଞାନର ବିକାଶ ।
* ମନସ୍ପନ୍ଦ - ଦୃଢ଼ବିଶ୍ୱାସ

ବୈରାଗ୍ୟ ଗୁଣଟି ଗୁଣମାନଙ୍କର ରାଜା
ଯାହା ବଳେ ଉଡ଼ାଇବ ଧର୍ମ୍ମ ରାଜ୍ୟେ ଧ୍ୱଜା ।
ବଡ଼ ହ୍ରଦ ଯୋଗୁଁ ମେଘ ହୃଷ୍ଟପୁଷ୍ଟ ହୁଏ
ବୃଷ୍ଟିପାତ ଯୋଗୁଁ ହ୍ରଦ ଜଳେ ଭରିଯାଏ ।
ଶୁଭଗୁଣ ଘେନି ହୃଷ୍ଟପୁଷ୍ଟ ହୁଏ ବୁଦ୍ଧି
ବୁଦ୍ଧି ଶୁଦ୍ଧି ହେଲେ ଶୁଭଗୁଣ ପାଏ ବୃଦ୍ଧି ।
ବାଲ୍ୟକାଳୁ ସୁଅଭ୍ୟାସ ବଢ଼ାଏ ଯେ ନର
ଅବଶ୍ୟ ସିଦ୍ଧି ପ୍ରାପତ ହୁଅଇ ତାହାର ।
ତୀର୍ଥଯାତ୍ରା କାଳେ ଯେବେ ନିରଳସ ହେବ
ତେବେ ସିନା ତୀର୍ଥ ସ୍ଥାନେ ଶୀଘ୍ର ପହଞ୍ଚିବ ।
ଭୋଜନ କରିଲେ ସିନା କ୍ଷୁଧା ପାଏ ଶାନ୍ତି
ଅନ୍ୟଥା କିପରି ହେବ କ୍ଷୁଧାର ନିବୃତ୍ତି ?
ସିଦ୍ଧିମାତ୍ରେ ଘଟିଥାଏ ପୁରୁଷାର୍ଥ ଯୋଗେ
ନିଶ୍ଚେଷ୍ଟ ରହିଲେ ସିଦ୍ଧି ନ ଆସଇ ଭାଗ୍ୟେ ।
ଗୁରୁଜନମାନଙ୍କର ମତାମତ ବୁଝ
ସୁଚିନ୍ତନ କରି ଇଚ୍ଛାମତେ କର କାର୍ଯ୍ୟ ।
ମୁଁ ଯାହା କହିଲି ସବୁ ଶାସ୍ତ୍ରର ସିଦ୍ଧାନ୍ତ
ତାର ଅନୁସରଣରେ ସିଦ୍ଧି ହେବ ପ୍ରାପ୍ତ ।
ଜ୍ଞାନୀ ଉପଦେଶ ବ୍ରହ୍ମବିଦ୍ୟା ଅନୁସରି
ଜ୍ଞାନବଳେ ମନ ଇନ୍ଦ୍ରିୟଙ୍କ ଦ୍ୱନ୍ଦ୍ୱ ହରି ।
ଶୁଭ ଅଶୁଭ ଗୁଣକୁ ବାଛି ପକାଇବ
ଅଶୁଭକୁ ତେଜି ଶୁଭ ଗ୍ରହଣ କରିବ ।
ସଂସାରର ରାଗଦ୍ୱେଷ ତେବେ ନ ଛୁଇଁବ
ନିର୍ଲିପ୍ତ ହେବା ସୁଯୋଗ ଆସି ମିଳିଯିବ ।
ଜଳେ କମଳିନୀ ଯଥା ରହଇ ନିର୍ଲିପ୍ତ
ସଂସାର ଜଳରେ ତଥା ନ ହୋଇବ ଲିପ୍ତ ।
ଯେଉଁ ଜନଠାରୁ ତୁମେ ଶାନ୍ତି ଆଶାକର
ଭଲକରି ତାର ସେବା ଅର୍ଚ୍ଚନା ଆଚର ।
ଯେହେତୁ ଭବସାଗରୁ କରେ ସେ ଉଦ୍ଧାର
ତା'ପ୍ରତି କୃତଜ୍ଞ ହେବା କର୍ତ୍ତବ୍ୟ ତୁମର ।
ମୋକ୍ଷର ଉଦ୍ଦେଶ୍ୟ ସର୍ବ ଇଚ୍ଛାର ବିନାଶ
କାମନାର ବିନାଶରେ ବଢ଼େ ପଉରୁଷ ।
ଜନମ ମରଣ ଭୟ ଆଉ ନ ରହିବ
ନିତ୍ୟ ସୁଖ, ଚିର ଶାନ୍ତି ଲଭିବ ମାନବ ।
ଯାହାକୁ ଜାଣୁଛ ତୁମେ ବଡ଼ ତେଜିୟାନ
ଆବର ଯେହ୍ନୁ ଅଟଇ ବିଭୂତି ସମ୍ପନ୍ନ,
ପୁରୁଷାର୍ଥ ବଳେ ସେ ତା' କରିଛି ହାସଲ
ପୁରୁଷାର୍ଥ ବଳ ଏବେ ହେଜ ରଘୁବୀର ।
ସବୁ ହିଂସ୍ରଜନ୍ତୁ ସର୍ପ କୀଟାଦି ପତଙ୍ଗ
ପୁରୁଷାର୍ଥ ତେଜି ହାରିଛନ୍ତି ଚଉବଗ ।
ସ୍ୱୀୟ ପୁରୁଷାର୍ଥ ବଳେ ଆଶ୍ରାକରି ଚଳ
ନୋହିଲେ ନୀଚ ଯୋନିରେ ଜନ୍ମିବ ନିକର ।
ତେଣୁ ଦୈବ ତେଜି ପୁରଷାର୍ଥ ଆଶ୍ରାକର
ପରଂପଦ ପ୍ରାପ୍ତି ବାଞ୍ଛା ହୋଇବ ସଫଳ ।
ଦୈତ୍ୟ ବିନାଶନ ପାଇଁ ବିଷ୍ଣୁ ଜନମନ୍ତି
ପୁରୁଷାର୍ଥ ବଳେ ସେମାନଙ୍କୁ ସଂହାରନ୍ତି ।
ପାପ ତାପ ନ ଛୁଅଇଁ ତାଙ୍କର ଶରୀର
ପୁରୁଷାର୍ଥ ହିଁ କାରଣ ତାହିଁ ରଘୁବୀର ।
ପୁରୁଷାର୍ଥ ଆଶ୍ରେକରି ଭବସିନ୍ଧୁ ତର
ସବୁ ଦୁଷ୍କୃତି, ସୁକୃତି ହୋଇବ ମୂକର ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ପୁରୁଷାର୍ଥ ଉପମା ବର୍ଣ୍ଣନେ**
**ନାମ ସପ୍ତମ ସର୍ଗଃ ।**



## ଅଷ୍ଟମ ସର୍ଗଃ
## ପରମ ପୁରୁଷାର୍ଥ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ରାମ ମହାମନା
ଦୈବ ସବୁ କରିଦେବ ମୂର୍ଖଙ୍କ କଳ୍ପନା ।
ଦୈବ ସ୍ୱରୂପ କିପରି ଦେଖିନାହିଁ ମୁହିଁ
ତାହାର ଆକାର କେଡ଼େ ନ ଜାଣନ୍ତି କେହି ।
ପୂର୍ବ କର୍ମ ହିଁ ଦଇବ ମନେରଖ ରାମ
ଭ୍ରମେ ପଡ଼ି ମୂର୍ଖ ଲୋକ ଘାରି ହୁଏ ଜାଣ ।
ନିଆଁକୁ ଡେଇଁ ପଡ଼ିଲେ ରଖିବ କି ଦୈବ
ତେବେ ସିନା ଦଇବରେ ବିଶ୍ୱାସ ରହିବ ।
ପୁରୁଷକାର ତେଜି ଯେ ଦୈବେ ଆଶା ରଖେ
ମହା ମୂର୍ଖ ଜନ ସେହ୍ନୁ ଜାଣ ଇହଲୋକେ ।
ସ୍ନାନ, ଦାନ, ଭୋଜନ ଓ ଆହ୍ନିକ ତେଜିଣ
ମଉନେ ବସି ରହିବ ଯେଉଁ ମୂଢ଼ ଜନ ।
ଦୈବ କି ଆସି ପହଞ୍ଚି କରିବ ତା କାମ ?
ଦୈବକୁ ଋହିଁ ବସିଲେ ବୁଡ଼ିଯିବ ଧାମ ।
ତେଣୁ ପୁରୁଷାର୍ଥ ବରି ଦୈବ ଆଶ୍ରା ଛାଡ଼
ନୋହିଲେ ସାରାଜୀବନ ଖାଉଥିବ ମାଡ଼ ।

ଜୀବ କିଛି ନ କରଇ, ଦୈବ ସବୁ କରେ
ଗୁରୁ, ଶାସ୍ତ୍ର, ଉପଦେଶ ତେବେ କେଉଁଠାରେ ?
ଶାସ୍ତ୍ରମତ ପୁରୁଷାର୍ଥ ଦିଏ ବାଞ୍ଛା ଫଳ
ଦୈବ ଦୈବ ଘୋଷି ହେବା କେବଳ ନିଷ୍ଫଳ ।
ସର୍ବାଦୌ ଏ ଦୈବ-ଭ୍ରମ ବର୍ଜନ କରିବ
ସନ୍ଥ, ଶାସ୍ତ୍ର ମୁଣ୍ଡାଇଲେ ଜିତାପଟ ହେବ ।
ଦୈବ ବୋଲି ଯାହା ଲୋକେ ଭାବନ୍ତି ଶ୍ରୀରାମ
ନିଜ ପୁରୁଷାର୍ଥ-ସ୍ପନ୍ଦ ତା' ବୋଲି ଜାଣିବ ।
କେବେ କି ନମଲା ଜୀବ ହୁଏ ସ୍ପନ୍ଦହୀନ ?
ଏ ପର୍ଯ୍ୟନ୍ତ କେହି ଦେଖିନାହିଁ ଏ ପ୍ରମାଣ ।
ତେଣୁ ପ୍ରଯତ୍ନ ଅଟଇ ବଞ୍ଚିବା ପ୍ରମାଣ
ଦୈବ କିଛି କରୁନାହିଁ ଭଲକରି ଜାଣ ।
ଦଇବ କିପରି ତାହା ଆକୃତି ତ ନାହିଁ
ହାତ, ଗୋଡ ଆଦି ତାର ଦେଖା ତ ନଯାଇ ।
"ମିଥ୍ୟା ପଦାର୍ଥ ସେ ଆମ ସହାୟକ ହେବ"
ମାନବ ଚିନ୍ତା ବାହାର ଅଟଇ ଏ ଭାବ ।
ତେଣୁ କରି ଦୈବ-ଚିନ୍ତା ମିଥ୍ୟା, ଅର୍ଥହୀନ
ଅବଶ୍ୟ ବୁଝିବ ଦେଖ କରି ପ୍ରଣିଧାନ ।
ପୁରୁଷାର୍ଥ ବାର୍ତ୍ତା ମଧ୍ୟ ଅଟନ୍ତି ଅଜ୍ଞାନୀ
ବିନା ପୁରୁଷାର୍ଥେ କିଛି ନ ହୁଏ ପ୍ରମାଣି ।
ଗୋରୁ ଚରାଇବା ଯଦି ଗୋପାଳେ ଛାଡିବେ
ଖାଦ୍ୟାଭାବେ ଉଭୟେଟି ନିଶ୍ଚେ ନାଶ ଯିବେ ।
ତେଣୁକରି ଦଇବରେ ନ କରି ନିର୍ଭର
ଗୋପାଳ ନିଜେ ଚଳଇ ଘେନି ଗୋରୁ ପଲ ।
ପୌରୁଷ ବଳରେ ସିଦ୍ଧି ଲଭଇ ମାନବ
ପୌରୁଷ ବିନା କାହାର ସ୍ଥିତି ନ ରହିବ ।
ଯେତେ ଚେଷ୍ଟା କଲେ ମଧ୍ୟ ଦୈବକୁ ସାକାର
କେଉଁ କରି ନ ହୋଇବ ଆହେ ଧନୁର୍ଦ୍ଧର ।
ନିରାକାର ସାକାରର ସଂଯୋଗ କିପରି
ସମ୍ଭବି ପାରିବ କହ ଆହେ ରୂପଧାରୀ ?
ଯେତେ ରାଜା, ଋଷି, ସିଦ୍ଧି ସମ୍ପନ୍ନ ଅଛନ୍ତି
ସ୍ୱ ପୁରୁଷକାର ବଳେ ତାହା ଲଭିଛନ୍ତି ।
ପୁରୁଷାର୍ଥ ବଳେ ପ୍ରାଜ୍ଞ ପାଏ ପରଂପଦ
ପୁରୁଷାର୍ଥ ମାନବର ସରବ ସମ୍ପଦ ।
ଶୌର୍ଯ୍ୟ, ବୀର୍ଯ୍ୟ, ବିକ୍ରମରେ ଯେମାନେ ଧୁରିଣ
ଦଇବେ ପ୍ରତୀକ୍ଷା କରିଛନ୍ତି କେତେ ଜଣ ?
ଗଣକ ଦୈବଜ୍ଞ ବୋଲି ଯେମାନେ ବୋଲାନ୍ତି
ଚିରଜୀବୀ ବୋଲି ଅନେକଙ୍କୁ କହିଥାନ୍ତି ।
ଶିରଚ୍ଛେଦନ କରନ୍ତେ ଯଦି ସେ ବଞ୍ଚିବ
ତେବେ ଯାଇଁ ଦୈବ ଥିବା ସତ୍ୟ ବୋଲାଇବ ।
ଦୈବଜ୍ଞ ଯଦି କହନ୍ତି ଏ ପଣ୍ଡିତ ହେବ
ଅଧ୍ୟୟନ ବିନା ଯଦି ତାହା ସମ୍ଭବିବ,
ତେବେ ଜାଣିମ ଦଇବ ସର୍ବ ଶକ୍ତିମାନ
ଦଇବର ଅସ୍ୱୀକାର ହେବ ଯୁକ୍ତିହୀନ ।
ଏହି ବିଶ୍ୱାମିତ୍ର ମୁନି ଦୈବ ନ ମାନନ୍ତି
କ୍ଷତ୍ରୀୟ ଥାଇ ବ୍ରାହ୍ମଣ ହୋଇ ପାରିଛନ୍ତି ।
ପୁରୁଷାର୍ଥ ବଳେ ମୁହିଁ ଆକାଶ ଗମନ
ସିଦ୍ଧିଲାଭ କରିଅଛି ଆହେ ରଘୁରାଣ ।
ମହର୍ଷି ଆଖ୍ୟା ପ୍ରଦାନୀ ଛନ୍ତି ଜ୍ଞାନୀଗଣ
ପୁରୁଷାର୍ଥର ଆଉ କି ଦେବି ମୁଁ ପ୍ରମାଣ ?
ଯେତେ ପ୍ରକାର ବିଭୂତି ଦେଖିଛ ଜଗତେ
ପୁରୁଷାର୍ଥ ଦ୍ୱାରା ଜାଣ ବଳିଷ୍ଠ ସମସ୍ତେ ।
ପୁରୁଷାର୍ଥ ଘେନି ଦୈତ୍ୟବଳ ହେଲେ ଶ୍ରେଷ୍ଠ
ପୁଣି ପଉରୁଷ ବଳେ ଦେବତା ଗରିଷ୍ଠ ।
ଅସୁରଗଣ ନିପାତ କରି ଦେବଗଣ
ରାମରାଜ୍ୟ ଥୋଇଦେଲେ ଧରାବକ୍ଷେ ଜାଣ ।
ଶାନ୍ତି, ମୈତ୍ରୀଧାରା ଝରିଆଡ଼େ ଗଲା ବହି
ସରଗ ବାସୀଏ ଈର୍ଷା କଲେ ଏଥିପାଇଁ ।
କରଣ୍ଡକ ଧରେ ଜଳ ପୁରୁଷାର୍ଥ ବଳେ
ଦଇବ କରଣୀ ଏଥି ନ ରହିଲା ତିଳେ ।
ପିତା ମାତା କୁଟୁମ୍ବଙ୍କ ଭରଣ ପୋଷଣ –
ପରପୀଡ଼ନ ଆବର ଧନ ଉପାର୍ଜନ ।
ଦଇବ କରଣୀ ଏଥି ରହିଲା ବା କାହିଁ
ଦଇବେ ଦାୟୀ କରିବା ଭ୍ରମମାତ୍ର ହୋଇ ।
ମନ କଳ୍ପିତ ଦୈବକୁ କର ହେ ଉପେକ୍ଷା
ଶ୍ରେଷ୍ଠ ପୁରୁଷକାରକୁ କର ହେ ପ୍ରତୀକ୍ଷା ।
ଅଭିଳଷିତ ପଦାର୍ଥ ଲାଭ କରିବାରେ
କୃତକାର୍ଯ୍ୟ ହେବ ନିଶ୍ଚେ ଆହେ ରଘୁବୀରେ ।
ଅଜ୍ଞାନ ସୁଜ୍ଞାନୀ ହୁଏ ପୁରୁଷାର୍ଥ ଘେନି
ଦୈବ ବୋଲି ତେଣୁ କିଛି ନାହିଁ ରଘୁମଣି ।
ମିଥ୍ୟାଭ୍ରମ ତେଜି, ଅନୁସର ସନ୍ଥଜନ
ସତ ଶାସ୍ତ୍ର କାଟିଦେବ ସଂସାର ବନ୍ଧନ ।

ପୁରୁଷାର୍ଥ ବିନା ଦୈବ ବୋଲି କିଛି ନାହିଁ
ପୁରୁଷାର୍ଥର ବିଜୟ ସଦାକାଳେ ହୋଇ ।
ତା ନୋହିଲେ ପାପୀମାନେ ନର୍କ ନ ଜାଣନ୍ତେ
ତପୀ ଲୋକମାନେ ସ୍ୱର୍ଗପଥ ନ ଦେଖନ୍ତେ ।
ପୁରୁଷାର୍ଥ ସିନା ନର୍କ ସ୍ୱର୍ଗର କାରଣ
ମନେ ରଖ ରାଜପୁତ୍ର ଏ ସତ୍ୟ ବଚନ ।
ମିଥ୍ୟା ଭ୍ରମୁ ଜନମିଛି ଏ ଶବ୍ଦ ଦଇବ
ଏହା ଜାଣି ପୁରୁଷାର୍ଥ ସଦା ଆଚରିବ ।
ସତ୍ତ୍ୱଜନ, ସତ ଶାସ୍ତ୍ର ଆଚରିଣ ଜୀବ
ଆତ୍ମପଦ ପରମାର୍ଥ ଲଭିଣ ପାରିବ ।

**ଇତି଼ଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ପରମ ପୁରୁଷାର୍ଥ ବର୍ଣ୍ଣନେ**
**ନାମ ଅଷ୍ଟମ ସର୍ଗଃ ।**

❑

## ନବମ ସର୍ଗଃ
## ପରମ ପୁରୁଷାର୍ଥ

ଏହା ଶୁଣି ରାମଚନ୍ଦ୍ର ପୁଚ୍ଛନ୍ତି ଏସନ
ହେ ମହାନ ! ସର୍ବଜ୍ଞାତା ଅଟନ୍ତି ଆପଣ ।
ଆପଣ କହନ୍ତି ଦୈବ ବୋଲି କିଛି ନାହିଁ
କିନ୍ତୁ ଲୋକ ଉକ୍ତି ଦେବେ ଏମନ୍ତ ଅଛଇ ।
ବ୍ରହ୍ମାକୁ ଦଇବ ବୋଲି ସରବେ ବୁଝନ୍ତି
ଇହଲୋକେ ଗାଉଛନ୍ତି ସଦା ଏହି ଉକ୍ତି ।
ଯାହା କିଛି ଘଟୁଅଛି ତାହା ଦୈବକୃତ
ସମାଧାନ କରି ଏହା କହ ତପୋବନ୍ତ ।
ଦୈବ ଯଦି ନିରର୍ଥକ ଲୋକେ କାହିଁ ପାଇଁ
ଦୈବ, ଦୈବ ବୋଲି ରଟୁ ଅଛନ୍ତି ଏ ମହୀ ?
ଲୋକେ ଯା'କୁ ଦୈବ କହି କିପରି ତା ରୂପ
ଦୟାକରି ଦଇବର ବର୍ଣ୍ଣନ୍ତୁ ସ୍ୱରୂପ ।
କହନ୍ତି ବଶିଷ୍ଠ ମୁନି ଶୁଣ ହେ ରାଘବ
ସବୁ କାର୍ଯ୍ୟର କାରଣ ପୁରୁଷାର୍ଥ ଭାବ ।
ପୁରୁଷାର୍ଥ ବଳେ ଜୀବ; ସର୍ବଫଳ ପାଇ
ସକଳ ଅସାଧ କାର୍ଯ୍ୟ ସାଧି ସେ ପାରଇ ।
ଦଇବ କାହାରି ନୁହେଁ କର୍ତ୍ତା, ଭୋକ୍ତା, ଦାତା
ବିଜ୍ଞମତେ ଦଇବ ଯେ ନୁହେଁ ଫଳଦାତା ।
ଦୈବକୁ ଆଦର ନ କରନ୍ତି ଜ୍ଞାନୀଗଣ
ସେମାନଙ୍କ ମତେ ଦୈବ ଏକଇ କଳ୍ପନ ।

ତେଣୁ ମୁଁ ତୁମ୍ଭଙ୍କୁ କହୁଅଛି ହେ ରାଘବ
ନିଜ ଶୁଭ ଅଶୁଭକୁ ନିଜେହିଁ ଭୋଗିବ ।
ପୁରୁଷାର୍ଥକୁ ଦଇବ ବୋଲି କହିଥାନ୍ତି
ଲୋକମତ-ଦଇବର ନାହିଁ କିଛି ସ୍ଥିତି ।
କର୍ତ୍ତା, କ୍ରିୟା, କର୍ମ ମଧ୍ୟେ ଦୈବ ବୋଲି କିଛି
ନାହିଁ ଏହା ମନେରଖ ଆହେ ରଘୁବଂଶୀ ।
ଦୈବ ବୋଲି ଯେହୁ କହେ ମୂର୍ଖ ତାକୁ ଜାଣ
ଦୈବ ଶବ୍ଦ ଦିଏ ତାର ମୂର୍ଖତା ପ୍ରମାଣ ।
ଆକାଶ ଯେପରି ଶୂନ୍ୟ, ଦଇବ ସେପରି
ତେଣୁ କରି ଦୈବ କିଛି ନକରେ କାହାରି ।
**ପୁରୁଷାକାରରୁ ମିଳେ ଫଳ ଦ୍ୱିପ୍ରକାର**
**ଶୁଭ, ଅଶୁଭ ତହିଁର ଯେମନ୍ତ ବେଭାର ।**
ଅଜ୍ଞ ଲୋକଙ୍କ ମତରେ ଯାହାହିଁ ଦଇବ
ଇଷ୍ଟ ବା ଅନିଷ୍ଟ ପୁରୁଷାର୍ଥ ତା ଜାଣିବ ।
ଯାହା କି ଅବଶ୍ୟମ୍ଭାବୀ ପୁରୁଷାର୍ଥ ବଳେ
ଘଟି ଯାଉଥାଏ ଏହି ଅବନୀ ମଣ୍ଡଳେ,
ଅଚିନ୍ତନୀୟ ଘଟନା ଯାହା କି ଘଟଇ
ଲୋକମତେ ତାହା ଦୈବ ବୋଲି କୁହାଯାଇ ।
ପୁରୁଷକାର ସିଦ୍ଧିରେ ଯାହା ଶୁଭାଶୁଭ
ମୂଢ଼ଙ୍କ ମତରେ ତାହା ପ୍ରାକ୍ତନ ଜାଣିବ ।
ମୋ ମତରେ ଯାହା ନିଜ କର୍ମକୃତ ଫଳ
ଲୋକମତେ ଦୈବ ବୋଲି ମାନ୍ୟଟି ତାହାର ।
ଆଶ୍ୱାସନା ବ୍ୟତିରେକେ ଦୈବ କିଛି ନୁହଁ
ଦଇବର ସିଂହାସନ ଅଜ୍ଞାନ ହୃଦୟ ।
କହୁଛନ୍ତି ରାମଚନ୍ଦ୍ର ଶୁଣସି ମହାନ
'ପ୍ରାକ୍ତନ କର୍ମ ହିଁ ଦୈବ' କହିଲେ ଆପଣ ।
ତାହା ଅଛି, ତାହା ନାହିଁ, କହନ୍ତି ଆପଣ
ଆବର ତା ମିଥ୍ୟା ଭ୍ରମ କହିଗଲେ ପୁଣ ।
କିସ ଅଭିପ୍ରାୟ ଅଛି ତୁମ ଏ କଥନେ
ସବିଶଦ ବିବରଣୀ ଦିଅନ୍ତୁ ଆପଣେ ।
ଆପଣ କହନ୍ତି ଦୈବ ବୋଲି କିଛି ନାହିଁ
ଆକାଶ ସଦୃଶ ଶୂନ୍ୟ ଦଇବ ଅଟଇ ।
ଦୈବ ସିଦ୍ଧ ବୋଲି କହୁ ଅଛନ୍ତି ଆପଣ
ପୁରୁଷାର୍ଥ ଅନ୍ୟ ନାମ ଦଇବର ପୁଣ ।
ଏବେ ସବୁ ତାତପର୍ଯ୍ୟ କହନ୍ତୁ ବୁଝାଇ
ମୋର ସନ୍ଦେହ ସକଳ ଯେହ୍ନେ ଦୂରହୋଇ ।

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ସବିସ୍ତାରେ କହୁଅଛି ସେ ପ୍ରଶ୍ନ ଉତ୍ତର ।
ଦୈବର ଅସ୍ତିତ୍ୱ କିଛି ନାହିଁ ତା ଜାଣିବ
ସକଳ ସଂଶୟ ତୁମ ମନୁ ଅସ୍ତ ଯିବ ।
ଯେତେବେଳେ ଯେଉଁ ଇଚ୍ଛା ଜାତହୁଏ ମନେ
ସେତେବେଳେ ସେହି କର୍ମ ଆଚରନ୍ତି ଜନେ ।
ମନଭାବ, କର୍ମଭାବ ନୁହନ୍ତି ବିଭିନ୍ନ
ମନ କର୍ମ ମଧ୍ୟେ ନିତ୍ୟ ସମ୍ବନ୍ଧ ଏ ଚିହ୍ନ ।
ଏଣୁ ବୁଝିବ ଜୀବର ଅନ୍ତର ବାସନା
କର୍ମରୂପେ ବାହାରକୁ ଦେଖାଦିଏ ସିନା ।
ଗାଈ ପାଇଁ ଇଚ୍ଛାକଲେ ଗାଈ ହିଁ ପାଇବ
ହାତୀ ଯେବେ ଇଚ୍ଛାଥିବ, ହାତୀ ହିଁ ମିଳିବ ।
ଗ୍ରାମ ଗମନର ଇଚ୍ଛା ଯାହାର ଜନ୍ମିବ
ଗ୍ରାମ ଗମନ ତାହାର ନିଶ୍ଚୟ ଘଟିବ ।
ଯାହାର ଯେପରି ବାଞ୍ଛା ସେପରି ଉଦ୍ୟମ
କରି ସେହିପରି ଫଳ ପାଏ ରଘୁନାନ ।
ଏଣୁକରି ଦୈବ ବୋଲି କିଛିମାତ୍ର ନାହିଁ
ଏଥିରୁ ଅଧିକ କିଛି କହି ନ ପାରଇ ।
ପୂର୍ବକୃତ ଶୁଭାଶୁଭ ଦୃଢ଼ ପୁରୁଷାର୍ଥ
ପରିଣାମେ ସୁଖଦୁଃଖ ଏଥି ମଧ୍ୟୁ ଜାତ ।
ତାହାକୁ ଦଇବ ବୋଲି କହେ ଅପଣ୍ଡିତ
ଦୈବ ଯେ ମନ ବିକାର ବୁଝ ରଘୁନାଥ ।
କର୍ମ ପୁରୁଷାର୍ଥ ମଧ୍ୟେ କିଛି ଭେଦ ନାହିଁ
ସୁଖ ଦୁଃଖ ଦେବାପାଇଁ ଦୈବ ଆଉ କାହିଁ ?
ଶାସ୍ତ୍ର ବିରୁଦ୍ଧ କର୍ମ ବା ପାପର ବାସନା
ଯାହା ପୋଷି ଜୀବ ମନେ ହୁଏ ହୃଷ୍ଟ ମନା ।
କିମ୍ପାଇଁ ଆଚରେ ନର ତାହା ମହାମନା
ଶାସ୍ତ୍ରୋଚିତ ତା ଉତ୍ତର ଏବେ ଶୁଣ ସିନା ।
ପୂର୍ବ ଦୃଢ଼-ପୁରୁଷାର୍ଥ କର୍ମ ଯାହା ଥାଇ
ତାହା ଘେନି ଜୀବ ପାପ କର୍ମ ଆଚରଇ ।
ପୂର୍ବ ଶୁଭ-କର୍ମ ଥିଲେ ଶୁଭମାର୍ଗ ଫିଟେ
ପୂର୍ବ ଅଶୁଭ କର୍ମରୁ ଅଶୁଭ ହିଁ ଘଟେ ।
ଭାବିଚିନ୍ତି ଦେଖ ଯାହା ଲୋକମତେ ଦୈବ
କର୍ମ ବିନା ଅନ୍ୟ କିଛି ନୁହେଁ ତା ରାଘବ ।
ପ୍ରାକ୍ତନ ସଂସ୍କାର ଘେନି ମନର ଗଠନ
ମନ ପୁରୁଷାର୍ଥ ମଧ୍ୟେ ନାହିଁ ଭିନ୍ନାଭିନ୍ନ ।

ବାସନା ଘେନି ଜୀବର ମନ ପ୍ରଧାବିତ
ସେହି ବାସନାର ଫଳ ଅବଶେଷେ ପ୍ରାପ୍ତ ।
କର୍ମ ଅନୁସାରେ ଜୀବ ଫଳପ୍ରାପ୍ତ ହୁଏ
ଏଥିରେ ଦୈବ କରଣୀ କିଛି ହିଁ ନ ଥାଏ ।
'କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ମହାମୁନେ
ପ୍ରାକ୍ତନ କର୍ମାନୁସାରେ ଜୀବ ଭବେ ଭ୍ରମେ ।
ସେଥିପାଇଁ ମୁହିଁ ଅବା କିସ କରିବଇଁ
ପୂର୍ବ ବାସନାହିଁ ମୋତେ ଦୀନ କରିଛଇ ।
ପ୍ରାକ୍ତନ କରମ ମୋର ଯେଉଁ ପଥେ ନେବ
ସେହି ପଥଧରି ମୋତେ ଚଳିବାକୁ ହେବ ।
ସେଥିପାଇଁ ଦୁଃଖ କଲେ କିସ ଲାଭ ହେବ
ଏବେ କି କରିବି ମୋତେ କହ ଗୁରୁଦେବ' ।
'କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ପୁରୁଷାର୍ଥ ମାନି ଚଳ ହେବ ପୂର୍ଣ୍ଣକାମ ।
ପରମ ଶ୍ରେୟ ଲଭିବ ଏହା ନିଃସନ୍ଦେହ
ଯୁଗେ ଯୁଗେ ପୁରୁଷାର୍ଥ ଲଭିଛି ବିଜୟ ।
ପୂର୍ବ ଅର୍ଜିତ ସୁଦୃଢ଼ ବାସନାର ବଳେ
ଜୀବ ବିଚରୁଣ ଥାଏ ଏହି ମଣ୍ଡଳେ ।
ଶ୍ରେଷ୍ଠ ମାନବ ନିଜର ପୁରୁଷାର୍ଥ ବଳେ
ପୂର୍ବ ମଳିନ ସଂସ୍କାର ଶୁଦ୍ଧ କରିପାରେ
ତେଣୁ ସର୍ବ ମଳିନତା ତାର ଦୂରୀଭୂତ
ପୁରୁଷାର୍ଥ ବଳ ଏବେ ବୁଝ ରଘୁନାଥ ।
ପୂର୍ବରୁ ସଞ୍ଚିତ ଶୁଭ ଅଶୁଭ ସଂସ୍କାର
କିପରି ଜାଣିବ ତାହା ଶୁଣ ରଘୁବୀର ।
ଶାସ୍ତ୍ର ବିରୁଦ୍ଧ ମାର୍ଗକୁ ଯାର ଚିତ୍ତ ଯିବ
ଶାସ୍ତ୍ର ଅନୁକୂଳ ମାର୍ଗ ଯେବେ ନ ବରିବ ।
ତେବେ ବୁଝିବ ପୂର୍ବର କର୍ମ ଯାହା ଅଛି
ସେ ସବୁ ମଳିନପୂର୍ଣ୍ଣ ଜାଣ ରଘୁବଂଶି ।
ସନ୍ଥ ବାକ୍ୟ ଅନୁସରି ଚଳୁଛି ଯେ ଜନ
ଆଚରଣ କରୁଅଛି ଶାସ୍ତ୍ର ଶିକ୍ଷାମାନ ।
ସାଂସାରିକ ମାର୍ଗ ପ୍ରତି ନୁହେଁ ସେ ଆସକ୍ତ
ତା ପୂର୍ବ ସୁକର୍ମ ଫଳ ତାହା ରଘୁନାଥ ।
ଏବେ ମନଦେଇ ଶୁଣ ଯାହା ମୁଁ କହଇ
ଉଭୟ ସିଦ୍ଧି ତୁମ୍ଭର ଛନ୍ତି ରଘୁସାଇଁ ।
ବିଶୁଦ୍ଧ ଅଟଇ ତୁମ ପୂର୍ବର ସଂସ୍କାର
ସନ୍ଥ, ଶାସ୍ତ୍ର ବାକ୍ୟ ଯେଣୁ କରୁଛ ଆଦର ।

ଆତ୍ମପଦ ତୁମେ ଶୀଘ୍ର ପ୍ରାପତ ହୋଇବ
ଚୁମ୍ବକ ଲୁହାକୁ ଶୀଘ୍ର ଟାଣି ଘେନିଯିବ ।
ଶୁଭ ମାର୍ଗେ ତୁମ ଚିତ୍ତ ଯେଣୁ ଅଛି ସ୍ଥିର
ପୁରୁଷାର୍ଥ ବଳେ ହେବ ଭବସିନ୍ଧୁ ପାର ।
ହେ ରାମ ତୁମ ଚୈତନ୍ୟ ନୁହଇଟି ଜଡ଼
ଏବେ ସ୍ୱୀୟ ପୁରୁଷାର୍ଥ ବଳ ଆଶ୍ରେକର ।
ମୋର ଆଶୀର୍ବାଦ ଘେନି ବ୍ରହ୍ମବିଦ୍ୟା ସାଧ
ତୁମର ଚେଷ୍ଟାରେ କିଛି ନ ହେଉ ଅସାଧ ।
ପୂର୍ବ ସଂସ୍କାର ଯାହାର ମଳିନତା ପୂର୍ଣ୍ଣ
ସନ୍ଥ, ସତ୍ ଶାସ୍ତ୍ରବଳରେ ହୋଇଛି ଖଣ୍ଡନ ।
ସେହି ଏକା ଶ୍ରେଷ୍ଠ ବ୍ୟକ୍ତି ଜାଣ ହେ ଶ୍ରୀରାମ
ଏ ସଂସାରେ ସର୍ବ ମାର୍ଗେ ସେହୁ ପାରଙ୍ଗମ ।
ସେହି ଏକା ମୂର୍ଖ ଜୀବ ସ୍ୱୀୟ ପୁରୁଷାର୍ଥ
ତେଜି ଯେ ଭବ ବନ୍ଧନୁ ନୁହଇ ମୁକତ ।
ସେହି ମଳିନତା ପୂର୍ବ ପାପକର୍ମ ଫଳେ
ସହଚର ରୂପେ ରହେ ତାର ସଙ୍ଗତରେ ।
ପୁରୁଷାର୍ଥ ତେଜ୍ୟାକରି, କିଛି ନ ଦେଖଇ
ଅନ୍ଧରୂପେ ଏଣେ ତେଣେ ଅଣ୍ଡାଳି ବୁଲଇ ।
ଶ୍ରେଷ୍ଠ ପୁରୁଷର ରାମ ! ପ୍ରଥମ କର୍ତ୍ତବ୍ୟ
ପଞ୍ଚ ଇନ୍ଦ୍ରିୟଙ୍କୁ ସର୍ବ ପ୍ରଥମେ ଜିତିବ
ଶାସ୍ତ୍ରୋଚିତ ବିଧିମତେ ବଞ୍ଚାଇଣ ତାଙ୍କୁ
ଦୃଢ଼ କରୁଥିବ ଶୁଭ ବାସନାମାନଙ୍କୁ ।
ଅଶୁଭ ବାସନା ଯେବେ ଦୂରେ ବରଜିବ
ଶ୍ରେଷ୍ଠ ବ୍ୟକ୍ତି ବୋଲି ତେବେ ପ୍ରଶଂସା ପାଇବ ।
ସତ, ଅସତ, କାମନା ଦୁହେଁ ବର୍ଜନୀୟ
ମହା ଆଦର୍ଶ ଏ ପଥ ଜାଣ ରଘୁରାୟ ।
ତଥାପି ସତ ବାସନା କରିଣ ଏକତ୍ର
ତେଜି ପକାଇବା ଯେଉଁ ବାସନା ଅସତ ।
ଶୁଦ୍ଧ ବାସନାଙ୍କ ବଳେ ଅନ୍ତଃ ଶୁଦ୍ଧହେଲେ
ସତ୍ ଶାସ୍ତ୍ର ବିଚରଟି ଉପୁଜିବ ଭଲେ ।
ହୃଦୟକମଳ ପତ୍ରେ ତାହା ଲେଖି ଦେଲେ
ଜୀବ ଆତ୍ମଜ୍ଞାନପ୍ରାପ୍ତ ହୋଇଥାଏ ହେଲେ ।
ସେହି ଜ୍ଞାନବଳେ ଜୀବ ପରମାତ୍ମା ଭେଟ
ଅବଶ୍ୟ, ଲାଭକରିବ ଦଶରଥ ଝଟ ।
କର୍ମ, ଜ୍ଞାନ ଦୁହେଁଯାକ ହୋଇବେ ମିଳିତ
ଦ୍ୱୈତଭାବ ଦୂରହୋଇ ରାଜିବ ଅଦ୍ୱୈତ ।
ସେହି ଶୁଦ୍ଧ-ଅଦ୍ୱୈତ ଯେ ସାକ୍ଷାତ୍ ପରମାତ୍ମା
ସ୍ୱୟଂ ପ୍ରକାଶ ପାଇଣ ଦେଖାଇବେ ସତ୍ତା ।
ତେଣୁ ତୁମେ ହେ ଶ୍ରୀରାମ ପୁରୁଷାର୍ଥ ବର
ସନ୍ଥବାକ୍ୟ, ସତ୍‌ଶାସ୍ତ୍ର ଯେ ପାବଛ ତାହାର ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ ।
ପରମ ପୁରୁଷାର୍ଥ ବର୍ଣ୍ଣନେ
ନାମ ନବମ ସର୍ଗଃ ।**



## ଦଶମ ସର୍ଗଃ

## ବଶିଷ୍ଠଙ୍କ ଉପଦେଶ

କହନ୍ତି ବଶିଷ୍ଠ ମୁନି ରାମଚନ୍ଦ୍ର ଶୁଣ
ମୋ ବଚନ ତୁମ୍ଭପାଇଁ ହେବ ବନ୍ଧୁସମ ।
ମିତ୍ରପରି ତୁମ୍ଭଙ୍କୁ ଏ ଆପଦୁ ତାରିବ
ସମ୍ପଦେ ବିପଦେ ସଦା ଛାୟାପରି ଥିବ ।
ମୋକ୍ଷର ଉପାୟ ଏବେ କହୁଅଛି ଶୁଣ
ପୁରୁଷାର୍ଥ ବଳେ ତାହା କର ହେ ସାଧନ ।
ପରମାର୍ଥ ସିଦ୍ଧି ତେବେ ଲଭିବ ହେ ରାମ
ଅଳୀକ ନମଣ କେଭେଁ ମୋହର ବଚନ ।
ଏ ଚିତ୍ତ ସର୍ବଦା ଧାଏଁ ଭୋଗ ଅନୁସରି
ଭୋଗ-ଖାଇରେ ତାହାକୁ ନ ଦିଅ ଅଜାଡ଼ି ।
ବିଷ ସମ ମଣି, ଭୋଗ ବର୍ଜନ କରିବ
ଶେଷରେ ସେ ତ୍ୟାଗ ତୁମ ଶ୍ରେଷ୍ଠ ମିତ୍ର ହେବ ।
ତ୍ୟାଗ କରି ପୁନର୍ବାର ଗ୍ରହଣ ନ କଲେ
ଭାଗ୍ୟ ତପନ ଉଦୟ ହୋଇବ ସତ୍ୱରେ ।
ମୋକ୍ଷ ଉପାୟ ସଂହିତା ଶୁଣ ହେ ଶ୍ରୀରାମ
ଏକାଗ୍ର ଚିତ୍ତେ ଭାବିଲେ ଭେଟହେବେ ବ୍ରହ୍ମ ।
ପ୍ରଥମରେ ଶମ, ଦମ, ଅବଲମ୍ବ ଚଳ
ସେହିମାନଙ୍କ ସ୍ୱରୂପ ବୁଝ ରଘୁବୀର ।
ସର୍ବତୋଭାବେ ସଂସାର ବାସନା ତେଜିବ
ଉଦାର ଭାବରେ ସଦା ତୃପତ ରହିବ ।
ଶମ ଗୁଣ ବୋଲି ଯାକୁ କହନ୍ତି ବିବୁଧେ
ଦମ ଗୁଣ ଯାହା ଏବେ ଶୁଣ ରଘୁନିଧେ ।
ବାହ୍ୟ ଇନ୍ଦ୍ରିୟମାନଙ୍କୁ କବଳେ ରଖିବ
ଯେସନ ତହିଁରୁ ପଦଚ୍ୟୁତ ନ ହୋଇବ ।
ଶମ ଦମ ଉଦୟରେ ଅଟଳ ରହିଲେ
ପରମ ତତ୍ତ୍ୱ ବିଚର ସ୍ୱତଃ ଆସେ ଭଲେ ।

ବିବେକ ପରିମାର୍ଜ୍ଜିତ ସୁବିଚାର ବଳେ
ଆତ୍ମ ପଦ ପରାପତ ତହୁଁ ସୁଗମରେ ।
ଆତ୍ମପଦ ପ୍ରାପ୍ତି ହେଲେ ଦୁଃଖ ଯାଏ ଅସ୍ତ
ଅବିନାଶୀ ସୁଖ ଆସି ହୁଏ ଉପସ୍ଥିତ ।
ବ୍ରହ୍ମତତ୍ତ୍ୱ ସ୍ୱ ପ୍ରକାଶ ସ୍ୱତଃସିଦ୍ଧି ଜାଣ
ସର୍ବତ୍ର ସଚ୍ଚିଦାନନ୍ଦ ରୂପେ ବିଦ୍ୟମାନ ।
ଏପରି କୌଣସି ସ୍ଥାନ ନାହିଁ ଏ ଜଗତେ
ବ୍ରହ୍ମସତ୍ତା ଯହିଁ ନ ପ୍ରକାଶେ ବିଧିମତେ ।
ଲୋକମତେ ଭବିତବ୍ୟ ଯାହା ବୋଲାଯାଏ
ନିୟତି ନାମଟି ତାର ଅନ୍ୟମତ କହେ ।
କାର୍ଯ୍ୟର କାର୍ଯ୍ୟତ୍ୱ, କାରଣର କାରଣତ୍ୱ
ନିୟତି ନାମ ଏହାକୁ ଦେଇଛି ଜଗତ ।
ନିଜର ଶ୍ରେୟ ସାଧନ କରିବା ନିମିତ୍ତ
ପୁରୁଷାକାର ବରଣ କରିବା ଉଚିତ ।
ବେଦସାର ସଂହିତା ମୁଁ କରୁଛି କୀର୍ତ୍ତନ
ତୁମ ମୋକ୍ଷ ପାଇଁ ଜାଣ ହେ ରଘୁନନ୍ଦନ ।
ଐହିକ ବା ପାରତ୍ରିକ ସର୍ବ କାମନାର
ପୁରୁଷାର୍ଥ ଫଳ ଦେବ ଆହେ ରଘୁବୀର ।
ଏହା ଶୁଣି ତୁମ ଦୁଃଖ ସୁଖ ଯିବେ ନାଶ
ପରଲୋକେ ମହାନନ୍ଦ ଲଭିବ ଅବଶ୍ୟ ।
ବେଦ ଶାସ୍ତ୍ରାଦିର ପୂର୍ବାପର ବାଣୀମାନ
ସୁବିଚାର ଚିତ୍ତେ ସବୁ କରହେ ଚିନ୍ତନ ।
ଅଦ୍ୱିତୀୟ ବ୍ରହ୍ମତତ୍ତ୍ୱେ ନିବେଶିଣ ଚିତ୍ତ
ଅନୁସନ୍ଧାନ କର ହେ ସଦା ଆତ୍ମତତ୍ତ୍ୱ ।
ଯେ ମୋକ୍ଷ ବାଣୀକୁ ଶୁଣି ସୁବିବେକ ଜନ
ଶାନ୍ତି ଲଭି ସର୍ବ ଦୁଃଖ କରନ୍ତି ମୋଚନ,
କହୁଅଛି ତୁମ୍ଭ ଆଗେ ସେହି ମୋକ୍ଷ କଥା
ମନଯୋଗ ସହ ଶୁଣ ଆହେ ମହାମତା ।
ଯାହା କହି ଯାଇଛନ୍ତି ବ୍ରହ୍ମା ଏଥିପୂର୍ବେ
ସେ ସବୁ ଶ୍ରବଣ କର ମନଦେଇ ଏବେ ।
'ଏକାଦ୍ୱୟ ସର୍ବାଧାର ଚଇତନ୍ୟ ଆତ୍ମା
ଶୁଦ୍ଧ-ଚିତ୍ତାକାଶେ ପ୍ରତିଭାତ ଯା'ର ସତ୍ତା
ଅନନ୍ତ, ଅସୀମ ଯେହୁ କଳ୍ପନା ଅତୀତ
ନିର୍ବିକାର, ଏକରୂପ ସମାନ ସର୍ବତ୍ର ।
ସେହି ପରାତ୍ପର ପରମାତ୍ମାଠାରୁ ଜାତ
ସର୍ବବ୍ୟାପୀ ବିଷ୍ଣୁ ଯେହୁ ବୋଲନ୍ତି ବିରାଟ ।
ତା ନାଭିକମଳୁ ସେହି ପରମେଷ୍ଠି ବ୍ରହ୍ମା
ଜନ୍ମଲଭି ସୃଷ୍ଟିକ୍ରିୟା ପ୍ରାରମ୍ଭେ ମହାତ୍ମା ।
ସେ ପଦ୍ମ କର୍ଣ୍ଣିକା ଅଟେ ସୁମେରୁ ପର୍ବତ
ଦିଗଗଣ ସେ ପଦ୍ମର ଦଳରୂପେ ଖ୍ୟାତ ।
ତାରା, ଚନ୍ଦ୍ର, ଗ୍ରହ, ନକ୍ଷତ୍ରାଦି ତା କେଶର
ତାଙ୍କରି ସର୍ଜ୍ଜନା ଏହି ବିଶ୍ୱ ଚରାଚର ।
ସେ ସୃଷ୍ଟିର ଏକ ପାର୍ଶ୍ୱେ ଜମ୍ବୁଦ୍ୱୀପ ସ୍ଥିତ
ତାହାର ଏକ କୋଣରେ ଏ ଦେଶ ଭାରତ ।
ଏ ଜୀବୀଜଗତ ସବୁ ତାଙ୍କରି ସର୍ଜ୍ଜନ
ଆଧି ବ୍ୟାଧି ଜରାଜୀର୍ଣ୍ଣ ଜୀବ ଅକଳନ ।
ସେ ଯେବେ ଦେଖିଲେ ତାଙ୍କ ଜୀବ ସୃଷ୍ଟି ଏଥି
ଭାବେ ଅଭାବେ ସର୍ବଦା ବିଷର୍ଣ୍ଣ ରହନ୍ତି ।
ଜନ୍ମ ମରଣରେ ସଦା ହେଉଛନ୍ତି ଗ୍ରସ୍ତ
ପୁଣି ସଦା ନାନା ଉତ୍ପାତେ ପ୍ରପୀଡ଼ିତ ।
କ୍ଷଣାୟୁ ବିଳାସ ବ୍ୟସନରେ ଦ୍ରବିଭୂତ
ଦୁଃଖାନଳେ ଦଗ୍ଧ ହୁଏ ସଦା ତାଙ୍କ ଚିତ୍ତ ।
ଦୟାରେ ତରଳି ଗଲେ କମଳ ଆସନ
ପୁତ୍ରମାନଙ୍କ ଦୁର୍ଦ୍ଦଶା ଏସନ ଦେଖିଣ ।
'ଏ ଭବ ସାଗରୁ ପୁତ୍ର ପୁତ୍ରାଦିଏ ମୋର
କି ଉପାୟ ଅବଲମ୍ବି ଲଭିବେ ନିସ୍ତାର' ?
କ୍ଷଣକାଳ ମୌନ ରହି ଉପାୟ ଚିନ୍ତିଲେ
ତପ, ଧର୍ମ, ଦାନ, ସତ୍ୟ, ତୀର୍ଥ ନିର୍ଦ୍ଧାରିଲେ ।
ତପବଳେ ପ୍ରାଣୀମାନେ ସ୍ୱର୍ଗ ସୁଖ ପାନ୍ତି
ତପ ଫଳ ଭୋଗୀ ପୁଣି ମର୍ତ୍ତ୍ୟେ ଜନମନ୍ତି ।
ଏହା ଦେଖି ପିତାମହ ଦୁଃଖିତ ହୋଇଣ
ପୁତ୍ରଙ୍କୁ କହିଲେ ଆରେ ବାବା-ଏବେ ଶୁଣ ।
ସତ୍ୟଠାରୁ ଧର୍ମ ଆଉ ନାହିଁ ଏ ଜଗତେ
ସତ୍ୟ ଆଚରଣ କର ଏବେ ବିଧି ମତେ ।
ସତ୍ୟ ବଚନର ବଳେ ସ୍ୱର୍ଗ କିଛି ଦିନ
ସୁଖ ଭୋଗକରି ପୁଣି ମର୍ତ୍ତ୍ୟେ ଆଗମନ ।
ପୁନର୍ବାର ପୁତ୍ରଙ୍କର ମର୍ତ୍ତ୍ୟେ ଦୁଃଖ ଦେଖି
ଦାନ, ତୀର୍ଥ କରିବାକୁ ବୋଲେ ଅଷ୍ଟ ଆଖି ।
ଦାନ, ତୀର୍ଥ ସେବାଫଳେ ପୁଣ୍ୟେଲୋକେ ଯାଇ
ଅଲୌକିକ ସୁଖଭୋଗ କଲେ ପୁତ୍ର ତହିଁ ।
ଦାନ ତୀର୍ଥ ଫଳ ଯହୁଁ ଆସିହେଲା ଶେଷ
ପୁନର୍ବାର ଜନମିଲେ ଆସି ମର୍ତ୍ତ୍ୟ ଦେଶ ।

ପୁଣି ସେହି ଆଧି-ବ୍ୟାଧି ସବୁଙ୍କୁ ଘାରିଲା
ବ୍ରହ୍ମାଙ୍କ ନୟନ ବାରି ଦେଖି ନ ସହିଲା ।
ତେଣୁ ପିତାମହ ମନେ କରନ୍ତି ବିଚାର
ଇହଧାମ ଦୁଃଖୁ ପୁତ୍ରେ କେହ୍ନେ ହେବେ ପାର' ।
ବଶିଷ୍ଠ ବୋଲନ୍ତି ଶୁଣ ଆହେ ରଘୁବୀର
ବ୍ରହ୍ମାଙ୍କ ମନରୁ ଘାରିଛଇ ଏ ବିଚାର ।
ଜୀବନ ମରଣ ଦୁଃଖ, ପୁତ୍ରମାନଙ୍କର
ଆତ୍ମଜ୍ଞାନ ହିଁ ପରମ ଔଷଧି ତାହାର ।
ସେହି ମହାମହୌଷଧି ଲଭିବାର ପାଇଁ
ଧ୍ୟାନରେ ମଗନ ହେଲେ ତେଣୁ ସୃଷ୍ଟି ସାଇଁ ।
ଧ୍ୟାନେ ମଗ୍ନବେଳେ ସେହି ତତ୍ତ୍ୱଜ୍ଞାନ ଜାଣ
ମୂର୍ତ୍ତିମନ୍ତ ହୋଇ ଉଭା ତାଙ୍କ ସନ୍ନିଧାନ ।
'ମୁହିଁ ତତ୍ତ୍ୱଜ୍ଞାନ ଅଟେ ବ୍ରହ୍ମାଙ୍କ ସମାନ
ବ୍ରହ୍ମାଙ୍କ ସକଳ ଚିହ୍ନ ମୋଠି ବିଦ୍ୟମାନ ।
ତାଙ୍କ ହସ୍ତେ କମଣ୍ଡଲୁ ଯେସନ ବିରାଜେ
ତେସନ ମୋର ହସ୍ତରେ କମଣ୍ଡଳୁ ରାଜେ ।
ପିତାମହ ଗଳେ ଶୋଭେ ରୁଦ୍ରାକ୍ଷ ଯେସନ
ଅବିକଳ ମୋର କଣ୍ଠେ ବିରାଜେ ତା ପୁଣ ।
ମୃଗଛାଲ ହୋଇଥାଏ ତାଙ୍କ ଆଚ୍ଛାଦନ
ମୋ ଶରୀର ବିଭୂଷିତ ମୃଗଛାଲେ ଜାଣ ।
ଶୁଦ୍ଧଜ୍ଞାନେ ପରିପୂର୍ଣ୍ଣ ଶରୀର ତାଙ୍କର
ବିଶୁଦ୍ଧ ଜ୍ଞାନ ଅଟଇ ମୋର ଏ ଶରୀର ।
ଜଗତର ମାୟାମୋହ ମୋତେ ନ ଗ୍ରାସଇ
ଯଦି କେବେ ଗ୍ରାସେ ସ୍ୱପ୍ନବତ ତା ଲାଗଇ' ।
ବ୍ରହ୍ମା ବିଚାରନ୍ତି 'ଜୀବ କଲ୍ୟାଣ ନିମିତ୍ତ
ଏହାକୁ ମୁଁ ସରଜିଲି, କେଡ଼େ ସୁସଜ୍ଜିତ ।
ପରନ୍ତୁ ବିଶୁଦ୍ଧଜ୍ଞାନ ସ୍ୱରୂପ ସେ ଅଟେ
ଏହାର ବ୍ୟବହାର ମୁଁ କରିବି କେମନ୍ତେ ?
ଅଜ୍ଞାନ ମାର୍ଗର କତିପୟ ଉପଦେଶ
ଦେଇ ଅଜ୍ଞାନ କରିବ ତାହାଙ୍କୁ ଅବଶ୍ୟ ।
ବାଦାନୁବାଦରୁ ପ୍ରଶ୍ନୋତ୍ତର ଉପୁଜିବ
ତେବେ ଯାଇଁ ସତ୍ୟ ମିଥ୍ୟା ପ୍ରମାଣ ମିଳିବ' ।
'ସେ କାରଣୁ ଜୀବଙ୍କର ସୁକଲ୍ୟାଣ ପାଇଁ
କୋଳେ ବସାଇଲେ ମୋତେ ସାବିତ୍ରୀଙ୍କ ସାଇଁ ।
ମୋ ମୁଣ୍ଡେ ହାତ ବୁଲାନ୍ତେ ମୋ ଦେହ ଉଷ୍ମତା
ଚନ୍ଦ୍ରମା କିରଣ ସମ ଲଭେ ଶୀତଳତା ।

ଦୁଇ ହଂସ ମଧ୍ୟେ ଯେହ୍ନେ ହୁଏ ବାର୍ତ୍ତାଳାପ
ଆମ୍ଭ ଦୁହିଁଙ୍କ ମଧ୍ୟରେ ଲାଗିଲା ଆଳାପ' ।
'ଜନ କଲ୍ୟାଣ ନିମନ୍ତେ ଆରେ ପୁତ୍ରମଣି
ଅଜ୍ଞାନକୁ ମାନିନିଅ ଜ୍ଞାନୀଙ୍କ ଅଗ୍ରଣୀ ।
ଶ୍ରେଷ୍ଠ ପୁରୁଷ ନିକୃଷ୍ଟ ଜନଙ୍କ ନିମିତ୍ତ
ଅଜ୍ଞାନକୁ ଅଙ୍ଗୀକାର କରିଥାନ୍ତି ସେତ ।
ଯେତେ ଶୁଭ୍ର ହୋଇଥାଉ ସେ ରଜନୀକାନ୍ତ
ଶଶା ଘେନି ସ୍ୱୀୟ ଅଙ୍କ ହୁଏ କଳଙ୍କିତ ।
ତୁମ୍ଭର ଚପଳ ଚିତ୍ତ କିଛିକାଳ ପାଇଁ
ଅଜ୍ଞାନରେ କଳଙ୍କିତ ହେଉ ମୁଁ ଇଛଇ' ।
ଏହିପରି ବ୍ରହ୍ମା ମୋତେ ଆଦେଶ ଦିଅନ୍ତେ
ବିଶୁଦ୍ଧ ଜ୍ଞାନ ମୋ ଲୋପହୁଏ ଅଦଭୂତେ ।
ନିର୍ମଳ ସ୍ୱରୂପ ମୋର ହୁଏ ଅସ୍ତମିତ
ଶୋକ ଦୈନ୍ୟ ଦୁଃଖର ମୁଁ ହେଲି କବଳିତ ।
ସ୍ୱତଃ-ଜାତ ଆତ୍ମତତ୍ତ୍ୱ ମୋର ଯାହାଥିଲା
ଅବିଳମ୍ବେ ତାହା ମୋର ମନୁ କେଣେ ଗଲା ।
ନଗଣ୍ୟ ଜୀବ ପରାଏ ମୁହିଁ ବିଚରିଲି
ଭ୍ରାନ୍ତି ମାୟାଗ୍ରସ୍ତ ହୋଇ ଦୁଃଖରେ ସଢ଼ିଲି ।
ସେ ଅଜ୍ଞାନ ଅନ୍ଧକାର କାହୁଁ ଘୋଟିଆସି
ମୋ ହୃଦକମଳ ଦେଶ ମାଡ଼ିଲାକ ବସି ।
ଏହିପରି ଚିନ୍ତାରେ ମୁଁ ମୌନ ହୋଇଥାଏ
ଏ ଦୁର୍ଦ୍ଦଶା ନ ରହିଲା ବହୁକାଳ ଯାଏ ।
ମୋ ଦୁଃଖ ଦେଖିଣ ପିତା ବୋଲନ୍ତି ଏସନ
କିମ୍ପାଇଁ ଏଡ଼େ ବ୍ୟଥିତ ହେଉରେ ନନ୍ଦନ ?
ମୋତେ ପଚାରି ବୁଝିଲେ ଦୁଃଖ ଯିବ ତୋର
ଅତୁଳ ସୁଖର ପାତ୍ର ହେବୁରେ କୁମର ।
"ଏହି ଦୁଃସହ ଯନ୍ତ୍ରଣା ଜୀବଧାରୀଙ୍କର
କେଉଁଠୁ ଆସିଛି କହ ମୋତେ ହେ ପିଅର ?
କେଉଁ ଉପାୟରେ ତାର ହେବ ଉପଶମ
ଦୟାକରି ତାହାସବୁ କରନ୍ତୁ ବର୍ଣ୍ଣନ" ।
ଆହେ ରାମ ! ଯେବେ ମୁହିଁ ପୁଛିଲି ଏ ପ୍ରଶ୍ନ
ଅତି ଶରଧାରେ ପିତା କଲେ ତା ବର୍ଣ୍ଣନ ।
ତାହାବଳେ ଅଜ୍ଞାନ ମୋ ହୋଇଲା ବିନଷ୍ଟ
ପ୍ରତିଭାତ ହେଲା ମୋତେ ଯାହା କି ମୋ ଇଷ୍ଟ ।
ସୂର୍ଯ୍ୟୋଦୟେ ତମ ଯେହ୍ନେ ଲଭଇ ବିନାଶ
ବାରମ୍ବାର ମଜା ହେଲେ ନିର୍ମଳ ଆଦର୍ଶ ।

ମୁହିଁ ମଧ୍ୟ ସେହିପରି ହୋଇଲି ବିଶୁଦ୍ଧ
ପିତାଙ୍କୁ ବଳିଲି ମୁହିଁ ଲଭି ଆତ୍ମବୋଧ ।
ଜମ୍ବୁ ଦ୍ୱୀପ ଯିବାପାଇଁ ପିତା ଆଦେଶିଲେ
ଅଷ୍ଟ ପ୍ରଜାପତି ମଧ୍ୟେ ମୋତେ ସ୍ଥାନ ଦେଲେ ।
"ଯେତେ ଜୀବଧାରୀ ତହିଁ କରନ୍ତି ନିବାସ
ଉପଦେଶ ଦେଇ ତାଙ୍କ ଅଜ୍ଞାନ ବିନାଶ ।
ସଂସାର ସୁଖ ଭୋଗରେ ଇଚ୍ଛାଥିବ ଯାର
କର୍ମ ମାର୍ଗ ପାଇଁ ଯୋଗ୍ୟ ଜାଣ ସେ କୁମର ।
କର୍ମ ଉପଦେଶେ ସ୍ୱର୍ଗ ସୁଖ ସେ ଲଭିବେ
ଧର୍ମ-ଜଗତରେ ଧର୍ମ-ଧ୍ୱଜା ଉଡ଼ାଇବେ ।
ଯାହାର ସଂସାର ପ୍ରତି ବିରକ୍ତି ଆସିଛି
ଆତ୍ମପଦ ଲଭିବାରେ ଇଚ୍ଛା ଜନମିଛି,
ଜ୍ଞାନ ଉପଦେଶ ତାଙ୍କୁ ଦେବାର ଉଚିତ
ଆତ୍ମପଦ ମାର୍ଗ ତାର ହେଉ ବିସ୍ତାରିତ" ।
"ଆହେ ରାମ ଏହିପରି ମୋର ଆଗମନ
ଆବର ମୋର ଉତ୍ପତ୍ତି ଏପରିଟି ଜାଣ ।
ପିତ୍ରାଦେଶେ ଉପଦେଶ ପ୍ରଦାନିବା ପାଇଁ
ହେ ରାମ ! ମୁହିଁ ସର୍ବଦା ଜାଗ୍ରତ ଅଛଇ ।
ଯେତେଦିନଯାଏ ଉପଦେଶ ନେବା ପାଇଁ
ଶ୍ରୋତୃବର୍ଗ ମିଳୁଥିବେ ରହିଥିବି ମୁହିଁ ।
ଅନ୍ୟକିଛି କାର୍ଯ୍ୟ ମୋର ନାହିଁ ଏ ଜଗତେ
ସତ୍ୟ ସତ୍ୟ ତିନିବାର ଶୁଣ ମହାମତେ ।
ଯଦି ବା ରହିଛି ମୁହିଁ ସେହି କାର୍ଯ୍ୟ ପାଇଁ
ତଥାପି ମୋ ମନ ଦେହେ ସଂପୃକ୍ତ ନ ଥାଇ ।
ଏ ଜଗତେ ରହିଲେ ହେଁ ଏହି ଦେହ ବହି
ତଥାପି ପୂର୍ଣ୍ଣ ନିର୍ଲିପ୍ତ ସବୁଠିଁ ଯେ ରହି ।
ଈଶ୍ୱର ଆଜ୍ଞାରେ ସବୁ କରୁଅଛି ମୁହିଁ
ସଦା ନିର୍ଲିପ୍ତ ରହିଛି, ଆଗ୍ରହ ମୋ ନାହିଁ ।
ଫଳତଃ ମୁଁ ବାସ୍ତବରେ କିଛି କରୁ ନାହିଁ
ନିଷ୍କାମ ମୁଁ ନିଷ୍କାମନା ସଦା ବରିଛଇଁ" ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ବଶିଷ୍ଠ ଉପଦେଶ ବର୍ଣ୍ଣନେ**
**ନାମ ଦଶମ ସର୍ଗଃ ।**



## ଏକାଦଶ ସର୍ଗଃ

## ବଶିଷ୍ଠଙ୍କୁପଦେଶ

ଶୁଣ ରାମ ତୁମ ପୂର୍ବ ସୁକୃତର ଫଳେ
ପରମ ଜ୍ଞାନ ଶ୍ରବଣେ ଇଚ୍ଛା ତୁମ ବଳେ ।
"ତାହା ଶୁଣ ରାମଚନ୍ଦ୍ର କହନ୍ତି ଏସନ
ଦୟା ପରବଶ ହୋଇ କହ ତପୋଧନ
ଜ୍ଞାନାବତରଣ ପାଇଁ ବ୍ରହ୍ମା କି କାରଣ
ପ୍ରବୃତ୍ତ ହୋଇଲେ ଲୋକ ସୃଷ୍ଟି ପରେ ପୁଣ ?
ବ୍ରହ୍ମ-ଜ୍ଞାନରୁ କିପରି ଅନନ୍ତ ଜୀବର
ଚିତ୍ତଶୁଦ୍ଧି ଘଟେ, ଘଟୁଅଛି ନିରନ୍ତର" ?
କହନ୍ତି ବଶିଷ୍ଠ ଶୁଣ ହେ ରଘୁ ନନ୍ଦନ
ଯାହା ପୁଚ୍ଛାକଲ ଏବେ ମନ ଦେଇ ଶୁଣ ।
ଆତ୍ମତତ୍ତ୍ୱ ପ୍ରତିଭାତ ଜ୍ଞାନରୂପ ଧରି
ସେହି ଜ୍ଞାନ ବ୍ରହ୍ମରୂପେ ସର୍ବତ୍ର ସଞ୍ଚରି ।
ସାଗର ଜଳରୁ ଢେଉ ଉଠଇ ଯେପରି
ପରମ ବ୍ରହ୍ମରୁ ବ୍ରହ୍ମା ଜନମ ସେପରି ।
ଆତ୍ମତତ୍ତ୍ୱ ସ୍ଫୁରଣରୁ ବ୍ରହ୍ମା ଜାତ ହୁଏ
ତେଣୁ କରି ସ୍ୱୟମ୍ଭୁ ଯେ ବୋଲାନ୍ତି ବ୍ରହ୍ମାଏ ।
ଏହି ସମ୍ପୂର୍ଣ୍ଣ ଜଗତ କରି ଉତପନ୍ନ
ତିନିକାଳ ସରଜିଲେ ସାବିତ୍ରୀ ରମଣ ।
କେତେକାଳ ଗତେ କଳିଯୁଗ ଆଗମନ
ତେଣୁ କରି ଜୀବବୁଦ୍ଧି ଲଭିଲା ମଳିନ ।
ପାପଗ୍ରସ୍ତ ହୋଇ ଶାସ୍ତ୍ର ଆଜ୍ଞା ନ ମାନିଲେ
ବେଦ-ବିଧିମାନ ସବୁ ଅଣହେଳା କଲେ ।
କ୍ରମେ ଲୁଚିଗଲା ରାଜ-ଧର୍ମର ମର୍ଯ୍ୟାଦା
ପାପର ପ୍ରଭାବ ବଢ଼ି ଚାଲିଲା ସର୍ବଦା ।
ସ୍ୱେଚ୍ଛାଚାରୀ ହୋଇ ଜୀବ କଷ୍ଟଭୋଗ କଲେ
ହୀନବୁଦ୍ଧି, କ୍ଷୀଣ ଆୟୁ କ୍ରମଶଃ ଲଭିଲେ ।
ତାଙ୍କ ଦଶା ଦେଖି ବ୍ରହ୍ମା ଅନୁକମ୍ପା କଲେ
ଆମ୍ଭମାନଙ୍କୁ ଡାକିଣ ଏମନ୍ତ ବୋଇଲେ ।
'ଶୁଣରେ ନାରଦ, ଶୁଣ ସନତ କୁମାର
ରେ ବଶିଷ୍ଠ ମନଦେଇ ଶୁଣ ମୋର ଗୀର ।
ତୁମ୍ଭେମାନେ ମର୍ତ୍ତ୍ୟଲୋକେ ଏବେ ଚଳିଯାଅ
ଶୁଦ୍ଧ ଉପଦେଶ ଦେଇ ଲୋକଙ୍କୁ ବୁଝାଅ ।

ଅକ୍ଷୁଣ୍ଣ ରହେ ଯେପରି ଧର୍ମର ମର୍ଯ୍ୟାଦା
ଏହି କଥା ହେତୁ ରଖି ଚଳୁଥିବ ସଦା ।
ଦେଖିବ ଯାହାର ଅଛି ଭୋଗର ବାସନା
ତାଙ୍କୁ ଶିକ୍ଷାଦେବ କର୍ମକାଣ୍ଡର ବର୍ଣ୍ଣନା ।
ଜପ, ତପ, ସ୍ନାନ, ସନ୍ଧ୍ୟା, ଯଜ୍ଞ ଉପଦେଶ
ଏହି ଶିକ୍ଷା ସେମାନଙ୍କୁ ଦେବରେ ଅବଶ୍ୟ ।
ସଂସାର ବିରାଗୀ ବୋଲି ଯାହାକୁ ଦେଖିବ
ମୋକ୍ଷପ୍ରାପ୍ତି ଇଚ୍ଛା ଯାର ମନେ ଜାଗିଥିବ,
ପରମପଦ ପ୍ରାପତି ଯାର ଅଭିଳାଷ
ବ୍ରହ୍ମ-ବିଦ୍ୟା ଶିକ୍ଷା ତାଙ୍କୁ ଦେବରେ ଅବଶ୍ୟ ।
ଜ୍ଞାନ, ବ୍ରହ୍ମବିଦ୍ୟା ଦୁହେଁ ଅଟନ୍ତି ସମାନ
ଜ୍ଞାନ ସୋପାନ ବଢ଼ାଏ ବ୍ରହ୍ମର ସନ୍ଧାନ' ।
ଏହି ଆଜ୍ଞାଦେଇ ପିତା ଆମକୁ ପେଶିଲେ
ମର୍ତ୍ତ୍ୟଲୋକେ ଆସି ଆମେ ବିଚରିଲୁ ଭଲେ ।
ସବୁ ଋଷିମାନେ ଆମେ ଏକତ୍ରିତ ହେଲୁ
ଜଗତ ମର୍ଯ୍ୟାଦା କେହ୍ନେ ରହିବ ଚିନ୍ତିଲୁ ।
ଜୀବଗଣ ମର୍ତ୍ତ୍ୟଲୋକେ ଚଳିବେ କେସନ
ଏହି କଥାମାନ ହେଲା ଆମ ଅନୁଧ୍ୟାନ ।
ପ୍ରଥମେ ଭାବିଲୁ ରାଜ୍ୟ ସ୍ଥାପନ କରିବା
ରାଜାଜ୍ଞାନୁବର୍ତ୍ତୀ ହୋଇ ପ୍ରଜାଙ୍କୁ ପାଳିବା ।
ବିଭିନ୍ନ ରାଜ୍ୟରେ ରାଜାମାନଙ୍କୁ ବସାଇ
ଧର୍ମ ଜାଗରଣ କାର୍ଯ୍ୟ ଆରମ୍ଭିଲୁ ତହିଁ ।
ଯେଉଁ ରାଜା ଥିଲେ ବୀର୍ଯ୍ୟବାନ ତେଜବାନ
ଉଦାର ଆତ୍ମା ଥିଲେକ ଯେତେକ ରାଜନ ।
ଅଧ୍ୟାତ୍ମ ବିଦ୍ୟା ତାହାଙ୍କୁ କରିଲୁ ପ୍ରଦାନ
ଯେ ଘେନି ପାଇଲେ ସେହୁ ପରଂପଦ ଧାମ ।
ସେହି ଅବିନାଶୀ ପରଂପଦ ଉପଦେଶ
ଆଣିଦେଲା ସେମାନଙ୍କୁ ନିତ୍ୟଶାନ୍ତି, ତୋଷ ।
ତେଣୁ ବ୍ରହ୍ମ ବିଦ୍ୟା-ନାମ ଅଟେ ରାଜବିଦ୍ୟା
ଚିରକାଳ ଘୋଷୁଛନ୍ତି ତାପସ ସମ୍ପ୍ରଦା ।
ବେଦ, ଶାସ୍ତ୍ର, ଶ୍ରୁତି ପୁରାଣାଦି ଲେଖାଗଲା
ଜପ, ତପ, ଯଜ୍ଞ, ଦାନ ଆଦି ପ୍ରକଟିଲା ।
ଅନୁସରି ସେହି ପଥ ଜୀବ ସୁଖପାଏ
ଜୀବନ ସାର୍ଥକ କରି ଧନ୍ୟ ଧନ୍ୟ ହୁଏ ।
ରାଜବିଦ୍ୟା ଆଚରିଣ ଫଳପ୍ରାପ୍ତି ପାଇଁ
ନିରନ୍ତର ସର୍ବେ ଚର୍ଚ୍ଚା କଲେ ମନଦେଇ ।
ନିରହଙ୍କାର ହୃଦୟ ଲଭିବେ କେସନ
ଏ ଭାବେ ଅନୁପ୍ରାଣିତ ହେଲେ କେତେଜଣ ।
ହୃଦୟ ବିଶୁଦ୍ଧ ହେଲା ସେହି ପଥଧରି
ନିର୍ମଳ ଜ୍ଞାନ-ନୟନ ଖୋଲିଲା ତାଙ୍କରି ।
ଯେଉଁ ରାଜାମାନେ ଥିଲେ ବୋଧଶକ୍ତି ହୀନ
ବାସନା ହାସଲ ପାଇଁ କରନ୍ତେ ସାଧନ ।
ଘଟୀ ଯନ୍ତ୍ରପରି ତାଙ୍କ ଗମନାଗମନ
ଇହଧାମେ ଲାଗି ରହିଅଛି ଅନୁକ୍ଷଣ ।
ନିଷ୍କାମ କର୍ମାବଲମ୍ବି ଥିଲେ ଯେଉଁମାନେ
ବିଶୁଦ୍ଧ ହୃଦୟ ତାଙ୍କ ରତ ବ୍ରହ୍ମଜ୍ଞାନେ ।
ବ୍ରହ୍ମବିଦ୍ୟା ଅଧିକାରୀ କେବଳ ସେମାନେ
କୋଟିକେ ଗୋଟିଏ ଥିବେ ତାହାଙ୍କ ସମାନେ ।
ଆତ୍ମ ଉପଦେଶ ବଳେ ଆତ୍ମପଦ ପାଇ
ଜୀବନମୁକ୍ତ ହୋଇଗଲେ କେତେ ନରସାଇଁ ।
କେତେକ ବେଦ-ବିଦିତ-ସିଦ୍ଧ ବୋଲାଇଲେ
ରାଜ୍ୟ ପରମ୍ପରା ତାଙ୍କ ଚାଲୁଥାଏ ଭଲେ ।
ସେହି କୀର୍ତ୍ତିଶାଳୀ ରାଜା ଏବେ ତ ବିରଳ
ତୁମ୍ଭେ ଏବେ ଜନମିଛ ଦଶରଥ ପୁର ।
ରାଜା ଦଶରଥ ଜ୍ଞାନବାନ ଧର୍ମଶୀଳ
ପିତା ଅନୁକ୍ରମେ ତୁମେ ହେବ ରଘୁବାଳ ।
ପୂର୍ବଜମାନେ ତୁମର ଯେପରି * ବିରକ୍ତ
ତୁମେ ମଧ୍ୟ ସେହିପରି ଶତତ ନିର୍ଲିପ୍ତ ।
ସ୍ୱଭାବତ ରାମଚନ୍ଦ୍ର ତୁମେ ତ ବିଶୁଦ୍ଧ
ତେଣୁ ସର୍ବଶ୍ରେଷ୍ଠ ଅଟ ତୁମେ ହିଁ ଜ୍ଞାନୀନ୍ଦ୍ର ।
ବିବ୍ରତ ତ ନୁହ ତୁମେ ଦୁଃଖ ଦୁର୍ଦ୍ଦଶାରେ
ସଦା ଧୀର, ସଦା ଶାନ୍ତ, ତୁମେ ବିପଦରେ ।
ଇନ୍ଦ୍ରିୟ ବିଷୟମାନ ତୁମକୁ ବିଦିତ
ତଥାପି ବୈରାଗ୍ୟ ତୁମ ହୃଦରେ ଜାଗ୍ରତ ।
ତେଣୁ ତୁମେ ସର୍ବଶ୍ରେଷ୍ଠ ଅଟ ରଘୁବୀର
ତୁମ ପ୍ରଭାବେ ଘୁଞ୍ଚିବ ସଂସାର ତିମିର ।
ଶ୍ମଶାନ ଦର୍ଶନେ ମନେ ବୈରାଗ୍ୟ ଜନମେ
ମୃତ୍ୟୁଭୟେ ଜଗତକୁ ଜୀବ ତୁଚ୍ଛ ମଣେ ।

* ବିରକ୍ତ - ବୈରାଗ୍ୟ ଯୁକ୍ତ ।

ଉତ୍ତମ ପୁରୁଷମାନେ ଏମନ୍ତ କୁହନ୍ତି
ବୈରାଗ୍ୟ ଗୁଣକୁ ସଦା ଅକ୍ଷୁର୍ଣ୍ଣ ରଖନ୍ତି ।
ନିର୍ବୋଧ ପୁରୁଷମାନେ ପର ମୁହୂର୍ତ୍ତରେ
ବୈରାଗ୍ୟ ପାଶୋରି ରତ ହୁଅନ୍ତି ସଂସାରେ ।
ଶ୍ମଶାନ ନ ଦେଖି ସୁଦ୍ଧା ବୈରାଗ୍ୟ ଯା ମନେ
ଅତର୍କିତେ ଜାଗିଥାଏ, ଶ୍ରେଷ୍ଠ ସେହି ମାନେ ।
ନିଜର ବୈରାଗ୍ୟ ପୁଣି ଅଭ୍ୟାସ ବଳରେ
ଭବ ସାଗରୁ ଉତ୍ତମ ଜନ ତରି ପାରେ ।
ବଳ ପ୍ରୟୋଗରେ ହସ୍ତୀ ବନ୍ଧନ ଫେଡ଼ିଣ
ମୁକ୍ତ ହୋଇ ସ୍ୱଚ୍ଛନ୍ଦରେ କରେ ବିଚରଣ ।
ଆହେ ରାମ, ଏ ସଂସାର ଅନର୍ଥରେ ପୂର୍ଣ୍ଣ
ପୁରୁଷାର୍ଥ ବଳେ ତାକୁ ନ କଲେ ଛେଦନ ।
ରାଗ, ଦ୍ୱେଷାନଳେ ପୋଡ଼ି ମରିବେଟି ଜନ
ସେ ଅନର୍ଥ ପ୍ରତି ତେଣୁ ରହ ସାବଧାନ ।
ଶାସ୍ତ୍ର ଉପଦେଶ ପୁଣି ପୁରୁଷାର୍ଥ ବଳେ
ନିଜ ଯୁକ୍ତି ବଳେ ଜ୍ଞାନ ଅର୍ଜନ ଯେ କରେ ।
ମୋକ୍ଷ ପଦ ପ୍ରାପ୍ତି ତାକୁ ହୁଅଇ ଅବଶ୍ୟ
ଆଦର୍ଶ ଜନ ସେ, ତାର ଉଜ୍ଜ୍ୱଳ ଭବିଷ୍ୟ ।
ବୃଷ୍ଟି ପ୍ରାବଲ୍ୟରେ ଦାବାନଳ ଲୋପ ପାଇ
ଜ୍ଞାନ ପ୍ରାବଲ୍ୟରେ ଜୀବ ଦୁଃଖ ନ ଭୋଗଇ ।
ଅଧ୍ୟାତ୍ମ, ଆଧି ଦୈବିକ, ଆଧି ଭଉତିକ-
ତାପ ନ ବାଧଇ ଯେହୁ ପାଏ ଜ୍ଞାନାଲୋକ ।
ସଂସାର ନୀରସ ମଣି ଯେ ତାକୁ ତେଜିଛି
ସଂସାର ଯାତନା ତାକୁ ନ ବାଧଇ କିଛି ।
ପ୍ରଚଣ୍ଡ ବାୟୁ ବେଗରେ ବୃକ୍ଷ ଭାଙ୍ଗିପଡ଼େ
ସଂସାର ବାସନା ଯୋଗୁଁ ଜ୍ଞାନହୀନ ସଢ଼େ ।
କଳ୍ପେ କଳ୍ପେ କଳ୍ପ ବୃକ୍ଷ ରହଇ ଅଟଳ
କି କ୍ଷତି କରଇ ତାର ପବନ ପ୍ରବଳ ?
ଆତ୍ମତତ୍ତ୍ୱ ଜ୍ଞାନେ ଯେହୁ ରହଇ ଅଟଳ
ସଂସାର ଯାତନା ତାଙ୍କୁ କିଞ୍ଚିତ ମାତର ।
ବ୍ରହ୍ମବିଦ୍ୟା ଅଧିକାରୀ କେବଳ ଯେ ସେହି
ଉତ୍ତମ ପୁରୁଷ ବୋଲି ସର୍ବତ୍ର ବୋଲାଇ ।
ସେହିପରି ସମୁଜ୍ଜ୍ୱଳ ପାତ୍ର ତୁମେ ରାମ
ଅଯୋଧ୍ୟା ରାଜକୁମାର ନୟନାଭି ରାମ ।
କର୍ଷିତ କ୍ଷେତ୍ରରେ ବୀଜ ବପନ ଯେମନ୍ତ
ତୁମକୁ ମୋ ଉପଦେଶ ହୋଇବ ତେମନ୍ତ ।

ଭୋଗ ବାସନା ଧରି ଯେ ସଂସାର ବିଳାସୀ
ପଶୁସମ ମଣ ତାକୁ ରଘୁବଂଶ ଶଶି ।
ସେହି ଏକା ଶ୍ରେଷ୍ଠ ଜନ ସଂସାର ତରଣେ
ପ୍ରଗାଢ଼ ଚେଷ୍ଟା ଯେ କରୁଥାଏ ଅନୁକ୍ଷଣେ ।
ଉତ୍ତର ଦେବାକୁ ଶକ୍ତି ଯାହାଠାରେ ଥିବ
ସେପରି ଲୋକକୁ ଏକା ପ୍ରଶ୍ନ ପଚାରିବ ।
ଉତ୍ତର ଦେବାକୁ ଯେହୁ ଅସମର୍ଥ ଥିବ
ତାକୁ ପ୍ରଶ୍ନ ପଚାରିବା ନିର୍ବୋଧତା ହେବ ।
ଉତ୍ତର ଦେବାକୁ ଅଛି ସାମର୍ଥ୍ୟ ଯାହାର
ପ୍ରଶ୍ନ ଶୁଣିଣ ସଂଦିଗ୍ଧ-ମନା ଯେଉଁ ନର ।
ତାକୁ ପ୍ରଶ୍ନ ପଚାରିବା ନୁହଇ ଉଚିତ
ଯେଣୁ ଭ୍ରମବଶେ ସେହୁ ହୁଏ ବିଚଳିତ ।
ଦମ୍ଭ ରଖି ପ୍ରଶ୍ନ ପଚାରିବା ମହାପାପ
ତା'ଫଳେ ପ୍ରଶ୍ନ କର୍ତ୍ତାକୁ ମିଳିବ ସନ୍ତାପ ।
ବିଫଳ-ଭାଷୀ ଜନକୁ ପ୍ରଶ୍ନ ଯେ କରଇ
ନିକୃଷ୍ଟ ମୂଢ଼ଙ୍କ ମଧ୍ୟେ ସେହୁ ଗଣ୍ୟ ହୋଇ ।
ଗୁରୁଶିଷ୍ୟଙ୍କ ସମ୍ବନ୍ଧ ଶୁଣ ଏବେ ରାମ
ଶିଷ୍ୟକୁ ଘେନିବ ଗୁରୁ ଅକପଟ ମନ ।
କପଟ ନ ରଖି ଶିଷ୍ୟ ଗୁରୁଙ୍କୁ ବୁଝିବ
ସକଳ ସନ୍ଦେହ ତେବେ ମୋଚନ ହୋଇବ ।
ତେବେ ଦୀକ୍ଷାଦେବା ନେବା ସଫଳ ହୋଇବ
ଅନ୍ଧାରରେ ବାଡ଼ିବୁଲା ଯେସନ ନୋହିବ ।
ତତ୍ତ୍ୱଜ୍ଞ-ଗୁରୁ ବଚନ ଯେହୁ ନ ଶୁଣିବ
ଅଧମ, ମୂର୍ଖଙ୍କ ମଧ୍ୟେ ଗଣ୍ୟ ସେ ହୋଇବ ।
ଗୁରୁ କହିବା ପୂର୍ବରୁ ଯତ୍ନେ କରି ପ୍ରଶ୍ନ
ସନ୍ଦେହ ମୋଚନ କରିଥାଏ ଯେଉଁ ଜନ,
ସେହି ନର, ବୁଦ୍ଧିମାନ ଆବର ଉତ୍ତମ
ସର୍ବ ପୂଜ୍ୟ ସର୍ବାଦର୍ଶ ଜାଣ ସେହି ଜନ ।
ଗୁରୁଙ୍କ ସାମର୍ଥ୍ୟ ନ ବୁଝିଣ ଯେଉଁ ଜନ
ତାଙ୍କ ବାକ୍ୟେ ଭୁଲି ତାଙ୍କୁ କରଇ ବରଣ,
ଉପଦେଶ ନେବାପାଇଁ ଆଗ୍ରହ ଦେଖାଏ
ସେ ଅଧମ କେଉଁ ଆତ୍ମ ପଦକୁ ନ ପାଏ ।
ସେପରି ଜନକୁ ଯେଉଁ ଗୁରୁ ଶିଷ୍ୟ କରେ
ହତଭାଗ୍ୟ ସେହି ଗୁରୁ ପଡ଼େ ନରକରେ ।
ଗୁରୁ ମୁକ୍ତି ନ ପାଇଲେ ଶିଷ୍ୟ ମୁକ୍ତି ନାହିଁ
ଶିଷ୍ୟର ମୁକ୍ତି ଅଭାବେ ଗୁରୁ ମୁକ୍ତି କାହିଁ ।

ଗୁରୁବାକ୍ୟ ସମାଧାନେ ଯେ ଶିଷ୍ୟ ସକ୍ଷମ
ତତ୍ତ୍ୱ ବିଚାର କରିଣ କରେ ତା ଗ୍ରହଣ ।
ପଟୁତା ଦେଖାଏ ତାଙ୍କ ଆଦେଶ ପାଳନେ
ସେ ଶିଷ୍ୟେ ଉତ୍ତର ଦେଇଥାନ୍ତି ଗୁରୁମାନେ ।
ସଂସାର ବିରକ୍ତ ଯେଉଁ ଶିଷ୍ୟ ହୋଇଥିବ
ଆତ୍ମପଦ ଲାଭପାଇଁ ଲାଳସାଟି ଥିବ,
ଆସ୍ତିକ ଭାବରେ ଯେହୁ ସଦା ବୁଡ଼ିଥିବ
ଏପରି ଶିଷ୍ୟଙ୍କୁ ଗୁରୁ ଉପଦେଶ ଦେବ ।
ଗୁରୁ ଶିଷ୍ୟ ଦୁହେଁ ଯେବେ ହୁଅନ୍ତି ଉତ୍ତମ
କହିବା ବାହୁଲ୍ୟ ଏହା ସୁଯୋଗ ସୁବର୍ଣ୍ଣ ।
ବଶିଷ୍ଠ ବୋଲନ୍ତି ପୁଣି ଶୁଣ ହେ ଶ୍ରୀରାମ
ତୁମଠାରେ ଅଛି ସବୁ ଶିଷ୍ୟର ସୁଗୁଣ ।
ତୁମକୁ ଆଦେଶ ଦେବାପାଇଁ ମୁଁ ସମର୍ଥ
ସବୁ କାର୍ଯ୍ୟ ତେଣୁ ହୋଇଯିବ ସୁସାଧିତ ।
ତୁମ ଶୁଭ ଗୁଣଯୋଗୁଁ ତୁମର ସୁବୁଦ୍ଧି
ମାଜିହୋଇ ସୁନିର୍ମଳ ଦିଶେ ରଘୁନିଧି ।
ସିଦ୍ଧ-ସାର ମୋ ବଚନ ତୁମ ହୃଦୟରେ
ପ୍ରବେଶ କରି ଫୁଟିବ ଜାଣ ଅବାଧରେ ।
ତୁମେ ଯେଉଁପରି ଶିଷ୍ୟ ଅଟ ଆହେ ରାମ
ତୁମ ଗୁରୁ ହେବା ପାଇଁ ମୁଁ ଅଟେ ସକ୍ଷମ ।
ନାନା ସଦଗୁଣେ ସଦା ତୁମ ହୃଦ ପୂର୍ଣ୍ଣ
ତୁମପରି ପ୍ରଶ୍ନକର୍ତ୍ତା ନଥିବ କେ ଆନ ।
ତତ୍ତ୍ୱ ଜନିତ ପ୍ରଶ୍ନର ସମ୍ୟକ ଉତ୍ତର
ଦେବାକୁ ସକ୍ଷମ ମଧ୍ୟ ମୁହିଁ ରଘୁବୀର ।
ଏ ଗୁରୁ-ଶିଷ୍ୟ ସମ୍ବନ୍ଧ ଫଳପ୍ରଦ ହେବ
ଜଗତ ହିତ କାରଣେ ଶୁଭ ପ୍ରସବିବ ।
ଶବ୍ଦ ଶବ୍ଦାର୍ଥ ଦିଗରେ ତୁମେ ସୁପଣ୍ଡିତ
ମୋ ଦତ୍ତ ତତ୍ତ୍ୱ ତୁମଠି ହେଉ ବିକଶିତ ।
ତୁମେ ହୋଇଛ ମହାନ ଆବର ବିରକ୍ତ
ସଂସାର, ଜୀବର ଗତି ତୁମ ଅନୁଭୂତ ।
ସୁନ୍ଦର ଦିଶଇ ଧରା ସୂର୍ଯ୍ୟ କିରଣରେ
ତୁମ ବୁଦ୍ଧି ଝଲସିବ ମୋ ଉପଦେଶରେ ।
ଉଜ୍ଜ୍ୱଳ ବରନେ ଯଥା ରଙ୍ଗ ଫୁଟି ଉଠେ
ପଲ୍ଲବିବ ମୋ ବଚନ ତୁମ ହୃଦପଟେ ।
ଯେଉଁ ଆତ୍ମତତ୍ତ୍ୱ କଥା କହୁଅଛି ମୁହିଁ
ଅବିଳମ୍ବେ ତୁମ ହୃଦେ ପ୍ରବେଶିବ ଯାଇଁ ।
ଯେଉଁ କଥା ତୁମ ଆଗେ କରୁଛି ବଖାଣ
ବିଶ୍ୱାସ ରଖ ତହିଁରେ ଚଳିବ ଶ୍ରୀରାମ ।
ତୁମର, ଆମର ପୁଣି ଏ ସାରା ସୃଷ୍ଟିର
କଲ୍ୟାଣ ହେବ ତହିଁରେ ଆହେ ରଘୁବୀର ।
ଅକ୍ଷରେ ଅକ୍ଷରେ ମୋର ବଚନ ପାଳିବ
ନୋହିଲେ ଅଯଥା ପ୍ରଶ୍ନ ମୋତେ କରୁଥିବ ।
ଗୁରୁ ବଚନରେ ଯା'ର ଆସ୍ଥା ଜନମଇ
ମଙ୍ଗଳଧାରା ତାହାର ଶିରେ ବରଷଇ ।
'ଯାହା କଲେ ଆତ୍ମପଦ ତୁମ୍ଭକୁ ମିଳିବ
ସେହି ଉପଦେଶମାନ ଶୁଣ ହେ ରାଘବ ।
ଅଜ୍ଞାନୀ ଜୀବର ଯେତେ ଅସତ୍ୟ କୁବୁଦ୍ଧି
ପରିହାର କରିବାକ ଆହେ ରଘୁନିଧି ।
**ଅସତ ସଙ୍ଗ ତେଜିଣ ସତ-ସଙ୍ଗ କର**
**ମୋକ୍ଷ-ଦାରପାଳ ସହ ମିତ୍ରତା ଆଚର ।**
*** ଶମ, ସନ୍ତୋଷ, ବିଚାର, ସତସଂଗ ଜାଣ**
**ମୋକ୍ଷ ଦ୍ୱାରପାଳ ବୋଲି କହନ୍ତି ସୁଜାଣ ।**
ଏହି ମୈତ୍ରୀ ବଳେ ମୋକ୍ଷଦ୍ୱାରେ ପହଞ୍ଚିବ
ତେବେ ଯାଇ ପରଂବ୍ରହ୍ମ ଦର୍ଶନ ମିଳିବ ।
ଏ ଦ୍ୱାରପାଳଙ୍କୁ ଯେବେ ବଶରେ ରଖିବ
ବ୍ରହ୍ମଦର୍ଶନ ପଥଟି ସୁଗମ ହୋଇବ ।
ସେ ଚାରିଜଣଙ୍କୁ ବଶ କରି ନପାରିଲେ
ତିନୋଟିଙ୍କୁ ଯତ୍ନକରି ରଖିବ କବଳେ ।
ତିନୋଟିଙ୍କୁ ଯଦି ବଶ କରି ନପାରିବ
ଦୁଇଟିଙ୍କୁ ବଶୀଭୂତ ଅବଶ୍ୟ କରିବ ।
ଶକ୍ତିର ବାହାର ଯେବେ ହେବ ସେହି ଚେଷ୍ଟା
ଅନ୍ତତଃ ଗୋଟିକ ପାଇଁ କରିବ ପ୍ରଚେଷ୍ଟା ।
ଗୋଟିକୁ କବଳ କଲେ ଚାରିଗୋଟି ଯାକ
ଅବଶ୍ୟ ତୁମ କବଳେ ଆସିହେବେ ଏକ ।
ସେ ଚାରିଜଣଙ୍କ ମଧ୍ୟେ ପରସ୍ପର ସ୍ନେହ
ରହିଛି ବୋଲି ଜାଣ ହେ କୌଶଲ୍ୟା ତନୟ ।
ସେମାନଙ୍କ ସହ ଯେହୁ ରଖିବ ସେନେହ
ସୁଖି ହେବ ସେହି ଜନ ଜାଣ ନିଃସନ୍ଦେହ ।

* ଶମ- ଜିତେନ୍ଦ୍ରିୟ । ବିଚାର-ବିବେକ ।

ତାଙ୍କୁ ଯେ ପାଶୋରି ଦେବ ଦୁଃଖରେ ପଡ଼ିବ
ଜୀବନ ଆଦର୍ଶ ପଥୁ ଦୂରେ ଗଡୁଥିବ ।
ପ୍ରାଣ-ପ୍ରାୟଶ୍ଚିତ କରି ଗୋଟିକୁ କବଳ
କରିବାକୁ ହେବ ଆହେ ଦଶରଥ ବାଳ ।
ସହଜ, ସୁଗମ ଏହା ଆତ୍ମପଦ ପଥେ
ଆଉ ବା କିସ କହିବ ଆହେ ରଘୁନାଥେ ।
ସକଳ ସୁଲଭ ଗୁଣ ତୁମଠାରେ ଆସି
ସନ୍ନିବିଷ୍ଟ ହୋଇଛନ୍ତି ଆହେ ରଘୁଶିଷି ।
ତପନଠାରେ ସକଳ ପ୍ରକାଶ ନିହିତ
ସୌରରଶ୍ମି ସକଳଙ୍କୁ କରେ ଆକର୍ଷିତ ।
ସେହି ଗୁଣମାନ ତୁମ୍ଭଠାରେ ସମବେତ
ଯେଉଁ ଗୁଣ ସଜ୍ଜନ, ଶାସ୍ତ୍ରାନୁମୋଦିତ ।
କେନ୍ଦେରା ନାଦ ଯେସନ ଟାଣେ ଶ୍ରୋତା କାନ
ଅଧିକାରୀ ତୁମେ ଶୁଣିବାକୁ ମୋ ବଚନ ।
ଚନ୍ଦ୍ରୋଦୟେ କୁମୁଦିନୀ ହସିଦେଲା ପରି
ସୁଗୁଣ ଘେନି ବିକଶେ ସୁବୁଦ୍ଧି ତୁମରି ।
ସତସଙ୍ଗ, ସତଶାସ୍ତ୍ରେ ବୁଦ୍ଧିକୁ ମାଜିଲେ
ଆତ୍ମତତ୍ତ୍ୱ ଆସି ପ୍ରବେଶଇ ଅକ୍ଲେଶରେ ।
ସଂସାର ନୀରସ ଜାଣି ତେଜ୍ୟା ଯେହୁ କରେ
ସେହି ଏକା ଶ୍ରେଷ୍ଠ ଲୋକ ଏହି ଜଗତରେ ।
ଶାସ୍ତ୍ରୋଚିତ ଉପଦେଶେ ଯେହୁ ପ୍ରଭାବିତ
ଅବିନାଶୀ ପଦ ତାକୁ ହୁଏ ପରାପତ ।
ଶୀତ ଲାଗି ଜଳ ଯେହ୍ନେ ଜମାଟ ବାନ୍ଧଇ
ବରଫ ପାଲଟି ପଥରକୁ ଟପିଯାଇ ।
ଅଜ୍ଞାନୀ ମୂର୍ଖତା ବଶ ଆତ୍ମମାର୍ଗ ଭୁଲି
ଜଡ଼ପରି ପଡ଼ିରହେ ମୁର୍ଦାର ଯେପରି ।
ଅଜ୍ଞାନୀ ହୃଦ-ବିଲରେ ଦୁରାଶା ଉରଗ
ବାସକରି ରହିଅଛି ରୋଧି ଜ୍ଞାନମାର୍ଗ ।
ତେଣୁକରି ଶାନ୍ତି ତାକୁ ସର୍ବଦା ସ୍ୱପନ
ଆନନ୍ଦରେ ପ୍ରଫୁଲ୍ଲିତ ହେବ ସେ କେସନ ?
ସଂସାର ଅରଣ୍ୟେ ମନ-ଚପଳ-ମର୍କଟ
ସ୍ଥିରକରି ନ ପାରିଣ ହୁଏ ଛଟପଟ ।
ନିଆଁରେ ପଡ଼ିଲେ ମାଂସ ସଙ୍କୁଚିତ ଯଥା
ଆଶାଗ୍ନିରେ ପଡ଼ି ଜୀବ ଶଙ୍କିଯାଏ ତଥା ।
ମେଘ ଯଥା ଢାଙ୍କି ରଖେ ସୂର୍ଯ୍ୟଙ୍କ କିରଣ
ଆତ୍ମପଦକୁ ବିରୋଧ କରେ ଆଶା ଜାଣ ।

**ଆଶା ବିନାଶରେ ଆତ୍ମପଦର ସାକ୍ଷାତ**
ପଦେ ପଦେ ସତ୍ୟ ଏହା ବୁଝ ରଘୁନାଥ ।
ଆଶା ଅପସରି ଯାଏ ସତସଙ୍ଗ ବଳେ
ବୁଦ୍ଧି ମାଜି ହୋଇଯାଏ ସତ୍‌ଶାସ୍ତ୍ର ପଢ଼ିଲେ ।
ଏ ସଂସାର ଅଟେ ଏକ ବୃକ୍ଷର ପ୍ରକାର
ସକଳ ଦୁଃଖ ଯନ୍ତ୍ରଣାମାନଙ୍କ ଆକର ।
ଜ୍ଞାନ ଖଡ଼ଗରେ ତାକୁ ନ କଲେ ଛେଦନ
ରହିଥିବ ମୁକ୍ତିପଥ କଣ୍ଟକରେ ପୂର୍ଣ୍ଣ ।
ସତସଙ୍ଗ ବଳେ ତୁମ ବୁଦ୍ଧି-ଖଡ଼ଗାଧାର
ସୁତୀକ୍ଷ୍ଣ ନୋହିଲେ କିଏ ଛେଦିବ ସଂସାର ?
ଶୁଭଗୁଣ-ବାୟୁବଳେ ଇଚ୍ଛା ମେଘ ଯେବେ
ଅସ୍ତ ନୁହେ ଆତ୍ମଚନ୍ଦ୍ର ପ୍ରକାଶେ କି କେବେ ?
ଜ୍ୟୋତ୍ସ୍ନାବଳେ ନୀଳ ନଭ ଯଥା ସୁଶୋଭିତ
'ଆତ୍ମାଲୋକେ ତୁମ ବୁଦ୍ଧି ହେବ ବିକଶିତ' ।
**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ବଶିଷ୍ଠୋପଦେଶେ ନାମ ଏକାଦଶ ସର୍ଗଃ ।**



## ଦ୍ୱାଦଶ ସର୍ଗଃ

## ତତ୍ତ୍ୱଜ୍ଞାନ ମହାତ୍ମ୍ୟ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ମୋର ଉପଦେଶ ପାଇ ତୁମେ ଏକ ପାତ୍ର ।
ମୋ ବଚନ ପାଇଁ ମୁଖ ନୁହେଁ ଅଧିକାରୀ
ମାୟାପଟଳ ଯାହାକୁ ଥାଏ ଗ୍ରାସକରି ।
ଜପ, ତପ, ବଇରାଗ୍ୟ, ବିଚାର, ସନ୍ତୋଷ
ଗୁଣମାନ ଶୋଭାପାନ୍ତି ତୁମ ହୃଦ ଦେଶ ।
ତତ୍ତ୍ୱଜ୍ଞାନ ଲାଭପାଇଁ ସର୍ବଦା ଜୀଜ୍ଞାସୁ
ସନ୍ଥ, ଶାସ୍ତ୍ରବାକ୍ୟ ପାଇଁ ତୁମେ ସଦା ଲିପ୍ସୁ ।
ପରିହରି ରଜ, ତମ, ସତ୍ତ୍ୱକୁ ଆଦର
ପରମପଦରେ ତାକୁ ଅରପଣ କର ।
ଗୁରୁ ସୁଲଭ ଗୁଣ ଯା' ଶାସ୍ତ୍ରାନୁମୋଦିତ
ମୋ ହୃଦ ଗଗନେ ତାହା ସବୁ ପ୍ରତିଭାତ ।
ରତ୍ନଶ୍ରୀ ପୂରିଛି ଯଥା ସମୁଦ୍ର ମଧ୍ୟରେ
ଗୁଣଶ୍ରୀ ବିରାଜେ ତଥା ତୁମ୍ଭ ଆତ୍ମଠାରେ ।
ସାତ୍ତ୍ୱିକ ଭାବେ ଗ୍ରହଣ କର ମୋ ବଚନ
ପୋଛିଦିଅ ହୃଦୁ ରଜ, ତମ, ଗୁଣମାନ ।

ଚନ୍ଦ୍ରୋଦୟେ ଚନ୍ଦ୍ରକାନ୍ତ-ମଣି ଦ୍ରବିଯାଏ
ଅମୃତ ନିର୍ଝର ତହୁ ଝରି ଚାଲିଥାଏ ।
ଅନ୍ୟାନ୍ୟ ପଥର ଯେତେ ରହିଥାନ୍ତି ପଡ଼ି
ଜ୍ୟୋତ୍ସ୍ନାର ପ୍ରଭାବ ତାଙ୍କ ଉପରେ ନପଡ଼ି ।
ଜୀଜ୍ଞାସୁ ଜନ ବୁଝିବେ ପରମାର୍ଥ ତତ୍ତ୍ୱ
ଅଜ୍ଞାନୀ ଜନକୁ ଯାହା ଅଚଳ ପର୍ବତ ।
କୁମୁଦିନୀ ଥାଇ ଯେବେ ଚନ୍ଦ୍ରମା ନଥାଇ
କେବେହେଲେ କୁମୁଦିନୀ ପ୍ରଫୁଲ୍ଲିତ ନୋହି ।
ଉପଦେଶ ପାଇଁ ଶିଷ୍ୟ ଶୁଦ୍ଧପାତ୍ର ଥିବ
ଅନରୂପେ ଗୁରୁ ଯେବେ ସୁଜ୍ଞାନୀ ନୋହିବ ।
ସେହି ଶିଷ୍ୟପାଇଁ ବ୍ରହ୍ମ ପଦର ପ୍ରାପ୍ରତି
କେବେହେଁ ସମ୍ଭବ ନୁହେଁ ଆହେ ରଘୁପତି ।
ଯେଣୁକରି ତୁମେ ଅଟ ଶୁଦ୍ଧପାତ୍ର ରାମ
ମୁହିଁ ଉପଯୁକ୍ତ ଗୁରୁ ତୁମ ଅନୁକ୍ରମ ।
ତୁମ ମନେ ଜନମିଛି ମୋକ୍ଷ ଅଭିଳାଷ
ସେହି ଅଭିଳାଷ ପୂର୍ଣ୍ଣ କରିବି ଅବଶ୍ୟ ।
ମୋର ଉପଦେଶ ତୁମ ଅଜ୍ଞାନ ନାଶିବ
ଆଦର୍ଶ କୁସୁମ ଜୀବଦ୍ଦଶାରେ ଫୁଟିବ ।
ମୋକ୍ଷର ଉପାୟମାନ କରୁଛି ବର୍ଣ୍ଣନ
ମନଦେଇ ଏବେ ତାହା କର ଅନୁଧ୍ୟାନ ।
ମହାପ୍ରଳୟେ ତପନ ତେଜରେ ଯେମନ୍ତ
ମନ୍ଦରାଚଳ ପର୍ବତ ହୁଏ ଭସ୍ମୀଭୂତ ।
ତେମନ୍ତ ତୁମ ମନର ମଳିନତା ଯେତେ
ଧୋଇ ହୋଇଯିବ ଜାଣ ଆହେ ରଘୁପତେ ।
ବ୍ରହ୍ମପଦ ପରାପତି ଅକ୍ଳେଶରେ ହେବ
ଜନ୍ମଜନ୍ମାନ୍ତ କଲ୍ମଷ ସତ୍ତା ନରହିବ ।

**ବୈରାଗ୍ୟ, ଅଭ୍ୟାସ ବଳେ ଏହିଉପଦେଶ**
**ହଜମ କରି ଶାନ୍ତାତ୍ମା ହୁଅ ରଘୁଇଶ ।**

ବାଲ୍ୟକାଳୁ ସେ ଅଭ୍ୟାସ ହାସଲ କରିଛ
ବୈରାଗ୍ୟ ତପନ ହୃଦ ମଧ୍ୟରେ ରଖିଛ ।
ଏହି ଦୁଇ ଗୁଣଦ୍ୱାରା ମନର ଚାଞ୍ଚଲ୍ୟ
ଦୂର କରିବାକୁ ଶିଖ ଆହେ ରଘୁବାଳ ।
ହେ ରାମ ! ସଂସାର ଅଟେ ବିଷମ ଜହର
ସେଥିରେ ପଶିଲେ ନର ହୁଏ ହରବର ।
ଦୁଃସହ ରୋଗ, ଯନ୍ତ୍ରଣା, ଏଥିରୁ ଜନ୍ମନ୍ତି
ହତଭାଗ୍ୟ ଦେହୀ ତେଣୁ ପାଏ ନାହିଁ ଶାନ୍ତି ।

**ଯୋଗାଭ୍ୟାସ ହିଁ ଏଥିର ଗାରଡ଼ି ମନ୍ତର**
**ଯୋଗବିନା ତ୍ରାହି ପାଇଁ ନାହିଁ ଗତ୍ୟନ୍ତର**

ପରମାର୍ଥ ଜ୍ଞାନପାଇଁ ଏକମାତ୍ର ବାଟ
ସତ୍‌ସଙ୍ଗ, ସତ୍‌ଶାସ୍ତ୍ର ଫେଡ଼ିଦିଏ ସେ ସଙ୍କଟ ।
ଯାହା ଭାଗ୍ୟେ ଏ ସୁଯୋଗ ଘଟିଥାଏ ରାମ
ସେହିଜନ ସୁଖୀ, ଦୁଃଖ ତା ଅଭାବେ ଜାଣ ।
ଦେହ ଅଭିମାନ ଅଟେ ଦୁଃଖର କାରଣ
ତାହା ଯା'ର ନାହିଁ ସେହି ନିତ୍ୟ-ସୁଖି ଜାଣ ।
ଦେହ ଆତ୍ମା ଦୁଇ ବସ୍ତୁ ଅଟନ୍ତି ସ୍ୱତନ୍ତ୍ର
ଭ୍ରମବଶି ଦେହୀ ତାଙ୍କୁ ମଣଇ ଜଡ଼ିତ ।
ଏହି ସ୍ୱତନ୍ତ୍ରତା ଜ୍ଞାନ ଯେହୁ ଜାରି ରଖେ
ଜୀବନ-ମୁକତ ସେହୁ ଏହି ଧରାବକ୍ଷେ ।
ଦେହ, ଆତ୍ମ ଏକ ବୋଲି ଅଭିମାନ ଯା'ର
ଦୁଃଖ ଯନ୍ତ୍ରଣାରୁ ସେହୁ ନପାଏ ନିସ୍ତାର ।
ତୁମେ ତ ତେଜିଛ ରାମ ! ଦେହ ଅଭିମାନ
ତେଣୁ ପରଂପଦ ତୁମ ପାଇଁକି ସୁଗମ ।
ଆତ୍ମପଦ ଲଭିଛି ଯେ ଆଧ୍ୟାତ୍ମିକ ବଳେ
ଅକୃତ୍ରିମ ଆନନ୍ଦ ସେ ରଖିଛି କବଳେ ।
ଏ ସାରା ଜଗତ ତାକୁ ସଦାନନ୍ଦମୟ
ନିରାଳମ୍ବେ ବିଚରେ ସେ ନାହିଁ ଭ୍ରାନ୍ତି, ଭୟ ।
ଅସମ୍ୟଗ୍ ଦର୍ଶୀ ପ୍ରିତି ଜଗତ ଅନର୍ଥ
ନାନାଦି ଯନ୍ତ୍ରଣା ଭୋଗେ ସେହୁ ଅସ୍ତବ୍ୟସ୍ତ ।
ସର୍ପ ଦଂଶନରେ ଦେହ ମରେ ଥରେମାତ୍ର
ସଂସାର-ସର୍ପ ଦଂଶନ ଚାଲେ ଅବିରତ ।
ଶତ ଜନ୍ମ ଜନ୍ମାନ୍ତର ଚାଲେ ସେହି ପୀଡ଼ା
ଶାନ୍ତିପାଇଁ ଦେହୀ ସଦା ସହୁଥାଏ ବ୍ରୀଡ଼ା ।
ଭାଗ୍ୟବଳେ ସତସଙ୍ଗ, ଶାସ୍ତ୍ର ଆଲୋଚନା
କରି ଆତ୍ମପଦ ଲାଭ କରେ ସେହୁ ସିନା ।

**ଜ୍ଞାନ ଉପାର୍ଜନ ପାଇଁ ମାନବ ଜନମ**
**ଏ ମହତ ଉଦ୍ଦେଶ୍ୟକୁ ଅନ୍ୟଥା ନମଣ ।**

ଭୋଗ ବିଳାସ ନୁହଇ ଏ ଜନ୍ମ ଉଦ୍ଦେଶ୍ୟ
ସର୍ବଦା ଜାଗ୍ରତ ହେଲେ ପୂରିବ ଆଦର୍ଶ ।
ଆତ୍ମାର ଉନ୍ନତି ପାଇଁ ସୁବିଚାର କଲେ
ଭବଦୁଃଖ କ୍ଷୟହେବ ଜାଣିରଖ ଭଲେ ।
ବିଚାର ବୁଦ୍ଧିକୁ କେଭେଁ ହେଳା ନ କରିବ
ଅବହେଳା ଯୋଗୁଁ ଭେଳା ନିଶ୍ଚୟ ବୁଡ଼ିବ ।

କାତି ଛାଡିଦେଇ ସର୍ପ ହୋଇଥାଏ ସୁଖି
ମରଦେହ ତେଜିବାକୁ ଜ୍ଞାନୀ ଥାନ୍ତି ଟାକି ।
ତତ୍ତ୍ୱଜ୍ଞାନ-ଦୃଷ୍ଟି ହେତୁ ମୃତ୍ୟୁକୁ ନଡରି
ଜଗତକୁ ଦେଖୁଥାନ୍ତି ଇନ୍ଦ୍ରଜାଲ ପରି ।
ସଂସାରୀ ବିଳାସୀ ଜୀବ ଭୋଗଇ ଅନର୍ଥ
ଆଧିବ୍ୟାଧିମୟ ଭବ କରେ ତାକୁ ତ୍ରସ୍ତ ।
ଭବବ୍ୟାଧି ସଦା ବ୍ୟସ୍ତ ଜୀବର ପୀଡ଼ନେ
କେବେ ପୀଡ଼ାଦିଏ ତାକୁ ନିର୍ମମ ଦଂଶନେ ।
ତୀକ୍ଷ୍ଣଧାର ଅସି ପରି କେବେ ଦିଏ ଛେଦି
କେତେବେଳେ ରଜ୍ଜୁ ପରି ରଖେ ତାକୁ ବାନ୍ଧି ।
କେବେ ଅବା ବିନ୍ଧିଦିଏ କୁନ୍ତ ମୁନ ପରି
କେତେବେଳେ ଜାଳିଦିଏ ଅଗ୍ନି ଶିଖାସାରି ।
ମେଘାଚ୍ଛନ୍ନ ଅନ୍ଧକାର ରଜନୀର ପରି
ମୋହ-ଅନ୍ଧକାରେ କେବେ ଦିଏ ତାକୁ ପେଲି ।
ବିଷୟ-ଘଣାରେ ବିଷୟୀକୁ କେତେବେଳେ
ପେଷି ଦେଉଥାଏ ପୁଣି ନିର୍ମମ ଭାବରେ ।
ଏ ଭବ-ରୋଗ ବିନାଶ କରେ ନର ପ୍ରଜ୍ଞା
ହିତାହିତ ବୁଝିବାକୁ ନଥାଏ ତା ସଂଜ୍ଞା ।
ଘୋର ଅନ୍ଧକାର କୂପେ କାହାକୁ ପକାଇ
ତୃଷ୍ଣା-ବୈତରଣୀ ମଧ୍ୟେ ଦେଉଥାଏ ଦହି ।
ଏପରି ତ ଦୁଃଖ ନାହିଁ ଏ ଭବ ସାଗରେ
ସଂସାରୀ ଯାତନ-ଭୋଗ ନ ପାଏ ଯହିଁରେ ।
ଏ ଭବ ବ୍ୟାଧି ପାଇଁ କି କେବଳ ଔଷଧି
ସତସଙ୍ଗ ଶାସ୍ତ୍ରଚର୍ଚ୍ଚା ଜାଣ ରଘୁନିଧି ।
ବିଷୟ-ବିସୂଚିକା ଯେ ଅତି ଭୟାନକ
ମମତା ବଢ଼ାଇ ଶେଷେ ଦିଅଇ ନରକ ।
ଆଶୁ ପ୍ରତିକାର ଲୋଡ଼ା ଏବ୍ୟାଧି ନିମିତ୍ତ
ନୋହିଲେ ଭୀଷଣ ନର୍କଭୋଗ ସୁନିଶ୍ଚିତ ।
ଯମମାର୍ଗର ଯନ୍ତ୍ରଣା ଅତି ଭୟଙ୍କର
ଆସିପତ୍ ବନେ ଚିତ୍ତ ହୁଏ ଥର ଥର ।
ଖଣ୍ଡାଧାର ପରି ସେହି ପତ୍ରମାନ ବାଜି
ପାପୀଦେହ କଟିଯାଏ ହାଡ ହୁଏ ପିଞ୍ଜି ।
ଜ୍ୱଳନ୍ତା ଅନଳ ଧୂ ଧୂ ହୋଇ ଜଳୁଥାଏ
ତହିଁ ପଡ଼ି ଦରପୋଡ଼ା ହୋଇ ସେ ପଳାଏ ।
ଯମଦୂତଙ୍କର ହୃଦେ ତିଳେ ଦୟା ନାହିଁ
କାହାକୁ ଅନ୍ଧ କୂପରେ ଦିଅନ୍ତି ପକାଇ ।

କାହାକୁ ଗିରି ଶିଖାକୁ ନିଅନ୍ତି ଘୋଷାରି
ବୋବାଳି ଛାଡ଼ଇ ପାପୀ ମଲି ମଲି ବୋଲି ।
କ୍ଷୁରଧାର ପରେ କା'କୁ ଦିଅନ୍ତି ବସାଇ
ଜଳନ୍ତା ଅଙ୍ଗାର ମଧ୍ୟେ କାହାକୁ ହିଁ ଥୋଇ ।
କରତରେ କା'ର ଅଙ୍ଗ କରନ୍ତି କର୍ତ୍ତନ
ମୁନିଆଁ ଛୁରୀରେ ତାଡି ଦ୍ୟନ୍ତି କା ନୟନ ।
ପଥର ତାଡିବା ପାଇଁ କହନ୍ତି କାହାକୁ
କାହାକୁ ବାଧ କରନ୍ତି ଶିଳା ଗିଳିବାକୁ ।
ବରଫ ଖଣ୍ଡ କାହାର ଉପରେ ମଡ଼ାନ୍ତି
ଶିଳା ଛେଚି କାହା ଅଙ୍ଗ ଚୂର୍ଣ୍ଣ କରୁଥାନ୍ତି ।
ରଉରବ ନର୍କ କଥା ଅତି ଭୟଙ୍କର
କହୁ କହୁ ମାଡ଼ିଆସେ ବାଘ ପରି ଜ୍ୱର ।
ଚଉରାଶୀ ଗୋଟି ନର୍କ ଅଛି ଯମପୁରେ
ତପ୍ତ ବୈତରଣୀ କଥା କହିଲେ ନ ସରେ ।
ତହୁଁ ବଡ କୁମ୍ଭୀପାକ ନର୍କର ଯନ୍ତ୍ରଣା
କେଉଁ ଯମରାଜା ତାର କଲାକ କଳ୍ପନା ।
କେତେ ପ୍ରକାର ଯାତନା କିଏ ବା କହିବ
କେଉଁ କରଣ ବସି ଯେ ତା ସଂଖ୍ୟା କରିବ ?
ଅନବରତ ଏପରି ନର୍କର କଷଣ
ଅବଶ୍ୟ ଭୋଗ କରିବ ଯେ ସଂସାରୀ ଜନ ।
ସଦମାର୍ଗ ତେଜି ଯେ ଜନ ଭୋଗ ଇଚ୍ଛା କରେ
ନରକ ଯନ୍ତ୍ରଣା ମାନ ଘଟେ ତା ଭାଗ୍ୟରେ ।
ପୁରୁଷାର୍ଥ ତେଜି ଦ୍ୟନ୍ତି ଜ୍ଞାନଲାଭ ପାଇଁ
ଅସରନ୍ତି ଦୁଃଖ ଥୁଆ ଭୋଗୀ ଜନ ପାଇଁ ।
ସଂସାରକୁ ତୁଚ୍ଛ ମଣି ପୁରୁଷାର୍ଥ ପାଇଁ
ଦୃଢ଼ ପ୍ରତିଜ୍ଞା ଘେନି ଯେ କର୍ମ ଆଚରଇ ।
ମୋକ୍ଷପଦ ଶେଷେ ତାର ହୁଏ ପୁରସ୍କାର
ସଚେତ ରହିବା ସେଥିପାଇଁ ଶ୍ରେୟସ୍କର ।
ଆତ୍ମପଦ ପ୍ରାପ୍ତ ନର ନ ଜାଣଇ ଦୁଃଖ
ନିରନ୍ତର ମିଳେ ତାକୁ ଅସରନ୍ତି ସୁଖ ।
ମୂଢ଼ଜନ ପାଇଁ ଭବ ସଦା ଦୁଃଖପୂର୍ଣ୍ଣ
ସଦା ଆନନ୍ଦରେ ପୂର୍ଣ୍ଣ ଜ୍ଞାନୀଙ୍କ ଜୀବନ ।
ନାନା ପ୍ରଲୋଭନ ସଦା ସୁଜ୍ଞାନୀଙ୍କୁ ଘେରେ
କିନ୍ତୁ ତା ଜ୍ଞାନକବଚ ତାକୁ ରକ୍ଷା କରେ ।
ସଂସାର ଯାତନା ତାକୁ ନ ପାରଇ ଛୁଇଁ
ଯେଣୁ ତା ଅନ୍ତର ଜ୍ଞାନାନନ୍ଦେ ପୁରିଥାଇ ।

ଯଦିଚ ସୁଜ୍ଞାନୀ ହୁଏ ଦୁଃଖ ସମ୍ମୁଖୀନ
ତଥାପି ତା ହୃଦ ରହେ ଆନନ୍ଦରେ ପୂର୍ଣ୍ଣ ।
ବ୍ରହ୍ମର୍ଷି, ରାଜର୍ଷିମାନେ ଦୁଃଖ ସମ୍ମୁଖୀନ
ହେଲେ ହେଁ ସେ ନ ଜାଣନ୍ତି ଦୁଃଖର କଷଣ ।
ସଦାନନ୍ଦମୟ ଯେଣୁ ତାଙ୍କର ଅନ୍ତର
କୌଣସି ଦୁଃଖ ତାହାଙ୍କୁ ନ କରେ କାତର ।
ନାନା ଚେଷ୍ଟା କରି ସ୍ୱୀୟ ପୁରୁଷାର୍ଥ ବଳେ
ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଜୀବ, ସାମ୍ମୁଖ୍ୟ ଲଭିଲେ ।
ଏତେ ସିଦ୍ଧି ପରେ ତାଙ୍କ ହୃଦେ ଅଭିମାନ
ନଥିବାରୁ, ତାଙ୍କ ହୃଦ ଶାନ୍ତିର ଆଶ୍ରମ ।
ବାହ୍ୟାନ୍ତରେ ଅଭିମାନ ନ ଥାଇ ତାଙ୍କର
ପ୍ରଶାନ୍ତ ମୂରତି ତେଣୁ ଛନ୍ତି ଚିରକାଳ ।
ଅଜ୍ଞାନ-ମେଘରୁ ମୋହ-କୁଜ୍‌ଝଟିକା ଜାତ
ଜ୍ଞାନ-ଶରଦ ତାହାକୁ କରିଦିଏ ଲୁପ୍ତ ।
ତେଣୁ ଯଦି ଜୀବ ନିଜ ସତ୍ତା ବୁଝିପାରେ
ସଦା ବୁଡ଼ିରହେ ସେହୁ ଆନନ୍ଦ ସାଗରେ ।
ଅନଳ ସଂଯୋଗେ ସ୍ୱର୍ଣ୍ଣ ବିଶୁଦ୍ଧ ଯେପରି
ଜ୍ଞାନ ସୁନିର୍ମଳ ରହେ ସତ୍‌ଶାସ୍ତ୍ର ଆଦରି ।
ବିଳାସ ନିମିତ୍ତ ଜୀବ ଯାହା କରି ବସେ
ତିଳେ ହେଲେ ଶାନ୍ତି ତହୁଁ ନ ମିଳେ ଏ ବିଶ୍ୱେ ।
ପୁଣି ଯାହା କହୁଅଛି ଶୁଣ ହେ ରାଘବ
ଆତ୍ମା ଘେନି ସୁଖ ଦୁଃଖ ଭୋଗକରେ ଜୀବ ।
ଆତ୍ମା ପ୍ରସନ୍ନ ହୁଅନ୍ତେ ଜୀବର ସନ୍ଦେହ
ଦୂର ହୁଏ, ଜୀବ ମଣେ ବିଶ୍ୱ ଶାନ୍ତିମୟ ।
ସମଦୃଷ୍ଟି ଜାତ ହେଲେ ଆତ୍ମାର ବିକାଶ
ଜୀବର ଅନ୍ତରେ ପରମାତ୍ମାଙ୍କ ପ୍ରକାଶ ।
ସେହି ମହାତ୍ମାମାନଙ୍କ * ଜଗତ ଭ୍ରମଣ
ପରମ ସୁଖଦାୟକ କୌଶଲ୍ୟା ନନ୍ଦନ ।
ଚୈତନ୍ୟ-ସ୍ୱଭାବ ଆତ୍ମା ହୁଅନ୍ତେ ପ୍ରସନ୍ନ
ପରମ-ଶାନ୍ତିର ଭେଟ ମିଳିଥାଏ ଜାଣ ।
ସକଳ ଧୀଶକ୍ତି ଅଟେ ଶାନ୍ତିର ସାଗର
ବ୍ରହ୍ମ-ରସ ଆସ୍ୱାଦନ ଅନ୍ତର ବେଭାର ।
ଆଉ ପୁଣି ରଘୁବୀର ! ଶୁଣ ମୋ ବଚନ
ଅଚେତନ-ଦେହ, କାଷ୍ଠ-ରଥର ସମାନ ।
ଏ ଦେହ-ରଥର ଘୋଡ଼ା ଏଥି କିଏ ଜାଣ ?
ଘୋଡ଼ା କାମ କରୁଛନ୍ତି ଇନ୍ଦ୍ରିୟାଦିଗଣ ।
ଇନ୍ଦ୍ରିୟଙ୍କ ବେଗ ତହିଁ ଅଶ୍ୱଙ୍କ ଗମନ
ପ୍ରାଣବାୟୁ କରେ ସେହି ରଥ ସଞ୍ଚାଳନ ।
ଏ ରଥ ଦଉଡ଼ି ମନ, ଆତ୍ମା ତ ସାରଥି
ପରାତ୍‌ପର ପରମାତ୍ମା ଏ ରଥର ରଥୀ ।
ରଥରେ ଚଢ଼ି ବୁଲିଲେ ମିଳେ ଯେଉଁ ସୁଖ
ଏ ରଥ ରଥୀ ସେଥିରୁ ନହୁଏ ବିମୁଖ ।
ଆହା କି ଆନନ୍ଦ ମିଳେ ଏ ରଥ ଚଢ଼ିଲେ
ଆରୋହୀ ସିନା ବୁଝିବ ସେ ଆନନ୍ଦ ହେଲେ ।
ଆନନ୍ଦ ଧର୍ମାଭିମୁଖେ ଧାଇଁଲେ ଏ ରଥ
ଭାଗ୍ୟ ଉଇଁ ଆସେ, ପରଂ ଆନନ୍ଦ ପ୍ରାପତ ।
ନୋହିଲେ ଦୁର୍ଗତି ମାଡ଼ିଆସେ ଯଥା ରାହୁ
ରଥୀ-ଶଶି ମରୁଥାଏ ନ ସହି ତା ଦାଉ ।
ଯେତେ ନଗଣ୍ୟ ହେଲେ ହେଁ ଏ ରଥର ରଥୀ
ସମାଧି ସମୟେ କଳି ନୁହେଁ ତା ବିସ୍ମୃତି ।
ନିଷ୍ପାପ ବୁଦ୍ଧି ବଳରେ ତତ୍ତ୍ୱ ଦରଶନ
ପାଇଲେ, କୌତୁକ କ୍ରୀଡ଼ା ଜଗତ ଭ୍ରମଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ତତ୍ତ୍ୱ ମହାତ୍ମ୍ୟ ବର୍ଣ୍ଣନେ**
**ନାମ ଦ୍ୱାଦଶ ସର୍ଗଃ ।**



## ତ୍ରୟୋଦଶ ସର୍ଗଃ
## ଶମ-ନିରୂପଣ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁରାୟେ
କ୍ଷତ୍ରିୟଙ୍କ ଶାନ୍ତି ବଢ଼େ ରାଜ୍ୟ ଅଭ୍ୟୁଦୟେ ।
ଅନେକଙ୍କ ତୃପ୍ତି ବଢ଼େ ସମ୍ପତ୍ତି ବୃଦ୍ଧିରେ
ମହାନନ୍ଦେ କାଳ କାଟୁଥାନ୍ତି ନିଶ୍ଚିନ୍ତରେ ।
ଜ୍ଞାନୀଜନ ଯଥା ତତ୍ତ୍ୱଜ୍ଞାନ ଲାଭକରି
ପରମ ସୁଖେ କାଟନ୍ତି ଦିବଶ ଶର୍ବରୀ ।
ଶୋକ ଦୁଃଖ ନଥାଏ ସେ ଜୀବନ୍ମୁକ୍ତଙ୍କର
ଲୋଡ଼ନ୍ତି ନାହିଁ ସେ ଭଲ ମନ୍ଦର ବିଚାର ।
ପୁନଶ୍ଚ ଶୁଣିବା ରାମ ଏ ବିଶ୍ୱ ସଂସାରେ
ସୁବୁଦ୍ଧି ସୁଜ୍ଞାନ ଦୃଷ୍ଟି ଯେହୁ ଲଭିପାରେ ।

* ଜଗତ ୧ - ସାଧାରଣ ଜଗତ । ୨- ଜନ୍ମଚକ୍ର ।

ଜ୍ଞାନ ଦୃଷ୍ଟିବଳେ ଆତ୍ମ-ସାକ୍ଷାତକାର ଲାଭ
କରେ ଯେହୁ ଭାଗ୍ୟବାନ ଜାଣ ସେ ରାଘବ ।
ଏସନ ପ୍ରବୃତ୍ତି ରାମ ଅରଜନ କର
ଯହିଁରେ ପୁଷ୍ଟ ହୋଇବ ହୃଦୟ ତୁମର ।
ଯାହାଘେନି ସଂସାରର ଇଷ୍ଟ ବା ଅନିଷ୍ଟ
ବିଚଳିତ ନ କରିବ ତୁମ ଚିତ୍ତପଟ ।
ଯେ ଲାଭ କରିପାରଇ ଏହି ଆତ୍ମପଦ
ଆନନ୍ଦ ସାଗରେ ସଦା ବୁଡ଼େ ତାର ହୃଦ ।
ନାହିଁ ଶୋକ ତାର କିମ୍ବା ନାହିଁ ତା ଯାଚଞ୍ଚା
ପରମ ଶାନ୍ତି-ସୁଧାରେ ହଜେ ତାର ସଂଜ୍ଞା ।
ବାହାରକୁ ଦେଖାଯାଏ ବହୁ କର୍ମ ତାର
ବାସ୍ତବରେ ନଥାଏ ତା ଚେଷ୍ଟା କାରବାର ।
ଯେ ଦିଗେ ତା ମନବୃତ୍ତି ହୁଅଇ ଚଳିତ
ସେ ଦିଗରେ ତାର ଆତ୍ମସତ୍ତା ପ୍ରତିଭାତ ।
ପୁନିଅଁ ଚନ୍ଦ୍ର ଯେସନ ସୁଧା ପରିପୂର୍ଣ୍ଣ
ତେସନ ଜ୍ଞାନୀ ଅନ୍ତର ଆନନ୍ଦରେ ପୂର୍ଣ୍ଣ ।
ଏ ଯେଉଁ ଅମୃତ-ବୃତ୍ତି କହିଲଇଁ ଭଲେ
ତା ତତ୍ତ୍ୱ ବୁଝିବ ବ୍ରହ୍ମ-ସାକ୍ଷାତ ପାଇଲେ ।
ଚନ୍ଦ୍ର ମଣ୍ଡଳରେ ଯଥା ତାପ ନ ଲାଗଇ
ଆତ୍ମଜ୍ଞାନ-ପ୍ରାପ୍ତି ସର୍ବ ଦୁଃଖ ବିନାଶଇ ।
ଅଜ୍ଞାନୀ ଜନକୁ ଶାନ୍ତି ନମିଳଇ କେଉଁ
ଯେଉଁ କାର୍ଯ୍ୟ କଲେ ମଧ୍ୟ ସଦା କ୍ଲେଶ ଭୋଗେ ।
ଖଜୁର ଗୁଚ୍ଛରେ ଯଥା କଣ୍ଟାମାନ ଉଠେ
ଅଜ୍ଞାନୀ କାର୍ଯ୍ୟରେ ଦୁଃଖ କାହୁଁ ଆସି ଘୋଟେ ।
ଅଜ୍ଞତା, ମୂର୍ଖତା ବଡ଼ ଦୁଃଖର କାରଣ
ନାହିଁ ଅନ୍ୟ କିଛି ଦୁଃଖ ତାହାର ସମାନ ।
ଆତ୍ମତତ୍ତ୍ୱ ଜିଜ୍ଞାସାରେ ଏମନ୍ତ କରିବ
ଦରକାର ହେଲେ ଚଣ୍ଡାଳଠୁଁ ଦୀକ୍ଷା ନେବ ।
ମୂର୍ଖତା ଆବୋରି ଯେଉଁ ଜୀବନ ଯାପନ
ବ୍ୟର୍ଥ ସେ ଜୀବନ, ପୁଣି ସବୁଠାରୁ ହୀନ ।
ବ୍ୟାସଦେବ ତ ଶିଅଳଠାରୁ ମନ୍ତ୍ରନେଲେ
ସେ ବଳେ ଗଛ ନୁଆଇଁ ଫଳ ତୋଳୁଥିଲେ ।
ଆତ୍ମତତ୍ତ୍ୱ ଜିଜ୍ଞାସାରେ ଯେହୁ ରତ ରହେ
ଦରକାର ହେଲେ ଚଣ୍ଡାଳଠୁଁ ଭିକ୍ଷା ନିଏ ।
ଦୋଷାବହ ନୁହେଁ ଜାଣ ସେ ଭିକ୍ଷା ଗ୍ରହଣ
ସବୁମତେ ହୀନିମାନ ମୂର୍ଖର ଜୀବନ ।

**ମୂର୍ଖତା ଦୂରୀକରଣ ଯେ ମୋକ୍ଷ ବିଧାନ**
**କହୁଅଛି ହେତୁ ରଖ ହେ ରଘୁନନ୍ଦନ ।**

ପରମ-ବୋଧର ହେତୁ ଯେ ମୋକ୍ଷ ଉପାୟ
ସେ ଉପାୟ ଶୁଣ ରାମ ମନ କରି ଥୟ ।
କିଛିତ ସଂସ୍କୃତ ବୁଦ୍ଧି ହୁଏ ଆବଶ୍ୟକ
ଶାସ୍ତ୍ରଜ୍ଞାନ ବୁଝିଗଲେ ବଢ଼ଇ ବିବେକ ।
ସେ ବିବେକ ବଳେ ଆତ୍ମଜ୍ଞାନ ଯେ ସୁଗମ
ଏହି କଥା ନିରାଧାର ଜାଣ ଆହେ ରାମ ।
ନାନା ଦୃଷ୍ଟାନ୍ତ ସହିତ ମୋକ୍ଷ ଅନୁଧ୍ୟାନ
ଏପରି ଶାସ୍ତ୍ରତ ନାହିଁ, କାହିଁ ତିନି ଧାମ * ।
ଏହି ସିଦ୍ଧାନ୍ତଟି ଯେବେ ଧର ହୃଦୟର
ପରମାନନ୍ଦ ପ୍ରାପତି ମୁଠାରେ ତୁମର ।
ଅତିକ୍ରମ କରିବାକୁ ଅଜ୍ଞାନ ତିମିର
ଏହି ଶାସ୍ତ୍ରହିଁ କେବଳ ପଥ ସୁନିର୍ମଳ ।
ସୂର୍ଯ୍ୟ କିରଣ ଯେସନ ନାଶେ ଅନ୍ଧକାର
ଏ ଶାସ୍ତ୍ର ବିଚାର ନାଶେ ଅଜ୍ଞାନ-ତିମିର ।
ଯେଉଁ ବିଧିରେ ହୋଇବ ଜୀବର କଲ୍ୟାଣ
ବର୍ଣ୍ଣନ କରୁଛି ତାହା ମନଦେଇ ଶୁଣ ।
ଜ୍ଞାନୀ ଗୁରୁ ଦେଉଥିବେ ଶାସ୍ତ୍ର ଉପଦେଶ
ତାକୁ ଉପଲବ୍ଧି କରିପାରୁଥିବ ଶିଷ୍ୟ ।
ସେ ଅନୁଭୂତିରୁ ବୁଝି ଜ୍ଞାନ-ରସସାର
ବ୍ୟବହାର ପାଇଁ ତାକୁ ହେବ ତତପର ।
ଗୁରୁ, ଶାସ୍ତ୍ର ଉପଦେଶ, ସ୍ୱୀୟ ଅନୁଭବ
ଏକତ୍ରିତ ହେଲେ, ଶିଷ୍ୟ କଲ୍ୟାଣ ସମ୍ଭବ ।
ନ ଲଭି ପାରିବାଯାଏ ଅକୃତିମାନନ୍ଦ
ଦୃଢ଼ ଅଭ୍ୟାସ କରିବ ଭର ହୃଦେ ମୋଦ ।
ସେହି ଅକୃତ୍ରିମାନନ୍ଦ ଆଣିଦେବା ପାଇଁ
ମୁହିଁ ଏକା ଉପଯୁକ୍ତ ଗୁରୁ ରଘୁରାଇ ।
ପରମ ମିତ୍ର ମୁହିଁ ଅଟେ ଜୀବଧାରୀଙ୍କର
ଆନନ୍ଦ ଲଭିବେ ଜୀବେ ବଚନେ ମୋହର ।
ତେଣୁକରି ଯାହା ମୁଁ କହୁଅଛି ରାମ
ଅମ୍ଳାନ ବଦନେ ତାହା କର ହେ ପାଳନ ।

* ତିନି ଧାମ- ତ୍ରିଜଗତ ।

ସାଂସାରିକ ଉପଭୋଗ ଯାହାକି କ୍ଷଣିକ
ଭୁଲିଯାଅ ଅବିଳମ୍ବେ ହେ ରଘୁ ନାୟକ ।
ବିଷୟର ପରିଣାମ ବହୁ ଦୁଃଖ ଦିଏ
ସେ ଦୁଃଖ ତୀବ୍ରତା କେଡ଼େ କଳନା ନ ହୁଏ ।
ମୋ ସମ ଜ୍ଞାନବାନଙ୍କ ସଙ୍ଗତି ଅର୍ଜନ
କରି ପାରିଲେ ହୋଇବ ସର୍ବ ସୁକଲ୍ୟାଣ ।
ପାଳନ କରିବ ଯଦି ଆପ୍ତର ବଚନ
ସକଳ ଦୁଃଖ ତୁମର ହେବ ଅବସାନ ।
ଯେଉଁ ଜନ ମୋର ସହ ପ୍ରୀତି ଆଚରଇ
ବ୍ରହ୍ମାନନ୍ଦ ଆସ୍ୱାଦ ମୁଁ ପାରେ ତାକୁ ଦେଇ ।
ଜ୍ଞାନବାନ ହିଁ କେବଳ ହୁଏ ଆନନ୍ଦିତ
ଅବସର କାହିଁ ତାକୁ ହେବାକୁ ଦୁଃଖିତ ?
ଆତ୍ମା ପ୍ରମାଦ ଜୀବକୁ କରଇ ଦଇନ
ଆତ୍ମାର ଆନନ୍ଦ ସଦା ଜୀବର କଲ୍ୟାଣ ।
ସନ୍ଥ, ଶାସ୍ତ୍ର ବିଚାରରୁ ଦୃଶ୍ୟ ହଟିଯାଇ
ତେଣୁ ମୋହ ନାଶେ, ବାସ୍ତବତା ପ୍ରକାଶଇ ।
ତୃଷ୍ଣା-ରାତ୍ରି ଯେ ପର୍ଯ୍ୟନ୍ତ ବିନାଶ ନ ପାଇ
ଅଜ୍ଞାନୀ ହୃଦକମଳ ସଙ୍କୁଚିତ ରହି ।
ସେ କମଳ ଫୁଟିବାକୁ କାହିଁ ଅବସର
ଯେଣୁ ପ୍ରବାହିତ ନୁହେଁ ଆନନ୍ଦ ଲହର ।
ପରମାର୍ଥ ମାର୍ଗ ଯେହୁ ଦେଇଅଛି ଛାଡ଼ି
ଭୋଗ ଉପଭୋଗେ ଯେହୁ ରହିଅଛି ବୁଡ଼ି,
କର୍ଦ୍ଦମରେ ଘାଣ୍ଟି ହେଉଥିବା ବେଙ୍ଗ ପରି
ସଂସାର-କର୍ଦ୍ଦମେ ସଦା ହେଉଥାଏ ଘାରି ।
ଆପଦ ସାଗର ଅଟେ ଏ ସାର ସଂସାର
ଯାକୁ ପାରିହେବା ପାଇଁ ଶକତି କାହାର ?
ସନ୍ଥଜନ, ସତଶାସ୍ତ୍ର ସତସଙ୍ଗ ବଳେ
ସୁବିଚାର ଲଭି ପାରି ହୋଇଯାନ୍ତି ହେଲେ ।
ଆଦି, ଅନ୍ତ, ମଧ୍ୟ, ଶୂନ୍ୟ ଯେ ପରମାନନ୍ଦ
ଅକ୍ଳେଶରେ ମିଳିଯାଏ ସେ ଅଭୟପଦ ।
ଦୁଃଖ ପରେ ଦୁଃଖ ଆସି ପହଞ୍ଚେ ତାହାକୁ
ସମ୍ମୁଖୀନ ହୁଏ ଯେହୁ ଭବ ସାଗରକୁ ।
ଭୟାବହ ନରକରେ ପଡ଼ି ଘାଣ୍ଟି ହୁଏ
ସାହା ନାହିଁ, ତାକୁ ତହୁଁ ଉଦ୍ଧରିବ କିଏ ?
ଜାଣି ଶୁଣି ବିଷପାନ କରେ ଯେଉଁ ନର
ବିନାଶ କରେ ସେ ବିଷ ଦେହକୁ ତାହାର ।

ସଂସାର ଅନିତ୍ୟ ଏହା ଜାଣି ଶୁଣି ଯେହୁ
ସଂସାର ବରଣ କରେ ମହାମୂର୍ଖ ସେହୁ ।
ମୃତ୍ୟୁ ଛଡ଼ା ଅନ୍ୟକିଛି ନାହିଁ ତାହା ପାଇଁ
ବିବେକ ବଳରେ ଏହା ବୁଝ ରଘୁସାଇଁ ।
ସଂସାରୀ ହୋଇ ଯେ ସଂସାରରୁ ରକ୍ଷାପାଇଁ
ଯତ୍ନକରିବା ନିମିତ୍ତ ହେଲା ପ୍ରକାଶଇ,
କଲ୍ୟାଣ ଦାୟକ ଆତ୍ମପଦ ପ୍ରାପ୍ତି ବୁଝେ
କିନ୍ତୁ ସଂସାର ସୁଖକୁ ଲଭିବାକୁ ଯୁଝେ,
ସେ ନଷ୍ଟ-ଜୀବର ଦଶା ହୁଏ ସେହିପରି
ପ୍ରଜ୍ୱଳିତ ଗୃହେ ତୃଣେ ଶୟନ ଯେପରି ।
ଦୁଃଖ ବା ସୁଖର ସ୍ଥିତି ବିଜୁଳି ସମାନ
ଆଖି ପିଛୁଳାକେ ତାହା ହେଉଥାଏ ଲୀନ ।
ଚକ ପରି ଚଳୁଛନ୍ତି ସୁଖ ଆଉ ଦୁଃଖ
ତହିଁକି ବିମୁଖ ହେବା ଆଶ୍ଚର୍ଯ୍ୟଜନକ ।
ତେଣୁ ଶାନ୍ତି ନ ଲଭନ୍ତି ସୁଖାନ୍ୱେଷୀ ଜନ
ଦୁଃଖ ସୁଖ ସ୍ରୋତେ ସଦା ହୁଅନ୍ତି ଭାସମାନ ।
ଅବିଚାର ସ୍ରୋତେ ଭାସମାନ ଏ ଜଗତ
ବିଚାର ଦୃଷ୍ଟିରେ ହୁଏ କ୍ଷଣକରେ ଅସ୍ତ ।
ବିଚାର ବଳରେ ଯଦି ନ ହୁଅନ୍ତା ଅସ୍ତ
ମୋର ଉପଦେଶ ଦାନା ନୁହନ୍ତା ଉଚିତ ।
ଆଗମାପାୟୀ, ଅନିତ୍ୟ ଅଟେ ଏ ସଂସାର
କୌଣସି କାଳରେ କିଛି ନି ରହଇ ସ୍ଥିର ।
ତେଣୁକରି ପୁରୁଷାର୍ଥ ସଦା ଶ୍ରେୟସ୍କର
ଯାହାବଳେ ବିଶ୍ୱଜୟୀ ହୋଇପାରେ ନର ।
ହାତେ ଦୀପ ଥାଉଁ ହୁଏ କୂପେ ନିପତିତ
ମୂର୍ଖତା ଦୋଷରୁ ଜାଣ ଏହି ଦିଶା ପ୍ରାପ୍ତ ।
ହାତେ ଶଙ୍ଖା ଥାଉଁ ଥାଉଁ ଦରପଣ ଲୋଡ଼ା
କି ମନ୍ତବ୍ୟ ଦେବା, ସେତ ମୂରୁଖ ବାପୁଡ଼ା ।
ଭ୍ରମ ନିବାରଣ ପାଇଁ ଗୁରୁ ହିଁ ସକ୍ଷମ
ଦରପଣ ପରି ଶାସ୍ତ୍ରମାନ ବିଦ୍ୟମାନ ।
ପାଖେ ପାଇ ଏମାନଙ୍କ ଶରଣ ନ ନେଲେ
ମୂର୍ଖଗୋଷ୍ଠୀ ମଧ୍ୟେ ଜୀବଗଣା ହୁଏ ଭଲେ ।
ସତସଙ୍ଗ, ସତଶାସ୍ତ୍ର ବଳେ ଆତ୍ମପଦ
ଲାଭ ଯେ କରିଛି ତାର ଆ କି ବିପଦ ?
ତାହାର ହୋଇଛି ଜାଣ କଇବଲ୍ୟ ଲାଭ
ସଂସାର-ଭ୍ରମ ନିବୃତ୍ତ, ଆବର ରାଘବ ।

ମୋକ୍ଷଭାଗୀ ସେହି ଜନ ଜାଣିବ ରାଘବ
ମୋକ୍ଷ ସାଧନରେ ଯାର ପ୍ରବୃତ୍ତି ଜନ୍ମିବ ।
ପ୍ରବୃତ୍ତି ହିଁ ଏକମାତ୍ର ଗୁଣ ତ୍ରିଭୁବନେ
ବିନାଶ, ଶଙ୍କା, ଅସ୍ୱାସ୍ଥ୍ୟ କିଛି ସେ ନମାନେ
**କେବଳୀ-ଭାବ** ତାହାର ଅନ୍ୟ ନାମ ଜାଣ
ତ୍ରିଜଗତେ ତା ପ୍ରଭାବ ରାଜେ ଅନୁକ୍ଷଣ ।
ଏ ପଦ ପାଇଲେ ଜୀବ ହୁଏ ଭାଗ୍ୟବାନ
ସୁଗମ ହୁଅଇ ତାର ମୋକ୍ଷପଦ ଜାଣ ।
ସେ ପଦ ପାଇବା ପାଇଁ ମିତ୍ର, ବନ୍ଧୁଜନ
ସାହାଯ୍ୟ କରଣେ ସର୍ବେ ହୁଅନ୍ତି ଅକ୍ଷମ ।
ହସ୍ତ, ପାଦ-ଚାଳନ ବା ନାନା ତୀର୍ଥାଟନ
ବଳ, ଉତ୍ସାହ ଅଥବା ଶରୀର କଷଣ ।
ତୀର୍ଥ ଭ୍ରମଣରେ ଆଶ୍ରା ଅବା ପୁଣ୍ୟସ୍ଥାନ
ଏ ସବୁ ନୁହନ୍ତି କେହି ତହିଁକି ଭାଜନ ।
ପରଂପଦ ପ୍ରାପ୍ତି ପାଇଁ ଆହେ ରଘୁନାଥ
ସର୍ବାନ୍ତଃକରଣେ କର ମନକୁ ଆୟତ୍ତ ।
ମନରୁ ସଂସାରଭ୍ରମ ହୋଇଅଛି ଜାତ
ମନକୁ ଜିଣି ପାରିଲେ କଲ୍ୟାଣ ପ୍ରାପତ ।
ବାନ୍ଧବ, ଦୌଲତ, ପ୍ରଜା, ଦେବା ଦେବୀ, ତୀର୍ଥ
ଜୀବ କଲ୍ୟାଣ ବିଧାନେ ନୁହନ୍ତି ସମର୍ଥ ।
ଏକଇ ମାତ୍ର ମନକୁ କରିଲେ କବଳ
ଜୀବ କଲ୍ୟାଣ ସମ୍ଭବ ହୁଏ ରଘୁବାଳ ।
ପରଂପଦ ରସାୟନ ଯେ ଜ୍ଞାନ ବୋଲାଏ
ଯାର ପ୍ରାପତିରେ ଜୀବ ବିନାଶ ନପାଏ ।
ଯହିଁରେ ସକଳ ସୁଖ ପୂର୍ଣ୍ଣଭାବେ ଥାଏ
ତାର ସାଧନ ସନ୍ତୋଷ, ସମତା ଜନ୍ମାଏ ।
ଜ୍ଞାନର ଉତ୍ପତ୍ତି ସ୍ଥଳ ଅଟନ୍ତି ଏମାନ
ଏମାନଙ୍କ ବିନା ପ୍ରାପ୍ତି ନହୁଅଇ ଜ୍ଞାନ ।
ଆତ୍ମଜ୍ଞାନକୁ ବୁଝିବ ଏକଇ ପାଦପ
ଫଳ ତାର ସ୍ଥିତି, ଶାନ୍ତି ଅଟେ ତାର ପୁଷ୍ପ ।
ଯେଉଁ ଜନ ଲଭିଅଛି ଏହି ଜ୍ଞାନ-ଧନ,
ଶାନ୍ତିବାନ ସେହି, ନିର୍ଲେପ ତା ଅବସ୍ଥାନ ।
ସଂସାର ତାହାକୁ କେଉଁ ସ୍ପର୍ଶ ନକରଇ
ଜଳେ ତୈଳ ସମ ଢଳ ଢଳ ଭାସୁଥାଇ ।
ସୂର୍ଯ୍ୟୋଦୟେ ଚଳେ ଜଗତର କ୍ରିୟାମାନ
ସୂର୍ଯ୍ୟାସ୍ତରେ ସେ ସକଳ ହୋଇଯାଏ ମ୍ଳାନ ।

କ୍ରିୟା ଚାଲୁ ବା ନଚାଲୁ ତହିଁ, ଆକାଶର
କୌଣସି ସମ୍ପର୍କ ନ ରହଇ ରଘୁବୀର ।
ନିର୍ଲେପ ରହଇ ସେହିପରି ଜ୍ଞାନବାନ
ଏ ସଂସାର ଆବିଳତା ନ ଛୁଏଁ ତା ମନ ।
ମୋକ୍ଷୋପାୟମାନ ଯାହା ଏ ଶାସ୍ତ୍ରେ ନିହିତ
ଯେ ଜନ ଶ୍ରଦ୍ଧାରେ ତାହା ପଢ଼େ ଅବିରତ,
ଅଥବା ଶ୍ରବଣ କରେ ସେହି ତତ୍ତ୍ୱମାନ
ସେହୁ କ୍ଷଣୁ ମୋକ୍ଷଭାଗୀ ହୁଏ ସେହି ଜନ ।
ମାନସ ତାହାର ହୁଏ ପ୍ରଶାନ୍ତ ନିର୍ମଳ
ବିଶ୍ରାନ୍ତିରେ ଅବସ୍ଥାନ କରେ କାଳ କାଳ ।
ନାହିଁ ତାର ଶ୍ରମ କିବା ନାହିଁ ତା ବାସନା
ଏକ ରସାତ୍ମକ ହୁଏ ସେ ଉଦାସ ମନା ।
ଏବେ ଶୁଣ ରାମଚନ୍ଦ୍ର ମୋକ୍ଷର ମନ୍ଦିରେ
ଚାରି ଦ୍ୱାର ଜଗିଛନ୍ତି ଚାରି ଦ୍ୱାରପାଳେ ।
ଗୋଟିକୁ ସ୍ୱବଶ କଲେ ଫିଟେ ମୋକ୍ଷ ଦ୍ୱାର
ସେ ଚାରିଙ୍କ ନାମ ଶୁଣ ହେ ନୃପ କୁମର ।
**ଶମ, ବିଚାର, ସନ୍ତୋଷ, ପୁଣି ସାଧୁସଂଗ**
**ଶମର** ମହାତ୍ମ୍ୟ ମୁହିଁ କହୁଅଛି ଆଗ ।
ମରୁସ୍ଥଳ ନଦୀପରି ଜାଣ ଏ ସଂସାର
ସୁଖ ଆଶା ପୋଷି ଜୀବ ଭ୍ରମେ ଏହି ସ୍ଥଳ ।
ସୁଖ ନାହିଁ, ସୁଖ ଆଶା କରି ଧାଇଁଥାଏ
ସେ ସୁଖ ଅଟଇ ତୃଷ୍ଣା-ଜାତ ପାପ ପ୍ରାୟେ ।
ସେ ପାପ ଅଟଇ ତାର ଦୋଷର ଅବସ୍ଥା
ତହିଁରୁ ଉଦ୍ଧାର ପାଇଁ ସଦା ତାଙ୍କ ଚିନ୍ତା ।
କଫ, ବାତ, ପୀତ, ଧାତୁ ହୋଇଣ ଦୂଷିତ
ନାନା ଉପଦ୍ରବ କରେ ଦୋଷ ଜ୍ୱର ଜାତ ।
ଜୀବମାତ୍ରେ ଜ୍ୱର ତାପ ଉପଶମ ପାଇଁ
ଯହିଁ ତହିଁ ଜଳପାଇଁ ଧାଇଁ ବୁଲୁ ଥାଇ ।
ଅବିଦ୍ୟା ଜନିତ ଅହଙ୍କାରବଶ ହୋଇ
ପରିତ୍ରାଣ ପାଇଁ ବୁଲେ ହାୟ ହାୟ ! କହି ।
ଶାନ୍ତି ପାଇଁ ଭ୍ରମି ଭ୍ରମି ଭବ ମରୁସ୍ଥଳୀ
ଶୀତଳତା ଲାଗି ଖାଲି ମରୁଥାଏ ଝୁରି ।
**ଏ ଦୁଃସାଧ୍ୟ ତାପ ପାଇଁ ଶମହିଁ ଔଷଧ**
**ଶାରୀରିକ ମାନସିକ ଜ୍ୱାଳା କରେ ବନ୍ଦ ।**

**ଶ୍ରେୟ ଲବ୍ଧ ହୋଇଥାଏ ଶମ ସେବା କଲେ**
**ସେ ଶମ କିପରି ବସ୍ତୁ ଖୋଜ ସବୁବେଳେ ।**
ଶମହିଁ ପରମପଦ, ଶମ ସ୍ୱୟଂ ଶିବ
ପରମ ଶାନ୍ତିଦାୟକ ତାହାକୁ ବୁଝିବ ।
ସର୍ବ ଭ୍ରମ, ଭ୍ରାନ୍ତି ଶମ କରିଥାଏ ଦୂର
ନିରାଶ ପିପାସା ପାଇଁ ଶମ ଗଙ୍ଗାଜଳ ।
ଶମ-ମେଘ ବୃଷ୍ଟି କଲେ ସୁଖି ହୁଏ ଜୀବ
ଶମ-ତରୀ ଆଶ୍ରାକଲେ ତରିଯିବ ଭବ ।
ପରମ ଶତ୍ରୁ ଯେ ଥିବ, ମିତ୍ର ପାଲଟିବ
କଳ୍ପନା ବାହାର ଶମ ଗୁଣର ପ୍ରଭାବ ।
ଚନ୍ଦ୍ରମା ଉଦୟ ହେଲେ ସୁଧା ବରଷଇ
ଉତ୍ତାପ ବଦଳେ ଶୀତଳତା ବିରାଜଇ ।
ଉଇଁ ଆସେ ଶମ-ଚନ୍ଦ୍ର ଯାର ହୃଦଦେଶେ
ସର୍ବ ତାପ କ୍ଷୟ ପାଇ ପରା ଶାନ୍ତି ଆସେ ।
ଶମ-ସୁଧା ପରି ସୁଧା ନାସ୍ତି ଜଗତରେ
ଶମ ପରମ ଶୋଭାକୁ ବରଷଣ କରେ ।
ପୂର୍ଣ୍ଣିମା ଚନ୍ଦ୍ର ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ବରଷଇ
ଶମ-ଚନ୍ଦ୍ର-ଜ୍ୟୋତ୍ସ୍ନା ଜୀବ କାନ୍ତି ଝଲସାଇ ।
ଯେଉଁ ପୁରୁଷମାନଙ୍କ ହୃଦୟ କମଳେ
ଶମ-କମଳ ବିକଶେ ଅତି ଉଲ୍ଲାସରେ,
'ଦ୍ୱିହୃତ୍ ପଦ୍ମ' ଆଖ୍ୟା ତାଙ୍କୁ ଦିଅନ୍ତି ପଣ୍ଡିତେ
'ଦ୍ୱିହୃତ୍ ପଦ୍ମଜୀବ' ହରି ତୁଲ୍ୟ ଏ ଜଗତେ ।
ବିଷ୍ଣୁଙ୍କର ଦୁଇଗୋଟି ହୃଦୟ ଯେସନ
ଏକ ନିଜ ଅଙ୍ଗେ, ଅନ୍ୟ ସନ୍ଥଙ୍କ ମଧ୍ୟେଣ ।
ତେସନ ଜୀବର ଅଛି ଦୁଇଗୋଟି ହୃଦ
ଏକ ନିଜ ଅଙ୍ଗେ, ଅନ୍ୟ ଶମଙ୍କର ମଧ୍ୟ ।
ଯେ ଆନନ୍ଦ ଶାମବାନ ଅନୁଭବ କରେ
ଅମୃତ ପାନରେ ସେ ଆନନ୍ଦ ତ ନ ମିଳେ ।
ଅଧିବ୍ୟାଧି ବିଚଳିତ ତୁମ ଯେ ଅନ୍ତର
ତୃଷ୍ଣାବଳେ ଇତଃସ୍ତତଃ ଯେ ହୃଦ ତୁମର ।
ଶମ-ଅମୃତରେ ତାକୁ ଶମ-ଆଶ୍ୱାସିତ
କରିବାକୁ ହେବ ଜାଣ ଆହେ ରଘୁନାଥ ।
ଶମ-ଶୀତଳ ବୁଦ୍ଧିରେ ତୁମେ ଯା କରିବ
ଅମୃତପରି ତୁମକୁ ସେ ସବୁ ଲାଗିବ ।
ଯେତେଦିନ ଯାଏ ମନ ନୋହିଛି ପ୍ରଶାନ୍ତ
କିଛିମାତ୍ର ଭଲ ନଲାଗିବ ରଘୁନାଥ ।

ଶମ-ଅମୃତେ ପ୍ଲାବିତ ନୋହିଲେ ଏ ମନ
କୌଣସି ମତେ ନହୋଇ ପାରେ ତ ନିର୍ବିଘ୍ନ ।
ଯାହାକୁ କହନ୍ତି ଲୋକେ ଅନିବାର୍ଯ୍ୟ ସୁଖ
ପରାପତ ନୋହି, ଜୀବ ହୁଅଇ ବିମୁଖ ।
ଅଙ୍ଗ କଟିଗଲେ ସେହି ଶମ-ସୁଖ ନେଇ
ପୁଣି ଯୋଡ଼ି ହୋଇଯାଏ ଆହେ ରଘୁରାଇ ।
ପିଶାଚ, ରାକ୍ଷସ, ଅବା ହିଂସ୍ର ଜନ୍ତୁମାନେ
ଦ୍ୱେଷ ଆଚରନ୍ତି ନାହିଁ ଶମ-ଶାଳୀ ଜନେ ।
ଧନୁର୍ମୁକ୍ତ ବାଣ କେଭେଁ ଭେଦି ନପାରଇ
ବଜ୍ରଶୀଳା ଅଙ୍ଗେ ବାଜି ଲେଉଟି ଆସଇ ।
ଶମାମୃତ-ବର୍ମଧାରୀ ମନକୁ ତେସନ
ବିଦ୍ଧ କରି ନପାରଇ ଯାବତ କଷଣ ।
କେଡ଼େ ନିଃଶଙ୍କ ଅଟଇ ସେ ମନ-ରାଜନ
ସୁଦୃଢ଼ ଦୁର୍ଗ ମଧ୍ୟରେ ଯାର ଅବସ୍ଥାନ ।
ହୋଇଥାଉ ଜନ ପଛେ ଯେଡ଼େ ଅକିଞ୍ଚନ
ଶମବର୍ମୀ ହୋଇ ଯେହୁ କରେ ବିଚରଣ ।
ପ୍ରାଣଠାରୁ ପ୍ରିୟ ବସ୍ତୁ ଅନ୍ତର୍ଦ୍ଧାନ ହେଲେ
ପୁନଃ ପ୍ରାପ୍ତିରେ ତାହାର ଯେ ଆନନ୍ଦ ମିଳେ ।
ତାଠାରୁ ଅଧିକତର ଆନନ୍ଦ ମିଳଇ
ଶମାଶୟ-ଜନ ଯେବେ ନୟନେ ପଡ଼ଇ ।
ରାଜା, ମନ୍ତ୍ରୀ, ରୂପବତୀ ନାରୀ ଦରଶନ
ଦେଇ ନ ପାରେ ସେ ସୁଖ ହେ ରଘୁନନ୍ଦନ ।
ସର୍ବ ପୂଜନୀୟ ଅଟେ ଶମାଶ୍ରୟ ନର
ବନ୍ଦନା କରଇ ତାକୁ ସବୁରି ଅନ୍ତର ।
ଶମଗୁଣାନ୍ୱିତ କେଭେ ନୁହେଁ ବଚଳିତ
ତାକୁ ଚଳାଇବ ଅଛି କାହାର ସାମର୍ଥ୍ୟ ।
ସୁମିଷ୍ଟ ସର୍ବଦା ତାର କରମ, ବଚନ
ସୁଶୀତଳ ସୁଖଦାୟୀ ଚନ୍ଦ୍ରକାନ୍ତି ସମ ।
ସବୁରି ହୃଦୟାରାମ ତାହାର ବ୍ୟକ୍ତିତ୍ୱ
ସର୍ବ ମର୍ମ ସ୍ପର୍ଶକରେ ତାର କରାମତ ।
ମାତା କୋଳେ ରହି ଯଥା ବାଳକ ଆନନ୍ଦ
ଶମାଶୟ ସଙ୍ଗୁ ଜୀବ ପାଏ ସେ ଆମୋଦ ।
ଦୁର୍ଭାଗ୍ୟରୁ ପୁତ୍ର ଯଦି ଯାଇଥାଏ ହଜି
ଦୀର୍ଘକାଳ ତା' ସମ୍ବାଦ ନ ମିଳଇ ଖୋଜି ।
ଅକସ୍ମାତେ ସେହୁ ଯଦି ଫେରିଆସେ ଘରେ
କି ଆନନ୍ଦ ପିତା, ମାତା, କହିଲେ ନସରେ ।

ତ୍ରିଲୋକ୍ୟ ପତି ଅଥବା ଚକ୍ରବର୍ତ୍ତୀ ପଦ
ଦେଇ କି ପାରିବ କେଉଁ ସେ ମହା ଆନନ୍ଦ ?
ଶମ ସମ୍ପନ୍ନ ଜନର ସେ ମହା ଆନନ୍ଦ
ସବୁ ଆନନ୍ଦକୁ ଟପି ଯିବ ରାଘବେନ୍ଦ୍ର ।
ଶମବାନ ଜନର ବା କି ଅଛି ଅଭାବ
ପରମଶତ୍ରୁ ଯେ ଥିବ, ମିତ୍ର ପାଲଟିବ ।
ନିର୍ଭୟ, ପ୍ରଶାନ୍ତ ଚିତ୍ତେ ସଦା ସେ ବିଚରେ
ହିଂସ୍ରଜନ୍ତୁ ଭୟ କେଉଁ ନଜାଣେ ସ୍ୱପ୍ନରେ ।
ଯେତେ କଷ୍ଟ ଘେରିଲେ ସେ ବିଚଳିତ ନୁହେଁ
କାଳାଗ୍ନି କବଳେ ସୁଦ୍ଧା ସେ ନିର୍ଭୟ ରହେ ।
ଚନ୍ଦ୍ରମାରେ ରାଜେ ଯଥା ଶୀତଳ ଚନ୍ଦିନୀ
ସର୍ବ ଶୁଭ-ଗୁଣ ରାଜେ ଶମହୃଦ ଜାଣି ।
ଆଧ୍ୟାତ୍ମିକାଦି ତ୍ରିତାପେ ଦଗ୍ଧ ଯା ଅନ୍ତର
ଶମଗୁଣ ପରଶନ୍ତେ ହୁଏ ତା ଶୀତଳ ।
ବର୍ଷାଜଳ ଲାଗି ତପ୍ତ ଧରଣୀ ଶୀତଳ
ତ୍ରିତାପ ଦଗଧ ହୃଦ, ଶମେ ସୁଶୀତଳ ।
ସର୍ବଦା ଆନନ୍ଦ ଶମ ପରାପତ ଜନ
ନିର୍ବିଘ୍ନରେ ସବୁ କାର୍ଯ୍ୟ କରେ ସୁସମ୍ପନ୍ନ ।
ବଜ୍ରକୁ ଭେଦି ନପାରେ ଯଥା ତୀକ୍ଷ୍ଣ ଶର
ବାଣ ଭେଦି ନ ପାରଇ ପାଷାଣ ଶରୀର ।
ଶମ-କବଚ ଧାରଣ କରିଛି ଯେ ନର
ତ୍ରିତାପ ଭେଦି ନ ପାରେ ତଥା ତା ଶରୀର ।
ଅନ୍ତଃକରଣ ତାହାର ସଦା ସୁଶୀତଳ
ପରମ ଶାନ୍ତି-ଦେବୀଙ୍କ କି ଅବା ମନ୍ଦିର ?
ତପୀ, ପଣ୍ଡିତ, ଯାଜ୍ଞିକ, ଧନୀବ୍ୟକ୍ତି ପୂଜ୍ୟ
ସଦା ଅଗ୍ରପୂଜ୍ୟ ଶମାଶୟୀ ରଖ ହେଜ ।
ତାଙ୍କ ମନବୃତ୍ତି ସଦା ରହେ ଆତ୍ମତତ୍ତ୍ୱେ
ତାଙ୍କ କାର୍ଯ୍ୟ ଅଲୌକିକ ସଦା ଏ ଜଗତେ ।
ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଆଦି ଗୁଣେ
ଇଷ୍ଟ, ଅନିଷ୍ଟ ବିଚାର ନ ଆସେ ଯା ମନେ ।
ଶାନ୍ତ ଆତ୍ମପଦ ବାଚ୍ୟ ଅଟଇ ସେ ଜନ
ଗମ୍ଭୀର ସେ ବ୍ୟକ୍ତି ସଦା ସାଗର ସମାନ ।
ରମଣୀୟ ବସ୍ତୁରେ ଯେ ନୁହଇ ବିମୁଗଧ
ଆତ୍ମପଦ ସୁଧାରସେ ସଦା ରହେ ମୁଗ୍ଧ ।
ଭବିଷ୍ୟତ ସୁଖପାଇଁ ଯେହୁ ଉଦାସୀନ
ଜିତେନ୍ଦ୍ରିୟ ସେହି ତେଣୁ ସଦା ଶାନ୍ତିବାନ ।

ସଂସାରର ମଳିନତା ତାକୁ କି ଛୁଇଁବ ?
ନିର୍ଲେପ ନିରାମୟ ସେ ସତେ ଅବା ଶିବ ।
ନିର୍ଲିପ୍ତ ସଦା ସର୍ବଦା ଆକାଶ ଯେସନ
ତେସନ ନିର୍ଲିପ୍ତ ସେହୁ ଯେହୁ ଶାନ୍ତିବାନ ।
ଇଷ୍ଟ ପ୍ରାପ୍ତିରେ ହରଷ, ଅନିଷ୍ଟେ ବିମର୍ଷ
କିଛି ହେଲେ ତା ମନକୁ ନକରଇ ଗ୍ରାସ ।
ଶାନ୍ତଭାବ ସଦାରାଜେ ତା ଅନ୍ତର ଦେଶ
ପରମାନନ୍ଦ ସେ, ଦୁଃଖେ ନ ହୁଏ ବିରସ ।
ସୂର୍ଯ୍ୟୋଦୟେ ଅନ୍ଧକାର ଅସ୍ତଗଲା ପରି
ଶାନ୍ତି ସୂର୍ଯ୍ୟ ଉଇଁ ତାର ଦୁଃଖ ଅପସରି ।
ବିକାର ଶୂନ୍ୟ ହୋଇ ସେ ଆନନ୍ଦେ ବିଳସେ
କେ ବୁଝିବ ସେ ଆନନ୍ଦ, ବୁଝେ କେବଳ ସେ ।
ଜଳରେ କମଳ ରହେ ଯେସନ ନିର୍ଲିପ୍ତ
ଶାନ୍ତିବାନ କେଉଁ ହେଲେ ନୁହଇ ଆଶକ୍ତ ।
ଯେତେ ଦୁଃଖ ଆସୁ ପଛେ ଯେ ନୁହେ କାତର
ଯେତେ ସମ୍ପଦ ହେଲେ ହେଁ ଯେ ନୁହେଁ ବିହ୍ୱଳ ।
ନାହିଁ ଯାର ଗର୍ବ, ତୁଚ୍ଛ-ଦେହ ଅଭିମାନ
ଶାନ୍ତିବାନ ଆଖ୍ୟା ତାକୁ ଦ୍ୟନ୍ତି ଜ୍ଞାନୀଜନ ।
ଶାନ୍ତି ବିରହିତ ଜନ ହୁଏ କ୍ଷଣ କୋପୀ
ରାଗ, ଦ୍ୱେଷ ସଦା ରହେ ତା ଅନ୍ତର ବ୍ୟାପି ।
ଶାନ୍ତ ଜନଠାରେ ନାହିଁ ତାଦୃଶ ଲକ୍ଷଣ
ଅନ୍ତର ବାହାର ତାର ସର୍ବଦା ସମାନ ।
ହିମାଳୟ ସମ ସଦା ଶୀତଳ ସେ ରହେ
କ୍ଷଣକୁ କ୍ଷଣ ତା ମୁଖ-କାନ୍ତି ବଢୁଥାଏ ।
ପରମାନନ୍ଦ ସେ ଜନ, ଶାନ୍ତି ଯେ ପାଇଛି
ପରମପଦ ପ୍ରାପତି ଲାଭ ସେ କରିଛି ।
ଯେଉଁ ଜନ ପୁରୁଷାର୍ଥ ପାଇଁ ଅଭିଳାଷୀ
ଶାନ୍ତି ଅରଜନ ପାଇଁ ହୁଏ ସେ ପ୍ରୟାସୀ ।
ଚନ୍ଦ୍ରୋଦୟେ ଯଥା ଜ୍ୟୋତ୍ସ୍ନା ହୁଏ ପରକାଶ
ଶାନ୍ତ, ଶମବାନଠାରେ ନିବୃତ୍ତି ତାଦୃଶ ।
ଗୁଣମାନଙ୍କରେ ଶାନ୍ତି ପାଏ ଶ୍ରେଷ୍ଠ ସ୍ଥାନ
ଶାନ୍ତି ନିକଟେ ସଙ୍କଟ ହରାଏ ତା ମାନ ।
ପରମ ଯୋଗୀ ଯେପରି ଶମ ଗୁଣ ଲଭି
ଅମୂଲ୍ୟ ବସ୍ତୁକୁ ପାଏ, ପରଂପଦ ଭୋଗୀ ।
ମୋକ୍ଷ ସିଦ୍ଧି ପାଇଁ ତୁମେ ଶମ ଗୁଣାନ୍ୱିତ
ହେବାପାଇଁ ଯତ୍ନବାନ ହୁଅ ରଘୁନାଥ ।

ସେ ଶାନ୍ତି ଅର୍ଜ୍ଜନେ ତରିଯିବ ଏ ସଂସାର
ଧୀର ସ୍ଥିର ଚିତ୍ତେ ଯେବେ ମୋ ବଚନ ପାଳ ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ଶମ ନିରୂପଣ ବର୍ଣ୍ଣନେ**
**ନାମ ତ୍ରୟୋଦଶ ସର୍ଗଃ ।**



## ଚତୁର୍ଦ୍ଦଶ ସର୍ଗଃ
## ବିଚାର୍ ନିରୂପଣ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଦ୍ୱିତୀୟ ଦ୍ୱାରପାଳ ଯେ ଅଟଇ 'ବିଚାର' ।
ସେ ବିଚାର ନିରୂପଣ ଶୁଣ ମନଦେଇ
ଶୁଦ୍ଧ ହୃଦୟେ ବିଚାର-ବୁଦ୍ଧି ଉପୁଜଇ ।
ଶାସ୍ତ୍ର ଅର୍ଥ ଅନୁଧାନେ ବୁଦ୍ଧି ହୁଏ ତୀକ୍ଷ୍ଣ
ବୁଦ୍ଧି ତୀକ୍ଷ୍ଣ ହେଲେ ଆତ୍ମଜ୍ଞାନଟି ସୁଗମ ।
ସୂକ୍ଷ୍ମ ତତ୍ତ୍ୱ ଅନୁଧାନେ ଜୀବ ହେଲେ ମଗ୍ନ
ପରମପଦ ପ୍ରାପତି ତା ପାଇଁ ସୁଗମ ।
ଭବବ୍ୟାଧିର ଔଷଧ ଅଟଇ 'ବିଚାର'
ଭବରୋଗ ବିନାଶନେ ସୁଧାର ଭଣ୍ଡାର ।
ଅନ୍ତର ଶୁଦ୍ଧିରେ ବଢ଼େ ବିଚାରର ବଳ
ଶାସ୍ତ୍ର ଅନୁଧାନେ ବୁଦ୍ଧି ତୀକ୍ଷ୍ଣରୁ ତୀକ୍ଷ୍ଣତର ।
ଅଜ୍ଞାନ ବନସ୍ତେ ଫୁଟେ ଆପଦ ମଲ୍ଲିକା
ବିଚାର-ଖଡ଼୍ଗେ ତାକୁ କାଟିବାର ଏକା ।
ବିଚାର ବଳେ ତାହାର ମୂଳ ଉପାଡ଼ିଲେ
ଆପଦ ଅଙ୍କୁର ଆଉ ନ ଜନ୍ମିବ ଭଲେ ।
ସ୍ୱଜନ ବିୟୋଗ ପୁଣି ଅନ୍ୟାନ୍ୟ ସଙ୍କଟ
ପରମ୍ପରା ଗ୍ରାସେ ଜୀବ ହୁଏ ଛଟପଟ ।
କେବଳ ମୋହ ହିଁ ଜାଣ ଏ ନାଟ କରଣ
ଏକ ହିଁ ଗତି ତା ପାଇଁ ସାଧୁଙ୍କ ବଚନ ।
ମୋହ-ହସ୍ତୀ ନଷ୍ଟକରେ ହୃଦ-ପଦ୍ମବନ
ବିଚାର ସିଂହର ତହିଁ ହେଲେ ଆଗମନ ।
ଭୟପାଇ ମୋହ-ହସ୍ତୀ କରେ ପଳାୟନ
ଶାନ୍ତ-ଆତ୍ମା ହୋଇ ଜୀବ କରେ ବିଚରଣ ।
ଯତ୍ କିଞ୍ଚିତ ସିଦ୍ଧି ଯହିଁ ଯେହୁ ପାଇଥାଇ
ସୁବିଚାର, ପୁରୁଷାର୍ଥେ, ବଳେ ତା ମିଳଇ ।
ସର୍ବ ଅଗ୍ରେ ପୁରୁଷାର୍ଥ ଆଶ୍ରେ କଲେ ରାଜା
ତାହା ବଳେ ଲଭେ ସେହୁ ଧନ, ରାଜ୍ୟ ପ୍ରଜା ।
ବଳ, ବୁଦ୍ଧି, ତେଜ, ପ୍ରତିପତ୍ତି କ୍ରିୟା-ଫଳ
ବିବେକ ବଳରେ ସର୍ବେ ହୁଅନ୍ତି କବଳ ।
**ସାମ୍ରାଜ୍ୟ, ଐଶ୍ୱର୍ଯ୍ୟ ପୁଣି ମୋକ୍ଷ, ସନାତନ**
**ବିଚାର-କଳ୍ପ ବୃକ୍ଷର ଫଳ ଏହିମାନ ।**
ବିଚାରବାନ ବିବେକୀ ଭୁଞ୍ଜେ ସେହି ଫଳ
ଅବିବେକୀ ଅବିଚାରୀ ଉଦ୍ୟମ ନିଷ୍ଫଳ ।
ବିଚାରବଳେ ଇନ୍ଦ୍ରିୟ ଜିଣିପାରେ ନର
ବୁଦ୍ଧିକୁ ଆତ୍ମବ୍ୟାପିନୀ କରଇ ବିଚାର ।
ବିଚାର ବଳେ ଲୋକର ତେଜ ବଢ଼ିଥିଲେ
କାହୁଁ କାହୁଁ ବସ୍ତୁମାନ ହାତେ ଆସି ପଡ଼େ ।
ବିଚାରକୁ ଆଶ୍ରାକରି ଚଳେ ଯେଉଁ ନର
ବାଞ୍ଛିତାର୍ଥ ଫଳ ପାଉଥାଏ ନିରନ୍ତର ।
ପରମ ବନ୍ଧୁ ଅଟଇ 'ବିଚାର'ଟି ତାର
କେଉଁଭେ ବିପଦେ ନ ପଡ଼େ ସୁବିଚାର ଯାର ।
ଶୁଖିଲା ଲାଉ ଜଳରେ ଯଥା ନ ବୁଡ଼ଇ
ମହତ-ବୁଦ୍ଧି ବିପଦେ କେଉଁଠେ ନ ପଡ଼ଇ ।
ଯାହା ସେ କରଇ ବୁଝି ବିଚାରି କରଇ
ବୁଝି ବିଚାରିଣ ଦେବା ନେବା କରୁଥାଇ ।
ସୁବିଚାର ବଳେ ବ୍ୟାବହାରିକ ବୁଦ୍ଧିରେ
କର୍ମ୍ମ କଲେ ଶ୍ରେଷ୍ଠଫଳ ମିଳେ ଅକ୍ଳେଶରେ ।
ଅବିଚାର ପୂର୍ଣ୍ଣ ଅଟେ ମୂର୍ଖଙ୍କ ହୃଦୟ
ସୁବୋଧ ଗମ୍ୟ ନୁହେଁ ତା ଅନ୍ଧକାରମୟ ।
ମୋକ୍ଷ ମାର୍ଗର ବିରୋଧି ଅଟେ ସେ ହୃଦୟ
ତିକ୍ତ କରଞ୍ଜ ମଞ୍ଜରୀ ତହିଁ ଉପମେୟ ।
ହୃଦଦେଶ ଆଚ୍ଛାଦିତ କଜ୍ଜଳ-କଳଙ୍କେ
ସବୁବେଳେ ମନ ବୁଡ଼ି ରହେ ନିଦ୍ରା-ପଙ୍କେ ।
ଜ୍ଞାନ-ଦୀପ ତେଜେ ନାଶେ ସେହି ଅନ୍ଧକାର
କାଳିମା-କଳଙ୍କ କ୍ଷଣେ ହୋଇଯାଏ ଦୂର ।
ସୁବିଚାର-କ୍ରିୟା ସର୍ବ ସିଦ୍ଧିର କାରଣ
ସୁବିଚାର ଆଣେ ଧର୍ମ, ଅର୍ଥ, ମୋକ୍ଷ, କାମ ।
ବିଚାର-କଳ୍ପବୃକ୍ଷରେ ଯେ କରେ ନିବାସ
ସେହି ସିନା ସିଦ୍ଧିଲାଭ କରେ ରଘୁଈଶ ।
ସ୍ୱହୃଦରେ କରିନିଅ ଶୁଦ୍ଧି ବ୍ରହ୍ମଜ୍ଞାନ
ସେ ବଳେ ବୁଝି ପାରିବ କିସ ଆତ୍ମଜ୍ଞାନ ।
ଅନ୍ଧାରେ ପ୍ରଦୀପାଲୋକ ଚିହ୍ନାଏ ପଦାର୍ଥ
ସୁବିଚାର କହିଦିଏ କେ ସତ୍ୟ, ଅସତ୍ୟ ।

ଅସତ୍ୟ ତେଜି ଯେ ସତ୍ୟପଥ ଅନୁସରେ
ବିଚାରବାନ ପୁରୁଷ ସେ ଏ ଜଗତରେ ।
ଭବ ସାଗରେ ଆପଦ ଢେଉ ଉଠୁଥାଇ
ବିଚାରବାନ ତହିଁର କ୍ଳେଶ ନ ଜାଣଇ ।
ବିଚାର ଦ୍ୱାରା ଯେବଣ କାର୍ଯ୍ୟ କରାଯାଏ
ପରିଣାମ ସୁଖ ତାର, ଆପଦ ନ ଥାଏ ।
ଯେଉଁ କାର୍ଯ୍ୟ କରାଯାଏ ବିନା ବିଚାରରେ
ଦୁଃଖ କଷଣ ତହିଁ କି କାହୁଁ ଆସି ଘେରେ ।
ଅବିଚାର-ରଜନୀରେ ତୃଷ୍ଣା-ପିଶାଚିନୀ
ବିଚରଣ କରେ ତାକୁ ନ ଅଣ୍ଟେ ରଜନୀ ।
ଉଠନ୍ତେ ହୃଦୟ-ରାଜ୍ୟେ ବିଚାର-ତପନ
ସେ ରାତ୍ରି, ସେ ପିଶାଚିନୀ ଯାନ୍ତି ଅନ୍ତର୍ଦ୍ଧାନ ।
ତୁମ୍ଭଙ୍କୁ ମୋହର ଏହି ଆଶୀର୍ବାଦ ରାମ
ତୁମ ଅବିଚାର-ରାତ୍ରି ଲଭୁ ଅବସାନ ।
ବିଚାର ଭାନୁ ନାଶଇ ସଂସାର କଷଣ
ଆବର ବିନଷ୍ଟ କରେ ସର୍ବରୂପ ଭ୍ରମ ।
ନିଜ ଛାଇ ଦେଖିଶୁଣି ପାଏ ଭୂତ ଭ୍ରମ
ବିଚାର ବଳେ ସେ ଭ୍ରମ ନାଶ ଯାଏ ପୁଣ ।
ଅବିଚାର ଆଣିଦିଏ ସାଂସାରିକ ଦୁଃଖ
'ବିଚାର' ସେ ଦୁଃଖ ନାଶି ଦିଏ ନିତ୍ୟ ସୁଖ ।
ଯେଉଁଠି ବିଚାର ଥାଇ, ନାହିଁ ତହିଁ ଦୁଃଖ
ବିଚାର ନଥିବା ସ୍ଥଳେ କିଏ ହେବ ସୁଖ ?
ଯହିଁ ପ୍ରକାଶ ଅଛଇ, ନାହିଁ ଅନ୍ଧକାର
ପ୍ରକାଶ ଅଭାବେ ନିତ୍ୟ ରାଜେ ନିଶାଘୋର ।
ସୁବିଚାର ଥିବା ସ୍ଥଳେ ଭବଭୟ ନାଶ
ବିଚାର ଅଭାବେ ଭବ ଭୟର ପ୍ରବେଶ ।
ଆତ୍ମବିଚାର ପ୍ରକାଶେ ଜନ୍ମେ ଶୁଭଗୁଣ
ପରମାନନ୍ଦ ପାଇଁକି ଡାକରା ଦେଇଣ ।
କମଳିନୀ ଶୋଭେ ଯଥା ମାନସ-ହ୍ରଦରେ
ଶୋଭାଗୁଣ ବୃଦ୍ଧି ପାଏ ସୁବିଚାର ବଳେ ।
ଅବିଚାର ହିଁ ସର୍ବଦା ଦୁଃଖର କାରଣ
ସୁବିଚାର ଯୋଗୁଁ ଫୁଟେ ସୁଖର ସୁମନ !
ବିଚାର ବିମୁଖ ଜନ ବନ ବୃକ୍ଷସମ
ସାହାଯ୍ୟ କରିବା ପାଇଁ ସେମାନେ ଅକ୍ଷମ ।
ଦେଖିଲେ କରିବ ତାଙ୍କୁ ଦୂରରୁ ଜୁହାର
ତେବେ ନିର୍ବିଘ୍ନରେ କର୍ମ ଚଳିବ ସୁନ୍ଦର ।

ପୂର୍ଣ୍ଣଚନ୍ଦ୍ର ଦେଖି ଯଥା ସିନ୍ଧୁ ଉଦ୍‌ଭାସିତ
'ବିଚାର' ଘେନି ମାନସ ସଦା ପ୍ରଫୁଲ୍ଲିତ ।
ଯେ ଜନ ରହଇ ସଦା ବିଚାର ସମ୍ପନ୍ନ
ପରମପଦ ତା ପାଇଁ ହୁଅଇ ସୁଗମ ।
ଜ୍ୟୋସ୍ନା ପ୍ରକାଶେ ଭୁବନ ଦିଶେ ସୁଶୋଭନ
ବିଚାରବନ୍ତର ଶୋଭା ତହୁଁ ଦୀପ୍ତିମାନ ।
ବିବେକ-ରଶ୍ମି ଜ୍ୟୋସ୍ନାରୁ ସୁଶୀଳତାର
ଆବର ଜନ ମାନସ କରେ ସୁନିର୍ମଳ ।
ପୁରୁଷାର୍ଥ ସିଦ୍ଧ ନର କେଡ଼େ ଯେ ମହାନ–
'ବିଚାର ଶ୍ୱେତ ଚାମର' ତା ଅଗ୍ରେ ଶୋଭନ ।
ଭାସ୍କର ତେଜରେ ଦଶ ଦିଗ ତମ ନାଶ
ସୁବିଚାର କରେ ଭବ ଭୟର ବିନାଶ ।
ଗୁଣିର ବେତାଳ ଭୟ ଛଡ଼ାଏଟି ଯଥା
ତଥା 'ବିଚାର' ହଟାଏ ଅଜ୍ଞାନୀ ମୂଢ଼ତା ।
କ୍ଷଣଭଙ୍ଗୁର ଭବର ଅସାର ସୌନ୍ଦର୍ଯ୍ୟ
'ବିଚାର ଭାବ' ନୁହେଁ କି ଏହାର ତାତ୍ପର୍ଯ୍ୟ ?
ମନ୍ତ୍ରବଳେ ଭୂତଭୟ ବିନାଶ ଯେସନ
'ବିଚାର' ନାଶଇ ଭବ ଭ୍ରାନ୍ତିକୁ ତେସନ ।
ମୋହବଶେ ଜୀବ ସେହି ଭ୍ରମେ ଘାଣ୍ଟି ହୁଏ
'ବିଚାର' ସେ ରୋଗ ପାଇଁ ଔଷଧ ବତାଏ ।
ବିଚାର ଗୁଣକୁ ବୁଝ ଏକ ତୁଙ୍ଗ ବୃକ୍ଷ
ତାହାର ଫଳ ପରମ ସୁଖ, ଯା କି ମୋକ୍ଷ ।
ଶାସ୍ତ୍ର ବଚନରେ ତାହା ବୋଲାଏ କୈବଲ୍ୟ
କେ କଳି ପାରିବ ସେହି କୈବଲ୍ୟର ମୂଲ୍ୟ ?
ଚନ୍ଦ୍ରର ଉଦୟେ ହୁଏ ଶୈତ୍ୟର ଉଦୟ
ସୁବିଚାର ବଳେ ହୁଏ ମୋକ୍ଷ ଅଭ୍ୟୁଦୟ ।
ମୋକ୍ଷ ଉଦୟ ଜନ୍ମାଏ ନିଷ୍କାମତା ଗୁଣ
ନିଷ୍କାମତାରୁ ନିଶ୍ଚଳ ଉଦାରତା ଜନ୍ମ ।
ଆନନ୍ଦରସ ସମ୍ପନ୍ନ ଅଟେ ସେ ଅବସ୍ଥା
ଅବର୍ଣ୍ଣ୍ୟ, ଅଚିନ୍ତ୍ୟ ଅଟେ ସେ ଅବସ୍ଥା ସତ୍ତା ।
ସିଦ୍ଧି ଲାଭ ପାଇଁ ଅଛି ଏକ ମହୌଷଧି
ଆତ୍ମ-ବିଚାର କେବଳ ସେ ଔଷଧି ବିଧି ।
କାମନା ବିନାଶ ହେଲେ ସିଦ୍ଧି ହୁଏ ସାଧ୍ୟ
ତ୍ୟାଗ ଭାବେ ବୁଡ଼ିରହେ ସଦା ତାର ହୃଦ
ପରମାନନ୍ଦଙ୍କୁ ଯେବେ ଅନୁସରେ ଚିତ୍ତ
ସକଳ ବାସନା ତାର ହୁଏ ଦୂରୀଭୂତ ।

ଉନ୍ନତି ବା ଅବନତି ତା ପକ୍ଷେ ସମାନ
ଦାନ, ଅଦାନ ସର୍ବ ସେ କରେ ବରଜନ ।
କୌଣସି ପଦାର୍ଥ ପାଇଁ ନ ବଳେ ତା ମନ
ସାକ୍ଷୀପରି ଉଦାସୀନ ଭାବେ କାଟେ ଦିନ ।
ଅନ୍ତରେ ଅବା ବାହାରେ ନୁହେଁ ସେ ଆସକ୍ତ
ନୁହେଁ ସେ ବିଷର୍ଣ୍ଣ କିମ୍ବା ନୁହେଁ ଅନୁରକ୍ତ ।
ପ୍ରଶାନ୍ତ ସାଗର ସମ ଚିତ୍ତ ତାର ସ୍ଥିର
ସମ୍ପଦେ, ବିପଦେ ସଦ ଅଚଳ, ଅଟଳ ।
ସେହିପରି ପୂର୍ଣ୍ଣ-ଚିତ୍ତ ଜୀବନ୍ମୁକ୍ତଗଣ
ସ୍ୱଚ୍ଛନ୍ଦରେ ବିଚରନ୍ତି ଏହି ଧରାଧାମ ।
ଦୀର୍ଘକାଳ ଏ ଜଗତେ ରହିଣ ସେମାନେ
ସ୍ୱଦେହ ତ୍ୟାଗ କରନ୍ତି ନିଜ ଇଚ୍ଛାକ୍ରମେ ।
ଦେହାନ୍ତେ ପରମ କଇବଲ୍ୟ ସେ ଲଭନ୍ତି
ଜଗତେ ଆଦର୍ଶ ଧ୍ୱଜା ଉଡ଼ାଇ ଚଳନ୍ତି ।
କୁଟୁମ୍ବ ପୋଷଣ କିମ୍ବା ବିପଦ ଆଗମ
ଅଧୀର କରି ନପାରେ କେଭେଁ ତାଙ୍କ ମନ ।
ଯତ୍ନ ପୂର୍ବକ ଶ୍ରବଣ, ମନନ ସହିତ
ସ୍ଥିର କରିଥାନ୍ତି ନିଜ କର୍ତ୍ତବ୍ୟର ପଥ ।
'ମୁଁ କିଏ' ଆବର 'ଏହି ସଂସାର କାହାର'
କିପରି ଉତ୍ପତ୍ତି ହେଲା ଏହି ଚରାଚର ?
ଆବର କିପରି ଲୟ ହୁଏ ଏ ସଂସାର
ନିଜକୁ ପୁଚ୍ଛନ୍ତି ଏହି ପ୍ରଶ୍ନ ବାରମ୍ବାର ।
ସୁବିଚାର ବଳେ ବ୍ରହ୍ମ-ପଥ ଆଚରନ୍ତି
ବିପଦ ଆପଦ ଚିନ୍ତି, କର୍ତ୍ତବ୍ୟ କରନ୍ତି ।
ପ୍ରଦୀପ ଆଲୋକ ପାଇ ଅନ୍ଧାର ପଳାଏ
କେଉଁଠି କି ବସ୍ତୁ ଅଛି ସବୁ ଦେଖାଯାଏ ।
ବେଦ ବେଦାନ୍ତ ପଠନ, ତହିଁର ବିଚାର
ହୃଦୟର ମଳିନତା କରିଦିଏ ଦୂର ।
ଧର୍ମତତ୍ତ୍ୱ, ବ୍ରହ୍ମତତ୍ତ୍ୱ ହୁଅଇ ସୁବୋଧ
ବାଟ ଫିଟିଯାଏ ଲଭିବାକୁ ପରଂପଦ ।
ଏମନ୍ତ ଆଶ୍ଚର୍ଯ୍ୟ ଚକ୍ଷୁ ଅଟେ ଏ 'ବିଚାର'
ଢାଙ୍କି ନ ପାରଇ ତାକୁ ଘୋର ଅନ୍ଧକାର ।
ତା ବଳ ଦୂର, ନିକଟ ସକଳ ପଦାର୍ଥ
ଅନାୟାସେ ଦେଖେ ନର ନ ଜାଣଇ କଷ୍ଟ ।
ଜନ୍ମାନ୍ଧ, ବିବେକ ଅନ୍ଧ, ଉଭୟଙ୍କ ଦଶା
କିଛି ଦେଖି ନପାରନ୍ତି ସଦା ହତ-ଆଶା ।

ବିଚାର ଦିବ୍ୟଦୃଷ୍ଟିରେ ସୁବିବେକୀ ଜନ
ଅନାୟାସେ ଲଭୁଥାନ୍ତି ଯାହା ତାଙ୍କ ମନ ।
ବିଚାର ଆଶ୍ଚର୍ଯ୍ୟ ବସ୍ତୁ ନାହିଁ ତାର ପର
ପରମାତ୍ମାଙ୍କ ସଦୃଶ ଆନନ୍ଦ ଆଧାର ।
କ୍ଷଣକ ପାଇଁକି ସୁଦ୍ଧା ସାଧୁ ଜନମାନେ
ବିଚାର ଶୂନ୍ୟ ହେବାକୁ ନ ଆଣନ୍ତି ମନେ ।
ପାଚିଲା ଆମ୍ବ ଯେପରି ସର୍ବ ରୁଚିକର
ବିଚାରବାନ ସବୁରି ସଦା ପ୍ରିୟତର ।
ମୂଷା ଗାତ ଖୋଳି ଯେବେ ଗଦାକରେ ମାଟି
ବିଲେଇ କାହୁଁ ଆସିଣ ତହିଁ ଯାଏ ଜୁଟି ।
ଅବିଚାରୁ ମାଟିରୂପ-ପାପ ଜନମିଲେ
ବିପଦ-ମାର୍ଜାର ଆସି ପହଞ୍ଚଇ ଭଲେ ।
ଶୁଭ ଶାସ୍ତ୍ରୋଚିତ କାର୍ଯ୍ୟ ଯହିଁ ନୋହୁଥିବ
ଅବିଚାର ବୋଲି ତାକୁ ବୁଝିବ ରାଘବ ।
ବିବେକ ଅଟେ 'ରାଜନ' ବିଚାର ତା ଧ୍ୱଜା
ବିଚାର ଧ୍ୱଜା ଉଡ଼ିଲେ ଆସନ୍ତି ସେ ରାଜା ।
ଦ୍ୱିତୀୟା ଚନ୍ଦ୍ରମା ଯଥା ସବୁରି ନମସ୍ୟ
ବିଚାରବାନ ନମସ୍ୟ ସବୁରି ତାଦୃଶ ।
ବିଚାର ଦୃଢ଼ତାବଳେ ସ୍ୱଚ୍ଛ ବୁଦ୍ଧି ମଧ
ଅନାୟାସେ ପରାପତ ହୁଏ ମୋକ୍ଷପଦ ।
ସବୁରି ପରମ ମିତ୍ର ଅଟଇ ବିଚାର
ସୁବିଚାରୀ ନର ପୂଜ୍ୟ ତିନି ଜଗତର ।
ହିମାଳୟର ଭିତର, ବାହାର ଶୀତଳ
ବାହ୍ୟାନ୍ତରେ ସୁଶୀତଳ ଯେ ବିଚାରଶୀଳ ।
ବିଚାର ବଳେ ମାନବ ଲଭେ ସେହି ପଦ
ଯାହାକି ବିମଳ ସ୍ୱଚ୍ଛ ପରମ-ଆନନ୍ଦ ।
ତାକୁ ପାଇ ଛାଡ଼ିବାକୁ ଇଚ୍ଛା ନ ବଳଇ
ଅନ୍ୟ ପଦାର୍ଥ ଗ୍ରହଣେ ପ୍ରବୃତ୍ତି ନ ହୋଇ ।
ତା ପ୍ରତି ଇଷ୍ଟ, ଅନିଷ୍ଟ ଉଭୟ ସମାନ
ଇଷ୍ଟ ଅନିଷ୍ଟର ଉର୍ଦ୍ଧ୍ୱେ ସଦା ତାର ମନ ।
ଜୁଆର ଭଟ୍ଟାରେ ସିନ୍ଧୁ ସମାନ ଯେସନ
ଇଷ୍ଟାନିଷ୍ଟେ ସମ ରହେ ବିବେକୀର ମନ ।
ବ୍ରହ୍ମପଦ ପ୍ରାପ୍ତିହେଲେ ଏ ଜଗତ-ଭ୍ରମ
କ୍ଷଣକେ ଉଭେଇଯାଏ ହେଜ ହେ ଶ୍ରୀରାମ ।
ସଲିଳରେ ପୂର୍ଣ୍ଣ ଯଥା ରହଇ ସାଗର
ଆତ୍ମତତ୍ତ୍ୱେ ପରିପୂର୍ଣ୍ଣ ବିବେକୀ ଅନ୍ତର ।

ଅନ୍ଧକୂପେ ପଡ଼ିଯାଇ ଯଥା ବାହୁବଳେ
ବାହାରି ଆସଇ ପ୍ରାଣୀ ନିଜ କଉଶଳେ ।
ଭବ ଅନ୍ଧକୂପେ ପଡ଼ି ସୁବିବେକୀ ମନ
ବିଚାର ବଳେ ନିଜକୁ ରକ୍ଷାକରେ ଜାଣ ।
ଗୁରୁବାକ୍ୟ, ଶାସ୍ତ୍ରବାକ୍ୟ ମାନଇ ଯେ ଜନ
ଆତ୍ମପଦ ପରାପତି ତା ପାଇଁ ସୁଗମ ।
**ସନ୍ଥ ବାଣୀ, ଶାସ୍ତ୍ରବାକ୍ୟ ସତ୍ୟାସତ୍ୟ ବୁଝି**
**ସତ୍ୟ ପାଳି, ଅସତ୍ୟକୁ ଯେବେଟି ବରଜି,**
**ବିଚାର ଆଖ୍ୟା ତାହାକୁ ଦିଅନ୍ତି ସୁଜନେ**
**ଏଣୁ ସେ 'ବିଚାର' ଦୃଢ଼େ ଧର ରଘୁନନେ ।**
ଜଣାଥିବା ପଥେ କେହ ନ ପଡ଼ନ୍ତି ଖାଲେ
ବିଚାରବାନ ପୁରୁଷ ନ ପଡ଼େ ଦୁଃଖରେ ।
ବିଚାରହୀନ ଜନର ରୋଦନ ଗରିଷ୍ଠ
ରୋଗକ୍ରାନ୍ତ ଜନ କଷ୍ଟ ତା ଠାରୁ ନିକୃଷ୍ଟ ।
ବିଷଜ୍ୱାଳା-ପ୍ରଜ୍ୱଳିତ-ପ୍ରଳାପ ଲଘିଷ୍ଠ
ଅସ୍ତ୍ରାଘାତ ଜ୍ୱାଳା କିନ୍ତୁ ତାଠାରୁ ନିକୃଷ୍ଟ ।
ବିଚାର ବିହୀନ ଅଟେ ଯେବଣ ବ୍ୟକତି
ସକଳ ବିପଦ ତାକୁ ଆସି ଆକ୍ରମନ୍ତି ।
ନଦନଦୀ ମାନ ଯଥା ସମୁଦ୍ରେ ମିଶନ୍ତି
ଅବିଚାରୀ ପାଖେ ସର୍ବ ଆପଦ ଜୁଟନ୍ତି ।
କର୍ଦ୍ଦମ ବାସରେ ବେଙ୍ଗ ହେବ ଶ୍ରେୟସ୍କର
ପୁରୀଷ କୀଟ ଜୀବନ ବରଂ ସୁଖକର,
ପର୍ବତ ଗହ୍ୱରେ ସର୍ପ-ନିବାସ ଉତ୍କୃଷ୍ଟ
ବିଚାରହୀନ ଜୀବନ ସବୁଠୁଁ ନିକୃଷ୍ଟ ।
ବିଚାରହୀନ ଯେ ଭୋଗପାଇଁ ଥାଏ ଧାଇଁ
ଶ୍ୱାନଠାରୁ ହୀନ ତାକୁ ବୁଝ ରଘୁରାଇ ।
ସକଳ ପ୍ରକାର ଅନର୍ଥର ଯେ ଆକର
ସାଧୁଜନଙ୍କ ନିନ୍ଦିତ ଯେଉଁ ଅବିଚାର,
ସବୁକାଳେ ସବୁମତେ ତାହା ବରଜନ
କରିବା ବିଧେୟ ଆହେ ଶ୍ରୀ ରଘୁନନ୍ଦନ ।
ବିଚାରହୀନ ପୁରୁଷ ବହୁ କଷ୍ଟ ପାଏ
କ୍ଷଣମାତ୍ର ଅବିଚାରୀ ହେବା ନ ଯୋଗାଏ ।
ସୁବିଚାର ବଳେ ନିଜେ ନିଜକୁ ଚିହ୍ନିବ
ବିଚାର ଖଡ୍‌ଗରେ ଭବବ୍ୟାଧି ବିନାଶିବ ।
ଯେଉଁ ବୁଦ୍ଧିବଳେ ଏହି ଦୋଷାଦୋଷ ମାନ
ବୁଝିପାରିବ ତା ନାମ 'ବିଚାର' ଶ୍ରୀରାମ ।

ବିଚାରହୀନ ଦୁର୍ମତି ମାନଙ୍କ ଅନ୍ତର
ପାଷାଣଠାରୁ କଠିନ ବା କଠିନତର ।
ଅନ୍ଧମାନଙ୍କ ମଧ୍ୟରେ ଅଟନ୍ତି ସେ ଶ୍ରେଷ୍ଠ
ପରମ୍ପରା ମୋହ ବଶେ ଭୋଗୁଥାନ୍ତି କଷ୍ଟ ।
ବିଚାରରୁ ତତ୍ତ୍ୱଜ୍ଞାନ ହୁଅଇ ଉଦୟ
ତହିଁରୁ ବିକାଶେ ଆତ୍ମ-ବିଶ୍ରାନ୍ତିର କାୟ ।
ତହୁଁ ଜନ୍ମେ ସର୍ବ ଦୁଃଖନାଶୀ ଶ୍ରେଷ୍ଠ ଶାନ୍ତି
ଯେ ଶାନ୍ତି ସର୍ବ କଲ୍ୟାଣ ମାନଙ୍କ ପ୍ରସୂତି ।
ଶମ ଆଦି ସର୍ବ ସାଧନାର ଗୁଣମାନ
ନିହିତ ଅଛନ୍ତି ତୁମଠାରେ ରଘୁରାଣ ।
ତେଣୁ ତୁମେ ହୁଅ ସୁବିଚାର ପରାୟଣ
ଜଗତ ସମ୍ମୁଖେ ରଖ ଏ ଆଦର୍ଶମାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ବିଚାର ନିରୂପଣ ବର୍ଣ୍ଣନେ**
**ନାମ ଚତୁର୍ଦ୍ଦଶ ସର୍ଗଃ ।**



## ପଞ୍ଚଦଶ ସର୍ଗଃ
## ସନ୍ତୋଷ ନିରୂପଣ

ପୁଣି ଶୁଣ ଏବେ ଶତ୍ରୁ ନିସୂଦନ ରାମ !
ତୃତୀୟ ଦ୍ୱାରପାଳ ଯେ, 'ସନ୍ତୋଷ' ତା ନାମ ।
ଆୟତ୍ତ କରିପାରିଲେ ସେ ଦ୍ୱାରପାଳକୁ
ଅନାୟାସେ ପଶେ ଜୀବ ମୋକ୍ଷ ମନ୍ଦିରକୁ ।
ସନ୍ତୋଷ ଅଟେ ପରମ ମଙ୍ଗଳ ଉପାୟ
ପରମ ସୁଖଦାୟକ ପୁଣି ରଘୁରାୟ ।
ସନ୍ତୋଷ ଲଭିପାରିଛି ଯେବଣ ସୁଜନ
ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟକୁ ମଣେ ତୃଣସମ ।
ପରମ ବିଶ୍ରାନ୍ତି ପାଏ ସେ ସନ୍ତୁଷ୍ଟ ଜନ
ପାର୍ଥିବ ସାମ୍ରାଜ୍ୟଲାଭ ତା ପାଇଁ ନଗଣ୍ୟ ।
ସୁଧାପାନ, ତ୍ରିଇଲୋକ୍ୟ ସାମ୍ରାଜ୍ୟ, ସମ୍ପତ୍ତି
ସନ୍ତୋଷଠାରୁ ନିକୃଷ୍ଟ ସର୍ବେ ରଘୁପତି ।
ଇଚ୍ଛା-ରାତ୍ର କରେ ହୃଦପଦ୍ମ ସଙ୍କୁଚିତ
ସନ୍ତୋଷ-ସୂର୍ଯ୍ୟ ତାହାକୁ କରେ ବିକଶିତ ।
ଶୁଭ୍ରତାରେ ଝଟକଇ ଯଥା କ୍ଷୀରସିନ୍ଧୁ
ସନ୍ତୋଷବାନ'ର କାନ୍ତି ଜିଣିଯାଏ ଇନ୍ଦୁ ।
ତ୍ରିଲୋକପତି ହେଲେ ହେଁ ଯେବେ ତୃପ୍ତି ନାହିଁ
ଦରିଦ୍ରଠାରୁ ହୀନ ସେ ଜାଣ ରଘୁରାଇ ।

ସନ୍ତୋଷ ରହଇ ଯେହୁ ହେଲେ ହେଁ ନିର୍ଦ୍ଧନ
ସବୁରି ଈଶ୍ୱର ସମ ଜାଣ ସେହି ଜନ ।
**ଅପ୍ରାପ୍ତ ବସ୍ତୁ ପାଇଁକି ଇଚ୍ଛା ଯେବେ ନୋହି**
**'ସନ୍ତୋଷ' ନାମଟି ସେହି ଅବସ୍ଥାକୁ କହି ।**
ସନ୍ତୁଷ୍ଟ ପୁରୁଷଙ୍କର ଇଷ୍ଟ ବା ଅନିଷ୍ଟେ
ରାଗ, ଦ୍ୱେଷ ନ ଜନ୍ମଇ ଜାଣ ରଘୁଶ୍ରେଷ୍ଠେ ।
ସଦା ଆନନ୍ଦେ ମଗନ ଯେ ସନ୍ତୋଷବାନ
ଇଚ୍ଛା ବିଧ୍ୱଂସୀ ତୃପ୍ତିରେ ସଦା ରହେ ଟାଣ ।
ସନ୍ତୋଷରେ ହୃଦପଦ୍ମ ତାର ପ୍ରସ୍ଫୁଟିତ
ସୂର୍ଯ୍ୟୋଦୟେ ସୂର୍ଯ୍ୟମୁଖୀ ଯଥା ପୁଲକିତ ।
ଅପ୍ରାପ୍ତ ବସ୍ତୁ ନିମିତ୍ତ ଇଚ୍ଛା ଯେ ନ କରେ
ଶାସ୍ତ୍ରମତେ ଘେନେ ଯାହା ଦଇବାତେ ମିଳେ,
'ସନ୍ତୋଷବାନ' ବୋଲି ସେବିଦିତ ସଂସାରେ
ପୂର୍ଣ୍ଣମାସୀ ଚନ୍ଦ୍ରପରି ଶୋହେ ସବୁଠାରେ ।
ସନ୍ତୋଷ ରହିତ ଯେହୁ ତା ହୃଦ-ବନରେ
ସଦା ଚିନ୍ତା-ଫୁଲ ଫୁଟି, ଦୁଃଖ-ଫଳ ଫଳେ ।
ସନ୍ତୋଷ ଅଭାବ ଚିତ୍ତେ ବାସନା ତରଙ୍ଗ
ଅସଂଖ୍ୟ ସଂଖ୍ୟାରେ ଉଠି ବଢ଼ାଏ ଉଦ୍‌ବେଗ ।
ପରମ ଆନନ୍ଦ ଲଭେ ଯେ ସନ୍ତୋଷ ଆତ୍ମା
ତା ଶିରେ ଆଶୀଷ ବରଷନ୍ତି ପରମାତ୍ମା ।
ସନ୍ତୋଷବାନଙ୍କୁ ମିଳେ ଯେ ନିର୍ମଳାନନ୍ଦ
ଅଷ୍ଟନିଧି, ସୁଧାପାନ, ଦେବେ କି ତା ସ୍ୱାଦ ?
ସଦା ପ୍ରଶାନ୍ତ ଗମ୍ଭୀର ରହେ ତାର ଚିତ୍ତ
ସୁନିର୍ମଳ ଭାବ ସଦା ତା ହୃଦେ ଉଦିତ ।
ଯେ ଅଟେ ସନ୍ତୋଷବାନ ଏ ଗୁଣ ତା ଚିହ୍ନ
ପ୍ରସନ୍ନ ରହନ୍ତି ତାକୁ ସଦା ଭଗବାନ ।
ସନ୍ତୋଷ ପୂରି ରହିଛି ଯା ଅନ୍ତରେ ଜାଣ
ପରମ ଲାଭ ପାଇଛି ସେ ପୁରୁଷ ରାମ !
ଯହିଁ ସନ୍ତୋଷ ଅଛଇ ଇଚ୍ଛା ତହିଁ ନାହିଁ
ସନ୍ତୋଷବାନ ଭୋଗରେ ମଗ୍ନ ନ ହୁଅଇ ।
ପବନ କହିଲେ ଯଥା ମେଘ ଉଡ଼ିଯାଏ
ସନ୍ତୋଷ ମନରୁ ଇଚ୍ଛା ଅନ୍ତର୍ଦ୍ଧାନ ହୁଏ ।
ସଂସାରୀ ପାଇଁକି ସବୁ ବିଷମ ଅବସ୍ଥା
ସନ୍ତୁଷ୍ଟଜନେ ନ ଆସେ କଉଣସି ଚିନ୍ତା ।
ହଳାହଳ ବିଷ ସମ ମଣନ୍ତି ସମ୍ପଦ
ଶାନ୍ତ୍ୟାମୃତ ପାନେ ପରିତୃପ୍ତ ଯାଙ୍କ ହୃଦ ।
ସର୍ବଦୋଷ ବିନାଶକ ସନ୍ତୋଷର ଧାର
ଅମୃତ ନୁହେ କଦାପି ତା ସମ ମଧୁର ।
ଅପ୍ରାପ୍ତ ବୟସେ ଯେହୁ ରାଗ ଦ୍ୱେଷ ଶୂନ୍ୟ
ପରମ ସନ୍ତୁଷ୍ଟ ବୋଲି ତାହାକୁ ଜାଣିମ ।
ଯେ ଯାଏ ଆତ୍ମାରେ ନୋହି ସନ୍ତୋଷ ଉଦୟ
ସେ ଯାଏ ନ ହଟେ ତହୁଁ ବିପଦର ଭୟ ।
ଭବିଷ୍ୟତ ଭୋଗପାଇଁ ନାହିଁ ଯାର ଆଶା
ମାନି ନିଏ ଉପସ୍ଥିତ ଦୁଃଖ ଓ ଦୁର୍ଦ୍ଦଶା
ଆଚାର, ବ୍ୟବହାର ଯା ସର୍ବ ମନୋହର
ଜାଣିବ ସେହି ନର ହିଁ ସନ୍ତୋଷ ଶେଖର ।
ସନ୍ତୋଷେ ପରମାତୃପ୍ତି ଲଭିଛି ଯେ ନର
କ୍ଷୀରାବ୍ଧି ତନୟା ଶୋଭେ ଶ୍ରୀମୁଖେ ତାହାର ।
ବୁଦ୍ଧିମାନ ନର ସଦା ଯତ୍ନ ସହକାରେ
ତୃଷ୍ଣା, ଅଭିଳାଷ ମାନ ତେଜିବ ସତ୍ୱରେ
ଭୃତ୍ୟେ ଯଥା ନୃପତିଙ୍କୁ କରନ୍ତି ବନ୍ଦନ
ଐଶ୍ୱର୍ଯ୍ୟଶାଳୀ ବନ୍ଦନ୍ତି ସନ୍ତୁଷ୍ଟ ଚରଣ ।
ଇଚ୍ଛା ଧୂଳି ଉଡ଼ି ଯେବେ ଲାଗିଯାଏ ଅଙ୍ଗେ
ସନ୍ତୋଷ-ବାରି ତାହାକୁ ଧୋଇଦିଏ ବେଗେ ।
କଳଙ୍କ ବିହୀନ ଶୀଳବାନ ଯେଉଁ ନର
ପୂର୍ଣ୍ଣଚନ୍ଦ୍ର ପ୍ରାୟ ଶୋଭାପାଏ ନିରନ୍ତର ।
ସୁ ପୁରୁଷ, ସୁଶାନ୍ତଙ୍କ ବଦନ ଦର୍ଶନେ
ସନ୍ତୋଷ ଆସଇ ସର୍ବଜନଙ୍କ ପରାଣେ ।
ସେ ସନ୍ତୋଷ ନ ମିଳଇ ଧନ ସଞ୍ଚୟନେ
ନିରାଧାର ସତ୍ୟ, କହିଛନ୍ତି ବୁଧଜନେ ।
ସନ୍ତୋଷବାନଙ୍କୁ ଋଷି, ଦେବତା ନମନ୍ତି
ଧନ୍ୟ ଧନ୍ୟ କହି ତାଙ୍କ ସୁଖ୍ୟାତି ରଟନ୍ତି ।
ତେଣୁ ସନ୍ତୋଷର ମୂଲ୍ୟ ବୁଝ ରଘୁବୀର
ଚିର ମଙ୍ଗଳ ଦାୟକ ସନ୍ତୋଷ ଭଣ୍ଡାର ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ସନ୍ତୋଷ ନିରୂପଣ ବର୍ଣ୍ଣନେ**
**ନାମ ପଞ୍ଚଦଶ ସର୍ଗଃ ।**



## ଷୋଡଶ ସର୍ଗଃ

## ସତ୍‌ସଙ୍ଗ ନିରୂପଣ

କହନ୍ତି ବଶିଷ୍ଠ ଶୁଣ ମହାବୁଦ୍ଧି ରାମ
ସତ୍‌ସଙ୍ଗ ଅଟେ ଚତୁର୍ଥ ଦ୍ୱାରପାଳ ନାମ ।

କିସ ବା ନ ହୋଇପାରେ ତାର ସେବାଫଳେ
ନର ଜନ୍ମର ଆଦର୍ଶ ମିଳେ ଅକ୍ଳେଶରେ ।
ମୋକ୍ଷ ହିଁ ନର ଜୀବନ ସାର୍ଥକ କରଇ
ଯା ଲଭିଲେ ଜୀବ ମରି, ଅମର ରହଇ ।
ଯେତେ ଦାନ ଦିଅ, କର ଯେତେ ତୀର୍ଥାଟନ
ତା ବଳେ ମୋକ୍ଷର ପ୍ରାପ୍ତି ନୁହେ କଦାଚନ ।
ସତ୍‌ସଙ୍ଗ ହିଁ କେବଳ ଦେଇପାରେ ତାହା
ଭବସାଗର ତରଣେ ଏକମାତ୍ର ନାହା ।
ସାଧୁସଙ୍ଗ ଯଦି ହୁଏ ଏକଇ ପାଦପ
ଆତ୍ମଜ୍ଞାନଟି ହୋଇବ ତା'ଫଳ ସ୍ୱରୂପ !
ଫଳଲାଭ ଆଶା କରୁଥିବ ଯେଉଁ ନର
'ଅନୁଭବ-ରୂପୀ' ଫଳ ଲାଭ ହେବ ତାର
ଆତ୍ମାନନ୍ଦ ବିରହିତ ହେଲେ ହେଁ ମାନବ
ସତସଙ୍ଗ ବଳେ ତାର ସେ ଇଚ୍ଛା ଫଳିବ ।
ଅଜ୍ଞାନ ଦୋଷରୁ ଯେହୁ ମୃତବତ ଥାଏ
ସତସଙ୍ଗରୁ ଜ୍ଞାନ ଲଭି ଅମର ସେ ହୁଏ ।
ବିପଦଗ୍ରସ୍ତ ହୋଇ ଯେ ପାଉଥାଏ ଦୁଃଖ
ସାଧୁସଙ୍ଗ ଦୁଃଖ ନାଶି, ଦିଏ ତାକୁ ସୁଖ ।
ଆପଦ-ଶତଦଳର ବିନାଶ ନିମିତ୍ତ
ସତ୍‌ସଙ୍ଗ-ତୁଷାର ତହିଁ ଲୋଡ଼ା ଅବିରତ ।
ସତ୍‌ସଙ୍ଗ ବଳେହୁଏ ଆତ୍ମବୁଦ୍ଧି ପ୍ରାପ୍ତି
ତାହା ଯୋଗୁଁ ନ ବାଧଇ ମରଣର ଭୀତି ।
ସକଳ ଦୁଃଖ ଦୁର୍ଦ୍ଦଶା ଅତିକ୍ରମକରି
ପରମାନନ୍ଦ ପ୍ରାପତ ହୁଏ ଦେହଧାରୀ ।
ଜଳିଉଠେ ଜ୍ଞାନଦୀପ ନର ହୃଦଦେଶେ
ଅଜ୍ଞାନ-କାଳିମା ଅସ୍ତଯାଏ ଅବଶେଷେ ।
ନାଶଯାଏ ସର୍ବ ଭୋଗ୍ୟବସ୍ତୁ ଲିପ୍‌ସାମାନ
ବୋଧଶକ୍ତି ବଳେ ପାଏ ସର୍ବ ଉଚ୍ଚ ସ୍ଥାନ ।
ଯଥା କଳ୍ପବୃକ୍ଷ କରେ ସର୍ବ ବାଞ୍ଛା ପୂର୍ଣ୍ଣ
ତଥା ଭବସିନ୍ଧୁ ପାର କରେ ସନ୍ଥଜନ ।
ନଦୀ ପାର କରିଦିଏ ଯେସନ ନାଉରୀ
ସନ୍ଥଜନ ଯୁକ୍ତି ପାର କରେ ଭବବାରି ।
ମୋହ-ମେଘ ଉଡ଼ିଯାଏ ସନ୍ଥ-ପବନରେ
ଧୂଆଁ ବାଜି ମଶା ଯଥା ହଟେ ଦୂରାନ୍ତରେ ।
ଅନାତ୍ମ ଦେହାଭିମାନ ନ ଥାଇ ଯାହାର
ଶୁଦ୍ଧ ଆତ୍ମାରେ ବିଲୀନ ଯାହାର ଅନ୍ତର ।

ତୃପ୍ତିଧନ ଲଭିଅଛି ସେ ଜନ ଅନ୍ତର
କହିବା ବାହୁଲ୍ୟ ଜାଣ ଆହେ ରଘୁବୀର ।
ସଂସାର ସୁଖ ଦୁଃଖରେ ନୁହେ ସେ ଚଳିତ
ସଦା ସର୍ବଦା ସମତ୍ୱଭାବେ ରହେ ସ୍ଥିତ ।
ଭବାବ୍ଧି ତରଣେ ସନ୍ଥଜନ ପୋଲା ସମ
ସକଳ ଆପଦ ବିନାଶନେ ଅଟେ କ୍ଷମ ।
ଦଧିଯୋଗେ କୁଶ ମୂଳ ଯଥାଯାଏ ସଡ଼ି
ଆପଦ ମଲ୍ଲିକା ମୂଳ ସତ୍‌ସଙ୍ଗ ଉପାଡ଼ି ।
ସତ୍‌ସଙ୍ଗ-ଔଷଧ ଭବରୋଗ ବିନାଶଇ
ଦାରିଦ୍ର୍ୟ, ଦୁଃଖ ଆଦିର ମୂଳ ଉପାଡ଼ଇ ।
ପ୍ରକାଶସ୍ୱରୂପ ଜାଣ ସନ୍ଥ ଜନ ଗଣ
ତାଙ୍କ ସଙ୍ଗୁ ପ୍ରାପ୍ତି ହୁଏ ସର୍ବ ବସ୍ତୁମାନ ।
ପୁରୁଷାର୍ଥୀ ରୂପୀ ନେତ୍ର ବିହୀନ ଯେ ଜନ
ପଦାର୍ଥମାନ ସହଜେ ନପାଏ ସେ ଜାଣ ।
ଶୁଖିଲା କାଠ ଅଗ୍ନିରେ ଯଥା ଜଳୁଥାଏ
ସାଧୁସଙ୍ଗ ତେଜି ଜୀବ ନର୍କେ ଦହିହୁଏ ।
ନରକ ଅଗ୍ନିକୁ ସାଧୁସଙ୍ଗ-ମେଘ ନାଶେ
ସତ୍‌ସଙ୍ଗ ବଳେ ଜୀବ ତରେ ଅନାୟାସେ ।
ସାଧୁସଙ୍ଗ-ଗଙ୍ଗାଜଳେ ଯେହୁ କରେ ସ୍ନାନ
ତପ, ଦାନ, ତୀର୍ଥ ତାର କିସ ପ୍ରୟୋଜନ ?
ପରମ ଗତି ଲଭଇ ସତ୍‌ସଙ୍ଗରୁ ସେହି
ସବୁ ଛାଡ଼ି ସତସଙ୍ଗ ଖୋଜ ରଘୁରାଇ ।
ସାଧୁସଙ୍ଗ ମାଜି ଅଛି ଯାହାର ଅନ୍ତର
ତା ସମକ୍ଷେ ଥିଲେ ମିଳେ ତପସ୍ୟାର ଫଳ ।
ଚିନ୍ତାମଣି ଅନ୍ୱେଷଣ କରେ ଧନହୀନ
ସମୁକ୍ଷୁ ଖୋଜିବୁଲଇ ସତ୍‌ସଙ୍ଗ ତେସନ ।
ତ୍ରିତାପରେ ଜଳି ମରେ ଯେବଣ ପୁରୁଷ
ସତସଙ୍ଗ କରେ ତାର ସେ ଜ୍ୱାଳା ବିନାଶ ।
ଉତ୍ତପ୍ତ ଧରଣୀ ଯଥା ବର୍ଷାଜଳ ପାଇ
ସୁଶୀତଳ କରେ ବକ୍ଷ, ତାପ ତେଜିଦେଇ ।
ସାଧୁସଙ୍ଗ ପରଶରେ ହୃଦୟର ତାପ
ହରଇ ବିନଷ୍ଟ ହୋଇ ଜୀବର ସନ୍ତାପ ।
ସତ୍‌ସଙ୍ଗ-କୁଠାର ନାଶ କରେ ମୋହ-ବୃକ୍ଷ
କେଉଁ ଗୁଣ ସନ୍ଥସଙ୍ଗ ସଙ୍ଗେ ସମକକ୍ଷ ?
ଅବିନାଶୀ ପଦମିଳେ ସତସଙ୍ଗ ଫଳେ
ସବୁ ଇଚ୍ଛା ଦବିଯାଏ ସେ ଇଚ୍ଛାରବଳେ ।

ସାଧୁସଙ୍ଗେ ସଙ୍ଗୀ ଯେହୁ ସେ ସର୍ବ ଉତ୍ତମ
ଅପସରା ମଧ୍ୟେ ଯଥା ପଦ୍ମାଳୟା ସ୍ଥାନ ।
ଆତ୍ମତତ୍ତ୍ୱେ ମୁଗ୍ଧ ଯେଉଁ ସାଧୁ ହୃଦସ୍ଥଳ
ଅହଂଭାବ-ଅହଙ୍କାର ଶୂନ୍ୟ ଯା ଅନ୍ତର ।
ସେହି ବ୍ରହ୍ମ ବିଶାରଦ ସାଧୁଙ୍କ ଅର୍ଚ୍ଚନ
ଯତ୍ନସହ କରଣୀୟ ହେ ରଘୁନନ୍ଦନ !
ଶୁଣିଲତ ଚାରି ଦ୍ୱାରପାଳଙ୍କ ବିଷୟ
ସେମାନଙ୍କ ସହ ପ୍ରୀତି କରିବା ବିଧେୟ ।
ତେବେ ଆତ୍ମପଦ ପ୍ରାପ୍ତ ହେବ ଅକ୍ଳେଶରେ
ନୋହିଲେ ପରମ ପଦ କିଏ ଦେଇପାରେ ?
କୌଣସି ଗୋଟିକୁ ଯଦି କରିପାର ବଶ
ବଳେ ବଳେ ଅନ୍ୟ ତିନି ମିଳିଯିବେ ପାଶ ।
ସାଗର ସଙ୍ଗମ ଲାଗି ନଦୀ ପ୍ରବାହିତ
ଯହିଁ ଶମ, ତହିଁ ଅନ୍ୟ ତିନି ସମାଗତ ।
ସନ୍ତୋଷ, ବିଚାର, ଶମ ଏହି ତିନି ଜଣ
ସାଧୁସଙ୍ଗ ପାଇଁ ହୋଇଥାନ୍ତି ଧାବମାନ ।
ପଣ୍ୟବାହୀ ପୋତ ଯଥା ସାଗର ମଧ୍ୟରେ
ନାବିକ ଦ୍ୱାରା ଚଳିତ ଅତି ସତର୍କରେ ।
ଚାରି ଦ୍ୱାରପାଳେ ତଥା ଭବ ସାଗରରେ
ସୁଧିଜନଙ୍କୁ ଚାଳନ୍ତି ଅତି ଯତନରେ ।
ସକଳ ପଦାର୍ଥ ରୁଣ୍ଡ ଯହିଁ କଳ୍ପବୃକ୍ଷ
ଚାରିଦ୍ୱାରପାଳ ରୁଣ୍ଡ ସତସଙ୍ଗୀ ପାଖ ।
ଷୋଳକଳା ସମବେତ ପୁନିଅଁ ଚାନ୍ଦରେ
ଶମ, ସନ୍ତୋଷ, ବିଚାର ଭେଟ ସନ୍ତୋଷରେ ।
ବିଚାର-ରାଜନ ଯେବେ ବସିବେ ଗାଦିରେ
ସତ୍‌ସଙ୍ଗ, ସନ୍ତୋଷ, ଶମ ଯିବେ କେଉଁଆଡେ ?
ଏବେ ଦେଖ ଦ୍ୱାରପାଳ ଗଣ ଛନ୍ଦାଛନ୍ଦି
କେହି କାହାକୁ ନଛାଡ଼ି, ହୋଇଛନ୍ତି ବାନ୍ଧି ।
ସୁମନ୍ତ୍ରୀ ମନ୍ତ୍ରଣାବଳେ ରାଜ୍ୟର ଶ୍ରୀ ବୃଦ୍ଧି
ଏ ଦ୍ୱାରପାଳେ ବଢ଼ାନ୍ତି ଖାଉଁଦ ସୁବୁଦ୍ଧି ।
ଚାରିଦ୍ୱାରୀଙ୍କ ମିଳନ ସର୍ବଶ୍ରେଷ୍ଠ ଲାଭ
ସର୍ବାନ୍ତକରଣେ କରେ ଏ ଉକ୍ତି ରାଘବ ।

**ସନ୍ତୋଷଃ ପରମୋ ଲଭଃ**
**ସତ୍‌ସଙ୍ଗ ପରମଂ ଧନମ୍**
**ବିଚାରଃ ପରମଂ ଜ୍ଞାନମ୍**
**ଶମଂ ଚ ପରମଂ ସୁଖମ୍ ।**

ଏ ଚାରି ଗୁଣଙ୍କୁ ବଶ କରିପାରେ ଯେହୁ
ବ୍ରହ୍ମାଦିଙ୍କ ବନ୍ଦ୍ୟ ସଦା ହୋଇଥାଏ ସେହୁ ।
ପୌରୁଷବଳେ ହେ ରାମ ଏହି ଗୁଣମାନ
ବଶରେ ରଖିବା ବୁଦ୍ଧିବନ୍ତର ଲକ୍ଷଣ ।
ନିତାନ୍ତ ପକ୍ଷେ ଦାନ୍ତକୁ ଦାନ୍ତ ଲଗାଇଣ
ଅନ୍ତତଃ ଗୋଟିକୁ ବଶ କର ରଘୁରାଣ ।
ବିଚାର-ରଜ୍ଜୁରେ ମତ୍ତ ହସ୍ତୀ ଯେ ପର୍ଯ୍ୟନ୍ତ
ବାନ୍ଧି ନ ପାରିଛ ଆଉ ରଖିଲ କି କୃତ୍ୟ ?
ମନ-ବନସ୍ତେ ବାସନା-ନଦୀ ପ୍ରବାହିତ
ଶୁଭ, ଅଶୁଭ ଦୁଇଟି ଅଟନ୍ତି ତା ତଟ ।
ଅଶୁଭ ତେଜି ମନକୁ ଶୁଭ ତଟେ ଚାଳ
ପୁରୁଷାର୍ଥ ବଳେ ସାଧ କର ରଘୁବାଳ ।
ଚିତ୍ତବୃତ୍ତି * ପ୍ରବାହକୁ ଆତ୍ମା ଲକ୍ଷ୍ୟେ ଚାଳ
ପରମପଦ ସୁଗମ ହେବ ରଘୁବୀର ।
ଅବିଚାର-ବାଧାମାନ କଲେ ଅତିକ୍ରମ
ଆତ୍ମା-ମୁଖେ ଚିତ୍ତ ବୃତ୍ତି ସ୍ୱତଃ ଧାବମାନ ।
ମନେରଖ ଚିତ୍ତବୃତ୍ତି ଦୃଶ୍ୟମୁଖି ହେଲେ
ବନ୍ଧନ କାରଣ ତାହା ହୁଏ ସଦାକାଳେ ।
ଅନ୍ତର୍ମୁଖୀ ପ୍ରବାହଟି ଆତ୍ମାମୁଖି ହେଲେ
ମୋକ୍ଷର ଅମୂଲ୍ୟ ପଥ ଲାଭ ହୁଏ ଭଲେ ।
ଏଣିକି ଇଚ୍ଛାନୁସାରେ କରମ ଆଚର
କର୍ମବଳେ ସିଦ୍ଧିଲାଭ ହୋଇବ ସତ୍ୱର ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ସତ୍‌ସଙ୍ଗ ନିରୂପଣ ବର୍ଣ୍ଣନେ**
**ନାମ ଷୋଡ଼ଶ ସର୍ଗଃ**



## ସପ୍ତଦଶ ସର୍ଗଃ
## ଷଟ୍ ପ୍ରକରଣ ବିବରଣ

କହନ୍ତି ବଶିଷ୍ଠ ମୁନି ଶୁଣ ହେ ରାଘବ
ଯେଉଁ ବ୍ୟକ୍ତିକୁ ଜଗତେ ମହାନ ବୋଲିବ ।
ଅନ୍ତର୍ବିବେକୀ ଯେ ଜନ କଥିତ ପ୍ରକାରେ
ସର୍ବପୂଜ୍ୟ ସେହି ଜାଣ ଇହ ଜଗତରେ ।

* ବୃତ୍ତି – ପାଞ୍ଚ ପ୍ରକାର ଯଥା-ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି ।

ନୀତି ଶାସ୍ତ୍ର ଅଧିକାରୀ ଯେସନ ରାଜନ
ଜ୍ଞାନ ଶାସ୍ତ୍ର ଅଧିକାରୀ ଜାଣ ସେ ମହାନ ।
ପରମ ପାବନ ଅଟେ ଏ ସବୁ ବଚନ
ସେହି ଏକା ବୁଝିପାରେ ଯେ ବିଚାରବାନ ।
ବିଶୁଦ୍ଧ ଚିତ୍ତ ଯେ ଜନ ଏ ବଚନ ଶୁଣି
ହୃଦୟ କଲ୍ମଷ ନାଶି ଶୋହେ ଏ ଧରଣୀ ।
ଯଥା ଶରତ୍‌ଚନ୍ଦ୍ର ଶୋଭେ ନିର୍ମଳ ଗଗନ
ବିଶୁଦ୍ଧ ଚିତ୍ତ ବ୍ୟକ୍ତିକୁ ସାଜେ ଏ ବଚନ ।
ଜୀଜ୍ଞାସୁ ଚିତ୍ତ ପ୍ରସନ୍ନ ଶୁଣି ଏ ବଚନ
ପ୍ରଫୁଲ୍ଲ ଚିତ୍ତେ ନିଜକୁ ମଣେ ଧନ୍ୟ ଧନ୍ୟ ।
ମୋ ବଚନ ଶୁଣିବାକୁ ତୁମେ ହେ ଶ୍ରୀରାମ
ଏକମାତ୍ର ଉପଯୁକ୍ତ ପାତ୍ର ବୋଲି ଜାଣ ।
ଏ ଗ୍ରନ୍ଥ ମୋକ୍ଷ ପ୍ରାପ୍ତିର ପରମ କାରଣ
ଆତ୍ମବୋଧ ଲଭି ଜୀବ ହେବ ଧନ୍ୟ ଧନ୍ୟ ।
ପରମ କାରଣ ହେବ ଏ ଶାସ୍ତ୍ର ବଚନ
ସିଦ୍ଧ ହୃଦ କମ୍ପିଯିବ କରି ତା ଶ୍ରବଣ ।
ଯୁକ୍ତିଯୁକ୍ତ କଥାମାନ ଭରିଛି ଏଥିରେ
କୃତ କୃତ୍ୟ ହେବ ନର ଏହି ଦୃଷ୍ଟାନ୍ତରେ ।
ବହୁଜନ୍ମ ପୁଣ୍ୟଫଳ ହେଲେ ଏକତ୍ରିତ
ତା'ବଳେ ଏ ଜୀବ ହୁଏ କଳ୍ପବୃକ୍ଷବତ ।
କଳ୍ପବୃକ୍ଷ ଫଳ ଭୋଗ ପାଇଁ ଯୋଗ୍ୟ ହେଲେ
ଏ ଶାସ୍ତ୍ର ଶ୍ରବଣ ପାଇଁ ଅବସର ମିଳେ ।
ଅକିଞ୍ଚନ କାହୁଁ ତାହା ଶୁଣିବାକୁ ଯୋଗ୍ୟ
ସେପରି ପ୍ରବୃତ୍ତି କାହିଁ ଅଛି କି ତା ଭାଗ୍ୟ ।
ଆଦି ଅନ୍ତ କରି ଯେହୁ ପଢ଼ିବ ଏ ଗ୍ରନ୍ଥ
ମୋକ୍ଷର ଉପାୟମାନ ଯହିଁରେ ବର୍ଣ୍ଣିତ
ଅଥବା ନିଷ୍କାମ ଭାବେ ସନ୍ଥ ମୁଖୁ ଶୁଣେ
ଏକାଗ୍ର ଚିତ୍ତରେ ସଦା ସରବଦା ଗୁଣେ ।
ସଂସାରଭ୍ରମ ତାହାର ହେବ ନିବାରିତ
ନିବୃତ୍ତି ଗୁଣରେ ସେହୁ ହେବ ପ୍ରଭାବିତ ।
ରଜ୍ଜୁକୁ ଚିହ୍ନିଲେ ସର୍ପଭ୍ରମ ଯାଏ ନାଶ
ଅଦ୍ୱୈତାତ୍ମା ଜ୍ଞାନବଳେ ଭବ ଭ୍ରମ ହ୍ରାସ ।
ସର୍ବ ସଂହିତାର ରାଜା ଏହି ଶାସ୍ତ୍ରସାର
ଏଥିରେ ଶ୍ଳୋକ ରହିବ ବତ୍ରିଶ ହଜାର ।
ଆୟତ୍ତ କରିବ ଯାକୁ ଯେବଣ ସୁଜାଣ
ନିର୍ବାଣ ପଥ ତାହାର ହୋଇବ ସୁଗମ ।

ତେଣୁ ଏ ସଂହିତା ହେବ ମୋକ୍ଷପଦ ଦାନ
ଅନ୍ୟନାମ ଶ୍ରୁତି ଯାର ବୁଝିବ ସୁଜାଣ ।
ପ୍ରଦୀପ ଆଲୋକ ଯଥା ପଦାର୍ଥ ଚିହ୍ନାଏ
ଏକଲୟେ ଯେ ଶୁଣଇ, ମୋକ୍ଷପଦ ପାଏ ।
ବୈରାଗ୍ୟ ପ୍ରକରଣଟି ପ୍ରଥମ ସୋପନ
ଅଧ୍ୟୟନ କଲେ ହୃଦେ ବୈରାଗ୍ୟ ଜନମ ।
ମରୁସ୍ଥଳେ ବୃକ୍ଷ ଜନ୍ମ ହେବାଟି ବିରଳ
ଯେହେତୁ ନପଡ଼େ କେଭେଁ ତହିଁ ବୃଷ୍ଟିଜଳ ।
ଅକସ୍ମାତେ ତହିଁ ଯଦି ହୁଏ ବୃଷ୍ଟିପାତ
ସୁଶ୍ୟାମଳ ବୃକ୍ଷଲତା ଜନମ ନିଶ୍ଚିତ ।
ଅଜ୍ଞାନୀ ଜନ ହୃଦୟ ମରୁଭୂମି ପରି
ବୈରାଗ୍ୟ ପାଦପ ତହିଁ ଜନ୍ମିବ କିପରି ?
ତହିଁ ହେଲେ ଏହି ଶାସ୍ତ୍ର ତତ୍ତ୍ୱ ବୃଷ୍ଟିପାତ
ବୈରାଗ୍ୟ ପାଦପ ତେବେ ହେବ ଉପଜାତ ।
ଦେଢ଼ ହଜାର ଶ୍ଳୋକରେ ବୈରାଗ୍ୟ ବର୍ଣ୍ଣନ
ତତ୍‌ପରେ ମୁମୁକ୍ଷୁ ଭାଗ କରିବି ଗାୟନ ।
ପରମ ନିର୍ମଳ ଉପଦେଶ ଥିବ ଭରି
ବିଭୁପଥେ ହୃଦପଦ୍ମ ଉଠିବ ଶ୍ରୀହରି ।
ମାଜିଲେ ଉଜ୍ଜ୍ୱଳ ହୁଏ କଳଙ୍କିତ ମଣି
ମୁମୁକ୍ଷୁ ହୃଦୁ ଉଜ୍ଜ୍ୱଳ ଦିଶିବ ତା ଘେନି ।
ବିଚାର ବଳରେ ଆତ୍ମପଦ ଲାଭପାଇଁ
ସକ୍ଷମ ହେବ ଏ ଜୀବ ସେହିପଥେ ଯାଇ ।
ସହସ୍ର ଶ୍ଳୋକେ ବର୍ଣ୍ଣିତ ହେବ ଏ ବିଭାଗ
ଅମୃତ ବଚନ ସ୍ରୋତ ତହୁଁ ବହୁଥିବ ।
ତା ପରେ ଆସିବ ଉତପତ୍ତି ପ୍ରକରଣ
ସାତ ସହସ୍ର ଶ୍ଳୋକରେ କରିବି ବର୍ଣ୍ଣନ ।
ବହୁତ ସୁନ୍ଦର କଥା ଦୃଷ୍ଟାନ୍ତ ସହିତ
ପଦେ ପଦେ ହରୁଥିବ ପାଠକର ଚିତ୍ତ ।
**ସୁବିଚାର ବଳେ ଜୀବ ଲଭେ ଏ ସିଦ୍ଧାନ୍ତ**
**ଏ ସାରା ଜଗତ ଖାଲି, ଅସତ୍ୟ, ଅନିତ୍ୟ**
ଦେବ, ଦାନବ, ମାନବ, ପରବତ, ନଦୀ
ସ୍ୱର୍ଗ, ପୃଥ୍ୱୀ, ଅପ, ତେଜ, ବାୟୁ ଆକାଶାଦି ।
ସ୍ଥାବର ଜଙ୍ଗମ ଆଦି ଯେତେ କି ଏମାନ
ଅଜ୍ଞାନ ବଶତଃ ହୁନ୍ତି ସଦା ଭାସମାନ ।
କାହୁଁ ଆସିଲେ ଏମାନେ କାହିଁରୁ ଜନମ
ଆତ୍ମସତ୍ତା ହଜିଯାଏ ଚିନ୍ତିଲେ ଏ ମାନ ।

ସ୍ପଷ୍ଟ ବିଶ୍ୱାସ ଜନ୍ମିବ ଶ୍ରୋତାର ମନରେ
ଉତ୍ପତ୍ତି ବିଭାଗ ଯେବେ ପଡ଼ିବ କାନରେ ।
ମନର କଳ୍ପନା ରାଜ୍ୟ ଅଟେ ଏ ସଂସାର
ସପନ ଦେଖିଲା ସମ ଅଳୀକ ମାତର ।
ସୂର୍ଯ୍ୟ କିରଣରେ ଜଳ, ନଭେ ତରୁବର
ଦୁଇଟି ଚନ୍ଦ୍ରମା ପୁଣି ଗନ୍ଧର୍ବ ନଗର ।
ସାଗର ତରଙ୍ଗ ପୁଣି ମନ-ଅଟ୍ଟାଳିକା
ଗଗନ ନୀଳିମା, ନଭ ମୁକୁତା ମାଳିକା ।
ବାଦଲ ଚଳନ୍ତେ ଚନ୍ଦ୍ର ଧାବମାନ ପରି
ତଟବୃକ୍ଷ ନଉକାରୁ ଦୃଷ୍ଟିକି ଯେପରି ।
କହିକି ପାରିବ ଏହିମାନ ସବୁ ସତ୍ୟ ?
ଅନିତ୍ୟ ଏ ଭବ, ନିତ୍ୟ ପରି ପ୍ରତିଭାତ ।
ଅଜ୍ଞତା ହିଁ ସର୍ବଭ୍ରମ, ଅନର୍ଥ କାରଣ
ଏ ସକଳ ଅସ୍ତ ଯାନ୍ତି ଉଦେ ହେଲେ ଜ୍ଞାନ ।
ନିଦ୍ରାରେ ସପନ, ଜାଗରଣେ ତା ନିବୃତ୍ତି
ଅବିଦ୍ୟା ବଶତଃ ଜଗତର ଉତପତ୍ତି ।
ଜ୍ଞାନୋଦୟେ ଅବିଦ୍ୟାର ହୁଅଇ ନିପାତ
ଅବିଦ୍ୟା ହିଁ ଶୂନ୍ୟ ବସ୍ତୁ ହୁଏ ପ୍ରମାଣିତ ।
ବିଶୁଦ୍ଧ ଅଟନ୍ତି ବ୍ରହ୍ମ ଚିଦାକାଶ ସମ
ପରମାନନ୍ଦ ସ୍ୱରୂପ ଅନନ୍ତ ଅସୀମ ।
ତାଙ୍କଠାରୁ ଏ ଜଗତ ଉତ୍ପତ୍ତି ନ ହୋଇ
ପ୍ରଳୟର କାରଣତ ନ ଅଟନ୍ତି ସେହି ।
କାହିଁରେ ନୁହନ୍ତି ଲିପ୍ତ ଅଥବା ନିର୍ଲିପ୍ତ
ଆତ୍ମସତ୍ତା ମାତ୍ର ନିଜେ ନିଜ ମଧ୍ୟେ ସ୍ଥିତ ।
ଜଗତ ସର୍ଜ୍ଜନା ଖାଲି ମନର ଧାରଣା
ବାସ୍ତବରେ ହୋଇନାହିଁ ତାହାର ସର୍ଜ୍ଜନା ।
ଚିତ୍ତ ସଂବେଦନ ଯେବେ ସ୍ପନ୍ଦରୂପ ଧରେ
ନାନାଦି ଜଗତ ରୂପେ ଭାସଇ ତତକାଳେ ।
ନିସ୍ପନ୍ଦ ଅବସ୍ଥା ତାର ଯେବେ ହୁଏ ଜାତ
ସକଳ ଜଗତ ତାଙ୍କ ତହିଁ ହୁଏ ଅସ୍ତ ।
**ଜଗତ ଉତ୍ପତ୍ତି ଆଖ୍ୟା ଜାଣ ଏ ପ୍ରକାର**
**ସ୍ଥିତି ବିଭାଗ ଯା'ପରେ ପଡ଼ିବ କର୍ଣ୍ଣରେ ।**
**ତିନି ସହସ୍ର ଶ୍ଳୋକରେ ହେବ ତା ବର୍ଣ୍ଣିତ**
**ଜଗତ ସ୍ୱରୂପ ତହିଁ ହୋଇବ କଥିତ ।**
ଦିଗ ମଣ୍ଡଳ ମଣ୍ଡିତ ଜଗତର ରୂପ
କିପରି ପ୍ରଭାବ ତାର କିପରି ପ୍ରକୋପ ।

ଅହଙ୍କାରରୁ କିପରି କର୍ମର ଜନମ
ସେ କ୍ରମ ବର୍ଣ୍ଣନ ମାନ ଜାଣିବ ଶ୍ରୀରାମ ।
ନାନାଦି ବ୍ୟାଖ୍ୟାନ ରାମ ଭରିଥିବ ତହିଁ
ହରି ନେଉଥିବ ଚିତ୍ତ ପଦେ ପଦେ ସେହି ।
ଭ୍ରମବଶ ଇନ୍ଦ୍ରଧନୁ ରଙ୍ଗ ଯେଉଁପରି
ସୂର୍ଯ୍ୟ କିରଣରେ ଜଳ ଭ୍ରମ ହେଲାପରି,
ସମ୍ୟକ ଦୃଷ୍ଟି ବଳରେ ହୁଏ ତା ନିବୃତ୍ତ
ମନରାଜା ହିଁ କେବଳ ରଚଇ ଜଗତ ।
ମନ ରାଜ୍ୟରେ ବିଶ୍ୱାସ ଥିବ ଯେ ପର୍ଯ୍ୟନ୍ତ
ମନଗଢ଼ା ଅଟ୍ଟାଳିକା ହରୁଥିବ ଚିତ୍ତ ।
ମନରାଜ୍ୟ ବିଶ୍ୱାସରେ ଅଭାବ ଜନ୍ମିଲେ
ମନ ଅଟ୍ଟାଳିକା ଆଉ କିଏ ଦେଇପାରେ ?
ଅଜ୍ଞାନ ଥିବା ପର୍ଯ୍ୟନ୍ତ ଜଗତ ଉତ୍ପତ୍ତି
ଜ୍ଞାନ ବିଚାର, ବିନାଶେ ଜଗତର ସ୍ଥିତି ।
ସଙ୍କଳ୍ପରୁ ଉପୁଜଇ ଏ ସାରା ଜଗତ
ସଙ୍କଳ୍ପ ଅଭାବେ ହୁଏ ଜଗତର ଅସ୍ତ ।
ସଙ୍କଳ୍ପରୁ ବ୍ରହ୍ମାଙ୍କର ଦଶପୁତ୍ର ଜାତ
ତେସନ ଜଗତ ସୃଷ୍ଟି ସଙ୍କଳ୍ପ ଜନିତ ।
କଉଣସି ପଦାର୍ଥର ବସ୍ତବତା ନାହିଁ
ଅନିତ୍ୟ, ଓ ଅବାସ୍ତବ ଭାବେ ଭାସୁଛନ୍ତି ।
**ସ୍ଥିତି ପ୍ରକରଣେ ହେବ ଏ ସବୁ ବର୍ଣ୍ଣନ**
**ତା ପରେ ଆସିବ ଉପଶମ ପ୍ରକରଣ ।**
ପରମ ପବିତ୍ର ଅଟେ ଏହି ପ୍ରକରଣ
ପାଞ୍ଚ ହଜାର ଶ୍ଳୋକରେ ହୋଇବ ବର୍ଣ୍ଣନ ।
ନାନା ଯୁକ୍ତି ଜାଲ ତହିଁ ହେବ ପ୍ରଦର୍ଶିତ
ଯେ ଫାନ୍ଦେ ପଡ଼ି ମାନବ ହୁଏ ତ୍ରସ୍ତବ୍ୟସ୍ତ ।
**"ଜଗତ, ମୁଁ ତୁମେ" ଆଦି ଭ୍ରମ ଉପଶମ**
**ଅବଶ୍ୟ ହେବ ଶୁଣିଲେ ଏହି ପ୍ରକରଣ ।**
ସ୍ୱପ୍ନ ଭାଙ୍ଗିଗଲେ ସ୍ୱପ୍ନ ଦୃଶ୍ୟ ପାଏ ନାଶ
ସୁବିଚାର ବଳେ 'ଅହଂ' 'ତ୍ୱଂ' ଭ୍ରମ ବିନାଶ ।
ନିଦ୍ରା ଅବସ୍ଥାରେ ଯେହ୍ନେ ସପନ ଦେଖଇ
ସପନ ରାଇଜ ସୁଖେ ଦୁଃଖେ ମଜ୍ଜି ଥାଇ ।
ଅନ୍ୟ ଜଣେ ଜାଗ୍ରତରେ ଶୋଇଛି ତା ପାସ
ସେ ସ୍ୱପ୍ନ ତା ପାଇଁ ସଦା ଆକାଶ ସଦୃଶ ।
ଯେବେ ସେ ସ୍ୱପ୍ନ ଆକାଶ ପରି ଶୂନ୍ୟ ହୋଇ
ବାସନା ବିଷୟ ତହିଁ କେଉଁ ପରି ରହି ?

ବାସନାଟି ଯେଉଁ କାଳେ ହୋଇଯାଏ ନାଶ
ମନ ଉପଶମ ହୋଇଯାଏ ରଘୁଈଶ ।
ମନର ବାସନା ଯେବେ ହୋଇଯାଏ ନାଶ
ଶାନ୍ତି-ପୂର୍ଣ୍ଣଚାନ୍ଦ ଢାଳି ଦିଏ ତା ପ୍ରକାଶ ।
**ତେଲ ସରିଗଲେ ଯଥା ଦୀପ ଯାଏ ଲିଭି**
**ଇଚ୍ଛାନାଶେ ମନ ପାଏ ନିର୍ବାଣ ପଦବୀ ।**
ନିର୍ବାଣ ପ୍ରକରଣର ବିବରଣ ଶୁଣ
ପରମ ନିର୍ବାଣ ପଦ ହୋଇବ ବର୍ଣ୍ଣନ ।
ସାଢେ ଚଉଦ ହଜାର ଶ୍ଳୋକ ସମନ୍ୱିତ
ପଢ଼ିଲେ ପ୍ରାପ୍ତ ହୋଇବ ପରଂ ପୁରୁଷାର୍ଥ ।
ଅଜ୍ଞାନରୁ ଚିତ୍ତ ଆଉ ଚିତ୍ତର ସମ୍ବନ୍ଧ
ବିଚାର ବଳରେ ମିଳିଯାଏ ମୋକ୍ଷ ପଦ ।
ମେଘହୀନ ଶରତ୍ ନଭ ଯଥା ସୁନିର୍ମଳ
ବିଚାର ବଳରୁ ତଥା ହୃଦୟ ବିମଳ ।
ଅହଙ୍କାର-ପିଶାଚକୁ ନାଶଇ ବିଚାର
ଯାବତ ଇଚ୍ଛା, ବାସନା ହୋଇଯାଏ ଦୂର ।
ଜ୍ଞାନସୂର୍ଯ୍ୟ-ରଶ୍ମି ବଳେ ତା ହୃଦ ଉଜ୍ଜ୍ୱଳ
ଆଶା-ବିସୂଚିକା ଭବ-ଦୁରାଶା ନିର୍ମୂଳ ।
ଜାଗରିତ ଦିବ୍ୟ ଜ୍ୟୋତି ଜୀବ ହୃଦୟରେ
ଚିନ୍ମୟ ଆଦିତ୍ୟ ରୂପେ ସୁଜ୍ଞାନୀ ବିଚରେ ।
ଦେହ ଧରି ମଧ୍ୟ ସେହୁ ବିଦେହ ହୁଅଇ
ଜଗତ ବୈଚିତ୍ର୍ୟ ତାକୁ ଦର୍ଶନ ହୁଅଇ ।
ଏ ଜଗତ ନେତି ଭାବ ସଦା ବିରହିତ
ଅହଂ ତ୍ୱମାଦିକ ଭବ ତାର ତିରୋହିତ ।
ଅନ୍ଧାରକୁ ସୂର୍ଯ୍ୟ କେଉଁ ଦେଖି କି ପାରଇ ?
ଜ୍ଞାନୀ ଦୃଷ୍ଟିକୁ ଜଗତ ତଥା ନ ଆସଇ ।
ସର୍ବୋଚ୍ଚ ଯେ ମୋକ୍ଷ ପଦ ଜାଣ ତାକୁ ମିଳେ
ତେଣିକି କି ହୁଏ ତାର ସେହି ଜାଣି ପାରେ ।
ସୁମେରୁ ପର୍ବତ ପରେ କେଉଁ ଏକ କୋଣେ
ପଦ୍ମଫୁଟି ବାସୁଥାଏ କିଏ ବା ତ ଜାଣେ ?
ନୀରବ ନିଶ୍ଚଳ ଭାବେ ଭୃଙ୍ଗଯାଇ ବସେ
ମଧୁପାନ ବିନା ଅନ୍ୟ ଚିନ୍ତା ନ ଜାଣେ ସେ ।
ବ୍ରହ୍ମର ଏକାଂଶେ ତଥା ହିମ-କଣାବତ
ଅତି ନଗଣ୍ୟ ନଶ୍ୱର ଏ ଜଗତ ସ୍ଥିତ ।
ଅଚିନ୍ତ୍ୟ, ଚିନ୍ମାତ୍ର ଅଟେ ସେହି ଜ୍ଞାନୀଜନ
ଦୃଶ୍ୟଦର୍ଶନ ପ୍ରକ୍ରିୟା ଯା'ର ହୁଏ ଲୀନ ।
ଜୀବନ୍ମୁକ୍ତ ଆଖ୍ୟା ତାଙ୍କୁ ଦିଅନ୍ତି ସୁଜାଣ
ପରମ ଜ୍ୟୋତି ତା ହୃଦ କରଇ ପ୍ଲାବନ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ତାର ହୃଦୟରେ
ଅବସ୍ଥାନ କଲେ ମଧ୍ୟ ନ ଟଳେ ତାହାରେ ।
ସେ ପଦ ପ୍ରାପତ ହୋଇଥାଏ ସେ ତାହାଙ୍କୁ
ବ୍ରହ୍ମା, ବିଷ୍ଣୁ, ଶିବ ବର୍ଣ୍ଣି ନ ପାରନ୍ତି ଯା'କୁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ଷଟ ପ୍ରକରଣ ବର୍ଣ୍ଣନେ**
**ନାମ ସପ୍ତଦଶ ସର୍ଗଃ ।**



## ଅଷ୍ଟାଦଶ ସର୍ଗଃ
## ଦୃଷ୍ଟାନ୍ତ ପ୍ରମାଣ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ଦୃଷ୍ଟାନ୍ତ ବିଷୟମାନ ଅତି ମନୋହର ।
ବୀଜ ବପନରେ ବୃକ୍ଷ ଯଥା ସୁନିଶ୍ଚିତ
ସଂହିତା ବାଖ୍ୟା ଶ୍ରବଣେ ତଥା ଶ୍ରୋତାପ୍ରିତ ।
ଶ୍ରବଣ ଫଳ ଶ୍ରୋତାକୁ ଅବଶ୍ୟ ମିଳଇ
ଆବୃତ୍ତି କରଣେ କୃତକୃତ୍ୟ ହୋଇଥାଇ ।
ଶ୍ରେଷ୍ଠ ଉପଦେଶାତ୍ମକ ଏହି ବାକ୍ୟମାନ
ସୁବିଚାର ଫଳେ ପ୍ରାପ୍ତ ହୁଏ ବ୍ରହ୍ମ-ଜ୍ଞାନ ।
ଉତ୍ତମ ବୀଜ ବୁଣିଲେ ଉର୍ବର ଭୂମିରେ
ପ୍ରଚୁର ଫଳ ଲଭନ୍ତେ ଚାଷୀ ମନ ଫୁଲେ ।
ବିଚାର ରାଜ୍ୟରେ ଯେହୁ କରେ ବିଚରଣ
ଉତ୍ତମ ପଦ ଅବଶ୍ୟ ଲଭେ ସେହି ଜନ ।
ଯୁକ୍ତି ସଙ୍ଗତ ଅଟନ୍ତି ଯେଉଁ ଶାସ୍ତ୍ରମାନ
ସର୍ବାନ୍ତ କରଣେ ତାଙ୍କୁ କର ଅଧ୍ୟୟନ ।
ଯୁକ୍ତି ସଙ୍ଗତ ନ ହେଲେ କର ବରଜନ
ଦେବ ବାକ୍ୟ ହେଲେ ସୁଦ୍ଧା ନ ଘେନ ତା ମନ ।
ବ୍ରହ୍ମବାକ୍ୟ ହେଲେ ସୁଦ୍ଧା ଯଦି ଯୁକ୍ତିହୀନ
ଅବହେଳା ଯୋଗ୍ୟ ତାହା ଯଥା ଶୁଷ୍କ ତୃଣ ।
ଯୁକ୍ତିଯୁକ୍ତ ହେବ ଯେବେ ବାଳକ ବଚନ
ସର୍ବାଦୌ ସକଳ କ୍ଷେତ୍ରେ କରିବ ବରଣ ।
ନିଜ କୂଅ ପାଣି ଯେବେ ଖାରି ହୋଇଥିବ
ଅନ୍ୟଲୋକ କୂଅ ମିଠାପାଣି ଆଦରିବ ।
ବଡ଼ ସାନ ଭେଦଭୁଲି ଯୁକ୍ତି ଯୁକ୍ତ କଥା
ଗ୍ରହଣ କରିବ ଯୁକ୍ତି ସଙ୍ଗତ ଯେ ବାର୍ତ୍ତା ।

ମୁଁ ଯାହା କହୁଛି ସବୁ ଯୁକ୍ତିଯୁକ୍ତ ବାଣୀ
ହୃଦ୍‌ବୋଧ ହୋଇବ ତାର କର୍ଣ୍ଣେ ଯେହୁ ଶୁଣି ।
ଏକାଗ୍ରଚିତ୍ତେ ଏ ଶାସ୍ତ୍ର ଆଦିଅନ୍ତ କରି
ପଢ଼ିବ ଅବା ଶୁଣିବ ପଣ୍ଡିତଙ୍କୁ ବରି ।
ସୁସ୍ଥିର ଚିତ୍ତରେ ତାହା କଲେଟି ବିଚାର
ଅବଶ୍ୟ ପରିମାର୍ଜିତ ହେବ ବୁଦ୍ଧି ତାର ।
ବୈରାଗ୍ୟ ପ୍ରକରଣ ଯେ ବିଚାର କରିବ
ବୈରାଗ୍ୟ ଭାବ ତା ମନେ ନିଶ୍ଚୟ ଜନ୍ମିବ ।
ରମଣୀୟ ଭୋଗବସ୍ତୁ ଯେତେକ ଦେଖିବ
ସାରହୀନ ମଣି ତାଙ୍କୁ ବାଞ୍ଛା ନ କରିବ ।
ଭୋଗ ଉପଭୋଗେ ଯେବେ ବୈରାଗ୍ୟ ଜନ୍ମିବ
ଶାନ୍ତିରୂପ ଆତ୍ମତତ୍ତ୍ୱ ବିଶ୍ୱାସ ଆସିବ ।
ବିଚାର ବଳେ ମାର୍ଜିତ ବୁଦ୍ଧି ହେଲା ପରେ
ଶାସ୍ତ୍ର ତତ୍ତ୍ୱ ବୋଧଗମ୍ୟ ହୁଏ ତେତେବେଳେ ।
ମେଘ ବିନେ ସ୍ୱଚ୍ଛ ଯଥା ଶରତ ଆକାଶ
ବୁଦ୍ଧି ସୁନିର୍ମଳ ହେଲେ, ଭବବ୍ୟାଧି ନାଶ ।
ଅଧିବ୍ୟାଧି ପୀଡ଼ାମାନ ହୁଅନ୍ତି ବିନାଶ
ବ୍ରହ୍ମପଦରେ ଲାଳସା ହୁଅଇ ବିକାଶ ।
ଯହୁଁ ଯହୁଁ ସୁବିଚାର ହୁଏ ଦୃଢ଼ତର
ତହୁଁ ତହୁଁ ଶାନ୍ତଆତ୍ମା ଲଭୁଥାଏ ନର ।
ଯାବତ-ଭାବ ବିକାର ପରିତ୍ୟାଗ କର
ଶାସ୍ତ୍ରର ବିଚାର ବାରମ୍ବାର ଅନୁସର ।
ଚଇତନ୍ୟ ସତ୍ତା ତହୁଁ ଉଦୟ ହୋଇବ
ମୋହାଦି ବିକାର ସତ୍ତାମାନ ନାଶଯିବ ।
ଯହୁଁ ଯହୁଁ ସୂର୍ଯ୍ୟ ଉଠେ ଗଗନ ମଣ୍ଡଳେ
ତହୁଁ ତହୁଁ ଅନ୍ଧକାର ଦୂର ଧରାତଳେ ।
ତେସନ ବିକାର ମନ ବିନାଶ ଲଭନ୍ତି
ନବୀନ ଉତ୍ସାହ ଜୀବ ହୃଦେ ଆଣେ ଶାନ୍ତି ।
ତେବେ ଯାଇଁ ସେହି ପଦ ହେବ ପରାପତ
ଯା' ଲଭି ସଂସାର କ୍ଷୋଭ ହେବ ଭସ୍ମୀଭୂତ ।
କବଚ ଧାରୀଙ୍କୁ ଯଥା ବାଣ ନ ଭେଦଇ
ଜ୍ଞାନବାନଙ୍କୁ ସଂସାର ରିପୁ ନ ବାଧଇ ।
ଭୋଗ ଇଚ୍ଛା ନ କରଇ ବୁଦ୍ଧିମାନ ବ୍ୟକ୍ତି
ବିଷୟ ଭୋଗକୁ ସଦା ଦୂରୁ ବରଜନ୍ତି ।
ପତିବ୍ରତା ନାରୀ ଯଥା ଅନ୍ତଃପୁର ଛାଡ଼ି
ବାହାରେ ନ ଯାଇ ରହେ ଘରେ ମୁହିଁମାଡ଼ି ।

ଜ୍ଞାନବାନ ନିଜ ବୁଦ୍ଧି ନ ହୁଏ ଦେଖାଇ
ଗୁମର ରଖି ନୀରବ ସଦା ରହିଥାଇ ।
ସାଧାରଣ ଜନପରି ହେଲେ ହେଁ ପ୍ରତୀତ
ରାଗ, ଦ୍ୱେଷ ଆଦି ତାଙ୍କ ହୃଦୁ ନିର୍ବାପିତ ।
ଭବ ପ୍ରଳୟ, ଉତ୍ପତ୍ତି ଯା କିଛି ଘଟଇ
ଜ୍ଞାନବାନ ବ୍ୟକ୍ତିଙ୍କୁ ତା ବାଧି ନ ପାରଇ ।
ମଲ୍ଲିକା କୁସୁମ ଛବି ଅଙ୍କା ଯାଇଥାଏ
ଝଡ଼ ତୋଫାନରେ ତାର କିଛି କ୍ଷତି ନୋହେ ।
ତଥା ଜ୍ଞାନୀ ଭବଦୁଃଖେ ନୁହେଁ ବିଚଳିତ
ଅଟଳ ଅଚଳ ସଦା ଜ୍ଞାନୀଜନ ଚିତ୍ତ ।
ନିଶା ଶେଷେ ସୂର୍ଯ୍ୟୋଦୟ ଅନ୍ଧକାର ନାଶେ
ଜ୍ଞାନୀ ହୃଦେ ପ୍ରଜ୍ଞାଲୋକ ଅଜ୍ଞାନ ବିନାଶେ ।
ତେଣୁ ରାଗ ଦ୍ୱେଷ ଆଦି ସକଳ ଦୁର୍ଗୁଣ
ନିର୍ବାପିତ ହୋଇ ପ୍ରାଜ୍ଞ ହୃଦ ଦିପ୍ତୀମାନ ।
ଉପଭୋଗ ପାଇଁ ଜ୍ଞାନୀ ଜଡ଼ତା ଆଚରେ
ଚନ୍ଦ୍ରଜ୍ୟୋତ୍ସ୍ନା ସୁନିର୍ମଳ ଯଥା ଶରତରେ ।
ପାଦପ ସମ ଗମ୍ଭୀର ଯେ ବିଚାର ଶୀଳ
ଆବର ଗଭୀର ଯଥା ପ୍ରଶାନ୍ତ ସାଗର
ସୁମେରୁ ପର୍ବତ ସମ ଅଟଇ ସେ ଧୀର
ପୂର୍ଣ୍ଣିମା ଚନ୍ଦ୍ର ସଦୃଶ ପ୍ରାଜ୍ଞ ସୁଶୀତଳ ।
ବିଚାର ପଥେ ଚଳିଲେ ଜ୍ଞାନୋଦୟ ହୋଇ
ଜୀବନ୍ମୁକ୍ତ ହୁଏ ନର ଭେଦ ଭୁଲିଯାଇ ।
ଧୂମକେତୁ ସମ ରାଗ ଦ୍ୱେଷ ରିପୁଚୟ
ଅନର୍ଥ ଜନ୍ମାନ୍ତେ ଜୀବ ହୁଅଇ ଅଥୟ ।
ବିବେକ-ଦିବାକରଙ୍କ ଶମ କିରଣରେ
ହୃଦକମଳ କାଳିମା କ୍ଷୟ ଭାବଧରେ ।
ଶରତ ବାରିଦ କରେ ପର୍ବତେ ଆଶ୍ରୟ
ତୃଷ୍ଣା ତେଜି ତଥା ପ୍ରାଜ୍ଞ ଆତ୍ମପଥେ ଥୟ ।
ଦିନାଗମେ ଯଥା ମ୍ଳାନ ପିଶାଚ ବଦନ
ଜ୍ଞାନୋଦୟେ ନାଶ ରାଗ, ଦ୍ୱେଷ, କୁବଚନ ।
ଆତ୍ମଜ୍ଞାନ ଜନମାଏ ଏପରି ସମ୍ପଦ
ଯା'କୁ ପାଇ ଜୀବ ଲୋଡ଼ଇ ଅନ୍ୟସ୍ୱାଦ ।
କିପରି ମିଳିପାରିବ ଏହି ଆତ୍ମଜ୍ଞାନ
ଏହି ମୋକ୍ଷଶାସ୍ତ୍ର ଦିଏ ତାହାର ସନ୍ଧାନ ।
କାବ୍ୟ ପରି ଏହି ଶାସ୍ତ୍ର ନାନାବିଧ ରସେ,
ନାନା ଅଳଙ୍କାର ବଳେ ନର ମନ ତୋଷେ ।

ସଂସ୍କୃତଜ୍ଞ ବ୍ୟକ୍ତି ମାତ୍ରେ ଏ ପାଠ ବୁଝିବେ
ନୋହିଲେ ପଣ୍ଡିତ ମୁଖେ ଯତନେ ଶୁଣିବେ ।
ବିଷଦ ଭାବେ ବର୍ଣ୍ଣିତ ଏହି ସଂହିତାରେ
ଯାହା ମାନବକୁ ମୋକ୍ଷପଥ-ଗାମୀ କରେ ।
ଏହି ଶାସ୍ତ୍ର ପୁନଃ ପୁନଃ କରନ୍ତେ ଅଭ୍ୟାସ
ଚିତ୍ତେ ଉଏଁ ପୂର୍ବଜନ୍ମ ଜ୍ଞାନର ଆଭାସ ।
ସଂସାର ଦ୍ୱାରା ସେ ଜ୍ଞାନ ମାର୍ଜିତ ହୋଇଣ
ଜୀବକୁ ସ୍ୱତଃ ପ୍ରେରଣା ଦିଏ ଅନୁକ୍ଷଣ ।
"ଜଗତ ମୋ ଦୃଶ୍ୟ" "ମୁହିଁ ଦ୍ରଷ୍ଟା" ଜଗତର
ଏହି ଭ୍ରମ ଜୀବ ହୃଦ କରେ ଅଧିକାର ।
ସେ ଭ୍ରମ ଦୂରୀକରଣେ ଏ ଶାସ୍ତ୍ର ଗାରେଡ଼ି
ସୂର୍ଯ୍ୟଲୋକ ଅନ୍ଧାରକୁ ଦିଏ ଯଥା ତଡ଼ି ।
ମନ-ସଉଧ ନିବାରୀ ମାନବକୁ ଯଥା
ଶୋକ ଈର୍ଷା ବାଧେ ନାହିଁ, ନିଶ୍ଚିନ୍ତ ସର୍ବଥା ।
ଯେତେବେଳେ ଜୀବ ବୁଝେ ଏ ଜଗତ ମିଥ୍ୟା
ସେତେବେଳେ ଦୂର ହୁଏ ତା ଜଗତ-ଚିନ୍ତା ।
ଯେତେବେଳେ ବୁଝେ ଏହା ଚିତ୍ରାଙ୍କିତ ସର୍ପ
ସଙ୍ଗେ ସଙ୍ଗେ ଭୁଲେ ସର୍ପ ଆଘାତ ସନ୍ତାପ ।
ଜଗତର ଅଳୀକତା ଯେବେ ସେ ବୁଝିବ
ସୁଖ-ଦୁଃଖ ଧକ୍‌କା ସେହୁ ଜାଣି ନ ପାରିବ ।
ଯେଣୁ ଏ ଜଗତ କାର୍ଯ୍ୟ, କାରଣ ରହିତ
ଆତ୍ମା ସହ ଜଗତର ମିଳନ କେମନ୍ତ ?
ଦୃଷ୍ଟାନ୍ତ ଦେଇ ମୁଁ ଏହା କରିବି ବର୍ଣ୍ଣନ
ସାଦରରେ ତାହା ସବୁ କରିବ ଶ୍ରବଣ ।
ଦ୍ରଷ୍ଟା, ଦୃଶ୍ୟର ପାର୍ଥକ୍ୟ ମୂର୍ଖଙ୍କ ଭିଆଣ
ମୋ ବଚନ ଦୂର କରି ଦେବ ସେହି ଭ୍ରମ ।
ଆଦ୍ୟପ୍ରାନ୍ତ କରି ଯେହୁ ଏ ଶାସ୍ତ୍ର ପଢ଼ିବ
ପୂର୍ଣ୍ଣ ସଂସ୍କାରୀ ଅବଶ୍ୟ ହେବ ସେ ମାନବ ।
ଏ ଶାସ୍ତ୍ର ପଠନେ ଜପ, ଧ୍ୟାନ ଲୋଡ଼ା ନାହିଁ
ତୀର୍ଥ ପର୍ଯ୍ୟଟନ, ଦାନେ ଅପେକ୍ଷା ନ ଥାଇ ।
ନିର୍ଦ୍ଦିଷ୍ଟ ସ୍ଥାନ, ସମୟ ନୁହେଁ ଆବଶ୍ୟକ
ଯେ କୌଣସି ଅବସ୍ଥାରେ ଧ୍ୟାଇବ ପାଠକ ।
ଦୂରୀଭୂତ ହୋଇଯିବ ଅଜ୍ଞାନ ତାହାର
ଆତ୍ମପଦ ଲଭି ଊର୍ଦ୍ଧ୍ୱେ କରିବ ବିହାର ।
ଭୟାବହ ଅଟେ ଜନ୍ମ, ମରଣର ଭୟ
ଏ ଶାସ୍ତ୍ର ବିଚାର ବଳେ ହୋଇବ ନିର୍ଭୟ ।

ବିଚାର ଛାଡ଼ିଲେ ଯୋନି ଜନ୍ମ ସୁନିଶ୍ଚିତ
ବିଚାରବାନକୁ ଆତ୍ମପଦ ପରାପତ ।
ଅନନ୍ତ ବ୍ରହ୍ମାଣ୍ଡ ଜ୍ଞାନୀ ଦେଖେ ନିଜଠାରେ
ନିଜକୁ ଅଖଣ୍ଡ ଭାବେ ଦେଖେ ସବୁଥିରେ ।
ମନ୍ଦର ଚାଳନେ କ୍ଷୀରସିନ୍ଧୁ ଯାଏ ଥରି
ମନ୍ଦର ଉଠାଇ ନ୍ୟନ୍ତେ ସ୍ଥିର ପୂର୍ବପରି
ସଙ୍କଳ୍ପ ବିକଳ୍ପ ଘେନି ମନ ବିଚଳିତ
ଅନ୍ୟଥା ସ୍ଥିର, ସୁଶାନ୍ତ କ୍ଷୀରସିନ୍ଧୁ ବତ ।
ତପନ ପ୍ରଖର ତେଜେ ଧରା ଯାଏ ଜଳି
ଜ୍ଞାନସୂର୍ଯ୍ୟ-ତେଜ ଶୀତଳତା ଦିଏ ଢ଼ାଳି ।
ଭବ ମଳିନତା ହୃଦୁ କରେ ଦୂରୀଭୂତ
ପରଂପଦ-ପାଇଁ କରେ ପଥ ପରିଷ୍କୃତ ।
**କଳି ଯୁଗ ହେଲେ ଲଞ୍ଜା ତାରା ଦେଖାଦେଇ**
**କଳି ଅନ୍ତେ ସେହି ତାରା ଆଉ ନ ଦିଶଇ ।**
ଅଜ୍ଞାନୀ ହୃଦେ ବିକାର ରହିଥାଏ ପୂର୍ଣ୍ଣ
ଜ୍ଞାନ ଉଦୟରେ ହୁଏ ବିକାର ବିଲୀନ ।
ଆତ୍ମସଂଶୟରୁ ଜାତ ଏ ସଂସାର-ଭ୍ରମ
ବିନାଯତ୍ନେ ଶାନ୍ତ ହୁଏ, ହେଲେ ଆତ୍ମଜ୍ଞାନ ।
ଫୁଲ, ପତ୍ର ତୋଳିବାରେ କିଛି ଯତ୍ନ ଲୋଡ଼ା
ଅନାୟାସେ ଆତ୍ମସୂର୍ଯ୍ୟ ହୃଦ ପଦ୍ମେ ଛିଡ଼ା ।
ହାତ ନ ଚଳାଇ ପତ୍ର ପୁଷ୍ପ କେ ତୋଳିବ
ବିନା ଅଙ୍ଗ ଚାଳନାରେ ପରଂପଦ ଲାଭ ।
ପରମାର୍ଥ ବୋଧ ପାଇଁ ଏମନ୍ତ କରିବ
ସୁଖାସନେ ଉପବିଷ୍ଟ ହେବା ନ ଭୁଲିବ ।
ଯଥାସାଧ ବରଜିବ ଖାଦ୍ୟ, ଭୋଗ ଲିପ୍‌ସା
ସଦାଚାର ପଥ ପାଇଁ ବଢ଼ିବ ଲାଲସା ।
ଦେଶ, କାଳ, ପାତ୍ର ବୁଝି ପଥ ଆଚରିବ
ସାଧୁସଙ୍ଗ, ସତଶାସ୍ତ୍ର ଆଶ୍ରୟ କରିବ ।
ସେ ତୁରୀୟ ପଦ ଯେବେ କରିପାର ଲାଭ
କସ୍ମିନ କାଳେ ଭବପୀଡ଼ା ନ ହୋଇବ ତବ ।
ଭୋଗଲିପ୍‌ସୀ ପାପୀ ଆତ୍ମାମାନେ ଏତିକିରେ
ଚେତା ନ ଲଭନ୍ତି କେଭେ ଯଦି ରଘୁବୀରେ ।
ସ୍ୱୀୟ ଜନନୀର ଗର୍ଭ କୀଟର ସମାନ
ଅଟନ୍ତି ସେମାନେ ଏହା ଶାସ୍ତ୍ରର ବଚନ ।
ତାଙ୍କ ନାମ ଧରେନ୍ତେଣ ପାପ କରେ ଗ୍ରାସ
ସବୁବେଳେ ଦହୁଥିବ ତ୍ରିତାପର ତ୍ରାସ ।

ଦେଇ କରି ସୁଦୃଷ୍ଟାନ୍ତ ପରିଭାଷା ମାନ
ଆଲୋଚନା କରାଯାଏ ଶାସ୍ତ୍ରାର୍ଥ ବଚନ ।
ବର୍ଣ୍ଣନା କରୁଚି ଏବେ କର ତା ଶ୍ରବଣ
ତା ବଳେ ସଫଳ ହେବ ଶାସ୍ତ୍ରାନୁଶୀଳନ ।
ବୁଝାଯାଏ ଯାହାଦ୍ୱାରା ଦୃଷ୍ଟ ବସ୍ତୁମାନ
ଅଦୃଷ୍ଟ ବସ୍ତୁ ଯଦ୍ୱାରା ହୁଏ ବୋଧଗମ୍ୟ ।
'ଦୃଷ୍ଟାନ୍ତ' ଆଖ୍ୟା ତାହାକୁ ଦିଅନ୍ତି ପଣ୍ଡିତେ
ଦୃଷ୍ଟାନ୍ତ ବଳେ ମରମ ବୁଝନ୍ତି ସମସ୍ତେ ।
ଅନୁଭୂତ ପଦାର୍ଥରେ ଅନୁଭୂତି ଦେବା
ଦୃଷ୍ଟାନ୍ତ ଫଳ କହନ୍ତି ସୁଜ୍ଞାନୀ ମାନବା ।
ଅପୂର୍ବ ଅଜ୍ଞାତ ବସ୍ତୁ ନୁହେ ବୋଧଗମ୍ୟ
ଦୃଷ୍ଟାନ୍ତ ଦ୍ୱାରା ତା ହୁଏ ସୁବୋଧ ସୁଗମ୍ୟ ।
ଯେଉଁ ତତ୍ତ୍ୱ ବୁଝାଇବି ଦୃଷ୍ଟାନ୍ତ ଦେଇଣ
ଅନିତ୍ୟ ଓ ସକାରଣ ସେ ଦୃଷ୍ଟାନ୍ତ ମାନ ।
ପୂର୍ବେ ବ୍ରହ୍ମା ଯେଉଁ ଉପଦେଶ ଦେଇଥିଲେ
ବୁଝାଇବି ତୁମକୁ ମୁଁ ତାହା ଯେତେବେଳେ,
ଦେଖିବ ତାହା ନୁହଇ ସର୍ବାଂଶେ ସମାନ
ରହି ଯାଉଅଛି ତହିଁ କିଛି ବ୍ୟତିକ୍ରମ ।
କିଞ୍ଚିତ ସାଦୃଶ୍ୟ ହେତୁ ହୋଇଛି ବର୍ଣ୍ଣନ
ପୂର୍ଣ୍ଣ ବ୍ରହ୍ମଙ୍କ ସମାନ ସେ ହେବେ କେସନ ?
ବ୍ରହ୍ମତତ୍ତ୍ୱ ପାଇଁ ଯେ ଦୃଷ୍ଟାନ୍ତ ଦିଆଯିବ
କେବଳ ଭାବପ୍ରକାଶ ପାଇଁ ତା ଜାଣିବ ।
ଦୃଷ୍ଟାନ୍ତ ସହିତ ସର୍ବଭାବେ ସେ ସମାନ
ଏପରି ଧାରଣା ହେବା ଅଟେ ଭ୍ରମପୂର୍ଣ୍ଣ ।
ଅଦ୍ୱୈତ ବିଶୁଦ୍ଧ ଏହି ଆତ୍ମାକୁ ବୁଝିବ
ଏ ଜଗତ ଭ୍ରମମାତ୍ର ଏହା ହେତୁଥିବ ।
ପୂର୍ବାପର ବିଚାରରୁ ଯାହାର ସତ୍ୟତା
ମିଳେ ନାହିଁ ତା କେବଳ ଭ୍ରମ ଓ ଶୂନ୍ୟତା ।।
ପୂର୍ବ ପର ବିଚାରରୁ ଯାହାକି ବାସ୍ତବ
ସେହି ସତ୍ୟ ସେହି ଶିବ ଜାଣ ହେ ରାଘବ ।
ସତ୍ୟ ନୁହେଁ ଏ ଜଗତ ଅନ୍ତେ ବା ଆଦ୍ୟରେ
ତେଣୁ ଏହା ସ୍ୱପ୍ନବତ ପ୍ରାଜ୍ଞଙ୍କ ମତରେ ।
ସ୍ୱପ୍ନର ଆଦ୍ୟରେ କିଛି ନ ଥାଏ ଯେମନ୍ତ
ସ୍ୱପ୍ନର ପ୍ରାନ୍ତରେ କିଛି ନରହେ ତେମନ୍ତ ।
ନାହିଁ ଆଦି ନାହିଁ ଅନ୍ତ ଜାଗ୍ରତାବସ୍ଥାର
ଏହି ବାକ୍ୟ ହେତୁ ରଖ କୌଶଲ୍ୟା କୁମର ।

ତେଣୁ ଜାଗ୍ରତ, ସପନ ଉଭୟେ ସମାନ
ଦୁହିଙ୍କ ମଧ୍ୟରେ କିଛି ନାହିଁ ବ୍ୟତିକ୍ରମ ।
ସପନର ଆଦି କିମ୍ବା ଅନ୍ତ କିଛି ନାହିଁ
ବାଳକ ମଧ୍ୟ ଏକଥା କହିବ ବୁଝାଇ ।
ଯାର ନାହିଁ ଆଦି ପୁଣି ଯାର ନାହିଁ ଅନ୍ତ
ମଧ୍ୟ ବି ତାହାର ନିଶ୍ଚେ ହୋଇବ ଅସତ୍ୟ ।
ଜଗତ ଅନିତ୍ୟ ପୁଣି ଜଗତ ଅସତ
ସ୍ୱପ୍ନପରି ଏ ଜଗତ ସଦା ପ୍ରତିଭାତ ।
ଧ୍ୟାନ ନଗର, ଅଥବା ସଙ୍କଳ୍ପ ସଦନ
ସପନେ ସପନପୁରୀ ଦଶନ ଯେସନ ।
ବର କିମ୍ବା ଅଭିଶାପ ଦିଏ ଯେଉଁ ଫଳ
ଔଷଧ ସେବନ ଯଥା ଆରୋଗ୍ୟର ମୂଳ
'ଆଦ୍ୟେ' ବା 'ପ୍ରାନ୍ତେ' ଏମାନେ ଅଟନ୍ତି ଅସତ୍ୟ
'ମଧ୍ୟରେ' ଯା-ଭାସମାନ ତାହା ଭ୍ରମମାତ୍ର ।
ସେହିପରି ଏ ଜଗତ କାରଣ ବିହୀନ
କାର୍ଯ୍ୟ କାରଣ ଭାବରୁ ହୁଏ ଭାସମାନ ।
କାର୍ଯ୍ୟ-କାରଣ ଜନିତ କାର୍ଯ୍ୟରୂପ ଭବ
ଆତ୍ମସତ୍ତା ଅଟେ କିନ୍ତୁ କାରଣ ଅଭାବ ।
ଜଗତ ସାକାର, କିନ୍ତୁ ଆତ୍ମା ନିରାକାର
ଆତ୍ମାକୁ ବୁଝିବା ପାଇଁ ଚିନ୍ତା ଦରକାର ।
ଆତ୍ମାକୁ ବୁଝିବା ପାଇଁ ଜଗତ ଦୃଷ୍ଟାନ୍ତ
ଯାହା ମୁଁ ଦେବି ତୁମ୍ଭଙ୍କୁ ଆହେ ରଘୁନାଥ ।
ଏକ ଅଂଶ ମାତ୍ର ତାର କରିବ ଗ୍ରହଣ
ସର୍ବଭାବ ନେଲେ ତାହା ହୋଇବ ଦୂଷଣ ।
ସ୍ୱପ୍ନ ଦର୍ଶନର ପୂର୍ବ ପୁଣି ପରଭାବ
ଆତ୍ମା ହିଁ କେବଳ ତାହା ଜାଣିବ ରାଘବ ।
ଏହି ଆତ୍ମା ଅଟେ ଜାଣ କାରଣ ବିହୀନ
ମଧ୍ୟ ଭାଗର ଦୃଷ୍ଟାନ୍ତ ମିଳିବା କଠିନ ।
ଉପମେୟ ଯେତେବେଳେ କାରଣ ବିହୀନ
ସମାନ ଦୃଷ୍ଟାନ୍ତ ତାର ସମ୍ଭବ କେସନ ?
ସ୍ୱପ୍ନାଦି ବ୍ୟତୀତ ଅନ୍ୟ କୌଣସି ଦୃଷ୍ଟାନ୍ତ
ଅଧ୍ୟାତ୍ମ ଶାସ୍ତ୍ରରେ କେଭେଁ ନ ହୁଏ ଗୃହିତ ।
ସହଜରେ ଭାବ ବୁଝି ପାରିବା ନିମିତ୍ତ
ଅଧ୍ୟାତ୍ମ ଶାସ୍ତ୍ର କାରଣ ହୁଅଇ ଦୃଷ୍ଟାନ୍ତ ।
ତେଣୁ ବ୍ରହ୍ମ ଓ ଦୃଷ୍ଟାନ୍ତ ନୁହନ୍ତି ସମାନ
ଦୃଷ୍ଟାନ୍ତ କେବଳ ବ୍ରହ୍ମ-ଅଂଶ ବୋଲି ଜାଣ ।

ବାଲ୍ମୀକି ଆଦି ଯେତେକ ଧର୍ମତତ୍ତ୍ୱ ବେତ୍ତା
ଧର୍ମ ଶାସ୍ତ୍ରମାନଙ୍କର ପ୍ରଣୟନ କର୍ତ୍ତା ।
ସକଳ ଶାସ୍ତ୍ରରେ ଏକା ମାରଗ ଦର୍ଶିତ
ବୋଧ ବୋଧନ ବିଷୟ ତହିଁରେ ଉକତ ।
'ଏ ଜଗତ ସ୍ୱପ୍ନତୁଲ୍ୟ' ଏ ଶାସ୍ତ୍ର ବାକ୍ୟରେ
ହଠାତ ବିଶ୍ୱାସ ଉଦେ ନୋହି ହୃଦୟରେ ।
ବାରମ୍ବାର ଶ୍ରବଣରେ ବିଶ୍ୱାସ ଜନ୍ମଇ
ବିଶ୍ୱାସ ବୃଦ୍ଧିରେ ଅନୁଭୂତି ଜାତ ହୋଇ ।
ସେହି ଅନୁଭୂତି ପାଇଁ ଦୀର୍ଘକାଳ ଲାଗେ
**'କର୍ମବର୍ତ୍ତିନା'** ତା ନାମ ହୋଇଛି ଏ ଯୋଗେ
ଦୃଷ୍ଟାନ୍ତାଦି ବିଷୟରେ ସପନ ଆଦିର
ପ୍ରମାଣ ରୂପେ କେବଳ ହୁଏ ବ୍ୟବହାର ।
**ଶ୍ରୋତା କୁସଂସ୍କାର ନାଶଯାଏ ଆବୃତ୍ତିରେ**
**ଅର୍ଥ ବୁଝିବା ଶକତି ଜନମେ ସେ କାଳେ**
ଶୁଣି ଶୁଣି କ୍ରମେ ଭ୍ରମ ହୋଇଯାନ୍ତେ ଅସ୍ତ
ତଦପରେ ବୁଝିହୁଏ ବ୍ରହ୍ମଜ୍ଞାନ ତତ୍ତ୍ୱ ।
ସୁବର୍ଣ୍ଣ ଯେସନ ଅଟେ କୁଣ୍ଡଳ କାରଣ
ଜଗତ କାରଣ ବ୍ରହ୍ମ ଜାଣିବ ତେସନ ।
ଯାହା ବ୍ରହ୍ମ ତାହା ପୂର୍ଣ୍ଣଭାବେ ବୁଝିବାକୁ
ଏହି ଉପମାଟି ଯଥାଯୋଗ୍ୟ ଯେ ତାହାକୁ ।
କିନ୍ତୁ ସୁବର୍ଣ୍ଣରେ ଅଛି ଅନେକ ବିକାର
ବ୍ରହ୍ମ ଯେ ବିକାର ଶୂନ୍ୟ, ବ୍ରହ୍ମ ସର୍ବାକାର ।
ତେଣୁ କରି ଉପମାର ପ୍ରୟୋଗ ଏସନ
ଦିଆଯାଏ ଧରି ବାନ୍ଧି କରି ପ୍ରଯତନ ।
ସୁନାର ସମ୍ପୂର୍ଣ୍ଣ ଧର୍ମ୍ମ ବ୍ରହ୍ମେ ନ ମିଳଇ
ତେଣୁ କରି ଉପମାଟି ଏଥି ବ୍ୟର୍ଥ ଯାଇ ।
ପ୍ରଜ୍ଞାବାନ ବ୍ୟକ୍ତି ତେଣୁ ଏମନ୍ତ କରନ୍ତି
ସାମାନ୍ୟ ତତ୍ତ୍ୱରୁ ମହା ତତ୍ତ୍ୱ ବୁଝିନ୍ୟନ୍ତି ।
ଉପମାନ, ଉପମେୟ ସାଧର୍ମ୍ମ୍ୟ ସ୍ୱୀକାର
ବୁଝି ସୁଝି କରି ତାହା କରନ୍ତି ପ୍ରଚାର ।
କେବଳ ଆଲୋକ ଯୋଗୁଁ ପଦାର୍ଥ ଦର୍ଶନ
ତେଲବତୀ କିନ୍ତୁ ତହିଁ ପାଇଁକି ଅକ୍ଷମ ।
ଦୀପାଲୋକ ବଳେ ସିନା ପଦାର୍ଥ ଦର୍ଶନ
ତେଲ ବଳିତା ତହିଁକି ହେବ କି ସକ୍ଷମ ?
କେବଳ ଆଲୋକ ବଳେ ପଦାର୍ଥ ଦିଶଇ
ତିମିର ନାଶନ ଶକ୍ତି କିନ୍ତୁ ତା କରଇ ।

ସେହିପରି ଉପମାର ଏକ ଅଂଶ -ଦ୍ୱାର
ଉପମେୟକୁ ବୁଝିବ ଏହି କଥା ସାରା ।
ଦୃଷ୍ଟାନ୍ତର ଏକଅଂଶ ଗ୍ରହଣ କରିଣ
ଜ୍ଞାତବ୍ୟ ପଦାର୍ଥ ସର୍ବେ ହୋଇବେ ବୋଧନ ।
ମହାବାକ୍ୟ ଅର୍ଥବୋଧ ହୋଇବ ନିଶ୍ଚୟ
ବ୍ରହ୍ମଜ୍ଞାନ ସିଦ୍ଧି ତେବେ ହେବ ନିଃସଂଶୟ ।
ଗୁରୁ ଆଜ୍ଞା, ଶାସ୍ତ୍ରଉକ୍ତି ମାନ ସୁବିଚାର
କିୟଦଅଂଶ ପାଇଲେ ହୃଦ ଯିବପୁରି ।
ସହଜ ହୋଇବ ଆତ୍ମପଦ ପରାପତି
ସାର ଗ୍ରାହକ ଯେଣୁଟି ଅଟଇ ସେ ବ୍ୟକ୍ତି ।
ଏକାଂଶ ଗ୍ରହଣେ ଯେହୁ ପ୍ରତିବାଦ କରେ
ଆତ୍ମପଦ ପ୍ରାପ୍ତିଠାରୁ ରହେ ସେହୁ ଦୂରେ ।
ସିଦ୍ଧବାକ୍ୟ ହୋଇଥିବେ ଯେଉଁ ଜ୍ଞାନୀଜନ
ନିଜ ଅନୁଭବ ଯେବେ କରନ୍ତି ବର୍ଣ୍ଣନ ।
ସାଦରେ ସେ ବଚନକୁ ଆଦର କରିବ
ବାକ୍ୟସିଦ୍ଧି ଯାର ନାହିଁ, ତାକୁ ବରଜିବ ।
ସନ୍ଥଜନ-ମହାବାକ୍ୟ କେଭେ ନ ଟଳଇ
କୁତାର୍କିକଙ୍କ ଯୁକତି ସବୁ ଫାଟିଯାଇ ।
ଶ୍ରେଷ୍ଠଜନ ସେହି ଯେହୁ ନିଜ ବୋଧ ପାଇଁ
ସିଦ୍ଧଙ୍କ ମହତ ବାକ୍ୟ ଗ୍ରହଣ କରଇ ।
ବାଦ ପ୍ରତିବାଦ ପାଇଁ ଯେ କରେ ଗ୍ରହଣ
ଧିକ ସେହି ଜନ, ତାକୁ ମୂର୍ଖ ମଧ୍ୟେ ଗଣ ।
ଅଭିମାନ ବଶ ହୋଇ ଯେ ଗ୍ରହଣ କରେ
ହାତୀପରି ମାଟି ଫିଙ୍ଗେ ଆପଣା ପିଠିରେ ।
ଉଦ୍ଦେଶ୍ୟ ତାହାର କେବେ ସାଧ ନ ହୁଅଇ
ସବୁକାର୍ଯ୍ୟେ ହାସ୍ୟାସ୍ପଦ ସେହୁ ହେଉଥାଇ ।
ସିଦ୍ଧବାକ୍ୟ ମାନି ଯେହୁ ସୁବିଚାର ବଳେ
'ଅଭ୍ୟାସ କରେ ତା' ଆତ୍ମା ଶାନ୍ତିଲାଭ କରେ ।
ଅଭ୍ୟାସ ସୋପାନ ଅଟେ ଆତ୍ମପଦ ପାଇଁ
ଅଭ୍ୟାସ, ମନନ, ନିଷ୍ଠା ସର୍ବଦା ଯୋଗାଇ
ଶମ, ବିଚାର, ସନ୍ତୋଷ, ସନ୍ଥ ସମାଗମ
ବୋଧ ବଳେ ଆତ୍ମପଦ ହୁଅଇ ସୁଗମ ।
ନିଜ ବୋଧ ପାଇଁ ସଦା ଶ୍ରେଷ୍ଠଜନ ମାନେ
ସାର ଗ୍ରହଣ କରନ୍ତି ସୁଚିନ୍ତିତ ମନେ ।
କ୍ଷୁଧାର୍ତ୍ତ ଜନକୁ ଯଥା ଅନ୍ନ ଦିଏ ସୁଖ
ଜିଜ୍ଞାସୁ ନିମିତ୍ତ ତତ୍ତ୍ୱ-ସାର ଆବଶ୍ୟକ ।

ତା ଉତ୍ପତ୍ତି ସ୍ଥିତି ଘେନି ତର୍କ ନ କରିବ
ଆତ୍ମପରାଜୟ ଅପଖ୍ୟାତି ମୁଣ୍ଡାଇବ ।
ଅନୁଭବ ଯାହାଦ୍ୱାରା ହୁଏ ପ୍ରକାଶିତ
'ମହାବାକ୍ୟ' ବୋଲି ତାହା ଜ୍ଞାନୀଙ୍କର ମତ ।
ସ୍ତିରୀ ବାକ୍ୟ ହେଲେ ମଧ୍ୟ ବ୍ରହ୍ମଜ୍ଞାନ ପାଇଁ
ସହଜ, ସୁଗମ ଯେବେ ଅନୁଭୂତ ହୋଇ ।
ଶାସ୍ତ୍ରୋଚିତ ନ ହେଲେ ହେଁ ତାହା ଗ୍ରହଣୀୟ
ଯେଣୁ ତା' ବ୍ରହ୍ମପଥରେ ନୁହେଁ ଅନ୍ତରାୟ ।
ହେଲେ ମଧ୍ୟ ଗୁରୁବାକ୍ୟ, ବେଦର ବଚନ
ପ୍ରକଟ ନୁହଇ ଯେବେ ଅନୁଭବେ ଜାଣ
ସର୍ବଥା, ସର୍ବାଦୌ ତାହା ପରିହାର ଯୋଗ୍ୟ
ନୋହିଲେ ବ୍ରହ୍ମାଭିଳାଷି ବରିବ ଦୁର୍ଭାଗ୍ୟ ।
ଯେଉଁ ବୁଦ୍ଧି ବଳେ ଜୀବ ତତ୍ତ୍ୱଜ୍ଞାନ ପାଇ
ଯେ ବୁଦ୍ଧିବଳରେ ଜୀବନ୍ମୁକ୍ତ ସେ ହୁଅଇ ।
ଆଧ୍ୟାତ୍ମଶାସ୍ତ୍ର-ସ୍ରୋତର ପରିଣାମ ସେହି
ମହାବାକ୍ୟ ବୋଲି ତାହା ବିଦିତ ଅଛଇ ।
"ପରମ ପୁରୁଷାର୍ଥିକ" ବୋଲି ତାକୁ କହି
ଯାହାର ପ୍ରତ୍ୟକ୍ଷ ଅନୁଭବ ସେ କରଇ ।
ସେହି ବୋଧେ ସେ ବ୍ରହ୍ମର ଅଦ୍ୱିତୀୟ ହେତୁ
ସେହିପଥ ଅନୁସର ରଘୁକୁଳ ସେତୁ ।
ପୁଣି କହନ୍ତି ବଶିଷ୍ଠ ଶୁଣ ରଘୁବୀର
ଯେ ଯାଏ 'ବିଶ୍ରାମ' ପାଇ ପାରିନାହିଁ ନର ।
ବିଚାର ଉପରେ କରିଥିବ ସେ ନିର୍ଭର
**"ତୂରୀୟପଦ" ହିଁ ଅନ୍ୟ ନାମ ବିଚାରର ।**
ମନ୍ଦର ପର୍ବତ କ୍ଷୋଭ ହୁଅନ୍ତେ ସ୍ଥଗିତ
କ୍ଷୀର ମହୋଦଧି ଜାଣ ହୋଇଥିଲା ଶାନ୍ତ ।
ଯେତେବେଳେ ଜୀବ ହୁଏ ବିଶ୍ରାମ ପରାପତ
ଅକ୍ଷୟ ଶାନ୍ତି ତାହାକୁ ହୋଇଯାଏ ପ୍ରାପ୍ତ ।
ତୂରୀୟ ପଦ ଲଭିଛି ଯେବଣ ସୁଜନ
ଶ୍ରୁତ-ସ୍ମୃତ ବାକ୍ୟ ତାର କିସ ପ୍ରୟୋଜନ ?
କର୍ମ, କର୍ମତ୍ୟାଗ, ଆଉ ଶ୍ରବଣ ମନନ
ବିଶ୍ରାନ୍ତି ପାଇଁକି ତାଙ୍କ ନାହିଁ ପ୍ରୟୋଜନ ।
ସଦେହେ ହେଉ ଅଥବା ବିଦେହ ସେ ହେଉ
ଗୃହସ୍ଥ ହେଉ କି ଅବା ସନ୍ୟାସ ସେ ନେଉ ।

ଭବସାଗରୁ ସେ ଜନ ହୋଇଛି ମୁକତ
ସ୍ଥିର, ବିକାର ରହିତ ଯେଣୁ ତାର ଚିତ୍ତ ।
ଉପମେୟ, ଉପମାର, କିୟଦ୍ ଅଂଶ ଘେନ
ତେବେ ବୋଧ ପ୍ରାପ୍ତି ହେବ ମନେରଖ ରାମ ।
ବୋଧ ବିନା ମୁକ୍ତି କେଭେଁ ନୁହଇ ପ୍ରାପତ
ବୃଥା ତର୍କ, ବିତର୍କରେ ନାହିଁ କିଛି ସ୍ୱାର୍ଥ ।
ଶୁଦ୍ଧ ଆତ୍ମସତ୍ତା ଯାର ଘଟେ ବିରାଜିତ
ତାକୁ ଭୁଲି ତର୍କେ ଯେହୁ ହୁଏ ନିମଜ୍ଜିତ
ବୋଧ ଚଞ୍ଚୁ ବିନା ତାକୁ କେଉଁ ଆଖ୍ୟା ଦେବ
*ବୋଧ ଚଞ୍ଚୁ ରୂପେ ସିନା ସେ ସଦା ରହିବ ।

**ଇତିଶ୍ରୀ ଯୋଗବାଶିଷ୍ଠେ ମୁମୁକ୍ଷୁ ପ୍ରକରଣେ**
**ଦୃଷ୍ଟାନ୍ତ ନିରୂପଣ ବର୍ଣ୍ଣନେ**
**ନାମ ଅଷ୍ଟାଦଶ ସର୍ଗଃ ।**



## ଊନବିଂଶ ସର୍ଗଃ
## ପ୍ରମାଣ ନିରୂପଣ

ବଶିଷ୍ଠ କହନ୍ତି ଏବେ ଶୁଣ ରଘୁନାନ
ସବୁ ପ୍ରତ୍ୟକ୍ଷ ପ୍ରମାଣ ଗ୍ରହଣୀୟ ଜାଣ ।
ପ୍ରମାଣରୁ ଅନୁମାନ, *ଅର୍ଥୋପତ୍ତି ମାନ
ପ୍ରକଟ ହୁଅନ୍ତି ଯେଣୁ ହେ ରଘୁନନ୍ଦନ ।
ସାଗର ଯେପରି ସର୍ବ ନଦୀଙ୍କ ଆଧାର
**ପ୍ରତ୍ୟକ୍ଷ ପ୍ରମାଣ** ସର୍ବ ପ୍ରମାଣର ଘର ।
ସେହି ପ୍ରତ୍ୟକ୍ଷ ପ୍ରମାଣ ଲକ୍ଷଣ କେସନ
କହୁଅଛି ତାହା ଏବେ ମନ ଦେଇ ଶୁଣ ।
ସବୁ ପ୍ରମାଣର ସାର ଇନ୍ଦ୍ରିୟ ଯେସନ
ଇନ୍ଦ୍ରିୟ ନ ଥିଲେ କାହିଁ କୌଣସି ପ୍ରମାଣ ?
ତେଣୁ ଇନ୍ଦ୍ରିୟ ହିଁ ସବୁ ପ୍ରମାଣର ସାର
ଚେତନ-ଶ୍ରେଷ୍ଠ ସାରାଂଶ ସର୍ବ ଇନ୍ଦ୍ରିୟର ।
ଚୈତନ୍ୟ ଅଭାବେ ସର୍ବ ଇନ୍ଦ୍ରିୟ ଯେ ଅନ୍ଧ
ଅନ୍ଧ ଇନ୍ଦ୍ରିୟର କାର୍ଯ୍ୟସହ କି ସମ୍ବନ୍ଧ ?
**ଜ୍ଞାନୀମାନଙ୍କ ମତରେ ଏହି ଚଇତନ୍ୟ**
**'ପ୍ରତ୍ୟକ୍ଷ ପ୍ରମାଣ'** ବୋଲି ହୋଇଛି ବର୍ଣ୍ଣନ ।
ଚକ୍ଷୁ ଘେନି ଯେଉଁ ଜ୍ଞାନ-ସଂବିତ୍ ସମ୍ବେଦନ
ଦୃଶ୍ୟ ହୋଇଥାଏ ତାହା 'ପ୍ରତ୍ୟକ୍ଷ ପ୍ରମାଣ' ।

* ଅର୍ଥୋପତ୍ତି - ଆଗମ । * ବୋଧଚଞ୍ଚୁ - ମୁଖ ପାଣ୍ଡିତ୍ୟ ।

ଆଖିରେ ଆମ୍ବ ଦେଖିବ, ହାତରେ ଧରିବ
ପାଟିରେ ସ୍ୱାଦ ପାଇଲେ ଆମ୍ବ ବୋଲାଇବ ।
ଜ୍ଞାନ, ଜ୍ଞେୟ ଜ୍ଞାତା ତହୁଁ ହେବ ପ୍ରମାଣିତ
**ତେଣୁକରି ଜ୍ଞାନ ଅଟେ ପ୍ରତ୍ୟକ୍ଷ ନିଶ୍ଚିତ ।**
ସକଳ ପ୍ରତ୍ୟକ୍ଷ-ଜ୍ଞାନ ବୋଲାନ୍ତି ଉତ୍ତମ
ଅପରୋକ୍ଷ ଜ୍ଞାନ ମଧ୍ୟ ଉତ୍ତମ ହେ ରାମ ।
ଅପରୋକ୍ଷ ହେଲେ ମଧ୍ୟ ସେହି ଜ୍ଞାନମାନ
ଜ୍ଞାନୀମାନଙ୍କ ମତରେ ତା ପ୍ରତ୍ୟକ୍ଷ ଜ୍ଞାନ ।
**ଅନୁଭବ, ବେଦନ ଓ ପ୍ରତିପତ୍ତି ଯାହା**
**ତ୍ରିତୟାବଚ୍ଛିନ୍ନ ସାକ୍ଷୀ ଚୈତନ୍ୟ ହିଁ ତାହା ।**
ସେ ସାକ୍ଷୀ ଚୈତନ୍ୟ ପ୍ରାଣ ଧାରଣର କାଳେ
ଜୀବ ଆଖ୍ୟା ଧରି ଜନ୍ମ ଲଭେ ଧରାତଳେ ।
**ଚୈତନ୍ୟ ଦ୍ୱାରା ଯାହାକି ହୁଏ ଅନୁଭୂତ**
**ଅନ୍ୟ ନାମ ତା ବିଷୟ, ଅଥବା ପଦାର୍ଥ ।**
ଯଥା ତରଙ୍ଗାଦି ରୂପେ ଜଳ ପ୍ରକାଶିତ
ସଙ୍କଳ୍ପ, ବିକଳ୍ପ ପରମାତ୍ମାଠାରୁ ଜାତ ।
ସର୍ବବ୍ୟାପୀ ସର୍ବଭାସମାନ ଚଇତନ୍ୟ
ଜଗତ ରୂପରେ ହୋଇଛନ୍ତି ବିଦ୍ୟମାନ ।
ସୃଷ୍ଟି ପୂର୍ବେ ଥିଲେ ଯେହୁ ଏକ, ଅକାରଣ
ଶୂନ୍ୟ ମହାଶୂନ୍ୟ ଥିଲା ଧୂମ୍ର ପରିପୂର୍ଣ୍ଣ ।
ସେହି ଏକ, ଅକାରଣ ସର୍ଜନା ଇଚ୍ଛିଲେ
ନିଜେ ହିଁ **କାରଣ**ଭାବ ଉଦ୍‌ଭାବନ କଲେ ।
ସେହି କାରଣ-ଭାବରୁ **କମ୍ପନ ସର୍ଜନ**
କ୍ରମେ ସେହି କମ୍ପନରୁ **ତରଙ୍ଗ ଜନମ ।**
**ତରଙ୍ଗରୁ ଅବିଚାର** ସଂଚରଣ କଲା
ଏହି **ଅବିଚାର ମାୟା ନାମ** ବୋଲାଇଲା ।
ଅବିଚାର ତଥା ଅନିର୍ବାଚ୍ୟ ଯେ ଅଜ୍ଞାନ
ମାୟା ନାମେ ବ୍ୟାପ୍ତ ହୋଇ ରହିଅଛି ଜାଣ ।
ସେହି **ମାୟାରୁ ପରମା** ପ୍ରକୃତି ଜନମ
ସେହି ପରମ ପ୍ରକୃତି ଜଗତ ଜାଣିମ ।
ଏ ଜଗତ ସେ ପରମ ପ୍ରକୃତି ଶରୀର
ଏହି କଥା ହେଜରଖ ଆହେ ରଘୁବୀର ।
**ବିଚାରଟି** ପ୍ରକାଶିତ ଆତ୍ମାରୁ ହୁଅଇ
ପୁଣି ବିଚାର ଆତ୍ମାକୁ ପ୍ରକାଶ କରଇ ।
ଅବିଚାର ନାଶପାଏ ବିଚାର ଖଣ୍ଡାରେ
ସେହି ଶ୍ରେଷ୍ଠ, ଅବିଚାର ନାଶେ ଯେ ବିଚାରେ ।

ବିଚାର ବଳରେ ନର ହୁଅନ୍ତେ ସଂବେଦିତ
ବ୍ରହ୍ମ ପ୍ରତ୍ୟକ୍ଷରେ ହୁଏ ନିଜ ଭାବ ପ୍ରାପ୍ତ ।
ମଳିନତା ଯାଇ ଶୁଦ୍ଧ ଶାନ୍ତ ଭାବ ଆସେ
ବ୍ରହ୍ମାନନ୍ଦେ ବୁଡ଼ିରହି ଶାନ୍ତିରେ ବିଳସେ ।
ସ୍ୱପ୍ନ ଶେଷେ ଜାଗରଣେ ସ୍ୱପ୍ନ ସତ୍ତା ଲୀନ
ସ୍ୱପ୍ନ-ରାଜ୍ୟ, ସ୍ୱପ୍ନ-ବ୍ୟକ୍ତି ସର୍ବେ ଅନ୍ତର୍ଦ୍ଧାନ ।
ତଥା ଆତ୍ମ ପ୍ରତ୍ୟକ୍ଷରେ ସର୍ବ ଭ୍ରମ ନାଶ
ଶୁଦ୍ଧ ଆତ୍ମସତ୍ତାଗୋଟି ରହଇ ପ୍ରକାଶ ।
ଏବେ ମୁଁ କହୁଛି ଶୁଣ ହେ ରଘୁନାୟକ
ଏ ଦୃଶ୍ୟ, ଏ ଦରଶନ ଉଭୟ ଅଳୀକ ।
ଯଦି କୁହାଯାଏ ଯେହୁ ଦ୍ରଷ୍ଟା, ସେହି ଦୃଶ୍ୟ
ଆବର ଯେ ଦୃଶ୍ୟ ସେହୁ ଦ୍ରଷ୍ଟା ହିଁ ଅବଶ୍ୟ ।
ଆକାଶ ସ୍ୱରୂପ ଏହିଭ୍ରମ ଅଟେ ମିଥ୍ୟା
ଭ୍ରମେ ଭ୍ରମି ଭ୍ରମି ଜୀବ ଘାଣ୍ଟିହୁଏ ବୃଥା ।
ବାୟୁରେ ସ୍ପନ୍ଦନ ଶକ୍ତି ଅଛଇ ଯେସନ
**ଆତ୍ମା ମଧ୍ୟେ ସମ୍ବେଦନ ରହଇ ତେସନ ।**
ସଂବେଦନ ଯେବେ **ସ୍ପନ୍ଦରୂପ**କୁ ଧରଇ
**ଦୃଶ୍ୟରୂପେ ପ୍ରକାଶିତ** ତେବେ ସେ ହୁଅଇ ।
ସ୍ୱପ୍ନେ ଅନୁଭବସତ୍ତା ଦୃଶ୍ୟରୂପ ଧରେ
ସମ୍ବେଦନ ସ୍ପନ୍ଦନ ହିଁ ଏହା ରଘୁବୀରେ ।
ଏ ସାରାଜଗତ ତଥା ଚୈତନ୍ୟରୁ ଜନ୍ମି
ଭାସମାନ ହେଉଅଛି ବୁଝ ରଘୁମଣି ।
ଆତ୍ମାସତ୍ତା ହିଁ କେବଳ ଏ ସାରାଜଗତ
ଏ ବିଚାର ଧରି ହୁଅ ଆତ୍ମପଦ ପ୍ରାପ୍ତ ।
ଆତ୍ମପଦ ପାଇଁ ଯଦି ହେବ ଅସମର୍ଥ
ଅହଙ୍କାର ଆଦି ଗୁଣ ତେଜ ହେ ତ୍ୱରିତ ।
ବାକି ଯା ରହିବ ତାହା ହେ ରଘୁନନ୍ଦନ
ଶୁଦ୍ଧ-ବୋଧ-ଆତ୍ମସତ୍ତା ବୋଲି ତାକୁ ଜାଣ ।
ଶୁଦ୍ଧ ଜ୍ଞାନ ଲବ୍‌ଧ ହେଲେ ଅହଙ୍କାର ନାଶ
ମନର କରଣୀ ଯେଣୁ ଲଭଇ ବିନାଶ ।
ମନବୃତ୍ତି ଯେତେବେଳେ ହୋଇଯାଏ ଶାନ୍ତ
ବୁଦ୍ଧି, କର୍ମ, ଇନ୍ଦ୍ରିୟାଦି ସରବେ ବାଧିତ ।
ନିତ୍ୟ ଶୁଦ୍ଧ ଶାନ୍ତି ଅଟେ ଯେଉଁ ଆତ୍ମପଦ
ଅଭ୍ୟାସ କରିଣ ରାମ ଲଭ ସେ ସମ୍ପଦ ।
ଦୈବ ତେଜି ସ୍ୱୀୟ ପୁରୁଷାର୍ଥ ଜାରିକର
ଆତ୍ମପଦ ପରାପତ ହୋଇବ ମୁକର ।

ଶୁଦ୍ଧ ପୁରୁଷାର୍ଥ ବଳେ ଆତ୍ମପଦ ଲାଭ
ନୀଚ ପୁରୁଷାର୍ଥ ଯୋଗୁଁ ସଂସାରେ ବୁଡ଼ିବ ।
ଯେ ପର୍ଯ୍ୟନ୍ତ ବ୍ରହ୍ମପଦ ନ ହୋଇଛି ପ୍ରାପ୍ତ
ଶାସ୍ତ୍ର ପରମ୍ପରା ମାନି ଚାଲିବା ଉଚିତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ପ୍ରମାଣ ନିରୂପଣ ବର୍ଣ୍ଣନେ**
**ନାମ ଊନବିଂଶ ସର୍ଗଃ ।**



## ବିଂଶ ସର୍ଗଃ
## ଆତ୍ମପ୍ରାପ୍ତି ନିରୂପଣ

କହନ୍ତି ବଶିଷ୍ଠ ରାମ ! ଶୁଣ ମୋ ବଚନ
ସତ୍‌ସଙ୍ଗ, ଯୋଗାଭ୍ୟାସରେ ପ୍ରଜ୍ଞା ବିବର୍ଦ୍ଧନ ।
ସତ୍‌ସଙ୍ଗ କରିଣ ଶୁଦ୍ଧ ବୁଦ୍ଧି ଆଚରିବ
ତେବେ ଯାଇଁ ଆତ୍ମପଦ ଲଭିବ ମାନବ ।
ଅନୁସରି ଚଳ ରାମ ଶାସ୍ତ୍ରର ପଦ୍ଧତି
ଶାସ୍ତ୍ରଚାରୀ ସଙ୍ଗ ପାଇଁ ରଖ ସଦା ମତି ।
ତାହାଙ୍କ ସଙ୍ଗ ବରଣ କରି ରଘୁବୀର
ତାଙ୍କ ସଦଗୁଣମାନ ହୃଦୟରେ ଧର ।
ଶାସ୍ତ୍ର ଚର୍ଚ୍ଚାରେ ବ୍ୟାପୃତ ରହି ବାରମ୍ବାର
ମହାପୁରୁଷ ସଦଗୁଣ ମାନଙ୍କୁ ଆଚର ।
ସତ୍‌ସଙ୍ଗ କରିବ, ଶୁଦ୍ଧ ବୁଦ୍ଧି ଆଚରିବ
ତେବେ ଯାଇଁ ଆତ୍ମପଦ ଲଭିବ ମାନବ ।
ସଦ୍‌ଗୁଣମାନ ହୃଦରେ ସଦା ଧରିଥିବ
ନିଜକୁ ଗଢ଼ିବା ପାଇଁ ସଚେଷ୍ଟ ରହିବ ।
ଶମ ସନ୍ତୋଷ ଇତ୍ୟାଦି ଯାବତ ସୁଗୁଣ
ମହାପୁରୁଷଙ୍କଠାରେ ତାଙ୍କ ଅବସ୍ଥାନ
ସେ ଗୁଣମାନଙ୍କୁ ରାମ କର ହେ ଆଶ୍ରୟ
ସୁଗୁଣ ବଳେ ଦୁର୍ଗୁଣମାନ ଯିବେ କ୍ଷୟ ।
ଶମ, ସନ୍ତୋଷରୁ ଜନ୍ମ ସଦ୍‌ଗୁଣମାନ
ସଦ୍‌ଗୁଣ ବୃଦ୍ଧି ପାଇଲେ ଆଣେ ଆତ୍ମଜ୍ଞାନ ।
ଆତ୍ମଜ୍ଞାନ ବଳେ ଜୀବ ଲଭେ ବ୍ରହ୍ମଜ୍ଞାନ
ପରସ୍ପର ସହାୟକ ଏ ଉଭୟ ଜାଣ ।
ସରୋବର ଶୁଖିଯାନ୍ତେ ମେଘର ଜନମ
ମେଘ ବୃଷ୍ଟି ବଳେ ହୁଏ ସରୋବର ପୂର୍ଣ୍ଣ ।
ତଥା ଶମାଦି ଗୁଣରୁ ଆତ୍ମଜ୍ଞାନ ସୃଷ୍ଟ
ଆତ୍ମଜ୍ଞାନ କରେ ଶମ ଆଦି ଗୁଣ ପୁଷ୍ଟ ।
ଶମାଦି ଗୁଣଙ୍କୁ ଯେବେ ଅଭ୍ୟାସ କରିବ
ଅତିଶୀଘ୍ର ଆତ୍ମତତ୍ତ୍ୱ ପରାପତ ହେବ ।
ସଦାଚାର କଥା ଏବେ ଶୁଣିଲ ଶ୍ରୀରାମ
ଜ୍ଞାନ ଲାଭ କଥା ଏବେ କହିବାକ ଶୁଣ ।
ପରସ୍ପର ପରସ୍ପର ବୃଦ୍ଧିର କାରଣ
ଜ୍ଞାନ, ସଦାଚାର ଦୁହେଁ ଅଟନ୍ତି ଶ୍ରୀରାମ ।
ଜ୍ଞାନ ବୃଦ୍ଧି ପାଏ ସଦ୍ ଆଚରଣ ବଳେ
ସଦାଚାର ବୃଦ୍ଧିପାଏ ଜ୍ଞାନ ପ୍ରାବଲ୍ୟରେ ।
ଜ୍ଞାନ, ସଦାଚାର ସାଥି, ସାଥି ନ ଚଳିଲେ
କାହାରି ଇଷ୍ଟ ସାଧିତ ନ ହୋଇବ ଭଲେ ।
ଜ୍ଞାନୀକୁ ଶମାଦି ଗୁଣ ସ୍ୱତଃ ପରାପତ
ଜୀଜ୍ଞାସୁକୁ ଅଭ୍ୟାସରେ ତା ହୁଏ ପ୍ରାପତ ।
ଚଢ଼େଇ ପାଚିଲା ଧାନ ଖାଇଯିବାବେଳେ
ନାରୀ ରକ୍ଷାକରେ ଗୀତ ଗାଇ ଉଚ୍ଚସ୍ୱରେ ।
ଚଢ଼େଇ ଯାଆନ୍ତି ଉଡ଼ି ଧାନ ରକ୍ଷା ହୁଏ
ଗୀତ ନାରୀ ମନେ ମୋଦ, ଶାନ୍ତି ଜନମାଏ ।
ଶମ ସନ୍ତୋଷ ଆଦିଙ୍କୁ ଅଭ୍ୟାସ କରନ୍ତେ
ଆତ୍ମଜ୍ଞାନ ଉଇଁ ଉଠେ ସାଧକର ଚିତ୍ତେ ।
ପଙ୍କିଳ ଜଳ ଯେସନ ନିର୍ମଳୀ ଯୋଗରେ
କଳୁଷ ହରାଇ ନିର୍ମଳତା ଲାଭ କରେ ।
ଶ୍ରଦ୍ଧାରେ ଏ ମୋକ୍ଷ ଶାସ୍ତ୍ର କରନ୍ତେ ଶ୍ରବଣ
ମାଜି ହୋଇଯିବ ତୁମ ବୁଦ୍ଧି ଆଉ ମନ ।
ଅଭ୍ୟାସରେ ପରିଷ୍କୃତ ହେବ ଅନ୍ତର୍ଦ୍ଦେଶ
ପରମ ପଦ ପ୍ରାପତି ହୋଇବ ଅବଶ୍ୟ ।
ଆଦ୍ୟନ୍ତ କରି ଅଭ୍ୟାସ କଲେ ଏହି ଶାସ୍ତ୍ର
ଭ୍ରାନ୍ତି ନାଶ ପାଇ ମୋକ୍ଷ ହେବ ପରାପତ ।
ମୋକ୍ଷର ଶ୍ରେଷ୍ଠ କାରଣ ଅଟେ ଏହି ଶାସ୍ତ୍ର
ବୁଦ୍ଧିମାନ ଏହାବଳେ ହେବ ବ୍ରହ୍ମପ୍ରାପ୍ତ ।
ଉତ୍ତମ ରୂପେ ଏ ଶାସ୍ତ୍ର ଅନୁସରି ଚଳ
ମୋକ୍ଷପଦ ଲାଭ ଏହି ଶାସ୍ତ୍ରର ସୁଫଳ ।

**ଇତିଶ୍ରୀ ଯୋଗବାଶିଷ୍ଟେ ମୁମୁକ୍ଷୁ ପ୍ରକରଣେ**
**ଆତ୍ମପ୍ରାପ୍ତି ନିରୂପଣ ବର୍ଣ୍ଣନେ**
**ନାମ ବିଂଶ ସର୍ଗଃ ।**
**ମୁମୁକ୍ଷୁ ପ୍ରକରଣ ।**
**ସମାପ୍ତ**



ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ-ମହାରାମାୟଣ

## ଉତ୍ପତ୍ତି ପ୍ରକରଣ

### ପ୍ରଥମ ସର୍ଗଃ

### ବନ୍ଧହେତୁ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ବ୍ରହ୍ମ ବିଷୟ ବେଦରେ ବର୍ଣ୍ଣିତ ଯେମନ୍ତ ॥
ବ୍ରହ୍ମବେତ୍ତା ହୁଏ ଜୀବ ମହାବାକ୍ୟ ଘେନି ।
ଏହାର ତାତ୍ପର୍ଯ୍ୟ ଏବେ ଶୁଣ ରଘୁମଣି ॥
ଚତୁର୍ବିଧ ମହାବାକ୍ୟ ଶ୍ରବଣରେ ଜୀବ ।
ଅନନ୍ତ, ଅଦ୍ୱୟ ବ୍ରହ୍ମାକାର ପାଲଟିବ ॥
ସେ ମହା ବାକ୍ୟକୁ ଜୀବ ମନନ କରିଣ ।
ବିଦୂରୀତ କରେ ତାର ସ୍ୱକୀୟ ଅଜ୍ଞାନ ॥
ତେଣୁ ବ୍ରହ୍ମରୂପେ ହୋଇପାରେ ପ୍ରକାଶିତ ।
ବେଦାନ୍ତ ସିଦ୍ଧାନ୍ତ ଏହା ଜାଣ ରଘୁନାଥ ।
ସେହି ଆତ୍ମା-ପ୍ରକାଶର ନାମ ବ୍ରହ୍ମଜ୍ଞାନ ।
'ସ୍ୱ-ତତ୍ତ୍ୱ-ସାକ୍ଷାତକାର' ପୁଣି ତାର ନାମ ॥
ସପନର ଆବିର୍ଭାବ ହୁଅଇ ଯେମନ୍ତ ।
ଇନ୍ଦ୍ରିୟମାନଙ୍କ ଆବିର୍ଭାବ ହିଁ ତେମନ୍ତ ॥
ଯେଉଁ ଶୁଦ୍ଧ ଚଇତନ୍ୟ ଦେହେ ବିରାଜିତ ।
ଯାହା ଘେନି ଅହଂବୃତ୍ତି ତହିଁ ପ୍ରତିଷ୍ଠିତ,
ପରମାତ୍ମା ବୋଲି ତାକୁ କହନ୍ତି ପଣ୍ଡିତେ
ପରଂବ୍ରହ୍ମ ରୂପେ ସେହି ବ୍ୟାପିଛି ଜଗତେ ॥
ଅତଏବ ଏହି ଚରାଚର ବିଶ୍ୱ ବ୍ରହ୍ମ ।
ଏ ରହସ୍ୟ ବୁଝେ ଯେହୁ ବୋଲାଏ-ବ୍ରହ୍ମଜ୍ଞ ॥
ବ୍ରହ୍ମବିଜ୍ଞାନ ପଦ୍ଧତି, ଏ ମୋ ଉପଦେଶ ।
ଦୁଇ ଭାଗରେ ବିଭକ୍ତ, ଜାଣ ରଘୁଈଶ ॥
'ଅଧ୍ୟାରୋପ' ଅଟଇ ଯେ ଗୋଟିକର ନାମ ।
"ଅପବାଦ" ନାମେ ଖ୍ୟାତ ଅପରଟି ଜାଣ ॥
ବ୍ରହ୍ମାଙ୍କର କଳ୍ପନାରୁ ଯେ ସୃଷ୍ଟି ଜନ୍ମିଲା ।
"ଅଧ୍ୟାରୋପ" ସେ କଳ୍ପିତ ସୃଷ୍ଟି ବୋଲାଇଲା ॥

ସେ "କଳ୍ପନାଳୟ" କରେ ସୃଷ୍ଟିର ବିନାଶ ।
"ଅପବାଦ" ନାମେ ତାହା ହୋଇଛି ପ୍ରକାଶ ॥
ସେ କଳ୍ପନାର ଆଧାର ଅଟନ୍ତି ଯେ ବ୍ରହ୍ମ ।
ସର୍ବଦା ପ୍ରକାଶବାନ ସେ ବ୍ରହ୍ମ ଜାଣିମ ॥
ଏ ବିଷୟ ଜ୍ଞାନ, ବସ୍ତୁ, କ୍ରମ ଓ ସ୍ୱଭାବ ।
ବର୍ଣ୍ଣନ କରୁଛି ଏବେ ଶୁଣ ହେ ରାଘବ ॥
ଦୃଶା ବା ଦୃଶ୍ୟର ଜ୍ଞାନ ଥାଏ ଯେ ପର୍ଯ୍ୟନ୍ତ ।
ବନ୍ଧନ ଅବସ୍ଥା ରହିଥାଏ ଯେ ପର୍ଯ୍ୟନ୍ତ ॥
ଦୃଶ୍ୟ ଅଭାବରେ ହୁଏ ବନ୍ଧନର କ୍ଷୟ ।
ଏ ଗୁଢ଼ ତତ୍ତ୍ୱ ହେଜୁଣ ଥିବ ରଘୁରାୟ ॥
ଦୃଶ୍ୟା, ଦୃଶ୍ୟ ଜ୍ଞାନ ଯେହ୍ନେ ହୁଅଇ ଅନ୍ତର ।
କହୁଅଛି ମନଦେଇ ଶୁଣ ରଘୁବୀର ॥
ଏ ନଶ୍ୱର ଜଗତରେ ଯେ ହୁଏ ଜନମ ।
ସେହି ବଢୁଥାଏ, ସେହି ମରୁଥାଏ ଜାଣ ॥
ପୁଣି ସେ ମୁକତି ଲାଭ କରିପାରେ ରାମ
ସ୍ୱର୍ଗ ବା ନରକ ଗତି ତା ଭାଗ୍ୟ ଲିଖନ ॥
ବଦ୍ଧଜୀବ ମାନଙ୍କର ଏହିପରି ଗତି ।
ହୋଇଅଛି, ହେଉଅଛି ହେବ ରଘୁପତି ॥
ସ୍ୱୀୟ ସ୍ୱରୂପ ନ ଜାଣି ବଦ୍ଧ ଯେଣୁ ତୁମ୍ଭେ ।
ତୁମ ଆତ୍ମବୋଧ ପାଇଁ କହୁଅଛି ଏବେ ॥
ଯେପରି ଉତ୍ପତ୍ତି ତୁମ ହୋଇଛି ସଂସାରେ ।
ସେହି ପ୍ରଣାଳୀ ବର୍ଣ୍ଣନ କରୁଛି ଏଠାରେ ॥
ସଂସାର ଉତ୍ପତ୍ତି କ୍ରମ ଏହି ପ୍ରକରଣେ ।
ସଂକ୍ଷେପରେ କହୁଅଛି କୌଶଲ୍ୟା ନନ୍ଦନେ ॥
ଆକାଶ ସଦୃଶ ଏହି 'ଆତ୍ମା' ନିରାକାର ।
ସେ ଆତ୍ମା ହିଁ ଚଇତନ୍ୟ ଜାଣ ରଘୁବୀର ॥
ଆତ୍ମା ନିରାକାର ଆତ୍ମା ଅଟଇ ଚୈତନ୍ୟ ।
ଅନ୍ୟ ଆଖ୍ୟା ତାର ରାମ ନୁହେଁ ସମୀଚୀନ ॥
ଜୀବ ରୂପେ ସେହି ଆତ୍ମା ଜଗତେ ବିଚରି ।
ବିଚରଣ ସ୍ୱପ୍ନ ମାନ ଦରଶନ କରି ॥
ସ୍ୱପ୍ନରାଜ୍ୟ ଦୃଶ୍ୟମାନ ଯଥା ଅବାସ୍ତବ ।
ଜଗତ ସ୍ଥିତି ସେପରି ଜାଣିବ ରାଘବ ॥

ତୋର, ମୋର, ଭେଦଭାବ ସ୍ୱପ୍ନ ପରି ସତ ।
ତେଣୁ ଏ ସଂସାର ଖାଲି ବୁଝ ସ୍ୱପ୍ନବତ ॥
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ ।
ବ୍ରହ୍ମ ବିଷୟରେ ଚାରି ବେଦର ଯେ ମତ ॥
ବ୍ରହ୍ମ ସତ୍ୟ, ବ୍ରହ୍ମ ତତ୍ତ୍ୱ, ଆନନ୍ଦ ବିଜ୍ଞାନ ॥
ଅନନ୍ତ ଜ୍ଞାନ ଭଣ୍ଡାର ଅଟନ୍ତି ସେ ବ୍ରହ୍ମ ॥
ତ୍ୱଂ, ଇଦଂ, ସଃ ମଧ୍ୟେ ବ୍ରହ୍ମ ଯେ କଳ୍ପିତ ।
ଆତ୍ମସତ୍ତା ସାହାଯ୍ୟରେ ବ୍ରହ୍ମ ପ୍ରକାଶିତ ॥
ଯଥା ସ୍ୱପନରେ ସର୍ବ ଅନୁଭବ ସତ୍ୟ ।
ତଥା ଏ ଅନୁସନ୍ଧାନ ଯୋଗଚକ୍ଷୁ ବତ ॥
କିସ ଏ ଜଗତ, ଯାର ଉତ୍ପତ୍ତି କିପରି ?
କିଏ ସେ ମହାତ୍ମା ଯେହୁ ଏହା ଅଧିକାରୀ ?
ବ୍ରହ୍ମଙ୍କ ସ୍ୱରୂପ ଅଟେ ଏ ସାରା ଜଗତ ।
ସ୍ୱପ୍ନସମ ଏ ଜଗତ ହେ କୌଶଲ୍ୟା ସୁତ ॥
ଦୃଶ୍ୟ ବା ଦୃଶ୍ୟର ଜ୍ଞାନ ବନ୍ଧନ ବୋଲାଏ ।
ତା ଅଭାବେ ବନ୍ଧନର ଅସ୍ତିତ୍ୱ ନ ଥାଏ ॥
ଦ୍ରଷ୍ଟା, ଦୃଶ୍ୟ ସମ୍ବନ୍ଧକୁ କହନ୍ତି ବନ୍ଧନ ।
ତହିଁରୁ ନିବୃତ୍ତି ଅଟେ ମୋକ୍ଷର ସୋପାନ ।
ସେହି ନିବୃତ୍ତି ଉପାୟ କହୁଅଛି ଶୁଣ ।
ତେବେ ସହଜ ସୁଗମ ହେବ ତତ୍ତ୍ୱଜ୍ଞାନ ॥
ଏ ନଶ୍ୱର ଭବେ ଯେହୁ ଲଭଇ ଜନମ ।
ତାହାର ହିଁ କ୍ଷୟ ବୃଦ୍ଧି ହେଉଥାଏ ଜାଣ ॥
ସେହି ସ୍ୱର୍ଗେ ଚଳେ କିମ୍ବା ନର୍କଗତି ପାଏ ।
ବଦ୍ଧ ଜୀବନର ଗତି ଏହା ରଘୁରାଏ ॥
ନିଜ ସ୍ୱରୂପ ନ ଜାଣି ଯେଣୁ ତୁମେ ବଦ୍ଧ ।
ତେଣୁ ତୁମ ଜନ୍ମ ହେତୁ ବର୍ଣ୍ଣନେ ମୁଁ ବାଧ୍ୟ ॥
ଯଦ୍ୱାରା ତୁମର ଆତ୍ମବୋଧ ଜନମିବ ।
ସଂସାରେ ତୁ ଉତ୍ପତ୍ତି କାରଣ ଜାଣିବ ॥
ସପନ ଯଥା ବିଲୀନ ହୁଏ ଜାଗରଣେ ।
ଜଗତ ବିନଷ୍ଟ ମହା ପ୍ରଳୟାଗମନେ ॥
ସ୍ଥାବର ଜଙ୍ଗମ ଆଦି ସର୍ବେ ନାଶ ଯାନ୍ତି ।
ଶୂନ୍ୟେ ଶୂନ୍ୟେ ମହାଶୂନ୍ୟ କରଇ ରାଜୁତି ॥

ମହାବାକ୍ୟ-

ସତ୍ୟଂ ଜ୍ଞାନମନନ୍ତଃ ବ୍ରହ୍ମଃ, ବିଜ୍ଞାନମାନନ୍ଦ ବ୍ରହ୍ମ, ତତ୍, ତ୍ୱଂ, ଅସି, ଅହଂ ବ୍ରହ୍ମାସ୍ମି ।
ଉପରୋକ୍ତ ଚାରି ମହାବାକ୍ୟ ଚାରି ବେଦରେ ପ୍ରସିଦ୍ଧ ॥

ତେତେବେଳେ ଏକମାତ୍ର ବ୍ରହ୍ମ ରହିଥାନ୍ତି ।
ଅନ୍ୟ କିଛି ନ ରହଇ ସର୍ବେ କ୍ଷୟ ଯାନ୍ତି ॥
ତେଜ ନ ଥାଏ କି ଅନ୍ଧକାର ଯେ ନ ଥାଏ ।
ନାମ ନ ରହଇ କିମ୍ବା ରୂପ ଯେ ନ ରହେ ॥
ପ୍ରଳୟଙ୍କରୀ ଅଟନ୍ତି ଯେଉଁ ପରଂବ୍ରହ୍ମ ।
ସତ୍ ସ୍ୱରୂପେ ସେ କରିଥାନ୍ତି ଅବସ୍ଥାନ ॥
ଅପ୍ରକାଶ୍ୟ, ନାମହୀନ ସେହି ପରଂବ୍ରହ୍ମ ।
ତାଙ୍କୁ ପ୍ରକାଶିବା ପାଇଁ ପଣ୍ଡିତ ସୁଜାଣ ॥
ନିତ୍ୟ, ସତ୍ୟ, ଆତ୍ମା, ବ୍ରହ୍ମ, ସତ, ଚିତ୍, ଆନନ୍ଦ ।
ଆଖ୍ୟା ଦେଇ ଲଭୁଥାନ୍ତି ମନେ ବଡ଼ ମୋଦ ॥
କଳପନା ରାଜ୍ୟ ସିନା ଏସବୁ ଶବଦ ।
ଭାବନା ରାଜ୍ୟ କି ଦେଇ ପାରେ ଆତ୍ମବୋଧ ॥
ହେଲେ ହେଁ ସେ ସତ୍, ଚିଦ୍ ଆନନ୍ଦ ସ୍ୱଭାବ
ନିଜେ ନିଜ ମାୟାବଳେ ହୁନ୍ତି ଆବିର୍ଭାବ ॥
ବିଭିନ୍ନ ରୂପ ଧରି ସେ ହୁଅନ୍ତି ବିଭକ୍ତ ।
ବିବିଧ ନାମ ଧରିଣ ହୁନ୍ତି ସମନ୍ୱୀତ ।
ହିରଣ୍ୟଗର୍ଭ ବୋଲିଣ କହନ୍ତି ପଣ୍ଡିତେ ।
ବ୍ରହ୍ମ ଆଖ୍ୟା ଦେଇଥାନ୍ତି ପୁଣି ଆଉ କେତେ ॥
ଏଣୁ ସେହି ଜୀବଭାବ ପ୍ରାପ୍ତ ପରଂବ୍ରହ୍ମ ।
ନାନାରୂପେ ବାସନାକୁ କରନ୍ତି ପୂରଣ ॥
ତାର ମନ, ତାର ଧ୍ୟାନ, ବାସନା ମଧ୍ୟରେ ।
କାଳ୍ପନିକ ଭେଦ ସୃଷ୍ଟି ହୁଏ ନିରନ୍ତରେ ॥
ସ୍ଥିର ସିନ୍ଧୁରେ ଜନମ ଯଥା ଢେଉମାନ ।
ନିର୍ବିକାର ବ୍ରହ୍ମେ ଜନ୍ମେ ସର୍ବକାର ମନ ॥
ଅନୁକ୍ଷଣ ସେହି ମନ ଇଚ୍ଛା ଅନୁସାରେ ।
ନାନା କଳ୍ପନା କଳ୍ପନା କରେ ନିରନ୍ତରେ ॥
ଏ ଜଗତ-ଇନ୍ଦ୍ରଜାଲ ସେ ମନରୁ ଜାତ ।
ସୁବିସ୍ତୃତ ହୋଇ ଜାରି କରେ ତା ରାଜତ୍ୱ ॥
ଚୈତନ୍ୟରେ ଯେଉଁ ସ୍ପନ୍ଦ ହୁଅଇ ସଂଜାତ ।
ସଙ୍କଳ୍ପ, ବିକଳ୍ପ-ମନ ସେହୁ ରଘୁନାଥ ॥
ତହିଁରୁ ତରଙ୍ଗ ମାନ ହୁଅନ୍ତି ଜନମ ।
ଦେଶ, କାଳ, ନଦ, ନଦୀ, ପର୍ବତ, ଜଙ୍ଗମ ॥
ଏହିପରି ଏ ଜଗତ ହୋଇଛି ନିର୍ମିତ ।
ସୁଷୁପ୍ତିରୁ ସ୍ୱପ୍ନ ଯଥା ହେଉଥାଏ ଜାତ ॥
ଅବିଦ୍ୟା ଅଟଇ ଏହୁ କାହା କାହା ମତେ ।
ଜଗତ ବୋଲାଏ ତାହା ପୁଣି ଅନ୍ୟ ମତେ ॥
କିଏ କହେ ଏହା ମାୟା, କିଏ ସଙ୍କଳପ ।
ଅନ୍ୟ କାହା ମତେ ଏହା ଅଟେ ଦୃଶ୍ୟରୂପ ॥
ସତ କହିବାକୁ ଗଲେ ଏ ସମସ୍ତ ବ୍ରହ୍ମ ।
ବ୍ରହ୍ମବିନା ଅନ୍ୟ କିଛି ନୁହନ୍ତି ଜାଣିମ ॥
ସୁବର୍ଣ୍ଣରୁ ଗଢ଼ା ହୁଏ ନାନାଦି ଭୂଷଣ ।
ସେ ଭୂଷଣ ଗୁଣ, ସ୍ୱର୍ଣ୍ଣ ଗୁଣରୁ ଅଭିନ୍ନ ॥
ସ୍ୱର୍ଣ୍ଣ, ସ୍ୱର୍ଣ୍ଣଭୂଷଣରୁ ଅଟଇ ଯେ ଭିନ୍ନ ।
ବ୍ରହ୍ମ ଜଗତଙ୍କ ସାମ୍ୟ ଅଟଇ ତେସନ ॥
ପରମାତ୍ମା ଏ ଜଗତ ଅଟନ୍ତି ଅଭିନ୍ନ ।
କିନ୍ତୁ ଜଗତ ପରମ ଆତ୍ମାଠାରୁ ଭିନ୍ନ ॥
ଏ ଜଗତ ବ୍ରହ୍ମଙ୍କର ରୂପାନ୍ତର ମାତ୍ର ।
ବ୍ରହ୍ମଠାରୁ ଉତପନ୍ନ ସକଳ ଜଗତ ॥
ପରମାତ୍ମା ସ୍ୱ ଭାବରେ ଛନ୍ତି ଅବସ୍ଥିତ ।
ତାଙ୍କ ମଧ୍ୟେ ଅଂଶ ରୂପେ ଅଛି ଏ ଜଗତ ॥
କେବେ ତହିଁ ନାହିଁ ପୃଥକ୍ ସତ୍ତା ଜଗତର ।
ଜଗତ୍ ସତ୍ତା ସ୍ଥିତ ବ୍ରହ୍ମ ସତ୍ତାର ମଧ୍ୟର ॥
ମରୁଦେଶେ ମରୀଚିକା ଦିଏ ନଦୀ ଭ୍ରମ ।
ଇନ୍ଦ୍ରଜାଲ-ଭବ-ଭ୍ରମ ବ୍ରହ୍ମଙ୍କ ମଧ୍ୟେଣ ॥
ଚୈତନ୍ୟଙ୍କ ଅଣୁ ମାତ୍ର ଏ ସୃଷ୍ଟି ଆଭାସ ।
ଏହା ବୁଝିବାକୁ ହେବ, ଦଶରଥ ଶିଷ୍ୟ ॥
ବାସ୍ତବରେ କେଉଁ ଜନ୍ମ ନାହିଁ ଏ ଜଗତ ।
ଅଦ୍ୱୈତ ସତ୍ତା ସର୍ବଦା ସ୍ୱୟଂ ଅବସ୍ଥିତ ॥
ଜନ୍ମ, ମୃତ୍ୟୁ, ବନ୍ଧ, ମୋକ୍ଷ ଅଦ୍ୱୈତ ସତ୍ତାରେ
କିପରି ସମ୍ଭବି ପାରେ ଆହେ ରଘୁବୀରେ ?
ବନ୍ଧ, ମୋକ୍ଷାଦି କେବଳ ମନର କଳ୍ପନା ।
ବାସ୍ତବତା ତହିଁ କିଛି ନାହିଁ କର ଘେନା ॥
ଆତ୍ମାକୁ ନ ଜାଣିବାରୁ ସବୁ ଭାସମାନ ।
ଜନ୍ମ, ମରଣର ତହିଁ ନାହିଁ ବର୍ଣ୍ଣ ଚିହ୍ନ ॥
ସୃଷ୍ଟି ବା ବିନାଶ କିଛି ଜଗତର ନାହିଁ ।
ସ୍ୱୀୟ କଳ୍ପନା ବଶତଃ ପ୍ରତୀତ ସେ ହୋଇ ॥
ପ୍ରମାଦ ବଶତଃ ତାକୁ ସତ ବୋଲି କହି ।
ସେ ଭ୍ରମରୁ ଉଧୁରିବା କଠିନ ଅଟଇ ॥
ଅନିଶ୍ଚିତ ଓ ନିଶ୍ଚିତ ଏହି ଦୁଇ ଶବ୍ଦ ।
କଳ୍ପନା ରାଜ୍ୟରେ ଖାଲି ଏହାଙ୍କର ଭେଦ ॥
ଏହିପରି କହିଦେଲେ ଜଗତ୍ ଭ୍ରମ ଦୂର ।
ହୋଇ କି ପାରିବ କେଉଁ କୌଶଲ୍ୟା କୁମର ॥

ଅର୍ଥଯୁକ୍ତ ବାକ୍ୟବିନା ଏହି ଦୃଶ୍ୟ ଭ୍ରମ ।
ଦୂର ହୋଇ ପାରିବ କି ଦଶରଥ ନାନ ?
ତର୍କ, ଜପ, ତପ, ତୀର୍ଥ, ଦାନ ଆଦି ବଳେ
ଜଗତ ଭ୍ରମ ନିବୃତ୍ତି ଯେହୁ ଇଚ୍ଛା କରେ ॥
ମୂର୍ଖ ଅବିବେକ ବୋଲି ତାହାଙ୍କୁ ଜାଣିବ ।
ଏହାଦ୍ୱାରା ସେହି ଭ୍ରମ ବଢ଼ି ଚାଲିଥିବ ॥
ଆବର ଯେବଣ ସ୍ଥାନେ ସେହୁ ଯାଉଥିବ ।
ପଞ୍ଚଭୂତ ଜଗତ ତା ନେତ୍ରେ ନାଚୁଥିବ ॥
ଏହାଛଡ଼ା ଅନ୍ୟ କିଛି ଦେଖି ନ ପାରିବ ।
ତେଣୁ ଏ ଦୃଶ୍ୟ ବିନାଶ ହେବା ଅସମ୍ଭବ ॥
ବିତୃଷ୍ଣ ହୋଇଣ ଯଦି ସମାଧି ଆଚରେ ।
କିୟତ୍‌କାଳ ପରେ ସମାଧିରୁ ଅବତରେ ॥
ଜାଗତିକ ଶବ୍ଦ ଅର୍ଥ ପୁଣି ଆବୋରିବ ।
ଭବମାୟା ଜାଲେ ପଡ଼ି ପୁଣି ଘାଣ୍ଟିହେବ ॥
ସମାଧି ଲଭିବା ସୁଖ ରହିଲା କେଉଁଠି ?
ସମାଧି ଛାଡ଼ିବା ପରେ ଯେବେ ହୁଏ ଘାଣ୍ଟି ॥
କେବଳ ସ୍ଥିର ସମାଧି ହୁଏ ସୁଖଦାୟୀ ।
ସେ ସମାଧି ଅନ୍ତେ ଜୀବ ପୁଣି ଘାଣ୍ଟି ହୋଇ ॥
ପଦ୍ମ କେଶର ମଧ୍ୟରେ ମଞ୍ଜି ଥିବାଯାଏ ।
ପଦ୍ମ ଫୁଟୁଥିବା ପ୍ରଥା ଚାଲୁ ରହିଥାଏ ॥
ଯେ ଯାଏ ଅଜ୍ଞାନ ବୀଜ ନ ହୋଇଛି ନାଶ ।
ଜପ, ଦାନେ ଜଗତ୍ ଭ୍ରମ ନୋହିପାରେ ଶେଷ
ଅଜ୍ଞାନ-ବୀଜ ବିନାଶେ, ଭବ-ବୃକ୍ଷ କ୍ଷୟ ।
ଦାନାଦି କେବଳ ପତ୍ର ତୋଳିବାର ନ୍ୟାୟ ॥
ଅବଶ୍ୟ ଏ ଉପାୟରେ ଅକ୍ଷୟ ସମ୍ପତ୍ତି ।
ଅଥବା ଅକ୍ଷୟ ପଦ ନୁହେଁ ପରାପତି ॥
ଏସନ ସମାଧି କେବେ ନୁହେଁ ପରାପତ ।
ଯଦ୍ୱାରା କି ଜୀବ ହେବ ଜଡ଼ ଶୀଳାବତ ॥
ପୁଣି ବଶିଷ୍ଠ କହନ୍ତି ଶୁଣ ହେ ଶ୍ରୀରାମ ।
ମୁଁ ଅବଶ୍ୟ ଦେଖିଅଛି ଭବେ ବହୁ ସ୍ଥାନ ॥
ଯଦିଚ ସମାଧି-ସୁଧା ଲଭିବ ମାନବ ।
ସଂସାର ସତ୍ତା ଭୁଲିବା ହେବ ଅସମ୍ଭବ ॥
ଯେ ଘେନି ଅଜ୍ଞାନ-ବୀଜ ନୁହେଁ ନିର୍ବାପିତ ।
ଜୀବର ଏ ଦୁଃସାହସ ହୁଏ ପରାଜିତ ॥
ଜାଗ୍ରତାବସ୍ଥାରୁ ଯଥା ସୁଷୁପ୍ତି ଜନମ ।
ଅଜ୍ଞାନ ହେତୁ ସୁଷୁପ୍ତି ପରେ ଜାଗରଣ ॥

ସମାଧିକୁ ଚାଲିଥାଏ ଅଜ୍ଞାନ ବାସନା ।
ନିର୍ବିକଳ୍ପ ସମାଧିରୁ ତଳେ ଟାଣେ ସିନା ॥
ଭବ ଭ୍ରମ ତୁଟେ ନାହିଁ ତପ, ସମାଧିରେ ।
କାଞ୍ଜିଖାଇ କ୍ଷୁଧାଜ୍ୱାଳା କେହି କି ପାଶୋରେ
ଚିତ୍ତବୃତ୍ତି ସ୍ଥିର ରହେ ତପ ସମାଧିରେ ।
କିନ୍ତୁ ସଂସାର ନିବୃତ୍ତି ସମ୍ଭବି ନ ପାରେ ॥
ଯେ ପର୍ଯ୍ୟନ୍ତ ଚିତ୍ତ ଅଛି ସମାଧିସ୍ଥ ହୋଇ ।
ସେ ପର୍ଯ୍ୟନ୍ତ ଚିତ୍‌ସୁଧା ଜୀବ ପାଉଥାଇ ॥
ସମାଧି ଭାଙ୍ଗିଲେ, ଶବ୍ଦ ଅର୍ଥ ପୂର୍ଣ୍ଣଭାବେ ।
ଅବତରୀ ଆସି ପୁଣି ଚରେ ଭବାର୍ଣ୍ଣବେ ॥
ଅଜ୍ଞାନବଶ ବାଳକ ଦେଖି ନିଜ ଛାଇ ।
ଭୂତବୋଲି ମଣି, ଭୟେ ଚମକି ଉଠଇ ॥
ଜ୍ଞାନ ଉଦୟ ହୁଅନ୍ତେ ସେ ଭ୍ରମ ତୁଟଇ ।
ଭ୍ରମ'ର ପ୍ରଭାବ କେଡ଼େ ବୁଝ ରଘୁରାଇ ॥
ଅବିଚାର ହେତୁ ଜଗତ୍ ଭ୍ରମ ସୃଷ୍ଟି ହୁଏ ।
ବିଚାରବଳେ ସେ ଭ୍ରମ ଅପସରି ଯାଏ ॥
ଜଗତର ସରଜନା ଅବାସ୍ତବ କଥା ।
ଜଗତ ଅଟେ ଅସତ୍ୟ ଏ ଜଗତ ମିଥ୍ୟା ॥
ବିଚାରବେଳେ ଏ ସତ୍ୟ ହୁଏ ପ୍ରତିଭାତ ।
ଯିବା, ଆସିବା କେବଳ ଖିଆଲର ତଥ୍ୟ ।
ଯାହା ସତ୍ୟ ତାର କେଉଁ ନଥାଇ ନିବୃତ୍ତି ।
ଯାହା କି ଅସତ୍ୟେ ତାର ସ୍ଥିର ନୁହେଁ ସ୍ଥିତି ॥
ଅସତ୍ ଆତ୍ମା କଦାପି ନୋହିପାରେ ସ୍ଥିର ।
ସତ୍ ଆତ୍ମାର ଅଭାବ ନାହିଁ କାଳ କାଳ ॥
ଆତ୍ମାରୁ ଜଗତ ସୃଷ୍ଟି ଏ ସିଦ୍ଧାନ୍ତ ସ୍ଥିର ।
ଆଦ୍ୟେ ବା ପ୍ରାନ୍ତେ ସର୍ଜନା ନାହିଁଟି ଏହାର ॥
ଯେଠାରେ ଚୈତନ୍ୟ ନାହିଁ ସୃଷ୍ଟି ନାହିଁ ତହିଁ
ତେଣୁ ଆଭାସ ମାତ୍ରକ ଏ ସୃଷ୍ଟି ଅଟଇ ॥
ଆତ୍ମାଟି କେବଳ ଅଟେ ଦର୍ପଣ ସ୍ୱରୂପ ।
ଅନନ୍ତ ସୃଷ୍ଟି ଯହିଁରେ ଧରିଥାନ୍ତି ରୂପ ॥
ଦର୍ପଣରେ ପ୍ରତିବିମ୍ବ ପଡ଼ଇ ଯେମନ୍ତ ।
ଆତ୍ମାରେ ଜଗତ ଛାୟା ପଡ଼ଇ ତେମନ୍ତ ॥
ଜନ୍ମ, ମୃତ୍ୟୁ, ଜରା, ସୁପ୍ତି, ସ୍ୱପ୍ନ, ଜାଗରଣ
ସଂଘଟିତ ହୋଇଥାନ୍ତି ଏ ଆତ୍ମା ମଧ୍ୟେଣ ॥
ଏକମାତ୍ର ଆତ୍ମସତ୍ତା ଧରି ଦ୍ୱୈତ ରୂପ ।
ଚୈତନ୍ୟ ସହ ବିରାଜେ ସମାନ ସ୍ୱରୂପ ॥

ଯଦିଚ ଦୁଇଟି ବୋଲି ପ୍ରତୀତ ସେ ହୁଏ
ଏକ ଛଡ଼ା ଦୁଇ ବୋଲି ଭ୍ରମ ଜନମାଏ ॥
ଫୁଲର ସୁଗନ୍ଧ ପୁଣି ତିଳର ତଇଳ ।
ଅଗ୍ନିର ଉଷ୍ଣତା, ସୃଷ୍ଟି ମାନସ ରାଜ୍ୟର ॥
ଆତ୍ମା ଜଗତ ସମ୍ବନ୍ଧ ତେମନ୍ତ ପ୍ରକାର ।
ଅଭେଦ୍ୟ ପ୍ରୀତି ରହିଛି ଏହାଙ୍କ ମଧ୍ୟର ॥
ମନ ସହ ମନସୃଷ୍ଟି ଅଭିନ୍ନ ଯେସନ ।
ଏହି ଆତ୍ମା, ଏ ଜଗତ ଅଭିନ୍ନ ତେସନ ॥
**ଇତି ଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ବନ୍ଧହେତୁ ବର୍ଣ୍ଣନେ ନାମ ପ୍ରଥମ ସର୍ଗଃ ॥**



## ଦ୍ୱିତୀୟ ସର୍ଗଃ

## ପ୍ରଥମ ସୃଷ୍ଟି

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ ।
* ଆକାଶଜ ଆଖ୍ୟାନ ମୁଁ କରୁଛି ବର୍ଣ୍ଣନ ॥
ଶ୍ରୁତିକି ମଧୁର ପୁଣି ଚିତ୍ତ ଆକର୍ଷକ ।
ଏ ଉତ୍ପତ୍ତି ପ୍ରକରଣ ବୁଝିବ ସମ୍ୟକ ॥
ଆକାଶଜ ନାମେ ଥିଲେ ଦ୍ୱିଜବର ଏକ ।
ଧ୍ୟାନନିଷ୍ଠ ଶୁଦ୍ଧଚେତା ପରମ ଧାର୍ମିକ ॥
ପ୍ରଜାହିତ କରଣରେ କଟେ ତାଙ୍କ ଦିନ ।
ଚିରଞ୍ଜୀବୀ ଅଟନ୍ତି ସେ ନ ଜାଣି ମରଣ ॥
ତାଙ୍କୁ ଚିରଞ୍ଜୀବୀ ଦେଖି ମୃତ୍ୟୁ ଚିନ୍ତାକଲେ ।
ମୁହିଁ ଏକା ଅବିନାଶୀ ଜାଣେ ଏହା ଭଲେ ॥
ସବୁ ଜୀବଧାରୀଙ୍କୁ ମୁଁ କରୁଅଛି ନାଶ ।
କିମ୍ପାଇଁ ଏ ଆକାଶଜ ନ ହେବ ମୋ ଗ୍ରାସ ॥
ଶିଳା କରତନେ ତୀକ୍ଷ୍ଣ ଖଡ଼ଗ କୁଣ୍ଠିତ ।
ଏ ଦ୍ୱିଜ ନିଧନ ପାଇଁ ମୋର ଶକ୍ତି ବ୍ୟର୍ଥ ॥
ବ୍ରାହ୍ମଣ ବଧ ନିମନ୍ତେ ସେ ମୃତ୍ୟୁ ଦେବତା ।
ପ୍ରାଣ ପ୍ରାୟଶ୍ଚିତ ହୋଇ କରେ ବହୁ ଚିନ୍ତା ॥
ଶ୍ରେଷ୍ଠ ଜନେ ନିଜ କର୍ମ ନ ଛାଡ଼ିଲା ପରି ।
ବ୍ରାହ୍ମଣ ନିଧନ ପାଇଁ ମୃତ୍ୟୁ ଯାଏ ଚଳି ॥
ବ୍ରାହ୍ମଣ ଘରେ ପ୍ରବେଶ ହୁଅନ୍ତେ ସେ ଯାଇ ।
ପ୍ରଳୟ କାଳ ଅନଳ ମାଡ଼ିଆସେ ଧାଇଁ ॥

ମୃତ୍ୟୁଙ୍କୁ କବଳ କରି ଭସ୍ମ ସେ କରିବ ।
ଆକାଶଜ ଦ୍ୱିଜ ଅଙ୍ଗେ ପାଞ୍ଚ ନ ଲାଗିବ ॥
ମୃତ୍ୟୁ ଦେବ ସେ ଅଗ୍ନିକୁ ବିଦାରଣ କରି ।
ଆକାଶଜ ବ୍ରାହ୍ମଣକୁ ଘେରେ ବାଘ ପରି ॥
ଯେତେ ବଳବାନ ହେଲେ ମଧ୍ୟ ବଳିୟାନ ।
ମହତକୁ କବଳିବା ଧୃଷ୍ଟତା ସମାନ ॥
ସେ ପାଇଁ ମୃତ୍ୟୁ ଦେବତା ସେହି ବ୍ରାହ୍ମଣକୁ ।
ସାହସ କରି ନ ପାରେ ଛୁଇଁବାକୁ ତାକୁ ॥
ବ୍ୟର୍ଥ ମନୋରଥ ହୋଇ ସେହି ମୃତ୍ୟୁଦେବ ।
ପରବେଶ ହେଲେ ଯହିଁ ବିଜେ ଯମଦେବ ॥

### ମୃତ୍ୟୁ ଉବାଚ

କେଉଁ କାରଣ ବଶତଃ ସେ ଦ୍ୱିଜବରକୁ ।
ଅସମର୍ଥ ହେଲି ମୁହିଁ ନାଶ କରିବାକୁ ?

### ଯମ ଉବାଚ

ଶୁଣ ମୁଁ ଯାହା କହୁଛି ଆହେ ମୃତ୍ୟୁଦେବ ।
ଏକାକୀ ତୁମ୍ଭେ କାହାକୁ ମାରି ନ ପାରିବ ॥
ବାସ୍ତବରେ କେହି କା'କୁ ମାରି ନ ପାରଇ ।
ସ୍ୱ କର୍ମର ଫଳେ ପ୍ରାଣୀ ମରଣ ଲଭଇ ॥
କର୍ମ ହିଁ ବାସ୍ତବ ହେତୁ ପ୍ରାଣୀ ମରଣର ।
ଅନ୍ୟ କାହାକୁ ଦୋଷିବା ନୁହେଁ ସୁବିଚାର ॥
ଏବେ ଯାଇ ସେ ବ୍ରାହ୍ମଣ କର୍ମ ଖୋଜକର ।
କୁକର୍ମ ମିଳିଲେ ମରିପାରେ ଦ୍ୱିଜବର ॥
ଦ୍ୱିଜକର୍ମ ଅନ୍ୱେଷଣେ ମୃତ୍ୟୁଦେବ ଚଳି ।
ସଚରାଚର ବ୍ରହ୍ମାଣ୍ଡେ ସର୍ବତ୍ର ବିଚରି ॥
କର୍ମ ଅଟେ ବାସନାର ନାମାନ୍ତର ମାତ୍ର ।
ଏ କଥା ନବୁଝି ଲୋକେ ଯାନ୍ତି ଭ୍ରମପଥ ॥
ଧୃଷ୍ଟତାବଶତ ମୃତ୍ୟୁ ଧାଇଁ ବୁଲୁଥାଇ ।
ଖାଲ, ଡିଙ୍ଗର, ପର୍ବତ କିଛି ନ ଛାଡ଼ଇ ॥
ଦଶ ଦିଗ, ନଦନଦୀ, ଆକାଶ ପାତାଳ ।
ବୁଲିବୁଲି ଥକିଯାଇ ହେଲା ସେ ବିକଳ ॥
ବ୍ରାହ୍ମଣର କର୍ମଦୋଷ ଚିହ୍ନ କାହିଁ ହେଲେ ।
ନ ପାଇ ସମନ ପାଶେ ଯାଇ ପହଞ୍ଚିଲେ ॥
ଆଜ୍ଞାବହ ବ୍ୟକ୍ତିଙ୍କର ସଂଶୟ ଛେଦନ ।
ଏହି ରୂପେ କରିଥାନ୍ତି ଜଗତ କାରଣ ॥

* ଆକାଶଜ - ଏକ ବ୍ରାହ୍ମଣ

ନିଜେ ଯମ ମୃତ୍ୟୁକୁ ଯେ କିଛି ନ କହିଲେ ।
ମୃତ୍ୟୁର ସଂଶୟ ମୃତ୍ୟୁ ମୁଖେ ଛେଦକଲେ ॥
ବଳବନ୍ତ ମୃତ୍ୟୁ ମନେ ମନେ ଲାଜ ପାଇ ।
ଧର୍ମରାଜ ଦରବାରେ ପହଞ୍ଚିଲେ ଯାଇ ॥

### ମୃତ୍ୟୁ ଉବାଚ

ମୁହିଁ ମୃତ୍ୟୁ ମୁହିଁ ସବୁଠାରୁ ବଳବାନ ।
କାହିଁ ନ ପାଇଲି ବ୍ରାହ୍ମଣର ଦୋଷ ଚିହ୍ନ ॥
ବନ୍ଧ୍ୟାର ପୁତ୍ର ଯେପରି ସମ୍ଭବ ନୁହଇ ।
ଦ୍ୱିଜର ଦୋଷ ତେସନ ନ ପାଇଲି ମୁହିଁ ॥
ହେ ସଂଶୟ ନାଶକର୍ତ୍ତା କୁହନ୍ତୁ ବୁଝାଇ ।
ବ୍ରାହ୍ମଣର କର୍ମ ତେବେ ରହିଅଛି କାହିଁ ?
ଶରୀରଧାରୀ ମାତ୍ରକେ କରମ ସଂଯୁକ୍ତ ।
ଏ ବ୍ରାହ୍ମଣ ବିଷୟେ ମୁଁ ଖାଲି ଆଚମ୍ବିତ ॥
କିସ ଯେ କାରଣ ଏଥି ରହିଛି ଗୁପତ ।
ସେ କଥା ବୁଝିଲେ ସଦା ହେବି କୃତକୃତ୍ୟ ॥
ଅତଏବ କହ ଦେବ କି ଉପାୟ କରି ।
ବ୍ରାହ୍ମଣର ଜୀବଆତ୍ମା ନେବି ମୁଁ ଓଟାରି ॥
ବହୁ ଚିନ୍ତା କରି ଯମ କହନ୍ତି ବଚନ ।
ଯାହା ମୁଁ କହୁଛି ମୃତ୍ୟୁ ମନଦେଇ ଶୁଣ ॥

### ଯମ ଉବାଚ

କର୍ମ ଶୂନ୍ୟ ଅଟେ 'ଆକାଶଜ' ବିପ୍ରବର ।
ଆକାଶରୁ ଜନ୍ମଲାଭ ହୋଇଛି ଯାଙ୍କର ॥
ତେଣୁ କରି ନାହିଁ ଯାର କଉଣସି କର୍ମ ।
ଆକାଶଜ ହେତୁ ସେହୁ ଅଟେ କର୍ମଶୂନ୍ୟ ॥
ତେଣୁକରି ରୂପରେଖ ଏହାର ତ ନାହିଁ ।
ସହକାରୀ କଥା ତେଣୁ ଉଠିବ କିମ୍ପାଇଁ ?
ପ୍ରାକ୍ତନ କର୍ମ ସହିତ କୌଣସି ସମ୍ପର୍କ ।
ନାହିଁ ତାର ବୋଲି ଜାଣି ରଖ ସୁବିବେକ ॥
ଶୁଦ୍ଧ ଚିଦାକାଶୁ ଜନମିଛି ଏହି ଦ୍ୱିଜ ।
ବିନା କାରଣରେ ଜନମିଛି ରଖ ହେଜ ॥
କାରଣ ବିନା ଜନମ, ତେଣୁ ସେ ଈଶ୍ୱର ।
ବିଶୁଦ୍ଧ ଆକାଶୁ ଜନ୍ମି ସେହି ରୂପ ତାର ॥
ଚେତନ ତାହାର ବପୁ ଜାଣ ମୃତ୍ୟୁ ଦେବ ।
କ୍ରିୟା କର୍ମ ବିହୀନ ସେ ଏହି ଉକ୍ତି ଧ୍ରୁବ ॥
ନିଜସ୍ୱ ରୂପରୁ ଯେଣୁ ଲଭିଛି ଜନମ ।
ତେଣୁ ତାହାର ନାମଟି ସ୍ୱୟମ୍ଭୁ ଜାଣିମ ॥

ସଦା ସରବଦା ଆପେ ଆପେ ସେ ରହିଛି ।
ଜଗତ ଯେ କିସ ବସ୍ତୁ ନ ଜାଣେ ସେ କିଛି ॥
ସଦାସେ "ଅଦ୍ୱୈତ," "ଦ୍ୱୈତ" ଭାବ ତାର ନାହିଁ ।
ତେଣୁ ତାହାର ବିନାଶ ସମ୍ଭବ ନୁହଇ ॥

### ମୃତ୍ୟୁ ଉବାଚ

ହେ ଦେବ ! ଯଦି କହୁଛ ସେ ଆକାଶ ରୂପ ।
କି କାରଣୁ ଦେଖାଯାଏ ଏ ସାକାର ସ୍ୱରୂପ ?

### ଯମ ଉବାଚ

ନିରାକାର, ଚଇତନ୍ୟ-ବପୁ ଏହି ନଭ ।
ଆକାର ସେ ହୀନ, ତାର ନାହିଁ ଅହଂଭାବ ॥
ପୂର୍ବେ କିମ୍ବା ବର୍ତ୍ତମାନ ନାହିଁ କର୍ମ ତାର ।
ତେଣୁ କିପରି ବିନାଶ ଘଟିବ ତାହାର ?
'ଅହଂ', 'ତ୍ୱଂ' ଏ ବିଚାର ନାହିଁ ତ ତାହାର ।
ଜଗତ ନିଶ୍ଚୟ ବସ୍ତୁ, ଜ୍ଞାନ ନାହିଁ ତାର ॥
ଅଚେତ ଚିନ୍ମାତ୍ର ଅଟେ ଏହି ଦ୍ୱିଜବର ।
ଜଗତ ସ୍ଥିତିରେ ଆସ୍ଥା ନାହିଁ ତ ଏହାର ॥
ପଦାର୍ଥ ପ୍ରତି ମମତା ଯାର ମନେ ଥାଏ ।
ବିନାଶ ତା ପଛେ ପଛେ ଛକି ଧାଇଁଥାଏ ॥
ମମତା ବିହୀନ ଯେଣୁ ଏହି ଦ୍ୱିଜବର ।
କି ଉପାୟେ ବିନାଶ ତୁ କରିବୁ ତାହାର ?
ଯେତେ଼ ଇଚ୍ଛା ତେତେ଼ ବଳବାନ ହେଉ ନର ।
ଧରିଥାଉ ଶତ ଶତ ଲୁହାର ଜଞ୍ଜିର ॥
ନଭକୁ ବାନ୍ଧିବା ତାହା ପକ୍ଷେ ଅସମ୍ଭବ ।
ସେ ଦ୍ୱିଜକୁ ମାରିଗଲେ ଲୋକହସା ହେବ ॥

### ମୃତ୍ୟୁ ଉବାଚ

ହେ ଦେବ, ଆକାଶ, ଶୂନ୍ୟ ଏକଇ ପଦାର୍ଥ ।
ଶୂନ୍ୟବସ୍ତୁ କି ପ୍ରକାରେ ହୋଇପାରେ ଜାତ ?
କ୍ଷିତ୍ୟାଦି ପଞ୍ଚଭୂତେ ବା ଅଛନ୍ତି କାହାର ?
କାହାର ନ ଥାଏ ତାହା କହ ମୋ ଆଗର ॥

### ଯମ ଉବାଚ

କେବେ ସୁଦ୍ଧା ଜନ୍ମ ଲଭି ନାହିଁ ଆକାଶଜ ।
କେବେ ସେ ମରିଛି ଏହା ନାହିଁ ମୋର ହେଜ ॥
ଜନ୍ମ, ମରଣ ରହିତ ଏହି ମୁକ୍ତ ଆତ୍ମା ।
ନିତ୍ୟ, ସିଦ୍ଧ, ଅନନ୍ତ ଏ ଦ୍ୱିଜ ହର୍ତ୍ତା କର୍ତ୍ତା ॥
ବିଜ୍ଞାନ ପ୍ରଭା ଅଟଇ ଏହି ଏକ ମାତ୍ର ।
ତେ଼ଣୁ ନିରାକାର ରୂପେ ଅଛି ଅବସ୍ଥିତ ॥

ମହା ପ୍ରଳୟରେ ଏହୁ ବିନାଶ ରହିତ ।
ଶୁଦ୍ଧ ନିରୂପାଧି ସନାତନ ବ୍ରହ୍ମେ ସ୍ଥିତ ॥
ତାଙ୍କ ବିନା ଅନ୍ୟ କିଛି ରହି ନ ପାରନ୍ତି ।
ତେଜୋମୟ ବିରାଟଙ୍କ ରୂପ ସେ ଧରନ୍ତି ॥
ଏହି ଦ୍ୱିଜ ଅଟନ୍ତି ସେ ବିରାଟ ପୁରୁଷ ।
ଅବିନାଶୀ ସେହୁ, ତାଙ୍କୁ କରିବ କେ ଧ୍ୱଂସ ?
ଯେତେବେଳେ ସ୍ଫୁର୍ତ୍ତିବାନ ହୁଏ ସେ ବିରାଟ ।
ମନେହୁଏ ସେହୁ ଅଟେ ଆକାର ବିଶିଷ୍ଟ ।
ଫଳତଃ ଆମ୍ଭର ଜ୍ଞାନ ଅଟେ ସ୍ୱପ୍ନ ସମ ।
ପରମାର୍ଥ-ସତ୍ୟ ବୁଝାଇବ ତା କେସନ ?
ଏହି ସେହି ଦ୍ୱିଜ, ଯେହୁ ସୃଷ୍ଟି ଆରମ୍ଭରେ ।
ଆକାଶ ଉଦରେ ନିର୍ବିକଳ୍ପ ରୂପ ଧରେ ॥
ଦେହ, କରମ, କରଣୀ, ତାର କିଛି ନାହିଁ ।
ପ୍ରାକ୍ତନ କର୍ମ, ବାସନା, କିଛି ତ ନ ଥାଇ ॥
ତେଜର ଦୀପ୍ତି ସଦୃଶ "ଆକାଶଜ" ପ୍ରଭା ।
ବିଜ୍ଞାନମୟ ବ୍ରହ୍ମଙ୍କ ଯେଉଁପରି ଶୋଭା ॥
ଆକାଶ କିପରି ବସ୍ତୁ ବୋଧଗମ୍ୟ ସିନା ।
କିନ୍ତୁ ତା ସ୍ୱରୂପ କା'କୁ ଦେଖା ତ ଯାଏନା ॥
ଏ ଅଟନ୍ତି ସର୍ବଦ୍ରଷ୍ଟା ସ୍ୱୟଂ ଚଇତନ୍ୟ ।
କେବେ କି ହୋଇ ପାରିବେ ଆମ ଦୃଷ୍ଟିଗମ୍ୟ ?
ଚିଦାକାଶ ବ୍ରହ୍ମ ପରି ଏହି ଆକାଶଜ ।
ଆମ ପରି ନଗଣ୍ୟ କି ବୁଝିବ ତା ତେଜ ?
ହେ ମୃତ୍ୟୁ ! ତା ନାଶ ପାଇଁ ଯତ୍ନ ତ୍ୟାଗ କର ।
ନଭକୁ ନାଶ କରିବା ଶକତି କାହାର ?
ଦେହଧାରୀମାନଙ୍କର ବିନାଶ ଆଚର ।
ଆକାଶ ବିନାଶ ଚେଷ୍ଟା ପରିତ୍ୟାଗ କର ।
ଏହା ଶୁଣି ମୃତ୍ୟୁ ଦେବ ବିସ୍ମିତ ହୋଇଣ ।
ନିଜ ସଦନକୁ ତେଣୁ କଲେକ ପ୍ରସ୍ଥାନ ॥
କହନ୍ତି ଶ୍ରୀ ରାମଚନ୍ଦ୍ର ଗୁରୁଦେବ ଶୁଣ ।
ଯେଉଁ ମହାତ୍ମାଙ୍କ ଆଖ୍ୟା କରିଲ ବର୍ଣ୍ଣନ ॥
ସେହି କି ସେହି ସ୍ୱୟମ୍ଭୁ ବିଜ୍ଞାନ୍ ସ୍ୱରୂପ- ।
ତେଜ, ଏକ ଆତ୍ମା, ଧରିଛନ୍ତି ବିଶ୍ୱରୂପ ?
ଅଟନ୍ତି କି ସେହୁ ସେହି ପିତାମହ ବ୍ରହ୍ମା ?
ଫିଟାଇ ସର୍ବ ସଂଶୟ ଫେଡ଼ ମୋର କିନା ॥

କହନ୍ତି ବଶିଷ୍ଠ ଶୁଣ ରଘୁବୀର ରାମ ।
ମୋ ପିତା ବ୍ରହ୍ମାଙ୍କ କଥା କରିବି ଜ୍ଞାପନ ॥
ପୂର୍ବେ ମୃତ୍ୟୁ ଇଚ୍ଛିଥିଲେ ବ୍ରହ୍ମାଙ୍କ ବିନାଶ ।
ତାଙ୍କ ଚେଷ୍ଟା ଦେଖି ଯମ କରିଥିଲେ ହାସ୍ୟ ॥
ମନ୍ୱନ୍ତର କାଳେ ମୃତ୍ୟୁ ହେଲେ ସର୍ବ ଭକ୍ଷ ।
ସମସ୍ତ ଜୀବମାନଙ୍କୁ ମଣିଲେ ସେ ତୁଚ୍ଛ ॥
ବଳପୂର୍ବକ ବ୍ରହ୍ମାଙ୍କୁ ଆକ୍ରମଣ କଲେ ।
ଆମ୍ଭ ପରାଜିତ ହୋଇ ନୀରବ ରହିଲେ ॥
ଯାହାର ଯାହା ଅଭ୍ୟାସ ତା ନିଶ୍ଚେ ରହିବ ।
ମାଡ଼ି ବସୁଥିଲେ ସୁଦ୍ଧା ଫୁଟି ବାହାରିବ ॥
ଅଭ୍ୟାସ ବଶତଃ ମୃତ୍ୟୁ ଗ୍ରାସନ୍ତେ ବ୍ରହ୍ମାଙ୍କୁ ।
ଶାସନ କରିଣ ଯମ କହିଥିଲେ ତାଙ୍କୁ ॥
ଯେଣୁ ଆକାଶ ଶରୀର ଅଟନ୍ତି ଏ ବ୍ରହ୍ମା ।
କିପରି ନାଶିବ ତାଙ୍କୁ ହେ ମୃତ୍ୟୁ ମହାତ୍ମା ?
ସଂକଳ୍ପ ପୁରୁଷ ପରି ସେହୁ ବିରାଜିତ ।
କ୍ଷିତ୍ୟାଦି ରହିତ ପୁଣି ଆକାର ବର୍ଜିତ ॥
କେବଳ ମାତ୍ରକ ଚିଦାକାଶ ସେ ଅଟନ୍ତି ।
ଅନୁଭବ-ରୂପୀ ଛଡ଼ା କିଛି ସେ ନୁହନ୍ତି ॥
ତାହାର କାରଣ ନାହିଁ, କାର୍ଯ୍ୟ ତ ନ ଥାଇ ।
ଭୌତିକ ନଭେ ପାର୍ଥିବାକାରେ ବିରାଜଇ ॥
ସଂକଳ୍ପ ପୁରୁଷ ମନରାଜ୍ୟେ ଯଥା ଖେଳେ ।
ସେ ବ୍ରହ୍ମା ସ୍ୱ ଚିଦାକାଶେ ଖେଳେ ସେ ପ୍ରକାରେ ॥
ସେକାଳେ କ୍ଷିତ୍ୟାଦି ପଞ୍ଚଭୂତ ବିବର୍ଜିତ ।
ହୋଇ, ସେ ମହାତ୍ମା ରାଜେ ସ୍ୱଭାବେ ଉଷତ ॥
ତେଣୁ ସ୍ୱୟମ୍ଭୁ ଆଖ୍ୟାଟି ପାଇଛନ୍ତି ସେହି ।
ନିର୍ମଳ ଆକାଶେ ମୁକ୍ତା ପରି ପ୍ରକାଶଇ ॥
ତାହାଙ୍କର ଦୃଶ୍ୟ, ଦ୍ରଷ୍ଟା ଭାବ କିଛି ନାହିଁ ।
ତେଣୁ କରି ସଦା ଭାସମାନ ସେ ଅଟଇ ॥
କେବଳ ମାତ୍ର ସଂକଳ୍ପ ଶରୀର ସେ ଯେଣୁ ।
ମନୋବ୍ରହ୍ମ ବୋଲି ଆଖ୍ୟା ପାଇଛନ୍ତି ତେଣୁ ॥
ଚିତ୍ରକାର ହୃଦେ ଦେହହୀନ ଛବି ଫୁଟେ ।
ନିର୍ମଳ ଚିଦାକାଶେ ଏ ବ୍ରହ୍ମା ଉଇଁ ଉଠେ ॥
ଏହି ସେ ସ୍ୱୟମ୍ଭୁ ଆଦ୍ୟ, ମଧ୍ୟ, ଅନ୍ତ ହୀନ ।
ଚିଦାକାଶ ରୂପେ ମାତ୍ର ସେ ପ୍ରକାଶ ମାନ ॥

କାରଣ - ଜନକ
କାର୍ଯ୍ୟ- ଉତ୍ପଦ୍ୟ

ସ୍ୱୀୟ ଚିତ୍ତେ ସଙ୍କଳପ ଶରୀରକୁ ଧରେ ।
ଆକାଶ ପୁରୁଷ ରୂପେ ପ୍ରକାଶ ବିତରେ ॥
ବନ୍ଧ୍ୟାନାରୀ ସୁତ ପରି ଏହାର ଶରୀର ।
ମିଥ୍ୟା, ଅଳୀକ ବୁଝନ୍ତୁ, ଆହେ ରଘୁବୀର ॥

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ପ୍ରଥମ ସୃଷ୍ଟି ବର୍ଣ୍ଣନେ**
**ନାମ ଦ୍ୱିତୀୟ ସର୍ଗଃ ।**



## ତୃତୀୟ ସର୍ଗଃ
## ବନ୍ଧହେତୁ ବର୍ଣ୍ଣନ

ବଶିଷ୍ଠଙ୍କୁ ରାମଚନ୍ଦ୍ର ପୁଚ୍ଛନ୍ତି ଏସନ ।
ଶୁଦ୍ଧମନ ବିବରଣ ଯା' ଦେଲେ ଆପଣ ॥
ଏହିମନ 'ବ୍ରହ୍ମା' ବୋଲି କହିଲେ ଆପଣ ।
ନ ରୁଚଇ ମୋର ମନ ତବ ଏ ବଚନ୍ ॥
ତୁମ୍ଭର ଆମ୍ଭର କିମ୍ବା ଅନ୍ୟ ଦେହୀଙ୍କର ।
ପୂର୍ବଜନ୍ମ ସଂସ୍କାରରୁ ଜାତ ଏ ଶରୀର ॥
ପୂର୍ବ ସଂସ୍କାର ବ୍ରହ୍ମାଙ୍କ ଉତ୍ପତ୍ତି କାରଣ ।
କିମ୍ପାଇ ନ ହେବ ତାହା ବୁଝାନ୍ତୁ ଆପଣ ॥

### ବଶିଷ୍ଠ ଉବାଚ

ପୂର୍ବ କର୍ମ ସମନ୍ୱିତ ଲିଙ୍ଗ ଦେହ ଯାର ।
ବିଦ୍ୟମାନ ଅଛି ପୂର୍ବ ସ୍ମୃତିଟି ତାହାର
ଶରୀର ମମତା ଅଟେ ଜନ୍ମର କାରଣ ।
ଦେହ ମମତା ନ ଥିଲେ ଜନ୍ମିବ କେସନ ?
ପୂର୍ବ ସଂସ୍କାର କରମ ବ୍ରହ୍ମାର ତ ନାହିଁ ।
ତେଣୁ ଜନମ ସମ୍ଭବ ଆଉ ତାର କାହିଁ ?
ନିଜେ ସେ ନିଜର ସ୍ରଷ୍ଟା ତେଣୁ ସଦାସ୍ଥିତ ।
ଅନ୍ୟ କାରଣରେ ନୁହେଁ ସେ ଅବଲମ୍ବିତ ॥
ସ୍ୱୟମ୍ଭୁ ବ୍ରହ୍ମାର ଆତିବାହିକ ଶରୀର ।
ଆଧିଭୌତିକ ଶରୀର ନ ଥାଇ ତାଙ୍କର ॥
କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ତପୀବର ।
ଦେହୀମାନଙ୍କ ଅଛଇ ଦୁଇଟି ଶରୀର ॥
ଆତିବାହିକ ଆବର ଆଧିଭଉତିକ ।
କିନ୍ତୁ ବ୍ରହ୍ମାଙ୍କ କେବଳ ଯା' ଆତିବାହିକ ॥
ଏହାର ଯେ କାରଣ ସବିଶେଷ କରି ।
ବୁଝାଇ କହିବା ମୋତେ ଆହେ ତପଚାରୀ ॥

### ବଶିଷ୍ଠ ଉବାଚ

ସକାରଣ ଜୀବଙ୍କର ଦୁଇଟି ଶରୀର ।
ବ୍ରହ୍ମା ଅକାରଣ ହେତୁ, ଏକ କଳେବର ॥
ବ୍ରହ୍ମା ଅଟନ୍ତି ସକଳ ଭୂତର କାରଣ ।
ନିଜେ ସେହି ବ୍ରହ୍ମା କିନ୍ତୁ କାରଣ ବିହୀନ ॥
କାରଣ ବିହୀନ ଯେଣୁ ଏ ବ୍ରହ୍ମା ଅଟନ୍ତି ।
ଏକଇ ଶରୀର ଧରି ସ୍ୱୟମ୍ଭୁ ବୋଲାନ୍ତି ॥
ଯେଉଁ ଶରୀର ଆଦ୍ୟରୁ ଧରିଛନ୍ତି ସେହି ।
ଆତିବାହିକ ଶରୀର ତାହାକୁ ଯେ କହି ॥
ନିଜର ସ୍ୱରୂପ ସେହି ପାଶୋରି ନାହାନ୍ତି ।
ଆକାଶ ସଦୃଶ ସଦା ଭାସମାନ ଛନ୍ତି ॥
ଯେ' ଯେଉଁ ବୀଜରୁ ଉତପନ୍ନ ହୋଇଥାଏ ।
ସେ ସେହି ସ୍ୱରୂପ ଧରି ଜନମକୁ ପାଏ ॥
ସଂକଳ୍ପ ଶରୀର ବ୍ରହ୍ମାଙ୍କର ରଘୁବୀର ।
କ୍ଷିତ୍ୟାଦି କ୍ରମ ସମ୍ବନ୍ଧହୀନ ସଦାଚିର ॥
ଏହି ଆଦ୍ୟ-ପ୍ରଜାପତି ଆକାଶ ଶରୀର ।
ଏହି ଅଟନ୍ତି କାରଣ ବ୍ରହ୍ମାଙ୍କ ସୃଷ୍ଟିର ॥
ସେ ଚିତ୍ତ * ଶରୀର, ବୋଧ ନିର୍ବାଣ, ପୁରୁଷ ।
ଜୀବ ସୃଷ୍ଟିର ପ୍ରଥମ କାରଣ ବିଶେଷ ॥
ସର୍ବାଦୌ ତାହାଙ୍କଠାରୁ ଅହଂଭାବ ଜାତ ।
ସର୍ବ ଜୀବ ଜଗତକୁ ହୁଏ ସେ ବିସ୍ତୃତ ॥
ସ୍ଥିର ବାୟୁ ମଣ୍ଡଳରେ ସ୍ଥୁଳ ପ୍ରତିସ୍ପନ୍ଦ ।
ଉତ୍ପନ୍ନ ହୋଇ; ଯେସନ ସରଜଇ ଶବ୍ଦ ॥
ତେସନ ସେ ଆଦି-ପ୍ରତିସ୍ପନ୍ଦ ସୃଷ୍ଟି କରେ ।
ସକଳ ଜୀବଜଗତ ତହିଁରୁ ସଞ୍ଚରେ ॥
ବ୍ରହ୍ମା ଏବଂ ବ୍ରହ୍ମ ମଧ୍ୟେ କିଛି ଭେଦ ନାହିଁ ।
ଆକାଶ ଶୂନ୍ୟତା ମଧ୍ୟେ ଭେଦ ଅବା କାହିଁ ?
ଫୁଲ, ସୁଗନ୍ଧ ମଧ୍ୟରେ ଯଥା ନାହିଁ ଭେଦ ।
ତଥା ବ୍ରହ୍ମା, ବ୍ରହ୍ମ ଦୁହେଁ ଅଟନ୍ତି ଅଭେଦ ॥
ସଲିଳ ତାରଲ୍ୟ-ହେତୁ ତରଙ୍ଗ ଉପୁଜେ ।
ଚୈତନ୍ୟତା ଘେନି ଆତ୍ମସତ୍ତା, ବ୍ରହ୍ମାସାଜେ ॥

---

ଚିତ୍ତ * ସଂକଳ୍ପ ।

ଆଦିଅଙ୍ଗ – ଲିଙ୍ଗ ଶରୀର ।
ଆଦି ପ୍ରତିସ୍ପନ୍ଦ – ବ୍ରହ୍ମା ।

ବ୍ରହ୍ମାଙ୍କୁ ନ ବୁଝ ଅନ୍ୟ ବସ୍ତୁ ବୋଲି କରି
ସଦା ସେ ଚୈତନ୍ୟ, ସଦା ନଭ ନାମ ଧରି ।
କ୍ଷିତ୍ୟାଦି ତତ୍ତ୍ୱରୁ ବ୍ରହ୍ମା ଅଟନ୍ତି ରହିତ
ସର୍ବବ୍ୟାପୀ ବୋଲାନ୍ତି ସେ ସର୍ବଦା ସ୍ୱତନ୍ତ୍ର ।
କାରଣ ରହିତ ବ୍ରହ୍ମା, କର୍ମ-ବିବର୍ଜିତ
ଏକଥା ଧ୍ୟାନ ରଖନ୍ତୁ ଆହେ ରଘୁନାଥ ।
କହୁଛନ୍ତି ରାମଚନ୍ଦ୍ର ଆହେ ମହାଶୟ
ଆପଣ କହିଲେ ବ୍ରହ୍ମା ଶରୀର ବିଷୟ ।
କ୍ଷିତ୍ୟାଦି ତତ୍ତ୍ୱରୁ ସେହି ବପୁ ବିରହିତ
କେବଳ ସଙ୍କଳ୍ପ ମାତ୍ର ତାଙ୍କର ପ୍ରତୀତ ।
ସ୍ମୃତିରୂପୀ ସଂସ୍କାର ସେ କାରଣ କିମ୍ପାଇଁ
ନ ହୋଇବ, କହ ମୋତେ ଆହେ ତପୀସାଇଁ ?
ମୋହର ବା ଜୀବମାନଙ୍କର ସ୍ମୃତି ପରି
ବ୍ରହ୍ମାଙ୍କ ସ୍ମୃତି ନ ଥିବ କିମ୍ପା ତପଚାରୀ ?
କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ସୃଷ୍ଟି ସଂସ୍କାର କେବେହେଁ ନାହିଁ ବ୍ରହ୍ମାଙ୍କର ।
ଆଗେ ଆଗେ ଧାଇଁଅଛି ଯେଉଁ କର୍ମଫଳ
ସ୍ମୃତି-ସଂସ୍କାର ଅଛଇ ତାହାର କେବଳ ।
ଯାହା ଦୃଶ୍ୟ ନ ହେଉଛି ସ୍ମୃତି ତାର ନାହିଁ
ସ୍ମୃତି ବିବର୍ଜିତ ସର୍ବ ଯା ଦେଖା ନ ଯାଇ ।
ବ୍ରହ୍ମା ଯେ ଆଦି ପୁରୁଷ ବ୍ରହ୍ମା ଯେ ଅଦ୍ୱୈତ
ବ୍ରହ୍ମ ପୁଣି **ଅଜ, ଏବଂ** ବ୍ରହ୍ମ **'ମଧ୍ୟ' 'ଅନ୍ତ' ।**
ବ୍ରହ୍ମାଙ୍କ ସ୍ମୃତି କାରଣ କାହୁଁ ସମ୍ଭବିବ
ଶୁଦ୍ଧ ବ୍ରହ୍ମ ବୋଧ ବ୍ରହ୍ମା କେବଳ ରାଘବ ?
ଆତ୍ମତତ୍ତ୍ୱ ହିଁ କେବଳ ବ୍ରହ୍ମା ରୂପ ଧରେ
ନିଜେ ନିଜକୁ ବ୍ରହ୍ମ ଯେ ସରଜନା କରେ ।
ତେଣୁକରି ବ୍ରହ୍ମା ନାମ ସ୍ୱୟମ୍ଭୁ ଅଟଇ
ଆପେ ଆପଣାକୁ ଯେଣୁ ଜାତ ସେ କରଇ ।
ଶୁଦ୍ଧବୋଧ ହିଁ ଚୈତନ୍ୟ ଏହା ହିଁ ବୁଝିବ
ପ୍ରତିଶବ୍ଦ ଏକ ସିନା ଅନ୍ୟର ଜାଣିବ ।
ଧ୍ୱନିତ ହେଉଛି ନିଜ ଚିତ୍ତଟି ତହିଁରେ
ଅନ୍ୟ କୌଣସି କାରଣ ନାହିଁଟି ସେଥିରେ ।
ସଦା ନିରାକାର ସଦା ସଂକଳ୍ପ ସ୍ୱରୂପ ।
ଶରୀର ଅଟଇ ତାର ସଦା ନିଃସନ୍ତାପ ।

ପଞ୍ଚଭୂତାତ୍ମକ ସିନା ଏ ମର ଶରୀର
ବ୍ରହ୍ମାଙ୍କ ଶରୀର ପଞ୍ଚଭୂତରୁ ବାହାର ।
**ଅନ୍ତବାହକ** ବୋଲିଣ ସେ ଶରୀର ନାମ
ସୁଚିନ୍ତାରେ ରଖିଛନ୍ତି ମୁନି ଋଷିଗଣ ।
କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ମୁନିଶ୍ୱର
ପ୍ରତ୍ୟେକ ଜୀବଧାରୀର ଦୁଇଟି ଶରୀର ।
**ଆତିବାହିକ** ବୋଲିଣ ପ୍ରଥମକୁ କହି
**ଆଧିଭୌତିକ** ବୋଲି ଯେ ଦ୍ୱିତୀୟ ବୋଲାଇ ।
ଅତିବାହିକ ଶରୀର ଏହି ଏକ ମାତ୍ର
ବ୍ରହ୍ମାଙ୍କ ଅଛଇ ବୋଲି ଆପଣଙ୍କ ମତ ।
ବୁଝାଇ କହିବା ହେଉ ବିଷଦ ଭାବରେ
ଯାହା କି ନିଗୂଢ଼ ତତ୍ତ୍ୱ ନିହିତ ତହିଁରେ ।
କହନ୍ତି ବଶିଷ୍ଠ ଶୁଣ ଦଶରଥ ବାଳ
**'ସକାରଣ' ଜୀବଙ୍କର ଦୁଇଟି ଶରୀର ।**
କାରଣ ରହିତ ଯେଣୁ ବ୍ରହ୍ମାଏ ଅଟନ୍ତି
**'ଅକାରଣ' ଶରୀରଟି ଖାଲି ଧରିଥାନ୍ତି ।**
କେବଳ ଅନ୍ତବାହକ ଶରୀର ସେ ଧରି
ଆଧିଭୌତିକ ଶରୀର ନ ଥାଏ ତାଙ୍କରି ।
ଅନ୍ୟ ଜୀବର କାରଣ ବ୍ରହ୍ମାଏ ଅଟନ୍ତି
ଦୁଇଟି ଶରୀର ତେଣୁ ସେ ପ୍ରାଣୀ ଧରନ୍ତି ।
ବ୍ରହ୍ମାଙ୍କ ଉତ୍ପତ୍ତି ଯେଣୁ କାରଣ ବିହୀନ ।
ସ୍ୱୟମ୍ଭୁ ବୋଲାନ୍ତି ନିଜେ ନିଜକୁ ସର୍ଜିଣ ।
ଆଦ୍ୟରେ ଯେଉଁ ସ୍ପନ୍ଦନ ଧାରଣ ସେ କଲେ ।
ଅନ୍ତବାହକ ଶରୀର ତାହାକୁ କହିଲେ ।
ନିଜ ସ୍ୱରୂପ କେଭେଁ ସେ ଭୁଲି ନ ପାରିଲେ
ସଦା ସ୍ୱ ବାସ୍ତବ ରୂପେ ବିଦ୍ୟମାନ ହେଲେ ।
ତେଣୁ ସେ ଅନ୍ତବାହକ ବୋଲି ବୋଲାଇଲେ
ଦୃଶ୍ୟକୁ ସ୍ୱୀୟ ସଂକଳ୍ପ ବୋଲିଣ ବୁଝିଲେ ।
ଯେ ଜୀବକୁ ଏହି ଦୃଶ୍ୟ ସତ୍ୟ ବୋଧ ହୁଏ
ଆଧିଭୌତିକ ଶରୀର ତାହାର ହିଁ ରହେ ।
ହିମତ୍ତ୍ୱ ବୃଦ୍ଧିରେ ଜଳ ବରଫ ପାଲଟେ
ଦୃଶ୍ୟ ଦୃଢ଼ତାରୁ ଆଧିଭଉତିକ ଘଟେ ।
ଏ ଜଗତ ଯେତେଦୂର ପଡ଼େ ଦୃଷ୍ଟି ପଥେ ।
ଆକାଶ ବୋଲି ତାହାକୁ ବୁଝ ହୃଦଗତେ ।

ଦୃଶ୍ୟ – ଜଗତ ।

ଆତିବାହିକ ଓ ଅନ୍ତବାହକ ଗୋଟିଏ ଅନ୍ୟଟିର ପ୍ରତିଶବ୍ଦ ମାତ୍ର ।

କ୍ଷିତ୍ୟାଦିରେ ଗଢ଼ା ନୁହେଁ ଏ ମର ଜଗତ ।
ଆଧିଭୌତିକ ଦିଶଇ, ଭ୍ରାନ୍ତିର ବଶତ ।
ସ୍ୱପନ ରାଇଜ ଯଥା ବାସ୍ତବତା ହୀନ ।
ମନ ଅଟ୍ଟାଳିକା ଯଥା ଅଟେ ଭୀତ୍ତି ଶୂନ୍ୟ ।
ଅଜ୍ଞତା ବଶତ ତଥା ଜାଗ୍ରତ ଜଗତ ।
ଆଧିଭୌତିକ ଆକାର ରୂପେ ପ୍ରତିଭାତ ।
ଅସତ ଯଥା ସ୍ୱପ୍ନରେ ସୁବର୍ଣ୍ଣ ପର୍ବତ
ଅଜ୍ଞତାରୁ ଭାସମାନ ତଥା ଏ ଜଗତ ।
ଏ ସାରା ଜଗତ ରାମ ସଙ୍କଳପ ମାତ୍ର
ହୋଇନାହିଁ ଜାଣ କାହା ହସ୍ତରେ ନିର୍ମିତ ।
ମନରାଜ୍ୟ-ଗିରି ଯଥା ନଭପରି ଶୂନ୍ୟ
ତଥା ଆକାଶ ସଦୃଶ ଏ ମରତ ଧାମ ।
ବାସ୍ତବରେ କେହି ଯାକୁ ଗଢ଼ିନାହିଁ ହାତେ
ସଙ୍କଳ୍ପ ପୁରୁଷ ମନୁ ଗଢ଼ା ଏ ସମସ୍ତ
ଜଳବାୟୁ, ତାପ, ଘେନି ବୀଜ ଅଙ୍କୁରଇ ।
ତେସନ ସକଳ ଦୃଶ୍ୟ ମନରୁ ଜନ୍ମଇଁ ।
ସେହି ମନ ବ୍ରହ୍ମା ଅଟେ, ସେହି ବ୍ରହ୍ମାମନ
ସେ ସଂକଳ୍ପୁ ଜାତ ଭବ ଆକାଶ ସମାନ ।
କେହି ତ ନୁହନ୍ତି ଆଧିଭୌତିକ ହେ ରାମ ।
ଆଧିଭୌତିକତା ମାତ୍ର ଏ ମନର ଭ୍ରମ ।
ବାଳକ ଯେସନ ନିଜ ଛାଇ ଦେଖି କରି
ଚମକି ପଡି କାନ୍ଦଇ ଭୂତ ମନେ କରି ।
ତଥା ଅଜ୍ଞାନୀର ଆଧିଭୌତିକତା ଭ୍ରମ
ସତ୍ୟତାର ନାହିଁ ତହିଁ ତିଳେମାତ୍ର ସ୍ଥାନ ।
ଯାହାସବୁ ଭାସମାନ-ପ୍ରତୀତ ହୁଅଇ ।
ସେ ସବୁ ପଦାର୍ଥ ଅନ୍ତବାହକ ବୋଲାଇ ।
କିନ୍ତୁ ଅଜ୍ଞାନୀ ଜନର ଅନ୍ତବାହକତା
ଦୂରହୋଇ ଜନ୍ମେ ତାର ଆଧିଭୌତିକତା ।
ଅନ୍ତବାହକ ଗୁଣଟି ସୁଜ୍ଞାନୀ ଜନର
ବୃଦ୍ଧି ପରାପତ ହୋଇ ଶାନ୍ତି ବଢ଼େ ତାର ।
ପ୍ରମାଦ ବୋଲି ଯେ କିସ ସେହୁ ନ ଜାଣଇ ।
ଆତ୍ମାରେ ସ୍ଥିତ ରହିଣ ଶାନ୍ତି ଭୋଗୁଥାଇ ।
ଅନ୍ତବାହକ ରୂପେ ସେ ସଦା ବିରଚଇ
ସାରା ଜଗତ ଆକାଶ ସମ ସେ ବୁଝଇ ।
ସଙ୍କଳ୍ପ ଜାତ, ଗନ୍ଧର୍ବ-ପୁର, ସ୍ୱପ୍ନପୁର
ସଦୃଶ ଇହ ଜଗତ ଅଟଇ ଅସାର ।

ଶିଳ୍ପୀ ମନେ କଳ୍ପୁଥାଏ ଛବି ଏତିକିଟି
ସ୍ତମ୍ଭରେ ନିହିତ ଛନ୍ତି, ଯାହା ସେ ଚିନ୍ତିଛି ।
ସ୍ତମ୍ଭ ଯେଉଁପରି ଥିଲା ରହିଛି ସେପରି
କେବଳ ଛବିମାନେ ତା ମନେଛନ୍ତି ଭରି ।
ତାଦୃଶ ଏ ସାରା ବିଶ୍ୱ ମନମଧ୍ୟେ ସ୍ଥିତ
ରୂପରେଖ କିଛିନାହିଁ, ନାହିଁ ତା ଅସ୍ତିତ୍ୱ ।
ଜଳ ଆନ୍ଦୋଳନେ ଯଥା ତରଙ୍ଗ ଘଟଇ
ବ୍ରହ୍ମାର ସଂକଳ୍ପେ ତଥା ବିଶ୍ୱ ପ୍ରକାଶଇ ।
ମନରାଜ୍ୟେ ନଗରର ସର୍ଜନା ଯେସନ
ଅଳୀକ ବସ୍ତୁ ଗନ୍ଧର୍ବ ନଗର ସମାନ ।
ତାଦୃଶ ବ୍ରହ୍ମାମନରୁ ଜଗତ ଉତ୍ପତ୍ତି
ହୋଇଛି, ବୁଝିବା ହେଉ ଆହେ ରଘୁପତି ।
ଯେସନ ସଲିଳ ଧରେ ତରଙ୍ଗର ରୂପ ।
ତରଙ୍ଗ ତେସନ ଧରେ ସଲିଳ ସ୍ୱରୂପ ।
ତାଦୃଶ ମାନସ ଧରେ ଦୃଶ୍ୟର ସ୍ୱରୂପ
ଦୃଶ୍ୟ ସେହିପରି ଧରିଥାଏ ମନ ରୂପ ।
ପଦ୍ମ ମଧ୍ୟେ ଭାବି ପଦ୍ମ ବିଜ ଥାଏ ଯଥା
ମାନସ ମଧ୍ୟରେ ଦୃଶ୍ୟ ବିରାଜଇ ତଥା ।
ମନର ସଭାବ ଥିବାଯାଏ ଦୃଶ୍ୟ ଅଛି ।

**ଦୃଶ୍ୟର ବୀଜ ଏ ମନ ହେଜ ରଘୁବଂଶି ।**

କମଳ ସଭାବ ଯଥା ତା ବୀଜେ ନିହିତ
ଜଗତ ବୀଜ ତେସନ ମନ ମଧ୍ୟେ ସ୍ଥିତ ।
ସପନ ଦେଖିଲା ବେଳେ ତୁମର ମାନସ
ଚିତ୍ତକୁ ଚେତାଇ ଦିଏ ସେ କଳ୍ପିତ ଦୃଶ୍ୟ ।
ଜଗତର ସ୍ଥିତି ରାମ ଜାଣିବ ତେସନ
କଳ୍ପନା ବିନା ଜଗତ ନୁହେଁ କିଛି ଆନ ।
ଏକଇ ବସ୍ତୁ ଅଟନ୍ତି ମନ, ଦୃଶ୍ୟ, ଦ୍ରଷ୍ଟା
ଭିନ୍ନ ବସ୍ତୁ ନୁହନ୍ତି ସେ ହେଜକରି ଚେଷ୍ଟା ।
ତୁମରି ଅନୁଭବର କଥା ମୁଁ କହୁଛି
ନିତ୍ୟ ଅନୁଭବ ଯାହା କର ରଘୁବଂଶି ।
ଏକମାତ୍ର ମନ ଅଟେ ଜଗତ କାରଣ
ମନ ବିନା ଅନ୍ୟ କିଛି ନାହିଁ ତହିଁ ଜାଣ ।
ସେହି ମନ ଯେତେବେଳେ ହେବ ଉପଶମ ।
ଉଭେଇ ଯିବ କୁଆଡ଼େ ସବୁ ଦୃଶ୍ୟଭ୍ରମ ।
ଯେଯାଏ ନୋହିଛି ଏହି ମନ ଉପଶମ

ସେଯାଏ ଜାରି ରହିଛି ଦୃଶ୍ୟର ଯେ ଭ୍ରମ ।
ଦୃଶ୍ୟ ନିବୃତ୍ତି ନୋହିବା ଯାଏଟି ଜାଣିବ ।
ଶୁଦ୍ଧବୋଧ ସେପର୍ଯ୍ୟନ୍ତ କେଉଁ ନ ଜନ୍ମିବ ।
ଶୁଦ୍ଧବୋଧ ନ ହୋଇବା ଯାଏ ଆତ୍ମାନନ୍ଦ
ସମ୍ଭବି ପାରିବ ନାହିଁ ରଘୁକୁଳ ଚନ୍ଦ ।
**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ବନ୍ଧହେତୁ ବର୍ଣ୍ଣନେ ନାମ ତୃତୀୟ ସର୍ଗଃ ।**



## ଚତୁର୍ଥ ସର୍ଗଃ
## ବୋଧ ହେତୁ

କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ବଶିଷ୍ଠ ଶ୍ରୀରାମଙ୍କର କଥୋପକଥନ ।
ଶୁଣି ସେହି ଜ୍ଞାନଗର୍ଭ ଉତ୍କୃଷ୍ଟ ବଚନ
ଅବାକ ହୋଇ ବସନ୍ତି ସର୍ବ ଶ୍ରୋତାଗଣ ।
ଚିତ୍ର ପ୍ରତିମା ସଦୃଶ ସରବେ ନିଶ୍ଚଳ
ନୀରବ ନିଶ୍ଚଳ କଟି ଘାଗୁଡ଼ିର ମାଳ ।
ନ ଶୁଭଇ ସରଜୁର କଳ କଳ ତାନ
ବିଦାୟ ଘେନି ଗଲେ କି ଦେବତା ପବନ ।
ତରୁଡ଼ାଳେ ବିହଙ୍ଗମ ନୀରବ ନିଶ୍ଚଳ
ନିଶ୍ଚଳ ରହିଲେ ଶୁକ ପିଞ୍ଜରା ମଧ୍ୟର ।
ପ୍ରଗଲ୍‌ଭା ରମଣୀଗଣ ମୂକ ପାଲଟିଲେ ।
ନିକଟସ୍ଥ ବନ୍ୟପଶୁ ନୀରବ ରହିଲେ ।
ବଶିଷ୍ଠ ବଚନ ଶୁଣି ଦେବତା ପବନ ।
ସଭା ମଧ୍ୟେ ଧୀରେ ଧୀରେ କଲେ ବିଚରଣ ।
ଜଗତ ଭ୍ରମଣ ତେଜି ପବନ ଦେବତା
ଗିରି ପାଶେ ଠାବ କଲେ ତେଜି ସର୍ବଚିନ୍ତା ।
ଶାନ୍ତିଦେବୀ ଶୀତଳତା ଲଭିଲେ ଅନ୍ତରେ
ପରମ ଶାନ୍ତି ସକଳେ ତେଣୁ ଲାଭ କଲେ ।
ବଶିଷ୍ଠ ମୁନିଙ୍କ ଚିତ୍ତାକର୍ଷକ ବଚନ
ଏକାଗ୍ର ଚିତ୍ତରେ ସର୍ବେ କରନ୍ତି ଶ୍ରବଣ ।
ପ୍ରତ୍ୟେକ ବସ୍ତୁର ଛାୟା ହେଲା ଦୀର୍ଘତର
ବଶିଷ୍ଠ ବାକ୍ୟ ଶ୍ରବଣେ ହୋଇଲେ ତତ୍ପର ।
ଏ ସମୟେ ଦ୍ୱାରପାଳ ହୋଇଣ ପ୍ରବେଶ
ନମ୍ର ସ୍ୱରେ ନିବେଦଇ ଏସନ ସନ୍ଦେଶ ।
"ଗଡିଯାଉଅଛି ଦେବ ସ୍ନାନ ପୂଜାବେଳ
ବିଜେ କରିବା ହୁଅନ୍ତୁ ଦେବ ସ୍ନାନାଗାର" ।
ଶୁଣିଣ ବଶିଷ୍ଠ ଦ୍ୱାରପାଳର ବଚନ
ଉପସଂହାରନ୍ତି ସ୍ୱୀୟ ବିଷୟ ବର୍ଣ୍ଣନ ।
ଏତିକିରେ ରହୁ ଦେବ ଆଜିର ବକ୍ତବ୍ୟ
ଅବଶିଷ୍ଟ କାଲି ପୁଣି କରିବି ଆରମ୍ଭ ।
ଏହା କହି ଗୁରୁଦେବ ହୋଇଲେ ମଉନ
"ଆଚ୍ଛା" କହି ରାଜା କଲେ ସ୍ୱୀକୃତି ପ୍ରଦାନ ।
ପୁଷ୍ପ, ପାଦାର୍ଘ୍ୟ, ଦକ୍ଷିଣା କରିଣ ଅର୍ପଣ
ରାଜନ ପୂଜା କରନ୍ତି ଶ୍ରୀଗୁରୁ ଚରଣ ।
ବ୍ରହ୍ମର୍ଷିମାନଙ୍କୁ ଯଥାବିଧି ପୂଜା ଦେଲେ
ଦେବ, ଦ୍ୱିଜ, ଋଷି, ମୁନି ମାନଙ୍କୁ ପୂଜିଲେ ।
ସଭା ମଉଳିଲା ସର୍ବେ କରିବେ ପ୍ରସ୍ଥାନ
ପରସ୍ପର ପରସ୍ପରେ କଲେ ଆଲିଙ୍ଗନ ।
ଆକାଶବାସୀ ଗଗନ ମାରଗେ ଗମନ୍ତି
ଧରାତଳବାସୀ ସ୍ୱୀୟ ଆଶ୍ରମେ ଚଳନ୍ତି ।
ପାତାଳବାସୀ ପାତାଳ ପୁରକୁ ଚଳିଲେ
ଦିନ, ରାତି ଚିନ୍ତା ତେଜି ସୂର୍ଯ୍ୟ ସ୍ଥିର ହେଲେ ।
ମନ୍ଦ ମନ୍ଦ ଗତି ଧରି ବହେ ଗନ୍ଧ ବହ
କୃତାର୍ଥ ହେଲା କି ଦେଖି ଏହି ଅଭିନୟ ।
ଅସ୍ତାଚଳେ ପ୍ରବେଶିଣ ଦେବ ଦିନମଣି
ବିଶ୍ରାମ କକ୍ଷେ ନିଶ୍ଚିନ୍ତ ହେଲେ ତତକ୍ଷଣି ।
ସମାଧି ଲଭନ୍ତି ସର୍ବ ସନ୍ଥ, ସିଦ୍ଧଗଣ
ବିଶ୍ରାମ ଲଭିଲେ ପୁଣି ଜୀବଧାରୀଗଣ ।
ତାରକା ଖଚିତ ହେଲା ନିଳ ନଭପଟ
ଜୁଲୁଜୁଲୁ ଚହୁଁଥାନ୍ତି ଜ୍ୟୋତିଷ୍କ ଜଗତ ।
ଅମୃତ କିରଣ ବୃଷ୍ଟିକଲେ ଚନ୍ଦ୍ର ଦେବ
ଲୁଚିଗଲା କେଣେ ତମ କାଳିମା ପ୍ରଭାବ ।
ସୁଶୀତଳ ଚନ୍ଦ୍ରକାନ୍ତି ପଡ଼େ ରାଜଦ୍ୱାର
ବଶିଷ୍ଠ ବଚନେ ହେଲା ତା' ଶୀତଳ ତର ।
ଯା' କିଛି ଉଷ୍ଣତା ଥିଲା ଚନ୍ଦ୍ରମା କିରଣେ
ରାଜଦ୍ୱାର ହରିନେଲା ତାକୁ ତତକ୍ଷଣେ ।
ଶ୍ରୋତାମାନେ ବଶିଷ୍ଠଙ୍କ ବଚନକୁ ଗୁଣି
ରାତ୍ରି କଟିଗଲା ଉଦେ ହେଲେ ଦିନମଣି ।
ସୂର୍ଯ୍ୟକିରଣରେ ଅନ୍ଧକାର ହେଲା ଶେଷ
ସନ୍ଥ ବଚନେ ଅଜ୍ଞାନୀ ତମ ଯଥା ନାଶ ।
ସକଳ ଜୀବ ଜଗତ ନିଦ୍ରାତ୍ୟାଗ କରି
ନିଜ ନିଜ କର୍ମେରତ ହେଲେ ପୂର୍ବ ପରି ।

ଖେଚର, ଭୂଚର, ପୁଣି ପାତାଳ ବାସୀଏ
ନିତ୍ୟକର୍ମ ସାରି ସର୍ବେ ବିଜେ ସଭାଠାଏ ।
ପରସ୍ପରେ ମାନ୍ୟ ଦେଇ ରାମଙ୍କ ସହିତ
ବଶିଷ୍ଠଙ୍କ ପୂର୍ବ କଥା କଲେ ଉତ୍‌ଥାପିତ ॥
କିପରି ସେ ମନରୂପ, ଯାହା ଘେନିକରି
ବଢ଼ିଚାଲିଛି ଏ ଭବଦୁଃଖର ମଞ୍ଜରୀ ?
ବଶିଷ୍ଠ କହିଲେ ରାମ ! ଏ ମନର ରୂପ
କେବେ ଦେଖି ହେବନାହିଁ ତାହାର ସ୍ୱରୂପ ।
ନାମ ମାତ୍ର ଅଟେ ରାମ କଳ୍ପନା ପଦାର୍ଥ
ବାସ୍ତବରେ ରୂପ ତାର ନାହିଁ କିଛି ମାତ୍ର ।
ଆକାଶ ସଦୃଶ ଶୂନ୍ୟ, ମହାଶୂନ୍ୟ ମନ
ସେ ମନ ସଦା ଘାଣ୍ଟୁଛି ଏ ସାରା ଭୁବନ ।
କୌଣସି ପ୍ରକାରେ କିଛି ମାତ୍ର ହିଁ ପ୍ରଭାବ ।
ଆତ୍ମା ଉପରେ ପକାଇ ନ ପାରେ ରାଘବ ।
ତପନରେ ତେଜ, ତଥା ବାୟୁରେ ସ୍ପନ୍ଦନ ।
ଜଳରେ ତରଙ୍ଗ, ପୁଣି ସ୍ୱର୍ଣ୍ଣରେ ଭୂଷଣ
ମରୀଚିକାରେ ସଲିଳ, ନଭେ ଦୁଇ ଚନ୍ଦ୍ର
ବାସ୍ତବତା କିଛି ନାହିଁ ଖାଲି ମନ ଦ୍ୱନ୍ଦ୍ୱ ।
ନଭ ପରି ସର୍ବ ଘଟେ ମନ ବିଦ୍ୟମାନ
କିଛି ଉପୁଜାଇ ନ ପାରେ ତ ଏହି ମନ ।
କି ଆଶ୍ଚର୍ଯ୍ୟ କଥା ଏହା କୌଶଲ୍ୟା ନନ୍ଦନ
ଏ ସାରା ଜଗତ ମନଦ୍ୱାରା ଭାସମାନ ।
ଅସତ ରୂପୀ ଜଗତ ଯହିଁ ଭାସମାନ
'ମନ' ନାମକରଣ ତା' ହୋଇଛି ଶ୍ରୀରାମ ।
ବିଶୁଦ୍ଧ ଏ ଆତ୍ମା, ପୁଣି ଅଦ୍ୱୈତ ଅଟଇ
ଦ୍ୱୈତଭାବ ଯହିଁ ଭାସେ 'ମନ' ସେ ବୋଲାଇ ।
ସଂକଳ୍ପ ବିକଳ୍ପ ଯାହା ହୁଏ ଭାସମାନ
ଆଉ କିଛି ନୁହେଁ ତାହା, ଏହି ମନ ଜାଣ ।
ଯହିଁ ସଂକଳ୍ପ ଅଛଇ ତହିଁ ମନ ରହି
ତରଙ୍ଗ ଥିବା ସ୍ଥାନରେ ଜଳ ଯଥା ଥାଇ ।
ସ୍ମୃତି, ତମ, ମଳିନତା, ଅବିଦ୍ୟା ଏମାନ
ଜ୍ଞାନୀଙ୍କ ମତେ ଏସବୁ ମନ ବୋଲି ଜାଣ ।
ଜଗତର ଯେତେ ଜ୍ୱାଳା ମନ କରେ ଜାତ
ସର୍ବ ଦୃଶ୍ୟ ମନ ରୂପ ଜାଣ ରଘୁନାଥ ।
ମନର ସର୍ବ ରଚନା ବାସ୍ତବତା ହୀନ
ମନ ଶୂନ୍ୟ, ତେଣୁ ଶୂନ୍ୟ ତା' ରଚନାମାନ ।

ଆହେ ରାମ ମନ ରୂପୀ ଦେହର ଯେ ନାମ ।
ଅନ୍ତବାହକ ଶରୀର ତାହାକୁ ଜାଣିମ ।
ଅନ୍ତରେ ବାହାରେ ଯାହା ବସ୍ତୁ ଆକାରରେ
ପ୍ରକାଶ ପାଏ ତା ମନ, ଜାଣ ରଘୁବୀରେ ।
ସଂକଳ୍ପ ସ୍ୱରୂପ ଛନ୍ତି ଯେତେ ଜୀବଧାରୀ
ଆଦି ବପୁ ଏହି ମନ ଅଟଇ ସବୁରି ॥
ସଂକଳ୍ପଟି ଯେତେବେଳେ ହୁଏ ଦୃଢ଼ୀଭୂତ ।
ଆଧିଭୌତିକ ଶରୀର ତେତେବେଳେ ଜାତ ।
ଆଧିଭୌତିକ ଶରୀର ହୁଅନ୍ତେ ଜନମ
ଅନ୍ତବାହକ ଶରୀର ଲଭଇ ବିଲୀନ ।
ଆହେ ରାମ ଏ ଜଗତ ସଂକଳ୍ପ ସ୍ୱରୂପ
ସେ ସଂକଳ୍ପ ଭ୍ରମବଶ ଧରେ ପିଣ୍ଡ ରୂପ ।
ସ୍ୱପ୍ନଶରୀର ଆକାର ଆକାଶ ସଦୃଶ
କ୍ଷତ୍ୟାଦି ତତ୍ତ୍ୱ ତହିଁରେ ରହନ୍ତି ଅଦୃଶ୍ୟ ।
କିନ୍ତୁ ଅଜ୍ଞାନରୁ ଆଧିଭୌତିକ ଶରୀର
ପ୍ରମାଣିତ କରୁଅଛି ଅସ୍ତିତ୍ୱ ମନର ।
ତେଣୁ ଏ ଜଗତ ଖାଲି ମନର ବିକାର ।
ମନ ଆସ୍ତି, ନାସ୍ତି ଘେନି ସ୍ଥିତି ଜଗତର
ଆହେ ରାମ ଯହିଁ ମନ ତହିଁ ଅଛି ଦୃଶ୍ୟ
ଯହିଁ ଦୃଶ୍ୟ ତହିଁ ମନ ନିଶ୍ଚିତ ଅବଶ୍ୟ ॥
ମନର ବିନାଶ ହେଲେ ଦୃଶ୍ୟଯାଏ ନାଶ
ମନ, ଦୃଶ୍ୟ ଦୁହେଁ ଜାଣ ଅଭେଦ୍ୟ ଅବଶ୍ୟ
ଶୁଦ୍ଧବୋଧ ମାତ୍ର ଯେଉଁ ଦୃଶ୍ୟ ବିଦ୍ୟମାନ
ତାହା ହିଁ ମନ ଅଟଇ ହେ ରଘୁନନ୍ଦନ ।
ଯେ ପର୍ଯ୍ୟନ୍ତ ଦୃଶ୍ୟ ହେଉଅଛି ଭାସମାନ
ସେ ପର୍ଯ୍ୟନ୍ତ ଅସମ୍ଭବ ମୁକତିଟି ଜାଣ ।
ଯେତେବେଳେ ଦୃଶ୍ୟଭ୍ରମ ହୋଇଯାଏ ଅସ୍ତ
ସେତେବେଳେ ଯାଇ ଶୁଦ୍ଧବୋଧ ପରାପତ ।
**ଦ୍ରଷ୍ଟା, ଦରଶନ, ଦୃଶ୍ୟ, ଏ ତ୍ରିପୁଟୀ ମନ**
ସଦା ସର୍ବଦା ଏମାନେ ହୁଅନ୍ତି ଭାସମାନ ।
ଯଥା ସ୍ୱପନେ ତ୍ରିପୁଟୀ ହୁଏ ଭାସମାନ ।
ଜାଗରଣେ ସେ ତ୍ରିପୁଟୀ ହୁଏ ଅନ୍ତର୍ଦ୍ଧାନ ।
ସ୍ୱୟଂ ସ୍ୱପ୍ନ ଦରଶକ ଭାସମାନ ହୋଇ
ଯଥା ପୂର୍ବ ତଥା ପର ରହିଥାଏ ସେହି ।
ଆତ୍ମସତ୍ତାରେ ଜାଗ୍ରତ ଯେ ବ୍ୟକ୍ତି ଅଟଇ
ନିଜକୁ ଅଦ୍ୱୈତ ବୋଲି ମଣେ ରଘୁସାଇଁ ।

ଶୁଦ୍ଧବୋଧ ପରାପତ ନ ହେବା ପର୍ଯ୍ୟନ୍ତ
ଏ ସକଳ ଦୃଶ୍ୟ ଭ୍ରମ ନୁହେଁ ନିର୍ବାପିତ ।
ଦେବତା ହେଲେ ହେଁ ବ୍ରହ୍ମା ଏ ଦଶା ତାହାର
ବାହାର ଭିତରେ ସୃଷ୍ଟି ଦେଖି ହରବର ।
ଏ ସୃଷ୍ଟି ସତ୍ୟ ମଣିଣ ରାଗ ଦ୍ୱେଷ ଉଦେ
କିଛି ଜାଣି ନ ପାରି ସେ ଦହିହୁଏ ହୃଦେ ।
ଯେବେ ତାର ମନ ହୁଏ ଆତ୍ମପଦପାଇଁ
ତେବେ ତାର ଦୃଶ୍ୟ ଭ୍ରମ ନିର୍ବାପିତ ହୋଇ ।
ବାୟୁର ସ୍ପନ୍ଦନ ବନ୍ଦ ହୋଇଗଲା କ୍ଷଣି ।
ବୃକ୍ଷର ପତ୍ର ହଲିବା କିଏ ଦେଲା ପୁଣି ?
ମନରୂପୀ ଦୃଶ୍ୟ ତେଣୁ ବନ୍ଧନ କାରଣ
ମନେ ରଖିଥିବ ଆହେ ଦଶରଥ ନାନ ।
କହନ୍ତି ଶ୍ରୀରାମଚନ୍ଦ୍ର ଆହେ ଗୁରୁଦେବ
ଦୃଶ୍ୟ-ବିସୂଚିକା ରୋଗ ଘାରେ ସୃଷ୍ଟି ସର୍ବ ।
ଏଥିର ନିବୃତ୍ତି ମାଗ ଯା' କିଛି ଅଛଇ
କହିବାକ ଦେବ ଦୟା ପରବଶ ହୋଇ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁଶିଷ୍ୟ
ସଂସାର ପିଶାଚ ଯାଂକୁ କରିଅଛି ଗ୍ରାସ ।
କିପରି ତହିଁରୁ ଲଭିବା ଯେ ପରିତ୍ରାଣ ।
ବିଚାର କରି ଜଗତ ସ୍ୱରୂପକୁ ଜାଣ ।
ତେବେଯାଇ ଆତ୍ମାପଦ କିସ ତା ବୁଝିବ
ତେବେ ଯାଇ ସର୍ବ ଆତ୍ମା ତୁମେ ବୋଲାଇବ ।
ହେ ରାମ ତୁମକୁ ଗ୍ରାସିଅଛି ଦୃଶ୍ୟଭ୍ରମ
ଉତ୍ତର ଗ୍ରନ୍ଥେ ତାହା ମୁଁ କରିବି ମୋଚନ ।
ଜାଣ, କେବଳ ମନରୁ ସେହି ଦୃଶ୍ୟ ଜାତ
ମନ ମଧ୍ୟେ ହିଁ କେବଳ ତା ସ୍ୱଭାବସ୍ଥିତ ।
କମଳ ବୀଜରୁ ଯଥା କମଳ ଜନମ
ସ୍ମୃତି ହିଁ ଅଟଇ ତଥା ସଂସାର କାରଣ ।
ସେ ସ୍ମୃତିର ଅନୁଭବ ଆକାଶରୁ ଜାଣ
ଶୂନ୍ୟରୁ ଶୂନ୍ୟ ସମ୍ଭବ ଏହାହିଁ କାରଣ ।
ପଦାର୍ଥକୁ ଦେଖି ସ୍ମୃତି ମନେ ଉଦେ ହୋଇ
ତାର ଅନୁଭବ ପ୍ରଥମରୁ ହୋଇଥାଇ ।
ଯା' କିଛି ଜଗତ ବୋଲି ଦେଖୁଛ ନୟନେ ।
ସଂକଳ୍ପ ସ୍ୱରୂପ ମାତ୍ର ଅଟନ୍ତି ସେମାନେ ।
କୌଣସି ପଦାର୍ଥ ସତ୍ୟ ନୁହେଁ ଏହା ଧ୍ରୁବ
ଅସତ, ଅନିତ୍ୟ, ତାହା ଜାଣିବ ରାଘବ ।

ଯେ ବସ୍ତୁ ଅସତ୍ୟ, ତାର ସ୍ଥିରତା ତ ନାହିଁ
ଯେ ସତ୍ ଅଟଇ ତାର ଅଭାବ ନଥାଇ ।
ଯା' କିଛି ସଂସାର ବୋଲି ହୁଅଇ ପ୍ରତୀତ
ସେସବୁ ଅସତ୍ୟ, ଜାଣ ଆହେ ରଘୁନାଥ ।
ମନ ଚିନ୍ତନରୁ ଜନ୍ମ ଅଟନ୍ତି ସେମାନ
ତାଙ୍କର ସ୍ଥାୟୀତ୍ୱ କ୍ଷଣକାଳ, ବୋଲି ଜାଣ ।
ବିକାର ରହିତ ହେଲେ ଜଗତର ଭ୍ରମ
ଦୂର ହୋଇଯାଏ ବୋଲି ଜାଣ ହେ ଶ୍ରୀରାମ ।
ପୃଥ୍ୱୀ, ପର୍ବତ ଇତ୍ୟାଦି ସକଳ ଅସତ୍ୟ
ନ ମଣିଲେ, କେଭେଁ ନୋହି ପାରିବ ମୁକତ ।
ଦୃଶ୍ୟ ଭ୍ରମ ଦୂର ହେଲେ, ମୁକ୍ତହୁଏ ଜୀବ
ଦୃଶ୍ୟଭ୍ରମ ବିନା କାହୁଁ ମୁକ୍ତିଟି ସମ୍ଭବ ?
ବହୁ ସଂଖ୍ୟାରେ ଦେବତା ବ୍ରହ୍ମର୍ଷି ରାଜର୍ଷି
ମୁକତି ଲଭିଅଛନ୍ତି ଆହେ ରଘୁବଂଶି ।
ତେଣୁ ମୁଁ କହୁଅଛି ଶୁଣ ଆହେ ରଘୁନାଥ
ଅସତ୍ୟ-ମନ ସଂକଳ୍ପେ ଏ ଜଗତ ସ୍ଥିତ ।
ଧୀରସ୍ଥିର ଚିତ୍ତେ ପଞ୍ଚମନ ଏକ କର
'ଅହଂ' 'ତ୍ୱଂ' ଏ ଭେଦଭାବ ମନୁକର ଦୂର ।
ତେବେ ମାୟା ନ ଗ୍ରାସିବ ତୁମର ଅନ୍ତର ।
ଚିଦାକାଶୁ ସଙ୍କଳପ-ମଳ ହେବ ଦୂର ।
ଅନାୟାସେ ବଢ଼ି ଯିବ ତୁମ ମନବଳ
ଚିତ୍ତମଳ ଗଲେ ହେବ ଆତ୍ମ ସାକ୍ଷାତକାର ।
ଦୃଶ୍ୟଭ୍ରମ ମିଥ୍ୟାଅଟେ ମାୟାପୁରି ସମ
ଗନ୍ଧର୍ବ ନଗର ଚିତ୍ତ ଆକର୍ଷେ ତେସନ ।
ସ୍ୱଚ୍ଛ ଦରପଣେ ଯଥା ପର୍ବତର ଛାଇ
ତଥା ଦୃଶ୍ୟଛାୟାଚିତ୍ତ ଦରପଣେ ହୋଇ ।
ପର୍ବତ ଛାୟା ଦର୍ପଣେ ନଭପରି ଶୂନ୍ୟ
ପର୍ବତ ସମ୍ବନ୍ଧ ତହିଁ କିଛି ନାହିଁ ଜାଣ ।
ସଭାବ ଶୂନ୍ୟ ଅଟନ୍ତି ଆତ୍ମା ଓ ଜଗତ
ଜଗତ ସିନା ଅଳୀକ, ଆତ୍ମା କିନ୍ତୁ ସତ ।
ବାଳକ ମନରେ ଛାୟାଭୂତ ହେଲାପରି
ଅଜ୍ଞାନୀକୁ ଏ ଜଗତ ବାସ୍ତବ ସେପରି ।
'ମନ' ବା 'ଜଗତ' କିଛି କରୁତ ନାହାନ୍ତି
ଉଭୟେ ଅସତ୍ୟ, ସତ୍ୟପରି ଜଣାଯାନ୍ତି ।
ଦ୍ୱିତୀୟ ଚନ୍ଦ୍ରମା ଯଥା ନଭେ ଶୋଭାପାଏ
ଆତ୍ମାରେ ଜଗତ ତଥା ଭାସମାନ ହୁଏ ।

ଶୂନ୍ୟତାରେ ପରିପୂର୍ଣ୍ଣ ଆକାଶ ଯେସନ ।
ମହୋଦଧି ଅଟେ ଯଥା ଜଳ ପରିପୂର୍ଣ୍ଣ,
ବ୍ରହ୍ମସତ୍ତା ନିଜେ ନିଜ ମଧ୍ୟ ଅବସ୍ଥିତ,
ଭରପୁର ଥିବା କଥା ସ୍ୱତଃ ପ୍ରମାଣିତ ।
ବ୍ରହ୍ମମଧ୍ୟେ ଜଗତର ସତ୍ତା ସୁଧା ନାହିଁ
ସତ୍ୟ, ମିଥ୍ୟା ମଧ୍ୟେ କାହୁଁ ସଭାବ ଆସଇ ?
ଏହା ଶୁଣି ରାମଚନ୍ଦ୍ର କହନ୍ତି ହେ ମୁନେ
ତୁମ ବାଣୀ ଶୁଣି, ଆସେ ଏମନ୍ତ ମୋ ମନେ ।
ଗିରି ଚୂନାକରି ପାରେ ବନ୍ଧ୍ୟାର କୁମର
ଶଶକ ଶୃଙ୍ଗଦିଶଇ କେଡ଼େ ମନୋହର ।
ବାଲିରୁ ତେଲ ବାହାର କରୁଅଛି ତେଲି
ପଥର ମୁରତି ନୃତକ୍ୟରେ ଝୁଲିଝୁଲି ।
ପାଷାଣ ପ୍ରତିମା କରେ ସୁମଧୁର ଗାନ
ମାଟିର ପିତୁଳା କରେ ମେଘ ଗରଜନ ।
ଯେସନ ଏକଥା ସବୁ ଅଟେ ଅସମ୍ଭବ
ମୋ ମତରେ ଆପଣଙ୍କ ବଚନ ତଥୈବ ।
ଜରା, ମରଣାଦି ଦୁଃଖ ପୂର୍ଣ୍ଣ ଏ ଜଗତ
ନାହିଁ ବୋଲି ଯଦି ହେଲା, ଆପଣଙ୍କ ମତ,
ତେବେ ଏ ସବୁ ଉକ୍ତିରେ କିବା ଅଛି ସତ
ମୁଁ କିସ କରିବି କହ ଆହେ ତପୋବନ୍ତ ?
ଏହି ବିଶ୍ୱ ମଣ୍ଡଳର ଅସ୍ତିତ୍ୱ ଯେ ନାହିଁ
କେବଣ କାରଣେ କହୁଅଛି ହେ ଗୋସାଇଁ ?
କି କାରଣେ କିଛି ଏଥି ନୁହେଁ ଉତ୍ପନ୍ନ
ସବିଶେଷ କରି ଏହା କରିବା ବଖାଣ ।
ଜରା, ମରଣ ଇତ୍ୟାଦି ନାନାଦି ବିକାର
ପ୍ରତ୍ୟକ୍ଷ ବୋଲି ପ୍ରତୀତ ମୋର ସମ୍ମୁଖର ।
ତୁମ କଥାର ମୋହର ନଆସେ ବିଶ୍ୱାସ
ପ୍ରମାଣ ଦେଖାଇ ମୋତେ ବୁଝାଅ ମୁନିଶ ।
ଅନାୟାସେ ଭବ ଦୁଃଖ ରହସ୍ୟ ଯେପରି
ବୁଝିପାରିବଇଁ ତାହା କହ ତପଚାରୀ ।
ବଶିଷ୍ଠ ବୋଇଲେ ରାମ ଯାହା ମୁଁ କହିଛି
ଅସଙ୍ଗତ ବୋଲି ଜାଣ ତହିଁ ନାହିଁ କିଛି ।
ମୋହର କଥନ କେବେ ନୁହଇ ଅସତ
ଯାହା ଯାହା କହିଅଛି ସେ ସବୁ ଯଥାର୍ଥ ।
ଯା' କିଛି ଚକଚମକ ଜଗତେ ଦେଖୁଛ
କାରଣ ବିହୀନ ସବୁ, ପଦେ ପଦେ ମିଛ ।

ଶୁଦ୍ଧ ଚୈତନ୍ୟ ସଂବିତ୍ ମହା ପ୍ରଳୟରେ
କେବଳ ମାତ୍ର ବିରାଜେ ଲୋକ ଅଗୋଚରେ ।
କାର୍ଯ୍ୟ କାରଣର ସତ୍ତା ତହିଁରେ ନଥାଇ
ବିନାକାରଣେ ଜଗତ ପୁଣି ଉଭବଇ ।
ସୁଷୁପ୍ତାବସ୍ଥାରେ ଯଥା ସ୍ୱପ୍ନ ଝଲସଇ
ଯଥା ସପନ ସୃଷ୍ଟିର କାରଣ ନଥାଇ ।
ସେହିପରି ଏହି ସୃଷ୍ଟି କାରଣ ରହିତ
ଏବେ ଯା କହୁଛି ବୁଝୁଥିବ ରଘୁନାଥ ।
ବାସ୍ତବରେ ଅଳୀକ ଏ ବନ୍ଧ୍ୟାପୁତ୍ର ନ୍ୟାୟ
ମିଥ୍ୟା ହେଲେ ସୁଦ୍ଧା କିମ୍ପା ସୁପ୍ରକାଶମୟ ॥
ତାହାର କାରଣ ଏବେ କରୁଛି ନିର୍ଣ୍ଣୟ
ଶୁଣ ହେ ରାଘବ ତାହା ଚିତ୍ତକରି ଥୟ ।
କସ୍ମିନ୍‌କାଳେ ଏହି ବିଶ୍ୱ ନୋହିଛି ଉତ୍ପନ୍ନ
ତେଣୁ ଯାର ଅବସ୍ଥିତି ନାହିଁ ବୋଲି ଜାଣ ।
ମନର ପ୍ରକାଶ ଅବା ମାୟାର ପ୍ରଭାବ
ଅଟେ ଏହି ବିଶ୍ୱ ବୋଲି ବୁଝ ହେ ରାଘବ ।
ତେଣୁକରି ତାରସତ୍ତା ହୁଏ ଅନୁଭୂତ
ସପନ ଦେଖିଲା ପରି ଅଟେ ଏ ଜଗତ ।
ଅନୁତ୍ପନ ଅସତ୍ ବପୁ ଅଟେ ଏ ମାନସ
ବାସ୍ତବରେ ଏହି ତତ୍ତ୍ୱ ସତ୍ୟ ଠିକ୍ ମୋ ବିଶ୍ୱାସ ।
ଯଦ୍ୱାରା ଏହି ରହସ୍ୟ ହେବ ବୋଧଗମ୍ୟ
ତାହା କରୁଛି ବର୍ଣ୍ଣନ କର ହେ ଶ୍ରବଣ ।
ମନ ତ ନଶ୍ୱର ଏହା ସୁନିଶ୍ଚିତ ଜାଣ
ତହିଁ ବିସ୍ତୃତି ଲଭିଛି ବିଶ୍ୱ, ଦୋଷପୂର୍ଣ୍ଣ ।
ସ୍ୱପ୍ନାବସ୍ଥାକୁ ବଢ଼ାଏ ଯେସନ ସପନ
ରୂପହୀନ ଜଗତକୁ, ରୂପହୀନ ମନ ।
ସ୍ୱେଚ୍ଛାରେ ସ୍ୱଦେହ ଅଗ୍ରେ କରିଣ କଳ୍ପନ
ଇନ୍ଦ୍ରଜାଲ-ଶୋଭା ।ସମକରେ ବିବର୍ଦ୍ଧନ ।
ସପନ ସଦୃଶ ମନ ହେଲେହେଁ ଅସତ୍
ଏ ଭବକୁ ସତ୍ୟ ବୋଲି କରେ 'ପ୍ରକାଶିତ'
ଚଳନଶୀଳ ଏ ମନ ସର୍ବଶକ୍ତିମାନ
ସାରା ଜଗତକୁ ଏହା କରେ କମ୍ପମାନ ।
ଯାତାୟତ କରେ ପୁଣି, କରଇ ଭ୍ରମଣ
ପ୍ରାର୍ଥନା କରେ ଆବର ହୁଅଇ ନିମଗ୍ନ ।
'ସଦ୍‌ଭାବ' 'କଳହମାନ' କରଇ ସର୍ଜନ
ମନର କରଣୀ କିଏ କରିବ କଳନ ?

ଏହି ମନ ମାନବଙ୍କୁ ନୀଚଗାମୀ କରେ
ଏହି ମନ ମୋକ୍ଷ ପଦ ଦେଇଥାଏ ହେଲେ ।
ସକଳ କାର୍ଯ୍ୟ ମନର କ୍ରୀଡ଼ା କଉତୁକ
ଅହ ରହ ଏହି ମନ ରଚଇ କୌତୁକ ।
ମନହିଁ ବିଶ୍ୱ ସଂସାର ଜାଣିବ ରାଘବ
'ମନ' 'ବିଶ୍ୱ' ଏ ଦୁହିଁଙ୍କୁ ଭିନ୍ନ ନ ବୁଝିବ ।
ମନ ମୂଳେ ମିଥ୍ୟା ଗୋଟି ରହିଛି ଗୁପତ
ତେଣୁ ତଦ୍‌ଜନିତ ବିଶ୍ୱ ମିଥ୍ୟା ପ୍ରମାଣିତ ।
ଯେତେବେଳେ ଏହି ମନ ହୁଏ ଉପଶମ
ନିବୃତ୍ତ ଲଭନ୍ତି ସର୍ବ କଳପନା ମାନ ।
ତେଣୁ ସଂସାର କାରଣ ମନ ହିଁ ଅଟଇ
ମନ ବିନା ସଂସାରର ସତ୍ତା ଆଉ କାହିଁ ?
ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ
ବୋଧହେତୁ ବର୍ଣ୍ଣନେ ନାମ ଚତୁର୍ଥ ସର୍ଗଃ



## ପଞ୍ଚମ ସର୍ଗଃ

## ପ୍ରଯତ୍ନ ଉପଦେଶ ବର୍ଣ୍ଣନ

ପୁଚ୍ଛନ୍ତି ଶ୍ରୀରାମଚନ୍ଦ୍ର ହେ ମୁନି ଶାର୍ଦ୍ଦୁଳ
ମନ ଭ୍ରମ କଳ୍ପନାର କାହିଁ ଅଛି ମୂଳ ।
କିପରି ଏ ମନ ଭ୍ରମ ହୁଅଇ ଉତ୍ପନ୍ନ
କି ପ୍ରକାରେ କେଉଁଠାରୁ ଆସିଲା ଏ ମନ ?
ମନର ମାୟା ମାୟାତ୍ୱ ଅଟେ କି ପ୍ରକାର ?
ତାହା କହି ମୋର ମନେ ସନ୍ତୋଷ ସଞ୍ଚାର ।
କହନ୍ତି ବଶିଷ୍ଠ ରାମ ଶୁଣ ମୋ ବଚନ
ମହା ପ୍ରଳୟରେ ସର୍ବ ବସ୍ତୁ ଅବସାନ ।
ଲୟପରେ, ଭବ-ସୃଷ୍ଟି ଆରମ୍ଭ ପର୍ଯ୍ୟନ୍ତ
କେବଳ ବିରାଜି ଥାନ୍ତି ବ୍ରହ୍ମ ଯେ ପ୍ରଶାନ୍ତ ।
ଅଗାଧ, ଅଚଳ, ନିତ୍ୟ, ନିର୍ବିକାର ସେହି
ନିତ୍ୟ, ପ୍ରତିଷ୍ଠିତ ନିର୍ବିଶେଷ ସେ ବୋଲାଇ ।
ଜନ୍ମ ରହିତ, ଅଦ୍ୱୈତ, ସ୍ୱପ୍ରକାଶ ସେହି
ସର୍ବାତ୍ମକ ସର୍ବଙ୍କରୀ ମହାତ୍ମା ବୋଲାଇ ।
ପରମ ଦେବ, ମହେଶ, ଅଜ ଅବିନାଶୀ
ପରମାତ୍ମ ତତ୍ତ୍ୱ ଶୁଦ୍ଧ ପୁଣି ସର୍ବଗ୍ରାସୀ ।
ବାକ୍ୟ ଅଗୋଚର ଅଟେ ଏହି ଶାନ୍ତ ବ୍ରହ୍ମ
ବୁଝାଇବାକୁ ତାହାଙ୍କୁ ବାକ୍ୟ ଯେ ଅକ୍ଷମ ।

ଅପ୍ରକାଶ୍ୟ ହେଲେ ସୁଦ୍ଧା ବୋଧଗମ୍ୟ ସେହି
ଆତ୍ମା ବ୍ରହ୍ମ, ପରମେଶ, କଳ୍ପିତ ବୋଲାଇ ।
ପ୍ରକାଶିବାକୁ ଏହାକୁ ବାଣୀ ଅସମର୍ଥ
ଯାକୁ ଲଭିବାକୁ ଜୀବନ ମୁକ୍ତ ହିଁ ସମର୍ଥ ।
ସ୍ୱାଭାବିକ ନାମ ତା'ର ନୁହନ୍ତି ଏମାନ
କେବଳ କଳ୍ପିତ କହିଥାନ୍ତି ସୁଧିଜନ ।
ଶିଷ୍ୟଙ୍କୁ ବୁଝାଇବାକୁ ଶାସ୍ତ୍ରକାର ଗଣ
ପ୍ରଶାନ୍ତ ବ୍ରହ୍ମଙ୍କୁ ଦେଇଥାନ୍ତି ବହୁନାମ ।
ସାଂଖ୍ୟଯୋଗ ମତେ ଯେହୁ ପୁରୁଷ ବୋଲାନ୍ତି
ବେଦାନ୍ତ ମତରେ ସେହୁ 'ବ୍ରହ୍ମ' ବୋଲାଯାନ୍ତି ।
ଶୂନ୍ୟବାଦୀଙ୍କ ମତରେ 'ଶୂନ୍ୟ' ସୁମହାନ
ବିଜ୍ଞାନ ବାଦୀଙ୍କ ମତେ "ବିଶୁଦ୍ଧ ବିଜ୍ଞାନ ।"
ସୂର୍ଯ୍ୟ, ଚନ୍ଦ୍ର ଆଦି ତେଜୋମୟ ପଦାର୍ଥର
'ପ୍ରକାଶକ' ସେହୁ ବୁଝ ଆହେ ରଘୁବୀର ।
ଯେଣୁ ସେ କରନ୍ତି ଶରୀରରେ ଅବସ୍ଥାନ
ବକ୍ତା, ଅନୁମନ୍ତା, ଭୋକ୍ତା, ଦ୍ରଷ୍ଟା ତାଙ୍କ ନାମ ।
ଏକକ, ସର୍ବାତ୍ମା, ସ୍ମୃତି ନାମ ସେ ବହନ୍ତି
ସଚରାଚର ବିଶ୍ୱର ତାଙ୍କ ମଧ୍ୟେ ସ୍ଥିତି ।
ଏ ବ୍ରହ୍ମ ସାରାଜଗତେ ପୂର୍ଣ୍ଣମାତ୍ରେ ସ୍ଥିତ
ବ୍ରହ୍ମଙ୍କ ବାହାରେ କିଛି ନାହିଁ ଏ ଜଗତ ।
ବ୍ରହ୍ମ ଯେ ଅଟନ୍ତି ସତ ସ୍ୱରୂପ ବା ସତ୍ୟ
ଅନିତ୍ୟ ଜଗତେ ସ୍ଥିତ ଯଦିଚ ସେ ନିତ୍ୟ ।
ଚୈତନ୍ୟ ରୂପରେ ସେହୁ ଦେହ ମଧ୍ୟେ ରହି
ସବୁଠାରେ ସର୍ବଭାବେ ବିରାଜନ୍ତି ସେହି ।
ଆତ୍ମାରୂପୀ ସୂର୍ଯ୍ୟ ଏହି ବ୍ରହ୍ମ ଯେ ଅଟନ୍ତି
ବ୍ରହ୍ମାଦି ଦେବତା ଯାର କିରଣୁ ଜନ୍ମନ୍ତି ।
ଦୀପ ନିଜକୁ ପ୍ରକାଶି ଅନ୍ୟକୁ ପ୍ରକାଶେ
ବ୍ରହ୍ମ ନିଜକୁ ପ୍ରକାଶି ବିଶ୍ୱେ ପରକାଶେ ।
ଅସଂଖ୍ୟ ବୁଦ୍ ବୁଦ ଯଥା ସାଗରୁ ଉତ୍ପନ୍ନ
କୋଟି କୋଟି ବ୍ରହ୍ମାଣ୍ଡ ଯେ ବ୍ରହ୍ମରୁ ଜନମ ।
ଜଳାଧାରାମାନେ ଯଥା ସମୁଦ୍ରେ ପଶନ୍ତି
ଦୃଶ୍ୟା, ଦୃଶ୍ୟ ସର୍ବ ସୃଷ୍ଟି ବ୍ରହ୍ମେ ଲୀନ ଯାନ୍ତି ।
ଆକାଶେ, ଶରୀରେ, ଜଳେ, ଆବର ପ୍ରସ୍ତରେ
ବନସ୍ପତି ମଧ୍ୟେ, ଭସ୍ମେ, ପାତାଳ ପୁରରେ,
ପର୍ବତେ, ପବନେ, ସର୍ବଗଳି କୁଞ୍ଜସ୍ଥାନେ
ବିରାଜମାନ ସର୍ବଥା ବ୍ରହ୍ମ ସନାତନେ ।

ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ, ଅବିଦ୍ୟା ଓ ପ୍ରାଣ
କାମାଦିଙ୍କୁ ସ୍ୱ ସ୍ୱ ଧର୍ମେ ନିଯୋଜନ୍ତି ଜାଣ ।
ଶିଳାକୁ ଅଚଳ ଗୁଣ ଦେଇଛନ୍ତି ସେହି
ଆକାଶ ଶୂନ୍ୟତା ମଧ ସେ ରଚି ଅଛଇ ।
ପର୍ବତର କଠିନତା ଜଳ ତରଳତା
ପ୍ରଦୀପ, ତପନ ମଧ୍ୟେ ଆଲୋକର କର୍ତ୍ତା ।
ଆତ୍ମସତ୍ତାରୁ ପାଦପ ଜନମ ଲଭଇ
ଅବିନଶ୍ୱର ହେଲେ ହେଁ ନଶ୍ୱର ଯେ ସେହି ।
ଅନଳ ଉଷ୍ଣତା ପୁଣି ଜଳର ଦ୍ରବତା
ପବନ ସ୍ପର୍ଶତାଦିର ସେହି ଯେ ନିୟନ୍ତା ।
କେକୀ ପୁଚ୍ଛ ରଙ୍ଗ ଆତ୍ମ ସତ୍ତାରୁ ଜନମ
ସେହି ସିନା ସର୍ଜୁଛନ୍ତି ସ୍ଥାବର, ଜଙ୍ଗମ ।
ଆତ୍ମରୂପୀ ଚନ୍ଦ୍ରମାର ଜ୍ୟୋଛନା ମଧ୍ୟରୁ
ବ୍ରହ୍ମାଣ୍ଡ-ତ୍ରସରେଣୁ ଯେ ଜନମ ତହିଁରୁ ।
ଶୀତଳତା-ସୁଧା ପୂର୍ଣ୍ଣ ଅଟେ ସେ ଚନ୍ଦ୍ରମା
ନିରସରେ ରସ ଦେବା ତାହାର ଗାରିମା ।
ସେହି ବ୍ରହ୍ମ ଜଳପୂର୍ଣ୍ଣ ମେଘ ରୂପ ଧରି
ପୃଥିବୀକୁ ପାଳୁଛନ୍ତି ବୃଷ୍ଟି ଜଳ ଢାଳି ।
ବାରିଦ ରୂପୀ ବ୍ରହ୍ମରୁ ଜୀବରୂପୀ ବିନ୍ଦୁ
ଅହରହ ଖସି ସରଜନ୍ତି ଭବସିନ୍ଧୁ ।
କ୍ଷଣକ ପାଇଁ ଯେସନ ବିଜୁଳି ଚମକ
ଜଗତର ସୃଷ୍ଟି, ଲୟ, କ୍ଷଣକ ମାତ୍ରକ ।
ଆତ୍ମସତ୍ତା ହିଁ ଅଟଇ ସର୍ବ ଅଧିଷ୍ଠାନ
ନିତ୍ୟ, ଶୁଦ୍ଧ, ବୁଦ୍ଧ ପରଂ-ଆନନ୍ଦ ସେ ସ୍ଥାନ ।
ସତ୍ୟ ଅସତ୍ୟ ଯେତେକ ବସ୍ତୁ ଦେଖାଯାନ୍ତି
ଆତ୍ମସତ୍ତାରୁ କେବଳ ସେମାନେ ଜନ୍ମନ୍ତି ।
ଲୌହକୁ ଆକର୍ଷେ ଯଥା ଚୁମ୍ବକତ୍ୱ ସତ୍ତା
ଦେହ ଲୌହକୁ ଆକର୍ଷେ ଚଇତନ୍ୟ ସତ୍ତା ।
ଆତ୍ମା ନିତ୍ୟ, ଚଇତନ୍ୟ ସବୁରି ନିୟନ୍ତା
ଅନ୍ୟ କେହି ନାହିଁ ଯେହୁ ତାର ସୃଷ୍ଟିକର୍ତ୍ତା ।
ସର୍ବାପେକ୍ଷା ଅଭେଦ୍ୟ ଯେ ସେ ବ୍ରହ୍ମ ଅଟନ୍ତି
ସର୍ବତ୍ର ସମ ଉଦୟ, ଅସ୍ତ ତାଙ୍କ ନାସ୍ତି ।
ହେ ରାମ ବ୍ରହ୍ମ ସାକ୍ଷାତ ପାଏ ଯେଉଁ ନର
ସକଳ କ୍ରିୟା ବିନଷ୍ଟ ହୁଅଇ ତାହାର ।
ବିଚ୍ଛିନ୍ନ ହୁଅନ୍ତି ଚିଦ୍ ଜଡ଼, ଗ୍ରନ୍ଥି ତାର ।
କେବଳ 'ବୋଧ'-ରୂପକୁ ଧରେ ଯେଉଁ ନର ।
ସ୍ୱଭାବ ସତ୍ତାରେ ମନ ସ୍ଥିର ରହେ ତାର
ମୃତ୍ୟୁକୁ ସମ୍ମୁଖେ ଦେଖି ନ ଡରେ ସେ ନର ।
ଏପରି କୌଣସି ସ୍ଥାନ ଅଛି କି ଜଗତେ
ବ୍ରହ୍ମସତ୍ତା ଯହିଁ ନ ବିରାଜେ ରଘୁପତେ ?
ଘଟେ ଘଟେ ସେହି ବ୍ରହ୍ମ ପ୍ରକାଶିତ ଛନ୍ତି
ଅଜ୍ଞାନୀ ଜନକୁ ବହୁଦୂର ବୋଧ ହୁନ୍ତି ।
ସ୍ନାନ, ଦାନ, ତପାଦିରେ ନୁହନ୍ତି ପ୍ରାପତ
ଜ୍ଞାନବଳେ ଜୀବ ତାଙ୍କୁ କରଇ ସାକ୍ଷାତ ।
ସୁବିସ୍ତୀର୍ଣ୍ଣ ମରୁଭୂମି ମରୀଚିକା ସମ ।
ଆବିର୍ଭାବ, ତିରୋଭାବ, ଯାର ତ୍ରିଭୁବନ ।
ଅବିନଶ୍ୱର ହେଲେ ହେଁ ସେହି ସନାତନ ।
ପ୍ରପଞ୍ଚ ରୂପେ ନଶ୍ୱର ଅଟନ୍ତି ସେ ଜାଣ ।
ସକଳ ଅନ୍ତରେ ସୂକ୍ଷ୍ମ ଭାବେ ବିରାଜିତ
ସ୍ୱୟଂ ସ୍ୱୀୟ ଚିଦାକାଶେ ବିଶ୍ୱ-ଫଳବତ ।
ମହା ପ୍ରଳୟ ସମୟେ ସର୍ବେ ଯାନ୍ତି ନାଶ
କେବଳ ମାତ୍ର ସେ ବ୍ରହ୍ମ ମାରନ୍ତି ନିଶ୍ୱାସ ।
ବ୍ରହ୍ମ ଅଟେ ସ୍ୱୀୟ ଚିତ୍‌ପାଦପର ମୂଳ
ଏ ଦେହର ପଞ୍ଚମନ ସେ ବୃକ୍ଷର ଦଳ ।
ପ୍ରକୃତି-ଲତିକା ସେହି ବୃକ୍ଷରେ ଆଶ୍ରିତା
ଇନ୍ଦ୍ରିୟ-ଦଳରେ ସେହି ଲତା ସୁଶୋଭିତା ।
ଆତ୍ମାରୂପ ବାୟୁ ଦ୍ୱାରା ହୁଏ ଦୋଳାୟିତ ।
ସଚରାଚର ଜଗତ ତା'ର ବଶୀଭୂତ ।
କେବଳ କର୍ତ୍ତବ୍ୟ ଦ୍ୱାରା ବ୍ରହ୍ମ ନ ମିଳନ୍ତି
ଆତ୍ମଜ୍ଞାନ ବଳେ ବ୍ରହ୍ମ ପାଇପାରେ ବ୍ୟକ୍ତି ।
ପୁଣି ପୁଚ୍ଛନ୍ତି ଶ୍ରୀରାମ ଆହେ ଗୁରୁଦେବ
ସେ ବ୍ରହ୍ମ କାହିଁ ଅଛନ୍ତି ବୁଝାଅ ସରବ ।
ଯେ ବ୍ରହ୍ମ ସାକ୍ଷାତେ, ଜନ୍ମ, ମୃତ୍ୟୁ ଜିଣେ ଜୀବ
କି ତପ କି କ୍ଲେଶ ବଳେ ତା' ଲଭି ପାରିବ ?
କହନ୍ତି ବଶିଷ୍ଠ ମୁନି ହେ କୌଶଲ୍ୟା ସୁତ
ତପସ୍ୟା ବଳେ କେବେ ହେଁ ବ୍ରହ୍ମ ନୁହେଁ ପ୍ରାପ୍ତ ।
ପୌରୁଷ ପ୍ରଯତ୍ନ ବଳେ କେବଳ ସେ ପ୍ରାପ୍ତ ।
କାମ କ୍ରୋଧାଦି ରିପୁଙ୍କୁ ବର୍ଜିବା ଉଚିତ ।

* ପ୍ରକୃତି – ମନୁଷ୍ୟର ପଚିଶ ପ୍ରକୃତି

ସତ୍‌ସଙ୍ଗ, ସତ୍‌ଶାସ୍ତ୍ର ସେହି ବ୍ୟାଧିର ଦବେଇ
ଦୃଶ୍ୟ-ବିସ୍‌ଚିକା ଯାହା ବଳେ ନାଶ ଯାଇ ।
ସରବେ ଯାହାକୁ ଶ୍ରେଷ୍ଠ ବୋଲି ଆଖ୍ୟାଦ୍ୟନ୍ତି
'ସନ୍ଥଜନ' ସେହି ବୋଲି ଜାଣ ରଘୁପତି ।
ବ୍ରହ୍ମ ନିରୂପଣ ସତ୍ୟ ଯହିଁ ପ୍ରମାଣିତ
ସତ୍‌ଶାସ୍ତ୍ର ବୋଲି ତାହାକୁ ଜାଣ ରଘୁନାଥ ।
ସେହିପରି ସନ୍ଥ ଅଙ୍ଗ, ଶାସ୍ତ୍ରର ବିଚାର
ଖୋଲିଦିଏ ଶୀଘ୍ର ଆତ୍ମପଦ ପ୍ରାପ୍ତି ଦ୍ୱାର ।
ଶାସ୍ତ୍ରମତ ଲୋକମତ ବିରୋଧ ନୋହିବ
ବୃତ୍ତିରେ ଯଥା ସମ୍ଭବ ସନ୍ତୁଷ୍ଟ ରହିବ ।
ଭୋଗଇଚ୍ଛା ଯଥାସାଧ୍ୟ କର ପରିହାର
ଦୂରାକାଙ୍‌କ୍ଷା ଉଦବେଗରୁ ରହି ହେ ସୁଦୂର
ସାଧୁ ସଙ୍ଗ ପାଇଁ ଯଥାସାଧ୍ୟ ଚେଷ୍ଟାକର ।
ସତ୍ ଶାସ୍ତ୍ରର ଆଦର୍ଶକୁ ସଦା ମାନି ଚଳ ।
ପ୍ରଥମ ସୋପାନ ଏହା ଜ୍ଞାନ ଅର୍ଜନର
ତେବେ ଭୋଗରୂପୀ ଗର୍ତ୍ତେ ନ ପଡ଼ିବ ନର ।
ଯଥାଲାଭ ପାଇ ସଦା ସନ୍ତୁଷ୍ଟ ରହିବ
ଶାସ୍ତ୍ର ବିରୁଦ୍ଧ କାର୍ଯ୍ୟକୁ ଉପେକ୍ଷା କରିବ ।
ଏପରି ଉଦାରାତ୍ମାକୁ ଶୀଘ୍ର ଆତ୍ମ ପଦ
ଅନାୟାସେ ଅବିଳମ୍ବେ ହୋଇବ ଲବଧ ।
ଆତ୍ମତତ୍ତ୍ୱ ଉପଲବ୍ଧି କରିଛି ଯେ ନର
ସ୍ୱୀୟ ପରମ ସ୍ୱଭାବେ ରହିଛି ଯେ ସ୍ଥିର ।
ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର ଆଦି ଦେବଗଣ
ତାହା ପ୍ରତି କୃପା କରୁଥାନ୍ତି ବରଷଣ ।
ପରମ ବ୍ରହ୍ମତ୍ତ୍ୱ ପ୍ରାପ୍ତ ହୋଇଛି ସେ ନର
ଏହି ଅଭିମତ ଦେଇଥାନ୍ତି ସୁରବର ।
ସୁଜନ ଜନେ ଯାହାକୁ ସାଧୁ ବୋଲି କହି
ସେ ସାଧୁର ଆଶ୍ରାନେବା କର୍ତ୍ତବ୍ୟ ଅଟଇ ।
'ଅଧ୍ୟାତ୍ମବିଦ୍ୟା' ହିଁ ବିଦ୍ୟା ବୁଝିବ ରାଘବ
ସତ୍‌ଶାସ୍ତ୍ର ଅଟେ ଆଦର୍ଶ ମନେ ରଖିଥିବ ।
ତେଣୁ ମନ-ଯୋଗ ସହ ସତ୍‌ଶାସ୍ତ୍ର ପଠନ
ପୁଣି ଅଧ୍ୟାତ୍ମବିଦ୍ୟାର ଆଶ୍ରୟ ଗ୍ରହଣ,
ସାଧୁଙ୍କ ମତରେ ଏହା ମୁକ୍ତି ଲାଭ ପଥ
ଏହାକୁ ମାନି ଚଳିବ ଆହେ ରଘୁନାଥ ।
ନିର୍ମଳ ପଙ୍କିଳ ଜଳ ନିର୍ମଳା ଯୋଗରେ
ମନ ମଳିନତା ନାଶ ଯୋଗ ଅଭ୍ୟାସରେ
ସଜ୍ଜନ ସଙ୍ଗ ଜନିତ ବିବେକ ବଳରେ
ଅବିଦ୍ୟା ବିନଷ୍ଟ ହୁଏ ନିଶ୍ଚିତ ଭାବରେ ।
ଅବିଦ୍ୟା କାଟି ପାରିଲେ ସଂସାରର ଦୁଃଖ
ନିର୍ବାପିତ ହୋଇ, ଜୀବ ଭୋଗକରେ ସୁଖ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ପ୍ରଯତ୍ନ ଉପଦେଶ ବର୍ଣ୍ଣନେ**
**ନାମ ପଞ୍ଚମ ସର୍ଗଃ ।**



## ଷଷ୍ଠ ସର୍ଗଃ

## ଦୃଶ୍ୟ ଅସତ୍ୟ ପ୍ରତିପାଦନ

ଏହା ଶୁଣି ରାମଚନ୍ଦ୍ର ପଚାରନ୍ତି ପୁଣି
ଆଉ କିଛି ବ୍ରହ୍ମ ବାର୍ତ୍ତା କହ ତପୀମଣି ।
ଯାହାକୁ ପାଇଲେ ଭବ ବନ୍ଧନ କଟଇ
କି ରୂପେ ଜୀବ ତାହାକୁ ପରାପତ ହୋଇ ?
ବଶିଷ୍ଠ କହନ୍ତି ସେହି ବ୍ରହ୍ମ ଦୂରେ ନାହିଁ
ଏ ମର ଶରୀରେ ସଦା ବିରାଜିତ ସେହି ।
ନିତ୍ୟ ଚିନ୍ମାତ୍ର ସରବ ପରିପୂର୍ଣ୍ଣ ସେତ
ଅଦ୍ୱିତୀୟ ତେଜ, ସାରା ବିଶ୍ୱରୁ ରହିତ ।
ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର ଆଦି ଦେବଗଣ
ଏ ସାରା ଜଗତ ଚିନ୍‌ମାତ୍ର ବୋଲି ଜାଣ ।

ପ୍ରକୃତି - ମନୁଷ୍ୟର ପଚିଶ ପ୍ରକୃତି ।

ବୃତ୍ତି - ଜୀବିକା । (୧୫)

ଅବିଦ୍ୟା - ସତ୍ତ୍ୱ, ରଜ, ତମ ଏହି ତିନିଗୁଣ ପରଂ-ବ୍ରହ୍ମର ଆଶ୍ରିତ । ଉକ୍ତ ତିନିଗୁଣର ସାମ୍ୟାବସ୍ଥାକୁ ପ୍ରକୃତି କୁହାଯାଏ । ପ୍ରକୃତି ଦୁଇ ପ୍ରକାର । "ମାୟା ଓ ଅବିଦ୍ୟା" । ସତ୍ତ୍ୱ ଗୁଣର ନିର୍ମଳତାକୁ ମାୟା ଏବଂ, ମଳିନତାକୁ ଅବିଦ୍ୟା କହନ୍ତି । ମାୟା ନଶ୍ୱର ଉପାଧି ଏବଂ ଅବିଦ୍ୟା ଜୀବର ଆଶ୍ରୟ ।

ଫଳିତାର୍ଥ - ପ୍ରତିବ୍ୟକ୍ତିର ଅବସ୍ଥିତି ପରିଚ୍ଛିନ୍ନ ମାୟାର ଅବିଦ୍ୟା ।

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ ।
ଅଜ୍ଞାନ ବାଳକ ସୁଦ୍ଧା କହେ ଏ ବଚନ ।
"ଏହି ଆତ୍ମା ଚିନ୍ମାତ୍ର ଅନ୍ୟକିଛି ନୁହେଁ
କି ବୈଶିଷ୍ଟ୍ୟ ତୁମ୍ଭ ବାକ୍ୟେ କହନ୍ତୁ ମୁନିହେ ?
ପ୍ରତ୍ୟୁତ୍ତର କରୁଛନ୍ତି ବ୍ରହ୍ମାଙ୍କର ସୁତ
ମୁଁ ଯାହା କହୁଛି ଶୁଣ ସ୍ଥିର କରି ଚିତ୍ତ ।
ଏ ବିଶ୍ୱ ଚେତନ ବୋଲି ଯଦି ତୁମେ ମଣ
ଭବ ନାଶନ ଉପାୟ ତୁମେ ତ ନ ଜାଣ ।
ଯଦିଚ ଜଗତ କିସ ଜାଣିଛି ଏ ଜୀବ
ଜଣା ନାହିଁ ତାକୁ ମୋକ୍ଷ କେସନ ମିଳିବ ।
ଜଗତର ସତ୍ତା ମନୁ ହୋଇଯିବ ଲୁପ୍ତ
ବ୍ରହ୍ମଜ୍ଞାନ ହୃଦେ ଯେବେ ହୋଇବ ଉଦିତ ।
ତେବେ ଯାଇ ମୋକ୍ଷତାକୁ ହେବ ପରାପତ
ନୋହିଲେ ମୋକ୍ଷ ପ୍ରାପତି ଜାଣ ସ୍ୱପ୍ନବତ ।
ବ୍ରହ୍ମ ବୋଇଲେ ଜଗତ ତା' ମଧ୍ୟେ ରହୁଛି
ଜଗତ କିନ୍ତୁ ବ୍ରହ୍ମର ଅଂଶ ବୋଲାଉଛି ।
**ତେଣୁ ଜଗତ ଓ ବ୍ରହ୍ମ ଏ ଦୁହେଁ ସମାନ**
ଏ ବିଶ୍ୱାସ ଥିବା ଯାଏ ମୋକ୍ଷଟି ସ୍ୱପନ ।
ପଶୁନାମେ ପରିଚିତ ଏ ଚେତନ ଜୀବ
ବାସ୍ତବ ସଂସାର ବୋଲି ଜାଣିବ ରାଘବ ।
**ଏ ଚେତନ ଜୀବଭାବ ଥିବ ଯେତେଦିନ**
**ଜାରି ରହିଥିବ ମୃତ୍ୟୁଭୟ ଜରା, ଜନ୍ମ ।**
ସ୍ୱଳ୍ପ ଜ୍ଞାନ ଥିବା ହେତୁ ଏହି ଜୀବ ଜାଣ
ନାନାଦି ଅନର୍ଥମାନ ହୁଏ ସମ୍ମୁଖୀନ ।
ଜରା ମରଣ ତରଙ୍ଗ ତେଣୁ ଉତପନ୍ନ
ଭୟଜାତ ହେତୁମନ ହୁଏ ଛନ୍ନ ଛନ୍ନ ।
ଏ ଜଗତ ମିଥ୍ୟା ଅଟେ ଇନ୍ଦ୍ରଜାଲ ପରି
ଏ ଭ୍ରମ ନ ଗଲେ ମୋକ୍ଷ ମିଳିବ କିପରି ?
ଯୋଗବଳେ ଜଗତ୍‌ଭ୍ରମ ଦୂର ହୁଏ ସତ
ତାହା ବଳେ ମିଳିବ କି ବ୍ରହ୍ମଙ୍କ ସାକ୍ଷାତ ?
ସେ ସାକ୍ଷାତ ବିନା ମୋକ୍ଷ ମିଳିବ କେସନ ?
ମୋକ୍ଷ ପ୍ରୟାସୀ ଏଥିକି ହେବ ସାବଧାନ ।
କୃପାସିନ୍ଧୁ ହେତୁ ଯେହୁ ଚୈତନ୍ୟ ଲଭଇ
ସେ ଚୈତନ୍ୟ ମଧ୍ୟେ ପୁଣି ଚେତନା ଖୋଜଇ ।
ଉର୍ଦ୍ଧ୍ୱଗତି ପରିବର୍ତ୍ତେ ଅଧୋଗତି ଲଭେ
ଅନର୍ଥ ମଧ୍ୟରେ ସଦା ଦହି ହୁଏ ଭବେ ।
ଚେତନାରେ ଚୈତନ୍ୟଙ୍କ ଅନ୍ୱେଷଣ କଲେ
ପରଂବ୍ରହ୍ମ ପ୍ରାପ୍ତି ତାର ହୁଏ ଅକ୍ଳେଶରେ ।
ପରମାତ୍ମାକୁ ଲଭିଣ ମୁକ୍ତି ଲାଭ କଲେ
ସର୍ବ ଚେତନତା ଅସ୍ତ ଯାଏ ତେତେବେଳେ ।
ପରମାତ୍ମା ପ୍ରାପତିରେ ହୃଦ ଗ୍ରନ୍ଥି ନଷ୍ଟ
ସକଳ ସଂଶୟ ତହୁଁ ହୁଅନ୍ତି ବିନଷ୍ଟ ।
'ଅହଂ' 'ମମ' ଭାବ ତହୁଁ ହୋଇଯାଏ ଲୀନ
ସଞ୍ଚିତ କର୍ମ ସକଳ ପାଇଥାନ୍ତି କ୍ଷୀଣ ।
ପୁଛନ୍ତି ଶ୍ରୀରାମ ଶୁଣ ଆହେ ମହାତ୍ମନ
ଏ ଚିତ୍ତ ଚୈତନ୍ୟୋନ୍ମୁଖି ହେବା ବିବରଣ ।
ଚିତ୍ତ ଯେତେବେଳେ ବ୍ରହ୍ମମୁଖୀ ହେଉଥାଏ
ତା' ଆଗେ ଜଗତଭ୍ରମ, ଉଦ୍‌ଭାସିତ ହୁଏ ।
ଚିତ୍ତ ବୃତ୍ତିର କିପରି ହେବ ନିରୋଧନ
କି ଉପାୟ ଅପସରି ଯିବ ଦୃଶ୍ୟ ଭ୍ରମ ?

### ବଶିଷ୍ଠ ଉବାଚ

ଦୃଶ୍ୟ ସଂଯୋଗୀ ଚେତନ ଅଟଇ ଏ ଜୀବ
ଜଗତ ପରମଆତ୍ମା ମଧ୍ୟେ ତା'ର ଠାବ ।
ଏହି ଯେ ଚେତନ ଜୀବ ଜନ୍ମ-ଜଙ୍ଗଲରେ
ନିକ୍ଷେପିତ ହୋଇ ନାନା ଦୁଃଖ ଭୋଗ କରେ ।
ସେ ଚୈତନ୍ୟଭାବକୁ ଯେ ବ୍ରହ୍ମ ବୋଲି କହେ
ପଣ୍ଡିତ ହେଲେ ହେଁ ସେହୁ ନିର୍ବୋଧ ବୋଲାଏ ।
ଜୀବ ବୋଇଲେ ସଂସାର ଦୁଃଖର ପ୍ରବାହ
ଖାଲି ଜୀବକୁ ଜାଣିବା ବ୍ୟର୍ଥ ନି!ସନ୍ଦେହ ।
ପରମଆତ୍ମାକୁ ଯଦି ବୁଝିବାକୁ ଯିବ
ତାଙ୍କର ଦୁଇଟି ଭାବ ଅଛଇ ଜାଣିବ ।
ଜୀବ ଓ ପରମଭାବ ସେ ଦୁଇଟି ଜାଣ
ଜୀବ ସହ ବୁଝାଗଲେ, ପରମ ସୁଗମ ।
ଏ ଦୁଇ ଭାବକୁ ଯେବେ ବୁଝିପାରେ ଜୀବ
ଦୁଃଖ ପ୍ରବାହ ତାହାର ବିଲୟ ଲଭିବ ।
ସଂସାରୀ ଜୀବକୁ ଜାଣ ମୁକ୍ତି ଅସମ୍ଭବ ।
ପରମାତ୍ମାକୁ ଚିହ୍ନିଲେ ମୁକତି ଲଭିବ ।
କଲେରା ଇଂଜେକ୍‌ସନରେ ବିସୂଚିକା ଯିବ
"ବିଷସ୍ୟ ବିଷମୌଷଧଂ" ଏ ବଚନ ଧ୍ରୁବ ।
ପରମ ଉପଲବ୍ଧିରେ ମୁକତି ଲଭିବ
ସଂସାର ଦୁଃଖ ଯାତନା ଅପସରି ଯିବ ।

### ରାମଚନ୍ଦ୍ର ଉବାଚ

ଯାହାକୁ ଜାଣିଲେ ଜୀବ ମୋହ ସିନ୍ଧୁତରେ
କିପରି ସେ ବ୍ରହ୍ମ ରୂପ କହ ମୋ ଆଗରେ ?

### ବଶିଷ୍ଠ ଉବାଚ

କ୍ଷଣକେ ଭ୍ରମେ ଯେ ଜ୍ଞାନ ଦେଶ ଦେଶାନ୍ତର
ପରମାତ୍ମା ଅଙ୍ଗ ସେହି ଜ୍ଞାନ ରଘୁବୀର ।
ଯେ ତ୍ରିକାଳ-ମିଥ୍ୟା-ଭବ ବୋଧ-ସିନ୍ଧୁ ମଧେ
ସଦା ଭାସମାନ ହେଉଅଛି ଦୟାନିଧେ,
ସେହି ବୋଧ ସିନ୍ଧୁ-ରୂପ ପରମାତ୍ମାଙ୍କର
ତହିଁ ହୁଏ ଭାସମାନ ଅନିତ୍ୟ ସଂସାର ।
ଦ୍ରଷ୍ଟା, ଦୃଶ୍ୟ, ଦରଶନ ଯହିଁ ଅସ୍ତମିତ
ସେହିସିନା ପରମାତ୍ମା ରୂପେ ପ୍ରତିଭାତ ।
ଅଶୂନ୍ୟ ହେଲେହେଁ ଶୂନ୍ୟ ପରି ଯେ ପ୍ରତୀତ
ଏ ସୃଷ୍ଟି ପ୍ରବାହାକାରେ ଯହିଁ ପ୍ରବାହିତ ।
ସେହି ଅଦ୍ୱୈତ ସତ୍ତାହିଁ ପରମାତ୍ମା ଜାଣ
ସେହି ପରମାତ୍ମା ସର୍ବ ପ୍ରମାଣ ପ୍ରମାଣ ।
ମହା ଚଇତନ୍ୟରୂପୀ ପର୍ବତ ମହାନ
ଅଜଡ଼ ହେଲେହେଁ ଜଡ଼ପରି ବିଦ୍ୟମାନ ।
ପରାତ୍ପର ପରମାତ୍ମା ରୂପ ସେହି ଜାଣ ।
ସସୀମ ମୁଁ ଅସୀମକୁ ବର୍ଣ୍ଣିବି କେସନ ?
ଅନ୍ତର୍ବହିଃ ଯେଉଁ ବ୍ରହ୍ମ ସର୍ବ ଭୂତଙ୍କର
ପ୍ରକାଶ କରେ ସବୁଙ୍କୁ ଯେହୁ ନିରନ୍ତର,
ସେହି ସେ ପରମ ଆତ୍ମା କହିଥାନ୍ତି ବୁଧେ
ସବୁଙ୍କୁ ବଳ ଦିଅନ୍ତି ନିତ୍ୟ ନିର୍ବିବାଦେ ।
ସୂର୍ଯ୍ୟଙ୍କ ପ୍ରକାଶ ପୁଣି, ଆକାଶ ଶୂନ୍ୟତା
ଯହିଁ ଅବସ୍ଥାନ କରେ ସେହି ବ୍ରହ୍ମସତ୍ତା ।
ପଚାରନ୍ତି ରାମଚନ୍ଦ୍ର ଶୁଣ ମହାତ୍ମନ ।
କିପରି ଘଟିବ ମୋର ସନ୍ଦେହ ମୋଚନ ?
ପରମାତ୍ମା 'ସତ' ଏହି ନାମମାତ୍ର ରୂପ
କି ପ୍ରକାରେ ବୋଧଗମ୍ୟ ହେବ ଭକ୍ତାଧିପ ?
ଏ ଜଗତ ଭ୍ରମ-ମାତ୍ର କିପରି ବୁଝିବ ?
ଦୃଷ୍ଟାନ୍ତ ସହିତ ମୋତେ ବୁଝାଇ କହିବ ।
ପରମାତ୍ମା ବିଦ୍ୟମାନ ଯଦି ଏହା ସତ
କେଉଁ କାରଣରୁ ନୁହନ୍ତି ସେ ପ୍ରତିଭାତ ?
ସ୍ଥାବର ଜଙ୍ଗମ ଆଦି ଏ ସାରା ଜଗତ
ବିଦ୍ୟମାନ ଅଛି, ଯଦି ଏହା ପ୍ରମାଣିତ
କି ଉପାୟେ ସେ ସମସ୍ତେ ପାଇବେ ନିର୍ବାଣ ।
ଏ ଜଟିଳ ତତ୍ତ୍ୱ ବୁଝିବାକୁ ମୁଁ ଅକ୍ଷମ ।
କହନ୍ତି ବଶିଷ୍ଠ ଶୁଣ ରାମ ରଘୁନାଥ
ଭ୍ରମରୁ ହିଁ ଉତପନ୍ନ ଏ ସାରା ଜଗତ ।
ଜଗତର ବାସ୍ତବତା କିଛିମାତ୍ର ନାହିଁ
ଏ ଭ୍ରମରେ ଭ୍ରମି ଜୀବ ଘାରି ହେଉଥାଇ ।
ନୀଳିମା ଯେସନେ ନଭ ମଧେ ଭାସମାନ
ଆତ୍ମ ହିଁ ଜଗତ ନୃତ୍ୟ କରୁଛି ଜାଣିମ ।
ଜଗତ୍-ଭ୍ରମ ଯେତେବେଳେ ହୋଇଯିବ ଲୀନ
ତେତେବେଳେ ଯାଇ ପରମାତ୍ମାଙ୍କ ଦର୍ଶନ ।
ଅନ୍ୟ କୌଣସି ଉପାୟେ ସେ ଦର୍ଶନ ନାହିଁ
ଯାହା ମୁଁ କହୁଛି ସତ୍ୟ ହେଜ ରଘୁସାଇଁ ।
ଯେତେବେଳେ ସେ ଦୃଶ୍ୟର ଅତ୍ୟନ୍ତ ଅଭାବ
ସତୃଷ୍ଣ ଚିତ୍ତରେ ଯଦି ଉପଲବ୍ଧି ହେବ
ପରମାତ୍ମା ସତ୍ତା ତେବେ ହେବ ଅନୁଭୂତ
ପ୍ରଳୟେ ବି ସେହି ସତ୍ତା ନୁହେଁ ଅସ୍ତମିତ ।
ସେ ସମୟେ ଯେହୁ ଥିଲେ, କିମ୍ବା ରହିଥାନ୍ତି
ବୋଧ ଆଖ୍ୟା ତାଙ୍କୁ ସିଦ୍ଧ ବିବୁଧେ ଦିଅନ୍ତି ।
ଜଗତର ଜନ୍ମଦାତା ସେହି 'ବୋଧ' ରୂପ
ଏହି ତତ୍ତ୍ୱ ବିନାଶିବ ସକଳ ସନ୍ତାପ ।
ଏ ରହସ୍ୟ ଅନ୍ତର୍ଦ୍ଦେଶେ ବିବେଚନା କର
ବିଭୁ ସତ୍ତା ଉପଲବ୍ଧ ହେବ ଯେ ପ୍ରକାର ।
ଜଗତର ସ୍ୱାଭାବିକ ତତ୍ତ୍ୱ ନ ବୁଝିଲେ
ବ୍ରହ୍ମସତ୍ତା ଉପଲବ୍ଧ ହେବ କି ପ୍ରକାରେ ?
ଚିତ୍ତ ଦର୍ପଣରେ ଭବ ପ୍ରତିବିମ୍ବ ବିନା
ପରମାର୍ଥ ତତ୍ତ୍ୱବୋଧ ସମ୍ଭବି ପାରେନା ।
ଯେ ଯାଏ ଜଗତ ଭ୍ରମ ନୁହେଁ ନିର୍ବାପିତ
କଦାପି ହୋଇ ନ ପାରେ ବ୍ରହ୍ମଙ୍କ ସାକ୍ଷାତ ।
ତେଣୁ ଭବ ଅସତ୍ୟତା ସ୍ୱତସିଦ୍ଧ ମଣି ।
ଅଗ୍ରସର ହେଲେ ଜୀବ ବ୍ରହ୍ମତତ୍ତ୍ୱ ଜାଣି
ଏହା ଶୁଣି ରାମଚନ୍ଦ୍ର ପଚାରନ୍ତି ଦେବ
ବ୍ରହ୍ମାଣ୍ଡ ଅନିତ୍ୟ ବୋଲି କିପରି ଜାଣିବ ?
ଚକ୍ଷୁଆଗେ ଦୀପ୍ତିମାନ ଯାର ପ୍ରକାଣ୍ଡତା
ନଦୀ, ଗିରି, ବନ, ଉପବନ ସୁସମତା
ଦେଖୁ ଦେଖୁ ଭୁଲିଯିବି କିପରି ତା ସତ୍ତା ?
ବୁଝିବାକୁ ଅକ୍ଷମ ମୁଁ ଆହେ ବ୍ରହ୍ମବେତ୍ତା ।

ଏହି ଦୃଶ୍ୟଜାଲ ଆଡ଼ମ୍ବର ମନ ମଧ୍ୟେ
କିପରି ତା ଅବସ୍ଥାନ କହୁ ଦୟାନିଧେ ?
ସୋରିଷ ମଧ୍ୟେ ସୁମେରୁ ପଶିବା ଯେସନ
ବ୍ରହ୍ମ ମଧ୍ୟେ ଜଗତର ପ୍ରବେଶ ତେସନ ।
କହନ୍ତି ବଶିଷ୍ଠ ମୁନି ଶୁଣ ହେ ରାଘବ
ଦିନେ ମାତ୍ର ତୁମ୍ଭେ ଯଦି ମୋ କଥା ପାଳିବ ।
ବେଦ ବିଧିରୁ ନିଜକୁ ରହିତ କରିବ
ତ୍ରିଗୁଣାତ୍ମକ ସକାମ ଯଜ୍ଞ ବରଜିବ ।
ଚିତ୍ତ ବିଚଳିତ ନୋହି ସ୍ଥିର ମନ ହେବ
ସତ୍‌ଶାସ୍ତ୍ର, ସତ୍‌ସଙ୍ଗମାନ ବରଣ କରିବ ।
ତେବେ କ୍ଷଣମଧ୍ୟେ ଦୃଶ୍ୟମଳି ହେବ ଲୀନ
ଏଥିରେ ସନ୍ଦେହ ନାହିଁ କୌଶଲ୍ୟା ନନ୍ଦନ ।
ମନେରଖ ଦୃଢ଼ଭାବେ କହୁଅଛି ମୁହିଁ
ତୁମ ମନ-ମଳି ନିଶ୍ଚେ ପୋଛି ମୁଁ ପାରଇ ।
ତେବେ ବୁଝିବ ଏ ଭବ ମୃଗତୃଷ୍ଣା ପରି
ଅଳୀକ ଅଟେ ହେ ରାମ ଭ୍ରମ ସତ୍ୟ ସରି ।
ମରୁପ୍ରାନ୍ତ ସୂର୍ଯ୍ୟରଶ୍ମୀ ଦିଏ ଜଳଭ୍ରମ
ଏହି ଜ୍ଞାନ ବିନାଶଇ ସେହି ଭ୍ରମ ଜାଣ ।
ଦୃଶ୍ୟ ଅଭାବରେ ଦ୍ରଷ୍ଟା ଶାନ୍ତିକୁ ପାଇବ
ଉଭୟ ଅଭାବେ ଶୁଦ୍ଧ-ଆତ୍ମସତ୍ତା ଲାଭ ।
ଦ୍ରଷ୍ଟା ଥିବାଯାଏ ଦୃଶ୍ୟ ଅବଶ୍ୟ ରହିବ
ଦୃଶ୍ୟ ଥିବା ପରିଯନ୍ତେ ଦ୍ରଷ୍ଟା କେଣେ ଯିବ ?
ଯଥା ଏକ ଅପେକ୍ଷାରେ ଦୁଇ ରହିଥାଏ
'ଦୁଇ' ଥିଲେ 'ଏକ' ପୁଣି ଯିବ କେଉଁଯାଏ ।
'ଦୁଇ' ଥିଲେ 'ଏକ' ଅଛି 'ଏକ' ଥିଲେ 'ଦୁଇ'
'ଏକ' ଯଦି ନାହିଁ 'ଦୁଇ' କେଉଁଠୁ ଆସଇ ।
ଗୋଟିକର ଅଭାବରେ, ଅଭାବ ଉଭୟେ
ମଞ୍ଜିର ଅଭାବେ ଯଥା ଗଛ ଦଶା ହୁଏ ।
ଦ୍ରଷ୍ଟା ଦୃଶ୍ୟ ପରସ୍ପର ଅପେକ୍ଷାରେ ଥାନ୍ତି
ଏକାଭାବେ ଉଭୟେ ଯେ ଅସ୍ତିତ୍ୱ ହରାନ୍ତି ।
'ଏକ' 'ଏକ' ଯୋଗେ ଯେଣୁ ଦୁଇ ହୋଇଯାଏ
ଦୁଇମଧ୍ୟେ 'ଏକ' ଥିବା ତହୁଁ ବୁଝାଯାଏ ।
ଦ୍ୱୈତବୋଧ ଅଭାବରେ ଏକତ୍ୱର ଲୋପ
ତେଣୁ ଏକତ୍ୱ ଅଭାବେ ଦ୍ୱୈତର ବିଲୋପ ।
ଏକ, ଦୁଇ ଭାବ ଯେବେ ହୁଏ ଅନ୍ତର୍ହିତ
ତାହା ପରେ ଯାହା ରହେ ତାହା ଶୂନ୍ୟବତ ।

ଦ୍ରଷ୍ଟା, ଦୃଶ୍ୟ ଭାବ ତଥା ହେଲେ ଅସ୍ତମିତ
ତଦାଶ୍ରୟ ବ୍ରହ୍ମସତ୍ତା ରହେ ଉପସ୍ଥିତ ।
ଦୃଢ଼ଭାବେ ଆହେ ବତ୍ସ କହୁଛି ଏସନ
ଯେପରି ଏ ଭବଭୟ ହେବ ବିନାଶନ ।
ଶୀଘ୍ର ତୁମ ମନେ ଭବ ଭ୍ରମ ସଞ୍ଚାରିବି
ମନ ମଳିନତା ତୁମ ଉଚ୍ଛେଦ କରିବି ।
କଣ୍ଟାରେ କଣ୍ଟା ଯେପରି କାଢ଼ିଥାନ୍ତି ବୁଧେ
ତୁମ ମିଥ୍ୟାବୋଧ ପୋଛି ଦେବି ରଘୁନିଧେ ।
ଯଦ୍ୱାରା ତୁମ ଅହଂତ୍ୱ ଭାବ ଯିବ ଧୋଇ
ମନ ମୁକୁର ରାଜିବ ସୁନିର୍ମଳ ହୋଇ ।
ସର୍ବ ଦୃଶ୍ୟା ମଳ ତୁମ ମନୁ ଯିବ ନାଶ
ଚିତ୍ତ-ଦର୍ପଣ ସ୍ୱଚ୍ଛତା ଲଭିବ ପ୍ରକାଶ ।
ବସ୍ତୁତ ଯାହା ଅସତ, କସ୍ମିନ୍‌କାଳେ ନାହିଁ
ଅସ୍ତିତ୍ୱ ତାହାର ଆଉ ଥିବ ଅବା କାହିଁ ?
ଯାହା କି 'ସତ୍' ଅସତ, ହେବ ସେ କିପରି
ସତ୍ୟତାର ଅପ୍ରଳାପ କେଭେ ନୋହି ପାରି ।
ଯାହା ଅବାସ୍ତବ, ତାହା, କସ୍ମିନ କାଳେ ନାହିଁ
ତାର ମାର୍ଜନା କରଣେ କଠିନତା କାହିଁ ?
ଏହି ଯେ ବିଶାଳ ଭବ ଯାହା ଦେଖୁଅଛ
କସ୍ମିନ କାଳେ ଉତ୍ପନ୍ନ ସେ ହୋଇନାହିଁ ବତ୍ସ ।
ଯାହା କିଛି ଦୃଶ୍ୟ, ସଦା ହୁଏ ଭାସମାନ
କେବଳ ସେ ଭ୍ରାନ୍ତିମାତ୍ର ବୁଝନ୍ତି ସୁଜାଣ ।
ନିର୍ମଳ ବ୍ରହ୍ମ ଚୈତନ୍ୟ ଅଟେ ଏ ଜଗତ
ଯେତେ ଭାବିଲେ ହେଁ ତାହା ଏକମାତ୍ର ସତ୍ୟ ।
ନାନା ରୂପ ଅଳଙ୍କାର ସୁବର୍ଣ୍ଣରୁ ହୁଏ
ଭୂଷଣେ ସୁବର୍ଣ୍ଣ ମଧ୍ୟେ ପ୍ରଭେଦ ନ ଥାଏ ।
ତାଦୃଶ 'ବ୍ରହ୍ମ', ଜଗତ, ମଧ୍ୟେ ନାହିଁ ଭେଦ ।
ଅଭିନ୍ନ ସେ ଜାଣ ଦୁହେଁ ଅଟନ୍ତି ଅଭେଦ ।
ଦୃଶ୍ୟମଳର ମାର୍ଜନା କରିବାର ପାଇଁ
ବହୁ ଯୁକ୍ତିଯୁକ୍ତ ତତ୍ତ୍ୱ ବୁଝାଇବି ମୁହିଁ ।
ଏ ଯେଉଁ ଜଗତ ତୁମ ଆଗେ ଭାସମାନ
କେହି କେବେହେଲେ ତାକୁ ଦେଇନାହିଁ ଜନ୍ମ ।
ମରୁସ୍ଥଳେ ପ୍ରବାହିତ ସ୍ରୋତସ୍ୱାତୀ ପରି
ଦ୍ୱିତୀୟ ଚନ୍ଦ୍ରମା ଯଥା ଗଗନେ ବିଚରି ।
କଳ୍ପନା ରାଜ୍ୟରେ ସିନା ଭବ ଭାସମାନ
ସତ୍ୟତା ଏଥିରେ କିଛି ନାହିଁ ରଘୁନାନ ।

ମରୁସ୍ଥଳ ନଦୀ, ନଭପଟ ବୃକ୍ଷଲତା
ବନ୍ଧ୍ୟା ପୁତ୍ର ପରି, ବୁଝ ଜଗତର ସତ୍ତା ।
ଏ ଜଗତ ପଦେ ପଦେ ଭ୍ରାନ୍ତିମୟ ବୋଲି
ବାରମ୍ବାର କହିଅଛି ଆହେ ରଘୁଶିରୀ ।
ଯାହା କିଛି ନୟନରେ କରୁଛ ଦର୍ଶନ
ହେତୁ ରଖ ତାହା ସେହି ନିରାମୟ ବ୍ରହ୍ମ ।
ଖାଲି କଥା ଛଳେ କହି ଯାଉନାହିଁ ଏହା
ଯୁକ୍ତି ପ୍ରମାଣ ସହିତ କହେ ରଘୁ ନାହା ।
ଗୁରୁ ଉପଦେଶ ଯେହୁ କରେ ଅନାଦର
ସ୍ୱପ୍ନ ଧନ ପ୍ରାପ୍ତି ସମ ସିଦ୍ଧିଟି ତାହାର ।
ଇତି ଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ
ଦୃଶ୍ୟ ଅସତ୍ୟ ପ୍ରତିପାଦନେ ନାମ ଷଷ୍ଠ ସର୍ଗ ।



## ସପ୍ତମ ସର୍ଗଃ
## ସତ୍‌ଶାସ୍ତ୍ର ନିର୍ଣ୍ଣୟ

ପୁଚ୍ଛନ୍ତି ଶ୍ରୀ ରାମଚନ୍ଦ୍ର ଶୁଣ ମୁନିବର
କିପରି ସେ ଯୁକ୍ତି ହେବ ଆମକୁ ଗୋଚର ।
କିପରି ସେ ଯୁକ୍ତି ବଳେ ଆତ୍ମପଦ ଲାଭ ?
ହୋଇପାରିବ କହନ୍ତୁ ହେ ମୁନି ପୁଙ୍ଗବ ।
ବୋଲନ୍ତି ବଶିଷ୍ଠ ବତ୍ସ ଶୁଣ ମୋ ବଚନ
ଯାହା ବଳେ ଜୀବ ଲଭେ ଦିବ୍ୟ ସୁଲୋଚନ ।
ଯାହାର ଗୋଟିଏ ନାମ ଅଟଇ ଜଗତ
'ମିଥ୍ୟାଜ୍ଞାନ' ବୋଲି ତାକୁ କହନ୍ତି ପଣ୍ଡିତ ।
ଅବିଚାର ରୁପିଣୀ ସେ ବିସୂଚିକା ରୋଗ
ବହୁକାଳ ଧରି ତାକୁ ଭୋଗୁଅଛି ଜୀବ ।
'ବିନା ତତ୍ତ୍ୱଜ୍ଞାନ' ତାର ଶାନ୍ତି ଅବା କାହିଁ ?
'ବିଚାରରୂପୀ ମନ୍ତ୍ର' ସେ ଶାନ୍ତି ପାରେ ଦେଇ ।
ତୁମ ବୋଧ ସିଦ୍ଧି ପାଇଁ ଆହେ ଦାଶରଥି
ଗପଟିଏ କହୁଅଛି ଶୁଣ ଦେଇ ମତି ।
ସ୍ଥିର ଚିତ୍ତେ ଶୁଣିଲେ ତା' ହେବ 'ମୁକ୍ତ ଆତ୍ମା'
ଅସ୍ଥିର ଚିତ୍ତେ ଶ୍ରବଣେ ହେବ 'ବଦ୍ଧ ଆତ୍ମା' ॥
ଉଦ୍‌ବେଗ ବଶତ ଯଦି କିୟଦ୍ ଅଂଶ ଶୁଣ
ତୀର୍ଯ୍ୟକ ଯୋନିରେ ତୁମ ହୋଇବ ଜନମ ।

ସତ୍‌ଶାସ୍ତ୍ର ଶ୍ରବଣେ ତୁମେ ହୋଇବ ଅଯୋଗ୍ୟ
ଲଘୁମତ ପୋଷିବେକ ସଦା ସୁଧିବର୍ଗ ।
ହତାଶ ନ ହୋଇ ବାରମ୍ବାର ଯତ୍ନ କଲେ
ଇପ୍‌ସିତ ବସ୍ତୁ ପ୍ରାପତ ହୋଇଥାଏ ଭଲେ ।
ସତ୍ସଙ୍ଗ, ସତ୍‌ଶାସ୍ତ୍ର ଦୃଢ଼ ଅଭ୍ୟାସରେ
ପରମ ପଦ ପ୍ରାପତି ହୋଇଥାଏ ଭଲେ ।
ପୁନଶ୍ଚ ଶ୍ରୀରାମଚନ୍ଦ୍ର ପଚାରନ୍ତି ମୁନେ
କେଉଁ ଶାସ୍ତ୍ର ପଢ଼ି ଆତ୍ମଜ୍ଞାନ ପାନ୍ତି ଜନେ ?
ଆତ୍ମଜ୍ଞାନ ବୃଦ୍ଧି ପାଇଁ କେଉଁ ଶାସ୍ତ୍ର ଶ୍ରେଷ୍ଠ
ବିଷଦଭାବେ ବୁଝାଇ କହ ତପି ଇଷ୍ଟ ।
ଯାହା ପଢ଼ି ଶୋକମୁକ୍ତ ହୋଇପାରେ ନର
ଫିଟାଇ କହି, ବିନାଶ ସଂଶୟ ମୋହର ।
କହନ୍ତି ବଶିଷ୍ଠ ଶୁଣ ରାମ ମହାମତେ
ଆତ୍ମଜ୍ଞାନ ପ୍ରତିପାଦ କରନ୍ତି ଯେ ଶାସ୍ତ୍ରେ ।
ଏହି 'ମହା-ରାମାୟଣ' ସର୍ବୋତ୍ତମ ଜାଣ
ଏହାକୁ ଅଧ୍ୟାତ୍ମ ଶାସ୍ତ୍ର କେବଳ ନ ମଣ ।
ଇତିହାସ ମଧ୍ୟେ ସର୍ବୋତ୍ତମ ଇତିହାସ
ଶ୍ରବଣ କରନ୍ତେ ଜ୍ଞାନ ହୁଅଇ ବିକାଶ ।
ସକଳ ଇତିହାସର ସାର ବସ୍ତୁ ଏହି
ତୁମ୍ଭଙ୍କୁ ଜୀବନମୁକ୍ତ କରିଦେବ ସେହି ।
ଯଥା ସ୍ୱପ୍ନ ପରେ ପରେ ସ୍ୱପ୍ନ ଭାସମାନ
ଜ୍ଞାନୋଦୟେ ଜ୍ଞାନପଥ ଫିଟିଯାଏ ଜାଣ ।
ଦରପଣ ପରି ସ୍ୱଚ୍ଛ ଏହି ରାମାୟଣ
ସକଳ, ସନ୍ଦେହ, ମାୟା, କରେ ନିବାରଣ ।
ଯାହା କିଛି ଏ ଶାସ୍ତ୍ରରେ ରହିଛି ବର୍ଣ୍ଣନ
ଅନ୍ୟ ଶାସ୍ତ୍ରମାନଙ୍କରେ ତା ବିରଳ, ରାମ ।
ଏ ଶାସ୍ତ୍ରେ ଯା ନାହିଁ, ତାହା ନାହିଁ ଅନ୍ୟ ଶାସ୍ତ୍ରେ
ଭଲ କରି ବୁଝିରଖ ଆହେ ରଘୁନାଥେ ।
ସର୍ବତତ୍ତ୍ୱ ପୁରି ଅଛି ଏହି ଶାସ୍ତ୍ର ମଧ୍ୟେ
ବିଜ୍ଞାନ ଭଣ୍ଡାର ବୋଲି କହନ୍ତି ବିବୁଧେ ।
ଶ୍ରଦ୍ଧା ସହ ଏହାକୁ ଯେ ନିତ୍ୟ ପାଠକରେ
ଶ୍ରବଣ କରେ, ଯେ ଶ୍ରଦ୍ଧାଯୁକ୍ତ ହୃଦୟରେ ।
ବୁଦ୍ଧିତୀକ୍ଷ୍ଣ ପୁଣି ଚିତ୍ତ ଉଦାରତା ବଢ଼େ
ପରମ ବୋଧ ପ୍ରାପତ ହୁଏ ଅନ୍ତକାଳେ ।
ହତଭାଗା ସେହି ଯାର ରୁଚି ନ ବଳଇ
ପାପାତ୍ମା ସେ ମୁକ୍ତିପଥ ଆଉ ତା'ର କାହିଁ ?

ପ୍ରଥମେ ସେ ନର ରାମ ଏମନ୍ତ କରିବ
ଯଥା ସାଧ୍ୟ ସବୁ ଶାସ୍ତ୍ରମାନଙ୍କୁ ପଢ଼ିବ ।
ତତପରେ ମହା ରାମାୟଣ ଅଧ୍ୟୟନ
କଲେ ଜୀବନ୍ମୁକ୍ତ ହେବ ଜାଣ ସେହି ଜନ ।
ଉତ୍କୃଷ୍ଟ ଔଷଧ ରୋଗୀ କଲେକ ସେବନ
ରୋଗ ମୁକ୍ତ ହୁଏ, କଟିଯାଏ ବ୍ୟାଧିମାନ ।
ଏହି ଶାସ୍ତ୍ର ଅଧ୍ୟୟନ ଅଥବା ପଠନ ।
କଲେ, ଅପସରି ଯାଏ ତିମିର ଅଜ୍ଞାନ ।
ଜ୍ଞାନ ସୂର୍ଯ୍ୟ ଉଦେ, ହୃଦେ ଅନ୍ଧକାର ନାଶ
ପରମ-ପଦ ପ୍ରାପତି, ଆତ୍ମାର ବିକାଶ ।
ପାଠକେ ବୁଝିପାରିବ ମୋର ଏ ଉକତି
'ବର' କିମ୍ବା 'ଅଭିଶାପ' ଏହା ତାହା ପ୍ରତି ।
ବର କିମ୍ବା ଅଭିଶାପ ଦେବନାହିଁ ମୁକ୍ତି
ସୁବିଚାର ଅଭ୍ୟାସରେ ମିଳେ ସେ ସୁଗତି ।
ସଂସାର ଭ୍ରମଣୀ କିମ୍ବା ଭବ ଭ୍ରମ ତାପ
ଆତ୍ମବିଚାର ବ୍ୟତୀତ, ଦୃଢ଼ ସେ ସନ୍ତାପ ।
ଦାନ, ତପ, ବେଦପାଠ, ଯଜ୍ଞ କର୍ମମାନ ।
କରି ନ ପାରନ୍ତି ଭବ ଦୁଃଖ ନିବାରଣ ।
**ଆତ୍ମ ବିଚାରର ହିଁ ଭବ ଦୁଃଖ ନାଶକାରୀ**
**ସଂସାର ଭ୍ରମ ନାଶନେ ଅଟେ ସୁଧାସରି ।**
ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ସତ୍ ଶାସ୍ତ୍ର ନିରୂପଣେ ନାମ ସପ୍ତମ ସର୍ଗଃ ।



## ଅଷ୍ଟମ ସର୍ଗଃ
## ପରମ କାରଣ

କହନ୍ତି ବଶିଷ୍ଠ ଶୁଣ ବତ୍ସ ରାମଚନ୍ଦ୍ର
ପରମ କାରଣ ଶୁଣି ଚିତ୍ତ କର ବୋଧ ।
ଚିତ୍ତ ଯାର ଅଭିନିଷ୍ଠ ପରମାତ୍ମା ତହିଁ
ବ୍ୟାକୁଳ ଯା'ର ପରାଣ ପରମାତ୍ମା ପାଇଁ,
ପ୍ରାଣ ପରିତୁଷ୍ଟ ପରମାତ୍ମା କଥା ଶୁଣି
ଚିତ୍ତ ଆନନ୍ଦିତ ଗୁଣି ପରମାତ୍ମା ବାଣୀ,
ବ୍ରହ୍ମଜ୍ଞାନ ପରାୟଣ ସେହିମାନେ ଜାଣ
ବ୍ରହ୍ମଜ୍ଞାନ ନିଷ୍ଠ ତାଙ୍କୁ କହନ୍ତି ସୁଜାଣ ।
ସେ ମହତ ଆତ୍ମାମାନେ ବ୍ରହ୍ମଙ୍କ ଅଟନ୍ତି
**ଜୀବନ୍ମୁକ୍ତ** ଆଖ୍ୟା ତାଙ୍କୁ ନୋହିବ ଅତ୍ୟୁକ୍ତି ।
ପରବର୍ତ୍ତୀ ସୋପାନଟି **ବିଦେହ ମୁକତି**
ସେ ଅବସ୍ଥା ବ୍ରହ୍ମପ୍ରାପ୍ତି ସମ ରଘୁପତି ।
ପଚାରନ୍ତି ରାମଚନ୍ଦ୍ର କହିବା ମହାନ
'ବିଦେହ ମୁକତି' ଜୀବନ୍ମୁକ୍ତିର ଲକ୍ଷଣ ।
ତାହା ଶୁଣି, ଶାସ୍ତ୍ର, ଯୁକ୍ତି ବୁଦ୍ଧି ଅନୁସରି
ସେ ପଦ ପାଇଁ ଚେଷ୍ଟିତ ହେବି ମୁଁ ଯେପରି ।
କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ଜୀବନ ମୁକ୍ତ ଲକ୍ଷଣ ଅଟେ ଯେ ପ୍ରକାର ।
ଏ ବିଶ୍ୱକୁ ନଭ ସମ ଶୂନ୍ୟ ମଣୁଥିବ
ହୃଦୟରେ ଦ୍ୱୈତ ଭ୍ରମ ଶାନ୍ତ ଲଭିଥିବ ।
ଶୁଭ କର୍ମ ଆଚରୁଣ ଥିବ ନିରନ୍ତର
ଆକାଶ ପରି ନିର୍ଲିପ୍ତ ହୃଦୟ କମଳ ।
ସର୍ବଦା ଅନିତ୍ୟ ଏ ବିଶ୍ୱକୁ ମଣୁଥିବ
ଦ୍ୱୈତଭ୍ରମ ହୃଦପଟୁ ଦୂର ହୋଇଯିବ ।
ନଭପରି ସୁନିର୍ମଳ ଥିବ ଯା'ର କାର୍ଯ୍ୟ
ନଭ ସଦୃଶ ନିର୍ଲିପ୍ତ ରହେ ଯେଉଁ ଆର୍ଯ୍ୟ,
ସଂସାର କ୍ଷେତ୍ରେ ସୁଷୁପ୍ତ ଭାବ ଆଚରିଣ
ଅଥଚ ନିଜ ସ୍ୱରୂପେ ଜାଗ୍ରତ ସେ ଜନ ।
ଜଗତ ଭ୍ରମ ଯାହାର ଲଭିଛି ନିବୃତ୍ତି
ଇଷ୍ଟ ଲାଭ କରି ନ ଫୁଲଇ ଯା'ର ଛାତି,
ଅନିଷ୍ଟରେ ନିଜକୁ ଯେ ନ ମଣେ ନିଊନ
ଦ୍ୱେଷ ରହିତ ଶୀତଳ ଯା ଅନ୍ତଃ କରଣ,
ଜୀବନ ମୁକତ ସେହୁ ଜାଣିମ ଶ୍ରୀରାମ
ଜୀବନ ମୁକ୍ତ ଲକ୍ଷଣ ଏହାହିଁ ପ୍ରମାଣ ।
ରାଗଦ୍ୱେଷ ଯୁକ୍ତ ଦୃଷ୍ଟି ନ ଥିବଟି ଯା'ର
ଇଷ୍ଟେ ସ୍ନେହ, ଅନିଷ୍ଟରେ ଦ୍ୱେଷ ନାହିଁ ଯା'ର,
ହୃଦୟରେ ଶାନ୍ତ ଭାବ ପୋଷଣ ଯେ କରେ,
ଜୀବନ ମୁକତ ସେହୁ ଜ୍ଞାନୀଙ୍କ ମତରେ ।
ଜ୍ଞାନ ନିଷ୍ଠ, ଅହଂଭାବ-ଶୂନ୍ୟ ଯେଉଁ ନର
ଜାଗରଣେ ସୁଷୁପ୍ତଙ୍କ ପରି ନିର୍ବିକାର ।
କର୍ମ କରଣେ ଅଥବା କର୍ମ ବରଜନେ
ଅନାସକ୍ତ ଯେହୁ, ଜୀବନ୍ମୁକ୍ତ ସେହିମାନେ ।
ଦୁଃଖରେ ଭାଙ୍ଗି ନ ପଡ଼େ ଯେବଣ ପୁରୁଷ
ଦୁର୍ଦ୍ଦଶାଗ୍ରସ୍ତ ହୁଅନ୍ତେ ନ ହୁଏ ହତାଶ,

ଯେ କୌଣସି ଜୀବିକାରେ ସନ୍ତୁଷ୍ଟ ଯା' ମନ
ଜୀବନ ମୁକତ ସେହୁ, ମୁନିଙ୍କ ବଚନ ।
ଜିତେନ୍ଦ୍ରିୟ ଯେହୁ, ଖ୍ୟାତି, ପିପାଷା, ବର୍ଜିତ
ଅପମାନ, ଭୟ, କ୍ରୋଧ ବର୍ଜିତ ଯା' ଚିତ୍ତ,
ସପନ ସଦୃଶ ଶୂନ୍ୟ ରହେ ଯା ଅନ୍ତର
ରୁଚି, ଅରୁଚି ନ ଥାଇ ସଦା ନିର୍ବିକାର,
ସମବୁଦ୍ଧି ଯେହୁ ସଦା ବିକାର ବିହୀନ
ସର୍ଜନା ପ୍ରଳୟ, ଯାହା ମତରେ ସମାନ ।
ପର୍ବତ ସମାନ ଯେହୁ ଅଚଳ ଅଟଳ
ଜୀବନ ମୁକତ ସେହୁ ଜାଣ ରଘୁବୀର ।
ଇଷ୍ଟ, ଅନିଷ୍ଟ ବିକାର ଯା' ହୃଦରେ ନାହିଁ
ବାସନା ରହିତ ଯା'ର ମାନସ ଅଟଇ,
ଜଗତ୍ ଦେଖେ ବ୍ରହ୍ମମୟ, ସ୍ୱ ସ୍ୱଭାବେ ସ୍ଥିତ,
ଜୀବନ ମୁକ୍ତ ଆଖ୍ୟା ତାକୁ ଦିଅନ୍ତି ପଣ୍ଡିତ ।
ନଟ ପରି ରାଗଦ୍ୱେଷ ଅଭିନୟ କରେ
କିନ୍ତୁ ସୁନିର୍ମଳ ଭାବ ରାଜେ ତା ଅନ୍ତରେ,
କର୍ତ୍ତବ୍ୟାକର୍ତ୍ତବ୍ୟ କିମ୍ବା ପାପ ପୂଣ୍ୟାଦିରେ
ବୁଦ୍ଧି ଯା'ର ଲିପ୍ତ ନୁହେଁ କସ୍ମିନ୍ କାଳରେ,
ଏ ସଂସାର ପ୍ରତି ଆସ୍ଥା ନ ଥାଏ ଯାହାର
ଇନ୍ଦ୍ରିୟ ଅଧିନ ହୋଇ ନ ଥାଏ ଯେ ନର,
ଆଉ କାହାକୁ ଜୀବନ ମୁକ୍ତ କୁହାଯିବ ?
ସ୍ୱ ପୂର୍ଣ୍ଣତା ସବୁଥିରେ ଯାର ଅନୁଭବ
ନିମିଷକେ ଯେ ଘଟାଏ ଉତ୍ପତ୍ତି ପ୍ରଳୟ
ସେହି ଏକା ଜୀବନ ମୁକ୍ତ ଜାଣ ରଘୁରାୟ ।
ଜୀବନ ମୁକ୍ତର ଥାଏ କିଞ୍ଚିତ ଆଭାସ
ବିଦେହ ମୁକ୍ତର କିଏ ଦେଲା ସେ ପ୍ରକାଶ ।
ବିଦେହ ମୁକ୍ତର ନାହିଁ ଜ୍ଞାନ ଆବରଣ
ଯେ ବିଦେହ ମୁକ୍ତ ତାର ରହେ ନାହିଁ ଚିହ୍ନ ।
ଜୀବନ ମୁକ୍ତ ଦଗଧ ହେଲେ ଦାଗମାତ୍ର ରହେ
ବିଦେହ-ମୁକ୍ତର କିନ୍ତୁ ସେ କଥା ନଥାଏ ।
ଦଗଧ ବସ୍ତୁର ଆଭାସ ଭସ୍ମ ରୂପେ ରହେ
ବିଦେହ ମୁକ୍ତର କିନ୍ତୁ ସେ କଥା ନଥାଏ ।
ଦେହ-ପାତ ପରେ ଯେହୁ ଜୀବନ ମୁକତ
ଜୀବନ-ମୁକ୍ତ-ପଦ ତାର ହୋଇଥାଏ ତ୍ୟକ୍ତ ।
ସ୍ଥିର ଗମ୍ଭୀର ରହି ସେ ବିଦେହ ମୁକତ
ନିଶ୍ଚିନ୍ତରେ ରହିଥାଏ ଆହେ ରଘୁନାଥ ।

ଚଞ୍ଚଲ୍ୟଭାବ ତେଜିଣ ପବନ ଯେପରି
ସ୍ଥିର ରହେ, ସେ ବିଦେହ ମୁକ୍ତ ସେହିପରି ।
ଜନମ, ମରଣ ନାହିଁ ବିଦେହ ମୁକ୍ତର
ଯେ ବିଦେହମୁକ୍ତ ସେହୁ ସଦା ଧୀରସ୍ଥିର ।
ବ୍ୟକତ କିମ୍ବା ଅବ୍ୟକ୍ତ ହୋଇ ସେ ନପାରେ
ଦୂରସ୍ଥ ବା ନିକଟସ୍ଥ ବିଚାର ବାହାରେ ।
ସର୍ବବ୍ୟାପୀ ଆଖ୍ୟା ତାକୁ ଦିଅନ୍ତି ପଣ୍ଡିତେ
ଇନ୍ଦ୍ରିୟାଦି ଭେଦ ତାର ନ ଥାଇ କିଞ୍ଚିତେ ।
ବିଦେହ-ମୁକତ ଅଟେ ଅହଂ ବିବର୍ଜିତ
କାୟ ମନୋବାକ୍ୟେ ତାର ନଥାଏ ଅହଂତ୍ୱ ।
ଇନ୍ଦ୍ରିୟ ପ୍ରଭାବ ତାର ଲଭିଥାଏ ଅସ୍ତ
ସେ ଅଟେ ସର୍ବାତ୍ମା-ବ୍ରହ୍ମ ସକଳ ସମ୍ମତ ।
ସୂର୍ଯ୍ୟରୂପେ ତାପ ଦିଏ ଯେହେତୁ ସେ ବ୍ରହ୍ମ
ଜଗତ ପାଳନକାରୀ ବିଷ୍ଣୁ ତାର ନାମ ।
ରୁଦ୍ର ରୂପେ ସଂହାରର କାରଣ ଅଟନ୍ତି
ପ୍ରଜାପତି ରୂପେ ସୃଷ୍ଟି ସର୍ଜନା କରନ୍ତି ।
ନଭେ ଅଣଚାଶ ବାୟୁସ୍ତର ସ୍ତର ହୋଇ
ବିରାଜମାନ କରନ୍ତି ସେହି ବିଶ୍ୱ ସାଇଁ ।
ଅଷ୍ଟ କୁଳାଚଳ ସେହି, ସେହି ହିମାଳୟ
ଦେବରଷି, ସୁରାସୁର ସବୁରି ନିଳୟ ।
ଭୂମି ରୂପେ ଧରନ୍ତି ସେ ସର୍ବ ଭୂତଗଣ
ତୃଣ, ଲତା, ରୂପେ ସାଧେ ପ୍ରାଣୀହିତମାନ ।
ଫଳ, ଶସ୍ୟ, ଉପୁଜାଇ ପ୍ରାଣୀ ହିତକରେ
ବିସ୍ମୃତି ତାଙ୍କର ଜୀବ କଳ୍ପନା ବାହାରେ ।
ଜଳ, ଅନଳ, ରୂପରେ ଦ୍ରବତ୍ୱ, ଉଷ୍ଣତ୍ୱ
ହରଣ କରି ସାଧନ୍ତି ଚରାଚର ହିତ ।
ଅମୃତ ଜ୍ୟୋତ୍ସ୍ନା ବରଷେ ଚନ୍ଦ୍ରମା ରୂପରେ
ହଳାହଳ ରୂପେ ମୃତ୍ୟୁ ବିସ୍ତାରିତ କରେ ।
ତମ ରୂପେ ଅନ୍ଧକାର କରଇ ପ୍ରକାଶ
ଦିକ୍‌ରୂପେ ତେଜରାଶି କରଇ ବିକାଶ ।
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ରୂପେ ବ୍ୟୋମ ସେହି
ପର୍ବତ ରୂପରେ ଅବରୋଧ ସେ କରଇ ।
ବ୍ୟକ୍ତ ଚଇତନ ରୂପେ ଜଙ୍ଗମ ଯେ ସେହି
ଅବ୍ୟକ୍ତ ଚୈତନ୍ୟ ରୂପେ ସ୍ଥାବର ବୋଲାଇ ।
ସିନ୍ଧୁ ରୂପରେ ଧରଣୀ-ରମଣୀ ଭୂଷଣ
ସର୍ଜନା କର୍ମରେ ତାଙ୍କ ନଥାଇ ବିରାମ ।

ଅଣଆବୃତ ଚିଦାତ୍ମା ରୂପେ ସେ ମହାନ
ସବୁ ଆବୋରି ପ୍ରଶାନ୍ତ ରୂପେ ବିଦ୍ୟମାନ ।
ସ୍ୱ ପ୍ରକାଶ ନିର୍ବିକାର ଅନାଶକ୍ତ ସେହି
ତାଙ୍କର ପ୍ରକାଶ ପାଇଁ ବାକ୍ୟ ନ ଦିଶଇ ।
ଭୂତ, ଭବିଷ୍ୟତ, ବର୍ତ୍ତମାନ ସେ ଅଟନ୍ତି
ତ୍ରିକାଳରେ ଯାହା ଦୃଶ୍ୟ ସବୁ ପ୍ରକାଶନ୍ତି ।
କହନ୍ତି ଶ୍ରୀ ରଘୁବୀର ଶୁଣ ମହାଭାଗ
ଅତି କଠିନ ଜୀବ ମୁକତିର ମାର୍ଗ ।
ଇଷ୍ଟ ଅନିଷ୍ଟରେ ସମ ଶାନ୍ତଭାବ ଧରି
କିପରି ଗତି କରିବ କହ ତପଚାରୀ ?
କହନ୍ତି ବଶିଷ୍ଠ ଶୁଣ ଆହେ ଦାଶରଥି
ଇଷ୍ଟ ଅନିଷ୍ଟ କେବଳ ଅଜ୍ଞାନୀ ଗଣନ୍ତି ।
ଜ୍ଞାନିଙ୍କୁ ସେ ସବୁ ଜାଣ ଚିଦାକାଶ ସମ
ତାଙ୍କପାଇଁ ରାଗଦ୍ୱେଷ ସକଳ ସମାନ ।
ଜଗତ ବୁଝଇ ତାଙ୍କୁ ସର୍ବଦା ଆସକ୍ତ
ବାସ୍ତବରେ ଜୀବନ୍ମୁକ୍ତ ପୂର୍ଣ୍ଣ ଅନାସକ୍ତ ।
**କିଛିକାଳ ଦେହଧରି ଜୀବନ ମୁକତ**
**ଶରୀର ଛାଡ଼ିଲେ ହୁଏ ବ୍ରହ୍ମ ପଦପ୍ରାପ୍ତ ।**
ଯଥା ବାୟୁ ସ୍ପନ୍ଦ ତେଜି ନିସ୍ପନ୍ଦ ହୁଅଇ
ଜୀବନମୁକ୍ତ ତେସନ ବିଦେହ ହୁଅଇ ।
କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ଗୁରୁଦେବ
ମୋହର ସନ୍ଦେହ ଏବେ ମୋଚନ କରିବ ।
ଦେହୀ ପକ୍ଷେ ସମଦୃଷ୍ଟି ନିତାନ୍ତ ଦୁର୍ଲ୍ଲଭ
ଚିତ୍ତ ତାହାର ଅତ୍ୟନ୍ତ ଅସ୍ଥିର ଜାଣିବ ।
ତେଣୁ ମୁଁ ଭାବୁଛି ଏ ମୁକତି ନରପାଇଁ
ନିତାନ୍ତ ଦୁର୍ଲ୍ଲଭ ଅଟେ ଆହେ ତପୀସାଇଁ ।
କହନ୍ତି ବଶିଷ୍ଠ ରାମ ଶୁଣ ମୋ ବଚନ
**ସାଧୁମତେ ବ୍ରହ୍ମ 'ମୁକ୍ତି' ବ୍ରହ୍ମ ହିଁ 'ନିର୍ବାଣ' ।**
କିପରି ତା ଲାଭ ହେବ କରୁଛି ବର୍ଣ୍ଣନ
ଧୀର, ସ୍ଥିର ଚିତ୍ତେ ତାହା କରିବା ଶ୍ରବଣ ।
ଆମେ, ତୁମେ, ଏହା, ତାହା, ମାୟାର କାରଣ
ସେହି ମାୟାରୁ ଜଗତ ହୁଅଇ ସର୍ଜନ ।
ଅଳୀକ ଅଟେ ଏ ଭବ ବନ୍ଧ୍ୟାପୁତ୍ର ସମ
ବର୍ଣ୍ଣିତ ପ୍ରକାର ମୁକ୍ତି ପ୍ରାପତି ସୁଗମ ।
ପୁଛନ୍ତି ଶ୍ରୀ ରାମଚନ୍ଦ୍ର ଆହେ ଭଗବାନ
ବିଦେହ ମୁକତଙ୍କର କରଣୀ ଏସନ ।

ତ୍ରିଲୋକର ଯାବତୀୟ କର୍ମ ସମ୍ପାଦନ
କରୁଅଛନ୍ତି ବୋଲିଣ କହିଲେ ଆପଣ ।
କି କାରଣ ହେତୁ ଦେବ ସେହିମାନଙ୍କର
ତ୍ରିଲୋକ ଭ୍ରମ ନ ହୁଏ କହ ମୁନିବର ?
କହନ୍ତି ବଶିଷ୍ଠ ତାହା ଶୁଣ ଆହେ ରାମ
ତ୍ରିଭୁବନ ବୋଲି କରି କିଛି ନାହିଁ ଜାଣ ।
କେବଳ ଅଜ୍ଞାନୀ ହୃଦେ ଜଗଦାଡ଼ମ୍ବର
ଜାଗି ରହିଥାଏ, ଜାଣ ଆହେ ରଘୁବୀର ।
ଏ ସବୁ ଜ୍ଞାନ ବାନକୁ **'ଚିଦାକାଶ'** ସମ
ତା ପାଇଁ କଳ୍ପନା ବସ୍ତୁ ଏ ଜଗତ ଜାଣ ।
ସେହି ଏକା ଜାଣ ରାମ ବିଦେହ ମୁକତ
ଉଦୟ ବା ଅସ୍ତଜ୍ଞାନ ନ ଥାଏ ଯା ଚିତ୍ତ ।
ଶୁଦ୍ଧ ବୋଧ ମାତ୍ର ଅଟେ ଯେଉଁ ବ୍ରହ୍ମ ଜ୍ଞାନ
ତା' ଅନ୍ତର ଦେଶେ କରିଥାଏ ଅବସ୍ଥାନ ।
କେବେ ହେଲେ ଏ ଜଗତ ଉପୁଜି ତ ନାହିଁ
ଅଜ୍ଞାନୀକୁ ଭ୍ରମ ବଶ ପ୍ରତୀତ ହୁଅଇ ।
"ଆମ୍ଭେ, ତୁମ୍ଭେ, ଏ ଜଗତ" ସକଳ ଆକାଶ
ଅସତ୍ୟ ବିନା ସତ୍ୟର ନାହିଁ ଅବକାଶ ।
ଆକାଶର ସୁନୀଳିମା, ଦ୍ୱିତୀୟ ଚନ୍ଦ୍ରମା
ମରୁସ୍ଥଳ ଜଳ ପରି ମନର କଳ୍ପନା ।
ଅବିକଳ ସେହିପରି ଆତ୍ମାରେ ଜଗତ
ଭାସମାନ ହେଉଅଛି ଆହେ ରଘୁନାଥ ।
ସ୍ଥିର ଚିତ୍ତ ହୋଇ ମୁହିଁ କରିଛି ସିଦ୍ଧାନ୍ତ
ସୁବର୍ଣ୍ଣ ବଳୟ ଯଥା ସଂଜ୍ଞା କଳପିତ ।
ବସ୍ତୁଧର୍ମ ବିଚାରରେ ସେ ବଳୟ ଖାଲି
ସୁବର୍ଣ୍ଣ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ।
ଜଳତରଙ୍ଗରେ ଜଳ ବିନା ଅନ୍ୟ କିଛି
ନାହିଁ ବୋଲି, ଏ ଧାରଣା ଦୃଢ଼ ମୋର ଅଛି ।
ବାୟୁ, ବାୟୁ ସ୍ପନ୍ଦନରେ କିଛି ଭେଦ ନାହିଁ
ତଥା ବ୍ରହ୍ମ ବିନା ଭବ ଅନ୍ୟ କିଛି ନୋହି ।
ଆକାଶ ଶୂନ୍ୟତା ପୁଣି ମରୁଭୂମି ତାପ
ଆଲୋକରେ ତେଜ ଯଥା ସ୍ୱତଃ ସିଦ୍ଧରୂପ ।
ଅବିକଳ ଏ ଜଗତ ସେ ପରଂ ବ୍ରହ୍ମରେ
ଅବସ୍ଥାନ କରିଅଛି ଆହେ ରଘୁବୀରେ ।
ଜ୍ଞାନୀଙ୍କ ମତେ ଜଗତ କଳ୍ପ ନାହିଁ ଭ୍ରମ
ତାଙ୍କ ତହିଁ ଜଗତ୍ଭ୍ରମ ଆସିବ କେସନ ?

ଏ ଜଗତ ଭ୍ରମ ବୋଲି ଆଗୁ ମୁଁ କହିଛି
ଜଗତର ସତ୍ତା ଆଉ କାହୁଁ ସମ୍ଭବୁଛି ?
କହନ୍ତି ଶ୍ରୀରାମଚନ୍ଦ୍ର ଆହେ ତପୀସାଇଁ
ଭବ ଭ୍ରମ ନାଶ ବିନା ଆତ୍ମବୋଧ କାହିଁ ?
ଯେବଣ ଯୁକତି ବଳେ ଏହି ଭବଭ୍ରମ
ସମୂଳେ ବିନାଶ ହେବ କହନ୍ତୁ ଆପଣ ।

## ବଶିଷ୍ଠ ଉବାଚ

ଦୃଶ୍ୟ, ଦ୍ରଷ୍ଟା ମଧ୍ୟେ ଯେଉଁ ମିଥ୍ୟା ଭ୍ରମ ଅଛି
ଏବେ ତାହା ଜାତହୋଇ ଆତ୍ମଙ୍କୁ ଭଣ୍ଡୁଛି ।
ଦୁହିଁଙ୍କ ମଧ୍ୟରୁ ହେଲେ ଏକର ଅଭାବ
ଆପେ ଆପେ ଘଟିଯାଏ ଦୁହିଁଙ୍କ ଅଭାବ ।
ଦୁହିଁଙ୍କ ଅଭାବ ଏକାବେଳେ ଯେବେ ଆସେ
ଶୁଦ୍ଧ ବୋଧ ହିଁ କେବଳ ରହେ ଅବଶେଷେ ।
ବହୁ କାଳ ଧରି ଏହି ଭବ ମିଥ୍ୟା ଜ୍ଞାନ
ବଦ୍ଧ ମୂଳ ରହିଅଛି ମାନବ ହୃଦେଣ ।
ସୁବିଚାର ବଳେ ତାହା ନିର୍ମୂଳ ଲଭିବ
ଯୁକ୍ତି ସହ ବଖାଣୁଛି ଶୁଣ ହେ ରାଘବ ।
ମିଥ୍ୟାଜ୍ଞାନ ଅଟେ ଏକ ପରକାର ରୋଗ
ବିଚାର-ଶାନ୍ତି ମନ୍ତ୍ରେ ତା ଦୂରୀଭୂତ ହେବ ।
ନଭଶିଖେ ଆରୋହଣ ବା ଅବରୋହଣ
ସର୍ବଥା ଦୁଃସାଧ୍ୟ ଅଟେ ହେ ରଘୁନନ୍ଦନ,
ବଦ୍ଧମୂଳ ଅଜ୍ଞାନର ମୂଳ ଉତ୍ପାଟନ
ସହସା କରି ପାରିବା ଦୁଃସାଧ୍ୟ ସାଧନ ।
ଅଭ୍ୟାସଯୋଗ, ଯୁକତି, ନ୍ୟାୟ ଉପଦେଶ
ଯଦ୍ଦ୍ୱାରା ଏ ଜଗତ୍ ଗ୍ରନ୍ଥି ହୋଇପାରେ ଶେଷ,
ସେ ଉପାୟ ତୁମ ଆଗେ କରଇ କୀର୍ତ୍ତନ
ମନ କର୍ଣ୍ଣ ଦେଇ ତାହା କରିବା ଶ୍ରବଣ ।
ଯେଉଁ ଆଖ୍ୟାୟିକା ତୁମବୋଧ ଶକ୍ତି ପାଇଁ
ବର୍ଣ୍ଣନ କରୁଛି ତାହା ଶୁଣ ଧ୍ୟାନ ଦେଇ ।
ନିଶ୍ଚିତ ଭାବରେ ମୁକ୍ତି ଲଭିବ ହେ ରାମ
ଉତ୍ପତ୍ତି ପ୍ରକରଣକୁ ଏବେ ମୋଠୁଁ ଶୁଣ ।

ଅବଶ୍ୟ ଏ ଭବଗ୍ରନ୍ଥି ଫିଟିବ ତୁମର
ସୁଜ୍ଞାନ ମାର୍ତ୍ତଣ୍ଡ ଉଇଁ ଦିଶିବ ଉଜ୍ଜ୍ୱଳ ।
**"ଏ ଜଗତ ମିଥ୍ୟା"** ଜ୍ଞାନ ନୋହିଲେ ଉଦୟ
ଆତ୍ମବୋଧ ଅସମ୍ଭବ ଆହେ ରଘୁରାୟ ।
ମୋର ଏ ଯୁକତିମାନ କରିଲେ ଶ୍ରବଣ
ଦୂରୀଭୂତ ହେବ ତୁମ ଜଗତ୍-ଭ୍ରମ ଜ୍ଞାନ ॥
ଜୀବନମୁକତ ହୋଇ ଏ ଜଗତ ମଧ୍ୟେ
ବିଚରଣ କରୁଥିବ ମନର ଆନନ୍ଦେ ॥
ଯା ତୁମେ ଏକ ଜଗତେ ଦେଖୁଛ ଶ୍ରୀରାମ
ଦେବ, ଆସୁର, କିନ୍ନର, ସ୍ଥାବର, ଜଙ୍ଗମ,
ନର, ବ୍ରହ୍ମା, ମହେଶ୍ୱର, ବିଷ୍ଣୁ ଆଦି ଯେତେ
ଯାହା କିଛି ଦେଖ ରାମ ତୁମ ବେନି ନେତ୍ରେ,
ମହା ପ୍ରଳୟରେ ସର୍ବେ ଲଭନ୍ତି ବିନାଶ
କାହାର ହିଁ ଚିହ୍ନ ମାତ୍ର ନ ରହଇ ଶେଷ ।
ନ ରହଇ ଗ୍ରହ, ତାରା, ନକ୍ଷତ୍ରଙ୍କ ପନ୍ତା
ନ ରହଇ ଅସତ୍ୟର ଲେସମାତ୍ର ସତ୍ତା ।
ଶୂନ୍ୟ, ଦ୍ରଷ୍ଟା, ଅନ୍ଧକାର, ଚେତନ, ପ୍ରକାଶ
ଜଡ଼, ଜ୍ଞାନ, ନିରାକାର, ଅକିଞ୍ଚନ, ଦୃଶ୍ୟ
କେବଳ, ଅ କେବଳ ଓ ଅଜ୍ଞାନ, ସାକାର
କାହାରି ତ ନ ରହଇ ଆକାର ବିକାର ।
ସର୍ବ ଶବ୍ଦ ବିରହିତ ଏକମାତ୍ର ସେହି
ଅଖଣ୍ଡ ସତ୍ତା ଯାହାକୁ ନ ଜାଣନ୍ତି କେହି ।
ଅନିର୍ଦ୍ଦେଶ୍ୟ ସତ୍ ସେହି କଳନା ଅତୀତ
ଦୃଶ୍ୟ ନୁହେଁ ଭାବ ଅଭାବରୁ ବିରହିତ ।
ତା' ମଧ୍ୟକୁ ବାଣୀ ପ୍ରବେଶିବା ଅସମ୍ଭବ
ଅଚେତନ ଚୈତନ୍ୟ ସେ, କେ ତାକୁ ବୁଝିବ ?
'ମୁଁ 'ତୁ' ଭାବ କଳପନା ନାହିଁ ତାହାଠାର
ତାହା କେବଳ ଚିନ୍ମାତ୍ର ଅଜର ଅମର ।
ପୂର୍ଣ୍ଣାପୂର୍ଣ୍ଣ, ଆଦି, ମଧ୍ୟ, ଅନ୍ତର, ବାହାର
ଚିତ୍ତ ରହିତ, ଚିତ୍ ସେ ସବୁରି ଉପର ।
ସେହି ଏକା ସର୍ବବ୍ୟାପୀ 'ସତ୍' ପରଂବ୍ରହ୍ମ
ଆତ୍ମସତ୍ତା ଏକ-ରସ ଭୋଗୀ ନିରଞ୍ଜନ ।
ଅତଃ ପର ସେହି ସତ୍ତା ହୋଇ ପ୍ରସ୍ଫୁରଣ
ପୁନର୍ବାର କରଇ ସେ ଜଗତ ସର୍ଜ୍ଜନ ।

**ମୁକ୍ତା, ମୁକ୍ତାଭୋଗୀ ହଂସ * ମଧ୍ୟେ ଯେ ସମ୍ବନ୍ଧ**
**ସେହି ସମ୍ବନ୍ଧ ରହିଛି ବ୍ରହ୍ମ ଜଗତ୍ ମଧ୍ୟ ।**
**ମରୀଚିକା ଦେଖି ଯଥା ଜଳ ଭ୍ରମ ହୁଏ**
**ଆତ୍ମାରେ ଜଗତ ତଥା ଭାସେ ରଘୁରାଏ ।**
**ଚିତ୍‌ଶକ୍ତି ସ୍ପନ୍ଦନରେ ଜଗତ ସର୍ଜନ**
**ନିସ୍ପନ୍ଦରେ ଜଗତର ପ୍ରଳୟ ତେସନ ।**
ପ୍ରଳୟ କାଳରେ କିମ୍ବା ସର୍ଜନା କାଳରେ
ଏକମାତ୍ର ଆତ୍ମସତ୍ତା ରହି କାର୍ଯ୍ୟକରେ ।
ଧଳାଲୁଗା ରଙ୍ଗେଇଲେ ରଙ୍ଗ ତା ଚହଟେ ।
ରଙ୍ଗିନ ଲୁଗାରେ ରଙ୍ଗ ତେସନ ନ ଘଟେ ।
ବ୍ରହ୍ମରୁ ଅସ୍ତିତ୍ୱ ସ୍ପନ୍ଦନରୁ ଜଣାଯାଏ
ବିନା ସ୍ପନ୍ଦରେ ବ୍ରହ୍ମର କଳ୍ପନା ନ ହୁଏ ।
ନଭର ଶୂନ୍ୟତା ଯଥା ଅଗ୍ନିର ଉଷ୍ଣତା
ଆତ୍ମାରେ ସାରା ଜଗତ ଭାସମାନ ତଥା ।
ଜଳର ତାରଲ୍ୟ ଘେନି ତରଙ୍ଗ ସମ୍ଭବ
ଆତ୍ମସତ୍ତା ସ୍ପନ୍ଦନରୁ ଜଗତ ଉଦ୍ଭବ ।
ବିଶୁଦ୍ଧ ଅଟନ୍ତି ସେହୁ ଯେସନ ଆକାଶ
ନାହିଁ ତାଙ୍କ ଚକ୍ଷୁ, ଚର୍ମ, ଦେହ, ଶବ୍ଦ ସ୍ପର୍ଶ ।
ଶ୍ରବଣ, ନାସିକା, ଦେହ, ରୂପ, ରସ ନାହିଁ
ଗନ୍ଧ ରହିତ, ସକଳ ଶୁଣନ୍ତି ଯେ ସେହି ।
ଶୁଣି ଶୁଣାନ୍ତି ସେ ପୁଣି ସ୍ପର୍ଶ ନ କରନ୍ତି
ଇଚ୍ଛା ହେଲେ ସର୍ବ ରସ ଗ୍ରହଣ କରନ୍ତି ।
ଆତ୍ମରୂପୀ ସୂର୍ଯ୍ୟଙ୍କର କିରଣ ମଧ୍ୟରେ
ନୃତ୍ୟ କରୁଛନ୍ତି ଜଳ-ତ୍ରିଲୋକୀ ସ୍ଫୁର୍ତ୍ତିରେ ।
ଜଳର ଡଆଁର ଜଳଠାରୁ ନୁହେଁ ଭିନ୍ନ
ତେସନେ ଜଗତ ଜାଣ ବ୍ରହ୍ମରୁ ଅଭିନ୍ନ ।
ଜିହ୍ୱା ନ ଥାଇ ବଚନ ବୋଲି ସେ ପାରନ୍ତି
ମୂକ ହୋଇ ଅନଗଳ ବକ୍ତୃତା କରନ୍ତି ।
ନିତ୍ୟ ତୃପ୍ତ ହେଲେ ସୁଦ୍ଧା ଭକ୍ଷଣ କରନ୍ତି
ନିଷ୍କ୍ରିୟ ହେଲେ ହେଁ, ସର୍ବ କାର୍ଯ୍ୟ ସେ ସାଧନ୍ତି ।
ଅଙ୍ଗହୀନ ହେଲେ ହେଁ ସେ ସର୍ବାଙ୍ଗ ଅଟନ୍ତି
ଅଦ୍ୱୈତ ହେଲେହେଁ ଦ୍ୱୈତ ରୂପ ସେ ଧରନ୍ତି ।

ନିରାକାର ହୋଇ ମଧ୍ୟ ଆକାର ଧରନ୍ତି
କର ନ ଥାଇ ସହସ୍ର କର ସେ ବୋଲାନ୍ତି ।
ଚକ୍ଷୁ ନ ଥାଇ ବୋଲାନ୍ତି ସହସ୍ର ଲୋଚନ
ଆକାର ନ ଥାଇ ତ୍ରିଜଗତ ବିଚରଣ ।
ବିନା ଇନ୍ଦ୍ରିୟରେ ବହୁ ଇନ୍ଦ୍ରିୟର କାର୍ଯ୍ୟ
କରି ସେ ଦେଖାନ୍ତି ରାମ ନୁହେଁ କି ଆଶ୍ଚର୍ଯ୍ୟ ?
ବ୍ରହ୍ମ ମଧ୍ୟେ କେଉଁଠାରେ ନ ଥିଲେ ହେଁ ମନ ।
ମନର ସକଳ କାର୍ଯ୍ୟ କରେ ସେ ସମ୍ପୂର୍ଣ୍ଣ ।
ଯାହାକୁ ନ ଦେଖି, ଭ୍ରମ ଜନମେ ଜୀବର
ଆତ୍ୟନ୍ତିକ ଭୟ ହୁଏ ସଂସାର ସର୍ପର ।
ଯାର ଦରଶନେ ସର୍ବ କାମ ପରିପୂର୍ଣ୍ଣ
ଯା' ଦର୍ଶନ କରେ ସର୍ବ ଭୟ ନିବାରଣ ।
ଉଜ୍ଜ୍ୱଳ ଆଲୋକେ ଯଥା ଅଭିନୟକାରୀ
ନୃତ୍ୟକଳା ଦେଖାଇଣ ମନ ନ୍ୟନ୍ତି ହରି ।
ସାକ୍ଷୀ ରୂପେ ସେହି ଯେବେ ଚିତ୍ତରେ ବସନ୍ତି
ସ୍ପନ୍ଦନରେ ଚେଷ୍ଟାମାନ କରାଉଣ ଥାନ୍ତି ।
ଅସଂଖ୍ୟ ଲହରି ଉଠେ ଯଥା ଜଳଧିରେ
ବହୁ କ୍ରିୟା ଘଟେ ବ୍ରହ୍ମ ଥିବାରୁ ଦେହରେ ।
କେୟୁର କଙ୍କଣ ଯଥା କାଞ୍ଚନରୁ ଜାତ
ତଥା ବ୍ରହ୍ମ ନାନାରୂପେ ହୁଏ ପ୍ରକାଶିତ ।
ନର ହୃଦରୁ ଅଜ୍ଞାନ ଯେବେ ହୁଏ ଅସ୍ତ ।
ସେହି ବୋଧାତ୍ମା ତହିଁରେ ହୁଏ ପ୍ରତିଭାତ ।
ଯେଉଁ ଆତ୍ମା ତୁମ୍ଭ ମଧ୍ୟେଛନ୍ତି ବିରାଜିତ
ସବୁ ଜୀବଧାରୀ ମଧ୍ୟେ ଛନ୍ତି ଉପସ୍ଥିତ
ଏକଇ ବସ୍ତୁ ଅଟନ୍ତି ସେହି ଚିଦ୍ ଆତ୍ମା
ଏକରୁ ଅଧିକ କେଉଁ ନୁହନ୍ତି ମହାତ୍ମା ।
ଅଜ୍ଞାନୀମାନେ ହିଁ ଭେଦ ସର୍ଜନା କରନ୍ତି
'ତୁମେ', 'ଆମେ', ଆଦି ଭ୍ରମେ ଘାରି ହେଉଥାନ୍ତି ।
ସଲିଳ, ତରଙ୍ଗ ମଧ୍ୟେ ପ୍ରଭେଦଟି ଯାହା
ଭବ, ଦୃଶ୍ୟ ବିସ୍ମୃତିରେ ଭେଦାଭେଦ ତାହା ।
ତେଣୁ ହେମନ୍ତାଦି ଋତୁମାନଙ୍କ ଉତ୍ପତ୍ତି
ପୁନଃ ପୁନଃ ଆବର୍ତ୍ତନେ, ଲାଗି ରହିଥାନ୍ତି ।

* ହଂସ ମୁକ୍ତୋଭାଗୀ ଅର୍ଥାତ୍ ମୁକ୍ତାର ଶୁକ୍ତି (ଶାମୁକା ମାଂସ) ଭକ୍ଷଣ କରେ ଏବଂ ତାହାଦ୍ୱାରା ତାହାର ଶରୀର ବୃଦ୍ଧିପାଏ । ସୂକ୍ଷ୍ମ ବିଚାରରେ, ହଂସର ଶରୀର ମୁକ୍ତାର ପରିଣାମ ମାତ୍ର । ସେହି ଦୃଷ୍ଟିରୁ ଆଗେ ମୁକ୍ତା ଓ ପରେ ହଂସ ଏବଂ ମୁକ୍ତାହିଁ ହଂସ କୁହାଯାଏ । ଅତଏବ ପ୍ରଥମ ସତ୍ (ବ୍ରହ୍ମ) ପରେ ଜଗତ ଅର୍ଥାତ୍ ସତ୍ ବ୍ରହ୍ମହିଁ ଜଗତ ।

ସେ ଘେନି ଦୃଶ୍ୟ ସକଳ ଦର୍ଶନୀୟ ବସ୍ତୁ
ଏ ଜଗତ ପ୍ରକାଶିତ ଜାଣ ସେହି ହେତୁ ।
ସେ ସକଳକ୍ରିୟା ରୂପ, ରସ, ଗନ୍ଧ, ଆଦି
ସବୁତ ଅଟନ୍ତି ସେହି, ପରମ ଅନାଦି ।
ଯାହା ଘେନି ଏହି ସବୁ ତୁମେ ଜାଣୁଅଛ
ତାହା ମଧ୍ୟ ସେ ଅନାଦି ବ୍ରହ୍ମହିଁ ପ୍ରତ୍ୟକ୍ଷ ।
ଦ୍ରଷ୍ଟା, ଦରଶନ, ଦୃଶ୍ୟ, ମଧ୍ୟେ ଯେ ପ୍ରକାଶ
ଚୈତନ୍ୟ ସ୍ୱରୂପ ଜାଣ ସେହି ଅବିନାଶ ।
ତାକୁ ଯେବେ ଅବଗତ ହୋଇପାରେ ଜୀବ
ସୁନିଶ୍ଚିତ ଆତ୍ମଜ୍ଞାନ ଲଭି ସେ ପାରିବ ।
ଅଜ, ଅମର, ଅନାଦି, ଶାଶ୍ୱତ, ଅମଳ
ଅଦ୍ୱୈତ, ଅକାରଣ ସେ ମଙ୍ଗଳ, ଅଜର,
ଶୂନ୍ୟପ୍ରାୟ ସେ ଅଟନ୍ତି, ମୁରତି ବିହୀନ
ସେହି ଏକା ସର୍ବ କାରଣର ଯେ କାରଣ ।
ଅନୁଭବ ରୂପି ସେହି ଅଥଚ ଅବେଦ୍ୟ
ସବୁରି ଗୋଚର ହୀନ, ସବୁରି ସେ ଆଦ୍ୟ ।
ଅନୁକ୍ଷଣ ଚରାଚର ବିଶ୍ୱକୁ ଜାଣନ୍ତି
ଅଜ୍ଞେୟ ତାଙ୍କର କିଛି ନାହିଁ ରଘୁପତି ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ପରମ କାରଣ ବର୍ଣ୍ଣନେ**
**ନାମ ଅଷ୍ଟମ ସର୍ଗଃ ।**



## ନବମ ସର୍ଗଃ
## ପରମାତ୍ମା ସ୍ୱରୂପ

ଏହା ଶୁଣି ରାମଚନ୍ଦ୍ର କହନ୍ତି ବଚନ
ମହା ପ୍ରଳୟେ ସବୁରି ହୁଏ ଅବସାନ ।
ଅବଶିଷ୍ଟ ରହିଥାନ୍ତି ସତ୍ ରୂପି ବ୍ରହ୍ମ
ନିରାକାର ଅଟନ୍ତି ସେ ଆବର ଅନାମ ।
ଏକମତ ହେଲି ମୁହିଁ ସନ୍ଦେହ ମୋ ନାହିଁ
ମାତ୍ର କେତୋଟି ଉତ୍ତର କହନ୍ତୁ ଗୋସାଇଁ ।
କିନ୍ତୁ ଆଲୋକ ନୁହେଁ ସେ ନୁହେଁ ଅନ୍ଧକାର
ଶୂନ୍ୟ ନୁହେଁ କି ପ୍ରକାଶ ନଥାଇ ତାହାର ।
ବୁଦ୍ଧି ନୁହଁନ୍ତି କି ଅବା ମନ ସେ ନୁହଁନ୍ତି
ଚେତନ ବା ଅଚେତନ କିଛି ନ ବୋଲାନ୍ତି ।
ଅଥଚ ସେ ସବୁବୋଲି କହିଲେ ଆପଣ
ମୋହଗ୍ରସ୍ତ କରେ ମୋତେ ତବ ଏ ବଚନ ।
ଏଥିର ତାତ୍ପର୍ଯ୍ୟ ଦେବ କହିବାକ ମୋତେ
ମନର ଉଦ୍‌ବେଗ ମୋର ଖଣ୍ଡିବ ଯେମନ୍ତେ ।
ପ୍ରଥମେ କହିଲ ବ୍ରହ୍ମ କିଛିହିଁ ନୁହଁନ୍ତି
ପୁଣି କହୁଛ ସବୁରି ହେତୁ ସେ ଅଟନ୍ତି ।
ବ୍ରହ୍ମଙ୍କ ବର୍ଣ୍ଣନ ପାଇଁ ବାଣୀ ଯେ ଅକ୍ଷମ
ଏକଥା କିମ୍ପାଇଁ କୁହ ହେ ମୁନି ରତନ ?
ଏ ମୋର ସନ୍ଦେହ ଦେବ କରିବା ମୋଚନ
ତବ ବଚନ ଶୁଣି ମୁଁ ହେବି ଧନ୍ୟ ଧନ୍ୟ ।
କହନ୍ତି ବଶିଷ୍ଠ ଶୁଣ ଆହେ ଦାଶରଥି
ବିଷମ ପ୍ରଶ୍ନ ଏ, ଜାଣେ, ଘାରେ ତୁମ ମତି ।
ତପନ ଉଦୟେ ଯଥା ନାଶଯାଏ ତମ
ଅନାୟାସେ ତୁମ ମୋହ ତୁଟିଯିବ ରାମ ।
ମହାପ୍ରଳୟାନ୍ତେ ଯାହା ଅବଶିଷ୍ଟ ଥାଏ
ଯା'ଘେନି ସେ ନୁହେଁ ଶୂନ୍ୟ କହିବି ଥୋକାଏ ।
ସ୍ତମ୍ଭର ଗାତ୍ରରେ ଶିଳ୍ପୀ ପିତୁଳି କଳ୍ପଇ
ଖୋଦିତ ହେଲେ ସେ ଯାଇ ପିତୁଳି ବୋଲାଇ ।
ନ ଖୋଳିବା ଯାଏ ଥାଏ ଅଦୃଶ୍ୟ ଭାବରେ
ବସ୍ତୁତଃ କଳ୍ପିତ ବସ୍ତୁ ଜଗତ ବିମ୍ବରେ ।
ପିତୁଳା ଶୂନ୍ୟ ନୁହେଁ ସେ ଖମ୍ବ ବୁଝରାମ
ବହୁ କଳ୍ପିତ ପିତୁଳି ତହିଁ ଛନ୍ତି ଜାଣ ।
ଖମ୍ବ ଅବସ୍ଥାନ ହେତୁ ପିତୁଳି କଳ୍ପନା
ଖମ୍ବ ଅଭାବେ ପିତୁଳି ଅଭାବଟି ସିନା
ଆତ୍ମାହେତୁ ଜଗତର ସର୍ଜନା ସମ୍ଭବ
ବିନା ଆତ୍ମାରେ ସୃଷ୍ଟି ବା କାହୁଁ ସମ୍ଭବିବ ?
ବ୍ରହ୍ମଙ୍କର ରୂପ ରାମ ଏ ସାରା ଜଗତ
ସମ୍ଭବି ନ ପାରେ ତାହା ବ୍ରହ୍ମଙ୍କ ବ୍ୟତୀତ ।
ଯଥା ପିତୁଳିକା ଶୂନ୍ୟ ନୁହେଁ ସେହି ଖମ୍ବ
ତଥା ବ୍ରହ୍ମ ନୁହେଁ ଶୂନ୍ୟ ବୁଝ ହେ ରାଘବ ।
ତରଙ୍ଗର ଅସଦ୍‌ଭାବ ଅବା ତା ସଦ୍‌ଭାବ
ସୁସ୍ଥିର ସଲିଳେ କେବେ ତାରକି ସମ୍ଭବ ?
ଜଗତର ଅଶୂନ୍ୟତା ଅଥବା ଶୂନ୍ୟତା
ଉଭୟଙ୍କୁ ଧରିଛନ୍ତି ସେହି ବ୍ରହ୍ମସତ୍ତା ।

ସକଳ ଉପକରଣମାନ ରହିଥିବ
ଶିଳ୍ପୀ ଇଚ୍ଛାକଲେ ଯାଇଁ ପିତୁଳା ସମ୍ଭବ ।
ପ୍ରଳୟରେ ସାରା ସୃଷ୍ଟି ଲୋପ ପାଇଥିବ
ବ୍ରହ୍ମ ନ ଇଚ୍ଛିଲେ ରାମ ସୃଷ୍ଟି କିଏ ଦେବ ?
ଏପରି ଆପତ୍ତି କରି ଅପଣ୍ଡିତ ଗଣ
ସ୍ତମ୍ଭସ୍ଥ ମୂର୍ତ୍ତିକୁ ବୁଝି ନ ପାରନ୍ତି ଜାଣ ।
ଭବ ଯଦି ମିଶିଯିବ ଅନନ୍ତ ଆତ୍ମାରେ
ତାକୁ କାଢ଼ିବାକୁ ଶକ୍ତି ଅଛି କାହାଠାରେ ?
କେହିତ ନାହାନ୍ତି, କର୍ତ୍ତା କିଏ ସେ'ବା ହେବ
କାହାବଳେ ପୁନଃ ସୃଷ୍ଟି ସର୍ଜନା ସମ୍ଭବ ?
ପରମାତ୍ମା ଘେନି ଏହି ଉତ୍ପତ୍ତି ଓ ସ୍ଥିତି
ଆଂଶିକ ଅଟଇ ଜାଣ ଆହେ ରଘୁପତି ।
ହେଲେହେଁ ଏହି ଜଗତ ବ୍ରହ୍ମ ସଙ୍ଗେ ସମ
ଉଦୟ ଅସ୍ତ ତାହାର ଭ୍ରମହିଁ ଜାଣିମ ।
**ଆପେ ଆପେ ସ୍ଥିର ଛନ୍ତି ସେହି ସତ୍-ବ୍ରହ୍ମ**
**ପ୍ରଳୟ କରନ୍ତି ସେହି ନୁହନ୍ତି ସେ ଲୀନ**
ବ୍ରହ୍ମଙ୍କୁ ଶୂନ୍ୟ କଳ୍ପିବା ସଂଗେ ସଂଗେ ରାମ
ଅଶୂନ୍ୟତାର ଆଭାସ ଆସିଯାଏ ମନ ।
ବ୍ରହ୍ମକୁ ଖାଲି ଅଶୂନ୍ୟ ଯଦି କୁହାଯିବ
ଶୂନ୍ୟ, ଅଶୂନ୍ୟ, କଳ୍ପନା ହେବା ଅସମ୍ଭବ ।
ଶୂନ୍ୟ, ଅଶୂନ୍ୟ ଉଦୟେ ବ୍ରହ୍ମରେ ଶ୍ରୀରାମ
କଳ୍ପିତ ମାତ୍ର ଅଟନ୍ତି, ଏକଥା ଜାଣିମ ।
ସଭାବ ରହିତ ହେଲେ ବୋଲାଇବ ଶୂନ୍ୟ
ଅଶୂନ୍ୟ ବୋଲାଇବ ସେ ଯଦି ବିଦ୍ୟମାନ ।
ଏ ଦୁହିଙ୍କଠାରୁ ଆତ୍ମସତ୍ତା କିନ୍ତୁ ରାମ
ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏହା ନିରାଟ ବଚନ ।
ଅଶୂନ୍ୟ ଶୂନ୍ୟର ପ୍ରତିଯୋଗୀ ଯେଣୁ ଜାଣ
ଶୂନ୍ୟର ଅଭାବେ ଅଶୂନ୍ୟର କାହିଁ ସ୍ଥାନ ?
**"ଅଭାବମାତ୍ର" ଅଟନ୍ତି ଶୂନ୍ୟ ଓ ଅଶୂନ୍ୟ**
**ତେଣୁ ବ୍ରହ୍ମରେ ଅଭାବ ଶୂନ୍ୟ ଓ ଅଶୂନ୍ୟ ।**
ସୂର୍ଯ୍ୟ, ତାରା ପ୍ରଦୀପାଦି ଭୌତିକ ପ୍ରକାଶ
ବ୍ରହ୍ମମଧ୍ୟେ ତାର ସତ୍ତା ନାହିଁ ରଘୁଇଶ ।

ଯେହେତୁ ପ୍ରକାଶ ଅନ୍ଧକାରର ବିରୋଧି
ପ୍ରକାଶ ଥାନ୍ତେ ଅନ୍ଧାର ଥିବାଟି ଅସିଦ୍ଧି ।
ତେଣୁ କରି ବ୍ରହ୍ମ ମଧ୍ୟେ ଆଲୋକ ଅନ୍ଧାର
କାହାରିହିଁ ସତ୍ତାନାହିଁ ଜାଣ ରଘୁବୀର ।
ଯାହାବଳେ ସୂର୍ଯ୍ୟ ଲଭେ ନିଜର ପ୍ରକାଶ
ତାଙ୍କ ତହିଁ ତମ କାହୁଁ କରିବ ପ୍ରବେଶ ?
ଆତ୍ମାର ପ୍ରକାଶ ବିନା ସୂର୍ଯ୍ୟ ଅନ୍ଧକାର
ବ୍ରହ୍ମ ନୁହେଁ ତେଣୁ ପରକାଶ ବା ଅନ୍ଧାର ।
ପୁନଶ୍ଚ ବ୍ରହ୍ମ ନୁହଇ ଶୂନ୍ୟ ବା ଅଶୂନ୍ୟ
କେବଳ ଆତ୍ମତତ୍ତ୍ୱ ସେ ଜାଣ ହେ ଶ୍ରୀରାମ ।
ସ୍ତମ୍ଭରେ ପିତୁଳା ଥିବା ଯଥା ଭ୍ରମ ମାତ୍ର
ଆତ୍ମାରେ ଜଗତ ଥିବା ତଥା ଭ୍ରମବତ ।
'ମଲ୍ଲୀ' 'ମଲ୍ଲୀ ମଜା' ମଧ୍ୟେ ଯଥାଭେଦ ନାସ୍ତି
'ଆତ୍ମା' 'ଜଗତ' ସେପରି ଅଭେଦ ଅଟନ୍ତି ।
'ଜଳ' 'ତରଙ୍ଗ' ମଧ୍ୟରେ କିଛି ଭେଦ ନାହିଁ
'ମାଟି' 'ଘଟ' ମଧ୍ୟେ କିଛି ଭେଦ ତ ନଥାଇ ।
'ଜଗତ' 'ବ୍ରହ୍ମ' ମଧ୍ୟରେ ନାହିଁ କିଛି ଭେଦ
ନାମ ମାତ୍ରକ ଅଛଇ ତହିଁରେ ପ୍ରଭେଦ ।
ଭେଦ ଶୂନ୍ୟ ଅଟେ ବେଲ ବାହାର ଭିତର
ବାହାର କଠିନ କିନ୍ତୁ ଭିତର କୋମଳ ।
ତେସନ 'ବ୍ରହ୍ମ' 'ଜଗତ' ମଧ୍ୟେ ଭେଦ ନାହିଁ
ଏ ଗୁରୁତ୍ୱ ବୁଝି ରଖ ଆହେ ରଘୁସାଇଁ ।
'ସଲିଳ' 'ଲହରୀ' ମଧ୍ୟେ ଯେବଣ ସମ୍ବନ୍ଧ
'ମୃତ୍ତିକା' 'ଘଟ' ମଧ୍ୟରେ ନାହିଁ ଯେ ପ୍ରଭେଦ
ଏ ଜଗତ ଅନ୍ତର୍ଗତ ଅଟଇ ଯାହାର
ଏ ଜଗତ ଅବସ୍ଥାନ ଯାହାର ଉପର ।
ସେ ଆତ୍ମାକୁ ଶୂନ୍ୟ ଆଖ୍ୟା ଦେଇ କି ମୁଁ ପାରି ?
ମନ ଦେଇ ଭାବି କହ ଆହେ ବ୍ରହ୍ମଚାରୀ ।
ଘଟସ୍ଥ ଜଳ କେବେ କି ବୋଲାଇବ ଘଟି
ସଲିଳ ହୋଇପାରେ କି ଜଳେ ଥିବା ମାଟି ?
ବ୍ରହ୍ମାନ୍ତଗତ ଜଗତ ବ୍ରହ୍ମ ବୋଲାଇବ
କିପରି ସମ୍ଭବ ହେବ କହ ହେ ରାଘବ ?

ନାମ, ରୂପ ଆଖ୍ୟା ରହିତ,
ଅଭାବ - ବନ୍ଧ୍ୟାପୁତ୍ର ପରି, ମିଥ୍ୟା ପଦାର୍ଥ, ସୁତରାଂ ତାହାର କୌଣସି ଅବସ୍ଥାନ ଅସମ୍ଭବ ।

ତେଣୁ କରି ଏ ବିଷୟେ ମୋର ଏ ଦୃଷ୍ଟାନ୍ତ
ବିଷମ ଆଖ୍ୟା ଭାବୁଛ ଆହେ ରଘୁନାଥ ।
ମୃତ୍ତିକା ଓ ଜଳ ଦୁହେଁ ଅଟନ୍ତି ସାକାର
କିନ୍ତୁ ସେ ପରମ ବ୍ରହ୍ମ ଅଟେ ନିରାକାର ।
**'ସାକାର' 'ନିରାକାର'**ଙ୍କ ବ୍ୟବସ୍ଥା ସ୍ୱତନ୍ତ୍ର
ଏହା ଅତିଉକ୍ତି ନୁହେଁକି, ହେ ରଘୁନାଥ ?
ସୁନିର୍ମଳ ଯେଉଁ ବ୍ରହ୍ମ ସେହୁ ନିରାକାର
ତା' ମଧ୍ୟସ୍ଥ ଜଗତର କାହୁଁ ବା ଆକାର ?
ଆକାଶ ଅପେକ୍ଷା ଚିଦାକାଶ ସୁନିର୍ମଳ
ତା ମଧ୍ୟେ ରହେ ଯେ, ହୁଏ ସେହି ରୂପତାର ।
ବ୍ରହ୍ମାଣ୍ଡସ୍ଥ ଚିଦାକାଶ ଯେ ହେତୁ ଏ ଭବ
କାହାରି କାହାରି ମତେ ଏହା ସମ୍ଭବିବ ।
ବସ୍ତୁ କଳ୍ପନା ଦୃଷ୍ଟିରୁ ସେ ନୁହେଁ ଜଗତ
ମୋ କହିବା ବୁଝି ପାରୁଥିବ ରଘୁନାଥ ।
ପ୍ରଖର ସୌର ରଶ୍ମିରେ ଯେ କରେ ଗମନ
ସେହି ଏକା ବୁଝେ ତାର ପ୍ରଖରତା ଗୁଣ ।
ଜ୍ଞାନାଗ୍ରହୀ ବୁଝେ ଚିଦାକାଶର ସୁଆଦ
ଅନ୍ୟପକ୍ଷେ ଜାଣ ତାହା ସପନ ସଂପଦ ।
ଲଙ୍କା ଖାଇବା ଲୋକହିଁ ବୁଝେ ତାର ରାଗ
ଅନୁଭବୀ ନୋହିଲେ ତା' କେବଳ ସୁଆଙ୍ଗ ।
ସ୍ପନ୍ଦକଳା ଘେନି ଲୋକ ବୁଝିବ ଚୈତନ୍ୟ
ଆତ୍ମାରେ ବୁଝିବା ତାକୁ କଠିନୁ କଠିନ ।
ଚୈତନ୍ୟ-ଶୂନ୍ୟ ଚିନ୍ମାତ୍ର ଯେବଣ ପଦାର୍ଥ
ଅକ୍ଷୟ ସୁଷୁପ୍ତି ତାହା ବୁଝ ରଘୁନାଥ ।
ତୁରୀୟ ଆଖ୍ୟା ଏହାକୁ ଦିଏ ଯେଉଁ ଜ୍ଞାନୀ
ସେ ଅଟଇ ଜ୍ଞେୟ ଜ୍ଞାନବାନଙ୍କ ଅଗ୍ରଣୀ ।
ସେ ତୁରୀୟ ଅବସ୍ଥାରେ ସ୍ଥିର ରହେ ଯେହୁ
ସଂସାର-ସର୍ପ ଦଂଶନ ଜାଣିବ ସେ କାହୁଁ ?
ଅଚୈତ୍ୟ ଚିନ୍ମାତ୍ର ତାକୁ କହନ୍ତି ପଣ୍ଡିତେ
ଭାଗ୍ୟବାନ ମାତ୍ର ତାକୁ କଳ୍ପିପାରେ ଚିତ୍ତେ ।
ଆତ୍ମାରେ ସ୍ଥିତି ନଥାଇ ଯେବଣ ବ୍ୟକ୍ତିର
ସଂସାର ଉରଗ ତାକୁ ଦଂଶିବ ମୁକର ।
ଯେ ଆତ୍ମସତ୍ତାକୁ ଦ୍ୱୈତ ଭାବ ଗ୍ରାସି ନାହିଁ
ନଭଠାରୁ ସ୍ୱଚ୍ଛତର ଜାଣ ରାମ ସେହି ।
**ଦ୍ରଷ୍ଟା, ଦୃଶ୍ୟ, ଦରଶନ, ଅନୁଭବ, ସତ୍ତା**
**ଆତ୍ମାର ରୂପ ଏମାନେ, କହିଛନ୍ତି ଧାତା ।**

ଅଭ୍ୟାସ ବଳେ ସେ ଆତ୍ମା ହୁଅଇ ଲବଧ
ଚିତ୍ତଲୟ ଦେଇ ବୁଝ ଆହେ ରାମଚନ୍ଦ୍ର ।
ବ୍ରହ୍ମରେ ଦ୍ୱୈତ କଳ୍ପନା ଆଖ୍ୟା ନ ଖଟଇ
କେବଳ ଅଦ୍ୱୈତ ମାତ୍ର ସେ ବ୍ରହ୍ମ ଅଟଇ ।
ବ୍ରହ୍ମ ତ ନୁହଁନ୍ତି ଦ୍ରଷ୍ଟା, ନୁହନ୍ତି ସେ ଜୀବ
ବିକାର ଶୂନ୍ୟ ସେ ବ୍ରହ୍ମ ଏମନ୍ତ ବୁଝିବ ।
ସ୍ଥୂଳ ତ ନୁହଁନ୍ତି ବ୍ରହ୍ମ, ସୂକ୍ଷ୍ମ ତ ନୁହଁନ୍ତି
କ୍ଷୟ ନାହିଁ ବୃଦ୍ଧି ନାହିଁ ନିତ୍ୟ ସେ ଅଟନ୍ତି ।
ଏକ, ଶୁଦ୍ଧ ରୂପ ସେହି ଅଦ୍ୱୈତ ସେ ଜାଣ
ନିଜେ ନିଜ ମଧ୍ୟେ ଛନ୍ତି ସଦା ବିଦ୍ୟମାନ ।
ତାଙ୍କର ସ୍ପନ୍ଦନ ମାତ୍ର ଜଗତ ସର୍ଜ୍ଜନା
ନୋହିଲେ ଜୀବ ସୃଷ୍ଟିର କାହୁଁ ସମ୍ଭାବନା ?
ଜୀବ ନଥିଲେ ବୁଦ୍ଧି ବା କାହୁଁ ସମ୍ଭବିବ
ବୁଦ୍ଧି ନଥିଲେ ମନ ବା କେଉଁଠୁ ଆସିବ ?
ମନ ଅଭାବେ ଇନ୍ଦ୍ରିୟମାନଙ୍କର ସ୍ଥାନ
କାହୁଁ ସମ୍ଭବ ହୋଇବ ହେ ରଘୁନନ୍ଦନ ?
ଇନ୍ଦ୍ରିୟ ବିହୁନେ ଦେହ କାହୁଁ ସମ୍ଭବିବ
ଦେହ ନଥିଲେ ଜଗତ କାହାକୁ କହିବ ?
**ଏ ସକଳ ଜୀବ ସୃଷ୍ଟି ବ୍ରହ୍ମ ପ୍ରତିବିମ୍ବ**
**ସେ ପ୍ରତିବିମ୍ବ ଅଭାବେ ଜୀବ ଅସମ୍ଭବ ।**
ବାହ୍ୟ ଦରଶନେ ବ୍ରହ୍ମଛନ୍ତି ବିଦ୍ୟମାନ
ଅନ୍ତଃସ୍ଥ ଦର୍ଶନେ ସେହି ବ୍ରହ୍ମ ପ୍ରକାଶନ ।
ଆତ୍ମ ସତ୍ତାରେ ସରବ କଳପନା ଲୀନ
ଏଥିରେ ଯୁକ୍ତି ବାଢ଼ିବା ଖାଲି ଅର୍ବାଚୀନ ।
ପୂର୍ଣ୍ଣ, ଅପୂର୍ଣ୍ଣରୁ ସେହୁ ଅଟନ୍ତି ବାହାର,
ସତ୍, ଅସତରୁ ବ୍ରହ୍ମ ରହେ ବହୁଦୂର ।
ଚିତ୍, ଅଚିତ୍ରୁ ସେହି ସ୍ୱତନ୍ତ୍ରେ ଅଟନ୍ତି
ଭାବ ଅଭାବରେ ନିର୍ବିକାର ସେ ବୋଲାନ୍ତି ।
ଆଦି, ମଧ୍ୟ, ଅନ୍ତ'ରୁ ସେ ସମ୍ପୂର୍ଣ୍ଣ ରହିତ
ଅଜର, ଅମର ଆଖ୍ୟା ତାଙ୍କୁ ଯୁକ୍ତିଯୁକ୍ତ ।
ଆନନ୍ଦ, ଅନନ୍ତ ଚିତ୍ସ୍ୱରୂପ ଏ ପଦ
ଅଚୈତ୍ୟ ଚିନ୍ମାତ୍ର ଅବାକ୍ୟାଦି ଉପପଦ,
ବ୍ରହ୍ମଙ୍କ ପ୍ରତି ପ୍ରଯୁଜ୍ୟ ଅଟଇ ଏମାନ
ଧ୍ୟାନ, ଧାରଣା ଅତୀବ ସେହି ସନାତନ ।
ସୂକ୍ଷ୍ମାଦପି ସୂକ୍ଷ୍ମପୁଣି ସ୍ଥୂଳାଦପି ସ୍ଥୂଳ
ଶୂନ୍ୟଠାରୁ ମହାଶୂନ୍ୟ ସେହି ଆଦିମୂଳ ।

ଏକ ଅଦ୍ୱୈତ, ଅନନ୍ତ ରୂପ ସେ ଅଟନ୍ତି
ଶରତ ଆକାଶଠାରୁ ନିର୍ମଳ ଦିଶନ୍ତି ।
କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ଗୁରୁଦେବ
ଅଚିନ୍ତ୍ୟ ବ୍ରହ୍ମଙ୍କୁ ମୋତେ ବୁଝାଇ କହିବ ।
ବଶିଷ୍ଠ କହନ୍ତି ଶୁଣ ଆହେ ଦାଶରଥି
ବ୍ରହ୍ମ ବିଷୟ ଶୁଣିବା ଦେଇ ଚିତ୍ତ ବୃତ୍ତି ।
ମହାପ୍ରଳୟରେ ସାରା ସୃଷ୍ଟି ଯାଏ ନାଶ
ସେ ମୂଳକାରଣ ବ୍ରହ୍ମ, ରହେ ଅବଶେଷ ।
ସେହି ମନ - ବ୍ରହ୍ମଙ୍କର ମାନସ ପ୍ରବୃତ୍ତି
ପାଞ୍ଚ ପ୍ରକାର ଅଟଇ ଶୁଣ ରଘୁପତି ।
**ପ୍ରମାଣ ଓ ବିପର୍ଯ୍ୟୟ, ବିକଳ୍ପ ଅଭାବ**
ପଞ୍ଚମ ବୃତ୍ତିଟି ଅଟେ **ସ୍ମରଣ** ରାଘବ ।
ପ୍ରମାଣ ବୃତ୍ତିଟି ରାମ ତିନୋଟି ଜାଣିମ
ପ୍ରଥମ **ପ୍ରତ୍ୟକ୍ଷ**, ଦ୍ୱିତୀୟଟି **ଅନୁମାନ** ।
**ଶବ୍ଦ ରୂପ** ଅଟଇ ଯେ ତୃତୀୟ ସୋପାନ
**ଆପ୍ତକାମିକା** ଶକତି ଯହିଁରେ ବର୍ଣ୍ଣନ ।
ଦ୍ୱିତୀୟ ସୋପାନ ନାମ ଅଟେ **ବିପର୍ଯ୍ୟକ**
ଭ୍ରମ ଜନ୍ମାଏ ବିପରିତାର୍ଥକ ବୋଧକ ।
ରଜ୍ଜୁଦେଖି ସର୍ପଭୟ ଆସିଥାଏ ମନେ
ଚିତ୍ତସ୍ଥିର କରି ସୁଧାରନ୍ତି ତାକୁ ଜନେ ।
ବିକଳ୍ପ ବୃତ୍ତି ଅଟଇ ଦ୍ୱିତୀୟ ସୋପାନ
'ସିପ' ଦେଖି 'ଚାନ୍ଦି' ଭ୍ରମ ଆସେ ଯଥା ମନ ।
**ନିଦ୍ରା ଅର୍ଥାତ୍ ଅଭାବ ଚତୁର୍ଥ ସୋପାନ**
ସପନ ରାଇଜେ ଘେନିଯାଏ ଜନମନ ।
**ସ୍ମରଣ ବୃତ୍ତି ଅଟଇ ପଞ୍ଚମ ସୋପାନ**
ସ୍ମରଣଶକ୍ତି ନଥିଲେ ନିରସ ଜୀବନ ।
**ଏ ପାଞ୍ଚ ବୃତ୍ତିଙ୍କ ରାଜା ଅଭିମାନୀ ମନ**
ସମସ୍ତଙ୍କ ସହ ମନ ବସେ ଶରୀରେଣ ।
ଅଭିମାନ, ଅହଂକାର, ମନ, ଏ ତିନିର
ବିନାଶ ଲଭିଲେ, ଯାହାର ରହିଯାଏ ସ୍ଥିର ।
ସେହି ନିର୍ମଳ ସତ୍ତାକୁ ବୁଝ ଅନନ୍ତାତ୍ମା
ମୋ କଥା ନିରାଟ ସତ ଜାଣ ହେ ମହାତ୍ମା ।

ଜାଗ୍ରତ ଅଭାବେ ଯେବେ ସୁଷୁପ୍ତି ଆସଇ
ସେ ଅବସ୍ଥା ପରମାତ୍ମା ରୂପକୁ ବୁଝାଇ ।
ଆଙ୍ଗୁଠି ଅଗକୁ ଶୀତ, ଉଷ୍ଣତା ପରଶେ
ଯେହୁ କରେ ଅନୁଭବ ପରମାତ୍ମାଟି ସେ ।
'ଦ୍ରଷ୍ଟା', 'ଦରଶନ' 'ଦୃଶ୍ୟ' ସେହୁ ସୃଷ୍ଟିକରେ
ସୃଷ୍ଟିକରି ପୁନରପି ବିଲୟ ଆଚରେ ।
ପରମାତ୍ମା ବିନା ସେହୁ ଅନ୍ୟ କିଛି ନୁହେଁ
ଲେଶମାତ୍ର ଚେତନ ବି ସେଥିରେ ନଥାଏ ।
ଉଭୟ ଜଡ଼ ଚେତନ ଯହିଁରେ ଅଭାବ
ସେ ଅଚୈତ୍ୟ, ଚିନ୍ମାତ୍ରହିଁ ପରମାତ୍ମା ଦେବ ।
ଜୀବ, ଜଡ଼, ଯେତେବେଳେ ଧ୍ୱଂସ ହୋଇଯାନ୍ତି
ଆକାଶ ରୂପେ ତାଙ୍କର ସତ୍ତା ଅବସ୍ଥିତି ।
ଲେଶମାତ୍ର କ୍ଷୋଭ ରହି ନଥାଏ ତହିଁରେ
ଶୂନ୍ୟ ହେଲେ ହେଁ ଶୂନ୍ୟତା ଅଭାବ ଯହିଁରେ ।
ସେହି ସତ୍ତାକୁ ପରମ-ଆତ୍ମା ରୂପ କହି
ମୋ କଥାର ତଥ୍ୟ ବୁଝୁଥାଅ, ରଘୁସାଇଁ ।
ଦ୍ରଷ୍ଟା, ଦରଶନ, ଦୃଶ୍ୟ ଯହିଁ ଝଲସନ୍ତି
ଆକାଶ ରୂପ ସେ ଧରିଥାଏ ରଘୁପତି ।
ସ୍ଥାବରରେ ସ୍ଥାବରତ୍ୱ ଚେତନେ ଚୈତନ୍ୟ
ଯହିଁରେ ବ୍ୟାପୀ ଅଛଇ ଶୁଣ ହେ ଶ୍ରୀରାମ ।
**ମନ ବୁଦ୍ଧିର ଗୋଚର ଯାହା ନ ହୁଅଇ**
**ସେହି ସତ୍ତା ପରମାତ୍ମା ବୁଝ ରଘୁସାଇଁ ।**
ବ୍ରହ୍ମା, ବିଷ୍ଣୁ, ରୁଦ୍ରଆଦି ପ୍ରଳୟ ଶେଷରେ
ଶେଷ ରହେ ଯେହୁ, 'ପରମାତ୍ମା' ମୋ ବିଚାରେ ।
ଇତି ଶ୍ରୀ ଯୋଗାବଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ପରମାତ୍ମା ସ୍ୱରୂପ ବର୍ଣ୍ଣନେ
ନାମ ନବମ ସର୍ଗଃ ।



## ଦଶମ ସର୍ଗଃ
## ପରମାର୍ଥ ରୂପ

ପଚାରନ୍ତି ରାମଚନ୍ଦ୍ର ଆହେ ଗୁରୁଦେବ
ମହା ପ୍ରଳୟରେ ସୃଷ୍ଟି ଅବସ୍ଥା କି ହେବ ?
ଦେବ, ଦାନବ, ମାନବ, ତୀର୍ଯ୍ୟକାଦି ଯେତେ

---

୧। ପ୍ରମାଣ ବୃତ୍ତି ତିନି ପ୍ରକାର - ପ୍ରତ୍ୟକ୍ଷ, ଅନୁମାନ ଓ ଆଗମ ।
୨। ବିପର୍ଯ୍ୟୟ ବୃତ୍ତି - ମିଥ୍ୟାଜ୍ଞାନ, ରଜ୍ଜୁରେ ସର୍ପ ଭ୍ରମ ।
୩। ବିକଳ୍ପ ବୃତ୍ତି - କଳ୍ପନାତ୍ମକ ମିଥ୍ୟାବୃତ୍ତି (ଆକାଶ-କୁସୁମ)
୪। ଅଭାବ ବୃତ୍ତି - ନିଦ୍ରା ବୃତ୍ତି ।
୫। ସ୍ମୃତି ବୃତ୍ତି - ଅନୁଭୂତ ସଂସ୍କାର ।

କାହିଁ ଯାଇ ଅବସ୍ଥାନ କରିବେ ସମସ୍ତେ ?
ଦୃଶ୍ୟମାନ ଏ ଜଗତ ଦଶା କିସ ହେବ ?
ଦୟାକରି ଏ ସମସ୍ତ ବୁଝାଇ କହିବ ।
କହନ୍ତି ବଶିଷ୍ଠ ଶୁଣ ଦଶରଥ ସୁତ
କହି ପାରବକି ବନ୍ଧ୍ୟାସୁତ ଯାତାୟତ ?
ଗଗନ କାନନ କେଉଁଠାରୁ ବା ଆସଇ
କହି ପାରକି ତା ଆୟତନ କେତେ ହୋଇ ?
କିପରି ତାଙ୍କର ରୂପ, କିସ ତାଙ୍କ ରୀତି ?
ପ୍ରଥମେ ବୁଝାଇ ମୋତେ କହ ରଘୁପତି ।
କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ମହାମତେ
ବନ୍ଧ୍ୟାପୁତ୍ର, ବ୍ୟୋମବନ ଦେଖିବ କେମନ୍ତେ ?
କେବେହେଲେ ଏ ସକଳ ଜନମନ୍ତି ନାହିଁ
କେମନ୍ତେ ତାଙ୍କର ଆସ୍ତି ନାସ୍ତି କହିବଇଁ ?
କହନ୍ତି ବଶିଷ୍ଠ ବ୍ୟୋମବନ, ବନ୍ଧ୍ୟାପୁତ୍ର
ସଦୃଶ ଅଟଇ ରାମ ଏ ଦୃଶ୍ୟ ଜଗତ ॥
କସ୍ମିନ କାଳେ ଯାହାର ନାହିଁ ଉତପତ୍ତି
ଉତ୍ପତ୍ତି ବିକାଶ ଶୂନ୍ୟ, ତା' କେବଳ ଭ୍ରାନ୍ତି ।
ରାମଚନ୍ଦ୍ର କହୁଛନ୍ତି ଶୁଣ ଭଗବନ
କାଳ୍ପନିକ ବସ୍ତୁ ବନ୍ଧ୍ୟାପୁତ୍ର ନଭବନ ।
ପ୍ରତ୍ୟକ୍ଷ ସିଦ୍ଧ ଅଟଇ ଏ ମର ଜଗତ
ବନ୍ଧ୍ୟାପୁତ୍ର ସହ କେହ୍ନେ ହେବ ଉପମିତ ?
କହନ୍ତି ବଶିଷ୍ଠ ନଭବନ ବନ୍ଧ୍ୟାପୁତ୍ର
ସଦୃଶ, ଉପୁଜେ ନାହିଁ ଏ ମର ଜଗତ ।
ସଂକଳ୍ପ-ପୁର, ସ୍ୱପନ- ନଗର ଯେମନ୍ତ
ଭାସମାନ ହେଉଅଛି ଆମ ଏ ଜଗତ ।
ଆକାଶ ସ୍ୱରୂପ ଏହା ବାସ୍ତବତା ଶୂନ୍ୟ
ଆକାଶ ପରି ଜଗତ ଶୂନ୍ୟେ ପରିପୂର୍ଣ୍ଣ ।
'ଜଳ' 'ତରଙ୍ଗ' ମଧ୍ୟରେ ଯଥା ଭେଦ ନାହିଁ
'ଅଗ୍ନି' 'ଉଷ୍ଣତା' ଯେସନ ଅଭେଦ ଅଟଇ ।
'ଚନ୍ଦ୍ର' 'ଶୀତଳତା' ମଧ୍ୟେ ଭେଦ ନାହିଁ ଯଥା
'ବାୟୁ' 'ସ୍ପନ୍ଦନ' ମଧ୍ୟରେ ଭେଦ ନାହିଁ ତଥା ।
ଆକାଶ ଶୂନ୍ୟତା ଯଥା ଅଭେଦ ଅଟନ୍ତି
ତଥା ଭେଦଶୂନ୍ୟ 'ବ୍ରହ୍ମ' 'ଜଗତ' ବୋଲାନ୍ତି ।
ନିଜ ନିଜ ଗୁଣ ଘେନି ଅଛନ୍ତି ସେ ସ୍ଥିର
ଏଥିରୁ ବୁଝିବ 'ବ୍ରହ୍ମ' ଜଗତ ବିଚାର ।

କେହି ତ ନିର୍ମାଣ କରି ନାହିଁ ଏ ଜଗତ
ଆତ୍ମସତ୍ତା ନିଜେ ନିଜେ ରହିଛନ୍ତି ସ୍ଥିତ ।
ଦ୍ୱିତୀୟ ଚନ୍ଦ୍ରମା ଯଥା ନଭପଟେ ରାଜେ
ମରୁ ପ୍ରାନ୍ତରରେ ଯଥା ସଲୀଳ ବିରାଜେ ।
ନଭପଟେ ଯଥା ତରୁବର ବିଦ୍ୟମାନ
ଆତ୍ମାରେ ଅଜ୍ଞତା ହେତୁ ଭବ ଭାସମାନ ।
ଏହାଶୁଣି ରାମଚନ୍ଦ୍ର ପୁଛନ୍ତି ଏସନ
ମୋହର କହିବା ଶୁଣ ଆହେ ଭଗବନ ।
ଜନମି ନାହିଁ ଯେ ଯାଏ ଦୃଶ୍ୟର ଅଭାବ
ବୋଧ ପ୍ରାପ୍ତି ସେ ପର୍ଯ୍ୟନ୍ତ କିପରି ସମ୍ଭବ ?
'ଦ୍ରଷ୍ଟା', 'ଦୃଶ୍ୟ' ଭାବ ସଦା ମନରେ ଉଦୟ
ଭ୍ରମବଶ ଏହା ହୁଏ ବ୍ରହ୍ମାଙ୍କ ତନୟ ।
ଦ୍ରଷ୍ଟା, ଦୃଶ୍ୟ କେହି କା'କୁ ଛାଡ଼ି ନପାରନ୍ତି
ଏକ ଅଭାବେ ଅନ୍ୟର ଅସ୍ତିତ୍ୱ ଯେ ନାସ୍ତି ।
ଦୁଇରୁ ଏକର ନାଶେ ଉଭୟ ନିର୍ବାଣ
ଦୃଶ୍ୟଭାବେ ଆତ୍ମବୋଧ-ପ୍ରାପତି କେସନ ?
କେହି କେହି କହନ୍ତି ଯେ, ଦୃଶ୍ୟ ଆଗେ ଥିଲା
କୌଣସି ହେତୁ ତାହାର ବିନାଶ ଘଟିଲା ।
ସେମାନଙ୍କୁ ମଧ୍ୟ ଏହି ସଂସାରର ଭାବ
ଗିଳି ଦେଇ ବସିଥାଏ ହେ ମୁନି ପୁଙ୍ଗବ ।
ଅନୁଭୂତ ନ ହେଲେ ହେଁ ଜାଣ ଏ ସଂସାର
ଭବ ପ୍ରତି ସ୍ନେହ କିନ୍ତୁ ଥାଏ ତା ଅନ୍ତରେ ।
ଗ୍ରାସ କରିବ ଅବଶ୍ୟ ତାଙ୍କୁ ଭବ ମାୟା
ଅଣୁମାତ୍ର ଭବ ପ୍ରତି ଥିଲେ ତାଙ୍କ ସ୍ପୃହା ।
ଅଣୁ ପ୍ରମାଣ ବୀଜରୁ ବଟ ବୃକ୍ଷ ଜାତ
ସେହିପରି ଭବମାୟା ପ୍ରଭାବ ଅତ୍ୟନ୍ତ ।
**ଅଣୁ ମାତ୍ର ସ୍ମୃତି ଯଦି ରହିଥାଏ ମନେ**
**ଭବଜଳେ ବୁଡି ମରୁଥାନ୍ତି ସର୍ବ ଜନେ ।**
କୌଣସି ଅସ୍ତିତ୍ୱ ନାହିଁ ଜଡ ଜଗତରେ
ଏକଥା ସିନା ବଖାଣୁ ଅଛି ମୁନିବର ।
ଜଗତ ଉତ୍ପତ୍ତି ସ୍ଥିତି ବୋଲି କିଛି ନାହିଁ
ଆଭାସ ମାତ୍ରକ ଏହା ପ୍ରତୀତ ହୁଅଇ ।
ବାସ୍ତବରେ ସେହି ବସ୍ତୁ କିଛି ମାତ୍ର ନୁହେଁ
ଯାହାର ସତ୍ତା କେବଳ କଳ୍ପନାରେ ଥାଏ ।
ଯାହାର ଅସ୍ତିତ୍ୱ ବୋଲି କିଛି ଚିହ୍ନ ନାହିଁ
କେଉଁଠୁ ବନ୍ଧନ ତାର ଆସିଲା ଗୋସାଇଁ ।

ସକଳ ଶୂନ୍ୟ ବୋଲି ତ କରୁଛି ପ୍ରମାଣ
କିନ୍ତୁ ପ୍ରତ୍ୟକ୍ଷରେ ଭବ ହୁଏ ଦୃଶ୍ୟମାନ ।
ତେଣୁ ଏସନ ଯୁକତି ବତାଅ ଗୋସାଇଁ
ଯହିଁରେ, ଜଗତ ଭ୍ରମ ଯିବ ଦୂର ହୋଇ ।
**କହନ୍ତି ବଶିଷ୍ଠ ରାମ ସ୍ଥିର ଚିତ୍ତେ ଶୁଣ**
**ଅସତ୍ୟ ସତ୍ୟ ହୁଅଇ ଯେଉଁ ପ୍ରକାରେଣ ।**
ମୋର ଏହି ଉପାଖ୍ୟାନ ତୁମର ସଂଶୟ
ନିଶ୍ଚେ ଦୂର କରି ଦେବ ହେ ରଘୁ ତନୟ ।
ସମୁଦ୍ରରେ ଧୂଳି ଯଥା ଉଡ଼ି ନ ପାରଇ
ଦୃଶ୍ୟ ଜ୍ଞାନ ତୁମ ଚିତ୍ତୁ ଯିବ ଦୂର ହୋଇ ।
ନିତାନ୍ତ ଅଳୀକ ଭବ ପୁଣି ଭ୍ରମମୟ
ଏହି କଥା ହେତୁ ରଖି ଜୀବନ କଟାଅ ।
**ପର୍ବତ ଭେଦ କରଣେ ସାଧକ ଯେପରି**
**ଅସମର୍ଥ ହୁଏ, ତୁମେ ହେବ ସେହିପରି ।**
ପ୍ରୟୋଜନ-ମତେ ବର ଜ୍ଞାନାନୁସରଣ
ପ୍ରୟୋଜନ ମତେ ତେଜ ଭବାନୁସରଣ ।
ବିବିଧ ସ୍ଥୁଳ ସୂକ୍ଷ୍ମାଦି ବିଷୟରେ ରାମ
ସତ୍ୟାନୁସରଣ କରିବାଟି ସମୀଚୀନ ।
ଜାଗତିକ ପଦାର୍ଥକୁ ମିଥ୍ୟା ମନେ କରି
ବ୍ୟବହାର କଲେ ଭବ ଦୁଃଖ ଅପସରି ।
ଆତ୍ମା ଅଦ୍ୱିତୀୟ, ଆତ୍ମା ଅସଙ୍ଗ ବ୍ୟାପକ
ସେହି ଆତ୍ମାର ଉତ୍ପତ୍ତି ଚିତ୍ତ ଆକର୍ଷକ ।
ତା ଦୃଶ ଆତ୍ମାରେ ଯଥା ଜଗତ ଉତ୍ପତ୍ତି
ତୁମ୍ଭ ଆଗରେ ଶ୍ରୀରାମ ଗାଉଛି ତା କୀର୍ତ୍ତି ।
ଏହି ବିଶ୍ୱ ସେହି ଏକ ପରମାତ୍ମାଠାରୁ
ଆବିର୍ଭୂତ ହୋଇଅଛି ଅନାଦି କାଳରୁ ।
ସେ ପରମାତ୍ମାଙ୍କ ବହିଃ ଇନ୍ଦ୍ରିୟାଦି ଦ୍ୱାରା
ପରିଚାଳିତ ହେଉଛି ସୃଷ୍ଟି ପରମ୍ପରା ।
ସେ ପରମ ଆତ୍ମାଙ୍କର ଉଦୟ ବିଳୟ
ବହିଃ, ଅନ୍ତଃ ଭବ ରୂପେ ଘଟେ ରଘୁରାୟ ।
ସେହି ବ୍ୟଷ୍ଟି, ସେ ସମଷ୍ଟି, ସେହି ସ୍ଥୁଳ, ସୂକ୍ଷ୍ମ
ବାହ୍ୟ ପରପଞ୍ଚ, ଅନ୍ତଃପରମଞ୍ଚ ବ୍ରହ୍ମ ।
ସ୍ୱୀୟ ମାୟାବଳେ ଦୃଶ୍ୟଭାବେ ସେ ଉଦିତ
ଅଦୃଶ୍ୟଭାବେ ପୁନଶ୍ଚ, ହୁନ୍ତି ଅସ୍ତମିତ ।
ଭ୍ରାନ୍ତି ବଶତଃ ପୁଣି ସେ ସୃଷ୍ଟିସ୍ଥିତି ଲୟ
ଦେଖୁ ଅଛନ୍ତି ହେ ରଘୁକୂଳର ତନୟ ।
**ଇତି ଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ପରମାର୍ଥରୂପ ବର୍ଣ୍ଣନେ ନାମ ଦଶମ ସର୍ଗଃ ।**



## ଏକାଦଶ ସର୍ଗଃ
## ଜଗତ୍ ଉତ୍ପତ୍ତି

କହନ୍ତି ବଶିଷ୍ଠ ମୁନି ଶୁଣ ରାମଚନ୍ଦ୍ର
କୀର୍ତ୍ତନ କରଇ ଯାହା ନିତ୍ୟ ଶାନ୍ତି ପ୍ରଦ ।
ତୁରୀୟ ବ୍ରହ୍ମଙ୍କ ଠାରୁ ଏ ଅନନ୍ତ ସୃଷ୍ଟି
ସ୍ଥିର ନିର୍ମଳ ଚିତ୍ତରେ ଶୁଣ ରଘୁପତି ।
ସୁଷୁପ୍ତାବସ୍ଥା ଯେସନ ସ୍ୱପ୍ନ ଅବସ୍ଥାରେ
ପ୍ରକାଶ ଲଭଇ ମୂର୍ତ୍ତିମନ୍ତ ଆକାରରେ ।
ସେହିପରି ସର୍ବାତ୍ମକ ବ୍ରହ୍ମ ନିରାମୟ
ସୃଷ୍ଟି – ବିଶିଷ୍ଟ ହୋଇଣ ଲଭନ୍ତି ଉଦୟ ।
ଏ ବିଷୟେ ଯେ ପ୍ରଣାଳୀ-ନିର୍ଦ୍ଦିଷ୍ଟ ଅଛଇ
ଶୁଣ ତାହା ତବ ଅଗ୍ରେ ବର୍ଣ୍ଣନା କରଇ ।
ଅନନ୍ତ ପ୍ରକାଶ ସେହି ଅନନ୍ତ ମହିମ
ପରମାତ୍ମା ରୂପ ଚିତ୍ରନ୍ନର ଯେ ଚିହ୍ନ ।
ଏହି ସୁବିସ୍ତୀର୍ଣ୍ଣ ବିଶ୍ୱ ତାହାଙ୍କ ବ୍ୟତୀତ
ଅନ୍ୟ କିଛି ନୁହେଁ ଜାଣ ଆହେ ରଘୁନାଥ ।
ନଭଠାରୁ ଶୂନ୍ୟ ସେହି ପୁଣି ସୁନିର୍ମଳ
ସ୍ୱୟଂ ସ୍ୱୀୟ ମାୟାବଳେ ଦିଶନ୍ତି ଉଜ୍ଜ୍ୱଳ ।
**ଯତ୍କିଞ୍ଚିତ ଜ୍ଞାନଭାବ ପ୍ରଥମେ ଉଦୟ**
**ସେହି ବିଜ୍ଞେୟ ଭାବଟି ଅହଂନାମଧେୟ ।**
ସର୍ବ ସୃଜ୍ୟମାନ ବସ୍ତୁ ଜାଣ ହେ ଶ୍ରୀରାମ
ଏହି ଅହଙ୍କାର ଗର୍ଭେ ଥାନ୍ତି ବିଦ୍ୟମାନ ।
**ଜ୍ଞାନ ସଂସ୍କାର ରୂପରେ ରହି ସେ ଥାଆନ୍ତି**
**ସର୍ବସୃଷ୍ଟି ସରଜନା ତହୁଁ ରଘୁପତି ।**
**ତାହା ଅସ୍ମାଦି ସଂସ୍କାର-ବିଶିଷ୍ଟ ଚିତ୍ତରେ**
**ଉଦ୍‌ବୋଧନ ଦେଇ ପ୍ରଣ ଉଲ୍ଲସିତ କରେ ।**
ତେଣୁକରି ତାର ନାମ ଅଟଇ ଚୈତନ୍ୟ
ସେ ଚୈତନ୍ୟ ବିବରଣ ଶୁଣ ରଘୁରାଣ ।

**ଚୈତନ୍ୟ-ସଂବିତ୍ ଯେ ପର୍ଯ୍ୟନ୍ତ ବୁଝାନୋହି**
**ସେପର୍ଯ୍ୟନ୍ତ ତାର ନାମ ଜୀବ ବୋଲି କହି ।**
ଜୀବର ଚିତ୍-ସଂବିତ୍ ସଂକଳ୍ପ ବୋଲାଏ
ସର୍ବଭୂତ ମାନଙ୍କର ଜନ୍ମ ତହୁଁ ହୁଏ ।
**ଚିତ୍ତ ସଂବିତ ଅଟଇ ତେଣୁ ସର୍ବ ଜୀବ**
ଏବେ ରାମ ମୋ ବଚନ ବୁଝି ପାରୁଥିବ ।
ଜୀବନ ସଂବିତ ଯେ କାଳେ ଜ୍ଞାନକୁ ଚେତାଏ,
ପ୍ରଥମେ ଶୂନ୍ୟ ହୋଇ ସେ ଶବ୍ଦଗୁଣ ହୁଏ ।
**ସେହି ଆଦି ଶବ୍ଦ-ତନ୍ମାତ୍ରାରୁ ଭବିଷ୍ୟତ**
**'ନାମାକାର' 'ସପ୍ରମାଣ' ବେଦର ସଂଜାତ ।**
'ପଦ' 'ବାକ୍ୟ' ସହିତ ସେ ବେଦ ଉଚ୍ଛୁଳେଇ
ବେଦଭାବାପନ୍ନ ବ୍ରହ୍ମ ଜଗତ ସର୍ଜଇ ।
ଯେତେ ଶବ୍ଦ ଏ ଜଗତେ ସ୍ମୃତିର ଗୋଚର
ତନ୍ମାତ୍ରା ରୂପ ତାଙ୍କର ଜାତ ରଘୁବୀର ।
ବାୟୁଥିବା ଜଣଯାଏ ଯାହାର ପରଶେ
ରୂପ ତନ୍ମାତ୍ରା ଧରି ସେ ସୂର୍ଯ୍ୟାଦି ପ୍ରକାଶେ ।
ରସତନ୍ମାତ୍ରା ହୋଇ ଯେ ଜଳ ଜାତ କରେ
ସକଳ ଜଳର ବୀଜ ସେହି ଏ ସଂସାରେ ।
ଗନ୍ଧ ତନ୍ମାତ୍ରା ହୋଇ ଯେ ଧରାରୂପ ଧରେ
ସକଳ ପୃଥ୍ୱୀର ବୀଜ ଅଟେ ସଦାକାଳେ ।
ସପତ ପାତାଳ ସହ ସପତ ସରଗ
ଚଉଦ ଭୁବନ ମଧ୍ୟେ ଯେତେ ଯେତେ ମାର୍ଗ ।
ଚତୁର୍ବିଧ ପ୍ରାଣୀ, ତତ୍ ସମନ୍ୱିତ ବିଶ୍ୱ
ପ୍ରାଣ ମହାବାୟୁ ରୂପେ ବ୍ୟାପେ ରଘୁଈଶ ।
ଏ ବୀଜରୁ ବିଦ୍ୟୁତ୍, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ଜାତ
ବ୍ୟାପୀ ରହିଛନ୍ତି ରାମ ଏ ସାରା ଜଗତ
ପଞ୍ଚଭୂତ ଆତ୍ମାମାନେ ଏଥିରୁ ଜନମ-
ଜଡ଼ ଜଗତର ମଧ୍ୟ ଏହି ଜନ୍ମସ୍ଥାନ ।
ନୁହନ୍ତି ଚିତ୍ ଆକାଶ ଏହି ପଞ୍ଚଭୂତ
ଯେଣୁ ଯେ ଅଟନ୍ତି ରାମ ଜାଣ ମାୟାଯୁକ୍ତ ।

ଏହିପରି ଚିଦାଣୁରେ ସୃଷ୍ଟି ଭାସମାନ -
ସଂକଳ୍ପ* । ରାଜ୍ୟର ବସ୍ତୁ ଅଟଇ ଏ ରାମ ।
ସୂକ୍ଷ୍ମ ବୀଜରୁ ଯେସନ ସ୍ଥୂଳ ବଟବୃକ୍ଷ
ଚିଦାଣୁରୁ ତେସନ ଏ ସୃଷ୍ଟି ହିଁ ପ୍ରତ୍ୟକ୍ଷ ।
କ୍ଷଣ ମଧ୍ୟେ ଆବିର୍ଭୂତ କ୍ଷଣମଧ୍ୟେ ଶେଷ
**ଚିଦାଣୁରେ ଏ ଅନନ୍ତ ସୃଷ୍ଟିର ବିକାଶ ।**
**ବୈକାରିକ ନୁହେଁ ସୃଷ୍ଟି ସେ ତ ବୈବର୍ତ୍ତିକ**
**ଆପାତ ମଧୁର ସେହୁ କିନ୍ତୁ ଭ୍ରମାତ୍ମକ ।**
ଜ୍ଞାନାଭିମୁଖୀ ହୁଅନ୍ତେ ସେ ଚିଦ୍-ସମ୍ବିତ
ବହୁ ସୃଷ୍ଟି ଭାସମାନ ତହୁଁ ରଘୁନାଥ ।
କିନ୍ତୁ ଯେବେ ଆତ୍ମା ପ୍ରତି ଯାଏ ତାର ଦୃଷ୍ଟି
କ୍ରମେ ପରମାତ୍ମା ଭେଟ ଆଶା ଯାଏ ମେଣ୍ଟି ।
ଆତ୍ମବତ ସର୍ବଭୂତ ଦେଖେ ସେ ଜଗତେ
ତେଣୁ **ବିଶ୍ୱବୀଜ**-ସୂକ୍ଷ୍ମ ପଣ୍ଡିତଙ୍କ ମତେ ।
**ଚିଦାଣୁ ସେ ବୀଜ ବୋଲି ଅନେକଙ୍କ ମତ**
ଏ ଭବ ସର୍ଜନା ବୁଝୁଥିବ ରଘୁନାଥ ।
ଯେଷା ବୀଜା ତେଷାଙ୍କୁରା ଶାସ୍ତ୍ରର କଥନ
ଏ ସାରା ଜଗତ ଚିଦାକାଶ ରଘୁନାନ ।
ସଂକଳ୍ପରୁ ଏ ଜଗତ ହୋଇଅଛି ଜାତ
ସଂକଳ୍ପ ବିନା ଏ ଭବ ଚିଦାକାଶ ବତ ।
ସଂକଳ୍ପ ଆକାଶ ରୂପ ଅଟଇ ଯେସନ
ଏ ଭବ ଆକାଶ ରୂପ ଜାଣିବ ତେସନ ।
ଆକାଶ ସ୍ୱରପ ଅଟେ ଆତ୍ମା ଅନୁଭବ
କ୍ଷଣମଧ୍ୟେ ବହୁରୂପ ଘଟିବା ସମ୍ଭବ ।
ସଂକଳ୍ପ ନଗର, ସ୍ୱପ୍ନପୁର ଯେଉଁପରି
ଏ ଜଗତ ଜାତ ରାମ ଅଟେ ସେହିପରି ।
**ପଞ୍ଚଭୂତ ଜାଣ ରାମ ଜଗତର ମୂଳ**
**ସଂବିତ୍ ତା' ବୀଜ, ଚିଦାକାଶ ରୂପତାର ।**
ସେ ସକଳ ବୀଜ ପରମାତ୍ମା ପରା ଶକ୍ତି
ଶାସ୍ତ୍ରମତେ ସେହି ମାୟାଶକ୍ତି ଆଦ୍ୟାଶକ୍ତି ।

୧। ଚେତ୍ୟ - କେୟ ।
୨। ଅସ୍ମଦ୍ - ମୁଁ
୩। ଚିତ୍ତ - ସ୍ମରଣ ବୃତ୍ତି ॥
ଚତୁର୍ଦ୍ଦଶ ଭୁବନ - ସପ୍ତ ପାତାଳ ସପ୍ତ ସ୍ୱର୍ଗ ।
ଚତୁର୍ବିଧ ପ୍ରାଣୀ - ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍ଭିଦଜ ।
*ସଙ୍କଳ୍ପ - କଳ୍ପନା, ଭାବନା, *ପରା - ମାୟା,

ସେହି ଆଦ୍ୟାଶକ୍ତି ବଳେ ଜଗତର ଶୋଭା
ବଢ଼ି ଚାଲୁଥାଏ ରାମ ଜୀବମନ ଲୋଭା ।
ଭାବି ଦେଖ ସେହି ଏକ ପରମାତ୍ମାତତ୍ତ୍ୱ
ମାୟାଶକ୍ତି ବଳେ ଗଢ଼େ ଏ ସାରା ଜଗତ ।
ଏ ଜଗତ ମହାବୃକ୍ଷ ଶାଖା ପ୍ରାଶାଖାଦି
ବିକଶିତ କରେ ରାମ ସେ ଶକ୍ତି ଅନାଦି ।
ସେହି ହେତୁ କହେ ରାମ ଅଜ ଏ ଜଗତ
ଅବ୍ୟକ୍ତ କଳ୍ପନା ବସ୍ତୁ, ଚିନ୍ମାତ୍ର, ଅନନ୍ତ ।
**ଚିନ୍ମାତ୍ର ହିଁ ତା ରହସ୍ୟ ପୁଣି ତାର ତତ୍ତ୍ୱ**
ଅନୁଭବ କରେ ମୁହିଁ, ଏ ତତ୍ତ୍ୱ ବିଚିତ୍ର ।
**ଇତି ଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଜଗତ୍ ଉତ୍ପତ୍ତି ବର୍ଣ୍ଣନେ**
**ନାମ ଏକାଦଶ ସର୍ଗଃ ।**



## ଦ୍ୱାଦଶ ସର୍ଗଃ
## ସ୍ୱୟମ୍ଭୁ - ଉତ୍ପତ୍ତି

କହନ୍ତି ବଶିଷ୍ଠ ଶୁଣ ଆହେ ଦାଶରଥି
ମହା ନିଗମ ଅଟଇ ପରଂବ୍ରହ୍ମ ଗତି ।
'ନଭ' 'ତେଜ' 'ତମ' ଆଦି ସବୁରି କାରଣ
ଅଟନ୍ତି ଯେ, ଅନୁତ୍ପନ୍ନ ବ୍ରହ୍ମ ସନାତନ ।
ବିକାର କୃତ, ବୈଷମ୍ୟ-ଶୂନ୍ୟ, ସେ ଅଟନ୍ତି
ଆପେ ଆପେ ସଦା ସେହି ସ୍ଥିର ରହିଛନ୍ତି ।
ସମ, ଅସମ, ଜଗତ ତାଙ୍କଠୁଁ, ଉତ୍ପତ୍ତି
ଚେତ୍ୟ ବିଷୟ, କଳ୍ପନା, ଆଦିର ପ୍ରସୂତି ।
ସମ ବୋଇଲେ ବୁଝିବ ସ୍ୱଜାତୀୟ ବୋଲି
ବିଷମ ବୁଝାଏ ଭେଦଭାବ, ରିପୁ, ଅରି ।
କେସନ ତା' ଘଟେ ତାହା ହେତୁ କରି ଶୁଣ
ସକଳ ଭ୍ରମ ତୁମର ହେବ ନିବାରଣ ।
**ପ୍ରଥମେ ତହିଁରୁ ହୁଏ ଜ୍ଞାନର ଉଦୟ**
**ସେ ଜ୍ଞାନ ବୁଝାଏ ଜୀବ, ହେଜ ରଘୁରାୟ ।**
ଦୃଶ୍ୟକୁ ଚେତାଇ ଦିଏ ସେହି ଜ୍ଞାନ ରାମ
ଶବ୍ଦ, ସ୍ପର୍ଶ, ରୂପ ଆଦି ତହିଁରୁ ଜନମ ।
ପଞ୍ଚଭୂତ ରୂପ-ବୃକ୍ଷ ତହିଁରୁ ଜନମ
ବ୍ରହ୍ମାଣ୍ଡ ରୂପକ ଫଳ ତହୁଁ ଉତପନ୍ନ ।
ତେଣୁ ପଞ୍ଚଭୂତମାନେ ଜଗତ କାରଣ
ସେହି ପଞ୍ଚଭୂତ ରାମ ଅଟଇ ଗଗନ ।
ତେଣୁ ଏ ସାରା ଜଗତ ବ୍ରହ୍ମ ରୂପେ ପୂର୍ଣ୍ଣ
ବ୍ରହ୍ମ ଛଡ଼ା ଏ ଜଗତେ କିଛି ନାହିଁ ଜାଣ ।
ଯେ ଭବ ତୁମକୁ ରାମ ହୁଏ ଦୃଶ୍ୟମାନ
ଚିଦାକାଶ ଅଟନ୍ତି ସେ ମହତ ମହାନ ।
ବାସ୍ତବରେ ତହିଁ ଦ୍ୱୈତ ଭାବ କିଛି ନାହିଁ
ଜୀବାକାଶ, 'ବ୍ରହ୍ମକାଶ ଯାହା, କହିଲଇଁ ।
କିପରି ଦେହ ଧାରଣ କରନ୍ତି ସେ ବ୍ରହ୍ମ
ଶୁଣ ତା'ତୁମ ଆଗେ ମୁଁ କରୁଛି ବର୍ଣ୍ଣନ ।
ସେହି ଚିଦ୍ ଆତ୍ମା ବ୍ରହ୍ମ, ମାନସ ଗଗନେ
ବିଷୟ କଳ୍ପନା ଉପୁଜାଏ ଅନୁକ୍ଷଣେ ।
ପରେ ବିଷୟ ବାସନା-ପୂର୍ଣ୍ଣ ଜୀବ ଭାବ
ଜନମିଣ ଉପୁଜାଏ ଅହଂ ଜ୍ଞାନଭାବ ।
ଅହଂଜ୍ଞାନ ହେଲେ ବୁଦ୍ଧି ହୁଅଇ ଜନମ
ବୁଦ୍ଧିରୁ ମନନ ଧର୍ମ-ସମନ୍ୱିତ-ମନ ।
ଏହି ମନ ପଞ୍ଚତତ୍ତ୍ୱ ସହିତ ମିଳିତ-
ହୋଇ, ମହାଭୂତ ରୂପେ ହୁଏ ବୃଦ୍ଧିପ୍ରାପ୍ତ ।
ଜଗତ ଆକାରେ ତାହା ହୁଏ ପରିଦୃଷ୍ଟ
ସେହି ଚିଦ୍ ଆତ୍ମା ମନେ ହୋଇଣ ଆବିଷ୍ଟ ।
ଏହି ଜଗତ ରୂପକୁ ଦେଖନ୍ତି ସ୍ୱପନେ
ସେହି ଭବ ଉଦେ ହୁଏ ଚିନ୍ମୟ ଗଗନେ ।
ବିଲୀନ ହେଉ ସେ ଥାଏ ଅନୁକ୍ଷଣ ରାମ
ଏହି ଉଦୟାସ୍ତ ଚାଲୁଥାଏ ଅନୁକ୍ଷଣ ।
ସେହି ମନ ମଧ୍ୟୁ ଜାତ ଶ୍ରବଣ ଇନ୍ଦ୍ରିୟ
ସେହି ମନ ଜାତ କରେ ଦର୍ଶନ ଇନ୍ଦ୍ରିୟ ।
ସେହି ମନ ମାତା, ପିତା, ସ୍ପର୍ଶ ଇନ୍ଦ୍ରିୟର
ରସ ଗ୍ରହଣକାରୀ ସେ ରସନେନ୍ଦ୍ରିୟର ।
ଦେହ, ଇନ୍ଦ୍ରିୟ, ଏ ମନେ ଜ୍ଞାନ ରୂପେ ଭାସେ
ଅହଂଭାବ ଜୀବ ମନେ ସ୍ୱତଃ ପରକାଶେ ।
ଦରପଣେ ପର୍ବତର ପ୍ରତିବିମ୍ବ ପରି
ଦେହ ଇନ୍ଦ୍ରିୟରେ ଅହଂ ତଥା ନୃତ୍ୟ କରି ।

ଶବ୍ଦ, ସ୍ପର୍ଶ, ରୂପ ରସ ଗନ୍ଧ - ପଞ୍ଚତନ୍ମାତ୍ରା
ପୃଥ୍ୱୀ, ଆପ୍, ତେଜ, ବାୟୁ, ଆକାଶ - ପଞ୍ଚଭୂତ ।

କୂପ ଜଳେ ନର ଯେହ୍ନେ ଦେଖେ ତା ସ୍ୱରୂପ
ନିଜ ଦେହ ନିଜ ରୂପ ଦେଖେ ସେହି ରୂପ ।
ଫରୁଆ ମଧ୍ୟରେ ରତ୍ନ ସୁସଜ୍ଜିତ ପରି ।
ଦେହ ମଧ୍ୟେ ଆତ୍ମା ସୁରକ୍ଷିତ ଚାପଧାରି ।
ଚିଦାଣୁ ଦେହ ସହିତ ଜଡ଼ିତ ରହିଣ ।
ଦୃଶ୍ୟକୁ ସେ ରଚୁଥାଏ ଅନୁକ୍ଷଣ ରାମ ।
ଅହଂ ପ୍ରଭାବେ ଚିଦାଣୁ କ୍ରିୟା ରସେ ରସେ
ବିଚିତ୍ର ଏ ଜୀବ ରାମ ଭାବ ଜଳେ ଭାସେ ।
ସପନେ ଧାବନ ପୁଣି ସ୍ଥିତିରେ ସ୍ପନ୍ଦନ
ମୃଦୁ ସ୍ପନ୍ଦନ ରହିଛି ତହିଁରେ ପ୍ରଚ୍ଛନ୍ନ ।
ଆତ୍ମାରେ ଯେ ସ୍ପନ୍ଦ କ୍ରିୟା ହୁଏ ଅବିରତ
ଚିତ୍ତ-ସଂବିତରୁ ରାମ ହୁଏ ତା ସଂଜାତ ।
ସ୍ୱୟମ୍ଭୁ ବ୍ରହ୍ମା ଅଟନ୍ତି ସେହି ସ୍ପନ୍ଦକ୍ରିୟା
ହେତୁ ରଖିଥିଲେ ତୁଟୁଥିବ ଭବମାୟା ।
ସଂକଳ୍ପ ଜନିତ ଯଥା ଦ୍ୱିତୀୟ ଚନ୍ଦ୍ରମା
ଅବିକଳ ଏ ଜଗତ ସେହିପରି ସିନା ।
ଶଶାର ଶୃଙ୍ଗ ସଦୃଶ ଜାଣ ଏ ଜଗତ
ଚିତ୍ତ ସ୍ପନ୍ଦନରୁ ମାତ୍ର ଏ ଜଗତ ଜାତ ।
ଯହୁଁ ଯହୁଁ ଏହି ଚିତ୍ତ କାଳ ଆଦି ହୁନ୍ତି ଜାତ ।
ତେଣୁ ସଙ୍କଳ୍ପ ସ୍ୱରୂପ ଅଟେ ଏ ଜଗତ
ସଂକଳ୍ପ ବିନା ଜଗତ ଜାଣ ଶୂନ୍ୟବତ ।
ସଂକଳ୍ପ-ସ୍ପନ୍ଦିତ ହେଲେ ଜଗତ ଆଭାସ
ସଂକଳ୍ପ-ସ୍ପନ୍ଦନ ବିନା ଏ ଭବ ବିନାଶ ।
ଏହିପରି ସେହି ବ୍ରହ୍ମା ଲଭନ୍ତି ଜନମ
କିୟତ୍‌କାଳ ପରେ ପୁଣି ହୁଅନ୍ତି ବିଲୀନ ।
ନାଟକାଭିନୟ ପରି ଅଟେ ଏ ଜଗତ
କ୍ଷଣ କ୍ଷଣକରେ ରାମ ଲଭେ ସେ ଲୁପତ ।
ଚିତ୍ତ ଅଭିମୁଖୀ ଯେତେବେଳେ ସେ ହୁଅଇ
ଦୃଶ୍ୟର ଅନ୍ତ ହେ ରାମ କେଭେଁ ନ ଘଟଇ ।
ଅନ୍ତର୍ମୁଖୀ ଯେତେବେଳେ ହୁଅଇ ସେ ରାମ
ପ୍ରତୀତ ହୁଏ ଏ ଭବ ଆତ୍ମାର ସମାନ ।
ଚିତ୍ତ ନିସ୍ପନ୍ଦରେ କ୍ଷଣ ମାତ୍ରକେ ଏ ଭବ
ନିଶ୍ଚିହ୍ନ ହୁଅଇ ରାମ ଏ କଥା ଜାଣିବ ।
ତେଣୁ ଆକାଶ, ଜଗତ, ଉଭୟ ସମାନ
ଆତ୍ମସତ୍ତା ସ୍ୱ ଆୟତ୍ତେ ସ୍ଥିର ରହେ ଜାଣ ।

ସପନରେ ଭ୍ରମବଶ ନଦୀ ଓ ପର୍ବତ
ଭ୍ରମବଶ ସେହିପରି ଅଟେ ଏ ଜଗତ ।
ସତ୍ୟ ପରି ଜଣାଯାଏ ନାନାଦି ଅସତ୍ୟ
ସ୍ଥାବର, ଜଙ୍ଗମ, ଜଡ଼ ଚେତନ ଯେମନ୍ତ ।
ଜୀବ ନାମେ ବ୍ରହ୍ମ ନିଜେ ପରିଚିତ ହୋଇ
ସ୍ୱବୁଦ୍ଧି-କଳ୍ପିତ ଭବ ସ୍ୱୟଂ ଦେଖୁଛଇ ।
ତନ୍ମଧ୍ୟେ ଆତିବାହିକ ଦେହୀ ପ୍ରଜାପତି
ହିରଣ୍ୟଗର୍ଭ ବୋଲିଣ ଯାହାକୁ କହନ୍ତି ।
ତାଙ୍କ ଭିନ୍ନ ଏ ଜଗତେ ଅନ୍ୟ କେହି ନାହିଁ
ଅନନ୍ତ ଗଗନ ପରି ବିରାଜୁ ଅଛଇ ।
ତେଣୁ କରି ଆହେ ରାମ ତୁମ୍ଭକୁ କହିଛି
ସ୍ଥାବର ଜଙ୍ଗମ ବୋଲି ନାହିଁ ଅନ୍ୟ କିଛି ।
ଯାହା କିଛି ଦେଖୁଅଛ ଆହେ ଦାଶରଥି
ସକଳେ ତରଙ୍ଗ ପରି ଉଦୟାସ୍ତ ହୁନ୍ତି
ନିଜକୁ ନିଜେ ସେ ବ୍ରହ୍ମ ସୃଷ୍ଟି କରିଛନ୍ତି
ପୁଣି ନିଜେ ନିଜର ସେ ବିନାଶ ଘଟାନ୍ତି ।
ପ୍ରଶାନ୍ତ ସାଗର ଯଥା ବପୁ ସୁବିସ୍ତାରି
ଅସଞ୍ଜାତ ଉର୍ମିମାଳା ନିଅଇ ଆବୋରି ।
ପ୍ରଶାନ୍ତ ଆକାଶ ସ୍ୱୀୟ ଶୂନ୍ୟତା ନ ତେଜି
ଜୀବ ରୂପେ ଅବତରେ ବୁଝ ରାମ ହେଜି ।
ସଂକଳ୍ପ ରୂପିଣୀ ତାର ଯେଉଁ ଚିତ୍ତବୃତ୍ତି
ଗ୍ରହଣ କରଇ ରାମ କୋଟି ଜୀବାକୃତି,
ବିରାଟ-ପ୍ରଜାପତି ଯେ ଆଗେ ଆବିର୍ଭୂତ,
ବ୍ରହ୍ମା ନାମରେ ହୁଅନ୍ତି ଯେହୁ ପରିଚିତ,
ଆକାଶମୟ ଚିଦ୍ ରୂପ ତା'ର କଳେବର
ଆତିବାହିକ ବୋଲନ୍ତି ପଣ୍ଡିତ ପ୍ରବର ।
ଅନ୍ୟ ଜୀବ ପରି ତାର ଜନକ ଯେ କିଏ
କାହାକୁ ବିଦିତ ନୁହେଁ କୌଶଲ୍ୟା ତନୟେ ।
ଦ୍ରଷ୍ଟା, ଦୃଶ୍ୟ, ସ୍ରଷ୍ଟା ବୋଲି ତାର କେହି ନାହିଁ
ଏସବୁ ସମ୍ପର୍କ ନିଜେ ନିଜେ ଜାଣ ସେହି ।
ଗୋଟିଏ ଦୀପରୁ ଯଥା ବହୁ ଦୀପ ଜଳେ
ଅନ୍ୟ ଜୀବମାନେ ଯାଠୁଁ ଜାତ ଧରାତଳେ ।
**ସଂକଳ୍ପରୁ ସଂକଳପାନ୍ତର ଜନ୍ମ ପରି**
**ସ୍ୱପନରୁ ସ୍ୱପ୍ନାନ୍ତର ମାନ ସେହିପରି ।**
ସେପରି ତା ସ୍ପନ୍ଦନରୁ ଏହି ଯେ ଜଗତ
ଜନମ ଲଭି ଅଛଇ ଆହେ ରଘୁନାଥ ।

ତେଣୁ 'ସୃଷ୍ଟି' 'ପରାମା-ତ୍ମା' ଏକଇ ପଦାର୍ଥ
ବୁଝି ପାରୁଥିବ ରାମ ମୋ କହିବା ତତ୍ତ୍ୱ ।
**ଇତି ଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ସ୍ୱୟମ୍ଭୁ ଉତ୍ପତ୍ତି ବର୍ଣ୍ଣନେ ନାମ ଦ୍ୱାଦଶ ସର୍ଗଃ ।**



## ତ୍ରୟୋଦଶ ସର୍ଗଃ
## ସର୍ବବ୍ରହ୍ମ ପ୍ରତିପାଦନ

ମିଥ୍ୟା, ଅନିତ୍ୟ ଅଟଇ ଏ ଜଗତ ରାମ
ଯା' କିଛି ଅଛି ତା ସବୁ ନିରାମୟ ବ୍ରହ୍ମ ।
ଜୀବ ସଦୃଶ ଅଟଇ ଏହି ବ୍ରହ୍ମାକାଶ
ସମୁଦ୍ର ଦ୍ରବତାବଶ ତରଙ୍ଗ ସଦୃଶ ।
କାଷ୍ଠ ମଧ୍ୟେ ଶିଳ୍ପୀ କରେ ପିତୁଳା କଳ୍ପନା
ନୁହଁଇ କି ସେ ପିତୁଳା ତା ମନ ସର୍ଜ୍ଜନା ?
କାଷ୍ଠ ଖଣ୍ଡ ଯାହା ଥିଲା, ପଡ଼ିଛି ସେପରି
ପିତୁଳା ସର୍ଜ୍ଜନା ଖାଲି ମନର ଚାତୁରୀ ।
ଆତ୍ମାରେ ସକଳ ବସ୍ତୁ ମନର କଳ୍ପନା
ଆତ୍ମା ଯେଉଁ ବ୍ରହ୍ମ ଥିଲା, ସେହି ବ୍ରହ୍ମ ସିନା ।
ବଡ଼ ପିତୁଳାକୁ ସ୍ରଷ୍ଟେ ବ୍ରହ୍ମ ବୋଲି ମଣେ
ସାନ ପିତୁଳା ତହିଁରେ ଜୀବ ବୋଲି ଜାଣେ ।
ବାସ୍ତବରେ ଆତ୍ମସତ୍ତା କେବଳ ରହିଛି
ଜଗତର ସତ୍ତା ବୋଲି ନାହିଁ ରାମ୍ କିଛି ।
କେବଳ ଧାରଣା ରାଜ୍ୟେ ଅଛି ଏ ଜଗତ
ଧାରଣା ମେଣ୍ଟିଲେ ତାର ସତ୍ତା ଶୂନ୍ୟବତ ।
**ଯଥା ବୃକ୍ଷ ଥିଲେ ଶାଖା ରହିବା ନିଶ୍ଚିତ**
**ବିରାଟଙ୍କ ପ୍ରତି ସ୍ପନ୍ଦେ ଜୀବ ସୁନିଶ୍ଚିତ ।**
ଅଭେଦ ଅଟନ୍ତି ରାମ କାର୍ଯ୍ୟ ଓ କାରଣ
ସୃଷ୍ଟି-ପରମାତ୍ମା ତେଣୁ ଅଟନ୍ତି ଅଭିନ୍ନ ।
ଅଳିକ ପୃଥ୍ୱୀକୁ ଯେହୁ କରିଅଛି ଜାତ
ଜୀବକାଶ-ଆଦି-ବ୍ରହ୍ମା ଦ୍ୱାରା ଯେ ସର୍ଜ୍ଜିତ ।
କହୁଛନ୍ତି ରାମଚନ୍ଦ୍ର ଶୁଣ ମହାଶୟ
ଜୀବ ଅପରିମିତ କି ପରିମିତ କହ ।
ସସଂଖ୍ୟ କି ଅସଂଖ୍ୟ ତା' କହନ୍ତୁ ବୁଝାଇ
ଏହି ଚିନ୍ତା ମନେ ମୋର ଦେଉଛି ଘୁରାଇ ।
ଆଦ୍ୟ ପ୍ରଜାପତିଠାରୁ ସର୍ବଜୀବ ଜାତ
କିନ୍ତୁ ଆପଣ କହନ୍ତି ଏ କଥା ଅସତ୍ୟ ।
ସତ୍ୟ ମୂଳବସ୍ତୁ ଯେବେ ହେବ ଅବାସ୍ତବ
ବାରିଦରୁ ଜଳବିନ୍ଦୁ କିପରି ସମ୍ଭବ ?
କିପରି ବା କେଉଁଠାରୁ ଜୀବପୁଞ୍ଜ ଜାତ
ହେଉଛନ୍ତି ତାହା କହ ଆହେ ବ୍ରହ୍ମା ସୁତ ?
ଜୀବତତ୍ତ୍ୱ ଯହିଁରୁ ମୁଁ ବୁଝିପାରିବଇଁ
ସେହି ସବୁ କଥା ମୋତେ କହନ୍ତୁ ଫିଟାଇ ।
ସେ ଜୀବ ଗୋଟି ଯେ କିଏ କହନ୍ତୁ ବୁଝାଇ
ଯାହାଠାରୁ ସର୍ବଜୀବ ଉତପନ୍ନ ହୋଇ ।
ହେ ରଘୁକୁଳ ପାବନ କହେ ବ୍ରହ୍ମାସୁତ
ତୁମର ବଚନ ଜାଣ ଶଶା ଶୃଙ୍ଗବତ ।
ଜୀବ ବୋଲି କେହି କେବେ ଉପୁଜିତ ନାହିଁ
ବହୁଜୀବ ଜନ୍ମକଥା ଉଠିବ କିମ୍ପାଇଁ ?
**ପ୍ରତିଭାସ ଛଡ଼ା ଜୀବ ଅନ୍ୟ କିଛି ନୁହେଁ**
**ଶୁଦ୍ଧ ଅଦ୍ୱୈତ ବ୍ରହ୍ମ ଯେ ନିଜେ ନିଜେ ଥାଏ ।**
ଅନନ୍ତ ସେ ଆତ୍ମା ଭେଦ କିଛି ନାହିଁ ତହିଁ
ଆକାଶ ସଦୃଶ ତୁମ ଜଗତ ଅଟନ୍ତି ।
ସର୍ବ ଶକ୍ତିମାନ ରାମ ସେ ବ୍ରହ୍ମ ଅଟନ୍ତି
ସର୍ବ କଳ୍ପନା କୌଶଳ ତହିଁ ବିରାଜନ୍ତି ।
ପୁଷ୍ପିତ ଲତା ଯେସନ ଜନ ମନ ହରେ
ଚିତ୍ତବୃତ୍ତି ଧରି ବ୍ରହ୍ମ ଶୋଭଇ ବିଶ୍ୱରେ ।
ସର୍ବଗାମୀ ସେ ଚିନ୍ମୟ ବ୍ରହ୍ମଙ୍କ ବ୍ୟତୀତ
ଆଉ କିଛି ନାହିଁ ଜାଣ ଆହେ ରଘୁନାଥ ।
ଯେଣୁ ସେ ଅଟନ୍ତି ରାମ ସର୍ବ ଶକ୍ତିମାନ
ଆବର କଳ୍ପନା ଦକ୍ଷ ସେ ମହା ମହିମ,
ସକଳ କଳ୍ପନା ଜାଣ ବିସ୍ତାରିଣ ସେହି
ମାୟାମୟ ଜଗତକୁ ବସିଛି ମେଲାଇ ।
ଆଦ୍ୟ ଅବସ୍ଥାରେ ବୃକ୍ଷ ଥାଏ କ୍ଷୁଦ୍ରାକାର
ପରେ ବୃଦ୍ଧିପାଇ ଧରିଥାଏ ଫୁଲଫଳ ।
ବ୍ରହ୍ମର ଜଗତ୍ କଳ୍ପନା ଜାଣ ସେହିପରି
ଚୈତନ୍ୟ ସଂସର୍ଗ ହେତୁ ବିକାଶ ଯେପରି ।
ଚିନ୍ମୟ ବ୍ରହ୍ମ ନିଜକୁ ଜୀବ, ବୁଦ୍ଧି, ମନ
କ୍ରିୟା, ଦ୍ୱିଦ୍ୱ ଏକତ୍ୱରେ କରାଏ ସ୍ଫୁରଣ ।

କଳ୍ପନା କୌଶଳ କ୍ରମେ କେବେ ନିରାକାର
କଳ୍ପନା କୌଶଳ କ୍ରମେ କେବେ ବା ସାକାର ।
ଯାହାକି କରୁଛି ବ୍ରହ୍ମ ନିଜେ ସେ ଜାଣଇ
ଅନ୍ୟ କେ ଜାଣିବ ତାଙ୍କୁ, ଶକ୍ତି କା' ଅଛଇ ?
**ଏହି ସକଳ ରୂପର କାରଣ ଅବିଦ୍ୟା**
**ଆତ୍ମତତ୍ତ୍ୱ ଜ୍ଞାନ ତାଙ୍କୁ ବିନାଶଇ ସଦା ।**
ଆତ୍ମ ପ୍ରବୋଧ ଜନ୍ମିଲେ ଅବିଦ୍ୟାର ନାଶ
ପ୍ରଦୀପ ଆଲୋକେ ଯଥା ଅନ୍ଧାର ବିନାଶ ।
କି ପଦାର୍ଥ, ସେ ଅଜ୍ଞାନ ମିଥ୍ୟା ବା ଅସାର
କିଛି ବୁଝାଯାଏ ନାହିଁ ହେ ରାଜକୁମାର ।
ଏହି ସିଦ୍ଧାନ୍ତରୁ ବୁଝ ବ୍ରହ୍ମହିଁ ଜୀବାତ୍ମା
ବ୍ରହ୍ମ ବ୍ୟତୀତ ନାହିଁଟି ଜୀବାତ୍ମାର ସତ୍ତା ।
ସେହି ଯେ ଅପରିଚ୍ଛିନ୍ନ ଅଖଣ୍ଡ ଦୁର୍ବାର
ଅନାଦି, ଅନନ୍ତ ସତ୍ତା, ଚୈତନ, ଅପାର ।
ସର୍ବ ସ୍ୱରୂପ ସେ ବ୍ରହ୍ମ ଭିନ୍ନ କିଛି ନାହିଁ
ଦୃଶ୍ୟାଦୃଶ୍ୟ ଯାହାକିଛି ବ୍ରହ୍ମ ହିଁ ଅଟଇ ।
ଯେ କିଛି ଭେଦ କଳ୍ପନା ବ୍ରହ୍ମଠାରେ ଅଛି
ମାୟିକ-ବିଭୂତି ତାର ଜାଣ ରଘୁବଂଶି ।
କହୁଛନ୍ତି ରାମଚନ୍ଦ୍ର ଶୁଣ ଗୁରୁଦେବ
ମୋ ମନୁ ସଂଶୟ ଏବେ ଦୂର କରିଦେବ ।
ଏକ ଗୋଟି ମାତ୍ର ଯଦି ଅଛି ମହାଜୀବ
ତା ଠାରୁ ଜନମ ଭିନ୍ନ ଭିନ୍ନ ଭବ ଜୀବ ।
କିମ୍ପାଇ ସେମାନେ ମହାଜୀବ ତୁଲ୍ୟ ନୋହି
କିମ୍ପାଇ ସଂସାରୀ ଜୀବ ସ୍ୱଳ୍ପ ଜ୍ଞାନୀ ହୋଇ ।
ବ୍ୟର୍ଥ-ସଙ୍କଳ୍ପ କିମ୍ପାଇଁ ସେ ଜୀବ ଅଟଇ
ସୁବିସ୍ତାର କରି ଦେବ କହନ୍ତୁ ବୁଝାଇ ।
ବଶିଷ୍ଠ ବୋଇଲେ ରାମ ଶୁଣ ମୋ ବଚନ
ସେହି ସର୍ବ ଶକ୍ତିମାନ ବ୍ରହ୍ମ ସନାତନ ।
ସେ ମହା ଜୀବର ଆତ୍ମା ଅଟନ୍ତି ସେ ଜାଣ
ଭବ ଜୀବର ମଧ୍ୟ ସେ ଅଟନ୍ତିଟି ପ୍ରାଣ ।
**ବ୍ରହ୍ମ ଯେ ସର୍ବ ପ୍ରଥମେ ମହା ଜୀବ ହୁଏ**
**ପରେ କ୍ଷୁଦ୍ର ଜୀବ ରୂପେ ପ୍ରକାଶକୁ ପାଏ ।**
ସେହି ମହାଜୀବ-ବ୍ରହ୍ମ ଯାହା ଇଚ୍ଛା କରେ
ଅବିଳମ୍ବେ ସଫଳତା ଲଭେ କାଳେ କାଳେ ।

"ସଦା ସତ୍ୟ ସଂକଳ୍ପ * ମୁଁ ସକଳ ବିଷୟେ"
ଇତ୍ୟାକାରେ ସ୍ୱଇଚ୍ଛାରେ ସଦା ରହିଥାଏ ।
ବିଭାଗ ସୃଷ୍ଟିର ପୂର୍ବେ ସଙ୍କଳ୍ପ ଉଦୟ
କ୍ରମଶଃ ଦ୍ୱୈତ ପ୍ରପଞ୍ଚ ଭାବ ଅଭ୍ୟୁଦୟ ।
'ମହାଜୀବ'କୁ 'ସମଷ୍ଟି ଜୀବ' ବୋଲି କହି
'କ୍ଷୁଦ୍ରଜୀବ' ବ୍ୟଷ୍ଟି ଜୀବ ବୋଲିଣ ବୋଲାଇ ।
କୁଲାଳ ଚକ୍ରରେ ଘଟ ନିର୍ମାଣ କାଳରେ
ଦଣ୍ଡ, ଚକ୍ର ଉମଶାଦି କ୍ରମିକ କ୍ରିୟାରେ ।
ଘଟମାନ କୁମ୍ଭକାର କରଇ ନିର୍ମାଣ
ସୃଷ୍ଟିର ନିର୍ମାଣ ରାମ ବୁଝିବ ତେସନ ।
ଦ୍ୱୈତ-ବିଭାଗର ରାମ କ୍ରମିକ କ୍ରିୟାରେ
ଜୀବ ସମୂହର ସୃଷ୍ଟି ଚାଲେ କାଳେ କାଳେ ।
ତା ଅଂଶ ସ୍ୱରୂପ ଜାଣ ସେ ସବୁ ବିଭାଗ
ଜୀବଧାରୀ ବୋଲାଯାନ୍ତି ସେ ସକଳ ବର୍ଗ ।
'ଏହା ହିଁ ତାଙ୍କର ଇଚ୍ଛା" ହେ ରଘୁନନ୍ଦନ
ଇଚ୍ଛାମୟଙ୍କର ଇଚ୍ଛା କାହାର କଳନ ?
ଏ ରୂପେ କରନ୍ତି ସେହି ଯେତେକ କଳ୍ପନା
ଇଚ୍ଛା ବିବର୍ତ୍ତନ ତାହା ରାମ ମହାମନା ।
ଭିନ୍ନ ଭିନ୍ନ ସତ୍ତା ଅଛି କ୍ଷୁଦ୍ର ଜୀବଙ୍କର
ସେହି ବିଧି ଅନୁସାରେ ଏସବୁ ବେଭାର ।
ସେ ବିଧିରେ କ୍ଷୁଦ୍ର ଜୀବ କର୍ମ ଆଚରିଲେ
ସକଳ କାର୍ଯ୍ୟରେ ସିଦ୍ଧି ଲାଭ କରିପାରେ ।
ମୁନି ଋଷି ଇଚ୍ଛାମତେ ଯେ କାର୍ଯ୍ୟ ସାଧନ
ସେ ପ୍ରଧାନ ପୁରୁଷଙ୍କ ଇଚ୍ଛା ବୋଲି ଜାଣ ।
ମୁନି ଋଷିଗଣ ସେହି ପୁରୁଷ ପ୍ରଧାନ
ଏକାତ୍ମା ବୋଲି ଜାଣ ହେ ଅଗ୍ରଜ ଲକ୍ଷ୍ମଣ ।
ଏହି ସ୍ୱଳ୍ପ ଶକ୍ତି ଜୀବ ସେ ମହାଶକ୍ତିର
ଅଂଶ ବୋଲି ଜାଣ ଆହେ ରାମ ମହାବୀର ।
ସେ ମହାଶକ୍ତିର ରାମ ଯେ ବିଧି ବିଧାନ
ତା' ବିନା କ୍ଷୁଦ୍ର ଶକତି ସର୍ବଦା ଅକ୍ଷମ ।
ମହାଶକ୍ତି କରୁଣାରେ ଇଚ୍ଛା ଫଳବତୀ
ଅନ୍ୟଥା କସ୍ମିନ୍ କାଳେ ଇଚ୍ଛା ନ ଫଳନ୍ତି ।
ଅନାଦି ଅନନ୍ତ ସେହି ମହାଜୀବ ବ୍ରହ୍ମ
'ସମଷ୍ଟି' 'ବ୍ୟଷ୍ଟି' ରୂପରେ ବ୍ୟାପିଛି ହେ ରାମ ।

ମହାଜୀବ - ସମଷ୍ଟି ଜୀବ
ବ୍ୟଷ୍ଟିଜୀବ - କ୍ଷୁଦ୍ରଜୀବ

*ମୁଁ - ପରମାତ୍ମା

ବିଷୟ ଅନୁଭବରେ ଚିତ୍‌ଶକ୍ତି ଜୀବ
ଜୀବ ରୂପ ଧରି କରେ ଭବ ଅନୁଭବ ।
ପୁଣି ସେହି ଚିତ୍‌ଶକ୍ତି ବିଷୟ ଛାଡ଼ିଲେ
ମନ ବ୍ରହ୍ମ ରୂପେ ପ୍ରତିଷ୍ଠିତ ଏ ସଂସାରେ ।
ପାରଦ ପରଶେ ତାମ୍ର ଦିଶେ ସ୍ୱର୍ଣ୍ଣ ପରି
ଝଲସାଇ ଦିଏ ସର୍ବ ନୟନ ଯେପରି ।
ବହୁଭାବ ପାଏ ହୀନ, ଶ୍ରେଷ୍ଠ ଅନୁସରି
କୁସୁମ ପରଶେ ପଟ ନିସ୍ତରିଲା ପରି ।
ଜୀବଭାବ, ଜଗତ୍‌ଭାବ ନୁହେଁ ଭିନ୍ନାଭିନ୍ନ
ସୁବିଚାର ବେଳେ ତାହା ଏକବସ୍ତୁ ଜାଣ ।
ଚେତନାର ଅଦଭୂତ ଲୀଳାଟି କେବଳ
ଅନୁଭୂତ ହୁଏ ରାମ ଏ ତତ୍ତ୍ୱ ନିର୍ମଳ ।
ଏହିପରି ମହାଜୀବ ବ୍ରହ୍ମ ହିଁ ଅନନ୍ତ
ତାହା ବିନା ସବୁ ରାମ ହୋଇଥାଏ ଅସ୍ତ ।
ସେହି କୋଟି କୋଟି ଜୀବ ମହାଜୀବାକାର
ତାଙ୍କ ବିନା ଯାହାକିଛି ସେସବୁ ଅସାର ।
ତାଙ୍କ ସତ୍ତା ବିନା ରାମ ଅନ୍ୟ କିଛି ନାହିଁ
ତାଙ୍କରି ଇଚ୍ଛା-ଲୀଳା ଯେ ରାଜେ ସବୁଠାଇଁ ।
ଜ୍ଞାନଶକ୍ତି ଇଚ୍ଛାଶକ୍ତ ପୁଣି କ୍ରିୟାଶକ୍ତି
ସୂକ୍ଷ୍ମ, ସ୍ଥୂଳ ରୂପେ ଦେହେ ବିରାଜୁ ଅଛନ୍ତି ।
ଚୈତନ୍ୟ ମହାଆକାଶ, ଦେହାବୃତ୍ତ ଆତ୍ମା
ଯଦି ଧର ରାମ ଏମାନଙ୍କ ନାହିଁ ସତ୍ତା ।
ତଥାପି ନିମ୍ନୋକ୍ତ ମତେ ସତ୍ୟ ବୋଲିକରି
ପ୍ରତିପାଦିତ ହୋଇଛି ଆହେ ବ୍ରହ୍ମଚାରି ।
ଚିତ୍ତର ଯେ ଅଦଭୂତ ସୃଷ୍ଟି ସାମରଥ୍ୟ
ତାହା ଏବେ କହୁଅଛି ଶୁଣ ସେ ଚରିତ ।
ସେ ଚିତ୍ତର ସ୍ୱାଭାବିକ ଚମତ୍କାର ଗୁଣ
ପରକାଶେ ଭବିଷ୍ୟତ, ନାମ, ଦେହମାନ ।
ଅହଂଭାବର ଜନନୀ ଅଟଇ ସେ ରାମ
ତଥାପି ସେ ବିକାଶଇ ସୃଷ୍ଟି ଶୋଭାମାନ ।
ସେ ଚିତ୍ତ ଚିତ୍‌ରସର ଅସ୍ୱାଦନ କରେ
ଚିନ୍ମୟାତ୍ମା ହେତୁ ବିଶ୍ୱରୂପକୁ ସେ ଧରେ ।
ଅଥଚ ସେ ଏହି ଚିତ୍ ମଧ୍ୟୁ ପ୍ରସ୍ଫୁରିତ
ଏ ବିଶ୍ୱ ପ୍ରତିବିମ୍ବିତ ତହିଁ ମଧ୍ୟଗତ ।
ହେଲେ ହେଁ ସେ ଚିତ୍‌ରାମ ଅକ୍ଷୟ ଅବ୍ୟୟ
ନିତ୍ୟ, ନିର୍ବିକାର, ଏକ ରୂପ ଅନାମୟ ।

ତଥାପି ସ୍ୱୀୟ ବିଚିତ୍ର ଶକତି ପ୍ରଭାବେ
ପରିଣାମ ବିକାରାଦି କ୍ରିୟାରେ ସମ୍ଭବେ ।
ଚିତ୍ତ, ଚିତ୍-ପ୍ରକାଶକ ଜ୍ଞାନ ସମୂହର
ମିଳନ ପ୍ରକାଶ ଅଟେ ଭବସାଗରର ।
ଯେଉଁ ଚିତ୍ ଶକ୍ତି ଉକ୍ତ ପ୍ରକାରେ ବିସ୍ତୃତ
ଦୁର୍ଲକ୍ଷ ସେ ଶକ୍ତି ଜାଣ ଆହେ ରଘୁନାଥ ।
ସେ ଦୁର୍ଜ୍ଞେୟ ତତ୍ତ୍ୱ ଚିତ୍ ଶକତିକୁ ରାମ
ସ୍ୱଚକ୍ଷୁରେ ଦେଖିଛି ମୁଁ ଏକଥା ଜାଣିମ ।
ଜଳରେ ଜଳ ତରଙ୍ଗ ଯଥା ପ୍ରସ୍ଫୁରିତ
ଆତ୍ମାରେ ଆତ୍ମା ତରଙ୍ଗ ତଥା ପ୍ରସ୍ଫୁଟି ।
ଲାଗିଛି ପ୍ରତିଦ୍ୱନ୍ଦ୍ୱିତା ତା ତରଙ୍ଗ ମଧ୍ୟେ
ତହୁଁ ଏ ଜଗତ ଜନ୍ମ କହନ୍ତି ବିବୁଧେ ।
ସେ ଭ୍ରମ ଜଗତ ମୂଳ ଜାଣିଛ କି ରାମ ?
ଅହଂ ଭାବଟି କେବଳ ତା ମୂଳ ଜାଣିମ ।
ସେ ଚିତ୍‌ଶକ୍ତିର ଯେଉଁ ଚମତ୍କାର ଗୁଣ ।
ସେହି ଏକା ଏ ଜଗତ ବୁଝ ରଘୁରାଣ
ତଦ୍‌ଭିନ୍ନ ପୃଥକ ଭବ ନାହିଁ କିଛି ଜାଣ ।
ଏବେ କି ବୁଝା ନ ଯାଏ ଜଗତ କାରଣ ?
**ଚିତ୍ତର ପ୍ରଥମ ଚୈତ୍ୟ ଅଟେ ଅହଂଭାବ**
**ଅହଂ ହିଁ ତହିଁର ରାଜା ଜାଣ ହେ ରାଘବ ।**
କଳ୍ପନା ରାଜ୍ୟର ବସ୍ତୁ ଅଟଇ ଯା ବୀଜ
ଫଳ ତାହାର କଳ୍ପିତ ନିଶ୍ଚେ ରଘୁରାଜ ।
ଏହି ନିୟମାନୁସାରେ କଳ୍ପିତ ଏ ଭବ
ଏକତ୍ୱ, ଦ୍ୱୈତ, ବିଚାର ତହିଁ ଅବାସ୍ତବ ।
ପୂର୍ବ କର୍ମ ସଂସ୍କାରରୁ ଜୀବର ଜନମ
'ଅଦୃଷ୍ଟ', 'ବାସନା' ସେ ସଂସ୍କାର ଅନ୍ୟନାମ ।
'ଅହଂ', 'ତ୍ୱଂ' ଭାବ ଯେବେ ମନରୁ ଛାଡ଼ିବ
'ଅଦୃଷ୍ଟ' 'ବାସନା' ମାନ ଦୂରୀଭୂତ ହେବ ।
ଯେବେ କଳ୍ପନା ଜଳ୍ପନା ମନ ମଧ୍ୟେ ଅଛି
'ଅହଂ', 'ତ୍ୱଂ' ଭାବ ତହିଁ ପ୍ରଭାବ ମେଲିଛି ।
**ଏହି 'ଅହଂ' 'ତ୍ୱଂ' ଭାବ ବରଜି ପାରିଲେ**
**ସର୍ବକଳ୍ପନା ବିନାଶ ଲଭିବ ତତ୍‌କାଳେ ।**
ନିର୍ବିକଳ୍ପ ଅବସ୍ଥାଟି ଶୀଘ୍ର ପ୍ରାପ୍ତି ହେବ
ସୁନିର୍ମଳ ଆତ୍ମସତ୍ତା କେବଳ ରହିବ ।
ଜ୍ଞାନବଳେ ଦୃଶ୍ୟସତ୍ତା ହେଲେ ତିରୋହିତ
ଚୈତନ୍ୟ ନିର୍ମଳ ସତ୍ତା ରାଜେ ଅବିରତ ।

ମେଘ ତିରୋଧାନେ ବ୍ୟୋମ ନିର୍ମଳ ଯେସନ
ଦୃଶ୍ୟସତ୍ତା ତିରୋଧାନେ ଦୃକ୍‌ସତ୍ତା ତେସନ ।
ନିମିଷ, ସମେଷ ମଧ୍ୟେ ସମ୍ପର୍କ ଯେସନ
ଚିତ୍ତ ଏବଂ ଚିତ୍ ଦୁହେଁ ଅଭିନ୍ନ ତେସନ ।
ମନ ଚେଷ୍ଟାତ୍ମକ ନିଶ୍ଚେ ଶୂନ୍ୟ ତା ଆକାର
ତଦାତ୍ମକ ଏ ଜଗତ ତେଣୁ ଶୂନ୍ୟାକାର ।
ଇନ୍ଦ୍ରିୟ ରୂପ ଜଗତ ଦେବଙ୍କ ଆଳୟ
କେବଳ ଶୂନ୍ୟରେ ପୂର୍ଣ୍ଣ ଜାଣ ରଘୁରାୟ ।
ଅବିକଳ ମାୟାପୂର୍ଣ୍ଣ ଇନ୍ଦ୍ରିୟ ସକଳ
ଶୂନ୍ୟ ଶୂନ୍ୟ ମହାଶୂନ୍ୟ କୌଶଲ୍ୟା ଦୁଲ୍ଲାଳ ।
ଏସବୁ ଚିତ୍ତକୁ ସିନା ଚମକାଉ ଥାଏ
ଆକାର ଥାଇ ଫମ୍ପା ସେ ବୋଲି ବୋଧହୁଏ ।
ଯଦିଚ ଚିତ୍ତକୁ ସଦା ଚମକାଉଥାନ୍ତି
ଆକାଶ ଉଦ୍ୟାନ ସିନା ତାହା ଦାଶରଥି ।
ଯାହା ପ୍ରତି ଆକର୍ଷଣ ଅଛଇ ଯାହାର
ତା'ଛଡ଼ା ଅନ୍ୟରେ ତାର ନ ଥାଏ ଆଦର ।
ଦେଦୀପ୍ୟମାନ ଏ ଉକ୍ତି ସାବୟବ ପାଇଁ
ଅବୟବ ଶୂନ୍ୟ ପକ୍ଷେ ଏ ଯୁକ୍ତି ବା କାହିଁ ?
ଚିତ୍‌ର ଯେ ରୂପ ଯାହା କହୁଅଛି ଶୁଣ
ଅନାମ ସେ ସର୍ବ ସାକ୍ଷୀ ଅଟଇ ତା' ଜାଣ ।
ଏମନ୍ତ ଯେ ରୂପ ତାହା ଅତି ଆଚମ୍ବିତ
ଏ ଭବ ତାତ୍ତ୍ୱିକ ରୂପ ଜାଣ ରଘୁନାଥ ।
**ଚିତ୍‌ର ନାମ ରୂପାଦି ଯେ ନିକୃଷ୍ଟ ଭାବ**
**ତାହା ହିଁ ଚୈତ୍ୟ ଅଟଇ ହେ ରଘୁପୁଙ୍ଗବ ।**
ଏ ଜଗତ ପ୍ରସ୍ଫୁରିତ ସେହି ଚୈତ୍ୟ ଘେନି
କଳ୍ପନା ରାଜ୍ୟରୁ ଜାତ ବୁଝ ରଘୁମଣି ।
ମନ, ବୁଦ୍ଧି, ଅହଂକାର ପଞ୍ଚଭୂତମାନ
ଦିକ୍ ଆଦି ଗୁଣ ଚିତ୍ ମଧ୍ୟେ ଅବସ୍ଥାନ ।
ଚିତ୍ ଅଟେ ଏ ଜଗତ ସ୍ଥିତିର କାରଣ
ଚିତ୍ ବିନା ଜଗତରେ କିଛି ନାହିଁ ଜାଣ ।
ଅଜଗତ ଚିତ୍ ବୋଲି କିଛି ମାତ୍ର ନାହିଁ
ତେଣୁ ଏ ଜଗତ ଭ୍ରମପୂର୍ଣ୍ଣ ରଘୁରାଇ ।
ଚିତ୍ ଚିତ୍ତଙ୍କର ଭେଦ କଳ୍ପନା ଜନିତ
ତହିଁ ବାସ୍ତବତା କିଛି ନାହିଁ ରଘୁନାଥ ।
ଭାବିଦେଖ ଏ ଚିତ୍ତର କଳପନା ବିନା
ଜଗତର ସ୍ଥିତି କାହିଁ ଆଛେ ମହାମନା ?
**ବିଷୟ ଦେଖିବା ଶକ୍ତି ଚିତ୍ ବ୍ରହ୍ମଙ୍କର**
**ଜୀବ ଆଖ୍ୟା ଧରିଅଛି ହେ ନୃପ କୁମର ।**
ଜୀବଭୋଗ୍ୟ ପଞ୍ଚଭୂତ ଭୌତିକ ଆକାରେ
ଅବସ୍ଥାନ କରିଅଛି ଦେଖ ଘରିଆଢ଼େ ।
**ଚିତ୍‌ମଧ୍ୟରୁ ଚିତ୍ତର ହୁଅଇ ସ୍ଫୁରଣ**
**ଚିତ୍ତ ସ୍ଫୁରଣରୁ ଅହଂ ଭାବର ଜନମ ।**
**ସେହି ସ୍ଫୁରଣ ସ୍ପନ୍ଦନ କ୍ରିୟା ପ୍ରାଣ ଯୋଗେ**
**ଜୀବ ନାମେ ଅଭିହିତ ରାମ ମହାଭାଗେ ।**
ଚିତ୍‌ବସ୍ତୁ ଚିତ୍ତଧର୍ମେ ଉଦ୍ରେକ କରାଏ
ଅହଂକାର ବିକାରରୁ ତେଣୁ ମୁକ୍ତ ଥାଏ ।
ସେ ମୁକତଶକ୍ତି ଜୀବ ନାମେ ଅବହିତ
ତଥାପି ସେ ସବୁ ଶକ୍ତି ମିଥ୍ୟା ବିବେଚିତ ।
ଚିତ୍‌ସ୍ୱଭାବ ତଦ୍ୱାରା ନୁହଇ ଅନ୍ୟଥା
ହେ ରାଜକୁମାର ହେଜରଖ ଏହିକଥା ।
ଯେ କୌଣସି ବସ୍ତୁ ଧରି ନିଅ ହେ ଶ୍ରୀରାମ
ସ୍ୱୀୟ କ୍ରିୟାରୁ କେବେ ହେଁ ନୁହଇ ସେ ଭିନ୍ନ ।
ତା' ଯେବେ ନୋହିବ ଏହା କିପରି ସମ୍ଭବ ।
ଚିତ୍ତ ପ୍ରାଣଙ୍କର ସତ୍ତା କେବେ କି ରହିବ ?
ଚିତ୍ତ, ପ୍ରାଣ, କେଉଁ ହେଲେ ନୁହେଁ ଭିନ୍ନାଭିନ୍ନ
ଯାହା 'ଚିତ୍ତ' ତାହା ପ୍ରାଣ ବୁଝ ହେ ଶ୍ରୀରାମ ।
ସ୍ପନ୍ଦ ଶକ୍ତି ସମ୍ମିଳିତ ଚିତ୍ତଟି ହିଁ ଆତ୍ମା
'ପୁରୁଷ' ଓ 'ଜୀବ' ଏକ କହନ୍ତି ସିଦ୍ଧାତ୍ମା ।
ମନ ଇନ୍ଦ୍ରିୟ ଅଭାବ ଘଟିଲେ ଚିତ୍ତରେ
ଜୀବ ପୁଣି ଭବ ଭାବ ହଟିବେ ଅଚିରେ ।
ଜୀବର ଆଶ୍ରୟ ସ୍ଥଳେ କେବଳ ଏ ମନ
ସ୍ଥାନ ଭେଦେ ତାହା ହୋଇଥାଏ ଭିନ୍ନାଭିନ୍ନ ।
ସ୍ଥାନର ଅଭାବେ ମନ ହୋଇଥାଏ ଏକ
ବିବେକ ସହିତ ରାମ ଏହା ବୁଝିରଖ
ଅବାସ୍ତବ ଅଟନ୍ତି ଏ ଜୀବ ଓ ଜଗତ
ଉଲ୍ଲିଖିତ ବର୍ଣ୍ଣନାରୁ ବୁଝ ରଘୁନାଥ ।
ଏ ଚିତ୍ ଜଗତ ଅଟେ ପ୍ରକାଶର ଛଟା
ବୁଝିବାକୁ ଯାଇ ଲୋକେ ହୁଅନ୍ତି ହଟହଟା ।

ଦୁର୍ଲକ୍ଷ୍ୟ - ଅଦୃଶ୍ୟ, ଯାହା ଅତି କଷ୍ଟରେ ଦେଖାଯାଏ ।
ଦୃକ୍ - ଜ୍ଞାନ

କାର୍ଯ୍ୟ କାରଣାଦି ଭାବମୟ ଅଟେ ଏହି
ଅତି ତୁଚ୍ଛ ଅତି ନଗ୍ନ ଜାଣ ରଘୁରାଇ ।
ଏ ପ୍ରକାଶ ତଦାଶ୍ରିତ ମାୟାର ବିଳାସ
ମାୟା ଉପଶମେ ଚିତ୍ତ ସ୍ୱୟଂ ହୃଷିକେଶ ।
ଏହାହିଁ ଜାଣ ପରମ ଆତ୍ମା ଦରଶନ
ବ୍ରହ୍ମ ଦରଶନ ଏହି ଭେଟ ବୋଲି ଜାଣ ।
ଅନର୍ଥ ନିବୃତ୍ତି ଅଟେ ଏ ଦର୍ଶନ ଫଳ
ଅନର୍ଥ ନିବୃତ୍ତି ଦିଏ ଜୀବକୁ ମଙ୍ଗଳ
ଅନର୍ଥ ନିବୃତ୍ତି ଯେଉଁ ରୂପେ ଅନୁଭୂତ
ତାହା ମୁଁ କହୁଛି ଶୁଣ ଦଶରଥ ସୁତ ।
ଜାଣିରଖ ରାମ ସେହି ଅଟନ୍ତି ଅଚ୍ଛେଦ୍ୟ
ଅଧିକନ୍ତୁ ହେତୁ ରଖ ସେ ଅଟେ ଅକ୍ଲେଦ୍ୟ ।
ସର୍ବଦା ଅଦାହ୍ୟ ସେହୁ ଜାଣ ନୁହେଁ କାର
ସର୍ବବ୍ୟାପି ଜାଣ ସେହି ଅଶୋଷ୍ୟ ଆବର ।
ସେହି ସ୍ଥିର ସେ ଅଟଳ ସେହି ଅଟେ ଏକ
ଧୀର ସ୍ଥିର ଚିତ୍ତେ ବୁଝ ଲଗାଇ ବିବେକ ।
ଅଜ୍ଞ ଜୀବକୁ ଗୋଚର ନୁହେଁ ଏହି ତତ୍ତ୍ୱ
ନ ଜାଣି ବିବାଦ କରୁଥାଏ ଅଜ୍ଞ ନିତ୍ୟ ।
ନିଜେ ଭ୍ରାନ୍ତ ହୋଇ ଅନ୍ୟେ ପକାନ୍ତି ଭ୍ରମରେ
ଅନ୍ଧ, କଣା, ପରି ଭ୍ରମୁଥାନ୍ତି ନିରନ୍ତରେ ।
ଏହି ଦୃଶ୍ୟ, ଏହି ମୂର୍ତ୍ତି ଅଜ୍ଞ ପ୍ରତି ସତ
ଏସବୁ ପୃଥକ ବୋଲି ଦେଖେ ଅଜ୍ଞ ନେତ୍ର ।
ଜ୍ଞାନୀଙ୍କୁ ଏସବୁ ରାମ ଅନିତ୍ୟ ବିଦିତ
ଅଜ୍ଞାନୀଙ୍କୁ ଦ୍ୱୈତ କିନ୍ତୁ ଜ୍ଞାନୀଙ୍କୁ ଅଦ୍ୱୈତ
ଏ ଚିତ୍‌କୁ ବୁଝ ରାମ ଏକ ତରୁବର
ତା ମୂଳରେ ଢାଳ ନେଇ ବିଷୟା ସଲିଳ ।
ବସନ୍ତ କାନ୍ତି ସଦୃଶ ମାୟାଶକ୍ତି ତହୁଁ
ନିଶ୍ଚିତ ଭାବେ ବିକଶେ ରାମ ରହୁଁ ରହୁଁ ।
କଳିକା ସଦୃଶ କାଳ ତହିଁ ଶୋଭାପାଏ
ବୈଭବ ମଞ୍ଜରୀ ଶୋଭା-ଢେଉକୁ ବଢ଼ାଏ ।
ଏହି ଚିତ୍ ବାୟୁ ପୁଣି ଏହି ଚିତ୍ ଜଳ
ଏହି ଚିତ୍ ସ୍ଥଳ ବୋଲି ଜାଣ ରଘୁବୀର ।
ସେ ବିଚିତ୍ର ବସ୍ତୁ ସ୍ୱର୍ଣ୍ଣ ରଜତାଦି ରୂପୀ
ସେହି ଚିତ୍ ମଧ୍ୟେ ଗ୍ରହ, ନକ୍ଷତ୍ର ସ୍ୱରୂପୀ ।
ଦେବାସୁର, ନର ଆଦି ପ୍ରାଣୀଙ୍କ ଶରୀର
ଗଠିତ ହୋଇଛି, ସେହୁ, ଧରି ରୂପାନ୍ତର ।
ବିବିଧ ଔଷଧ ମାନଙ୍କର ସଞ୍ଚାରକ
ସକଳ ତେଜମାନଙ୍କ ସେହି ପ୍ରକାଶକ ।
ସେହି ଚନ୍ଦ୍ର, ସେହି ସୂର୍ଯ୍ୟ, ସେହି ଅନ୍ଧକାର
ସ୍ଥାବର, ଜଙ୍ଗମ ଆଦି ସେ ଚିତ୍ ବିକାର ।
ସମୁଦ୍ର, ତଡ଼ାଗ, ନଦୀ, ପର୍ବତାଦି ସେହି
ସେ ଚିତ୍ ପରମ ବ୍ରହ୍ମ ବୁଝ ରଘୁରାଇ ।
ବସ୍ତୁ ଅନ୍ତର୍ଗତ ଥାଇ ବ୍ରହ୍ମ ସନାତନ
ସ୍ୱୀୟ ସ୍ୱାତନ୍ତ୍ର୍ୟ ଅଟଳ ରଖେ ଅନୁକ୍ଷଣ ।
ସୁଷୁପ୍ତି ଭାବ କେସନ ପ୍ରାପ୍ତ ହୋଇଛନ୍ତି
ତାହା ଏବେ କହୁଅଛି ଶୁଣ ରଘୁପତି ।
**ସ୍ଥାବରାଦି ଜାତୀୟ ବସ୍ତୁ ମାନଙ୍କ ମଧ୍ୟରେ**
**ସୁଷୁପ୍ତ ଅବସ୍ଥା ତାଙ୍କ ରହିଛି ଗୁପ୍ତରେ ।**
**ଚୈତନ୍ୟ ମଧ୍ୟ ନିହିତ ପ୍ରସ୍ତର ଆଦିରେ**
ଅବ୍ୟକ୍ତ, ଅପ୍ରକାଶିତ ନେତ୍ର ଅଗୋଚରେ ।
ଚୈତନ୍ୟର ପ୍ରକାଶ ବା ଅପ୍ରକାଶ ମାନ
ଆଧାର ବିଶେଷେ ଜଣା ଯାଇଥନ୍ତି ଜାଣ ।
ଶାଳଗ୍ରାମ ଶୀଳା ମଧ୍ୟେ ଚୈତନ୍ୟ ନିହିତ
ଭକ୍ତି ରସିକକୁ ତାହା ହୁଏ ଅବଗତ ।
ହେଦୀ ମଧ୍ୟେ ଚଇତନ୍ୟ ପ୍ରକାଶ ଲଭଇ
କାଷ୍ଠ, ପ୍ରସ୍ତରରେ କିନ୍ତୁ ସେ ପ୍ରକାଶ ନାହିଁ ।
**ଅବିଚାରିତ ରୂପକୁ ଧରନ୍ତି ସେ ଯେବେ**
**ଅଜ୍ଞାନାବିଷ୍ଟ ଅବସ୍ଥା ଧରନ୍ତି ସେ ତେବେ ।**
ସେ ଚିତ୍ ସ୍ପନ୍ଦନ ଶକ୍ତି ସଞ୍ଚାରିତ ହୋଇ
ଅହଂକାର ଭାବ ହୃଦେ ଜାଗ୍ରତ କରଇ ।
ମାୟାଗ୍ରସ୍ତ ହୋଇ ଜୀବ ପଡ଼େ ଦୁର୍ଦ୍ଦଶାରେ
ଘାଣ୍ଟି ହେଉଥାଏ ପଡ଼ି ଭବ ବନ୍ଧନରେ ।
ବିଚାର ଭାବ ଜାଗ୍ରତ ହୁଏ ଯେତେବେଳେ
ସ୍ୱୀୟ ଅଜ୍ଞନାବରଣ ହଜିଯାଏ ହେଳେ ।
ନିଜ ସ୍ୱରୂପ ଯେ ବ୍ରହ୍ମ ତାଙ୍କ ଦେଖା ପାଇ
ବ୍ରହ୍ମ ସ୍ୱରୂପେ ଅଚିରେ ଯାଇ ବିଳସଇ ।
ତେଣୁ ଚିତ୍ତର ଅବସ୍ଥା ନେଇ ଏ ଜଗତ
ଅଛି ବା ନ ଅଛି ତାହା ହୁଅଇ ବିଦିତ ।
ବିଚାରବନ୍ତ ମତରେ ଏ ଜଗତ ନାହିଁ
ଅବିଚାରବନ୍ତ ମତେ ଜଗତ ଅଛଇ
ଏହି ଚିତ୍ ଶୂନ୍ୟମୟ, ଚିତ୍ ମହଲୋକ
ସ୍ପନ୍ଦନଶୀଳ ସମୀର ହେ ରଘୁ ନାୟକ ।

ଚିତ୍ ଅନ୍ଧକାର, ଚିତ୍ ତପନ ଆଲୋକ
ବୈଶ୍ୱାନରର ତେଜ ପୁଣି, ଚନ୍ଦ୍ରମା ଝଲକ ।
ଏହି ବିବେଚନା ବଳେ ଜଗତ ଅସ୍ତିତ୍ୱ
ଚିତ୍ ଉପରେ ନିର୍ଭର କରେ ଏହା ସତ୍ୟ ।
ଅନ୍ୟଥାଏ ଏ ସବୁଙ୍କର ସ୍ୱାଧୀନ ଅସ୍ତିତ୍ୱ
ନାହିଁ, ବୋଲି ବୁଝି ରଖ ଆହେ ରଘୁନାଥ ।
ବ୍ରହ୍ମ ଦୃଷ୍ଟିରେ ଜଗତ ସତ୍ତା ନାହିଁ ଜାଣ
ବ୍ରହ୍ମ ବ୍ୟତୀତ ଜଗତ ନୁହେଁ କିଛି ଅନ୍ୟ ।
ଏହି ବିବେଚନା ବଳେ ଭବ ଅନସ୍ତିତ୍ୱ
ପ୍ରମାଣ ହେଉଛି ଜାଣ ଆହେ ରଘୁନାଥ ।
ଯଥା ତୈଳ ଦଗ୍ଧ କରି ଲଭନ୍ତି ଉଜ୍ଜ୍ୱଳ
ଭବଲୁପ୍ତ ହୋଇ ରହେ ଚିନ୍ମାତ୍ର କେବଳ ।
ପରମାଣୁ ଅତି ସୂକ୍ଷ୍ମ ଦୁର୍ଲକ୍ଷ୍ୟ ନେତ୍ରକୁ
ସୂକ୍ଷ୍ମାଦପି ସୂକ୍ଷ୍ମ ଚିତ୍ ସରଜେ ଭବକୁ ।
ଅଗ୍ନିର ଉଷ୍ମତା ଚିତ୍, ଚିହ୍ନ ଜଗତର
ଶଙ୍ଖ ଧବଳତା ଚିତ୍, ଭବ ରୂପାନ୍ତର ।
ଜଳର ଦ୍ରବତ୍ୱ ଚିତ, ଶୈଳର ଜଠର
ଜଗତ ରୂପିଣୀ ଚିତ୍, ମାଧୁର୍ଯ୍ୟ ଇକ୍ଷୁର ।
ଅନଳର ଶିଖା ଚିତ, ହିମ ଶୀତଳତା
କ୍ଷୀର ମଧୁରତା, ଚିତ୍, ଜଳର ସ୍ନିଗ୍ଧତା ।
ଜନନୀ ସେନେହ ଚିତ୍, ସରୋବର ବୀଚି
ମଧୁର ଦ୍ରବ୍ୟ ମାଧୁର୍ଯ୍ୟ, ବୁଝ ରଘୁବଂଶି ।
କନକ, ଭୂଷଣ ଚିତ୍ ପୁଷ୍ପର ସୌଗନ୍ଧ
ଚିତ୍ର ମାହାତ୍ମ୍ୟ ବୁଝିଲ ତ ରାମଚନ୍ଦ୍ର ?
ଏ ଜଗତ ଅଟେ ସେହି ଚିତ୍ ଲତା ଫଳ
ଚିତ୍-ସତ୍ତା ହିଁ ଜଗତ-ସତ୍ତା ରଘୁବାଳ ।
ଯହା କି ଅସ୍ତିତ୍ୱ ବୋଲି କହ ଜଗତର
ଚିତ୍ର ବପୁ ସେ ରାମ, ଚିତ୍ର ଶରୀର ।
ତୁମେ, ଆମେ, ଅଗ, ନଗ, ନଦୀ, ପରବତ
ଅବାସ୍ତବ ଭିନ୍ନ ଭିନ୍ନ ହେଲେ ହେଁ ପତୀତ ।
ଆକାଶ ଯଥା ସୁନୀଳ ନେତ୍ରକୁ ଦିଶଇ
ସେ ନୀଳିମାର ଅସ୍ତିତ୍ୱ କିଛି ହିଁ ନ ଥାଇ ।
ତେସନ ଏ ତ୍ରିଭୁବନ ବାସ୍ତବ ବୋଲାନ୍ତି
ଅବାସ୍ତବ ବସ୍ତୁ ସେହୁ ଜାଣ ରଘୁପତି ।
ପରମ ଆତ୍ମା ଅଟନ୍ତି ଅବିକଳ୍ପ ରାମ
ସତ୍ତା, ଅସତ୍ତା, ତାଙ୍କର ତେଣୁ କରି ସମ ।
ଶବ୍ଦ ଅର୍ଥ ଉଭୟଙ୍କ ମଧ୍ୟେ ଯେ ପ୍ରଭେଦ
ଚିତ୍ ଜଗତ ମଧ୍ୟରେ ସେହି ମାତ୍ର ଭେଦ ।
ଅବୟବ, ଅବୟବୀ ଶବ୍ଦ ଅର୍ଥ ମାନ
ଅଳୀକ ଅଟଇ ଶଶ-ଶୃଙ୍ଗର ସମାନ ।
ସାଗର ପୃଥିବୀ ଆଦି ସହ ଏ ଜଗତ
ଅଳୀକ ଅଟନ୍ତି ଯଥା ବସ୍ତୁ ଉଲ୍ଲିଖିତ ।
ଚିତ୍ ଏକ, ଏକ ରସ, ଜାଣ ହେ ରାଘବ
ଅବୟବ ସମ୍ଭବନା ତହିଁ ଅସମ୍ଭବ ।
ଏହି ଚିତ୍ ସର୍ବକାଳେ ଆହେ ରଘୁସୁତ
ସ୍ୱୀୟ ନିର୍ମଳ ସ୍ୱଭାବେ ଅଛି ଅବସ୍ଥିତ ।
ସ୍ଫଟିକ ଶୀଳା ଯେସନ ନଗରାଦି ଚିତ୍ର
ଧାରଣ କରି, ହରଣ କରେ ମନ-ନେତ୍ର
ତଥା ଏ ନିର୍ମଳ ଚିତ୍ ଅନିତ୍ୟ ଭବର
ପ୍ରତିଭାସ ମାତ୍ର ଧରି ଅଛି ରଘୁବୀର ।
ବୀଜ ମଧ୍ୟରେ ଅଙ୍କୁର ଅଦୃଶ୍ୟରେ ଥାଇ
କ୍ରମଶ ଗଜା ବାହାରି ବୃକ୍ଷ ପାଲଟଇ ।
ବୃକ୍ଷ ଯେଉଁ ପରି ଶାଖା ପ୍ରଶାଖା ମେଲାଇ
ପଲ୍ଲବ କୁସୁମ ଧରି ଶୋଭା ପାଉଥାଇ ।
ସେହିପରି ଚିତ୍ ଧରିଅଛି ଏ ଜଗତ
ଚିତ୍ ହିଁ ସତ୍ୟ ଅନ୍ୟାନ୍ୟ ସକଳ ଅସତ୍ୟ ।
ସର୍ବ କାରଣ ମାନଙ୍କ ପିତାମହ ଚିତ
ଚିତ୍ ଛଡ଼ା ଅନ୍ୟ କିଛି ନାହିଁ ଏ ଜଗତ ।
ଚେତ୍ୟ ନାହିଁ ଏହି କଥା କହିବା ଅଯୁକ୍ତ
ସ୍ୱାନୁଭବ ସିଦ୍ଧ ଯେଣୁ ଏ ଚିତ ମହତ ।
ଯହିଁ ଥିଲେ ମଧ୍ୟ ଚିତ୍ ଅଦୃଶ୍ୟରେ ଥାଏ
ତା ଘେନି ସକଳ ଦୃଶ୍ୟ ଉଦଭୂତ ହୁଏ ।
ବୀଜେ ଅଙ୍କୁର ନିହିତ ଥିବାରୁ ହେ ରାମ
ବୀଜରୁ ଅଙ୍କୁର ଜାତ ହୋଇଥାଏ ଜାଣ ।
ଏ ଜଗତ ନାସ୍ତି ବୋଲି ଶୁଣିବାକୁ ପାଅ
ଯଦି ଏହା ଶୁଣି ତୁମେ ବିଶ୍ୱାସ ନ ଯାଅ,
ଏ ଜଗତ 'ଅଛି' ଶୁଣି ବିଶ୍ୱାସ ଜନମେ
ଜାଣିବା ଆଗ୍ରହ ପୁଣି ବଢ଼େ କ୍ରମେ କ୍ରମେ ।
ତେବେ ସୂକ୍ଷ୍ମ ଅନୁଭବ ଦ୍ୱାରା ଆହେ ରାମ
ସ୍ୱ ଚିତ୍ତରୁ ଭୁଲିଯାଅ ସର୍ବ ଭେଦଜ୍ଞାନ ।
ସେହି ଚିନ୍ମୟ ଚିତ୍ ସଦା ବିରାଜିତ
ଏହି ତତ୍ତ୍ୱ ମାନିନିଅ ଆହେ ରଘୁନାଥ ।

ଭରଦ୍ୱାଜଙ୍କୁ କହନ୍ତି ବାଲମିକ ମୁନୀ
ଅସ୍ତଗଲେ ଦିନମଣି ପ୍ରବେଶ ରଜନୀ ।
ସାୟଂକାଳ ସନ୍ଧ୍ୟାପୂଜା କରିବା ନିମିତ୍ତ
ସଭା ସଦଗଣ ତହୁଁ ଚଳିଲେ ତ୍ୱରିତ ।
ପରଦିନ ଯଥାକାଳେ ସକଳେ ଆସିଲେ
ନିଜ ନିଜ ସ୍ଥାନମାନ ଅଳଂକୃତ କଲେ ।
**ଇତି ଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ସର୍ବବ୍ରହ୍ମ ପ୍ରତିପାଦନ**
**ନାମ ତ୍ରୟୋଦଶ ସର୍ଗଃ ।**



## ଚତୁର୍ଦ୍ଦଶ ସର୍ଗଃ
## ପରମାର୍ଥ ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ଦଶରଥ ସୁତ
ଏହି ଯେ ଜଗତ ଦେଖ, ତା ନୁହେଁ ଜଗତ ।
ଏହାର ତଥ୍ୟ ଏବେ ମୁଁ କହୁଛି ବୁଝାଇ
ଚିଦାକାଶ ମାତ୍ର ଏହା ବୁଝ ରଘୁରାଇ ।
'ଚିଦାକାଶ' 'ଆତ୍ମା' ଦୁହେଁ ଅଟନ୍ତି ସମାନ
ନିର୍ମଳ ଗଗନେ ଯଥା 'ମୁକ୍ତାମାଳା' ଭ୍ରମ ।
ଭ୍ରମବଶ ନଭଦେଶେ ଯଥା ତରୁ ଭାସେ
ଅଜ୍ଞାନ ହେତୁ ଜଗତ, ଆତ୍ମା ମଧ୍ୟେ ହସେ ।
କାଠଖଣ୍ଡ ଦେଖି ଶିଳ୍ପୀ ମନେ ମନେ ଭାବେ
ଏତିକିଟି ମୂର୍ତ୍ତି ଏହି କାଠରେ ସମ୍ଭବେ ।
ବାସ୍ତବରେ କିଛି ମୂର୍ତ୍ତି ଗଢ଼ାଯାଇ ନାହିଁ
ଭୂମି ପରେ କାଠଗଡ଼ ପୂର୍ବପରି ଶୋଇ ।
ଚିତ୍ରୂପୀ କାଠ ପରେ ମନରୂପୀ ଶିଳ୍ପୀ
ଗଠନ କରୁଛି ମୂର୍ତ୍ତି ତ୍ରଇଲୋକ ରୂପୀ ।
କିନ୍ତୁ ଚିତ୍, ଚିତ୍ ପରି ରହିଅଛି ରାମ
ବାସ୍ତବ ଜଗତ କିଛି ନୋହିଛି ଗଠନ ।
ଯଥା ସିନ୍ଧୁ ସ୍ୱ ସ୍ୱଭାବେ ସ୍ପନ୍ଦିତ ହୁଅଇ
ତରଙ୍ଗ ମାନଙ୍କ ବେଗ ବୃଦ୍ଧି କରୁଥାଇ ।
ବ୍ରହ୍ମଭେଟ ପାଇଁ ତଥା ଏ ଦୃଶ୍ୟ ଜଗତ
ଆବେଗ ଚିତ୍ତରେ ସଦା ହୁଏ ପ୍ରଧାବିତ ।
ମୂଢ଼ କହେ ଏ ଜଗତ ଅତୀବ ବିଶାଳ
ଜ୍ଞାନୀ କହେ ପରମାଣୁ ଠାରୁ କ୍ଷୁଦ୍ରତର ।
ଯେ ଭେଦ ରହିଛି ମେରୁ, ପରମାଣୁ ମଧ୍ୟେ
ସେହି ଭେଦ ବୁଝ 'ଚିତ୍' 'ଜଗତର' ମଧ୍ୟେ ।
ପ୍ରାତଃ ସୂର୍ଯ୍ୟ ରଶ୍ମୀ ଆସେ ଜଳାକବାଟୀରେ
ତ୍ରସରେଣୁ ଦୃଶ୍ୟମାନ ତାହା ସାହାଯ୍ୟରେ ।
ସ୍ୱ ଚୈତନ୍ୟ ମଧ୍ୟେ ଭାସମାନ ଏ ଜଗତ
ସ୍ୱ ଚୈତନ୍ୟ ବିନା ଦୃଶ୍ୟ ନୁହେଁ କଦାଚିତ ।
ସ୍ୱ ଆତ୍ମ ଭ୍ରାନ୍ତି ହିଁ ଜଗତ୍ ଦର୍ଶନର ମୂଳ
ତେଣୁ ପ୍ରାଣୀ ହୃଦ ହେଉଥାଏ କଲବଲ ।
**ଯେତେବେଳେ ଆତ୍ମଭ୍ରାନ୍ତି ହୁଏ ତିରୋହିତ**
**ଜଗତ ଦର୍ଶନ ରାମ ହୁଏ ଅନ୍ତର୍ହିତ ।**
ଯଦିଚ ପୃଥିବୀ ରାମ ହୁଏ ଅନୁଭୂତ
ତା କିନ୍ତୁ ଅଳୀକ ଜାଣ ଯଥା ସ୍ୱପ୍ନବତ ।
ବିଜ୍ଞାନ ଆକାଶ ରୂପୀ ଅଟେ ଏ ଜଗତ
ଉନ୍ନତ ମସ୍ତିଷ୍କମାନଙ୍କର ଏହି ମତ ।
ତହିଁ ସ୍ଥୂଳ ପିଣ୍ଡାକାର ଦୃଶ୍ୟମାନ ଭବ
ମରୁସ୍ଥଳ ନଦୀ ସମ ଅଳୀକ ରାଘବ ।
ଏ ଦୃଶ୍ୟମାନ କେବଳ ଭ୍ରାନ୍ତିପୂର୍ଣ୍ଣ ଜାଣ
ନୁହେଁ ମୂର୍ତ୍ତିକି ଅମୂର୍ତ୍ତ କେବଳ ଯେ ଶୂନ୍ୟ ।
ମରୁଦେଶ ନଦୀ, କିମ୍ବା ସ୍ୱପ୍ନରାଜ୍ୟ ଗିରି
ପରି, ଏ ଜଗତ ଅଟେ ସଦା ଅଶରୀରୀ ।
କେବଳ କଳ୍ପନା ରାଜ୍ୟ ବସ୍ତୁ ଏ ଜଗତ
କେବଳ ଅନ୍ତର ଦେଶେ ହୁଏ ପ୍ରତିଭାତ ।
ସ୍ୱପ୍ନଦୃଷ୍ଟ ବସ୍ତୁ ଯଥା ଜାଗରଣେ ମିଥ୍ୟା
ଜଗତ ଶୋଭା ଦର୍ଶନ ଜ୍ଞାନୀ ପ୍ରତି ତଥା ।
ଜଗତ ସ୍ୱରୂପ ରାମ ଯେତିକି ଅନିତ୍ୟ
ଅନତିରିକ୍ତ ତେତିକି ବ୍ରହ୍ମଥିବା ସତ୍ୟ ।
ଅବିବେକୀ ମତେ, 'ବ୍ରହ୍ମ' 'ଜଗତ' ସ୍ୱତନ୍ତ୍ର
ବିବେକୀ ମତେ ଅଦ୍ୱୟ ବ୍ରହ୍ମ ଓ ଜଗତ ।
ତେଣୁ ମୁଁ କହୁଛି ରାମ ଅଜ୍ଞାନୀଙ୍କ ପଥ
ବରିନେବା ତୁମ ପକ୍ଷେ ହେବ ଅନୁଚିତ ।
ତେଣୁ 'ବ୍ରହ୍ମ', 'ଭବ' 'ଆତ୍ମେ' ଏ ସବୁ ଶବ୍ଦର
କିଛି ହିଁ ମାତ୍ର ଭିନ୍ନତା ନାହିଁ ରଘୁବୀର ।
ଶୂନ୍ୟାକାଶ, ସୂର୍ଯ୍ୟାଲୋକ, ମଧ୍ୟେ ସେ ସମ୍ପର୍କ
ଜଗତ ଓ ତତ୍ତ୍ୱଦର୍ଶୀ ମଧ୍ୟେ ସେହି ତର୍କ ।
ତତ୍ତ୍ୱଦର୍ଶୀର ଜଗତ ଦରଶନ ରାମ ।
ବ୍ରହ୍ମ ଦରଶନ ସଙ୍ଗେ ଅଟଇ ସମାନ ।

ତତ୍ତ୍ୱଦର୍ଶୀ ବୁଝେ, ଯାହା ଯାହା ସେ ଦେଖୁଛି
ଅଚେତ୍ୟ ଚିତ ବ୍ୟତୀତ ଅନ୍ୟ ନୁହେଁ କିଛି ।
ସ୍ୱପ୍ନଦୃଷ୍ଟ ଜାଗ୍ରଦୃଷ୍ଟ ନଗର ଯେପରି
ତୁଳନା କଲେ ସମାନ ହୁଅନ୍ତି ଧନୁର୍ଦ୍ଧାରୀ,
ତଥା ଏ ଜଗତ ଏବଂ ସଙ୍କଳ୍ପିତ ଭବ
ତୁଳନା କଲେ ସମାନ ହୁଅନ୍ତି ରାଘବ ।
ତେଣୁ ଏ ଭବ କେବଳ ଚିନ୍‌ମୟ ବ୍ୟୋମ
ଏବେ ବୁଝୁଥିବ ରାମ ଜଗତ କେସନ ।
ଶୂନ୍ୟ, ଆକାଶ, ଜଗତ, ଏ ସକଳ ରାମ
ସେହି ଚିନ୍ମୟ ବ୍ରହ୍ମର ନାମ ଭେଦ ଜାଣ ।
ଶୁଦ୍ଧ ନିର୍ବିକାର ସତ୍ତା ଆପେ ଆପେ ସ୍ଥିତ
ପୃଥ୍ୟାଦି ସକଳ ବସ୍ତୁ ତାଙ୍କ ରୂପ ମାତ୍ର ।
ସେ ସତ୍ତାକୁ ଭୁଲି ଅବୟବ ଅବୟବୀ
ଧିକ ତାଙ୍କୁ ଯେ ଉଠାନ୍ତି ଏହି ଭେଦ ଭାବି ।
ଆଧିଭୌତିକ ଜଗତ ଯାହା ଦୃଶ୍ୟମାନ
ତା' ଗନ୍ଧର୍ବ ପୁରୀ, ସ୍ୱପ୍ନ ସୃଷ୍ଟି ସମ ଜାଣ ।
**ଶୁଦ୍ଧ ଚୈତନ୍ୟ ସତ୍ତାରେ ଚିତ୍ତ ସମ୍ବେଦନ**
**ଜାଗନ୍ତେ ଜଗତ ନାମେ ବିଦିତ ତା' ଜାଣ ।**
**ଉଲ୍ଲିଖିତ କାରଣରୁ ବ୍ରହ୍ମ ଛନ୍ତି ସ୍ଥିର**
**ଜଗତାଦି ଅନ୍ୟ ସବୁ ଅଟନ୍ତି ଅସ୍ଥିର ।**
ଯାହା ଥିଲା ତାହା ରହିଅଛି କାଳେ କାଳେ
ଏହା ଛଡ଼ା ଅନ୍ୟ କିଛି କୁହା ନୋହି ପାରେ ।
ଜଗତ ରହିଛି ମାୟା ରୂପ ମହାନଭେ
ବ୍ରହ୍ମ ତା' ଦ୍ୱାରା ଆବୃତ୍ତ ନୋହି ରାମ କେଭେ ।
ବ୍ରହ୍ମର ଅଣୁ ମାତ୍ରକୁ ଏ କଳ୍ପିତ ଭବ
ଆବୃତ୍ତ କରଣେ କ୍ଷମ ନୁହଁଇ ରାଘବ ।
ଆକାଶ ସଦୃଶ ଏହା ଅଟଇ ନିର୍ମଳ
କୌଣସି ବାସ୍ତବ ମୂର୍ତ୍ତି ନାହିଁଟି ତାହାର ।
ବ୍ୟୋମେ ବ୍ୟୋମମୟ ଚିତ୍ତ ସଙ୍କଳ୍ପ ନଗର
ଯଥା ଅବସ୍ଥାନ କରେ ଆହେ ରଘୁବୀର ।
ତଥା ଏ ଜଗତ କରିଅଛି ଅବସ୍ଥାନ
ବୁଝି ରଖିଥିବା ଏହା କୌଶଲ୍ୟା ନନ୍ଦନ ।
ମଣ୍ଡୁପୋପାଖ୍ୟାନ ବୋଲି ଏକଇ ଆଖ୍ୟାନ
ଏ ସମ୍ପର୍କେ ତାହା ମୁହିଁ କରୁଛି ବର୍ଣ୍ଣନ ।
ତୁମର ସନ୍ଦେହ ଘନ ଶୁଣି ଏ ବୃତ୍ତାନ୍ତ
କେଣେ ଉଡ଼ିଯିବ ନିଶ୍ଚେ ଆହେ ରଘୁନାଥ ।

କହୁଛନ୍ତି ରାମଚନ୍ଦ୍ର ଶୁଣ ମହାମୁନେ
ହେଳା ନ କରି ସେ ଗଳ୍ପ କହନ୍ତୁ ଯତନେ ।
ଯାହା ଶୁଣି ମୋ ମନରୁ ସକଳ ସଂଶୟ
ଦୂରୀଭୂତ ହୋଇଯିବ ଆହେ ମହାଶୟ ।
କହନ୍ତି ବଶିଷ୍ଠ ରାମ ଏହି ଭୂମଣ୍ଡଳେ
ବହୁ ପୁତ୍ରବାନ ଏକ ମହାରାଜା ଥିଲେ ।
ପଦ୍ମ ବୋଲି ତାଙ୍କ ନାମ ଜଗତେ ବିଖ୍ୟାତ
ପରମ ବିବେକୀ ସେହୁ ସର୍ବଗୁଣାନ୍ୱିତ ।
ଲୀଳା ନାମ୍ନୀ ରାଣୀ ତାଙ୍କ ସର୍ବଗୁଣାନ୍ୱିତା
ସାବିତ୍ରୀଙ୍କୁ ଟପିଯିବେ ସେହି ପତିବ୍ରତା ।
ନାରୀ ସୁଲଭ ଗୁଣରେ ପତି ମନ କିଣି
ପତିପରାୟଣା ଗୁଣେ ସେତ କମଳିନୀ ।
ସ୍ୱାମୀଙ୍କୁ ଦେବତା ତୁଲ୍ୟ କରୁଥାନ୍ତି ପୂଜା
ପରିଜନଙ୍କୁ ଦେଖନ୍ତି ସତେ କି ଆତ୍ମଜା ।
ରାଣୀ ସହ ରାଜା ଭ୍ରମୁଥିଲେ ନାନା ସ୍ଥାନ ।
କଳପ, କଦମ୍ବ ବୃକ୍ଷ ଆଦି ଗଛମାନ ।
ରତ୍ନ ମାଣିକ୍ୟ ଖଚିତ ମନ୍ଦିର ସୁନ୍ଦର
ଚିତ୍ତ ହରି ନେଉଥାଏ ବରଫ ମନ୍ଦିର ।
ରାଜସ, ସାତ୍ତ୍ୱିକ ଆଦି ରୁଚି ବଢୁଥାଏ
ତୀର୍ଥସ୍ଥାନ ମାନ ତାଙ୍କ ମନ ହରୁଥାଏ ।
ରଚନା ପରିପାଟିରେ ଦକ୍ଷ ସେ ଦମ୍ପତି
ସଂସ୍କୃତ ଶ୍ଳୋକ ରଚିଣ ଭାବ ପ୍ରକାଶନ୍ତି ।
କଥୋପକଥନ ତାଙ୍କ ଶ୍ଳୋକ ରଚନାରେ
ଅନାୟାସେ ଘଟୁଥାଏ ଝରଣା ପ୍ରକାରେ ।
ପରସ୍ପର ସ୍ନେହ ତାଙ୍କ କିଏ ବରଣିବ
ଶ୍ରୋତାଙ୍କ ମାନସ ସଦା ଦବିଯାଉଥିବ ।
ରାଣୀଙ୍କୁ ଭାବନ୍ତି ରାଜା ନିଜ ପ୍ରାଣ ପରି
ଆଦର ତାଙ୍କର କିଏ ବାକ୍ୟେ କହିପାରି ।
ରାଣୀ ବିଚାରନ୍ତି ସଦା ରାଜାଙ୍କ ସେନେହ
କିପରି ଅଟଳ ଥିବ, ତିଳେ ନୋହି କ୍ଷୟ ।
ଚିର ଯଉବନ ଜଳେ ସଦା ବୁଡ଼ିଥିବେ
ଅଜର, ଅମର ହୋଇ ସଦା ବିଳସିବେ ।
ବିଚ୍ଛେଦ, ବିୟୋଗ ଆଦି ସପନରେ ହେଲେ
ଘଟିବ ନାହିଁ, ଅକ୍ଷୁର୍ଣ୍ଣ ଥିବ କାଳେ କାଳେ ।
ଏତେ ଭାବି ରାଣୀ ମନେ ବିଚାର ଯେ କଲେ
ସୁବିଜ୍ଞ ପଣ୍ଡିତ ଦେଖି ପ୍ରଶ୍ନ ପଚାରିଲେ ।

ଅଜର ଅମର ହୋଇ ରହିବୁ କିପରି
ରହିଥିବୁ ଚିର ଯଉବନ ଜଳେ ବୁଡ଼ି ।
ବିଷଦ କରି ବୁଝାଅ ଆହ ଜ୍ଞାନୀବର
ସଦା ମୃତ୍ୟୁ ରହିଥିବ ଆମ୍ଭଠାରୁ ଦୂର ।
ବିପ୍ର ବୋଲେ ଶୁଣ ଦେବୀ ଏଥିର ଉତ୍ତର
ଜପ, ତପ, ଯଜ୍ଞ, ଦାନ ଅକାତରେ କର ।
ଏହା ଆଚରିଲେ ସିଦ୍ଧି ପ୍ରାପତ ହୋଇବ
ଅଜର, ଅମର କଥା କେଭେଁ ନ ଘଟିବ ।
ବିନାଶର ରୂପାନ୍ତର ଏ ସାରା ଜଗତ
ସ୍ଥିର ହୋଇ କେହି ରହି ନ ପାରିବ ସତ୍ୟ ।
ହେ ରାମ ଏସନ ବାଣୀ ଶୁଣି ସେ ରମଣୀ
ଭର୍ତ୍ତାଙ୍କ ପ୍ରାଣ ଆଶଙ୍କା ମନେ ମନେ ଗୁଣି ।
ଅନ୍ତର ଦହନ ହେଲା ଲୁହଯାଏ ଗଡ଼ି
ଭର୍ତ୍ତା ନିଧନ କେସନ ସହିବି ମୁଁ ମୂଢ଼ୀ ?
ସ୍ୱାମୀ ଥାଉଁ ଯେବେ ମୋର ଛାଡ଼ିବ ଜୀବନ
ସୌଭାଗିନୀ ହୋଇ ଭବେ ହେବି ଧନ୍ୟ ଧନ୍ୟ ।
ମୋ ଆଗେ ରାଜାଙ୍କ ଯେବେ ହୋଇବ ମରଣ
ସେ ପ୍ରାଣ ନ ଯାଉ ଛାଡ଼ି ଏ ରାଜ ଭବନ ।
ଏଥକୁ ଉପାୟ କିଛି ଯଦି ହୋଇପାରେ
ସେଥିପାଇଁ ଯତନ ମୁଁ କରିବି ଅଚିରେ ।
ସରସ୍ୱତୀ ଦେବୀଙ୍କର ଆଶ୍ରୟ ନେବଇଁ
ଅବଶ୍ୟ ଶୁଣିବେ ମୋ ଗୁହାରି ମହାମାୟୀ ।
ଶାସ୍ତ୍ରମତେ ବାଣୀପୂଜା ଆରମ୍ଭିଲେ ରାଣୀ
ତିନି ଦିନ, ତିନିରାତି ନ ଛୁଇଁଲେ ପାଣି ।
ଚତୁର୍ଥ ଦିବସେ କଲେ ପାରଣା ବିଧାନ
ଦେବ, ବ୍ରାହ୍ମଣ, ଗୁରୁଙ୍କୁ ଅର୍ପିଲେ ପୂଜନ ।
ଦାନ, ଧ୍ୟାନ, ତପ, ସଂକୀର୍ତ୍ତନ ଆଦି କଲେ
କିନ୍ତୁ ସ୍ୱାମୀ ଆଗେ ଏହା ଗୋଚର ନ କଲେ ।
ଏହିପରି କ୍ଲେଶ ସହି ତପ ଆଚରନ୍ତି
ତ୍ରିଶତ ଦିବସ ଏହିପରି ଗଲା ବିତି ।
ତ୍ରିଶତ ଦିବସ ହୋଇ ଯାଆନ୍ତେ ଅତୀତ
ଦୟାକରି ବିଜେ କଲେ ସରସ୍ୱତୀ ମାତ ।
ଅରଚନା ପାଇ ତୋଷ ଦେବୀ ବୀଣାପାଣି
ରାଣୀକି ପ୍ରଶଂସା କରି କହନ୍ତି ଏ ବାଣୀ ।
"ପତି ପାଇଁ ଏତେ କାୟ କଷ୍ଟ ତୁ ସହିଲୁ
ସେହି କଷ୍ଟ ତପେ ମୋର ଆସନ ଟାଳିଲୁ ।
ପ୍ରସନ୍ନ ହୋଇଛି ପୁତ୍ରି ମାଗି ଘେନ ବର
ଅଭିଷ୍ଟମାନ ପୂରଣ କରିବି, ତୋହର" ।
ଲୀଳା ବୋଲେ ଜୟ ମାଗୋ ମୋତେ ରକ୍ଷାକର
ଶରଣ ରକ୍ଷଣ ବାନା ଉଡୁଥାଉ ତୋର ।
ଅନାଥିନୀ ମୁହିଁ ମାଗୋ ପଶିଲି ଶରଣ
ସଦା ଉଡୁ ତୋର ବାନା ଶରଣ ରକ୍ଷଣ ।
ଜରାଗ୍ନି ଏ ଜନମକୁ ବହୁ ପରକାରେ
ଦହନ କରୁଛି, ନିର୍ବାପିତ କର ତା'ରେ ।
ଜରାନଳ ଶାନ୍ତିପାଇଁ ତୁହି ମା ଚନ୍ଦ୍ରମା
ହୃଦୟ ତମ ନାଶନେ ତୁହି ମା ଅର୍ଯ୍ୟମା ।
ଦୁଇଟି ବର ଦିଅଗୋ ବେଦ ବିଧାୟିନୀ
ତୋର ପାଦ ପଦ୍ମ ତଳେ କରଇ ଦୟିନୀ ।
ପ୍ରଥମେ ମୋ ଭର୍ତ୍ତା ଯେବେ ଲଭିବେ ମରଣ
ବାହାରେ ନ ଯାଉ ତାଙ୍କ ଆତ୍ମା କଦାଚନ ।
ମୋ ଇଚ୍ଛାମତେ ଦର୍ଶନ ସଦା ଦେଉଥିବେ
ଅନ୍ତଃପୁର ଛାଡ଼ି କେବେ ବାହାରେ ନ ଯିବେ ।
ଦ୍ୱିତୀୟ ବର ମା ଏବେ କରଇ ବର୍ଣ୍ଣନ
ଇଚ୍ଛାମତେ ପାଉଥିବି ତୋର ଦରଶନ ।
ତଥାସ୍ତୁ କହି ବାଗ୍‌ଦେବୀ ହେଲେ ଅନ୍ତର୍ଦ୍ଧାନ
ସାଗରେ ତରଙ୍ଗ ଉଠି ଯଥା ହୁଏ ଲୀନ ।
ଲୀଳାଦେବୀ ବରପାଇ ବଡ଼ ଆନନ୍ଦିତ
ବନ୍ଧ୍ୟାନାରୀ ପାଇଲାକି ଦୀର୍ଘଜୀବି ପୁତ୍ର

**ପକ୍ଷ, ମାସ, ଋତୁମାନ ଯାହାର ବଳୟ**
**ଦିନ ଯା'ର ଅର, ବର୍ଷ ଯା'ର ଦଣ୍ଡପ୍ରାୟ ।**
**କ୍ଷଣ ଯା'ର ନାଭି, ସ୍କନ୍ଦ ଯାର ମଧ୍ୟଭାଗ**
**ସେହି କାଳଚକ୍ର ସଦା ରହିଛି ସଜାଗ ।**

ଏହି କାଳଚକ୍ର ପଥେ ମହାରାଜା ପଦ୍ମ
ବାଧ୍ୟ ହୋଇ ରଣଭୂମେ ହେଲେ ଅବତୀର୍ଣ୍ଣ ।
ଆହତ ହୋଇ ଯୁଦ୍ଧରେ ହେଲେ ହତଜ୍ଞାନ
ତହୁଁ ଅନ୍ତଃପୁରେ ଆସି ତେଜିଲେ ଜୀବନ ।
ବାହାରି ଯାଆନ୍ତେ ପୂର୍ଯ୍ୟଷ୍ଟକ ଅନ୍ତରାତ୍ମା
ରାଣୀଙ୍କର ଶୋକାନଳ ଟପିଗଲା ସୀମା ।
ଜଳ ବିନା କମଳିନୀ ମ୍ଳାନ ହେଲା ପରି
ରାଣୀଙ୍କ ବଦନ କାନ୍ତି ଦିଶିଲା ସେପରି ।
ଦୁଃଖ ସାଗରେ ବୁଡ଼ି ସେ କରନ୍ତି ବିଳାପ
କେବେ ନିଶବଦ, କେବେ ବଢ଼ଇ ସନ୍ତାପ ।

ଚକ୍ରବାକ ମରଣରେ ଚକ୍ରବାକୀ ଯଥା
ଶୋକାକୁଳ ହୁଏ, ପାଇ ଅନ୍ତରରେ ବ୍ୟଥା ।
ସାପରେଟ ଖାଇ ଯଥା କଉଣସି ବ୍ୟକ୍ତି
ମୂର୍ଚ୍ଛାଯାଇ ପଡ଼ି ରହେ ଅଚେତରେ କ୍ଷୀତି ।
ତଥା ସ୍ୱାମୀ ବିୟୋଗରେ ମୁରୁଛି ତା ଲୀଳା
ବ୍ୟାକୁଳରେ ତେଜି ବସେ ଭବଲୀଳା ଖେଳା ।
ଦୟାପରବଶ ହୋଇ ଦେବୀ ସରସ୍ୱତୀ
ଆକାଶବାଣୀ ଛଳରେ ସୁଦୟା କରନ୍ତି ।
"ସୁନ୍ଦରୀ ତୁ ମୋ ଆଦେଶ ଏମନ୍ତ ପାଳିବୁ"
ମୃତପତି ଶବକୁ ତୁ ଫୁଲରେ ଢାଙ୍କିବୁ ।
ତେବେ ପୁନଃ ପ୍ରାପ୍ତ ହେବୁ ତୋର ମୃତପତି
ଏହି ଫୁଲ ଭାର ତାକୁ ନ ବାଧିବ ସତୀ ।
ଏ ଫୁଲ ସୌନ୍ଦର୍ଯ୍ୟ କେବେଁ ମ୍ଳାନ ନ ହୋଇବ
କାଳେ କାଳେ ସଜଫୁଲ ପରି ଝଟକିବ ।
ତୋହର ଭର୍ତ୍ତା ଅବସ୍ଥା ଏସନ ସୁଢ଼ଳ
ଆକାଶର କାନ୍ତିପରି ସୁନ୍ଦର ନିର୍ମଳ ।
ରହିଅଛି ତୋର ସ୍ୱାମୀ ତୋହର ଗୃହରେ
କେଉଁଆଡେ ଯାଇନାହିଁ ଅଛି ନିଶ୍ଚିନ୍ତରେ" ।
ଏ କୃପା ବଚନ 'ଲୀଳା' ଦେବୀଠାରୁ ଶୁଣି
ଜଳହୀନ ମତ୍ସ୍ୟ ପାଇଲାକି ବର୍ଷାପାଣି ।
ଦଗଧ ଅନ୍ତରତାର ଶାନ୍ତି ଲାଭକଲା
ଉଷୁନା ଧାନ କି ସତେ ଗଜା ଦେଖାଇଲା ।
ଧନଥାଇ କୃପଣତା ବଶହୋଇ ଲୋକ
ସୁଖ ଭୋଗିପାରେ ନାହିଁ ଏଡ଼େ ଅବିବେକ ।
'ବାଣୀ' ବାଣୀ ଶୁଣି ରାଣୀ ପାନ୍ତି କିଛି ଶାନ୍ତି
ସ୍ୱାମୀ ଦରଶନ ବିନା ପୂର୍ଣ୍ଣ ଶାନ୍ତି ନାସ୍ତି ।
ତଳ, ଉପର କରିଣ ସ୍ୱାମୀଙ୍କୁ ନିଜର
ଫୁଲେ ଢାଙ୍କି ବସି ରହେ ସ୍ୱାମୀଙ୍କ ପାଶର ।
ଶୋକାତୁର ହୋଇ ଉଚ୍ଚେ କରଇ ବିଳାପ
ବେଳୁବେଳ ବଢୁଥାଏ ଅନ୍ତର ସନ୍ତାପ ।
ଅର୍ଦ୍ଧ ରାତ୍ରିରେ ସମସ୍ତେ ପଡ଼ନ୍ତେଣ ଶୋଇ
ଲୀଳା ରାଣୀ ବସେ ଦେବୀ ପାଦପଦ୍ମ ଧ୍ୟାଇ ।
ଲୀଳାର ସମାଧି ଯୋଗେ ଦେବୀ ସରସ୍ୱତୀ
ଦୟା ପରବଶ ହୋଇ ପାଶେ ବିରାଜନ୍ତି ।
"କି କାରଣେ ବତ୍ସେ ! ମୋତେ କରିଲୁ ସ୍ମରଣ
ଏବେ ମୋତେ କହ ତୋର ଶୋକର କାରଣ ।
ଭ୍ରାନ୍ତିର ବିଳାସ ଭବ ଅନ୍ୟ କିଛି ନୁହେଁ
ମୃଗତୃଷ୍ଣା ନଦୀପରି ଏ ଜଗତ ଶୋହେ ।
ଯେ ଜଗତଭରା 'ଅହଂ' 'ତ୍ୱଂ' 'ଇଦଂ' ଦ୍ୱାରା
ସେ ସବୁ କଳ୍ପନା, ମାତ୍ର ଲାଗେ କେଡ଼େ ଦ୍ରୁଢ଼ରା ।
ଆତ୍ମାର ପରିବର୍ତ୍ତନ ନାହିଁ ଗୋ ସୁନ୍ଦରୀ
କିମ୍ପାଇଁ ବିଳପୁ ଅଛୁ କହ ଚିନ୍ତାକରି ।
ଲୀଳାକହେ "ଏକ୍ଷଣି ମୋ ସ୍ୱାମୀ କେଉଁଠାରେ
କିପରି ରହିଅଛନ୍ତି କହ ମାତ ମୋରେ ?
କିକର୍ମ ସେ କରୁଛନ୍ତି ଜାଣିବି, ମୋ ଇଚ୍ଛା
ମୋତେ ଘେନି ଚଳତାଙ୍କ ପାଶେ ମୋର ବାଞ୍ଛା
ଏକାକିନୀ ବଞ୍ଚିବାକୁ ମୁହିଁ ଅସମର୍ଥ
କାଣ୍ଡାରୀ ବିନା ନଉକା ଯଥା ଅସ୍ତବ୍ୟସ୍ତ ।"

### ଦେବୀ ଉବାଚ

"ଶୁଣ ବରାନନେ ମୋର କହିବାର ବାଣୀ
ଚିତ୍ତାକାଶ, ଚିଦାକାଶ, ମହାକାଶ ତିନି,
ପର ପର ହୋଇ ଏ ଯେ ରହିଛନ୍ତି ଜାଣ
ଚିତ୍ତାକାଶ ଅଟେ ବତ୍ସେ ବାସନାରେ ପୂର୍ଣ୍ଣ ।
ଏହି ଯେ ବ୍ୟବହାରିକ **ପ୍ରତ୍ୟକ୍ଷ ଆକାଶ**
ପ୍ରସିଦ୍ଧ ଅଟଇ ନାମ ତାର **ମହାକାଶ ।**
ଏ ଦୁହିଁଙ୍କ ଭିନ୍ନ ଅଛି ଯେବଣ ଆକାଶ ।
ଜ୍ଞାନୀଙ୍କ ମତରେ ଅଟେ ତାହା **ଚିଦାକାଶ ।**
ସେ ଚିଦାକାଶରେ ଅନ୍ୟ ଦୁଇଟି ବିଲୟ
ଲଭନ୍ତି ଗୋ ବତ୍ସେ ! ଶୁଣ ହେତୁ କରି ଥୟ ।
**ଚିଦାକାଶ ଅଟେ ସର୍ବବ୍ୟାପୀ ଚଇତନ୍ୟ**
**ଅନ୍ୟନାମ ଯାରଅଟେ ପରମାତ୍ମା ବ୍ରହ୍ମ ।**
ସର୍ବ, ସୃଷ୍ଟି, ସ୍ଥିତି, ଲୟ ଯା'-ମଧ୍ୟେ ଘଟନ୍ତି
ଇହ ପର ଲୋକ ସର୍ବ ଏଥିରେ ଅଛନ୍ତି ।
ତୋହର ସ୍ୱାମୀ ଖବର ବତ୍ସେ ଏବେ ଶୁଣ ।
ସେହି ଚିଦାକାଶ କୋଷେ ବିରାଜନ୍ତି ଜାଣ ।
ତନ୍ମୟ ହୋଇ ତୁ ଚିଦାକାଶକୁ ଧ୍ୟାଇଲେ
ଶୀଘ୍ର ସେହି ସ୍ଥାନ ଦେଖି ପାରିବୁ ତୁ ଭଲେ ।
ଆଉ ମଧ ଇଚ୍ଛା କଲେ ସେ ସ୍ଥାନରେ ଯାଇ ।
ସାକ୍ଷାତ କରି ପାରିବୁ ତୋ ସ୍ୱାମୀକୁ ତୁହି ।
ନିମିଷ ମଧ୍ୟେ ଏ ଚିତ୍ତ ତେଜି ମହାକାଶ
ଯାଇଁ ଯାଇଁ ପହଞ୍ଚେ ସେ ସୁଦୂର ପ୍ରଦେଶ ।

ଯେତେଦୂର ଯାଉଥାଏ ଚିଦାକାଶ ତାକୁ
ପ୍ରକାଶ କରଇ ବସ୍ତେ ହେଜ ରଖ ଯାକୁ ।
ସେହି ପ୍ରକାଶର ନାମ ଜ୍ଞାନ ବା ସମ୍ବିତ
'ମହାକାଶ' 'ଚିତ୍ତାକାଶ' ତାରେ ପ୍ରକାଶିତ ।
ସଂବିତ ଅଟେ ଉଭୟ ଆକାଶ ଆଧାର ।
ଚିଦାକାଶ ବୋଲି ତାହା ତୁମ୍ଭଙ୍କୁ ଗୋଚର ।
ଯଦି ତୁ ଚିତ୍ତସ୍ଥ ସର୍ବ ସଙ୍କଳପ ମାନ
ତେଜି, ଚିଦାକାଶେ କରିପାରୁ ଅବସ୍ଥାନ ।
ତେବେ ସେହି ସର୍ବାତ୍ମକ ତତ୍ତ୍ୱ ପାରୁ ଲଭି
ଜୀବ ପକ୍ଷେ ତତ୍ତ୍ୱଜ୍ଞାନ ଦୁର୍ଲଭ ଗୋ ଦେବି !
ହେଲେ ହେଁ ତା ଶ୍ରମସାଧ ଜୀବର ପକ୍ଷରେ
ଅନାୟାସେ ଲଭିବୁ ତା' ମୋର ବର ବଳେ ।"
କହନ୍ତି ବଶିଷ୍ଠ ରାମ ବାଣୀ ଏହା କହି
ଅନ୍ତର୍ଦ୍ଧାନ ହୋଇଯାନ୍ତେ ଲୀଳା ବସି ରହି ।
ଦେବୀ ବରେ ନିର୍ବିକଳ୍ପ ସମାଧି ଲଭିଲେ
ଦେହାଭିମାନ ସକଳ ପରିତ୍ୟାଗ କଲେ ।
ସ୍ଥୁଳ ଦେହ ତେଜି ପକ୍ଷୀ ପରି ଉଡ଼ିଯାଇ
ଚିଦାକାଶେ ପରବେଶ ହେଲେ ପତି ଧାଇ ।
ସେହି ଚିଦାକାଶେ ଏକ ପ୍ରକୋଷ୍ଠ ମଧ୍ୟରେ
ନିଜ ସ୍ୱାମୀ ପଦ୍ମଙ୍କୁ ସେ ଯାଇଣ ଭେଟିଲେ ।
ସର୍ବୋଚ୍ଚ ସିଂହାସନରେ ରାଜା ବସିଛନ୍ତି ।
ଚଉପାଶେ ଅନ୍ୟ ରାଜାମାନେ ବିରାଜନ୍ତି ।
ରଞ୍ଜିତ ଚିରାଳମାନ ପ୍ରାସାଦ ଉପରେ ।
ଫର ଫର ଉଡ଼ି ଶୋଭା ବଢ଼ାନ୍ତି ସେଠାରେ ।
ରାଜର୍ଷି ମହର୍ଷିଗଣ ସମ୍ମାନ ଜଣାନ୍ତି
ଧୂପ, ଦୀପ, ଗନ୍ଧ ପୁଷ୍ପ ମାଲ୍ୟମାନ ଦ୍ୟନ୍ତି ।
ପୁଣ୍ୟ ଶ୍ଳୋକ ରାଜାଗଣ ଭକ୍ତିପୂର୍ଣ୍ଣ ଚିତ୍ତେ
ସଭା ମଣ୍ଡନ କରନ୍ତି ଯଥା ଅନୁଗତେ ।
ବିଭିନ୍ନ ଦେଶୁ ବିଭିନ୍ନ ଦୂତମାନେ ଆସି
ରାଜ୍ୟର ଖବରମାନ ଜଣାନ୍ତି ସମ୍ଭାସି ।
କାହିଁ ଶାନ୍ତି କାହିଁ ଯୁଦ୍ଧ କାହିଁ ବା ବିଦ୍ରୋହ
ବର୍ଣ୍ଣନ କରନ୍ତେ ବଢୁଥାଏ ତାଙ୍କ କୋହ ।
ଯାଜ୍ଞିକ ବ୍ରାହ୍ମଣଗଣ ଯଜ୍ଞଶାଳେ ଥାଇ
ବେଦ ପାଠ କରୁଥାନ୍ତି ଗଗନ କମ୍ପାଇଁ ।
ସଭାସ୍ଥଳ ନିନାଦିତ ବାଦ୍ୟଧ୍ୱନି ଘେନି
ପିକ ବଧୂ ତୁନି ପଡ଼େ ଗୀତ ନାଦ ଶୁଣି ।

ଏ ତ ଗଲା ରାମ ପୂର୍ବ ଦିଗର ବାରତା
ଏବେ ଶୁଣ ରଘୁନାଥ ପଶ୍ଚିମର କଥା ।
ନାନା ଆଭୂଷଣ ଦ୍ୱାରା ହୋଇ ବିମଣ୍ଡିତ
କୁଳ ଲଳନା କରନ୍ତି ଶୋଭା ଅଳଂକୃତ ।
ଘରି ସେନା, ହାତୀ, ରଥ, ଘୋଡ଼ା ଆଦିକରି
ଉତ୍ତର ଦିଗ କମ୍ପାନ୍ତି ନଭପଟ ଧୂଳି ।
ମଣ୍ଡଳେଶ୍ୱରମାନେ ଯେ ଦକ୍ଷିଣରେ ଥାନ୍ତି
ରାଜାର ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି ।
ରାଣୀ ଦେଖେ ସର୍ବେ ତହିଁ ସ୍ୱ ସ୍ୱ ବ୍ୟବହାରେ ।
ସ୍ଥିର ରହିଛନ୍ତି ପୂର୍ବ ରୀତି ଅନୁସାରେ ।
ବ୍ୟୋମଦେହୀ ଲୀଳା ତହିଁ ଅଦୃଶ୍ୟ ଭାବରେ
ସ୍ୱାମୀଙ୍କ ଆକାଶମୟୀ ସତ୍ତାକୁ ଦେଖିଲେ ।
କେହିହେଲେ ଜଣେ ତାଙ୍କୁ ଦେଖିପାରୁ ନାହିଁ ।
ସମସ୍ତଙ୍କୁ ଦେଖୁଥାନ୍ତି ଲୀଳା ମହାଦେଇ ।
ରାଜା, ସଭା, ପାତ୍ର, ମନ୍ତ୍ରୀ, ପାରିଷଦ୍ ଗଣ ।
ବେଢ଼ି ରହିଛନ୍ତି ପୂର୍ବ କର୍ମଚାରୀମାନ ।
ତାଙ୍କ ବେଶଭୂଷା ଆଦି ବ୍ୟବହାରମାନ
ଏସବୁ ପୁରୁବ ପରି ରହିଛି ଅକ୍ଷୁଣ୍ଣ ।
ସେ ନଗରୀ ନଭେ ଗ୍ରହ, ନକ୍ଷତ୍ରାଦିମାନ
ନଦ, ନଦୀ, ବନ ଗିରି ସର୍ବ ବିଦ୍ୟମାନ ।
ଯେପରି ତାଙ୍କ ରାଜ୍ୟରେ ବାଳକ ବାଳିକା
ଅବିକଳ ନାଚନ୍ତି ସେ ନାୟକ ନାୟିକା ।
ପଶୁ, ପକ୍ଷୀ, କୀଟ ପତଙ୍ଗାଦି ଯେତେ ଜୀବ
ସରବେ ରହି ଅଛନ୍ତି କର ତହିଁ ଠାବ ।
ସେହି ବ୍ରାହ୍ମଣ, ପଣ୍ଡିତେ ପୂଜା ଅରଚନା
ବେଦପାଠ, ଯଜ୍ଞ କରି କରନ୍ତି କାମନା ।
ତାଙ୍କ ପୂର୍ବ ରାଜବାଟୀ ଶୋଭାପାଏ ତହିଁ
ଅବିକଳ ସର୍ବେଛନ୍ତି ପୂର୍ବପରି ରହି ।
କେବଳ ରାଜା ତାଙ୍କର ପୂର୍ବ ଜରା ରୂପ
ତେଜି ରହିଛନ୍ତି ନବ ଯୁବକ ସ୍ୱରୂପ ।
ରାଜତ୍ୱ ସୁଖ, ରାଜନ ଭୋଗ କରୁଛନ୍ତି ।
ପୂର୍ବନଗର-ବାସୀଏ ମାର୍ଗେ ଦେଖାଯାନ୍ତି ।
ସେମାନଙ୍କୁ ଦେଖି ଲୀଳା ମନେ ମନେ ଭାବେ
କି ଆଶ୍ଚର୍ଯ୍ୟ ! ଏମାନେ କି ମରିଛନ୍ତି ସର୍ବେ !
କ୍ଷଣକାଳ ଏହି ଚିନ୍ତା ତାହାଙ୍କୁ ଘାରିଲା
ସରସ୍ୱତୀ କୃପା ତାଙ୍କ ସମାଧି ଭାଙ୍ଗିଲା ।

କ୍ଷଣକାଳ ମଧ୍ୟେ ଲୀଳା ଏସନ ଦେଖନ୍ତି ।
ସ୍ୱୀୟ ପୂର୍ବ ଗୃହେ ଫେରି ଆସି ରହିଛନ୍ତି ।
ହୋଇଛି ଅର୍ଦ୍ଧରଜନୀ, ସର୍ବ ପୁରବାସୀ
କାଳ ନିଦ୍ରା ସମସ୍ତଙ୍କୁ ଘାରିଛି କି ଆସି ?
ପୂର୍ବ ବର୍ଣ୍ଣିତ ସକଳ ଲୋକ ଏହିଠାରେ
ସକଳ ଦ୍ରବ୍ୟ ତାଙ୍କର ଅଛି ନିକଟରେ ।
ସଖୀମାନଙ୍କୁ ଉଠାଇ କହୁଛନ୍ତି ରାଣୀ
ରାଜଗାଦି ପାଶେ ମୋତେ ଘେନ ଏହିକ୍ଷଣି ।
ସଭ୍ାସଦ ଗଣଙ୍କୁ ମୁଁ ଦେଖିଲେ ସେଠାରେ
ବଞ୍ଚିବି, ନୋହିଲେ ପ୍ରାଣ ଛାଡ଼ିବି ସତ୍ୱରେ ।
ପୁରବାସୀ ରାଣୀଙ୍କର ଶୁଣି ଏ ବଚନ ।
ସଙ୍ଗେ ସଙ୍ଗେ ସାଜ୍ ସଜା କଲେ ଆୟୋଜନ ।
ଏହା ଶୁଣି ଭୃତ୍ୟମାନେ ଶୀଘ୍ର ଚଳିଗଲେ
ନଗରବାସୀଙ୍କୁ ରାଜପୁରେ ଗୁଣ୍ଠ କଲେ ।
ସାମନ୍ତ, ଅମାତ୍ୟଗଣ ଏମନ୍ତ ଯେ କଲେ
ନିଜ ନିଜ ଆସନରେ ଯାଇଣ ବସିଲେ ।
ସ୍ୱର୍ଣ୍ଣ ସିଂହାସନେ ବସି ଲୀଳା ମହାଦେଇ ।
ସ୍ୱଜନବର୍ଗମାନଙ୍କୁ ନେତ୍ରରେ ଦେଖଇ ।
ରାଜସଭାସଦଗଣ ସରବେ ଆସୀନ ।
ଏହା ଦେଖି ମହା ଦେଇ ପ୍ରଫୁଲ୍ଲିତ ମନ ।
ସଶଙ୍କିତ ମନେ ମହାଦେଈ ବିଚରନ୍ତି ।
ରାଜନ ଛଡ଼ା ସମସ୍ତେ ବଞ୍ଚି ରହିଛନ୍ତି ।
ରାଣୀ କହନ୍ତି "ଶୁଣିବା ସଭାସଦଗଣ
ତୁମଙ୍କୁ ଦେଖି ମୁଁ ହେଲି ଆନନ୍ଦିତ ମନ ।"
ଏହା କହି ଇଙ୍ଗିତରେ ବିଦାୟ ଦେଇଣ
ଅନ୍ତଃପୁରକୁ ଯେ ଲୀଳା କଲେକ ପ୍ରସ୍ଥାନ ।
ଯେଉଁଠାରେ ସ୍ୱାମୀ ଶବ ପୁଷ୍ପେ ଆଚ୍ଛାଦିତ
ଲୀଳାଦେବୀ ସେହି ସ୍ଥାନେ ହେଲେ ଉପସ୍ଥିତ ।
ପାଶେ ବସି ରାଣୀ ତହିଁ କରନ୍ତି ଚିନ୍ତନ
କି ଅଦ୍ଭୁତ ମାୟା ମୋତେ ଘାରିଛି ଏକ୍ଷଣ ।
ଏହା ଶୁଣି ସଖିଗଣ ମହାମନ୍ତ୍ରୀ ପାଶ
ଯାଇ ଜଣାଇଲେ ତାଙ୍କୁ ସକଳ ସନ୍ଦେଶ ।
ସମସ୍ତ ଭୃତ୍ୟମାନଙ୍କୁ ମନ୍ତ୍ରୀ ଉଠାଇଲେ,
ସିଂହାସନକୁ ଝଡ଼ାଇ ସଜାସଜି କଲେ ।
ସିଂହାସନ ଚାରିପାଖେ ବିଛଣା ପଡ଼ିଲା
ମଶାଲମାନ ଜଳନ୍ତେ ଆଲୋକ ଶୋଭିଲା ।
ଅଗସ୍ତି ମୁନି ସିନ୍ଧୁକୁ ପାନକଲା ପରି
ଅନ୍ଧକାରକୁ ଆଲୋକ ଝଟ୍ ଦେଲା ଗିଳି ।
ମନ୍ତ୍ରୀ, ଆଗନ୍ତୁକ, ଋଷିଶ୍ୱର ଆଦି ଯେତେ
ସର୍ବେ ଉପବିଷ୍ଟ ସିଂହାସନ ପାଦଗତେ ।
ଜନଲହରି ଏସନ ବେଗେ ବଢ଼ିଗଲେ
ମହା ପ୍ରଳୟରେ ସିନ୍ଧୁ ଯେସନ ଉଛୁଳେ ।
ସମସ୍ତଙ୍କୁ ଦେଖି ଲୀଳା ଏମନ୍ତ ଚିନ୍ତଇ
ରାଜାଙ୍କ ଶ୍ରୀମୁଖ କିମ୍ବା ମୋତେ ନ ଦିଶଇ ।
ଆଶ୍ଚର୍ଯ୍ୟରେ ମହାସତୀ ବସିଣ ଭାଳନ୍ତି
ପୁଣି ସରସ୍ୱତୀ ଆରାଧନା ଆରମ୍ଭନ୍ତି ।
ବ୍ରହ୍ମ ବିଳାସିନୀ କନ୍ୟା ରୂପ ଧରି ଆସି
କୋମଳ ବଚନେ ଲୀଳା ରାଣୀଙ୍କି ସମ୍ଭାସି
"କି କାରଣେ ବତ୍ସେ ମୋତେ କଲୁ ସୁମରଣା
ତୋର ମନ ଜାଣି ମୁହିଁ ବିଜେ କଲି ସିନା" ।
"ଲୀଳା କହେ ଆଗୋ ମାତ ଉଦ୍‌ବିଗ୍ନ ନ ହୁଅ
ମୋ କାତର ବାଣୀ ଶୁଣି ପ୍ରତ୍ୟୁତ୍ତର ଦିଅ ।
ଜ୍ୟେଷ୍ଠଙ୍କ ସ୍ୱଭାବ ଏହା ଜାଣ ମହାମାୟୀ
କନିଷ୍ଠଙ୍କ ପ୍ରଶ୍ନ ଶୁଣି ଖେଦ ନ ଆସଇ ।
ବାରମ୍ବାର ପ୍ରଶ୍ନ ଶୁଣି ଧୈର୍ଯ୍ୟ ଧରିଣ
କନିଷ୍ଠଙ୍କ ପ୍ରଶ୍ନୋତ୍ତର ଦିଅନ୍ତି ପ୍ରବୀଣ ।
ଏ ଜଗତ କିସ ମାତ କିସ ସେ ଜଗତ
ଏହାଙ୍କ ମଧ୍ୟେ କୃତ୍ରିମ ଅଟେ କିଏ ମାତ ?
ଅକୃତ୍ରିମ ବୋଲି ପୁଣି କହନ୍ତି କାହାକୁ ।
ପ୍ରକୃତ ଉତ୍ତର ଦେଇ ରଞ୍ଜ ମୋ ମନକୁ ।
ଦେବୀ କହନ୍ତି ଗୋ ଲୀ'ଳେ ! ତୋ ପ୍ରଶ୍ନ ଉତ୍ତର
ପଛେ ଦେବୀ ଜାଣିଲେ ତୋ ମନର ବିଚାର ।
ଲୀଳା ବୋଲେ ଅକୃତ୍ରିମ ସେହି ସେ ଜଗତ
ଯହିଁ ତୁମ୍ଭେ ଆମ୍ଭେ ଦୁହେଁ ଅଛୁଁ ବିରାଜିତ ।
କୃତ୍ରିମ ସେହି ଜଗତ ଯହିଁ ମୋର ଭର୍ତ୍ତା
ଅବସ୍ଥାନ କରୁଛନ୍ତି ଶୁଣ ଆଗୋ ମାତା,
ଯେଣୁ ଶୂନ୍ୟେ ରହିଛନ୍ତି ଦେଶକାଳ ମାନ
ସ୍ୱପ୍ନ ଦୃଷ୍ଟ ପର୍ବତାଦି ଅଳୀକ ଯେସନ
ବସ୍ତୁମାନ ଯାହା କିଛି ଦେଖୁ ସେ ଜଗତେ
ଅସତ ସକଳେ ସତ ନୁହନ୍ତି ମୋ ମତେ ।
କହନ୍ତି ବାଗ୍‌ଦେବୀ ଏବେ ଶୁଣ ଗୋ ସୁନ୍ଦରୀ
ତୋ ମନ ସନ୍ଦେହ ଯେହ୍ନେ ଯିବ ଅପସରି ।

ଅକୃତ୍ରିମରୁ କୃତ୍ରିମ ଜନମ ଲଭିବ ।
ଯେତେ ଚେଷ୍ଟା କଲେ କେଉଁ ସମ୍ଭବ ନୋହିବ ।
କାରଣ ଯେପରି ହୁଏ କାର୍ଯ୍ୟ ସେହିପରି
କାର୍ଯ୍ୟ ସର୍ବଦା କାରଣ ପଥ ଅନୁସରି ।
ସତରୁ ଅସତ ନୁହେଁ ଅସତରୁ ସତ
ବିନା କାରଣରେ କାର୍ଯ୍ୟ ହେବ ବା କେମନ୍ତ ?
ତେଣୁ ଯେଉଁପରି ଏହି ଜଗତ ଅଟଇ
ସେ ଜଗତ ତଦଅନୁରୂପ ମହାଦେଇ ?
ଲୀଳା କହେ ମାଗୋ ବ୍ରହ୍ମ-ବିଳାସିନୀ ମାଏ
ଏକ କାରଣରୁ ଅନ୍ୟ କାର୍ଯ୍ୟ ସତ୍ତା ହୁଏ ।
ଜଳକୁ ଉଠାଇବାକୁ ମାଟି ଅସମର୍ଥ
ମାଟି ରୂପାନ୍ତର ଘଟ ତହିଁକି ସମର୍ଥ ।
ତେଣୁ କହେ କାରଣରୁ ଅନ୍ୟ କାର୍ଯ୍ୟ ସତ୍ତା
ସମ୍ଭବି ପାରଇ ମାତ ନୁହେଁ କି ଏ କଥା ?
ଦେବୀ କହନ୍ତି ଗୋ ଲୀଳେ ଅନ୍ୟ କାର୍ଯ୍ୟ ସତ୍ତା
ସହାୟକ ଥିଲେ ହୋଇପାରେ ଏହି କଥା ।
ସହାୟକ ବିନା ଅସମ୍ଭବ କାର୍ଯ୍ୟ ସତ୍ତା
କାରଣ ହୀନ ସୃଷ୍ଟିରେ ଭାସେ ତୋର ଭର୍ତ୍ତା ।
ଆକାଶ ସ୍ୱରୂପ ଥିଲା ତୋ ସ୍ୱାମୀ ଜୀବତ୍ମା
ଗଭୀର ଚିନ୍ତାର ସହ ବୁଝ ମୋର କଥା ।
ସହକାରୀ କାରଣ, ବା ନିମିତ୍ତ କାରଣ
କିଛି ହିଁ ନଥିଲା, ତାଙ୍କ ନାହିଁ ଅବସ୍ଥାନ ।
କୃତ୍ରିମ ସେ ପୁର ବୋଲି କିପରି କହିବ
**ଅନ୍ୟଦ୍ୱାରା 'କୃତ' ଯେ କୃତ୍ରିମ ବୋଲାଇବ ।**
ପଞ୍ଚତତ୍ତ୍ୱରୁ ରହିତ ଆକାଶ ରୂପୀ ସେ ।
କୃତ୍ରିମ କିପରି ହେବ କହ ମହୀୟସେ ।
**ସମବାୟ କାରଣଟି** ଯାହାର ନ ଥିବ
**ନିମିତ୍ତ କାରଣ** ତାର କିପରି ସମ୍ଭବ ?
ଏଣୁ କାରଣ ବିହୀନ ତୋ ପତିଙ୍କ ସ୍ୱର୍ଗ ।
ଆଉ ବିଶେଷ ଯୁକ୍ତିରେ କି ଲାଭ ମିଳିବି ?
ଲୀଳା କହେ ଦେବୀ ଶୁଣ ଏବେ ମୁଁ ବୁଝିଛି ।
ଜନ୍ମାନ୍ତର ସ୍ମୃତି ହେତୁ ମୋ ସ୍ୱାମୀ ଜନ୍ମିଛି ।
ସ୍ମୃତିତ କୌଣସି ବସ୍ତୁ ନୁହଇ ଗୋ ଲୀଳେ
ସ୍ମୃତିତ ଶୂନ୍ୟ ରୂପିଣୀ ନ ଭୁଲଟି ଭଲେ ।
ସ୍ମୃତି ହିଁ ସଂକଳପର ଅନ୍ୟନାମ ଜାଣ
ସେହି ସଙ୍କଳପ ଅଟେ ଆକାଶ ସମାନ ।

ଶୂନ୍ୟ ସେହି ବସ୍ତୁ, କାୟା ନ ଥାଇ ତାହାର ।
ସ୍ମୃତିକି ମାନସ-ରାଜ୍ୟ ବୁଝ ନାରୀବର ।
ସତ୍ତାହୀନ ସେହି ସ୍ମୃତି ଶୂନ୍ୟଠାରୁ ଶୂନ୍ୟ
ସ୍ମୃତି କେବଳ ଆଭାସ ମାତ୍ର, ବୋଲି ଜାଣ ।
ତେଣୁ ତୋ ଭର୍ତ୍ତାଙ୍କ ସୃଷ୍ଟି ଆକାଶ ରୂପିଣୀ
ଅନୁଭୂତ ହେଲେ ହେଁ ସେ ବ୍ୟୋମ ସ୍ୱରୂପିଣୀ ।
ଲୀଳା କହେ ଏବେ ମାଗୋ ମୁଁ ବୁଝି ପାରୁଛି
ସ୍ମୃତିରୁ ସେ ଜନମିଛି, ଅନ୍ୟ ନୁହେଁ କିଛି ।
ଆକାଶ ସ୍ୱରୂପ ତାହା, ବସ୍ତୁ ସେ ନୁହଇ
ତଥା ମୋ ସ୍ୱାମୀ ଅବସ୍ତୁ ସତ୍ତା ତାଙ୍କ ନାହିଁ ।
ଏହି ଦୃଶ୍ୟମାନ ସୃଷ୍ଟି ଯାହା ଦେଖାଯାଏ
ସେ ସ୍ମୃତି ଏହା ପ୍ରସୁତି ନୁହେଁ କି ଗୋ ମାଏ ?
ତୁମ୍ଭେ, ଆମ୍ଭେ ଯେ ସୃଷ୍ଟିରେ ବସିଥାଇଁ ମାତ
ମୋ ସ୍ୱାମୀ ଯହିଁ ଅଛନ୍ତି ତା ମଧ୍ୟ ଏମନ୍ତ ।
ବାଗ୍‌ଦେବୀ କହନ୍ତି ବାଣୀ ଲୀଳାରାଣୀ ଚହିଁ
ଯାହା ତୁ ପ୍ରକାଶ କଲୁ ତା ସତ୍ୟ ଅଟଇ ।
ଅହଂ, ତ୍ୱଂ, ଇଦଂ, ଆଦି ସକଳ ଜଗତ
ଆକାଶ ସ୍ୱରୂପ ଭାସେ, ସର୍ବ ଭ୍ରାନ୍ତି ମାତ୍ର ।
କିଛି ତ ଉପୁଜୁ ନାହିଁ ସର୍ବ ଶୂନ୍ୟ ପରି
ରୂପ ରେଖ, ସଦଭାବ ନାହିଁ ତ କାହାରି ।
ତା ସ୍ମୃତି କେସନ ସତ୍ୟ ଯେହୁ ନୁହେଁ ସତ
ସୁଚିନ୍ତିତ ମନେ ଲୀଳେ ଦିଅ ତୋର ମତ ।
ଏବେ ମନେରଖ ଲୀଳେ ଯେ ଜନ୍ମ ଲଭିଛି
ତା' ପୂର୍ବ ଜନ୍ମମାନଙ୍କ ସଂସ୍କାର ତ ଅଛି ।
**ପୂର୍ବ ଜନ୍ମମାନଙ୍କର ସଞ୍ଚିତ ବାସନା**
**ପର ଜନ୍ମମାନଙ୍କର କାରଣ ସେ ସିନା ।**
ଲୀଳା ବୋଲେ ଭଗବତୀ ଶୁଣ ମୁଁ କହୁଛି
ଯେଉଁଥିରୁ ମୋର ସ୍ୱାମୀ ଜନମ ଲଭିଛି ।
ସେହି ଭ୍ରମାତ୍ମକ ସୃଷ୍ଟି ତଥା ଜଗତ୍ ଭ୍ରମ
କିପରି କଟିବ, ବଦଳିବ ମୋର କର୍ମ ?
ସେହି ଉପଦେଶ ଦେଇ ମୋତେ ରକ୍ଷାକର
ଜନ୍ମେ ଜନ୍ମେ ସେବିକା ମୁଁ ହୋଇବି ତୁମ୍ଭର ।
ଶୁଣ ଲୀଳେ ଏହି ସୃଷ୍ଟି ଗଢ଼ା କି ପ୍ରକାର
ଜନ୍ମ ଜନ୍ମାନ୍ତର ବାଞ୍ଛା ବିଳାସ ମାତର ।
ସ୍ୱପ୍ନଭ୍ରମ ସଦୃଶ ଏ ସୃଷ୍ଟି ଯେଉଁମତେ
ଉଦିତ ହୋଇ ପ୍ରକାଶ ପାଉଛି ଜଗତେ ।

ବର୍ଣ୍ଣନ କରୁଛି ତାହା ଶ୍ରବଣ ତୁ କର
ଧନ୍ୟ ଧନ୍ୟ ହେବୁ ତୁହି ଜୀବନେ ମୁକର ।
ଯେ ଚିଦାକାଶ ତାହାର କଉଣସି ଅଂଶେ
ଆକାଶ କାଚରେ ଢଙ୍କା ମଣ୍ଡପେକ ବସେ ।
ସୁମେରୁ ପର୍ବତ ଅଟେ ସେ ମଣ୍ଡପ ଖମ୍ବ
ଚଉଦ ଭୁବନ ତାର କୋଠରୀ ଜାଣିବ ।
ପ୍ରଦୀପ ଅଟନ୍ତି ତହିଁ ଦେବତା ଭାସ୍କର
ତ୍ରିଭୁବନ ଅନ୍ତରାଳ ମଣ୍ଡପ ବିବର ।
ଲୋକପାଳଗଣ ଏହି ମଣ୍ଡପେ ପ୍ରତିମା
ମଣ୍ଡପ କେବଣେ ପ୍ରାଣୀଏ ଉଇ, ପୋକ ସିନା ।
ଲୋଷ୍ଟ୍ରବତ ଅଟନ୍ତି ଯେ ପରବତମାଳ
ସପତ ସାଗର ଛନ୍ତି ତହିଁ ରସାଧାର ।
ଏ ମଣ୍ଡପ ଅଟେ ବହୁ-ପୁରୀ ପରିପୂର୍ଣ୍ଣ
ବହୁ-ପୁତ୍ର ପିତା ବ୍ରହ୍ମା ଏଠାରେ ବ୍ରାହ୍ମଣ ।
ପୁତ୍ରମାନେ କୀଟକୋଷ ନିରିମାଣ କରି
ନିଜେ ନିଜେ ବନ୍ଧ ହୁନ୍ତି କେ ତାଙ୍କ ବଇରୀ ?
ଜୀବଗଣ ଏହି ଗୃହେ କୋଷ କୀଟ ପରି
ନିଜେ ନିଜେ ବନ୍ଧଛନ୍ତି ନାହିଁ କେହି ଅରି ।
ବ୍ୟୋମାର୍ଦ୍ଧ ତଳ ଓ ଘରି ମେଘମାଳା ମାନ
ଦିଶନ୍ତି ଏ ଘରକୋଣ କାଳିମା ସମାନ ।
ନଭ ମଣ୍ଡଳର ବାସୀ ଯେ ସିଦ୍ଧ ଚାରଣ
ତାଙ୍କ ଶବ୍ଦ ଶୁଭେ ଯଥା ମଶକଙ୍କ ସ୍ୱନ ।
ସୁର, ଅସୁର ଏମାନେ ଶିଶୁଗଣ ସମ
ଏ ଗୃହ ପ୍ରାଙ୍ଗଣେ କ୍ରୀଡ଼ାରତ ରାତ୍ର ଦିନ ।
ଲୋକାନ୍ତର, ଗ୍ରାମ, ନଗ୍ର, ବନାଦି ସକଳ
ଏ ମଣ୍ଡପ ଭାଣ୍ଡ ମଧ୍ୟେ ଯଥା * ଉପସ୍କର ।
ସପତ ସାଗର ଏଥି ସରୋବର ପରି
ଗୃହତଳ ସିକ୍ତ ସେହି ଜଳ ଲାଗିକରି ।
ଏ ଗୃହର ଗର୍ତ୍ତ ସ୍ୱର୍ଗ, ପାତାଳ ଓ ମର୍ତ୍ତ୍ୟ
ପ୍ରତିକୋଣେ ନଗ୍ର-ଲୋଷ୍ଟ୍ର ତଳେ, ଗ୍ରାମ-ଗର୍ତ୍ତ ।
ନଦୀ, ଶୈଳ, ଗ୍ରାମ ବେଢିଥିବା ଏକ ଦେଶେ
ସାଗ୍ନିକ ବ୍ରାହ୍ମଣ ଏକ ବସନ୍ତି ସନ୍ତୋଷେ ।
ଅତିଥି ପରାୟଣ ସେ ଦ୍ୱିଜ ରୋଗହୀନ ।
ସସ୍ତ୍ରୀକ ସେ ବିପ୍ରବର ପୁଣି ପୁତ୍ରବାନ ।

ବିତ୍ତ, ବେଶ, ବୟସ ଓ କର୍ମ ବିଦ୍ୟାଦିରେ
ସାକ୍ଷାତ ବଶିଷ୍ଠ ପରି ସେହି ଦ୍ୱିଜ ଥିଲେ ।
ବଶିଷ୍ଠ ନାମ ଥିଲା ସେ ଦିଜବରଙ୍କର
ତେଣୁ ନାମ ମିତ୍ର ଥିଲେ ଦୁଇ ବିପ୍ରବର ।
ମହର୍ଷି ବଶିଷ୍ଠ ସୂର୍ଯ୍ୟବଂଶ ପୁରୋହିତ-
ଥାଇ, ରାମଙ୍କୁ ଶିଖାଇ ଥିଲେ ଶାସ୍ତ୍ରତତ୍ତ୍ୱ ।
କିନ୍ତୁ ସୂର୍ଯ୍ୟବଂଶ ଗୁରୁ ସେ ଦ୍ୱିଜ ନଥିଲେ
ଅନ୍ୟ ସର୍ବଗୁଣେ ବଶିଷ୍ଠଙ୍କ ସମଥିଲେ ।
ଉଭୟଙ୍କ ସ୍ତୀରୀ ନାମ ଅଟେ ଅରୁନ୍ଧତୀ ।
ସାଧ୍ୱୀ, ସୁଲକ୍ଷଣୀ ବାମା ଉଭୟେ ଅଟନ୍ତି ।
ବିଭବ, ବେଶ, ବୟସ କର୍ମ ଇତ୍ୟାଦିରେ
ସମାନ ଅଟନ୍ତି ସେହି ଦୁଇ ନାରୀବରେ ।
ମହର୍ଷି ନାରୀ ଅଟନ୍ତି ଆକାଶ ବାସିନୀ
ଭୂମ୍ୟାକାଶେ ରହୁଛନ୍ତି ବ୍ରାହ୍ମଣ ରମଣୀ ।
ଜୀବନ ମୁକତ ଅଟେ ମହର୍ଷି ରମଣୀ
ସେ ସୁଲଭ ଗୁଣ-ହୀନା ବ୍ରାହ୍ମଣ ଗୃହିଣୀ ।
ସେ ଦ୍ୱିଜବର ଏକଦା ଶଇଳ ଶିଖରେ
ବସିଥିଲା ଯାଇ ଏକ ସବୁଜ କ୍ଷେତ୍ରରେ ।
ଥାଟ ସହ ଏକ ରାଜା ତହିଁ ପହଞ୍ଚିଲେ
ପରିବାର ସହ ଦାସ ଦାସୀମାନେ ଥିଲେ ।
ମୃଗୟା ବିହାର ଥିଲା ରାଜାଙ୍କ ଉଦ୍ଦେଶ୍ୟ
ସୁମେରୁ କିମ୍ପାଇ ଦେଲା ଥାଟଙ୍କ ନିର୍ଘୋଷ ।
ବ୍ରାହ୍ମଣ ବର୍ଶିଷ୍ଠ ଏହି ଦୃଶ୍ୟ ଦେଖିକରି
ଅତି ମୁଗ୍‌ଧ ହୋଇ ସେ ନିଜକୁ ଗଲେ ଭୁଲି ।
ଦିବା ନିଶି ସେହି ଚିନ୍ତା ମନ ଆଲୋଡ଼ଇ
ରାଜପଦ କି ମଧୁର "ଏବେ ମୁଁ ବୁଝଇ ।
କେବେ ମୁଁ ଏହାଙ୍କ ପରି ରାଜା ହୁଅନ୍ତି କି ?
ସତେ ଏ ଭାଗ୍ୟରେ କେବେ ତା ଘଟିପାରେ କି ?
ରଥ, ଅଶ୍ୱ, ଗଜ ଦ୍ୱାରା ଦିଗ କମ୍ପୁଥାନ୍ତେ
ସେନା, ସାମନ୍ତ, ଅମାତ୍ୟ, ସମ୍ମାନ ଦିଅନ୍ତେ" ।
ସେହି ଧାର୍ମିକ ବ୍ରାହ୍ମଣ ଏହି ବାସନାରେ
କାଟୁଥାନ୍ତି କାଳ ବସି ଦିବା ଶର୍ବରୀରେ ।
କାଳବଶ ଦ୍ୱିଜବର ହେଲା ଜରାଗ୍ରସ୍ଥ
ମରଣ ସମୟ ଆସି ହୋଇଲା ନିକଟ ।

* ଉପସ୍କର - ଗୃହସ୍ଥର ପ୍ରୟୋଜନୀୟ ଦ୍ରବ୍ୟ ସାମଗ୍ରୀ ।

ତାଙ୍କ ନାରୀ ଅରୁନ୍ଧତୀ ଭୟ ପାଇ ମନ
ଆଚରି ତପସ୍ୟା ମୋତେ କରେ ନିବେଦନ ।
ବୋଇଲା ଗୋ ଦେବୀ ଏହି ବରଦେବା ହେଉ
ଦେହାନ୍ତେ ମୋ ସ୍ୱାମୀ ଘର ଛାଡ଼ିଣ ନଯାଉ ।
ତଥାସ୍ତୁ କହି ତାହାକୁ କଲି ବରଦାନ
ନିଜ ପୁରେ ଗଲି ଚଳି ହୋଇ ଅନ୍ତର୍ଦ୍ଧାନ ।
କାଳବଶେ ସେ ବ୍ରାହ୍ମଣ ପଞ୍ଚତ୍ୱ ଲଭିଲା
ଜୀବାତ୍ମା ତାହାର କିନ୍ତୁ ଗୃହ ନ ଛାଡ଼ିଲା ।
**ସୁଦୃଢ଼ ବାସନା ଯେଣୁ ଦ୍ୱିଜଙ୍କର ଥିଲା**
**ତାଙ୍କ ଜୀବାକାଶ ଗୃହାକାଶରେ ରହିଲା ।**
ସେହି ଗୃହାକାଶ ମଧ୍ୟେ ସେହି ଜୀବାକାଶ
ତ୍ରିଭୁବନ ରାଜା ରୂପେ ଧରେ ରାଜାବେଶ ।
ସ୍ୱପ୍ରଭାବେ ପୃଥିବୀକୁ ଜିଣି ସେ ରାଜନ
ପ୍ରତାପ ଦେଖାଇ ସ୍ୱର୍ଗ କରେ ଆକ୍ରମଣ ।
ଦୟା ଦେଖାଇ ପାତାଳ ପୁରକୁ ପାଳନ୍ତି
ତ୍ରିଲୋକ ବିଜୟୀ ହୋଇ ହେଲେ ଚକ୍ରବର୍ତ୍ତୀ ।
ଆକାଶତୁଲ୍ୟ ଶରୀରେ ସେହି ଦ୍ୱିଜବରେ ।
ଏହିପରି ରାଜସୁଖ ଅନୁଭବ କଲେ
ବିରହ ଅନଳେ ପତ୍ନୀ ଦଗଧ ହୁଅଇ
ସ୍ଥୂଳ ଦେହ ତେଜି ସ୍ୱାମୀ ନିକଟେ ମିଳଇ ।
ଦିନ ପରେ ଦିନ କଟିଯାଏ ଆନନ୍ଦରେ
ପତିପତ୍ନୀଙ୍କର ଭୋଗ କିଏ କଳିପାରେ ।
ଆଠଟି ଦିନ ଆଜକୁ ଗତ ହେଲା ଲୀଳେ
ପ୍ରାଣ ତେଜି ଦୁଇ ପ୍ରାଣୀ ସ୍ୱର୍ଗେ ଚଳିଗଲେ ।
ସେହି ଗିରି ଗ୍ରାମେ ତାଙ୍କ ସ୍ଥାବରା ସ୍ଥାବର
ସକଳ ସମ୍ପତ୍ତି ମାନ ଅଛି ଅବିକଳ ।
ଧନ, ସମ୍ପତ୍ତି ସକଳ ସେହିପରି ଅଛି
ଜୀବାତ୍ମା ତାଙ୍କର ଗୃହ ମଣ୍ଡପେ ରହିଛି ।
ଗୃହସ୍ଥ, କାମିନୀ ଦୁହେଁ ହୋଇ ରାଜା, ରାଣୀ ।
ସୁଖେ ରହିଛନ୍ତି ଯଥା ଇନ୍ଦ୍ର ଓ ଇନ୍ଦ୍ରାଣୀ ।
ସେହି ଦ୍ୱିଜବର ଅଟେ ପଦ୍ମମହାରାଜା
ସେହି ଅରୁନ୍ଧତୀ ତୁମେ ତାଙ୍କର ଭାରିଯା ।
ହର, ଗୌରୀ, ସମ ତୁମେ ଥିଲ ସ୍ୱାମୀ ସ୍ତୀରୀ
ଚକୁଆ, ଚକୋଇ ପରି ଦିନ ଯାଏ ସରି ।
କିପରି ଏ ସୃଷ୍ଟି, ଭ୍ରମସଂକୁଳ ଅଟଇ,
ତାହା ଏବେ ତୁମ ଆଗେ ଭାବେ କହିଲଇଁ ।

ଉଭୟ ସୃଷ୍ଟି ଗୋ ଲୀଳେ ସପନ ସଦୃଶ
ସକଳ ଜୀବ, ଜଗତ କଳ୍ପନାର ଦୃଶ୍ୟ ।
ସକଳ ଜୀବ ଜଗତ ଚିଦାକାଶ ପଟେ
ପ୍ରତିବିମ୍ବିତ, ମାତ୍ରକ ଅସତ୍ୟ ସେ ଅଟେ ।
ସେ ସକଳ ସୃଷ୍ଟି ଲୀଳେ ଖାଲି ଶୂନ୍ୟମୟ
ଅନ୍ୟ କିଛି ନୁହେଁ ବୁଝ ଚିତ୍ତ କରି ଥୟ ।
ଇହଲୋକ ପରଲୋକ ସର୍ବ ଭ୍ରମମୟ
ଅଧିକ କି କହିବି ତୋ' ନୋହିଲେ ପ୍ରତ୍ୟୟ ।
ବାଗଦେବୀ ବଚନ ଶୁଣି କହେ ଲୀଳାରାଣୀ
କାନ ନଶୁଣିବା କଥା କହୁଛ ଜନନୀ ।
କେବେ କି ସମ୍ଭବି ପାରେ ଏମନ୍ତ ଘଟଣା
ଥୟକରି କହି ମାତ, ଖଣ୍ଡ ମୋ ଶୋଚନା ।
ଏ କ୍ଷୁଦ୍ର କୁଟୀରେ କାହିଁ ଅଛି ସେ ଦ୍ୱିଜାତ୍ମା
କାହିଁ ଅଛେ ଆମ୍ଭେ ଦୁହେଁ ମେଣ୍ଟାଅ ମୋ ତୃଷ୍ଣା ।
ମୋ ସ୍ୱାମୀଙ୍କୁ ଯେଉଁଠାରେ ଦେଖିଲଇଁ ମୁହିଁ
ଲୋକାନ୍ତରେ, ସେହି ପୃଥ୍ୱୀ, ଗିରି ବିରାଜଇ ।
ବନ, ଉପବନ, ନଦୀ, ସାଗର, ଯାବତ
ସେ ଦ୍ୱିଜ କ୍ଷୁଦ୍ର କୁଟୀରେ ଅଛନ୍ତି କେମନ୍ତ ?
ସୋରିଷ ମଧ୍ୟେ କି ମତ୍ତ ହସ୍ତୀ ପଶିପାରେ ?
ବୁଝାଇ ଦେବା ଗୋ ମାତ କୃପାବହି ମୋରେ ।
କହନ୍ତି ବାଗ୍‌ଦେବୀ ଏବେ ଶୁଣ ଆଗୋ ରାଣୀ
ସେ ଦ୍ୱିଜାତ୍ମା ନଭ ଗୃହେ କରନ୍ତି ରହଣି ।
ଆକାଶ ସ୍ୱରୂପ ଧରି ଆକାଶ ରାଜ୍ୟକୁ
ଦର୍ଶନ କରନ୍ତେ ଫୁଲିଉଠେ ତାଙ୍କ ବୁକୁ ।
ସପନ ସମୟେ ଯଥା ଜାଗ୍ରତାବସ୍ଥାର
କିଛି ହିଁ ସ୍ମୃତି ନ ଥାଏ ଆଗୋ ନାରୀବର ।
ମୃତ୍ୟୁପରେ ଲୁପ୍ତ ପୂର୍ବ ଜନମ ସଂସ୍କାର
ଏବେ ବୁଝ ବିଭୂଲୀଳା କି ବିସ୍ମୟକର ।
ପ୍ରାକ୍ତନ ସ୍ମୃତି ତୁମ୍ଭର ଯେଣୁଟି ବିଲୁପ୍ତ
ତେଣୁ ତୁମ ମନେ ଅନ୍ୟ ସ୍ମୃତି ଜାଗରିତ ।
ତେଣୁ କରି ତୁମେ ଦିନେ ବିପ୍ର ପତ୍ନୀ ଥିଲ
ଏ କଥା ତୁମ ମନରୁ ଯାଇଛି ପାଶୋର ।
ସପନ ସମୟେ ଏହି ଶରୀର ମଧ୍ୟରେ
ସିନ୍ଧୁ, ଗିରି, ନଦ, ନଦୀ, ଆସନ୍ତି ଗୋଚରେ ।
କଳ୍ପନା ବଳରେ ଯଥା ତ୍ରିଭୁବନ ସୃଷ୍ଟି
ମରୁଭୂମିରେ ଯେପରି ନଦନଦୀ ବ୍ୟଷ୍ଟି

ସେହି ଗୃହାକାଶ ମଧ୍ୟେ ଦ୍ୱିଜର ସାମ୍ରାଜ୍ୟ
ରହିଛି ଗୋ ନାରୀବର ନୁହ ତୁ ଆଶ୍ଚର୍ଯ୍ୟ ।
କ୍ଷୁଦ୍ର ଦର୍ପଣେ ଯେସନ ବୃହତ ପଦାର୍ଥ
ସୂକ୍ଷ୍ମ ଅନ୍ତରେ ଯେସନ ବିରାଟ ଜଗତ ।
ଆକାଶ କୁସୁମ ପରି ମିଥ୍ୟା ସେ ଦର୍ଶନ
ତଥା ବିପ୍ର ଗୃହାକାଶେ ଭବ ଦରଶନ ।
ସାମ୍ରାଜ୍ୟ, ସମ୍ଭୋଗ ଆଦି ଯାବତ ପଦାର୍ଥ
ସତ୍ୟ ଚିଦାକାଶର ଏ ଛାୟାପରି ମାତ୍ର ।
ନିର୍ମଳ ଆକାଶ ରୂପୀ ବ୍ରହ୍ମ ପରକାଶେ
ତନ୍ମଧ୍ୟେ ଅସତ୍ୟ ସୃଷ୍ଟି ସତ୍ୟ ପରି ଦିଶେ
ସୁନିର୍ମଳ ବ୍ୟୋମରୂପୀ ପରମାତ୍ମାଙ୍କର
ସକଳ ଅସତ୍ୟ ସୃଷ୍ଟି କ୍ରୋଡ଼ରେ ତାହାର ।
ସତ୍ୟବ୍ରତ ପ୍ରତିଭାତ ହୁଏ ନାରୀବର
ଏ ନିଗୂଢ଼ ତତ୍ତ୍ୱ ବୁଝିବାକୁ କଷ୍ଟକର ।
ଏ ଜଗତର ସତ୍ୟତା ଯାହା କି ପ୍ରତୀତ
ଜଗତର ନୁହେଁ, ତାହା ଚିଦାତ୍ମା ବ୍ୟତୀତ ।
ପଞ୍ଚକୋଷ ଅନ୍ତର୍ଗତ ଚିଦାତ୍ମା ସତ୍ୟତା
ତଦାରୋପିତ ଜଗତେ ବିମ୍ୱିତ ଲୋ ମାତା ।
ଏ ଭବରେ ସତ୍ୟ ବୋଲି କିଛିମାତ୍ର ନାହିଁ ।
ଚିନ୍ମୟ ବ୍ରହ୍ମ ହିଁ ସତ୍ୟ ବୋଲିଣ ବୋଲାଇ ।
ତୁମ ଏହି ଘର ମଧ୍ୟେ ଯେମାନେ ଅଛନ୍ତି
ତୁମ୍ଭେ, ଆମ୍ଭେ ଆଦି ଯେତେ ଆସବାବ ଛନ୍ତି ।
ଏପରିକି ତୁମ ଏହି ସୁବିଶାଳ ଗୃହ
ଚିଦାକାଶ ବ୍ୟତିରେକେ ଅନ୍ୟ କିଛି ନୁହଁ ।
ସେହି ବ୍ରାହ୍ମଣ ଗୃହରେ ସେ ଦ୍ୱିଜ ଜୀବାତ୍ମା
ଚିଦାକାଶେ ଅବସ୍ଥାନ କରିଛି ଗୋ ସୁତା ।
ପଦ୍ମ ପାଖୁଡ଼ା ଉପରେ କୌଣସି ଅଂଶରେ
ଭ୍ରମର ବସିଲେ ଯେତେ ସ୍ଥାନ ଧରିପାରେ ।
ଏ ଗୃହ ଭିତରେ ସେହି ପରିମିତ ସ୍ଥାନ
ସାଗରାଦି ସହ ପୃଥ୍ୱୀ କରେ ଅବସ୍ଥାନ ।
ମନ ମଧ୍ୟେ ଲୀନ ଯଦି ଲକ୍ଷ ଲକ୍ଷ ଭବ
ସୃଷ୍ଟି ହୋଇପାରି ଚଳୁଥିବାର ସମ୍ଭବ ।
ତେବେ ଏ ବ୍ରାହ୍ମଣ ଗୃହେ ନଗରାଦି ସ୍ଥାନ
ସମ୍ଭବ ନୋହିବ କିମ୍ୱା ଗୋ ନାରୀ ରତନ ?
ଏ ଭବ ସମ୍ଭବ ଯଦି ମନ ମଧ୍ୟେ ରାଣୀ
ବୃଥା ସନ୍ଦେହ ତୋ ମନେ ଉପୁଜେ କି ଘେନି ?

ସକଳ ସନ୍ଦେହ ମନୁ ନିବାରିତ କର
ତେବେ ଯାଇ ଜୀବନ୍ମୁକ୍ତ ହେବ ନାରୀବର ।
ଲୀଳା କହେ ହେ ଈଶ୍ୱରୀ ଆଠଦିନ ହେଲା
ସେହି ଦ୍ୱିଜ ଇହଧାମ ତ୍ୟାଗ କରିଗଲା ।
କିନ୍ତୁ ଜାଣ କାଳ କାଳ ଧରି ଏହି ସ୍ଥାନେ
ଜନ୍ମି, ରାଜଭୋଗ କରୁ ଅଛୁ ଆମ୍ଭେମାନେ ।
ତେଣୁ କହ କି ପ୍ରକାରେ ଏ କଥା ସମ୍ଭବ ?
ଯଥାଯଥ ସମାଧାନ କରି ବୁଝାଇବ ।
'ଦେବୀ କହିଛନ୍ତି ବତ୍ସେ ଦେଶର ଯେପରି
ହ୍ରସତ୍ୱ, ଦୀର୍ଘତ୍ୱ ନାହିଁ ସଦା ଏକ ପରି
ତଥା କ୍ଷୟ, ବୃଦ୍ଧି କିଛି କାଳର ଯେ ନାହିଁ
ଏ ନିରାଟ ସତ୍ୟ ବୁଝି ରଖ ମହାଦେଈ ।
ଯଥା ଜଗତ ଜ୍ଞାନର ପ୍ରତିଭାସ ମାତ୍ର
ତଥା, କ୍ଷଣ, ମୁହୂର୍ତ୍ତରୁ କଳପ ପର୍ଯ୍ୟନ୍ତ,
ଏ ସବୁ ଚିନ୍ମୟ ବ୍ରହ୍ମ ପ୍ରତିଭାସ ଜାଣ
ତେଣୁ ବ୍ରହ୍ମ ବ୍ୟତିରେକେ କିଛି ନାହିଁ ଅନ୍ୟ ।
ତ୍ରିଭୁବନ ଅଧିବାସୀ ତୁମ୍ଭେ, ଆମ୍ଭେ ଯେତେ
ଚିନ୍ମୟ ବ୍ରହ୍ମ ଆଭାସ ଅଟୁଟି ସମସ୍ତେ ।
ଯେ ରୂପେ ଏସବୁ ଘଟେ ତାହା ମୁଁ କହୁଛି
ମନ କର୍ଣ୍ଣ ଦେଇ ତାହା ଶୁଣ ଆଗୋ ବତ୍ସି ।
କ୍ଷଣପାଇଁ ମିଥ୍ୟା ମୃତ୍ୟୁ ଅନୁଭବ କରି
ପୁରାତନ ସ୍ମୃତି ସବୁ ମନରୁ ପାଶୋରି,
ସଂସାର ଭାବକୁ ଜୀବ ଅନୁଭବ କରେ
ଯେଣୁ ବଇଷବୀ ମାୟା ଆସି ତାକୁ ଘାରେ ।
"ଏ ଦେହ ଆଧାର ମୋର ମୁଁ ଏଠି ଆଧେୟ
ଉକର ଅଟନ୍ତି ଅଙ୍ଗ ପ୍ରତିଅଙ୍ଗ ଚୟ ।
ବାଲ୍ୟାଦି ଅବସ୍ଥା ମୋର ହୋଇଅଛି ଗତ
ଯୁବକ ଅବସ୍ଥା ଆସି ଏବେ ଉପଗତ ।
ଏହି ମୋର ମାତା, ପିତା ଭାଇ ଓ ଭଗିନୀ
ଏହିମାନେ ମୋର ରମଣୀୟ ବନ୍ଧୁଶ୍ରେଣୀ ।
ଏହି ରମଣୀୟ ଗୃହ, ଶଯ୍ୟା କି ସୁନ୍ଦର ?
କିନ୍ତୁ ଏ ଯୌବନ ମୋର ନ ହୋଇବ ଚିର ।
ଜରାଜୀର୍ଣ୍ଣାବସ୍ଥା ଆସି ଗ୍ରାସିବ ମୁକର
ବିକରାଳ କାଳ ଆସି ଝିଙ୍କିଦେବ ବାଳ ।
ଚିତ୍ତାକାଶ ପ୍ରଭାବରୁ ଏ ବିଭ୍ରମ ଆସେ
ଆପେ ଆପେ ଜୀବ ତେଣୁ ଏହିପରି ଭାସେ ।

ସ୍ୱପ୍ନକାଳେ ଯଥା ଦୃଶ୍ୟାଦିର ଦରଶନ
ପରଲୋକେ ମଧ୍ୟ ତାହା ନୁହେଁ ବ୍ୟତିକ୍ରମ ।
ତେଣୁ ମୁଁ କହୁଛି ଦ୍ରଷ୍ଟା, ଦର୍ଶନ ଓ ଦୃଶ୍ୟ
ଏ ସକଳ ଅଟନ୍ତି ଏ 'ଚିତ୍' ହିଁ ଅବଶ୍ୟ ।
ନିର୍ମଳ ଗଗନାକୃତି ଏ 'ଚିତ୍' ବ୍ୟତୀତ
ଅନ୍ୟ କିଛି ନାହିଁ ଲୀଳେ କହିଲି ବସ୍ତୁତଃ ।
ସେ ଅବାଧ ଚିତ୍ ଶକ୍ତି ଯଥା ସ୍ୱପ୍ନକାଳେ
ସମୁଦିତ ହୋଇ ମନ ଆଲୋଡ଼ନ କରେ ।
ପରଲୋକେ ମଧ୍ୟ ସେହି ରୂପେ ସେ ଉଦିତା-
ହୋଇଣ ବିରାଜୁଥାଏ ଜାଣ ରାଜସୁତା ।
ଜଳ, ତରଙ୍ଗ ମଧ୍ୟରେ ଯଥା ନାହିଁ ଭେଦ
ଇହ, ପର, ସ୍ୱପ୍ନ ଲୋକେ ନ ଥାଏ ପ୍ରଭେଦ ।
ନିରାଟ ଭ୍ରମରୁ ଭେଦ ଜ୍ଞାନ ଜନମଇ
ଜଗତ ମଧ୍ୟ ସେ ଭ୍ରମ ମଧ୍ୟୁ ଜାତ ହୋଇ ।
ଯେଣୁ ଭ୍ରାନ୍ତିଭାବ ଏହି ଜଗତର ଖେଳା
ତେଣୁ ଅସ୍ତିତ୍ୱହୀନ ସେ, ବୁଝ ଏବେ ଲୀଳା ।
ଜଗତ ନ ଥିବା ହେତୁ ଅଟେ ସେ ଅଜାତ
ଅଜାତ ହେତୁ ଅବିନଶ୍ୱର ସେ ଗୋ ମାତ ।
ଜଗତ ବୋଲି ଯା କିଛି ହୁଏ ପ୍ରତିଭାତ
ଚିତ୍ ଛଡ଼ା ଅନ୍ୟକିଛି ନୁହେଁ ତା' ଗୋ ମାତ ।
ବ୍ୟୋମରୂପୀ ଅଟେ ଚିତ୍ ସକଳାବସ୍ଥାରେ
ତେଣୁ ବ୍ୟୋମ ମନ ଏକ ତାହା ସହିତରେ ।
**ଜୀବ ଛାଡ଼ିବାର ଅଳ୍ପ ମୁହୂର୍ତ୍ତ ପୂର୍ବରେ**
**ପୂର୍ବଜନ୍ମଛାୟାମାନ ନାଚେ ତା' ନେତ୍ରରେ ।**
**ଦିକ୍, କାଳ, ନଭ, କର୍ମ, କଳ୍ପାନ୍ତ କାଳର**
**ସକଳ ଦ୍ରବ୍ୟ ନାଚନ୍ତି ତା ନେତ୍ର ପଥର ।**
କଳ୍ପନା ନଗର ପରି ଅଟେ ଏହି ଭ୍ରମ
ଭିତ୍ତିହୀନ, କିନ୍ତୁ ଚିଦାକାଶେ ତାର ସ୍ଥାନ ।
ଅଛି, ହେଉଛି, ଯାଇଛି ଏହିସବୁ ଯେତେ
ବାସନା ବିସ୍ତାର ମାତ୍ର ଅଟନ୍ତି ସମସ୍ତେ ।
ଦୂର, ନିକଟ, କଳପ, ଯୁଗ, ବର୍ଷ, ମାସ
ଏସବୁ ଅଟନ୍ତି ଭ୍ରମ ଜ୍ଞାନର ସଦୃଶ ।
ଏକମାତ୍ର ଚିଦାକାଶ ସ୍ୱୀୟ ସ୍ୱଭାବରେ
ବିରାଜିତ ହେଉଅଛି ଜଗତ ଆକାରେ ।
ତେଣୁ ବାରମ୍ବାର କରି କହୁଅଛି ମୁହିଁ
ଏ ଦୃଶ୍ୟ ପରମାର୍ଥିକ କେବେହେଁ ନୁହଇ ।

ଏ ଜୀବ ମୃତ୍ୟୁ ମୂର୍ଚ୍ଛାର ନିମିଷ ମଧ୍ୟରେ
ଅବିଳମ୍ବେ ତ୍ରିଭୁବନ ଯାକ ଦେଖିପାରେ ।
**ମୃତ୍ୟୁ ପୂର୍ବେ ଜୀବ ଯାହା ଯାହା ଦେଖିଥାଇ**
**ମୃତ୍ୟୁ ପରେ ଅବିକଳ ସେସବୁ ଦେଖଇ ।**
ସେହି କାଳ, ସୃଷ୍ଟି ପୁଣି ସେହି ଜଗତ୍ କ୍ରମ
ଦେଖୁ ଦେଖୁ ପୁଣି ତାକୁ ଘାରେ ଆସି ଭ୍ରମ ।
ସେହି କାଳ, ସୃଷ୍ଟି ପୁଣି, ସେହି ଜଗତ୍ କ୍ରମ
ଦେଖୁ ଦେଖୁ ପୁଣି ତାକୁ ଘାରେ ଆସି ଭ୍ରମ ।
ସେହି ଚିତ୍ ଜୀବଭାବେ "ମୁଁ ଜନ୍ମ ପାଇଛି
ଏହି ମୋର ମାତା, ପିତା, ମୁଁ ଶିଶୁ ହୋଇଛି" ।
ଏହି ଅନୁଭବମାନ ସବୁ ସେ କରଇ
ପୂର୍ବ ସ୍ମୃତି ବଳେ ଆସି ସକଳ ଭେଟଇ ।
ହରିଶ୍ଚନ୍ଦ୍ର ମହାରାଜା ଯଥା ବୋଧକଲେ
ଗୋଟିଏ ରାତ୍ରିକି ବାରବର୍ଷ ସେ ମଣିଲେ ।
କାନ୍ତା ବିରହିତ ଲୋକ ଗୋଟିଏ ଦିନକୁ
ବର୍ଷେ ମଣି ଅଧିର ସେ ପତ୍ନୀ ଦେଖିବାକୁ ।
ନିମିଷକୁ କଳ୍ପ ମଣେ ତାଦୃଶ ଏ ଜୀବ
କି ଆଶ୍ଚର୍ଯ୍ୟ ଆଠଦିନ, ବହୁଯୁଗ ହେବ ।
ଭୋକିଲା ଲୋକ ଯେପରି ଭୋଜନ ଭ୍ରାନ୍ତିରେ
ଦଶ ଦିଗ ଅନ୍ଧକାର ଦିଶେ ତା' ନେତ୍ରରେ ।
ଭ୍ରାନ୍ତିବଶ ଜୀବ କହେ "ମୁ ହିଁ ଜନମିଲି
ଏବେ ମଲି, ଏହି ମୋର ପିତା, ମାତା ବୋଲି ।"
ଏହିପରି ବୁଦ୍ଧିଜାତ ହୁଅଇ ତାହାର
କହି କହି ବୁଲୁଥାଏ ହୋଇ କଲବଲ ।
ଏ ସଂସାର ବିଧାତାର କଳ୍ପନାରେ ଥିଲା
ସେ କଳ୍ପନା ସ୍ଥୁଳ ହୋଇ ଜଗତ ଜନ୍ମିଲା ।
ତେଣୁ ସଂସାରର ଆତ୍ୟନ୍ତିକ ବିସ୍ମରଣ
ମୁକ୍ତି ପୁରସ୍କାର ତାକୁ ଦ୍ୟନ୍ତି ବିଜ୍ଞଗଣ ।
ମରୀଚିକାର ତୀକ୍ଷ୍ଣତା ସ୍ତମ୍ଭସ୍ଥ ପିତୁଳି-
ପରି, ଆତ୍ମାରେ ଜଗତ ସ୍ଥିତ ରାଜବାଳୀ ।
ସକଳ ପଦାର୍ଥ ଲୀଳେ ବ୍ରହ୍ମର ଆଶ୍ରିତ
ବ୍ରହ୍ମଛଡ଼ା ଅନ୍ୟ କିଛି ନାହିଁ ଏ ଜଗତ ।
**ଇତି ଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ମଣ୍ଡପ ଉପାଖ୍ୟାନେ ପରମାର୍ଥ ପ୍ରତିପାଦନେ**
**ନାମ ଚତୁର୍ଦ୍ଦଶ ସର୍ଗଃ ।**

❑

# ପଞ୍ଚଦଶ ସର୍ଗଃ
## ବିଶ୍ରାନ୍ତ ନିରୂପଣ

ଦେବୀ ବୋଲନ୍ତି ଗୋ ଲୀଳେ ଶୁଣ ମୋ ବଚନ
ଜନମ ମରଣ ଲାଗି ଅଛି ଅନୁକ୍ଷଣ ।
ମୃତ୍ୟୁ ମୂର୍ଚ୍ଛା ପରେ ଜୀବ ଅତିଶୀଘ୍ର ଯାଇ
ଜନମ ଲଭିଣ ସଂସାରରେ ବିଚରଇ ।
ଦେଶ, କାଳ, କ୍ରିୟା, ଦ୍ରବ୍ୟ ନିଜ ପରିବାର
ନାନା ଭାବେ ଏ ଜଗତ ନାଚେ ତା ନେତ୍ରର ।
କିନ୍ତୁ ବାସ୍ତବରେ ଏହା ସବୁ ଶୂନ୍ୟମୟ
ସ୍ମୃତି ବି ଅସତ୍ୟ ବୁଝ ମନ କରି ଥୟ ।
ଅନୁଭବରୁ ଜନମେ ଏକ ରୂପ ସ୍ମୃତି
ଅନୁଭବ ବିନା ହୁଏ ଅନ୍ୟର ଉତ୍ପତ୍ତି ।
କିନ୍ତୁ ଏ ଉଭୟେ ମିଥ୍ୟା ଅଟନ୍ତି ହିଁ ଜାଣ
ମିଥ୍ୟା ବିନା ଅନ୍ୟ କିଛି ନାହିଁ ତା ପ୍ରମାଣ ।
ଯଥା ସ୍ୱପ୍ନେ ନିଜ ଦେହ ଦେଖୁଥାଏ ଜୀବ
ପିଠିପଟ ଶିରଭାଗ ଆଦି କରି ସର୍ବ ।
ସେ ଅନୁଭବ ଅସତ ବୋଲିଣ ଜାଣିବ
ଯେଣୁ ତା ନୁହେଁ ସ୍ୱମୃତ୍ୟୁ ସ୍ମୃତିରୁ ଉଦ୍ଭବ ।
ଅସତ ଅଟଇ ସେହି ମରଣର ସ୍ମୃତି
ଅସତରୁ ସତ ଜାତ ସମ୍ଭବ କେମିତି ?
ସପନରେ ଯେଉଁ ବସ୍ତୁ ଦେଖିଥାଏ ଜୀବ
ଜାଗ୍ରତେ ତା'ର ସ୍ମରଣ ଅସତ ଜାଣିବ ।
ତେଣୁ କରି ଏ ଜଗତ ଅକାରଣ ରୂପ
ଆଉ ଯା ଅଛି ତା ସେହି ବ୍ରହ୍ମଙ୍କ ସ୍ୱରୂପ ।
ବିଧାତା ସୃଷ୍ଟିରେ ଲୀଳେ କିଛି ନାହିଁ ସତ୍ୟ
ଯାହା ଦେଖୁଅଛ ସବୁ ସଙ୍କଳପ ମାତ୍ର ।
ଏହା ଶୁଣି ଲୀଳାଦେବୀ ବୋଲନ୍ତି ବଚନ
ଯଦି ଏ ସର୍ଜ୍ଜନା ସବୁ ଅଟେ ଭ୍ରମପୂର୍ଣ୍ଣ ।
ଏ ସୃଷ୍ଟି ସଂସ୍କାର ପ୍ରଜାପତି ସୃଷ୍ଟି ତେବେ
ମୋ ସନ୍ଦେହମାନ ମାତ ଖଣ୍ଡିବାକ ଏବେ ।
ସ୍ୱର୍ବସୃଷ୍ଟିର କାରଣ ପୂରୁବ ସଂସ୍କାର
ଆପଣଙ୍କ ଉପଦେଶୁ ଏହି ଜ୍ଞାନ ମୋର ।
ଆମ୍ଭର ଜନ୍ମ ସଂସ୍କାର କେଉଁଠୁ ଆସିଲା ?
କି କାରଣ ଦ୍ୱିଜକୂଳେ ଆମ୍ଭଜନ୍ମ ହେଲା ?
ଏ ସୃଷ୍ଟି ମୁଁ କେବେ ଅନୁଭବ କରି ନାହିଁ
ଏ ସୃଷ୍ଟି କେବେ ହେଁ ମାତ୍ର ନେତ୍ରେ ଦେଖି ନାହିଁ ।
ବାସନା ଅଟଇ ଲୀଳେ ସୃଷ୍ଟିର କାରଣ
କିନ୍ତୁ ସଂସ୍କାର-ରୂପିଣୀ ନୁହେଁ ସମୀଚୀନ ।
ଅନ୍ୟାନ୍ୟ କାରଣମାନ ଅଛଇ ତହିଁର
ମୁଁ ଯାହା କହୁଛି ହେଜମନ କରି ସ୍ଥିର ।
ମାୟା ନାମକ ବାସନା ଜାଣ ଏ ସୃଷ୍ଟିର
ଅନ୍ୟ ଏକ କାରଣଟି ଆଗୋ ନାରୀବର ।
ମାୟାରେ ନିହିତ ଯେଉଁ ଦେଶ କାଳ ପାତ୍ର
ମାୟାଶକ୍ତି ବଳେ ତାହା ହୁଏ ପ୍ରକାଶିତ ।
ତେଣୁ ଚୈତନ୍ୟ ନବୀନ ବ୍ରହ୍ମ ଆକାରରେ
ଆବିର୍ଭୂତ ହୁଏ ତାହା ସର୍ବ ସମୟରେ ।
କାକତାଳୀୟ ନ୍ୟାୟରେ ଏହିପରି ଲୀଳେ
ଆଦି ବ୍ରହ୍ମଠାରୁ ବ୍ରହ୍ମା ଜନ୍ମି ସୃଷ୍ଟି କରେ !
ପ୍ରତିଭାମୟ ଅଟନ୍ତି ସେହି ବ୍ରହ୍ମ ନାଶ
ଶୁଦ୍ଧ ଚୈତନ୍ୟ, ଆବର ସର୍ଜ୍ଜନେ ନିପୁଣ ।
ସୃଷ୍ଟିର ପ୍ରମାଦ ଯେଣୁ ପଡ଼େ ତା' ନେତ୍ରରେ
ସେ ପ୍ରମାଦ ଦୂରୀଭୂତ କରେ କୌଶଳରେ ।
ଏମନ୍ତ ପ୍ରତିଭା ଉଦେ ହୁଏ ତା ମନରେ
"ପ୍ରଜାପତି ଥିଲି ମୁହିଁ ଦିନେ ଏ ସୃଷ୍ଟିରେ" ।
ଚିଦାକାଶେ ସର୍ବ ସୃଷ୍ଟି ହୁଅଇ ଉଦିତ
ଜୀବନେତ୍ରେ ତାହା ଦିଶେ ଅତି ଚମତ୍କୃତ ।
କିନ୍ତୁ ବାସ୍ତବରେ ସୃଷ୍ଟି ବୋଲି କରି କିଛି
ଉତ୍ପତ୍ତି ନୁହଇ ଜାଣି ରଖ ରାଜବସ୍ତି ।
ଚିଦାକାଶେ ଏହି ଭାବେ ଯାବତ ସର୍ଜ୍ଜନା
ଉଦିତ ଓ ଦୃଷ୍ଟ ହୁଏ ଲୀଳା ମହାମନା ।
ସତ୍ୟବୋଲି କିଛି ମାତ୍ର ନାହିଁ ଏ ସୃଷ୍ଟିରେ ।
ଯାହା କିଛି ଦୃଶ୍ୟ, ମିଥ୍ୟାପୂର୍ଣ୍ଣ ସେ ସବୁରେ ।
ବ୍ରହ୍ମାର ଏହି ସ୍ମୃତିର କାରଣ ଯେ ଏହି
ପରମ ବ୍ରହ୍ମ ଅଟନ୍ତି ଆଗୋ ମହାଦେଇ ।
କାର୍ଯ୍ୟ, କାରଣର ସାରୂପ୍ୟକୁ ସେ ଧରିଣ
ଏକମାତ୍ର ଚିଦାକାଶେ ଛନ୍ତି ବିଦ୍ୟମାନ ।
**ପୂର୍ବାନୁଭବ ଜନିତ ସଂସ୍କାର ପ୍ରଭାବେ**
**ପୂର୍ବ ବର୍ଣ୍ଣିତ ପଦାର୍ଥମାନ ଦେଖେ ଭବେ ।**

**ଆଉ ମଧ୍ୟ ମୂଳମାୟା ପ୍ରଭାବେଶ ଜାଣ**
**ଅଦୃଷ୍ଟପୂର୍ବ ବସ୍ତୁଏ ଦ୍ୟନ୍ତି ଦରଶନ ।**
ଯେ ବ୍ରାହ୍ମଣ-ବ୍ରାହ୍ମଣୀଙ୍କ ରୂପ ସୃଷ୍ଟି ତୁମ୍ଭେ
ଦେଖିଛ, ତା' ସଂସ୍କାରକ ଲୀଳେ ! ନୁହେଁକେଭେଁ
ତାହା ତୁମ ଆତ୍ମାଶ୍ରିତ ଅଜ୍ଞାନ ପ୍ରଭାବ
ସେ ଅଜ୍ଞାନ ଅଟେ ମୂଳ ଅଜ୍ଞାନ ଜାଣିବ ।
ସେ ମୂଳରେ ଆତ୍ମଭ୍ରାନ୍ତି ଯଦି ରହିଥାଏ ।
ଯାହା କିଛି ଅନିର୍ବାଚ୍ୟ ବସ୍ତୁ ଦେଖାଯାଏ
ଯା' କିଛି ଅନନୁଭୂତ ଆଖିକୁ ଦିଶଇ
ଯା' କିଛି ଅଦୃଷ୍ଟ ପୂର୍ବ ନୟନେ ନାଚଇ,
ସେ ସବୁର ଇୟତ୍ତା ତ ନାହିଁ ଆଗୋଲୀଳେ
ଅକଥ୍ୟ ବସ୍ତୁକୁ ରୂପ କିଏ ଦେଇପାରେ ?
ଶୁଦ୍ଧ ବ୍ରହ୍ମ ନ ଜାଣଇ କାର୍ଯ୍ୟ, ଓ କାରଣ
ମାୟାନ୍ୱିତ ବ୍ରହ୍ମଜାଣେ କିସ ଯେ ସେମାନ ।
ବିଶୁଦ୍ଧ ବ୍ରହ୍ମେ ଅଭାବ ସକଳ କଳ୍ପନା
ମାୟା ବ୍ରହ୍ମରେ ଜଡ଼ିତ ଏ ସେ ସବୁ ଭାବନା ।
ଅବିଚାରୀ ମୟୀ ମାୟା ହେଲେ ତିରୋହିତ
ସହକାରୀ, କାର୍ଯ୍ୟ, ହେତୁ, ହୁଅନ୍ତି ଏକତ୍ର ।
ତୁମର ସ୍ୱରୂପ ଅଟେ ମହା ଚଇତନ୍ୟ,
ଏ ତତ୍ତ୍ୱକୁ ଦୃଢ଼ ରୂପେ କରିବ ଧାରଣ ।
ଯେ ସ୍ମରଣକାରୀ ଅନ୍ତଃକରଣ ତୋ ତହିଁ
ତାହା ହିଁ ସୃଷ୍ଟିର ମୁଖ୍ୟ କାରଣ ଅଟଇ ।
କିନ୍ତୁ ତା' କେବଳ ନାମମାତ୍ରେ ରହିଛଇ
ମାତ୍ର, ଜାଣିରଖ ବସ୍ତୁ-ଗତି ତା'ର ନାହିଁ ।
ଏ ସକଳର ଅଭେଦ ଜ୍ଞାନହିଁ ମୁକତି
ମୁକତି ବିନା ଜୀବର ନାହିଁ ଅନ୍ୟଗତି ।
ପୂର୍ବ ସ୍ମୃତି ଯେ ଚିନ୍ମୟ ଏହା ତୁମ୍ଭେ ଜାଣ
କାର୍ଯ୍ୟକାରଣ ତହିଁରେ ଯେଣୁ ବର୍ତ୍ତମାନ ।
ତେଣୁ ମୁଁ କହୁଛି ଦୃଶ୍ୟ ଜଗତ ଇତ୍ୟାଦି
ସୃଷ୍ଟି ନହୁଅନ୍ତି, ଚିତ୍ତେ ରଖ ଗୋ ସମ୍ୱାଦି ।
ତୁମ୍ଭର ସ୍ୱରୂପ ଅଟେ ମହା ଚଇତନ୍ୟ,
ସେ ଚୈତନ୍ୟକୁ ବୁଝିଲେ ଫିଟିବ ବନ୍ଧନ ।
ତେଣୁ କହିଛି, କହୁଛି ଏହି ଜଗତର
ଉତ୍ପତ୍ତି ବୋଲି କିଛିହିଁ ନାହିଁ ନାରୀବର ।
ଲୀଳା କହନ୍ତି ଗୋ ମାତ ବାଣୀ ମହାମାୟୀ
ଆପଣଙ୍କଠାରୁ ଦିବ୍ୟ ଚକ୍ଷୁ ଲଭିଲଇଁ ।
ତହୁଁ ମୁଁ ପରମଜ୍ଞାନ କରିଅଛି ଲାଭ
ତୁମ୍ଭ ଆଶୀର୍ବାଦ ବିନା ନଥିଲା ସମ୍ଭବ ।
ଅତ୍ୟନ୍ତ କୌତୁକ ଜନ୍ମିଅଛି ମୋର ମନେ
ସଫଳ କରିବା ତାହା କୃପାଜଳ ଦାନେ ।
ଯେ ସ୍ଥାନେ ବିପ୍ର ଦମ୍ପତି କରୁଥିଲେ ବାସ,
ସେ ସ୍ଥାନ ଦେଖିବା ପାଇଁ ମୋର ଅଭିଳାଷ ।
ସେ ଗିରି ଗ୍ରାମସ୍ଥ ଗୃହେ ଘେନି ଚଳ ମୋତେ
ଦିବ୍ୟ ଦୁର୍ଲ୍ଲଭ ଦର୍ଶନ ପାଇବି ଯେମନ୍ତେ ।
ପ୍ରଥମେ ଗୋ ଲୀଳେ ତୁମେ ସମାଧି ବଳରେ
ସ୍ଥୂଳ ଦେହ ତେଜି ରହ ସୂକ୍ଷ୍ମ ଶରୀରରେ ।
ଅଚେତ୍ୟ ଚିତ୍ ରୂପିଣୀ ଯେ ଚିନ୍ମୟ ଦୃଷ୍ଟି
ଆଶ୍ରାକରି ତାକୁ, ଲାଭକର ଦିବ୍ୟ ଦୃଷ୍ଟି ।
ଚିଦାକାଶେ ନଭମୟୀ ସୃଷ୍ଟିକୁ ଦେଖିବ
ସ୍ଥୂଳଦେହେ ତାର ଦରଶନ ଅସମ୍ଭବ ।

### ଲୀଳା ଉବାଚ

ସ୍ଥୂଳଦେହେ କିମ୍ବା ତାହା ଦେଖି ନପାରିବି
ଭୋ ଦେବୀ ! ତା ଯୁକ୍ତିସହ କହ ମୋତେ ଭାବି ।

### ଦେବୀ ଉବାଚ

ଏ ସାରା ଜଗତ ବସେ ଅଟଇ ଅମୂର୍ତ୍ତ
ମୋହବଶେ ତାକୁ ତୁମେ ବୋଲୁଛ ଯେ ମୂର୍ତ୍ତ ।
ସୁବର୍ଣ୍ଣରେ ମୁଦ୍ରିକା ଯେ ହୁଅଇ ଗଠିତ
କିନ୍ତୁ ସୁବର୍ଣ୍ଣର ଗୁଣ ତହିଁ ପ୍ରତିଭାତ ।
ଚକ୍ଷୁକୁ ଜଗତ ଦେଖାଗଲେ ହେଁ ସୁନ୍ଦର
ପରମବ୍ରହ୍ମରେ ସତ୍ତା ନାହିଁ ଜଗତର ।
ଯା କିଛି ଚକ୍ଷୁକୁ ପରିଦୃଶ୍ୟମାନ ହୁଏ
ବ୍ରହ୍ମହିଁ ସେସବୁ ବସ୍ତୁ, ଅନ୍ୟ କିଛି ନୁହେଁ ।
ବ୍ରହ୍ମହିଁ ବ୍ରହ୍ମ ଦର୍ଶନ କରଇ ଗୋ ଲୀଳେ
ବ୍ରହ୍ମନୋହି ବ୍ରହ୍ମ ଦେଖାଇବ କାହାବଳେ ।
**ବ୍ରହ୍ମତ୍ୱଜ୍ଞାନହିଁ ଲୀଳେ ବ୍ରହ୍ମ ଦରଶନ**
**ତା ବ୍ୟତୀତ ଜ୍ଞାନ ନୁହେଁ ବ୍ରହ୍ମଙ୍କ ଦର୍ଶନ ।**
କାର୍ଯ୍ୟ ବା କାରଣୋତ୍ପତ୍ତି କେହି ନୁହେଁ ବ୍ରହ୍ମ
ସଦାସର୍ବଦା ସେ ଅଟେ ସୁ ବିଶୁଦ୍ଧ ଜ୍ଞାନ ।
ଅଭ୍ୟାସ ଯୋଗ ବଳରେ ଯେତେଦିନଯାଏ
ଭେଦ ବୁଦ୍ଧି ଯାଇ ଶମଜ୍ଞାନ ନୋହିଥାଏ ।
ତେତେଦିନ ପରିଯନ୍ତେ ବ୍ରହ୍ମ ଦର୍ଶନ
କେଭେଁ ହୋଇ ନ ପାରିବ ଗୋ ନାରୀ ରତନ ।

ହାସଲ କରିପାରିଲେ ସେ ଯୋଗ ସାଧନ
ବ୍ରହ୍ମ ସ୍ୱରୂପିଣୀ ହେବୁ ରମଣୀ ରତନ ।
ଆକାଶ ସ୍ୱରୂପ ଅଟେ ଏ ମର ଶରୀର
ତା ମଧ୍ୟେ ବି ବ୍ରହ୍ମ ଦେଖା ହୋଇବ ଆମ୍ଭର ।
ସଂକଳ୍ପ ନଗରୀପରି ଆମ ଏ ଶରୀର
ଶୁଦ୍ଧ ଚିଦାକାଶଭରା, ଅନ୍ତର ଯାହାର ।
ତେଣୁ ଏ ଦେହ ମଧ୍ୟରେ ସେ ପରମବ୍ରହ୍ମ
ଦର୍ଶନ କରିପାରେ ମୁଁ ନୁହେଁ ତା ବିଭ୍ରମ ।
ଅଭ୍ୟାସ ନ କରିବାରୁ ଶରୀରେ ତୁମର
ବ୍ରହ୍ମ ଦର୍ଶନ ନୋହିଛି, ଆଗୋ ନାରୀବର ।
ଏବେ ମଧ୍ୟ ତୋ ଅନ୍ତରେ ଜାଗେ ଜୀବଭାବ
ତେଣୁ ନିଜକୁ ନଗଣ୍ୟ ମଣିବା ସ୍ୱଭାବ ।
ତେଣୁ ଦେଖି ପାରୁନାହିଁ ସେ ଦ୍ୱିଜ ସମ୍ପତ୍ତି
ତାଙ୍କର ନିବାସ ସ୍ଥାନ ଅଥବା ସମ୍ପତ୍ତି ।
ଯେଣୁ ନିଜ ଦେହେ ସ୍ୱୀୟ କଳ୍ପିତ ନଗର
ଦେଖି ନ ପାରୁଛ ଆଗୋ ରମଣୀ ପ୍ରବର,
କିପରି ଦେଖିବ ଅନ୍ୟ ସଂକଳ୍ପିତ ଘର ?
ବୁଝି, ବିଚାରି ଦିଅ ମା ତହିଁର ଉତ୍ତର ।
ଏବେ ତୁମେ ଭୁଲିଯାଅ ଦେହ ଅଭିମାନ
ଚିଦାକାଶ ରୂପଧରି କର ଅବସ୍ଥାନ ।
ତେବେ ମୁହୂର୍ତ୍ତକ ମଧ୍ୟେ ସେ ଦ୍ୱିଜନଗର
ଅକ୍ଳେଶେ ଦେଖି ପାରିବ ଗୋ ଲୀଳେ ମୁକର ।
ଯତ୍ନକଲେ ରତ୍ନ ମିଳେ ଏ ସାର ବଚନ ?
ଚିଦାକାଶ ରୂପୀ ହେଲେ ପୂର୍ଣ୍ଣହେବ କାମ ।
ଚିତ୍‌ଦୃଷ୍ଟି ଲଭିବାକୁ ସମାଧି ସାଧନ
ତେବେ ସଂକଳ୍ପ-ନଗର ଦେଖିବ ନୟନ ।
ମାନସ ଶରୀରେ ଦୃଷ୍ଟ ମାନସ ନଗର
ପାର୍ଥିବ ଶରୀରେ ତାହା କି ସମ୍ଭବପର ?
**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ବିଶ୍ରାନ୍ତି ବର୍ଣ୍ଣନେ ନାମ ପଞ୍ଚଦଶ ସର୍ଗଃ ।**



## ଷୋଡଶ ସର୍ଗଃ
## ବିଜ୍ଞାନ ଅଭ୍ୟାସ

ଲୀଳା କହେ ଦେବୀ ମୋତେ କହିଲ ଏସନ
ସେ ଦ୍ୱିଜ ନଗରେ ଦୁହେଁ କରିବା ଗମନ ।
ସ୍ଥୂଳ ଶରୀର ମୁହିଁ ତ ରଖିବି ଏଠାରେ
ସୂକ୍ଷ୍ମ ଶରୀରରେ ଯିବି ସେ ବିପ୍ର ମନ୍ଦିରେ ।
ବିଶୁଦ୍ଧ ଚିତ୍ତ ତେବେ ମୁଁ କରିବି ବରଣ
ସେହି ପରଲୋକେ ମାଗୋ କରିବି ଗମନ ।
ତୁମ୍ଭେ କିପରି ଚଳିବ ସେ ବିପ୍ର ନଗର
ବୁଝାଇ କହିବା ମାତ ମୋହର ଆଗର ।
ଦେବୀ କହନ୍ତି ଗୋ ଲୀଳେ ତୁମର ଅନ୍ତରେ
ସଂକଳ୍ପିତ ବୃକ୍ଷଟିଏ ରୋପିଲେ ତହିଁରେ ।
କାଳ୍ପନିକ ତାହା କିନ୍ତୁ ଅବସ୍ଥିତି ହୀନ
ଶୂନ୍ୟ, ଶୂନ୍ୟ, ମହାଶୂନ୍ୟ ଗଗନ ସମାନ ।
ଯଦି ତୁମେ ଦେଖୁଅଛ ମୋର ଦେହ ଅଛି
ବାସ୍ତବତା ନାହିଁ ତାର, ଶୂନ୍ୟ ମୁଁ ରହିଛି ।
ଜାଣିରଖ ମୋର ଦେହ ନଭପରି ଶୂନ୍ୟ
ବିଶୁଦ୍ଧ ସତ୍ତ୍ୱ ଗୁଣରେ ହୋଇଛି ଗଠନ ।
କିନ୍ତୁ ଚିତ୍ ସ୍ୱରୂପର ଏହା ପ୍ରତିଭାସ
ଅତ୍ୟଳ୍ପଭେଦ ତାଠାରୁ ଯେହୁ ପରମେଶ,
ସୂତ୍ରଭ୍ରଷ୍ଟ ସୂତ୍ରପରି ଯଦିଚ ଦିଶଇ
ବାସ୍ତବ ସୂତ୍ର ତା' ନୁହେଁ, ଆଭାସ ଅଟଇ ।
ତେସନ ମୋ ଦେହ ଲୀଳେ ନୁହଇ ଶରୀର
ଆଭାସ ତୁମକୁ ଦିଶେ ବାସ୍ତବ ପ୍ରକାର ।
ତେଣୁ ମୋ ଦେହ ତେଜିବା ନାହିଁ ପ୍ରୟୋଜନ ।
ଯେଣେ ଇଚ୍ଛା ତେଣେ କରିପାରେ ମୁଁ ଗମନ ।
ଗନ୍ଧ ସହିତରେ ଯଥା ମିଶଇ ପବନ
ଜଳର ସହିତ ଜଳ ମିଶଇ ଯେସନ,
ଅନଳ ମିଶାଇ ଯଥା ଅନଳ ସହିତ
ବାୟୁର ସହିତ ବାୟୁ ମିଶଇ ଯେମନ୍ତ,
ତାଦୃଶ ମୋହର ଏହି ମନୋମୟ ଦେହ
ଅନ୍ୟ ମନୋମୟ ଦେହେ ମିଶେ ନିସନ୍ଦେହ ।
ଯେସନ କଳ୍ପନାମୟ ପର୍ବତ ସହିତ
ସମାନ ନହୁଏ କେବେଁ ପାର୍ଥିବ ପର୍ବତ
ପାର୍ଥିବ ଜ୍ଞାନ ସହିତ ଅପାର୍ଥିବ ଜ୍ଞାନ
ସମାନ ହୁଅଇ ନାହିଁ ଲୀଳେ କଦାଚନ ।
ବାସ୍ତବରେ ଏହି ଦେହ ଅଟେ ମନୋମୟ
ଆଧିଭୌତିକ ନୁହେଁ ତା' ଜାଣ ନିସନ୍ଦେହ ।
ବହୁକାଳ ଭାବିଅଛି ତା ଆଧିଭୌତିକ
ତେଣୁ ତାହା ଜଣା ଯାଉଅଛି ଭଉତିକ ।

ଭାବନା ବଳେ ଉଦ୍ଭବ ଯେ ଭାବ-ଶରୀର
ସେ ଲକ୍ଷଣମାନ ଏବେ ଶୁଣ ନାରୀବର ।
ସ୍ୱପ୍ନ, ଦୀର୍ଘକାଳ ଧ୍ୟାନ, ଗନ୍ଧର୍ବ ନଗର
ମନୋରାଜ୍ୟେ ବିଚରଣ ହୋଇ ନିଷ୍ପାପର,
କ୍ଷୀଣ ହୋଇ ଯାନ୍ତେ ତୁମ୍ଭ ବାସନା ସକଳ
ତୁମ୍ଭ ଏ ସ୍ଥୂଳ ଶରୀର ହେବ ରୂପାନ୍ତର ।
ଆତିବାହିକ ଶରୀର ସମାଧି ଯୋଗରେ
ପାର୍ଥିବ ଭାବ ବିଲୁପ୍ତ ହେବ ତୋ ଅନ୍ତରେ ।
ଲୀଳା ବୋଲେ ଆଗୋ ଦେବୀ ସମାଧି ବଳରେ
ଆତିବାହିକ-ଦେହତ୍ୱ-ଜ୍ଞାନ ଯେ ସଞ୍ଚରେ ।
ସୁଦୃଢ଼ ହୋଇଲେ ତାହା ଦେହାବସ୍ଥାନ୍ତର
ହୁଏ, କିମ୍ବା ନାଶଯାଏ, ଏ ଦେହ ସତ୍ୱର ।
ଦେବି କହନ୍ତି ଯା ସତ୍ୟ ସର୍ବଦା ସେ ଅଛି
ଅସତ୍ୟ ବସ୍ତୁକୁ ନେତ୍ରେ କେ ଦେଖି ପାରୁଛି ?
ବାସ୍ତବରେ ଯେଉଁ ବସ୍ତୁ ଏକାବେଳେ ନାହିଁ
କି ରୂପେ ତା' ବିନାଶ ବା ରୂପାନ୍ତର ହୋଇ ?
ରଜ୍ଜୁରେ ଉରଗ ଭ୍ରମ ହେଲେ ତିରୋହିତ
ଉରଗ ଗଲା କି ମଲା ଏ କଥା ଯେମନ୍ତ ।
ତେସନ ଆତିବାହିକ ଜ୍ଞାନର ଉଦୟେ
ପାର୍ଥିବ ଜ୍ଞାନର ସତ୍ତା ଆଉ ତ ନ ରହେ ।
ସର୍ବଭାବେ ଏ ଶରୀର ବ୍ରହ୍ମେ ଅବସ୍ଥିତ
ଏହା ସତ୍ୟ ସତ୍ୟ ବୋଲି ଆମ୍ଭଙ୍କୁ ବିଦିତ ।
ସେ ଜ୍ଞାନ ତୁମ୍ଭର ଯେଣୁ ଅଛଇ ଅଭାବ
ତୁମ୍ଭ ପକ୍ଷେ ତାହା ଦେଖିବାକୁ ଅସମ୍ଭବ ।
ଲୀଳା କହେ ଦେବୀ ! କାଳ, ଦିକ୍ ପ୍ରଭୃତିରେ
ଅସମ୍ପୃକ୍ତ ସେହି ପରଂବ୍ରହ୍ମ ଯେ ବିଚରେ ।
"ଅନ୍ୟକିଛି ନାହିଁ" ଏ ପ୍ରଶ୍ନ କି ହୋଇପାରେ ?
ସନ୍ଦେହ ନାଶ ଗୋ ମାତ ଅକାଟ୍ୟ ଉତ୍ତରେ ।
ଦେବୀ ବୋଲନ୍ତି ସୁବର୍ଣ୍ଣେ କଙ୍କଣତ୍ୱ ଯଥା
ସଲୀଳରେ ତରଙ୍ଗତା ଘଟଇ ତଥା ।
ସ୍ୱପ୍ନ, ସଂକଳ୍ପ ନଗର ଯେପରି ଅସାର
କଳ୍ପନା ନଖାଟିପାରେ ପରଂ ବ୍ରହ୍ମଠାର ।
ଶାନ୍ତ ସ୍ୱରୂପ ଏ ବ୍ରହ୍ମ କଳ୍ପନା ରହିତ
ଏକମାତ୍ର ଅଜ ପୁଣି ସଦା ପରିବ୍ୟାପ୍ତ ।
ଆକାଶେ ନଥାଇ କେଉଁ ଯଥା ଧୂଳିକଣା
ତଥା ପରଂବ୍ରହ୍ମେ ନାହିଁ ସୃଷ୍ଟି ସମ୍ଭାବନା ।

ବ୍ରହ୍ମ ଶାନ୍ତ ବ୍ରହ୍ମ ଅଜ ପୁଣି ବ୍ରହ୍ମ ଶିବ
ଅବ୍ୟୟ, ଅକ୍ଷୟ ଅନୁପଭି ତା' ସ୍ୱଭାବ ।
ଯାହା କିଛି ଭାସମାନ ସର୍ବ ନିରାମୟ
ତା'ର ଭାସ ପ୍ରତିଭାସ ମଧ୍ୟ ବ୍ରହ୍ମମୟ ।
ଲୀଳା ବୋଲେ ମୁଁ ଅଭାଗୀ କି ଅଜ୍ଞାନ ହେଲି
ମୂଢ଼ପରି ଦ୍ୱୈତାଦ୍ୱୈତ ତର୍କେ ମାତିଗଲି ।
ଦ୍ୱୈତାଦ୍ୱୈତ ଭାବ ନେଇ କି ଭ୍ରାନ୍ତି ଘାରିଲା ।
ମୂଲ୍ୟବାନ ମୁହୂର୍ତ୍ତ ମୋ କେଣେ ନଷ୍ଟ ହେଲା ?
ଦେବୀ କହିଲେ ଗୋ ଲୀଳେ ତୁମେ ଏ ପର୍ଯ୍ୟନ୍ତ
ଅବିଚାର ଅବିଦ୍ୟାରେ ଥିଲ ବଶୀଭୂତ ।
ବ୍ୟାକୁଳତାରେ ଦଗଧ ହେଉଥିଲ ତୁମେ
ସ୍ୱାମୀ ମୋହ ଘାରିଥିଲା ତୁମ୍ଭଙ୍କୁ ସଂଭ୍ରମେ ।
ଅବିଚାର ଯେ ତୁମ୍ଭଙ୍କୁ ମୁଗ୍ଧ କରିଅଛି ।
ସଦ୍‌ବିଚାର ବଳେ ତାହା କେଣେ ଯିବ ଘୁଞ୍ଚି ।
ସେ ଅବିଦ୍ୟା କିନ୍ତୁ ଲୀଳେ ପରଂବ୍ରହ୍ମଠାରୁ
ଅତିରିକ୍ତ ନହୁଅଇ ଜାଣ ନାରୀଗରୁ ।
ଅବିଚାର ଅବିଦ୍ୟା ଓ ମୁକତି ବନ୍ଧନ
ବାସ୍ତବରେ ଏହା ସର୍ବ କିଛି ନାହିଁ ଜାଣ ।
ବିଶୁଦ୍ଧ ଜ୍ଞାନ ସ୍ୱରୂପ ସେହି ପରଂବ୍ରହ୍ମ
ତାଙ୍କଛଡ଼ା ଅନ୍ୟ କିଛି ନାହିଁ ବିଦ୍ୟମାନ ।
ଏ ପର୍ଯ୍ୟନ୍ତ ବତ୍ସେ ଏହା ବିଚାର ନ କଲ
ଯେଣୁ ତୁମେ ଭ୍ରାନ୍ତିରାଜ୍ୟେ ଭ୍ରମି ହେଉଥିଲ ।
ବାସନା କ୍ଷୟ ଲଭିଛି ଏବେ ତୁମ୍ଭ ହୃଦେ
ବୋଧଜ୍ଞାନ ବାଳସୂର୍ଯ୍ୟ ହୋଇଲାଣି ଉଦେ ।
ବିବେକ ଜ୍ଞାନ ତୁମ୍ଭକୁ ହୋଇଛି ପ୍ରାପତ ।
ବିମୁକ୍ତ ବନ୍ଧନା ଏବେ ହୋଇଛ ଯଥାର୍ଥ ।
ଗ୍ରାସିବ ନାହିଁ ତୁମ୍ଭଙ୍କୁ ଆଉ ଦ୍ୱୈତଜ୍ଞାନ
ମିଥ୍ୟା ଯେଣୁ ବୁଝିଲଣି ଭବ ଦରଶନ ।
ସମାଧିବଳେ ଗୋ ଲୀଳେ ସଂସାର ଭାବନା
ଅଚିରେ ସୁଦୂର ହେବ ରାଣୀ ମହାମନା ।
ଅଚିରେ ମୁକତିଲାଭ ହୋଇବ ତୁମ୍ଭର
ଚିନ୍ତା ତେଜି ଧୈର୍ଯ୍ୟ ଧରି ରହ ଧୀରସ୍ଥିର ।
ଏକମାତ୍ର ନିର୍ବିକଳ୍ପ ସମାଧି ବଳରେ
ପରମାତ୍ମା ଦରଶନ ଲାଭ ଅକ୍ଲେଶରେ ।
ସେହି ଅଦ୍ୱୟ ବ୍ରହ୍ମରେ କଲେ ଅବସ୍ଥାନ
ଅଭାବ ହୁଅଇ ଦ୍ରଷ୍ଟା, ଦୃଶ୍ୟ, ଦରଶନ ।

ବାସନା ନାଶକ ବୀଜ ଏ ହୃଦ କ୍ଷେତ୍ରରେ
ବୁଣାଗଲେ ଅଙ୍କୁରିତ କେଉଁ ନୋହିପାରେ ।
କିଞ୍ଚିତ୍ ଯଦି ଅଙ୍କୁରିତ ହୁଏ ଦୈବବଶ
ଉତ୍ପତ୍ତି କାଳେ ତା' ମଧ୍ୟ ଲଭିବ ବିନାଶ ।
**ସଂସାର ଭାବ ନିର୍ମୂଳ ବାସନା କ୍ଷୟରେ**
**ରାଗ ଦ୍ୱେଷାଦି ହୁଅନ୍ତି ବିନାଶ ଅଚିରେ ।**
ସଂସାର ଭାବ ଯେବେ କି ହୁଏ ତିରୋହିତ
ଅମଳ ପ୍ରତିଷ୍ଠା ଲାଭ ହୁଏ ତଜ୍ଜନିତ ।
ହେ ଲୀଳେ ! ଏ ରୂପେ କଲେ ସମାଧି ଅଭ୍ୟାସ
ସଂସାର କାଳିମା ଦୂର ହୋଇବ ଅବଶ୍ୟ
ଏକମାତ୍ର ଚିଦାକାଶ ଶୁଦ୍ଧ ଜ୍ଞାନମୟ
ଦେଖିବ ଅଦ୍ୱୟ-ବ୍ରହ୍ମ ସଦା ଶୋଭାମୟ ।
ଶୟନେ ସ୍ୱପନ ଯଥା ଜାଗରଣେ ମିଥ୍ୟା
ବାସନା କ୍ଷୟେ ଏ ଦେହ ଅସତ ଯେ ତଥା ।
ସ୍ୱପ୍ନ ଜ୍ଞାନପରେ ଯଥା ସ୍ୱପ୍ନ ଦେହ ଅସ୍ତ
ବାସନା ବିନାଶେ ଦେହ ଅଭିମାନ ଗତ ।
ସଂକଳ୍ପ-ସ୍ୱପ୍ନ ଦର୍ଶନ ହୋଇଯାନ୍ତେ ଅସ୍ତ
ସ୍ଥୁଳ ଦେହ ଦରଶନ ହୁଅଇ ପ୍ରତୀତ ।
ଗତହୋଇ ଯାନ୍ତେ ଦେହ ଜାଗରଣା ବସ୍ଥା ।
ଆତିବାହିକ ଶରୀର ପ୍ରକାଶେ ସର୍ବଥା ।
ନିଦ୍ରାରେ ବାସନା ନାଶେ ସୁଷୁପ୍ତି ଯେସନ
ବାସନା-କ୍ଷୟ ଶରୀରେ ମୁକତି ତେସନ ।
ବାସନା ବାସନା ନୁହେଁ ଜୀବନ୍ମୁକ୍ତ ଦେହେ
ତା' ପକ୍ଷେ ତା ସତ୍ତ୍ୱଗୁଣ ଜାଣ ଗୋ ତନୟେ ।
ବାସନା ବିହୀନ ନିଦ୍ରା, ତୁରୀୟ ଅବସ୍ଥା
ଜାଗରଣ କଥା ଏବେ ଶୁଣ ରାଜସୁତା ।
ଜ୍ଞାନବଳେ ବାସନାର ସମୂଳୋତ୍ପାଟନ
ତୁରୀୟ ଅବସ୍ଥା ତାହା ଜାଗରଣେ ଜାଣ ।
ସେହି ତୁରୀୟ ଲାଭକୁ ବ୍ରହ୍ମ ଲାଭ କହି
ବ୍ରହ୍ମକୁ ପାଇଲେ ରାଣୀ କିଛି ଲୋଡ଼ା ନାହିଁ ।
ବାସନା ବିହୀନ ଯେଉଁ ଜୀବିତ ଅବସ୍ଥା
ତହା ଜୀବନ ମୁକତି ବୁଝ ରାଜସୁତା ।
ମୋହ ଗ୍ରସ୍ତ ବ୍ୟକ୍ତି ତାର ସ୍ୱାଦ ନ ଜାଣଇ
ଚକ୍ଷୁ କୁଟୁଥିଲେ କାହୁଁ ଉଜ୍ଜଳ ମିଳଇ ?
ଅତିବାହିକ ଭାବରେ ନିତ୍ୟ ଅବସ୍ଥିତ
ରହି ତୁ ପାରିଲେ ଦେଖି ପାରିବୁ ଏମନ୍ତ ।

ସଙ୍କଳ୍ପ ବିହୀନ ପୂତ, ପୂର୍ଣ୍ଣାତ୍ମା ସକଳ
ଚଉଦ ଭୁବନ ପୁଣି ଦଶଦିଗପାଳ,
ଦେହାଭିମାନ ତୁମର ଯେଉଁ ପରିଯନ୍ତ
ଅଭ୍ୟାସ ବଳରେ ନୋହି ଅଛି ଉପଶାନ୍ତ
ତିରୋହିତ ହେବ ନାହିଁ ତୁମ ଦୃଶ୍ୟଜ୍ଞାନ
ଦୂରେଇ ଥିବେ ତୁମଠୁଁ ବ୍ରହ୍ମ ସନାତନ ।
ଆତିବାହିକ ଜ୍ଞାନ ତୋ' ହେଲେ ଦୃଢ଼ତର
ପବିତ୍ର ହୋଇ ଦେଖିବୁ ଲୋକାଦି ସକଳ ।
ବାସନା କ୍ଷୟ ସାଧନେ ଆଗୋ ଆନନ୍ଦିତେ
ଅହରହ ଯତ୍ନବତୀ ହୁଅ ଶୁଦ୍ଧ ଚିତ୍ତେ ।
ବାସନା କ୍ଷୟ ତୁମର ହେଲେ ବନ୍ଧମୁକ୍ତ
ଜୀବନ ମୁକତ ତୁମେ ହେବ ଗୋ ସତ୍ୱର ।
ବୋଧ ଚନ୍ଦ୍ରମା ତୁମର ଯେତେଦିନ ଯାଏ
ଷୋଡ଼ଶକଳାରେ ପରିପୂର୍ଣ୍ଣତା ନପାଏ
ସେ ପର୍ଯ୍ୟନ୍ତ ସ୍ଥୂଳଦେହ ପରିତ୍ୟାଗ କରି
ଲୋକ ଲୋକାନ୍ତର ସବୁ ଦେଖ ଗୋ ସୁନ୍ଦରୀ ।
ଆଶାକର ନାହିଁ ବତ୍ସେ ମୋହ ସହିତରେ
ଗମନ କରି ପାରିବ ସେ ଅମର ପୁରେ ।
ମାଂସମୟ ଦେହ କେବେ ଅମାଂସ ଶରୀରେ
ସଂଶ୍ଳିଷ୍ଟ ହେବା ସମ୍ଭବ ହୋଇ ତ ନ ପାରେ ।
ମାଂସମୟ ଦେହ ଚିତ୍ତମୟ ଶରୀରରେ
ମିଶି, ସାଂସାରିକ କାର୍ଯ୍ୟ କରି ତ ନ ପାରେ ।
ଚିତ୍ତ-ଦେହ ମଧ୍ୟ ବ୍ୟାବହାରିକ କାର୍ଯ୍ୟରେ
ଖଟିବାକୁ କେବେ ହେଲେ ସମ୍ଭବି ନ ପାରେ ।
ଯାହା ମୁଁ କହିଲି ଲୀଳେ ହେଜ ଶୁଦ୍ଧ ଚିତ୍ତେ
ଅଜ୍ଞାନ ବାଳକ ଠାରୁ ସିଦ୍ଧ ପରିଯନ୍ତେ
ଅନୁଭବ ସିଦ୍ଧ ଏହା ସକଳ ଲୋକରେ
ଯୁଗେ ଯୁଗେ, କାଳେ କାଳେ ସବୁ ଅବସ୍ଥାରେ ।
ଅଭିଶାପ ବରଦାନ ଉଭୟ ମୁଁ ଦିଏ
ଯୋଗ୍ୟ, ଅଯୋଗ୍ୟ ବିଚାର ଏଥିରେ ମୋ ଥାଏ ।
ଯୋଗ୍ୟ ବ୍ୟକ୍ତିକୁ ସାହାଯ୍ୟ କରିପାରେ ମୁହିଁ
ଅଯୋଗ୍ୟକୁ ସହାୟତା କେଉଁ ମୁଁ ନ ଦେଇ ।
ପ୍ରଗାଢ଼ ଜ୍ଞାନ ଅଭ୍ୟାସ ବଶବର୍ତ୍ତୀ ହେଲେ
ବାସନା ଜାଲ ଜୀବର ଜୀର୍ଣ୍ଣତା ଲଭିଲେ
ଆତିବାହିକ ଶରୀର ଜନ୍ମେ ଏ ଦେହରେ
କିନ୍ତୁ କେହି ଦେଖି ନ ପାରନ୍ତି ସ୍ୱନେତ୍ରରେ ।

କେବଳ ସ୍ଥୁଳ ଶରୀର ଜନ ନେତ୍ରେ ଦିଶେ
ଦେହ ମାତ୍ର ଅବାସ୍ତବ ମୁକ୍ତ ଦେଖି ହସେ ।
ଜୀବନ ମରଣ ଦ୍ୱୟ ମୁକ୍ତ ପାଇଁ ସମ
ଜନ୍ମ ମୃତ୍ୟୁ ହେତୁ ନୁହେଁ, ସଙ୍କଳପ ଭ୍ରମ ।
କଳ୍ପନା ରାଜ୍ୟରେ ଯଥା ଜନମ ମରଣ
ଏ ଦେହେ ଜନ୍ମ ମରଣ ଅବାସ୍ତବ ଜାଣ ।
ଲୀଳା କହେ ଆଗୋ ମାତ କେଡ଼େ ଦୟା କଲ
ଦୃଶ୍ୟ ଦରଶନ ବ୍ୟାଧି ମୋର ନିବାରିଲ ।
କୃତାଞ୍ଜଳି ପୁଟେ ଏବେ କରୁଛି ଦୟିନୀ
ସୁଦୟା କରିବା ମାତ ବ୍ରହ୍ମ ବିଳାସିନୀ ।
ବାସନା କଟିବା ପାଇଁ ଅଭ୍ୟାସ କିପରି
କାର୍ଯ୍ୟକାରି ହେବ, ମାତ କହିବା ବିସ୍ତାରି ।
କି ଉପାୟେ ଅଭ୍ୟାସ ଯେ ହେବ ପରିପୁଷ୍ଟ
କି ଫଳ ଫଳିବ ତହୁଁ କହି କର ତୁଷ୍ଟ ।
ବାକ୍‌ଦେବୀ କହନ୍ତି ଶୁଣ ଗୋ ବରବର୍ଣ୍ଣନୀ
ତୁମ୍ଭ ପ୍ରଶ୍ନୋତ୍ତର ମାନ ଦେଉଛି ବଖାଣି ।
ଅଭ୍ୟାସ ଛଡ଼ା କାହାରି କଉଣସି କାର୍ଯ୍ୟ
ସମ୍ପନ୍ନ ହୋଇ ନ ପାରେ ଏହା ହିଁ ତାତ୍ପର୍ଯ୍ୟ ।
ସୁଧିବର୍ଗ ଏ ବିଷୟେ କହିଛନ୍ତି ଯାହା
ମନ କର୍ଣ୍ଣ ଦେଇ ଲୀଳେ ଶୁଣି ରଖ ତାହା ।
ବ୍ରହ୍ମ ଚିନ୍ତନରେ ରତ ଥିବ ଅନୁକ୍ଷଣ
ସାଧମତେ କରୁଥିବ ବ୍ରହ୍ମାନୁସରଣ ।
ପରସ୍ପର ରତ ଥିବ ବ୍ରହ୍ମ କଥନରେ
କରୁଥିବ ବ୍ରହ୍ମଚର୍ଚ୍ଚା ନିଶି ଦିବସରେ ।
ମନେରଖ ବ୍ରହ୍ମନିଷ୍ଠ ହେବାର ଲକ୍ଷଣ
ବ୍ରହ୍ମାଭ୍ୟାସ, ବ୍ରହ୍ମନାମ କର ଉଚ୍ଚାରଣ ।
ଏସନ ସାଧନ ତତ୍ତ୍ୱବୋଧର କାରଣ
ତେବେ ଏ ଜୀବନ ହେବ ବାସ୍ତବ ଜୀବନ ।
ଏ ବିଷୟେ ତତ୍ପରତା ଅର୍ଜ୍ଜି ମହାଦେଇ
ବିପ୍ରପୁରେ ପହଞ୍ଚିବ ଅବାଧେ ଗୋ ଯାଇ ।
ବିଷୟ-ବିରକ୍ତ ପୁଣି ମହାତ୍ମା ଯେମାନେ
ଭୋଗବାସନା ତେଜନେ ସମର୍ଥ ସେମାନେ ।
ସେହିମାନେ ଜିଣିଥାନ୍ତି ଜନମ ମରଣ
ଅମର ସମ୍ପଦ କିବା ତାଙ୍କ ସନ୍ନିଧାନ ।
ପରମ ଆନନ୍ଦ ଭୋଗ କରେ ସେହି ଜନ
ଯାହାର ମତି ଉତ୍ତମ ଗୁଣ ପରିପୂର୍ଣ୍ଣ ।
ଆପ୍ଳୁତ ଯାହାର ଚିତ୍ତ ବୈରାଗ୍ୟ ରସରେ
ଯାବତ୍ ପରିଗ୍ରହ ଯେହୁ ତ୍ୟାଗ କରିପାରେ ।
ସ୍ୱରୂପ ସୌନ୍ଦର୍ଯ୍ୟ ପାଇଁ ଯେହୁ ଉଦାସୀନ
ଉତ୍ତମ ଅଭ୍ୟାସୀ ବୋଲି ଲୀଳେ ତାକୁ ଜାଣ ।
ଅଧ୍ୟାତ୍ମ ଶାସ୍ତ୍ରାଲୋଚନା ଯୁକ୍ତିସହ କରେ
ଜ୍ଞାତା, ଜ୍ଞେୟ ଏକ ବସ୍ତୁ ବୋଲି ଯେହୁ ଧରେ
ଉତ୍ତମ ବ୍ରହ୍ମ ଅଭ୍ୟାସୀ ଅଟେ ସେହି ନର
ବ୍ରହ୍ମଭାବ ପରିପୂର୍ଣ୍ଣ ଅଟେ ତା ଶରୀର ।
ସୃଷ୍ଟ୍ୟଗ୍ରେ ଜଗତ, ତୁମେ, ଆମେ ଆଦିକରି
କିଛି ହିଁ ନ ଥିଲା ସବୁ ଥିଲା ଭ୍ରାନ୍ତି ପରି ।
ଏବେ ମଧ୍ୟ ସେ ସକଳ ମିଥ୍ୟାବୋଲି ମଣେ
ଅସାର ବସ୍ତୁରେ ସାରା ଜଗତକୁ ଗଣେ ।
ଏ ଜ୍ଞାନ ଅଭ୍ୟାସ ମହାତତ୍ତ୍ୱ ପଥ ଧରେ
ବ୍ରହ୍ମାଭ୍ୟାସ ବୋଲାଏ ତା' ଜ୍ଞାନୀଙ୍କ ମତରେ ।
ଜଗତ୍‌ଜ୍ଞାନ ଯେତେବେଳେ ହୁଅଇ ବିନଷ୍ଟ
ରାଗ, ଦ୍ୱେଷ ରିପୁମାନେ ହୋଇଯାନ୍ତି ନଷ୍ଟ ।
ଚିତ୍ତ ଚଳିଯାଏ ପରମାତ୍ମା ପଦ୍ମପାଦେ
ବ୍ରହ୍ମାଭ୍ୟାସ ବୋଲି ତାକୁ କହନ୍ତି ବିବୁଧେ ।
ଦୃଶ୍ୟର ଅସତ ଭାବ ରାଗ ଦ୍ୱେଷମାନ
ନାଶ ନ କରି ଯେ କରେ ତପ ଆଚରଣ ।
ବିଶୁଦ୍ଧ ଅଜ୍ଞାନ ସେହୁ ପାଷାଣ୍ଡ ଅଗ୍ରଣୀ
ଦୁଃଖ ସିନ୍ଧୁର୍ ଆଶ୍ରୟ ପ୍ରମାଦର ଖଣି ।
"ଜଗତନାସ୍ତି" ଆସିଲେ ଏମନ୍ତ ଧାରଣା
ତାହାକୁ କହନ୍ତି ଜ୍ଞାନ, ରାଣୀ ମହାମନା ।
ଜ୍ଞାନୀଙ୍କ ମତରେ ତାହା ଜ୍ଞେୟ ବୋଲି କହି
ଏମନ୍ତ ଜ୍ଞାନ ଅଭ୍ୟାସ ବ୍ରହ୍ମାଭ୍ୟାସ କହି ।
ଉପରୋକ୍ତ ପରକାରେ ବ୍ରହ୍ମାଭ୍ୟାସ କଲେ
ଭବନିଶା ଅବସାନ ଲଭିବ ଅଚିରେ ।

ଜୀବ ଯେବେ ମରେ, ପରଲୋକ ଗମନ କରେ, ସେତେବେଳେ ତାହାର ଆତିବାହିକ ଶରୀର ଲୋକାନ୍ତଗାମୀ ହୁଏ । ସ୍ଥୁଳ ଶରୀର ପଡ଼ିରହେ । ସେ ଆତିବାହି ଶରୀରକୁ ପାରଲୌକିକ ଶରୀର କୁହାଯାଏ । ସେ ଶରୀର ଅନାଦି, ଅନିର୍ବାଚ୍ୟ ସ୍ୱଜ୍ଞାନକଳ୍ପିତ ସ୍ଥୁଳ ଭୂତିରେ ନିର୍ମିତ ।।

କହୁଛନ୍ତି ଗୁରୁଦେବ ଏମନ୍ତ ଯେ ବାଣୀ
ଅସ୍ତାଚଳ ଚୂଳେ ବିଜେ କଲେ ଦିନମଣି ।
ପରସ୍ପରେ ନମସ୍କାର କରି ସଭ୍ୟଗଣ
ଆହ୍ନିକ ବିଧି ନିମନ୍ତେ କଲେକ ପ୍ରସ୍ଥାନ ।
ପରଦିନ ପ୍ରାଚୀ ନଭେ ଉଦେ ଦିନମଣି
ସଭ୍ୟଗଣ ମଣ୍ଡପରେ ପ୍ରବେଶିଲେ ପୁଣି ।
ପରସ୍ପରେ ଯଥାମାନ୍ୟ ଆଦାନ ପ୍ରଦାନ
ଦେଇ ଆରମ୍ଭିଲେ ସଭା କାର୍ଯ୍ୟକ୍ରମମାନ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ବିଜ୍ଞାନାଭ୍ୟାସ ନିରୂପଣେ**
**ନାମ ଷୋଡ଼ଷ ସର୍ଗଃ ।**



## ସପ୍ତଦଶ ସର୍ଗଃ
## ଲୀଳା ବିଜ୍ଞାନ ଦେହାକାଶ ସମାଗମନ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁମଣି
ଲୀଳା ସରସ୍ୱତୀଙ୍କର ବକ୍ତବ୍ୟ କାହାଣୀ ।
କଥାବାର୍ତ୍ତା କରୁ କରୁ ହେଲା ଅର୍ଦ୍ଧରାତ୍ର
ପୁରଜନ ପରିବର୍ଗ ସର୍ବେ ନିଦ୍ରାଗତ ।
ରାଜାଙ୍କ ପୁଷ୍ପାଚ୍ଛାଦିତ ଶବ ପାଶେ ଯାଇ
ଉଭୟେ ବସି ରହିଲେ ଶବକୁ ଅନାଇ ।
ସମାଧି ଲଗାଇ ଦୁହେଁ ହେଲେ ଉପବିଷ୍ଟ
ରତ୍ନ ଖମ୍ଭେ ଖୋଦିତ କି ଛନ୍ତି ଚିତ୍ରପଟ୍ଟ ।
ସକଳ ଦୁଶ୍ଚିନ୍ତା ତାଙ୍କ ହେଲା ନିବାରିତ
ଆବର ଇନ୍ଦ୍ରିୟମାନ ହେଲେ ସଙ୍କୁଚିତ ।
ଦିବାଭାଗେ ଫୁଟିଥିବା ଦୁଇ ପଦ୍ମ ପରି
ଉଭୟେ ଦିଶନ୍ତି ମ୍ଳାନ ସନ୍ଧ୍ୟା ଦେଖି କରି ।
ଶରଦ ଆକାଶେ ଯଥା ପର୍ବତ ଉପର
ଶୁଭ୍ର ମେଘ ଖଣ୍ଡ ଦିଶେ ଅତି ଚମତ୍କାର ।
ସେହିପରି ଦେଖାଯାନ୍ତି ଦେବୀ ଓ ମହିଷୀ
ନୟନ ମନ ହରନ୍ତି ଚାରୁ ଶୁଭ୍ର କେଶୀ ।
ନିର୍ବିକଳ୍ପ ସମାଧିରେ ବାହ୍ୟ ଜ୍ଞାନ ଅସ୍ତ
ମଧୁ ଆଗମେ ଦିଶନ୍ତି ଲତିକା ଯେମନ୍ତ ।
ଭ୍ରାନ୍ତିପୂର୍ଣ୍ଣ ଅଟେ ଭବ ବାହାରେ ଭିତରେ
ଏହି ଚିନ୍ତା ନାଚିଉଠେ ତାଙ୍କରି ଅନ୍ତରେ ।
ଯେତେକ ଦୃଶ୍ୟ ପିଶାଚ ତାହାଙ୍କର ଥିଲା
ଅବିଳମ୍ବେ ସେ ସକଳ ତିରୋହିତ ହେଲା ।
ଶ୍ରୀରାମଙ୍କୁ କହୁଛନ୍ତି ବଶିଷ୍ଠ ମହର୍ଷି
"ଲୀଳା" "ବାଣୀ" ଯୋଗଲୟ ଶୁଣ ରାଜର୍ଷି ।
ଯୋଗବଳେ ନାରୀଦ୍ୱୟ ଏମନ୍ତ ଜାଣିଲେ
ଦୃଶ୍ୟମାନ ଜଗତର ଅଭାବ ମଣିଲେ ।
ସଦା ଅନୁଭବ କରିଅଛି ମୁଁ ଶ୍ରୀରାମ
ଜଗତର ଅଳୀକତା ପଦେ ପଦେ ଜାଣ ।
ଶଶ-ଶୃଙ୍ଗ, ମୃଗତୃଷ୍ଣା ପରି ଏ ଜଗତ
ସଦା ଅନାଭୂତ ହୁଏ ମୋତେ ରଘୁନାଥ ।
ବିଶ୍ୱାସ ହେଉ ନା ନୋହୁ, ଯାହା ପୂର୍ବେଥିଲା
ବର୍ତ୍ତମାନ ନାହିଁ ବୋଲି ତା' ସ୍ଥିର ହୋଇଲା ।
ଦୃଶ୍ୟ, ଦର୍ଶନ ବିମୁକ୍ତ ହୋଇ ନାରୀଦ୍ୱୟ
ଶାନ୍ତ ଓ କେବଳ ଭାବେ ରହିଲେ ତନ୍ମୟ ।
ଚନ୍ଦ୍ରାର୍କ ନକ୍ଷତ୍ର ଶୂନ୍ୟ ଆକାଶ ଯେପରି
ତଥା ଶାନ୍ତଭାବ ନାରୀଇଶ ଛନ୍ତି ଧରି ।
ଆକାଶ ଅଛି ଅଥଚ ବାୟୁ ନ ଚଳଇ
ଏପରି ପ୍ରଶାନ୍ତଭାବ ଧରିଛନ୍ତି ଦୁଇ ।
**ଜ୍ଞାନାଭିମାନ ଶରୀର ବାଗ୍‌ଦେବୀ ତେଜିଲେ**
**ଦେହାଭିମାନ ଶରୀର ରାଣୀ ତ୍ୟାଗକଲେ ।**
ଧ୍ୟାନ-ଜ୍ଞାନେ ଦିବ୍ୟରୂପ ଧରିଣ ସେ ଥାନ୍ତି
ନଭଦେଶେ ବିଚରଣ କରି ବୁଲୁଥାନ୍ତି ।
ଜ୍ଞାନମୟ କଳେବର ଉଭୟ ଧରିଲେ
ଗୃହମଧ୍ୟେ ଥାଇ ଚିଦାକାଶ ରୂପ ନେଲେ ।
ଯଦିଓ ସେ ଧରିଛନ୍ତି ଚିଦାକାଶ ରୂପ
ତଥାପି ଛାଡ଼ି ନାହାନ୍ତି ସଂକଳ୍ପ ସ୍ୱରୂପ ।
ସ୍ନେହବସେ ହାତ ଧରାଧରି ହୋଇଛନ୍ତି
ଆକାଶ ମଣ୍ଡଳ ବୁଲି ଦର୍ଶନ କରନ୍ତି ।
ଲଳିତଲୋଚନା ସେହି ଲଳନା ଯୁଗଳ
ପୂର୍ବଜ୍ଞାନ ବଶବର୍ତ୍ତୀ ହୋଇ ତତକାଳ ।
ଦୂର ଦୂରାନ୍ତର ଦେଶେ ଆକାଶେ ଗମନ
କରି ଚାଲିଥାନ୍ତି, କୋଟି କୋଟି ଯେ ଯୋଜନ ।
ହେଲେହେଁ ତାଙ୍କ ଶରୀର ଚିଦାକାଶମୟ
ସାଧମତେ ବୁଲନ୍ତି ସେ ଚିତ୍ତକରି ଥୟ ।

ସଂକଳ୍ପ-ଦୃଶ୍ୟ ଦର୍ଶନେ ହୋଇ ପରିତୃପ୍ତା
ପରସ୍ପର ପ୍ରତି ହେଲେ ସ୍ନେହେ ଅନୁରକ୍ତା ।

**ଇତିଶ୍ରୀ ଯୋଗବାଶିଷ୍ଠ ଉତ୍ପତ୍ତି ପ୍ରକରଣେ ଲୀଳା ବିଜ୍ଞାନ-ଦେହାକାଶ ସମାଗମନ ବର୍ଣ୍ଣନେ ନାମ ସପ୍ତଦଶ ସର୍ଗଃ ।**



## ଅଷ୍ଟାଦଶ ସର୍ଗଃ

## ଆକାଶ ଗମନ ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ ସେହି ଦୁଇ ନାରୀ
ହସ୍ତ ଧରାଧରି ହୋଇ ନଭଦେଶେ ଚଳି ।
ଅତି ଦୂରତର ନଭ କରିଣ ଲଙ୍ଘନ
ଅସୀମତ୍ୱ ତାହାର ଯେ କଲେ ନିରୀକ୍ଷଣ ।
ଦେଖନ୍ତି ଆକାଶ ଦିଶେ ଅତୀବ ଗମ୍ଭୀର
ପ୍ରଳୟ କାଳୀନ ସିନ୍ଧୁପରି ସୁଗମ୍ଭୀର ।
ନିର୍ମଳ, କୋମଳ ଶୁଭ୍ର ସୁଖଭୋଗପ୍ରଦ
ଆନନ୍ଦଦାୟକ, ସୁକୋମଳ ପୁଣି ସ୍ନିଗ୍ଧ ।
କୋମଳ ମୃଦୁଳ ବାୟୁ ସ୍ପର୍ଶେ ନିରନ୍ତର
ସୁଖରାଶି ଦାନ କରେ ଅତି ମନୋହର ।
ଚିତ୍ତର ଆହ୍ଲାଦକାରୀ ଅତିବ ସୁନ୍ଦର
ଶୂନ୍ୟ, ମହାଶୂନ୍ୟମୟ ମନ ମୁଗ୍ଧକର ।
ସେ ଜଳରେ ସ୍ନାନ କଲେ, ସୁଖ ଅନୁଭବ
ପ୍ରସନ୍ନ ଚିତ୍ତ ସଦୃଶ ଆନନ୍ଦ ବିଭବ ।
ଅତୀବ ଶୁଦ୍ଧ ଗମ୍ଭୀର ଅତୀବ ପ୍ରସନ୍ନ
ସନ୍ଥ ଜନ ମନ ଠାରୁ ଅତି ସୁପ୍ରସନ୍ନ ।
ଏସନ ନଭସାଗରେ କରିଣ ସ୍ନାହାନ
ମେରୁଶୃଙ୍ଗ ମେଘ ଦେଶେ କଲେ ଅବସ୍ଥାନ ।
କେବେ ଦିଗ ଦିଶେ କେବେ ଚନ୍ଦ୍ରମା ମଣ୍ଡଳେ
ଅବସ୍ଥାନ କରୁଥାନ୍ତି ମନ କୁତୁହଳେ ।
ସିଦ୍ଧ, ଗନ୍ଧର୍ବ ମଣ୍ଡଳେ ହୁଅନ୍ତେ ପ୍ରବେଶ
ନାସାରେ ବାଜିଲା ଆସି ପାରିଜାତ ବାସ ।
ସେଠାରେ ବିଶ୍ରାମ ପାଇଁ କଲେକ ନିବାସ
ତହୁଁ ଯାଇ ବିଦ୍ୟୁତ୍ ମେଘ ଦେଶେ ପରବେଶ ।
ଏକ ସରୋବରୁ ଯଥା ଦୁଇଟି ଭ୍ରମରୀ
ଅନ୍ୟ ସରୋବରେ ଯାନ୍ତି ସନ୍ତରଣ କରି ।
ତାଦୃଶ ସେ ନାରୀଦ୍ୱୟ ଅନେକ ବୁଲିଲେ
ଶେଷେ ନଭ ମଧ୍ୟେ ମହାବସ୍ତୁ ଏ ଦେଖିଲେ ।
ଅନ୍ୟକିଛି ନୁହେଁ ତାହା ଅଟେ ତା ଭୁବନ
ଲୋକପୁଞ୍ଜ ବାସକରି ଛନ୍ତି ତା ମଧ୍ୟେଣ ।
ଦେଖନ୍ତି ସେ ବ୍ୟୋମଗର୍ଭେ ଅସଂଖ୍ୟ ଭୁବନ
କୋଟି ବ୍ରହ୍ମାଣ୍ଡ ଅଛନ୍ତି ତା' ଅନ୍ତର୍ଦେଶେଣ ।
ବାକ୍‌ଦେବୀ ତା'ସବୁ ପୂର୍ବୁ ଦେଖି ସାରିଛନ୍ତି
କିନ୍ତୁ କେଭେ ଲୀଳା ତାହା ଦେଖି ତ ନାହାନ୍ତି ।
ଦାମୋଦର ପୁରେ, ଯହିଁ କୋଟି ବିଶ୍ୱ ଥାଇ
ମଣିମାଳା ପରି ବିଶ୍ୱେ ଛନ୍ତି ଗୁନ୍ଥାହୋଇ ।
କାଞ୍ଚନ ପର୍ବତମାନ ହିମାଳୟ ପରି
ଜ୍ୟୋତି-ସ୍ରୋତ ଝଟକଇ ଅଗ୍ନି ଶିଖା ସରି ।
ତାହାଦେଖି ମନେହୁଏ ପ୍ରଳୟ ଅନଳ
ଗ୍ରାସିବା ପାଇଁକି ବିଶ୍ୱ, ଶିଖା ଉଠେ ତାର ।
ପାରିଜାତ ଲତା କାହିଁ ବୈଦୂର୍ଯ୍ୟ ଭୂଷିତ
ବେଗଶାଳୀ ସିଦ୍ଧଗଣ ଗଗନେ ଧାବିତ ।
କାହିଁ ଦେବ ନାରୀଗଣ ବିମାନ ଆରୋହି
ଗୀତ ବାଦ୍ୟ ଧ୍ୱନିକରି ବ୍ୟୋମେ ଯାନ୍ତି ବାହି ।
କାହିଁ ମାୟାବି ଅସୁରେ ଅଦୃଶ୍ୟ ରହିଣ
ଗମନା ଗମନ କରୁଛନ୍ତି ଅନୁକ୍ଷଣ ।
କାହିଁ ଯକ୍ଷ, କୁଷ୍ମାଣ୍ଡ ଓ ପିଶାଚ ମଣ୍ଡଳ
ନୃତ୍ୟ କରି ଧାଇଁଛନ୍ତି ହୋଇ ଦଳ ଦଳ ।
କାହିଁ ବଜ୍ର ନିର୍ଘୋଷରେ ଦେବଙ୍କ ବିମାନ
ବାୟୁଗତି କରି ଦେଉଅଛି ଧାବମାନ ।
ଘନକାଳେ କଳାମେଘେ ବିଜୁଳି ସମାନ
ଗ୍ରହାଦି ଶୋଭାୟମାନ ସୁନୀଳ ଗଗନ ।
କାହିଁ ସୂର୍ଯ୍ୟ ସନ୍ନିହିତ ନଭ ମଣ୍ଡଳରେ
ଅଳ୍ପସିଦ୍ଧ, ସିଦ୍ଧଗଣ, ତପନ ତାପରେ ।
ଦଗ୍ଧ କଳେବର ହୋଇ ସେ ସ୍ଥାନ ତେଜନ୍ତି
ଅଶ୍ୱନିଃଶ୍ୱାସେ ବିମାନ ଦୂରେ ଉଡ଼ିଯାନ୍ତି ।
କାହିଁ ଲୋକପାଳ ପୁଣି ଅପସରାଗଣ
ନୃତ୍ୟ କରି ଶ୍ରମ ଝାଳ କରନ୍ତି ବର୍ଷଣ ।
କାହିଁ ଦେବୀ ଗୃହୁ ଧୂମ୍ର ହୋଇଣ ନିର୍ଗତ
ମେଘ ପରି ନଭଦେଶ କରେ ଆଚ୍ଛାଦିତ ।
ଦେବଙ୍କ ଦ୍ୱାରା ଆହୂତ ଅପସରା ଗଣ
ଅଗ୍ରେ ପହଞ୍ଚି ଯିବାକୁ ହୁଅନ୍ତି ଧାବମାନ ।

ବସ୍ତ୍ର ଆଭୂଷଣମାନ ଇତସ୍ତତଃ ହୋଇ
ନଭଦେଶେ ଉଡ଼ିଯାନ୍ତି କେ' କାହିଁ ପଡ଼ଇ ।
କାହିଁ ବାରିଦ ନିବାସୀ ସିଦ୍ଧ ମହାବଳ
ଯାତାୟତେ ଭାଙ୍ଗୁଛନ୍ତି ପରବତ ମାଳ ।
କାକ, ଗୃଧ୍ର, ଉଲ୍ଲୁକାଦି କାହିଁ ସମବେତ
ଡାକିନୀ ପିଶାଚୀଗଣ କରୁଥାନ୍ତି ନୃତ୍ୟ ।
ଅଭିଷ୍ଟ ସାଧନ ପାଇଁ ଯୋଗିନୀଏ ମାତି
ଶ୍ୱାନ, କାକ ରୂପଧରି ବୁଲି ଫେରୁଛନ୍ତି ।
ନଭଚାରୀଗଣ କାହିଁ ନୃତ୍ୟଗୀତ କରି
ଉନ୍ମତ୍ତପ୍ରାୟ ଭ୍ରମନ୍ତି ଇଛା ଅନୁସରି ।
ଯା'ର ନିରନ୍ତର ପରିଭ୍ରମଣ ନିମିତ୍ତ
ଶୁକ୍ଳ, କୃଷ୍ଣପକ୍ଷ ଦୁହେଁ ହେଲେ ବିଭାଜିତ ।
ସେ ଜ୍ୟୋତିଶ୍ଚକ୍ର ନକ୍ଷତ୍ର ପୁଞ୍ଜେ ସୁଶୋଭିତ
ପାଦଦେଶୁ ତ୍ରିପଥଗା ଖରେ ପ୍ରବାହିତ ।
ସ୍ଥିରଚିତ୍ତେ ଦେବବାଳା ତାହାର ସୌନ୍ଦର୍ଯ୍ୟ
ଦେଖିକରି କୁତୁହଳେ ହୁଅନ୍ତି ଆଶ୍ଚର୍ଯ୍ୟ ।
ବଜ୍ର, ଚକ୍ର, ଶୂଳ, କୁନ୍ତ ଶାକ୍ତ୍ୟାଦି ଆୟୁଧେ
ଶରୀର ଧରି କ୍ରିଡ଼ନ୍ତି, ଦେଖନ୍ତି ବିବୁଧେ ।
କାହିଁ ନାରଦ ନାଚନ୍ତି ବୀଣା ବାଇ ବାଇ
ହରିନାମ ଗାଉଛନ୍ତି ଗେହ୍ଲାଇ ଗେହ୍ଲାଇ ।
କାହିଁ ମାତୃଗଣ କାହିଁ ଯୋଗେଶ୍ୱରୀଗଣ
କାହିଁ ସମାଧି ବିଶ୍ରାନ୍ତ ମୁନିଋଷିମାନ ।
କିନ୍ନରୀ ଗନ୍ଧର୍ବୀ କାହିଁ, ସୁରପତ୍ନୀଗଣ
ନୃତ୍ୟ ଗୀତେ କରୁଛନ୍ତି ମନ ବିନୋଦନ ।
ରୁଦ୍ରପୁରୀ ପରେ ବ୍ରହ୍ମପୁରୀ ପହଞ୍ଚିଲେ
ମାୟାକୃତ ପୁରୀ ମଧ୍ୟେ ବିଚରଣ କଲେ ।
କାହିଁ ଖେଳଇ ଚନ୍ଦ୍ରମା କାନ୍ତିର ଲହରୀ
ସୁଧାପୂର୍ଣ୍ଣ ସରୋବର କାହିଁ ନେତ୍ରହରି ।
କାହିଁ ମାୟା ପରିପୂର୍ଣ୍ଣ ମାୟା ସରୋବର
କାହିଁ ଶକ୍ତି ଘନିଭୂତ ସରୋବର ଜଳ ।
କାହିଁ ଚନ୍ଦ୍ରମା ଉଇଁଛି କାହିଁ ଦିବାକର
କାହିଁ ଗାଢ଼ତମୀ ରାତ୍ରୀ ନ ଦିଶେ ଶରୀର ।
ନିହାର-ପଟଳା ଏବଂ ଧୂସର ବରନା
ସନ୍ଧ୍ୟାରାଣୀ ଦେଖାଦେଲେ ନାହିଁ ତା' କଳନା
ବରଷନ୍ତା ମେଘେ କାହିଁ ଜଳନ୍ତା ଅନଳ
ପୂର୍ବାଦି ଦିଗ ସକଳ କାହିଁଛନ୍ତି ଠୁଳ ।

ଲକ୍ଷଯୋଜନ ଭୂଧର କାହିଁ ବିରାଜଇ
କେଉଁ ସ୍ଥାନ ଅବିନାସୀ ତମେ ଭରିଛଇ ।
ସୂର୍ଯ୍ୟ ଅନଳର ତେଜ କାହିଁ ଭୟଙ୍କର
ମହା ହିମରାଶି ପୂର୍ଣ୍ଣ କେବଣ ମନ୍ଦିର ।
ତୁଙ୍ଗ ପ୍ରାଚୀରବେଷ୍ଟିତ ଦେବତା ମନ୍ଦିର
ଦୈତ୍ୟଙ୍କ ଦାଉରେ ଭାଙ୍ଗିପଡ଼ିଛି ସତ୍ୱର ।
ଧୂମକେତୁ ଆଚ୍ଛାଦିତ କେବଣ ଆକାଶ
ଶୁଭ୍ରଗହ ମଣ୍ଡଳ ଯେ କାହିଁ ହୁଏ ଦୃଶ୍ୟ ।
ମୟୂର ଓ ଚନ୍ଦ୍ରଚୂଡ଼ କାହିଁ ପନ୍ତି ପନ୍ତି
ଦେବୀ, ବିଦ୍ୟାଧରୀ କାହିଁ ଭରି ରହିଛନ୍ତି ।
କାହିଁ ମେଘମାଳା ଦେଖି ଆନନ୍ଦ ବିହ୍ୱଳ
କାର୍ତ୍ତିକ ବାହାନ କରେ ନୃତ୍ୟ ମନୋହର ।
କେଉଁ ସ୍ଥାନେ ଶୁକପକ୍ଷୀଙ୍କର ଯେ ଗହଳ
ଶ୍ୟାମ ବର୍ଣ୍ଣ ଧରିଛନ୍ତି ଗଛ, ପତ୍ର, ଡାଳ ।
କେଉଁସ୍ଥଳେ ଦେବପୁର, କାହିଁ ଦୈତ୍ୟପୁର
ଗିରି ଭେଦକରି ବାୟୁ ବହଳ ପ୍ରଚୁର ।
ସପ୍ତକୁଳାଚଳ କାହିଁ ନେତ୍ରକୁ ଦିଶନ୍ତି
ପକ୍ଷଧାରୀ ଶୈଳ କାହିଁ ଖଗଭ୍ରମ ଦ୍ୟନ୍ତି ।
ମାୟାକୃତ ନଭପଦ୍ମ କାହିଁ ଦେଖାଯାଏ
ଶୀତଳ ଜଳ ସରସୀ କାହିଁ ଶୋଭାପାଏ ।
ସୁଗନ୍ଧ ଗନ୍ଧବହ ଯେ କାହିଁ ପ୍ରବାହିତ
କେଉଁ ସ୍ଥଳ ପ୍ରଜ୍ୱଳିତ ଅନଳେ ତପନ ।
ଅତୀବ ପ୍ରଶାନ୍ତ କାହିଁ ବହେ ସମୀରଣ
ମେଘମାଳ ବିରାଜନ୍ତି ମେରୁଗିରି ସମ ।
କାହିଁ ବର୍ଷାଋତୁ ପରି ବାରିଦ ଗର୍ଜ୍ଜନ
ତୁମୁଳ ସଂଗ୍ରାମେ ରତ ସୁରାସୁର ଗଣ
କାହିଁ ବ୍ୟୋମପଦ୍ମ ବିହାରିଣୀ ହଂସୀମାନ
ଅଜବାହାନ ହଂସଙ୍କୁ କରନ୍ତି ଆହ୍ୱାନ ।
କାହିଁ ଗଙ୍ଗାତଟସ୍ଥିତ ମୃଦୁ ସମୀରଣ
ସ୍ୱର୍ଗୀୟ ନଳୀନ ଶୋଭା କରଇ ହରଣ ।
ଗଙ୍ଗାଦି ସରିତ ଜଳେ ଜଳଜନ୍ତୁଗଣ
ଦେବଦେହଧରି ସ୍ୱର୍ଗରାଜ୍ୟେ ଉଡ଼୍ଡ୍ୟମାନ ।
ପାତାଳଗାମୀ ହୋଇଲେ କାହିଁ ସେ ତପନ
ଚନ୍ଦ୍ରଗ୍ରହଣ ଦେଖନ୍ତି ସେ ରମଣୀଗଣ ।
ପୁଣି କାହିଁ ସେ ଦେଖନ୍ତି ସୂର୍ଯ୍ୟଙ୍କ ପରାଗ
ରାହୁ କେତୁ ଖେଳ ଦେଖି ବଢ଼େ ତାଙ୍କ ରାଗ ।

ମାୟା ଫୁଲବନ କାହିଁ ସରଗ ଅନିଳେ
ପ୍ରକମ୍ପିତ ହୋଇ, ଫୁଲପଡ଼େ ଧରାତଳେ ।
ମଶକ ଯଥା ପାଚିଲା ଉଦୁମ୍ବର ମଧ୍ୟେ
ପରିଭ୍ରମଣରେ ରତ ଥାଏ ନିରବଧେ ।
ତେସନ ହେ ରଘୁପୁତ୍ର ଲୀଳା ସରସ୍ୱତୀ
ଆକାଶ ଉଦରେ ପରିଭ୍ରମଣ କରନ୍ତି ।
ଆକାଶ ଚରଙ୍କ ବଇଭବ ଦରଶନ
କରିଣ ମୁଗ୍ଧ ହୋଇଲେ ସେ ମରଣୀଗଣ ।
ତତ୍‌ପରେ ସେମାନେ ନଭଦେଶ ଅତିକ୍ରମି
ଅବତରଣ ହୋଇଲେ ଭୂମଣ୍ଡଳଗାମୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳାଉପାଖ୍ୟାନେ ଆକାଶଗମନ**
**ବର୍ଣ୍ଣନେ ନାମ ଅଷ୍ଟାଦଶ ସର୍ଗଃ ।**



## ଊନବିଂଶ ସର୍ଗଃ

## ଭୂଲୋକ ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ରାମ ଦେବୀ ସରସ୍ୱତୀ
ଲୀଳାକୁ ଯେ ଭୂମଣ୍ଡଳ ଦେଖାଇ ଦିଅନ୍ତି ।
ନଭ ମଣ୍ଡଳରୁ ଭୂମଣ୍ଡଳ ସେ ଦେଖିଲେ
ଗିରିଗୁହାସ୍ଥ ବ୍ରାହ୍ମଣ ଗୃହକୁ ଚଳିଲେ ।
ପଥେ ଭେଟନ୍ତି ବ୍ରହ୍ମାଣ୍ଡ-ବିରାଟ ପୁରୁଷ
ସାରା ଭୂମଣ୍ଡଳ ତାର ହୃଦପଦ୍ମଦେଶ ।
ଅଷ୍ଟଦିଗ ଅଟନ୍ତି ଯେ ସେ ପଦ୍ମର ଦଳ
ଗିରି ସମୂହ ଅଟନ୍ତି ପଦ୍ମର କେଶର ।
ତା' ଶିରା ପ୍ରଶିରା ଜାଣ ସରିତ ସକଳ
ହିମକଣାକୁ ବୁଝିବ ମଧୁବିନ୍ଦୁ ତାର ।
ସର୍ବରୀ ଅଟଇ ସେହି ପଦ୍ମର ଭ୍ରମରୀ
ଅସଂଖ୍ୟ ପ୍ରାଣୀବୃନ୍ଦ ଯେ ତା' ମଶକସରି ।
ତା ମୃଣାଳ ତନ୍ତୁ ସର୍ବ ଭୋଗ୍ୟବସ୍ତୁସମ
ଜଳପୂର୍ଣ୍ଣ ପାତାଳାଦି ତା ରନ୍ଧ୍ର ସମାନ ।
ଦିବସାଲୋକରେ ତାର ବୃଦ୍ଧିପାଏ କାନ୍ତି
ଶୃଙ୍ଗାରାଦି ନବରସ ଆର୍ଦ୍ରତା ବୋଲାନ୍ତି ।
ଆଦିତ୍ୟ ଦେବତା ତାର ହଂସ ବୋଲି ଜାଣ
ସେ ପଦ୍ମ ସଂକୋଚିଯାଏ ଯାମିନୀ ଯୋଗେଣ ।
ନାଗରାଜ ବାସୁକି ଯେ ମୃଣାଳ ତାହାର
ଆସ୍ୱଦ ଅଟଇ ତାର ସପତ ସାଗର ।
ସେ ମହାସମୁଦ୍ର ଯେବେ ହୁଅଇ କମ୍ପିତ
ଦିଗ୍‌ବଳୟ ସହ ପଦ୍ମ ହୁଏ ପ୍ରକମ୍ପିତ ।
ସେ ଭୂପଦ୍ମ ମଧ୍ୟସ୍ଥଳେ ନଗ୍ର, ଗ୍ରାମ, ନଦୀ
ପ୍ରତିଷ୍ଠିତ ଜମ୍ବୁଦ୍ୱୀପ – ମହାକର୍ଣ୍ଣିକାଦି ।
ଜନକ ଅଟଇ ଯେହ୍ନୁ *ସୁମେରୁ ଆଦିର
ମହାବୀଜ ଅଟଇ ଯେ ବୀଜ ଶରୀରର ।
ତାହା ଏହି ପଦ୍ମନାଳ ମୂଳସ୍ଥ ଅସୁର-
ରମଣୀଙ୍କ ସୁଖଛେଦ୍ୟ ମୃଣାଳ ଅଙ୍କୁର ।
କଳିକା ବୀଜ ଅଟନ୍ତି ସପ୍ତକୁଳାଚଳ
ମଧ୍ୟସ୍ଥଳେ ବିରାଜଇ ସୁମେରୁ ଭୂଧର ।
ନଭଚୁମ୍ବି ଅଟଇ ସେ ମେରୁ ଗିରିବର
ହିମ ବିନ୍ଦୁମାନତାର ମଧ୍ୟେ ସରୋବର ।
ଧୂଳିପଟଳ ଏଥି ଯେ ପରାଗର ପରି
ଶୈଳ ସକଳ 'କେଶର' କର୍ଣ୍ଣିକା ଯେପରି ।
ଏ ସକଳ ଜୀବଗଣ ଭ୍ରମେ ପରିପୂର୍ଣ୍ଣ
ଏ ମହା ଦ୍ୱୀପଟି ସପ୍ତ ଯୋଜନ ପ୍ରମାଣ ।
ସାଗର-ଭ୍ରମର ପ୍ରତି ପୂର୍ଣ୍ଣିମାରେ ଆସି
ବେଳାଭୂମି ମାଡ଼ିଯାଏ ଆଗୋ ଚାରୁହଂସି ।
ଅଷ୍ଟ ଦିଗପାଳ ପୁଣି ସପତ ସାଗର
ରାଜନ୍ତି ଷଟ୍‌ପଦତୁଲ୍ୟ ତହିଁ ନିରନ୍ତର ।
ଏହି ଜମ୍ବୁଦ୍ୱୀପ ନବ ଭାଗରେ ବିଭକ୍ତ
ପରସ୍ପର ଭାତୃଭାବେ ଛନ୍ତି ଅବସ୍ଥିତ ।
ଏହି ମହାଦ୍ୱୀପ ଲକ୍ଷେ ଯୋଜନ ବିସ୍ତାର
ବହୁ ଜନପଦ ଭରି ରହିଛି ତହିଁର ।
ଦୁଇଗୁଣ ପରିମିତ ଲବଣ ସାଗର
ଘେରି ରହିଛି ଏହାକୁ ବଳୟ ଆକାର ।
ଏ ଦ୍ୱୀପର ଦୁଇଗୁଣ ଶାକଦ୍ୱୀପ ଜାଣ
କ୍ଷୀରସିନ୍ଧୁ ବେଢ଼ିଅଛି ବଳୟାକାରେଣ ।
ଶାକଦ୍ୱୀପ ଦୁଇଗୁଣ କୃଶଦ୍ୱୀପ ଜାଣ
ଘୃତ ସମୁଦ୍ର ଘେରିଛି ଚାରିପାରୁଶେଣ ।

* ସୁମେରୁ – ମହାମେରୁ ।

ତାହାପରେ କ୍ରୌଞ୍ଚଦ୍ୱୀପ ତା'ର ଦୁଇଗୁଣ
ଦଧିସିନ୍ଧୁ ଘେରିଅଛି ଦ୍ୱିଗୁଣ ପ୍ରମାଣ ।
ଶାଲ୍ମଳୀ ଦ୍ୱୀପ ଅଟଇ ତା'ର ଦୁଇଗୁଣ
ସୁରାସାଗର ବେଢ଼ିଛି ଦ୍ୱିଗୁଣ ପ୍ରମାଣ ।
ତାହାପରେ ଦୁଇଗୁଣ ପ୍ଲକ୍ଷଦ୍ୱୀପ ଅଟେ
ଇକ୍ଷୁସାଗର ବେଢ଼ିଛି ତା'ର ଚାରିପଟେ ।
ତତ୍‌ପରେ ତା' ଦୁଇଗୁଣ ଅଟଇ ପୁଷ୍କର
ଦୁଇଗୁଣ ବେଢ଼ିଅଛି ସୁସ୍ୱାଦୁ ସାଗର ।
ବିଷମ ଆକାରେ ପଦ୍ମପତ୍ର ସରୋବରେ
ଶୋଭାପାଏ ଜଳରାଶି ଜିଣି ନୀଳିମାରେ ।
ତଥା ସପ୍ତଦ୍ୱୀପ ପୁଣି ସପତ ସମୁଦ୍ର
ମହାକାଶେ ଶୋଭାପାଇ ବଢ଼ାନ୍ତି ଆନନ୍ଦ ।
ଏ ସବୁ ଦ୍ୱୀପଙ୍କ ଦଶଗୁଣ ପରିମାଣ
ନିମ୍ନଭୂମି ରହିଅଛି ଗର୍ତ୍ତର ପ୍ରମାଣ ।
ପାତାଳପୁର ନାମରେ ବିଦିତ ଜଗତେ
ନାନା ଧାତୁ ପରିପୂର୍ଣ୍ଣଛନ୍ତି ସେହି ଗର୍ତ୍ତେ ।
ଏ ସବୁର ଦଶଗୁଣ ପାତାଳ ପଥରେ
ଅଛି ସର୍ବ ଉଚ୍ଚ ଲୋକାଲୋକ ଶୈଳବରେ ।
ଏହି ଶୈଳ ପାଦଦେଶେ ଭୀଷଣ ଗଭୀର
ମହାମହା ଗର୍ତ୍ତମାନ କେଡ଼େ ଭୟଙ୍କର ।
ସୂର୍ଯ୍ୟାଲୋକେ ପ୍ରକାଶିତ ଏହାର ଅର୍ଦ୍ଧାଂଶ
ତମସାଚ୍ଛନ୍ନ ଅଟଇ ଅପର ଯେ ଅଂଶ ।
ମଣିମାଣିକ୍ୟରେ ଶୋହେ ଅଗ୍ରଭାଗ ଯା'ର
ନାନା ପୁଷ୍ପେ ସୁଶୋଭିତ ଏହାର ଶିଖର ।
ଏହାପରେ ଅନ୍ୟ କିଛି ନାହିଁ ବୋଲି ଜାଣ
କେବଳ ଶୂନ୍ୟ ସଂସାର, ଶୂନ୍ୟର ପ୍ରମାଣ ।
ସାରା ଭୂମଣ୍ଡଳ ଦଶଗୁଣ ଏହି ଶୂନ୍ୟ
ଭୂତପ୍ରେତ ଯାତାୟାତ ନାହିଁ ଏହି ସ୍ଥାନ ।
ତଦୁପରି ଦଶଗୁଣ ମହାକାଳାନଳ
ରହିଅଛି ଶୋଷିନେବ ଆସିଲେ ତା' ବେଳ ।
ତଦୁପରି ଅଛି ଦଶଗୁଣ ପରିମିତ
ମହାବେଗଶାଳୀ ମହା ପ୍ରଳୟ ମରୁତ ।
ତଦୁପରି ଶତକୋଟି ଯୋଜନ ବିସ୍ତୃତ
ଘନ-ଗଗନ ମଣ୍ଡଳ ଅଛି ପରିବ୍ୟାପ୍ତ ।
ହେ ରାଘବ ସେ ମାନବୀ 'ଲୀଳା' ଏ ପ୍ରକାରେ
ସ୍ୱଗୃହ ଦେଖିଲେ ଭବ କଡ଼ାଇ ମଧରେ ।

ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ଲୀଳା ଉପାଖ୍ୟାନ ଭୂଲୋକ ଗମନ ବର୍ଣ୍ଣନେ
ନାମ ଊନବିଂଶ ସର୍ଗଃ ।



## ବିଂଶ ସର୍ଗଃ
## ସିଦ୍ଧ-ଦର୍ଶନ

ବୋଲନ୍ତି ବଶିଷ୍ଠ ଶୁଣ ଆହେ ରଘୁରାୟ
ବ୍ରହ୍ମାଣ୍ଡ ମଣ୍ଡଳୁ ଫେରି ସେ ରମଣୀଦ୍ୱୟ ।
ବଶିଷ୍ଠ ବ୍ରାହ୍ମଣ ଯେଉଁ ଗୃହେ ରହୁଥିଲେ
ସେ ଗିରିଗ୍ରାମ ଗୃହରେ ଯାଇଣ ମିଳିଲେ ।
ଅଦୃଶ୍ୟ ଭାବରେ ଦୁହେଁ ଭିତରକୁ ଯାଇ
ଅନ୍ତପୁର ମଣ୍ଡପକୁ ନିରେଖନ୍ତି ତହିଁ ।
ଗୃହସ୍ୱାମୀ ଲଭିଛନ୍ତି ଅକାଳ ମରଣ
ଲଳନାଙ୍କ ମୁଖପଦ୍ମ ଦିଶଇ ମଳିନ ।
ଦାସ ଦାସୀ ପୁରବାସୀ ଦୁଃଖରେ କାତର
ନୟନରୁ ଅଶ୍ରୁଧାର ଝରେ ନିରନ୍ତର ।
ପତ୍ରହୀନ ଜୀର୍ଣ୍ଣତରୁ ଯଥା ଅଶୋଭନ
ସ୍ୱାମୀ ନିଧନରେ ଗୃହ ଦିଶଇ ତେସନ ।
ଆନନ୍ଦ ଉତ୍ସବ କିଛି ନହୁଏ ସେ ପୁରେ
ବଜ୍ରାହତ ବୃକ୍ଷପରି ଦିଶନ୍ତି ସକଳେ ।
ସେମାନଙ୍କୁ ଦେଖି ଏହିପରି ଶୋକାକୁଳ
ସତ୍ୟ ସଂକଳ୍ପା ଲୀଳା ଯେ ହେଲେ ଚିନ୍ତାଶୀଳ ।
ମନେ ମନେ ଚିନ୍ତନ୍ତି ଯେ ସେ ରାଜରମଣୀ
ଏହି ଅଧିବାସୀଗଣ ଆମ୍ଭଙ୍କୁ ଏକ୍ଷଣି,
ଦେଖିପାରନ୍ତୁ, ଏ ସକଳ ଜଳ ଆବରଣ
ସାଧାରଣ ନାରୀରୂପେ କରନ୍ତୁ ଦର୍ଶନ ।
ଏହି ଚିନ୍ତା ସଙ୍ଗେ ସଙ୍ଗେ ଅବଲୀଳାକ୍ରମେ
ଗୃହବାସୀଏ ଦୁହିଙ୍କୁ ଦେଖନ୍ତି ଏସନେ ।
ଗୌରୀରୂପେ ସରସ୍ୱତୀ, ଲୀଳା ଲକ୍ଷ୍ମୀରୂପେ
ଉଭା ହୋଇଛନ୍ତି କି ସେ ସବୁରୀ ସମୀପେ ।
କୁହୁକ କି ଖେଳିଯାଏ ସବୁରି ନୟନେ
ଚନ୍ଦ୍ରମା କି ଖେଳିଯାଏ ମରତ ଭୁବନେ ?
ଆକସ୍ମିକ ଛାୟା ନାଚି ଉଠେ ସର୍ବନେତ୍ରେ
କହି ନପାରି ଅବାକ ରହନ୍ତି ସମସ୍ତେ ।

ନବ ପଲ୍ଲବେ ମଣ୍ଡିତ ପାଦପ ସକଳ
ଦେହ ଶୀତେଇ ପକାଏ ଦକ୍ଷିଣା ମୃଦୁଳ ।
ଆକାଶୁ ବର୍ଷିଆସେ କି ଅମୃତର ଦାରା
ପୁରବାସୀ ବୋଧକଲେ କି ଶୋକ ପାଶୋରା ।
ଚର୍ମନେତ୍ରେ ଦେଖି ଏହି ଅଦ୍ଭୁତ ବ୍ୟାପାର
ଦ୍ୱିଜପୁତ୍ର ଜ୍ୟେଷ୍ଠଶର୍ମା ଖୋଲେ ତା' ଅନ୍ତର ।
'ନମସ୍ତେ ତୁ ବନଦେବୀ' ଘେନ ମୋ ଭକତି
ପୁଷ୍ପାଞ୍ଜଳି ଅରପନ୍ତେ ସର୍ବେ କଲେ ନତି ।
ଜ୍ୟେଷ୍ଠଶର୍ମାଦି ସକଳ ପୁରବାସୀଗଣ
ବନଦେବୀଙ୍କୁ ଚାହିଁଣ ବୋଲନ୍ତି ବଚନ ।
'ଭୋ ମାତୃଗଣ ତୁମର ଜୟଲାଭ ହେଉ'
ଜଗତରେ ତୁମ ବାନା ସଦା ଉଡୁଥାଉ ।
ବୋଧହୁଏ ଆମ୍ଭ ଦୁଃଖ ବିନାଶନ ଅର୍ଥେ
ବିରାଜମାନ କରିଲ ଆଜି ଏ ଜଗତେ ।
ଅନ୍ୟକୁ ତ୍ରାଣକରିବା ସାଧୁଙ୍କ ସ୍ୱଭାବ
ପର ପରିତ୍ରାଣ କଲେ ମିଳେ ସ୍ୱର୍ଗଲାଭ ।
ଦେବୀଦ୍ୱୟ କହୁଛନ୍ତି ଜ୍ୟେଷ୍ଠଶର୍ମା ଶୁଣ
କିମ୍ପାଇଁ ତୁମର ଦୁଃଖ କହ ସେ କାରଣ ।

### ଜ୍ୟେଷ୍ଠଶର୍ମା ଉବାଚ

ଏହି ସ୍ଥାନେ ଥିଲେ ଏକ ବ୍ରାହ୍ମଣ ଦମ୍ପତି
ଧାର୍ମିକ, ଅତିଥିସେବୀ, ଦୀନଜନେ ପ୍ରୀତି ।
ବ୍ରାହ୍ମଣ ବତ୍ସଳ ସେହୁ ନୀତି ପରାୟଣ
ସକଳ ଶାସ୍ତ୍ରରେ ଥିଲେ ସେ ଅତି ନିପୁଣ ।
ଅଟନ୍ତି ଆମ୍ଭର ସେହୁ ଜନକ ଜନନୀ
ଶୋକସାଗରେ ଆମ୍ଭଙ୍କୁ ଭସାଇ ଗଲେଣି ।
ତେଣୁ ଆମ୍ଭଙ୍କୁ ସଂସାର ଶୂନ୍ୟପରି ଦିଶେ
କିପରି ଚଳିବୁ ଆମ୍ଭେ ବୁଦ୍ଧି ତ ନ ଦିଶେ ।
ଉପବାସେ କ୍ଷୀଣକାୟ ହେଲାଣି ଶରୀର
ରାତିଦିନ ନୟନରୁ ଗଡୁଅଛି ନୀର ।
ହତ ଦଶନ କେବେ ନଯାଇ ବିଫଳ
ନିର୍ବାପିତ କର ମାତ ଏ ଶୋକ ଅନଳ ।
ପୁତ୍ରର ବଚନ ଶୁଣି ଲୀଳା ମହାଦେଈ
କର ପ୍ରସାରିଣ ପୁତ୍ର ଶିର ପରଶଇ ।
ସକଳ ଦୁସ୍ତର ତାର ନିବାରଣ କଲେ
ପୁରବାସୀଙ୍କର ସର୍ବ କଲ୍ୟାଣ ସାଧିଲେ ।
ଦେବୀଦ୍ୱୟଙ୍କର ଦୃଷ୍ଟି ପଡ଼ିବାର ଫଳେ
ପୁରବାସୀଗଣ ସର୍ବେ ଶ୍ରୀସମ୍ପନ୍ନ ହେଲେ ।
କହନ୍ତି ଶ୍ରୀ ରାମଚନ୍ଦ୍ର ଶୁଣ ତପୋନିଷ୍ଠ
କି କାରଣେ ଲୀଳାରାଣୀ କଲେକ କପଟ ?
ମାତୃ ଶରୀରରେ ପୁତ୍ରେ ଦେଲେ ନାହିଁ ଦେଖା
ବର୍ଣ୍ଣନ କରି ଫେଡ଼ନ୍ତୁ ମୋର ମନ ଶଙ୍କା ।
କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ବାଳକଙ୍କୁ ଭୟଦିଏ ଭୂତପ୍ରେତ ଜ୍ଞାନ ।
ଭୂତ ପ୍ରେତ ଥିବା ଯେହୁ ମିଛ ବୋଲି ଜାଣେ
କେବେହେଁ ପିଶାଚ ଭୟ ନ ଆସେ ତା ମନେ ।
ଅଜ୍ଞଲୋକ ଶରୀରକୁ ସତବୋଲି ମଣେ
ବିଜ୍ଞ କିନ୍ତୁ ଏ ଶରୀର ମିଥ୍ୟାବୋଲି ଜାଣେ ।
ଜ୍ଞାନୀ ମନ ସର୍ବକାଳେ ଭ୍ରମଶୂନ୍ୟ ଥାଏ
ସାରା ଦୁନିଆକୁ ଚିଦାକାଶ ବୋଲି କହେ ।
ଅଜ୍ଞକୁ ସେ ଚିଦାକାଶ ଯେଉଁପରି ଦିଶେ ,
ତାର ପୃଥ୍ୱୀ ତାହା ପ୍ରତି ସେହିପରି ଦିଶେ ।
ପୃଥ୍ୟାଦିଭୂତ ଶରୀର ନଥିଲେ ହେଁ ବସ୍ତ
ଭାବନାବଳେ ତା' ସତ୍ତା ଜଣାଯାଏ ସ୍ୱଚ୍ଛ ।
ଜ୍ଞାନସୂର୍ଯ୍ୟ ଯେତେବେଳେ ହୁଅଇ ଉଦୟ
ଅଜ୍ଞାନ-ପୃଥିବୀ ଆଦି ଲଭଇ ବିଳୟ ।
ଯେବେ ସ୍ୱପ୍ନେ 'ଏହା ସ୍ୱପ୍ନ' ବୋଲି ଜଣାଯାଏ
ସ୍ୱପ୍ନରେ ଦେଖିବା ବସ୍ତୁ ଅଳୀକ ବୋଲାଏ ।
ତଥା ଜାଗରଣେ ପଞ୍ଚଭୂତ ଦେହଜ୍ଞାନ
ଅସ୍ତ ଗଲେ ଲୋପ ପାଏ ଏ ପୃଥିବୀ ଜ୍ଞାନ ।
'ପୃଥ୍ୟାଦି ସକଳ ଶୂନ୍ୟ, କିଛି ସତ୍ତା ନାହିଁ'
ଏ ରୂପ ଦୃଢ଼ଧାରଣା ଯେବେ ମନେ ଉଇଁ ।
ପୃଥ୍ୟାଦି ସକଳ ଶୂନ୍ୟ ହୁଏ ଅନୁଭୂତ
ଏବେ ବୁଝୁଥିବ ଏହି ତତ୍ତ୍ୱ ରଘୁନାଥ ।
ବିକ୍ଷିପ୍ତ ଚିତ୍ତ ପୁରୁଷ ଗୃହ ଭିତ୍ତି ଦେଖି
ଶୂନ୍ୟ ଶୂନ୍ୟ ମଣି ତାହା ଦେଖଇ ନିରେଖି ।
ଏହି ମନୋଭାବ ନେଇ ଅଦେହରେ ଦେହ
ଦେଖୁଥାଏ ନର, ଭ୍ରାନ୍ତିବଶ ନିଃସନ୍ଦେହ ।
ଯେ ସବୁ ଆକାର ଆମ୍ଭେ ଦେଖୁଛୁ ନେତ୍ରର
ଅଭ୍ୟାସ, ଭାବନା ହେତୁ ଲଭଇ ପ୍ରସାର ।
ବସ୍ତୁତଃ ଏପରି ନାହିଁ ଆକାର କାହାର
ଅଜ୍ଞାନେ ଭ୍ରମବଶତଃ ବସ୍ତୁର ପ୍ରଚାର ।

ଯେଣୁ ବସ୍ତୁଜ୍ଞାନ ଲାଭ କରିଥିଲେ ଲୀଳା
ପୃଥିବୀ ଯେ ଶୂନ୍ୟବସ୍ତୁ ତାଙ୍କ ମତେ ଥିଲା ।
ଏକମାତ୍ର ଚିତାକାଶ ଭ୍ରାନ୍ତି ବଶତରେ
ନାନାଦି ଆକାରେ ଦେଖାଯାନ୍ତି ଏ ନେତ୍ରରେ ।
ପ୍ରପଞ୍ଚମିଥ୍ୟା ବିଶ୍ୱାସ ଥିଲା ଲୀଳାଙ୍କର
ତେଣୁକରି ପୁତ୍ରସ୍ନେହ ନଥିଲା ତାଙ୍କର ।
ମୂଳ ଅଜ୍ଞାନକୁ ତେଣୁ ଏହି ଜ୍ଞାନବଳେ
ଉତ୍ପାଟିତ କରିପାରିଥିଲେ ସେହୁ ହେଲେ ।
ପୂର୍ବ ଶରୀର ଧାରଣେ ଉପାୟ ତାଙ୍କର
ନଥିଲା ବୋଲି ଜାଣିବ ଆହେ ରଘୁବୀର ।
ଯେବଣ ଜ୍ଞାନୀ କରିଛି ବ୍ରହ୍ମ ଦରଶନ
ତା' ନିକଟେ ପୁତ୍ର, ମିତ୍ର କିସ ପ୍ରଲୋଭନ ?
ତା' ସମୀପେ ଅନୁରାଗ ଅଥବା ବିଦ୍ୱେଷ
ସମ୍ଭବି ନପାରେ କେଭେଁ ଆହେ ରଘୁଈଶ ।
ବୋଧଜ୍ଞାନ ଉଦେହେଲେ ମାନବ ମନରେ
ବ୍ରହ୍ମବ୍ୟତୀତ କିଛି ହିଁ ନଦିଶେ ସଂସାରେ ।
ଲୀଳାଙ୍କ କର ପରଶ ଜ୍ୟେଷ୍ଠଶର୍ମାଶିରେ
ହୋଇତ ନଥିଲା ପୁତ୍ର ସ୍ନେହ ପ୍ରଭାବରେ ।
ଜ୍ୟେଷ୍ଠଶର୍ମା ପରମାର୍ଥ ଜ୍ଞାନଫଳ ତାହା
ପୂର୍ବ ସଞ୍ଚିତ ସୁକୃତ ତାର ଜାଣ ଏହା ।
ବିଶୁଦ୍ଧ ଜ୍ଞାନ ଉଦୟ ହୁଅନ୍ତେ ଶ୍ରୀରାମ
ଏ ସକଳ ବସ୍ତୁ ଜାଣ ସପନ ସମାନ ।
ଏକ ହିଁ ବ୍ରହ୍ମ ସର୍ବତ୍ର ଅଟେ ବିଦ୍ୟମାନ
ସ୍ମରଣ ରଖିବ ଏହା ହେ ରଘୁନନ୍ଦନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖ୍ୟାନେ ସିଦ୍ଧଦର୍ଶନ ବର୍ଣ୍ଣନେ**
**ନାମ ବିଂଶ ସର୍ଗଃ ।**



## ଏକବିଂଶ ସର୍ଗଃ

## ଲୀଳା ଜନ୍ମାନ୍ତର ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ଆହେ ରାମଚନ୍ଦ୍ର
କହୁଅଛି ସେହି ଦେବୀ ଦ୍ୱୟଙ୍କ ସମ୍ବାଦ ।
ଥିଲେ ହେଁ ସେ ଗୃହ ମଧ୍ୟେ ସେ ଉଭୟ ନାରୀ
ଅଦୃଶ୍ୟ ହୋଇ ରହିଲେ ଯଥା ଅଶରୀରୀ ।
ଗୃହଜନେ ମନେ ମନେ ଏମନ୍ତ ଭାବିଲେ
ଆମ୍ଭଙ୍କୁ ବନଦେବୀଏ ଅନୁଗ୍ରହ କଲେ ।
ଏହା ଭାବି ମନେ ମନେ ହେଲେ ଆନନ୍ଦିତ
ଦୁଃଖ ଭୁଲି ନିଜ ନିଜ କାର୍ଯ୍ୟେ ହେଲେ ରତ ।
ମୌନାବଲମ୍ବିନୀ ଦେଖି ଦେବୀ-ସରସ୍ୱତୀ
ଲୀଳାକୁ ଏ ପ୍ରଶ୍ନମାନ ପଚାରୁ ଅଛନ୍ତି ।
'ବାଳେ ! ତୁମେ ଜ୍ଞେୟତତ୍ତ୍ୱ ଶେଷେ ଅବଗତ
ହୋଇଛ, ଦେଖି ତା ମୁହିଁ ହେଉଛି ଉଷତ ।
ଆଉ ମଧ୍ୟ ଜାଣିଅଛ ସଂସାରର ଭ୍ରମ
ଅବଲୋକନ କରିଛ ପ୍ରତ୍ୟକ୍ଷ ଯେମାନ ।
ଏ ସକଳ ଅଟନ୍ତି ଯେ ସେହି ବ୍ରହ୍ମ ସତ୍ତା
ବ୍ରହ୍ମର ବାହାର କେଭେଁ ନୁହଇ ଏକଥା ।
ଏବେ ଆଉ କିସ କଥା ବୁଝିବାକୁ ଅଛି ?
ବୁଝାଇ ଦେବାକୁ ମୁହିଁ ବଚନ ଦେଉଛି ।
ବଶିଷ୍ଠ ରାମଚନ୍ଦ୍ରଙ୍କ ସନ୍ଦେହ ଦେଖିଣ
କହନ୍ତି ହେ ରାମ ଏବେ ସେହିକଥା ଶୁଣ ।
ଅଦୃଶ୍ୟା ରମଣୀଙ୍କର କଥୋପକଥନ
କେଭେ ଅସମ୍ଭବ ନୁହେଁ ହେ ରଘୁନନ୍ଦନ ।
ଉଷା, ଅନିରୁଦ୍ଧଙ୍କର ପ୍ରେମ ସମ୍ଭାଷଣ
ଦେବ ଇଚ୍ଛାରେ ସପନେ ଘଟିଲା ଯେସନ ।
ସରସ୍ୱତୀ, ଲୀଳାଙ୍କର କଥୋପକଥନ
ଅବିକଳ ସେହି ରୂପ ଜାଣିବ ଶ୍ରୀରାମ ।
ବାଣୀ ବୋଲନ୍ତି ଗୋ ଲୀଳେ ! ଆଉ କିସ ପ୍ରଶ୍ନ ?
ବୁଝାଇ କହିବି କହ ରମଣୀ ରତନ ।

### ଲୀଳା ଉବାଚ

ମୋ ସ୍ୱାମୀ ଜୀବାତ୍ମା ଯହିଁ ରାଜତ୍ୱ କରନ୍ତି
ଯାଇଥିଲି ତହିଁ ମୋତେ କେହି ନ ଚିହ୍ନନ୍ତି ।
କେମନ୍ତେ ଦେଖିଲା ମୋତେ ଏଠି ମୋର ପୁଅ ?
ସନ୍ଦେହ ମୋଚନ କରି ଏକଥା ବୁଝାଅ ।
ବାଣୀ ବୋଇଲେ ଗୋ ବତ୍ସେ ! ସ୍ୱାମୀ ପାଶେ ଗଲ
ଦୃଢ଼ ଅଭ୍ୟାସ ହାସଲ କରିତ ନଥିଲ ।
ତେଣୁ ନାଶ ନୋହିଥିଲା ତୁମ ଦ୍ୱୈତ ଜ୍ଞାନ
ଜନମି ନଥିଲା ସତ୍ୟ ସଂକଳପମାନ ।
ତପ ମଧ୍ୟେ ବାସ କରୁଥାଏ ଯେଉଁ ଲୋକ
ଶୀତଳତା ଜାଣିବାକୁ ହେବ କି ସେ ଶକ୍ୟ ?
ସ୍ୱାମୀଙ୍କ ନିମିତ୍ତ ତୁମେ ଯେବେ ଯାଇଥିଲ
'ତୁମେ ରାଜରାଣୀ ଲୀଳା' ଭୁଲି ତ ନଥିଲ ।

ଯେଣୁ ତୁମେ ଅଟ ସିଦ୍ଧ ସତ୍ୟକାମା ରାଣୀ
ତୁମର କାମନା ସିଦ୍ଧ ହୋଇଛି ସେ ଘେନି ।
ମୋର ପୁତ୍ର ମୋତେ ଆସି କରୁ ଦରଶନ
ଏ କାମନା କରି ତୁମେ ହେଲ ପୂର୍ଣ୍ଣକାମ ।
ଏବେ ଯଦି ସ୍ୱାମୀ ଦରଶନ ଇଚ୍ଛାକର
ପୂର୍ବପରି ସ୍ୱାମୀସହ ଚଳିବ ମୁକର ।

### ଲୀଳା ଉବାଚ

ଏହି ଗୃହାକାଶେ ସେହି ବଶିଷ୍ଠ ବ୍ରାହ୍ମଣ
ଧର୍ମପଥେ ରହି କରୁଥିଲେ ଅବସ୍ଥାନ ।
ଏହି ସ୍ଥାନେ ପ୍ରାଣନାଶ ହୋଇଲା ତାଙ୍କର
ଏହି ସ୍ଥାନେ ପାଇଲେ ସେ ରାଜ୍ୟ ଅଧିକାର ।
ଏହି ସ୍ଥାନେ ପତ୍ନୀ ରୂପେ ଥିଲି ମୁଁ ତାଙ୍କର
ଏ ମଣ୍ଡପାକାଶେ ପୁଣି ନେଲେ ରାଜ୍ୟଭାର ।
ମୋର ସେହି ବସୁନ୍ଧରା ଅଧିପତି ସ୍ୱାମୀ
ମୃତ୍ୟୁଗ୍ରାସେ ପଡ଼ି ପୁଣି ହେଲେ ସ୍ୱର୍ଗଗାମୀ ।
ଏହି ମଣ୍ଡପ ଆକାଶେ ନୃପତି ହୋଇଣ
ନାନା ଜନପଦେ କରୁଛନ୍ତି ରାଜପଣ ।
ମନହୁଏ ଏ ମଣ୍ଡପ ଆକାଶ ମଧ୍ୟରେ
ନିଖିଳ ବ୍ରହ୍ମାଣ୍ଡ ଭୂମି ଅବସ୍ଥାନ କରେ ।
ମୋର ସ୍ୱାମୀଙ୍କର ଯେଉଁ ମଣ୍ଡପ ସଂସାର
ଅଦୂରେ ରହିଛି, ମାତ, ଘେନ ସେହି ପୁର ।
ଯେପରି ଅଦୂରେ ତାଙ୍କୁ ଦେଖି ପାରିବଇଁ
ଉପାୟ ବିଧାନ ତାର କର ମହାମାୟୀ ।
ଦେବୀ ବୋଲନ୍ତି ଗୋ ପୁତ୍ରୀ ଶୁଣ ମୋ ବଚନ
ଅନେକ ଭର୍ତ୍ତା ତୁମର ଘଟିଛନ୍ତି ଜାଣ ।
ସେ ସବୁଙ୍କ ଦରଶନ ଅଟେ ଅସମ୍ଭବ
ଶେଷ ତିନିଜଣଙ୍କର ଦର୍ଶନ ମିଳିବ ।
ବଶିଷ୍ଠ ବ୍ରାହ୍ମଣ କାଳଗ୍ରାସରେ ପଡ଼ିଲେ
ପଦ୍ମ ନରପତି ନାମେ ଜନମ ଲଭିଲେ ।
ଯାର ମୃତ ଶବ ତୁମେ ସ୍ୱୀୟ ଅନ୍ତଃପୁରେ
ସଂସ୍ଥାପିତ କରିଅଛି ପୁଷ୍ପ ମଣ୍ଡପରେ ।
ସେହି ପଦ୍ମରାଜା ଏବେ ଜନମ ଲଭିଣ
ବିଦୁରଥ ରାଜା ନାମେ କରନ୍ତି ଶାସନ ।
ସେ ଏବେ ଭ୍ରାନ୍ତ, ସଂସାର ଜଳଧି ମଧ୍ୟରେ
ଘାଣ୍ଟି ହେଉଛନ୍ତି ମହାକଲ୍ଲୋଳ ଭିତରେ ।
ଚେତନା ଶକ୍ତି ତାଙ୍କର ଲଭିଛି ମଳିନ
ଚିଦ୍‌ବୃତ୍ତି ସକଳ ଜଡ଼ତାରେ ସମାଚ୍ଛନ୍ନ ।
ଭବସାଗର କଚ୍ଛପ ପରି ସେ ରାଜନ
ରାଜକାର୍ଯ୍ୟ ସମ୍ପାଦନେ ଅଛନ୍ତି ମଗନ ।
ଜଡ଼ତା ବ୍ୟାଧି କରିଛି ତାଙ୍କୁ ଆକ୍ରମଣ
ଆତ୍ମବୋଧ ଜାଗରଣେ ଅଟନ୍ତି ଅକ୍ଷମ ।
ଏବେ ତୁମ ତିନି ସ୍ୱାମୀଙ୍କର ବିବରଣ
ବର୍ଣ୍ଣନ କରିଲି ଆଗୋ ରମଣୀ ରତନ ।
କେଉଁ ସ୍ୱାମୀ ପାଶେ ଏବେ କରିବ ଗମନ
ଏବେ ତାହା କହ ମୋତେ ସ୍ଥିରକରି ମନ ।
ବାୟୁ ଯେହ୍ନେ ସ୍ଥାନୁ ସ୍ଥାନାନ୍ତରେ ଗନ୍ଧ ନିଏ
ହେ ବରବରନି ତୋତେ ନେବି କେଉଁଠାଏ ?
ଇଚ୍ଛାକରୁଅଛ ଯେଉଁ ସ୍ୱାମୀଙ୍କ ସଂସାର
ତାହା ଅବସ୍ଥିତ ଅନ୍ୟ ବ୍ରହ୍ମାଣ୍ଡ ମଧ୍ୟର ।
ଜ୍ଞାନ ଦୃଷ୍ଟିରେ ଦେଖିଲେ ଏସବୁ ସଂସାର
ତୁମ ନିକଟରେ ଛନ୍ତି ଆଗୋ ନାରୀବର ।
କୋଟି କୋଟି ଯୋଜନ ତା' ଅଜ୍ଞାନ ଦୃଷ୍ଟିରେ
ଅବସ୍ଥିତ ରହିଛନ୍ତି, ବୁଝ ମନ ସ୍ଥିରେ ।
ପାରମାର୍ଥିକ ଦୃଷ୍ଟିରେ ଏ ସବୁ ଜଗତ
ଚିଦାକାଶ ବିନା ଅନ୍ୟ କିଛି ନୁହେଁ ମାତ ।
ଏକମାତ୍ର ବ୍ୟୋମାକାଶେ ମେରୁ କୋଟି କୋଟି
ଅବସ୍ଥିତ ରହିଛନ୍ତି ବୁଝ ଗୋ ବିମ୍ବୋଷ୍ଠି ।
କୋଟି ପରମାଣୁ ଯଥା ସୂର୍ଯ୍ୟ କିରଣରେ
ଭାସମାନ ହେଉଛନ୍ତି ପ୍ରତି ମୁହୂର୍ତ୍ତରେ ।
ତଥା ମହାଚୈତନ୍ୟରେ ଅନନ୍ତ ସଂସାର
ପ୍ରକାଶମାନ ହୁଅନ୍ତି ଆଗୋ ନାରୀବର ।
ଯେଡ଼େ ବିଶାଳ ହେଲେ ହେଁ ଏ ସୃଷ୍ଟି ସକଳ
ଏ 'ଚିତ୍ତ' ଦୃଷ୍ଟିରେ ବଟବୀଜୁ କ୍ଷୁଦ୍ରତର ।
ଏ ଆତ୍ମାରେ ଜ୍ଞାନଦେବୀ ବିରାଜିତ ରହି
ନିରନ୍ତର ବିକଶିତ ହେଉଛନ୍ତି ତହିଁ ।
ନଦୀରେ ଯଥା ତରଙ୍ଗ ପ୍ରତି ମୁହୂର୍ତ୍ତରେ
ଉତ୍ପନ୍ନ, ବିଲୀନ, ହେଉଥାଏ ନିରନ୍ତରେ ।
ଜ୍ଞାପ୍ତିଦେବୀ ଦେହେ ତଥା ବର୍ଷ, ମାସ, ଦିନ
ରାତ୍ରି, ଆଦିକାଳ ଅଙ୍ଗ, ସ୍ୱରୂପେ ଶୋଭନ ।
"ଲୀଳା କହେ ଜଗନ୍ନାଥ ଯାହାକି କହିଲ
ନିରାଟ ସତ ଯେ ଏହା ମୋତେ ଶୁଣାଇଲ ।
ଏବେ ମୋର ମନେ ହୁଏ ମୋର ଏ ଜନମ
ସାତ୍ତ୍ୱିକ ବା ତାମସିକ ନୁହଇଟି ଜାଣ ।

ରାଜସିକ ଜନ୍ମ ମୋର ଆସେ ମୋ ସ୍ମରଣ
ହିରଣ୍ୟ ଗର୍ଭରୁ ମୁହିଁ ହୋଇଛି ଜନମ ।
ବ୍ରହ୍ମରୁ ବିଛିନ୍ନ ହୋଇ ନାନା ଯୋନି ଦେଇ ।
ଶହେ ଆଠଥର ଜନ୍ମ ଲଭିଅଛି ମୁହିଁ ।
ସେ ସବୁ ତବ ପ୍ରସାଦେ ହେଉଛି ସ୍ମରଣ
ଜନ୍ମପରମ୍ପରା ସବୁ ନାଚେ ମୋ ନୟନ ।
ବିଦ୍ୟାଧରୀ ହୋଇ ପୂର୍ବେ ଜନମ ଲଭିଲି
ପଦ୍ମର ଭ୍ରମରୀ ରୂପେ ସଦା ବିହରିଲି ।
ପରେ ଦୁର୍ବାସନାହେତୁ କଳୁଷିତା ହୋଇ
ମାନବରୂପେ ଜନମ ତହୁଁ ଲଭିଲଇଁ ।
ଅନ୍ୟ ସଂସାର ମଣ୍ଡଳେ ପନ୍ନଗ ରାଜାର
ପନ୍ନୀହୋଇ ଜନମିଲି ମନେପଡ଼େ ମୋର ।
ନାନା କୁସୁମ ବନର ବନଚରୀ ହୋଇ
କାଳୀ ଚାଣ୍ଡାଳି ରୂପରେ ତହିଁ ବିଚରଇ ।
ଧର୍ମ ମର୍ଯ୍ୟାଦାଦି ମୋତେ ଜଣା ତ ନଥିଲା
ମୂଢ଼ା ପରି ବୁଲି ବୁଲି କାଳ କାଟୁଥିଲା ।
ତେଣୁ ବନବିଳାସିନୀ ଲତା ମୁଁ ହୋଇଲି
ମୁନି ଆଶ୍ରମରେ କିଛି କାଳ କଟାଇଲି ।
ଫୁଲ ପେନ୍ଥାମାନ ଜାଣ ଥିଲା ମୋର ସ୍ତନ
ମୋର କରଯୁଗଳ ଥିଲେ ଲତାପତ୍ରମାନ ।
ମୁନିଙ୍କର କରଲାଗି ଫୁଲ ତୋଳାବେଳେ
ପାପ ନାଶଯାଇ ପୁଣ୍ୟ ବଢ଼ିଲା ମୋ ହେଲେ ।
ମୁନିଙ୍କର କନ୍ୟା ହୋଇ ସେହି ଆଶ୍ରମରେ
ଜନମ ଲଭିଲି ଏବେ ପଡ଼େ ମୋ ମନରେ ।
ପୂରୁବ କରମମାନ ସେହି ଆଶ୍ରମରେ
କରିବାକୁ ପଡ଼ିଥିଲା ମୁନିଙ୍କ ଆଜ୍ଞାରେ ।
ତେଣୁକରି ପରଜନ୍ମେ ସୌରାଷ୍ଟ୍ର ଦେଶରେ
ଲକ୍ଷ୍ମୀବନ୍ତ ରାଜାହେଲି ପଡ଼େ ମୋ ମନରେ ।
ପରସ୍ୱ ହରଣେ ଦେହ କଳୁଷିତ ହେଲା
ରାଜା ଶରୀରକୁ ମୋର କାଳ ଗ୍ରାସ କଲା ।
ତାଳ ଗଛ ମୂଳେ ଏକ ପୁଷ୍କରିଣୀ ତୀରେ-
ନବବର୍ଷ କଟାଇଲି ନକୁଳୀ ରୂପରେ ।
ଗଳିତକୁଷ୍ଠ ଯେ ମୋତେ ଗଲା ଆକ୍ରମଣ
ଅବଶେଷେ ଘେନିଗଲା ମୋତେ ଜନ୍ତୁରାଣ ।
ଅଷ୍ଟବର୍ଷ ପର୍ଯ୍ୟନ୍ତେ ମୁଁ ସୌରାଷ୍ଟ୍ର ଦେଶରେ
ଗୋ-ଜନ୍ମ ଲଭିଲି ମୁହିଁ ଦୁର୍ଭାଗ୍ୟ ବଶରେ ।
ଦୁର୍ଜ୍ଜନ, ଦୂଷିତ ଅଜ୍ଞ ଗୋପଙ୍କ ତାଡ଼ନା
ସହ୍ୟ କରିବାକୁ ହେଲା ଭାଗ୍ୟବଶ ସିନା ।
ବାସନା ରଜ୍ଜୁ ଯେମନ୍ତ ଏହି ଜନମରେ
ଛିନ୍ନକରିଅଛି ମାଗୋ ଅତୀବ କଷ୍ଟରେ ।
ଅନ୍ୟ ଏକ ଜନମରେ ପକ୍ଷିଣୀ ହୋଇଣ
ନିବିଡ଼ ବନ ମଧ୍ୟରେ କଲି ବିଚରଣ ।
ବ୍ୟାଧ ପାଶେ ପଡ଼ି ମୁହିଁ ମହାକଷ୍ଟ ପାଇ
ପକ୍ଷୀଜନ୍ମ କଟାଇଛି ଆଗୋ ମହାମାୟୀ ।
ଭ୍ରମରୀ ହୋଇ ମୁଁ ପରେ ଭ୍ରମର ସହିତ
ପଦ୍ମବନେ କରୁଥାଏ କାଳ ଅତିପାତ ।
ଭ୍ରମରୀ ଶରୀର ମୋର କାଳଗ୍ରାସ କଲା
ହରିଣୀ ଶରୀର ମୋତେ ଯମରାଜା ଦେଲା ।
ସୁରମ୍ୟ ଲତା ଗହଳେ ବୁଲୁ ବୁଲୁ ଦିନେ
ବ୍ୟାଧ ଶରେ ନିହତ ମୁଁ ହେଲି ସେ କାନନେ ।
ତଦପରେ ମତ୍ସ୍ୟହୋଇ ଜନମିଲି ଜଳେ
ତରଙ୍ଗ କଲ୍ଲୋଳେ ଖେଳିବୁଲୁଥାଏ ହେଳେ ।
କର୍ମଠ ପୃଷ୍ଠରେ ଯାଇ ହେଲି ନିପତିତ
ଦେଖି ତା ଧିବର କଲା ମୋତେ ଯଷ୍ଟ୍ୟାଘାତ ।
ସେ କଠୋର ଆଘାତରେ ପାଞ୍ଚତ୍ୱ ପାଇଲି
ଦୁର୍ଦ୍ଦଶାରୁ ଚଣ୍ଡାଳୀର ଗର୍ଭଗତ ହେଲି ।
ଚଣ୍ଡାଳୁଣୀରୂପେ ମୁହିଁ ଲଭିଲି ଜନମ
ପ୍ରିୟସଙ୍ଗେ ଗୀତଗାଇ କଟିଲା ମୋ ଦିନ ।
ସୁରାପାନ କରିବାକୁ ନ ପାଇଲି ଲଜ୍ଜ୍ୟା
ମାନ, ଅପମାନ ସବୁ କରିଦେଲି ତେଜ୍ୟା ।
ତତ୍ପରେ ସାରସୀ ଜନ୍ମ ଦେଲା ଜନ୍ତୁରାଣ
ସାରସାଧିଶ୍ୱର ସହ ମୁଁ କଲି ପ୍ରୀତିଜାଣ ।
ତାଳ ତମାଳ କୁଞ୍ଜରେ ମଦିରା ନିଶାରେ
ପ୍ରେମିକକୁ ଋହୁଁଥାଏ ସତୃଷ୍ଣ ନେତ୍ରରେ ।
ସ୍ୱର୍ଗରାଜ୍ୟେ ଅପସରା ଜନମ ଲଭିଲି
ମଧୁର ଗାନରେ ଦେବଗଣଙ୍କୁ ରଂଜିଲି ।
କେବେ ମଣିମାଣିକ୍ୟାଦି ରଞ୍ଜିତ ଭୂତଳେ
କଳ୍ପଦ୍ରୁମ ତଳେ କେବେ ନନ୍ଦନ ବନରେ ।
ସୁମେରୁ ପର୍ବତେ କେବେ ମନ ବିନୋଦନ
କରି ବୁଲୁଥାଏ ମୁହିଁ ଦେବଙ୍କ ଗହଣ ।
ତତ୍ପରେ କଚ୍ଛପରୂପ କରିଲି ଧାରଣ
ନଦୀ, ସିନ୍ଧୁ, ଜଳାଶୟେ କଲି ବିଚରଣ ।

ଦେଖେ ମଶକ ଶିମିଳୀ-ପତ୍ରେ ଝୁଲୁଥାଏ
ଅତି ଆନନ୍ଦରେ ଦିନକାଳ କଟୁଥାଏ ।
ଦୋଳାୟମାନ ହେବାକୁ ବାସନା ବଳିଲା
ମଶକୀ ଜନମ ତେଣୁ ମୋତେ ଯମ ଦେଲା ।
ମଶକ ସଙ୍ଗରେ ମୁହିଁ ସଦା ରହିଥାଏ
ଗଛ, ପତ୍ର, ଡାଳେ ବସି ବସି ଝୁଲୁଥାଏ ।
ବେତସ ଲତିକା ହୋଇ ଗିରି ନଦୀତୀରେ
ଆଘାତ ଲଭିଲି ମୁହିଁ ନାନାଦି ପ୍ରକାରେ ।
ତତ୍ପରେ ଗନ୍ଧମାର୍ଦ୍ଦନ ପର୍ବତ ଉପରେ
ବିଦ୍ୟାଧରୀ ସ୍ୱରୂପ ମୁଁ ଧରିଲି ସେଠାରେ ।
ବାସନାସିକ୍ତ ହୋଇଣ ବିଦ୍ୟା ଧରଗଣ
କି ଆହ୍ଲାଦେ ଆସି ମୋତେ କରନ୍ତି ପୂଜନ ।
ସେ ଜନମ ଗୋଟା ମୋର ଦୁଃଖରେ କଟିଲା
ଦିନୁଦିନ ସୁଖଲତା ମୋର ମଉଳିଲା ।
ସଂସାର ସରିତ ସ୍ରୋତେ ମୋ ଶରୀର ନୌକା
ଦୁର୍ବାସନା ବାୟୁଦ୍ୱାରା ପାଇ କେତେ ଧକ୍କା ।
ପରୀ, ବିଦ୍ୟାଧରୀ ଆଦି ନାନା ଯୋନି ଭ୍ରମି
ଆସି ପହଞ୍ଚିଲି ଏଥି ବହୁ ପଥଶ୍ରମି ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ଲୀଳା ଉପାଖ୍ୟାନେ ଲୀଳା ଜନ୍ମାନ୍ତର ବର୍ଣ୍ଣନେ ନାମ ଏକବିଂଶ ସର୍ଗଃ ।**



## ଦ୍ୱାବିଂଶ ସର୍ଗଃ
## ଗିରିଗ୍ରାମ ବର୍ଣ୍ଣନ

କହୁଛନ୍ତି ରାମଚନ୍ଦ୍ର ସେ ଅବଳାଦ୍ୱୟ
କୋଟି ଯୋଜନ ବିସ୍ତୃତ ବ୍ରହ୍ମାଣ୍ଡ ବଳୟ ।
କଠିନ, ନିବିଡ଼ ପୁଣି ଦୁର୍ଗମ ଦୁସାଧ
ଏ ବିଶାଳ ଭୁବନକୁ କରିଲେକ ସାଧ ।
କେସନ ପ୍ରକାରେ ତହୁଁ ବାହାର ହୋଇଲେ ?
ସବିଶେଷକରି ଦେବ କହ ମୋତେ ଭଲେ ।
ବଶିଷ୍ଠ ବୋଇଲେ ରାମ କାହିଁ ସେ ବ୍ରହ୍ମାଣ୍ଡ ?
କାହୁଁ ବା ଉତ୍ପତ୍ତି ତା'ର କେଉଁ ସେ ପ୍ରକାଣ୍ଡ ?
କାହିଁ ତା ବାଜ୍ରସାରତା କାହିଁ କଠିନତା ?
କାହିଁ ହେ ଶ୍ରୀରାମ ତା'ର ତୀବ୍ର ଦୁର୍ଗମତା ?
ବସ୍ତୁତଃ ସେ ନାରୀଦ୍ୱୟ ସେହି ଗୃହାକାଶେ
ଅବସ୍ଥାନ କରିଛନ୍ତି ମଉନ ମାନସେ ।
ବସିବା ସ୍ଥାନରୁ କେଭେ ଉଠିତ ନାହାନ୍ତି
ଫେରିବା ପ୍ରଶ୍ନ ତାଙ୍କର ଉଠୁଛି କେମିତି ।
ସେହି ବଶିଷ୍ଠ ବ୍ରାହ୍ମଣ ସେହି ଗିରିଗ୍ରାମେ
ରାଜତ୍ୱ ସେ କରୁଥିଲା ପଦ୍ମରାଜା ନାମେ ।
ସେହି ଗିରିଗ୍ରାମେ କଉଣସି ଏକ ସ୍ଥାନ
ବିଦୁରଥ ରାଜାହୋଇ କରଇ ଶାସନ ।
ଶୂନ୍ୟ ସେ ନୃପତିଦ୍ୱୟ ଶୂନ୍ୟ ସେ ମନ୍ଦିର
ଚିଦାକାଶୁ ଉତପତି ହୁଅନ୍ତି ସକଳ ।
ସେ ମଣ୍ଡଳେ ସେହି ରାଜା ବଶିଷ୍ଠ ବ୍ରାହ୍ମଣ
ପତ୍ନୀ ତାର ଅରୁନ୍ଧତୀ ଲୀଳାନାମ୍ନୀ ଜାଣ ।
ରାଜାତ, ରାଜଭବନ କରୁଛନ୍ତି ଭୋଗ
ସାରା ଭୂମଣ୍ଡଳ ରାମ ତାଙ୍କ ରାଜଭୋଗ ।
ଏହି ଆକାଶରେ ଥାଇ ଲୀଳା ମହାଦେଈ
ବାଗ୍‌ଦେବୀ ଅର୍ଚ୍ଚନା କରି ଦର୍ଶନ ଲଭଇ ।
ତାଙ୍କ ସହଚରୀ ହୋଇ ସାରା ଭୂମଣ୍ଡଳ
ଭ୍ରମଣ କରି ଦେଖିଲେ ଆଶ୍ଚର୍ଯ୍ୟ ସକଳ ।
ନିଦ୍ରିତ ମନୁଷ୍ୟ ଯଥା ଏକ ସ୍ୱପ୍ନପରେ
ନାନା ସ୍ୱପ୍ନମାନ ଦେଖେ ଏକ ଅନ୍ୟପରେ ।
ବାଗ୍‌ଦେବୀ ସହିତ ଥାଇ ଲୀଳା ତା ଦୃଶରେ
ଅପର ବ୍ରହ୍ମାଣ୍ଡମାନ ଦେଖେ ପରେ ପରେ ।
ଗିରି ଗ୍ରାମ, ତଦ୍‌ମଧ୍ୟସ୍ଥ ଗିରି ଉପବନ
ଅନୁଭବ ରାଜ୍ୟେ କରୁଥିଲେ ବିଚରଣ ।
ଭ୍ରମ ବିବର୍ତ୍ତନ, ସବୁ ସକଳ ଆକାଶ
ଏହାଠାରୁ ଅନ୍ୟ କିଛି ନୁହେଁ ରଘୁଈଶ ।
ବାସନାବଶତଃ ରାମ ଏହି ସବୁ ଦୃଶ୍ୟ
ପ୍ରତିଫଳିତ ହୁଅନ୍ତି ଆହେ ରଘୁଶିଷ୍ୟ ।
ତେଣୁ ବ୍ରହ୍ମାଣ୍ଡ ବୋଲିଣ କିଛିମାତ୍ର ନାହିଁ
ସଂସାର, ଭିତ୍ତି, ଦୂରତ୍ୱ, କିଛି ତ ନଥାଇ ।
ତେଣୁ ବ୍ରହ୍ମାଣ୍ଡ କାହିଁ ବା କାହିଁ ତା' କାଠିନ୍ୟ ?
ରୂପ ନାହିଁ, ବର୍ଣ୍ଣ ନାହିଁ, ନାହିଁ ତାର ଚିହ୍ନ ।
ଅଜନ୍ମା, ମହାନ, ଶାନ୍ତ ଅଟେ ଚିଦାକାଶ
କଳ୍ପନା ରାଜ୍ୟେ ଜଗଦାକାରେ ତା' ପ୍ରକାଶ ।
ଏ ରହସ୍ୟ ଯେଉଁ ବ୍ୟକ୍ତି ଜ୍ଞାତ ହୋଇପାରେ
ଏ ଜଗତ ମହାଶୂନ୍ୟ ତା'ର ନିକଟରେ ।
ଏ ରହସ୍ୟ ଯେଉଁ ବ୍ୟକ୍ତି ବୁଝି ନପାରଇ
ବଜ୍ରଠାରୁ କଠିନ ଏ ତାକୁ ଜଣାଯାଇ ।

ଘରେ ଶୋଇ ସ୍ୱପ୍ନେ ଯଥା ଦେଖଇ ଜଗତ
ଏ ଅସତ୍‌ଭବ ତଥା ବିଦ୍ୱେ ପ୍ରତିଭାତ ।
ରାମଙ୍କୁ ଉତ୍ତର ଦେଇ ମହର୍ଷି ଏସନ
ପୁନଶ୍ଚ ସମ୍ବୋଧି କରି କହତ ବଚନ ।
ବାଣୀ, ଲୀଳା, ପୂର୍ବଜନ୍ମ କଥାବାର୍ତ୍ତା ହୋଇ
ଗୃହର ବାହାରେ ଆସି ଉଭା ହେଲେ ତହିଁ ।
ନିକଟରେ ପର୍ବତେକ ଦେଖିଣ ଚଳିଲେ
ରହୁଁ, ରହୁଁ ତହିଁ ଯାଇ ଉପସ୍ଥିତ ହେଲେ ।
ଗ୍ରାମବାସୀଗଣ ତାଙ୍କୁ ଦେଖି ନ ପାରନ୍ତି
ଅଦୃଶ୍ୟେ ରହି ସେମାନେ ସଭିଙ୍କୁ ଦେଖନ୍ତି ।
ସବୁରି ଅଲକ୍ଷେ ରହି ସେ ଦୁଇ ଲଳନା
ପାହାଡ଼ର ପୂର୍ବଭାଗେ ରହି, ହୃଷ୍ଟମନା ।
ଭୀଷଣ ଭୂଧର ଶିରେ ତୁଙ୍ଗ ଶୃଙ୍ଗରାଶି
ଗଗନ ଭେଦି ଆଦିତ୍ୟ ମଣ୍ଡଳ ପରଶି ।
କାହିଁ ନାନାଜାତି ବୃକ୍ଷ ନାନାଜାତି ଫୁଲ
ଝର୍ଝର ଶବଦେ କାହିଁ ଝରନ୍ତି ନିର୍ଝର ।
କାହିଁ ମଧୁର ସ୍ୱରରେ ବିହଙ୍ଗମ ଗଣ
କାହିଁ ବା ସାରସୀଗଣ କରନ୍ତି ଗାୟନ ।
ପର୍ବତ ଶୋଭା ଦେଖିଣ ଚିତ୍ତଯାଏ ଘେରି
ପହଞ୍ଚିଲେ ତହୁଁ ଯାଇ ଗିରିଗ୍ରାମ, ପୁରୀ ।
ନାନା ଜଳଶୟମାନ ବେଢ଼ିଛି ସେ ଗ୍ରାମ
ପକ୍ଷୀମାନେ କ୍ରୀଡ଼ା କରୁଛନ୍ତି ଅନୁକ୍ଷଣ ।
କାହିଁ ଗୋରୁପଲମାନ ଦେଇ ହମ୍ବାରଡ଼ି
ତରୁତଳ ଛାୟା ଦେଖି ରହନ୍ତି ଉଜାଡ଼ି ।
ଭେଦି ନ ପାରି ତମାଳ ଲତା ଭାନୁ ତେଜ
ପୃଥ୍ୱୀରାଣୀ ଦେଖି ନ ପାରନ୍ତି ତାର ଓଜ ।
ମହୁମାଛି ରଚିଛନ୍ତି ମଧୁ ଚକ୍ରମାନ
କାହିଁ ଗୃହେ ଗୃହେ ତାହା ଦିଶେ ଶୋଭାବନ ।
ଅଶୋକ ବନ ଦିଶଇ କେଡେ ସୁଶୋଭନ
ତା' ମଧ୍ୟେ ଶୋଭାୟମାନ କ୍ରୀଡ଼ାସ୍ଥଳୀମାନ ।
ଧବଳ ବର୍ଣ୍ଣ କେତକୀ କାହିଁ ପ୍ରସ୍ଫୁଟିତ
କଦମ୍ବ ଦ୍ରୁମ ସକଳ ନିତ୍ୟ ମୁକୁଳିତ ।
ଅତି ଉଚ୍ଚ ଅଟ୍ଟାଳିକା ଗିରିଗ୍ରାମ ମଧ୍ୟେ
ଚତୁର୍ଦ୍ଦିଗ କମ୍ପିଉଠେ ଶତଦଳ ଗନ୍ଧେ ।
ପୂର୍ଣ୍ଣଚନ୍ଦ୍ର ଜିଣି ଶୁଭ୍ର ଶଇଳ ମନ୍ଦିର
ନେତ୍ର ହରି ନେଉଥାଏ ନାରୀଦ୍ୱୟଙ୍କର ।
ଆହା କି ସୁନ୍ଦର ଦିଶେ ସେ ଗିରି ମନ୍ଦିର
ପଛେ ପଡ଼ିଯିବ ତାର ଇନ୍ଦ୍ର ରାଜପୁର ।
ନିହାର ବିନ୍ଦୁ ଝଟକେ ଦୁର୍ବାଦଳ ପରେ
ତାରକା ଗଣଙ୍କୁ ଜିଣି ନିଶା ଗଗନରେ ।
ସଦା ନିହାର ପଡ଼ଇ, ପୁଷ୍ପ ବରଷଇ
କୁନ୍ଦ କୁସୁମ ସଦୃଶ ମନ୍ଦିର ଶୋଭଇ ।
କଳାମେଘରେ ଚପଳା ଚହଟି ଉଠଇ
କେକୀର ଆନନ୍ଦ, ବାକ୍ୟେ କେ ପାରିବ କହି ।
ହାରୀତ, ଚକୋରଙ୍କର କାକଳୀ ନିସ୍ୱନ
ଶୁକ, ଶାରୀ ଦ୍ରୋଣ କାକଙ୍କର ବିଚରଣ ।
କାହିଁ ଶାଳ, ତାଳ, ପୁଣି ତମାଳ ପାଦପ
ଲତା ବିତାନର ଶୋଭା ହରେ ମନ ତାପ ।
ଖରସ୍ରୋତା ନଦୀ କାହିଁ ବନ୍ୟାରେ ପ୍ଲାବିତ
ପାର ହେବା ପାଇଁ ଗୋପକୂଳେ ବ୍ୟତିବ୍ୟସ୍ତ ।
ପଦ୍ମବନୁ ପଦ୍ମରେଣୁ ଆଣି ଗନ୍ଧବହ
ମନ୍ଦିର ଉପରେ ବାହି ନେଉଥାଏ ସୁଅ ।
ଚଉଦିଗ ଆମୋଦିତ ସେହି ମଧୁଗନ୍ଧେ
ଭ୍ରମରେ ଲୁଚୁ ଅଛନ୍ତି ସେ ଗନ୍ଧ ଆମୋଦେ ।
କଳ କଳ ଧ୍ୱନୀ କରି କାହିଁ ପକ୍ଷୀଗଣ
ମଣ୍ଡଳାକାରେ ଉଡ଼ନ୍ତି ଗଗନ ପ୍ରାଙ୍ଗଣ ।
ଘନ ଦେଖି କେକୀ ନାଚେ ପାହାଡ଼ ଉପରେ
ଲଳନାଏ ନିରେଖନ୍ତି ଗ୍ରାମ ମଣ୍ଡପରେ ।
ଶୋଭାରାଣୀ ଶୋଭାପ ସରାକି ମେଲିଛନ୍ତି
ଦର୍ଶକ ଜନର ମନ ଏ ଭାବନା ଚିନ୍ତି ।

**ଇତିଶ୍ରୀ ଯୋଗ ବାଶୀଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖ୍ୟାନେ ଗିରିଗ୍ରାମ**
**ବର୍ଣ୍ଣନେ ନାମ ଦ୍ୱାବିଂଶ ସର୍ଗଃ**



## ତ୍ରୟବିଂଶ ସର୍ଗଃ
## ପରମାକାଶ ବର୍ଣ୍ଣନ ।

କହନ୍ତି ବଶିଷ୍ଠ ରାମ ଆତ୍ମତତ୍ତ୍ୱ ଜ୍ଞାନୀ
ଭୋଗ, ମୋକ୍ଷ ତତ୍ତ୍ୱପାଏ ସ୍ୱ ସାଧନା ଘେନି ।
ଶାନ୍ତି, ମୈତ୍ରୀ, ସାଧିକା ସେ ଉଭୟେ ରମଣୀ
ଶୀତଳ ସୁରମ୍ୟଗ୍ରାମେ ପଶିଲେ ସେକ୍ଷଣି ।

ଏପର୍ଯ୍ୟନ୍ତ ଲୀଳା ଯେଉଁ ଜ୍ଞାନ ଅରଜିଛି
ତ୍ରିକାଳଜ୍ଞ ଶୁଦ୍ଧଜ୍ଞାନୀ ହୋଇ ସେ ପାରିଛି ।
ଅତୀତ ଘଟଣାମାନ ଜାଣି ସେ ପାରୁଛି
ଦିବ୍ୟ ଦୃଷ୍ଟି ବଳେ ଭବିଷ୍ୟତ ସେ ଦେଖୁଛି ।
ଗିରିଗ୍ରାମ ଦର୍ଶନରେ ପୂର୍ବଜନ୍ମମାନ
ଗୋଟି ଗୋଟି ହୋଇ ନାଚିଯାଏ ତାର ମନ ।
ଲୀଳା କହେ ଆଗୋ ଦେବୀ ତୁମ୍ଭ ପ୍ରସାଦରୁ
ଦର୍ଶନ କରିପାରିଲି ସୌଭାଗ୍ୟ ବଶରୁ ।
ପୂର୍ବଜନ୍ମ ପରମ୍ପରା କାର୍ଯ୍ୟ ଚେଷ୍ଟାମାନ
ସ୍ମରଣ ଆସୁଛି ମାତ କି କହିବି ଆନ ।
କୃଷ୍ଣବର୍ଣ୍ଣ ଶିରାବ୍ୟାପ୍ତ ଥିଲା ମୋ ଶରୀର
କୃଶାଙ୍ଗୀ ବୃଦ୍ଧା ବ୍ରାହ୍ମଣୀ ଥିଲି ଏ ଗ୍ରାମର ।
ଏହି ଗ୍ରାମେ ସ୍ୱଗୃହିଣୀ ଭାର୍ଯ୍ୟାରୂପେ ଥିଲି
ଦୁଧଦୁହିଁ, ଦଧି ମୋହିଁ, ଦିନ କାଟୁଥିଲି ।
ସନ୍ତାନ ପାଳନ ପୁଣି ଅତିଥି ସତ୍କାର
ମୋ ଜୀବନ ବ୍ରତ ଥିଲା ଆଗୋ ଦେବୀବର ।
ଦେବ ଦ୍ୱିଜ ସନ୍ଥଜନଙ୍କର ସେବା କରି
ଗୋରସ ଘୃତ ମଧ୍ୟରେ ଥାଏ ସଦା ବୁଡ଼ି ।
ଭୋଜନ ପାତ୍ର ଓ ଚରୁଥାଳି ମୁହିଁ ମାଜେ
ଏକମାତ୍ର କାଚଚୁଡ଼ି ମୋର କରେ ସାଜେ ।
ଜାମାତ, ଦୁହିତା, ପିତା, ମାତା ଭ୍ରାତାଙ୍କର
ପରିଚର୍ଯ୍ୟା କରୁଥାଏ ରାତ୍ର ଦିବସର ।
ଆଉମଧ ସ୍ୱ, ସ୍ୱ କାର୍ଯ୍ୟ କରିବା ନିମିତ୍ତ
ସେମାନଙ୍କୁ କହୁଥାଏ ହେବାକୁ ଚେଷ୍ଟିତ ।
ମରଣ ପର୍ଯ୍ୟନ୍ତ ମୁହିଁ ଏମନ୍ତ ପ୍ରକାରେ
ଦାୟିତ୍ୱ ତୁଲାଇଥିଲି ମୋର ଯେ ସଂସାରେ ।
ଭୋ ଦେବୀ ! ମୋପରି ମଧ୍ୟେ ମୋ ଶ୍ରୋତ୍ରିୟପତି
ଗୃହାଶକ୍ତ ହୋଇ ଗୃହକାର୍ଯ୍ୟେ ଥାନ୍ତି ମାତି ।
ମୁଁ କିଏ, ସଂସାର କିସ ରୂପ ତା' କିପରି
ଦିନେ ହେଲେ ସ୍ୱପ୍ନେସୁଦ୍ଧା ଭାବିତ ନଥିଲି ।
ମୁଁ ମଧ ମୋ ପତିପରି ମୂଢ଼ ବୁଦ୍ଧି ଥିଲି
ସମୀଧ, ଶାକ, ଗୋମୟ ଆଦି ସଞ୍ଚୁଥିଲି ।
ଖଣ୍ଡିଏ ମାତ୍ର ମଳିନ କମ୍ବଳ ମୋଥିଲା
ସଂସାର କାର୍ଯ୍ୟରେ ରତ ରହି ଦିନଗଲା ।
କଙ୍କାଳ ମାତ୍ରା ବିଶିଷ୍ଟ ହେଲା ମୋ ଶରୀର
ବସ୍ତ୍ରା, କର୍ଣ୍ଣକୀଟ କାଢ଼ି କାଢ଼ି ଗଲା କାଳ ।
ଗୃହକରାଣୀ ପରି ଘର ଶାଗ ପଟାଳିରେ
ପାଣି ମଡ଼ାଇ ସତତ ବଞ୍ଚାଏ ତାହାରେ ।
ନଇକୂଳୁ କଅଁଳିଆ ଘାସ କାଟି ଆଣି
ବାଛୁରୀମାନଙ୍କୁ ଦିଏ ତାଙ୍କ ମନ ଜାଣି ।
ପ୍ରତିଦିନ ଗୃହଦ୍ୱାରେ ମୁରୁଜ ପକାଏ
ମହାଲକ୍ଷ୍ମୀ ତୃପ୍ତି ପାଇଁ ଦ୍ୱାରରଞ୍ଜୁ ଥାଏ ।
ନଜାଣିଲା ଲୋକେ ମୋତେ ଆକ୍ଷେପ କରନ୍ତି
ଅହଂକାରୀ ଦାସୀ ବୋଲି ଅଭିମତ ଦ୍ୟନ୍ତି ।
ସମୁଦ୍ର ଯେସନ ବେଳା ଲଙ୍ଘି ନ ଚଳଇ
ସୀମା ଲଙ୍ଘି ତାଙ୍କୁ ମୁହିଁ କିଛି ନ କହଇ ।
ଏମନ୍ତେ କିୟତକାଳ, ହୋଇଯାନ୍ତେ ଗତ
ଜରା ଅବସ୍ଥାରେ ମୁହିଁ ହୋଇଲି ଆକ୍ରାନ୍ତ ।
ଜୀର୍ଣ୍ଣ ପତ୍ରପରି ମୋର ଶିରା ଦେଖାଗଲା
ଶିରକମ୍ପି ଦକ୍ଷକର୍ଣ୍ଣ ବଧିର ହୋଇଲା ।
ବଳିଷ୍ଠ ପ୍ରହାର ଭୟେ ଦୁର୍ବଳ ଯେପରି
ଜରା ଆଗମନେ ଭୀତ ହୋଇଲି ସେପରି ।
ଏମନ୍ତ ବଚନମାନ ଲୀଳା କହିସାରି
ଦେବୀସହ ଗିରିଗ୍ରାମ କ୍ରୋଡରେ ବିହରି ।
ଦେଖମାତା ଏହି ମୋର ପୁଷ୍ପର ଉଦ୍ୟାନ
ଅଶୋକ ବାଟିକା ଦିଶେ କେଡ଼େ ଶୋଭାବନ ।
ପାଟଳି ଫୁଲ ନୟନ ମନ ନିଏ ହରି
ଚମ୍ପକ ରଜନୀଗନ୍ଧା, ବାସଉଠେ ଖେଳି ।
ଦର୍ଣ୍ଣକା ବାଛୁରୀ ମୋର ଦେଖ ବନ୍ଧାଅଛି
ଆଠଦିନ ହେଲା ଦାନା ଦେଇଛି ମୁରୁଛି ।
ଅତିକୃଶ ବଳହୀନ ହୋଇଛି ଶରୀର
ମୋହର ବିୟୋଗ ତାକୁ ଘାରେ ନିରନ୍ତର ।
ଏହିଠାରେ ଖାଇଛି ମୁଁ ଏଇଠି ବସିଛି
ପାନ, ଦାନ ଆଦିସବୁ ଏଇଠି କରିଛି ।
ଧାନ୍ୟ ଆହରଣ ମାଗୋ କରିଚି ଏଠାରେ
ଛାପିଦେଲା ପରି ମାତ ନାଚୁଛି ନେତ୍ରରେ ।
ମୋର ପୁତ୍ର ଜ୍ୟେଷ୍ଠଶର୍ମା କରଇ ରୋଦନ
ଦୁହାଁଳିଆ ଗାଈ କ୍ଷେତ୍ରେ କରେ ବିଚରଣ ।
ଏହିମୋର ବନ୍ଧୁମାନେ ଧୂଳିରେ ଧୂସର
ହାହାକାର କରୁଛନ୍ତି ହୋଇକି ବିକଳ ।
ଏହିଁ ମୋର ଲାଉଗଛ ସ୍ୱହସ୍ତ ରୋପିତ
ପାଣି ନ ପାଇଲେ ସୁଦ୍ଧା ମାଡ଼ିଛି ବହୁତ ।

ଏହି ଯେ ମୋ ପାକଶାଳା ଭୋଜନ ମନ୍ଦିର
ଦେହଠାରୁ ଅତିଯତ୍ନ ନେଉଥିଲି ତାର ।
ଏହି ମୋର ବନ୍ଧୁଗଣ ସଂସାର ବନ୍ଧନ
କାନ୍ଦି କାନ୍ଦି କରିଛନ୍ତି ଚକ୍ଷୁ ତାମ୍ରବର୍ଣ୍ଣ ।
ମୋ ଗୃହ ମଣ୍ଡପ ମଲ୍ଲିଫୁଲେ ଆଚ୍ଛାଦିତ
ଆହା କି ସୁନ୍ଦର ଦିଶେ କୁଲ୍ୟାଦି ବେଷ୍ଟିତ ।
ତା ତରଙ୍ଗେ ଦୋଳାୟିତ ଶ୍ୱେତ ଶତଦଳ
ଗୁଣୁ ଗୁଣୁ କରୁଥାନ୍ତି ମଧୁପ ସକଳ ।
ଜୀବାକାଶ ହେତୁ ଏହି ସ୍ଥାନେ ଭର୍ତ୍ତା ମୋର
ନିଷ୍କ୍ରିୟ ନିର୍ଲିପ୍ତ ହୋଇ ରଜନୀ ବାସର ।
ଆସମୁଦ୍ର ମେଦୀନୀର ଅଧିପତି ହୋଇ
ଅବସ୍ଥିତ କରୁଛନ୍ତି ଆଗୋ ମହାମୟୀ ।
ଥିଲେ ସେ ଦୃଢ଼ ପ୍ରତିଜ୍ଞ ରାଜା ହେବା ପାଇଁ
ଏ କଥା ସ୍ମରଣ ଆସେ ଆଗୋ ଜଗନ୍ମୟୀ ।
ରାଜପଦ ପାଇବାର ଅଭିଷ୍ଟ ସାଧନ
ହାସଲ କରିଅଛନ୍ତି ସେ ମହା ମହିମ ।
ଆଠଦିନ ହେଲା ରାଜ ପଦରେ ଆସୀନ
ଚିର ଅଭିଳାଷ ତାଙ୍କ ହୋଇଛି ସମ୍ପୂର୍ଣ୍ଣ ।
ଅଦୃଶ୍ୟରେ ବାୟୁଯଥା ଆକାଶରେ ଥାଇ
ତଥା ଜୀବାତ୍ମା ତାଙ୍କର ଗୃହାକାଶେ ରହି ।
ଆଙ୍ଗୁଳେ ମାତ୍ର ସ୍ଥାନରେ ତାଙ୍କ ଜୀବଥାଇ
କୋଟି ଯୋଜନ ସାମ୍ରାଜ୍ୟ ମନେ ହେଜୁଥାଇ ।
ମୋ ରାଜ୍ୟ, ମୋ ଭର୍ତ୍ତା ଭର୍ତ୍ତୃରାଜ୍ୟ ଆଦିକରି
କେବଳ ଏ ଚିଦାକାଶ ଭୋ ପରମେଶ୍ୱରୀ ।
ହେଲେହେଁ ମାୟାରେ ପୂର୍ଣ୍ଣ ମୋର ଭର୍ତ୍ତୃରାଜ୍ୟ
ଧରି ରଖିଅଛି କୋଟି ଶଇଳ ସମାଜ ।
ତେଣୁ ଭର୍ତ୍ତୃନଗରକୁ ଯିବାର ନିମିତ୍ତ
ଅଭିଳାଷ କରିଅଛି ଆଗୋ ଜଗନ୍ମାତ ॥
ଏବେ ଆସନ୍ତୁ ସେଠାକୁ କରିବା ଗମନ
ସୁଦୂର, ନିକଟ ବ୍ୟବସାୟୀ କି ସମାନ ।
ଲୀଳା ସରସ୍ୱତୀ ଦୁହେଁ ମଣ୍ଡପ ଆକାଶେ
କ୍ଷଣକ ମଧ୍ୟେ ପ୍ରବେଶ ହୋଇଲେ ହରଷେ ।
ନଭୋମଣ୍ଡଳକୁ ଉଡ଼ଯାନ୍ତି ପକ୍ଷୀ ପରି
କି ପ୍ରଶାନ୍ତ କି ଅକ୍ଷୋଭ୍ୟ ଅଟେ ସେହି ପୁରୀ ।
ବାୟୁ, ସୂର୍ଯ୍ୟ, ଚନ୍ଦ୍ର ଦେଶ ଅତିକ୍ରମି ଗଲେ
ଧ୍ରୁବ ମଣ୍ଡଳରେ ଯାଇ ପ୍ରବେଶ ହୋଇଲେ ।
ସାଧ୍ୟସିଦ୍ଧ ଲୋକେ ଯାଇ ହେଲେ ପରବେଶ
ତହୁଁ ଯାଇ ବ୍ରହ୍ମଲୋକେ ହେଲେକି ପ୍ରବେଶ ।
ବୈକୁଣ୍ଠ, ଗୋଲକ, ଶିବଲୋକ ଟପିଗଲେ
ପିତୃ ବିଦେହ ସଦେହ ଲୋକଙ୍କୁ ଦେଖିଲେ ।
ଅସୀମରୁ ଅସୀମକୁ ଉର୍ଦ୍ଧେ ଉଡ଼ିଗଲେ
ତହୁଁ ଲୀଳାରାଣୀ ପଶ୍ଚାତ୍ ଭାଗକୁ ଚାହିଁଲେ ।
ଚନ୍ଦ୍ର ସୂର୍ଯ୍ୟ ଆଦି କିଛି ଦେଖାଗଲେ ନାହିଁ
ଘନ ଅନ୍ଧକାର ଦଶ ଦିଗ ଘାରିଛଇ ।
ଲୀଳାଦେବୀ କହୁଛନ୍ତି ବାଗ୍‌ଦେବୀଙ୍କୁ ଚାହିଁ
ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ରଙ୍କ ତେଜ ଗଲା କାହିଁ ।
ଏ ନିବିଡ଼ ଅନ୍ଧକାର କାହୁଁ ଘୋଟି ଗଲା
ବୁଝାଇ କୁହନ୍ତୁ ମାତ ଛାନିଆଁ ପଶିଲା ।
ବାଗ୍‌ଦେବୀ କହନ୍ତି ଲୀଳେ ମୋର କଥା ଶୁଣ
ବହୁପଥ ଆସିଅଛି ଆକାଶ ପଥେଣ ।
ସେ ପଥ ଦୂରତ୍ୱ ଲୀଳେ କିଏ ବା କଳିବ
ବହୁ ଦୂର ବହୁ ଦୂର ଖାଲି କହୁଥିବ ।
ଏତେ ଦୂର ଆସିଛେ ଯେ କହି ହେଉ ନାହିଁ
ଅର୍କାଦି ତେଜଃ ପଦାର୍ଥ କିଛି ଦିଶୁ ନାହିଁ ।
ଘନ ଅନ୍ଧକାରାଚ୍ଛନ୍ନ କୂପ ଅଧଂ ଦେଶେ
ଖଦ୍ୟୋତ ଯେସନ ଖାଲି ଆଖିକି ନ ଦିଶେ ।
ସୁଦୂର ପଥ ହେତୁରୁ ଅର୍କାଦି ଆଲୋକ
ଦୃଷ୍ଟି ପଥେ ନ ପଡ଼ନ୍ତି ରମଣୀ ବିବେକ ।

### ଲୀଳା ଉବାଚ

ଅତଃପର କେଉଁ ପଥ ଅନୁସରି ଯିବା
ବୁଝାଇ କହନ୍ତୁ ମାତ ଯେମନ୍ତ କରିବା ।
"ଉତ୍ତରେ କହନ୍ତି ବୀଣାପାଣି ମହାମାୟୀ
ବ୍ରହ୍ମାଣ୍ଡ ଖର୍ପର ଦେଖ ଆଗେ ଦେଖାଯାଇ ।
ସୂର୍ଯ୍ୟ ଚନ୍ଦ୍ର ତାରା ନକ୍ଷତ୍ରାଦି ଆଦିକରି
ଏ ଖର୍ପର ମଧ୍ୟେଛନ୍ତି ଧୂଳିକଣା ପରି ।
ଏହିପରି କହୁ କହୁ ଆଗେଇ ଚାଲିଲେ
ବ୍ରହ୍ମାଣ୍ଡ ଖର୍ପର ମଧ୍ୟେ ଆସି ପହଞ୍ଚିଲେ ।
ଶୂନ୍ୟେ ଶୂନ୍ୟେ ମହା ଶୂନ୍ୟେ ଚଳିଯାଉଛନ୍ତି
ଅନାୟାସେ ସେ ପ୍ରଦେଶ ଅତିକ୍ରମି ଯାନ୍ତି ।

ଅବାସ୍ତବଣ୍ଡ ଯାହାର ହୁଏ ସୁନିଶ୍ଚିତ
ଶୂନ୍ୟପରି ସଦା ତାହା ହୁଏ ପ୍ରତିଭାତ ।
ବ୍ରହ୍ମାଣ୍ଡ ପରେ ସେମାନେ ଦୃଷ୍ଟି ନିକ୍ଷେପନ୍ତି
ଅତି ମନୋହର ଜଳାବରଣ ଦେଖନ୍ତି ।
ଦ୍ୱିତୀୟ ଆବରଣଟି ଅଟେ ଦଶଗୁଣ
ହୁତାଶନ, ହୁତାଶନ ଖାଲି ହୁତାଶନ ।
ତହିଁକି ଘେରି ଅଛଇ ମାରୁତାବରଣ
ଯାର ଆୟତନ ଅଟେ ଅଗ୍ନି ଦଶଗୁଣ ।
ଚତୁର୍ଥାବରଣ ଅଟେ ତାର ଦଶଗୁଣ
ବ୍ୟୋମ ଆବରଣ ବୋଲ କଥିତ ସେ ଜାଣ ।
ଏହି ବ୍ୟୋମ ଘେରିଅଛି ଅସୀମ ଅମ୍ବରେ
ବିଶୁଦ୍ଧ ଚିଦାକାଶ ବି ବୋଲନ୍ତି ତାହାରେ ।
ବଶିଷ୍ଠ ମୁନି କହନ୍ତି ଶୁଣ ହେ ରାଘବ
ଏ ଚିଦାକାଶ ସ୍ୱରୂପ କିଏ ବା ବର୍ଣ୍ଣିବି ।
କିଛିମାତ୍ର ଆଦି, ଅନ୍ତ ମଧ୍ୟ ଯାର ନାହିଁ
ସ୍ୱୀୟ ମହିମା ବଳରେ ବିରାଜି ଅଛଇ ।
ଯଦି ଶିଳାଖଣ୍ଡ ଯାର କୌଣସି ସ୍ଥାନରୁ
ଅକସ୍ମାତ ଚ୍ୟୁତ ହୁଏ କୌଣସି ହେତୁରୁ ।
ଆକଳ୍ପ ପର୍ଯ୍ୟନ୍ତ ତାହା ନୀଚେ ଖସୁଥିବ
ଚିଦାକାଶକୁ ପରଶ କରି ନ ପାରିବ ।
ଗରୁଡ଼ ଆକଳ୍ପ ଯାଏ ପ୍ରବଳ ବେଗରେ
ଉର୍ଦ୍ଧ୍ୱୁ ଯଦି ଖସୁଥାଏ ନିମ୍ନ ପ୍ରଦେଶରେ ।
ଅଥବା ମାରୁତ ଯଦି ତାର ଅନ୍ତରାଳେ
ଆକଳ୍ପ ପର୍ଯ୍ୟନ୍ତ ବହୁଥାଏ କାଳେ କାଳେ ।
କେହିହେଲେ ସେ ଅନାଦି ଚିଦାକାଶପ୍ରାନ୍ତ
ସ୍ପର୍ଶ କରି ନ ପାରିବେ ସେ ଅଟେ ଅନନ୍ତ ।
ସଦାଶିବ ଯେବେ ତାର ଅନ୍ତ ନେବାପାଇଁ
ମନବେଗେ ଧାଉଁଥିବେ ନିରବଧି ସେହି ।
ଗରୁଡ଼ ଆରୋହୀ ଯେବେ ବିଷ୍ଣୁ ଭଗବାନ
କଳ୍ପ କଳ୍ପାନ୍ତରେ ହେଉଥିବେ ଧାବମାନ ।
ଚିଦାକାଶ ଅନ୍ତ କେଉଁ ନ ପାଇବେ ସେହି
ନିଜେ ଚିଦାକାଶ ନିଜ ମହିମା ବୁଝଇ ।
ଏହି ଆଦି ଅନ୍ତ ଏବଂ ମଧ୍ୟ ବିରହିତ
ଶୁଦ୍ଧ, ବୋଧମୟ ପୁଣି ଯେ ଅଟେ ଅନନ୍ତ ।
ପରମ ଆକାଶ ଆଉ ଯେ ଅଟେ ଅବ୍ୟକ୍ତ
ସ୍ୱୀୟ ମହିମା ବଳରେ ଅଛି ପ୍ରତିଷ୍ଠିତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ଲୀଳା ଉପାଖ୍ୟାନେ ପରମାକାଶ ବର୍ଣ୍ଣନେ ନାମ ୨୩ଶ ସର୍ଗଃ ।**



## ୨୪ଶ ସର୍ଗ
## ବିଚିତ୍ର ବ୍ରହ୍ମାଣ୍ଡ ବର୍ଣ୍ଣନା

କହନ୍ତି ବଶିଷ୍ଠ, ରାମ ଶୁଣ ମୋର ବାଣୀ
ବିଚିତ୍ର ବ୍ରହ୍ମାଣ୍ଡ କଥା କହୁଛି ବରଣି ।
ଲୀଳା ସରସ୍ୱତୀ ଦୁହେଁ ବେଗେ ଚଳିଗଲେ
କ୍ଷଣକେ ବ୍ରହ୍ମାଣ୍ଡ ଖର୍ପରକୁ ଟପିଗଲେ ।
ତାର ଦଶଗୁଣାଧିକ ପୃଥ୍ୱୀ ଡେଇଁଗଲେ
କ୍ଷୀତ୍ୟାଦି ସକଳ ସ୍ତର ଅତିକ୍ରମି ଗଲେ ।
ଅସୀମ ପରମାକାଶ ନେତ୍ରେଯାଏ ପଡ଼ି
ବ୍ରହ୍ମାଣ୍ଡମାନ ଦିଶନ୍ତି ଫୁଲମାଳ ସରି ।
କେତେ ଅର୍ଦ୍ଧଭାଗେ ଛନ୍ତି କେତେ ଉର୍ଦ୍ଧ୍ୱ ଭାଗେ
ତିର୍ଯ୍ୟକଭାବେ କେତେକ ନିସ୍ତବଧ ଭାବେ ।
ଯେ ସବୁ ବ୍ରହ୍ମାଣ୍ଡମାନ କିସହେ ଶ୍ରୀରାମ
ବୁଝାଇ କହୁଛି ତାହା ମନ ଦେଇ ଶୁଣ ।
ବ୍ରହ୍ମାଣ୍ଡର ଅଭିମାନୀ ଏପରି ଯେ ଜୀବ
ତା' ସଂବିତ୍ ଅନୁସାରେ ବ୍ରହ୍ମାଣ୍ଡ ଉଦ୍ଭବ ।
ଯେ ଯେସନ ରୂପେ କାର୍ଯ୍ୟ କରୁଅଛି ରାମ
ଏ ସର୍ବ ଭବ ତା ପାଇଁ ସେହି ରୂପ ଜାଣ ।
ସେ ଯାହା ଦେଖେ ତାପାଇଁ ତାହା ଚିଦାକାଶ
ବାସ୍ତବରେ ତାର କିଛି ନାହିଁଟି ପ୍ରକାଶ ।
ଶୂନ୍ୟ ଛଡ଼ା ଏହା ଅନ୍ୟ କିଛି ନୁହେଁ ରାମ
ଆତ୍ମ ସତ୍ତା ଆପେ ଆପେ ରହିଅଛି ଜାଣ ।
ଉପୁଜିବା ମାତ୍ରେ ଜାଣ ସେହି ସଂକଳପ
ବିନଷ୍ଟ ହୋଇ ହରାଏ ନିଜର ସ୍ୱରୂପ ।
ତଥା ଚୈତନ୍ୟ ସଂବିତେ ଜଗତର ସୃଷ୍ଟି
ସ୍ଥିତି, ଲୟ ସଦା ଚାଲିଅଛି ଦାଶରଥି ।
ଏକଥା ଶୁଣି ରାମ ପୁଣି ପଚାରନ୍ତି
ଏହି ବ୍ରହ୍ମାଣ୍ଡରେ ଯଦି ଉର୍ଦ୍ଧ୍ୱାଦି ନାହାନ୍ତି ।

ଅଧଃ ଊର୍ଦ୍ଧ୍ୱାଦି ସେମାନେ କିପରି ଦେଖିଲେ
ସବିଶେଷ କରି ମୁନି କହ ମୋତେ ଭଲେ ।
ଦୂଷିତ-ନୟନ-ନର ନିର୍ମଳ ଆକାଶେ
ଯଥା କେଶୋଣ୍ଡକ ଦେଖେ ନୟନର ଦୋଷେ ।
ଆଦ୍ୟନ୍ତ ଆଦି ରହିତ ସ୍ୱଚ୍ଛ ଚିଦାକାଶେ
ଅବିଦ୍ୟା ଦୋଷରୁ ତାହା ସାବରଣ ଦିଶେ ।
ବ୍ରହ୍ମାଣ୍ଡାଧିପତି ଈଶ୍ୱରଙ୍କ ଇଚ୍ଛା ଘେନି
ସକଳ ପଦାର୍ଥ ପ୍ରଧାବିତ ଏ ଅବନୀ ।
ବ୍ରହ୍ମାଣ୍ଡ ପାର୍ଥିବ ଭାଗ ଅଧଃ ନାମ ବହେ
ତା ବିପରୀତ ଭାଗକୁ ଊର୍ଦ୍ଧ୍ୱ କୁହାଯାଏ ।
କଳ୍ପିତ ଊର୍ଦ୍ଧାଧଃ ଛଡ଼ା ବାସ୍ତବ ଊର୍ଦ୍ଧାଧଃ
ନଥିଲା ନାହିଁ, ନୋହିବ ଏ ସିଦ୍ଧାନ୍ତ ସିଦ୍ଧ ।
ଆକାଶ ମଧ୍ୟସ୍ଥ ଗୋଲାକାର ପେଣ୍ଡୁ ପରେ
ପିପିଲିକା ଚଲେ ଯଦି ଆପଣା ଇଚ୍ଛାରେ ।
ତା ପାଦ ସଂଲଗ୍ନ ଭାଗ ବୋଲାଇବ ଅଧଃ
ପାଦୋପରି ଯେଉଁଭାଗ ତାହା ହେବ ଊର୍ଦ୍ଧ୍ୱ ।
କେବଣ ବ୍ରହ୍ମାଣ୍ଡ ମଧ୍ୟ ଭୂତଳ ବୋଲାଏ
ବୃକ୍ଷ ବଲ୍ଲିକାଦି ଦ୍ୱାରା ଶୋଭା ପାଉଥାଏ ।
ଜନପଦ, ତହିଁ କିଛି ଦେଖାଯାଏ ନାହିଁ
ବ୍ୟୋମ ଭାଗ ସୁର ଅସୁରାଦି ପୂର୍ଣ୍ଣ ରହି ।
କେଉଁ ବ୍ରହ୍ମାଣ୍ଡରେ ଜରାୟୁଜ ଭରିଛନ୍ତି
ଜନପଦ ଚତୁର୍ବିଧ ପ୍ରାଣୀଏ ଅଛନ୍ତି ।
କାହିଁ କାହିଁ ବିନ୍ଧ୍ୟାରଣ୍ୟେ ହସ୍ତୀ ଜନମଇ
କିନ୍ତୁ ସର୍ବାରଣ୍ୟ କଥା ଅସ୍ଥିର ଅଟଇ ।
ତଥା ଚିଦାକାଶେ ମାୟା ସମନ୍ୱିତ ସ୍ଥାନେ
ତ୍ରସରେଣୁ ତୁଲ୍ୟ ବହୁ ବ୍ରହ୍ମାଣ୍ଡ ଜନମେ ।
କିନ୍ତୁ ଏ ମହାକାଶର ଅନ୍ୟ କେଉଁ ସ୍ଥାନେ
ବ୍ରହ୍ମାଣ୍ଡ ଉତ୍ପତ୍ତି ଦେଖା ନଯାଏ ନୟନେ ।
ଅସଂଖ୍ୟ ତରଙ୍ଗ ଯଥା ସମୁଦ୍ରେ ଜନମି
ବିଲୀନ ହେଉ ଅଛନ୍ତି ଜନମିବା କ୍ଷଣି ।
ତଥା ଚିଦାକାଶ ମଧ୍ୟେ ଅସଂଖ୍ୟ ବ୍ରହ୍ମାଣ୍ଡ
ଉତ୍ପନ୍ନ ବିଲୀନ ହେଉଛନ୍ତି ପ୍ରତି ଦଣ୍ଡ ।
ସେହି ଚିଦାକାଶ ମହା ଅର୍ଣ୍ଣବ ମଧ୍ୟରେ
ବହୁ ବ୍ରହ୍ମାଣ୍ଡ-ତରଙ୍ଗ ଉଠିବା ଉପରେ ।

ଅନେକ ଅଛନ୍ତି ପୁଣି ସୁସୁପ୍ତାବସ୍ଥାରେ
ସେମାନେ ଜଣାପଡନ୍ତି ଅନୁମାନ ବଳେ ।
ଆଉ ମଧ୍ୟ ରହିଛନ୍ତି କେତେକ ବ୍ରହ୍ମାଣ୍ଡ
ଯାହାଙ୍କ କଳ୍ପାନ୍ତ ବ୍ୟାପୀ ଘର୍ଘର ଶବଦ ।
ଏବେସୁଦ୍ଧା ପଡ଼ିନାହିଁ କାହାରି କର୍ଣ୍ଣର
କେହିସୁଦ୍ଧା ନ ଜାଣନ୍ତି ସେମାନେ ଥିବାର ।
ଅସଂଖ୍ୟ ବ୍ରହ୍ମାଣ୍ଡ ନାଶହୁଏ ପ୍ରତିକ୍ଷଣ
ଅନ୍ୟ ବ୍ରହ୍ମାଣ୍ଡ ଉତ୍ପତ୍ତି ସ୍ଥିତି ଅନୁକ୍ଷଣ ।
ଅଜ୍ଞ ଜୀବ ତାହା ସବୁ ଜାଣି ନ ପାରନ୍ତ
ସେ ସବୁ ବ୍ରହ୍ମାଣ୍ଡ ସୃଷ୍ଟି ବିଶୁଦ୍ଧ ଅଟନ୍ତ ।
ଯଥା ସିକ୍ତ ବୀଜୁ ଶୁଭ୍ର ଅଙ୍କୁର ଜନମ
ସେ ବ୍ରହ୍ମାଣ୍ଡ ମଧ୍ୟୁ ଶୁଦ୍ଧ ଜୀବ ଉତପନ୍ନ ।
ଯଥା ତାପ ସଂଯୋଗରେ ବରଫ ତରଳେ
ତଥା ଆମ କଥା ବାର୍ତ୍ତା ହେଉଥିବା କାଳେ ।
କେତେ ଶତ ବ୍ରହ୍ମାଣ୍ଡର ପ୍ରଳୟ ଘଟଇ
ସୂର୍ଯ୍ୟ, ବିଦ୍ୟୁତ୍, ଗରିମାନ ନିମ୍ନଗାମୀ ହୋଇ
ବିନା ଆଶ୍ରୟରେ କେତେ ଆକଳ୍ପ ପର୍ଯ୍ୟନ୍ତ
ନିମ୍ନଗାମୀ ହେଉଛନ୍ତି ଆହେ ରଘୁନାଥ ।
କେତେକ ବିଶୁଦ୍ଧ ଭାବେ ଛନ୍ତି ଅବସ୍ଥିତ
କିଏ ବା ସଂଖ୍ୟା କରିବ ସେ ତ ଅଗଣିତ ।
ଅବଶ୍ୟମ୍ଭାବୀ ଅଟେ ସେ ସୃଷ୍ଟିର ପତନ
ପୂର୍ବୋକ୍ତ ବ୍ୟବସ୍ଥା ସିନା ବଖାଣେ ଏମନ
ବାସନାମୟ ଯେ ହେତୁ ସକଳ ସମ୍ବିଦ
ସକଳ କଳ୍ପନା ତେଣୁ ସୁସମ୍ଭବ ପ୍ରଦ ।
ବାୟୁର ସ୍ପନ୍ଦନ ଅଛି ଯେସନ ଶ୍ରୀରାମ
ଆକାଶରେ କେଶୋଣ୍ଡ୍ରକ ଯଥା ଦରଶନ
ସମ୍ବିଦର ଉଦୟ ଯେ ସେହିରୂପ ରାମ
ସିଦ୍ଧ ସାଧକଙ୍କର ଦ୍ୱାରା ସ୍ଥିରୀକୃତ ଜାଣ ।
ପୂର୍ବ କର୍ମାର୍ଜିତ ଜ୍ଞାନ ଅନୁଷ୍ଠାନ କରେ
ଏ ବ୍ରହ୍ମାଣ୍ଡ ସୃଷ୍ଟି କର୍ତ୍ତା ହୁଅଇ ସେ ପରେ ।
ଏହି ସୃଷ୍ଟି ସହ ଅନ୍ୟ କର୍ତ୍ତାଙ୍କ ସର୍ଜ୍ଜନା
ମଧ୍ୟେ ବୈଷମ୍ୟ ରହିଛି ରାମ ମହାମନା ।
ଏକ ବ୍ରହ୍ମାଙ୍କ ସର୍ଜ୍ଜନା ଗୋଟିଏ ପ୍ରକାର
ଅନ୍ୟ ବ୍ରହ୍ମାଙ୍କ ସର୍ଜ୍ଜନା ଅନ୍ୟ ପରକାର ।

* ସମ୍ବିତ - ପ୍ରାକ୍ତନୋପାର୍ଜନା ଜନିତ ସଂସ୍କାରଜ୍ଞାନ ।

**ତେଣୁ ସୃଷ୍ଟିକ୍ରମ ରାମ ଅଟେ ଅନିୟତ**
**ବୈଲୟଣ ସିଦ୍ଧ ବୋଲି ଶାସ୍ତ୍ରଙ୍କର ମତ**
କେଉଁ ବ୍ରହ୍ମାଣ୍ଡକୁ ବ୍ରହ୍ମା ସୃଷ୍ଟି କରିଛନ୍ତି
କେଉଁ ବ୍ରହ୍ମାଣ୍ଡକୁ ବିଷ୍ଣୁ ସର୍ଜନା କରନ୍ତି ।
ଅଥବା କେଉଁ ବ୍ରହ୍ମାଣ୍ଡ ରୁଦ୍ରଙ୍କ କରଣୀ
ଗଣେଶ, ଦୁର୍ଗା, ଭୈରବ କା'କରତ ପୁଣି ।
ଅନ୍ୟ ପ୍ରଜାନାଥ ଦ୍ୱାରା କେ ପରିପାଳିତ
କେଉଁ ବ୍ରହ୍ମାଣ୍ଡ ପ୍ରାଣୀଏ ଅଟନ୍ତି ଅନାଥ ।
ବିଚିତ୍ର ଅଟନ୍ତି କେଉଁ ବ୍ରହ୍ମାଣ୍ଡ କରତା
ଏକୋଧିକ ମିଳି ତହିଁ ବୋଲାନ୍ତି ଯେ କର୍ତ୍ତା ।
ତୀର୍ଯ୍ୟକ ଅଟଇ କେଉଁ ବ୍ରହ୍ମାଣ୍ଡହେ ରାମ
ଏକାର୍ଣ୍ଣବ ପ୍ରାୟ କେଉଁ ବ୍ରହ୍ମାଣ୍ଡ ଅସୀମ ।
କେଉଁ ବ୍ରହ୍ମାଣ୍ଡ ଅଟଇ ନର ବିବର୍ଜିତ
କେ ଅଟେ ଘନ ନିବିଡ଼ ଶିଳା ଆଚ୍ଛାଦିତ ।
ଭରପୁର ରହିଛନ୍ତି କାହିଁ କୁର୍ମିଗଣ
କାହିଁ ବାସ କରିଛନ୍ତି ଦେବାଦେବୀ ଗଣ ।
ନରଗଣ କାହିଁ ରହିଛନ୍ତି ବାସ କରି
ନିତ୍ୟ ପ୍ରକାଶ ହୁଅନ୍ତି ଅନ୍ଧାର କାହିଁଅଛି ପୁରି ।
ଅନ୍ଧକାରେ ବସ୍ତୁଦର୍ଶୀ ପେଚକାଦି ଗଣ
ଅକାତରେ କାହିଁ କରୁଥାନ୍ତି ବିଚରଣ ।
ନିତ୍ୟ ପ୍ରକାଶ ହୁଅନ୍ତି କୌଣସି ସୃଷ୍ଟିରେ
ପ୍ରକାଶେ ବସ୍ତୁଦର୍ଶୀଏ ବସନ୍ତି ତହିଁରେ ।
କେବଣ ବ୍ରହ୍ମାଣ୍ଡ ମଶକରେ ପରିପୂର୍ଣ୍ଣ
ଅନ୍ତଃଶୂନ୍ୟ ନିଷ୍ପନ୍ଦ ଜନ୍ତୁଏ କାହିଁ ପୂର୍ଣ୍ଣ ।
ଦୃଶ୍ୟ ଅଦୃଶ୍ୟ ବ୍ରହ୍ମାଣ୍ଡ ଏତେ ଯେ ଅଛନ୍ତି
ଯୋଗୀଙ୍କ କଳ୍ପନା ପଥେ ମଧ୍ୟ ନ ଦିଶନ୍ତି ।
ବାସ୍ତବରେ ଏ ସକଳ ଏକ ମହାକାଶ
ସେ ମହାକାଶ ବିସ୍ତୃତ ବ୍ରହ୍ମାଣ୍ଡ ସଦୃଶ ।
ବିଷ୍ଣୁ ଆଦି ଦେବଗଣ ଉକ୍ତ ମହାକାଶ
ଆଜୀବନ ଭ୍ରମି କରି ନପାଇବେ ଶେଷ ।
ପରମାକାଶରେ ଥିବା ସକଳ ବ୍ରହ୍ମାଣ୍ଡ
ଭୂତାକର୍ଷଣ ଶକ୍ତିରେ ସକଳ ଆବଦ୍ଧ ।
ଏତିକି ମାତ୍ର ଜଗତ ବିଚିତ୍ର ଭୈରବ
ବରଣିଲି ତୁମ୍ଭ ଆଗେ ଜାଣହେ ରାଘବ ।
ସମ୍ପୂର୍ଣ୍ଣ ରୂପେ ଜଗତ ବୃତ୍ତାନ୍ତ କୀର୍ତ୍ତନ
ତୁମ୍ଭ ଆଗେ କରିବାକୁ ମୁଁ ଅତି ଅକ୍ଷମ ।
ଭୀମାନ୍ଧକାରେ ଯେସନ ଗାଢ଼ ଅରଣ୍ୟରେ
ପରସ୍ପରେ ଯକ୍ଷେ ନାଚୁଥାନ୍ତି ଅଦୃଶ୍ୟରେ ।
ଅନନ୍ତ ପରମାକାଶେ ବ୍ରହ୍ମାଣ୍ଡ ଅନନ୍ତ
ପରସ୍ପର ଅଦୃଶ୍ୟରେ ତଥା ପ୍ରସ୍ଫୁରିତ ।
**ଇତିଶ୍ରୀ ଯୋଗୀବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖ୍ୟାନେ ବିଚିତ୍ର ବ୍ରହ୍ମାଣ୍ଡ ବର୍ଣ୍ଣନେ**
**ନାମ ଚତୁର୍ବିଂଶତିତମ ସର୍ଗଃ ।**



## ପଞ୍ଚବିଂଶତି ସର୍ଗଃ
## ଗଗନ ନଗର ଯୁଦ୍ଧ

କହନ୍ତି ବଶିଷ୍ଠ ଶୁଣ ରାମଚନ୍ଦ୍ର ରାୟ
ଏବେ ମୁଁ କହୁଅଛଇ ବାଣୀ ଅଭିପ୍ରାୟ ।
"ଲୀଳା ନିଜ ପୂର୍ବଜନ୍ମ ଜଗତକୁ ଯାଉ
ପୂର୍ବ ଇତିବୃତ୍ତି ତାଙ୍କୁ ଅବଗତି ହେଉ" ।
ଲୀଳା ବାଣୀ ସହ ବହୁଜଗତ ବୈଚିତ୍ର୍ୟ
ଦେଖି ଦେଖି ଅନ୍ତଃପୁରେ ହେଲେ ଉପସ୍ଥିତ ।
ଅନ୍ତପୁରେ ମଣ୍ଡପଏ ସେ ପଦ୍ମରାଜାର
କ୍ଷଣକାଳ ରହି ତହିଁ ତେଜିଲେ ସେ ପୁର ।
ପଦ୍ମରାଜା ମହାଶବ ତହିଁ ସୁରକ୍ଷିତ
ଚକ୍ଷୁ ଝଲସାଇ ଦିଏ, ପୁଷ୍ପେ ଆଚ୍ଛାଦିତ ।
ଲୀଳାରାଣୀ ସେହିପରି ସମାଧିସ୍ଥ ହୋଇ
ସ୍ୱାମୀ ଶବ ପାଶେ ବସିଅଛି ମୌନ ହୋଇ ।
ପରିବାରବର୍ଗ ସର୍ବେ କାନ୍ଦି କାନ୍ଦି ତହିଁ
ଝାଉଁଳି ପଡ଼ି ଅଛନ୍ତି ବସିଲାର ଠାଇଁ ।
ଧୂପ କର୍ପୂର ଚନ୍ଦନ କୁଙ୍କୁମ ବାସରେ
ସେ ଅନ୍ତଃପୁର ମଣ୍ଡପ ସୁବାସ ବିତରେ ।
ଏସବୁ ଦେଖିଣ ଲୀଳା କିଛି ନ କହିଲା
ଅନ୍ୟ ଭର୍ତ୍ତାପୁର ଦେଖିବାକୁ ଇଚ୍ଛା କଲା ।
ଲୀଳା ବାଣୀ ତହୁଁ ଚିଦାକାଶେ ଉଡ଼ିଗଲେ
ଅନ୍ୟ ଭର୍ତ୍ତାର ସଙ୍କଳ୍ପମୟ ରାଜ୍ୟେ ହେଲେ ।
ପୁଣି ସଂସାରର ଆବରଣ ଭେଦ କରି
ବ୍ରହ୍ମାଣ୍ଡ ଖର୍ପର ଭେଦୀଯାନ୍ତି ପୂର୍ବପରି ।
ଅନ୍ୟ ବ୍ରହ୍ମାଣ୍ଡ ମଣ୍ଡପେ ହୋଇଲେ ପ୍ରବେଶ
ତହିଁ ଦେଖିଲେ ପତିଙ୍କ ସୁବିଶାଳ ଦେଶ ।
ତେତେବେଳେ ସିନ୍ଧୁଦେଶ ରାଜା ମାଡ଼ିଆସି
ବିଦୁରଥ ରାଜା ରାଜ୍ୟ ଘେରିଛି ଆକ୍ରୋସି ।

ଉଭୟ ନୃପତି ମଧ୍ୟେ ଘୋରଯୁଦ୍ଧ ଚଲେ
କଳନା ନହୋଇ କା'ର ସୈନ୍ୟ କେତେ ମଲେ ।
ସେ ଯୁଦ୍ଧ ଦେଖିବା ପାଇଁ ଲୀଳା ସରସ୍ୱତୀ
ଅଦ୍ଭୁତ ବିମାନ ଏକ ନିର୍ମାଣ କରନ୍ତି ।
ସତ୍ୟ ସଙ୍କଳ୍ପ ପ୍ରଭାବେ ସୁରମ୍ୟ ବିମାନ
କ୍ଷଣକେ ନିର୍ମାଣ କଲେ ସେ ରମଣୀଗଣ
ସଙ୍କଳ୍ପ ବଳେ ନିଶ୍ଚଳ ତାକୁ ରଖିକରି
ସତୃଷ୍ଣ ନୟନେ ଦେଖୁଥାନ୍ତି ଦୁଇନାରୀ ।
ସମଗ୍ର ଦିବସ ବ୍ୟାପି ଚଳଇ ସେ ଯୁଦ୍ଧ
କୁଢ଼ କୁଢ଼ ଗଦାମାନ ନାନାଦି ଆୟୁଧ ।
ସେହି ଅଦ୍ଭୁତ ସଂଗ୍ରାମ ଦେଖିବା ନିମିତ୍ତ
ତିନି ଭୁବନର ପ୍ରାଣୀ ଆସି ସମବେତ ।
ସିଦ୍ଧ ଚାରଣ ଗନ୍ଧର୍ବ ବିଦ୍ୟାଧରଗଣ
ଅବସ୍ଥାନ କରିଛନ୍ତି ସେ ଯୁଦ୍ଧ ପ୍ରାଙ୍ଗଣ ।
କାହିଁ ଅପସରିଗଣ ଉସତରେ ଧାଇଁ
ସୁରଗଣଙ୍କୁ ସ୍ୱାଗତ ଜଣାଇବା ପାଇଁ ।
କାହିଁ ରକ୍ତମାଂସ ଭୋଜି ରାକ୍ଷସ ଓ ଭୂତ
ପିଶାଚ, ପ୍ରେତ ଇତ୍ୟାଦି କରୁଥାନ୍ତି ନୃତ୍ୟ
ପୁଷ୍ପବୃଷ୍ଟି କରୁଛନ୍ତି କାହିଁ ବିଦ୍ୟାଧାରୀ
ବୀଣା ଜିଣାସ୍ୱରେ ଗାନ କରନ୍ତି କିନ୍ନରୀ ।
ଯୁଦ୍ଧ ଦେଖିବାକୁ କାହିଁ କୁଷ୍ମାଣ୍ଡ ବେତାଳ
ଯକ୍ଷ କିନ୍ନରାଦି ଆସି ହୋଇଛନ୍ତି ଠୁଳ ।
ଆୟୁଧ ପାତ ଭୟର ଶଙ୍କା ଚିତ୍ତେଧରି
ଆତ୍ମରକ୍ଷା ପାଇଁ ଗିରିତଟ ଆଶ୍ରେ କରି,
କାହିଁ ପୌରୁଷାଭିମାନୀ ମହାମହାବୀରେ
ଯୁଦ୍ଧ ଦରଶନେ ରତଛନ୍ତି ଆମୋଦରେ ।
କାହିଁ ଚାମର ଧାରୀଣୀ ବିଳାସିନୀ ଗଣ
ଉତ୍କଣ୍ଠିତ ଚିତ୍ତେ କରିଛନ୍ତି ଅବସ୍ଥାନ ।
ଦେବାର୍ଚ୍ଚନେ ରତଛନ୍ତି କାହିଁ ଋଷିଗଣ
କାହିଁ ସ୍ୱସ୍ତ୍ୟାୟନ କରୁଛନ୍ତି ମୁନିଜନ ।
ଯୁଦ୍ଧ ଦେଖି ବିହ୍ୱଳିତ ଅପ୍‌ସରା ମଣ୍ଡଳ
ସ୍ତବଗାନ କରୁଛନ୍ତି ଦିଗପାଳଙ୍କର ।
ସ୍ୱର୍ଗଯୋଗ୍ୟ ଦେବଗଣେ ଅଣାଇବା ପାଇଁ
ସୁନାଶିର ଆଗ୍ରହରେ ଦୂତ ବରଗଇ ।
ସୁରଗଣେ ସମାଦର କରିବାର ପାଇଁ
ଐରାବତେ କେଉଁଦୂତ ମଣ୍ଡନ କରଇ ।

ସ୍ୱର୍ଗଗାମୀ ସୁରଙ୍କର ମାନ୍ୟ ବରଧନ
ପାଇଁ ସଜାଡ଼ି ହୁଅନ୍ତି ଗନ୍ଧର୍ବ ଚାରଣ ।
ଅପାଙ୍ଗ ଭଙ୍ଗ କଟାକ୍ଷେ କାହିଁ ଦେବନାରୀ
ସତୃଷ୍ଣେ ଭର୍ତ୍ତାମାନଙ୍କୁ ନିରୀକ୍ଷଣ କରି ।
ବୀରଗଣ ଶୁଭଯଶେ ଦେବ ଦିବାକର
ଚନ୍ଦ୍ରୀକୃତ ଦିଶୁଛନ୍ତି ଥାଇଣ ଅମ୍ବର ।
ବଶିଷ୍ଠଙ୍କୁ ପୁଚ୍ଛାକଲେ କୌଶଲ୍ୟା ନନ୍ଦନ
ଯୋଦ୍ଧା ଆଖ୍ୟା କା'କୁ ଦେଇଥାନ୍ତି ଜ୍ଞାନୀଗଣ ।
ସ୍ୱର୍ଗକୁ ଯିବାପାଇଁକି କିଏ ଉପଯୁକ୍ତ
ଅନୁପଯୁକ୍ତ କିଏ ସେ ସେଥିର ନିମିତ୍ତ,
ସଂକ୍ଷେପ କରିଣ ଏହା, କହ ମୋତେ ଦେବ
ଯାହା ଘେନି ପରିତୋଷ ମୋର ଲାଭ ହେବ ।
ବଶିଷ୍ଠ ବୋଇଲେ ରାମ ଶୁଣ ମୋ ବଚନ
ଯଦ୍ୱାରା ତୁମ ସନ୍ଦେହ ହୋଇବ ମୋଚନ ।
ଶାସ୍ତ୍ର ଅନୁସରି ଯେଉଁ ବୀର ଯୋଦ୍ଧାମାନେ
ବିଜୟୀ ବା ମୃତ୍ୟୁ ହୁଅନ୍ତି ସଂଗ୍ରାମ ପ୍ରାଙ୍ଗଣେ ।
ଅଥବା ପଙ୍ଗୁ ହୋଇଣ ଜୀବିତ ରହନ୍ତି
ସରଗେ ବସାଏ ନେଇ ତାଙ୍କୁ ଜନ୍ତୁପତି ।
ଶାସ୍ତ୍ର ବିରୋଧୀ ପ୍ରଭୁର ସୁରକ୍ଷା ନିମିତ୍ତ
ଦେହ ପଣରଖି ଯେହୁ ଯୁଦ୍ଧେ ହୁଏ ମୃତ,
ଉପଯୁକ୍ତ ନୁହେଁ ସେହୁ ସ୍ୱର୍ଗଲାଭ ପାଇଁ
ନରକ ଗତି ଦିଅଇ ତାକୁ ଜନ୍ତୁ ସାଇଁ ।
ନ୍ୟାୟ ଅନୁସରି ଯୁଦ୍ଧ କରେ ଯେଉଁ ବୀର
ଭକ୍ତସୁର ବୋଲାଏ ସେ ଜ୍ଞାନୀଙ୍କ ମତରେ ।
ଗୋ ବ୍ରାହ୍ମଣ, ମିତ୍ର, ସାଧୁ ଶରଣାଗତଙ୍କ
ରକ୍ଷାପାଇଁ ରଣକରି ମରେ ଯେଉଁ ଲୋକ ।
ସେହିମାନେ ହିଁ ଅଟନ୍ତି ସ୍ୱର୍ଗର ଭୂଷଣ
ଆଉ କିସ କହିବଇଁ ତୁମକୁ ମୁଁ ରାମ ।
ସ୍ୱଦେଶ ପରିପାଳନେ ଥାଏ ଯେହୁ ରତ
ରାଜାର ରକ୍ଷଣ ପାଇଁ ଯୁଦ୍ଧେ ଯେ ପ୍ରବୃତ୍ତ,
ସେହି ସକଳ ବୀରଙ୍କୁ ବୀର ବୋଲି କହି
ଯୁଗେ ଯୁଗେ ଧନ୍ୟ ଧନ୍ୟ ଧନ୍ୟ ସେ ବୋଲାଇ ।
ପ୍ରଜା ଉପଦ୍ରବକାରୀ ପ୍ରଭୁ ବା ରାଜାର-
ନିମିତ୍ତ ଯୁଦ୍ଧ ପ୍ରବୃତ୍ତ ହୁଏ ଯେଉଁ ନର ।
ନରକ ପଥ ବରଣ କରେ ସେହୁ ରାମ
ଉଦ୍ଧାରି ନେବାକୁ ତାକୁ ତହୁଁ କେ ସକ୍ଷମ ?

ଯେଉଁ ଯୋଦ୍ଧା ଧର୍ମଯୁଦ୍ଧେ ଦେଇଥାଇ ପ୍ରାଣ
ସରଗେ ବସାଏ ତାଙ୍କୁ ନେଇ ଜନ୍ତୁରାଣ ।
ଅଧର୍ମ ଯୁଦ୍ଧେ ଯା' ପ୍ରାଣ ବିନାଶ ଘଟଇ
ଅତି ଭୟାବହ ପରଲୋକ ତାର ହୋଇ ।
ଧର୍ମଯୁଦ୍ଧେ ବୀର ହସ୍ତଧରିବାର ପାଇଁ
ବିଦ୍ୟାଧାରୀ, ଶୂରାଙ୍ଗନା ଥାଆନ୍ତି ଡକାଇ ।
ସୁର, ସିଦ୍ଧଙ୍କ ବିମାନ ତା ପାଇଁ ମଣ୍ଡିତ
ସରଗ ଉତ୍ସବ ଶୋଭା ଦ୍ୱିଗୁଣେ ବର୍ଦ୍ଧିତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ଲୀଳା ଉପାଖ୍ୟାନେ ଗଗନ ନଗର ଯୁଦ୍ଧ ବର୍ଣ୍ଣନେ ନାମ ପଞ୍ଚବିଂଶତି ତମସର୍ଗଃ ।**

❑

## ଷଡ୍‌ବିଂଶ ସର୍ଗଃ

### ରଣଭୂମି

ବଶିଷ୍ଠ ରାମଚନ୍ଦ୍ରଙ୍କୁ କହନ୍ତି ଅନାଇ
ବୀଣାପାଣି ସହଲୀଳା ନଭେ ବିରାଜଇ ।
ଧରାତଳେ ଦୁଇ ପକ୍ଷ ସୈନ୍ୟଙ୍କୁ ଦେଖନ୍ତି
ସତେକି ଦୁଇ ସମୁଦ୍ର ଯୋଡ଼ି ହୋଇଛନ୍ତି ।
ପାଖକେ ବିଦୁରଥର ଚତୁରଙ୍ଗ ସେନା
ଅନ୍ୟପାଖେ ସିନ୍ଧୁରାଜ ସେନା ଅକଳନା ।
ସେନାମାନେ ଉଭାଛନ୍ତି ବ୍ୟୁହଭାଗ କରି
ଗରୁଡ଼ ଓ ମତ୍ସ୍ୟ, ଚକ୍ରବ୍ୟୁହ ନାମ ଧରି ।
ସେନାଙ୍କର ଆଡ଼ମ୍ବର ବାକ୍ୟେ ନୁହେଁ କହି
ହୁତାଶନ ଶିଖା ସମ ସାଞ୍ଜୁ ଚହଟଇ ।
ବାଜି ଉଠେ ବୀର ବାଜା ଚିତ୍ତ ଉଠେ ଫୁଲି
ବୀରକାହାଳୀ ଶବଦେ ଗଗନ ଉଚ୍ଛୁଳି ।
ଶସ୍ତ୍ରଧାରୀ ଯୋଦ୍ଧାମାନେ ରଣପ୍ରାଙ୍ଗଣରେ
ଟାକିଛନ୍ତି ଯୁଦ୍ଧପାଇଁ ଆତ୍ମ ବିସ୍ମୃତିରେ ।
ପ୍ରାସ, ଭିନ୍ଦିପାଳ, ଋଷ୍ଟି ମୁଦୁଗର ଆଦି
ଇତସ୍ତତଃ ବିଚଳିତ ସର୍ବଦିଗ ଭେଦି ।
ସେଥିରୁ କନକ ନିନ୍ଦି ଉଜ୍ଜ୍ୱଳ କିରଣ
ଝଟକଇ ଅବିରତ ଭାନୁକର ସମ ।
ଗରୁଡ଼ ଢ଼େଣା ହଲାନ୍ତେ ବନଭୂମି ପରି
ସେ ଭୀଷଣ ରଣଭୂମି କମ୍ପି ଉଠେ ଥରି ।
ଉଭୟ ପକ୍ଷ ଯୋଦ୍ଧାଏ ଶ୍ରେଣୀ ବଦ୍ଧ ହୋଇ
କ୍ରୋଧ ଭରେ ଶର ଧରି ରହନ୍ତି ଅନାଇ ।
ହୁଙ୍କାର ନାଦ ତାଙ୍କର ଅତି ବିକଟାଳ
ଦେଖଣାହାରୀ ସଂଳାପ ଦବଇ ତତ୍‌କାଳ ।
ରାଜାଜ୍ଞାକୁ ରହିଁଛନ୍ତି ସେ ଉଭୟ ଦଳ
ପାଇଲାକ୍ଷଣି ମଚ୍ଚିବେ ସଇନ ସାଗର ।
ଚିନ୍ତାନଳ ଜାଳିଦିଏ ରାଜାଙ୍କ ଅନ୍ତର
ହୃତ୍‌କମ୍ପ ଜନମି ଉଠେ ଭୀରୁ ଗଣଙ୍କର ।
ଭୃକୁଟି କୁଟୀଳ ଦେଖି ଯୋଦ୍ଧ ବର୍ଗଙ୍କର
ଭୟେ ଭାଙ୍ଗି ପଳାବନ୍ତି କାପୁରୁଷ ଦଳ ।
ଯୋଦ୍ଧା, ମାତଙ୍ଗ, ଅଶ୍ୱାଦି ପ୍ରଧାବନ ଫଳେ
ନ ଦିଶନ୍ତି ଦିଗମାନ ଧୂଳି ପଟଳରେ ।
କିଏ ଆଗ ଆରମ୍ଭିବ ଦେଖିବାର ପାଇଁ
ରହିଁଛନ୍ତି ଯୋଦ୍ଧାମାନେ ଉଦବେଗ ହୋଇ ।
ଦବିଗଲା କଳରବ ନିଃସ୍ତବ୍ଧ ସେ ସ୍ଥଳି
କଳରବ ଶୂନ୍ୟ ଯଥା ନିଦ୍ରାକାନ୍ତ ପୁରୀ ।
ନ ପଡ଼ଇ କର୍ଣ୍ଣ ପଥେ ଆଉ ଶଂଖ ଧ୍ୱନି
ତୂର୍ଯ୍ୟାଦି ନିନାଦ କେହି ନ ପାରନ୍ତି ଶୁଣି ।
ଧୂଳି ପଟକ ଉଠଇ ତେଜି ଧରା ତଳ
ମେଘମାଳା ଆଚ୍ଛାଦେ ବି ଗଗନ ମଣ୍ଡଳ ।
ମତ୍ସ୍ୟବ୍ୟୁହ ନିର୍ମାଣ କରନ୍ତେ ବିଦୁରଥ
ମକର ବ୍ୟୁହ ରଚନ୍ତି ତାଙ୍କ ବିପରୀତ ।
ପରସ୍ପର ପରସ୍ପର ଏପରି ରଚନା
ବ୍ୟୁହମାନ ନିର୍ମାଣନ୍ତି ଦୁଇପକ୍ଷ ସେନା ।
ତିମି, ମଗର ସାଙ୍କୁଳେ ସମ ସିନ୍ଧୁପରି
ଭୟଙ୍କର ଦେଖାଯାଏ ସେହି ରଣସ୍ଥଳୀ ।
ପତାକାମାନ ଦିଶନ୍ତି ନଭେ ତାରାସମ
ଗଜାରୋହୀ ହସ୍ତୀମାନ ଦ୍ୟନ୍ତି ବନଭ୍ରମ ।
ଦଳେ ସେନା ଚକ୍ରବ୍ୟୁହ ନିର୍ମାଣ କରିଣ
ଅପରପକ୍ଷ ସେନାକୁ କଲେ ଆକ୍ରମଣ ।
ତହୁଁ ସେମାନେ ଗରୁଡ଼ ବ୍ୟୁହ ନିର୍ମାଣିଲେ
ମତ୍ତମାତଙ୍ଗ ଗଣଙ୍କୁ ତ୍ରସ୍ତବ୍ୟସ୍ତ କଲେ ।
ଶ୍ୱେନ ବ୍ୟୁହ ନିର୍ମାଣିଲେ ତହୁଁ ଶତ୍ରୁଦଳ
ବିହ୍ୱାଗ୍ର ଭେଦ କରିଣ କରନ୍ତି ଚିତ୍‌କାର ।
ଅସଂଖ୍ୟ ସୈନ୍ୟ ଆହତ ବାହାସ୍ଫୋଟ ଦ୍ୱାରା
ପାଦ ଦେବାପାଇଁ କାହିଁ ସ୍ଥାନ ନ ଦିଶିଲା ।
ଭୟଙ୍କର ନିନାଦରେ କମ୍ପେ ରଣଭୂମି
ନାଚନ୍ତି କବନ୍ଧମାନ କେପାରିବ ଗଣି ।

ଯେଉଁମାନେ ପ୍ରାଣଦେଲେ ସେ ରଣଭୂମିରେ
ବିଦ୍ୟାଧରୀ ଘେନିଗଲେ ତାଙ୍କୁ ସ୍ୱର୍ଗପୁରେ ।
**ଇତିଶ୍ରୀ ଯୋଗବାଶିଷ୍ଟେ ଲୀଳା ଉପାଖ୍ୟାନେ**
**ରଣଭୂମି ବର୍ଣ୍ଣନେ ନାମ ୨୬ଶ ସର୍ଗଃ ।**



## ୨୭ଶ ସର୍ଗଃ

## ଦ୍ୱନ୍ଦ ଯୁଦ୍ଧ

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ଭଗବନ
ସେ ଯୁଦ୍ଧ ବୃତ୍ତାନ୍ତ ଏବେ କରନ୍ତୁ ବର୍ଣ୍ଣନ ।
ଶ୍ରୀରାମଙ୍କୁ କହୁଛନ୍ତି ବଶିଷ୍ଠ ବ୍ରାହ୍ମଣ
ହେ ରାମ ! ଶୁଣିବା ଏବେ ଯୁଦ୍ଧର ବର୍ଣ୍ଣନ ।
କାଞ୍ଚନିକ ବିମାନରେ ଲୀଳା ସରସ୍ୱତୀ
ଧୀର ସ୍ଥିର ଚିତ୍ତ ହୋଇ ସମର ଦେଖନ୍ତି ।
ପ୍ରବଳ ପ୍ରଚଣ୍ଡ ସମ୍ମୁଖୀନ ଯୁଦ୍ଧ ଚଳେ
ଦେହଜ୍ଞାନ ଭୁଲିଛନ୍ତି ସଇନ ସକଳେ ।
ବିପକ୍ଷ ସେନାଏ ଆସି ପ୍ରଚଣ୍ଡ ବେଗରେ
ବିଦୂରଥଙ୍କ ସେନାଙ୍କୁ ଆକ୍ରମଣ କଲେ ।
ସମ୍ମୁଖ ଯୁଦ୍ଧକୁ ଅସମର୍ଥ ହୋଇ କରି
ଦୂରରୁ ଶୀଳା ମୁଦ୍‌ଗର ବରଷଣ କରି ।
ଉଭୟ ପକ୍ଷର ସେନା କ୍ରୋଧାନ୍ଧ ହୋଇଣ
ପରସ୍ପର ପରସ୍ପରେ ଦଳିଦ୍ୟନ୍ତି ଜାଣ ।
ଏଡ଼େ ଭୟଙ୍କର ହେଲା ସୈନ୍ୟ କୋଳାହଳ
ଦିଗ ପ୍ରକମ୍ପିତ ମେଘ ଗର୍ଜନ ଘର୍ଘର ।
ସମାଧିକାଳେ ଯେସନ ବାହିକ ଶବଦ
କରି ନ ପାରଇ କେଉଁ କର୍ଣ୍ଣପଥ ଭେଦ ।
ମେଘ ଗରଜନଛଡ଼ା ଅନ୍ୟ କିଛି ଧ୍ୱନୀ
କର୍ଣ୍ଣକୁ ଗୋଚର ନୋହୁଥିଲା ରଘୁମଣି ।
ମତ୍ତ ମାତଙ୍ଗମାନଙ୍କ ମୃତ ଦେହ ପଡ଼ି
ଦବିଯାଏ ଧରାତଳ ସମ୍ଭାଳି ନ ପାରି ।
ରଥୀଙ୍କ ରକତଧାରା ନଦୀଧାରା ପରି
ଅବିଶ୍ରାନ୍ତ ପ୍ରବାହିତ, ଗଙ୍ଗାଧାରା ସରି ।
ଦେଖିଲା ମାତ୍ରକେ ଏହି ରଣରଙ୍ଗ ଭୂଇଁ
ମନେ ହୁଏ ମୃତ୍ୟୁ, ଅବା ମୂର୍ତ୍ତିବନ୍ତ ହୋଇ ।
ବିକଟ ହାସ୍ୟବଦନେ କର ପ୍ରସାରିଣ
ଯୋଦ୍ଧାମାନଙ୍କୁ କରୁଛି ଗଳାଧଃ କରଣ ।
ବିଖ୍ୟାତ ଯୋଦ୍ଧାଏ କାହିଁ ବିପକ୍ଷ ଯୋଦ୍ଧାଙ୍କୁ
ଶୃଙ୍ଖଳ ବନ୍ଧକରିଣ ରହନ୍ତି ନିଶଙ୍କୁ ।
ବାଘ ଯଥା ନଖାଘାତେ ପଶୁ ବିଦାରଇ
ବୀରଙ୍କର ବାଘନଖା ଶତ୍ରୁ ବିଦାରଇ ।
କୁନ୍ତ ପରିଘ ଗଦା ଯେ ଭାଲାଦି ତ୍ରିଶୂଳ
ବର୍ଚ୍ଛା ଚକ୍ରଧରି ସର୍ବେ ମତ୍ତ ରଣସ୍ଥଳ ।
ବାରିଦ ଦର୍ଶନେ ଯଥା କେକୀ ନୃତ୍ୟକରେ
କବନ୍ଧ ନୃତ୍ୟ କରନ୍ତି ରଣ ପ୍ରାଙ୍ଗଣରେ ।
ମୁନି ସମ୍ରାଟ ବଶିଷ୍ଠ ବୋଲନ୍ତି ବଚନ
ଶୁଣ ଶୁଣ ହେ ଶ୍ରୀରାମ ଦେଇ ମନକର୍ଣ୍ଣ ।
ଯୁଯୁତ୍ସୁ ରାଜାଏ, ବୀରମନ୍ତ୍ରୀ, ନଭଶ୍ଚର
ଯୁଦ୍ଧକ୍ରମ ବାର୍ତ୍ତାଳାପ ହେଲେ ପରସ୍ପର ।
ଦେବ ଗନ୍ଧର୍ବାଦି ଗଣ ବୋଲନ୍ତି ବଚନ
ଅଗଣିତ ଶୂରଶିର ଖସନ୍ତି କେସନ ।
ବିହଙ୍ଗମ ପରି ଖସି ଆସନ୍ତି ସେମାନେ
ତାରା ଭ୍ରମ ଜନମାନ୍ତି ନିର୍ମଳ ଗଗନେ ।
କମଳ ସଙ୍କୁଳ ସରୋବର ଶୋଭା ପରି
ଧରାତଳ ମନୋହର ଦିଶଇ ସେପରି
ବୀର ରକ୍ତ କଣ ବାହି ବାୟୁ ଯୁଦ୍ଧ କ୍ଷେତ୍ରେ
ସିନ୍ଦୁର ସମ ଅରୁଣ ବର୍ଣ୍ଣ ଦିଶେ ନେତ୍ରେ ।
ସାୟଂକାଳ ସୂର୍ଯ୍ୟ ସମ ମଧ୍ୟାହ୍ନ ତପନ
ଦେଖ ଧରିଅଛି କେହ୍ନେ ଅରୁଣ ବରନ ।
ରକ୍ତବର୍ଣ୍ଣ ଶରମାନ ଦୂରୁ ଦେଖି କହି
ଭ୍ରମବଶ ଅନ୍ୟଜନେ ପ୍ରଶ୍ନ ପଚାରଇ ।
କିଏ ତୃଣ ରୋପିଗଲା ଏ ନଭମଣ୍ଡଳେ
ବୁଝାଇ କହିବା ଆଜ୍ଞା ବିଷଦ ଭାବରେ ।
ସେ କହନ୍ତି ଶୁଣବତ୍ସେ ନୁହେଁ ତା ପଲ୍ଲାଳ
ତା ଅଟେ ଶରାଚ୍ଛାଦିତ ବାରିଦ ମଣ୍ଡଳ ।
ନଭଚରେ ପଚାରନ୍ତି ବୀରଗଣେ ରହିଁ
ଧୈର୍ଯ୍ୟଧର ବୀରେ ଭୟନାହିଁ ଭୟନାହିଁ ।
ଉତ୍ସାହ ସହିତ ଯୁଦ୍ଧ ଚଳୁରଖ ବୀରେ
କାଳ ତା ଉତ୍ତର ଦେବ ଯଥା ସମୟରେ ।
ରଣକ୍ଷେତ୍ରେ ବୀରରକ୍ତେ ଯେତେ ରେଣୁ ସିକ୍ତ
ତେତେ ଅକ୍ଷଶସ୍ରବର୍ଷ ସ୍ୱର୍ଗଭୋଗ ପ୍ରାପ୍ତ ।
ଯେଉଁ ଯୋଦ୍ଧମାନେ ରଣେ ହତ ହେଉଥାନ୍ତି
ବିଦ୍ୟାଧରୀଗଣ ତାଙ୍କୁ ସ୍ୱର୍ଗେ ନେଉଥାନ୍ତି ।

ଦେବଗଣ ତାଙ୍କ ଚିର ସ୍ୱର୍ଗ ଭୋଗ ପାଇଁ
ଅକ୍ଷୟ ସ୍ତୁତି ଗାୟନ କରୁଥାନ୍ତି ତହିଁ ।
ଘନେଇ ଆସଇ ଯୁଦ୍ଧ ପରସ୍ପର ମଧ୍ୟେ
ନିରସ୍ତ୍ର ହୋଇ ଥୋକାଏ ମତ୍ତ ବାହୁ ଯୁଦ୍ଧେ ।
କେହୁ କହେ ହାୟହାୟ କି ହେଲା କି ହେଲା
କୁଣ୍ଡଳ ଶୋଭିତ ପିତୃ ମସ୍ତକ ଗଡ଼ିଲା ।
କି ଦାରୁଣ କି କରାଳ କାଳର ସ୍ୱଭାବ
ସୂର୍ଯ୍ୟକୁ ପରାଗେ ଦିଏ ରାହୁର ପ୍ରାଭବ ।
ସମନ ସଦୃଶ କିଏ ଦକ୍ଷିଣ ଦିଗରେ
* ଚିତ୍ରଦଣ୍ଡ ଧରି ଶିଳାମାନ ବୃଷ୍ଟି କରେ ।
ଧାଇଁଆସ ଯଥାସ୍ଥାନେ ଯିବାକ ପଳାଇ
ଆଉ ଏହି ସ୍ଥାନେ ରହିବାର ନ ଯୋଗାଇ ।
କଥୋପକଥନ ଶୁଣି ଦେବଗଣଙ୍କର
କେଉଁ ଲୋକେ କି ପ୍ରକାର ଯିବ କେଉଁ ବୀର ।
ନଦୀ ସୂମହକୁ ଯଥା ସିନ୍ଧୁ ଦିଏ ଗିଳି
ତେସନ ଏ ସେନାଦଳ ଶତ୍ରୁ ଦିଏ ଦଳି ।
ଅର୍ଦ୍ଧଛିନ୍ନ ହୋଇଛି କା'ଶିର କିନ୍ତୁ ଅସ୍ତ୍ରେ ।
କହି କହି ଚଳେ "ଚଳିଲଇଁ ସ୍ୱର୍ଗ ପଥେ" ।
ଉତ୍ସବ ଦେଖି ତହିଁ ସେ କହୁଛି ପକାଇ
"ନୂଆ ଦେହପାଇ ଏବେ ଜୀବିତ ହେଲାଇଁ" ।
ପକ୍ଷୀଙ୍କ କଳନିଃସ୍ୱନ ଶୁଭଇ ଯେସନ
ସ୍ୱର୍ଗଗାମୀ ବୀରବାଣୀ ଶୁଭଇ ତେସନ ।
ଯେଉଁ ବୀରପତ୍ନୀ ପୂର୍ବେ ମୃତ୍ୟୁ ଲଭିଥିଲେ
ଅପସରୀ ଦେହଧରି ନୃତ୍ୟ କରୁଥିଲେ ।
ଏବେ ମୃତ ସ୍ୱାମୀକୁ ସେ ଦେବତା ମଣିଣ
ଅତି ଆଦରେ ତାହାଙ୍କୁ କରନ୍ତି ଗ୍ରହଣ ।
କୁହାକୁହି ହେଉଛନ୍ତି ସେନାପତିଗଣ
ଦବି ଯାଇଛି କି ତାଙ୍କ ଉଲ୍ଲସିତ ମନ ।
ମହାପ୍ରଳୟ ସମୟେ କଲ୍ଲୋଳ ଯେସନ
ସୁମେରୁ ଶୈଳକୁ ନାଶେ କରି ବିଦାରଣ ।
ଆମ୍ଭ ଯବାନମାନଙ୍କୁ ବିପକ୍ଷ ସଇନ
ଉଦ୍ଧତ ମୁଷ୍ଟି ମାରଣେ କଲେ ବିନାଶନ ।
ଆରେ ମୂଢ଼ ସୈନ୍ୟଗଣ ଶୁଣ ଯା' କହୁଛି
ବୀର ମର୍ଦ୍ଦନ ଆଖ୍ୟା କି ପାସୋରି ଯାଇଛି ।

ଯୁଦ୍ଧକର ଯାଇ ଏବେ ହୋଇ ଅଗ୍ରସର
ଭଗ୍ନମନ ଯବାନଙ୍କୁ ଉତ୍ସାହିତ କର ।
ଏଇ ଦେଖ ତୁମ୍ଭ ମୃତ ବନ୍ଧୁଗଣ ଯାଇ
ଅପ୍ସରୀଗଣଙ୍କ ସଙ୍ଗେ ବିହରନ୍ତି ତହିଁ ।
ସୁଶୀତଳ ସୁରଧୂନୀ ତଟ ଛାୟା ତଳେ
ବିଶ୍ରାମ କରୁଅଛନ୍ତି କି ଆନନ୍ଦ ଭୋଳେ ।
ବୀରଙ୍କ ଅସ୍ଥି ସମୂହ ନଭ ମଣ୍ଡଳରେ
ତାରକା ଭ୍ରମ ଦିଅନ୍ତି କେଡ଼େ ଚମତ୍କାରେ ।
ଭୀରୁ ଯୋଦ୍ଧାଗଣ ମୃତ ଗଜ ଅନ୍ତରାଳେ
ପିପିଲିକାପରି ଗୁପ୍ତ ପର୍ବତାନ୍ତ ରାଳେ ।
ବୀରଛତ୍ର ଚନ୍ଦ୍ରସମ ନଭ ମଣ୍ଡଳରେ
କି ମନୋହର ଦିଶନ୍ତି ଦେଖ ଧରାତଳେ ।
ଯଥା ପଙ୍ଗପାଳ ଶସ୍ୟ କ୍ଷେତ୍ର ନଷ୍ଟକରେ
ଆକାଶୁ ପତନ ପରି ଶକ୍ତି କ୍ଷୟ କରେ ।
ପତଙ୍ଗ ଧାମନ୍ତି ଯଥା ଅନଳଦର୍ଶନେ
ସମୁଦ୍ର ପାଖକୁ ଯଥା ଧାନ୍ତି ନଦୀମାନେ ।
ଦେଶ ଦେଶାନ୍ତରୁ ଯୋଦ୍ଧା କି ବେଗରେ ଆସି
ରଣ ପ୍ରାଙ୍ଗଣ ମଧ୍ୟକୁ ଯାଉଛନ୍ତି ପଶି ।
କାହା ଶିର କଟିଯାଇ କବନ୍ଧ ଯୁଝଇ
କାର ଭୁଜ କଟିଯାଇ ଓଲଟି ପଡ଼ଇ ।
ରଥ ଚଢ଼ିଯାଏ କେଉଁ ଯବାନ ଉପରେ
ଅଶ୍ୱ, ହସ୍ତୀ ଓଲଟିଣ ପଡ଼ନ୍ତି ମହୀରେ ।
ରାଜଦ୍ୱୟଙ୍କୁ ସାହାଯ୍ୟ ଦେବାର ନିମିତ୍ତ
ନାନା ଦେଶୁ ରାଜାମାନେ ଆସି ଉପସ୍ଥିତ ।
ପୂର୍ବଦିଗ ଦେଶୁ କାଶୀ ମିଥିଳା କୋଶଳ
ମଗଧ ମେକଳ ପୁଣି କର୍ଣ୍ଣାଟ ଉତ୍କଳ ।
ମାନ୍ଦ୍ରାସ, କାଶ୍ମୀର, ଭୀଳା, କିରାତ ମାଳବ
ମ୍ଳେଚ୍ଛ, ପାରସୀ, ତୁରସ୍କ ସକଳା ପଞ୍ଜାବ ।
ସୁମେରୁ ହିମାଳୟାଦି ବହୁ ଦିଗପାଳ
ରୁଣ୍ଡ ହୋଇଛନ୍ତି ଆସି ରଣ ଭୂମିସ୍ଥଳ ।
ଉଚ୍ଚଗ୍ରୀବ, ଅଶ୍ୱମୁଖ ଶ୍ୱାନମୁଖ ଆସି
ଏକାକ୍ଷ, ଏକାଚଳ ଯେ ରାଜନ ଇତ୍ୟାଦି ।
ସୁମେରୁ କୈଳାଶ ରାଜା ଆସି ପ୍ରବେଶିଲେ
ପୃଥିବୀର ରାଜାମାନେ ସର୍ବେଯୋଗ ଦେଲେ ।

* ଚିତ୍ରଦଣ୍ଡ – ଏକପ୍ରକାର ଚକ୍ରଯନ୍ତ୍ର ।

ମହାପ୍ରଳୟେ ସାଗର ଉଛୁଳେ ଯେସନ
ସୈନ୍ୟ ସାଗରେ ପୁରିଲା ସେହି ରଣସ୍ଥାନ ।
ଉଭୟ ପକ୍ଷରୁ ଯୁଦ୍ଧ ଆରମ୍ଭ ହୋଇଲା
ବେଳୁବେଳ ଯୁଦ୍ଧମାତ୍ରା ଘନେଇ ଆସିଲା ।
ଏକ କହେ ଯୁଦ୍ଧକୁ ମୁଁ ପ୍ରଥମେ ଯାଉଛି
ଦ୍ୱିତୀୟ କହେ ତୁ ରହ ମୁଁହି ଆରମ୍ଭୁଛି ।
ଧାଇଁ ଧାଇଁ ଯୋଦ୍ଧାମାନେ ଯୁଦ୍ଧେ ପଶୁଛନ୍ତି
ପଲକ ମାତ୍ରକେ ମୃତ୍ୟୁ ମୁଖେ ଖପୁଛନ୍ତି ।
ଘୃତାହୂତି ଅଗ୍ନି ମଧ୍ୟେ ଭସ୍ମହୁଏ ଯଥା
ରଣାଗ୍ନିରେ ବୀରଗଣେ ଜଳିଯାନ୍ତି ତଥା ।
ବହି ଚଳନ୍ତି ରକତ ନଦୀମାନ ତହିଁ
ହସ୍ତୀ, ଘୋଡା, ରଥ ତୃଣପରି ଭାସିଯାଇ ।
ବାତ୍ୟାରେ ଫଳ, ଫୁଲାଦି ଝଡ଼ିପଡ଼େ ଯଥା
ପୃଥ୍ୱୀପରେ ଶିରମାନ ଝଡୁଥାନ୍ତି ତଥା ।
ଏପରି ଯୁଦ୍ଧ ଲାଗିଲା କହିହେବ ନାହିଁ
ଶେଷନାଗ ସହସ୍ରମୁଖେ ବର୍ଣ୍ଣି ନ ପାରଇ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଲୀଳୋପାଖ୍ୟାନେ**
**ଦ୍ୱନ୍ଦ ଯୁଦ୍ଧ ବର୍ଣ୍ଣନେ ନାମ**
**ସପ୍ତବିଂଶତି ସର୍ଗଃ ।**



## ୨୮ଶ ସର୍ଗଃ

## ସ୍ମୃତି ଅନୁଭବ ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ରାମ ଏହି ପରକାରେ
ଯୁଦ୍ଧ ଶେଷ ହେଲା ସୂର୍ଯ୍ୟ ଅସ୍ତାଚଳେ ଗଲେ ।
ବିଦୁରଥ ସେନାପତି ମନ୍ତ୍ରୀଙ୍କୁ ଡକାଇ
ବୋଇଲେ ତ ନିଶି ଆସି ଏବେ ପ୍ରବେଶଇ ।
ଯୁଦ୍ଧବନ୍ଦକର ମନ୍ତ୍ରୀ ଯୁଦ୍ଧ ବନ୍ଦକର
ଥକି ପଡ଼ିଲେଣି ସବୁ ସଇନ ମୋହର ।
ରାତ୍ରିରେ ବିଶ୍ରାମ ପୁଣି ଦିବସେ ସମର
ଯୁଦ୍ଧ ଶାନ୍ତ ପାଇଁ ଆଜ୍ଞାକର ହେ ପ୍ରବର ।
ଉଭୟ ପକ୍ଷଙ୍କ ମଧ୍ୟେ ଥିବା ସ୍ତମ୍ଭ ପରେ
ଶୁକ୍ଳପତାକା ହସ୍ତରେ ସଚିବ ଉଠିଲେ ।
ପତାକା ଦେଖାଇ ମନ୍ତ୍ରୀ କହନ୍ତି ବଚନ
ବନ୍ଦକର ଯୁଦ୍ଧ ବୀରେ କ୍ଷାନ୍ତ ରହ ପୁଣ ।
ଦିବସ ହୁଅନ୍ତେ ପୁଣି ଯୁଦ୍ଧର ବିରହ
"ବାଜି ଉଠେ ନଉବତ ବାଜେ ପରଖର" ।

ଯୁଦ୍ଧ ଅନ୍ତେ ସେନାଗଣ ଫେରନ୍ତି ଶିବିରେ
ବିଦୁରଥ ରାଜା ମଧ ବାହୁଡ଼ିଲେ ଘରେ ।
ମେଘ ରହିତ ଶରତ ନଉପଟ ପରି
ଶାନ୍ତି ପଡ଼ିଗଲା ରଣଭୂମି ପୂର୍ବପରି ।
ପିଶାଚ, ରାକ୍ଷସ ଆଉ ଗଧିଆ, ବିଲୁଆ
ରଣସ୍ଥଳୀ ମଧ୍ୟେ ଆସି ମାଇଲେକ ଡିଆଁ ।
ଡାକିନୀ ଇତ୍ୟାଦି ଯେତେ ନିଶାଚରୀ ଗଣ
ବିକଟ ନାଦରେ ରାତ୍ର ଭୋଜନେ ମଗନ ।
ଯେ ଛାଡ଼ିଛି ପ୍ରାଣ ସେହି ଗଡୁଛି ଭୂମିରେ
ଅର୍ଦ୍ଧମୃତ ହାୟହାୟ ଶବଦ ଚିତ୍କାରେ ।
ନିଶାଚର ଗଣ ଦେଖି ଡରୁଥାନ୍ତି ମନେ
ଭାଇବନ୍ଧୁମାନଙ୍କୁ କେ ଦେଖନ୍ତି ନୟନେ ।
ସମସ୍ତ କବାଟ ଆଣ୍ଠେ ଦେଇଛନ୍ତି କିଳି
ମନ୍ତ୍ରୀଙ୍କି ପୁଛନ୍ତି କାଲି କି କରିବେ ବୋଲି ।
ଏ ବିରହ କରୁକରୁ ପଡ଼ଇ ନୟନ
ମୁହୂର୍ତ୍ତକ ମଧ୍ୟେ ଗୁଣି ଆସଇ ଚେତନ ।
ଚିନ୍ତାରେ ଜଳୁଛି ମନ ଯୁଦ୍ଧକଥା ଭାବି
ମନେ ଆସେ କେତେ କଥା ନୟନ ନ ଦବି ।
ମନ୍ତ୍ରଣା ସରନ୍ତେ ମନ୍ତ୍ରୀ ବାହୁଡ଼ିଣ ଗଲେ
ପୁଷ୍ପ ଶଯ୍ୟାରେ ରାଜନ ଶୟନ କରିଲେ ।
ଏସନ ସମୟେ ଲୀଳାଦେବୀ ସରସ୍ୱତୀ
ଆକାଶସ୍ଥ ବିମାନକୁ ସତ୍ୱରେ ତେଜନ୍ତି ।
ଛିଦ୍ରପଥେ ସେହି ଗୃହେ କରନ୍ତି ପ୍ରବେଶ
କାହାରି ନେତ୍ରକୁ ସେହୁ ନ ହୁଅନ୍ତି ଦୃଶ୍ୟ ।
ପୁଚ୍ଛାକଲେ ରାମଚନ୍ଦ୍ର ଆହେ ଗୁରୁଦେବ
ଏବେ ମୋ ସନ୍ଦେହ ଗୋଟି ମୋଚନେ କରିବ ।
ଛିଦ୍ର ମଧ୍ୟେ ସ୍ଥୁଳ ଦେହ ପଶିଲା କେସନେ ?
ଏକଥା ବୁଝିବା ପାଇଁ ଅକ୍ଷମ ମୁଁ ଜାଣ ।
ବଶିଷ୍ଠ ବୋଇଲେ ରାମ ଯା କହୁଛି ଶୁଣ
ଆଧିଭୌତିକ ଯେ ଦେହ ଭ୍ରାନ୍ତିରୁ ଜନମେ ।
କେବେହେଲେ ସେ ଶରୀର ଛିଦ୍ର ମଧ୍ୟଦେଇ
ପ୍ରବେଶ କରିବା କଥା ସମ୍ଭବ ନୁହଇ ।
ସ୍ଥୁଳଦେହ ବିଷୟକ ଜ୍ଞାନ ଯାର ନାହିଁ
ସୂକ୍ଷ୍ମଦେହେ ବିଚରଣ ଯେ କରିପାରଇ ।
ସୂକ୍ଷ୍ମେ ଗମନାଗମନେ କଉଣସି କଷ୍ଟ
ହୁଏ ନାହିଁ, ଜାଣିରଖ ଆହେ ରଘୁଶ୍ରେଷ୍ଠ ।

କି ଅନ୍ତରେ କି ବାହାରେ ଉଭୟ କ୍ଷେତ୍ରରେ
କୌଣସି ପ୍ରକାର ବିଘ୍ନ ହୋଇ ତ ନପାରେ ।
ଗଗନ ସଦୃଶ ଯାର ଯଥାର୍ଥ ଆକୃତି
କାହାଦ୍ୱାର ଅବରୁଦ୍ଧ ହେବ ରଘୁପତି ?
ତେଣୁ ଚିତ୍ତହିଁ କେବଳ ଯାହାର ଆକୃତି
ସେ ଶୂନ୍ୟ ସୂକ୍ଷ୍ମକୁ ରୋଧିବାକୁ କାର ଶକ୍ତି ?
ଚିତ୍ତ ଅନୁଭବ ବଳେ ଭୌତିକ ଶରୀର
ଆତିବାହିକତ୍ୱ ଲଭେ ବୁଝ ରଘୁବୀର ।
ଏ ଆତିବାହିକ ଦେହ ଖାଲି ଚିତ୍ତମୟ
ସୂକ୍ଷ୍ମାଦପି ସୂକ୍ଷ୍ମ ତାହା ବୁଝ ରଘୁରାୟ ।
ଅଣୁ ବା ପରମାଣୁରେ ତାହା ରହିପାରେ
ଅକଳନୀୟ ଅଚିନ୍ତ୍ୟ କିଏ ବର୍ଣ୍ଣିପାରେ ।
ପରିବ୍ୟାପ୍ତ ହୋଇପାରେ ଅନନ୍ତ ଆକାଶେ
ଶୂନ୍ୟାଦପି ଶୂନ୍ୟ ତାହା ବୁଝ ରଘୁ ଶିଷ୍ୟେ ।
ଯଥା ସିନ୍ଧୁଠାରୁ ସିନ୍ଧୁ ଢେଉ ନୁହେଁ ଭିନ୍ନ
କୋଟି ବ୍ରହ୍ମାଣ୍ଡ ସର୍ଜନା ଚିତ୍ତରୁ ଅଭିନ୍ନ ।
ପ୍ରକୃଷ୍ଟ ବୋଧ ସ୍ୱରୂପେ ଏ ଚିତ୍ତ-ଶରୀର
ସୃଷ୍ଟି ଅଗ୍ରେ ଅବସ୍ଥାନ କରେ କାଳ କାଳ ।
ପରେ ଆକାଶାତ୍ମାରୂପେ ହୁଅଇ ମହାନ
ପ୍ରାରବ୍ଧ କର୍ମାନୁରୂପେ ଲଭେ ବୃତ୍ତିମାନ ।
ଏହି ଯେ ଆକାଶ ଆତ୍ମା ଯା' କଥା କହୁଛି
ବ୍ରହ୍ମାଣ୍ଡରୂପେ ବିସ୍ତାର ଲାଭ ସେ କରିଛି ।
ରାମ ବୋଲନ୍ତି ହେ ଦେବ ଆମର ଯେ ଚିତ୍ତ
ଏମନ୍ତ କି ଶକ୍ତିମାନ କହ ତପୋବନ୍ତ ?
କିମ୍ବା ପ୍ରତି ଜୀବ ଚିତ୍ତ ବିଭିନ୍ନ ଜଗତ
ଅନୁଭବ କରେ ତାହା କହ ଜ୍ଞାନବନ୍ତ ।
ଅଥବା ସକଳ ଚିତ୍ତ ଏକଇ ଜଗତ
ଅନୁଭବ କରୁଥାନ୍ତି କରନ୍ତୁ ବ୍ୟକତ ।
ବଶିଷ୍ଠ କହନ୍ତି ରାମ ସକଳଙ୍କ ଚିତ୍ତ
ଏହିରୂପ ଶକ୍ତିମାନ ଏକଥା ନିଶ୍ଚିତ ।
ଆବର ପ୍ରତ୍ୟେକ ଚିତ୍ତ ବିଭିନ୍ନ ଜଗତ
ଦରଶନ କରିପାରେ ଆହେ ରଘୁନାଥ ।
ମରଣକାଳେ ସକଳେ ମୂର୍ଚ୍ଛା ଲଭିଥାନ୍ତି
ଏହି ମୂର୍ଚ୍ଛା ହିଁ କେବଳ ପ୍ରଳୟର ରାତ୍ରି ।
ସେଇ ରଜନୀର ଅବସାନ ଘଟିଲେ
ବିଭିନ୍ନ ସୃଷ୍ଟି ରଚନା କରନ୍ତି ସକଳେ ।
ଜ୍ଞାନ କର୍ମ ଅନୁରୂପେ ସର୍ଜନା ସେ କରେ
ପରିବର୍ତ୍ତନ ସମ୍ଭବ ନୁହେଁ ତା ଚେଷ୍ଟାରେ ।
ବିକାର ଗ୍ରସ୍ତ ହୋଇଣ ରୋଗୀ ଯେ ପ୍ରକାରେ
ପାହାଡ଼ ନାଚୁଛି ବୋଲି ଦେଖେ ତା ନେତ୍ରରେ ।
ଅନାଦି ଅବିଦ୍ୟା ବେଳେ ସୃଷ୍ଟି ସେହିପରି
ତାକୁ ଅନ୍ୟଥା କରିବା ଶକତି କାହାରି ?
ହେ ରାମ, ହିରଣ୍ୟଗର୍ଭ ବୋଲି ଯେ ବୋଲାଏ
ତାହାଙ୍କୁ ଆଦି ବିରାଟ ବ୍ରହ୍ମା କୁହାଯାଏ ।
ମହାପ୍ରଳୟର ହୋଇଗଲେ ଅବସାନ
ହିରଣ୍ୟଗର୍ଭ ସର୍ବତ୍ର ରହେ ପରିପୂର୍ଣ୍ଣ ।
ସେହିପରି ହେ ଶ୍ରୀରାମ ମୃତ୍ୟୁ ଅନନ୍ତର
ଅନୁଭବ ହୋଇଥାଏ ହିରଣ୍ୟ ଗର୍ଭର ।
ରାମ କହିଲେ ହେ ଦେବ ସତ୍ୟ ସଂକଳପ
ଯେ ହିରଣ୍ୟଗର୍ଭ ତାର କେହ୍ନେ ହେବ ଲୋପ ?
ତହୁଁ ଜନମ ଜଗତ ଅସତ୍ୟ କିପରି
ବୁଝାଇ କହିବା ମୋତେ ଆହେ ତପଚାରୀ ।
କହନ୍ତି ବଶିଷ୍ଠ ରାମ ମହାପ୍ରଳୟରେ
ବିଦେହ ମୁକ୍ତି ଲଭନ୍ତି ବ୍ରହ୍ମା ହରିହରେ ।
ତେଣୁ ତାଙ୍କ ସ୍ମୃତି ରକ୍ଷାପାଇଁ ହେ ଶ୍ରୀରାମ
କିଛିମାତ୍ର ସମ୍ଭାବନା ନାହିଁଟି ଜାଣିମ ।
ଅପ୍ରବୁଦ୍ଧ ଅବସ୍ଥାରେ ଯେମାନେ ଥାଆନ୍ତି
ଜନ୍ମ, ମୃତ୍ୟୁ, ଅନୁଭୂତି, ସଦା ଭୋଗୁଥାନ୍ତି ।
ପ୍ରାକ୍ତନ ସ୍ମୃତିହିଁ ରାମ ଜନ୍ମ ମରଣର
କାରଣ ଅଟଇ ବୋଲି ଜାଣ ନିରାଧାର ।
ଜନ୍ମ ମୃତ୍ୟୁ ସ୍ମୃତି ମୂଳ-ସଂସ୍କାର ପ୍ରାକ୍ତନ
ବିଦେହ ମୁକ୍ତର ତାହା ନୁହେଁ କଦାଚନ ।
ବିଦେହ ମୁକ୍ତର ସୃଷ୍ଟି କାହୁଁ ସମ୍ଭବିବ
ବୋଧ ଆତ୍ମା ହେତୁ ଅବିନାଶୀ ସେ ରାଘବ ।
ମରଣ ଲଭିଲେ ଜୀବମୃତ୍ୟୁ ମୂର୍ଚ୍ଛା ପାଏ
କିନ୍ତୁ କୈବଲ୍ୟଭାବରୁ ସୁଦୂରେ ସେ ଥାଏ ।
ମୂର୍ଚ୍ଛାର ସମ୍ବିତ୍ ତାର ଶୂନ୍ୟରୂପ ଧରେ
ଚିତ୍ତ ସମ୍ବେଦନ ତହୁଁ ପୁନଶ୍ଚ ସଞ୍ଚରେ ।
ମରଣ ମୂର୍ଚ୍ଛାର ପରେ ଜୀବର ଅନ୍ତରେ
ଯେଉଁ ଅଜ୍ଞ ସୃଷ୍ଟିଭାବ ଉଦୟ ସତ୍ୱରେ ।
ପୁରାଣାଦି ଶାସ୍ତ୍ରମାନ ତାକୁ ଅନୁସରି
ସୃଷ୍ଟି ପ୍ରଣାଳୀ ବର୍ଣ୍ଣନ କରନ୍ତି ବିଚାରି ।

"ବ୍ୟୋମ ପ୍ରକୃତି" ବୋଲିଣ ତାହାକୁ କହନ୍ତି
ଅବ୍ୟକ୍ତ, ଜଡ଼, ଅଜଡ଼ ମଧ୍ୟେ ତାର ସ୍ଥିତି ।
ଏହି ବ୍ୟୋମାତ୍ମିକା ପ୍ରକୃତିରେ ଯେତେବେଳେ
ଚିତ୍ତର ପ୍ରତିଫଳନ ଘଟେ ଅତର୍କରେ ।
ଅହଂଭାବ ସମୁଦିତ ହୋଇଆସେ ଯହୁଁ
ପଞ୍ଚତନ୍ମାତ୍ରାରେ ଆସି ପ୍ରବେଶନ୍ତି ତହୁଁ ।
ଆଧାର, ଆଧେୟ, ଦେଶ, କାଳ, କ୍ରିୟାମାନ
ସୂକ୍ଷ୍ମଭାବ ଧରି ଆସି ପହଞ୍ଚନ୍ତି ପୁଣ ।
କିୟତ ସ୍ଥୂଳ ଆକାର ପରେ ସେ ଧରନ୍ତି ।
ଇନ୍ଦ୍ରିୟ ଆକାରେ ଯାଇ ପ୍ରକାଶ ଲଭନ୍ତି ।
ଏହି ସୂକ୍ଷ୍ମ ବୁଦ୍ଧିମୟ ଯେ ପଞ୍ଚ ଇନ୍ଦ୍ରିୟ
ତା ଅଟେ ଆତିବାହିକ ଦେହ ରଘୁରାୟ ।
ତାପରେ "ମୁଁ ସ୍ଥୂଳ" ଏହି କଳ୍ପନା ପ୍ରଭାବେ
ଏ ଆତିବାହିକ ଦେହ ରହେ ସ୍ଥୂଳଭାବେ ।
ସ୍ଥୂଳଦେହେ ଇନ୍ଦ୍ରିୟଙ୍କ ବଶୀଭୂତ ହୋଇ
ପାରିପାର୍ଶିକ ବସ୍ତୁକୁ କ୍ରମେ ଆଦରଇ ।
ସ୍ତ୍ରୀ ସମ୍ଭୋଗ କାଳ ଯଥା ସ୍ୱପନ ପରାୟ
ସେହିପରି ସ୍ୱପ୍ନସମ, ଜଗତ୍ ଭ୍ରାନ୍ତିମୟ ।
ଲେଶମାତ୍ର ସତ୍ୟନାସ୍ତି ବୁଝିବ ତାହାର
ଅସତ୍ୟ ବୋଲି ତାହାକୁ ହେୟ ଜ୍ଞାନକର ।
ଯେଉଁଠାରେ ମରେ ଜୀବ ସେହିଠାରେ ତାର
ଜଗତ ଦର୍ଶନ ହୁଏ ଜାଣ ରଘୁବୀର ।
ଗଗନ ସଦୃଶ ସୂକ୍ଷ୍ମଜୀବର ହେ ରାମ
ନଥିଲେ ହେଁ ଜନ୍ମ କିମ୍ବା ନଥିଲେ ମରଣ ।
ଦେହ ଆଦି ଭାବନାର ବଶୀଭୂତ ହୋଇ
ଜନ୍ମ, ମୃତ୍ୟୁ ଜଗତ୍ ଦରଶନ ସେ ଲଭଇ ।
ଚିଦାକାଶ ରୂପିଣୀ ଏ ଲୀଳା, ସରସ୍ୱତୀ
ସ୍ୱେଚ୍ଛାକ୍ରମେ ବିଦୂରଥ ଗୃହେ ପ୍ରବେଶନ୍ତି ।
ଅନୁଭବ କରିଛନ୍ତି ଯେଣୁ ଚିଦାକାଶ
ତାଙ୍କୁ ରୋକିବାକୁ ଅବା କାହାର ସାହସ ।
ସର୍ବରୂପେ ବିଚରଣ ଯେହୁ କହିପାରେ
ବଦ୍ଧଗୃହେ ପଶିବା କି ଅସମ୍ଭବ ତାରେ ?

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖାନେ ସ୍ୱତ୍ୟାନୁଭବ**
**ବର୍ଣ୍ଣନେ ନାମ ୨୮ତମ ସର୍ଗଃ**



## ୨୯ତମ ସର୍ଗଃ
## ଭ୍ରାନ୍ତି ବିଚାର

କହନ୍ତି ବଶିଷ୍ଠ ରାମ ସେ ଦୁଇ ରମଣୀ
ରାଜା ଶୟନ କକ୍ଷରେ ପ୍ରବେଶିଲା କ୍ଷଣି ।
ତାଙ୍କ ଚନ୍ଦ୍ରକାନ୍ତି ଦ୍ୱାରା ଗୃହ ଆଲୋକିତ
କୁସୁମ ସୁଗନ୍ଧବାୟୁ କରେ ପୁଲକିତ ।
ତାଙ୍କ ଇଚ୍ଛା ଅନୁସାରେ ସର୍ବେ ନିଦ୍ରାଗତ
କେବଳ ମହାରାଜାଙ୍କ ପଡ଼ିନାହିଁ ନେତ୍ର ।
ଦେବୀଙ୍କ ପ୍ରବେଶେ ରାଜା ଆନନ୍ଦ ଲଭିଲେ
ଅମୃତଭାଣ୍ଡେ ବୁଡ଼ିଲାପରି ବୋଧ କଲେ ।
ସୁମେରୁ ଶୃଙ୍ଗରୁ ଦୁଇ ଚନ୍ଦ୍ରମା ଉଦୟ
ବିସ୍ମିତ ହେଲା କି ଦେଖି ରାଜାଙ୍କ ହୃଦୟ ।
ବିଷ୍ଣୁ ଦେବ ଉଠିଲେ କି ତେଜି ନାଗଶଯ୍ୟା
ପୁଷ୍ପାଞ୍ଜଳି ଧରି ରାଜା କଲେ ପାଦପୂଜା ।
ପାଦ ପଦ୍ମେ ପଡ଼ି ରାଜା କହନ୍ତି ବଚନ
ଜୟ ହେଉ ଦେବୀଦ୍ୱୟ ଜୟ ହେଉ ତୁମ ।
ଜନ୍ମ ଦୁଃଖ ତାପ ଶାନ୍ତକରଣେ ଚନ୍ଦ୍ରମା
ଅନ୍ତର-ତମ ନାଶନେ ତୁମ୍ଭେ ତ ଅର୍ଯ୍ୟମା ।
ବାଣୀଦେବୀ ସଚିବକୁ ଜାଗ୍ରତ କରାଇ
ରାଜାଙ୍କ ପାଖରେ ତାକୁ ବସାଇଲେ ନେଇ ।
ବାଣୀ ପୁଚ୍ଛିଲେ ରାଜନ କହ ତୁମେ କିଏ ?
କାହାର ସନ୍ତାନ ତୁମେ କହହେ ନିର୍ଭୟେ ।
କେବେ ତୁମର ଜନମ କହ ଫେଡ଼ି କରି
ଯୁଦ୍ଧକ୍ଷେତ୍ରେ ଅବତୀର୍ଣ୍ଣ କି କାର୍ଯ୍ୟ ତୁମରି ?
ଦେବୀଙ୍କ ପାଦ ପଦ୍ମରେ ପୁଷ୍ପାଞ୍ଜଳି ଦେଇ
କୃତାଞ୍ଜଳି ପୁଟେ ମନ୍ତ୍ରୀ ବିନୟେ କହଇ ।
ତୁମ୍ଭ ପ୍ରସାଦରୁ ମାତ ତୁମ୍ଭ ଆଗେ ମୁହିଁ
ଉତ୍ତର ଦେବାକୁ ଉପଯୁକ୍ତ ହୋଇଲଇଁ ।
ଆମ୍ଭ ପ୍ରଭୁଙ୍କ ସମ୍ବନ୍ଧେ ଜାଣିବାକୁ ଯାହା
ଇଚ୍ଛା କରୁଛନ୍ତି ମାତ ଶୁଣ ଏବେ ତାହା ।
ଇକ୍ଷ୍ୱାକୁ ବଂଶରେ ଥିଲେ ଏକଇରାଜନ
ସୁନ୍ଦରରଥ ବୋଲିଣ ଥିଲା ତାଙ୍କ ନାମ ।
ତାଙ୍କ ପୁତ୍ର ପୌତ୍ର୍ୟାଦିଙ୍କ ନାମ ଏହିପରି
କହିଯାଉଅଛି ମାତ ଗୋଟି ଗୋଟି କରି ।
ଭଦ୍ରରଥ, ବିଶ୍ୱରଥ, ବୃହଦ୍ରଥ ଏହି
ସିନ୍ଧୁରଥ, ଶୈଳରଥ, କାମରଥ କହି ।

ମହାରଥ, ବିଷ୍ଣୁ ରଥ; ନଭୋରଥ ମାନେ
ବଂଶାବଳି କହିଲଇଁ ମାତ ଯଥାକ୍ରମେ ।
ଆମ୍ଭର ପ୍ରଭୁ ଅଟନ୍ତି ନଭୋରଥ ପୁତ୍ର
ଦଶବର୍ଷେ ପିତା ତାଙ୍କୁ ଅର୍ପିଲେ ରାଜତ୍ୱ ।
ତହୁଁ ବନେ ଚଳିଗଲେ ତପସ୍ୟାର ପାଇଁ
ଧର୍ମେ ପ୍ରଜା ପାଳୁଛନ୍ତି ଏହି ନରସାଇଁ ।
ଆପଣମାନଙ୍କ ଯହୁଁ ଦରଶନ ହେଲା
ଆମ୍ଭ ସୁକୃତି ବୃକ୍ଷରେ ଫଳ ଯେ ଫଳିଲା ।
ତୁମ୍ଭମାନଙ୍କ ପ୍ରସାଦୁଁ ଏ ମହାରାଜନ
ପବିତ୍ର ହୋଇଲେ ମାତ କେଡ଼େ ଭାଗ୍ୟବାନ ।
ଭୋ ଦେବୀ ! ତୁମ ଦର୍ଶନ ପାଇବାର ପାଇଁ
ବହୁତପ କଲେ ମଧ୍ୟ ପ୍ରାପତ ନୁହଇ ।
କେଡ଼େ ବଡ଼ ପୁଣ୍ୟବାନ ଅଟନ୍ତି ରାଜନ
ଆଜି ଯା ପାଇ ପାରିଲେ ତୁମ ଦରଶନ ।
ଏହା ଶୁଣି ବାଣୀ, ରାଜା ଶିରେ ଦେଇ କର
ରାଜାଙ୍କୁ କହୁଅଛନ୍ତି ବଚନ ମଧୁର ।
ପୂର୍ବଜନ୍ମକଥା ଏବେ ସୁମରଣା କର
ତୁମେ କିଏ କାହାପୁଅ କେଉଁଠାରେ ଘର ।
ବାଗ୍‌ଦେବୀ ବର ପ୍ରଭାବେ ମହାରାଜାଙ୍କର
ହୃଦୟସ୍ଥ ତମୋରୂପ ମାୟା ଗଲା ଦୂର ।
ଗତ ଜନ୍ମ କଥାମାନ ଖେଳିଯାଏ ମନେ
ଜଳ ଜଳ ଦିଶେ ସବୁ ରାଜାଙ୍କ ନୟନେ ।
"ହେ ଦେବୀ ! ଶୁଣ ଏ ବଡ଼ ଆଶ୍ଚର୍ଯ୍ୟ ବିଷୟ
ମନରୁ ହିଁ ଏ ଜଗତ ହୋଇଛି ଉଦୟ ।
ତୁମ୍ଭ ପ୍ରସାଦରୁ ମାତ ଅବଗତ ହେଲି
ଗତ ଜନ୍ମେ ପଦ୍ମରାଜା ହୋଇ ଜନ୍ମିଥିଲି ।
ଲୀଳା ନାମ୍ନୀ ସୁନ୍ଦରୀ ମୋ ଥିଲା ମହାରାଣୀ
ଏ କଥା ସୁମରି ମନ ଉଠୁଛି ଉଜାଣି ।
କିଛିଦିନ ପରେ ମୁହିଁ ଲଭିଲି ମରଣ
ତତ୍‌ପରେ ମୁଁ ନରଦେହ କରିଛି ଧାରଣ ।
ମୁହୂର୍ତ୍ତକ ପରି ମାତ ଲାଗୁଛି ତା ମୋତେ
ପୁଣି ଭାବି ଦେଖେ ତାହାହେବ ବର୍ଷ ଶତେ ।
ବାଲ୍ୟ, ଯଉବନ, ବନ୍ଧୁ, ମିତ୍ର ପରିବାର
ଉଦିତ ହୁଅନ୍ତି ସର୍ବେ ସ୍ମୃତିପଥେ ମୋର ।
ସରସ୍ୱତୀ ବୋଇଲେକ ଶୁଣ ହେ ରାଜନ
ଯେତେବେଳେ ମାନବର ହୁଅଇ ମରଣ ।
ତେତେବେଳେ ଅତିବଡ଼ ମୂର୍ଚ୍ଛା ତାକୁ ଘାରେ
ମୂର୍ଚ୍ଛା ପରେ ନାନାଲୋକ ନାଚନ୍ତି ମନରେ ।
ମୁହୂର୍ତ୍ତକ ମଧ୍ୟେ ବହୁବର୍ଷ ଅନୁଭୂତ
ସ୍ୱପ୍ନେ ଯଥା ବହୁବର୍ଷ ଏକଇ ମୁହୂର୍ତ୍ତ ।
ସେହିପରି ରାଜା ତୋର ମୃତ୍ୟୁ ମୂର୍ଚ୍ଛାପରେ
ଇହଲୋକ ଭ୍ରମ ନାଚୁଅଛି ତୋ ନେତ୍ରରେ ।
ଗିରିଗ୍ରାମବାସୀ ସେହି ବ୍ରାହ୍ମଣର ଘର
ନଦୀ, ଗିରି, ବନ, ରାଜ୍ୟ ପଦ୍ମ ନୃପତିର ।
ଏସବୁ ତୋ ଚିଦାକାଶେ ନାଚୁଥିଲେ ରାଜା
ଆଉ ଯା' ଦେଖିଛୁ ସବୁ ମନେକର ହେଜା ।
ତୋ ହୃଦ ମଣ୍ଡପ ଛଡ଼ା ଅନ୍ୟ କାହିଁ ନାହିଁ
ସବୁ ତୋ ହୃଦ ମଣ୍ଡପେ ବିରାଜି ଅଛଇ ।
ଯା'କିଛି ଦେଖିଛ ଅବା ଭୋଗକରି ଅଛ
ତୋ ହୃଦ ବ୍ରହ୍ମାଣ୍ଡ ଗୃହେ ସର୍ବେଛନ୍ତି ଗୁଚ୍ଛ ।
ପ୍ରତ୍ୟେକ ଜଗତଭୋଗ ଅଟଇ ଏସନ
ତୁମ୍ଭେ ମଧ୍ୟ ଏହି ଭୋଗ କରିଛ ରାଜନ ।
ହେ ରାଜା ପାହାଡ଼ ପରେ ଥିଲା ଏକ ଗ୍ରାମ
ବାସ କରୁଥିଲା ତହିଁ ବଶିଷ୍ଠ ବ୍ରାହ୍ମଣ ।
ଅରୁନ୍ଧତୀ ନାମେ ଥିଲା ତାହାର ଘରଣୀ
ବାସ କରୁଥିଲେ ଦୁହେଁ ମନ୍ଦିର ନିର୍ମାଣି ।
ମୋହଠାରୁ ଅରୁନ୍ଧତୀ ଘେନିଥିଲା ବର
ମଲେ ଏ ମଣ୍ଡପ ନ ଛାଡ଼ିବ ତାର ବର ।
କାଳକ୍ରମେ ପତି ତାର ଘଟ ଛାଡ଼ିଗଲା
ଆତ୍ମା ତାର ଗୃହାକାଶ ମଣ୍ଡପେ ରହିଲା ।
କିନ୍ତୁ ରାଜା ହେବାପାଇଁ ବାସନା ତାହାର
ଦୃଢ଼ୀଭୂତ ରହିଥିଲା ସଂବିତରେ ତାର ।
ତେଣୁ ପଦ୍ମରାଜା ନାମେ ସେହୁ ଜନମଇ
ଅରୁନ୍ଧତୀ ଲୀଳାନାମେ ପତ୍ନୀ ତାର ହୋଇ
ପଦ୍ମରାଜା ଥିଲାବେଳେ ତୁମ ଯେ ବାସନା
ତାହା ଘେନି ବିଦୁରଥ ହେଲ ମହାମନା ।
ମନର କଳ୍ପନା ମାତ୍ର ବୁଝ ଏ ଜଗତ
କିଛିହିଁ ଉପୁଜୁନାହିଁ, ନା' କିଛି ବିନଷ୍ଟ ।
ତୁମର ଏ ନାମ, ଜନ୍ମ, ଏ ବଂଶ ତୁମର
ଅନ୍ୟେ ଯାହାକିଛି ତୁମ ଭ୍ରମ କାରବାର ।
ଏହା ତୁମ ଚିଦାକାଶେ ହୁଏ ପ୍ରତିଭାତ
ଅନ୍ୟ କିଛି ନୁହେଁ ତାହା କଳ୍ପନାହିଁ ମାତ୍ର ।

ଲୋକ ଲୋକାନ୍ତରେ ତୁମ୍ଭ ସର୍ବ ବିଚରଣ
କେତେ ଯୋନି ଦେଇ ଆସିଅଛି ନରରାଣ ।
ସେସବୁ ତୁମ୍ଭ ବିସ୍ମୃତି ଗର୍ଭେ ଅଛି ଲୀନ
ତୁମ୍ଭ ସ୍ମୃତିକୁ ତ ତା ନକରେ ଆଲୋଡ଼ନ ।
ମୃତ୍ୟୁଦଶା ଲଭିଥିବ ପୂର୍ବେ ତୁମେ ଯେବେ
ଏ ପ୍ରତିଭା ଉଦେ ଥିଲା ତୁମ୍ଭ ହୃଦେ ତେବେ ।
ନଦୀର ପ୍ରବାହ ଏକ * ଆବର୍ତ୍ତ ଛାଡ଼ିଣ
ଅନ୍ୟ ଆବର୍ତ୍ତକୁ ଯାଇ କରଇ ଗ୍ରହଣ ।
ଜ୍ଞାନ ପ୍ରବାହ ତାଦୃଶ ଏକ * ଦୃଶ୍ୟ ଛାଡ଼ି
ଅପର ଦୃଶ୍ୟ କରଣେ ହୁଏ ସେ ସଜାଡ଼ି ।
ମୃତ୍ୟୁ ସମୟରେ ରାଜା ଯେ ଜଗତ ମାୟା
ଚିତ୍ତ ସୂର୍ଯ୍ୟ ନିକଟରେ ପ୍ରତିଭାତ ତାହା ।
ଅସତ ଛଡ଼ା ତା ରାଜା ଅନ୍ୟ କିଛି ନୁହେଁ
ମାୟା ଭ୍ରମ ଜାଲ ଖାଲି ଘେରି ରହିଥାଏ ।
ସ୍ୱପ୍ନ ସମୟେ କ୍ଷଣକ ପାଇଁ କି ଯେସନ
ଏକବର୍ଷ ଗତ ହେଲା ବୋଲି ମନ ଭ୍ରମ ।
ସୁବିସ୍ତୃତ ଜଗତଭ୍ରାନ୍ତି ସେହିପରି ମିଥ୍ୟା
ଏ ତତ୍ତ୍ୱ ବୁଝିବ ରାଜା ବାସ୍ତବ ସର୍ବଥା ।
ବାସ୍ତବରେ କେଭେଁହେଲେ ତୁମ୍ଭ ଜନ୍ମ ନାହିଁ
କେତେବେଳେ ହେଲେ ସୁଦ୍ଧା ତୁମ୍ଭ ମୃତ୍ୟୁ ନାହିଁ ।
ବିଜ୍ଞାନ ସ୍ୱରୂପ ଶାନ୍ତ, ଶୁଦ୍ଧ ପରମାତ୍ମା
ତଥିମଧ୍ୟେ ସଦା ରହିଅଛି ହେ ମହାତ୍ମା ।
ଏ ବିଶାଳ ସୃଷ୍ଟି ଯାହା ହୁଏ ଦୃଶ୍ୟମାନ
ଦେଖିନାହିଁ ତୁମେ ତାହା କରି ପରିପୂର୍ଣ୍ଣ ।
ଯେଣୁ ତୁମେ ସର୍ବାତ୍ମାକ ତେଣୁ ସ୍ୱ ଆତ୍ମାରେ
ପ୍ରକାଶ ପାଇଛ ଏହା ବୁଝ ମନସ୍ଥିରେ ।
ତୁମ୍ଭ ଏ ସାମ୍ରାଜ୍ୟ ପୁଣି ତୁମ୍ଭ ରାଜଧାନୀ
ତୁମ୍ଭ ହୃଦ, ଗୃହ, ବ୍ୟୋମ ମଣ୍ଡଳ ଯେ ପୁଣି ।
ଯହିଁ ଆମ୍ଭେ ସର୍ବେ କରିଅଛେ ଅବସ୍ଥାନ
ବସ୍ତୁତଃ ତା ସବୁ ସେହି ବ୍ରହ୍ମହିଁ ରାଜନ ।
ତେଣୁ ପୃଥ୍ୱୀ, ଗ୍ରାମ, ନଗ୍ର, ବନ, ପରବତ
ନଦୀ, ସାଗର, ମନୁଷ୍ୟ ଇତ୍ୟାଦି ଯାବତ ।
ସର୍ବମିଥ୍ୟା, ଏ ସକଳ କେବଳ ଚିନ୍‌ମାତ୍ର
ବ୍ରହ୍ମ ପରିପୂର୍ଣ୍ଣ ଜାଣ ବ୍ରହ୍ମହିଁ ସର୍ବତ୍ର ।

ବିଦୂରଥ କହୁଛନ୍ତି ଆହେ ଦେବୀଦ୍ୱୟ
ଯଦି ଏହା କିଛି ନୁହେଁ ଖାଲି ମିଥ୍ୟାମୟ ।
ତେବେ କଣ ଆମ୍ଭେ ଏହି ଅନୁ-ଜୀବଗଣ
ଆତ୍ମାରୁ ଜନ୍ମି ଆତ୍ମାରେ କରୁ ଅବସ୍ଥାନ ?
କିମ୍ବା ଅନ୍ୟ କାହିଁ ରହିଅଛନ୍ତି ସେମାନେ
କୃପାକରି ବୟାନ ତା କରନ୍ତୁ ଆପଣେ ।
ଜଗତ୍ ଯଦି ସ୍ୱପ୍ନ ଅନୁଭୂତ ବସ୍ତୁ ପ୍ରାୟ
ଅସତ୍ୟ ନଗର ତେବେ କେଉଁପରି ଥୟ ?
ଆତ୍ମାରେ ସତ୍ୟସ୍ୱରୂପେ କିପରି ଏ ସ୍ଥିତ
ତାହା ମୋତେ ବୁଝାଇଣ କର ଉପକୃତ ।
ବୋଲନ୍ତି ଯେ ସରସ୍ୱତୀ ଶୁଣ ରାଜବସ୍ତି
ଯାବତ ଜ୍ଞାତବ୍ୟ ଯା'କୁ ଅବଗତ ଅଛି ।
ଏମନ୍ତ ଯେ ଶୁଦ୍ଧବୋଧ ଚିନ୍ମୟ ଗଗନ
ସେହି ମାତ୍ରଛନ୍ତି ଅନ୍ୟ କେହି ନାହିଁ ଜାଣ ।
ସେ ଆତ୍ମା ଜଗତଭ୍ରମ ସମ୍ଭବି କି ପାରେ
ସୂର୍ଯ୍ୟ କି ପଶ୍ଚିମ ଦିଗେ କେବେ ଉଇଁପାରେ ?
ରଜ୍ଜୁରେ ସର୍ପର ଭ୍ରମ ହେଲେ ଦୂରୀଭୂତ
ଆଉକି ସେ ସର୍ପ ଭୟ କରେ ଆତଙ୍କିତ ?
ଅଜ୍ଞାନ ମେଘାବରଣ ହେଲେ ଅପସୃତ
ତତ୍ତ୍ୱଜ୍ଞଙ୍କୁ ଭବ ଭ୍ରମ ନୁହେଁ କିଛିମାତ୍ର ।
ଏମନ୍ତ କହନ୍ତେ ମୁନି ସାଂୟକାଳ ହେଲା
ଆହ୍ନିକ ସମୟ ଆସି ପ୍ରବେଶ ହୋଇଲା ।
ଯଥାବିଧି ମାନ୍ୟ ଦେଇ ସର୍ବେ ପରସ୍ପରେ
ନିଜ ନିଜ ଆଶ୍ରମକୁ ଚଳିଲେ ସଧୀରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଲୀଳୋପାଖ୍ୟାନେ
ଭ୍ରାନ୍ତି ବିଚାର ବର୍ଣ୍ଣନେ ନାମ
ଊନତ୍ରିଂଶତମ ସର୍ଗଃ**



## ତ୍ରିଂଶତମ ସର୍ଗଃ

## ସପ୍ନପୁରୁଷ ସତ୍ୟାସତ୍ୟ ବର୍ଣ୍ଣନ

ସିନ୍ଦୁରା ଫାଟିଲା ପୁଣି ଉଦୟ ପତନ
ପୁନର୍ବାର ପହଞ୍ଚିଲେ ସର୍ବ ସଭାଜନ ।
ବଶିଷ୍ଠଙ୍କ ବାକ୍ୟାମୃତେ ସର୍ବେଛନ୍ତି ମୁଗ୍ଧ
ସ୍ୱ ସ୍ୱ ସ୍ଥାନେ ଉପବିଷ୍ଟ ସକଳ ବିବୁଧ ।

* ଆବର୍ତ୍ତ - ଜଳ ଭଉଁରୀ । * ଦୃଶ୍ୟ - ଜଗତ

କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ସ୍ୱପ୍ନପୁରୁଷ ସତ୍ୟତା କରୁଛି ବର୍ଣ୍ଣନ ।
ଅଜ୍ଞାନୀଜନ ପକ୍ଷରେ ଏ ଅସତ ସୃଷ୍ଟି
ସତ୍ୟ, ସୁଦୃଢ଼, ସବଳ ଯଥା ବଜ୍ରମୁଷ୍ଟି ।
ସପନରେ ନିଜ ମୃତ୍ୟୁ ଦେଖି କରି ଯଥା
ଅସତ୍ୟ ହେଲେ ହେଁ ଥରିଯାଏ ଦ୍ରଷ୍ଟା ମଥା ।
ମୂଢ଼ ମାନବର ପ୍ରତି ଏ ଜଗତ ଭୋଗ
ପରିବାର ସୁଖ ଆଉ ବନିତା ସମ୍ଭୋଗ ।
ବାସ୍ତବ ଅକାଟ ସତ୍ୟ ପୁଣି ଚିରସ୍ଥାୟୀ
ନୀରବଚ୍ଛିନ୍ନ ସେପରି ବୁଝ ରଘୁରାଇ ।
ସୁବର୍ଣ୍ଣରେ ସ୍ୱର୍ଣ୍ଣକାର ଗଢ଼େ ଅଳଙ୍କାର
ଭୂଷଣ ଆଦର ବଢ଼େ ନ ବଢ଼େ ସୁନାର ।
ସେହିପରି ଆଜ୍ଞା ଦେଖେ ଗ୍ରାମାଦି ନଗର
ବନ, ଗିରି, ନଦ, ନଦୀ ତା ନେତ୍ରେ ସୁନ୍ଦର ।
ତହିଁରେ ବ୍ରହ୍ମ ଦର୍ଶନ ତା ପାଇଁ ବିରଳ
ଜ୍ଞାନୀଏ ବୁଝିବେ ସିନା ଅଜ୍ଞକୁ ଅନ୍ଧାର ।
ସରସ୍ୱତୀ କହୁଛନ୍ତି ବିଦୁରଥେ ଚାହିଁ
ଲୀଳା ଇଚ୍ଛା ପୂର୍ଣ୍ଣପାଇଁ ଆସିଥିଲି ମୁହିଁ ।
ହେ ରାଜା, ଏଣିକି ତୋର ହେଉ ସୁମଙ୍ଗଳ
ପ୍ରସ୍ଥାନ କରୁଛୁ ଆମେ ସ୍ୱସ୍ଥାନେ ଆମର ।
ରାଜା କହିଲେ ଭୋଦେବୀ କହୁଛି ଯା ଶୁଣ
ବିଫଳ ନୁହଇ କେବେ ମହତ ଦର୍ଶନ ।
କୌଣସି ଯାଚଜ୍ଞାକାରୀ ଆସେ ମୋର ପାଶ
କେବେ ହେଲେ ଫେରିନାହିଁ ହୋଇଣ ନିରାଶ ।
ମହା ଫଳଦାନୀ ଭବଦୀୟ ଦରଶନ
ମୋ ପକ୍ଷେ ବିଫଳ ତାହାହେବ କି କାରଣ ?
ବିହିବା ହେଉ ଏକ୍ଷଣି ଏହି ବରଦାନ
ପଦ୍ମରାଜା ଶରୀର ମୋ ପାଇବି ଯେସନ ।
ସ୍ୱପନରୁ ସ୍ୱପ୍ନାନ୍ତର ଯେଦିନ ଘଟଇ
ଅକ୍ଲେଶରେ ପୂର୍ବଦେହ ପାଇବହିଁ ମୁହିଁ ।
ବିପଦଗ୍ରସ୍ତକୁ ମାତ ଦିଏ କୃପାଦୃଷ୍ଟି
ଶରଣ ରକ୍ଷଣ ବାନା ଉଡୁ ସାରାସୃଷ୍ଟି ।
ଦେହାନ୍ତେ ଯହିଁ ଗୋ ମାତ କରିବି ଗମନ
ମୋ ମନ୍ତ୍ରୀ, ମୋ ଲୀଳା ମୋତେ ମିଳିବେ ଯେସନ ।
ବାଣୀ କହିଲେ ହେରାଜା ଶୁଣସି ଏସନ
ଶଙ୍କା ତେଜି ନିଜ ରାଜ୍ୟ କରହେ ପାଳନ ।
ମୋଠାରେ ପ୍ରାର୍ଥନ କରି କେହି ଆଜିଯାଏ
ବିଫଳ ନୋହିଛି ରାଜା ଜାଣ ମନଥୟେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖ୍ୟାନେ ସ୍ୱପ୍ନପୁରୁଷ**
**ସତ୍ୟାସତ୍ୟ ବର୍ଣ୍ଣନେ ନାମ**
**ତ୍ରିଂଶତମ ସର୍ଗଃ**



## ଏକତ୍ରିଂଶ ସର୍ଗଃ

## ଅଗ୍ନିଦାହ ବର୍ଣ୍ଣନ

କହୁଛନ୍ତି ସରସ୍ୱତୀ ଶୁଣ ନରଈଶ
ଯେଉଁ ଯୁଦ୍ଧେ ତୁମେ ଏବେ କରିଛ ପ୍ରବେଶ ।
ସେ ଯୁଦ୍ଧରେ ନିଶ୍ଚେ ହେବ ତୁମ୍ଭର ନିଧନ
ପରେ ସ୍ୱଦେହ ସାମ୍ରାଜ୍ୟ ଲଭିବ ଆପଣ ।
ନିଜ ପୁରାତନ ରାଜ୍ୟେ ଆପଣ ଫେରିବେ
ମନ୍ତ୍ରୀ ସାମ୍ରାଜ୍ଞୀ ତୁମ୍ଭଙ୍କୁ ସେଠାରେ ମିଳିବେ ।
ନିଜନିଜ ଦେହ ସବୁ ଧରିଥିବେ ସେହି
ଆମ୍ଭେ ମଧ ସେହିସ୍ଥାନେ ପ୍ରବେଶିବୁ ଯାଇ ।
ବାଣୀ ବିଦୁରଥ କଥାବାର୍ତ୍ତା ହେଲାବେଳେ
ଦୂତ ଆସି ପରବେଶ ହୁଏ ସେହି ସ୍ଥଳେ ।
"ମହାରାଜ, ଶତ୍ରୁସୈନ୍ୟ ନଗ୍ର ଘେରିଛନ୍ତି
ନାନା ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ ଅଛନ୍ତି ।
ଚୌଦିଗେ ନିଆଁ ଲଗାଇ ନଗ୍ର ଧ୍ୱଂସୁଛନ୍ତି
ନଦୀ ପ୍ରବାହ ସଦୃଶ ଶର ବରଷନ୍ତି ।
ମହାପ୍ରଳୟର ବାଡ଼ବାଗ୍ନି ଜିଣିକରି
ଜଳିଉଠେ ହୁତାଶନ ସୃଷ୍ଟି ଦେବ ଗିଳି ।
ଦେବୀଦ୍ୱୟ ରାଜା, ମନ୍ତ୍ରୀ ଉପରେ ଉଠିଲେ
ଝରକାପାଖେ ବସିଣ ନିରେଖି ଚାହିଁଲେ ।
ସତେକି ପ୍ରଳୟ ମେଘ ଆସୁଛି ଉଠାଇ
ସେହିପରି ସେନାଗଣ ଆସନ୍ତି ଧସାଇ ।
ଜଳନ୍ତିକି ଦଶଦିଗେ ପ୍ରଳୟ ଅନଳେ
ଅଗ୍ନିକଣା ଉଡ଼ି ତାରାମାନ ଭ୍ରମକରେ ।
ଧନୁର ଟଙ୍କାର ଶବ୍ଦ ମତ୍ତହସ୍ତୀ ରଡ଼ି
ଅଗ୍ନିଶିଖା ଚଟଚଟ କର୍ଣ୍ଣ ସ୍ତବ୍ଧ କରି ।
ଆଭୂଷଣେ ବିଭୂଷିତା ରମଣୀ ସୁନ୍ଦରୀ
ତୃଣପରି ଅଗ୍ନି ମଧ୍ୟେ ଯାଉଛନ୍ତି ଜଳି ।

ପୁରୁଷମାନଙ୍କ ଦେହ ବସ୍ତ୍ର ଯାଏ ଜଳି
ବାନ୍ଧବ ସ୍ତିରୀ ପୁତ୍ରଙ୍କୁ ଖୋଜନ୍ତି ଦଉଡ଼ି ।
ସ୍ନେହ ଡ଼ୋରି ବାନ୍ଧିଅଛି ନରକୁ ଏପରି
ମୃତ୍ୟୁକାଳେ ସୁଦ୍ଧା ତାହା ନଦିଏ ପାଶୋରି ।
ସ୍ୱାମୀଙ୍କୁ ମାରି ସୈନିକେ ସ୍ତ୍ରୀରୀଙ୍କୁ ତାଙ୍କର
ଧରି ନେଇ ଯାଉଛନ୍ତି କରି ବଳାତ୍କାର ।
ଚାରିଆଡ଼େ ହାହାକାର ଧ୍ୱନିଯାଏ ପଡ଼ି
ହା' ପିତା ହା' ମାତା ସ୍ୱାମୀ କେଣେ ଗଲଛାଡ଼ି ।
ଗାଈ, ଗୋରୁ, ଓଟ ହୋଇ ଘୋଡ଼ା ଏକତ୍ରିତ
ଅଗ୍ନିତେଜ ଦେଖି ତାଙ୍କ କ୍ଷୋଭ ହେଲା ଜାତ ।
ପ୍ରଳୟ ଅଗ୍ନିରେ ସର୍ବ ସ୍ଥାନ ଉଠେ ଜଳି
ବହୁ ଜୀବଜନ୍ତୁ ପୋଡ଼ି ଜଳି ଗଲେ ମରି ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ ଲୀଳା ଉପାଖ୍ୟାନେ ଅଗ୍ନିଦାହ ବର୍ଣ୍ଣନେ ନାମ ଏକତ୍ରିଂଶତମ ସର୍ଗଃ ।**



## ଦ୍ୱାତ୍ରିଂଶ ସର୍ଗଃ

## ଅଗ୍ନିଦାହ

ଏହିପରି ବିଦୁରଥ ନଗ୍ର ଦେଖୁଥିଲେ
ଅନ୍ତଃପୁର ମହିଳାଏ ଆସି ପହଞ୍ଚିଲେ ।
କେତେ ଅଳଙ୍କାର ତାଙ୍କ ଯାଇଥିଲା ଭାଙ୍ଗି
ପୁଣି କେତେ ଚେପା ହୋଇ ଦେହେ ଥିଲା ଲାଗି ।
ରାଣୀ ସହଚରୀ ଏକ ଯୁଦ୍ଧର ସମ୍ବାଦ
ବର୍ଣ୍ଣନ କରି ବଢ଼ାଇଦେଲା ରାଜା କ୍ରୋଧ ।
"ଅନ୍ତଃପୁର ରମଣୀଙ୍କୁ ଶତ୍ରୁ ନେଲେ ଧରି
ରାଣୀଙ୍କୁ ମୁଁ ଘେନି ଆସିଅଛି ଚୋରିକରି ।
ଅନ୍ୟମାନଙ୍କୁ ଶତ୍ରୁ ଏ ସନ୍ତାପ ଦିଅନ୍ତି
ସିଂହଦ୍ୱାର ରକ୍ଷକଙ୍କୁ ମାରି ଚୂରି ଦ୍ୟନ୍ତି ।
ସାରା ନଗରକୁ ପୋଡ଼ି ଲୁଟି କରୁଛନ୍ତି
ସେକଥା କେ ତୁଣ୍ଡେ କହିପାରେ ନରପତି ।
ଶାଖାପ୍ରଶାଖା ମେଲାଇ ସମର ବିପଦ
ଗ୍ରାସ କରିଣ ଆମ୍ଭଙ୍କୁ ଜାଳିଦିଏ ହୃଦ ।
ଆପଣଙ୍କ ଛଡ଼ା ଏଣୁ ଉଦ୍ଧାରିବା ପାଇଁ
ବୁଝିବା ହେଉ ରାଜନ ଅନ୍ୟ କେହି ନାହିଁ" ।

ଏହାଶୁଣି ବିଦୁରଥ ସମ୍ବୋଧନ କରି
ବାଣୀ ଲୀଳାକୁ କହନ୍ତି ବଚନ ଏପରି ।
କ୍ଷମା କରିବା ଗୋ ଦେବୀ ଧୃଷ୍ଟତା ମୋହର
ବାଧ୍ୟ ହୋଇ ଯୁଦ୍ଧକୁ ମୁଁ ହେଉଛି ବାହାର ।
ଆପଣଙ୍କୁ ସମର୍ପଇ ମହୀଷୀଙ୍କୁ ମୋର
ଭ୍ରମରୀ ସେ ଜାଣ ତବ ଶ୍ରୀପାଦ ପଦ୍ମର ।
ଏହାକହି ମହାରାଜା ହୋଇ ଆଗଭର
ଶତ୍ରୁ ମୁକାବିଲା ପାଇଁ ପ୍ରାସାଦୁ ବାହାର ।
ଏବେ ଲୀଳା ରାମମହିଷୀଙ୍କୁ ଦେଖିକରି
ମଣନ୍ତି ସ୍ୱପ୍ରତିବିମ୍ବ ଦରପଣେ ଫଳି ।
ସରସ୍ୱତୀଙ୍କୁ କହନ୍ତି ଏ କି ଚମତ୍କାର
ଦ୍ୱିତୀୟ ଲୀଳାକି ଦେଖୁଛଇ ଏହିଠାର ।
ଏ ରାଜ ମହିଷୀ ମୋର ଆକୃତି ସମ୍ପନ୍ନ
କିପରି ହୋଇଲେ ବୁଝିବାକୁ ମୁଁ ଅକ୍ଷମ ।
ପ୍ରଥମବାର ଯେବେ ମୁଁ ଏଥି ଆସିଥିଲି
ପାତ୍ରମନ୍ତ୍ରୀ ପୁରବାସୀଗଣେ ଦେଖିଥିଲି ।
ଆମ ପ୍ରାସାଦ ଲୋକଙ୍କ ଚେହେରା ଯେପରି
ଅବିକଳ ଦିଶୁଅଛି ଚେହେରା ଯାଙ୍କରି ।
ତୁମଠାରୁ ଏ ସଂଶୟ ଦୂର କରିଥିଲି
ପୁଣି ମୁହିଁ କି ପ୍ରକାରେ ଏଠାରେ ରହିଲି ?
ମୋ ପରି ରାଣି ତ କେହି ଏଠାରେ ନଥିଲା
ଏବେ ମୋଚନ କର ମୋ ସଂଶୟ ଯା' ହେଲା ।

### ସରସ୍ୱତୀ ଉବାଚ

ଅନ୍ତରେ ସେପରି ଜ୍ଞାନ ସମୁଦିତ ହୁଏ
ବାହାରେ ଠିକ୍ ସେ ରୂପ ଦେଖାଯାଇଥାଏ ।
ବିଚିତ୍ର ପଦାର୍ଥ ସବୁ ଅଛଇ ବାହାରେ
ଦେଶକାଳ ତାକୁ ବାଧା ଦେଇ ତ ନପାରେ ।
ତେଣୁ ହୃଦେ ସମୁଦିତ ଯେ ମିଥ୍ୟା ଜଗତ
ବାହାରେ ତା' ସତ୍ୟବତ୍ ହୁଏ ପ୍ରତିଭାତ ।
ଏହି ଯେ ମନ୍ତ୍ରୀ ପ୍ରଭୃତି ସବୁଙ୍କୁ ଦେଖିଛ
ରାଜାଙ୍କ ପ୍ରାକ୍ତନ ମନ୍ତ୍ରୀ ସଦୃଶ ଯଦିଚ ।
ସେମାନେ ଏମାନେ କେଉଁ ଅଭିନ୍ନ ନୁହନ୍ତି
ସ୍ନେହାତିଶଯ୍ୟ ହେତୁରୁ ରୂପ ଧରିଛନ୍ତି ।

ରାଜାଙ୍କର ରାଜ୍ୟ ପୁଣି ତାଙ୍କ ପ୍ରଜାଗଣ
ପ୍ରତିଫଳିତ ରାଜା ତାଙ୍କ ଚିଦାକାଶେ ଜାଣ ।
ଅସତ୍ୟ ସତ୍ୟ ରୂପରେ ହୁଏ ପ୍ରକାଶିତ
ଜ୍ଞାନ ଉଦୟେ ଅଚିରେ ହୋଇଯାଏ ଅସ୍ତ ।
ଆତ୍ମାଠାରୁ ଅପୃଥକ୍ ଏହାକୁ ଜାଣିବ
ଅନୁଭବ ଶକ୍ତିର ଏ ମହିମା ବୁଝିବ ।
କେବେ ପୂର୍ବ ଅନୁଭୂତି ମୂର୍ତ୍ତିକୁ ଦେଖାଏ
କେବେ ଅର୍ଦ୍ଧ ଅନୁଭୂତ ଅଂଶ ଦେଖାଯାଏ ।
ସେ ସକଳ ଦିବା-କାଶେ ଥାଇଣ ଅସତ୍ୟ
କଳ୍ପନା ରାଜ୍ୟର ଏହା ଭ୍ରମ ମାୟା ମାତ୍ର ।
ରାଜା-ଆତ୍ମାକାଶେ ଯେଉଁ ସତ୍ୟବତ୍ ଜ୍ଞାନ
ଉଦିତ ହୋଇଛି ଏବେ ସାବଧାନେ ଶୁଣ ।
ଆକାଶରୂପୀ ଈଶ୍ୱରଙ୍କର ହୃଦୟରେ
ସେ ସତ୍ୟ ସଂକଳ୍ପ ଆଭା ପ୍ରକାଶେ ତହିଁରେ ।
ତେଣୁ କରି ବିଦୁରଥ ମହିଷୀଙ୍କୁ ତୁମେ
ଦେଖୁଛ ସ୍ୱୀୟ ଆଚାର ସ୍ୱଭାବାନୁକ୍ରମେ ।
ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ
ଲୀଳା ଉପାଖ୍ୟାନେ ଅଗ୍ନି ଦାହ ବର୍ଣ୍ଣନେ
ନାମ ୩୨ ତମ ସର୍ଗଃ



## ୩୩ତମ ସର୍ଗଃ

## କାମ ସଂକଳ୍ପ ବର୍ଣ୍ଣନ

ଦ୍ୱିତୀୟ ଲୀଳା ଯେ ବିଦୁରଥ ମହାରାଣୀ
ସରସ୍ୱତୀ ଦେବୀ ତାଙ୍କୁ କହୁଛନ୍ତି ବାଣୀ ।
"ତୁମ ସ୍ୱାମୀ ଏଇ ବିଦୁରଥ ମହାରାଜା
ରଣକ୍ଷେତ୍ରେ ନିଜ ପ୍ରାଣ କରିବେ ସେ ତେଜ୍ୟା ।
ତାଙ୍କ ପୂର୍ବ-ଅନ୍ତଃପୁରେ ଗମନ କରିବେ
ପଦ୍ମ ନୃପତି ରୂପରେ ଅବସ୍ଥିତ ହେବେ ।
ଏହିକଥା ଶୁଣିକରି ସେ ଦ୍ୱିତୀୟ ଲୀଳା
କୃତାଞ୍ଜଳି ପୁଟ ହୋଇ ଏମନ୍ତ କହିଲା ।
"ନିତ୍ୟ ମୁହିଁ ଜ୍ଞପ୍ତି ଦେବୀ ଅରଚନା କରେ
ନିଜ ଅଭିଳାଷମାନ ଜଣାଏ ଛାମୁରେ ।
ସେ ମଧ ସ୍ୱପନ ଯୋଗେ ଦେଖାଦ୍ୟନ୍ତି ମୋତେ
ଆପଣଙ୍କୁ ତାଙ୍କପରି ଦେଖିଛି ମୋ ନେତ୍ରେ ।
ଏହି ଅକିଞ୍ଚନା ପ୍ରତି ଅନୁଗ୍ରହ କରି
ଏକଗୋଟି ବରଦାନ କର ବାକ୍ୟେଶ୍ୱରୀ ।

ଦ୍ୱିତୀୟ ଲୀଳାକୁ ଚାହିଁ ସରସ୍ୱତୀ କହି
ସାରାଜୀବନ କାଟିଛୁ ମୋତେ ଧ୍ୟାୟୀ ଧ୍ୟାୟୀ ।
ତେଣୁ ମୁଁ ତୋ ପ୍ରତି ବତ୍ସେ ଅଛଇ ସନ୍ତୁଷ୍ଟ
ଅବଶ୍ୟ ପୂର୍ଣ୍ଣ କରିବି ତୋହର ଅଭିଷ୍ଟ ।

### ଦ୍ୱିତୀୟ ଲୀଳା' ଉବାଚ

"ମୋ ସ୍ୱାମୀ ରଣଭୂମିରେ ତେଜିଣ ଜୀବନ
ଯେଉଁ ସ୍ଥାନେ ଯାଇ କରିବେକ ଅବସ୍ଥାନ ।
ଏହି ଦେହେ ଯେପରି ମୁଁ ସେହିଠାକୁ ଯିବି
ତାହାଙ୍କ ସ୍ତିରୀ ରୂପରେ ପାଶେ ରହିଥିବି ।"
ସରସ୍ୱତୀ କହୁଛନ୍ତି ଲୀଳାମୁଖ ଚାହିଁ
ବହୁକାଳ ପୁଷ୍ପ ଆଦି ଉପଚାର ଦେଇ ।
ଆରାଧାନା କରିଅଛୁ ଆଗୋ ବତ୍ସେ ତୁହି
ତୋର ଅଭିଳାଷ ବତ୍ସେ ଯାଉ ସିଦ୍ଧ ହୋଇ ।
ଦ୍ୱିତୀୟ ଲୀଳାକୁ ବାଣୀ କହନ୍ତେ ଏସନ
ପ୍ରଥମ ଲୀଳା ତାହାଙ୍କୁ କହନ୍ତି ବଚନ ।
ଆପଣଙ୍କ ସଦୃଶ ଯେ ବ୍ରହ୍ମ ସ୍ୱରୂପିଣୀ
ସର୍ବ ମନୋରଥ ପୂର୍ଣ୍ଣ ତୁମ ବରଘେନି ।
ତେବେ ମୋର ସେହି ପୂର୍ବ ଦେହ ମଧ୍ୟେ ଥାଇ
ମୁଁ କିମ୍ୱା ସେ ଗିରି ଗ୍ରାମେ ମାତ ନ ଯିବଇଁ ?
ସରସ୍ୱତୀ କହିଲେକ ଗୋ ବରବର୍ଣ୍ଣିନୀ
ସ୍ୱୟଂ ମୁଁ କାହାର କିଛି କରିନାହିଁ ଜାଣି ।
ଜୀବଗଣ ନିଜେ ନିଜେ ଇପ୍‌ସିତ କରମ
ନିଜ ନିଜ ସାଧମତେ କରନ୍ତି ସମ୍ପନ୍ନ ।
ଜ୍ଞାନ ଅଧିଷ୍ଠାତ୍ରୀ ରୂପେ ଅନ୍ତରରେ ଥାଇ
ଜୀବଗଣଙ୍କ ସକଳ କର୍ମଫଳ ଦେଇ ।
ଜୀବଶକ୍ତି ଆକାରରେ ପ୍ରତ୍ୟେକ ଜୀବରେ
ଚିତ୍‌ଶକ୍ତି ବର୍ତ୍ତମାନ ଅଛି ନିର୍ବିଘ୍ନରେ ।
ସେହିଶକ୍ତି ଯେଉଁ ଯେଉଁ ଜୀବ ମଧ ଦେଇ
ଯେଉଁ ଯେଉଁ ଆକାରରେ ପ୍ରକାଶ ଲଭଇ ।
ତଦନୁରୂପ ଫଳ ଯେ ସେ ପ୍ରଦାନ କରେ
କିଛି ବାହାରୁରୀ ନାହିଁ ମୋହର ସେଥିରେ ।
ଯେତେବେଳେ କରୁଥିଲୁ ଉପାସନା ମୋର
"ମୁଁ ମୁକ୍ତ ହେବି" ଚିତ୍‌ଶକ୍ତି ମଧ୍ୟେ ଥିଲା ତୋର ।
ମୁଁ ମଧ ତଦନୁରୂପେ ତୋର ପ୍ରବୋଧନ
ଯୁକ୍ତିମତେ କରିଅଛି ସେକ୍ଷଣି ପ୍ରଦାନ ।

ତେତେବେଳେ ମୁକ୍ତି ଲିପ୍‌ସା ଥିଲା ତୋ ଜାଗ୍ରତ
ନିଜ ଚିତ୍‌ଶକ୍ତି ବଳେ ହୋଇଛୁ ପ୍ରାପତ ।
ଯେ ଭାବେ ଚିତ୍‌ସ୍ଫୁରଣ ହୁଅଇ ଯାହାର
ଯଥାକାଳେ ତଦରୂପ ଫଳପ୍ରାପ୍ତି ତାର ।
ସ୍ୱୀୟ ଚିତ୍‌ଶକ୍ତି ଆଦ୍ୟେ ତପସ୍ୟା ରୂପରେ
ପରେ ଦେବତା ରୂପରେ ଫଳଦାନ କଲେ ।
ଶ୍ରେୟ ଅଶ୍ରେୟ ଏକ୍ଷଣି ଚିନ୍ତା କରି ଦେଖ
ଇଚ୍ଛା ଅନୁସାରେ ଫଳ ମିଳିବ ପ୍ରତ୍ୟକ୍ଷ

**ଇତିଶ୍ରୀ ଯୋଗବାଶିଷ୍ଠ ଉତ୍ପତ୍ତି ପ୍ରକରଣ**
**ଲୀଳା ଉପାଖ୍ୟାନେ କାମ ସଂକଳ୍ପ ବର୍ଣ୍ଣନେ**
ନାମ ତ୍ରୟୋତ୍ରିଂଶତମ ସର୍ଗଃ ।



## ୩୪ତମ ସର୍ଗଃ
## ବିଦୂରଥ ମରଣ ବର୍ଣ୍ଣନ

କହନ୍ତି ଶ୍ରୀରାମଚନ୍ଦ୍ର ରାଜା ବିଦୁରଥ
ଯୁଦ୍ଧରେ ଯା'କଲେ ମୋତେ କହ ସେ ବୃତ୍ତାନ୍ତ ।
ବଶିଷ୍ଠ କହିଲେ, ରାଜା ଯୁଦ୍ଧ ଯାତ୍ରା କଲେ
ସଇନ ସାଗର ତାଙ୍କ ସଙ୍ଗତରେ ଥିଲେ ।
ସର୍ବାଙ୍ଗେ କବଚ କରିଛନ୍ତି ପରିଧାନ
ଭୂଷଣେ ଭୂଷିତ ରାଜା ଯୁଦ୍ଧ ଅର୍ଥେ ଜାଣ ।
ମନ୍ତ୍ରୀଗଣ ଥିବା ଦେଖି ସୈନ୍ୟଙ୍କ ପାଖରେ
ଯୁଦ୍ଧାରମ୍ଭ ନିମିତ୍ତ ସେ ଆଦେଶ ବିହିଲେ ।
ରଥ ଆରୋହଣ କରି ନିଜେ ଆଗେ ଯାଇ
ସତୃଷ୍ଣ ଅଛନ୍ତି ଶତ୍ରୁ ନିପାତିବା ପାଇଁ ।
ରାଜାଙ୍କ ସମର ସଜ୍ଜା ଦେଖି ଦସ୍ୟୁଗଣ
ନଗର ଲୁଣ୍ଠନ ତେଜି କଲେ ପଳାୟନ ।
ବାଜି ଉଠେ ବୀରବାଜା ବାଜେ ଭେରୀତୁରୀ
ମଙ୍ଗଳ ଶଙ୍ଖ ଶବଦେ ଜଗତ ଉଚ୍ଛୁଳି ।
ନାଚି-ଉଠେ ବୀର ହୃଦ ସେ ଶବଦ ଶୁଣି
ବରଷଇ ଅସ୍ତ୍ରଶସ୍ତ୍ର ଚାଲେ ହଣାହଣି ।
ଉଚ୍ଛୃଙ୍ଖଳ ଗଜରୂପ ମେଘର ଗର୍ଜନେ
କମ୍ପିଉଠେ ଧରା ନଭ ଦୁନ୍ଦୁଭି ନିସ୍ୱନେ ।
ସୂର୍ଯ୍ୟପଥ ରୋଧକାରୀ ଧୂଳିର ପଟଳ
ଭୂପୃଷ୍ଠ ତେଜି ଉଠିଲା ଗଗନ ମଣ୍ଡଳ ।
ବନବଧୁଁ ବାହାରନ୍ତି ନିଶାଚରଗଣ
ଆନନ୍ଦରେ କରିବାକୁ ସବୁଙ୍କୁ ଭକ୍ଷଣ ।
ଅବିରତ ଚାଲିଅଛି ଘୋରତର ଯୁଦ୍ଧ
ବେଳୁଁ ବେଳ ଘନାଉଛି ଆତଙ୍କ ଶବଦ
ଦେବୀଙ୍କ ପ୍ରସାଦେ ଦିବ୍ୟ ଗତି ଲାଭ କରି
ଲୀଳାଦ୍ୱୟ ଏବଂ ବିଦୁରଥର କୁମାରୀ ।
ନିରାପଦେ ରହିଥାନ୍ତି ପ୍ରାସାଦ ଭିତର
ରଣ ଲୀଳା ଦେଖୁଥାନ୍ତି ଗବାକ୍ଷ ମାର୍ଗର ।
ଭୀଷଣ ହୋଇ ଉଠିଲା ଯୁଦ୍ଧ ଯେତେବେଳେ
ଲୀଳାଦ୍ୱୟ ବାଗ୍‌ଦେବୀଙ୍କୁ ପ୍ରଶ୍ନ ପଚାରିଲେ ।
ଥିଲେ ହେଁ ତୋ କୃପାମାତ ଆମ୍ଭଦ୍ୱୟପ୍ରତି
କି କାରଣେ ସ୍ୱାମୀ ଆମ୍ଭ ବିଜୟ ନପାନ୍ତି ।
ସରସ୍ୱତୀ ବୋଇଲେ ଗୋ ପୁତ୍ରି ଏବେ ଶୁଣ
ତୋ ସ୍ୱାମୀର ଶତ୍ରୁ କିମ୍ବା ଯୁଦ୍ଧେ ନ ଜିଣିମ ।
ଦୀର୍ଘକାଳେ ମୋତେ ସେହି ଆରାଧନା କଲା
ତୁମ୍ଭ ସ୍ୱାମୀ ସେଥିପାଇଁ ଧ୍ୟାନତ ନ ଦେଲା ।
ଏଣୁକରି ତୁମ୍ଭ ସ୍ୱାମୀ ଲଭିବେ ନିଧନ
ଜୟଧ୍ୱନୀ ଗାଇବେକ ତାଙ୍କ ଶତ୍ରୁଗଣ ।
ସକଳପ୍ରାଣୀ ଅନ୍ତରେ ମୁହିଁଟି ସଂବିତ
କର୍ମ ଅନୁସାରେ ଫଳ ଦିଅଇ ସର୍ବତ୍ର ।
ମୁକ୍ତି କାମ ହୋଇ ବିଦୁରଥ ମହାରାଜା
ଦୀର୍ଘକାଳ କରିଥିଲେ ମୋର ପାଦପୂଜା ।
ତେଣୁ କରି ବିଦୁରଥ ହୋଇବେ ମୁକତ
ତୁମ୍ଭମାନଙ୍କର ଭାଗ୍ୟ ହେବ ତଦବତ ।
ଜୟ କାମନା କରିଣ ସିନ୍ଧୁ ଦେଶ ରାଜା
ବହୁକାଳ କଲା ଯେଣୁ ମୋର ପାଦପୂଜା ।
ତେଣୁ ବିଜୟ ପତାକା ଉଡ଼ିବ ତାଙ୍କର
ମୁକତି ଲଭିବେ କିନ୍ତୁ ତୁମ୍ଭ ପ୍ରାଣେଶ୍ୱର ।
ବଶିଷ୍ଠ କହିଲେ ରାମ ଦେବୀ ବୀଣାପାଣି
କହୁଛନ୍ତି ଏହା ଶୁଣୁଛନ୍ତି ବେନିରାଣୀ ।
କମ୍ପି ଉଠେ ରଣଭୂମି ଘୋରତର ଯୁଦ୍ଧେ
ଗଗନେ ଥାଇ ଦେଖନ୍ତି ସକଳ ବିବୁଧେ ।
ସେହି ଅଦଭୂତ ଯୁଦ୍ଧ ଦେଖିବାର ପାଇଁ
ଉଦୟ ଚଳେ ଉଠିଲେ ଅବା ଛାୟାସାଇଁ ।
ତିମିର ନାଶନ ମୁଖ ଦେଖିବାର କ୍ଷଣି
ଦିଗବାଳା ନୃତ୍ୟ ଦେଖି ହସଇ ମେଦିନୀ ।
ପରସ୍ପର ପରସ୍ପରେ ଦେଖିପାରି ବୀରେ
ଅତି ଭୟଙ୍କର ଯୁଦ୍ଧେ ମାଡ଼ିଗଲେ ଖରେ ।

ଏହି ମତେ ବହୁକ୍ଷଣ ଚାଲିଲା ସମର
ନିହତ, ଆହତ, ବୀରେ ପଳାୟନ ପର ।
ଜନଶୂନ୍ୟ ହୋଇଗଲା କ୍ରମେ ରଣସ୍ଥଳ
ଦେଖାଗଲେ ରଥଧ୍ୱଜ ରାଜାମାନଙ୍କର ।
ଦେଦୀପ୍ୟମାନ ହୋଇଣ ଶସ୍ତ୍ରେ ରଥୀମାନ
ରକ୍ତାକ୍ତ ରକ୍ଷକ୍ଷେତ୍ରରେ କଲେ ବିଚରଣ ।
ସମ୍ମୁଖବର୍ତ୍ତୀ ଦେଖିଣ ସିନ୍ଧୁ ନୃପତିଙ୍କୁ
ବିଦୁରଥ କୋପ ଜିଣେ ମଧ୍ୟାହ୍ନ ସୂର୍ଯ୍ୟଙ୍କୁ ।
ବିଷ୍ଣୁ ଆରାଧନା କରି ଉଭୟ ନୃପତି
ନାନାଶସ୍ତ୍ର ଲଭିଥିଲେ ଦେଖାଇ ସୁଖ୍ୟାତି ।
ତେଣୁ ସମ ପରାକ୍ରମ ଥିଲା ତାହାଙ୍କର
ସମ ଅସ୍ତ୍ରଶସ୍ତ୍ର ଆଦି ଯୁଦ୍ଧର ଭଣ୍ଡାର ।
ସଂଗ୍ରାମରେ ଲାଗିଗଲେ ଉଭୟ ରାଜନ
ବାଣମାନ ନିକ୍ଷେପନ୍ତି ମୁଷଳ ସମାନ ।
କଳ୍ପାନ୍ତ ବଜ୍ର ସଦୃଶ ସେ ସକଳ ବାଣ
କରିବାକୁ ଲାଗିଗଲେ ଆକାଶ ଆଚ୍ଛନ୍ନ ।
ପ୍ରତି ଅସ୍ତ୍ରମାନ ଧରି ମରାମତି ହୁଅନ୍ତି
କେହି କାହାକୁ ଯୁଦ୍ଧରେ ଜିଣି ନ ପାରନ୍ତି ।
ଅଗ୍ନ୍ୟାୟ ପ୍ରୟୋଗ କଲେ ସିନ୍ଧୁ ନରମଣି
ସାରା ଦେଶ ଜଳିଗଲା ଜଳେ କାଳ ଅଗ୍ନି ।
ବରୁଣାସ୍ତ୍ର ପେଶିଦେଲେ ରାଜା ବିଦୁରଥ
ଶାନ୍ତ ପଡ଼ିଯାଏ ଅଗ୍ନି ତାପ ତତ୍‌କ୍ଷଣାତ୍ ।
ସତ୍‌ସଙ୍ଗ ପ୍ରଭାବେ ଅଜ୍ଞାନୀଙ୍କ ନିତି ତାପ
ତେସନ ଲୁପତ ହେଲା ଅଗ୍ନିଙ୍କର କୋପ ।
ଜଳାର୍ଣ୍ଣବ ହୋଇଅଛି ସାରା ରଣ ଭୂଇଁ
ସିନ୍ଧୁରାଜା ସୈନ୍ୟମାନେ ଉବୁଟୁବୁ ହୋଇ ।
ଶୋଷଣାସ୍ତ୍ର ପେଶିଦ୍ୟନ୍ତେ ସିନ୍ଧୁର ପାଳକ
ଜଳ ଶୁଖିଯାଇ ରହେ କର୍ଦ୍ଦମ ମାତ୍ରକ ।
ତେଜୋମୟ ବାଣ ଦ୍ୱାରା କାଦୁଅ ଶୁଖଇ
ଉତ୍ତାପରେ ବିଦୁରଥ ସେନା ଦଗ୍ଧ ହୋଇ ।
ମେଘାସ୍ତ୍ର ପେଷଣ କଲେ ବିଦୁରଥ ନୃପ
ଅତିଶୀଘ୍ର କମିଯାଏ ଉତ୍ତାପର କୋପ ।
ପବନାସ୍ତ୍ର ମାରି ଦେଲେ ସିନ୍ଧୁ ନରପତି
ପାହାଡ଼ାସ୍ତ୍ରେ ବାୟୁବେଗ ରୋକେ ଲୀଳାପତି ।
ପାହାଡ଼ାସ୍ତ୍ରର ପ୍ରତ୍ୟସ୍ତ୍ରେ ବଜ୍ରାସ୍ତ୍ର ହୁଅନ୍ତେ
ବ୍ରହ୍ମାସ୍ତ୍ର ପେଷନ୍ତି ବିଦୁରଥ ନରପତେ ।

ଏହିପରି ପରସ୍ପର ସମର ଚଳଇ
କେହି କାହାକୁ ଯୁଦ୍ଧରେ ନ ପାରେ ହରାଇ ।
ବିଦୁରଥ ସିନ୍ଧୁ ରାଜା ପ୍ରତି ଶକ୍ତି-ଅସ୍ତ୍ର
ନିକ୍ଷେପଣ କରିକଲେ ତାଙ୍କୁ ଅସ୍ତବ୍ୟସ୍ତ ।
ସେ ଅସ୍ତ୍ର ବକ୍ଷରେ ବାଜି ସିନ୍ଧୁରାଜାଙ୍କର
ରକ୍ତବାନ୍ତି ହେଲା ଧରି ଭୀଷଣ ଆକାର ।
ଦ୍ୱିତୀୟ ଲୀଳା ପ୍ରଥମେ କହଇ ଏମନ୍ତ
ଆମ୍ଭ ସ୍ୱାମୀ ସିନ୍ଧୁ ଶସ୍ତ୍ରାଘାତେ ନିପତିତ ।
କରୁଛନ୍ତି ରକ୍ତବାନ୍ତି ବହେ ରକ୍ତ ସ୍ରୋତ
ଦେଖି ଗର୍ଭିଣୀ ସ୍ତିରୀଙ୍କ ହେବ ଗର୍ଭପାତ ।
ଦେଖ ସିନ୍ଧୁ ବସୁଛନ୍ତି ଅନ୍ୟ ଏକ ରଥେ
ତାହା ଏବେ ଚୂର୍ଣ୍ଣ ହେଲା ମୁଦ୍‌ଗର ଘାତେ ।
ପୁନର୍ବାର ସିନ୍ଧୁନୃପ ରଥପରେ ବସି
ଆମ ସ୍ୱାମୀଙ୍କୁ ହତାଶ କରୁଛନ୍ତି ହସି ।
ଛିନ୍ନଧନୁ, ଛିନ୍ନସାଞ୍ଜୁ ତାଙ୍କୁ କରିଦେଲେ
ହତ ସାରଥୀ କରିଣ ତଳେ ପକାଇଲେ ।
ଦେଖ ଆମ ମହାରାଜା ଚେତନା ଲଭିଣ
ଅନ୍ୟ ଏକ ରଥ କରୁଛନ୍ତି ଆରୋହଣ ।
ହାୟ ହାୟ ସିନ୍ଧୁରାଜା ଆମ ସ୍ୱାମୀ ସ୍କନ୍ଧ
ଛିନ୍ନକଲେ ଏବେ ଆମେ ହୋଇଗଲୁ ଅନ୍ଧ ।
କି କଷ୍ଟ ଖଡ଼୍‌ଗେ ଛେଦି ଦ୍ୟନ୍ତି ତାଙ୍କ ଜଙ୍ଘ
ହାୟ ହାୟ ପୋଡ଼ିଗଲା ଏବେ ଆମ ଭାଗ୍ୟ ।
"ଏବେ ସ୍ୱାମୀଙ୍କର ଜାନୁଯୁଗ ଛିନ୍ନ ହେଲା"
ଏହା କହି ମୂର୍ଚ୍ଛାଯାଇ ତଳେ ପଡ଼ିଗଲା ।
ଏଣେ ବିଦୂରଥ ତଳେ ପଡ଼ିଗଲା ମାତ୍ରେ
ସାରଥୀ ନେଇଣ ତାଙ୍କୁ ବସାଇଲେ ରଥେ ।
ଧାଇଁ ଆସି ସିନ୍ଧୁ ରାଜା ନୃପ କଣ୍ଠ ଦେଶେ
ଅସ୍ତ୍ରାଘାତ କଲେ ପ୍ରାଣ ଉଡ଼ିଗଲା ଶେଷେ ।
ଅର୍ଦ୍ଧଛିନ୍ନ ବେକ ବିଦୁରଥ ନୃପତିଙ୍କୁ
ରଥେ ବସାଇ ସାରଥୀ ଘେନେ ପ୍ରାସାଦକୁ ।
ଏଣେ ସିନ୍ଧୁରାଜା ପଛେ ପଛେ ଧାଇଁଥାନ୍ତି
ପ୍ରାସାଦ ନିକଟେ ଯାଇ ଚାଣ୍ଡେ ପହଞ୍ଚନ୍ତି ।
ମଶାଯଥା ଅଗ୍ନି ମଧ୍ୟେ ପଶି ନ ପାରଇ
ବାଣୀପ୍ରତାପେ ହେତୁରୁ ରାଜା ଭୟ ପାଇ ।
ପ୍ରାସାଦ ମଧ୍ୟକୁ ସିନ୍ଧୁ ଦେଶ ନରନାଥ
ଅକ୍ଷମ ହୋଇଲେ ତହିଁ ପ୍ରବେଶ ନିମିତ୍ତ ।

ବାଧ୍ୟ ହୋଇ ନିଜ ଶିବିରକୁ ଫେରି ଗଲେ
ସାରଥୀ, ରାଜାଙ୍କୁ ବାଣୀ ପାଦେ ଶୁଆଇଲେ ।
**ଇତିଶ୍ରୀ ଯୋଗବାଶିଷ୍ଠେ ଲୀଳା ଉପାଖ୍ୟାନେ**
**ବିଦୁରଥ ମରଣ ବର୍ଣ୍ଣନେ ନାମ**
**୩୪ତମ ସର୍ଗଃ**



## ୩୫ତମ ସର୍ଗଃ
## ମୃତ୍ୟୁ ମୂର୍ଚ୍ଛନ୍ତର ପ୍ରତିମା

ବୋଲନ୍ତି ବଶିଷ୍ଠ ରାମ ଶୁଣ ମୋ ବଚନ
ବିଦୁରଥ ରାଜା ଏବେ ହୋଇଲେ ନିଧନ ।
ଏହି କଥା ସିନ୍ଧୁରାଜା କରନ୍ତେ ଘୋଷଣା
ଅରାଜକତା ବ୍ୟାପିଲା ସାରା ରାଜ୍ୟେ ସିନା ।
ନଗରବାସୀଏ ସର୍ବେ କଲେ ପଳାୟନ ।
ପଳାୟନ କାଳେ ପଥେ ହୁଏ ସଂଘର୍ଷଣ ।
ଦସ୍ୟୁ, ତସକରଙ୍କ ଚାଲିଲା ଲୁଣ୍ଠନ
ଚିତ୍କାରନ୍ତି ଗଜ, ଅଶ୍ୱ, ଆରୋହୀ ବିହୀନ ।
କବାଟ ଭଙ୍ଗା ଶବଦ ଗୃହମାନଙ୍କର
କ୍ରନ୍ଦନ ଧ୍ୱନି ବାଳକ, ସ୍ତିରୀଗଣଙ୍କର ।
ଅପହୃତା କାମିନୀଙ୍କ କରୁଣ ଶବଦ
ଶୁଣିବା ଲୋକର କାନ କରିଦିଏ ସ୍ତବ୍‌ଧ ।
ଏହି ସକଳ ନିନାଦ ଏକତ୍ର ହୋଇଣ
ଭୀଷଣ ଅବସ୍ଥା ଜାତ ପ୍ରଳୟ କାଳୀନ ।
ଅଚିରେ ସିନ୍ଧୁରାଜନ ନଗ୍ରେ ପ୍ରବେଶିଲେ
ଆପଣା ପୁତକୁ ରାଜ୍ୟେ ରାଜ୍ୟେଶ୍ୱର କଲେ ।
ନିଜକୁ ପୃଥିବୀଶ୍ୱର ଘୋଷଣା କରିଣ
ସସାଗରାଧରା ରାଜା ହେଲେ ସିନ୍ଧୁଗଣ ।
କଠୋର ରାଜନିୟମ ପ୍ରବର୍ତ୍ତିତ କରି
ଭୀଷଣ ଅରାଜକତା ଦେଲେକ ସୁଧାରି ।
ଏଣେ ଶୁଣି ସ୍ୱାମୀଙ୍କର ମରଣ ବାରତା
ଏକ ରାଜ ମହିଷୀଙ୍କ ବୁଡ଼ିଯାଏ ଚେତା ।
ଚେତା ଆସନ୍ତେ କହନ୍ତି ହେ ଅମ୍ବିକେ ଦେଖ
ଶୁଖିଯାଇଛି ମୋ ପ୍ରାଣନାଥଙ୍କର ମୁଖ ।
ଅବଶ୍ୟ ଏକ୍ଷଣି ତାଙ୍କ ଘଟିବ ମରଣ
ଭାବି କରି ମୋର ମନ ହୁଏ ଉଚ୍ଚାଟନ ।
ସରସ୍ୱତୀ କହିଲେକ ଏ ଅଦ୍ଭୁତ ଯୁଦ୍ଧ
ଏ ରାଷ୍ଟ୍ର ବିପ୍ଳବ ଯାହା କରିଅଛି ସ୍ତବ୍‌ଧ ।
ଏହାଦ୍ୱାରା ଏ ରାଜ୍ୟର ଅବା ପୃଥିବୀର
କିଛିମାତ୍ର କ୍ଷତି ଘଟିନାହିଁ ନାରୀବର ।
ଯେହେତୁ ସାରାଜଗତ ଅଟେ ସ୍ୱପ୍ନମୟ
କଉଣସି ସ୍ଥାନେ ଏହା ନ ରହଇ ଥୟ ।
ହେ ଅନଘେ ! ତୁମ ସ୍ୱାମୀଙ୍କର ଏହି ରାଜ୍ୟ
ରାଜାପଦ୍ମ ଗୃହାକାଶେ ସ୍ଥିତି ଅନିର୍ବାର୍ଯ୍ୟ ।
ପଦ୍ମରାଜାଙ୍କର ରାଜ୍ୟେ ବଶିଷ୍ଠ ବ୍ରାହ୍ମଣ
ସେହି ଗୃହାକାଶ ମଧ୍ୟେ ତାଙ୍କ ଅବସ୍ଥାନ ।
ରାଜା ବିଦୁରଥ ପୃଥ୍ୱୀ, ଲୀଳା, ତୁମେ ଆମେ
ଗିରି ଗ୍ରାମବାସୀ ସେହି ଦ୍ୱିଜ ଗୃହାଶ୍ରମେ ।
ନଭକୋଷେ ଅବସ୍ଥାନ ସର୍ବେ କରୁଥାଇଁ
ଏ ରହସ୍ୟ କେତେଜଣ ବୁଝିବେ ଏ ମହି ?
ଆତ୍ମାହିଁ ସକଳଭାବେ ବ୍ୟାପ୍ତି ରହିଛଇ
ଆତ୍ମାବିନା ଏ ଜଗତେ ଅନ୍ୟ କିଛି ନାହିଁ ।
ଉତ୍ପତ୍ତି, ବିନାଶହୀନ ଆତ୍ମାକୁ ବୁଝିବ
ପରମ ପଦ, ବିଜ୍ଞାନ ତାଠାରୁ ଜାଣିବ ।
ସ୍ୱପ୍ରକାଶ, ଶାନ୍ତ ଅନାମୟ ପରମାତ୍ମା
ଏ ମଣ୍ଡପେ ଆପେ ଆପେ ରାଜେ ସେ ବିଶ୍ୱାତ୍ମା ।
ସେ ମଣ୍ଡପଦ୍ୱୟ ମଧ୍ୟେ ସ୍ଥିତ ସେ ଆକାଶ
ଶୂନ୍ୟମାତ୍ର ଭ୍ରାନ୍ତିମୟ ଜଗତ ବିଳାସ ।
ଉତ୍ପତ୍ତି ବିନାଶ ଶୂନ୍ୟ ସେ ଏକା ଅଟନ୍ତି
ତାଙ୍କ ବିନା ଅନ୍ୟ କିଛି ଏ ବିଶ୍ୱରେ ନାସ୍ତି !
ଜୀବଧାରୀ ପର୍ବେ ସେହି ମଣ୍ଡପ ଗୃହରେ
ସ୍ୱ ସ୍ୱଭାବେ ସମୁଦିତ ହୋଇ ସ୍ୱଇଚ୍ଛାରେ ।
ବିହାର କରୁଅଛନ୍ତି ବିରାମ ନଥାଇ
ସୃଷ୍ଟି ବା ଜଗତ ବୋଲି କିଛିନାହିଁ ତହିଁ ।
ତେଣୁ ଏ ଜଗତ ଅଜ, ଗଗନ ସ୍ୱରୂପ
ଶୂନ୍ୟ, ଶୂନ୍ୟ ମହାଶୂନ୍ୟ କଳ୍ପନା ଯା' ରୂପ ।
ସ୍ୱପ୍ନେ ପରିଦୃଷ୍ଟ ରମ୍ୟ ନଗରର ନ୍ୟାୟ
ଚିଦ୍‌ଅଣୁ ମଧ୍ୟେ ସ୍ଥିତ ଏ ଜଗତତ୍ରୟ ।
ସେ ଜଗତ ମଧ୍ୟେ ଭଦ୍ରେ ପଦ୍ମନୃପତିର
ଶବ ଶରୀର ରହିଛି ବୁଝି ଅବିକଳ ।

ଯେତେବେଳେ ତୁମ୍ଭ ଆଗେ ଏ ଦ୍ୱିତୀୟଲୀଳା
ମୂର୍ଚ୍ଛିତା, ଅଜ୍ଞାନ ହୋଇ ତଳେ ପଡ଼ିଗଲା ।
ତେତେବେଳେ ପଦ୍ମରାଜା ଶବର ନିକଟ
ଥାଇ ମନେ ମନେ ହେଉଥାଉ ଛଟପଟ
ଲୀଳା କହେ ଆଗୋ ମାତ ମୋ ପତି ଏଠାରେ
ଦେହଧରି ରହିଛନ୍ତି କେଉଁ ପରକାରେ ?
ସେଠାର ଲୋକେ ଏହାଙ୍କୁ କିପରି ଦେଖନ୍ତି ?
ୟାଙ୍କ ବିଷୟେ କିପରି ମତ ପ୍ରକାଶନ୍ତି ?
ଗୋଟି ଗୋଟି କରି ସବୁ ବୁଝାଇଣ କହ
ଶୁଣିଲେ ବା କିଛି ଶାନ୍ତ ହେବ ମୋର କୋହ ।
ସରସ୍ୱତୀ ବୋଇଲେ ଗୋ ଲୀଳା ଏବେ ଶୁଣ
ତୁମ୍ଭ ସ୍ୱାମୀ ପରିଚୟ ଭଲକରି ଜାଣ ।
ବିଦୁରଥ ରୂପଧାରୀ ସେ ପଦ୍ମ ନୃପତି
କିଛିଦିନ ପାଇଁ ହେଲେ ତୁମ୍ଭ ପ୍ରାଣପତି ।
ଯେଉଁ ଗୃହେ ପଦ୍ମରାଜା ଶବଦେହ ଅଛି
ସେହି ଗୃହକାଶେ ଜଗତ୍ ଭ୍ରାନ୍ତି ସେ ଦେଖୁଛି ।
ତାଙ୍କ ନଗ୍ର ତାଙ୍କ ରାଜ୍ୟ ତଦୀୟ ବିଭୂତୀ
ଗୋଟି ଗୋଟି ହୋଇ ସବୁ ତହିଁ ବିରାଜନ୍ତି ।
ସେହି ଭ୍ରାନ୍ତି ଦରଶନ ବିଦୁରଥ ରାଜା
ତାହାର ଏ ରାଜ୍ୟ ପୁଣି ତାର ଜନ ପ୍ରଜା ।
ତୋ' ସହିତ ତା' ବିବାହ ଭ୍ରାନ୍ତିମୟ ଜାଣ
ରାଷ୍ଟ୍ର ବିପ୍ଳବ ଓ ଯୁଦ୍ଧ ଖାଲି ଭ୍ରାନ୍ତିପୂର୍ଣ୍ଣ ।
ଭ୍ରାନ୍ତିପୂର୍ଣ୍ଣ ଅଟେ ବିଦୁରଥଙ୍କ ମରଣ
ଯେତେ ଏ ଜଗତେ ତୁମେ, ଆମେ ବିଦ୍ୟମାନ ।
ମୋ ବ୍ୟତୀତ ଅନ୍ୟସବୁ ଖାଲି ଭ୍ରାନ୍ତିମୟ
ମୁଁ ଜାଣଇ ଏହି ତତ୍ତ୍ୱ ସର୍ବଦା ନିଶ୍ଚୟ ।
ତୁମ୍ଭେ, ଏ ଦ୍ୱିତୀୟ ଲୀଳା ଉଭୟେ ସପନ
ପତିପତ୍ନୀ ତୁମେ ନିଜ ନିଜ ପ୍ରତି ସ୍ୱପ୍ନ ।
ଏ ଭାବେ ପ୍ରକାଶ ପାଇ ଜାଣ ଏ ଜଗତ
ଜନମତେ ହୁଏ ଦୃଶ୍ୟନାମେ ପରିଚିତ ।
ହୃଦୟଙ୍ଗମ ହୁଅନ୍ତେ ଯେ ପରମ ତତ୍ତ୍ୱ
କ୍ଷଣ ମଧ୍ୟେ ଦୃଶ୍ୟ ଭାବ ହୁଏ ଅସ୍ତମିତ ।
ଆତ୍ମାହିଁ ଏସବୁ ମଧ୍ୟେ ଅଟେ ପୂର୍ଣ୍ଣ ସତ୍ୟ
ଆତ୍ମାଛଡ଼ା ଅନ୍ୟ ସବୁ କେବଳ ଅସତ୍ୟ ।
ସେହି ଆତ୍ମା ଆଶ୍ରୟରେ ରାଜା, ତୁମେ ଆମେ
ସ୍ୱୀୟ ଭ୍ରାନ୍ତି ବଶେ ପରକାଶ ଯଥାକ୍ରମେ ।
ତୁମକୁ ପାଇବା ପାଇଁ ତୁମ ସ୍ୱାମୀ ଚିତ୍ତେ
ଯେବେ ବାସନା, ଉଦିତ ହୁଏ ଅକସ୍ମାତେ ।
ତେତେବେଳେ ତାହାଙ୍କର ଚିଦାକାଶ ମଧ୍ୟେ
ତୁମପରି ରୂପବତୀ ଉଏଁ ତାଙ୍କ ହୃଦେ ।
ଅନ୍ୟ କେହି ନୁହେଁ ସେହି ଏ ଦ୍ୱିତୀୟ ଲୀଳା
ଅଦଭୂତେ ରାଜାପାଶେ ଆସି ଉଭାହେଲା ।
ତୁମ ସ୍ୱାମୀଙ୍କର ଯେବେ ହୋଇଲା ମରଣ
ତୁମ ପ୍ରତିବିମ୍ବର ସେ ପାଇଲେ ଦର୍ଶନ ।
ବାସନା ହେତୁରୁ ତୁମ କଳ୍ପନା ମୁରତୀ
ଦେଖିବାକୁ ପାଇଲେ ସେ ଉଦାର ଭୂପତି ।
ଚିତ୍ତ ଯେବେ ଆଧିଭଉତିକ ଭାବଧରେ
ଭୌତିକ ଭାବକୁ ସତ୍ୟ ବୋଲି ସେ ବିଚାରେ ।
ତୁମ ସ୍ୱାମୀଙ୍କ ମରଣ ନିକଟ ହୋଇଲା
ଅତିମାତ୍ରା ସ୍ନେହ ତାଙ୍କ ତୁମପ୍ରତି ଥିଲା ।
ତେଣୁ ନାନା ଭୂଷଣରେ ବିଭୂଷିତା ହୋଇ
ରୂପ ଗୁଣେ ପରିପୂର୍ଣ୍ଣା ହେଲୁ ବସ୍ତେ ତୁହି ।
ବାସନାନୁସାରେ ତାଙ୍କୁ ହୋଇଲୁ ପ୍ରାପତ
ତୋତେ ଦେଖି ତାଙ୍କ ମନ ହୁଅଇ ଉଷତ ।
ଜୀବର ମରଣକାଳ ହୁଅନ୍ତେ ନିକଟ
ଅନ୍ତବାହିକ ଶରୀର ତାକୁ ପରପତ ।
ଆଧିଭୌତିକ ଭାବକୁ ଚିତ୍ତ ଯେବେ ଧରେ
ଭୌତିକ ଭାବନା ସତ୍ୟ ବୋଲି ସେ ବିଚାରେ ।
ଆତିବାହିକି ଭାବକୁ କଳ୍ପନା କରଇ
ଭୂତ ଭାବ ଯେତେବେଳେ ମିଥ୍ୟା ଜଣାଯାଇ ।
ଆତିବାହିକ ଭାବ ଯେ ସତ୍ୟ ମନେ ହୁଏ
ଏ ସୃଷ୍ଟି ଅସାର ବୋଲି ତାଙ୍କୁ ଜଣାଯାଏ ।
ତୋ ସ୍ୱାମୀ ପଦ୍ମର ମୃତ୍ୟୁ ମୂର୍ଚ୍ଛା କଟିଯାନ୍ତେ
ବିଦୁରଥ ନୃପରୂପେ ଜନମେ ଜଗତେ ।
ତାଙ୍କରେ ଅତି ଅଧିକ ବାସନା ଜନିତ
ଦ୍ୱିତୀୟ ଲୀଳା ରୂପେ ତୁ ଜନ୍ମିଲୁ ଜଗତ ।

ଭାଗ୍ୟବଶେ ପରିଣୟ ଘଟିଲା ତୁମ୍ଭର
ନିୟତି ପଥ ରୋକିବ ଶକତି କାହାର ।
ଏ କାରଣୁ ଏହି ଲୀଳା ତୁମପରି ଜାଣ
ରୂପବତୀ, ଗୁଣବତୀ ହୋଇଛି ସେ ପୁଣ ।
ଯେଣୁ ଚିନମୟ ଆତ୍ମା ଅଟେ ସର୍ବଗତ
ସର୍ବବ୍ୟାପି ସର୍ବଶକ୍ତିମାନ ଓ ଅନନ୍ତ ।
ତେଣୁ ବାସନା ଜନିତ ଦ୍ୱିତୀୟ ଲୀଳାକୁ
ତୁମେ ଦେଖ, ଆଦରେ ସେ ଦେଖଇ ତୁମକୁ ।
ଏ ସମସ୍ତ ତୁମ ବୁଦ୍ଧିଗତ ବସନାର
ବିଳାସ ବ୍ୟତୀତ କିଛି ନୁହେଁ ନାରୀବର ।
ଦୃଢ଼ମନ ଧରି ଯେଉଁ ମୂରତି ଉଚ୍ଛିବ
ସେହି ମୂର୍ତ୍ତି ଧରି ଶେଷେ ଜନମ ଲଭିବ ।
ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ତାର ସପନହିଁ ଜାଣ
ଜ୍ଞାନୀଏ ବୁଝିବେ ଲୀଳେ ଏହି ସମାଧାନ ।
ଦ୍ୱିତୀୟ ଲୀଳା ପ୍ରାର୍ଥନା କରିଥିଲା ମୋତେ
"ବିଧବା ନୋହିବି ମାତ କଦାଚ ଯେମନ୍ତେ" ।
ତେଣୁ ରାଜା-ମୃତ୍ୟୁପୂର୍ବୁ ଦେହତ୍ୟାଗ କଲା
ବିଧବା ଦୋଷ ତାହାକୁ କେଭେଁ ନଲାଗିଲା ।
ମୁଁ ତୁମ ଚୈତନ୍ୟାଂଶର ଚେତନା ରୂପିଣୀ
ପୂଜନୀୟା କୂଳଦେବୀ ଜାଣ ମୋତେ ରାଣୀ ।
ଏହିପରି କରାଇବା ଅଟେ ମୋର କାର୍ଯ୍ୟ
କୁଳମଙ୍ଗଳ କାରିଣୀ ନାମ ମୋର ଧାର୍ଯ୍ୟ ।
ଯେ ଯେଉଁ ଅଭିଷ୍ଟ ପାଇଁ ମୋତେ ପୂଜାକରେ
ଅଭିଷ୍ଟ ଫଳ ଦେଇଣ ଥାଇ ମୁଁ ତାହାରେ ।
ପୂର୍ବେ ଲୀଳା ଏହିବର ମାଗିଥିଲା ମୋତେ
ସ୍ୱ ଦେହରେ ସ୍ୱାମୀପାଶେ ଚଳିବ ଯେମନ୍ତେ ।
ତଥାସ୍ତୁ ବୋଲିଣ ମୁହିଁ ଦେଇଥିଲି ବର
ଏବେ ଫଳବାନ ହେଲା ସେ ବର ମୋହର ।
ସେ ବାସନା ଦେହଧରି ମୃତ୍ୟୁ ମୂର୍ଚ୍ଛାପରେ
ପଦ୍ମରାଜା ଶବ ପାଶେ ମିଳିଲା ସତ୍ୱରେ ।
ତାଙ୍କୁ ଜଣା ପଡୁଥାଏ ସ୍ୱଦେହେ ଆସିଛି
ସୂକ୍ଷ୍ମ ଶରୀର ବୋଲି ତା ପ୍ରତ୍ୟୟ ନୋହୁଛି ।
ପୂର୍ବେ ସ୍ୱାମୀସହ ଘରେ ଥିଲା ଯେଉଁପରି
ଅବିକଳ ତାଙ୍କୁ ଲାଗୁଥାଏ ସେହିପରି ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖ୍ୟାନେ ମୃତ୍ୟୁ ମର୍ଚ୍ଛାନ୍ତର**
**ପ୍ରତିମା ବର୍ଣ୍ଣନେ ନାମ**
**୩୫ତମ ସର୍ଗଃ ।**



## ୩୬ତମ ସର୍ଗଃ

### ମଣ୍ଡପାକାଶ ଗମନ ବର୍ଣ୍ଣନ

ଦ୍ୱିତୀୟ ଲୀଳା ବାସନା ଶରୀର ଧରିଛି
ପକ୍ଷୀପରି ଅତି ଖରେ ତଳକୁ ଖସୁଛି ।
ଖଣ୍ଡେଦୂର ଖସିଯାନ୍ତେ ଦେଖଇ ବାଟରେ
ବାଣୀ ପ୍ରେରିତ ସ୍ୱକନ୍ୟା ଭେଟେ ସେ ପଥରେ ।
ପଚାରଇ ଆଗୋ ଦେବୀ ଆପଣ ଯେ କିଏ
ଏଠାରେ ବସିଛ ମାତ କେଉଁ ଅଭିପ୍ରାୟେ ?
ଜ୍ଞାପ୍ତିଦେବୀ ପୁତ୍ରୀ ମୁହିଁ ବୋଲଇ କୁମାରୀ
ତୁମକୁ ଘେନି ଯିବାକୁ ଅପେକ୍ଷା ମୁଁ କରି ।
ଲୀଳା କହେ ଗୋ ଦେବୀ ମୋ ଅନୁରୋଧ ରଖ
ଘେନିଚଳ ମୋତେ ମୋର ସ୍ୱାମୀଙ୍କର ପାଖ ।
ଦେବୀ ଆଗେ, ଲୀଳା ପଛେ ଗଗନୁ ଖସିଲେ
ବହୁକାଳ ଧରି ଆକାଶରେ ସେ ଉଡ଼ିଲେ ।
ମେଘସ୍ତରେ ପ୍ରଥମରେ ମିଳିଲେକ ଯାଇ
ତାପରେ ବାୟୁ ମଣ୍ଡଳେ ପହଞ୍ଚନ୍ତି ସେହି ।
ତପନ ମଣ୍ଡଳ ପରେ ତାରକା ମଣ୍ଡଳ
ତଦପରେ ମିଳିଲେକ ଲୋକ ପାଳ ସ୍ଥଳ ।

ବ୍ରହ୍ମଲୋକେ, ବିଷ୍ଣୁଲୋକେ, ରୁଦ୍ରଲୋକେ ହେଲେ
ବଜ୍ରସମ ବ୍ରହ୍ମାଣ୍ଡ କପାଟ ଟପିଗଲେ ।
ଯଥାକୁମ୍ଭରେ ବରଫ ରଖାଯାଇ ଥାଏ
ତଥାପି କୁମ୍ଭ ବାହାର ତଣ୍ଡା ବୋଧ ହୁଏ ।
ଶୀତଳତା କୁମ୍ଭ ଭେଦି ବାହାରିଲା ପରି
ବ୍ରହ୍ମାଣ୍ଡୁ ଖସିଣ ଚଳିଗଲେ ବେନି ନାରୀ ।
ବ୍ରହ୍ମାଣ୍ଡ ଅପେକ୍ଷା ଦଶଗୁଣ ଜଳସ୍ତର
ଖସିଗଲେ ଅଗ୍ନିବାୟୁ ନଭ ତତ୍‌ପର ।
ମହାଚୈତନ୍ୟ ଆକାଶ ପରେ ଯାନ୍ତି ଚଳି
ଯା'ର ଆଦି, ମଧ୍ୟ, ଅନ୍ତ ନ ହୁଅଇ କଳି ।
କୋଟିକଳ୍ପ ଯାଏ ଖଗବର ଉଡୁଥିବ
ତଥାପି ସେ ବ୍ୟୋମ ଅନ୍ତ କଳି ନ ପାରିବ ।
ଏପରି ପରମାକାଶୁ ଖସି ଆସୁଛନ୍ତି
କୋଟି ବ୍ରହ୍ମାଣ୍ଡ ତାଙ୍କର ନୟନେ ପଡ଼ନ୍ତି ।
ବନମଧ୍ୟେ ଯଥା ବୃକ୍ଷେ ଫଳ ଫଳିଥାନ୍ତି
ସେ ଫଳ କେହି ବାହାକୁ ଜାଣି ନ ପାରନ୍ତି ।
ତାଦୃଶ ସେ ସୃଷ୍ଟି ତାଙ୍କୁ ନଥିଲା ତ ଜଣା
ସୃଷ୍ଟି ପ୍ରତିକ୍ରିୟାର ଏହା ବିଚିତ୍ର ଖେଳନା ।
ଫଳମଧ୍ୟେ ପିପିଲିକା ପଶନ୍ତି ଯେପରି
ଅନ୍ୟ ବ୍ରହ୍ମାଣ୍ଡ-ଫଳରେ ପଶିଲେ ସେପରି ।
ତହିଁରେ ଦେଖିଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର
ତ୍ରିଲୋକ ଯାକ ବିରାଜି ଥାନ୍ତି ସେହି ସ୍ଥଳ ।
ଚନ୍ଦ୍ରମା ମଣ୍ଡଳ ପରେ ତାରକା ମଣ୍ଡଳ
ବାୟୁମଣ୍ଡଳ ଉତାରୁ ବାରିଦ ମଣ୍ଡଳ ।
ପଦ୍ମନୃପ ଭୂମଣ୍ଡଳେ ଆସି ପହଞ୍ଚିଲେ
ନଗରେ ପ୍ରବେଶି ରାଜପୁରେ ଯାଇ ହେଲେ ।
କ୍ରମେ ପ୍ରବେଶିଲେ ସେହି ମଣ୍ଡପ ମଧ୍ୟର
ରାଜାଙ୍କ ମୃତ ଶରୀର ଥିଲା ଯେଉଁଠାର ।
ପୁଷ୍ପାବୃତ ଶବ ପାଶେ ହେଲେ ଉପସ୍ଥିତ
ମାୟା ମୂର୍ତ୍ତି ସେ କୁମାରୀ ହେଲେ ଅନ୍ତର୍ହିତ ।
ଶବରୂପୀ ସ୍ୱ ସ୍ୱାମୀଙ୍କ ମୁଖ ଦରଶନ
ସ୍ୱ ପ୍ରତିଭା ବଳେ ସେହୁ ବୁଝିଲେ ଏସନ ।
"ସିନ୍ଧୁରାଜା ଦ୍ୱାରା ସ୍ୱାମୀ ହୋଇଣ ନିଧନ
ଏଠାରେ ସେ ସୁଖେ କରି ଅଛନ୍ତି ଶୟନ ।"
"ଦେବୀ ପ୍ରସାଦରୁ ମୁହିଁ ସ୍ୱ ଶରୀର ଧରି
ଏଠି ପହଞ୍ଚିଛି ଧନ୍ୟ ଭାଗ୍ୟ ଯେ ମୋହରି ।
ଏମନ୍ତ ବିଚାରି ସେହୁ ଚାମର ଧରିଣ
ସ୍ୱାମୀ ନିକଟରେ ବସି କରନ୍ତି ବ୍ୟଜନ ।
ପ୍ରବୃଦ୍ଧା ଲୀଳା ବାଣୀଙ୍କୁ ପୁଚ୍ଛନ୍ତି ଏସନ
ମୋ ମନ ସନ୍ଦେହ ଏବେ କରିବା ମୋଚନ ।
ନିଶ୍ଚେ ପ୍ରାଣବାୟୁ ଉଡ଼ିଯିବ ରାଜାଙ୍କର
କିଞ୍ଚିତମାତ୍ର ନିଶ୍ୱାସ ରହିଛି ତାଙ୍କର ।
ପଦ୍ମରାଜା ଦେହେ ଯେବେ ପଶିବ ସେ ପ୍ରାଣ
ପାତ୍ର ମନ୍ତ୍ରୀଗଣ ତାହା ଜାଣିବେ କେସନ ?
ଦେବୀ ବୋଇଲେ ଗୋ ଲୀଳା ଅପରୂପ
ଜାଣି ପାରିବା ଅନ୍ୟ କେ, ଜାଣି ନ ପାରିବ ।
(୧ମ) ଲୀଳା କହେ 'ଦେବୀ ତୁମ୍ଭ ବର ପରସାଦେ
ଏଲୀଳା (୨ୟ) ସଦେହେ ମିଳେ ସ୍ୱାମୀଙ୍କ ସନ୍ନିଧେ ।
ତା ଅନୁଭବ ବିନା ଏ ଅନ୍ୟ ନୁହେଁ କିଛି
ଏ ପ୍ରତିଭା, ତାର ଦେବୀ ଉଦୟ ହୋଇଛି ।
କିଛି ସେ ଲୀଳା (୨ୟ) ଶରୀର ପଡ଼ିଛି ଏଠାର
ସ୍ୱଦେହେ କିମ୍ବା ନ ଗଲା ସ୍ୱାମୀଙ୍କ ପାଶର ?
ତୁମ୍ଭର ବରତ ମାଗୋ ସେହୁ ତ ପାଇଛି
ସଦେହେ ଯିବାକୁ ସକ୍ୟ କିମ୍ବା ସେ ନୋହିଛି ?

## ଦେବୀ ଉବାଚ

ରୌଦ୍ର ପାଶେ ଛାୟା ଯଥା ନ ପାରଇ ରହି
ସତ୍ୟ, ମିଥ୍ୟା, ଏକତ୍ରିତ ହୋଇ ନ ପାରଇ ।
ଆଦି ନୀତି କହି ଆସି ଅଛି ଏ ବଚନ
ଅନ୍ୟଥା କି ହୁଏ ଆଦି ନୀତିର କଥନ ।
ସେଇରୂପ ଅପ୍ରବୁଦ୍ଧ ଶରୀର ସହିତ
ପୁଣ୍ୟଲବ୍ଧ ସିଦ୍ଧି ଲୋକେ ଯିବା ଅସମର୍ଥ ।
ସ୍ଥୂଳଦେହୀ ଶୂନ୍ୟାକାଶେ ଚଳି ନ ପାରିବ
ଏ ଦୃଢ଼ ବିଶ୍ୱାସ ଯାର ହୋଇଥାଏ ଧ୍ରୁବ ।
ବିପରୀତାର୍ଥକ ଜ୍ଞାନ ତାର କେଉଁପରି
ହୋଇପାରିବ ଗୋ ବସେ ହେଜ ହେତୁ କରି ।
ବର ଯୋଗୁଁ ସେ ଜାଣୁଛି ସ୍ୱଦେହେ ଚଳୁଛି
ପ୍ରାକ୍ତନ କର୍ମ ତାହାକୁ ଜଣାଇ ଦେଉଛି ।
ପ୍ରାକ୍ତନ ବାସନା ହୋଇଥାଏ ଯେ ପ୍ରକାର
ସେହି ଅନୁସାରେ କର୍ମ କରିଥାଏ ନର ।

ଯେଉଁ ବର ଅବା ଶାପ ଲଭିଥାଏ ନର
ସେହି ଅନୁସାରେ ଫଳ ଲାଭ ହୁଏ ତାର ।
ପାସୋରିଥିଲେ କୌଣସି ଅଭ୍ୟସ୍ତ ବିଷୟ
ପ୍ରୟୋଜନ ବେଳେ ମନ ହୁଅଇ ଅଥୟ ।
ହେଜାଇ ଦିଅଇ ଯେବେ ତାହା କେହି ଜଣେ
ସ୍ମୃତିପଥେ ଜାଗ୍ରତ ତା' ହୁଏ ତତ୍କ୍ଷଣେ ।
ପୂର୍ବର ବାସନାଜାତ କରମ ସକଳ
ଶାପ ଆଉ ବର ଦୁହେଁ ସ୍ମରାନ୍ତି କେବଳ ।
ଭ୍ରମବଶ ରଜ୍ଜୁ ଦେଖି ସର୍ପଭୟ ଜନ୍ମେ
ନଥାଏ ଦଂଶନ ଭୟ ନାହିଁ କଦାଚନେ ।
ଆତ୍ମାରେ ଭ୍ରମବଶତଃ ଭବ ଭାସମାନ
ସାରାଜଗତ ଆତ୍ମାରେ ଆଭାସ ସମାନ ।
ସମ୍ପୂର୍ଣ୍ଣ ମିଥ୍ୟା ଅଟଇ ଏ ସ୍ଥୁଳଶରୀର
ସତ୍ୟସହ ତା ମିଳନ ହେବ କି ପ୍ରକାର ?
ଜ୍ଞାନବାନ ପୁରୁଷ ଯେ ସର୍ବଦା ପ୍ରଶାନ୍ତ
ଆତ୍ମାନନ୍ଦ ରସମଧ୍ୟେ ସଦା ସେ ତୃପତ ।
ଅଜ୍ଞାନୀକୁ ଶାନ୍ତିଧନ କାହୁଁ ବା ମିଳିବ ?
ହତଭାଗା ଅଶାନ୍ତିରେ ଘାଣ୍ଟି ହେଉଥିବ ।
ଯେତେ ଗ୍ରୀଷ୍ମବାଧେ ତେତେ ତୃଷ୍ଣା ବଢ଼ିଚାଲେ
ଅଜ୍ଞାନ-ତାପ ବଢ଼ିଲେ କ୍ରୋଧ ଅଗ୍ନି ବଢ଼େ ।
ବିଷୟ-ବାସନା-ଅଗ୍ନି ହେଲେ ପ୍ରଜ୍ଜ୍ୱଳିତ
ଅଜ୍ଞାନୀକୁ ଶାନ୍ତି ପୁଣି ମିଳିବ କେମନ୍ତ ?
ଅଜ୍ଞାନାନ୍ଧକାର ନାଶ ହୁଅଇ ଯାହାର
ରାଗ, ଦ୍ୱେଷ, ବାସନାଦି ବିନଷ୍ଟ ତାହାର ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ମଣ୍ଡପାକାଶ ଗମନ ବର୍ଣ୍ଣନେ ନାମ ୩୬ତମ ସର୍ଗଃ**



## ୩୭ତମ ସର୍ଗଃ

## ମୃତ୍ୟୁ ବିଚାର୍ ବର୍ଣ୍ଣନ

ପ୍ରବୁଦ୍ଧା ଲୀଳା ବୋଇଲେ ଆଗୋ ମାତ ଶୁଣ
ଦ୍ୱିତୀୟ ଲୀଳା ଚଳିଲେ ସ୍ୱାମୀ ବାସସ୍ଥାନ ।
କିନ୍ତୁ ଆମ ସ୍ୱାମୀ ଏହି ଦେହ ଛାଡ଼ିଛନ୍ତି
ଏ ବିଷୟେ କି କର୍ତ୍ତବ୍ୟ କୁହ ସରସ୍ୱତୀ ।
କହନ୍ତି ବାକ୍‌ଦେବୀ ବତ୍ସେ ଶୁଣ ମୋ ବଚନ
ଯେପରି ସଂଶୟ ତୋର ହେବ ବିମୋଚନ ।
ମୃତ୍ୟୁପରେ କର୍ମ ଅନୁରୂପର କି ଫଳ
ଗୋଟି ଗୋଟି ବରଣଇଁ ତା ଆମୂଳଚୂଳ ।
ସୃଷ୍ଟି ପୂର୍ବେ ନର ଆୟୁ ନିର୍ଦ୍ଦିଷ୍ଟ ଏସନ
ଯୁଗ ମର୍ଯ୍ୟାଦାନୁସାରେ ହେଲା ନିର୍ଦ୍ଧାରଣ ।
ସତ୍ୟଯୁଗେ ନର ଆୟୁ ଚାରିଶତ ବର୍ଷ
ତ୍ରେତୟାରେ ନରବଞ୍ଚେ ତିନିଶ ବରଷ ।
ଦ୍ୱାପରରେ ଦୁଇଶତ ବର୍ଷ ନିର୍ଦ୍ଧାରିତ
କଳିଯୁଗେ ଆୟୁ ପରିମାଣ ଏକଶତ ।
ପାପପୂଣ୍ୟ ଭଲମନ୍ଦ କର୍ମ ଅନୁସାରେ
କ୍ଷୟବୃଦ୍ଧି ଲଭେ ଆୟୁ ଶାସ୍ତ୍ର ପ୍ରମାଣରେ ।
ଧର୍ମଜନକ କର୍ମର ସ୍ୱଚ୍ଛତା, ଆଧିକ୍ୟ-
ହେତୁ, ଆୟୁ ହ୍ରାସ ବୃଦ୍ଧି ଘଟେ ଶାସ୍ତ୍ରବାକ୍ୟ ।
* ବାଲ୍ୟ ଅବା ଯଉବନ ଯେଉଁ ଅବସ୍ଥାରେ
* ମୃତ୍ୟୁପଦ କର୍ମମାନ କରିଥାନ୍ତି ନରେ ।
* ପରଜନ୍ମେ ସେ ଅବସ୍ଥା ପ୍ରବେଶନ୍ତେ ଆସି
* ମୃତ୍ୟୁକାଳ ଅକସ୍ମାତେ ଦିଏ ତାଙ୍କୁ ଗ୍ରାସି ।
ଶାସ୍ତ୍ରାନୁମୋଦିତ ଧର୍ମକୃତ୍ୟ ଅନୁଷ୍ଠାନ
ଯେ ଜନ କରଇ ସେହୁ ହୁଏ ଶ୍ରୀ ସମ୍ପୂର୍ଣ୍ଣ ।
ପୂର୍ଣ୍ଣ ଆୟୁ ଭୋଗ କରି ସୁଖେ ଦିନ ହରେ
ହିରଣ୍ୟଗର୍ଭର ନୀତିଶାସ୍ତ୍ର ଅନୁସାରେ ।
କର୍ମାନୁସାରେ ହିଁ ନର ଲଭଇ ମରଣ
କର୍ମପ୍ରତି ତର୍କଥିବ ହୋଇ ସାବଧାନ ।
ମୃତ୍ୟୁକାଳ ମର୍ମନ୍ତୁଦ ଅତି କଷ୍ଟଦାୟୀ
ସାବଧାନ ଥିବ ଗୋଡ଼ ନ ଖସିବା ପାଇଁ ।
ପ୍ରବୁଦ୍ଧା ଲୀଳା ବୋଲଇ ମାଗୋ ଚନ୍ଦ୍ରମୁଖୀ
ମୃତ୍ୟୁକାଳେ ଯେଉଁ ଦୁଃଖେ ହୁଏ ନର ଦୁଃଖୀ ।
ମର୍ମନ୍ତୁଦ ସେ ଯନ୍ତ୍ରଣା ଭୋଗନ୍ତି କି ସର୍ବେ ?
ତାରତମ୍ୟ କିଛିଥିଲେ କହମାତ ଏବେ ।

ସତ୍ୟଯୁଗ - ୧୭ ଲକ୍ଷ ୨୮ ହଜାର ବର୍ଷ
ତ୍ରେତାୟା ଯୁଗ - ୧୨ ଲକ୍ଷ ୯୬ ହଜାର ବର୍ଷ
ଦ୍ୱାପର ଯୁଗ - ୮ଲକ୍ଷ ୬୪ହଜାର ବର୍ଷ
କଳିଯୁଗ - ୪ଲକ୍ଷ ୩୨ହଜାର ବର୍ଷ

କହୁଛନ୍ତି ସରସ୍ୱତୀ ଲୀଳେ ! ଏବେ ଶୁଣ
ତିନି ପ୍ରକାର ମନୁଷ୍ୟ ହୁଅନ୍ତି ଜନମ ।
କେ ଅଟେ ମୂରୁଖ ପୁଣି କେ ଧାରଣା ଶୀଳ
ଯୁକ୍ତିମାନ ହୁଏ କେହୁ କହିବା ବାହୁଲ୍ୟ ।
ଧାରଣା ଶୀଳ ଓ ଯୁକ୍ତିମାନ ଯେ ଅଟନ୍ତି
ମୃତ୍ୟୁକାଳେ ଅତି ସୁଖେ ଶରୀର ଛାଡ଼ନ୍ତି ।
ବିଷୟାଧୀନ ମୂରୁଖ ଅନ୍ତିମ କାଳରେ
ଅଶେଷ ଦୁଃଖ ଯନ୍ତ୍ରଣାମାନ ଭୋଗ କରେ ।
ସଂସ୍କୃତ ନୁହେଁ ଯା' ବୁଦ୍ଧି ଶାସ୍ତ୍ରାନୁଶୀଳନେ
ମାର୍ଜିତ ନୁହେଁ ଯା ବୁଦ୍ଧି ଜ୍ଞାନାନୁଶରଣେ ।
ଅସତ ସଂସର୍ଗେ କାଳ କାଟୁଥାଏ ଯା'ର
ଅସହ୍ୟ ଦୁଃଖ ଭୋଗେ ସେ ହେଲେ ମୃତ୍ୟୁକାଳ ।
ହୁତାଶନେ ନିପତିତ ହେଲେ ଯେ ଯନ୍ତ୍ରଣା
ଛଟପଟ ହେଉଥାଏ ପାଇ ସେ ଯାତନା ।
ମନଶକ୍ତି ହୀନ ପୁଣି ବିବେକ ବିହୀନ
ହୋଇ ମହାମୋହେ ନିପତିତ ସେହିଜନ ।
ପ୍ରବୁଦ୍ଧା ଲୀଳା ବୋଲଇ ଆଗୋ ଦେବୀଶୁଣ
ବ୍ୟଥା, ମୋହ, ବ୍ୟାଧି, ମୂର୍ଚ୍ଛା, ଭ୍ରାନ୍ତି, ଅଚେତନ
ଦେହ ମଧ୍ୟେ ଏ ଅବସ୍ଥା କିମ୍ପା ବିଦ୍ୟମାନ ?
କୃପାକରି ମୋ ସନ୍ଦେହ କରିବା ମୋଚନ ।
କହନ୍ତି ବାଗ୍‌ଦେବୀ ଶୁଣ ଏଥିର କାରଣ
ସଙ୍କଳ୍ପ ପ୍ରଭାବେ କର୍ତ୍ତା କଲେ ନିର୍ଦ୍ଧାରଣ ।
ବାଲ୍ୟ, ଯଉବନ, ବାର୍ଦ୍ଧକ୍ୟାଦି ଅବସ୍ଥାରେ
ଏ ଅବସ୍ଥାମାନ ଜୀବ ଭୋଗିବ ସଂସାର ।
ତେଣୁ ଜୀବ-ସ୍ୱଭାବରେ ଏ ସର୍ବ ନିହିତ
ଯଥାକାଳେ ସ୍ୱଭାବରୁ ହୁଏ ପ୍ରକାଶିତ ।
ଶରୀରରେ ଥିବା ନାଡ଼ିମାନଙ୍କ ମଧ୍ୟରେ
ତପ୍ତପିତ ରସମାନ ଚଳିଲେ ତହିଁରେ ।
ବୈଷମଭୁକ୍ତ ଅନ୍ନାଦି ରସକୁ ଯେ କାଳେ
ତପ୍ତପିତ ରସ ତାକୁ ଆହରଣ କରେ ।
ସମାନ ପବନ ତାକୁ ଶରୀର ମଧ୍ୟରେ
ପହଞ୍ଚାଇ ନ ପାରଇ * ସମାନ ଅଂଶରେ ।
ନାଡ଼ିଦ୍ୱାରେ ଯିବା ବାୟୁ ଗମନାଗମନ
ହୋଇ ନପାରିଣ ପ୍ରାଣ ସଙ୍କଟ ଆପନ୍ନ ।
ନାଡ଼ିମାନଙ୍କର କାର୍ଯ୍ୟ ବନ୍ଦ ହୋଇଯାଏ
ତେଣୁ ଇନ୍ଦ୍ରିୟମାନଙ୍କ ଜ୍ଞାନ ଲୁପ୍ତ ହୁଏ ।
କର୍ମ ବିରତ ହୁଅନ୍ତି ଯେବେ ନାଡ଼ିମାନ
ବନ୍ଦ ହୋଇଯାଏ ପ୍ରାଣବାୟୁ ପ୍ରଚଳନ ।
"ମୁଁ ଜନ୍ମିବି ପୁଣି ଏହି ସମୟେ ମରିବି" ।
ଏ ବାସନା ମୃତ୍ୟୁ, ହେତୁ ଜାଣ ଲୀଳାଦେବୀ ।
ସେହି କାରଣରୁ ଉକ୍ତ ବାୟୁ ନିରୋଧନ
ଆଦି ଯାବତ କରମ ହୁଏ ସମ୍ପାଦନ ।
କାହିଁ ମଳଯୁକ୍ତ ଥାଏ ନଦୀ ସ୍ରୋତ ଜଳ
ପୁଣି କେଉଁଠାରେ ହୋଇଥାଏ ସୁନିର୍ମଳ ।
ତଥା ଚୈତ୍ୟଶକ୍ତି କେଉଁ ଜୀବଶରୀରର
ରାଗ, ଦ୍ୱେଷ, ରିପୁ ସହ ଅବସ୍ଥାନ କରେ ।
ସାଧନାଦି ଦ୍ୱାରା କେଉଁ ଜୀବ କଳେବରେ
ସୁନିର୍ମଳ ରୂପଧରି ଅବସ୍ଥାନ କରେ ।
ଦୀର୍ଘ ଲତା ମଧ୍ୟେ ଯଥା ଥାଏ ଗ୍ରନ୍ଥିମାନ
ଜୀବଲତା ମଧ୍ୟେ ଜନ୍ମମୃତ୍ୟୁ ଗ୍ରନ୍ଥିସ୍ଥାନ ।
ଅଚେତନ ଜୀବଲତା ଗ୍ରନ୍ଥି ଧରିଥାଏ
ଚେତନ ଜୀବଲତା ଯେ ଗ୍ରନ୍ଥି ଶୂନ୍ୟ ରହେ ।
ଲକ୍ଷ.ଲକ୍ଷ ଦେହଧ୍ୱଂସ ଘଟେ ଏ ଜଗତେ
ଘଟିଛି, ଘଟିବ ପୁଣି ଏ ନଶ୍ୱର ମର୍ତ୍ତ୍ୟେ ।
ପୁରୁଷ ଚେତନା କିନ୍ତୁ ବିନଷ୍ଟ ନୁହଇ
ନୋହିଛି ନୋହିବ ପୁଣି ଏ ବିଶ୍ୱରେ କାହିଁ ।
ଚେତନା ରହିତ ପୁଣି ପୁରୁଷତ୍ୱ ହୀନ
ତେଣୁ ଅବିନାଶି ତାହା ଧ୍ରୁବ ସତ୍ୟଜାଣ ।
ଏ ଜୀବର ଜନ୍ମ, ମୃତ୍ୟୁ କେଭେଁ ନୁହେଁ ସତ୍ୟ
ଜନମ ମରଣ ଖାଲି ବାସନା ବୈଚିତ୍ର୍ୟ ।
ବହୁ ବନ୍ଧନ କାରଣ ଅଟଇ ବାସନା
ବାସନାରୁ ମୁକ୍ତି ହେଲେ ବନ୍ଧନ ରହେନା ।
ଆତ୍ମ ବିଚ୍ଚର ବଳେହିଁ ଜ୍ଞାନର ଉଦୟ
ଜ୍ଞାନୋଦୟେ ସର୍ବଦୃଶ୍ୟ ହୋଇଯାଏ କ୍ଷୟ ।
ଦୃଶ୍ୟର ବିନାଶ ହେଲେ ବାସନାର ନାଶ
ଜନମ ମରଣ ଆଉ ନଲଭେ ବିକାଶ ।
ଏ ଭବର କେବେହେଲେ ନାହିଁଟି ଉଦୟ
ବାସନାରୁ ଜନ୍ମ ତାର ସେ ବାସନା ମୟ ।

* ସମାନ - ଶରୀର ମଧ୍ୟସ୍ଥ ପାଞ୍ଚ ବାୟୁରୁ ଏକ

ତେଣୁ ସର୍ବାଦୌ ବାସନା ପରିତ୍ୟାଗ କର
ବାସନା ବିନଷ୍ଟ ହେଲେ ବନ୍ଧନୁ ଉଦ୍ଧାର ।
ସତ୍ୟହିଁ ସତ୍ୟ ଅଟଇ ଏ ମୁକତ ଆତ୍ମା
ଏହାଛଡ଼ା ଅନ୍ୟସବୁ କେବଳ ଯେ ମିଥ୍ୟା ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ମୃତ୍ୟୁ ବିଚାର ବର୍ଣ୍ଣନେ ନାମ**
**୩୭ତମ ସର୍ଗଃ**



## ୩୮ତମ ସର୍ଗଃ

## ସଂସାର ଭ୍ରମ ବର୍ଣ୍ଣନ

ଲୀଳା ବୋଲେ ଆଗୋ ଦେବି ମୋ କହିବା ଶୁଣ
ପ୍ରାଣୀଗଣ ଯେଉଁପରି ଲଭନ୍ତି ମରଣ ।
ମରି ଶୁଣି ପୁନର୍ବାର ଲଭନ୍ତି ଜନମ
ମୋର ଜ୍ଞାନବୃଦ୍ଧି ପାଇଁ କରନ୍ତୁ ବର୍ଣ୍ଣନ ।
ବାଗ୍‌ଦେବୀ ଦେଉଅଛନ୍ତି ଲୀଳାକୁ ଉତ୍ତର
ସ୍ପନ୍ଦନ ଶୂନ୍ୟତା ହେଲେ ନାଡ଼ିମାନଙ୍କର ।
ପ୍ରାଣୀଙ୍କର ପ୍ରାଣବାୟୁ ପଡ଼ିଯାଏ ଶାନ୍ତ
ମନେ ହୁଏ ତା ଚେତନା ହୋଇଛି ବିଲୁପ୍ତ ।
ଚେତନା ଅଟେ ଅକ୍ଷୟ ଚେତନା ଯେ ନିତ୍ୟ
ଚେତନା ଉଦୟ-ଶୂନ୍ୟ ବୁଝ ଏହି ତତ୍ତ୍ୱ ।
ସ୍ଥାବର, ଜଙ୍ଗମ ଆଦି ସର୍ବ ପଦାର୍ଥରେ
ଚେତନା ବିରାଜମାନ ସବୁ ସମୟରେ ।
ବାୟୁରୁଦ୍ଧ ହୋଇଯାନ୍ତେ ନାଡ଼ିର ସ୍ପନ୍ଦନ
ବିଲୁପ୍ତ ହୋଇଲେ ଦେହ ମୃତ ବୋଲି ଜାଣ ।
ପ୍ରାଣବାୟୁ ଉଡ଼ିଗଲେ ଦେହ ହୁଏ ଶବ
ପ୍ରାଣବାୟୁ ଯାଇ ଆକାଶରେ ପାଏ ଠାବ ।
ସେ ପ୍ରାଣ ବାୟୁରେ ଚୈତନ୍ୟତା ରହିଥାଏ
ଚୈତନ୍ୟତାରେ ବାସନା ଠାବ କରିରହେ ।
ବାସନାଯୁକ୍ତ ଚେତନା ସ୍ୱୀୟ ଆତ୍ମତତ୍ତ୍ୱେ
ଅପେକ୍ଷାରେ ଥାଏ ଜନ୍ମ ଲଭିବା ନିମନ୍ତେ ।
ଚେତନାରେ ପୁନର୍ଜନ୍ମ ବୀଜସ୍ୱରୂପରେ
ବାସନା ସମୂହ ଥାନ୍ତି ନିଷ୍କ୍ରିୟ ଭାବରେ ।
ସେ ବାସନା ସମନ୍ୱିତ ଚେତନାଶକତି
ଜୀବ ଆଖ୍ୟା ତାକୁ ଦେଇଥାନ୍ତି ମହାମତି ।
ଜୀବାତ୍ମା ପରମଆତ୍ମା ଥାନ୍ତି ଶରୀରରେ
ପ୍ରତ୍ୟହ ତାଙ୍କର ଭେଟ ନିଦ୍ରା ଅବସ୍ଥାରେ ।
ଗାଢ଼ ନିଦ୍ରା ଅବସ୍ଥାରେ ଦୁହିଁଙ୍କ ମିଳନ
ସ୍ୱାସ୍ଥ୍ୟପ୍ରଦ ଏବଂ ଦୀର୍ଘଜୀବନ କାରଣ ।
ଜୀବାତ୍ମା ସର୍ବଦା ଇଛେ ପରମାତ୍ମା ଭେଟ
ଭେଟର ଅଭାବ ତାକୁ କରେ ଛଟପଟ ।
ଆତ୍ମାରୁ ପୃଥକ ହୋଇନଥିଲେ ହେଁ ଜୀବ ।
ବାସନା ହେତୁ ଆତ୍ମାକୁ ଭୁଲିବା ସମ୍ଭବ ।
ମୃତ୍ୟୁ ହେଲେ ଉଭୟଙ୍କ ବିଚ୍ଛେଦ ଘଟଇ
ଆତ୍ମାକୁ ଭେଟିବା ପାଇଁ ଭ୍ରମେ ଧାଇଁ ଧାଇଁ ।
ସକଳ ପଦାର୍ଥ ମାନଙ୍କର ଅବସ୍ଥାନ
ପରିଶେଷେ ହୁଏ ସେହି ଆକାଶ ମହାନ ।
ଆତ୍ମାକୁ ଖୋଜିଣ ଜୀବ ଆକାଶକୁ ଯାଏ
ଆତୁରେ ସେଠାରେ ତାକୁ ନିରେଖୁଣ ଥାଏ ।
ଏଣେ ଦେହ ଜୀବଶୂନ୍ୟ ହୋଇ ପଡିଥାଏ ।
ପରଲୋକେ ଗଲା ବୋଲି ହୁରି ପଡ଼ିଯାଏ ।
ଉପରୋକ୍ତ କାରଣରୁ ଜୀବ ମରୁନାହିଁ
ଆତ୍ମାକୁ ଖୋଜି ଖୋଜି ସେ ଝୁରି ହେଉଥାଇ ।
ତେଣୁ ଜୀବ ପରଲୋକ ଗମନଟି ମିଥ୍ୟା
ବୁଝିବା ଜନେ ବୁଝିବେ ଏହି ଗୂଢ଼ କଥା ।
ବ୍ୟବହାରିକ ମତରେ ଆକାଶସ୍ଥ ଜୀବ
ପ୍ରେତନାମ ଧରେ ସେହୁ ବୋଲନ୍ତି ସାଧବ ।
ତଦପରେ ସେ ସ୍ୱକୀୟ ବାସନାନୁସାରେ
ବିଧିବଶ ପରଲୋକେ ଯାଇ ଠାବ କରେ ।
ଯାବତ ଭୋଗ ବିଳାସ ମିଳେ ତାକୁ ତହିଁ
ଆତ୍ମାକଥା କିନ୍ତୁ ତାର ମନେ ନପଡ଼ଇ ।
ମରଣମୂର୍ଚ୍ଛା ଲଭିଣ ପୁଣି ସେହି ଲୋକେ
ଅନ୍ୟ ଦେହଧରି ଜନ୍ମଲଭେ ଅନ୍ୟ ଲୋକେ ।
ଏହିପରି ଏହି ମହା ସମଗ୍ର ଆକାଶ
ମୃତ୍ୟୁ ମୂର୍ଚ୍ଛା ପ୍ରେତଙ୍କର ହୋଇଛି ନିବାସ ।
କିନ୍ତୁ ଅନ୍ୟ କେହି ତାହା ଦେଖି ନପାରନ୍ତି
ନିଜ ନିଜ ଗୃହାକାଶ କେବଳ ଦେଖନ୍ତି ।
ମୃତ୍ୟୁ ଯେ ଦୁଇପ୍ରକାର କହନ୍ତି ପଣ୍ଡିତେ
ପାପାତ୍ମା ପୁଣ୍ୟାତ୍ମା ମୃତ୍ୟୁ ବୋଲି ଯଥାମତେ ।
ପାପୀଙ୍କୁ ତିନି ପ୍ରକାରେ କରନ୍ତି ବିଭକ୍ତ
ମହାପାପୀ, ମଧ୍ୟମ ଓ ସ୍ୱଳ୍ପ ଏହି ମତ ।
ତିନିପ୍ରକାର ଅଟନ୍ତି ଯେହୁ ପୁଣ୍ୟବାନ
ମହା ପୁଣ୍ୟବାନ, ଓ ମଧ୍ୟମ ପୁଣ୍ୟବାନ ।

ତୃତୀୟ ପ୍ରକାର ଅଟେ ଅଳ୍ପ ପୁଣ୍ୟବାନ
ପାପୀ ପୁଣ୍ୟବାନଙ୍କର ବିଭାଗ ଏସନ ।
ମହାପାପୀର ଦଶ ଯେ ଏମନ୍ତ ଘଟଇ
ପାଷାଣ ପରି ବର୍ଷକ ଯାଏ ପଡ଼ିରହି ।
ମୃତ୍ୟୁ ମୂର୍ଚ୍ଛା ଭୋଗ କରୁଥାଏ ଯେପର୍ଯ୍ୟନ୍ତ
ତତ୍ପରେ ଚେତନା ତାଙ୍କୁ ହୁଏ ପରାପତ ।
ବହୁକାଳ ବାସକରି ବାସନା ଜଠରେ
ନରକ ଯନ୍ତ୍ରଣା ଭୋଗୁଥାଏ ନିରନ୍ତରେ ।
ଶତଶତ ଯୋନିରେ ସେ ଜନମ ଲଭିଣ
ଭୋଗ କରୁଥାଏ ନାନା ଦୁଃସହ କଷଣ ।
ମୃତ୍ୟୁ ମୂର୍ଚ୍ଛାପରେ କେହୁ ଜନମ ଲଭିଣ
ବୃକ୍ଷଙ୍କ ପରି ସହଇ ଅସହ୍ୟ କଷଣ ।
ବାସନାନୁରୂପକ ଶ୍ଳେଷ ଭୋଗ କଳାପରେ
ନାନା ଯୋନି ଜନ୍ମଲଭି ବୁଲଇ ଭୂତଳେ ।
ପଶୁ, ପକ୍ଷୀ, କୀଟ, ପତଙ୍ଗାଦି ଜନ୍ମ ପାଇ
ଯୋନି ପରେ ଯୋନି ଜନ୍ମ ଲଭିଚାଲୁଥାଇ ।
ମହାନୀଚ, ହୀନଜାତି, ଦରିଦ୍ର ନିଧନ
ଚଣ୍ଡାଳ ଗୃହରେ କେବେ ହୁଅଇ ଜନମ ।
ମଧ୍ୟପାପୀ କିୟତ୍‌କାଳ ପାଷାଣର ପରି
ମୃତ୍ୟୁ ପରେ ପଡ଼ିରହେ ଜଡ଼ଭାବ ଧରି ।
ଚଇତନ୍ୟ ପାଇ ପୁଣି କିୟତ୍‌କାଳ ପରେ
ନରକ ଭୋଗି ତୀର୍ଯ୍ୟକ ଯୋନିରେ ବିଚରେ ।
ବାସନାନୁଯାୟୀ ପରେ ମନୁଷ୍ୟ ଜନମ
ଦୁଃର୍ଦ୍ଦଶା ନିବାରିବାକୁ ହୁଏ ସେ ସକ୍ଷମ ।
ଯେ ସାମାନ୍ୟ ପାପୀ ସେହୁ ମୃତ୍ୟୁ ମୂର୍ଚ୍ଛାପରେ
ବାସନରୁ ସମୁତ୍ପନ୍ନ ଦେହ ଲାଭ କରେ ।
ନିଜର ଜନ୍ମ ମରଣ ଘଟଣା ସକଳ
ମନେ ପଡ଼ିଯାଉଥାଏ ତାର ଅବିକଳ ।
ଉତ୍ତମ ପୁଣ୍ୟାତ୍ମାମାନେ ମରଣ ଲଭିଲେ
ସ୍ୱର୍ଗୀୟ ବିମାନ ଆସି ଘେନି ତାଙ୍କୁ ଚଳେ ।
କର୍ମାନୁସାରେ ସରଗବାସୀଙ୍କ ସହିତ
ସ୍ୱର୍ଗ ସୁଖ ଭୋଗ କରୁଥାନ୍ତି ଅବିରତ ।
ସ୍ୱର୍ଗ ବିଳାସିନୀ ମାନଙ୍କର ସହ ମିଳି
ନିଅଣ୍ଟ ହୁଅଇ ତାଙ୍କୁ ଦିବସ ଶର୍ବରୀ ।

ତଦପରେ ମର୍ତ୍ତ୍ୟପୁରେ ଅବତରି ଆସେ
କୌଣସି ବୃକ୍ଷର ଫଳ ମଧ୍ୟେ ଯାଇ ପଶେ ।
ପୁରୁଷ ଲୋକ ସେ ଫଳ କରନ୍ତେ ଭୋଜନ
ତାର ବୀର୍ଯ୍ୟ ମଧ୍ୟେ ଯାଇ କରେ ଅବସ୍ଥାନ ।
ବୀର୍ଯ୍ୟଦ୍ୱାରା ମାତା ଗର୍ଭେ ଯାଇ ବାସକରେ
ଜନ୍ମ ଲାଭକରେ ପୁଣି ବାସନାନୁସାରେ ।
ଭୋଗର ବାସନା ଥିଲେ ଧର୍ମାତ୍ମା ଗୃହରେ
ବିଧି ନିବନ୍ଧନରୁ ତହିଁ ଜନ୍ମଲାଭ କରେ ।
ଭୋଗ କାମନା ନଥିଲେ ସଜ୍ଜନ ଘରେ
ଜନ୍ମଲଭି ସ୍ୱ ଜୀବନ ଚରିତାର୍ଥ କରେ ।
ମଧ୍ୟମ ପୁଣ୍ୟାତ୍ମାମାନଙ୍କର ମୃତ୍ୟୁ କଥା
ଶୁଣିଲେ ଆଶ୍ଚର୍ଯ୍ୟ ହେବ ପାଇ ସେ ବାରତା ।
ମରଣ ମୂର୍ଚ୍ଛା ତାଙ୍କର ଯେବେ ଶେଷ ହୁଏ
ବ୍ୟୋମଗତ ବାୟୁଦ୍ୱାରା ସ୍ୱର୍ଗ ରାଜ୍ୟେ ଯାଏ ।
କୁବେର ଉଦ୍ୟାନେ ଯାଇ *କିନ୍ନର ହୋଇଣ
କିନ୍ନରୀମାନଙ୍କ ସହ କରେ ବିଚରଣ ।
ସେଠାରେ ଭୋଗ ବିଳାସ ସରିବା ଉତ୍ତାରେ
ଖସିଆସେ ପୁଣି ଏହି ମରତ ଧାମରେ ।
ସୁସ୍ୱାଦୁ ଫଳ ମଧ୍ୟରେ ଯାଇ ବାସକରେ
ନର ସେ ଫଳ ଭୁଞ୍ଜିଲେ ପଶେ ତା ଉଦରେ ।
ପିତା ବୀର୍ଯ୍ୟଦ୍ୱାର ମାତା ଗର୍ଭେ କରେ ଠାବ
ବାସନାନୁସାରେ ତାର ହୁଏ ଜନ୍ମଲାଭ ।
ଭୂଲୋକେ ବ୍ରାହ୍ମଣ ଗୃହେ ଜନମ ଲଭଇ
ଧର୍ମପଥୁ ମତି ତାର କେବେ ନ ଖସଇ ।
ସ୍ୱଳ୍ପ ପୁଣ୍ୟାତ୍ମାର ଯେବେ ହୁଅଇ ମରଣ
ଅନୁଭବ କରେ ସେହୁ ଏ ବିଷୟମାନ ।
ମରଣ ମୂର୍ଚ୍ଛା ପରେ ମୋ ମୃତ୍ୟୁ ଏବେ ହେଲା
ଜ୍ଞାତି କୁଟୁମ୍ବଙ୍କ ପିଣ୍ଡ ପ୍ରାପତ ହୋଇଲା ।
ପିତୃ ଲୋକକୁ ମୁଁ ଏବେ କରୁଛି ଗମନ
ଏହାପରେ କିସ ହେବ ନଜାଣେ ମୋ ମନ ।
ପିତୃ ଲୋକେ ଯାଇ ସେହୁ ପ୍ରବେଶ ହୁଅଇ
ପିତୃ ଲୋକ ସୁଖ ସବୁ ଭୋଗ କରୁଥାଇ ।

* କିନ୍ନରେ - ଏମାନଙ୍କର ଅଶ୍ୱପରି ମୁଖ ଓ ମନୁଷ୍ୟ ପରି ଶରୀର ।

ପୁଣ୍ୟବାନ ପ୍ରେତଗଣ ପୁଣ୍ୟକର୍ମ ଫଳେ
ଉତ୍ତମ ଗୃହ, ଉଦ୍ୟାନମାନ ତାଙ୍କୁ ମିଳେ ।
ପାପୀମାନେ ପାପକର୍ମ ଭୋଗିବା ନିମିତ୍ତ
ପ୍ରବେଶ କରାନ୍ତି ତାଙ୍କୁ ହିମମୟ ଗର୍ତ୍ତ ।
କଣ୍ଟା ଝଣ୍ଟାପୂର୍ଣ୍ଣ ଘନ ଅରଣ୍ୟ ମଧ୍ୟରେ
ରଖନ୍ତି ତାହାଙ୍କୁ ନେଇ ସମନ କିଙ୍କରେ ।
ମୃତ୍ୟୁ ପରେ ପରଲୋକ ଅନୁଭବମାନ
ବାସ୍ତବ ବୋଲି ପ୍ରେତଙ୍କୁ ହୁଏ ଅନୁମାନ ।
ସ୍ୱରୂପ ଦର୍ଶନ ଯଦି ହୁଅନ୍ତା ତାଙ୍କର
ବୁଝିପାରନ୍ତେ ଏ ସବୁ ଅଳୀକ ମାତର ।
ଦୃଶ୍ୟାବଳୀ, ଦେଶ, କାଳ, କ୍ରିୟା ଆଦି ଯେତେ
ଅସତ୍ୟ, ଅସତ୍ୟ, ସତ୍ୟ ନୁହେଁ କଦାଚିତେ ।
ଗଗନୋପମ, ଅମୂର୍ତ୍ତ, ନିତ୍ୟ, ଅଦ୍ୱିତୀୟ
ବିରାଜିତ ଆତ୍ମା ସନାତନ ସର୍ବମୟ ।
ସେହି ଦୃଷ୍ଟି ଅଭାବରୁ ସେମାନେ ଦେଖନ୍ତି
'ଯମରାଜ ଆମ୍ଭପାଇଁ ଏମନ୍ତ କରନ୍ତି ।
ଆମ୍ଭ କର୍ମ ଭୋଗପାଇଁ ଯମରାଜ ନିଜେ
ଆମ୍ଭଙ୍କୁ ନିଯୁକ୍ତ କଲେ ଏହିପରି କାର୍ଯ୍ୟେ ।
ସ୍ୱର୍ଗ ବା ନରକ ପଥେ ଚଳୁଅଛି ମୁହିଁ
ନ ଜାଣେ ମୋ ଭାଗ୍ୟେ କିସ ଲେଖିଅଛି ବିହି ।
ସ୍ୱର୍ଗ ବା ନରକ ଭୋଗ କରିବା ନିମନ୍ତେ
ଧାନ୍ୟାଦିରେ ପ୍ରବେଶ କରାଏ ବିଧି ମୋତେ ।
ଧାନ୍ୟେ ଥାଇ ପୁରୁଷର ହେବି ମୁଁ ଭୋଜନ
ରେତ ରୂପେ ମାତା ଗର୍ଭେ ପାଇବି ମୁଁ ସ୍ଥାନ ।
ପ୍ରାକ୍ତନ କରମ ନେଇ ଲଭିବି ଜନମ
ଭଲ ମନ୍ଦ ଭାଗ୍ୟେ ଯାହା ଲେଖାଥିବ ଜାଣ ।
ଜନ୍ମପରେ ଶଇଶବ, ପୁଣି ଯଉବନ
ଜରା ଗ୍ରାସି ଏ ଶରୀର ହେବ ବଳହୀନ ।
ବ୍ୟାଧି, ମୃତ୍ୟୁ, ମୃତ୍ୟୁ ମୂର୍ଚ୍ଛା ଆସିଣ ଘାରିବେ
ବନ୍ଧୁ କୁଟୁମ୍ବାଦି ପିଣ୍ଡଦାନ ବିଧାନିବେ ।
ପାରଲୌକିକ ଶରୀର ପୁଣି ଲବ୍ଧ ହେବ
ପୁଣି ଯମପୁର ଯାତ୍ରା ଆସି ପହଞ୍ଚିବ ।
ପୁନଃ ପୁନଃ ଭ୍ରାନ୍ତିମୟ ସଂସାର ଗମନ
ଘଟି ଯାଉଥିବ ନାନା ଯୋନି ବିଚରଣ ।'
ଏ ଆତ୍ମା ଆକାଶରୂପୀ ଆକାଶରେ ଥାଇ
ଜୀବଭାବ ଧରି ଯେ ପର୍ଯ୍ୟନ୍ତ ଜନ୍ମୁ ଥାଇ,
ମୋକ୍ଷଲାଭ କେଉଁଁ ସେହୁ କରି ନପାରଇ
କେବଳ ବାସନା ନାଶ ମୋକ୍ଷ ଫଳ ଦେଇ ।
'ପ୍ରବୁଦ୍ଧା ଲୀଳା ବୋଲଇ ମାତ ଦେବୀ ଶୁଣ
ସୃଷ୍ଟି ପ୍ରଥମେ ଯେପରି ଭ୍ରମ ଉତପନ୍ନ ।
ମୋର ଜ୍ଞାନ ବୃଦ୍ଧି ପାଇଁ ସେକଥା ସକଳ
ଅନୁଗ୍ରହକରି ମାତ ବରନନ କର" ।
ସରସ୍ୱତୀ ବୋଇଲେ ଗୋ ବତ୍ସେ ଏବେ ଶୁଣ
ବୃକ୍ଷ, ପୃଥିବୀ, ଆକାଶ, ପର୍ବତ ଏ ମାନ ।
ଯେ ସବୁ ଦେଖଇ ଆଜି ତୋହର ନୟନ
ପରମାର୍ଥମୟ ସବୁ, ବିଶୁଦ୍ଧ ଚୈତନ୍ୟ ।
ବିଶୁଦ୍ଧ ଚୈତନ୍ୟ ମଧ୍ୟ ମାୟା ପ୍ରଭାବରେ
ମାୟାମୟ ବସ୍ତୁ ମଧ୍ୟେ ଉଦିତ ସଂସାରେ ।
ବିଶାଳ ଚେତନା ପୁଣି ପରମ ଈଶ୍ୱର
ସର୍ବବ୍ୟାପୀ, ସର୍ବଶ୍ରଷ୍ଟା, ସର୍ବଶକ୍ତିଧର ।
ଯେବେ, ଯେ ସ୍ଥାନେ ଯେପରି ପ୍ରକାଶ ସେ ପାନ୍ତି
ତଦ ଅନୁରୂପେ ନାମ ଧାରଣ କରନ୍ତି ।
ସଂକଳ୍ପବାନ ହୋଇଣ ସେହି ପ୍ରଜାପତି
ସମଷ୍ଟିଜୀବ ରୂପରେ ବିଖ୍ୟାତ ହୁଅନ୍ତି ।
ସ୍ୱପ୍ନଲୋକ ରୂପେ ପୁଣି ସେହି ପ୍ରଜାପତି
ବିବର୍ତ୍ତିତ ହୋଇଥାନ୍ତି ଜାଣ ମହାସତୀ ।
ସୃଷ୍ଟିକାଳୀନ ତାଙ୍କର ସେହି ସଂକଳପ
ଏବେ ମଧ୍ୟ ରହିଅଛି ଧରି ସେହି ରୂପ ।
ଈଶ୍ୱରଙ୍କ ଆଦିସୃଷ୍ଟି ସେହି ପ୍ରଜାପତି
ତାଙ୍କ ସୃଷ୍ଟି ସର୍ବ ଏ ପର୍ଯ୍ୟନ୍ତ ବିରାଜନ୍ତି ।
ବିଶୁଦ୍ଧ ଚୈତନ୍ୟଙ୍କର ଯେ ପ୍ରଥମ ଅଂଶ
ସେ ସିନା ଅଟନ୍ତି ଈଶ୍ୱର ବା ଚିଦାକାଶ ।
ଜୀବସୃଷ୍ଟିର ଯା'କିଛି ବିଭାଗ ସକଳ
ସମ୍ପାଦନ କରିଛନ୍ତି ସେହି ଆଦିମୂଳ ।
ସଂବିତ୍ ବା ଆତ୍ମା ବୋଲି ତାହାକୁ କହନ୍ତି
ସର୍ବଘଟେ ପରିପୂର୍ଣ୍ଣେ ରହି ସେ ଅଛନ୍ତି ।
ଅନ୍ତଃକରଣ ମଧ୍ୟରେ ସେହି ଚିଦାକାଶ
ଦେହ ଧରି ରହେ କରି ଅନୁପରବେଶ ।
ଇନ୍ଦ୍ରିୟଙ୍କ ସାହାଯ୍ୟରେ ବୁଦ୍ଧି ବୃତ୍ତି ବଳେ ।
ବାହ୍ୟ ପଦାର୍ଥ ସବୁକୁ ଅନୁଭବ କରେ ।
ଚେତନ ନୁହନ୍ତି କେଉଁ ଇନ୍ଦ୍ରିୟ ସକଳ
ଚେତନା ଦ୍ୱାରା ଚେତିତ ତାଙ୍କର ଶରୀର ।

ସର୍ବବ୍ୟବସ୍ଥା କରଇ ଯେଉଁ ଚିଦାକାଶ
**ତାର ସଂକଳ୍ପ ହିଁ କରେ ସର୍ବଭ୍ରମ ଦୃଶ୍ୟ ।**
ଶୂନ୍ୟ କଳ୍ପନାରୁ ତାର ଆକାଶ ଜନମ
କ୍ଷିତି କଳ୍ପନା ହିଁ ଅଟେ ପୃଥିବୀ କାରଣ ।
ଜଳକୁ କଳ୍ପନା କଲେ ଜଳ ଦେଖାଯାଏ
ଉଷ୍ଣତା ସ୍ମରଣ କଲେ ଅଗ୍ନି ଜାତ ହୁଏ ।
ସ୍ପନ୍ଦତା ଚେତିବା ଦ୍ୱାରା ବାୟୁ ଜନମଇ
ଯାହାକୁ ଚିନ୍ତିବ ସେହିରୂପ ଦେଖାଯାଇ ।
ସ୍ଥାବର, ଜଙ୍ଗମ, ବୃକ୍ଷ ଶିଳା ଆଦିକରି
ଚିତ୍‌ଶକ୍ତି ହିଁ ସକଳ ରୂପ ଥାଏ ଧରି ।
ଏହି ରୂପେ ସେହୁ ଯେବେ ସଂକଳ୍ପଇ ଯାହା
ସେହି ରୂପ ମୂର୍ତ୍ତିଧରି ଆଗେ ତାର ଠିଆ ।
ଚିଦାକାଶ ସଂକଳ୍ପରୁ ସୃଷ୍ଟି ପ୍ରାକ୍‌କାଳରେ
ଯାହା ଯେପରି ପ୍ରକାଶିଥିଲା ଯେତେବେଳେ ।
ଆଜି ମଧ୍ୟ ତାହାସବୁ ସେହି ରୂପଧରି
ପ୍ରକାଶଇ ଭବେ କାଳକାଳ ନ ବିଚ୍ଛରି ।
ସେହି ସଂକଳ୍ପଜ ମିଥ୍ୟା ଜଗତକୁ ଜାଣ
ସତ୍ୟ ବୋଲି ମଣିଥାନ୍ତି ସଦା ଜୀବଗଣ ।
ଦେଖ ଲୀଳେ ରାଜା ବିଦୁରଥ ଯାଏ ଅସ୍ତ
ପଦ୍ମନୃପ ହୃଦପଦ୍ମେ ପଶିବା ନିମିତ୍ତ ।
ପ୍ରବୁଦ୍ଧା ଲୀଳା ବୋଲଇ କହ ଗୋ ଦେବେଶି
କେଉଁ ପଥେ ଶବ ଅଙ୍ଗେ ପାରିବେ ସେ ପଶି ?
ଆସନ୍ତୁ ଏବେ ତା' ଆମ୍ଭେ କରିବା ଦର୍ଶନ
ତେବେ ମୋ ସର୍ବସନ୍ଦେହ ହେବ ବିମୋଚନ ।
ଦେବୀ ବୋଲେ "ପରଲୋକେ ଚଳୁଅଛି ମୁହିଁ"
ଏହି କଥା ମନ ମଧ୍ୟେ ଚିନ୍ତା କରି ଦେହୀ ।
ଅବଲମ୍ବନ କରିଣ ବାସନା ପଥକୁ
ଚିନ୍ମୟ ଏ ଜୀବ ଚଳିଯାଏ ସେ ପୁରକୁ ।
ତୋର କାମନା ଗୋବତ୍ସେ ହେଉ ଫଳବତୀ
ଆସ ଆମ୍ଭେ ଚଳିଯିବା ଏ ପଥେ ଝଟତି ।
ତା ବାସନା ସହ ଆମ ଦୁଇଙ୍କ ବାସନା
ମିଳିକରି ହେଉଥିବ ଆମ ଗତି ସିନା ।
ବାସନା ସହ ବାସନା ନମିଳେ ଯେ ଯାଏ
ଏକ ତତ୍ତ୍ୱ ଭାବ କେଉଁ ନଆସେ ସେ ଯାଏ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ଲୀଳା ଉପାଖ୍ୟାନେ ସଂସାରଭ୍ରମ
ବର୍ଣ୍ଣନେ ନାମ ୩୮ତମ ସର୍ଗଃ ।**



# ୩୯ତମ ସର୍ଗଃ

## ମରଣାନ୍ତର ଅବସ୍ଥା

ବଶିଷ୍ଠ ବୋଲନ୍ତି ରାମ ଲୀଳା ସରସ୍ୱତୀ
କଥୋପକଥନ ଏହିପରି କରୁଛନ୍ତି ।
ଏହି ଅବସରେ ମହାରାଜା ବିଦୁରଥ
ଅଚେତନ ହୋଇ ପଡ଼ି ରହିଲେ ମୂର୍ଚ୍ଛିତ ।
ଓଠ ଗଲା ଶୁଖି ଡୋଳା ପଡିଲା ଓଲଟି
ପାଣ୍ଡୁର ବର୍ଣ୍ଣ ଦିଶିଲା ଶ୍ରୀମୁଖର କାନ୍ତି ।
ଶ୍ୱାସବାୟୁ-ବହିଗତ ନାସାଦ୍ୱାର ଦେଇ
ମୃତ୍ୟୁ ମୂର୍ଚ୍ଛା-ଅନ୍ଧକୂପେ ମନ ପଡ଼େ ଯାଇ ।
ଇନ୍ଦ୍ରିୟ କ୍ରୀୟା ସକଳ ଶରୀର ଭିତରେ
ଲୀନ ହୋଇ ପଡ଼ିଗଲେ ଜଡ଼ ପରକାରେ ।
ବସାଛାଡ଼ି ପକ୍ଷୀ ନଭେ ଉଡ଼ିଗଲା ପରି
ଦେହଛାଡ଼ି ପ୍ରାଣବାୟୁ କେଣେ ଗଲା ଉଡ଼ି ।
ଯେଉଁ ଚେତନା ଶକତି ପ୍ରାଣ ମଧ୍ୟେ ଥିଲା
ଯେ ବାସନା ସେ ଚେତନା ମଧ୍ୟେ ରହିଥିଲା,
ସେ ଚେତନା ସେ ବାସନା ପ୍ରାଣ ସହିତରେ
ନଭ ଦେଶେ ଅବସ୍ଥାନ କଲେକ ଅଚିରେ ।
ସ୍ୱତନ୍ତ୍ର ନୁହନ୍ତି ଯଥା ବାୟୁ, ଗନ୍ଧ ବେନି
କେ କାହାକୁ ଛାଡ଼ି ନପାରିଲେ ଏହି ତିନି ।
ଫୁଲଗନ୍ଧ ବାରି ବାରି ଭ୍ରମର ଯେସନ
ଫୁଲପାଶେ ଉଡ଼ିବୁଲିଥାଏ ଅନୁକ୍ଷଣ ।
ଦିବ୍ୟଦୃଷ୍ଟି ବଳେ ଲୀଳାରାଣୀ ସରସ୍ୱତୀ
ସେ ରାଜା ପ୍ରାଣବାୟୁକୁ ଅନୁସରି ଯାନ୍ତି ।
କ୍ଷଣକାଳ ପରେ ମୃତ୍ୟୁ ମୂର୍ଚ୍ଛା ଦୂରୀଭୂତ
ଜୀବାତ୍ମାକୁ ବୋଧହୁଏ ତା ଦଶା ଏମନ୍ତ ।
'ଯେ ହେତୁ ବନ୍ଧୁ କୁଟୁମ୍ବ ପିଣ୍ଡଦାନ ଦେଲେ
ଏ ମୋର ସୂକ୍ଷ୍ମ ଶରୀର ସଞ୍ଚରିଛି ଭଲେ ।
ଏହି ଆସି ପହଞ୍ଚିଲେ ଯମଦୂତ ଗଣ
ଘେନି ଚଳିଯିବେ ମୋତେ ଯମ ସନ୍ନିଧାନ ।
ଏହିପରି ଅନୁଭବ କରେ ରାଜାପ୍ରାଣ
ପ୍ରବେଶିଲେ ଆସି ତହିଁ ଯମଦୂତଗଣ ।
ଅତିଶୀଘ୍ର ରାଜା ପ୍ରାଣ ଘେନି ଚଳିଗଲେ
ଯମରାଜା ପାଶେ ଯାଇ ପ୍ରବେଶ ହୋଇଲେ ।

ରାଜା ପ୍ରାଣଙ୍କୁ ଦେଖିଣ ଧର୍ମରାଜ କହି
କହ ମନ୍ତ୍ରୀବର ଯାର କି କର୍ମ ଅଛଇ ?
କହୁଛନ୍ତି ମନ୍ତ୍ରୀବର ଧର୍ମରାଜଶୁଣ
କିଛି ମାତ୍ର ପାପକରି ନାହାନ୍ତି ଏ ଜାଣ ।
ସର୍ବଦା ପବିତ୍ର କାମ କରି ସେ ଅଛନ୍ତି
ପୁଣ୍ୟ କର୍ମମାନ କରି ଦିନ କାଟିଛନ୍ତି ।
ଦେବୀ ସରସ୍ୱତୀଙ୍କର ଅନୁକମ୍ପା ବଳେ
ପୂର୍ବତନ ଶରୀର ଏ ପାଇବେ ଅଚିରେ ।
ପୂର୍ବ ଶରୀର ଯାଙ୍କର ପୁଷ୍ପେ ଆଚ୍ଛାଦିତ
ପଦ୍ମ ନରପତି ଘରେ ଅଛି ସୁରକ୍ଷିତ ।
ଆଦେଶ କରିବା ହେଉ ଆହେ ଧର୍ମରାଜ
ପୂର୍ବଶରୀର ଏହାଙ୍କୁ ପ୍ରାପ୍ତ ହେଉ ଆଜ ।
ଶୁଣିକରି ଯମରାଜ ଏମନ୍ତ ବଚନ
ଆଦେଶ ବିଧାନ କଲେ 'ତଥାସ୍ତୁ' ବୋଲିଣ ।
ଏହା ଶୁଣି ଦୂତଗଣ ଏମନ୍ତ ଯେ କଲେ
ସ୍ୱସ୍ଥାନେ ଗମନ ପାଇଁ ତାହାଙ୍କୁ ଛାଡ଼ିଲେ ।
ଲୀଳା ସରସ୍ୱତୀ ଦୁହେଁ ତାର ପ୍ରତୀକ୍ଷାରେ
ନଭଦେଶେ ଥାଇ ଦେଖୁଥାନ୍ତି ଗୋପନରେ ।
ବିଦୁରଥଙ୍କ ଜୀବାତ୍ମା ଗଗନେ ଚଳନ୍ତି
ଲୀଳା ସରସ୍ୱତୀ ମଧ୍ୟ ପଛେ ଚାଲିଥାନ୍ତି ।
ଯଦି ତ ସେ ଦେବଦ୍ୱୟ ମୂର୍ତ୍ତିବନ୍ତ ଥାନ୍ତି
ରାଜା ଜୀବ ଆତ୍ମା ତାଙ୍କୁ ଦେଖି ନପାରନ୍ତି ।
ସୂକ୍ଷ୍ମ ଦେହ ପଛେ ଦେବୀମାନେ ଚାଲିଥାନ୍ତି
ଲୋକ ଲୋକାନ୍ତରମାନ ଅତିକ୍ରମି ଯାନ୍ତି ।
ତିନିହେଁ ପ୍ରବେଶ ହେଲେ ପଦ୍ମ ଅନ୍ତଃପୁରେ
ପୁଷ୍ପ ଆଚ୍ଛାଦିତ ଶବ ଥିଲା ଯେଉଁଠାରେ ।
ରାମଚନ୍ଦ୍ର ପୁଚ୍ଛା କଲେ ଆହେ ଭଗବାନ
ପୁନଶ୍ଚ ଏକ ସନ୍ଦେହ ଜନମେ ମୋ ମନ ।
ଏକ ସୁକୁମାରୀ କନ୍ୟା ବାଟେ ରହିଥିଲା
ଦ୍ୱିତୀୟ ଲୀଳା ଜୀବକୁ ଘେନି ଚଳିଗଲା ।
ପଦ୍ମ ନୃପତିର ଅନ୍ତଃପୁରେ ଯାଇ ହେଲେ
ସୁକୁମାରୀ କନ୍ୟା ତହୁଁ ଅନ୍ତର୍ଦ୍ଧାନ ଗଲେ ।
କିନ୍ତୁ ବିଦୁରଥ-ଜୀବ କିପରି ସେ ପଥ
ଜାଣିପାରି ପଦ୍ମରାଜ ଘରେ ଉପସ୍ଥିତ ।
ବଶିଷ୍ଠ ବୋଇଲେ ଏବେ ଶୁଣ ରଘୁବୀର
ବିଦୁରଥ ଜୀବ ଆତ୍ମା ଗଲା ଯେ ପ୍ରକାର ।
ବିଦୁରଥ ରାଜା ଜୀବ ଅନ୍ତଃକରଣରେ
ପଦ୍ମନୃପ ଅହଂଭାବ ସୂକ୍ଷ୍ମ ଶରୀରରେ ।
ପ୍ରଚ୍ଛନ୍ନ ଭାବେ ନିହିତ ଥିଲା ବୋଲି କରି
ପଦ୍ମରାଜା-ଘରପଥ ପାରିଲା ସେ ବାରି ।

## ରାମ ଉବାଚ

ପିଣ୍ଡଦାନ ଯାହାପାଇଁ କରା ନୋହିଥିବ
ସେ ବିଷୟେ ତ ତାହାର ଖିଆଲ ନଥିବ ।
ଶରୀର ଲାଭ କରିବ କିପରି ସେ ଜୀବ ?
କୁହନ୍ତୁ ଯଦ୍ୱାରା ମୋର ହୃଦବୋଧ ହେବ ।

## ବଶିଷ୍ଠ ଉବାଚ

ବଶିଷ୍ଠ ବୋଲନ୍ତି ଏବେ ଶୁଣ ହେ ରାଘବ
ଉଚିତ ଉତ୍ତର ଏବେ ତୁମକୁ ମିଳିବ ।
ଜୀବାତ୍ମା ସହିତ ବୁଦ୍ଧି ତନ୍ମୟରେ ଥାଏ
ଯେ ଜୀବକୁ ପିଣ୍ଡଦାନ କରା ନୋହିଥାଏ ।
'ପିଣ୍ଡ ମୁଁ ପାଇଲି' ବୋଲି ବୁଦ୍ଧିବଳେ ଜୀବ
ଉଜ୍ଜୀବିତ କରିପାରେ ଅନ୍ତରେ ଏ ଭାବ ।
ପିଣ୍ଡଦାନ ଫଳ ସେହୁ ଲାଭ କରିପାରେ
ଭାବନାନୁସାରେ ପିଣ୍ଡ ମିଳେ ବା ନ ମିଳେ ।
ପିଣ୍ଡଦାନ ସତ୍ତ୍ୱେ ଜୀବ ଭାବନା ବିହୁନେ
ଫଳପ୍ରାପ୍ତ ହୋଇ ନପାରଇ କଦାଚନେ ।
ଭାବନାବେଳେ କେବଳ ପଦାର୍ଥ ସତ୍ୟତା
ଅନୁଭୂତ ହୋଇଥାଏ ରାମ ମହାମଥା !
ସେହି ଭାବନାହିଁ ଜାଣ ପଦାର୍ଥ କାରଣ
ଭାବନା ବିହୁନେ ବୁଝ ସବୁ ଅକାରଣ ।
କାରଣ ବିହୁନେ କିଛି କାର୍ଯ୍ୟ ନାହିଁ ଜାଣ
ବ୍ରହ୍ମହିଁ ଜାଣିବ ସର୍ବ କାର୍ଯ୍ୟର କାରଣ ।
ଏ କାରଣ ବ୍ୟତିକ୍ରମ ଏକମାତ୍ର ବ୍ରହ୍ମ
ସ୍ୱୟଂ ପ୍ରକାଶ ସେ ବ୍ରହ୍ମ କାରଣ ବିହୀନ ।
ଶ୍ରୀରାମ କହନ୍ତି ଏବେ ଶୁଣ ଗୁରୁଦେବ
ଅନ୍ୟ ଏକ ପ୍ରଶ୍ନ ମୋର ମାନସେ ଉଦ୍ଭବ ।
ପ୍ରେତ ପାଇଁ ବନ୍ଧୁମାନେ ନାନା ଅନୁଷ୍ଠାନ
ନାନା ଧର୍ମ କାର୍ଯ୍ୟମାନ କରନ୍ତି ବିଧାନ ।
ପ୍ରେତ ଯଦି ଭାବେ ସେହୁ କିଛି କରିନାହିଁ
ଉକ୍ତ ଧର୍ମଫଳ ପ୍ରେତ ପାଇବ କି ନାହିଁ ।

## ବଶିଷ୍ଠ ଉବାଚ

ଶାସ୍ତ୍ରବିଧି ଦେଶ କାଳକ୍ରିୟା ଦ୍ରବ୍ୟ ବଳେ
ବନ୍ଧୁମାନଙ୍କ ବାସନା ବଳ ବଢ଼ିଗଲେ ।

ସେ ବଳ ବିହୁନେ ପ୍ରେତ ବାସନା ନିଉନ
ପ୍ରେତ ନ ଜାଣଇ ଶାସ୍ତ୍ର କାଳବିଧିମାନ ।
ବନ୍ଧୁଙ୍କ ବାସନା ବଳ ଯେଣୁ ଗୁରୁତର
ପ୍ରେତକୁ ତାହାର ଫଳ ମିଳେ କ୍ଷିପ୍ରତର ।
ବେଦ ବିରୋଧି ନାସ୍ତିକ ଯେବେ ହୁଏ ପ୍ରେତ
ଏ ସୁଫଳ ତାକୁ ମିଳି ପାରିବ କେମନ୍ତ ?
ବାସନାନୁସାରେ ତାର ଅଧୋଗତି ହୁଏ
ନୀଚ ଯେ ନିମ୍ନାନଙ୍କରେ ଜନମ ସେ ପାଏ
ଭାବନାନୁସାରେ ସିଦ୍ଧି ଲାଭ ହୋଇଥାଏ ।
ଶୁଭ ବାସନାରେ ଶୁଭ୍ରଫଳ ଲାଭ ହୁଏ
ନିଜର ମଙ୍ଗଳ ପାଇଁ ବୁଝୁଥାଅ ରାମ
ଶୁଭ ବାସନାର ପଥ କର ଅନୁଧ୍ୟାନ ।

### ରାମଚନ୍ଦ୍ର ଉବାଚ

ଦେଶ, କାଳ, କ୍ରିୟା, ଦ୍ରବ୍ୟ ସଂପଦ ସମେତ
ବାସନାକୁ ଜନମାନ୍ତି ଏ ପଞ୍ଚ ପଦାର୍ଥ ।
ସୃଷ୍ଟି କ୍ରିୟା ପୂର୍ବେ ଦେଶ, କାଳ, କ୍ରିୟା ଆଦି
କାହାରି ସୃଷ୍ଟି ନଥାଏ ଆହେ ତପୋନିଧି ।
ବାସନାର ସରଜନା ହୋଇତ ନ ଥାଇ ।
ଅଦ୍ୱୈତରେ ଜଗତ୍‌ଭ୍ରମ ସମ୍ଭବିବ କାହିଁ ?
ମହାପ୍ରଳୟ ଆବର ସୃଷ୍ଟି ସରଜନା
ହେବା ପୂର୍ବରୁ ନ ଥିଲେ ଏହି ପଞ୍ଚ ସିନା ।
'ସମବାୟ' କାରଣ ଓ 'ନିମିତ୍ତ' କାରଣ
ସତ୍ତା ମାତ୍ର ନ ଥିଲା ଏ ଉଭୟଙ୍କ ଜାଣ ।
ଚିଦାତ୍ମାରେ ଏ ଜଗତ ଉପୁଜିତ ନାହିଁ
ଆଉ ମଧ୍ୟ ଜଗତର ଅସ୍ତିତ୍ୱ ବା କାହିଁ ?
ବାସ୍ତବରେ କହିବାକୁ ଗଲେ ଏ ଜଗତ
କିଛି ମାତ୍ର ନୁହେଁ ବ୍ରହ୍ମଙ୍କର ଅଣୁମାତ୍ର ।
ଆପେ ଆପେ ବ୍ରହ୍ମସତ୍ତା ରହିଛନ୍ତି ସ୍ଥିର
ଏ ବିଷୟେ ବହୁ ଯୁକ୍ତି ଦେବି ରଘୁବୀର ।
ଏବେ ପୂର୍ବ କଥା ରାମ ମନ ଦେଇ ଶୁଣ
ଲୀଳା ସରସ୍ୱତୀଙ୍କ ଅନ୍ୟ ବିବରଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ମରଣାନ୍ତ ଅବସ୍ଥା ବର୍ଣ୍ଣନେ ନାମ ୩୯ତମ ସର୍ଗଃ ।**



## ୪୦ତମ ସର୍ଗଃ
## ସ୍ୱପ୍ନ ନିରୂପଣ
### ରାମ ଉବାଚ

ପ୍ରବୁଦ୍ଧ ଲୀଳା ଆବର ଦେବୀ ସରସ୍ୱତୀ
ପଦ୍ମ ନୃପତିର ଗୃହେ ପ୍ରବେଶ କରନ୍ତି ।
ରାଜପୁରୁଷ ଆବର ପୁରବାସୀଗଣ
ଉପସ୍ଥିତ ରହିଥିଲେ ସେ ରାଜଭବନ ।
ପୁଷ୍ପ ଆଚ୍ଛାଦିତ ରାଜା ଶବ ତହିଁ ଥାଏ
ବସନ୍ତ ବନ ବାଟିକାପରି ଶୋଭାପାଏ ।
ପର୍ଣ୍ଣକୁମ୍ଭ ଆଦି ସର୍ବ ମଙ୍ଗଳ ବିଧାନ
ସୁସଜ୍ଜିତ ରହିଅଛି ଶବଶିର ସ୍ଥାନ ।
ଅପ୍ରବୁଦ୍ଧା ଲୀଳା ତହିଁ ଉପସ୍ଥିତ ରହି
ପ୍ରଥମ ଲୀଳା ବସିଲା ସମାଧିସ୍ଥ ହୋଇ ।
ଦେହତେଜି ସରସ୍ୱତୀଦେବୀ ସଙ୍ଗେ ଗଲା
ବିଦୁରଥ ରାଜା ରାଜ୍ୟ ବୁଲି ଦେଖୁଥିଲା ।
ସେଠାରୁ ସେ ଲୀଳାଦେବୀ ଆସିଅଛି ଫେରି
ତା କଥା ତ କହିନାହିଁ ଆହେ ତପଚାରୀ ।
ତାର ସେ ଶରୀର ଦେବ କେଉଁଆଡେ ଗଲା ?
ସେ କଥା ବିଶଦକରି କହ ମୋତେ ଭଲା ।

### ବଶିଷ୍ଠ ଉବାଚ

ସତ୍ୟତା କି ଅଛି ରାମ ତାର ସେ ଶରୀର
ଭ୍ରାନ୍ତିମୟ ମାତ୍ର ଜାଣ ଲୀଳା କଳେବର ।
ଆତ୍ମାରେ ଦେହ କଳ୍ପନା କିପରି ସମ୍ଭବ
ଆତ୍ମା ଯେ କିପରି ବସ୍ତୁବିତ୍ ହିଁ ବଳିବ !
କେଉଁଠାରେ ଥିଲା ଲୀଳା କାହିଁ ତା ଶରୀର
କାହିଁ ଥିଲା ଲୀଳା ସତ୍ତା ଭାବ ରଘୁବୀର ।
ଲୀଳା ଦେହ ଭ୍ରାନ୍ତିମୂର୍ତ୍ତି ଅରୁନ୍ଧତୀ ମନେ
ଉଇଁ ରହିଥିଲା ମାତ୍ର କାମନା ଗଗନେ ।
ମରୁସ୍ଥଳେ ଜଳ ଭ୍ରମ ହୁଏ ଯେଉଁପରି
ଅରୁନ୍ଧତୀ ମନେ ଲୀଳା ପ୍ରତିଭା ସେପରି,
ଆଧିଭୌତିକ ଅଜ୍ଞାନେ ଭାସୁଅଛି ଲୀଳା ।
ବୋଧଜ୍ଞାନ ଶୂନ୍ୟ ହୋଇ କରୁଅଛି ଖେଳା ।

ଯାହାକିଛି ବୋଧ ବୁଦ୍ଧି ଜନ୍ମିଛି ଲୀଳାର
ହେମପରି ତରଳି ତା ମିଶିଛି ମାଟିର ।
ସୂକ୍ଷ୍ମ ଶରୀରରେ ଲୀଳା ଯା'କିଛି ଦେଖୁଛି
ସ୍ଥୁଳଦେହେ ତାହାସବୁ ପୂର୍ବେ ଦେଖିଅଛି ।
ବାସ୍ତବରେ ସ୍ଥୁଳ ଦେହ ବୋଲି କିଛିନାହିଁ
ଶଶା ଶୃଙ୍ଗପରି ତାହା ଅସତ୍ୟ ଅଟଇ ।
ଆତିବାହିକ ଶରୀର କେବଳ ହିଁ ଅଛି
ଆତିବାହିକ ବ୍ୟତୀତ ଅନ୍ୟ ନାହିଁ କିଛି ।
ଅଧ୍ୟାସବଳେ ସେ ଆତିବାହିକ ଶରୀର
ଆଧିଭଉତିକ ଭାବ ଉଦୟ ତହିଁର ।
ଆଧ୍ୟାସଟି ଯେତେବେଳେ ହୁଅଇ ନିରସ୍ତ
ପୂର୍ବ ସୂକ୍ଷ୍ମଭାବ ପୁଣି ହୁଏ ପ୍ରକାଶିତ ।
ନିଜକୁ ହରିଣ ବୋଲି ସ୍ୱପ୍ନେ ଦେଖୁଥିବ
ଜାଗରଣେ ସେ ହରିଣ ଆଉ ତ ନଥିବ ।
ଅଜ୍ଞାନବଶତଃ ଯେଉଁ ଭାବ ଉଦେ ହୁଏ
ସୁଜ୍ଞାନ ଜନ୍ମିଲେ ତାହା ଅସ୍ତମିତ ଯାଏ ।
ରାମ ବୋଇଲେ ହେ ପ୍ରଭୁ ପ୍ରବୁଦ୍ଧ ଲୀଳାର
ସତ୍ୟ ସଙ୍କଳପ ବଳେ ପଦ୍ମନୃପଙ୍କର ।
ପୁରବାସୀ ଯଦି ତାଙ୍କୁ ଦେଖିବାକୁ ପାନ୍ତି
କିପରି ଦେଖିପାରିବେ କହ ବ୍ରହ୍ମ ଯତି ।
ବଶିଷ୍ଠ କହିଲେ ରାମ ସେମାନେ ଦେଖିବେ
'ଆମ ରାଣୀ ଦୁଃଖ କରୁଛନ୍ତି ସେ ଭାବିବେ ।
ଦ୍ୱିତୀୟ ଲୀଳାକୁ ତାର ସହଚରୀ ବୋଲି
ଭାବି ନେବେ ମନେ ମନେ ଆହେ ଧନୁର୍ଦ୍ଧାରୀ ।
ରାମ କହିଲେ ହେ ଦେବ ସ୍ୱପ୍ନ ସମୟରେ
ଯେ ପର୍ବତ ଦେଖାଯାଏ ଦର୍ଶକ ନେତ୍ରରେ,
ଜାଗରଣେ ସେ ପର୍ବତ କେଣେ ଚାଲିଯାଏ
ମୋର ଏ ସନ୍ଦେହ ଦୂର କରନ୍ତୁ ମୁନି ହେ ।
ବଶିଷ୍ଠ ବୋଇଲେ ଯଥା ବାୟୁର ସ୍ପନ୍ଦନ
ବାୟୁରେ ହିଁ ଲୀନ ହୋଇ ଯାଉଥାଏ ରାମ,
ସ୍ୱପ୍ନଦୃଷ୍ଟ ପଦାର୍ଥାଦି * ସଂବିତେ ବିଲୀନ
ହୋଇଯାଉଥାନ୍ତି ବୁଝ ହେ ରଘୁନନ୍ଦନ ।
ଏ ସକଳ ଦୃଶ୍ୟ ଜାଣ ସଂବିତ୍‌ର ମଳ
ସଂବିତକୁ ଆବୋରିଣ ଥାଆନ୍ତି କେବଳ ।
ସାପ୍ନିକ ପଦାର୍ଥ ରୂପେ ଯାହା ଦେଖାଯାଏ
ସଂବିତ ବ୍ୟତୀତ ତାହା ଅନ୍ୟକିଛି ନୁହେଁ ।
ସ୍ଫୁରିତ ନୁହେଁ ସଂବିତ୍ ଏପରି ଯେ ଯାଏ
ଅଦ୍ୱୟ ଭାବେ ଏ ଆତ୍ମା ପ୍ରକାଶ ନପାଏ ।
ଜଳ ଓ ଦ୍ରବଣ ଯଥା ଅଟନ୍ତି ଅଭିନ୍ନ
ସ୍ୱାପ୍ନିକ ବସ୍ତୁ-ସଂବିତ ନୁହନ୍ତି ବିଭିନ୍ନ ।
ଏ ଦୁହିଁଙ୍କ ଐକ୍ୟ ବୋଧଜ୍ଞାନ ଯାର ନାହିଁ
ଅଜ୍ଞାନ ବୋଲି ତାହାକୁ ଜାଣ ରଘୁସାଇଁ ।
ମିଥ୍ୟା ଜ୍ଞାନମୂଳକ ଏ ସଂସାରଟି ଜାଣ
ଅଜ୍ଞାନ ବୋଲି ତା' ନକହିବେ କେଉଁ ଜନ ?
ସ୍ୱପ୍ନର ବିଷୟ ଯଥା ବୁଝିଲ ଶ୍ରୀରାମ
ସେହିପରି ଜାଗରଣେ ଜଗତ ଦର୍ଶନ ।
ସ୍ୱପନେ ଦୃଷ୍ଟ ନଗର ଅସତ ଯେପରି
ସୃଷ୍ଟିର ଆଦି ଜଗତ ମିଥ୍ୟା ସେହିପରି ।
ଆତ୍ମ ଚୈତନ୍ୟ ରୂପିଣୀ ସେହି ଯେ ସଂବିତ
ଏକ ମାତ୍ର ସତ୍ୟ ବସ୍ତୁ ଆହ ରଘୁନାଥ ।
ହେ ରାମ ଦେଖୁଅଛ ଯେ ଜଗତକୁ ନେତ୍ର
ସେ ସବୁକୁ ବୁଝୁଥିବ ଶୂନ୍ୟ, ଭ୍ରମ ମାତ୍ର ।
ଅଜ୍ଞାନରୁ ସତବୋଲି ତାହା ଜଣାଯାଏ
ଆତ୍ମବୋଧ ହେଲେ ନଭପରି ଶୂନ୍ୟ ହୁଏ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଲୀଳା ଉପାଖ୍ୟାନେ**
**ସ୍ୱପ୍ନ ନିରୂପଣ ବର୍ଣ୍ଣନେ**
**ନାମ ୪୦ତମ ସର୍ଗଃ ।**



## ୪୧ତମ ସର୍ଗଃ

## ପଦ୍ମଜୀବନ

କହନ୍ତି ବଶିଷ୍ଠ ରାମ ଶୁଣ ମୋ ବଚନ
ଏମନ୍ତ ସମୟେ ବିଦୁରଥର ଜୀବନ ।
ପଦ୍ମ ଦେହେ ପଶିବାକୁ କରନ୍ତେ ଉଦ୍ୟମ
ସଂକଳ୍ପ ବଳେ ବାଣୀ ତା କଲେ ନିରୋଧନ ।
ଦୁଇ ଦେବୀ ଯେତେବେଳେ ଅନ୍ତଃପୁରେ ହେଲେ
"ପ୍ରବୁଦ୍ଧ ଲୀଳା ସେକାଳେ ଏମନ୍ତ କହିଲେ ।
ଏ ଗୃହେ ମୁଁ କେତେକାଳୁ ଥିଲି ସମାଧିସ୍ଥ
କେତେଦିନୁ ଶବ ରୂପେ ରାଜା ବିରାଜିତ ।

* ସଂବିତ୍ – ଆତ୍ମ ଚୈତନ୍ୟ ରୂପିଣୀ ।

ଧ୍ୟାନବଳେ ରାଜା ରାଜ୍ୟେ ଯାଇଥିଲି ମୁହିଁ
ପଡ଼ିଥିଲା ମୋ ଶରୀର ଗଲା ଏବେ କାହିଁ ?
ସରସ୍ୱତୀ କହୁଛନ୍ତି ଆଗୋ ନାରୀବର
ଏକମାସ ପୂର୍ଣ୍ଣ ହେଲା ରାଜା ମରିବାର ।
ଏହି ଯେଉଁ ଦାସୀଦ୍ୱୟ ଏଠି ଶୋଇଛନ୍ତି
ତୁମ ଦେହ ରକ୍ଷା ପାଇଁ ନିଯୁକ୍ତ ଅଛନ୍ତି ।
ହେ ବରବରନେ ! ଏବେ ଶୁଣ ମୋର କଥା ।
ତୁମ ଦେହ କି ହୋଇଛି କହିବି ସେ ବାର୍ତ୍ତା
ସମାଧିସ୍ଥ ହୋଇ ତୁମେ ଏଠି ବସିଥିଲ
ତହୁଁ ଯାଇ ବିଦୁରଥ ରାଜ୍ୟେ ବିଚରିଲ ।
ଶରୀର ବାସନା ଯେବେ ହୋଇଲା ନିବୃତ୍ତ
ଶରୀର ନିର୍ଜୀବ ପରି ପଡ଼େ ଭୂମିଗତ ।
ପଞ୍ଚଦଶ ଦିବସରେ ତୁମର ଶରୀରୁ
ଜୀର୍ଣ୍ଣ ଶୀର୍ଣ୍ଣ ହୋଇ ବାଷ୍ପ ବାହାରେ ତହିଁରୁ ।
ହିମରୁ ଶୀତଳ ପୁଣି କାଠରୁ କଠିନ
ହୋଇ ପଡ଼ିଥାଏ ସେହୁ ଭୂତଳ ଆସନ ।
"ତୁମ୍ଭ ମୃତ୍ୟୁ ହେଲା" ମନେ କରି ମନ୍ତ୍ରୀମାନେ
ଚନ୍ଦନ କାଠ ଘୃତରେ ପୋଡ଼ିଲେ ଶ୍ମଶାନେ ।
ସ୍ୱଶରୀରେ ଫେରିବାର ତୁମଙ୍କୁ ଦେଖିଣ
ଅତି ଆଚମ୍ବିତ ହେବେ ପାତ୍ରମନ୍ତ୍ରୀ ଗଣ ।
ଅତିବାହିକ ଶରୀର ଧରି ଗୋ ସୁନ୍ଦରୀ
ସିଦ୍ଧ ହୋଇଛ ବୋଲିଣ ସ୍ୱର୍ଗେ ପଡ଼େ ହୁରି ।
ପୂର୍ବ ଶରୀର ତୁମ୍ଭର ଯାଇଛି ପାଶୋର
ଯୌବନେ ବିସ୍ମୃତି ଘଟେ ଯଥା ଶୈଶବର ।
ଆତିବାହିକ ଜ୍ଞାନର ସୁଦୃଢ଼ତା ହେଲେ
ଭୌତିକ ଦେହ ବିସ୍ମୃତି ହୁଏ ସେତେବେଳେ ।
ସତ୍ୟ ସଂକଳପ ବଳେ ଏବେ ଚାଲିଯିବା
ଦ୍ୱିତୀୟ ଲୀଳା ପାଶରେ ପ୍ରବେଶ ହୋଇବା ।
ମନୁଷ୍ୟୋଚିତ ବେଭାର ତା ସଙ୍ଗେ କରିବା
କିପରି ସେ ଆସିଅଛି ତାଠାରୁ ବୁଝିବା ।
"ଏ ଲୀଳା ଆମ୍ଭମାନଙ୍କୁ କରୁ ଦରଶନ"
ସରସ୍ୱତୀ କହନ୍ତେ ଏ ସଂକଳ୍ପ ବଚନ ।
ଅପ୍ରବୁଦ୍ଧ ଲୀଳା ତାଙ୍କୁ ଦେଖିଲେ ନୟନ
ଅନ୍ତଃପୁରେ ଉଇଁଲେ କି କୋଟିଏ ତପନ ।
ଚନ୍ଦ୍ରକାନ୍ତି ଶୀତଳତା ହରିନିଏ ମନ
ତା ସମ୍ମୁଖେ ଉପସ୍ଥିତ ଦେବୀ ଦୁଇଜଣ
ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କ ପାଦ ତଳେ ।
ନମ୍ରଭାବେ ତାଙ୍କ ପାଶେ ଜଣାଣ ସେ କଲେ
"ମୋର ମଙ୍ଗଳ ବିଧାନ କରିବା କାରଣ ।
ଏଠାକୁ କରିଛ ମାତ ଶୁଭ ଆଗମନ
ଆପଣଙ୍କ ସେବିକା ମୁଁ ତବ କୃପାବଳେ
ଆଗୁଁ ଆସି ପହଞ୍ଚିଛି ମୁହିଁ ଏହିଠାରେ ।
ଦେବୀଦ୍ୱୟ ରତ୍ନସିଂହାସନ ପରେ ବସି
ପୁଚ୍ଛା କରନ୍ତି ଦ୍ୱିତୀୟ ଲୀଳାକୁ ସମ୍ଭାଷି ।
ପୁତ୍ରି ! ତୁମେ ଆଗକରି ଏଠାକୁ କିପରି
ଆସି ପହଞ୍ଚିଲ ଏବେ କହ ତା ବିଚାରି ।
ପଥମଧ୍ୟେ କେଉଁ ସ୍ଥାନେ କିଛି ଦେଖିଛ କି
ଗୋଟି ଗୋଟିକରି କହ ମୋ ବଚନ ରଖି ।
"ରଣ କ୍ଷେତ୍ରେ ମୋର ସ୍ୱାମୀ ହୁଅନ୍ତେ ଆହତ
ତାହାଙ୍କୁ ଦେଖିଣ ମୁହିଁ ହେଲି ମୂର୍ଚ୍ଛିତ ।
ହତ ଜ୍ଞାନ ହୋଇ ମୁହିଁ ପଡ଼ିଥିଲି ତହିଁ
ଲେଶମାତ୍ର ଜ୍ଞାନ ସତ୍ତା ନଥିଲା ମୋଠାଇଁ ।
ମୂର୍ଚ୍ଛାଗତେ ଯେବେ ମୋର ଚେତା ଆସେ ଫେରି
ଦେଖିଲି ଆକାଶ ମୋତେ ରହିଛି ଆବୋରି ।
ବାୟୁ ରଥାରୂଢ଼ା ହୋଇ ସେ ଗଗନ ପଥେ
ଆସନ୍ତେ ଭେଟିଲି ଏକ କୁମାରୀ ସହିତେ ।
ସେ ମୋତେ ଏଠାରେ ଆଣି ପହଞ୍ଚାଇ ଦେଲା
ସ୍ୱାମୀ ପାଶେ ଛାଡି ମୋତେ ଅନ୍ତର୍ଦ୍ଧାନ ଗଲା ।
ଦେଖୁଛି ଏହି ମୋ ସ୍ୱାମୀ ପୁଷ୍ପ ଆଚ୍ଛାଦିତ
ହଲଚଲ ନୋହି ଏବେ ଗାଢ଼ ନିଦ୍ରାଗତ ।
ସଂଗ୍ରାମରେ ଶ୍ରାନ୍ତହୋଇ ପଡ଼ିଛନ୍ତି ଶୋଇ
ତେଣୁକରି ନିଦ୍ରାଭଙ୍ଗ କରିନାହିଁ ମୁହିଁ ।
ତତପରେ ତୁମ୍ଭେମାନେ ଆସିଲ ଏଠାକୁ
ଯାହା ଯାହା ଦେଖିଛି ମୁଁ କହିଲି ତୁମ୍ଭଙ୍କୁ ।
ସରସ୍ୱତୀ ବୋଇଲେ ଗୋ ଲୀଳାଦ୍ୱୟ ଶୁଣ
ଏହିକ୍ଷଣି ସଞ୍ଚାରୁଛି ରାଜାର ପରାଣ ।
ଏହା କହି ସରସ୍ୱତୀ ଏମନ୍ତ ଯେ କଲେ
ରାଜାର ପ୍ରାଣ ବାୟୁକୁ ମୁକ୍ତ କରିଦେଲେ ।
**ପଦ୍ମ ନରପତି ନାସାରନ୍ଧ୍ର ବାଟେ ଯାଇ**
**ସେ ପ୍ରାଣବାୟୁ ଶରୀରେ ପ୍ରବେଶ କରଇ ।**
ମଧୁକାଳେ ବନଭୂମି ପଲ୍ଲବେ ଯେସନ
ହଲଚଲ ହେଲେ ରାଜା ଅବୟବମାନ ।

ପଦ୍ମ ନୃପ ବିସ୍ତାରିଣ ବିଶାଳ ନୟନ
ଜଳଦ ଗମ୍ଭୀର ସ୍ୱରେ କହନ୍ତି ବଚନ ।

'କେ ଅଛିରେ !' ବୋଲି ରାଜା କହନ୍ତେ ବଚନ
ସାମନାରେ ଲୀଳାଦ୍ୱୟ ଯେ ଦଣ୍ଡାୟମାନ,

"କି ଆଜ୍ଞା' ରାଜନ ଏବେ କରନ୍ତୁ ଆଦେଶ
ଶ୍ରୀମୁଖ ବଚନ ଆଜ୍ଞା ପାଳିବୁ ଅବଶ୍ୟ ।

ସାଦୃଶ୍ୟ ସମ୍ପନ୍ନ ରୂପ ଲୀଳା ଦ୍ୱୟଙ୍କର
ଦେଖି ରାଜନ କହନ୍ତି ବଚନ ମଧୁର ।

'ତୁମେ ଦୁହେଁ କିଏ ଆଉ କିଏ ସେ ରମଣୀ
ସବିଶେଷକରି ମୋତେ କହିବା ବରଣୀ ।'

ଲୀଳା କହେ 'ମୁଁ ତୁମର ପୂର୍ବ ପାଟରାଣୀ ।'
ଦ୍ୱିତୀୟ ଲୀଳା ଏତ ତୁମ ମହିଳା ମୁଁ ଜାଣି

ମୋ ପ୍ରତିବିମ୍ବ ସମାନ ତୁମରି ପାଇଁକି
ପାଇଛି ମୁଁ ତାଙ୍କୁ ଦେବ କହୁଛି ଏତିକି ।

ଆଉ ତୁମ ଶିରୋଦେଶେ ହେମ ସିଂହାସନେ
ବସିଛନ୍ତି ବାଣୀଦେବୀ ପ୍ରଫୁଲ୍ଲ ବଦନେ ।

ବିଜେ କରିଛନ୍ତି ଏଥି ଆମ ପୁଣ୍ୟବଳେ
ପରଲୋକୁ ଆଣିଛନ୍ତି ଆମକୁ ଭୂତଳେ ।

ଏହାଶୁଣି ମହାରାଜା ହୋଇଲେ ଉତ୍ଥିତ
ବାକ୍‌ଦେବୀ ପଦେ କରନ୍ତି କୋଟି ଦଣ୍ଡବତ ।

କହିଲେ 'ବାଗ୍‌ଦେବୀ ମୋତେ ଦିଅ ଏହି ବର
ଧନ୍ୟ, ଧାନ୍ୟ, ଗୋପ, ଲକ୍ଷ୍ମୀ ବଢୁଥାଉ ମୋର ।

ବଢୁଥାଉ ମେଧାଶକ୍ତି ବଢୁଥାଉ ଆୟୁ
ଆତ୍ମଜ୍ଞାନ, ଭୋଗ, ମୋକ୍ଷ ମୋତେ ପ୍ରାପ୍ତ ହେଉ ।'

ରାଜାର ଦୟିନୀ ଶୁଣି ଦେବୀ ସରସ୍ୱତୀ
ରାଜା ଅଙ୍ଗେ ଦେଇକର ଏମନ୍ତ କହନ୍ତି ।

'ତୋର ମନବାଞ୍ଛା ବତ୍ସ ! ଫଳବତୀ ହେଉ
ଏହି ଗୃହେ ଚିରକାଳ ଦିନ କଟୁଥାଉ ।

ଯାବତ ପାପ ଆପଦ ଦୂର ହେଉ ତୋର
ପ୍ରଜାଗଣ ସହ ସୁଖ ଶାନ୍ତି ଭୋଗ କର ।

ପରମାଲକ୍ଷ୍ମୀ ଅଚଳା ହୁଅନ୍ତୁ ତୋ ଘରେ
ଆତ୍ମପଦେ ପରିପୂର୍ଣ୍ଣ ହୁଅ ସର୍ବକାଳେ ।'

ଏହି ଆଶୀର୍ବାଦ ଦେଇ ଦେବୀ ସରସ୍ୱତୀ
ଅନ୍ତର୍ଦ୍ଧାନ ହେଲେ ରାଜା ଆଉ ନ ଦେଖନ୍ତି ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ପଦ୍ମ ଜୀବନ ବର୍ଣ୍ଣନେ ନାମ**
**୪୧ ତମ ସର୍ଗଃ ।**



## ୪୨ତମ ସର୍ଗଃ
## ଦୃଶ୍ୟ ଦୋଷ ବର୍ଣ୍ଣ

କହନ୍ତି ବଶିଷ୍ଠ ନିଶି ହେଲା ଅବସ୍ଥାନ
ନିଦ୍ରା ତେଜିଲେ ରାଜନ, ସର୍ବ ପ୍ରଜାନନ ।

ଅରୁଣ ଉଦୟ ହେଲେ ସୂର୍ଯ୍ୟମୁଖୀ ଫୁଲ
ବିକଶିତ ହୋଇ ଦିଶେ ଯଥା ମନୋହର,

ପରଲୋକ ତେଜି ରାଜା ରାଣୀ ପ୍ରତ୍ୟାଗତ
ଶୁଣି ସର୍ବ ପ୍ରଜାଗଣ ତଥା ଆନନ୍ଦିତ ।

ଖେଳି ଯାଏ ବିଦ୍ୟୁତ୍ ପରି ଏହି ସମାଚର
ଉତ୍ସବ ମନାଇବାକୁ ପ୍ରଜାଏ ଅସ୍ଥିର ।

ଚତୁଃ ସିନ୍ଧୁ ଜଳେ ରାଜା କରିଲେ ସ୍ନାହାନ
ଅଭିଷେକ କଲେ ଦ୍ୱିଜ, ପାତ୍ର ମନ୍ତ୍ରୀଗଣ ।

ପୁନର୍ଜୀବୀତ ରାଜାଙ୍କ ଅଭିଷେକ ବାର୍ତ୍ତା
ଗ୍ରାମେ ଗ୍ରାମେ ଭାଟ ମୁଖେ ରଟଇ ସେ କଥା ।

ଜୀବନମୁକ୍ତ ଲୀଳାଙ୍କଠାରୁ ସେ ରାଜନ
ପୂର୍ବ ଜନ୍ମର ବୃତ୍ତାନ୍ତ କରନ୍ତି ଶ୍ରବଣ ।

ଆନନ୍ଦରେ ମନଫୁଲି ଉଠେ ରାଜାଙ୍କର
ପୂର୍ଣ୍ଣିମା ଚନ୍ଦ୍ରମା ଦେଖି ଯେସନ ସାଗର ।

ସରସ୍ୱତୀ ପ୍ରସାଦରୁ ଆତ୍ମଜ୍ଞାନ ପାଇ
ଲୀଳାଦ୍ୱୟ ସହ ରାଜା ପରଜା ପାଳଇ ।

ଦୀର୍ଘକାଳ କଟିଗଲା ରାଜ୍ୟ ପାଳନରେ
ବିଦେହ ମୁକତି ରାଜା ପାଇଲେ ତା ପରେ ।

ବଶିଷ୍ଠ ବୋଇଲେ ଆହେ ରାମଚନ୍ଦ୍ର ଶୁଣ
ଯେ କାରଣୁ କହିଲି ଏ ଲୀଳା ଉପାଖ୍ୟାନ ।

ଦୃଶ୍ୟ, ଦରଶନ, ଦୋଷ ନିବାରଣ ପାଇଁ
ଏ ଉପାଖ୍ୟାନ ତୁମ୍ଭଙ୍କୁ ରାମ କହିଲଇଁ ।

'ଏ ଜଗତ' ସତ୍ୟ ବୋଲି ଯେ ବୁଦ୍ଧି ତୁମ୍ଭର
ତେଜ ତେଜ ସେ ଦୁର୍ବୁଦ୍ଧି ତେଜ ହେ ସତ୍ୱର ।

ଦୃଶ୍ୟ ସତ ଏ ବିଶ୍ୱାସ ଥିବ ଯେଉଁଯାଏ
ଦୃଶ୍ୟ ତ୍ୟାଗ ସେପର୍ଯ୍ୟନ୍ତ କଷ୍ଟକର ରହେ ।

ଦୃଶ୍ୟ ପରିହାର ପାଇଁ ଅନ୍ୟ ପ୍ରତିକାର
ନାହିଁବୋଲି ବୁଝି ରଖ ଆହେ ରଘୁବୀର ।

**ଇତିଶ୍ରୀ ଯୋଗବାଶିଷ୍ଟେ ଲୀଳା ଉପାଖ୍ୟାନେ**

**ଦୃଶ୍ୟ ଦୋଷ ବର୍ଣ୍ଣନେ**

**ନାମ ୪୨ତମ ସର୍ଗଃ ।**



## ୪୩ତମ ସର୍ଗଃ
## ଦୃଶ୍ୟ ଦୋଷ ପରିହାର

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଦୃଶ୍ୟ ଦୋଷ ନାଶପାଇଁ ଅଛି ଯେ ବିଧାନ ।

ଏ ସକଳ ପ୍ରପଞ୍ଚରେ ଗଗନ ସଦୃଶ
ପରମ ପୁରୁଷ ଏକ ରହିଛି ପ୍ରକାଶ ।

ସ୍ୱୟମ୍ଭୁ ଯେ ଚିଦାକାଶ ସ୍ୱ ଇଚ୍ଛାରେ ସେହି
ଯେ ସକଳ ବିବର୍ତ୍ତନ ପ୍ରକାଶି ଅଛଇ ।

ସେ ସବୁ ପରମାତ୍ମା ମାୟାର ଆଭାସ
କାହାରି କରଣି ଏଥି ନାହିଁ ରଘୁଇଶ ।

ଯେତେବେଳେ ଯେଉଁପରି କରନ୍ତି ପ୍ରଯତ୍ନ
ସେପରି ପ୍ରକାଶ ପାଇଯାଏ ତତକ୍ଷଣ ।

ଇଚ୍ଛାକଲେ କରନ୍ତି ସେ ସୃଷ୍ଟି ସରଜନ
ଇଚ୍ଛାକରି ସେ ସୃଷ୍ଟିକି କରନ୍ତି ରକ୍ଷଣ ।

ବିନାଶ ଇଚ୍ଛିଲେ ସୃଷ୍ଟି ହୁଅଇ ପ୍ରଳୟ
ଧୀରସ୍ଥିର ଚିତ୍ତେ ଏହା ବୁଝ ରଘୁରାୟ ।

କିଛି ମାତ୍ର ବ୍ୟତିକ୍ରମ ନୁହଇ ଏଥିରେ
କିଏ ବ୍ୟତିକ୍ରମ ଆଣିପାରେ ତା ଇଚ୍ଛାରେ ।

ଯଦ୍ୟପି ବ୍ରହ୍ମାତ୍ମରୂପ ନିର୍ମଳ ଆକାଶେ
ଦୃଶ୍ୟାଦୃଶ୍ୟ ସୁବିଶାଳ ଜଗତ ଆଭାସେ ।

ତଥାପି ବସ୍ତୁତଃ ତାହା ପରମାର୍ଥ ଜ୍ଞାନେ
ଅପରିଚ୍ଛିନ୍ନ ଭାବେ ସେ ସ୍ଥିତ ନୁହେଁ ବ୍ରହ୍ମେ ।

ପୃଥ୍ୟାଦି ଭୂତଙ୍କଠାରୁ ବ୍ରହ୍ମ ଯେ ସ୍ୱତନ୍ତ୍ର
କେବଳ ଆଭାସ ରୂପେଛନ୍ତି ବିରାଜିତ ।

ଆକାଶ ସ୍ୱରୂପ ଅଟେ ଜ୍ଞାନବାନ ନର
ବିରାଜିତ ଆତ୍ମପଦ ସଦା ତା ଅନ୍ତର ।

ଦୃଶ୍ୟଭ୍ରମ ତାଙ୍କଠାରୁ ଦୂରେ ଥାଏ ରହି
ଅଜ୍ଞାନୀଙ୍କୁ ଏହି ଭ୍ରମ ସଦା ଘାରି ଥାଇ ।

ବିଶୁଦ୍ଧ ଚିଦାକାଶର ଅଣୁ ଏକମାତ୍ର
ଜୀବରୂପେ ଜନମଇ ଏମର ଜଗତ ।

ସେହି ଜୀବ ଅଣୁ ମଧ୍ୟେ ଭବ ଭାସମାନ
ସେ ଭବ ସର୍ଜନା କଥା କି କହିବି ରାମ ?

କି ଆଶ୍ଚର୍ଯ୍ୟ ନୁହେଁ ସେହି ଭବର ବାସନା
ଶକ୍ତ କାହିଁ କରିବାକୁ ସେ ନୀତି ବର୍ଣ୍ଣନା ।

ସେ ଭବ ପଦାର୍ଥ ଅବା କି ବର୍ଣ୍ଣିବି ମୁହିଁ
ଧନ୍ୟ ସେ ପଦାର୍ଥ ଜୀବ ଯା'ରେ ହୁଏ ମୋହି ।

ଏ ଜଗତ କିଛି ରାମ ଜନମାଏ ନାହିଁ
ସମ୍ବେଦନରେ ହିଁ ଭବ ଭାସମାନ ରହି ।

ବିଶୁଦ୍ଧ ଜ୍ଞାନରେ ସଂବେଦନ ରୂପୀ ନଈ
ତା ସ୍ରୋତରେ ଏ ଜଗତ ଭାସି ଚାଲିଛଇ ।

ଯତ୍ନସହ ସେ ନଦୀର ଗତିରୋଧ କଲେ
ଦୃଶ୍ୟଭ୍ରମ ପ୍ରମାଦ ଯେ ନାଶଯାଏ ହେଲେ ।

ଆତ୍ମ ସାକ୍ଷାତ ପାଇଁକି ଏମନ୍ତ କରିବ
ସମ୍ବେଦନ ଅନ୍ତର୍ମୁଖି ଯେମନ୍ତ ହୋଇବ ।
ଶ୍ରବଣ, ମନନ ପୁଣି ନିଦି ଅଧ୍ୟାସନ
ଯତ୍ନ ସହ ଆଚରିବ ଏହି ବିଧିମାନ ।
ଯେ ପର୍ଯ୍ୟନ୍ତ ନ ହୋଇଛି ପରମାତ୍ମା ଭେଟ
ଧୈର୍ଯ୍ୟ ଧରି ଆଚରିବ ଯେତେ ହେଲେ କଷ୍ଟ ।
ଭାସମାନ ଏ ଜଗତ ତୁମର ଦୃଷ୍ଟିରେ
ସାକ୍ଷାତ ଅଖଣ୍ଡ ବ୍ରହ୍ମ ମୋର ନୟନରେ ।
ଏ ଜଗତ ମାୟାମୟ ଅନ୍ୟକିଛି ନୁହେଁ
ବ୍ରହ୍ମ ସତ୍ତା ଆପେ ଆପେ ସ୍ଥିର ହୋଇଥାଏ ।
ରାମ କହିଲେ ହେ ଦେବ ତୁମ୍ଭ ଉପଦେଶ
ମୋ ହୃଦ ତୃଣ ବନକୁ ଦାବାଗ୍ନି ସଦୃଶ ।
ତ୍ରିତାପ ନାଶନେ ସାକ୍ଷାତ୍ ଚନ୍ଦ୍ରମା ହେ ଦେବ
ଜ୍ଞାତଜ୍ଞେୟ ହୋଇଛି ମୁଁ ଉପଦେଶେ ତବ ।
ଆପଣ ଯେ ଜ୍ଞାନ ଦୃଷ୍ଟି ମୋତେ ଦାନ କଲେ
ଜ୍ଞାତବ୍ୟ ବିଷୟ ମୋତେ ଜଣାଯାଏ ଭଲେ ।
ଦ୍ୱିଜ ଶ୍ରେଷ୍ଠ ! ଆପଣଙ୍କ ଆଶ୍ଚର୍ଯ୍ୟ ଆଖ୍ୟାନ
ଦିଏ ମୋତେ ଶ୍ରେଷ୍ଠ ଶାନ୍ତି ଆବର ନିର୍ବାଣ ।
ଗୋଟିଏ ସଂଶୟ ଏବେ ଜାଗେ ମୋର ମନେ
କୃପା କରି ଦୂରୀଭୂତ କରନ୍ତୁ ଆପଣେ ।
ବଶିଷ୍ଠ ବ୍ରାହ୍ମଣ, ପଦ୍ମରାଜା ବିଦୂରଥ
ଏମାନେ ତ ଲୀଳାରାଣୀଙ୍କର ପ୍ରାଣନାଥ ।
ଏମାନଙ୍କ କରଣୀରେ ଗଲା କେତେ କାଳ
ଏକଥା ବୁଝାଇ କହ ଆହେ ଦ୍ୱିଜ ବାଳ ।
ଏକ ଅହୋରାତ୍ର କିବା ଏକ ଗୋଟି ମାସ
କି ଅବା ବ୍ୟାପୀ ଯାଇଛି ବର୍ଷ ପରେ ବର୍ଷ ।
ଥରେ ମାତ୍ର ଶୁଣିଅଛି ଶ୍ରୀମୁଖରୁ ତବ
କଳିପାରି ନାହିଁ ତାହା ହେ ମୁନି ପୁଙ୍ଗବ ।
ସବିଶଦ କରି ମୋତେ କହିବା ବୁଝାଇ
ଚାତକ ପରି ତୁମକୁ ରହିଁଅଛି ମୁହିଁ ।
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ଧୀରସ୍ଥିର ଚିତ୍ତେ ତାହା କର ଅନୁଧ୍ୟାନ ।
ଯେଉଁ ବ୍ୟକ୍ତି ଯେତେବେଳେ ଯେଉଁ ବିଷୟରେ
ଯେବଣ ପ୍ରକାରେ ଜ୍ଞାନ ଅରଜନ କରେ ।
କେତେବେଳେ ତାର ପୁଣି ସେହି ବିଷୟରେ
ଅନୁରୂପ ଅନୁଭବ ହୁଏ ତା ମନରେ ।
ସର୍ବକ୍ଷଣ ଗରଳକୁ ଅମୃତ ମଣିଲେ
ଅମୃତ ପାଲଟେ ତାହା ଜାଣ ଏହା ଭଲେ ।
ବସ୍ତୁକୁ ଯେ ଭାବେ ଯେଉଁ ଆକାରେ ଚିନ୍ତିବ
ଚିନ୍ତନ ପ୍ରଭାବେ ତାହା ସେ ଧର୍ମ ଲଭିବ ।
ସ୍ଫୁରଣଶୀଳ ସଂବିତ ଚିତ୍ତ ସଂକଳ୍ପରେ
ଯେ ଆକାରେ ଯେଉଁଭାବେ ଉଠଇ ତହିଁରେ
ସେ ଆକାରେ ସେହି ଭାବେ ହୁଏ କାର୍ଯ୍ୟକାରୀ ।
ବୁଝୁଥିବ ଏହି ତତ୍ତ୍ୱ ଆହେ ଧନୁର୍ଦ୍ଧାରୀ ।
ବସ୍ତୁକୁ ଯେ ଭାବେ ଯେଉଁ ଆକାରେ ଚିନ୍ତିବ
ଚିନ୍ତନ ପ୍ରଭାବେ ତାହା ସେ ଧର୍ମ ଲଭିବ ।
ନିମିଷେକ ମଧ୍ୟେ ଯେବେ କଳ୍ପକାଳ ରୂପ
ସଂବିତ୍ ଉଦିତ ହୁଏ ବୀର ବରାଧିପ ।
ତେବେ ସେ ନିମିଷକାଳ କଳ୍ପକାଳ ପରି
ଅନୁଭୂତ ହେବ ବୁଝ ଆହେ ରୂପଧାରୀ ।
ଦୁଃଖ ଭାରାକ୍ରାନ୍ତ ମାନବକୁ ଯେଉଁପରି
ବର୍ଷସମ ବୋଧହୁଏ ଏକଇ ଶର୍ବରୀ ।
ସୁଖୀ କି ସେ ରାତ୍ରିଗୋଟି କ୍ଷଣପରି ଲାଗେ
ବୁଝୁଛ କି ମୋ କହିବା ରାମ ମହାଭାଗେ !
ଗୋଟିଏ ରାତିକୁ ବାର ବରଷ ସମାନ
ଅନୁଭବ କରିଥିଲେ ହରିଶ୍ଚନ୍ଦ୍ର ରାଣ ।
ଗୋଟିଏ କ୍ଷଣକୁ ଶତ ବରଷ ସମାନ
ଅନୁଭବ କରିଥିଲେ ଲବଣ ରାଜନ ।
ପ୍ରଜାପତିଙ୍କ ମୁହୂର୍ତ୍ତ, ମନୁ ଜୀବକାଳ
ବିଷ୍ଣୁଙ୍କର ଦିନେମାତ୍ର ବ୍ରହ୍ମା ଆୟୁବଳ ।
ଶିବଙ୍କର ଏକଦିନ ବିଷ୍ଣୁ ଆୟୁବଳ
ହେଜୁଥାଅ ଦାଶରଥି କାଳର କି ଖେଳ ।
ନିର୍ବିକଳ୍ପ ସମାଧିସ୍ଥ ହେଲେ ଯୋଗୀଜନ
କି ଖେଳ ଖେଳିବ କାଳ ତାଙ୍କ ସଙ୍ଗତେଣ ।
ପଦାର୍ଥ, ଜଗତ, ଦିନରାତି ଏହିମାନ
ଯୋଗୀ ଚିତ୍ତେ ଦେଇ ନ ପାରନ୍ତି ସଂବେଦନ
ଆତ୍ମାହିଁ କେବଳ ସତ୍ୟ ସେ ସମାଧି ବେଳେ
କାଳର ପ୍ରଭାବ କେଉଁ ଦୁର୍ବଳ ସେ କାଳେ ।
ଚିନ୍ମୟ ଗଗନେ ମନୋମୟ ସ୍ପନ୍ଦନର
ବିକାଶ ହିଁ ଏ 'ଜଗତ' ଆହେ ଧନୁର୍ଦ୍ଧର !
ଭାସ୍କର ଏ ଜଗତ କେଉଁ ନୁହେଁ ବସ୍ତୁପୂର୍ଣ୍ଣ
ପରମ ପୁରୁଷଙ୍କ ଏ ଜାଗ୍ରତ ସ୍ୱପନ ।

ସୃଷ୍ଟିର ଆଦି କାଳରୁ (ମହା) ପ୍ରଳୟ ପର୍ଯ୍ୟନ୍ତ
ଚିନ୍ମୟ ବ୍ରହ୍ମ ସ୍ୱଭାବ-ରୂପେ ଅବସ୍ଥିତ ।
ରାମଚନ୍ଦ୍ର ପଚାରନ୍ତି କହ ମୁନିବର
ବିଦୂରଥ ବଂଶାବଳୀ ପଦ୍ମ ରାଜାଙ୍କର ।
ପାତ୍ର ମନ୍ତ୍ରୀ ପୁରଜନ ଆଦିଙ୍କ ଦୃଷ୍ଟିରେ
କି କାରଣେ ଏକଭାବେ ପ୍ରତିଭାତ ହେଲେ ?
କହନ୍ତି ବଶିଷ୍ଠ ଏବେ ଶୁଣ ଧନୁର୍ଦ୍ଧର
ତୋଫାନ ଆରମ୍ଭ ବେଳେ ଘଟେ ଯେ ପ୍ରକାର ।
ସାଧାରଣ ବାୟୁ ତାର ପଛେ ପଛେ ଧାଏଁ
ଘରଦ୍ୱାର ଗଛପତ୍ର ଆଦି ଭାଙ୍ଗିଦିଏ ।
ପ୍ରଧାନ ଚିତ୍ ଶକ୍ତି ଯେଣେ ହୁଏ ଧାବମାନ
ସଂବିତ୍‌ମାନ କରନ୍ତି ତା ଅନୁଗମନ ।
ତେଣୁ ପାତ୍ର ମନ୍ତ୍ରୀ ଆଦି ଅନ୍ୟ ଯେତେଛନ୍ତି
ତାଙ୍କ ନେତ୍ରେ ଏକାପରି ସେମାନେ ଦିଶନ୍ତି ।
"ଆମ୍ଭର ଯେ ରାଜା ଏହି ବଂଶ ସମୁତ୍ପନ୍ନ
ତେଣୁ ଏହା କହିଛନ୍ତି ବିଦୁରଥ ଜନ ।
ଏହିପରି ସମସ୍ୟାର ସତ୍ୟତା ହେ ରାମ
ସଂବିତ୍ କେବଳ କରିପାରେ ସମାଧାନ ।
ଏହାର କାରଣ କରିବାଟା ଅନ୍ୱେଷଣ
କେବେହେଁ ହେ ରାମ ତାହା ନୁହେଁ ସମୀଚିନ ।
କାରଣ ସ୍ୱଭାବତଃ ହିଁ ଏହା ଘଟିଥାଏ
ଅନିବାର୍ଯ୍ୟ ଯାହା ତାକୁ ନିବାରିବ କିଏ ?
ଚିନ୍ତାମଣି ରତ୍ନ ଯଦି ପାଶେ ରଖିଥିବ
ଯାହା ଇଚ୍ଛା କରିବ ତା ନିଶ୍ଚେ ପାଉଥିବ ।
"ଏହି ରୂପେ ଏହି ବଂଶେ ନିଶ୍ଚେ ରାଜା ହେବି
ବିଦୂରଥ ରାଜା ଜୀବ ହେଉଥାଏ ଭାବି ।
ତା ଜୀବ ଚୈତନ୍ୟ ସେହି ବାସନାର ଫଳେ
ଜନ୍ମଲାଭ କରିଥିଲା ସେହି ରାଜକୁଳେ ।
ଇଚ୍ଛିଲେ ଚୈତନ୍ୟ ସବୁଠାକୁ ଯାଇପାରେ
ସର୍ବ ଅନୁଗାମୀ ଗୁଣ ଅଛି ତାହାଠାରେ ।
ସବୁ ଜୀବ ଚଇତନ୍ୟ ସୃଷ୍ଟି ସମୟରେ
ସର୍ବଗୁଣ ସମନ୍ୱିତ ଥାନ୍ତି ରଘୁବୀରେ ।
ତାଙ୍କର ସର୍ବଗାମୀତ୍ୱ ବଶତଃ ହେ ରାମ
ହୋଇଥାନ୍ତି ପରସ୍ପର ଆଦର୍ଶ ସମ୍ପର୍ଣ୍ଣ ।
ବିଦୂରଥ ସୃଷ୍ଟି ମଧ୍ୟ ଥିଲା ସେହିପରି
ଏବେ ପାଇଲ ତ ରାମ ଉତ୍ତର ତୁମରି ?

ପୁଣି ପଚାରନ୍ତି ରାମ କୁହ ଗୁରୁଦେବ
"ମୁଁ ଓ ଜଗତ ମଧ୍ୟେ ନାହିଁ ଭେଦଭାବ ।"
ତଥାପି ଏ ଭ୍ରମଜ୍ଞାନ ଆସୁଛି କିପାଇଁ
ତାହାର କାରଣ ପୁଣି କହନ୍ତୁ ବୁଝାଇ ।
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ଯଥାର୍ଥ ଜ୍ଞାନୀ ପୁରୁଷ ଅଟଇ ଯେ ଜନ
ଚୈତନ୍ୟର ଅନ୍ତର୍ଗତ ଏହି ଭ୍ରମଜ୍ଞାନ
ସ୍ୱତନ୍ତ୍ର ସ୍ଥିତି ତାଠାରେ ନାହିଁ ହେ ଶ୍ରୀରାମ ।
ସ୍ୱର୍ଣ୍ଣର କଙ୍କଣ ସ୍ୱର୍ଣ୍ଣଠୁଁ ଅଭିନ୍ନ
ଜଳର ତରଙ୍ଗ ଭାବ ଜଳୁଁ ନୁହେଁ ଭିନ୍ନ ।
ତେସନ ଏ ଭବ ନୁହେଁ ଈଶ୍ୱରଠୁଁ ଅନ୍ୟ
ଈଶ୍ୱର ହିଁ ଜଗତ୍ ରୂପେ ରହିଛନ୍ତି ପୂର୍ଣ୍ଣ ।
ଈଶ୍ୱରଙ୍କଠାରେ ଜଗତ୍ ବୋଲି କିଛି ନାହିଁ
ଅଜ୍ଞାନ ଭ୍ରମ ହିଁ ତାର କାରଣ ଅଟଇ ।
ସର୍ବହୃଦେ ବ୍ରହ୍ମସତ୍ତା ରହିଛନ୍ତି ପୁରି
ଅଜ୍ଞାନୀ ଅକ୍ଷମ ଯେଣୁ ତା ବୁଝି ନ ପାରି ।
ବ୍ରହ୍ମ ଅନୁଭୂତି ଭାବ ଯେବେ ଉପୁଜିବ
'ମୁଁ' ଓ ଏ 'ଜଗତ' ଦ୍ୱନ୍ଦ କେବେ ନ ରହିବ ।
ପୁନଃ ପୁନଃ ଉର୍ମିମାଳା ଜଳେ ଉଠୁଥାଏ
ଆବର ସେ ଜଳେ ପୁଣି ଲୀନ ହେଉଥାଏ ।
ଜଳ ଆଉ ଉର୍ମି ମଧ୍ୟେ କିଛି ନାହିଁ ଭେଦ
ତେସନ ଜଗତ-ବ୍ରହ୍ମ ଏ ଦୁହେଁ ଅଭେଦ ।
ତାଦୃଶ ବ୍ରହ୍ମରେ ବିଶ୍ୱ ପ୍ରପଞ୍ଚ ଉଠିଣ
ପୁଣି ସେହି ବ୍ରହ୍ମ ମଧ୍ୟେ ହେଉଥାଏ ଲୀନ ।
ତେଣୁକରି 'ବ୍ରହ୍ମ' ବିଶ୍ୱ ନୁହନ୍ତି ପୃଥକ
ଏହି ମତ ପୋଷିଥାନ୍ତି ଜ୍ଞାନୀ ସୁବିବେକ ।
ବାୟୁରେ ସ୍ପନ୍ଦନ ଯଥା ହୁଅଇ ଉଦ୍‌ଭୂତ
ନିଜ ମଧ୍ୟେ ବ୍ରହ୍ମ ତଥା କଳ୍ପଇ ସ୍ୱତନ୍ତ୍ର ।
ଅବିଦ୍ୟା ଜନିତ ସ୍ୱୀୟ ସମ୍ବେଦନ ଦ୍ୱାରା
ପୃଥକ ଆମ୍ଭ ପ୍ରପଞ୍ଚ କଳପନା କଲା ।
କାରଣେ ବିଲୀନ ଥିବା ଶବ୍ଦ ତନ୍‌ମାତ୍ର
ଆକାଶ ସ୍ୱରୂପ ଧରି ହେଲା ପ୍ରତିଭାତ ।
ବ୍ୟୋମାଭୂତ, ସେହି ବ୍ରହ୍ମ ଅନିଳତ୍ୱ ପାଇ
ସ୍ପରଶ ତନ୍‌ମାତ୍ର ରୂପେ ଅନୁଭୂତ ହୋଇ ।

ତେଜ ବ୍ରହ୍ମରୁ ଜନମେ ଜଳରୂପୀ ବ୍ରହ୍ମ
ରସ ତନ୍‌ମାତ୍ର ଭାବ ଏହା ବୋଲି ଜାଣ ।
ସେ ଜଳ-ବ୍ରହ୍ମରୁ କ୍ଷିତି-ବ୍ରହ୍ମ ହୁଏ ଜାତ
ଯାହାକି ଗନ୍ଧ ତନ୍ମାତ୍ର ସ୍ୱରୂପେ ବିଖ୍ୟାତ ।
ଜଗଦାକାରେ ପ୍ରକାଶ ଯେ ଚିନ୍ମୟ ବ୍ରହ୍ମ
ନିମିଷକ ଲକ୍ଷ୍ୟାଂଶରେ ପ୍ରକାଶ ତା ଜାଣ ।
କଳ୍ପ କୋଟି କାଳ ବ୍ୟାପୀ ଯେ ସୃଷ୍ଟି କାରଣ
ଧନ୍ୟ ସେ ମନ ଯେ କରେ ଏହାର କଳନ ।
ଏ ଚିନ୍ମୟ ବ୍ରହ୍ମଙ୍କୁ ଯେ ଯେଉଁରୂପେ ଧ୍ୟାୟେ ।
ସେହିରୂପେ ପ୍ରକାଶିତ ବ୍ରହ୍ମ ତା ହୃଦୟେ ।
ସର୍ବବିଧ ମାୟାଶକ୍ତି ବ୍ରହ୍ମରେ ନିବାସ
ତେଣୁ କହନ୍ତି ଏ ଭବ ବ୍ରହ୍ମର ବିଳାସ ।
ମନ ଆଉ ଇନ୍ଦ୍ରିୟାଦି ବହିର୍ମୁଖେ ଥାନ୍ତି
ଯା କିଛି ଦେଖନ୍ତି ଅବା ଯା କିଛି ଶୁଣନ୍ତି ।
ନାମ ବା କଳ୍ପନାମାନ ଅଟନ୍ତି ସେମାନ
ତେଣୁ ଅଳୀକ ତା ସବୁ ବୋଲନ୍ତି ସୁଜାଣ ।
ବାୟୁର ପ୍ରବାହ ତା'ର ଅସ୍ତିତ୍ୱ ବୁଝାଏ
ବିନା ପ୍ରବାହରେ ବାୟୁ 'ନାହିଁ' କୁହାଯାଏ ।
ଅଜ୍ଞାନ ହେତୁ ଜଗତ ଥିବା ମନେହୁଏ
ଜଗତ-ମିଥ୍ୟା ପ୍ରମାଣ ତତ୍ତ୍ୱଜ୍ଞାନ ଦିଏ ।
ତେଜକୁ ଆଲୋକ ରୂପେ ଯେବେ ନ ଦେଖନ୍ତି
ଅସତ୍ୟ ଦର୍ଶନ ବୋଲି ତାହାକୁ ମଣନ୍ତି ।
ତେଜ ଓ ଆଲୋକ ମଧ୍ୟେ କିଛି ଭେଦ ନାହିଁ
ଉଭୟେ ଏକ ପଦାର୍ଥ ଜ୍ଞାନୀ ମତ ଏହି ।
ଉଭୟ ଏକତ୍ର ଥିଲେ ସତ୍ୟ ଦରଶନ
ହୁଏ ବୋଲି କହିଛନ୍ତି ସର୍ବ ବିଜ୍ଞ ଜନ ।
ଜଗତ ଯେ ବ୍ରହ୍ମଠାରୁ ଅଟଇ ପୃଥକ
ମିଥ୍ୟା ଦରଶନ ଏହା କହେ ସୁବିବେକ ।
ବ୍ରହ୍ମ ଯେ ଜଗତ ରୂପେ ପ୍ରକାଶି ଅଛନ୍ତି
ସତ୍ୟ ଦରଶନ ବୋଲି ବିଜ୍ଞାନୀ କହନ୍ତି ।
ତେଜରୁ ଆଲୋକ ଯଥା ହୁଅଇ ନିର୍ଗତ
ଚିନ୍ମୟ ବ୍ରହ୍ମରୁ ତଥା ଏ ବିଶ୍ୱ ସ୍ଫୁରିତ ।
ଜଗତର ସତ୍ୟତା ବା ଅସତ୍ୟତା ଯଥା
ଦର୍ଶନ ଭେଦେ ପ୍ରାପତ ହୁଅଇ ସର୍ବଥା ।
ଅନ୍ତଃ ଶକ୍ତିବଳେ ବୀଜ ବୃକ୍ଷ ରୂପ ଧରେ
ଜଗତର ଶୋଭା ବଢ଼େ ବୃକ୍ଷ ଫୁଲ ଫଳେ ।
ଚିନ୍ମୟ ବ୍ରହ୍ମ ତେସନ ଜୀବ ରୂପ ଧରେ
ସୃଷ୍ଟି ପରମ୍ପରା ଭୋଗ କରେ କାଳେ କାଳେ
ତତ୍ତ୍ୱଜ୍ଞାନ ଉଦୟର ଏ ସୃଷ୍ଟି ସକଳ
ବ୍ରହ୍ମରୂପେ ପରକାଶ ଜୀବହୃଦ ସ୍ଥଳ ।
ବ୍ରହ୍ମର ଜଗତ୍-ପ୍ରକାଶ କାରଣ ବିହୀନ
ବ୍ରହ୍ମ ଅକାରଣ, ବ୍ରହ୍ମ ନିତ୍ୟ ସନାତନ ।
ଜୀବ, ଚିତ୍ତ, ବାସନାଦି ଯାହା ଅନୁଭୂତ
ମନର ବିକାର ବୋଲି ଜାଣ ରଘୁନାଥ ।
ଦୃଢ଼ ଅଭ୍ୟାସ ଆବର ଜ୍ଞାନଯୋଗ ବଳେ
ମନର ବିନାଶ ହୋଇପାରେ ଯେତେବେଳେ ।
ଏ ସବୁ ବିକାରମାନ ଆଉ ନ ରହନ୍ତି
ତତ୍ତ୍ୱ ବୁଝି ପାରୁଥିବ ଆହେ ରଘୁପତି ।
ଶ୍ରୁତିର ବଚନି ଏହା ଶୁଣ ହେ ଶ୍ରୀରାମ
ଭୋଗ ବିଳାସରେ ଯେବେ ଅଣୁ ପରିମାଣ
ବିରାଗ ଜନମି ପାରେ ଜୀବ ହୃଦଗତ
ଶେଷେ ଉଚ୍ଚପଦ ତାରେ ହୁଏ ପରାପତ ।
ପୂର୍ଣ୍ଣ ବୈରାଗ୍ୟ ଉଦୟେ ମୁକ୍ତି ପଦ ମିଳେ
କେତେ ବା ବୁଝିବେ ଏହା ଏ ମହୀ ମଣ୍ଡଳେ ।
ଲେଶ ମାତ୍ର ଦେହ ଭାବ ନାହିଁ ଯା ଶରୀରେ
ଜନ୍ମ ମୃତ୍ୟୁ ଭ୍ରାନ୍ତିରେ ସେ କେବେହେଁ ନପଡ଼େ ।
ସର୍ବ ଦାୟୀ ସେହି ଜନ ସଦା ଧନ୍ୟ ଧନ୍ୟ
ଯେ ଜାଣି ପାରଇ 'ଜୀବ' 'ପରମ' ଅଭିନ୍ନ
ନାମ ରୂପମୟ ଜଗତ୍ ଯାହା ପ୍ରତି ଶୂନ୍ୟ
ଦେହାଦି ଉପାଧିମାନ ନ ଛୁଏଁ ଯା ମନ ।
ବ୍ରହ୍ମ-ଚଇତନ ଠାରୁ ଜୀବ-ଚଇତନ୍ୟ
ଜଳେ ତରଙ୍ଗ ସଦୃଶ୍ୟ ନୁହଇଁ ଅଭିନ୍ନ ।
ଜୀବ ଚୈତନ୍ୟ ଅଦ୍ୱୟ ଏବଂ ସ୍ୱପ୍ରକାଶ
ଅହଂଭାବ ହେତୁ ହୁଏ ଜଗତ ସଦୃଶ ।
ନିମିଷ ମାତ୍ରକେ ମଧ ଯୁଗ ଯୁଗାନ୍ତର
ଅନୁଭବ କରିପାରେ ଅନ୍ତରେ ତାହାର ।
କଳ୍ପନାରେ ପରମାଣୁ ଲକ୍ଷେ ଭାଗ କର
ପ୍ରତି ଭାଗେ ଏ ଜଗତ ଅଛି ବୋଲି ଧର ।
ସେହି ପ୍ରତି ଭାଗେ ପୁଣି କଳ୍ପବ୍ୟାପୀ କାଳ
ସତ୍ୟ ପରି ବିରାଜଇ ଦଶରଥ ବାଳ ।
ସେହି ଜଗତ୍ ପ୍ରତି ପରମାଣୁ ମାନଙ୍କରେ
ଏରୂପ ପ୍ରତିତୀମାନ ଜନ୍ମଲାଭ କରେ ।

କହି ପାରିବ କି ଏହା ନାମ ରଘୁପତି ?
'ଅସୀମ ଭ୍ରାନ୍ତି' ଏ ବୋଲି ଜ୍ଞାନୀ କହୁଛନ୍ତି ।

**ଇତିଶ୍ରୀ ଯୋଗବାଶିଷ୍ଟେ ଲୀଳା ଉପାଖ୍ୟାନେ ପ୍ରୟୋଜନ ବର୍ଣ୍ଣନେ ନାମ ୪୩ତମ ସର୍ଗଃ**



## ୪୪ତମ ସର୍ଗଃ

## ଜଗତ ସ୍ୱରୂପ ବର୍ଣ୍ଣନା ଓ ଦର୍ଶନ

କହନ୍ତି ଶ୍ରୀରାମ ଆହେ ତତ୍ତ୍ୱଜ୍ଞ ପ୍ରଧାନ
ବିଚାର ପ୍ରଭାବେ ସର୍ବ ତତ୍ତ୍ୱଦର୍ଶୀଗଣ ।
ନିର୍ବିକଳ୍ପ ପରମାତ୍ମା ସହ ନିମଜ୍ଜନ୍ତି
ଦୈବାଧୀନ ଦେହ ତାଙ୍କ ରହେ କିମ୍ବା କ୍ଷିତି ।
ସେମାନଙ୍କ ପାଇଁ ଦୈବ କରିଥାଏ କିସ
ଫିଟାଇ କହିବା ହେଉ ଏଥିର ସନ୍ଦେଶ ।
ବଶିଷ୍ଠ କହନ୍ତି ଶୁଣ ରାମ ମହାମତି
ଆଦି ମହାଶକତି ଯେ ବ୍ରହ୍ମଚିତ୍ ଶକ୍ତି ।
"ଏମନ୍ତ ସ୍ୱଭାବାପନ୍ନ ହୋଇବ ଯେ କେହି"
ଏପରି ସଙ୍କଳ୍ପାତ୍ମିକା ବୃତ୍ତି ରୂପେ ଥାଇ ।
ସୃଷ୍ଟି ପ୍ରଥମେ ଅକ୍ଷର-ବ୍ରହ୍ମରୁ ଉଦିତ
ଏ 'ମହା ନିୟତି' ହୋଇଛନ୍ତି ପ୍ରତିଭାତ ।
ତାଙ୍କ ପ୍ରଭାବରେ ଏହି ବିଶ୍ୱ ମହାଜାଲ
ତୃଣ ପରି ବଦଳୁ ଯେ ଥାଏ କାଳ କାଳ
କଳ୍ପାଦିରୁ ଦେବ ଦୈତ୍ୟ ନାଗଗଣ ମାନ
ଏହି ଭାବେ ସର୍ବେ କରିଛନ୍ତି ଅବସ୍ଥାନ ।
ଏ ନିୟତି ବ୍ୟତିକ୍ରମ କେଉଁଠେ ଘଟେ ନାହିଁ
ଦୁଇ ଦୁଇ ମିଶି ଚାରି ଯେମନ୍ତ ହୁଅଇ ।
ବ୍ରହ୍ମାଦି ତତ୍ତ୍ୱଜ୍ଞମାନ ଏପରି କହନ୍ତି
ବ୍ରହ୍ମ ସୃଷ୍ଟି ଓ ନିୟତି ଅଭିନ୍ନ ଅଟନ୍ତି ।
ଏ ନିୟତି ବୁଝିକରି ପ୍ରଜାପତି ବ୍ରହ୍ମା
ତଦନୁ ରୂପ ଏ ସୃଷ୍ଟି କରନ୍ତି ରଚନା ।
ଏହି ମହା ନିୟତିକି ଦୈବ ବୋଲି କହି
ସେ, ସକଳ ବସ୍ତୁ ସର୍ବକାଳ ବ୍ୟାପୀ ଥାଇ ।
ଯେ ପକାଇ ଯେ ପଦାର୍ଥ ଯେବେ ଜନମିତ
ଯେତେ କାଳ ରହି ପୁଣି ଯେବେ ଧ୍ୱଂସ ହେବ ।
ଅବଶ୍ୟମ୍ଭାବୀ ସେ ବିଧି ଏହିପରି ଥାଇ
ସେହି ବିଧି ଶାସ୍ତ୍ର ମତେ ଦଇବ ବୋଲାଇ ।
କେବଳ ଏହି ନିୟତି ବଳଯୋଗୁଁ ରାମ
ପୁରୁଷ ଅଦୃଷ୍ଟ ସତ୍ତା ଲଭିଥାଏ ଜାଣ ।
ପୁରୁଷ ଅଦୃଷ୍ଟ ମଧ୍ୟ ନିୟତି ସହିତ
ମିଳିତରେ ଅବସ୍ଥାନ କରେ ରଘୁନାଥ ।
ଜଗତର ସ୍ଥିତିକାଳ ପର୍ଯ୍ୟନ୍ତ ହେ ରାମ
ଏହା ଏହି ଭାବେ ରହିଥାଏ ବର୍ତ୍ତମାନ ।
ପୁରୁଷ, ଅଦୃଷ୍ଟ ପୁଣି ନିୟତି ଏମାନ
ବ୍ରହ୍ମରେ ବିଲୀନ ମହା ପ୍ରଳୟ କାଳେଣ ।
ଏ ନିୟତି ପୁଣି ଏହି ଯେ ପୁରୁଷାକାର
ସାଧାଧୀନ୍ ଅଟନ୍ତି ଏ ଜୀବ ପୁରୁଷର ।
'ଦୈବ ଓ ପୁରୁଷାକାର' ବିଷୟ ରାଘବ
ମୋଠାରୁ ଜାଣିବା ପାଇଁ ଯେବେ କି ଚାହିଁବ ।
ପୁରୁଷାକାର ଦେବାକୁ ଦେବୀ ଉପଦେଶ
ଏହା ସବୁ ଜାଣ ସେହି ନିୟତିର ବଂଶ ।
ଦୈବେ ନିଷ୍ଠା ରଖି ଯେହୁ କର୍ମ ତେଜି ବସେ
ତାହାର ସେ ନିଷ୍କ୍ରିୟତା ନିୟତିର ବଶେ ।
ପ୍ରାରମ୍ଭରୁ ନର ଯେବେ ନିଷ୍କ୍ରିୟ ରହନ୍ତା
ବୁଦ୍ଧି, କର୍ମ, ଦେହ ତା'ର ଜନ୍ମି ନ ପାରନ୍ତା ।
ଚେଷ୍ଟାର ଯେ ବୁଦ୍ଧି ପୁଣି ବୁଦ୍ଧି ରୂପେ କର୍ମ
କର୍ମରୁ ଜନମିଥାଏ ଦେହ ଅଭିମାନ ।
ପୁରୁଷର ଯେତେ କାର୍ଯ୍ୟ କଳ୍ପ ଆରମ୍ଭରୁ
ଚାଲୁଛି ତାହା କେବଳ ନିୟତି ବଂଶରୁ ।
ଅବଶ୍ୟମ୍ଭାବିନୀ ଏହି ନିୟତି ବିଧାନ
ମହାରୁଦ୍ର ମଧ୍ୟ କରି ନ ପାରିବେ ଆନ ।
ବୁଦ୍ଧିମାନ ନିୟତିକି ଆଶ୍ରା କରିଥିବ
ତଥାପି ପୁରୁଷାକାରେ ନିୟତି ସକଳେ
ନିୟନ୍ତ୍ରିତ କରୁଥାଏ ଯେଣୁ ସଦାକାଳେ ।
ବିଭୁ ଇଚ୍ଛାଧୀନ ଥିବା ପର୍ଯ୍ୟନ୍ତ ନିୟତି
ନିୟତି ଗୁଣ ତାହାର ଥାଏ ସେହିମତି ।
ସୃଷ୍ଟି ସର୍ଜନା ସହିତ ରହିଲେ ଜଡ଼ିତ
ପୁରୁଷାକାର ଆଖ୍ୟାରେ ହୁଏ ସେ ବିଦିତ ।
ପୁରୁଷକାର ଆକୃତି ଧଇଲେ ନିୟତି
ତେବେ ଯାଇ କାର୍ଯ୍ୟ ତାର ହୁଏ ଫଳବତୀ ।
ବିନା ପୁରୁଷାକାରରେ ନିୟତି ନିଷ୍କ୍ରିୟ
ନିୟତି କ୍ଳୀବ, ନିୟତି ପାଏ ପରାଜୟ ।
ଯେଉଁ ବ୍ରହ୍ମ କଥା କହିଗଲି ହେ ଶ୍ରୀରାମ
ସର୍ବତ୍ରଗ, ସର୍ବମୟ ସର୍ବେଶ୍ୱର ଜାଣ ।

ଯେ ରୂପ ଯେଠାର ଆତ୍ମା କରଇ ଚିନ୍ତନ୍
ସେ ରୂପେ ସେଠାରେ ତା'ର ପାଏ ଦରଶନ ।
ଆତ୍ମାର ଅନନ୍ତ ଶକ୍ତି ବ୍ୟବହାର କାଳେ
ନାନା ଆକାର ପ୍ରକାଶ ପାଇଥାଏ, ହେଲେ ।
ତଥାପି ପରମାର୍ଥତଃ ଏସବୁ ପ୍ରକାଶ
ସେହି ଅଭିନ୍ନ ଆତ୍ମାରୁ ସବୁରି ବିକାଶ ।

**ଇତିଶ୍ରୀ ଯୋଗାବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଲୀଳା ଉପାଖ୍ୟାନେ ଜଗତସ୍ୱରୂପ**
**ବର୍ଣ୍ଣନେ ନାମ ୪୪ତମ ସର୍ଗଃ ।**



## ୪୫ତମ ସର୍ଗଃ
## ଦୈବ ଶବ୍ଦାର୍ଥ ବିଚାର

କହନ୍ତି ଶ୍ରୀରାମଚନ୍ଦ୍ର ଏବେ ଶୁଣ ଦେବ
ଏ ମୋର ଗୂଢ଼ ପ୍ରଶ୍ନର ଉତ୍ତର କି ଦେବ ?
ଅପରିଚ୍ଛିନ୍ନ, ଅଦ୍ୱୟ ସ୍ୱପ୍ରକାଶି ବ୍ରହ୍ମ
ଖାଲି କଳ୍ପନାରେ ଯେହୁ ହୁଏ ବୋଧଗମ୍ୟ ।
ତହିଁ ଖଣ୍ଡିତ ସସୀମ ନଶ୍ୱର ଯେ ଜୀବ
କିପରି ସ୍ୱତନ୍ତ୍ର ଭାବେ ଅସ୍ତିତ୍ୱ ଲଭିବ ।
ବ୍ରହ୍ମେ ଯେ ଦ୍ୱୈତ ପ୍ରତୀତି ଘଟିଥାଏ ରାମ
କେବଳ ଅଳୀକ ତାହା ମରୀଚିକା ସମ ।
ବ୍ରହ୍ମ ଏକାନ୍ତ ନିର୍ମଳ ବ୍ରହ୍ମ ସର୍ବବ୍ୟାପୀ
କିଏ ଅଛି ବ୍ରହ୍ମେ ରୂପ ପାରିବ ଯେ କଳ୍ପି ।
ବ୍ରହ୍ମର ଯେ ସବିପୁଳ ରୂପ ଚିଦାକାର
ଅନାତ୍ମକ ବ୍ୟକ୍ତି ପକ୍ଷେ ଅତି ଭୟଙ୍କର ।
ବ୍ରହ୍ମଙ୍କ ଉପାଧି ଶୂନ୍ୟ ଯେ ସାମ୍ୟ ଅବସ୍ଥା
ବରନନେ ପଣ୍ଡିତଙ୍କ ଘୂରୁଥାଏ ମଥା ।
ପରମ ପଦ ବୋଲାଇ ଏ ଶାନ୍ତ ସ୍ୱରୂପ
ତହିଁରୁ ଉଦୟ ଜୀବ କ୍ରିୟା-ଶକ୍ତି ରୂପ ।
ପରିଚ୍ଛିନ୍ନ ପ୍ରଣାତ୍ମକ ସେ ଜୀବ ଅଟଇ
ପରମ ସହ ତାହାର ସମ୍ପର୍କ ଯେ ଏହି ।
ବାୟୁ ଶୂନ୍ୟ ସିନ୍ଧୁ ପରି ଶାନ୍ତ ଯେଉଁ ବ୍ରହ୍ମ
କିଞ୍ଚିତ ସ୍ଫୁରଣ ତା'ର ଏ ଜୀବ ଜାଣିମ ।
ଶାନ୍ତ ବ୍ରହ୍ମେ ପ୍ରାଣକ୍ରିୟା ହୁଅନ୍ତେ ଆରମ୍ଭ
ବ୍ରହ୍ମଙ୍କ ନିଷ୍କ୍ରିୟ ଭାବ ଆଉ ନ ରହିବ ।
ଏହି ଭାବେ ଚିଦାକାଶେ ହୁଏ ଯେ ସ୍ଫୁରଣ
ତାହାର ନାମଟି ଜୀବ ଜାଣିବ ହେ ରାମ ।

ସେହି ଚିଦାକାଶ ରୂପ ପରମ ଦର୍ପଣେ
ଅନୁଭବାତ୍ମକ ଭବ ନାଚେ ଅନୁକ୍ଷଣେ ।
ନଭର ଶୂନ୍ୟତା ଆଉ ବିଶାଳତା ଘେନି
ନୀଳିମା ଦିଶଇ ତା'ର ରଙ୍ଗ ରଘୁମଣି ।
ବାସ୍ତବରେ କଉଣସି ରଙ୍ଗ ଆକାଶର
ନାହିଁ ନ ଥିଲା ନଥିବ ଜାଣ ରଘୁବୀର ।
ପ୍ରଥମୋଦିତ ଜୀବର ଅହଂଭାବ ନାହିଁ
ଯେଣୁ ସମ୍ୟକ୍ ଆତ୍ମ ଦରଶନ ପାଏ ନାହିଁ ।
ତେଣୁ ସେ ନିଜକୁ ଅହଂଭାବାପନ୍ନ ମଣେ
ଆତ୍ମ-ଦର୍ଶନ ଅଭାବ ଭୋଗେ ଅନୁକ୍ଷଣେ ।
ପୁରୁବ ସଂସ୍କାର ତା'ର ହେଲେ ଜାଗରିତ
ଅହଙ୍କାର ଭାବେ ପୁଣି ହୁଇ ଜଡ଼ିତ ।
ଏହି ଅହଂଭାବ ପୁଣି ଦେଶ କାଳ ସ୍ଥଳେ
ସଙ୍କଳ୍ପ ବଳେ ଦେହାଦି ଧାରଣ ସେ କରେ ।
ବାୟୁ ସ୍ପନ୍ଦନ ପ୍ରାୟସେ ସ୍ପନ୍ଦିତ ହୋଇଣ
ମନ, ଚିତ୍ତ, ଜୀବ, ମାୟା, ପ୍ରକୃତି ରୂପେଣ ।
ପରିଚିତ ହୁଏ ଏହା ଜାଣ ରଘୁପତି
ଅହଙ୍କାରର ଏସବୁ ବିଭିନ୍ନ ମୂରତି ।
ସେଇ ସଙ୍କଳପ ଚିତ୍ତ ପଞ୍ଚଭୂତ ଧ୍ୟାୟୀ
ଭୂତ ଭାବ ପ୍ରାପ୍ତ ହୁଏ ଆହେ ରଘୁରାଇ ।
ପଞ୍ଚଭୂତ ତତ୍ତ୍ୱ ଧ୍ୟାନ ଯେବେ ସେ ନ କରେ
ତେଜୋମୟ ଭାବ ଧରି ରହି ନିରନ୍ତରେ ।
ତତପରେ ସେହି ତେଜ ଘେନୀଭୂତ ହୋଇ
କିଛି କାଳ ପରେ ଅଣ୍ଡ ଭାବକୁ ଧରଇ ।
ସେ ଅଣ୍ଡ ମଧ୍ୟରୁ ବ୍ରହ୍ମା ହୁଏ ଉତପତି
ଏ ତତ୍ତ୍ୱ ହେଜ ରଖିବ ଆହେ ରଘୁପତି ।
ତତ୍ପରେ ଏ ତେଜ ଦିବ୍ୟ ଦେହ କଳପଇ
ଅମରାବତୀ ପ୍ରଭୃତି ପୁର ସରଜଇ ।
ପକ୍ଷାନ୍ତରେ କିଏ ଧରେ ଖେଚର ସ୍ୱଭାବ
ସ୍ଥାବର ଜଙ୍ଗମ ଆଦି ଯା କିଛି ସମ୍ଭବ ।
ପ୍ରଥମ ଜନମ ଯାର ସୃଷ୍ଟି ସମୟରେ
ବିରଞ୍ଚି ପଦ ପର୍ଯ୍ୟନ୍ତ ସେହୁ ପାଇପାରେ ।
ସଙ୍କଳ୍ପ ବଳେ ଏ ଭବତଦ୍ ଗତ ଆକୃତି
ସର୍ଜ୍ଜନା କରି ନିଜକୁ ବେଳେ ପ୍ରଜାପତି ।
ଚିତ୍ ସ୍ୱଭାବକୁ ତା'ର କରି ଜାଗରଣ
ହେତୁ ରୂପେ ସଂସାରକୁ କରଇ ସର୍ଜ୍ଜନ ।

ଜଳରୁ ଯେସନ ଫେଣ ହୁଅଇ ଜନମ
ଚିତ୍ତରୁ କର୍ମ ସ୍ଫୁରିତ ହୁଅଇ ତେସନ ।
ବନ୍ଧା ନଉକା ରସିରେ ଜଳସ୍ରୋତ-ଫେଣ
ଯେପରି ଅଟକି ରହେ ଆହେ ରଘୁରାଣ ।
ଜଳ ଛାଡ଼ି ଫେଣ, ଆଶ୍ରା କରଇ ରସିରେ
ଜଳ ସହ ତା' ସମ୍ପର୍କ ନ ରଖେ ସେକାଳେ ।
ଯେଉଁ ଚୈତନ୍ୟରୁ ଚିତ୍ତ ଜନ୍ମ ଲଭିଥାଇ
କର୍ମେ ଲାଗିଗଲେ ତାକୁ ପାସୋରି ସେ ଦେଇ ।
ଜଳ ତେଜି ଫେଣ ଯଥା ରସିରେ ଲାଗଇ
ଚୈତନ୍ୟକୁ ଛାଡ଼ି ଚିତ୍ତ କର୍ମେ ଲାଗିଯାଇ ।
ବୀଜରେ ଅଙ୍କୁର ସୂକ୍ଷ୍ମ ଆକାରରେ ଥିଲା
ଡାଳ, ପତ୍ର, ଫୁଲ ଫଳେ କ୍ରମେ ସେ ଶୋଭିଲା ।
ହିରଣ୍ୟ ଗର୍ଭରେ ଜୀବ ସୂକ୍ଷ୍ମ ରୂପେ ଥିଲା
ସଙ୍କଳ୍ପ ପ୍ରଭାବେ ଜୀବଜଗତ ମୋହିଲା ।
ବ୍ୟଷ୍ଟି ଜୀବ ନିଜ ନିଜ ବାସନା ବଳରେ
ଇପ୍‌ସିତ ଶରୀରମାନ ଧରନ୍ତି ସଂସାରେ ।
ସ୍ୱକୀୟ କର୍ମାନୁସାରେ ଊର୍ଦ୍ଧ୍ୱ ଅଧଗତି
ପରାପତ ହୁଏ ତାଙ୍କୁ ଆହେ ରଘୁପତି ।
କର୍ମକୁ ବୁଝିବ ରାମ ଏ ଚିତ୍ ସ୍ପନ୍ଦନ
ପୁଣି ଏ ଚିତ୍ ସ୍ପନ୍ଦନ ଦୈବ ବୋଲି ଜାଣ ।
ଶୁଭ ଓ ଅଶୁଭ ଦୁଇ ଚିତ୍ତର ବିକାର
ଚିତ୍ ସ୍ପନ୍ଦନତା ବୋଲି ଜାଣ ରଘୁବୀର ।
ଗଛରେ ଫୁଲ ଫୁଟିଣ ପୁଣି ଝଡ଼ିପଡ଼େ
ପୁନଃ ପୁନଃ ଫୁଟୁଥାଏ ପଡୁଥାଏ ତଳେ ।
ଆଦି ଚିତ୍ ସ୍ପନ୍ଦନରୁ ବାରମ୍ବାର ହୋଇ
ଭବର ସୃଷ୍ଟି ପ୍ରଳୟ ସର୍ବଦା ଘଟଇ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ଲୀଳା ଉପାଖ୍ୟାନେ ଦୈବ ଶବ୍ଦାର୍ଥ-ବିଚାର ବର୍ଣ୍ଣନେ ନାମ ୪୫ତମ ସର୍ଗଃ ।**



## ୪୬ତମ ସର୍ଗଃ

## ବୀଜାବତାର

ବଶିଷ୍ଠ ବୋଇଲେ ରାମ ଭୋଗ୍ୟ ବସ୍ତୁ ମାତ୍ରେ
ମନୋମୟ ହିଁ କେବଳ ଅଟେ ଏ ଜଗତେ ।
ଯେହେତୁ କେବଳ ଭୋଗ୍ୟ ବସ୍ତୁ ମନ ମଧ୍ୟେ
ଅବସ୍ଥାନ କରିଥାଏ ଜାଣ ଦୟାନିଧେ ।
ପୃଥକ ନୁହନ୍ତି 'ମନ' ମନର କାରଣ
ସଦା ଅବିଚ୍ଛିନ୍ନ ଦୁହେଁ ଏହା ଭଲେ ଜାଣ ।
ତେଣୁ ଦୃଶ୍ୟ ପ୍ରପଞ୍ଚର ଯାବତୀୟ ଭେଦ
ମନମଧ୍ୟେ କଳ୍ପିତ ତା ମନ କରେ ସାଧ ।
ସେହି ମନ ଯେବେ ରାମ ହୁଏ ବିଗଳିତ
ସକଳ ପ୍ରପଞ୍ଚ ଭେଦ ହୁଏ ତିରୋହିତ ।
ବାସ୍ତବ ସତ୍ୟ ଯେ ଆତ୍ମା ରହେ ପ୍ରତିଷ୍ଠିତ
ସତ୍ୟକୁ ନିବାରିବାକୁ କେ ହେବ ସମର୍ଥ ।
ତେବେ ବ୍ରହ୍ମ, ଜୀବ, ମାୟା, ଜଗତ୍ ଓ ମନ
କର୍ତ୍ତା, କର୍ମ ଆଦି ଯେତେ ଭେଦଭାବମାନ ।
ବିଲୀନ ହୁଅନ୍ତି ରାମ ଏ ସତ୍ୟ ବଚନ
ପୁଣି ଯା ଘଟଇ ତାହା କହୁଅଛି ପୁଣ ।
ଜ୍ଞାନଜଳ ପୂର୍ଣ୍ଣ ଚିତ୍-ଅର୍ଣ୍ଣବ ମଧ୍ୟରେ
ନିମଗ୍ନ ରହଇ ଆତ୍ମା ନିଶ୍ଚଳ ଭାବରେ ।
ଚିତ୍ତ ଓ ଜଗତ ରାମ ଉଭୟେ ଅନିତ୍ୟ
ତେଣୁକରି ଏହି ଦୁହେଁ ଅଟନ୍ତି ଅସତ୍ୟ ।
ଅଜ୍ଞ ପ୍ରତି ଆପାତତଃ ସତ୍ୟ ଏହି ଦୁହେଁ
ତେଣୁ ଉଭୟଙ୍କୁ ସତ୍ୟ ବୋଲି ଧରାଯାଏ ।
ଏଣୁ ଏ ଜଗତ ଜାଣ ସତ୍ ଓ ଅସତ୍
ଉଭୟାତ୍ମକ ବୋଲିଣ ଜ୍ଞାନୀଙ୍କର ମତ ।
ଏହି ଉଭୟ ଆତ୍ମିକ ଚିତ୍ତ ଓ ଜଗତ
ସପନ ପରି ଅଳୀକ ଜ୍ଞାନୀଙ୍କ ସିଦ୍ଧାନ୍ତ ।
ମନହିଁ ଦେଖଇ ଏହି ଅସାର ସପନ
ଆତ୍ମଜ୍ଞାନ ଅଭାବରୁ ଏହି ଭ୍ରମ ଜାଣ ।
ଆତ୍ମାର ସୃଷ୍ଟି-ବାଞ୍ଛାରୁ ଚିତ୍ତର ବିସ୍ତାର
ଚିତ୍ତୁ ଜୀବଭାବ ଜୀବଭାବୁ ଅହଙ୍କାର ।
ଅହଙ୍କାରରୁ ଜନମ ତନ୍ ମାତ୍ରମାନ
ତନ୍‌ମାତ୍ରାରୁ ଜନ୍ମନ୍ତି ଇନ୍ଦ୍ରିୟାଦିଗଣ ।
ଇନ୍ଦ୍ରିୟମାନଙ୍କ ବଳେ ଶରୀର ଉତ୍ପନ୍ନ
ଶରୀରରୁ ଜନମନ୍ତି ମୋହ ଆଦି ଭ୍ରମ ।
ମୋହ ଭ୍ରମୁ ଫିଟିଯାଇ ନର୍କ ପଥମାନ
ଏହି ତ ସୃଷ୍ଟିର ଖେଳା ହେ ରଘୁ ନନ୍ଦନ ।
ବ୍ରହ୍ମ ଆତ୍ମା ପୁଣି ସେହି ଚିନ୍ମୟ ଏମାନ
ବସ୍ତୁତଃ ଏମାନେ ଏକ ବୁଝନ୍ତି ସୁଜାଣ ।
ଏକଇ ବସ୍ତୁ ଅଟନ୍ତି ଚିତ୍ତ ଏବଂ ଜୀବ
କର୍ମ ଓ ଶରୀର ଦୁହେଁ ଏକହିଁ ଜାଣିବ ।

କର୍ମ ଛଡ଼ା ଶରୀରର ନିଜ ସତ୍ତା ନାହିଁ ।
ବିନା ଶରୀରରେ କର୍ମ ରହିବ ବା କାହିଁ ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ, ଲୀଳା ଉପାଖ୍ୟାନେ ବୀଜାବତାର ବର୍ଣ୍ଣନେ ନାମ ୪୬ତମ ସର୍ଗଃ ।**



## ୪୭ତମ ସର୍ଗଃ
## ବୀଜାଙ୍କୁର୍ ବର୍ଣ୍ଣନ

ଏକ ପ୍ରଦୀପରୁ ଯଥା ଅନେକ ପ୍ରଦୀପ
ପ୍ରଜ୍ୱଳିତ ହୋଇଥାଏ ହେ ଅଯୋଧ୍ୟାଦୀପ ।
ଏକ ପରମାତ୍ମା ବହୁ ଆତ୍ମା ଧରିଛନ୍ତି
ବହୁରେ ଏକ ଏ ତତ୍ତ୍ୱ ପ୍ରକାଶ କରନ୍ତି ।
ପରମାତ୍ମ ଜ୍ଞାନ ଯେବେ ହୁଅଇ ଉଦିତ
ଚିତ୍ତ ମଧ୍ୟେ ଜୀବଭାବ ହୁଏ ଅସ୍ତମିତ ।
ତେଣୁ ଜୀବର ବନ୍ଧନ ମିଥ୍ୟା ପ୍ରମାଣିତ
ଏବେ ତାହାର ହୁଅଇ ମୋକ୍ଷ ପରାପତ ।
ଚିତ୍ତ ଯେଣୁ ଜଗତ୍-ଜୀବ ରୂପେ ପ୍ରକାଶଇ
ଚିତ୍ତ ବିନାଶେ ଜଗତ୍ ପ୍ରପଞ୍ଚ ନ ଥାଇ ।
ଭ୍ରମବଶଃ ଚିତ୍ତ ଦେଖେ ଜନ୍ମ ଯଉବନ
ବାର୍ଦ୍ଧକ୍ୟ, ମୃତ୍ୟୁ, ନରକ ଏ ସକଳମାନ ।
ସୁନିର୍ମଳ ଆକାଶରେ ମଦ୍ୟପ ଯେସନ
ଅଜ୍ଞାନ ବଶରୁ କରେ ବୁଦ୍‌ବୁଦ୍ ଦର୍ଶନ ।
ଅଜ୍ଞାନ ବଶରୁ ଚିତ୍ତେ ବିଚିତ୍ର ସର୍ଜ୍ଜନା
ପରିଦୃଷ୍ଟ ହୁଏ ଆହେ ରାମ ମହାମନା ।
ପିତ୍ତରୋଗୀ ନେତ୍ରେ ଶ୍ୱେତଶଙ୍ଖ ପୀତ ବର୍ଣ୍ଣ
ଚିତ୍ତରୋଗୁଁ ଚୈତନ୍ୟର ଭ୍ରାନ୍ତି ଦରଶନ ।
କାଷ୍ଠର ଅଭାବେ ଯଥା ଅଗ୍ନି ଲିଭିଯାଏ
ବିଷୟ ବିଳାସ ବିନା ଚିତ୍ତ ଲୀନ ହୁଏ ।
ବିଷୟ, ବିଳାସ ଚିତ୍ତ ବିନା ଅସମ୍ଭବ
ଏହି ଜ୍ଞାନ ବଳେ ଯେବେ ସମାଧି ଲଭିବ ।
ଚିତ୍ତ ବିଷୟ ଦର୍ଶନ ହେବ ନିର୍ବାପିତ
ବୁଝୁଥିବ ମୋ କହିବା ଦଶରଥ ସୁତ ।
ଏସନ ସାଧକ ଯେବେ ବିଷୟ ଚିନ୍ତିବ
ବିଷୟ ଦୋଷରୁ ମୁକ୍ତ ରହି ସେ ପାରିବ ।
ଚୈତନ୍ୟ ସ୍ୱଚ୍ଛତା ଦିଏ ବିଷୟ ଦର୍ଶନ
ଚୈତନ୍ୟ ଆଧିକ୍ୟ ତାକୁ କରେ ବିନାଶନ ।
ନିର୍ବିକଳ୍ପ ସମାଧିରେ ଚୈତନ୍ୟ ଆଧିକ୍ୟ
ସେ ଘେନ ଚୈତନ୍ୟ ପରମ ପଦ ପ୍ରଦାୟକ ।
ଚିତ୍ତର ସହାୟେ ରାମ ଶୁଦ୍ଧ ଚଇତନ
ଆସକ୍ତି ପ୍ରଭାବେ ହୁଏ ବିଷୟ ସମ୍ପନ୍ନ ।
ମୁଁ ହର୍ତ୍ତା, ମୁଁ କର୍ତ୍ତା ଭ୍ରମେ ହୋଇ ନିପତିତ
ଏ ସବୁ ସତ୍ୟ ବୁଝିଣ ହୁଏ ଆତ୍ମ ତୃପ୍ତ ।
ପ୍ରବାହ ନ ଥିଲେ ବାୟୁ ଥିବା ବୋଧ ନୋହି
ବିଷୟ ବାସନା ବିନା ଚିତ୍ତ ସତ୍ତା କାହିଁ ?
ରଜ୍ଜୁ ଦେଖି ସର୍ପଭ୍ରମ ମିଥ୍ୟା ଜ୍ଞାନ ବସେ
ଅବିଦ୍ୟାରୁ ଚୈତନ୍ୟରେ ବିଷୟା ବିଳାସେ ।
ଆତ୍ମଜ୍ଞାନ ହିଁ ସେ ଭ୍ରମବ୍ୟାଧିର ଔଷଧ
ସମାଧି ବ୍ୟତୀତ ଆତ୍ମଜ୍ଞାନ ନୁହେଁ ଲବ୍‌ଧ ।
ଦୃଶ୍ୟ ଦର୍ଶନ, ବାସନା ଯଦି ଛାଡ଼ିପାର
ହେ ରାମ ମୁକତି ପାଇ ପାରିବ ସତ୍ୱର ।
ବିଷୟ ବାସନା ଯଦି ନିଶ୍ଚୟ ଛାଡ଼ିବ
ଅବଶ୍ୟ ମୁକତି ଲାଭ କରିବ ରାଘବ
ଦୁର୍ଲ୍ଲଭ ନୁହେଁ ମୁକତି ହେ ରଘୁ ନନ୍ଦନ
ବୁଝିରଖ ମୁକତି ଯେ ହାତେ ଥୁଆ ଧନ ।
ଇପ୍‌ସିତ ବସ୍ତୁ ନିମିତ୍ତ ପ୍ରାଣ ଦେବା ପାଇଁ
ମନୁଷ୍ୟ ଯେପରି ପଶ୍ଚାତ୍‌ପଦ ହୁଏ ନାହିଁ ।
ବାସନା ଛାଡ଼ିବା ପାଇଁ କିମ୍ପା ହେ ଶ୍ରୀରାମ
କୃପଣତା ଦେଖାଇବ କେବଣ କାରଣ ?
ବିଷୟ ଓ ବାସନାକୁ ପରିତ୍ୟାଗ କର
ବିକାରଶୂନ୍ୟ ଚିତ୍ତରେ ଦୃଢ଼େ ବସିପାର ।
ଅନତି ବିଳମ୍ବେ ସେହି ମୁହୂର୍ତ୍ତରେ ରାମ
କୃତାର୍ଥତା ଲାଭ କରିବାକୁ ହେବ କ୍ଷମ ।

**ଇତିଶ୍ରୀ ଯୋଗବାଶିଷ୍ଟେ ଲୀଳା ଉପାଖ୍ୟାନେ ବୀଜାଙ୍କୁର ବର୍ଣ୍ଣନେ ନାମ ୪୭ତମ ସର୍ଗଃ ।**



## ୪୮ତମ ସର୍ଗଃ
## ଜୀବ ବିଚାର୍

ପୁଣି ପଚାରନ୍ତି ରାମ ଆହେ ଗୁରୁଦେବ
ଆରେକ ସନ୍ଦେହ ମୋର ମୋଚନ କରିବ ।
ମନରୂପ ଉପାଧିରେ ଯେ ଜୀବ ଜଡ଼ିତ
କି ରୂପେ ସମ୍ବନ୍ଧ ତାର ପରମ ସଂହିତ ?

କି ରୂପେ ବା କେଉଁ ପରକାରେ ସେହି ଜୀବ
ପରମଠାରୁ ସ୍ୱତନ୍ତ୍ର ରହିଛି ହେ ଦେବ ?
ଅବିଦ୍ୟା ଜଡ଼ିତ ବ୍ରହ୍ମ ଯେ ଯେ ଆକାରରେ
ପ୍ରକାଶ ହୁଅନ୍ତି ଏହି ବିଶ୍ୱ ଚରାଚରେ ।
ନିଜକୁ ସେ ସେହିପରି ଶକ୍ତିମାନ ବୋଲି
ମନେ କରୁଥାନ୍ତି ଆହେ ଅଯୋଧ୍ୟାବିହାରୀ ।
ସୃଷ୍ଟିକାଳୁ ଯେଉଁ ଯେଉଁ ରୂପ ସେ ଧରନ୍ତି
ସେ ଶକ୍ତିକୁ ଜୀବ ବୋଲି ପଣ୍ଡିତେ କହନ୍ତି ।
ଚିତ୍ ଶକ୍ତି ଚିତ୍ତ ରୂପେ ସଂସ୍କାର ପ୍ରଭାବେ
ସଂକଳ୍ପ ଉଦୟ ଯୋଗୁଁ ଦ୍ୱୈତଭାବ ଭାବେ ।
ଜନ୍ମ ମୃତ୍ୟୁ ଆଦି ଅନ୍ୟ ଯେତେ ଯେତେ ଭାବ
ଏ ସବୁ ବଶ କରନ୍ତି ଚୈତନ୍ୟ ସ୍ୱଭାବ ।
ଶ୍ରୀରମ କହନ୍ତି ଶୁଣ ଆହେ ମୁନିବର
ଯଦି ଚିତ୍ ଶକ୍ତି ସ୍ୱଭାବ ଏମନ୍ତ ପ୍ରକାର ।
କର୍ମ ଦୈବ, କାରଣ ଏ ସକଳ କଥାର
କି ତାତ୍ପର୍ଯ୍ୟ ଅଛି ମୋତେ କହ ତପୀବର ?
ବଶିଷ୍ଠ କହନ୍ତି ଏବେ ଶୁଣ ରଘୁନାଥ
ଚିତ୍ ଅବସ୍ଥା, ସ୍ପନ୍ଦିତ ପୁଣି ଅସ୍ପନ୍ଦିତ ।
ଅନ୍ୟ କଉଣସି ସତ୍ତା ନାହିଁ ଏ ବିଶ୍ୱରେ
ହେତୁ ରଖିଲେ ସୁଗମ ହେବ ବୁଝିବାରେ ।
ଏ ଚିତ୍ ସର୍ବଦା ରାମ ଶୁଦ୍ଧ ହିଁ ପ୍ରଶାନ୍ତ
ସୃଷ୍ଟି କରଣେ ସେ ଯେବେ ହୁଅଇ ଉଦ୍ୟତ ।
ସେ ଶୁଦ୍ଧ ପ୍ରଶାନ୍ତ ରୂପ ଅବଲମ୍ବନରେ
ସ୍ପନ୍ଦନ ଧର୍ମ ନିଯୋଗ କରେ ନିଜଠାରେ ।
ସ୍ୱଭାବର ଅଜ୍ଞାନରୁ ଚିତ୍ ଯେତେବେଳେ
ନିଜର ଚିତ୍ ଭାବକୁ ଚିତ୍ତରୂପେ କଳେ ।
ସେ କଳ୍ପନା 'ଚିତ୍ ସଂକଳ୍ପ' ନାମ ଗୋଟି ପାଏ
ଏ ବିଷୟ ମନେ ରଖିବଟି ରଘୁରାଏ ।
ସେ ସ୍ପନ୍ଦନ ହୁଏ ଏହି ଜଗତ କାରଣ
ଅସ୍ପନ୍ଦିତ ସ୍ୱରୂପ ତା ଅଟଇ ଯେ ବ୍ରହ୍ମ ।
ଜୀବ, କାରଣ, କରମ ଦୈବ ଏହିମାନ
ଚିତ୍ ସ୍ପନ୍ଦନରେ ନାନା ଅବସ୍ଥାର ନାମ ।
ଯେ ଉପାଧି ସହ ଚିତ୍ ସଂଶ୍ଳିଷ୍ଟ ରହଇ
ସେ ଉପାଧି ଆକାର ସେ ଧାରଣ କରଇ ।
ଶରୀର କାରଣ ରୂପ ସୂକ୍ଷ୍ମ ମହାଭୂତ
ସହିତ ଐକ୍ୟ ଭାବରେ ହୁଅଇ ଜଡ଼ିତ ।

ଶୁକ୍ର ରୂପେ ପିତା ଅଙ୍ଗୁ ନିର୍ଗତ ହୋଇଣ
ସ୍ୱର୍ଗ ମୁକ୍ତି ବନ୍ଧନରେ ଦେହ ଧରେ ଜାଣ ।
ଯେ ପ୍ରଭେଦ ଅଛି ରାମ ପିତା ପୁତ୍ରଠାରେ
ତାହା ଯେ ଉପାଧିକୃତ କୌଶଲ୍ୟା କୁମରେ ।
ଉଭୟଙ୍କ ଚଇତନ୍ୟ ଏକଇ ପଦାର୍ଥ
ଅଙ୍ଗ ଜଡ଼ିତ ବିଭିନ୍ନ ଉପାଧି ତଫାତ ।
ଦେହର ଉପାଦାନ ଯେ ପଞ୍ଚ ମହାଭୂତ
ନାନା ରୂପରେ ସର୍ବଦା ସେ ବିକାରଗ୍ରସ୍ତ ।
ସେହି ବିକାର ମାନହିଁ ଭେଦର କାରଣ
ପ୍ରଧାନ ହେତୁଟି ରାମ ଏକମାତ୍ର ଜାଣ ।
ଏ ଚିତ୍ ନିତ୍ୟ ପଦାର୍ଥ ହୋଇଲେ ହେଁ ରାମ
ମୁଁ ମଲି, ମୁଁ ଜନ୍ମିଲି ଏ ଭ୍ରାନ୍ତି ଆଣେ ଜାଣ ।
ମଥୁରା ରାଜ୍ୟ ଲବଣ ନୃପତି ଯେପରି
ସ୍ୱପ୍ନ ଭ୍ରମେ ନିଜକୁ ଚଣ୍ଡାଳ ମନେକରି ।
ତେସନ ଏ ଚିତ୍ ସଂସ୍ମରଣୁ ହେ ଶ୍ରୀରାମ
ଜନମ ହୋଇ ଅଛଇ ଏ ଜଗତ ଭ୍ରମ ।
ଅବିଦ୍ୟା ମୁଗ୍ଧ ଚିତ୍ତର ଏ ଜଗତ ଭ୍ରମ
ଉପୁଜଇ ବ୍ରହ୍ମଠାରେ ହେ ରଘୁନନ୍ଦନ ।
ଏ ଚିତ୍ ସଲୀଳ ପୂର୍ଣ୍ଣ ସେ ବ୍ରହ୍ମ ସାଗରେ
ଜୀବ ଆବର୍ତ୍ତନ, ଚିତ୍ତ ତରଙ୍ଗ ରୂପରେ ।
ସ୍ୱର୍ଗ ନରକ ପ୍ରଭୃତି ବୁଦ୍ ବୁଦ୍ ଆକାରେ
ଉତ୍ପନ୍ନ ହେଉ ଅଛଇ ଅବାଧ ଗତିରେ ।
ଦୃଶ୍ୟ ପଦାର୍ଥ ମାତ୍ରା ହିଁ ପରମାତ୍ମାଙ୍କର
ଅବିଦ୍ୟା ବିଧ୍ୱଂସୀ ଆତ୍ମନିଷ୍ଠା ରୂପ ବୀର ।
ଦୃଶ୍ୟମାନ ଜୀବମାନ ଭ୍ରମନ୍ତି ଏମାନେ
ଚିତ୍ତ, ମନ, ବୁଦ୍ଧି ଅହଙ୍କାର ଆଦି ନାମେ ।
ଗନ୍ଧର୍ବ ନଗର ପରି ମିଥ୍ୟା ଏ ଜଗତ
ମନ ଏ ମାୟାଜାଲକୁ କରେ ବିସ୍ତାରିତ ।
ତନ୍ମାତ୍ରା ବଳରେ ମନ କଳ୍ପନା ରାଜ୍ୟରେ
ଅସତ୍ୟକୁ ସତ୍ୟ ବୋଲି ପ୍ରମାଣିତ କରେ ।
ହେ ରାମ ଚିତ୍ତର ଯାହା ଜଗତ ଦର୍ଶନ
ଭ୍ରାନ୍ତିମୟ ତାହା ଯଥା ସ୍ୱପ୍ନ ଦରଶନ ।
ନିର୍ବିକାର ନିରଞ୍ଜନ ଯେ ପରମ ଆତ୍ମା
ସର୍ବହୃଦେ ଏକଭାବେ ବିରାଜେ ମହାତ୍ମା ।
କିଛି ସେ ଦେଖନ୍ତି ନାହିଁ ଏ ବିଶ୍ୱ ସୃଷ୍ଟିରେ
ସ୍ୱମାୟା ଚିତ୍ତଭ୍ରମ ସେ ଅନୁଭବ କରେ ।

ଅସତ୍ୟ ଅଟେ ହେ ରାମ ଏ ଜଗଦ୍ଦର୍ଶନ
"ଜାଗ୍ରତ" ଅତୀତ ଏହା ହେ ରଘୁନନ୍ଦନ ।
"ସ୍ୱପନ" ଅତୀତ 'ଅହଙ୍କାର' ବୋଲି ଧର
'ସୁଷୁପ୍ତି' ଅତୀତ ଅଟେ ଚିତ୍ତର ବିକାର ।
ତିହ୍ନିଙ୍କ ଅତୀତ ଅଟେ ସ୍ୱଭାବ ଚିତ୍ତର
ଅନୁଭବ କର ରାମ ମୋର କହିବାର ।
ଏ ତିନି ଅବସ୍ଥାତୀତ ସେହି ନିରାମୟ
ସୂର୍ଯ୍ୟ ପଦେ ସ୍ଥିତ ହେଲେ ହେ ରଘୁ ତନୟ ।
ସମୂଳେ ବିଧ୍ୱଂସ ହେବ ସର୍ବଦୁଃଖ ଶୋକ
ଭୁଲିବ ନାହିଁ ଏକଥା ଆହେ ସୁବିବେକ ।
ବୃକ୍ଷମାନେ ଯେ ବର୍ଦ୍ଧିତ ହୁଅନ୍ତି ହେ ରାମ
ଆକାଶ କେବେହେଁ ନୁହେଁ ତାହାର କାରଣ ।
ବୃକ୍ଷ ବୃଦ୍ଧି ନ ରୋଧଇ ଯେଣୁ ସେ ଆକାଶ
ତେଣୁ ନଭ ଯୋଗୁଁ ବୃକ୍ଷ ବୃଦ୍ଧିର ବିକାଶ ।
ଆକାଶ ବୃକ୍ଷ ବୃଦ୍ଧିର ନୁହଇ କାରଣ
ଯେହେତୁ ତା' ନରୋଧଇ ବୃକ୍ଷ ବିକାଶନ ।
ନିଷ୍କ୍ରିୟ ପରମ ଆତ୍ମା ଏ ବିଶ୍ୱ ସଂସାରେ
କାହାରି ହେତୁ ନୁହନ୍ତି ବୁଝ ରଘୁବୀରେ ।
କିନ୍ତୁ କାହାରି ବିରୋଧ ଯେଣୁ ନ କରନ୍ତି
ଏ ମାୟା କୃପା ସୃଷ୍ଟିର କରତା ବୋଲାନ୍ତି ।
ଦର୍ପଣକୁ ପ୍ରତିବିମ୍ବ କାରଣ ବୋଲାନ୍ତି
ଯେଣୁ ତାହା ନିକଟରେ ଥାଏ ରଘୁପତି ।
ନିକଟେ ଥିବା ହେତୁରୁ ଆତ୍ମ ଚଇତନ୍ୟ
ବର୍ଣ୍ଣିତ ହୁଏ ତା ବ୍ରହ୍ମଜ୍ଞାନର କାରଣ ।
ବୀଜରୁ ଅଙ୍କୁର ଡାଳ ପତ୍ର ଫୁଲ ଫଳ
ତେସନ ଚିତ୍ ହିଁ ଚିତ୍ତ, ଜୀବ, ମନ ମୂଳ ।
ମାଟି ଖୋଳି ନେଲେ ଯଥା ଆକାଶ ଉତ୍ପତ୍ତି
ବିଚାର ଦୃଷ୍ଟିରୁ ତଥା ଯାବତୀୟ ସୃଷ୍ଟି ।
ପର୍ଯ୍ୟବସିତ ହୁଅଇ ଚୈତନ୍ୟ ତେସନ
ମନକୁ ପାଉଛି କି ହେ ଶ୍ରୀ ରଘୁନନ୍ଦନ ?
ବନ ପ୍ରତିବିମ୍ବ ଦେଖି ସ୍ଫଟିକ କାଚରେ
ଯଥାର୍ଥ ବନ ବୋଲିଣ ଅଜ୍ଞ ମନେ କରେ ।
ଅବିଦ୍ୟା ବିମୁଗଧ ବ୍ୟକ୍ତି ସେହି ପରକାରେ
ଦେଖଇ ଜଗତ ପରଂବ୍ରହ୍ମଙ୍କ ମଧରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଜୀବବିଚାର ବର୍ଣ୍ଣନେ**
**ନାମ ୪୮ତମ ସର୍ଗଃ ।**



## ୪୯ତମ ସର୍ଗଃ
## ସଂଶ୍ରିତ ଉପଶମ ଯୋଗ

ରାମ ବୋଇଲେ ମହର୍ଷେ କି ଆଶ୍ଚର୍ଯ୍ୟ କଥା
ପରିଦୃଶ୍ୟମାନ ବିଶ୍ୱ ହୋଇଲେ ହେଁ ମିଥ୍ୟା ।
ଅହରହ ସତ୍ୟ ପରି ହୁଏ ପ୍ରତିଭାତ
କିସ କାରଣ ଏହାର କହ ତପୋବନ୍ତ ?
ସମଷ୍ଟି ଓ ବ୍ୟଷ୍ଟି ଏହି ବେନି କଳେବର
ସମଷ୍ଟି ବ୍ୟଷ୍ଟ୍ୟଭିମାନୀ ଜୀବ ବୈଶ୍ୱାନର ।
କିପରି ଏହାଙ୍କ ସୃଷ୍ଟି କହ ତପୋଧନ ?
ଏ ଘେନି ମନ ମୋହର ତିମିର ଆଚ୍ଛନ୍ନ ।
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ଅଶରୀରୀଭୂତ ଯଥା ବାଳକ ପାଶର ।
ସଶରୀର ରୂପେ ସେହୁ ପ୍ରତୀତ ହୁଅଇ
ନିରାକାର ରୂପେ ଜୀବ ବ୍ରହ୍ମେ ସ୍ଥିର ଥାଇ ।
ପୂର୍ବ କଳ୍ପର ସଂସ୍କାର ବାସନା ଜନିତ
ଜୀବଭାବ ଧରି ବ୍ରହ୍ମ ହୋଇଥାଏ ଜାତ ।
ତେଣୁ ଏକ ମତେ ଜୀବ ବୋଲାଇ ବିଶୁଦ୍ଧ
ବାସନାରୁ ଜାତ ଯେଣୁ ବୋଲାଇ ଅଶୁଦ୍ଧ ।
ତେଣୁ ଜୀବ ଅଟେ ସତ୍ୟ ଆବର ଅସତ୍ୟ
ପରମାତ୍ମାଠାରୁ ଭିନ୍ନ ପୁନଶ୍ଚ ଜଡ଼ିତ-।
ଜୀବ ଭାବ ଧରି ବହୁ ଜୀବ ରୂପ ଧରେ
ମନନ ବଳେ ଜନମେ ମନ ଆକାରରେ ।
ତନ୍ମାତ୍ରା ଚିନ୍ତିଲେ ତତ୍ରୂପେ ସେ ଧରଇ
ପରେ ଚିଦାକାଶେ ପୂର୍ଣ୍ଣରୂପେ ଶୋଭା ପାଇ ।
ସମଷ୍ଟି ମନ ସ୍ୱରୂପ ହିରଣ୍ୟ ଗର୍ଭରେ
ଅସଂଖ୍ୟ ବ୍ରହ୍ମାଣ୍ଡ ରୂପେ ନିଶ୍ଚିନ୍ତେ ବିଚରେ ।
ଯାବତ ସୂକ୍ଷ୍ମ ଶରୀର ତାମ ମଧ୍ୟେ ଥାଆନ୍ତି
ସେମାନେ ମଧ୍ୟ ତହିଁରେ ନିଶ୍ଚିନ୍ତେ ବସନ୍ତି ।
କୌଣସି ନିର୍ଦ୍ଦିଷ୍ଟ ଅଭିପ୍ରାୟ ତା ନ ଥାଇ
ଅସ୍ଫୁଟ ଜ୍ଞାନ କେବଳ ଆଭାସ ମିଳଇ ।
ପ୍ରାକ୍ତନ ସଂସ୍କାର ପୁଣି ହୁଅନ୍ତେ ଉଦୟ
ଜଗତତ୍ତ୍ୱ ଶବ୍ଦାର୍ଥ ଅସ୍ଫୁଟ ଜ୍ଞାନଚୟ ।
ଉତ୍ପତ୍ତି ଲଭିଣ ଅହଂ ଭାବେ ପ୍ରକାଶନ୍ତି
ବାହ୍ୟ ରୂପ ରସ ଆଦି ଅନୁଭୂତ ହୋନ୍ତି ।
ଅନ୍ତରେ ଚକ୍ଷୁ, ରସନା, ଇନ୍ଦ୍ରିୟ ଇତ୍ୟାଦି
ଅନୁଭବ କରିଥାଏ ଆହେ ରଘୁନିଧି ।

ଏହି ରୂପେ ଧୀରେ ଧୀରେ ଜୀବ ଦେହ ଭାବ
ଅନୁଭବ କରିଥାଏ ଜାଣ ହେ ରାଘବ ।
ଏହି ଯେ କଳ୍ପନାତ୍ମକ ଇନ୍ଦ୍ରିୟାଦିମାନ
ବାସ୍ତବ ଅଙ୍ଗ ପ୍ରତ୍ୟଙ୍ଗ ବୁଝିବ ଶ୍ରୀରାମ ।
ସମଷ୍ଟି ଜୀବ ଭାବରେ ବ୍ରହ୍ମାଙ୍କ ଶରୀର
ଏହି ପ୍ରକ୍ରିୟାରେ ସୃଷ୍ଟ ଆହେ ରଘୁବୀର ।
ବ୍ୟଷ୍ଟି ଜୀବଙ୍କର ଆତିବାହିକ ଶରୀର
ଏ ନିୟମେ ବନ୍ଧା ପୁଣି କୌଶଲ୍ୟା ଦୁଲାଳ ।
ଅବ୍ୟକ୍ତ ପରମ ଆତ୍ମା ଅଜ୍ଞାନାବରଣେ
ଆତିବାହିକ ଶରୀର ଧରନ୍ତି ଆପଣେ ।
ବ୍ରହ୍ମ ଦର୍ଶନେ ପ୍ରମାତା, ପ୍ରମେୟ, ପ୍ରମାଣ
ସକଳ ପ୍ରକାର ଭେଦ ଯାଏ ଅନ୍ତର୍ଦ୍ଧାନ ।
ଆତିବାହିକ ଶରୀର କିପରି ବର୍ତ୍ତିବ
ବୁଝାଇ ଦେବ କି ମୋତେ ହେ ରଘୁ ପୁଙ୍ଗବ ?
ସେହି ପରମ ସତ୍ତା ହିଁ ଭାବନାର ବଳେ
ସର୍ବ ଭାବେ ପ୍ରକାଶିତ ଏ ବିଶ୍ୱ ସୃଷ୍ଟିରେ ।
ଭାବନା ଅଭାବେ ପ୍ରତିଷ୍ଠିତ ସ୍ୱରୂପରେ
ଆଉ କି ରହିଲା ପୁଣି ଆହେ ରଘୁବୀରେ ?

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ସଂଶ୍ରିତ ପରମ ଯୋଗ ବର୍ଣ୍ଣନେ**
**ନାମ ୪୯ତମ ସର୍ଗଃ ।**



## ୫୦ତମ ସର୍ଗଃ

## ସତ୍ୟୋପଦେଶ

କହନ୍ତି ଶ୍ରୀରାମ ଆହେ ଶୁଣ ବ୍ରହ୍ମପତି
ବ୍ରହ୍ମ ଯେବେଟି ଚିନ୍ମାତ୍ର ସ୍ୱରୂପ ଅଟନ୍ତି ।
ତହିଁ ଅଜ୍ଞାନର ସ୍ଥିତି ଅତି ଅସମ୍ଭବ
ଭେଦ କଳପନା ତହିଁ କିପରି ସମ୍ଭବ ?
ମୁକ୍ତି ଅମୁକ୍ତି ଇତ୍ୟାଦି ଭେଦ କଳପନା
କାହୁଁ ସମ୍ଭୁବୁଛି କହ ଆହେ ମହାମନା ?
ବଶିଷ୍ଠ ବୋଇଲେ ତୁମେ ଯଥା ସମୟରେ
ଉପଯୁକ୍ତ ପ୍ରଶ୍ନ ଉଠାଇଛ ରଘୁବୀରେ ।
ଅମଙ୍ଗଳପ୍ରଦ ବୋଲି ଅକାଳ କୁସୁମା
ଆଦୃତ ହୁଅଇ ନାହିଁ ହେ ରଘୁନନ୍ଦନ ।
ଅସମୟ ପ୍ରଶ୍ନ ତେହ୍ନେ ନୁହେଁ ଫଳପ୍ରଦ ।
ଏହି ମତ ଦେଇଥାନ୍ତି ସକଳ ବିବୁଧ ।
ପିତାମହ ଭାବଧରି ଯଥାକାଳେ ଜୀବ
ହିରଣ୍ୟ ଗର୍ଭ ରୂପରେ ହୁଏ ଆବିର୍ଭାବ ।
ଓଁ କାର ଉଚ୍ଚାରି ସେହୁ ମନୋମୟ ରାଜ୍ୟେ
ସମ୍ବେଦନ କ୍ରମେ ସ୍ୱୀୟ ସାମ୍ରାଜ୍ୟ ସରଜେ ।
ବ୍ରହ୍ମ ଦୃଷ୍ଟିରେ ସମଷ୍ଟି ମନୋମୟ ରାଜ୍ୟ
ଯେପରି ଅସତ ଆହେ ରଘୁକୁଳ ରାଜ ।
ଅସତ୍ୟ ସେପରି ବ୍ୟଷ୍ଟି ମନୋମୟ ରାଜ୍ୟ
ସୁବିଶାଳ ଚିଦାକାଶେ କୌଶଲ୍ୟା ତନୁଜ ।
ବାସ୍ତବରେ ଏ ଜଗତେ କେହି ନ ଜନ୍ମଇ
କେହି ତ ମରଇ ନାହିଁ ଜାଣ ରଘୁରାଇ ।
ଗନ୍ଧର୍ବ ନଗର ସମ ଏ ମହା ଜଗତ
ପ୍ରକାଶ ପାଉ ଅଛଇ ଆହେ ରଘୁନାଥ ।
ବ୍ୟଷ୍ଟି ସମଷ୍ଟି ଯେତେକ ଜୀବଧାରୀଗଣ
ଜ୍ଞାନୀଙ୍କୁ ଅସତ ସତ୍ୟ ଭାବନ୍ତି ଅଜ୍ଞାନ ।
ବ୍ରହ୍ମରୁ କୀଟ ପର୍ଯ୍ୟନ୍ତ ସବୁରି ଉଦ୍ଭବ ।
ସମାନ ଅଟଇ ବୋଲି ବୁଝିବ ରାଘବ ।
ବିଶୁଦ୍ଧ ସତ୍ତ୍ୱ ଗୁଣରୁ ବ୍ରହ୍ମା ଯେ ମହାନ
ମଳିନ ସତ୍ତ୍ୱରୁ କୀଟ ନଗଣ୍ୟ ନଗଣ୍ୟ ।
ଉପାଧି ଅନୁକ୍ରମରେ ଜୀବର ପ୍ରକାର
ପୁରୁଷକାର, ତାହାର ସେହି ପରକାର ।
ଯେପରି ପୁରୁଷକାର ସେପରି କରମ
ଫଳ ଭୋଗ୍ୟ ମଧ୍ୟ ଅନୁରୂପ ତାର ଜାଣ ।
ସୁକୃତି ଫଳରୁ ହୁଏ ବ୍ରହ୍ମାଙ୍କ ଜନମ
ଦୁଷ୍କୃତି ଫଳରୁ କୀଟ ଆଦି ଉତପନ୍ନ ।
ଚିନ୍ମାତ୍ର ଜ୍ଞାନ ଅଭାବେ ଏ ଭେଦ ସକଳ
ସେହି ଜ୍ଞାନ ଉଦୟରେ ଏ ଭେଦ ନିର୍ମୂଳ ।
ଜ୍ଞାତା, ଜ୍ଞାନ, ଜ୍ଞେୟ ରାମ ଏ ଆଦି ଯେତେକ
ଚିନ୍ମାତ୍ରାରୁ ଭେଦ ନୁହନ୍ତି ହେ ସୁବିବେକ ।
ତେଣୁ ଦ୍ୱୈତ ଅଦ୍ୱୈତର ଭେଦ ହେ ଶ୍ରୀରାମ
ଶଶାଶୃଙ୍ଗ, ନଭପୁଷ୍ପ ପରି ସରିସମ ।
ନିଜେ ନିଜର ବନ୍ଧନ ରଚେ କୋଷକାର
ଦ୍ୱୈତଭାବ ବୁଝେ ବ୍ରହ୍ମ ନିଜ ମାୟାବଳ ।
କର୍ମଫଳ ଅନୁସାରେ ବ୍ୟଷ୍ଟି ଜୀବ ପାଇଁ
ସମଷ୍ଟି ମନ ଯେ ବ୍ରହ୍ମା ବସ୍ତୁ ଉପୁଜାଇ ।
ଜଗତର ଜନ୍ମ, ସ୍ଥିତି, ବୃଦ୍ଧି ଓ ବିନାଶ
ଏ ସମସ୍ତ ମିଥ୍ୟା ଅଟେ ଆହେ ରଘୁଈଶ ।

ସର୍ବବ୍ୟାପି ପରଂବ୍ରହ୍ମ ଆତ୍ମଜ୍ଞାନ ବିନା
ପରିଦୃଷ୍ଟ ହୋଇଥାନ୍ତି ଆକାରରେ ନାନା ।
ଅତତ୍ତ୍ୱଦର୍ଶୀ ଯେ ଦେଖେ ଆକାରରେ ଭେଦ
କ୍ଷୁଦ୍ରବୁଦ୍ଧି ଦେଖେ ଜଳ, ତରଙ୍ଗ ପ୍ରଭେଦ ।
ମନ ଆକାରରେ ଆତ୍ମା ପ୍ରଥମେ ପ୍ରକାଶ
ମନରୁ ତତ୍ ପରେ ଅହଂକାରର ବିକାଶ ।
ନିର୍ବିକଳ୍ପ ଅବସ୍ଥାର ମନ ରହିଥାଏ
କଳପନା ବଳେ ଅହଂକାର ବଶ ହୁଏ ।
ଅହଂଭାବାକ୍ରାନ୍ତ ଯେତେବେଳେ ହୁଏ ମନ
ପ୍ରାକ୍ତନ ସ୍ମୃତି ତାହାର ହୁଅଇ ସ୍ମରଣ
ପଞ୍ଚ ମହାଭୂତଙ୍କର ସୃଷ୍ଟି ତେତେବେଳେ
ଅନାୟାସେ ହୋଇଥାଏ ଜାଣ ରଘୁବୀରେ ।
ଭୂତ ତନ୍ମାତ୍ରା କଳ୍ପିତ ହୋଇଯିବା ପରେ
ଚିତ୍ତରୂପୀ ଜୀବ ବ୍ରହ୍ମେ ଜଗତ୍ ଦେଖିପାରେ ।
ସତ, ଅସତ ଇତ୍ୟାଦି ଯାହାଭାବେ ମନ
ତାହାକୁ ହିଁ ସତ୍ୟାକାରେ ଦେଖଇ ନୟନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ସତ୍ୟୋପଦେଶ ଯୋଗ**
**ନାମ ୪୫ତମ ସର୍ଗଃ ।**



## ୫୧ତମ ସର୍ଗଃ

## ବିସୂଚିକା ବ୍ୟବହାର୍

ବଶିଷ୍ଠ କହନ୍ତି ରାମ ମନଦେଇ ଶୁଣ
ଏକ ରାକ୍ଷସୀ ପ୍ରସଙ୍ଗ କରୁଛି ବଖାଣ ।
ପୁରାତନ ଇତିହାସ କହେ ଯେଉଁପରି
ସେ କଥାକୁ ବର୍ଣ୍ଣୁଅଛି ଗୋଟି ଗୋଟି କରି ।
ଯେ ସଂଶୟମାନ ତୁମ ମନରେ ଜାଗ୍ରତ
ସେ ସବୁ ସମ୍ପୂର୍ଣ୍ଣ ରୂପେ ହେବ ଦୂରୀଭୂତ ।
ହିମାଳୟ ପର୍ବତର ଉତ୍ତର ଭାଗରେ
କର୍କଟୀ ନାମୀ ରାକ୍ଷସୀ ସୁଖେ ବାସକରେ ।
ଦ୍ୱିତୀୟ ନାମ ତାହାର ଥିଲା ବିସୂଚିକା
ତୃତୀୟ ନାମ ତାହାର ଥିଲାକ 'ବାଧିକା' ।
କଜ୍ଜଳ ନିନ୍ଦଇ ତାର ଶରୀର ବରନ
ସକଳ କାର୍ଯ୍ୟ କଳାପ ଅନୀବ ଭୀଷଣ ।
ଦେଖିବାକୁ କୃଶାଙ୍ଗୀ ସେ ରାକ୍ଷସୀ ଦୁର୍ବାର
ନରକଙ୍କାଳ ଝୁଲଇ କଣ୍ଠ ଦେଶେ ତାର ।
ନୟନ ଝଟକେ ତାର ବିଜୁଳୀକୁ ଜିଣି
ଜିହ୍ୱା ଲହ ଲହ ଅଗ୍ନି ତେଜ ପରିମାଣି ।
କୁଲାପରି ନଖ ତାର ଅତି ଭୟଙ୍କର
ବଇଡୁର୍ଯ୍ୟ ମଣିଠାରୁ ଅତି ଦୀପ୍ତିତର ।
ଖଜୁରୀ ଗଛକୁ ଜିଣି ଗୋଡ଼ମାନ ତାର
ତମାଳ ଗଣ୍ଡି ସଦୃଶ ଜାନୁ ଭୟଙ୍କର ।
ବେତାଳମାନଙ୍କ ସହ ନୃତ୍ୟ ପରାୟଣ
ହେଲାବେଳେ ଦେଖାଯାଏ ଅତୀବ ଭୀଷଣ ।
ନରକଙ୍କାଳମାଳାର ଘର୍ଘର ଶବଦ
ହୃତକମ୍ପ ଜନ୍ମାଇ କର୍ଣ୍ଣ କରିଦିଏ ସ୍ତବ୍ଧ ।
ଊର୍ଦ୍ଧ୍ୱହସ୍ତା ହୋଇ ଯେବେ କରୁଥାଏ ନୃତ୍ୟ
ମନେହୁଏ ଟାଣିବକି ଶଶାଙ୍କ ଆଦିତ୍ୟ ।
ଉଦର ପୂରିବା ପାଇଁ ନପାଏ ଆହାର
ଜଠର ଜ୍ୱାଳାରେ ସଦା ଛାଡ଼ଇ ହୁଁ କାର ।
ଯେପରି ବଡ଼ବାନଳ ସଦା ଅତୃପତ
କ୍ଷୁଧା ଜ୍ୱାଳାରେ ରାକ୍ଷସୀ ସର୍ବଦା ଅତୃପ୍ତ ।
ଏକଦିନେ ରାକ୍ଷସୀ ଯେ କ୍ଷୁଧାର୍ତ୍ତ ହୋଇଣ
ଚିନ୍ତିଲା କେସନେ ହେବ କ୍ଷୁଧା ନିବାରଣ ।
ସିନ୍ଧୁ ଯଥା ନଦନଦୀ ଆଦି ଗ୍ରାସ କରେ
ଜମ୍ବୁଦ୍ୱୀପ ପ୍ରାଣୀଙ୍କୁ ମୁଁ ଯଦି ଗ୍ରାସିପାରେ ।
କିଞ୍ଚିତ ମୋ ଜଠରାଗ୍ନି ହୋଇପାରେ ଶାନ୍ତ
ଦେଖାଯାଉ ଯଦି କିଛି ଆଉ ହୁଏ ପ୍ରାପ୍ତ ।
ଏ ସବୁକୁ ଏକସଙ୍ଗେ ଗିଳିଦେବା ପାଇଁ
ଯୁକ୍ତିଯୁକ୍ତ ହେବ କିନା ଏହା ମୁଁ ଭାବଇ ।
ସେମାନଙ୍କ ମଧ୍ୟେ କେହୁ କରେ ଦେବାର୍ଚ୍ଚନା
ମନ୍ତ୍ର, ଯନ୍ତ୍ର, ତନ୍ତ୍ର ଆଦି କରେ କେ ସାଧନା ।
ଯଜ୍ଞ, ଦାନ, ଜପ, ତପ କେହୁ ଆଚରନ୍ତି
ଅସାଧ୍ୟ ସାଧନ କରି ସୁରକ୍ଷିତଛନ୍ତି ।
ଏକ ସଙ୍ଗେ ସମସ୍ତଙ୍କୁ କିପରି ଗିଳିବ ?
ତେଣୁ କଠୋର ତପସ୍ୟା ମୁହିଁ ଆଚରିବି ।
ତପବଳେ ବଳୀୟାର ହୋଇ ମୁଁ ପାରିଲେ
ସମସ୍ତଙ୍କୁ ସ୍ୱାହା କରି ଦେଇପାରେ ହେଳେ ।
ଭଲେ ମୁଁ ଶୁଣିଛି ଏହା ସାଧୁ ବଚନରେ
ଅସାଧ୍ୟ ସାଧନ ହୁଏ ତପସ୍ୟା ବଳରେ ।
ଏହା ଭାବି ସେ ରାକ୍ଷସୀ ହିମାଳୟେ ଗଲା
ଗିରିଶୃଙ୍ଗେ ଉଭା ହୋଇ ତପସ୍ୟା ସାଧିଲା ।

ଏକପାଦେ ଭାରା ଦେଇ ଉଭା ସେ ରହଇ
ଉର୍ଦ୍ଧ୍ୱମୁଖୀ ହୋଇ ବ୍ରହ୍ମା ପଦେ ମନ ଦେଇ ।
ଏମନ୍ତେ ତପସ୍ୟା କରି ଦିନ, ପକ୍ଷ, ମାସ
ଋତୁ, ବର୍ଷ ହୋଇ ଯୁଗ ଯୁଗ ଗଲା ଶେଷ ।
ଆଠସସ୍ର ବର୍ଷ ଏହିପରି ବିତିଯାଇ
କ୍ଷୁଧା, ତୃଷା, ଶୀତ, ତାପ ତାକୁ ନ ବାଧଇ ।
କୃପାକରି ବ୍ରହ୍ମା ଆସି ପାଶେ ପହଞ୍ଚିଲେ
ରାକ୍ଷସୀ ତାହାଙ୍କୁ ମନେ ମନେ ପ୍ରଣମିଲେ ।
ମନେ ମନେ ସେ ରାକ୍ଷସୀ ଏମନ୍ତ ଭାବଇ
"କି ବର ପ୍ରାର୍ଥନା ଏବେ କରିବଇଁ ମୁହିଁ ।
ଆୟସୀ ଓ ଅନାୟସୀ ସୂଚୀ ମୁଁ ହୋଇଲେ
ଅକ୍ଳେଶରେ ଜୀବ ହୃଦେ ପଶିବଇଁ ଭଲେ ।
ସମସ୍ତଙ୍କୁ ଗ୍ରାସିବାକୁ ହୋଇବି ସକ୍ଷମ
ତେବେ ହୋଇ ପାରିବ ମୋ କ୍ଷୁଧା ନିବାରଣ ।"
ତା ଚିନ୍ତା ଦେଖି ବ୍ରହ୍ମ ଏ ବୋଲନ୍ତି ବଚନ
ହୋଇଛି ମୁଁ ତୋଷ ଦେଖି ତୋ ତପ ସାଧନ ।
ଏବେ ବର ଘେନ ମାଗୋ ଏବେ ବର ଘେନ
ଯାହା ତୁ ମାଗିବୁ ତାହା କରିବି ପ୍ରଦାନ ।
କର୍କଟୀ କହଇ ଭୂତ ଭବିଷ୍ୟ, ବ୍ରହ୍ମନ୍
ଏହି ବର ମୋତେ ଦେବ କରିବା ପ୍ରଦାନ ।
ଅନାୟସୀ ଓ ଆୟସୀ ଜୀବସୂଚୀ ମୋତେ
ପାରିଲେ ପ୍ରଦାନ କର ଆହେ ମହାମତେ ।
ବଶିଷ୍ଠ ବୋଇଲେ ବ୍ରହ୍ମଲୋକ ପିତାମହ
ରାକ୍ଷସୀର କାର୍ଯ୍ୟ ଯାହା ନର ଦୁର୍ବିସହ ।
ତଥାପି ତାହାକୁ ବର ଦେବାକୁ ପଡ଼ିବ
ଯେହେତୁ ତପସ୍ୟା ତାର ଦୁର୍ଜ୍ଜୟ ଅତୀବ ।
ଏସନ ଭାବି ବ୍ରହ୍ମାଏ ବୋଲନ୍ତି ବଚନ
"ତୋର ଅଭିଳାଷ ଏବେ କରିବି ପୂରଣ ।
ସୂଚିକା ସ୍ୱରୂପ ତୁହି ଧାରଣ କରିବୁ
ଉପସର୍ଗ ଯୋଗେ 'ବିସୂଚିକା' ବୋଲାଇବୁ ।
ମୋ ବର ପ୍ରଭାବେ ତୁହି ସୂକ୍ଷ୍ମ ମାୟା ବଳେ
ଅସାଧୁ ଶରୀରେ ପ୍ରବେଶିବୁ କୁତୂହଳେ ।
କୁକର୍ମୀ, କୁଭୋଜୀ, ଆଉ କୁଦେଶ, ଆବାସ
ଏମାନଙ୍କୁ ଦେଉଥିବୁ ତୁହି ମହାତ୍ରାସ ।
ଦୁଷ୍ଟ ମୂର୍ଖ ଲୋକ ପ୍ରତି ବିସୂଚିକା ରୂପେ
ହିଂସା ତୁ କରିବୁ ବସ୍ଥେ ପ୍ରଦାନୀ ସନ୍ତାପେ ।
ବସନ୍ତ, ହଇଜା, ମିଳିମିଳା, ବାୟୁ, ଶ୍ୱାସ
ଗ୍ରହଣୀ, ଯକୃତ, ପ୍ଲିହା ଆଦି ଅନ୍ତକୋଷ ।
ଏହି ରୋଗ ରୂପ ଧରି କ୍ଷୁଧା ନିବାରିବୁ
ଅକ୍ଷରେ ଅକ୍ଷରେ ମୋର ଆଦେଶ ପାଳିବୁ ।
ଗୁଣବାନ ଲୋକ ଯେହୁ ଶୁଦ୍ଧପୂତ ହୋଇ
ବିସୂଚିକା ମନ୍ତ୍ର ଗୋଟି ପଠନ କରଇ ।
ତା ଦେହରେ କଦାଚନ ପ୍ରବେଶିବୁ ନାହିଁ
ହିମାଳୟ କନ୍ଦରରେ ଲୁଚିବୁ ତୁ ଯାଇ ।

× × × × ×

ମନ୍ତ୍ର–
ଓଁ ହ୍ରୀଂ ହ୍ରାଂ ଶ୍ରୀଂ ରାଂ ବିଷ୍ଣୁ ଶକ୍ତଷେ
ନମୋ ଭଗବତୀ ବିଷ୍ଣୁ ଶକ୍ତି ଏହି ଏନାଂ
ହରହର ଦହଦହ ହନହନ ପଚପଚ
ମଥମଥ ଉତ୍ସାଦୟ ଉତ୍ସାଦୟ ଦୂରେ
କୁରୁକୁରୁ ସ୍ୱାହା । ବିସୂଚକେ ତ୍ୱଂ ହିମବନ୍ତଂ
ଗଛଗଛ ଜୀବସାର ଚନ୍ଦ୍ରମଣ୍ଡଳ ଗତ୍ୱୋଽସି
ସ୍ୱାହା

× × × × ×

ଅନାୟସୀ – ବ୍ୟାଧିରୂପିଣୀ ।
ଆୟସୀ – ଲୌହମୟୀ ।

ପ୍ରଥମେ ମନ୍ତ୍ରଜ୍ଞ ବ୍ୟକ୍ତି ଏମନ୍ତ କରିବ
ଶୁଦ୍ଧପୂତ ହୋଇ ନିଜ ଦେହକୁ ଶୋଧିବ ।
ନିଜ ବାମ କରେ ଏହି ମନ୍ତ୍ରକୁ ଲେଖିବ
ମନ୍ତ୍ର ପାଠକରି ବ୍ୟାଧିଗ୍ରସ୍ତକୁ ଝାଡ଼ିବ ।
ଶୁଚିବନ୍ତ ହୋଇ କଲେ ମନ୍ତ୍ର ଉଚ୍ଚାରଣ
ସକଳ ବ୍ୟାଧିମାନ ଯେ ହେବ ନିବାରଣ ।
ଏତେ କହି ପିତାମହ କରିଲେ ପ୍ରସ୍ଥାନ
ବିସୂଚିକା ଦେବୀ ତହୁଁ ହୋଇଲେ ମଉନ ।
ବ୍ରହ୍ମାଙ୍କ ନିକଟୁ ସେହୁ ବରପ୍ରାପ୍ତ ହୋଇ
ରାକ୍ଷସୀ କ୍ରମଶଃ ସୂକ୍ଷ୍ମ ଆକୃତି ଧରଇ ।
ଲୌହ ସୂଚୀ, ଜୀବସୂଚୀ ଆକାର ଧରିଣ
ଜମ୍ବୁଦ୍ୱୀପେ ଯାଇ ସେହୁ କରଇ ଭ୍ରମଣ ।
ଯଦିଓ ସେ ଲୌହସୂଚୀ ପରି ଦେଖାଯାଏ
ଲେଶମାତ୍ର ଲୌହ ତାର ଶରୀରେ ନଥାଏ ।
ତାହାର ସେ ଆତ୍ମା ଭ୍ରମ ସଙ୍କୁଳ ହେଲେହେଁ
ଅବିକଳ ପୂର୍ବପରି ଦେଖାଯାଉଥାଏ ।
ଜୀବଧାରୀମାନଙ୍କୁ ସେ ଗ୍ରାସୀବାର ପାଇଁ
ସୂକ୍ଷ୍ମ ଶରୀର ଯଦିଚ ଧାରଣ କରଇ ।
ଉଦର ବିହୀନେ ତାର କାମନା ସକଳ
ସଫଳ ହୋଇ ନ ପାରେ ଆହେ ରଘୁବାଳ ।
ନିଜର ମୂର୍ଖ ପଣିଆ ହେତୁରୁ ସେ ଜାଣ
ଅନୁଶୋଚନା କରୁଣା ଥାଏ ଅନୁକ୍ଷଣ ।
ମନେ ମନେ ଏପରି ସେ କରଇ ଚିନ୍ତନ
ବଞ୍ଚିବାଠୁ ଶ୍ରେୟସ୍କର ଅଟେ ମୋ ମରଣ ।
ଦ୍ୱିତୀୟ ପ୍ରକାର ବିସୂଚିକା ରୂପ ଶୁଣ
ଲିଙ୍ଗଶରୀର ତାହାର ବ୍ୟୋମପରି ଶୂନ୍ୟ ।
ଏହି ସୂଚୀ ସୂକ୍ଷ୍ମ ତେଜ ପ୍ରବାହ ସଦୃଶ
ପ୍ରାଣ ସୂତ୍ର ତାର ତହିଁ ଥିଲା ସନ୍ନିବେଶ ।
ସେ ଆକାରେ ଜୀବହୃଦେ ହୋଇ ପରବେଶ
ଅବିଳମ୍ବେ ତାକୁ କରିଦିଏ ପ୍ରାଣେ ନାଶ ।
ଆଉ ପୁଣି କେଉଁ ବିଜ୍ଞ ବ୍ୟକ୍ତି ପାଶେ ଯାଇ
ମନ୍ତ୍ର ଯନ୍ତ୍ର ତପସ୍ୟାରେ ସେ ପାରଗ ଥାଇ ।
ଔଷଧ ବା ଗୁଣିମନ୍ତ୍ରେ ପାଇ ପରାଜୟ
ହତାଶରେ କହି ହେଉଥାଏ ହାୟ ହାୟ ।
ଲୌହ ସୂଚୀକୁ ମାନବେ ଏମନ୍ତ କରିଲେ
ଜୀବନ କର୍ମରେ ତାକୁ ବିନିଯୁକ୍ତ କଲେ ।

ଏହି କାର୍ଯ୍ୟ ଦ୍ୱାରା ସେହୁ ପରିଶ୍ରାନ୍ତ ହେଲା
ଅସ୍ତବ୍ୟସ୍ତ ହୋଇ ଥରିବାକୁ ଯେ ଲାଗିଲା ।
ମନୁଷ୍ୟ ହସ୍ତରେ ସେହୁ ପଡ଼ିବା ମାତ୍ରକେ
ଛଟପଟ ହୋଇ ଉଡ଼ିଯାଏ ଅନ୍ତରୀକ୍ଷେ ।
କୌତୂହଳ ବଶ ଲୌହ ସୂଚୀ ହୋଇଥିଲା
କିନ୍ତୁ ଅବଶେଷେ ଏହା ତାର କାଳ ହେଲା ।
ଏହି ଅବସ୍ଥାରେ ଲୋକେ ତାର ଛିଦ୍ର ମୁଖେ
ଜୀବନ କାଳରେ ସୂତ୍ର ଭରି ଦ୍ୟନ୍ତି ସୁଖେ ।
ତାହାଦ୍ୱାରା ପେଟ ଭରିଗଲା ମନେକରି
ପଳାୟନ କଲା କେହୁ ଘଉଡ଼ିଲା ପରି ।
ଶରୀର ତେଜକନ୍ତେ ମଧ୍ୟ ପାଉଥାଇ କଷ୍ଟ
ବାୟୁବେଗେ ଗର୍ତ୍ତେ ପଡ଼ି ହୁଏ ଛଟପଟ ।
କେବେ ପାହାଡ଼ରେ ପୁଣି କେବେ ତୃଣ କ୍ଷେତ୍ରେ
କେବେ ଘାସ ପଡ଼ିଆରେ କୂପ ମଧ୍ୟ ଗର୍ତ୍ତେ ।
ଏତେ କଷ୍ଟ ପାଏ ସେହୁ ମୂର୍ଖତା ବଶତ
ତଥାପି ତା କ୍ଷୁଧା ହୋଇ ନ ପାରିଲା ତୃପ୍ତ ।
ବୋଲନ୍ତି ବାଲ୍ମୀକି ବଶିଷ୍ଠ ଯେ ମୁନିବର
ଏମନ୍ତ କାହାଣୀ ଯେବେ କଲେକ ବିସ୍ତାର ।
ସୂର୍ଯ୍ୟଦେବ ଅସ୍ତମିତ ହେଲେ ସେହିକ୍ଷଣ
ସାୟଂକୃତ୍ୟ ପାଇଁ ସର୍ବେ କରନ୍ତେ ପ୍ରସ୍ଥାନ ।
ପରସ୍ପର ପରସ୍ପରେ କରିଣ ପ୍ରଣାମ
ଚଳିଲେ ସକଳେ ନିଜ ନିଜର ଆଶ୍ରମ ।
ପରଦିନ ସୂର୍ଯ୍ୟୋଦୟ ହୋଇବାରୁ ଜାଣ
ସଭା ମଣ୍ଡନ୍ତି ଆସିଣ ସଭାସଦଗଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ବିସୂଚିକା ବ୍ୟବହାର ବର୍ଣ୍ଣନେ ନାମ ୫୧ତମ ସର୍ଗଃ ।**



## ୫୨ତମ ସର୍ଗଃ

## କର୍କଟୀ ରାକ୍ଷସୀ ପୂର୍ବ ଶରୀର ଲାଭ

ବଶିଷ୍ଠ ବୋଇଲେ ରାମ ଏହି ପରକାରେ
ପ୍ରାଣୀମାନଙ୍କୁ ନାଶନ୍ତେ କେତେ କାଳପରେ ।
ଅନ୍ତରେ ତାହାର ହୁଏ ବୈରାଗ୍ୟ ଉଦୟ
ନିଜକୁ ଧିକ୍କାର କରେ ମନ ନୁହେଁ ଥୟ ।

"ହାୟ କେଡ଼େ କଷ୍ଟେ ମୁହିଁ ତପ ଅରଜିଲି ।
ବର ପାଇ ଏଡ଼େ କ୍ଷୁଧା ପୀଡ଼ା ମୁଁ ସହିଲି ।
ତପସ୍ୟାର ବଳେ ସୂଚୀ ରୂପ ପାଇଅଛି
ଏସନ ସୂକ୍ଷ୍ମ ଶରୀର ଧରି ମୁଁ ବୁଲୁଛି ।
ମୋର ସେ ପୂର୍ବ ଶକତି କେଣେ ଉଡ଼ିଗଲା
ଅଙ୍ଗ, ପ୍ରତ୍ୟଙ୍ଗ, ଉଦର କେଣେ ହଜିଗଲା ।
ବୁଦ୍ଧି ଦୋଷୁ ଏ ସକଳ ଭୋଗ ମୁଁ କରୁଛି
କେଡ଼େ ହତଭାଗିନୀ ମୁଁ ଧିକ ମୋତେ ଛି ଛି ।
ଉଦର ଅଭାବେ ମୁହିଁ ସୁସ୍ୱାଦୁ ମାଉଁସ
ଖାଇ ନ ପାରିଣ ମୋତେ ସବୁ ଲାଗେ ବିଷ ।
ମୋ ଦୁଃଖ ଦୁର୍ଦ୍ଦଶାର ତ ଆଉ ସୀମା ନାହିଁ
ଦୁର୍ବୁଦ୍ଧି ଦୋଷରୁ ସିନା ଏବେ ମରୁଛଇଁ ।
ପିତାମାତା ଭାଇବନ୍ଧୁ କେହି ମୋର ନାହିଁ
ଏପରିକି ଶରୀର ମୋ ଉଡ଼ିଗଲା କାହିଁ ।
କିଏ ମୋତେ ଏ ଦଶାରେ ଆଶ୍ୱାସନା ଦେବ
କିଏ ମୋତେ ଦୁର୍ଗତିରୁ ଉଦ୍ଧାର କରିବ ?
ସର୍ବନାଶ କରିଛି ମୁଁ ତପସ୍ୟା ଆଚରି
ଏ କ୍ଷତି ପୂରଣ ମୋର ସମ୍ଭବ କିପରି ।
ଏ କ୍ଳେଶକର ବିପଦ ଆପନ୍ନ ଅବସ୍ଥା
କେତେକ କାଳ ଚାଲିବ ତା ନଜାଣେ ମୋ ମଥା ।
ମୋ ପରି ଅଭାଗିନୀକି ସୂକ୍ଷ୍ମଦର୍ଶୀ ଯୋଗୀ
ଉଦ୍ଧାର କରି ପାରିବେ ହାଏ ହତଭାଗୀ ।
ମୁଁ ଅଭାଗିନୀ କି ତାଙ୍କ ଦୃଷ୍ଟିରେ ପଡ଼ିବି
ସେହି ସୁଯୋଗ କି ମୋର ଭାଗ୍ୟରେ ସମ୍ଭବି
କାହିଁ ସେ ଆକାଶବତ ମୋ ମୁଖଗହ୍ୱର
କାହିଁ ବା ଏ ସୂଚୀମୁଖ କି ବୁଦ୍ଧି ମୋହର ।"
ନିଜକୁ ଧିକ୍‌କାର ଏହିପରି ମନେ ମନେ
ଚିନ୍ତାକରି ସେ ରାକ୍ଷସୀ ରହିଲା ମଉନେ ।
ପୁଣି ଚିନ୍ତା କରି ସ୍ଥିର କଲା ମନେ ମନେ
ନିଜର ପୂର୍ବ ଶରୀର ପାଇବ କେସନେ ।
ପୁନର୍ବାର ତପସ୍ୟା ଯେ କରିବଇଁ ମୁହିଁ
ପୂର୍ବ ଶରୀର ମୋହର ପାଇବାର ପାଇଁ ।
ଏହା ଚିନ୍ତି ହିଂସାଭାବ ମନୁ ତ୍ୟାଗ କଲା
ହିମାଳୟ ଶୃଙ୍ଗେ ଘୋର ତପ ଆଚରିଲା ।
ସୂଚୀ ରୂପିଣୀ ରାକ୍ଷସୀ କଳ୍ପନା ବଳରେ
ନର ପାଦ ପ୍ରାପ୍ତ ହେଲା ଅତି ଅକ୍ଳେଶରେ ।
କାଞ୍ଚନିକ ଏକ ପଦେ ଉଭା ହୋଇକରି
ଘୋର ତପସ୍ୟା ଆଚରେ ସେ ସୂଚୀ ଅସୁରୀ ।
ବାହ୍ୟ ସ୍ପନ୍ଦନ ତହୁଁ ସେ ପରିହାର କଲା
ବହୁକାଳ ଧରି ତପ ମଗନ ରହିଲା ।
ସତ୍ୟ ଜ୍ଞାନମୟ ଆତ୍ମ ସମ୍ବନ୍ଧ ଚିନ୍ତନ
କରୁ କରୁ ଉଦେ ହୁଏ ତାର ଆତ୍ମଜ୍ଞାନ ।
ତା ମନରୁ ସୂଚୀଭାବ ହେଲା ଅନ୍ତର୍ହିତ
ହୁଏ ପରାବର ଦ୍ରଷ୍ଟା ଆବର ପବିତ୍ର ।
ଚଳେ ସସ୍ର ସସ୍ର ବର୍ଷ ତପ ଆଚରଣ
ସନ୍ତପ୍ତ ତା ତପ ତେଜେ ଚଉଦ ଭୁବନ ।
ନାରଦଙ୍କୁ ପୁଚ୍ଛାକଲେ ସୁରପତି ଇନ୍ଦ୍ର
କାହା ଉଗ୍ର ତପସ୍ୟାରେ ଏ ଜଗତ ସ୍ତବ୍ଧ ।
"ସୂଚୀ ସ୍ୱରୂପିଣୀ ଯେହୁ କର୍କଟୀ ରାକ୍ଷସୀ
ସପତ ସହସ୍ର ବର୍ଷ ତପ ଆଚରିଛି ।
ବିଜ୍ଞାନମୟ ଦେହ ସେ କରିବାରୁ ଲାଭ
ଥରହର ହୋଇ ଉଠେ ଏ ବିଶାଳ ଭବ ।
ନାରଦ ମୁନି ଇନ୍ଦ୍ରଙ୍କୁ ଏମନ୍ତ କହନ୍ତି
ଆମୂଳ ଚୂଳ ତାହାର ତପସ୍ୟା ବର୍ଣ୍ଣନ୍ତି ।
ହେ ଇନ୍ଦ୍ର ଦେବତା ଏବେ ଏମନ୍ତ କରନ୍ତୁ
ବରଦେଇ ତପସ୍ୟାରୁ ତାକୁ ନିବର୍ତ୍ତନ୍ତୁ ।
ଯେହେତୁ ତା ତେଜ ଭରା ତପସ୍ୟାରୁ ଜାତ
ସପ୍ତଲୋକ ଦହିବାକୁ ହୋଇଛି ଉଦ୍ୟତ ।
ଆଦେଶନ୍ତି ବାୟୁ ଦେବତାଙ୍କୁ ଇନ୍ଦ୍ରଦେବ
ଶୀଘ୍ର ଯାଇ ରାକ୍ଷସୀର କରଣୀ ବୁଝିବ ।
ଆଜ୍ଞା ପାଇ ବାୟୁଦେବ ଚଳନ୍ତି ତ୍ୱରିତ
ରାକ୍ଷସୀ ନିକଟେ ଯାଇ ଦେଖନ୍ତି ଏମନ୍ତ ।
ତା ତେଜ ପ୍ରଭାବେ ବାୟୁ ହୋଇ ପରାଜିତ
କଥା ପଦେ କହିବାକୁ ନହେଲେ ସମର୍ଥ ।
ବାଟେ ଯାଉ ଯାଉ ବାୟୁ ଭାବନ୍ତି ଏମନ୍ତ
ଏ ତାପସୀ ରାକ୍ଷସୀର କେଡ଼େ କରାମତ ।
ମଘବାଙ୍କୁ ସମ୍ବୋଧିଣ କହେ ବାୟୁଦେବ
"ତା ଉଗ୍ର ତପସ୍ୟା" ଅବା କି ବର୍ଣ୍ଣିବି ଦେବ ।
ଉତପ୍ତ ହେଲାଣି ହିମଗିରି ଅଗ୍ନିପରି
ରହି ନ ପାରିଲି କ୍ଷଣେ ତା ତେଜ ସମ୍ଭାଳି ।
ସର୍ବ ଦେବଙ୍କୁ ଘେନିଣ ଏବେ ଚାଲ ଯିବା
ପିତାମହଙ୍କ ନିକଟେ ଦୟିନୀ କରିବା ।

ବର ଦେଇ ତାର ତପ ଶାନ୍ତ କରାଇବେ
ନୋହିଲେ ବହୁ ଅନର୍ଥ ଘଟିବ ଏ ଭବେ ।
ଦେବଗଣଙ୍କ ସହିତ ଇନ୍ଦ୍ର ଚଳିଗଲେ
ପିତାମହ ପୁରେ ଯାଇ ପ୍ରବେଶ ହୋଇଲେ ।
ଯଥାମାନ୍ୟ ଦେଇ ଇନ୍ଦ୍ର କହନ୍ତି ବଚନ
ଶୁଣିବା ହେଉ ହେ ପିତା ମୋର ନିବେଦନ ।
କର୍କଟୀ ଅସୁରୀ ତପେ ଏ ତିନି ଭୁବନ
ଜଳିଯିବ ଅବିଳମ୍ବେ କରିବା କାରଣ ।
ବ୍ରହ୍ମାଏ ବୋଇଲେ ଶାନ୍ତ ହୁଅ ଦେବଗଣ
ଅଚିରେ ପ୍ରତିକାର ମୁଁ କରୁଛି ବିଧାନ ।
ଆଶ୍ୱାସନା ପାଇ ଦେବଗଣ ଚଳିଗଲେ
ସ୍ୱର୍ଗପୁରେ ଯାଇ ସର୍ବେ ନିଶ୍ଚିନ୍ତେ ରହିଲେ ।
ଏଥି ମଧ୍ୟେ ଏକ ସସ୍ର ବର୍ଷ କଟିଯାଏ
ଅସୁରୀର ତପ କିନ୍ତୁ ଜାରି ରହିଥାଏ ।
ବ୍ରହ୍ମା ପହଞ୍ଚି କହନ୍ତି "ଆଗୋ ବତ୍ସେ ଶୁଣ
ଘେନ-ବର ତୁମ ଇଚ୍ଛା ହେଉ ପରିପୂର୍ଣ୍ଣ ।"
ରାକ୍ଷସୀ ଚିନ୍ତଇ ଶୁଣି ବ୍ରହ୍ମାଙ୍କ ବଚନ
"ସ୍ଥୁଳ ଦେହ ବିନା କଥା କହିବି କେସନ ।
କର୍ମେନ୍ଦ୍ରିୟମାନେ ମୋର ଯାଇଛନ୍ତି ଅସ୍ତ
ଜଗତ୍ଭ୍ରମ ନାହିଁ ମୋର ପରମେ ମୁଁ ସ୍ଥିତ ।
ପୂର୍ଣ୍ଣ ସ୍ୱରୂପ ତ ମୋତେ ହୋଇଛି ପ୍ରାପତ ।
ଜ୍ଞାତବ୍ୟ ବିଷୟ ସବୁମତେ ହୁନ୍ତି ଜ୍ଞାତ ।
କି କାର୍ଯ୍ୟ ମୋହର ଆଉ ବର ଗ୍ରହଣରେ
କିସ ବା ଉତ୍ତର ଦେବି ବିଧାତା ଛାମୁରେ ।
ରାକ୍ଷସୀ ମଉନ ଦେଖି ବ୍ରହ୍ମାଏ ଚିନ୍ତନ୍ତି
ଜଳ ଜଳ ଦେଖାଯାଏ ତାଙ୍କୁ ସର୍ବ ରୀତି ।
ତପବଳେ ଦେହଭାବ ହଜିଛି ତାହାର
ସ୍ଥୁଳ, ସୂକ୍ଷ୍ମ, କାରଣରୁ ହୋଇଛି ସେ ପାର ।
ଆତ୍ମ ଚୈତନ୍ୟରେ ବୁଡ଼ି ରହିଛି ରାକ୍ଷସୀ
ଅହଂଭାବ ମାତ୍ର 'ବୀଜ' ଆକାରରେ ଅଛି ।
ବାସନା ରଖି ତପସ୍ୟା ଯେଣୁ ଆରମ୍ଭିଛି
ବାସନା ଫଳ ତାହାର କେଣେ ବା ଯାଉଛି ?
ଅବଶ୍ୟ ବାସନା ଫଳ ଭୋଗିବ ତ ସେହି
ଏହି ତ ନିୟମ ସଦା ଅଛି ଜାରି ରହି ।
'କହନ୍ତି ବିଧାତା ବତ୍ସେ । ଘେନ ଏବେ ବର
ଜଗତରେ ସୁଖଭୋଗ କର କିଛି କାଳ ।
ତତ୍ପରେ ନିର୍ବାଣ ପ୍ରାପ୍ତି ହୋଇବ ତୋହର
ଏବେ ଫେରିପାଅ ପୁଣି ତୋ ପୂର୍ବ ଶରୀର ।
କ୍ଷୁଧା ତୃପ୍ତି ପାଇଁ ନ୍ୟାୟ ହିଂସା ଆଚରିବୁ
ପାପୀ ଜନମାନଙ୍କୁ ତୁ ଭୋଜନ କରିବୁ ।
'ନ୍ୟାୟ ବାନ୍ଧବ' ହୋଇବ ତୋର ଶୁଭ ନାମ
ବିବେକ ପାଳକ ହେବ ତୋର ଆଚରଣ ।
ଅନିବାର୍ଯ୍ୟ ନିୟତି ତୋ ଏ ମୋର ବଚନ
ପୂର୍ବ ରାକ୍ଷସୀ ଶରୀରେ କର ବିଚରଣ ।
ଏହି ଶରୀରେ ଜୀବନ ମୁକ୍ତ ତୁ ହୋଇଣ
ସ୍ୱଚ୍ଛନ୍ଦରେ ବିଚରୁଣ ଥିବୁ ବନୁ ବନ ।
ପୁନର୍ଜନ୍ମ ଆଉ ତୋର ନ ଘଟିବ ଜାଣ
ଏହା କହି ପିତାମହ କଲେକ ପ୍ରସ୍ଥାନ ।
ସୂଚୀ ଭାବେ ଏଥିରେ ମୋ କ୍ଷତି ଅବା କିସ ?
କହୁଁକହୁଁ ପାଇଲା ସେ ଶରୀର ରାକ୍ଷସ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**କର୍କଟୀ ରାକ୍ଷସୀ ପୂର୍ବ ଶରୀର ଲାଭ**
**ବର୍ଣ୍ଣନେ ନାମ ୫୨ତମ ସର୍ଗଃ ।**



## ୫୩ତମ ସର୍ଗଃ

## ରାକ୍ଷସୀ ବିଚାର

ଏବେ ଜୀବସୂଚୀ ପାଏ ରାକ୍ଷସ ଶରୀର
ଅବୟବମାନ ବୃଦ୍ଧି ପାଇଲେ ତାହାର ।
ଆତ୍ମ ସାକ୍ଷାତକାର ଯେଣୁ ହୋଇଥିଲ ତାର
ରାକ୍ଷସ ସ୍ୱଭାବ ତାର ହୋଇଯାଏ ଦୂର ।
ଛ'ମାସ ପର୍ଯ୍ୟନ୍ତ ପଦ୍ମ ଆସନରେ ବସି
ବିଶୁଦ୍ଧ ଜ୍ଞାନରେ ମନ ନିଶ୍ଚଳେ ନିବେଶି ।
ସମାଧିସ୍ଥ ହୋଇ ପରଂପଦେ ଦେଇ ଚିତ୍ତ
ଶରୀର ଧର୍ମରୁ ରହିଥାଏ ସେ ନିବୃତ୍ତ ।
ସମାଧି ଭଗ୍ନ ହୁଅନ୍ତେ କ୍ଷୁଧା ବୋଧ କଲା ।
କି ଖାଦ୍ୟ ଖାଇବ ବୋଲି ମନେ ତା ଭାବିଲା ।
ଆର୍ଯ୍ୟ ଜନୋଚିତ ନୁହେ ଯେମନ୍ତ ଭୋଜନ
ଅନ୍ୟାୟରେ ଉପାର୍ଜିତ ଯେ ଉପକରଣ ।
ତାହା ଖାଇ ବଞ୍ଚିବାକୁ ନ ଇଚ୍ଛଇ ମୁହିଁ
ତାହାଠାରୁ ମରଣକୁ ଶ୍ରେଷ୍ଠ ମୁଁ ମଣଇ ।

ନ୍ୟାୟୋଚିତ ଖାଦ୍ୟ ଅର୍ଜ୍ଜନରେ ନାହିଁ ଦୋଷ
ଅନ୍ୟାୟ ଭାବେ ଅର୍ଜିତ ଖାଦ୍ୟ ଖାଲି ବିଷ ।
ମୋ ଜୀଇଁବା ମରିବାରେ ନାହିଁ ହାନିଲାଭ
ଜଗତ ମୋ କାର୍ଯ୍ୟରୁ ବା କି ଶିକ୍ଷା ପାଇବ ।
ମନ ଓ ଦେହ ଉଭୟେ କେବଳ ହିଁ ଭ୍ରାସ
ଆତ୍ମଜ୍ଞାନୋଦୟେ ଯାଙ୍କ ସତ୍ତା ଯାଏ ଲୀନ ।
ଏମନ୍ତ ବିଚାରି ଚୁପ୍‌ଚାପ୍ ସେ ବସିଲା
ଖାଦ୍ୟ ଅନ୍ୱେଷଣେ ଚେଷ୍ଟା କିଛି ହିଁ ନ କଲା ।
ଆକାଶବାଣୀ ଶୁଭଇ ହେ କର୍କଟୀ ଶୁଣ
ମୂଢ଼ ମନୁଷ୍ୟଙ୍କୁ ଏବେ ଦିଅ ତତ୍ତ୍ୱଜ୍ଞାନ ।
ଯେହେତୁ ମହତଗଣେ ଏପରି କରନ୍ତି
"ଅସତକୁ ସତ୍ୟ ପଥେ ଘେନି ଯାଉଥାନ୍ତି ।"
ଯେ ବ୍ୟକ୍ତି ଅଗ୍ରାହ୍ୟ କରେ ତୁମର ବଚନ
ବିନାଶ ପାଇଁକି ଜାଣ ତାହାର ଜନମ ।
ତାହାକୁ ଖାଇ ତୁ କ୍ଷୁଧା କର ନିବାରଣ
ଜଗତର ହିତ ଏଥି ହୋଇବ ସାଧନ ।
ତାହାକୁ ଖାଇଲେ ହେବ ତାହାରି କଲ୍ୟାଣ
ସନ୍ଥଙ୍କ ସ୍ୱଭାବ ଅଟେ ମୂଢ଼ଙ୍କ ତାରଣ ।
ଆକାଶୁ ଦେବତାଙ୍କର ଏ ବଚନ ଶୁଣି
ଧନ୍ୟବାଦ ଦେଲା ତାଙ୍କୁ ସେହି ଅସୁରୁଣୀ ।
ଶିଖର ଦେଶ ଛାଡ଼ି ସେ ତଳକୁ ଓହ୍ଲାଇ
କିରାତ ଦେଶରେ କ୍ରମେ ପ୍ରବେଶିଲା ଯାଇ ।
କୃଷ୍ଣପକ୍ଷ ରାତି ଘନ ଘୋର ଅନ୍ଧକାର
ନିମଗ୍ନ ରହିଥିଲା ସେ କିରାତ ନଗର ।
ବିକ୍ରମ କିରାତ ରାଜା, ମନ୍ତ୍ରୀ ସହିତରେ
ଭାସ୍କର ସନ୍ଧାନେ ପ୍ରବେଶନ୍ତି ବନଘୋରେ ।
ସଶସ୍ତ୍ର କିରାତ ରାଜନଙ୍କୁ ଦେଖିକରି
ମନ ଫୁଲିଉଠେ ହସ ହସ ସେ ଅସୁରୀ ।
ଭାଗ୍ୟ ବଳେ ପାଇଲି ମୁଁ ସୁଖାଦ୍ୟ ମୋହର
ବହୁ ଦିନ କ୍ଷୁଧା ପୀଡ଼ା ଦୂର ହେବ ମୋର ।
ଅନାତ୍ମା ମୂଢ଼ ତ ନିଶ୍ଚେ ଏହି ଦୁଇଜଣ
ଦଇବ ଯୋଗାଏ ଆଣି ସୁଯୋଗ୍ୟ ଭୋଜନ ।
ଯେଣୁ ମୂଢ଼ ଚିହ୍ନି ନ ପାରଇ ନିଜ ଆତ୍ମା
ବଞ୍ଚିବା ମରିବା ତାର ସମାନ ଏ କଥା ।
ନିଶ୍ଚେ ମଙ୍ଗଳ ଅଛଇ ମରଣେ ତାହାର
ବଞ୍ଚି ରହିଲେ ବଢୁ ଯେ ଥିବ ପାପ ଭାର ।
ମରିଲେ ତ ପାପ ଆଉ କରି ନ ପାରିବ
ମରଣ ତା ପ୍ରତି ଜାଣ ସୁବର୍ଣ୍ଣ ସୁଯୋଗ ।
କରିଥିବା ଯଦି ସେହୁ ମହତ ଆଶ୍ରୟ
ତାଙ୍କୁ ମାରିବା ମୋ ପକ୍ଷେ ହୋଇବ ଅନ୍ୟାୟ ।
ପ୍ରଥମରେ ଏମାନଙ୍କୁ ପରୀକ୍ଷା କରିବି
ଗୁଣବାନ କି ନିର୍ଗୁଣ ଏକଥା ବୁଝିବି ।
ନିଷ୍ପାପ ଗୁଣବନ୍ତ ଏ ଯଦି ହୋଇଥିବେ
ଅନ୍ୟାୟ ହେବ ଏହାଙ୍କୁ ଭକ୍ଷିବି ମୁଁ ଯେବେ ।
ଯେଣୁ ଗୁଣୀ ଜନଙ୍କୁ ମୁଁ ନ କରେ ଭୋଜନ
ଅତି ଦୁଃଖଣୀୟ ଅଟେ ଗୁଣୀଙ୍କ ହିଂସନ ।

ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ରାକ୍ଷସୀ ବିଚାର ବର୍ଣ୍ଣନେ
ନାମ ୫୩ତମ ସର୍ଗଃ ।



## ୫୪ତମ ସର୍ଗଃ
## ରାକ୍ଷସୀ ବିଚାର ବର୍ଣ୍ଣନ

ମେଘ ପରି ସେ ରାକ୍ଷସୀ ଗର୍ଜନ କରିଣ
ଅତି କର୍କଶ ସ୍ୱରରେ କହଇ ବଚନ ।
ମହାମାୟା ଅନ୍ଧକାର ଗର୍ଭରୁ ନିର୍ଗତ
ହେ କୀଟ ଯୁଗଳ କହ ଆପଣା ଚରିତ ।
ମହତ ଆଶ୍ରୟ କିଏ ଅଛି କି ତୁମର
କିବା ହୀନବୁଦ୍ଧି ଭକ୍ଷ ହୋଇବ ମୋହର ।
"ହେ ଭୂତଯୋନି ! ତୁ କିଏ କାହୁଁ ତୋର ଘର"
ପୁଚ୍ଛନ୍ତି ରାଜନ ଏବେ କହ ମୋ ପାଶର ।
ଗୋପନ ରଖିଛୁ କିମ୍ବା ମୋତେ ତୋ ଶରୀର
ପ୍ରକାଶ ନ କଲେ ନିଶ୍ଚେ ହେବୁ ମୋ ଶିକାର ।
ତୋର ଏ ଗର୍ଜନ ଶୁଣି ଡରୁଛି ବା କିଏ
ଛାଡ଼ ତୁ ମାୟା ଶରୀର ନ କରେ ମୁଁ ଭୟେ ।
କ୍ରୋଧ ଆଡ଼ମ୍ବର ତୁଲୋ ନ ଛାଡୁ କିମ୍ପାଇଁ
ନିଜର ସାମର୍ଥ୍ୟ ନ ଦେଖାଉ କାହିଁପାଇଁ ।
ଅବା କି ପ୍ରାର୍ଥନା ଅଛି କର ତୁ ପ୍ରକାଶ
ପ୍ରଦାନ କରି ମୁଁ ତୋତେ କରିବଇଁ ତୋଷ ।
ରାଜାଙ୍କ ବଚନ ଶୁଣି ସେ ଭୀମା ରାକ୍ଷସୀ
ବ୍ୟସ୍ତରେ ଭୀଷଣ ହାସ୍ୟ ଶବଦ ପ୍ରକାଶି ।
ରାଜା ମନ୍ତ୍ରୀ ଦେଖୁଛନ୍ତି ଅତି ଆଶ୍ଚର୍ଯ୍ୟରେ
ପ୍ରକାଣ୍ଡକାୟ ରାକ୍ଷସୀ ଉଭା ସମ୍ମୁଖରେ ।

ଲେଶମାତ୍ର ଭୟ ନାହିଁ ରାଜାଙ୍କର ମନେ
ମନ୍ତ୍ରୀ ମଧ୍ୟ ନ ଶଙ୍କିଲେ ରାକ୍ଷସୀ ଦର୍ଶନେ ।
ସୁର ବୀରମାନେ ସଦା ବିବେକ ସମ୍ପର୍ଣ୍ଣ
କେବେହେଲେ ଭୟ ନ ଛୁଅଁଇ ବୀର ମନ ।
"ଅଛି ଯେବେ କେହି ତୋର ମହତ ଆଶ୍ରୟ"
ହେ ମହା ରାକ୍ଷସୀ ତେବେ କ୍ରୋଧ କିମ୍ପା କହ ?
ଲଘୁ ଚିତ୍ତ ମାତ୍ରେ କ୍ରୋଧବଶ ହୋଇଯାଏ
ବୁଦ୍ଧିମାନ ଅକ୍ରୋଧରେ କାର୍ଯ୍ୟ କରୁଥାଏ ।
ହେ ଅବଳେ ! ଆମ୍ଭ ଧୈର୍ଯ୍ୟ ବାୟୁ ବେଗ ବଳେ
ତୋର ପରି ଶତ ମଶା ଗଗନେ ଉଡ଼ିଲେ ।
ଏବେ ତୁହି କିସ ଚାହୁଁ କହ ମୋ ଆଗର
ଗୋଟି ଗୋଟି କରି କହିଯାନ୍ତି ମନ୍ତ୍ରୀବର ।
"ଯଦି କେହି କେବେ କିଛି ପ୍ରାର୍ଥନା କରଇ
ସେ ପ୍ରାର୍ଥନା ତାର କେବେ ବିଅର୍ଥ ନୁହଁଇ ।"
ରାକ୍ଷସୀ ଏକଥା ଶୁଣି ଚିନ୍ତେ ମନେ ମନେ
ନିଶ୍ଚୟ ପୁରୁଷ ସିଂହ ହେବେ ଏଇମାନେ ।
ଅଦ୍ଭୁତ ଅଟଇ ଯାଙ୍କ ଧୈର୍ଯ୍ୟ, ଆଚରଣ ।
ନୁହନ୍ତି କେଉଁ ଏମାନେ ସାଧାରଣ ଜନ ।
ଏହାଙ୍କ ବଚନ ପୁଣି ଶ୍ରୀମୁଖ ମଣ୍ଡଳ
ପ୍ରକାଶଇ ତାଙ୍କ ମନୋଭାବ ଅବିକଳ ।
ଆଉ ମଧ୍ୟ ଜଣାଯାଏ ମୋର ମନୋଭାବ
ବୁଝିପାରୁ ଅଛନ୍ତି ଏ ମାନବ ଦୁର୍ଲ୍ଲଭ ।
ତେଣୁ ବାଧ୍ୟ ନୁହନ୍ତି ଏ କେବେ ହେଁ ମୋହର
ପଚାରି ବୁଝିବ ସର୍ବ ସନ୍ଦେହ ଉତ୍ତର ।
"ହେ ବୀର ନିଷ୍ପାପଗଣ ତୁମେମାନେ କିଏ
ଫେଡ଼ି କରି କହମୋତେ ହୋଇଣ ସଦୟେ ।
ତୁମ୍ଭ ପ୍ରତି ସହୃଦୟ ଭାବ ମୋ ଉଦିତ
ଆଶା ପୋଷିଛି ପାଇବି ସକଳ ଉଦନ୍ତ ।
ନିର୍ମଳମନାଙ୍କ ମଧ୍ୟେ ମିତ୍ରତା ଜନ୍ମଇ
ପରସ୍ପର ଦରଶନ ଯେବେ ମିଳିଯାଇ ।"

ମନ୍ତ୍ରୀ କହେ "ଏ ଅଟନ୍ତି କିରାତ ରାଜନ
ମୁହିଁ ତାଙ୍କ ମନ୍ତ୍ରୀବର ରଖ ଏହା ମନ ।
ତୋପରି ଦୁର୍ଜ୍ଜନମାନଙ୍କର ଶାସ୍ତି ପାଇଁ
ଏ ଘୋର ନିଶାରେ ବୁଲୁ ଉଜାଗର ହୋଇ ।
ଦୁଷ୍ଟଙ୍କ ଶାସ୍ତି ବିଧାନ ଯେଣୁ ରାଜଧର୍ମ
ଧର୍ମରକ୍ଷା ପାଇଁ କରୁ ବନ ବିଚରଣ ।"
ହେ ରାଜା ! ଜଗତେ ଅଛି ଯେତେ ଯେତେ ଜ୍ଞାନ
ଆତ୍ମଜ୍ଞାନ ହିଁ ରାଜନ୍ ! ସର୍ବଶ୍ରେଷ୍ଠ ଜାଣ ।
ସେହି ଆତ୍ମଜ୍ଞାନ ଜାଣ ରାଜାର ଭୂଷଣ
ଆତ୍ମବିତ୍, ମନ୍ତ୍ରବିତ୍ ମନ୍ତ୍ରୀଙ୍କ ଧରମ ।
ରାଜପଦ ଉପଯୁକ୍ତ ନୁହେଁ ସେହି ଜନ
ଆତ୍ମବିଦ୍ୟା ପରିଜ୍ଞାତ ନୁହେଁ ଯେ ରାଜନ !
ତୁମେ ଯଦି ଆତ୍ମବିତ୍ ହୋଇଥାଅ ଭଲ
ନୋହିଲେ ତୁମ୍ଭଙ୍କୁ ମୁଁ ଯେ ବିଧାନିବି ସଜା ।
ପ୍ରଜାଗଣଙ୍କ ଅନିଷ୍ଟକାରକ ବୁଝିଣ
ନ ଛାଡ଼ି ତୁମ୍ଭଙ୍କୁ ମୁହିଁ କରିବି ଭୋଜନ ।
ଆହେ ରାଜନ ଅଥବା ଆହେ ମନ୍ତ୍ରୀବର
ମୋର ଏ ଯାହା ଆଶଙ୍କା ଦୂରୀଭୂତ କର ।
ଆତ୍ମଜ୍ଞାନୀ ଯେବେ ତୁମେ ମୋ ପ୍ରଶ୍ନ ଉତ୍ତର
ଦେଇ ସନ୍ତୋଷ କରିବ ଏ ମନ ମୋହର ।
ପୂର୍ବେ ତ ପ୍ରତିଜ୍ଞା କରି ସାରିଅଛ ତୁମ୍ଭେ
ମୋର ପ୍ରାର୍ଥନା ପୂରଣ କରିବାକ ଏବେ ।
ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ରାକ୍ଷସୀ ବିଚାର ବର୍ଣ୍ଣନେ
ନାମ ୫୪ତମ ସର୍ଗଃ



## ୫୫ତମ ସର୍ଗଃ

## ରାକ୍ଷସୀ ପ୍ରଶ୍ନ ବିଚାର

ବଶିଷ୍ଠ ବୋଇଲେ ଶୁଣ ହେ ରଘୁନନ୍ଦନ
ଶୁଣିକରି ରାକ୍ଷସୀର ଏମନ୍ତ ବଚନ ।
ରାଜା କହନ୍ତି "ଗୋ ନାରୀ ପ୍ରଶ୍ନ କର ମୋତେ
ଯଥୋଚିତ ଉତ୍ତର ମୁଁ ଦେଉଅଛି ତୋତେ ।"

ରାକ୍ଷସୀ ବୋଲଇ "କହ କିରାତ ରାଜନ
ଏପରି କି ଅଣୁ ଅଛି କହି ତାର ନାମ ।
ଯାହା ଏକ ହୋଇଲେ ହେଁ ବହୁ ରୂପ ଧରେ
ବହୁ ନାମଧାରୀ ହୋଇ ଜଗତେ ବିହରେ ।
ସାଗରେ ବୁଦ୍‌ବୁଦ୍ ଜନ୍ମି ଲୀନ ହେଲା ପରି
କୋଟି ଭବ 'ସୃଷ୍ଟି' 'ନାଶ' କେଉଁ ଅଣୁଧରି ।
ଏପରି ଯେ କେଉଁ ବସ୍ତୁ ଯେ ଅଟେ ଆକାଶ
ଆକାଶ ହୋଇଣ ପୁଣି ନୁହଁଇ ଆକାଶ ।
କେଉଁ ଅଣୁ ଅହଂ ତ୍ୱଂ କରୁଅଛି ଜାତ
ସେହି ଅହଂ ତ୍ୱଂ ପୁଣି କେ ଅଣୁରେ ଅସ୍ତ ।
ସଚଳ ରହିଣ ପୁଣି ସେ ଅଟେ ଅଚଳ
ସ୍ଥିତିବାନ ହୋଇ ପୁଣି ସ୍ଥିତି ନାହିଁ ତାର ।
ଚେତନ ହୋଇ କେ ପୁଣି ଅଟେ ଅଚେତନ
ଚିଦାକାଶେ ନାନା ଚିତ୍ର କରେ କେ ଚିତ୍ରଣ ।
ଅଗ୍ନି ଧର୍ମ ଥାଇ ପୁଣି ବାହ୍ୟଶକ୍ତି ହୀନ
ଅଗ୍ନି ଶକ୍ତି ନ ଥିଲେ ହେଁ ଅଗ୍ନି କରେ ଜନ୍ମ ।
ନୁହେଁ ସୂର୍ଯ୍ୟ ନୁହେଁ ଚନ୍ଦ୍ର ନୁହେଁ ଅଗ୍ନି ତାରା
ଅବିନଶ୍ୱର ବସ୍ତୁର (ସେ) ପ୍ରକାଶ ପସରା ।
ଦେଖାଯାନ୍ତି ନାହିଁ କିନ୍ତୁ ଦେଖାଇ ଦିଅନ୍ତି
କୋଟୀ ବ୍ରହ୍ମାଣ୍ଡର ପ୍ରକାଶକ ସେ ଅଟନ୍ତି ।
ଜନ୍ମାନ୍ଧ, ଇନ୍ଦ୍ରିୟହୀନ, ଲତା, ଗୁଳ୍ମାଦିର
ଆଲୋକ ଦାତା କିଏ ସେ କହ କରି ସ୍ଥିର ।
ସକଳ ସତ୍ତାର ସତ୍ତା ଅଟଇ ବା କିଏ ?
ଆକାଶ ଆଦି ଭୂତଙ୍କୁ ଜନ୍ମ କିଏ ଦିଏ ?
ଏ ଜଗତ ରତନର କୋଷ କିଏ କହ ?
କେଉଁ ମଣିର କୋଷ ଏ ଜଗତ ବୁଝାଅ ?
ତମ ହୋଇ ସୁଦ୍ଧା କେଉଁ ଅଣୁ ପ୍ରକାଶକ ?
'ସତ' ଅସତ୍‌ର କେଉଁ ଅଣୁ ନିୟାମକ ?
ସତ୍ତା ଅସତ୍ତା ଉଭୟେ କାହିଁରେ ନିହିତ ?
ଦୂରେ ଥାଇ କେଉଁ ଅଣୁ ପୁଣି ନିକଟସ୍ଥ ?
କେଉଁ ଅଣୁ ଧରେ ମହା ପର୍ବତ ଆକାର ?
ମେରୁଠାରୁ ବଡ଼ ହୋଇ କେ ଅଣୁ ମାତର ?

କଳ୍ପବତ୍ ହୋଇ କିଏ ନିମିଷ ମାତର ?
ନିମିଷ ହୋଇ କେ ପୁଣି ଧରେ କଳ୍ପାକାର ?
ପ୍ରତ୍ୟକ୍ଷ ହୋଇ କେ ପୁଣି ଅଟଇ ଅସତ ?
ଅପ୍ରତ୍ୟକ୍ଷ ରହିଥାଏ ପୁଣି ଯାହା ସତ୍ୟ ?
ଚେତନ ହୋଇ କେ ପୁଣି ଅଟେ ଅଚେତନ ?
ଶବଦ ହୋଇ କେ ପୁଣି ରହେ ଶବ୍ଦହୀନ ?
ବାୟୁ ହୋଇକରି ମଧ୍ୟ ବାୟୁ ନୁହଁଇ ସେ
ସକଳ ହୋଇ ସେ ପୁଣି କାହିଁରେ ନମିଶେ ।
କିଏ 'ମୁହିଁ' ହୋଇ ସୁଦ୍ଧା ପୁଣି 'ମୁହିଁ' ନୁହେଁ
ବହୁ ପ୍ରଯତ୍ନରେ କିଏ ପ୍ରାପ୍ତ ହୋଇଥାଏ ?
ପ୍ରାପ୍ତ ହେଲା ପରେ ସୁଦ୍ଧା କିଏ କିଛି ନୁହେଁ
କିଛି ନୋହି ସୁଦ୍ଧା ପୁଣି ପୂର୍ଣ୍ଣ ବସ୍ତୁ ସିଏ ।
ସ୍ୱସ୍ଥ ଜୀବିତ ଥିଲେ ହେଁ କିଏ ଆତ୍ମହରା
କେଉଁ ଅଣୁ ନିଜ ମଧ୍ୟେ ଧରେ ବିଶ୍ୱ ସାରା ।
ଅଣୁହେଲେ ହେଁ କେ ବ୍ୟାପେ ଅନନ୍ତ ଯୋଜନ ?
ଶିଶୁ ପରି ନାଚେ ବିଶ୍ୱ ପାଇଁ କା' ଦର୍ଶନ ?
କେଉଁ ଅଣୁ ମଧ୍ୟେ ଧରାଧର ଶ୍ରେଣୀ ସ୍ଥିତ ?
ଅଣୁତ୍ୱ ରଖି କେ ହୁଏ ମେରୁ ଗିରିବତ ?
ଦୀପ ପରି କେ ପ୍ରକାଶେ ଆଲୁଅ ଅନ୍ଧାର ?
ଯାବତ ଜ୍ଞାନର କେଉଁ ଅଣୁ ଅଟେ ଘର ?
ରସହୀନ ହୋଇ କିଏ ସୁସ୍ୱାଦୁ ସମ୍ପୂର୍ଣ୍ଣ ?
ସର୍ବତ୍ୟାଗୀ ମାତ୍ର, କରେ ସବୁକୁ ଧାରଣ ।
ଆତ୍ମାକୁ ଘୋଡ଼ାଇବାକୁ ହେଲେ ହେଁ ଅକ୍ଷମ
ଏ ବିଶ୍ୱ ସାରାକୁ କରିପାରେ ଆଚ୍ଛାଦନ ।
ପ୍ରଳୟେ ବିଲୀନ ହେଲାପରେ ଏ ଜଗତ
କେଉଁ ଅଣୁ ମଧ୍ୟୁ ପୁଣି ହୁଅଇ ସମ୍ଭୂତ ?
ହୋଇଲେ ହେଁ ଅବୟବମାନଙ୍କ ବିହୀନ
କେଉଁ ଅଣୁ ହୁଏ କୋଟି ଅବୟବ ପୁଣ ?
ମହାକଳପ ଅଥବା ଶତକୋଟି କଳ୍ପ
କହିପାରିବ କି କେଉଁ ଅଣୁର ସ୍ୱରୂପ ?
ସୃଷ୍ଟିକାଳେ ସୃଷ୍ଟିବୀଜ ହେ ନୃପ କିରାତ
ଜଗତ ଆକାରେ ହୋଇଥାଏ ପ୍ରତିଭାତ ।

କାହିଁରେ ତା କାଳେ କାଳେ ଥାଏ ଅନୁଦିତ ?
ବିଦିତ ଯଦି ତୁ ତାହା କର ପ୍ରକାଶିତ ।
କେଉଁ ଜିନିଷ ମଧ୍ୟେ ଏ କଳ୍ପ ଅବସ୍ଥିତ ?
କିଛି ନ କରି କେ କର୍ତ୍ତାରୂପେ ବିବେଚିତ ?
ନୟନ ନଥାଇ କିଏ ଦୃଶ୍ୟ ସୃଷ୍ଟି ପାଇଁ
ନିଜର ଆତ୍ମାକୁ ଦୃଶ୍ୟାକାର ସେ ମଣଇ ।
କିଏ ପୁଣି ସେହି ଦୃଶ୍ୟ ସଂହରଣ କରି ?
ନିଜର ଅଖଣ୍ଡ ଆତ୍ମା ବୋଲିଣ ବିଚାରି ।
ଦ୍ରଷ୍ଟା, ଦୃଶ୍ୟ, ଦରଶନ ନିଜକୁ କେ ମଣେ ?
ସବୁଠୁ ଅଭିନ୍ନ ଜଳ-ତରଙ୍ଗ ଯେସନେ ।
ଜଳ ତରଙ୍ଗ ସଦୃଶ ଏ ସୃଷ୍ଟି ସକଳ
କା' ଇଚ୍ଛାରେ ଭିନ୍ନ ଭିନ୍ନ ଛନ୍ତି ନରପାଳ ?
ଦେଶ କାଳ ବସ୍ତୁଠାରୁ ଅଭିନ୍ନ ସେ ଅଟେ
ସତ ଅସତ ସଦୃଶ ସ୍ଥିତ ଏ ଜଗତେ ।
କିଏ ସେହି ଏକ କହିବ କି ନରପାଳ ?
କହିଲେ ମଙ୍ଗଳ ନ ପାରିଲେ ଅମଙ୍ଗଳ ।
କିଏ ସେ 'ଅଦ୍ୱୈତ', ନୁହେଁ 'ଦ୍ୱୈତ'ଠାରୁ ଭିନ୍ନ
ସମୁଦ୍ରଠାରୁ ତରଙ୍ଗ ଅଭିନ୍ନ ଯେସନ ।
ଆତ୍ମା, ଦୃଶ୍ୟ, ଦରଶନ ଏ ତିନିଙ୍କି ନେଇ
ସତାସତ୍ ଭାବ ବୀଜପରି ହୃଦେ ଥୋଇ ।
ଅବସ୍ଥିତ ରହିଅଛି କିଏ ଏ ଜଗତେ ?
ତ୍ରିକାଳ ଗମନଶୀଳ ବିଶ୍ୱ ଗର୍ଭଗତେ ।
ବୀଜ ବୃକ୍ଷ ପରି କହ କେଉଁ ବସ୍ତୁ ମଧ୍ୟେ ?
ତ୍ରିକାଳ ଜଗତ ଭ୍ରମ ବିରାଜେ ଅବାଧେ ।
ସଦା ଏକାକୃତି ଭାବେ ସେହୁ ରହି ଥାଇ
କହି ପାରିବ କି ରାଜା ସେ କିଏ ଅଟଇ ?
ମୃଣାଳ ସୂତ୍ରଠାରୁ ଯେ ଅଟେ ସୂକ୍ଷ୍ମତର
ମେରୁ ମଣ୍ଡଳାଦି ଅବସ୍ଥିତ ଯା ଭିତର ।
ଏ ଚିନ୍ମୟ ବିଶ୍ୱସାରା ଯେ କଲା ବିସ୍ତାର
ସେ କିଏ କହ ରାଜନ ମୋର ସୀମପର ?
ଏମନ୍ତ କି ସଦ୍‌ଗୁଣ ଅଛି ତୋହଠାରେ
ଆସ୍ପର୍ଦ୍ଧା କରିଛୁ ରାଜା ରାଜ୍ୟ ପାଳିବାରେ ।
ପ୍ରଜାଙ୍କ ପାଳନ ପୁଣି ଦୁଷ୍ଟଙ୍କ ଦଳନ
କରି ମରତକୁ ସ୍ୱର୍ଗ କରିବୁ ରାଜନ ।
କାହାର ଦର୍ଶନେ ଦୃଷ୍ଟି ଲାଭ ନିରିମଳ
କାହାର ପ୍ରଭାବେ ଲାଭ ଶାନ୍ତି ସୁବିମଳ ।
ହେ ରାଜନ କହ ଏବେ ମୋ ପ୍ରଶ୍ନ ଉତ୍ତର
ନତୁବା କହୁ ସେ ତୋର ସଚିବ ପ୍ରବର ।
ଜ୍ଞାନୀମାନେ କରିଥାନ୍ତି ସଂଶୟ ଛେଦନ
ଅଜ୍ଞାନୀମାନଙ୍କ ପକ୍ଷେ କଠିନ କଠିନ ।
ଉତ୍ତର ପାଇଲେ ପୂଜା କରିବି ମୁଁ ତୋତେ
ନୋହିଲେ ସ୍ଥାନ ପାଇବୁ ମୋର ଗର୍ଭଗତେ
ସଚିବ ସହ ତୁମକୁ କରିବି ଆହାର
ଆହର ହୋଇବେ ପୁଣି ପ୍ରଜାକୁଳ ତୋର
ରାକ୍ଷସୀ ଜଠର ଅଗ୍ନି ମଧ୍ୟରେ ସତ୍ୱର
ଇନ୍ଧନ ସ୍ୱରୂପ ଗତି ବିଭବ ସକଳ ।
ଜଳଦ ଗମ୍ଭୀର ସ୍ୱର ସେହି ରାକ୍ଷସୀର
କ୍ରମେ ଖସି ଖସି ହୋଇଗଲାକ ଶୀତଳ ।
ଅତି ଭୀଷଣ ଆକାର ହେଲେ ହେଁ ତାହାର
ଶରତ୍ ମେଘ ପରି ମୌନ ହୋଇଲା ସତ୍ୱର

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ରାକ୍ଷସୀ ବିଚାର ବର୍ଣ୍ଣନେ**
**ନାମ ୫୫ତମ ସର୍ଗଃ ।**



## ୫୬ତମ ସର୍ଗଃ

### ରାକ୍ଷସୀ ପ୍ରଶ୍ନ ଭେଦନ

ବଶିଷ୍ଠ କହନ୍ତି ସେହି ମହା ନିଶାକାଳେ
ରାକ୍ଷସୀର ପ୍ରଶ୍ନୋତ୍ତର ମନ୍ତ୍ରୀ ବିଧାନିଲେ ।
"ହେ ମେଘ ସନ୍ନିଭେ ! ତୁମ ପ୍ରଶ୍ନର ଉତ୍ତର
ଦେଉଛି ମୁଁ ଚିତ୍ତ ଦେଇ ତା ଶ୍ରବଣ କର ।
ତୁମ କଥା ଶୁଣି ମୋର ମନେହୁଏ ଜାଣ
ପରମାର୍ଥ ତଥ୍ୟ ପୂର୍ଣ୍ଣ ତୁମ ପ୍ରଶ୍ନମାନ ।

ମନ ବୁଦ୍ଧି ପ୍ରଭୃତିର ଅଗମ୍ୟ ସେ ଜାଣ
ତଥାପି କରିବି ତୁମ ଆଗରେ ବର୍ଣ୍ଣନ ।

ଯେ ଚିଦାଣୁ ଅଟେ ସର୍ବ ଆଖ୍ୟାର ଅତୀତ
ତା' ରୂପ ବର୍ଣ୍ଣିବା ପାଇଁ କେ ହେବ ସମର୍ଥ

ଆକାଶରୁ ସୂକ୍ଷ୍ମ ସେହି ଚିଦାଣୁ ମଧ୍ୟରେ
ଏ ଜଗତ 'ସତ' ପୁଣି 'ଅସତ' ଭାବରେ ।

ଜନ୍ମଲାଭ କରେ ଯଥା ବୀଜ ମଧ୍ୟେ ଗଛ
ଏ ଜଗତ ମିଛ ନାରୀ ଏ ଜଗତ ମିଛ ।

ସର୍ବମୟ ବ୍ରହ୍ମ ମାତ୍ର ଏ ଜଗତେ ସତ
ସକଳ ଅସତ ଜାଣ ବ୍ରହ୍ମଙ୍କ ବ୍ୟତୀତ ।

ଏ ଜଗତ ମିଥ୍ୟା, ଆତ୍ମା ରୂପେ ଅନୁଭୂତ
ହୋଇବାରୁ ସତ୍ତାବାନ୍ ହୋଇଛି ଜଗତ ।

ଯାହା ବାହ୍ୟ, ତାହା ଶୂନ୍ୟ ତେଣୁ ତା ଆକାଶ
ସତ ସ୍ୱରୂପତା ହେତୁ ତାହା ଅନାକାଶ ।

ଇନ୍ଦ୍ରିୟ ଅତୀତ ହେତୁ ଏହି ଅନାକାଶ
ଅନ୍ୟ କିଛୁ ନୁହେଁ ଆହେ ଜାଣ ରାକ୍ଷସୀଶ ।

ଆବର ଅନନ୍ତ ଅଣୁ ବୋଲି ତାକୁ କହି
ତେବେ ଆତ୍ମା କିସ ବସ୍ତୁ ଏବେ ଶୁଣ ତୁହି ।

ଯେଣୁ ଆତ୍ମା ସର୍ବମୟ ଅଟେଲୋ ଅସୁରୀ
ତେଣୁ ତାର ସାକ୍ଷାତ୍କାର ସମ୍ଭବି ଯେ ପାରି ।

ସେହି ସାକ୍ଷାତ୍କାର କାଳେ ତାଙ୍କ ଛଡ଼ା କାହା
ଅସ୍ତିତ୍ୱ ନ ଥାଇ ଜାଣ ରାସକ୍ଷ ତନୟା ।

ଏକରୁ ବହୁ ହୁଅଇ ଏହି ଚିଦ୍ ଅଣୁ
ତାହା କେବଳ ତାଙ୍କର ପ୍ରତିଭା କାରଣୁ ।

ଏହି ବହୁତ ରାକ୍ଷସୀ ନୁହଁଇ ବାସ୍ତବ
ସୁବର୍ଣ୍ଣ ଭୂଷଣ ହେବା ଯେପରି ସମ୍ଭବ ।

ସୁବର୍ଣ୍ଣ ଭୂଷଣ ଯଥା ବସ୍ତୁତଃ ଅଭିନ୍ନ
ଆତ୍ମାର ବହୁତ୍ୱ ତଥା ଏକ ବୋଲି ଜାଣ ।

ଅଣୁରେ ପରମାକାଶ ଏହି ସୂକ୍ଷ୍ମଭାବ
ଲକ୍ଷିତ ହୋଇ ନ ଥାଏ ଏ ତତ୍ତ୍ୱ ବୁଝିବ ।

ସର୍ବ ସ୍ୱରୂପ ହେଲେ ହେଁ ଲୋ ଦାନବୀ ବର
କଳ୍ପନା ଅତୀତ ଷଡ଼ ଇନ୍ଦ୍ରିୟ ମନର ।

ସର୍ବାତ୍ମକ ଯେଣୁ ତାହା ବଂହଇ ସେ ଶୂନ୍ୟ-
ପୁଣି ସେ ନାହାନ୍ତି ଏହା ଅଯୌତିକ ଜାଣ ।

ଯେହେତୁ ଅଛି ନ ଅଛି ଯେହୁ ବୋଧକରେ
ନୁହେଁ କି ସେ ଏହି ଆତ୍ମା ହେ ରାକ୍ଷସୀ ବରେ ।

ଆତ୍ମା ଯେ ଅବିଦ୍ୟମାନ କୌଣସି ଯୁକ୍ତିରେ
ପ୍ରମାଣିତ ହେଉ ନାହିଁ କୌଣସି ପ୍ରକାରେ ।

ଯେପରି ପାତ୍ର ଆବୃତ କର୍ପୁରର ବାସ
ପ୍ରତ୍ୟକ୍ଷୀଭୂତ ହୁଅଇ ହୁଅନ୍ତେ ତା ପାସ ।

ପ୍ରତ୍ୟଗାତ୍ମା ଭାବେ ଆଚ୍ଛାଦିତ ସେହି ଆତ୍ମା
ଉପଲବ୍ଧି ହୁଏ ତାଙ୍କ ସର୍ବମୟୀ ସତ୍ତା ।

ଏହି ଚିଦ୍ ଅଣୁ ମନ ରୂପେ ପ୍ରକାଶିଣ
ହେ ରାକ୍ଷସୀ ହୋଇଥାଏ ଆକାର ସମ୍ପର୍ଣ୍ଣ ।

ଏ ଚିଦାଣୁ ମନଦ୍ୱାରା ହୋଇ ପରିଚ୍ଛିନ୍ନ
କରିଥାଏ ସିନା ସର୍ବ ଆକାର ଧାରଣ ।

ମନର ପରିଚ୍ଛିନ୍ନତା ଯେବେଟି ନ ଥାଇ
'କିଛି' ନୋହି ସୁନିର୍ମଳ ଭାବେ ରହିଥାଇ ।

ଏକକ ହୋଇଥିଲେ ହେଁ ସେହି ଚିଦ ଅଣୁ
'ବହୁ' ସେ ସର୍ବଭୂତରେ ଆତ୍ମା ରୂପ ଯେଣୁ ।

ଏ ଜଗତ ରତନର ଅଟଇ ସେ କୋଷ
ଯେଣୁ ସେ ଧାରଣ କରେ ଜଗତ ଅଶେଷ ।

ବିକାର ସମ୍ପନ୍ନ ଚିତ୍ତ କଲେ ସେ ଧାରଣ
ଜଳାବର୍ତ୍ତ ପରି କରେ ଏ ଭବ ଉତ୍ପନ୍ନ ।

ଚିତ୍ତ, ଇନ୍ଦ୍ରିୟମାନଙ୍କ ଅଲଭ୍ୟ ସେ ଯେଣୁ
ଶୂନ୍ୟାକାର, ନିରାକାର ବୋଲାଏ ସେ ତେଣୁ ।

ସ୍ୱୀୟ ସମ୍ବେଦନ ଦ୍ୱାରା ଲବଧ ସେ ଯେଣୁ
ଶୂନ୍ୟ ପୁଣି ଅଶୂନ୍ୟ ସେ ହୋଇପାରେ ତେଣୁ ।

ଦ୍ୱୈତଭାବ ହେତୁ ଆମେ ତୁମେ ଏହି ଭେଦ
ଅଦ୍ୱୈତ ଜ୍ଞାନ ଉଦୟେ ଅସ୍ତ ସେ ପ୍ରଭେଦ ।

ତ୍ୱଂ ଭାବ ଅହଂଭାବର ଅପେକ୍ଷାରେ ଥାଏ
ତ୍ୱଂ ଆସିଯାନ୍ତେ ଅହଂ ପରିଛନ୍ନ ହୁଏ ॥

ଏକ ଆତ୍ମତତ୍ତ୍ୱରୁ ହିଁ ଦୁହିଁଙ୍କ ଜନମ
ଏହି ତତ୍ତ୍ୱ ବୁଝିରଖ ରାକ୍ଷସୀ ଉତ୍ତମ ॥

ସେହି ଚିଦାଣୁ ବୋଧ ହିଁ ବ୍ରହ୍ମରୂପ ଧରେ
ଅହଂ ତ୍ୱଂ ଅସ୍ତ ଯାନ୍ତି ସେ ବୋଧ ରୂପରେ ॥

ସେହି ଚିଦାଣୁ ଜାଣିଥା ସର୍ବରୂପ ଧରେ
ତାହା ବିନା ଅନ୍ୟ କିଛି ନାହିଁ ଏ ସୃଷ୍ଟିରେ ॥

ତ୍ରିପୁଟି ସ୍ୱରୂପ ମଧ୍ୟ ଧରେ ସେ ଚିଦାଣୁ
ପାଶୋର ନ ଯାଏ ତାର ମହିମା ମୋ ମନୁ ॥

ବହୁ ଯୋଜନ ପର୍ଯ୍ୟନ୍ତ କଲେ ହେଁ ଗମନ
ଚଳାୟମାନ କଦାପି ନୁହେଁ ସେହୁ ଜାଣ ॥

ଅନନ୍ତ ରୂପ ଯେ ଘେନି ଧରେ ସେ ସଂବିତ
କୋଟି ଯୋଜନ ତାହାର ଗର୍ଭରେ ନିହିତ ॥

କେହି ଯାଉ ନାହିଁ କିମ୍ବା କେହି ଆସୁ ନାହିଁ
ଦେଶକାଳ ସର୍ବେ ତାର ଗର୍ଭେ ଛନ୍ତି ରହି ॥

ଦେଶ କାଳ ଆଦି ସର୍ବ ଯାହା ମଧ୍ୟେ ସ୍ଥିତ
ତାକୁ ପାଇବାକୁ ପୁଣି କି କଷ୍ଟ କହ ତ ? ॥

ଏ ସୃଷ୍ଟି ମଧ୍ୟେ ଅଛନ୍ତି ଯେତେକ ଜଗତ
ଆତ୍ମାମଧ୍ୟେ ସେ ସକଳ ଛନ୍ତି ଅବସ୍ଥିତ ॥

ନିଶ୍ଚିନ୍ତ ରହିଛି ପୁତ୍ର କୋଳରେ ମାତାର
ମାତା ଅନ୍ୱେଷଣେ ଆଉ କି କାର୍ଯ୍ୟ ତାହାର ? ॥

ଆତ୍ମା ମଧ୍ୟେ ତ ଜଗତ କରେ ଅବସ୍ଥାନ
ପୁଣି ଆତ୍ମାକୁ ଖୋଜିବା କିସ ପ୍ରୟୋଜନ ? ॥

ବିନା ଗମନେ ମଧ୍ୟ ସେ ଅଣୁ ଗତିଶୀଳ
ଗତିଶୀଳ ହେଲେ ହେଁ ସେ ରହିଥାଏ ସ୍ଥିର ॥

ଯେତେ ସ୍ଥାନ ଗଲେ ମଧ୍ୟ ସେ ସକଳ ସ୍ଥାନ
ଏହି ଅଣୁ ମଧ୍ୟେ ରହିଛନ୍ତି ବର୍ତ୍ତମାନ ॥

ତେଣୁ ସେ କୁଆଡ଼େ ଯିବ ରହିବ ଅଚଳ
ଅସୀମ ଯେ ତାର ସୀମା କରିବ କେ ସ୍ଥିର ? ॥

ଘଟ ମୁଖ ବନ୍ଦ କରି ସ୍ଥାନାନ୍ତରେ ନେଲେ
ଘଟସ୍ଥ ଆକାଶ ଗତି ନ କରଇ ହେଲେ ॥

ଗମନା ଗମନ ନାହିଁ ଆତ୍ମାର ତେସନ
ସଦା ଏକ ଭାବେ ରହିଥାଏ ଆତ୍ମା ଜାଣ ॥

ଜଡ଼ର ଜଡ଼ତା ଚେତନର ଚଇତନ୍ୟ
ଉପଲବ୍ଧ ହୋଇଥାନ୍ତି ଏ ଅଣୁରେ ଜାଣ ॥

ତେଣୁ ଏହି ଅଣୁ-ଆତ୍ମା, ଜଡ଼, ଚଇତନ୍ୟ
ଉଭୟ ହୋଇ ପାରନ୍ତି ନିଶାଚରୀ ଶୁଣ ॥

ଆଦି ଅନ୍ତ ବିହୀନ ଏ ପରମ ଆକାଶ
କେହି ଗଢ଼ି ନ ଥିଲେ ହେଁ ସ୍ୱୟଂ ତା ପ୍ରକାଶ ॥

ତଥାପି ଏ ଜଗତ ଚିତ୍ର ନିଜ ମଧ୍ୟେ ସେହି
ସରଜି ତାର ବିକାଶ ସଦା କରୁଛଇଁ ॥

ସୁନା ଯେତେବେଳେ ଧରେ ଅଳଙ୍କାର ରୂପ
ତେତେବେଳେ ହରାଏ ସେ ନିଜର ସ୍ୱରୂପ ॥

ଅଳଙ୍କାର ସ୍ୱର୍ଣ୍ଣ ରୂପେ ହେଲେ ବିବେଚିତ
ସୁବର୍ଣ୍ଣ ସ୍ୱରୂପ ତାର ପୁନଃ ପ୍ରତିଷ୍ଠିତ ॥

ଦୃଶ୍ୟର ସଦ୍ଭାବ ଦୃଢ଼ ରହିଥିବା ଯାଏ
ବ୍ରହ୍ମର ଅଭାବ ଅନୁଭୂତ ହେଉଥାଏ ॥

ଦୃଶ୍ୟ ଯେତେବେଳେ ହୋଇଯାଏ ତିରୋହିତ
ଦ୍ରଷ୍ଟାର ସ୍ୱରୂପ ହୋଇଯାଏ ପ୍ରକାଶିତ ॥

ବୀଜ ମଧ୍ୟେ ବୃକ୍ଷଭାବ ଯଥା ବିଦ୍ୟମାନ
ବ୍ରହ୍ମ ମଧ୍ୟେ ଏ ଜଗତ ରହିଛି ଅକ୍ଷୁର୍ଣ୍ଣ ॥

ଆତ୍ମଜ୍ଞାନ ଅନୁଭୂତ ହୁଏ ବ୍ରହ୍ମ ସତ୍ତା
ସେହି ସତ୍ତା ଏ ସୃଷ୍ଟିର ପ୍ରକାଶ କରତା ॥

ସେହି ସତ୍ତା ବ୍ରହ୍ମ ରୂପେ ଜ୍ଞାନ ପ୍ରକାଶଇ
ଦାହିକା ଶକତି ଯୋଗୁ ବହ୍ନି ସେ ବୋଲାଇ ॥

ଚନ୍ଦ୍ର ସୂର୍ଯ୍ୟ ଜ୍ୟୋତିଷ୍କଙ୍କ ସେହୁ ପ୍ରକାଶକ
ଆବିନାଶୀ ତେଣୁ ତାର କେ ଅଛି ନାଶକ ? ॥

ଘୋଡ଼ାଇ ନପାରେ ତାକୁ ପ୍ରଳୟ ଜଳଦ
ସର୍ବ ଶକ୍ତିମୟ ଯେଣୁ ସେ ଆତ୍ମ ସଂବିଦ ॥

ହୃଦୟ ମନ୍ଦିର ମଧ୍ୟେ ଅଟେ ସେ ଦୀପକ
ସମସ୍ତ ବସ୍ତୁମାନଙ୍କ ସତ୍ତା ପ୍ରଦାୟକ ॥

ସେହି ସେ ଅନନ୍ତ ପୁଣି ସର୍ବ ନିୟାମକ
ମନ ଇନ୍ଦ୍ରିୟ ଅତୀତ ବିବେକ ଦାୟକ ॥

ସେହି ଅଣୁରୁ ସ୍ଫୁରିତ ସକଳ ଆଲୋକ
ଲତା ଗୁଳ୍ମ ଅଙ୍କୁରାଦି ମାନଙ୍କ ପୋଷକ ॥

କାଳକ୍ରିୟା ନଭାଦିଙ୍କ ସତ୍ତା ପ୍ରଦାୟକ
ହର୍ତ୍ତା, କର୍ତ୍ତା, ଭୋକ୍ତା ପୁଣି ସବୁରି ନାୟକ ॥

ପରମାଣୁ ରୂପ, ଅଣୁ କେଉଁ ନ ଛାଡ଼ଇ
ସ୍ୱକୀୟ ଅଣୁତ୍ୱ ତାରକ ସଦା ବିରାଜଇ ॥

ଜଗତ ରତ୍ନ ଯେଣୁ ପେଟିକା ଅଟଇ
ଜଗ ରତନ ପେଟିକା ନାମ ତାର ହୋଇ ॥

ପରମାତ୍ମ-ମଣି ଅଟେ ଜଗତରେ କୋଷ
ଜଗତ ମଧ୍ୟ ପରମଆତ୍ମାଙ୍କର କୋଷ ।
ଅତିଶୟ ସୂକ୍ଷ୍ମ ହେତୁ ଅତୀବ ଦୁର୍ଜ୍ଞେୟ
ଦୂର୍ଜ୍ଞେୟ ହେତୁରୁ ସେହୁ ଅଟେ ତମୋମୟ ।
ଚିନ୍ମୟ ଯେଣୁ ସେ ଅଟେ ପରକାଶମୟ
ଆଉକି ବୁଝିବୁ କହ ଚିତ୍ତକରି ଥୟ ।
ସଂବିଦ୍ ଆକାର ଯେଣୁ ଅଟନ୍ତି ସେ ବ୍ରହ୍ମ
ତେଣୁ ତାହାଙ୍କ ଅସ୍ତିତ୍ୱ ଅନୁଭବ ଗମ୍ୟ ।
ଅତିନ୍ଦ୍ରିୟ, ସତ୍ତାଶୂନ୍ୟ ଏକ ଆବରଣ
ତାର ମହିମା କେ କରିପାରୁ ନିର୍ଦ୍ଧାରଣ ।
ଅତୀନ୍ଦ୍ରିୟ ବୋଇଲେ ସେ ଦୂରରୁ ସୁଦୂର
ଚିତ୍ ବୁଝାଏ ନିକଟୁ ସେ ନିକଟତର ।
ଏ କାରଣୁ ହେଲେ ସେହୁ ଦୂରୁ ଦୂରତର
ବିରାଜ କରନ୍ତି ସେହି ସବୁରି ଅନ୍ତର ।
ଅଣୁ ସ୍ୱରୂପ ହେଲେ ହେଁ ସର୍ବ ସଂବେଦନ
ନିହିତ ରହିଅଛନ୍ତି ତହିଁର ମଧ୍ୟେଣ ।
ଆକାର ନଥିଲେ ମଧ୍ୟ ସେ ଅଣୁ ଗୋସାଇଁ
ମହାଶୈଳ ଆକାରରେ ବିଦିତ ଅଟଇ ।
ଅହଂଭାବ ଉଦେହେଲେ ଏ ଜୀବ ହୃଦୟେ
ମହାଶୈଳ ରୂପେ ଆସି ଆଗେ ଦେଖାଦିଏ ।
ଏ ଦୃଶ୍ୟମାନ ଜଗତ ତାହାର ହିଁ ଜ୍ଞାନ
ତା ମଧ୍ୟେ ସୁମେରୁ ଆଦି ଗିରି ବିଦ୍ୟମାନ ।
ଆତ୍ମ ଚୈତନ୍ୟର ଏକ ଅଂଶ ମଧ୍ୟେ ଜାଣ
ମନ୍ଦରାଦି ପର୍ବତର ଅସ୍ତିତ୍ୱ ପ୍ରମାଣ ।
ତେଣୁ ଅଣୁ ହୋଇ ମଧ୍ୟ ମହାମେରୁ ସେହି
ମନେ ପଶୁଛିକି ଏହା ଦାନବ ତନୟୀ ।
ନିମଷେ ଇଚ୍ଛିଲାକ୍ଷଣି ସେ ହୁଏ ନିମିଷ
କଳପ ଇଚ୍ଛିଲାକ୍ଷଣି କଳପ ସଦୃଶ ।
କ୍ଷଣକେ ମନ ଦେଖଇ ଏ ବିଶ୍ୱ ଭୁବନ
କୋଟି କଳ୍ପ ନାଚେ ମନେ ନିମିଷ ମଧ୍ୟେଣ ।
କାଳର ବିଳାସ ଏହା ଜାଣ ଲୋ ରାକ୍ଷସୀ
'ସେ କାଳ କିଏ' ହେଉଥା ମନେ ମନେ ଘୋଷି ।
କ୍ଷୁଦ୍ର ଦରପଣେ ଯଥା ମହାନଗ୍ର ଛାଇ
ନିମେଷ ମଧ୍ୟେ ତେସନ କଳ୍ପ ବିରାଜଇ ।
ନିମେଷ, କଳପ, ଆଉ ନଗର ପର୍ବତ
ଦୁର୍ଜ୍ଞେୟ ଚୈତନ୍ୟ ମଧ୍ୟେ ଯେଣୁ ଅବସ୍ଥିତ ।

ହେ ରାକ୍ଷସୀ ବୁଝ ଏବେ ଦ୍ୱୈତା-ଦ୍ୱୈତ ଭାବ
ଚିଦାଣୁ ମଧ୍ୟେ ସେ ଅବା କାହୁଁ ସମ୍ଭବିବ ।
ବସ୍ତୁତଃ ଏ ସବୁ ଖାଲି ଭ୍ରାନ୍ତିର ବିଳାସ
ଭ୍ରାନ୍ତି ଯେ ଏକ କି ଦୁଇ ବୁଝ ରାକ୍ଷସୀଶ ।
ମନରେ ଯା ଉଦେହୁଏ ତାହାହିଁ ଯେ ସତ୍ୟ
ଯାହା ଉଦୟ ନୁହଇ ତା ଅଟେ ଅସତ୍ୟ ।
ତେଣୁ ନିମେଷ ଅଟଇ କଳପ ସଦୃଶ
କଳପ ମଧ୍ୟ ଧରଇ ଆକାର ନିମେଷ ।
ଦୁଃଖ ସମୟରେ କାଳ ଦୀର୍ଘାକାର ଧରେ
ସ୍ୱଳ୍ପାକାର ଧରିଥାଏ ସୁଖ ସମୟରେ ।
ରାତିକ ଦ୍ୱାଦଶ ବର୍ଷ ହରିଶ୍ଚନ୍ଦ୍ର ରାଜା
ମଣି, କ୍ଷୀଣକାୟ ହୁଏ ହରାଇ ଭାରିଯା ।
ତେଣୁ କଳପ, ନିମେଷ, ଦୂର ବା ନିକଟ
ଏ ଭ୍ରାନ୍ତି ସକଳ ସେହି ଚିଦାଣୁର ନାଟ ।
ଚିତ୍, କଳେବର ଯଥା ଅଟନ୍ତି ଅଭିନ୍ନ
ଆଲୋକ, ଅନ୍ଧାର ନହୁଅନ୍ତି ଭିନ୍ନାଭିନ୍ନ ।
ଅଦୂର ଅଥବା ଦୂର କଳ୍ପ ଅବା କ୍ଷଣ
ସମସ୍ତ ଅଭିନ୍ନ ଅଟେ ଜାଣେ ଜ୍ଞାନୀ ଜନ ।
ଇନ୍ଦ୍ରିୟଗଣଙ୍କ ମଧ୍ୟେ ଯେଣୁ ସେହି ସାର
'ପ୍ରତ୍ୟକ୍ଷ' ବୋଲାନ୍ତି ତେଣୁ ଏ ବିଶ୍ୱ ମଧ୍ୟର ।
ଦୃଶ୍ୟାକାରେ ପ୍ରକଟିତ ହୁଅନ୍ତି ସେ ଯେଣୁ
ପ୍ରତ୍ୟକ୍ଷ ଆଖ୍ୟା ଲଭିଣ ଥାଆନ୍ତି ସେ ତେଣୁ ।
ଇନ୍ଦ୍ରିୟର ଅଗୋଚର ହୁଅନ୍ତି ସେ ଯେଣୁ
'ଅପ୍ରତ୍ୟକ୍ଷ' ଆଖ୍ୟା ପାଇଥାନ୍ତି ସେହି ତେଣୁ ।
ଆତ୍ମାକୁ ଆ-ତ୍ମାଂଶେ ଦେଖି ହୁଅନ୍ତି ଚେତନ
ଜଗଦାଂଶେ ଆତ୍ମଦୃଶ୍ୟବେଳେ ଅଚେତନ ।
ସର୍ବରୂପୀ ବୋଲି ସେହୁ ଅଟନ୍ତି ସେ ସତ
ଦୁର୍ବିଜ୍ଞେୟ ବୋଲି ତାକୁ ବୋଲନ୍ତି ଅସତ ।
ପରିବର୍ତ୍ତନଶୀଳ ଏ ଭବ ବାୟୁପରି
'ବ୍ରହ୍ମ' ବିନା ଅନ୍ୟ କିଛି ନୁହେଁ ଲୋ ଅସୁରୀ ।
ପ୍ରଚଣ୍ଡ ରୌଦ୍ର କିରଣେ ସ୍ଫୁରେ ମୃଗତୃଷ୍ଣା
ପଥିକ ଦେଖି ନ ପାରେ ଅନ୍ୟ କାହା ସତ୍ତା ।
ଚୈତନ୍ୟର ପ୍ରାଚୁର୍ଯ୍ୟ ହିଁ ଅଦ୍ୱିତୀୟ ଜ୍ଞାନ
ସାଧକଙ୍କୁ କଷ୍ଟ, ପାଇବାକୁ ତା ଦର୍ଶନ ।
ଚୈତନ୍ୟର ଆବରଣ ନାମଟି ଜଗତ
ସ୍ୱପ୍ନେ ଦୃଷ୍ଟ ନଗ୍ରପରି ଅଟେ ତା ଅସତ ।

କେବଳ ସୁଦୀର୍ଘ ଭ୍ରାନ୍ତି ଅଟେ ଏ ଜଗତ
କହିପାରୁ କି ଅସୁରୀ ଅନ୍ୟ କିଛି ତତ୍ତ୍ୱ ।
ଯେ ମହାତ୍ମା ଯୁକ୍ତିବଳେ 'ମିଥ୍ୟା ଏ ଜଗତ'
ପ୍ରମାଣ କରଣେ ହୋଇଥାଆନ୍ତି ସମର୍ଥ ।
ନିର୍ମଳ ଅନ୍ତଃକରଣ ଭିତରେ ଯେ ସେହି
ବ୍ରହ୍ମଦର୍ଶନ କରଣେ ସମର୍ଥ ହୁଅଇ ।
ଅଜ୍ଞାନ ବିନଷ୍ଟ ହେଲେ ତା ଚିଦ୍‌ଗଗନେ
'ମିଥ୍ୟା ସୃଷ୍ଟି' ହୋଇ ନ ପାରଇ କଦାଚନେ ।
ସେହି ଶାନ୍ତ ସର୍ବମୟ ଆତ୍ମା ପ୍ରକାଶିତ
ତାଙ୍କ ଛଡ଼ା ଅନ୍ୟ କିଛି ନାହିଁ ଏ ଜଗତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ରାକ୍ଷସୀ ପ୍ରଶ୍ନ ଭେଦନ ବର୍ଣ୍ଣନେ**
**ନାମ ୫୬ତମ ସର୍ଗଃ ।**



## ୫୭ତମ ସର୍ଗଃ

### ପରମାର୍ଥ ନିରୂପଣ

ଯେ ବିଚିତ୍ର ପରମାର୍ଥ ସମନ୍ୱିତ ବାକ୍ୟ
ମନ୍ତ୍ରୀବର ! କହିଗଲ ଶୁଣି ମୁଁ ଅବାକ୍ ।
ରାକ୍ଷସୀ କହଇ ଶୁଣ ସଚୀବ ପ୍ରବର
ଏବେ ରାଜା ପ୍ରଦାନନ୍ତୁ ବାକି ଯା ଉତ୍ତର ।
ମହାରାଜା ବୋଇଲେ ଲୋ ନିଶାଚରୀ ଶୁଣ
ତୋର ପ୍ରଶ୍ନମାନଙ୍କର ଉତ୍ତର ଏସନ ।
ଜ୍ଞାନୀଗଣ କହିଥାନ୍ତି ଯେ ପରମଜ୍ଞାନ
ଜଗତ ଦର୍ଶନ ନିବାରକ ସେ କାରଣ ।
ସର୍ବ ସଂକଳ୍ପ ଜ୍ଞାନର ଯେ ବିରାମସ୍ଥଳ
ଯେ ପୁଣି ଅଟନ୍ତି ଚିତ୍ତ ସଂଯମର ଫଳ ।
ଯା' ମାୟାମୟ ବିକାଶ ସଙ୍କୋଚ, ପ୍ରଭାବେ
ଜଗତର ସୃଷ୍ଟି, ଲୟ, ସକଳ ସମ୍ଭବେ ।
ଯେ ବାକ୍ୟ ଅତୀତ ପୁଣି ବେଦାନ୍ତର ଲକ୍ଷ
ଏ ସାରା ଜଗତ ଯାର ଚିତ୍‌ଲୀଳା ମୁଖ୍ୟ ।
ସେହି ବ୍ରହ୍ମଚରିତ ତ ପଚାରୁଛ ତୁମେ
ଜଳ ଜଳ ଦିଶେ ମୋତେ ଅବଲୀଳାକ୍ରମେ ।
ଅଣୁନାମେ କଥିତ ସେ ଅତି ସୂକ୍ଷ୍ମ ଯେଣୁ
ମାୟାବଳେ ବାୟୁ ହୋଇଛନ୍ତି ସେ ବ୍ରହ୍ମାଣୁ ।
ଅନ୍ୟାକୃତି ନେବାରୂପ ବହ୍ମର ଯେ ଭ୍ରାନ୍ତି
ବାୟୁ ହିଁ ସେହି ଭ୍ରାନ୍ତିର ମହିମା ଅଟନ୍ତି ।
ତେଣୁ ପରମାର୍ଥ ଜ୍ଞାନେ ବାୟୁ ସେ ନୁହନ୍ତି
ଭ୍ରମ ଦରଶନେ କିନ୍ତୁ ବାୟୁ ହୋଇଛନ୍ତି ।
ବସ୍ତୁତଃ ଶୁଦ୍ଧ ଚୈତନ୍ୟ ବିନା ଲୋ ଅସୁରୀ
ଅନ୍ୟ କିଛି ନୁହେଁ 'ବାୟୁ' ବାୟୁ ନାମ ତାରି ।
ଶବ୍ଦାଦି ସକଳ ବସ୍ତୁ ବିଷୟରେ ଜାଣ
ଏହି ତଥ୍ୟ କାର୍ଯ୍ୟକାରୀ ହେଉଅଛି ପୁଣ ।
ଏହିପରି ଅହଂଭାବ ଦରଶନ କରି
ଅହଂ ହୋଇ ପାରିଛନ୍ତି ସେହି ଅଶରୀରି ।
ପରମାର୍ଥ ଦୃଷ୍ଟିରୁ ଯେ ଏହି ଅହଂଭାବ
ତାଙ୍କଠାରରେ ନାହିଁ ତେଣୁ, ଅହଂ ସେ ନୋହିବ ।
ବାସ୍ତବ ବା ଅବାସ୍ତବ ସର୍ବ ବୈଚିତ୍ର୍ୟର
ସର୍ବଶକ୍ତିମାନ ହେତୁ ଜନକ ସବୁର ।
ସ୍ୱାଭାବିକ ଭ୍ରାନ୍ତିମୟ ପ୍ରତିଭା ତାହାର
ବାସ୍ତବ ଓ ଅବାସ୍ତବ କାରଣ ସବୁର ।
ଏବଂବିଧ ଆତ୍ମାଙ୍କର ଦରଶନ ପାଇଁ
ଅତିଶୟ ଯତ୍ନ ଜାଣ ଆବଶ୍ୟକ ହୋଇ ।
ଅହଂ ରୂପେ ଉପଲବ୍ଧ ହୋଇଲେ ହେଁ ସେହି
ବାସ୍ତବରେ ଅଲବ୍ଧ ସେ ହୋଇ ରହିଥାଇ ।
ମୂଳିଭୂତ ଯେ ଅଜ୍ଞାନ ବୋଧୋଦୟ ବିନା
ବିନଷ୍ଟ ନୋହିଛି ଆଗୋ ଅସୁର ଲଳନା ।
ସଂସାର ଲତିକା ଯେତେ ଦିନ ପରଯନ୍ତ
ବଢ଼ି ଚାଲିଥିବ ସିନା ନୋହିବ ତା' ଅନ୍ତ ।
ଯେ ଅଣୁ ନାମକ ବ୍ରହ୍ମକାର ଚିତ୍ ସତ୍ତା
କଥା କହିଗଲି ଆଗୋ ଅସୁରୀ ବନିତା ।
ସେହି ଅଣୁ ରୂପଧରି ଜଗତ ଆକାରେ
ବ୍ୟାପୀ ରହିଛନ୍ତି ସେହି ବିଶ୍ୱ ଚରାଚରେ ।
ତେଣୁ ସୁସ୍ଥ ଏ ଜୀବିତ ରହିଥିଲେ ସୁଦ୍ଧା
'ଆତ୍ମହରା' ବୋଲି ତାକୁ କହନ୍ତି ବିବୁଧା ।
ଏହି ଯେ ସୁସୂକ୍ଷ୍ମ ବ୍ରହ୍ମ ସାରା ତ୍ରିଭୁବନ
ଅନାୟାସେ ତୃଣବତ୍ କରିଛି ଧାରଣ ।
ଅନ୍ତରେ ବାହାରେ ମହାମାୟା ରୂପେ ଜାଣ
ନିଜକୁ ନିଜେ ଦେଖନ୍ତି ସେହି ସୂକ୍ଷ୍ମବ୍ରହ୍ମ ।
ସେ ଚିଦାଣୁ ଅନ୍ତରରେ ଯେ ସକଳ ଦୃଶ୍ୟ
ବାହାରେ ସେହି ସବୁର ମଧ୍ୟ ପରକାଶ ।

କିଛି ଭେଦ ନାହିଁ ତାର ବାହାର ଅନ୍ତର
ସବୁଠି ଗୋଟିଏ ରୂପ ତାର ଚରାଚର ।
ଦୃଷ୍ଟାନ୍ତ ଏହାର ଦେଖ ଅନୁରାଗୀ ଜନ
ସୁକଳ୍ପିତ ଅଙ୍ଗନାର କରେ ଆଲିଙ୍ଗନ ।
ସର୍ବଶକ୍ତିମୟୀ ଅଟେ ଯେ ଚିତ୍ ଶକତି
ସୃଷ୍ଟି ଅଗ୍ରେ ଯେଉଁଭାବେ ଉଦିତ ହୁଅନ୍ତି ।
ସୃଷ୍ଟିପରେ ଅବିକଳ ସେହି ରୂପଧରି
ପ୍ରକାଶ ଲଭନ୍ତି ଆଲୋ କର୍କଟୀ ଅସୁରୀ ।
ତାର ସେ ଆଦ୍ୟ ସଙ୍କଳ୍ପ ନିୟତି ନାମରେ
ପରିଚିତ ହୁଏ ଏହି ସୃଷ୍ଟି ଚରାଚରେ ।
ଯେ ଆକାରେ ଯେ ରୂପରେ ପ୍ରକାଶ ଇଚ୍ଛନ୍ତି
ସେହି ରୂପ ଅବିକଳ ଦର୍ଶନ କରନ୍ତି ।
ଅନ୍ୟଥା ନୁହଇଁ କେବେ ଏହି ଯେ ନିୟମ
ଏଥିର ଦୃଷ୍ଟାନ୍ତ ଜାଣ ବାଳକଙ୍କ ମନ ।
ସୂକ୍ଷ୍ମତମ ଚିଦାଣୁରେ ସମଗ୍ର ଜଗତ
ପରିପୂର୍ଣ୍ଣ ରହିଅଛି ଅକାଟ୍ୟ ଏ ସତ୍ୟ ।
ଏହି ଅଣୁ ସର୍ବଗମ୍ୟ ଅନାଦି ଅମିତ
ଲକ୍ଷ ଲକ୍ଷଯୋଜନରେ ନୁହେଁ ପରିମିତ ।
ଯୁବତୀକୁ ବଶକରେ କଟାକ୍ଷେ ଲମ୍ପଟ
ଚିଦାତ୍ମା ଉପାଧିବଳେ ତଥା ଭବ ନାଟ ।
ବସ୍ତ୍ରଦ୍ୱାରା ଭୂମିଖଣ୍ଡ ଯଥା ଆଚ୍ଛାଦିତ
ଅଣୁ ବ୍ରହ୍ମ ସ୍ୱୀୟ ଜ୍ଞାନେ ଆଚ୍ଛାଦେ ଜଗତ ।
ମହାଗିରିରୁ ମହାନ, ମନୁ ସୂକ୍ଷ୍ମ ଯେଣୁ
ଆଚ୍ଛାଦି ନପାରେ ଦିକ୍‌କାଳ ତାକୁ ତେଣୁ ।
ଏଥିଯୋଗୁ ସେ ଅଟନ୍ତି ସୂକ୍ଷ୍ମାଦପିସୂକ୍ଷ୍ମ
ସ୍ଥୁଳାଦପି ସ୍ଥୁଳ ପୁଣି ଅଟନ୍ତି ଯେ ବ୍ରହ୍ମ ।
ଆଲୋ ନିଶାଚରୀ ଯଥା ଶଇଳ ସହିତ
ସାଗର ତୁଳନା ହେବା ଅତି ଗରହିତ ।
ଆକାଶାତ୍ମା, ପରମାତ୍ମା ଶୁଦ୍ଧଜ୍ଞାନମୟ
ଅଣୁ ପରମାଣୁ ସହ ନୁହେଁ ତୁଳନୀୟ ।
ତଥାପି ତା ସଙ୍ଗେ ଅଣୁ ଶବ୍ଦ ବ୍ୟବହାର
ମୁଖ୍ୟ ନୁହେଁ ଗୌଣ ଅଟେ ନିଶାଚରୀବର ।
ପରମାଣୁ ଯେଉଁପରି ଅଟଇ ଅଲକ୍ଷ୍ୟ
ପରମାତ୍ମା ଯେଉଁପରି ଅଟଇ ଅଲକ୍ଷ୍ୟ ।
ପରମାତ୍ମାଙ୍କର ଏହି ଅଣୁତ୍ୱ ପ୍ରକାଶ
ତାଙ୍କ ମାୟା ଶକ୍ତି ଯୋଗୁ ଲଭଇ ବିକାଶ ।

ସୁନାରେ ବଳୟଭାବ ଯେସନ ନିହିତ
ମାୟାଘେନି ନାନାଭାବ ବ୍ରହ୍ମରେ କଳ୍ପିତ ।
ସେହି ଯେ ପରମଆତ୍ମାରୂପକ ଦୀପକ
ଆଲୋକ ଅନ୍ଧାର ଉଭୟଙ୍କ ପ୍ରକାଶକ ।
ଆତ୍ମା ବିନା ସ୍ୱୟଂ ପ୍ରକାଶକ ଯେ ଶକତି
ତ୍ରିଭୁବନେ କାହାଠାରେ ନାହିଁ ଗୋ ଯୁବତୀ ।
ତାହାର ଏ ସ୍ୱୟଂ ପ୍ରକାଶକ ଯେ ଶକତି
କେଭେଁ ହେଲେ ଅନାଟନ ନୁହେଁ, ଏହି ରୀତି ।
ଚନ୍ଦ୍ର ସୂର୍ଯ୍ୟ ଆଦି ଯେତେ ସୃଷ୍ଟି ସବୁ ଜଡ଼
ବ୍ରହ୍ମସତ୍ତା ଘେନି ସର୍ବେ ହୋଇଛନ୍ତି ବଡ଼ ।
କେବଳ ଯେ ସତ୍ ପୁଣି ଶୁଦ୍ଧ ଚଇତନ୍ୟ
ସେହି ହିଁ ସେ ଆତ୍ମା ଏ ବିଶ୍ୱ ମଧ୍ୟର ।
ସୂର୍ଯ୍ୟ ବହ୍ନି ତେଜ ମଧ୍ୟେ ପାର୍ଥକ୍ୟ ନଥାଇ
କେବଳ ବର୍ଣ୍ଣ ପାର୍ଥକ୍ୟ ଅନ୍ୟ କିଛି ନୋହି ।
ଯେଣୁ ସେ ସକଳେ ଜଡ଼ ସ୍ୱପ୍ରକାଶହୀନ
କିଏ କି କରୁଛି ବୁଝ ଏ ସୃଷ୍ଟି ମଧ୍ୟେଣ ।
ମେଘ ଓ ନୀହାର ମଧ୍ୟେ ପ୍ରଭେଦ ଯେତିକି
ଆଲୋକ ଅନ୍ଧାର ମଧ୍ୟେ ପାର୍ଥକ୍ୟ ତେତିକି ।
ଏକ ଚିତ୍-ସୂର୍ଯ୍ୟ ସର୍ବ ଜଡ଼ ପଦାର୍ଥରେ
ବିଦ୍ୟମାନ ରହିଛନ୍ତି ନିମିତ୍ତ ଭାବରେ ।
ସକଳ ବସ୍ତୁ ଅସ୍ତିତ୍ୱ ପ୍ରମାଣ କରନ୍ତି
ସେ ନଥିଲେ କାହାରି ହିଁ ଅସ୍ତିତ୍ୱ ଯେ ନାସ୍ତି ।
ସେ ଚିତ୍ ଆଦିତ୍ୟ ହୋଇ ଆଳସ୍ୟ ବିହୀନ
ସଦା ସମଭାବେ କରେ ଆଲୋକ ପ୍ରଦାନ ।
ପାଷାଣ ମଧ୍ୟେ ଆଲୋକ ପ୍ରଦାନିବା ପାଇଁ
କେଭେଁହେଲେ ଅନିଚ୍ଛା ସେ ପ୍ରକାଶଇ ନାହିଁ ।
ସର୍ବଲୋକକୁ ଆଲୋକ କରନ୍ତି ପ୍ରଦାନ
ସଦା, ସର୍ବତ୍ର, ଚୈତନ୍ୟ ଯେଣୁ ବିଦ୍ୟମାନ ।
ଏହି ଦେହ ଅଟେ ଅତିଶୟ ତମୋପୂର୍ଣ୍ଣ
ନ ନାଶି ତାହାକୁ ସେହୁ କରେ ପ୍ରକାଶନ ।
ଆଗ ଦେହକୁ ପ୍ରକାଶି ସେ ଚିତ୍ ତପନ
ପରେ ଏହି ଜଗତକୁ କରେ ପ୍ରକାଶନ ।
ପଦ୍ମକୁ ଫୁଟାଇଦିଏ ତପନ ଯେସନ
ତମ ପ୍ରକାଶକୁ ଚିତ୍ତ ଫୁଟାଏ ତେସନ ।

ଦିନ ରାତି ସୃଷ୍ଟି କରି ତପନ ଯେସନ
ନିଜର ଆକୃତି କରୁଥାନ୍ତି ପ୍ରଦର୍ଶନ ।
ଚିତ୍‌ସୂର୍ଯ୍ୟ 'ସତ୍' ଅସତ୍ କରି ଅବଭାସ
ନିଜର ସ୍ୱରୂପ ତେଣୁ କରିଥାଆନ୍ତି ପ୍ରକାଶ ।
ବସନ୍ତ ଶୋଭାର ଯଥା ଫୁଲଫଳମାନ
ଗୋପନ ଭାବରେ କରିଥାନ୍ତି ଅବସ୍ଥାନ ।
ଏ ଚିଦାଣୁ ମଧ୍ୟେ ତଥା ଯାବତୀୟ ଜ୍ଞାନ
ନିହିତ ରହି ଅଛନ୍ତି ଗୁପତ ଭାବେଣ ।
ବସନ୍ତ ସମୟେ ସର୍ବ ଶୋଭାର ଜନମ
ଚିଦାଣୁ ମଧ୍ୟରୁ ସର୍ବ ଅନୁଭବ ଜନ୍ମ ।
ପରମଅଣୁ ହେଲେ ହେଁ ରସନା ବିହୀନ
ତହୁଁ ସର୍ବ ସ୍ୱାଦୁ ସତ୍ତାମାନଙ୍କ ଜନମ
ସ୍ୱାଦୁହୀନ ହୋଇଲେ ହେଁ ସତ୍ୟ ସଦାତନ
ସମସ୍ତ ସ୍ୱାଦମାନଙ୍କୁ କରେ ଆସ୍ୱାଦନ ।
ରସ ମାତ୍ର ହିଁ ଜଳରେ କରେ ଅବସ୍ଥାନ ।
ରସରୂପେ ଚିଦାଣୁର ଜଳମଧ୍ୟେ ସ୍ଥାନ ।
ତେଣୁ ମୂଳରସ ରୂପ ସେ ଚିଦାଣୁ ଆତ୍ମା
ସର୍ବାତୀତ କିନ୍ତୁ ସର୍ବ ସ୍ଥାନେ ତାର ସତ୍ତା ।
ତେଣୁ ଏ ସର୍ବେ ଅଟନ୍ତି ତାହାର ଆଶ୍ରିତ
ସ୍ଫୁରିତ ନ ହେଲେ ସେହୁ ନଥାଏ ଜଗତ ।
ତାହାର ସ୍ଫୁରଣ କାଳେ ଜଗତ୍ ପରିଦୃଷ୍ଟ
ତାର ସ୍ଫୁରଣେ ହିଁ ସର୍ବଜଗତ ଆଶ୍ରିତ ।
ନିଜେ ଛପି ରହିବାକୁ ହୋଇଣ ଅକ୍ଷମ
କରିଛନ୍ତି ଚିଦାକାର ଅଣୁ ବିସ୍ତାରଣ ।
ଦୂର୍ବାଦଳେ ହସ୍ତୀ ଯଥା ଲୁଚି ନପାରଇ
ଆକାଶାତ୍ମା ବ୍ରହ୍ମ କାହିଁ ଅପ୍ରକାଶ ନୋହି ।
ବସନ୍ତେ ବସନ୍ତ ଶୋଭା ନିହିତ ଯେସନ
ଚିଦାଣୁ ମଧ୍ୟେ ଜଗତ ପ୍ରଳୟେ ତେସନ ।
ଆସନ୍ତେ ବସନ୍ତ ବନଭୂମି ଉଲ୍ଲସିତ
ଚିତ୍ତ ସତ୍ତାଦ୍ୱାରା ଭବ ସଦା ପୁଲକିତ ।
ଚିଦାତ୍ମା ଅଟନ୍ତି ସର୍ବଭୂତେ ବସ୍ତୁସାର
ସହସ୍ର ଲୋଚନ ପୁଣି ଶତ ଶତ କର ।
ପୁଣି ସୂକ୍ଷ୍ମତମ ବୋଲି ଜଗତେ ବୋଲନ୍ତି
ଅବୟବ ହୀନ ବୋଲି ଜ୍ଞାନୀଏ ଜାଣନ୍ତି ।
ସେହି ସେ ନିମେଷ ପୁଣି ସେହି ଯେ କଳପ
ସ୍ୱପନେ ବାଲ୍ୟ, ବାର୍ଦ୍ଧକ୍ୟ ନାଚନ୍ତି ଯେ ରୂପ ।
ନ ଖାଇ ଖାଇଛି ବୋଲି ବୋଧ ହେଲାପରି
ନିମେଷ କଳପ ବୋଧ ହୁଏ ସେହିପରି ।
ବୀଜ ମଧ୍ୟେ ବୃକ୍ଷ ଯଥା ଗୁପତରେ ଥାଏ
ପ୍ରଳୟାନ୍ତେ ଜଗତ୍‌ସତ୍ତା ଚିଦାଣୁରେ ରହେ ।
ଯାହା ମଧ୍ୟେ ଯେଉଁ ବସ୍ତୁ କଲେ ଅବସ୍ଥାନ
ତାହାରିଠାରୁ ତାହାର ହୁଅଇ ଜନମ ।
'ସାକାର' ବସ୍ତୁର ତହିଁ ଜନମେ ବିକାର
ନିରାକାରର ବିକାର ନ ଘଟେ ତହିଁର ।
ଚାଉଳକୁ ଚଷୁ ଯଥା ଘୋଡ଼ାଇ ରଖଇ
ଚିଦାଣୁ କଳ୍ପ ନିମିଷେ ତଥା ଢାଙ୍କି ରହି ।
ବ୍ରହ୍ମ ଯେ ନିର୍ଲିପ୍ତ ରହି ଉଦାସୀନ ଥାଏ
ମାୟାବଳେ ଜଗତର କର୍ତ୍ତା, ଭୋକ୍ତା ହୁଏ ।
ଚିଦାଣୁରୁ ଏ ଜଗତ ଜାତ ହେବା ସତ
କିନ୍ତୁ ବିଶୁଦ୍ଧ ଚିଦାଣୁ ତହିଁ ନୁହେଁ ଲିପ୍ତ ।
ପରମଅର୍ଥ ଦୃଷ୍ଟିରୁ ସେହି ବିଶ୍ୱ ପିତା
ନୁହନ୍ତି ଯେ ଜଗତର କର୍ତ୍ତା ଅବା ଭୋକ୍ତା ।
ଏହାଙ୍କ କର୍ତ୍ତୃତ୍ୱ ଅବା ଏହାଙ୍କ ଭୋକ୍ତୃତ୍ୱ
ସେହି ଚିଦାଣୁଙ୍କ ବ୍ୟବହାର ଦୃଷ୍ଟିମାତ୍ର ।
ଆଲୋ ନିଶାଚରୀ ଏବେ କହୁଛି ଯା ଶୁଣ
ଦୃଶ୍ୟ ଭୋଗ ସିଦ୍ଧିପାଇଁ ଯା'କରେ ବିଧାନ ।
ଅନ୍ତଃ ଚିତ ଚମତ୍କୃତ ବାହ୍ୟେ ପ୍ରକାଶିଣ
ଚକ୍ଷୁହୀନ ହେଲେ ହେଁ ତା କରେ ଦରଶନ ।
ବ୍ରହ୍ମଛଡ଼ା ଅନ୍ୟ କିଛି ନଥିଲେ ହେଁ ଜାଣ
ଅନ୍ତଃସ୍ଥ ବହିଃସ୍ଥ ରୂପେ କଳ୍ପିତ ହୋଇଣ ।
ସାଧକର ବୋଧଗମ୍ୟ ହେବାର ନିମିତ୍ତ
ଏ ବ୍ରହ୍ମଙ୍କୁ କରାଯାଏ ଏସନ କଳ୍ପିତ ।
ସେହି ଅଖଣ୍ଡ ବ୍ରହ୍ମଙ୍କ ସେ ବିଦ୍ୟମାନତା
ଅନ୍ୟ ପଦାର୍ଥ ଆକାରେ ତାଙ୍କର ସେ ସତ୍ତା ।
ସମ୍ଭବପର ନୁହଇ ପ୍ରକାଶ କରଣେ
ପରାସ୍ତ ହୋଇଅଛନ୍ତି ବିଜ୍ଞ ବ୍ୟକ୍ତିମାନେ ।
ତେଣୁ ବୁଝିବାକୁ ହେବ ନିଜେ ସେ ଦର୍ଶକ
ଦୃଶ୍ୟ ହୋଇ ଦେଖୁଛନ୍ତି ନିଜକୁ ବାଳକ ।
ଏପରି ହେଲେ ହେଁ ସୁଦ୍ଧା ସେ ଜଗତପତି
ଅଖଣ୍ଡ ବ୍ରହ୍ମ ଭାବରେ ବିରାଜୁ ଅଛନ୍ତି ।
କିଛି ହିଁ ବିସ୍ମୃତି ନାହିଁ ଯେଣୁ ତାଙ୍କଠାରେ
ଦୃଶ୍ୟ ବା ଦ୍ରଷ୍ଟା ସେ କିଛି ନୁହେଁ ଯଥାର୍ଥରେ ।

ଆତ୍ମ ଚୈତନ୍ୟ ହିଁ ନାରୀ ଯଥାର୍ଥ ନୟନ
ଚକ୍ଷୁ, କର୍ଣ୍ଣ ଆଦି ତାର ଦ୍ୱାର ମାତ୍ର ଜାଣ ।
ନିଜ ଦର୍ଶନ ବାସନା ଚରିତାର୍ଥ ପାଇଁ
ଭାବ ଶୂନ୍ୟ ଚିଦ୍‌ବପୁକୁ ଦୃଶ୍ୟରୂପ ଦେଇ ।
ଦ୍ରଷ୍ଟାରୂପେ ଚଇତନ ଉଦିତ ହୋଇଣ
ସ୍ୱୀୟ ଦର୍ଶନ ଲାଳସା କରନ୍ତି ପୂରଣ ।
ଦ୍ୱିତୀୟ ଅଭାବେ ଯଥା ଏକତ୍ୱ ଅସିଦ୍ଧ
ଦ୍ରଷ୍ଟା ଅଭାବେ ଦର୍ଶନ ତଥା ନୁହେଁ ସିଦ୍ଧ ।
ସୁବର୍ଣ୍ଣ ଧାତୁରୁ ଯଥା ବଳୟ ନିର୍ମିତ
ଚିଦ୍‌ଶକ୍ତି ବଳରୁ ଦ୍ରଷ୍ଟା, ଦୃଶ୍ୟ ଉପୁଜିତ ।
ଯେ ହେତୁ ସୁବର୍ଣ୍ଣରୁ ହିଁ ବଳୟ ନିର୍ମିତ
ବଳୟରୁ କେଉଁ ନୁହେଁ ସୁବର୍ଣ୍ଣ ପ୍ରସ୍ତୁତ ।
ଦୃଶ୍ୟ କେଉଁ ଉପୁଜାଇ ନପାରଇ ଦ୍ରଷ୍ଟା
ଜଡ଼ ହେତୁ ତାର ଏହି ଶକତି ହୀନତା ।
ବଳୟର ଭ୍ରାନ୍ତି ଯଥା ସୁବର୍ଣ୍ଣେ ନିହିତ
ଚିତ୍ ଶକ୍ତି ଅସତକୁ କଳପଇ ସତ ।
ବଳୟ ଦର୍ଶନେ ଯଥା ସୁବର୍ଣ୍ଣ ପାଶୋର
ଦୃଶ୍ୟ ପ୍ରକାଶିତ ହେଲେ ଦ୍ରଷ୍ଟା ଯାଏ ଦୂର ।
'ଏହା ସୁବର୍ଣ୍ଣ ବଳୟ' ଏମନ୍ତ କହନ୍ତେ
ସ୍ୱର୍ଣ୍ଣ ବଳୟ ଉଭୟେ ଦେଖାଯାନ୍ତି ନେତ୍ରେ ।
'ଚିତ୍ ଶକ୍ତି ହିଁ ଦୃଶ୍ୟ ହେଲା' ଏମନ୍ତ କହିଲେ
ଉଭୟ ଅଭିନ୍ନ ରୂପ ଦେଖାଯାନ୍ତି ଭଲେ ।
ଏହି ଉଦାହରଣରୁ ଏହି ଶିକ୍ଷା ମିଳେ
ଦଶକ ପ୍ରକାଶ ପାଏ ଦୃଶ୍ୟଜ୍ଞାନ ଗଲେ ।
ପକ୍ଷାନ୍ତରେ ଦ୍ରଷ୍ଟାହୋଇ ଆତ୍ମା ଦେଖେ ଦୃଶ୍ୟ
ଦୃଶ୍ୟଜ୍ଞାନ ଲୀନ ହେଲେ ଦ୍ରଷ୍ଟା ହିଁ ଅଦୃଶ୍ୟ ।
ଦୃଶ୍ୟାଭାବେ ଯେବେ ଦ୍ରଷ୍ଟା ଆଉ ନରହଇ
ବାକ୍ୟମନ ଅଗୋଚର ସ୍ୱଚ୍ଛତତ୍ତ୍ୱ ରହି ।
ନିଜକୁ ପ୍ରକାଶି ଦୀପ ଅନ୍ୟକୁ ପ୍ରକାଶେ
ବ୍ରହ୍ମ ବି ତାଦୃଶ ଦ୍ରଷ୍ଟା, ଦୃଶ୍ୟ ପରକାଶେ ।
ପ୍ରମାଣ, ପ୍ରମେୟ, ପ୍ରମାତାଦି ଅସତ୍ ଜ୍ଞାନ
ତତ୍ତ୍ୱ ଜ୍ଞାନୋଦୟେ ହୋଇଯାନ୍ତି, ତିରୋଧାନ ।
ଭୌତିକ ବସ୍ତୁକୁ ମୃତ୍ୟୁ କେଉଁ ନ ଛାଡ଼ଇ
ତେସନ ଚିଦାଣୁଠାରୁ କେହି ଭିନ୍ନ ନୋହି ।
ଆତ୍ମା ସର୍ବାନୁଭୂ ପୁଣି ଆତ୍ମା ସର୍ବଗାମୀ
ଅଦ୍ୱୈତ ସେ ଏକତ୍ୱାନୁଭବ ଯୁକ୍ତି ଘେନି ।

ତାଙ୍କର ଇଚ୍ଛାରୁସିନା ଏସବୁ ପାର୍ଥକ୍ୟ
ଯଥା ତରଙ୍ଗ ଜଳରୁ ନୁହଇ ପୃଥକ ।
ତାଙ୍କରି ଇଚ୍ଛାରେ ଏହି ସକଳ ପଦାର୍ଥ
ଚକ୍ଷୁକୁ ଦୃଶ୍ୟ ହୁଅନ୍ତି ପୃଥକ ଯେମନ୍ତ ।
'କେବଳ' ସ୍ୱରୂପ ଅନବଚ୍ଛିନ୍ନ ଚିଦାଣୁ
ଏକ ପରମାତ୍ମାଭାବେ ଅଛନ୍ତି ସେ ଅଣୁ ।
ସେହି ହିଁ ଜାଣ ସକଳ ଭୂତଙ୍କର ଆତ୍ମା
ସାକ୍ଷାତାନୁଭବରୂପୀ ସେହି ପରମାତ୍ମା ।
ସେହି ଯେ ଅଟନ୍ତି ସର୍ବଭୂତଙ୍କ ଚେତନା
ସର୍ବ ଇନ୍ଦ୍ରିୟ ଗୋଚର ସେହି ମହାତମା ।
ତେଣୁ କରି ସେହି ସତ ସେ ପୁଣି ଅସତ
ଉଭୟ ଆଖ୍ୟାରେ ସେହି ହୁଅନ୍ତି ସେ ସତ
ଇନ୍ଦ୍ରିୟ ଗୋଚରଭାବେ ବୋଲାନ୍ତି ଅସତ ।
ଚିଦ୍‌ରୂପ ବୋଲି ଅସତର ପ୍ରକାଶକ
ଜଗତ ଯାଦୁ ଗୃହର ଯେ ଯାଦୁକାରକ ।
ଏକତ୍ୱ ଦୁଇତ୍ୱ ତାର ତହିଁ ବିଦ୍ୟମାନ
ଦୁଇତ୍ୱ ଥିଲେ ଏକତ୍ୱ ରହିବ ହିଁ ଜାଣ ।
ରୌଦ୍ର ଛାୟାପରି ଆପେକ୍ଷିକ ଏହିମାନ
ଦୁଇତ୍ୱ ନଥିଲେ ଏକତ୍ୱର କାହିଁ ସ୍ଥାନ ?
ଏକ ଅଭାବେ ଦୁହିଁଙ୍କ ଅଭାବ ଘଟଇ
ସର୍ବବାଦୀମତ ଏହା ଦାନବ ତନୟୀ ।
ଦ୍ୱୈତ ଅଦ୍ୱୈତ ଉଭୟ-ଧର୍ମଶୂନ୍ୟ ତତ୍ତ୍ୱ
ଏ ଧର୍ମଧରି ଯେ ରହେ ଧର୍ମାନ୍ୱିତବତ ।
ଜଳ, ଜଳ-ଦ୍ରବଭାବ ଅଭିନ୍ନ ଯେସନ
ସେହି ମଧ ଏହି ଆତ୍ମତତ୍ତ୍ୱରୁ ଅଭିନ୍ନ ।
ବୀଜମଧ୍ୟେ ବୃକ୍ଷ ଯଥା କରେ ଅବସ୍ଥାନ
ସେହିପରି ବ୍ରହ୍ମ ମଧ୍ୟେ ଜଗତର ସ୍ଥାନ ।
ସ୍ୱର୍ଣ୍ଣରୁ ବଳୟ ଯଥା ନୁହଁଇ ପୃଥକ
ଦ୍ୱୈତରୁ ଅଦ୍ୱୈତ ସଦା ରହେ ଅପୃଥକ ।
ତତ୍ତ୍ୱ ଜ୍ଞାନ ଉଦୟରେ ଏହି ଦ୍ୱୈତଜ୍ଞାନ
ହୃଦୟ ମଧ୍ୟେ ରହିବା ସମ୍ଭବ କେସନ ?
ଜଳ, ଜଳ-ଦ୍ରବ ଭାବ ଯେପରି ଅଭିନ୍ନ
ଦ୍ୱୈତ ଦ୍ୱୈତାଭାବ ବ୍ରହ୍ମଠାରୁ ନୁହେଁ ଭିନ୍ନ ।
ତେଣୁ ଦ୍ୱୈତା ଦ୍ୱୈତ ଜ୍ଞାନ ନୁହେଁ ଶ୍ରେୟସ୍କର
ଉଭୟ ଭାବ ବିହୀନ ଅଟନ୍ତି ଈଶ୍ୱର ।

ସେହି ବ୍ରହ୍ମଭୂତ, ଭବିଷ୍ୟତ, ବର୍ତ୍ତମାନ
ତ୍ରିକାଳରେ ଏକ ରୂପେଛନ୍ତି ବିଦ୍ୟମାନ ।
ଚିଦାଣୁରେ ଦ୍ରଷ୍ଟା, ଦୃଶ୍ୟ, ଦର୍ଶନ, ତ୍ରିଭାବ
କଳ୍ପନାମୂଳକ ବୋଲି ବୁଝିବାକୁ ହେବ ।
ଏ ଜଗଦାତ୍ମକ ଭାବ ଏ ଅଣୁ ମଧ୍ୟରେ
ବିସ୍ତୃତ ରହିଅଛନ୍ତି ଶରୀର ଆକାରେ ।
ତାହାରି ମଧ୍ୟରେ ଶେଷେ ହୋଇବେ ସଂହୃତ
ବୁଝୁଥିବୁ ଅସୁରୀ ଲୋ ଏହି ଗୂଢ଼ ତତ୍ତ୍ୱ ।
ଆହାକି ଅଦ୍ଭୁତ ଶକ୍ତି ଅଟଇ ମାୟାର
ପରମାଣୁ ମଧ୍ୟେ ଜଗତ୍ କି ସମ୍ଭବପର ?
ଏହା କି ଅଟଇ କମ୍ ଆଶ୍ଚର୍ଯ୍ୟ ବିଷୟ
ଭାବିଲେ ତ ଚି[illegible] କେଭେଁ ନହୁଅଇ ଥୟ ।
ଯଥାର୍ଥ ନୋହିଲେ ମଧ୍ୟ ସେହି ଚିଦାଣୁରେ
ଜଗତର ସତ୍ତା ପରିଦୃଷ୍ଟ ଯେ ତହିଁରେ ।
ଅଥବା ଏ ଅସମ୍ଭବ ବ୍ୟାପାର ନୁହଁଇ
ମାୟାପକ୍ଷେ ଅସମ୍ଭବ ଯେଣୁ କିଛି ନାହିଁ ।
ଏମନ୍ତ କି ବସ୍ତୁ ଥାଇପାରେ ଏହି ବିଶ୍ୱେ
ପରିଦୃଷ୍ଟ ହୋଇ ନପାରଇ ମାୟାବଶେ ।
ପତ୍ର, ପୁଷ୍ପ ଆଦି ସମନ୍ୱିତ ବୃକ୍ଷଭାବ
ବୀଜ ମଧ୍ୟେ ଅବସ୍ଥାନ କରିଥାଏ ସର୍ବ ।
ଦ୍ୱୈତଭାବ ପରିହାର ନକରି ତେସନ
ଏ ଜଗତ ଚିଦାଣୁରେ କରେ ଅବସାନ ।
ଅଦ୍ୱୈତ ଭାବ ଯେ ଦେଖେ ଏ ଦ୍ୱୈତ ଜଗତ
ଯଥାର୍ଥ ଦର୍ଶନ ତାର ଦର୍ଶନ ସମସ୍ତ ।
କେଉଁଟି ତତ୍ତ୍ୱ ନୁହଇ ଦ୍ୱୈତ ବା ଅଦ୍ୱୈତ
ଉତ୍ପନ୍ନ ବା ଅନୁତ୍ପନ୍ନ ନୁହଁନ୍ତି କେହି ତ ।
ଏହା ସତ୍ତା ନାହିଁ କି ଅସତ୍ତା ବି ନାହିଁ
କେବଳ ସତ୍ ହିଁ ମାତ୍ର ତହିଁ ବିରାଜଇ ।
ତାଙ୍କ ଛଡ଼ା ଅନ୍ୟସବୁ ଅକିଞ୍ଚିତ କର
ବ୍ରହ୍ମଜ୍ଞାନୀମାନଙ୍କ ଏମନ୍ତ ବିଚାର ।
ସର୍ବ ସ୍ୱରୂପିଣୀ ଚିତ୍ ଯେ ରୂପେ ଯେ ସ୍ଥାନେ
ଉଦିତ ହୁଅନ୍ତି ଏହି ବିଶ୍ୱ ନିକେତନେ ।
ସେ ସ୍ଥାନେ ସେପରି ହୋଇଥାନ୍ତି ବ୍ୟବହୃତ
ବ୍ରହ୍ମର ଶକତି କେଭେଁ ନୁହେଁ ପରିମିତ ।
ହେଲେ ହେଁ ସେ ଅନୁଦୟ ସ୍ୱଭାବ ସମ୍ପନ୍ନ
ପ୍ରତିଭାସ ବଳେ ସୃଷ୍ଟି ଆକାର ଧାରଣ ।
ପ୍ରପଞ୍ଚ ଶୂନ୍ୟ ଅଭିନ୍ନ ଭାବରେ ଯେ ସେହି
ସର୍ବାତ୍ମା ରୂପେ ବିରାଜମାନ କରୁଛଇ ।
ଜଗଦାକାରେ ଉଦିତ ସେ ପରମତତ୍ତ୍ୱ
ଜନ୍ମମୃତ୍ୟୁର ଅଧୀନ ହୁଅନ୍ତି ସତତ ।
ସଙ୍ଗହୀନ ସର୍ବତ୍ୟାଗୀ ଅଟନ୍ତି ତ ସେହି
ସର୍ବରୂପୀ ହେତୁ ଭୋକ୍ତା ଅତ୍ୟାଗୀ ବୋଲାଇ ।
ଯେହୁ 'ତତ୍ତ୍ୱ' ସେହୁ ସ୍ୱଭାବତଃ ନିର୍ବିକାର
ତତ୍ତ୍ୱରୂପୀ ପରମବ୍ରହ୍ମ କଳ୍ପନା ବାହାର ।
ମୃଣାଳ ସୂତ୍ର ଯେ ପରମାଣୁର ନିକଟ
ମହାମେରୁ ପରି ହୁଏ ଅତୀବ ବିରାଟ ।
ମୃଣାଳ ସୂତ୍ର ଦୃଷ୍ଟିକୁ ଦେଖାଯାଇଥାଏ
ପରମାଣୁ କିନ୍ତୁ ଦୃଷ୍ଟିଗୋଚର ନହୁଏ ।
ପରମାଣୁ ମହାମେରୁ ଆମ୍ଭ ସମକ୍ଷରେ
ଅଦୃଶ୍ୟ ହେଲେ ହେଁ ବୋଧଗମ୍ୟ ହୋଇପାରେ ।
ପରମାତ୍ମା ନୁହନ୍ତି ତ ବୁଦ୍ଧିକି ଗୋଚର
ପରମାଣୁଠାରୁ ଦୁର୍ଲକ୍ଷ୍ୟାରୁ ଦୂରତର ।
ଦୁର୍ଲକ୍ଷ୍ୟ ପରମ ଅଣୁ ପରମାତ୍ମାଠାରେ
କୋଟି ମେରୁ ମନ୍ଦରାଦି ବିରାଜେ ତହିଁରେ ।
କେବଳ ସେହି ପରମ ପରମାଣୁ ନାରୀ
ପରିବ୍ୟାପ୍ତ ରହିଛନ୍ତି ସବୁଠାରେ ପୂରି ।
ଏ ଜଗତ ସର୍ଜନା ହିଁ ତାଙ୍କରି କରଣୀ
ଆଉ କେହି ତ ନୁହନ୍ତି ବୁଢ଼ୀ ଅସୁରୁଣୀ ।
ଏହି ଯେ ବିଶ୍ୱ ପ୍ରପଞ୍ଚ ଦେଖୁଛୁ ଅସୁରୀ
ଗନ୍ଧର୍ବ ନଗର ନଭେ ବିରାଜିଲାପରି ।
ହେଲେ ହେଁ ତା ସୁବିଚିତ୍ର ଆକୃତି ସମ୍ପନ୍ନ
ଶୂନ୍ୟଠାରୁ ମହାଶୂନ୍ୟ ମହାମହାଶୂନ୍ୟ ।
ଏଭାବେ ଦେଖିଲେ ଭବ ଦ୍ୱୈତ ଭାବହୀନ
ପିଣ୍ଡିଭୂତ ପରମାର୍ଥ ରୂପେ ବିଦ୍ୟମାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ପରମାର୍ଥ ନିରୂପଣ ବର୍ଣ୍ଣନେ ନାମ ୫୭ତମ୍ ସର୍ଗଃ ।**



## ୫୮ତମ ସର୍ଗଃ

## ରାକ୍ଷସୀ ସହୃଦୟତା

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
କିରାତ ରାଜନ କଥା କରିଣ ଶ୍ରବଣ ।

କକଟୀ ରାକ୍ଷସୀ ନିଜ ପ୍ରଶ୍ନର ଉତ୍ତର
ପାଇ ବିଶ୍ରାନ୍ତି ଲଭିଲା ଚପଳତା ତାର ।
ଧୀରେ ଧୀରେ କହଇ ସେ ହେ ବୀରଯୁଗଳ
ଏବେ ମୁଁ ବୁଝୁଛି ତୁମ ବୁଦ୍ଧି ସୁନିର୍ମଳ ।
ସାରାବତୀ ବୁଦ୍ଧି ତୁମ ଜ୍ଞାନଦୀପ ତେଜେ
ଉଦ୍ଭାସିତ ହୋଇଅଛି ଶୁଣ ଆହେ ଆର୍ଯ୍ୟେ ।
ଚନ୍ଦ୍ରମଣ୍ଡଳରୁ ଶୁଭ୍ର ଜ୍ୟୋସ୍ନା ସୁଶୀତଳ
ଆଶ୍ୱାସିତ କରେ ସନ୍ତାପିତ ଧରାତଳ ।
ତୁମ ନିର୍ମଳ ବୁଦ୍ଧିରୁ ଜ୍ଞାନାମୃତ ଧାରା
ନିର୍ଗତ ହୋଇଣ ମୋତେ ସୁଶୀତଳ କଲା ।
ଆପଣଙ୍କ ପରି ସର୍ବଜ୍ଞାନୀ ବ୍ୟକ୍ତିଗଣ
ସକଳଙ୍କ ପୂଜା ପାତ୍ର ଅଟନ୍ତି ସେମାନ ।
ଆଜି ତୁମମାନଙ୍କର ସଙ୍ଗ ଲାଭକରି
ହେଉଛି ମୁଁ ଚନ୍ଦ୍ରୋଦୟେ କୁମୁଦିନୀ ସରି ।
ମହତ ବ୍ୟକ୍ତି ସାନ୍ନିଧ ହୁଅନ୍ତେ ପ୍ରାପତ
ସକଳ ଦୁଃଖ ଦୁର୍ଦ୍ଦଶା ହୁଏ ଦୂରୀଭୂତ ।
ଏବେ ମୋର ଅଭିଳାଷ କିଛି ପ୍ରଦାନୀଣ
ତୁମପରି ମହତଙ୍କୁ କରିବି ପ୍ରସନ୍ନ ।
ସନ୍ତୋଷେ କହୁଛି ଆହେ ନରଶ୍ରେଷ୍ଠ ଦ୍ୱୟ
ତୁମର ଇପ୍ସିତ ବସ୍ତୁ ଫିଟାଇଣ କହ ।
କହନ୍ତି ରାଜନ ଶୁଣ ଆଗୋ ନିଶାଚରୀ
ଏହି ଜନପଦବାସୀ ଯେତେ ନରନାରୀ ।
ବିସୂଚିକା ଶୂଳରୋଗ ତାଙ୍କୁ ଦିଏ ଘାରି
ଉପାୟଥିଲେ ତା ଏବେ କହ ଗୋ ଅସୁରୀ ।
ଔଷଧିରେ ଏ ବ୍ୟାଧିର ଉପଶମ ନୋହି
ରାତ୍ରିକାଳେ ବନେ ବୁଲୁ ପ୍ରତିକାର ପାଇଁ ।
ମନ୍ତ୍ର ଯନ୍ତ୍ର ବଳେ ଉପଶମ ହୋଇପାରେ
ଜଣାଥିଲେ ବତାଅ ଗୋ ଆମ୍ଭ ସମକ୍ଷରେ ।
ତୁମପରି ଅଜ୍ଞ ଲୋକଙ୍କୁ ଯେ ବିନାଶଇ
ତାହାର ବିନାଶ ଆମ୍ଭ ଉଦ୍ଦେଶ୍ୟ ଅଟଇ ।
ହେ ଶୁଭେ ! ତୁମ୍ଭେ ନିକଟେ ଆମ୍ଭ ଏ ପ୍ରାର୍ଥନା
ଆଜଠାରୁ କାହାପ୍ରତି ହିଂସା କରିବନାଁ ।
ଆମ୍ଭ ପ୍ରାର୍ଥନା ପୂରଣ କରିବାର ପାଇଁ
ପ୍ରତିଜ୍ଞା କରି କୃତାର୍ଥ କରି ମହାମାୟୀ ।
ଅସୁରୀ କହେ ରାଜନ ଆଜିଠାରୁ ମୁହିଁ
ପ୍ରତିଜ୍ଞା କରୁଛି ଜୀବ ନବଧିବା ପାଇଁ ।
ଏ ପର୍ବତେ କ୍ରମାଗତ ଛଅମାସ କାଳ
ସମାଧି ମଗନ ଥିଲି ଆହେ ନରବାଳ ।
ସମାଧି ଅନ୍ତେ ଭୋଜନ ଇଚ୍ଛା ମୋ ଜନ୍ମିଲା
ଏବେ ପୁଣି ଗିରିଶିଖେ ଯିବା ଇଚ୍ଛାହେଲା ।
ସମାଧିସ୍ଥ ହୋଇ ତହିଁ ପୁଣି ମୁଁ ବସିବି
ଯଥାକାଳେ ଏ ଶରୀର ତ୍ୟାଗ କରିଦେବି ।
ମୋ ପୂର୍ବ ତପସ୍ୟାବଳେ ବ୍ରହ୍ମା ପହଞ୍ଚିଲେ
ବିସୂଚିତା ଶୂଳବ୍ୟାଧି ମନ୍ତ୍ର ମୋତେ ଦେଲେ ।
ଯେ ମନ୍ତ୍ର ବଳେ ସେ ରୋଗ ହୋଇବ ବିଧ୍ୱସ୍ତ
ତାହା ଏବେ ନରନାଥ ନଦୀତୀରେ ଯିବା
ଆଚମନ କରି ଶୁଦ୍ଧ ପବିତ୍ର ହୋଇବା ।
ତା ପରେ ମନ୍ତ୍ରଗ୍ରହଣ କରିବେ ଆପଣ
ରାଜା ମନ୍ତ୍ରୀ ନଦୀ ତୀରେ କରନ୍ତି ଗମନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ରାକ୍ଷସୀ ସହୃଦୟତା ବର୍ଣ୍ଣନେ**
**ନାମ ୫୮ତମ ସର୍ଗଃ ।**



## ୫୯ତମ ସର୍ଗଃ
## ସୂଚୀ ଉପାଖ୍ୟାନ

ଆଚମନ ସାରି ରାଜା ପବିତ୍ର ହୋଇଲେ
ବ୍ରହ୍ମାଦତ୍ତ ବିସୂଚିକା ମନ୍ତ୍ର ଗୋଟି ନେଲେ ।
ରାକ୍ଷସୀଙ୍କୁ ରାଜା ପୁଣି କଲେ ଅନୁରୋଧ
ଏବେ ଚାଲନ୍ତୁ ଗୋ ନାରୀ ମୋ ରାଜ ପ୍ରାସାଦ ।
କିଛିଦିନ ମୋ ଆତିଥ୍ୟ କରିଲେ ଗ୍ରହଣ
ତେବେ ଯାଇଁ କୃତାର୍ଥ ମୁଁ ହୋଇବଇଁ ଜାଣ ।
ରାଜାଙ୍କ ବଚନ ଶୁଣି ହସଇ ରାକ୍ଷସୀ
ସଙ୍ଗେ ସଙ୍ଗେ ଧରିବ ସେ ଶରୀର ମାନୁଷୀ ।
ରାଜା ମନ୍ତ୍ରୀ ସହ ନାରୀ ବେଗେ ଯାଇ ଚଳି
ରାଜ ପ୍ରାସାଦରେ ଯାଇଁ ଅବସ୍ଥାନ କରି ।
ଅପରାଧୀ ଲୋକ ଯେତେ ମୃତ୍ୟୁଦଣ୍ଡ ପାନ୍ତି
ରାକ୍ଷସୀ ଭୋଜନ ପାଇଁ ରାଜା ପେଶି ଦ୍ୟନ୍ତି ।
ରାକ୍ଷସୀ ତାହାଙ୍କୁ ଘେନି ହିମାଳୟେ ଯାଇ
ଭୋଜନ ସାରି ସମାଧି ମଗନ ହୁଅଇ ।

ପାଞ୍ଚବର୍ଷ ସମାଧିରେ ହୋଇଯାନ୍ତେ ଗତ
ରାକ୍ଷସୀ ରାଜପ୍ରାସାଦେ ହୁଅଇ ଆଗତ ।
ଏହିପରି ପ୍ରତି ପାଞ୍ଚ ବରଷରେ ଥରେ
ରାଜଦଣ୍ଡ ଭୋଗୀଙ୍କୁ ସେ ଖାଏ ଆନନ୍ଦରେ ।
ଏବେ ମଧ୍ୟ ସେ ରାକ୍ଷସୀ ଜୀବନ୍ମୁକ୍ତ ହୋଇ
ହିମାଳୟ ଅରଣ୍ୟରେ ସମାଧିସ୍ଥ ରହି ।
କିରାତ ରାଜା ସହିତ ଏବେ ମଧ୍ୟ ତାର
ବନ୍ଧୁତା ରହିଛି ଆସୁଅଛି ବାରମ୍ବାର ।
ବଧ୍ୟ ବ୍ୟକ୍ତିମାନଙ୍କୁ ସେ ଧରିନେଇ କରି
ଆହାର କରୁଅଛଇ ଯଥା ପୂର୍ବପରି ।
**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ସୂଚୀ ଉପାଖ୍ୟାନେ ନାମ ୫୯ତମ ସର୍ଗଃ ।**



## ୬୦ତମ ସର୍ଗଃ
## ମନ ଅଙ୍କୁର୍ ଉତ୍ପତ୍ତି କଥନ

ବୋଲନ୍ତି ଶ୍ରୀରାମଚନ୍ଦ୍ର ଗୁରୁଦେବ ଶୁଣ
କି କାରଣେ ସେ ରାକ୍ଷସୀ ହେଲା କୃଷ୍ଣ ବର୍ଣ୍ଣ ।
କର୍କଟୀ ନାମ ତା ହେଲା କେବଣ କାରଣେ
କୁହ ମୋତେ ଗୁରୁଦେବ ଶ୍ରଦ୍ଧାବହି ମନେ ।
କହନ୍ତି ବଶିଷ୍ଠ ରାମ ରାକ୍ଷସଗଣର
ଅନେକ ବଂଶ ରହିଛି ଏ ସୃଷ୍ଟି ମଧ୍ୟର ।
ସେମାନଙ୍କ ମଧ୍ୟେ କିଏ ଶୁକ୍ଳ କିଏ କୃଷ୍ଣ
କିଏ ବା ହରିତ ଅବା ଅନ୍ୟ କିଛି ବର୍ଣ୍ଣ ।
ବଂଶ ପରମ୍ପରା କ୍ରମେ ଏ ରାକ୍ଷସୀ କୃଷ୍ଣ
କର୍କଟ ରାକ୍ଷସ ଥିଲା ତାର ପିତା ନାମ ।
ତେଣୁ କର୍କଟୀ ନାମରେ ଥିଲା ସେ ବିଖ୍ୟାତ
କଙ୍କଡ଼ା ପରି ସୁଦୀର୍ଘ ତାର ପଦ ହସ୍ତ ।
**ବ୍ରହ୍ମ ନିରୂପଣ ଆଧ୍ୟାତ୍ମଜ୍ଞାନାଲୋଚନ**
ପ୍ରସଙ୍ଗେ କର୍କଟୀ କଥା କରିଲି ବର୍ଣ୍ଣନ ।
ଗତ ଅନାଗତ ବର୍ତ୍ତମାନ ତିନିକାଳେ
ତରଙ୍ଗମାନ ଉଠୁଣଥାନ୍ତି ଯଥା ଜଳେ ।
ତଦ୍ରୂପ ଏ ସୃଷ୍ଟି ପରମ୍ପରା ବ୍ରହ୍ମପଦେ
ଅବସ୍ଥାନ କରିଛନ୍ତି ବିଧିଣ ନିର୍ବନ୍ଧେ ।
ବହୁ କର୍ତ୍ତାରୂପେ ଆବିର୍ଭୂତ ହୋଇ ସେହି
ନାନାଦି ଜଗତ ସୃଷ୍ଟି କରୁଣ ଅଛଇ ।
ତଥାପି ସେ ସ୍ୱୀୟ ଶାନ୍ତଭାବ କଦାଚନ
ପରିତ୍ୟାଗ କରେ ନାହିଁ ହେ ରଘୁନନ୍ଦନ ।
କାଷ୍ଠ ଖଣ୍ଡେ ମଧ୍ୟେ ଯଥା ପ୍ରତିମାର ଜ୍ଞାନ
ସୃଷ୍ଟ ନୋହିଲେ ହେଁ ଭବ, ସୃଷ୍ଟିବତ ଜାଣ ।
ହେଲେ ହେ ବୀଜ, ଅଙ୍କୁର ଏକଇ ପଦାର୍ଥ
ଭିନ୍ନ ଆକାର ଧାରଣ କରନ୍ତି ଯେମନ୍ତ ।
ଏକ ହୋଇଲେ ହେଁ ଚିତ୍ତ ବିଷୟ ସକଳ
ବିଭିନ୍ନ ଭାବେ ପ୍ରକାଶ ପାଏ ରଘୁବାଳ ।
ବିଚାର ଅଭାବ ହେତୁ ଏହି ଭେଦ ଜାଣ
ନୋହିଲେ ଏହାର ନାହିଁ କିଛି ହିଁ କାରଣ ।
ଯେଉଁଠାରୁ ତୁମର ଏ ଭ୍ରାନ୍ତି ଆସିଅଛି
ସେହିଠାକୁ ଚାଲିଯାଉ ଆହେ ରଘୁବଂଶୀ ।
ସେ ପରମୋତ୍କୃଷ୍ଟ ବ୍ରହ୍ମଜ୍ଞାନ ଲାଭକରି
ଏହି ଭ୍ରାନ୍ତି ପରିହାରକର ଚାପଧାରୀ ।
ମୋର ଉପଦେଶ ତୁମ ଭ୍ରାନ୍ତିକି ଛେଦିବ
ଅଭେଦ ବୁଦ୍ଧି ତୁମକୁ ପ୍ରାପତ ହୋଇବ ।
ତଦ୍ୱାରା ତୁମକୁ ପରଂପଦ ପ୍ରାପ୍ତ ହେବ
ଏ ଧ୍ରୁବ ମୋହର ବାଣୀ ବୁଝିବ ରାଘବ ।
ମୋର ଉପଦେଶେ ତୁମେ ବୋଧ ପ୍ରାପ୍ତ ହେଲେ
ବ୍ରହ୍ମରୁ ଏ ଜଗତ୍ ଜନ୍ମ ଜାଣିବ ହେ ଭଲେ ।
ତେବେ ଏ ସକଳ ବ୍ରହ୍ମ ବୋଲିଣ ଜାଣିବ
ଏଣୁ ସକଳ ସଂଶୟ ମନୁ ନାଶ ଯିବ ।
ଶ୍ରୀରାମଚନ୍ଦ୍ର କହନ୍ତି ଆହେ ଭଗବାନ
ଭିନ୍ନରୂପେ ପଞ୍ଚଭୂତ ଜଗତ୍ ଦୃଶ୍ୟମାନ ।
ପରମ କାରଣୁ ସେହି କି ରୂପେ ଅଭିନ୍ନ
କହି କରିବ ମୋହର ସଂଶୟ ଛେଦନ ।
ବଶିଷ୍ଠ କହିଲେ ଏବେ ଶୁଣ ରଘୁନାଥ
ଜଗତ ପରମ ଦୁହେଁ ଅଭିନ୍ନ ଯଥାର୍ଥ ।
ପ୍ରଭେଦ କେବଳ ଅଟେ କଳ୍ପନା ଜନିତ
ଉପଦେଶ ଖଡ୍‌ଗ ଦ୍ୱାରା ହୁଏ ତା ଛେଦିତ ।
ଭେଦ ବୋଧକ ଯା' କିଛି ଥାଏ କୁହାଯାଇ
ଶିଷ୍ୟଗଣଙ୍କୁ କେବଳ ବୁଝାଇବା ପାଇଁ ।
ବ୍ୟବହାରିକ ସଂସାରେ ଭେଦ ପାଇଁ ସ୍ଥାନ
ପରମାର୍ଥିକ ଦୃଷ୍ଟିରେ ନ ଥାଇ ତା ଚିହ୍ନ ।
ଯହିଁ ଏକତ୍ୱ ଦୁଇତ୍ୱ ଏକବାରେ ନାହିଁ
ସଂକଳ୍ପ ବିକଳ୍ପ ସେଠି ରହିବ ବା କାହିଁ ?

ଭେଦ ହିଁ ମିଥ୍ୟା କଳ୍ପନା ଆଜ୍ଞା ଲୋକଙ୍କର
ବୋଧ ସମ୍ପାଦନ ପାଇଁ ଅସ୍ତ ଜ୍ଞାନୀଙ୍କର ।
ବାସ୍ତବ ବସ୍ତୁ ଯେ, ତହିଁ କିଛି ଭେଦ ନାହିଁ
**ଅଖଣ୍ଡ ଅଦ୍ୱୈତ ସର୍ବମୟ ଅଟେ ସେହି ।**
ତତ୍ତ୍ୱଜ୍ଞ ହୋଇଗଲେ ରାମ ବୁଝିବ ଯେ ତହିଁ
ତାହାଭିନ୍ନ ଅନ୍ୟକିଛି ଏ ଜଗତେ ନାହିଁ ।
ପ୍ରବୁଦ୍ଧ ନୁହନ୍ତି ଯେଉଁମାନେ ଆହେ ରାମ
ଭେଦଜ୍ଞାନ ଘେନି ସଦା କରନ୍ତି ସଂଗ୍ରାମ ।
ପ୍ରକୃତ ଜ୍ଞାନୀ ଯେମାନେ ଅଟନ୍ତି ହେ ରାମ
ସକଳ ଦ୍ୱୈତଭାବ ତାଙ୍କ ଅସ୍ତ ଜାଣ ।
ଅସତ୍ୟ ହେଲେ ହେଁ ରାମ ସେହି ଦ୍ୱୈତଜ୍ଞାନ
ତତ୍ତ୍ୱଜ୍ଞାନ ଚର୍ଚ୍ଚାବେଳେ ତାର ପ୍ରୟୋଜନ ।
ରଜ୍ଜୁରେ ସର୍ପ ଦର୍ଶନ ହେଲେ ହେଁ ଅସତ୍ୟ
ଭୟରୁ ହୃଦ କମ୍ପନ ହୋଇଥାଏ ଜାତ ।
ମିଥ୍ୟା ଦ୍ୱୈତଭୂତ ଛଳେ ତଥା ଗୁରୁଗୁଣ
ସତ୍ୟ ବ୍ରହ୍ମର ସନ୍ଧାନ କରନ୍ତି ହେ ରାମ ।
ଦ୍ୱୈତଜ୍ଞାନ ବ୍ୟବହାର ବିନା ସେ ଅଦ୍ୱୈତ
ବୁଝାଇବା ଅସମ୍ଭବ ଆହେ ରଘୁନାଥ ।
ଶବ୍ଦ ଶକ୍ତି ବିଷୟରେ ଯାର ନାହିଁ ଜ୍ଞାନ
କିଛି ବୁଝାଇ ନପାରେ ତାକୁ ଜ୍ଞାନୀଜନ ।
ତେଣୁକରି ଏ ଦ୍ୱୈତର ଅଛି ପ୍ରୟୋଜନ
ବିଚାର ଦୃଷ୍ଟିରୁ ଦ୍ୱୈତ ଆବଶ୍ୟକ ହୀନ ।
ଶବ୍ଦ ଭେଦ ଭାବ ତେଣୁ କରି ପରିହାର
ବୁଦ୍ଧିକୁ ମହାବାକ୍ୟର ଅର୍ଥେ ଯୁକ୍ତକର ।
ଅଖଣ୍ଡ ଅଦ୍ୱୈତାକୃତି କରିଣ ଚିତ୍ତକୁ
ଶ୍ରବଣ କର ହେ ରାମ ମୋର ବଚନକୁ ।
ତେବେ ତୁମେ ବୁଝିବାକୁ ହୋଇବ ସକ୍ଷମ
ଭ୍ରାନ୍ତି ଭ୍ରମ ପୂର୍ଣ୍ଣ ଅଟେ ଏ ଜଗତ ରାମ ।
ଗଗନ୍‌ମୟୀ ମାୟା ଯେହ୍ନେ କରିଛି ବିସ୍ତାର
ଦୃଷ୍ଟାନ୍ତ ସହ କହୁଛି ଶୁଣ ରଘୁବୀର ।
ମନର ମନନ ଫଳ ଏ ତିନି ଜଗତ
କଳ୍ପନା ବଳରେ ତାହା ହୁଏ ଆବିର୍ଭୂତ ।
ଏ ଜଗତ ଅନିତ୍ୟତା ବୁଝିଲେ ଶ୍ରୀରାମ
ଶାନ୍ତ ହୋଇ ସ୍ୱଚ୍ଛଭାବେ କରିବ ବିଶ୍ରାମ ।
ନଶ୍ୱର ଜଗତ ତେଜି ନିଜେ ନିଜ ମଧ୍ୟେ
ଯେ ରହେ ତାକୁ ଶାନ୍ତାତ୍ମା ବୋଲନ୍ତି ବିବୁଧେ ।
ନଶ୍ୱର ଜଗତ ତେଜି ସ୍ୱ ସ୍ୱଭାବେ ସ୍ଥିତି
ଜ୍ଞାନୀମାନଙ୍କ ମତରେ ତା ପରମ ଶାନ୍ତି ।
ମନକୁ ଜାଣିବ ରାମ ଏକ ମହାବ୍ୟାଧି
ବିବେକ ହିଁ ସେଥିପାଇଁ ମହା ମହୌଷଧି ।
ସେ ବ୍ୟାଧି ଚିକିତ୍ସା ପାଇଁ ମୋର ଉପଦେଶ
ମନ ସଂଯୋଗ କରିଣ ପାଳିବ ଅବଶ୍ୟ ।
ଏକ ଆଖ୍ୟାୟିକା ମୁହିଁ କରୁଛି ବର୍ଣ୍ଣନ
ତାହା ଯେବେ ମନଦେଇ କରିବ ଶ୍ରବଣ ।
ବୁଝିବ୍ ଏ ଜଗତରେ କେବଳ ହିଁ ଚିତ୍ତ
ପରକାଶ ପାଉଅଛି ଯା ଅନବରତ ।
ଚିତ୍ତଛଡ଼ା ଅନ୍ୟକିଛି ନାହିଁ ଏ ଜଗତେ
ଏ ଶରୀର ଅସ୍ତିତ୍ୱରେ ନଯିବ ପରତେ ।
**ରାଗ ରୋଷରେ ବିମୁଗ୍ଧ ଅଟେ ଯେଉଁ ଚିତ୍ତ**
**ତାହାର ନାମ ସଂସାର ଆହେ ରଘୁନାଥ ।**
ସେହି ଚିତ୍ତରୁ ନିର୍ମୁକ୍ତ ହୋଇପାର ଯେବେ
ସଂସାର ମୁକତ ହୋଇ ପାରିବ ହେ ତେବେ ।
ଦେହ ବିହୀନ ଗଗନ ସଦୃଶ ଯେ ଚିତ୍ତ
ସ୍ୱ ଅନ୍ତରେ ଧରିଅଛି ଏ ତିନି ଜଗତ ।
ଆଉ ମଧ୍ୟ ଏହି ଚିତ୍ତ ଅହଙ୍କାର ରୂପେ
ଶରୀରେ ବିସ୍ତୃତ ଅଛି ସମ୍ପୂର୍ଣ୍ଣ ସ୍ୱରୂପେ ।
ତେଣୁ ଏକମାତ୍ର ସାଧ୍ୟ ଏହି ଚିତ୍ତଜାଣ
ତାହାର ଦ୍ୱିବିଧ ଅଂଶ, ଜଡ଼, ଚଇତନ୍ୟ ।
ସର୍ବବିଧ କଳ୍ପନାର ବୀଜ ଚୈତନ୍ୟାଂଶ
ଏ ଭ୍ରାନ୍ତିମୟ ଜଗତ ଅଟଇ ଜଡ଼ାଂଶ ।
ସୃଷ୍ଟି ପୂର୍ବେ ଯେତେବେଳେ କିଛି ହିଁ ନଥିଲା
ସ୍ୱପ୍ନ ତୁଲ୍ୟ, ବ୍ରହ୍ମା ଏହା ଦେଖି ନ ଦେଖିଲା ।
ଜଡ଼, ସଂବିତ୍ ଯୋଗେ ଦେଖେ ଶଇଳ ଶରୀର
ଦୀଘ ସଂବିତ୍‌ର ଯୋଗେ ପ୍ରପଞ୍ଚ ରୂପର ।
ସମଷ୍ଟି–ଲିଙ୍ଗ ଆତ୍ମକ ଯେ ହିରଣ୍ୟ ଗର୍ଭ
ସକ୍ଷ୍ମ ସଂବିତ୍ ବଳେ କରେ ତା ଦର୍ଶନ ଲାଭ ।
ଏ ତିନି ଶରୀର ଯେଣୁ ଗଗନ ସ୍ୱରୂପ
ତେଣୁ ତା ଯଥାର୍ଥ ନୁହେଁ ରଘୁକୂଳ ଦୀପ ।
ଆତ୍ମ ବପୁ ବ୍ରହ୍ମ ବ୍ୟାପି ଅଛନ୍ତି ସର୍ବତ୍ର
ଅଜ୍ଞାନରୁ, ଚିତ୍ତ ଦେଖେ କେବଳ ଜଗତ ।
ଅଜ୍ଞାନ ବିନାଶ ହେଲେ ଏହି ଜଗତକୁ
ନିରାମୟ ଆତ୍ମାରୂପେ ଦେଖେ ସେ ତାହାକୁ ।

ଆମ୍ଭ ବିଷୟକ ଭ୍ରାନ୍ତି ଜଗତ ଆକାରେ
କେବଳ ବିସ୍ତୃତ ଅଛି ଜାଣ ରଘୁବୀରେ ।
ଯେଉଁପରି ସେହି ଭ୍ରାନ୍ତି ଲଭିଛି ବିସ୍ତାର
ଐନ୍ଦବ ଉପାଖ୍ୟାନରୁ ବୁଝିବ ସକଳ ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ମନଅଙ୍କୁର ଉତ୍ପତ୍ତି ବର୍ଣ୍ଣନେ**
**ନାମ ୬୦ତମ ସର୍ଗଃ ।**



## ୬୧ତମ ସର୍ଗଃ

## ଆଦିତ୍ୟ ସମାଗମ

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ପୂର୍ବେ ଯାହା ଘଟିଥିଲା ମନେପଡ଼େ ମୋର ।
ପଦ୍ମଯୋନି ବ୍ରହ୍ମାଙ୍କୁ ମୁଁ ପୂର୍ବେ ପଚାରିଲି
କି ପାଇଁ ଏ ସାରାସୃଷ୍ଟି ଜନମିଛି ବୋଲି ।
ଲୋକ ପିତାମହ ମୋତେ କହିଥିଲେ ଯାହା
ସେ ସକଳ ବରଣୁଛି ଶୁଣ ଏବେ ତାହା ।
ଜଳରେ ନାନାପ୍ରକାର ତରଙ୍ଗ ଯେସନ
ମନରୁ ଜନମେ ନାନା ଜଗତ ତେସନ ।
'ବ୍ରହ୍ମା' କହନ୍ତି ବଶିଷ୍ଠ ଶୁଣ ମୋ ବଚନ
ପୂର୍ବେ କଉଣସି କଳ୍ପେ ଆଗ୍ରହୀ ହୋଇଣ ।
ସୃଷ୍ଟି ସର୍ଜନ ବିଷୟେ କରି ଅଭିଳାଷ
ଯାହା ଯାହା ଘଟିଥିଲା କରୁଛି ପ୍ରକାଶ ।
ଥରେ ମୋ ଦିବସ ଯେବେ ହେଲା ଅବସାନ
ସମଗ୍ର ସୃଷ୍ଟିକୁ ମୁହିଁ ସଂହାର କରିଣ ।
ଅତିଶୟ ସ୍ୱସ୍ଥଭାବେ ରଜନୀ ପୁହାଇ
ନିଶା ଅବସାନେ ପୁଣି ଉଜାଗର ହୋଇ ।
ସନ୍ଧ୍ୟା ଉପାସନା ଆଦି ସାରି ତତକାଳେ
ସୃଷ୍ଟି ଅଭିଳାଷୀ ହୋଇ ବସିଲି ନିଶ୍ଚଳେ ।
ଉର୍ଦ୍ଧ୍ୱଦେଶେ ବୃଷ୍ଟିପାତ କରଇ ଯେ କାଳେ
ଅନନ୍ତ ଆକାଶ ପଡ଼ିଗଲା ମୋର ଡୋଳେ ।
ଆଲୋକ ବା ଅନ୍ଧକାର କିଛି ନଦିଶଇ
ଅବାକ ହୋଇ ରହିଲି କିଛିକାଳ ମୁହିଁ ।
ଏହି ଆକାଶରେ ମୁହିଁ ସଙ୍କଳ୍ପ ବଳରେ
ସୃଷ୍ଟି ବିସ୍ତୃତ କରିବି ଆସେ ମୋ ମନରେ ।

ଏହା ଭାବି ସୃଷ୍ଟି ବସ୍ତୁକରି ଆଲୋଚନା
ମାନସେ ମୋହର ପୁଣି ଜାଗଇ ଏସନ ।
ମନୋମୟୀ ଦୃଷ୍ଟିରେ ମୁଁ ଦେଖଇ ଏସନ
ବିପୁଳ ସୃଷ୍ଟି ସକଳଛନ୍ତି ବିଦ୍ୟମାନ ।
ବିଷ୍ଣୁଙ୍କ ଦ୍ୱାରା ପାଳିତ ଏହି ସୃଷ୍ଟିମାନ
ପୃଥକ ପୃଥକ ଭାବେ ଦିଶନ୍ତି ନୟନ ।
ସେ ସକଳ ବ୍ରହ୍ମାଣ୍ଡରେ ରାଜହଂସାସନ
ମୋ ପରି ବ୍ରହ୍ମା ଦିଶନ୍ତି ଆଉ ଦଶଜଣ ।
ଜରାୟୁଜ ଅଣ୍ଡଜାଦି ଚତୁର୍ବିଧ ପ୍ରାଣୀ
ସେହି ସକଳ ବ୍ରହ୍ମାଣ୍ଡେ ଜନମନ୍ତି ପୁଣି ।
ବାରି ବର୍ଷଣ କରନ୍ତି ମେଘମାନେ ତହିଁ
ଆକାଶରେ ବାୟୁ ମଧ୍ୟ ପ୍ରବାହିତ ହୋଇ ।
ବହନ୍ତି ଝରଣାମାନ ସେ ଦେଶେ ସ୍ୱଚ୍ଛନ୍ଦେ
ନଦୀମାନ ବହୁଥାନ୍ତି କଳ କଳ ନାଦେ ।
ସୂର୍ଯ୍ୟଙ୍କର ଉଦୟାସ୍ତ ହୁଏ ସେ ଜଗତେ
ସାଗର ଉଦ୍‌ବେଳୀ ଉଠେ ପୂର୍ଣ୍ଣିମା ନିଶାନ୍ତେ ।
ସ୍ୱର୍ଗେ ଦେବଗଣ, ମର୍ତ୍ତ୍ୟେ ମାନବ ସକଳ
ଦାନବ ଉରଗଗଣ କ୍ରୀଡ଼ନ୍ତି ପାତାଳ ।
ଯଥାକାଳେ ପ୍ରକାଶନ୍ତି ତହିଁ ଋତୁମାନ
କାଳଚକ୍ରେ ସୁଗ୍ରନ୍ଥିତ ଯେବଣ କାରଣ ।
ସ୍ୱସ୍ୱ ଅଭିଳାଷ ଅନୁସାରେ ପ୍ରାଣୀଗଣ
କର୍ମଘେନି ସ୍ୱର୍ଗ ନର୍କ ଭୋଗୁଛନ୍ତି ପୁଣ ।
ଯଥାକାଳେ ମୋକ୍ଷ ଅଭିଳାଷୀ ଜନଗଣ
ମୋକ୍ଷ ଲଭିଣ ସାର୍ଥକ କରନ୍ତି ଜୀବନ ।
କଳା, କାଷ୍ଠା, କ୍ଷଣ, ଯୁଗ ରୂପଧରି କାଳ
ଧାବିତ ହେଉଛି ସର୍ବ ଭୁବନ ମଣ୍ଡଳ ।
ସପ୍ତଦୀପ ସପ୍ତଲୋକ ଯେ ସପ୍ତସାଗର
ଗମ୍ଭୀର ନିନାଦେ ବିସ୍ଫୁରନ୍ତି ନିରନ୍ତର ।
ମନମୟୀ ଦୃଷ୍ଟିରେ ମୁଁ ସେସବୁ ଦେଖିଣ
ଥରକୁ ଥର ଭାବଇ ବିସ୍ମିତ ହୋଇଣ ।
ଯାହାକି ଦେଖି ନ ଥିଲି ଏ ମୋ ନୟନରେ
ସେ ମାୟାଜାଲ ନାଚଇ ଏ ଦିବ୍ୟ ଦୃଷ୍ଟିରେ ।
ଅନନ୍ତର ଦେଖିଲଇଁ ସେ ନଭ ଉଦରେ
ଅନନ୍ତ ଜଗତଛନ୍ତି ଅପୂର୍ବ ରୂପରେ ।
ଦେଦୀପ୍ୟମାନ ଅଛନ୍ତି ଅନନ୍ତ ତପନ
ଜଣଙ୍କୁ ଡାକି ମୁଁ ତାଙ୍କୁ କରେ ସମ୍ବୋଧନ ।

ହେ ଦେବ ! ଦେବେଶ ମହାଦ୍ୟୁତେ, ହେ ଭାସ୍କର
ହେ ଅନଘ, ଆପଣଙ୍କ ସବୁ ତ କୁଶଳ ?
ତୁମେ କିଏ, ପୁଣି କାହୁଁ ଆସିଲା ଏ ସୃଷ୍ଟି
ସୃଷ୍ଟି ଏହି ଗୋଟିକ ବା ଅନେକ ଅଛନ୍ତି ?
ଯେ ଭବୁ ଆସିଛ ତୁମେ ତାହା କି ପ୍ରକାର
କିମ୍ବାଇଁ ବା ହୋଇଅଛି ଉତ୍ପନ୍ନ ତାହାର ?
କିମ୍ବାଇଁ ବା ଅନ୍ୟ ଭବମାନ ଉତପନ୍ନ
ଜାଣିଥିଲେ କହ ମୋତେ ତାହାର କାରଣ ?
ଅଭିବାଦନ କରି ସେ କହିଲେକ ମୋତେ
ସୁକୋମଳ, ସୁମଧୁର ବାକ୍ୟର ସହିତେ ।
'ନିଜେ ତ ଆପଣ ଏହି ଜଗତ କାରଣ
ତହିଁର କାରଣ ତୁମେ କିମ୍ବା ହୋ ନଜାଣ ?
କିମ୍ବାଇ ବା ତୁମେ ମୋତେ ଏ ସବୁ ପଚାର
ଜାଣି ନଜାଣିଲା ପରି ତୁମ ବ୍ୟବହାର ?
ଯଦି ସେ ରହସ୍ୟ ମୋଠୁଁ ଶୁଣିବାକୁ ଇଚ୍ଛା
ଏବେ କହେ ପୁରୁ ତେବେ ତୁମମନ ବାଞ୍ଛା ।
ସତ୍ ଅସତ୍ ପାଇଁ ଯେ ମୋହ ଜନମାଏ
ସଦା ସୃଷ୍ଟି କର୍ତ୍ତା, ମନ ସକଳ ଭିଆଏ ।
ଏହି କଥା ଅବଗତ ହୁଅନ୍ତୁ ଆପଣ
ଇନ୍ଦୁ ବ୍ରାହ୍ମଣ ସମ୍ବାଦ କରନ୍ତୁ ଶ୍ରବଣ ।'

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ ବ୍ରହ୍ମା ଆଦିତ୍ୟ ସମାଗମ ବର୍ଣ୍ଣନେ ନାମ ୬୧ତମ ସର୍ଗଃ ।**



## ୬୨ତମ ସର୍ଗଃ

## ଔନ୍ଦବ ସମାଧି

ପ୍ରଜାପତି ରହିଁ ସୂର୍ଯ୍ୟ କହନ୍ତି ବଚନ
ଆପଣଙ୍କ ଦିନ ଶେଷ, ପୂର୍ବକଳ୍ପ ପୂର୍ଣ୍ଣ
ବିଶାଳ ସୁନ୍ଦର ଏକ ଜମ୍ବୁଦ୍ୱୀପ ନାମ
ଯହିଁ କୈଳାସ ପର୍ବତ ଥିଲା ବିଦ୍ୟମାନ ।
ସୁବର୍ଣ୍ଣ ଜଟ ନାମକ ଭୂଖଣ୍ଡ ମଧରେ
ଆପଣଙ୍କୁ ପୁତ୍ରମାନେ ବାସ କରୁଥିଲେ ।
ପରମ ଧାର୍ମିକ ଏକ କାଶ୍ୟପ ବ୍ରାହ୍ମଣ
ଭାର୍ଯ୍ୟାସହ ବାସ କରୁଥିଲେ ସେହିସ୍ଥାନ ।
ଇନ୍ଦୁ ନାମଧାରୀ ସେହୁ ସଦାଶାନ୍ତଶିଷ୍ଟ
ସନ୍ତାନ ବିହୀନେ ପତ୍ନୀପାଏ ମନକଷ୍ଟ ।
କୈଳାସ ପର୍ବତେ ଯାଇ ସେ ଦ୍ୱିଜ ଦମ୍ପତି
କଠୋର ତପସ୍ୟା ବ୍ରତ ତହିଁ ଆଚରନ୍ତି ।
ଜଳଗଣ୍ଡୁଷେ କେବଳ ତାଙ୍କର ଆହାର
ରଜନୀ ଦିବସ ରହିଥାନ୍ତି ଉଜାଗର ।
ତପସ୍ୟାରେ ବିତିଯାନ୍ତେ ତ୍ରେତୟା ଦ୍ୱାପର
ଆବିର୍ଭୂତ ହେଲେ ଦେବ ଶଶାଙ୍କ ଶେଖର ।
କହନ୍ତି ହେ ବିପ୍ର ତୁମ ତୀବ୍ର ତପସ୍ୟାରେ
ସନ୍ତୁଷ୍ଟ ହୋଇଛି ମାଗି ଘେନ ଇଷ୍ଟବାରେ ।
ପ୍ରଣାମକରି ବ୍ରାହ୍ମଣ ବୋଲନ୍ତି ଭୋଦେବ
'ପୁତ୍ର କଷ୍ଟ ନିବାରଣ ଯେମନ୍ତ ମୋ ହେବ ।
କଲ୍ୟାଣ ମୂରତି ପୁଣି ମହାଶକ୍ତି ମାନ
ଦଶଗୋଟି ପୁତ୍ର ଦେବ କରିବା ପ୍ରଦାନ ।'
ବ୍ରାହ୍ମଣର ଏ ମିନତି କରିଣ ଶ୍ରବଣ
ତଥାସ୍ତୁ କହି ଚଳିଲେ ଧୂର୍ଜ୍ଜଟୀ ଈଶାନ ।
ବରପାଇ ସନ୍ତୋଷରେ ବ୍ରାହ୍ମଣ ଦମ୍ପତି
ହୃଷ୍ଟମନା ହୋଇ ଗୃହେ ଗମନ କରନ୍ତି ।
ଯଥାକାଳେ ଦ୍ୱିଜନାରୀ ଦଶଗୋଟି ପୁତ୍ର
ପ୍ରସବ କରିଣ ନିଜେ ହୁଅନ୍ତି ପବିତ୍ର ।
କ୍ରମେ କ୍ରମେ ବର୍ଦ୍ଧମାନ ସେ ବାଳକଗଣ
ବ୍ରାହ୍ମଣୋଚିତ ସଂସ୍କାରେ ସଂସ୍କୃତ ହୋଇଣ ।
କାଳକ୍ରମେ ପିତା ମାତା ଦେହ ତ୍ୟାଗ କଲେ
ମୋକ୍ଷ ଲାଭ କରି ଧନ୍ୟ ଧନ୍ୟ ସେ ହୋଇଲେ ।
ପିତୃ ମାତୃ ହୀନ ସେହି ବିପ୍ର ପୁତ୍ରଗଣ
ଗୃହଛାଡ଼ି କୈଳାସକୁ କରନ୍ତି ଗମନ ।
କି ଉପାୟେ 'ଆମ୍ଭେମାନେ ଶ୍ରେୟପ୍ରାପ୍ତ ହେବା
ଏ ଘୋର ଦୁର୍ଦ୍ଦଶା ଆମେ କିପରି ତରିବା ।
ଜଣେ ଭାଇ କହିଉଠେ ଶୁଣ ଆହେ ଭ୍ରାତ
ମଣ୍ଡଳେଶ୍ୱର ପଦବୀ ସବୁଠୁଁ ଉତ୍କୃଷ୍ଟ ।
କାରଣ ସମସ୍ତେ ତାଙ୍କ ହୁକୁମ ଅଧୀନ
ମଣ୍ଡଳେଶ୍ୱରଙ୍କୁ ସର୍ବେ ଦେଇଥାନ୍ତି ମାନ୍ୟ ।
ଅନ୍ୟ କହେ ମଣ୍ଡଳେଶ ରାଜାଙ୍କ ଅଧୀନ
କରି ନପାରିବ କେଉଁ ହୁକୁମ ଅମାନ୍ୟ ।

ଆଉ ଜଣେ କହେ ଭାଇ ରାଜଚକ୍ରବର୍ତ୍ତୀ
ରାଜାଙ୍କ ଉପରେ ସଦା ହୁକୁମ ଚଳାନ୍ତି ।
ଚତୁର୍ଥ କହେ ହେ ଭାଇ ଚକ୍ରବର୍ତ୍ତୀ ହେଲେ
ଯମଠାରୁ ରକ୍ଷା ପାଇ ପାରଇକି ଭଲେ ।
ପଞ୍ଚମ କହନ୍ତି ଇନ୍ଦ୍ର ବିଭୂତି କି ନେଇ
ଯମର ଐଶ୍ୱର୍ଯ୍ୟ ଭାଇ କିଛି ତ ନୁହଇ ।
ଷଷ୍ଠ କହେ ଇନ୍ଦ୍ରପଦ ଅଟେ ଅକିଞ୍ଚନ
ବ୍ରହ୍ମାଙ୍କ ମୂହୁର୍ତ୍ତ ମଧ୍ୟେ ଇନ୍ଦ୍ରର ନିଧନ ।
ଜ୍ୟେଷ୍ଠ ଭ୍ରାତା ଯେହୁଥିଲେ ଧୀଶକ୍ତି ସମ୍ପନ୍ନ
ସବୁଶୁଣି କହିଉଠେ ଗମ୍ଭୀର ବଚନ ।
ସେହି ଯେ ଅଟଇ ଭାଇ ବାସ୍ତବ ଐଶ୍ୱର୍ଯ୍ୟ
ପ୍ରଳୟରେ ସୁଦ୍ଧା ଯାର ସ୍ଥିତି ଅନିବାର୍ଯ୍ୟ ।
ଅନ୍ୟ କୌଣସି ଐଶ୍ୱର୍ଯ୍ୟା, ଐଶ୍ୱର୍ଯ୍ୟ ନୁହଇ
ବାୟୁକୁ ଧରିବା ନ୍ୟାୟ, ତା ପଛରେ ଧାଇଁ ।
ଜ୍ୟେଷ୍ଠ କଥା ଶୁଣି ସର୍ବେ ସାଧୁବାଦ ଦେଲେ
ସର୍ବାନ୍ତଃକରଣେ ଅଙ୍ଗୀକାର ଜଣାଇଲେ ।
କହିଲେ ହେ ପୂଜ୍ୟ । ଆମ୍ଭେ ସେହି ବ୍ରହ୍ମଭାବ
କି ଉପାୟେ ଲଭିବୁ ତା ବୁଝାଇ କହିବ ।
ଜ୍ୟେଷ୍ଠ ବୋଲନ୍ତି ହେ ଭାଇମାନେ ଏବେ ଶୁଣ
ମୋ କହିବା ମତେ ସଦା କର ଏହି ଧ୍ୟାନ ।
'ପଦ୍ମାସନ ଉପବିଷ୍ଟ ତେଜୋମୟ ବ୍ରହ୍ମା
ମୁହିଁ ସେହି ପଦ୍ମଯୋନି ମୁଁ ହିଁ ସେ ବ୍ରହ୍ମାତ୍ମା ।
ସ୍ୱକୀୟ ତେଜ ପ୍ରଭାବେ ଜଗତ ସର୍ଜ୍ଜନା
ସଂହାର, କରୁଅଛଇ ମୁହିଁ 'ମହାମନା ।'
ଏହିପରି ଧ୍ୟାନ ଯେବେ ତୁମ୍ଭେମାନେ କର
ଅବିନାଶୀ ବ୍ରହ୍ମୈଶ୍ୱର୍ଯ୍ୟ ଲାଭ କରିପାର ।'
ସାଦରେ ଗ୍ରହଣ କରି ଅଗ୍ରଜ ବଚନ
ଜ୍ୟେଷ୍ଠ ଭ୍ରାତୃ ସହିତରେ ଅନ୍ୟ ଭ୍ରାତୃଗଣ ।
ନିଜ ନିଜ ବୁଦ୍ଧିକୁ ସେ ଏହିରୂପେ ଧ୍ୟାନେ
ବିନିଯୋଗ କରି ବସିଗଲେ ଧ୍ୟାନାସନେ ।
ପ୍ରତ୍ୟେକଙ୍କ ମନେ ଏହିରୂପ ଦୃଢ଼ଭାବ
ଉଦିତ ହୋଇ ବଦଳେ ତାଙ୍କର ସ୍ୱଭାବ ।
'ମୁହିଁ ସ୍ରଷ୍ଟା, ମୁହିଁ ଭୋକ୍ତା ମୁଁ ପାଳନକର୍ତ୍ତା
ବ୍ରହ୍ମା, ବିଷ୍ଣୁ, ଶିବ ଆଦି ମୁଁ ସର୍ବନିୟନ୍ତା
ଚିତ୍ରାଙ୍କିତ ଛବିପରି ନିଶ୍ଚଳ ସେମାନେ
ପରମ ଆଦରେ ଧ୍ୟାନ କଲେଏ ନିୟମେ ।
ହୃଦ ମଧ୍ୟେ ସେ ସମସ୍ତେ କରନ୍ତି ଚିନ୍ତନ
ବିଷ୍ଣୁ ମୁହିଁ, ଶିବ ମୁହିଁ ସୃଷ୍ଟିର କାରଣ ।
ଶିକ୍ଷା ଆଦି ଅଙ୍ଗ ପୁଣି ଉପାଙ୍ଗ ପୁରାଣ
ତାଙ୍କ ସହ ସରସ୍ୱତୀଙ୍କର ଅବସ୍ଥାନ ।
ଗାୟତ୍ରୀ ସହିତ ବେଦ ହୋଇ ମୂର୍ତ୍ତିମନ୍ତ
ବିରାଜମାନ କରନ୍ତି ମୋର ହୃଦଗତ ।
ମୁଁ ଯଜ୍ଞ ସ୍ୱରୂପୀ, ମହାମୁନି ଋଷିଗଣ
ବେଦ ବିଧିରେ କରନ୍ତି ମୋହର ପୂଜନ ।
ଗିରୀ, ବନ, ଦ୍ୱୀପ ତଥା ବିଶାଳ ସାଗର
ଅଳଙ୍କୃତ କରିଛନ୍ତି ଏ ମୋ ଭୂମଣ୍ଡଳ ।
ସରଗ ପାତାଳ ଦେବ ଦୈତ୍ୟ ବାସସ୍ଥଳ
ମହେନ୍ଦ୍ରଗିରି ସହିତ ତ୍ରିଲୋକ ମଣ୍ଡଳ ।
ମହାବାହୁ ବଜ୍ରଧାରୀ ଦେବରାଜ ଇନ୍ଦ୍ର
ମୋହର ସର୍ବଦା ଏହି ଗଗନ ଓ ଚନ୍ଦ୍ର ।
ମୋର ଆଜ୍ଞା ଘେନି ସୂର୍ଯ୍ୟ ଉତ୍ତାପ ଦିଅନ୍ତି
ଲୋକପାଳେ ତିନି ଲୋକ ପାଳନ କରନ୍ତି ।
ଜଳ ତରଙ୍ଗ ସଦୃଶ ଜଗତ୍‌ବାସୀ ଗଣ
ଅହରହ ଜନମିଣ ହୁଅନ୍ତି ବିଲୀନ ।
କ୍ଷଣ, ଦିନ, ମାସ, ବର୍ଷ, ଯୁଗ, ଆଦିକାଳ
ରଚିତ ହୋଇଅଛନ୍ତି ଏ ମୋର ହସ୍ତର ।
ହୋଇଥାନ୍ତି ଦିବା ରାତ୍ରି ମୋର ଆଦେଶରେ
ଦିବସରେ ସୃଷ୍ଟି କରି ରାତ୍ରିରେ ସଂହାରେ ।
ପରମ ଆତ୍ମାରେ ମୁହିଁ ରହି ଅବସ୍ଥିତ
ଭୁବନେଶ୍ୱର ରୂପରେ ସରଜେ ଜଗତ ।
ଏ ସବୁ କରି ମୁଁ ରହିଅଛି ଶାନ୍ତଭାବେ
ମୁହିଁ ହର୍ତ୍ତା, କର୍ତ୍ତା, ଦୈବ ବିଧାତା ଏ ଭବେ ।
ଏପରି ଭୁବନମୟୀ ବୁଦ୍ଧି ଆଶ୍ରେକରି
ଇନ୍ଦୁପୁତ୍ରେ ସୁନିଶ୍ଚଳ ପାଷାଣର ପରି ।
କ୍ଷୁଦ୍ରତୁଚ୍ଛ ମନବୃତ୍ତି ହୋଇଯାଏ ଲୀନ
ଫୁଟିଉଠେ ବ୍ରହ୍ମଭାବ ଦିଶନ୍ତି ଶୋଭନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଐନ୍ଦବ ସମାଧି ବର୍ଣ୍ଣନେ**
**ନାମ ୬୨ତମ ସର୍ଗଃ ।**

❑

## ୬୩ତମ ସର୍ଗଃ

## ଜଗଦ୍ରଚନା

କହନ୍ତି ଭାସ୍କର ଏବେ ଶୁଣ ପିତାମହ
ଇନ୍ଦୁ ଦଶ ପୁତ୍ରଙ୍କର ତପସ୍ୟା ବିଷୟ ।
ନିଜେ ବ୍ରହ୍ମ ଧାରଣାରେ ସମାଧିସ୍ଥ ଥିଲେ
ଦେହଜ୍ଞାନ ନଥିବାରୁ ଖାଦ୍ୟ ପାଶୋରିଲେ ।
ରକ୍ତ ମାଂସ ଦେହ ତାଙ୍କ କ୍ରମେ ଶୁଖିଗଲା
ପୁଣି କ୍ରମେ ଝଡ଼ିପଡ଼ି ଭୂତଳେ ପଡ଼ିଲା ।
ମାଂସାଶୀ ପଶୁ ପକ୍ଷୀ ତା କରନ୍ତି ଭକ୍ଷଣ
କଳ୍ପ ଶେଷ ଯାଏ ଧ୍ୟାନ ନୋହିଲା ଭଗନ ।
ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗ ଗଲା
ଆପଣଙ୍କ ଦିନକାଳ କ୍ରମେ କ୍ଷୟ ହେଲା ।
ଦ୍ୱାଦଶ ସୂର୍ଯ୍ୟ ଢାଳନ୍ତି ପ୍ରଚଣ୍ଡ କିରଣ
ପୁଷ୍କର ମେଘ କରଇ ଘୋର ଗରଜନ ।
ମୂଷଳ ଧାରାର ବୃଷ୍ଟି କେଭେ ନଛାଡ଼ଇ
ଭୂମିକମ୍ପ ଯୋଗୁ ଧରା ଥରହର ହୋଇ ।
କହିନୁହେଁ ଅଣଚାଶ ପବନର ବେଗ
ସାଗରର ଉଦ୍‌ବେଳନ କିଏ ସମ୍ଭାଳିବ ?
ସମୁଦ୍ର ଉଚ୍ଛୁଳି ପୃଥ୍ୱୀ ହେଲା ଜଳାର୍ଣ୍ଣବ
କ୍ଷୟ ଲଭିଲେ ସରବ ସରଜନା ତବ ।
ପ୍ରଳୟରେ ସୃଷ୍ଟି ଶେଷ କରିଣ ଆପଣ
ଯୋଗ ନିଦ୍ରାରେ ତୁରୀୟ ଅବସ୍ଥା ଲଭିଣ ।
ତଥାପି ସେ ଦଶଭାଇ ପ୍ରଳୟ କାଳରେ
ଅଟଳ ରହିଥାଆନ୍ତି ପୂର୍ବ ପରକାରେ ।
ଏବେ ନବ ସୃଷ୍ଟି କରୁଅଛନ୍ତି ଆପଣ
ଏବେ ମଧ୍ୟ ଅଛନ୍ତି ସେ ସେହିପରି ଜାଣ ।
ବ୍ରହ୍ମ ସ୍ୱରୂପତା ପ୍ରାପ୍ତ ସେହି ଦଶଜଣ
ଚିତ୍ତାକାଶେ ଦଶବିଶ୍ୱ ସର୍ଜ୍ଜିଛନ୍ତି ଜାଣ ।
ସେ ଦଶ ବିଶ୍ୱ ସୂର୍ଯ୍ୟଙ୍କ ମଧ୍ୟରୁ ମୁଁ ଏକ
ତହିଁ ମୋ କର୍ତ୍ତବ୍ୟ ଅଟେ କାଳନିୟାମକ ।
କି କାରଣୁଁ କାହିଁକି ବା ଏହି ଦଶବିଶ୍ୱ
ସର୍ଜନା ହୋଇଛି ତାହା କଲଇଁ ପ୍ରକାଶ ।
ଏବେ ସ୍ୱୀୟ ଅଭିଳାଷ କରନ୍ତୁ ପୂରଣ
ଭବଦୀୟ ପାଦ ପଦ୍ମେ ଗଲି ମୁଁ ଶରଣ ।

ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ଜଗଦ୍ରଚନା ବର୍ଣ୍ଣନେ
ନାମ ୬୩ତମ ସର୍ଗଃ ।



## ୬୪ତମ ସର୍ଗଃ

## ଐନ୍ଦବ ନିର୍ଣ୍ଣୟ ଜ୍ଞାନ

ବଶିଷ୍ଠଙ୍କୁ ଚାହିଁ ବ୍ରହ୍ମା କହନ୍ତି ବଚନ
ହେ ବ୍ରହ୍ମଜ୍ଞ ପ୍ରଧାନ ଯା କହୁଅଛି ଶୁଣ ।
'ବ୍ରହ୍ମାହୋଇଛନ୍ତି ସେହି ଦଶ ଦ୍ୱିଜବର'
କହି ନୀରବ ରହିଲେ ସେ ଦେବ ଭାସ୍କର ।
'ମୁଁ ତାଙ୍କୁ କହିଲି ଭାନୁ ! ଏ ଜଗତ ନିମ
ବର୍ତ୍ତମାନ ଥାଉଁ, ଆଉ ପ୍ରୟୋଜନ କିସ !
ଆଉ ନୂତନ ସର୍ଜନା କରିବାର ପାଇଁ
କି ଅଛି କାରଣ ମୁଁ ତ ବୁଝି ନପାରଇ ।'
'ସୂର୍ଯ୍ୟ କହିଲେ ତୁମ୍ଭେ ତ ନିରୀହ ସ୍ୱଭାବ
କେଉଁଥିରେ ନଥାଇ ତ ଅଭିଳାଷ ତବ ।
ନଥିଲେ ହେଁ ସର୍ଜନାରେ ଅଭିଳାଷ ତବ
ଆନନ୍ଦ ବିଳାସ ତବ ଏହା ପିତୃଦେବ ।
ନଥିଲେ ହେଁ ସୂର୍ଯ୍ୟଦେବଙ୍କର ଇଚ୍ଛା ତହିଁ
ଜଳେ ପ୍ରତିବିମ୍ବ ତାଙ୍କ ସ୍ୱତଃ ପଡ଼ିଥାଇ ।
ବାସନା ବିହୀନ ତଥା ହେଲେ ହେଁ ଆପଣ
ତବ ତହୁଁ ସ୍ୱତଃ ଶତ ସୃଷ୍ଟି ପ୍ରକାଶନ ।
ତେଣୁ କରି ଜଗତର ସୃଷ୍ଟି ସଂହରଣ
ନିତ୍ୟ କର୍ମ ମଧ୍ୟେ ତବ ହୋଇଅଛି ଗଣ୍ୟ ।
ତେଣୁ ନିତ୍ୟକର୍ମ ପରିହାର କରିଦେବ
କି ଲାଭ ଘଟିବ ତାହା ଭାବିବାକୁ ହେବ ।
ତାହାହେଲେ ଅନ୍ୟ କଉଣସି କର୍ମ ଦେବ
ରହିବ ନାହିଁ ତୁମ୍ଭର ଏକଥା ହେଜିବ ।
ଆସକ୍ତି ଶୂନ୍ୟ ହୋଇଣ ଦର୍ପଣ ଯେପରି
ଅନାୟାସେ ପ୍ରତିବିମ୍ବ ନେଇଥାଏ ଧରି ।
ଅନାସକ୍ତ ଭାବେ ଦେବ ଆପଣ ତେସନ
ଯଥା ପ୍ରାପ୍ତ କର୍ମ କରିଯାନ୍ତୁ ସମାପନ ।
ଏହି ଦଶ ବ୍ରହ୍ମାଙ୍କର ସର୍ଜିତ ସଂସାର
କେହି କେବେ କରି ନପାରିବେ ନାରଖାର ।

ସେ ବ୍ରହ୍ମାମାନଙ୍କ ଚିତ୍ତ ଦୃଢ଼ତା କାରଣ
ସେମାନଙ୍କ ସଂସାରର ନାହିଁ ବିନାଶନ ।
ଜ୍ଞାନେନ୍ଦ୍ରିୟ ଦ୍ୱାରା ଯାହା କରାଯାଇଥାଏ
ଅନ୍ୟ ଚେଷ୍ଟାରେ ବିନଷ୍ଟ କେବେ ହେଁସେ ନୁହେଁ ।
ଦୃଢ଼ୀଭୂତ ଚିତ୍ତଦ୍ୱାରା ଯାହାକି ନିର୍ମିତ
ଅନ୍ୟ କେହି କରି ନପାରଇ ତା ବିଧ୍ୱସ୍ତ ।
ଜୀବ ମନେ ଯାହା ହୋଇଯାଏ ବଦ୍ଧମୂଳ
ଅନ୍ୟ କିଏ କରିପାରିବ ତା ନିରିମୂଳ ।
ମନେ ଯାହା ଦୃଢ଼ଭାବେ ହୁଅଇ ଅଭ୍ୟସ୍ତ
ହେଲେ ହେଁ ଶରୀର ନଷ୍ଟ ନୁହେଁ ତା ବିନଷ୍ଟ ।
ମନଭାବ ଅନୁରୂପ ପୁରୁଷ ଆକୃତି
ତତ୍ତ୍ୱଜ୍ଞାନ ବିନା କାହିଁ ସଂସାର ନିବୃତ୍ତି ।'

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଐନ୍ଦବ ନିର୍ଣ୍ଣୟ ଜ୍ଞାନ କଥନେ**
**ନାମ ୬୪ତମ ସର୍ଗଃ ।**



## ୬୫ତମ ସର୍ଗଃ
## କୃତ୍ରିମ-ଇନ୍ଦ୍ର ବଚନ

'ମନହିଁ ଜଗତକର୍ତ୍ତା କହନ୍ତି ତପନ
ହିରଣ୍ୟ ଗର୍ଭ ଅଟନ୍ତି ସେ ସମଷ୍ଟି ମନ' ।
ବାସ୍ତବ କରମ ତାହା, ମନ ଯାହା କରେ
ଅବାସ୍ତବ କର୍ମ ତାହା ଶରୀର ଯା କରେ ।
ହେଲେ ହେଁ ସାମାନ୍ୟ ଦ୍ୱିଜ ଇନ୍ଦ୍ରପୁତ୍ରମାନେ
ବ୍ରହ୍ମତ୍ୱ ଲଭିଲେ ମନ ପ୍ରଭାବେ ସେମାନେ ।
ଆହା କି ଅଦ୍ଭୁତ ଶକ୍ତି ଅଛି ମନଠାରେ
ଅସମ୍ଭବକୁ ସମ୍ଭବ ମନ କରିପାରେ ।
ଦେହବଳ ବଢ଼ିଥାଇ ମନବଳ ନେଇ
ଦେହ ଭାବ ବିନା, ଦେହ, ଧର୍ମ ବଶ ନୋହି ।
ବାହ୍ୟ ଶରୀରକୁ ଯେହୁ ଆଦର ଦେଖାଏ
ଦେହଗତ ସୁଖ ଦୁଃଖ ସେହୁ ଭୋଗିଥାଏ ।
ପୂର୍ବେ ଥିଲେ ଇନ୍ଦ୍ରଦ୍ୟୁମ୍ନ ନାମେ ଏକ ରାଜା
ଅହଲ୍ୟା ବୋଲିଣ ଥିଲେ ତାଙ୍କର ଭାରିଯା ।
ତାଙ୍କ ରାଜ୍ୟେ ବାସକରେ ଏକ ଦ୍ୱିଜବର
ଇନ୍ଦ୍ରବୋଲି ପୁତ୍ର ତାର ସୁଢ଼ଳ ସୁନ୍ଦର ।
ଏକଦିନେ ରାଣୀ ବସି ଗପ ଶୁଣୁଥିଲେ
ପାଶେ ସହଚରୀମାନେ ସେବା କରୁଥିଲେ ।

ଇନ୍ଦ୍ର ଅହଲ୍ୟାଙ୍କ ଗପ ଶୁଣୁଛନ୍ତି ରାଣୀ
ମନେ ମନେ କେତେ କଥା ହେଉଛନ୍ତି ଗୁଣି ।
ଏକ ସହଚରୀ ଥାଇ କହିଯାଏ ଗୀର
ସେହି ଅହଲ୍ୟାକି ତୁମେ ଜନ୍ମିଛ ଏଠାର ।
ତିନିପୁରେ ନଥିଲା କେ ତାପରି ସୁନ୍ଦରୀ
ଗଉତମ ଋଷିଙ୍କର ଥିଲା ମନୋହାରୀ ।
ଏହି ନଗ୍ରେ ଅଛି ଆଜ୍ଞା ଏକ ଦ୍ୱିଜବର
ଇନ୍ଦ୍ରପରି ଅବିକଳ ସୁନ୍ଦର ସୁଢ଼ଳ ।
ଏହା ଶୁଣି ଅନୁରାଗ ଆସେ ରାଣୀ ମନେ
ସେ ଦ୍ୱିଜ ସୁତକୁ ଭେଟ କରିବେ କେସନେ ?
ବ୍ରାହ୍ମଣ ଅଭାବ ରାଣୀ ବୁଝେ ଅନୁକ୍ଷଣ
ଶୁଖିଯାଏ କ୍ଷଣେ କ୍ଷଣେ ତାର ଅପଘନ ।
ତାହାଶୁଣି ରାଜା ମନେ ହୋଇଲେ କାତର
କି ରୋଗ ଆସି ଘାରିଲା ରାଣୀଙ୍କୁ ମୋହର ।
ଚିକିତ୍ସକମାନେ ବାଢ଼ିଦେଲେ ପ୍ରତିକାର
ପଣ୍ଡହେଲା ସବୁ ଚେଷ୍ଟା ଚିକିତ୍ସକଙ୍କର ।
ଉପଶମ ନୋହି ରୋଗ ବଢ଼ି ଚାଲିଥାଇ
ଖିଆପିଆ କଥା ଅବା କିଏ ପଚାରଇ ।
ଜଳ ବିନା ମୀନ ଯଥା ହୁଏ ଛଟପଟ
ହା ଇନ୍ଦ୍ର ! ହା ଇନ୍ଦ୍ର ! କହି ରାଣୀ ପାଏ କଷ୍ଟ ।
ଦାସୀଏ ଦେଖନ୍ତି ରାଣୀ ଲୋକ ଲଜ୍ୟା ଭୁଲି
ଇନ୍ଦ୍ର ନାମଧରି ଖାଲି ମରେ ଝୁରି ଝୁରି ।
ବିଚାର କରି ସଖୀଏ ଦିଅଇ ଉତ୍ତର
ନେଇ ଆସୁଛି ମଣିମା ଇନ୍ଦ୍ରଙ୍କୁ ତୁମ୍ଭର ।
ଏହା ଶୁଣିକରି ରାଣୀ ହେଲେ ସାବଧାନ
ଚନ୍ଦ୍ରୋଦୟେ କଇଁପରି ପ୍ରଫୁଲ୍ଲିତ ମନ ।
ରାଣୀଙ୍କ ଆଶ୍ୱାସ ଦେଇ ସଖୀ ଚଳିଗଲା
ଇନ୍ଦ୍ର ବ୍ରାହ୍ମଣର ପାଶେ ପ୍ରବେଶ ହୋଇଲା ।
ତାକୁ ଆଣି ରାଣୀ ପାଶେ ଘୋର ନିଶାକାଳେ
ଭେଟ କରଇ ସାନ୍ତ୍ୱନା ଦିଏ ଅବହେଳେ ।
ଗୁପତ ସ୍ଥାନରେ ଦୁହେଁ ଲୀଳା ଆରମ୍ଭିଲେ
ପରସ୍ପର ସ୍ନେହବଶେ ଆବଦ୍ଧ ରହିଲେ ।
ଚକୁଆ, ଚକୋଇ, ରତି କାମଦେବପରି
ଜଣା ନଯାଏ ତାହାଙ୍କୁ ଦିବସ ଶର୍ବରୀ ।
କ୍ଷଣକ ପାଇଁ କି ମଧ୍ୟ ବିଚ୍ଛେଦ ନହୋଇ
ରାଣୀଙ୍କ ରୋଗ ଲକ୍ଷଣ ଉପଶମ ହୋଇ ।

ଗୁଣବାନ ରୂପବାନ ଥିଲେ ହେଁ ରାଜନ
ତାଙ୍କ ତହିଁ ରାଣୀଙ୍କର ନ ଲାଗଇ ମନ ।
ସକଳ ବୃତ୍ତାନ୍ତ ରାଜା ଅବଗତ ହୋଇ
ଦଣ୍ଡର ବିଧାନମାନ ବାଢ଼ିଲେକ ତହିଁ ।
ତିଳେ ଖେଦ ନ ଆସଇ ସେମାନଙ୍କ ମନ
କାଦୁଅ ଲାଗଇ ତାଙ୍କୁ ଚନ୍ଦନ ସମାନ ।
ବରଫ ଗଦାରେ ତାଙ୍କୁ ନେଇ ଭର୍ତ୍ତିକଲେ
ଥଣ୍ଡା କଷ୍ଟ ନବାଧଇ ତାହାଙ୍କୁ ଯେ ତିଳେ ।
କହନ୍ତି ରାଜନ ଆରେ ଦୁର୍ମତିଏ ଶୁଣ
କଷ୍ଟ ନପାଇଲ କହ କେବଣ କାରଣ ।
'ସେମାନେ କହନ୍ତି ରାଜା ଦେବୁ କି ଉତ୍ତର
ଶରୀର ଜ୍ଞାନ ତ କିଛି ନାହିଁଟି ଆମ୍ଭର ।
ଅହଲ୍ୟା କହଇ ଖାଲି ଇନ୍ଦ୍ର ମୋତେ ଦିଶେ
ପ୍ରତ୍ୟେକ ଜିନିଷ ଲାଗେ ଇନ୍ଦ୍ରର ସଦୃଶେ ।
ଇନ୍ଦ୍ର କହେ କି କହିବି ତୁମ୍ଭଙ୍କୁ ରାଜନ
ଅହଲ୍ୟାମୟ ଲାଗଇ ଏ ତିନି ଭୁବନ ।
ଯେତେକ ଦଣ୍ଡ ବିଧାନ କରୁଛ ରାଜନ
କଷ୍ଟ ନୋହି ସବୁଲାଗେ ଅମୃତ ସମାନ ।'
ରାଜାଜ୍ଞା ହେଲା 'ଏହାଙ୍କୁ ଅଗ୍ନିରେ ପକାଅ
ଅଗ୍ନି କଷ୍ଟ ନବାଧିଲା ଦୁର୍ମତିଙ୍କ ଦେହ ।
ହାତୀ ଚଳାଇଲେ ନେଇ ତାହାଙ୍କ ଉପର
ହାତ ଗୋଡ଼ ନଭାଙ୍ଗଇ ଦେହ ରହେ ସ୍ଥିର ।
ରାଜା କହନ୍ତି ହେ ପାପୀ କହ କି କାରଣ
ଅଗ୍ନି ସୁଦ୍ଧା ନଛୁଇଁଲା ତୁମ ଅପଘନ ।
'ଇନ୍ଦ୍ର ବ୍ରାହ୍ମଣ କହଇ ଶୁଣିବା ରାଜନ
ଦେହରୁ ଅଲଗା ଅଛି ଏବେ ଆମ୍ଭ ମନ ।
ମାନସ ଶରୀର ଆମ୍ଭ ରହିଛି ସକ୍ରୀୟ
ଦେହ ନଜାଣଇ ଦଣ୍ଡ ଯନ୍ତ୍ରଣା ବିଷୟ ।
ମନ ହିଁ ପୁରୁଷ ବୋଲି ଜ୍ଞାନୀଏ କହନ୍ତି
ଶରୀର କେବଳ ମନ କଳ୍ପନା ବିସ୍ତୃତି ।
ସକଳ କଠୋର ଦଣ୍ଡ ଏକ ସଙ୍ଗେ ଯେବେ
ପ୍ରୟୋଗ କରିବ ଆମ୍ଭ ପ୍ରତି ରାଜା ତେବେ ।
ଏ ବଳବାନ ମନକୁ କିଞ୍ଚିତ୍ ମାତ୍ରେ ସୁଦ୍ଧା
ଟାଳି ନପାରିବେ ଯେତେ ବୀର ଯେତେ ଯୋଦ୍ଧା ।
ଏ ଦେହ ଯାଉ ବା ରହୁ ଇଷ୍ଟ ବା ଅନିଷ୍ଟ
ଦେଇ ନପାରିବ ରାଜା ଆମ୍ଭଙ୍କୁ ତା କଷ୍ଟ ।
ଭାବନାମୟ ରାଜ୍ୟରେ ଅବସ୍ଥାନ କରି
ରହିପାରିବୁ ରାଜନ ମାନସ ଶରୀରି ।
ଅଭିନିବିଷ୍ଟ ମାନସ ଇପ୍‌ସିତ ବସ୍ତୁରେ
ଟଳି ନପାରିବ ରାଜା କୌଣସି ପ୍ରକାରେ ।
ବାଧା ଦେଇ ନପାରିବ ତାହାକୁ ରାଜନ
ଶାରୀରିକ ଭାବ ଅବା ଅଭାବ ଯେ ମାନ ।
ତୀବ୍ରଭାବେ ମନ ଯେଉଁ ଭାବନାରେ ମଜେ
ସ୍ଥିର ଭାବ ପ୍ରାପ୍ତ ହୋଇ ତାକୁ ହିଁ ସେ ଭଜେ ।
ଶରୀରଗତ କୌଣସି ଭାବ ବା ଅଭାବ
ରହି ନଥାଏ ମଣିମା ଏକଥା ବୁଝିବ ।
ଦେବୀ ମୂର୍ତ୍ତି ପ୍ରତିଷ୍ଠିତ ଯେସନ ମନ୍ଦିରେ
ଏ ମୋ ପ୍ରିୟା ପ୍ରତିଷ୍ଠିତା ମୋ ଚିତ୍ତ ଦେଉଳେ ।
ଅବସ୍ଥାନ କଲେ ହେଁ ମୁଁ ଯେ ଭାବେ ଯେଠାରେ
ଭୁଲି କି ପାରିବ ଯାର ସଙ୍ଗ ତେତେବେଳେ ।
ଅହଲ୍ୟା ଏକ୍ଷଣି ମୋର ମନଃସ୍ୱରୂପିଣୀ
ବିଚ୍ୟୁତ କରିବ ତାକୁ ମୋଠାରୁ କି ଘେନି ।
ହେ ରାଜା, ମନ ହିଁ ଅଟେ ପ୍ରଥମ ଶରୀର
ସେ ମନ-ଶରୀର ଅଟେ ଆତ୍ମା ଭୋଗଘର ।
'ମୁଁ' ଆକାର ଯେତେବେଳେ ଧରିନିଏ ମନ
ଦୃଶ୍ୟ ଶରୀରକୁ କରେ ତେବେ ଉତପନ୍ନ ।
ଦେହ ଉତ୍ପାଦିକା ଶକ୍ତି ଏ ମନ ବ୍ୟତୀତ
ଆଉ କାହାରି ନଥାଇ ଜାଣ ଏହି ତତ୍ତ୍ୱ ।
ବିନଷ୍ଟ ହୋଇଗଲେ ହେଁ ଏକଇ ଶରୀର
ଅନ୍ୟ ଦେହ ଗଢ଼ିପାରେ ଏ ମନ ସତ୍ୱର ।
ମୋର ମନରୂପିଣୀ ଏ ପ୍ରିୟତମା ଯେଣୁ
ସର୍ବତ୍ର ଦେଖି ତାକୁ ମୁଁ ଆନନ୍ଦିତ ତେଣୁ ।
ଯେ ସକଳ ଦଣ୍ଡ ରାଜା ବିହିଲ ମୋ ପାଇଁ
କଷ୍ଟ ବୋଲି କେବେ ମୋର ମନେ ଆସିନାହିଁ ।
ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
କୃତ୍ରିମ ଇନ୍ଦ୍ର ବଚନ ବର୍ଣ୍ଣନେ
ନାମ ୬୫ତମ ସର୍ଗଃ ।



## ୬୬ତମ ସର୍ଗଃ

## ଅହଲ୍ୟାନୁରାଗ ସମାପ୍ତି

ଧୃଷ୍ଟତା ପୂର୍ଣ୍ଣବଚନ ସେ ବିପ୍ର ପୁତ୍ରର
କୁଳିଶ ବର୍ଷଇ କିବା ରାଜାଙ୍କ ଶରୀର ।

ଏପରି ଅସହ୍ୟ ବାଣୀ ଶୁଣି ସେ ରାଜନ
ଭରତ ମୁନିଙ୍କୁ କରୁଛନ୍ତି ନିବେଦନ ।
ସର୍ବଧର୍ମଜ୍ଞ ପୁରୁଷ ଆହେ ତପୋଧନ
ଶୁଣିଲ ତ ଏ ଧୃଷ୍ଟର ଅସହ୍ୟ ବଚନ ।
ମୋ ଭାର୍ଯ୍ୟାକୁ ହରିନେଇ ଏହି ଦୁଷ୍ଟ ନଷ୍ଟ
କିପରି ବଚନ କହି ବଞ୍ଚିଛି ପାପିଷ୍ଠ ।
ଶାରୀରିକ ଦଣ୍ଡ ସବୁ ବିଅର୍ଥ ହୋଇଲା
କିପରି ଧୈର୍ଯ୍ୟ ଧରିବି ଆହେ ତପିବଳା ।
ତାର ପାପ ଅନୁଷ୍ଠାନ ପ୍ରତିଫଳ ପାଇଁ
ଉପଯୁକ୍ତ ଅଭିଶାପ ଦିଅନ୍ତୁ ଗୋସାଇଁ ।
ଅବଧ୍ୟ ବ୍ୟକ୍ତିକୁ ବଧ କଲେ ହୁଏ ପାପ
ବଧ ଯୋଗ୍ୟକୁ ବିନାଶ ନକଲେ ସନ୍ତାପ ।
ରାଜାଙ୍କ ପ୍ରାର୍ଥନା ଶୁଣି ସେ ଭରତ ମୁନି
ଉପଯୁକ୍ତ ଅଭିଶାପ ବିଧାନନ୍ତି ଜାଣି ।
'ରେ ଦୁଷ୍ଟ ପାମର ମୋର ଅଭିଶାପ ଘେନ
କଳୁଷିତା ରାଣ ସହ ଲଭ ତୁ ମରଣ ।
ଋଷି ଅଭିଶାପ ପାଇ ସେ ଇନ୍ଦ୍ର ବ୍ରାହ୍ମଣ
ଅହଲ୍ୟା ସହ କହଇ ଏସନ ବଚନ ।
'ହେ ଅଜ୍ଞାନ ଅଭିଶାପ ବିଧାନର ଫଳେ
ତପସ୍ୟା ଅର୍ଜିତ ପୁଣ୍ୟ ବିନାଶିଲ ହେଲେ ।
ଜାଣିରଖ ଆମ୍ଭେ ଦୁହେଁ ଚିତ୍ତର ସ୍ୱରୂପ
କିଛି କ୍ଷତି ନକରିବ ତୁମ ଅଭିଶାପ ।
ଅତୀବ ସୂକ୍ଷ୍ମ ଏ ଚିତ୍ତ ଚିନ୍ମୟ ଦୁଲକ୍ଷ୍ୟ
ତାର ବିନାଶ ପାଇଁ କିଏ ଅଛି ସକ୍ୟ ।
ଅଭିଶାପ ପ୍ରଭାବରେ ବ୍ରାହ୍ମଣ ଓ ରାଣୀ
ଝଡ଼ିଲା ପତର ପରି ଲୋଟନ୍ତି ଧରଣୀ ।
ଦେହ ସିନା ଧ୍ୱଂସ ହେଲା ମନ ଯେ ଅଟଳ
ଚିତ୍ତକୁ ଜିଣିବ କିଏ ଚିତ୍ତ ବଳିୟାର ।
ସେମାନେ ସେ ମୋହମୟ ପ୍ରଣୟ ସଂସ୍କାରେ
ଆବଦ୍ଧ ରହି ଜନ୍ମିଲେ ନାନାଦି ରୂପରେ ।
ଯେଉଁଠାରେ ଜନମନ୍ତି ଯେଉଁ ଯୋନିଧରି
ପତିପତ୍ନୀ ହୁଅନ୍ତି ସେ ଜନ୍ମ ଜନ୍ମ କରି ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଅହଲ୍ୟାନୁରାଗ ସମାପ୍ତି ବର୍ଣ୍ଣନେ ନାମ**
**୬୬ତମ ସର୍ଗଃ ।**



## ୬୭ତମ ସର୍ଗଃ
## ଜୀବକ୍ରମୋପଦେଶ

କହୁଛନ୍ତି ସୂର୍ଯ୍ୟଦେବ ବ୍ରହ୍ମାପାଶେ ଥାଇ
ମୋର ଅଭିମତ ଏବେ କହୁଛି ଗୋସାଇଁ ।
"ଯେତେ କଠୋର ହେଲେ ହେଁ ଅଭିଶାପ ବଳ
ମନ ଧ୍ୱଂସ ନୋହିପାରେ ମନ ଯେ ଅମର" ।
ହେ ବ୍ରହ୍ମନ ତେଣୁ କହେ ସ୍ୱୟଂ ଯେ ଆପଣ
ନାଶ କରି ନ ପାରିବେ ଏ ଐନ୍ଦିବଗଣ ।
କିମ୍ବା ସେ ବିନାଶ କଥା ଆଣିବ ମନରେ
ସର୍ବ ଅଧିପତି ତୁମେ ବିଶ୍ୱଚରାଚରେ ।
ତେଣୁ ଏ ଇନ୍ଦ୍ରତନଯେ ସ୍ୱସୃଷ୍ଟି କାର୍ଯ୍ୟରେ
ମାତି ରହିଥାନ୍ତୁ ଦେବ ସଦା ଅବାଧରେ ।
ସ୍ୱକୀୟ ଚିତ୍ତାକାଶରେ ପ୍ରବୃତ୍ତ ରହିଣ
କରୁଥାନ୍ତି ଦେବ ସଦା ସୃଷ୍ଟିର ବିଧାନ ।
ଏ ଆକାଶ, ଚିତ୍ତାକାଶ, ଚିଦାଭାସାକାଶ
ଚିଦାକାଶରୁ ଏ ତିନି ଲଭନ୍ତି ପ୍ରକାଶ ।
ଚିଦାକାଶ ତ ଅନନ୍ତ, ଅସୀମ ଅବ୍ୟକ୍ତ
ଏ ତିନି ଆକାଶ ସେହି ଚିଦାକାଶ ବତ ।
ସ୍ୱୀୟ ଆତ୍ମାରେ ସଂସ୍ଥିତ ହୋଇଣ ଆପଣ ।
ଚିତ୍ତାକାଶେ ଯେତେ ଇଚ୍ଛା କର ସରଜନ
ଏ ଐନ୍ଦବଗଣଙ୍କର ସୃଷ୍ଟି ସର୍ଜନାରେ ।
କିଛି ମାତ୍ର ବାଧା ନ ଆସିବ କସ୍ମିନ୍ କାଳେ
"ବ୍ରହ୍ମା ବୋଲନ୍ତି ବଶିଷ୍ଠ ଶୁଣ ମୋ ବଚନ
ସୂର୍ଯ୍ୟଦେବ କହିଗଲେ ଯାହା ମୋ ଅଗ୍ରେଣ ।
ତାହା ଶୁଣି ଅତିଶୟ ହେଲି ଆନନ୍ଦିତ
କହିଲି ମୁଁ ଯା କହିଛି କହିଛି ଯର୍ଥାତ ।
ଏମନ, ଆକାଶ, ଚିଦାକାଶ ବି ଅନନ୍ତ
ତେଣୁ ଆରମ୍ଭ କରୁଛି ମୋ ସୃଷ୍ଟି କଳ୍ପିତ ।
ଏହା ମୋ ଆଦେଶ ତୁମ୍ଭେ ଶୁଣ ହେ ଭାସ୍କର
ପ୍ରଥମ ମନୁ ହୋଇଣ ଭବେ ସୃଷ୍ଟି କର ।
ମହା ତେଜସ୍ୱୀ ଭାସ୍କର ଶୁଣି ମୋର ବାଣୀ
ନିଜ ଆତ୍ମାକୁ ଦି ଭାଗେ କଲେ ତତ୍‌କ୍ଷଣି ।
ଏକ ଭାଗ ତହୁଁ ଯାଇ ଏମନ୍ତ ଯେ କଲା
ଇନ୍ଦୁପୁତ୍ରଙ୍କ ସୃଷ୍ଟିର ସୂର୍ଯ୍ୟଦେବ ହେଲା ।

ଅନ୍ୟଭାଗ ମୋ ସୃଷ୍ଟିର ମନୁ ବୋଲାଇଣ
ମୋ ଇପ୍‌ସିତ ସୃଷ୍ଟିର ସେ କରନ୍ତି ବିଧାନ ।
ଏ ମନର ଶକ୍ତି ସ୍ୱରୂପ, କର୍ତ୍ତୃତ୍ୱ
ସକଳ ତୁମ୍ଭଙ୍କୁ କରାଇଲି ଅବଗତ ।
ଏ ମନର ଯେଉଁ ଯେଉଁ ଅଂଶ ହେ ବଶିଷ୍ଠ
ଚୈତନ୍ୟର ପ୍ରତିବିମ୍ବ ହୁଅଇ ପତିତ ।
ପ୍ରକାଶ ଲଭି ତା' ଫଳ ସମ୍ପନ୍ନ ହୁଅଇ
ଏହି ନୀତି କାଳେ କାଳେ କାର୍ଯ୍ୟକାରୀ ଥାଇ ।
ଇନ୍ଦୁପୁତ୍ରଗଣ ସାଧାରଣ ଦ୍ୱିଜ ଥିଲେ
ଚୈତନ୍ୟ ପ୍ରତିଭାସରେ ବ୍ରହ୍ମତ୍ୱ ଲଭିଲେ ।
ଆତ୍ମ ଚୈତନ୍ୟରୁ ମୁହିଁ ମଧ୍ୟ ସେହିପରି
ବ୍ରହ୍ମଭାବ ଲାଭ କରିଅଛି ତପଚାରୀ ।
ପ୍ରତିବିମ୍ବିତ ହୁଅନ୍ତେ ଆତ୍ମା ଏ ବୁଦ୍ଧିରେ
ଚିତ୍ତ ଆଖ୍ୟା ଧରିନିଏ ଜ୍ଞାନୀଙ୍କ ମତରେ ।
ସେହି ପ୍ରତିଭାସ ଜାଣ ମନ ଓ ଶରୀର
ତା ବିହୁନେ ଯାଙ୍କ ସ୍ଥିତି କଳ୍ପନା ମାତର ।
ଆତ୍ମାରେ ସଦା ସର୍ବଦା କଳ୍ପିତ ଏ ଚିତ୍ତ
ବିଭିନ୍ନ ସେ କଳପନା ବାସନା * ଜନିତ ।
ଚିତ୍ତପରି ପ୍ରତିଭାତ ଏ ସୂକ୍ଷ୍ମ ଶରୀର
ସ୍ଥୁଳଭାବ ଆବୋରିଲେ ଅନ୍ତର ମଧ୍ୟର ।
ଭ୍ରାନ୍ତିବଶ ଦେହ ତାକୁ ବୋଲନ୍ତି ଅଜ୍ଞାନୀ
ଦେହ ମିଥ୍ୟା, ଅବାସ୍ତବ ଆହେ ବ୍ରହ୍ମଜ୍ଞାନୀ ।
ଚିତ୍ତରେ ବାସନାମାନ କ୍ଷୀଣ ଯେତେବେଳେ
ସେ ଚିତ୍ତ ଜୀବ ବୋଲାଇଥାଇ ତେତେବେଳେ ।
ଭ୍ରାନ୍ତି ବାହୁଲ୍ୟେ ସେ ଚିତ୍ତ ହୁଅନ୍ତେ ନିମଗ୍ନ
ତେବେ ଶରୀର ବୋଲିଣ ତା' ନାମକରଣ ।
ତ୍ରିବିଧ ଦେହ କଳ୍ପନା ହେଲେ ଉପଶାନ୍ତ
ସେ ଚିତ୍ତ ବ୍ରହ୍ମ ନାମରେ ହୁଅଇ ବିଦିତ ।
ବିଚିତ୍ର ସ୍ୱଭାବ ଏହି ଏକମାତ୍ର ଚିତ୍ତ
ବିଭିନ୍ନ ପ୍ରପଞ୍ଚାକାରେ ହେଉଛି ବିଦିତ ।
ଇନ୍ଦୁପୁତ୍ରେ ମନରୂପୀ ବ୍ରହ୍ମା ଯେଉଁପରି
ମୁଁ ମଧ୍ୟ ବ୍ରହ୍ମା ବୋଲାଏ ଜାଣ ସେହିପରି ।
ବିଶୁଦ୍ଧ ଚଇତନ୍ୟର ଭାବନା ବଳରେ
ଶରୀରର ନଶ୍ୱରତା ଜୀବ ବୋଧକରେ ।

ଚିତ୍ତରୁ ଜନମ 'ମୁହିଁ' ଆକାରୀୟ ଜ୍ଞାନ
ସତ ନୁହେଁ କି ଅସତ ନୁହେଁ ତାହା ଜାଣ ।
ଯା'ଠାରୁ ସତ୍ତା' 'ଅସତ୍ତା' ଉଭୟେ ଉଦୟ
ସେ ସତ୍ତା ସତ ଉଭୟାତ୍ମକ ନିରାମୟ ।
ସତ ସେହି ଉପଲବ୍ଧ ହୋଇଥାନ୍ତି ଯେଣୁ
ତର୍କରେ ଅନୁପଲବ୍ଧ ଅସତ ସେ ତେଣୁ ।
ତେଣୁ ସଙ୍କଳପମୟ ଏ ମହାନ ମନ
ଜଡ଼ ଏହି, ଆବର ଏ ଅଟଇ ଚେତନ ।
ବ୍ରହ୍ମ ସ୍ୱରୂପ ହେବାରୁ ଏ ଅଟେ ଚେତନ
ଦୃଶ୍ୟ ଆକୃତି ଧରନ୍ତେ ଜଡ଼ ସେହୁ ଜାଣ ।
ସୁବର୍ଣ୍ଣେ ବଳୟଭାବ ପୁଣି ସ୍ୱର୍ଣ୍ଣଭାବ
ଯେସନ ନିହିତ ଥା'ନ୍ତି ହେ ମୁନି ପୁଙ୍ଗବ ।
ଦୃଶ୍ୟଭାବ ବ୍ରହ୍ମଭାବ ମନରେ ତେସନ
ନିହିତ ରହିଣ ଥା'ନ୍ତି ଜାଣ ତପିରାଣ ।
ସର୍ବ ସ୍ୱରୂପ ଅଟନ୍ତି ସେ ଚିନ୍ମୟ ବ୍ରହ୍ମ
ବ୍ରହ୍ମସତ୍ତା ହେତୁ ଜଡ଼ ଚିନ୍‌ମୟ ଜାଣ ।
ମରୁଦେଶେ ବୃକ୍ଷଲତା ନ ଜନ୍ମିଲା ପରି
ବ୍ରହ୍ମରେ ନ ଥାଏ ଜଡ଼ ଚେତନ ସେପରି ।
ଚିତ୍‌ରୂପ ବ୍ରହ୍ମେ ଚେତ୍ୟ କଳପିତ ହେଲେ
ମନ ଆକାରେ ଉଦିତ ହୁଅନ୍ତି ସେ ହେଲେ ।
ମନ ଚିଦଂଶ ତେବେ ଚେତନ ବୋଲାଇ
ଚେତ୍ୟ ଅଂଶଟି ତାହାର ଜଡ଼ ନାମ ପାଇ ।
ମନ ଚିତ୍ ଅଂଶ ପୁଣି ଅଟେ ଏହି * ଚେତ୍ୟ
ଜଡ଼ ରୂପ ଧରିଣ ସେ ଦୃଶ୍ୟ ରୂପେ ସ୍ଥିତ ।
ବିଶୁଦ୍ଧ ଚିତ୍ ସ୍ୱଭାବ ଦି'ଭାଗେ ବିଭକ୍ତ
ଚିତ୍ତ ଓ ଜଗତ ଏହି ନାମରେ ବିଦିତ ।
ଜଡ଼ ଚେତନ ଆକାରେ ସେ ଚିନ୍ମୟ ବ୍ରହ୍ମ
ପ୍ରକାଶ ପାଉଅଛନ୍ତି ଏ ବିଶ୍ୱଭୂବନ ।
ଏ ଚିତ୍ ସ୍ୱରୂପ ବ୍ରହ୍ମ ଭ୍ରମବଶତଃରେ
ନିଜକୁ ଦୃଶ୍ୟ ରୂପରେ ଦରଶନ କରେ ।
ନିଜେ ନିଜର ବିଭାଗ କଳ୍ପନା କରଇ
ଏହି କଳ୍ପିତ ଅଂଶହିଁ ସଂସାର ବୋଲାଇ ।
ବସ୍ତୁତଃ ଭ୍ରମ ବୋଲିଣ କିଛି ମାତ୍ର ନାହିଁ
ପୁରୁଷ ଭ୍ରାନ୍ତି ନୁହନ୍ତି ଏହା ଠକ୍ ହୋଇ ।

* ନିଜ ନିଜ କର୍ମ ଓ ବାସନା ଇତ୍ୟାଦି ପ୍ରଭାବରୁ ଏ କଳ୍ପନା ଭିନ୍ନ ଭିନ୍ନ ହୋଇଥାଏ ।
* ଚେତ୍ୟ – ଦୃଶ୍ୟ

ସମୁଦ୍ର ପରି ସେ ପୂର୍ଣ୍ଣ ରୂପେ ଅବସ୍ଥିତ
ଏହି ଧାରଣା ମନରେ ରଖିବ ସତତ ।
ଏହି ପରମ ତତ୍ତ୍ୱରେ 'ଅହଂ' ଆକାରରେ
ଯେ ଦୃଶ୍ୟ ଉଠିବ ତା' ମରୀଚିକା ସଦୃଶରେ ।
ଅସତ୍ୟ ଅଟଇ ତାହା ଏ ବିଶ୍ୱ ମଧ୍ୟରେ
ଏହି ତତ୍ତ୍ୱ ବୁଝିରଖ ଆହେ ମୁନିବରେ ।
ନିରାମୟ ଆତ୍ମା ଅହଂଭାବର ଆଶ୍ରୟ
ଏପରି ମନେ ଭାବିବା ଅତ୍ୟନ୍ତ ଅନ୍ୟାୟ ।
ଘନୀଭୂତ ଶୈତ୍ୟ ଯଥା ହିମ ଆକାରରେ
ପରକାଶ ପାଇଥାଏ ଏ ବିଶ୍ୱ ମଧ୍ୟରେ ।
ଘନୀଭୂତ ହେଲେ ସୃଷ୍ଟି ରୂପର ବାସନା
ଅହଂଭାବ ଜନମେ ସେ ବ୍ରହ୍ମ ମଧ୍ୟେ ସିନା ।
ଜ୍ଞାନର ଦୃଢ଼ତା ବୃଦ୍ଧି ନୋହିବା ପର୍ଯ୍ୟନ୍ତ
ହୋଇ ନ ପାରଇ କେଉଁ ଚିତର ପୂର୍ଣ୍ଣତ୍ୱ ।
ବାସ୍ତବିକ୍ ଦେହ ବୋଲି କିଛି ବସ୍ତୁ ନାହିଁ
ଅହଂ ଭାବର ସ୍ୱତନ୍ତ୍ର ସତ୍ତା ଅବା କାହିଁ ?
ଜ୍ଞାନମୟ ଏକରସ ଆତ୍ମ ଚଇତନ୍ୟ
ଲଭି, ବାସନା ତେଜିଣ କର ଅବସ୍ଥାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଜୀବ କ୍ରମୋପଦେଶ ବର୍ଣ୍ଣନେ**
**ନାମ ୬୭ତମ ସର୍ଗଃ ।**



## ୬୮ତମ ସର୍ଗଃ
## ମନମାହାତ୍ମ୍ୟ ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ରାମ, ବ୍ରହ୍ମା ଯେତେବେଳେ
ଏହି ସକଳ ବିଷୟମାନ କହୁଥିଲେ ।
ମୁଁ କହିଲି "ଦେବ ଏଥି ପୂର୍ବରେ ଆପଣ
ମନ୍ତ୍ର ଅଭିଶାପ ଶକ୍ତି ଅବ୍ୟର୍ଥ ଯେସନ ।
ଏବେ କିମ୍ପାଇଁ ତହିଁର ବ୍ୟର୍ଥତା କିପରି ?
ଘଟିବ ସେ କଥା କରି ଆହେ ସୃଷ୍ଟି କାରି ।
ପ୍ରାଣୀଙ୍କର ବୁଦ୍ଧି, ମନ, ଇନ୍ଦ୍ରିୟ ସକଳେ
ବିନଷ୍ଟ ହୁଅନ୍ତି ଶାପ ମନ୍ତ୍ରାଦିର ଫଳେ ।
ଏହାତ ଅଟଇ ଦେବ ପ୍ରତ୍ୟକ୍ଷ ପ୍ରମାଣ
ଏବେ କିପରି ତହିଁର ହେବ ବିଡ଼ମ୍ବନ ?
ଅଭିନ୍ନ ଅଟନ୍ତି ଯେଣୁ ମନ ଓ ଶରୀର
ଗୋଟିକର ବିନାଶରେ ବିନାଶ ଅନ୍ୟର ।
ଅଭିଭୂତ ହୁଏ ମନ ଗୋଟିଏ କ୍ଷେତ୍ରରେ
ଅନ୍ୟଥା ହୁଅଇ କିମ୍ବା ଅନ୍ୟ ସମ୍ପର୍କରେ" ।
ବ୍ରହ୍ମା ବୋଲନ୍ତି ବଶିଷ୍ଠ ଶୁଣ ମୋର ଗୀର
"ପ୍ରତ୍ୟେକ ପ୍ରାଣୀର ଭବେ ଦୁଇଟି ଶରୀର ।
ମନୋମୟ ଶରୀରଟି କ୍ଷିପ୍ର ଓ ଚଞ୍ଚଳ
ଅକିଞ୍ଚନ ଅଟେ ରକ୍ତ ମାଂସର ଶରୀର ।
ଅଭିଶାପ ଆଉ * ଆଭିଚାରିକ କ୍ରିୟାରେ
ଆକ୍ରାନ୍ତ ହୁଅଇ ସ୍ଥୂଳ ଦେହ ଅକ୍ଲେଶରେ ।
ଯେହେତୁ କ୍ଷଣଭଙ୍ଗୁର ଅଟେ ଏ ଶରୀର
ଦୈବ ପ୍ରଭୃତିର ବଶୀଭୂତ ଅବିରଳ ।
ମନୋମୟ ଅଟେ ଯେଉଁ ଦ୍ୱିତୀୟ ଶରୀର
କିୟଦଂଶରେ ଆୟତ୍ତ ପ୍ରାଣୀମାନଙ୍କର ।
ବହୁଳାଂଶରେ ପ୍ରାଣୀର ଅନାୟତ ସେହି
ମୋ କହିବା ତତ୍ତ୍ୱ ବୁଝୁଥିବ ତପିସାଇଁ ।
ପୁରୁଷକାର ସମ୍ପନ୍ନ, ଧୈର୍ଯ୍ୟଶୀଳ ବ୍ୟକ୍ତି
ଦୁଃଖ ଯନ୍ତ୍ରଣା ତାହାଙ୍କୁ ଗ୍ରାସି ନ ପାରନ୍ତି ।
ଏହି ମନୋମୟ ଦେହ ଯେ ଯେ ବିଷୟରେ
ଯତ୍ନ ପରାୟଣ ହୁଏ ସୁଦୃଢ଼ ଭାବରେ ।
ଫଳ ପ୍ରାପ୍ତ ହୋଇଥାଏ ସେ ସବୁ ବିଷୟେ
ଯତ୍ନ ପରାୟଣ ହୁଏ ସୁଦୃଢ଼ ଭାବରେ ।
ଫଳ ପ୍ରାପ୍ତ ହୋଇଥାଏ ସେ ସବୁ ବିଷୟେ
ଏଣିକି ତ ବୁଝୁଥିବ ମୋ କଥା ମୁନି ହେ ।
ସଦା ସର୍ବଦା ଯେ ମନ ପବିତ୍ର ବିଷୟେ
ସ୍ମରଣ, ମନନ, ଧ୍ୟାନ କରି ଚାଲୁଥାଏ ।
ଅଭିଶାପ, ଅଭିଚାର ତାକୁ ନଛୁଅନ୍ତି
ପଥରରେ ବାଡ଼ି ପିଟା ପରି ଫାଟି ଯା'ନ୍ତି ।
ଘଟିଲେ ହେଁ ଉପଶମ ଦେହାଦି ଭାବର
କର୍ମ ଜନିତ ଯା' କିଛି ଫଳ ଥାଏ ତା'ର ।
ମନ ହିଁ ଏକଇ ମାତ୍ର କାରଣ ତାହାର
ମନେରଖ ଏହି ତତ୍ତ୍ୱ ଆହେ ତପୀବର ।
ପଉରୁଷ ବଳେ ଇନ୍ଦ୍ର ମନକୁ ତାହାର
ଅହଲ୍ୟାମୟ ଦେଖିଲା ଏ ସାରା ସଂସାର ।

* ଆଭିଚାରିକ - ତାନ୍ତ୍ରିକ ପ୍ରକ୍ରିୟା ବିଶେଷ ।

କୌଣସି ଯନ୍ତ୍ରଣା ତା'କୁ ବାଧିଲାତ ନାହିଁ
ଅଧିକ ଅଧିକ ପ୍ରେମ ଭାବ ଉଚ୍ଛୁଳଇ ।
ପୂର୍ବେ ଦୀର୍ଘତପା ଋଷି ଯଜ୍ଞ ଦ୍ରବ୍ୟ ପାଇଁ
ବନକୁ ଗମନ କଲେ ସେ ତପୀ ଗୋସାଇଁ ।
ଦୈବାତ ଏକ କୂପରେ ନିପତିତ ହେଲେ
ମାନସ ଯଜ୍ଞ ବିଧାନ ତହିଁ ଆରମ୍ଭିଲେ ।
ଯଜ୍ଞ ସମ୍ପାଦନ କରି ଦେବ ଲୋକ ଗଲେ
ବୁଝ ଏବେ ଏହି ମନ କି କରି ନ ପାରେ ।
ପଉରୁଷ, ଅଧ୍ୟବସାୟର ପ୍ରଭାବରେ
ଐନ୍ଦବଗଣ ବ୍ରହ୍ମତ୍ୱ ଲାଭ କରିଥିଲେ ।
ବ୍ରହ୍ମା ହେଲେହେଁ ମୁଁ ମନେ ସେକଥା ଅନ୍ୟଥା
କରିତ ପାରିବି ନାହିଁ ଆହେ ମହାରଥା ।
ପଥର ଭାଙ୍ଗି ନଯାଏ ଯଥା ପଦାଘାତେ
ଚିତ୍ତ ନିଗୃହୀତ ନୁହେଁ ଅଭିଶାପ ସତ୍ୱେ ।
ଅଭିଶାପ ଦ୍ୱାରା ଯା'ର ଚିତ୍ତ ନିଗୃହୀତ
ବିବେକ ପୌରୁଷହୀନ ବୁଝିବ ତା ଚିତ୍ତ ।
ସ୍ୱପନେ ବା ଜାଗରଣେ କଉଣସି ବ୍ୟକ୍ତି
ସମାହିତମନା ହୋଇଥିଲେ ସେ ବ୍ୟକତି ।
କଉଣସି ଦୋଷ ତାକୁ ଲାଗି ନ ପାରଇ
ପୌରୁଷ ହିଁ ସମସ୍ତଙ୍କ ଆଦର୍ଶ ଅଟଇ ।
ହେ ମୁନେ ! ମନେ ଯାହାହୁଏ ପ୍ରତିହିତ
ସେହି ଆକାରରେ ହୋଇଥାଏ ଦୃଶ୍ୟଗତ ।
ଏଥିରେ ବିଚିତ୍ର ବୋଲି କିଛିମାତ୍ର ନାହିଁ
ମନର ରଚନା ତାହା ଜାଣ ତପୀସାଇଁ ।
ତେଣୁ ବତ୍ସ ବୁଝ ଏହି ଭବ ନୁହେଁ ସତ୍ୟ
ପୁଣିହିଁ ବୁଝିବ ଏହା ନୁହଇ ଅସତ୍ୟ ।
ଏହିପରି ଭାବି, ଭେଦ ଦୃଷ୍ଟି ବରଜିବ ।
ସତ୍ୟ ଅସତ୍ୟ ମନର କଳ୍ପନା ବୁଝିବ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ମନମାହାତ୍ମ୍ୟ ବର୍ଣ୍ଣନେ**
**ନାମ ୬୮ତମ ସର୍ଗ ।**



## ୬୯ତମ ସର୍ଗ
## ବାସନା ତ୍ୟାଗ

କହନ୍ତି ବଶିଷ୍ଠ ରାମ ବ୍ରହ୍ମାଠାରୁ ପୂର୍ବେ
ଯାହା ଶୁଣିଥିଲି ତାହା କହିଲି ତ ଏବେ ।
ଆଦି ବ୍ରହ୍ମନାମ ରୂପହୀନ ହୋଇଥିଲା
କ୍ରମେ କ୍ରମେ ତାଙ୍କଠାରୁ ସ୍ପନ୍ଦନ ଜନ୍ମିଲା ।
ସର୍ବବିଧ ପ୍ରପଞ୍ଚର ବୀଜ ସେ ସ୍ପନ୍ଦନ
କ୍ରମେ କ୍ରମେ ଘନୀଭୂତ ହୋଇ ଆସେ ଜାଣ ।
ସେ ଘନୀଭୂତ ସ୍ପନ୍ଦନ ମନରୂପ ଧରେ
ସେହି ମନ କଳ୍ପେ ସୂକ୍ଷ୍ମ ପଞ୍ଚଭୂତ ପରେ ।
ବାସନାମୟ ଶରୀର ସେହି କଳ୍ପନାରୁ
ଜନ୍ମଲାଭ କରିଥାଏ, ଆହେ ଧର୍ମମେରୁ ।
ସେହି ଯେ ସମଷ୍ଟି ସୂକ୍ଷ୍ମ ଶରୀର ତତ୍‌ପରେ
ତେଜସ୍ୱ ପୁରୁଷ ରୂପ ଧାରଣ ସେ କରେ ।
ସେହି ତୈଜସ ପୁରୁଷ ଆହେ ରଘୁନାଥ
କମଳ ଉଦ୍‌ଭବ ବ୍ରହ୍ମା ନାମରେ ବିଖ୍ୟାତ ।
ତେଣୁ ଏହି ପରମେଷ୍ଠି ବ୍ରହ୍ମା ଜାଣ ରାମ
ତାହାର ହିଁ ମନସ୍ତତ୍ତ୍ୱ ବୋଲିଣ ଜାଣିମ ।
ସେହି ମନସ୍ତତ୍ତ୍ୱାକୃତି ବ୍ରହ୍ମା ଇଚ୍ଛେ ଯାହା
ଆବିର୍ଭୂତ ହୋଇ ଦେଖାଯାଏ ତାଙ୍କୁ ତାହା ।
ଅନାତ୍ମ ପଦାର୍ଥେ ଆତ୍ମ ଅଭିମାନ ରୂପ
ଅବିଦ୍ୟା କଳ୍ପନା କରେ ସେହି ସୃଷ୍ଟିଭୂପ ।
ଗିରି ଜଳଧି ସମ୍ପନ୍ନ ଏ ବିଶାଳ ଭବ
ତାହାରି ମନରୁ ଆବିର୍ଭୂତ ହେ ରାଘବ ।
ବ୍ରହ୍ମ ତତ୍ତ୍ୱରୁ ଏ ସୃଷ୍ଟି ଏସନ ଉଦ୍ଭବ
ତାର୍କିକଙ୍କ ମତେ ପରମାଣୁରୁ ଏ ଭବ ।
ସମୁଦ୍ର ମଧ୍ୟରୁ ଯଥା ତରଙ୍ଗ ଉତ୍ପନ୍ନ
'ବ୍ରହ୍ମ'ରୁ ସକଳୋତ୍ପତ୍ତି ହେ ରଘୁନନ୍ଦନ ।
ବ୍ୟଷ୍ଟି-ଅହଙ୍କାର ସମନ୍ୱିତ ଚିଦାଭାସ
ବ୍ରହ୍ମରୁ ଅଭିନ୍ନ ଏହା ଜାଣ ରଘୁଶିଷ୍ୟ ।
ପିତାମହ ରୂପୀ ଏହି ସମଷ୍ଟି ମନରେ
ବ୍ୟଷ୍ଟିରୂପୀ ଚିଦାଭାସ ଉଲ୍ଲସେ ତହିଁରେ ।
ଚିଦାକାଶୁ ଉଠି ତାହା ମାୟା ଆକାଶସ୍ଥ
ଭୂତ ଉପାଧି ସହିତ ହୁଅଇ ଜଡ଼ିତ ।
ଚଉଦ ଭୁବନ ମଧ୍ୟେ ବାସନାନୁସାରେ
ମନ ଅନୁରୂପ କର୍ମ ଅନୁସରଣରେ ।
ପ୍ରାଣ ଶକ୍ତି ଦ୍ୱାରା ସେହି ଭୂତ ସମୂହରେ
ପ୍ରବେଶ କରିଣ ସେହୁ ଜୀବଭାବ ଧରେ ।
ଏ ଜଗତେ ଜନ୍ମଲାଭ କରି ତତପରେ
ବାସନାନୁରୂପ କର୍ମଫଳ ଭୋଗ କରେ ।

ଏହି ଯେ ଜୀବ ସଂସାର ସର୍ବ ଇଚ୍ଛାମୟ
ଜନ୍ମଲାଭ କରିଥା'ନ୍ତି ସ୍ୱେଚ୍ଛାରେ ତଦୀୟ ।
ବ୍ରହ୍ମରୁ ଜନ୍ମ ଲଭିଣ ଏହି ଜୀବଗଣ
ନଶ୍ୱର ସଂସାରେ କରୁଅଛନ୍ତି ଭ୍ରମଣ ।
ସଂସାର ବୃକ୍ଷକୁ ତତ୍ତ୍ୱଜ୍ଞାନ କୁଠାରରେ
ସତର୍କ ହୋଇ ଯେ ନର ଛେଦି ଦେଇପାରେ ।
ପୁନର୍ବାର ଅଙ୍କୁରିତ ହୋଇ ନ ପାରିବ
ଜୀବନ ମୁକତି ରାମ ଏସନ ଲଭିବ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ବାସନା-ତ୍ୟାଗ ବର୍ଣ୍ଣନେ**
**ନାମ ୬୯ତମ ସ୍ୱର୍ଗଃ ।**



## ୭୦ତମ ସର୍ଗ
## ସର୍ବବ୍ରହ୍ମ ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁରାଣ
ଜୀବର ଉପାଧି ଏବେ କହିବା ତା ଶୁଣ ।
ଉତ୍ତମ ମଧ୍ୟମ ପୁଣି ଅଧମ ଏ ତିନି
ଉପାଧି ରହିଅଛନ୍ତି ଗୁଣ ଭାବ ଘେନି ।
ପୂର୍ବ ଜନ୍ମେ ଯେଉଁ ଜୀବ ଶମ ଦମ ଆଦି
ସାଧିଥିବ ଶୁଭକର୍ମମାନଙ୍କୁ ସମ୍ପାଦି ।
ଗୁରୁ ଉପଦେଶ ଯଦି ଘେନି ସେ ନ ଥିବ
ଅନ୍ୟ କିଛି ବାଧା ବିଘ୍ନ ଅବା ଘଟିଥିବ ।
ତତ୍ତ୍ୱଜ୍ଞାନ ନ ଲଭି ସେ ଦେହ ତ୍ୟାଗ କରେ
ତଥାପି ସେ ପୂର୍ବଜନ୍ମ ଶୁଭକର୍ମ ଫଳେ ।
ଉତ୍ତମ ଜୀବ ଭାବର ମଧ୍ୟରେ ସେ ଗଣ୍ୟ
ହୋଇପାରିବ ଏ ଜନ୍ମେ ଆହେ ରଘୁରାଣ ।
ଏହି ଜନ୍ମେ ମୁକ୍ତି ଲାଭ ହୁଏ ତା'ର ଯେଣୁ
* ଉତ୍ତମ ଜନମ ତା'ର ଏହି ସେ କାରଣୁ ।
ପ୍ରାକ୍ତନ ବୈରାଗ୍ୟ କା'ର ଯଦି ସ୍ୱଳ୍ପ ଥିବ
ଶୁଭ ଉଚ୍ଚ ଲୋକ ଇଚ୍ଛି ପୂଜା କରୁଥିବ ।
ସଂସାର ବାସନା ଯଦି ସଞ୍ଚିତ ତା' ହୁଏ
କେତେ ଜନ୍ମ ମଧ୍ୟେ ସେ ବାସନା କ୍ଷୟ ଯାଏ ।
ସଂସାରରୁ ମୁକ୍ତିଲାଭ କରଇ ସେ ଜୀବ
* ମଧ୍ୟମ ଜୀବ ଭାବରେ ଗଣ୍ୟ ସେ ହୋଇବ ।
ଏ ଜନ୍ମର ସୁଖ ଦୁଃଖ ଯେବଣ ଲୋକର
ସୂଚଇ ଦିଏ ତା' ପୂର୍ବ କର୍ମମାନଙ୍କର ।
ଏହି ଜନମକୁ ତା'ର ତତ୍ତ୍ୱବିତ୍‌ମାନେ
"ସାସତ୍ତ୍ୱ" ଆଖ୍ୟା ଦେଇଣ ଥା'ନ୍ତି ଅନୁମାନେ ।
ବହୁତ ଦୁଷ୍କର୍ମ ଦୁର୍ବାସନା ମଳିନତା ।
ଘେନି ଜନ୍ମ ଲଭିଥାଏ ଯେବଣ ଦୁରାତ୍ମା ।
ସହସ୍ର ଜନ୍ମରେ ତା'ର ଜ୍ଞାନ ଲାଭ ନୋହି
ଜ୍ଞାନୀଏ ତାକୁ "ଅଧମ" ଜୀବ ଭାବ କହି ।
ଲକ୍ଷ ଜନ୍ମେ ତା'ର ମୁକ୍ତି ହେବ କି ନୋହିବ
ସନ୍ଦିହାନ ଥାଏ ଯଦି ଏଥିରେ ରାଘବ ।
"ଅତ୍ୟନ୍ତ ତାମସ" ଜନ୍ମ ତାହାକୁ ଜାଣିବ
ସମସ୍ତ ବୁଦ୍ଧି, ଜ୍ଞାନର ବାହାର ସେ ହେବ ।
ପୂର୍ବ ଜନ୍ମ ବାସନାର ଚରିତ୍ର ଘେନିଣ
ଜନ୍ମ ଲାଭ କରିଥିବେ ଯେଉଁ ଜୀବଗଣ ।
ଦୁଇ ତିନି ଜନ୍ମ ପରେ ତାଙ୍କ ସ୍ୱର୍ଗଲାଭ
ସମ୍ଭବ ହୋଇପାରିବ ହେ ରଘୁପୁଙ୍ଗବ ।
ମୁକତି ମାତର ତାଙ୍କ ସନ୍ଦେହ ଗର୍ଭରେ
'ରାଜସ ଜନମ' ତାହା ଜ୍ଞାନୀଙ୍କ ମତରେ ।
ସେହି ରାଜସ ଜନ୍ମରେ ବୈରାଗ୍ୟ ଆସିଲେ
ତତ୍ତ୍ୱଜ୍ଞାନ ସମୀପସ୍ଥ ଜୀବ ହୁଏ ଭଲେ ।
ପରବର୍ତ୍ତୀ ଜନ୍ମ ତା'ର ମୋକ୍ଷ ଯୋଗ୍ୟ ବୋଲି
ସାଧୁଗଣ କହିଥା'ନ୍ତି ହୃଦଭାବ ଖୋଲି ।
"ରାଜସ ସାତ୍ତ୍ୱିକ" ଜନ୍ମ ତାହା ମୋ ମତରେ
ଯକ୍ଷ ଗନ୍ଧର୍ବାଦି ରୂପେ କିଛି ଜନ୍ମ ପରେ ।
ମୋକ୍ଷ ଉପଯୋଗ୍ୟ ଯଦି ହୁଅନ୍ତି ସେମାନ
"ରାଜସ ଜନମ" ତାହା ବୋଲିଣ ଜାଣିମ ।
ଶତାଧିକ ଜନ୍ମ ପରେ ମୋକ୍ଷ ଉପଯୁକ୍ତ
ହେଲେ 'ରାଜସ-ତାମସ' ଜ୍ଞାନୀଙ୍କର ମତ ।
ସସ୍ର ସସ୍ର ଜନ୍ମପରେ ମୁକତି ସନ୍ଦେହ
'ରାଜସ୍ୱାତ୍ୟନ୍ତ ତାମସ' ବୋଲିବାଟି ନ୍ୟାୟ ।
ଯେଉଁ ଜନ୍ମର ସସ୍ର ସସ୍ର ଜନ୍ମ ପରେ
ମୋକ୍ଷ ଲାଭର ସନ୍ଦେହ ରହିଥାଏ ହେଲେ ।

* ଇଦଂ ପ୍ରଥମତଃ ନାମରେ ଆଖ୍ୟାତ (ପ୍ରଥମ ବା ଉତ୍ତମ ଜୀବ ।)
* ଗୁଣପୀବର ନାମେ କଥିତ

"ତାମସ ଜନ୍ମ" ତାହାକୁ ବୋଲନ୍ତି ପଣ୍ଡିତେ
ସେ ଜନ୍ମର ବିବରଣ ଶୁଣ ରଘୁନାଥେ ।
ପ୍ରଥମ ତାମସ ଜନ୍ମେ ଯଦି ମୁକ୍ତି ହୁଏ
"ତାମସ ସତ୍ୱ" ତାହାକୁ ବୋଲନ୍ତି ଜ୍ଞାନୀଏ ।
ମୁକ୍ତି ଉପଯୁକ୍ତ ହେଲେ କେତେ ଜନ୍ମ ପରେ
ବିଦିତ ହୁଏ ତା' 'ତମ-ରାଜସ' ନାମରେ ।
ସସ୍ରାଧିକ ଜନ୍ମେ ମୋକ୍ଷ ଉପଯୁକ୍ତ ନୋହି
'ତାମସ-ତାମସ' ଜନ୍ମ ଜ୍ଞାନୀ ତାକୁ କହି ।
ଲକ୍ଷେ ଜନ୍ମ ଅତିକ୍ରମି ପୁଣି ଲକ୍ଷେ ଜନ୍ମେ
ମୋକ୍ଷ ବିଷୟେ ସନ୍ଦେହ ଯଦ୍ୟପି ଜନମେ ।
'ଅତ୍ୟନ୍ତ ତାମସ' ତାକୁ ବୋଲନ୍ତି ହେ ରାମ
ମୁକତି କଳ୍ପନାତୀତ ତା'ର ପାଇଁ ଜାଣ ।
ସମୁଦ୍ରେ ତରଙ୍ଗମାଳା ଉତ୍ପତ୍ତି ଯେସନ
ଜୀବ ଜନ୍ମ ପରମ୍ପରା ବ୍ରହ୍ମରୁ ତେସନ ।
ପ୍ରଦୀପୁ କିରଣ ରାଶି ନିଃର୍ଗତ ଯେସନ
ଆତ୍ମ ଚୈତନ୍ୟ ସ୍ପନ୍ଦିତ ଏ ଜୀବ ତେସନ ।
ବାସନା ବଶତଃ ପରଂବ୍ରହ୍ମଙ୍କ ମଧ୍ୟରୁ
ଅନବରତ ଉତ୍ପନ୍ନ କିଏ ବର୍ଣ୍ଣିପାରୁ ।
ଯଥା ମହାକାଶୁ ଘଟାକାଶର କଳ୍ପନା
ବ୍ରହ୍ମପଦରୁ ସକଳ ଜୀବ କଳପନା ।
ସକଳ ଜୀବ ଜଗତ ଯହିଁରୁ ଉତ୍ପନ୍ନ
ଉପାଧି ବିନାଶେ ସେହି ଆତ୍ମାରେ ବିଲୀନ ।
କାହା ଭାଗ୍ୟେ ସସ୍ର ସସ୍ର ଜନ୍ମ ଗଡ଼ିଯାଏ
କିଏ ଦୁଇ ତିନି ଜନ୍ମ ମଧ୍ୟେ ଲୀନ ପାଏ ।
ଉପାଧି ଜଡ଼ିତ ଜୀବ ନାନାଦି ଜଗତେ
ଜନ୍ମ ଲାଭ କରୁଥାଏ ବିଭୁ ଇଚ୍ଛାମତେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ,**
**ସର୍ବ ବ୍ରହ୍ମ ପ୍ରତିପାଦନ ବର୍ଣ୍ଣନେ,**
**ନାମ ୭୦ତମ ସର୍ଗଃ ।**



## ୭୧ତମ ସର୍ଗଃ
## କର୍ମ, ପୌରୁଷ ବର୍ଣ୍ଣନ

ବଶିଷ୍ଠ ବୋଇଲେ ଜୀବ ବ୍ରହ୍ମରୁ ଉତ୍‌ପନ୍ନ
ମୂଢ଼ ଜନମାନଙ୍କର ଏମନ୍ତ ବଚନ ।
ତତ୍ତ୍ୱବିତ୍‌ଙ୍କ ମୁଖରେ ଏମନ୍ତ ବଚନ
ଅଶୋଭନୀୟ ଅଟଇ ହେ ରଘୁ ନନ୍ଦନ ।
ସେମାନଙ୍କ ମତେ ବ୍ରହ୍ମ ହୁଏ ଯା ଉତ୍ପନ୍ନ
ବାସ୍ତବ ଉତ୍ପନ୍ନ ନୁହେଁ କୌଶଲ୍ୟା ନନ୍ଦନ ।
ତତ୍ତ୍ୱ ଜ୍ଞାନ ଉଦୟରେ ସ୍ପଷ୍ଟ ଅନୁଭବ
ବ୍ରହ୍ମ ସହିତ ଜଗତ ଅଭିନ୍ନ ରାଘବ ।
ଭ୍ରମ ଜ୍ଞାନ ବଶୀଭୂତ ଅଟନ୍ତି ଯେ ମାନ
ତାଙ୍କ ପାଇଁ ଏ ଜଗତ ଭିନ୍ନ ରଘୁନାନ ।
ପୁଷ୍ପ ଓ ତାହାର ଗନ୍ଧ ଯେପରି ଅଭିନ୍ନ
ପୁରୁଷ ଓ ତା'ର କର୍ମ ତଥା ଅବିଚ୍ଛିନ୍ନ ।
ଏ ପୁରୁଷ ଏବଂ ତା'ର କର୍ମ ସେହିପରି
ବ୍ରହ୍ମରୁ ଉଦୟ, ବ୍ରହ୍ମେ ଅସ୍ତ ଧନୁର୍ଦ୍ଧାରୀ ।
ସୁର, ଅସୁର, ମାନବ ଉରଗ ସକଳ
ମୁକ୍ତି ବିନା ଜନ୍ମ ଲଭୁଛନ୍ତି ବାରବାର ।
ସେମାନଙ୍କ ଏ ଉତ୍ପତ୍ତି ପୁନଃ ପୁନଃ ଜନ୍ମ
କିସ ତା' କାରଣ କହ ରଘୁ କୁଳୋତ୍ତମ ?
କେବଳ ଆତ୍ମବିସ୍ମୃତି ବ୍ୟତୀତ ହେ ରାମ
ଅନ୍ୟ କିଛି ନାହିଁ ବୋଲି ମୋର ମତ ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ,**
**କର୍ମ ପୌରୁଷ ବର୍ଣ୍ଣନେ,**
**ନାମ ୭୧ତମ ସର୍ଗଃ ।**



## ୭୨ତମ ସର୍ଗଃ
## ମନଃ ସଂଜ୍ଞା ବର୍ଣ୍ଣନା

ଶ୍ରୀରାମ ବୋଇଲେ ଦେବ କର୍ତ୍ତାର ଜନମ
ଲୋକମତେ ବେଦମତେ କର୍ମ ତା କାରଣ ।
କର୍ତ୍ତାଦ୍ୱାରା ପୁଣି କର୍ମ ହୋଇଥାଏ କୃତ
ଲୋକମତେ ବେଦମତେ ପ୍ରସିଦ୍ଧ ଏ ତତ୍ତ୍ୱ ।
ଏକ ଯେବେ ଏ ନିୟମ ଜୀବ ଜନ୍ମ ପାଇଁ
କର୍ମ ଛଡ଼ା ସେ ଜନ୍ମିବ କେସନ ଗୋସାଇଁ ।
ନିଶ୍ଚୟ କରି ଏ ତଥ୍ୟ କହ ଗୁରୁଦେବ
କର୍ମକଲେ ଫଳ ଲାଭ ହେବ ହେବ କି ନୋହିବ ?
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ଏବେ ଶୁଣିବାକ ତୁମ୍ଭ ପ୍ରଶ୍ନର ଉତ୍ତର ।

କର୍ତ୍ତବ୍ୟ ଅନୁସନ୍ଧାନ ପାଇଁ ମନମଧେ
ଯେଉଁ ଭାବନା ପ୍ରଥମେ ହୋଇଥାଏ ଉଦେ ।
କର୍ମର ବୀଜ ଅଟଇ ସେ ପ୍ରକାଶ ଜାଣ
ଯେହେତୁ ପରେ ସେ କର୍ମ ହୁଏ ସମ୍ପାଦନ ।
କୃତକର୍ମ ଫଳ ତହୁଁ ଲବ୍ଧ ହୁଏ ଜାଣ
ଆଉ କି ସନ୍ଦେହ ଏବେ କୁହ ରଘୁରାଣ ?
ଯେଉଁ କ୍ଷଣୁ ବ୍ରହ୍ମ ମନସ୍ତତ୍ତ୍ୱର ଉଦୟ
ସେହି ମୁହୂର୍ତ୍ତରୁ ଜାଣ ଜୀବ କର୍ମୋଦୟ ।
ସେହି ମୁହୂର୍ତ୍ତରୁ ପୁଣି ଶରୀର ଧାରଣ
ଜୀବର ହୋଇ ଅଛଇ ହେ ରଘୁନନ୍ଦନ ।
ପୁଷ୍ପ, ତା ସୌରଭ ମଧ୍ୟେ ନ ଥାଇ ପାର୍ଥକ୍ୟ
ଏ ମନ, କରମ ତଥା ଅଟେ ଅପାର୍ଥକ୍ୟ ।
ସ୍ପନ୍ଦନ ମୂଳକ କ୍ରିୟା ବୋଲାଏ କରମ
ସେ କର୍ମ ଆଶ୍ରିତ ଦେହ ଥିଲା ପୂର୍ବେ ମନ ।
ତେଣୁ କର୍ମ ଏବଂ ଚିତ୍ତ ଏ ଉଭୟେ ଏକ
ଏମାନଙ୍କୁ ଭିନ୍ନ ଭିନ୍ନ ମଣେ ଅବିବେକ ।
ନିଜକୃତ କର୍ମଫଳ ନ ଥାଏ ଯେ ସ୍ଥଳ
କାହୁଁ ସମ୍ଭବିବ ତହିଁ ଜଗତ ବିକାର ?
ପ୍ରାକ୍ତନ ଅବା ଐହିକ କର୍ମ ଯାହା କିଛି
ସାବଧାନେ ସମ୍ପାଦିତ ଯେବେ ହୋଇଅଛି ।
କେବେହେଲେ ତାହା ରାମ ନୁହଇଁ ବିଫଳ
ଦୁଇ ଦୁଇ ମିଶି ଚରି ହୁଏ ଯେ ପ୍ରକାର ।
କଜ୍ଜ୍ୱଳରୁ କାଳିମାକୁ କରିଲେ ଅନ୍ତର
କଜ୍ଜ୍ୱଳ ହୋଇ ନ ରହେ ତାହା ଯେ ପ୍ରକାର ।
ସ୍ପନ୍ଦନମୟ କରମ ବିନା ହେ ଶ୍ରୀରାମ
'ମନ' 'ମନ' ବୋଲାଇବ ଘେନି କେଉଁ ଗୁଣ ।
କର୍ମ ବିନାଶରେ ରାମ ମନର ବିନାଶ
ମନର ବିନାଶେ ପୁଣି କରମର ନାଶ ।
ମୁକ୍ତ ଅବସ୍ଥାରେ ଏହା କେବଳ ସମ୍ଭବ
ବଦ୍ଧ ଅବସ୍ଥାରେ ସର୍ବଭାବେ ଅସମ୍ଭବ ।
ଅଗ୍ନି ତା ଉତ୍ତାପ ଦୁହେଁ ଯେସନ ଜଡ଼ିତ
ମନ ଓ କରମ ରାମ ତଥା ସମ୍ମିଳିତ ।
ତେଣୁ ଏକର ବିଲୟେ ଅନ୍ୟର ବିଲୟ
ଅବଶ୍ୟମ୍ଭାବୀ ଅଟଇ ଆହେ ରଘୁରାୟ ।
ଚିତ୍ତହିଁ ସ୍ପନ୍ଦନ ରୂପ-କ୍ରିୟା ପ୍ରାପ୍ତ ହୋଇ
ପୁଣ୍ୟ-ପାପ, ଧର୍ମା-ଧର୍ମ ଭାବେ ପ୍ରକାଶଇ ।

ଅନୁରୂପ ସ୍ପନ୍ଦନରେ କର୍ମ ସେହିପରି
ଚିତ୍ତ ସ୍ୱରୂପ ଧରଇ ଫଳ ଆଶା କରି ।
ତେଣୁ ଚିତ୍ତ କର୍ମ ଜାଣ ଧର୍ମ, କର୍ମ ନାମେ
ବ୍ୟବହୃତ ହେଉଛନ୍ତି ଏ ତିନି ଭୁବନେ ।
ଭାବନା ହିଁ ମନ ବୋଲି ବୁଝ ହେ ଶ୍ରୀରାମ
ନିଷିଦ୍ଧ, ବିହିତ ଏହି ଦୁଇ ତା'ର ନାମ ।
'ସୂକ୍ଷ୍ମ ଓ ଅଦୃଷ୍ଟ' ଜୀବ ଜନ୍ମ ଜନ୍ମାନ୍ତରେ
ସଞ୍ଚିତ ସରବ କର୍ମଫଳ ଭୋଗକରେ ।
ଶ୍ରୀରାମ କହନ୍ତି ଦେବ ଏବେ ମୁଁ ବୁଝିଲି
'ଏ ମନ ଜଡ଼ ହେଲେ ହେଁ ଜଡ଼ ନୁହେଁ ବୋଲି ।'
ସେ ମନ ଯେବେ ହୁଅଇ ସଂକଳପମୟ
ତେବେ ତାର କି ସ୍ୱରୂପ ବୋଲ କରି ଥୟ ?
ଅନନ୍ତ ସରବ ଶକ୍ତି ଯୁକ୍ତ ଆତ୍ମତତ୍ତ୍ୱ
ସଙ୍କଳ୍ପ ଶକ୍ତି ପ୍ରଭାବେ ଯଥା ଆବିର୍ଭୂତ ।
ତାହାର ନାମହିଁ ମନ ଲକ୍ଷ୍ମଣ ଅଗ୍ରଜ
ମନ ଯେ କିପରି ବସ୍ତୁ ଏବେ ତାହା ବୁଝ ।
ସତ ଅସତ ଉଭୟ ଭାବ ଧରେ ଯେଣୁ
ଏକ ଭାବେ ସ୍ଥିତି ପାଇଁ ଅକ୍ଷମ ସେ ତେଣୁ ।
ମନର ସଂକଳ୍ପାରୂଢ଼ ଅବସ୍ଥା ଯେ ଏହି
ତହା ଏବେ ଭଲ କରି ବୁଝ ରଘୁରାଇ ।
ଆତ୍ମ ତତ୍ତ୍ୱରୁ ସର୍ବଦା ଜନ୍ମ ଯେ ମନର
"ମୁହିଁ ସେହି ଚିତ୍ତରୂପୀ" ଯେଉଁ ଅହଙ୍କାର ।
ଚିତ୍ ଛଡ଼ା ଅନ୍ୟ କିଛି ନୁହଇ ତ ମୁହିଁ
ଅଥଚ ମୁହିଁ କରତା ଯେତ୍ତେ କାର୍ଯ୍ୟ ହୋଇ ।
ଏମନ୍ତ ନିଶ୍ଚୟାତ୍ମକ ଧାରଣା ହୁଅନ୍ତେ ।
'ମନର ସ୍ୱରୂପ' ତାହା ବୁଝ ରଘୁନାଥେ ।
ଗୁଣହୀନ ଗୁଣୀ ଜନ ବିରଳ ଯେସନ
କର୍ମ ଶକ୍ତି ନ ଥିବା କଳ୍ପନାତ୍ମକ ମନ ।
ଅସମ୍ଭବରୁ ସମ୍ଭବ ଆଶାକଲା ପରି
ଏ ମନ ସେପରି ହେବ ଆହେ ଚାପଧାରୀ ।
ବହ୍ନି ଓ ଉତ୍ତାପ ଯଥା ନୁହନ୍ତି ପୃଥକ
କର୍ମ, ମନ, ଜୀବ ତଥା ସଦା ଅପୃଥକ ।
ଏ ବିଶ୍ୱର ବିସ୍ତୃତି ଯେ ହୋଇଛି କିପରି
ତାହା ଏବେ ଶୁଣ ମନଦେଇ ଚାପଧାରୀ ।
ଫଳପ୍ରଦ କର୍ମଦ୍ୱାରା ଚିତ୍ତରୂପୀ ମନ
ନିଜ ସଙ୍କଳ୍ପ ରୂପକୁ କଲା ବର୍ଦ୍ଧମାନ ।

ତେଣୁ ଏହି ମନ-ବୀଜ ବିଶ୍ୱର ବର୍ଦ୍ଧକ
ବୁଝିଲ କି ମୋ କହିବା ହେ ରଘୁନାୟକ ।
ଯାହା ଅଭିଳାଷ କରିଥାଏ ଏହି ମନ
କର୍ମେନ୍ଦ୍ରିୟମାନେ ତାହା କରନ୍ତି ସମ୍ପନ୍ନ ।
ତେଣୁ ଏହି ମନ କର୍ମ ଆଖ୍ୟା ଧରିଥାଏ
ମନ ଓ କର୍ମ ଅଭିନ୍ନ ଜାଣ ରଘୁରାଏ ।
ଯେବେ ଚିତ୍‌ଶକ୍ତି ଚିତ୍ ରୂପକୁ ତେଜିଣ
ଚେତ୍ୟର ଆକାର ଗୋଟି କରଇ ଧାରଣ ।
ଆପଣାକୁ ବାହ୍ୟରୂପେ କରଇ ଗଣନ
ତେତେବେଳେ ବୁଦ୍ଧି, ଚିତ୍ତ, ଅହଙ୍କାର, ମନ ।
କଳ୍ପନା, ବାସନା, କର୍ମ, ଅବିଦ୍ୟା ସଂସାର
ଇନ୍ଦ୍ରିୟ, ପ୍ରକୃତି, ମାୟା, ସ୍ମୃତି ଶବ୍ଦାଦିର ।
କ୍ରମ ଧରି ବ୍ୟବହୃତ ହୁଅନ୍ତି ଏମାନ
ମନର ସମଅର୍ଥକ ଅଟନ୍ତି ଏ ଜାଣ ।
ଯଥା ପରା ଚିତ୍-ଶକ୍ତି ଅବିଦ୍ୟା ବଶତଃ
ଉନ୍ମେଷମୁଖୀ ହୁଅଇ ହୋଇ କଳଙ୍କିତ ।
ଏହି ସବୁ ରୂପମାନ ଧରି ମୁଁ ଅଛଇ
ଏପରି କଳ୍ପନାମାନ ଯେବେ ସେ କରଇ ।
କଳ୍ପନାନୁସାରେ ପୁଣି ଶରୀର ଧରଇ
ତେତେବେଳେ 'ମନ' ବୋଲି ତା'ର ନାମ ହୋଇ ।
ଏସନ ବିକଳ୍ପମାନ ହୁଅନ୍ତେ ଅନ୍ତର
ମନ ହୋଇଯାଏ ରାମ ଯେତେବେଳେ ସ୍ଥିର ।
ସେହି ଅବସ୍ଥାକୁ 'ବୁଦ୍ଧି' କହନ୍ତି ପଣ୍ଡିତେ
ଏହି ବୁଦ୍ଧି ଦ୍ୱାରା ସର୍ବସିଦ୍ଧି ରଘୁନାଥେ ।
ଅନାତ୍ମା ବିଷୟେ ଆତ୍ମ ଅଭିମାନ କରି
ତହିଁରେ ନିଜର ବିଦ୍ୟମାନତା ବିଚାରି ।
ଯେତେବେଳେ ଏହି ଜ୍ଞାନ ହୁଅଇ ଉଦୟ
'ଅହଙ୍କାର' ନାମ ତା'ର କୌଶଲ୍ୟା ତନୟ ।
ଯାବତୀୟ ଅନର୍ଥର ବୀଜ ସେହି ଜାଣ
ଭବ ବନ୍ଧନର ରାମ ଅଟେ ସେ କାରଣ ।
ସୁକୋମଳ ଭାବାପନ୍ନ ହୋଇ ଯେତେବେଳେ
ବାଳକ ସ୍ୱଭାବାପନ୍ନ ହୁଏ ତେତେବେଳେ ।
ଗୋଟିଏ ବିଷୟ ଛାଡ଼ି ଅନ୍ୟକୁ ଧରଇ
ତେତେବେଳେ 'ଚିତ୍ତ' ନାମ ତାହାର ହୁଅଇ ।
ସେହି ଜ୍ଞାନ ଦ୍ୱାରା କର୍ତ୍ତା ଚଞ୍ଚଳ ହୋଇଣ
ସଶରୀରେ ଅନ୍ୟ ସ୍ଥାନେ କରଇଁ ଧାବନ ।

'କର୍ମ' ଆଖ୍ୟା ତାକୁ ଦେଇ ଥାଆନ୍ତି ପଣ୍ଡିତେ
'କଳ୍ପନା' ବିଷୟ ଏବେ ଶୁଣ ରଘୁନାଥେ ।
ପୁଣି ନିଜର ପୂର୍ଣ୍ଣତ୍ୱ ଯେବେ ଭୁଲି ଯାଇ
ସେ ବାଞ୍ଛିତ ପରି ଛିନ୍ନ ଭାବକୁ ଧରଇ ।
ପୂର୍ବାନଭୂତିକୁ ଯେତେବେଳେ ସେ ସମ୍ପିତ
ନିର୍ଣ୍ଣୟ କରିବା ପାଇଁ ଅନ୍ତରେ ଚେଷ୍ଟିତ ।
'ସ୍ମୃତି' ନାମ ଦେଇଥା'ନ୍ତି ଜ୍ଞାନୀଗଣ
'ବାସନା' ବିଷୟ ଏବେ ଶୁଣ ରଘୁରାଣ ।
ସେହି ଜ୍ଞାନ ତଦ୍‌ଜନିତ ଶକ୍ତି ଯେତେବେଳେ
ନିଃଶେଷ ଭାବେ ସେ ଶୂନ୍ୟ ସୂକ୍ଷ୍ମ ଆକାରରେ ।
ରହିଥାଏ ତାର ନାମ 'ବାସନା' ହେ ରାମ
ଏବେ 'ବିଦ୍ୟା' କଥାମାନ ମୋ'ଠାରୁ ଶୁଣିମ ।
ନିର୍ମଳ ଆତ୍ମତତ୍ତ୍ୱ ହିଁ ଅଛି ବିଦ୍ୟମାନ
ଅବିଦ୍ୟାରେ କଳଙ୍କିତ ଯେ ଦ୍ୱିତୀୟ ଜ୍ଞାନ ।
ଉତ୍ପନ୍ନ ହୋଇଛି ତାହା ତିନିକାଳେ ଜାଣ
ଅବିଦ୍ୟମାନ ରହିଣ ଥାଏ ହେ ଶ୍ରୀରାମ ।
ସେହି ଜ୍ଞାନ ଏହି ଭାବେ ପ୍ରକାଶ ପାଇଲେ
ବିଦ୍ୟା ନାମେ ପରିଚିତ ହୋଇଥାଏ ଭଲେ ।
ପରମ ପଦ ବିସ୍ମୃତ ହୁଏ ଯେତେବେଳେ
'ବିସ୍ମୃତି' ଆଖ୍ୟାରେ ପରିଚିତ ସେତେବେଳେ ।
ଆତ୍ମାକୁ ନଚିହ୍ନି ମିଥ୍ୟା ବିକଳ୍ପ ରୂପରେ
ସ୍ଫୁରିତ ହୋଇଣ ଯଦି ରହେ ତେତେବେଳେ ।
ଆବରଣ ଶକତିର ପ୍ରାଧାନ୍ୟ ବଶତଃ
ତା'ଠାରେ ମଳ ସମୂହ ହୁଅଇ ସଞ୍ଚିତ ।
'ମଳ' ନାମେ କଥିତ ସେ ହୁଏ ତେତେବେଳେ
'ଇନ୍ଦ୍ରିୟ' ବିଷୟ ରାମ ଶୁଣିବାକ ହେଲେ ।
ଏହି ମନରୂପୀ ଜ୍ଞାନ ଯେତେବେଳେ ପୁଣି
ଦର୍ଶନ, ଶ୍ରବଣ, ପ୍ରାଣନାଦି କ୍ରିୟା ଘେନି ।
କାର୍ଯ୍ୟ କାରଣାଧିପତି ଜୀବଭାବାପନ୍ନ
ଈଶ୍ୱରଙ୍କର ସନ୍ତୋଷ କରଇ ବିଧାନ ।
ଇନ୍ଦ୍ରିୟ ନାମରେ ତାହା ହୁଏ ଅଭିହିତ
ଏବେ 'ପ୍ରକୃତି' ବିଷୟ ଶୁଣ ରଘୁନାଥ ।
ସେହି ମନରୂପୀ ଜ୍ଞାନ, ପରମାତ୍ମାଙ୍କର
ଦୃଶ୍ୟ ନିର୍ମାଣ କାର୍ଯ୍ୟରେ ହୋଇ ତତପର ।
ଉପାଦାନର କାରଣମାନ ହୋଇ କରି
"ପ୍ରକୃତି" ନାମ ଧରଇ ଆହେ ବ୍ରହ୍ମଚାରୀ ।

ସତକୁ ଅସତ ପୁଣି ଅସତକୁ ସତ
ପ୍ରତିଭାତ କରିବାରେ ଅଟଇ ସମର୍ଥ ।
ସତ୍ୟତା ଓ ଅସତ୍ୟତା ବିକଳପ ଜ୍ଞାନ
ଏହି ପ୍ରକୃତିରୁ ହୋଇଥାଆନ୍ତି ଜନମ ।
ତେଣୁ "ମାୟା" ନାମ ତାର ଖ୍ୟାତ ଏ ଜଗତ
ମାୟାର ଅଦ୍ଭୁତ ଶକ୍ତି ଦଶରଥ ସୁତ ।
ଦର୍ଶନ, ଶ୍ରବଣ ଆଦି କର୍ମମାନ କରି
କାର୍ଯ୍ୟ, କାରଣ ଭାବକୁ ସର୍ବଦା ଆଚରି
ଏହି ଚିତ "କ୍ରିୟା" ନାମେ ହୁଏ ଅଭିହିତ
ଏବେ ଶୁଣ ସେ ଚିତ୍ର ପର୍ଯ୍ୟାୟ ଚରିତ ।
କଳଙ୍କ ଭାବ ଆବୋରି ସେ ଚିତ୍ ଶକତି
ଏ ସବୁ ଆକାରେ ଯେବେ ସ୍ଫୁରିତ ହୁଅନ୍ତି ।
ସେତେବେଳେ ଉପରୋକ୍ତ ନାମମାନ ତାର
ପର୍ଯ୍ୟାୟ ରୂପରେ ହୋଇଥାଏ ବ୍ୟବହାର ।
ହେ ରାମ ଏ ମନ ନୁହେଁ ଜଡ଼ ବା ଚେତନ
ଉପାଧି-ମଳି ଘେନି ସେ ଚିତ୍ ହୁଏ "ମନ" ।
ସେହି ଚିତ୍ ଶକତିର କଳଙ୍କିତ ରୂପ
ସତ ଅସତ ଆତ୍ମକ ଜଗତ ସ୍ୱରୂପ ।
ପ୍ରତି ଜୀବଧାରୀ ମଧ୍ୟେ ହୋଇ ବିଳସିତ
ଯେ ନାମ ଧରିଛି ତାହା ଅଟଇ "ଜଗତ" ।
ଆତ୍ମାର ଶାଶ୍ୱତ ବ୍ରହ୍ମ ସ୍ୱରୂପ ନଧରି
ଅନିଶ୍ଚିତ, ଭାବେ ଥିଲେ ତାକୁ "ଚିତ୍ତ" ବୋଲି ।
ସେହି ଚିତ୍ତରୁ ଜଗତ ହୁଅଇ ଉତ୍ପନ୍ନ
ଚିତ୍ତ ଜଗତର ତତ୍ତ୍ୱ ବୁଝ ହେ ଶ୍ରୀରାମ ।
ଚିତ୍ ଶକ୍ତି, ମଳିନତା ଭାବାପନ୍ନ ହୋଇ
ଜଡ଼ ଚେତନେ ଦୋଳାୟମାନ ଭାବେ ରହି ।
ନିଜର କଳ୍ପନା ଜାଲ ବିସ୍ତୃତ କରିଣ
ଯେଣୁ ସର୍ବଦା ଚଳଇ ନୋହି ଅବିଚ୍ଛିନ୍ନ ।
"ମନ" ଉପାଧି ତାହାକୁ ଦିଅନ୍ତି ପଣ୍ଡିତେ
ମନର ନାଟ ବୁଝିଛି କି ହେ ରଘୁନାଥେ ?
ଅହଂକାର, ବୁଦ୍ଧି, ଜୀବ ଏ ସକଳ ଜାଣ
ମନର ବିଭିନ୍ନ ନାମ ଅଟନ୍ତି ସେ ମାନ ।
ଏକ ଅଭିନେତା ଭିନ୍ନ ଭିନ୍ନ ଭୂମିକାରେ
ବିଭିନ୍ନ ନାମ ଆକୃତିମାନଧରି ଖେଳେ ।
ମନ ମଧ୍ୟ ସେହିପରି କର୍ମଭେଦ ଘେନି
ଭିନ୍ନ ରୂପ, ଭିନ୍ନ ନାମ ଧରେ ଏ ଅବନୀ ।
ମନର କ୍ରିୟା ଘେନିଣ ଭିନ୍ନ ଭିନ୍ନ ନାମ
ଯାହା ତୁମକୁ କହିଲି ହେ ରଘୁନନ୍ଦନ ।
ଭିନ୍ନ ଭିନ୍ନ ମତବାଦ ଯେ ମନିଷୀଗଣ
ଷଡ଼ଦର୍ଶନ ଇତ୍ୟାଦି ଯା ଅନୁସରଣ ।
ବିଭିନ୍ନ କଳ୍ପନା ବଳେ ଅନୁରୂପ ନାମ
ଏ ମନକୁ ଦେଇଛନ୍ତି ହେ ରଘୁନନ୍ଦନ ।
ବିଭିନ୍ନ ପଥ ଆଦରି ଯେ ପଥିକଗଣ
ଏକଇ ନଗରେ ତାଙ୍କ ହୁଏ ପ୍ରବେଶନ ।
ସକଳ ମତବାଦୀଙ୍କ ଯେ ଗନ୍ତବ୍ୟ ସ୍ଥାନ
ତାହାହିଁ "ପରମ ପଦ" ଜାଣ ରଘୁନାନ ।
ଅତତ୍ତ୍ୱଜ୍ଞ କୁତର୍କିକେ ଭିନ୍ନ ମତ ଦ୍ୟନ୍ତି
ଏ ସକଳ ବିଷୟରେ ପାର୍ଥକ୍ୟ ଦେଖନ୍ତି ।
ଚିତ୍ତ ଭୋଗର ପ୍ରଭାବ ଶରୀର ଉପରେ
ପ୍ରବଳତର ଅଟଇ ଜାଣ ରଘୁବୀରେ ।
ଇନ୍ଦ୍ରିୟ ଓ ଅହଂକାର ଚିତ୍ତ ଭୋଗ ବିନୁ
ଅକ୍ଷମ ଅଟନ୍ତି କାର୍ଯ୍ୟ କରିବାକୁ ତେଣୁ ।
ତେଣୁ ଜୀବ ଚିତ୍ତଠାରୁ ନୁହଁଇ ସ୍ୱତନ୍ତ୍ର
ଚିତ୍ତ ଅଭାବେ ଏ ଜୀବ ଅଟେ ମୃତବତ୍ ।
ଏକ କାଳ ଋତୁଭେଦେ ନାନା ରୂପ ଧରେ
ମନ କର୍ମ ବଶେ ନାନା ରୂପରେ ବିହରେ ।
ବିଶୁଦ୍ଧ ଚିତ୍ ବସ୍ତୁରେ ଯେଉଁ ମୁହୂର୍ତ୍ତରୁ
ଜଡ଼ଭାବର ଉଦୟ ହେ ମହିମା ମେରୁ ।
ସେହି କାଳୁ ଏ ଜଗତ ରୂପକ ବୈଚିତ୍ର୍ୟ
ଉଦୟ ହୋଇ ଅଛଇ ଆହେ ରଘୁନାଥ ।
**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ମନଃ ସଂଜ୍ଞା ବିଚାର ନାମ ୭୨ତମ ସର୍ଗଃ ।**



❑

## ୭୩ତମ ସର୍ଗଃ

## ଚିଦାକାଶ ମହାତ୍ମ୍ୟ

ଶ୍ରୀରାମ ବୋଇଲେ ଦେବ ଆପଣଙ୍କ କଥା
ଶୁଣିକରି ମୋ ମନରେ ଉଠେ ଏହି ଚିନ୍ତା ।
କେବଳ ମନ ଖେଳରୁ ଏ ବିଶାଳ ବିଶ୍ୱ
ସରଜିତ ହୋଇଅଛି ଆହେ ତପୀଈଶ ।

ଏବେ ଦୟାକରି କହ ଆହେ ଗୁରୁଦେବ
କିପରି ହୋଇପାରିବ ଯାର ଅନୁଭବ ?
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ମରୁସ୍ଥଳେ ସୂର୍ଯ୍ୟ ରଶ୍ମିର ଯେ ବିବରଣ ।
କିରଣ ପରି ନ ଦିଶେ ସୂର୍ଯ୍ୟ ରଶ୍ମି ତହିଁ
ଅବିକଳ ଜଳରୂପେ ତା ପ୍ରତୀତ ହୋଇ ।
ଆତ୍ମତତ୍ତ୍ୱେ ଅପ୍ରତୀ ବଶତଃ ହେ ରାମ
ବିଶ୍ୱ ଆକାରେ ପ୍ରତୀତି ହୁଅଇ ଏ ମନ ।
ବ୍ରହ୍ମ ସ୍ୱରୂପ ଜଗତେ ଏକମାତ୍ର ମନ
ବିଭିନ୍ନ ଆକାର ଧରି ହୁଏ ବିଦ୍ୟମାନ ।
କାହିଁ ନର, କାହିଁ ଦେବ, ଗନ୍ଧର୍ବ କିନ୍ନର
ସମୁଦିତ ହୋଇଅଛି ବିଶ୍ୱ ଚରାଚର ।
ଏହି ମନ ବିଳୟରେ ଏକମାତ୍ର ବ୍ରହ୍ମ
ଅବଶିଷ୍ଟ ରହିଥାନ୍ତି ହେ ରଘୁନନ୍ଦନ ।
ତେଣୁ କାଷ୍ଠ ଲୋଷ୍ଟ୍ରବତ୍ ଏ ଜୀବ ଜଗତ
ନଗଣ୍ୟଠାରୁ ନଗଣ୍ୟ ଆହେ ରଘୁସୁତ ।
ଯଦିଚ ଏ ଆତ୍ମା ଅଟେ ସକଳ ଅତୀତ
ତଥାପି ଆତ୍ମା ସର୍ବଜ୍ଞ ସର୍ବାଶ୍ରୟ ଭୂତ ।
ସେହି ଆତ୍ମାର ପ୍ରସାଦେ ଏ ବିଶ୍ୱ ସଂସାରେ
ଚେଷ୍ଟା ପରାୟଣ ମନ ଧାଏଁ ପରଖରେ ।
ମନ ହିଁ କରମ, ମନ ଶରୀର କାରଣ
ସେହି ମନ ଲଭୁଥାଏ ଜନମ ମରଣ ।
କେବେହେଲେ ଜନ୍ମମୃତ୍ୟୁ ନାହିଁ ଏ ଆତ୍ମାର
ଆତ୍ମା ଅଜର ଅମର ଆତ୍ମା ନିର୍ବିକାର ।
ସୁବିଚାର ବଳେ ମନ ଲଭଇ ବିଳୟ
ମନ ବିଲୀନରେ ଲବ୍ଧ ହୁଏ ଶ୍ରେୟାଶ୍ରେୟ ।
ସ୍ପନ୍ଦନ ସ୍ୱଭାବ କର୍ମାକୃତି ଯେଉଁ ମନ
ବିନାଶ ହୁଅନ୍ତେ ଜୀବ ଲଭଇ ନିର୍ବାଣ ।
ଜନ୍ମଗ୍ରହଣ ତାହାର ଆଉ ଅବା କାହିଁ
ମୁକ୍ତ ଜୀବ ଭାବେ ସେହୁ ପରିଚିତ ହୋଇ ।
ରାମ କହିଲେ ହେ ଦେବ ପୂର୍ବେ ତ ଆପଣ
କହିଛନ୍ତି ଜୀବଙ୍କର ତ୍ରିବିଧ ଜନମ ।
ସାତ୍ତ୍ୱିକ ରାଜସ ପୁଣି ତାମସ ସ୍ୱଭାବ
ଧରି ଜନମନ୍ତି ଜୀବକୁଳ ଏହି ଭବ ।
ସଦ ସଦାତ୍ମକ ମନ ଏହାର କାରଣ
ବିଶୁଦ୍ଧ ଚିତ୍ତୁ କେସନ ଏ ମନ ଉତ୍ପନ୍ନ ?
କହନ୍ତି ବଶିଷ୍ଠ ଚିଦାକାଶ, ଚିତ୍ତାକାଶ
ଭୂତାକାଶ ଏହିପରି ତ୍ରିବିଧ ଆକାଶ ।
ସର୍ବସାଧାରଣ ସର୍ବକାର୍ଯ୍ୟରେ ସେମାନେ
ଓତପ୍ରୋତ ଭାବେ ଜଡ଼ିଛନ୍ତି ଅନୁକ୍ଷଣେ ।
ବିଶୁଦ୍ଧ ଚିତ୍ ତତ୍ତ୍ୱର ସତ୍ତାବଶତଃରୁ
ଏ ତିନି ସତ୍ତା ଲଭନ୍ତି ଆହେ ଧର୍ମମେରୁ ।
ସେହି ଆକାଶର ନାମ ଅଟେ 'ଚିଦାକାଶ'
ସର୍ବଭୂତ ଅନ୍ତର୍ବହିଃ ଦେଶେ ଯେ ପ୍ରକାଶ ।
ସକଳ ବ୍ୟବହାରର ହେତୁ ସେ ଆକାଶ
କାର୍ଯ୍ୟ କାରଣ ନିୟନ୍ତା ଅନନ୍ତ ବିକାଶ ।
ଯା'ର କଳ୍ପନା ପ୍ରଭାବେ ଜାତ ଏ ଜଗତ
'ଚିତ୍ତାକାଶ' ନାମେ ତାହା ହୋଇଛି ବିଦିତ ।
ଦିଗ୍‌ମଣ୍ଡଳ ବ୍ୟାପୀ ଯା'ର ଆକାର ଅସୀମ
ବାୟୁ ଓ ମେଘମାନଙ୍କ ଅଟେ ଯେ ଆଶ୍ରମ ।
'ଭୂତାକାଶ' ନାମେ ତାହା ବିଦିତ ହେ ରାମ
ଭୂତାକାଶ, ଚିତ୍ତାକାଶ, ଚିଦାକାଶୁ ଜନ୍ମ ।
"ଯଦିଚ ଚେତନ ଅଟେ ତଥାପି ମୁଁ ଜଡ଼
ଚିତ୍ତର ଏ ତଦାକାର ଯେ ପ୍ରତୀତି ଦୃଢ଼ ।
ବ୍ରହ୍ମ ଚିତ୍ ମଳିନତା ଅଟେ ସେ ପ୍ରତୀତି
ମଳିନ ବ୍ରହ୍ମ ହିଁ ମନ ଜାଣ ରଘୁପତି ।
ସେହି ମନରୁ କଳ୍ପିତ ଯେ ଆକାଶ ତ୍ରୟ
ସ୍ୱଳ୍ପବୁଦ୍ଧି ବୁଝିବାକୁ ହୋଇଛି ନିର୍ଣ୍ଣୟ ।
ଆତ୍ମଜ୍ଞାନୀ ପାଇଁ ତାହା ନୁହଇଁ ଉଦ୍ଦିଷ୍ଟ ।
ଭେଦାତୀତ ସର୍ବମୟ ବ୍ରହ୍ମେ (ଯେ) ପ୍ରତିଷ୍ଠିତ
ପ୍ରବୃଦ୍ଧ ନୋହିବା ଯାଏ ତୁମେ ହେ ଶ୍ରୀରାମ
ଦର୍ଶାଉଥିବି ଏ ତିନି ଆକାଶଙ୍କୁ ଜାଣ ।
ମରୁଭୂମିରେ ପ୍ରଚଣ୍ଡ ରୌଦ୍ରରୁ ଯେସନ
ଜଳରୂପୀ ମରୀଚିକା ହୁଏ ଉତପନ୍ନ ।
ସେପରି ଚିଦାକାଶରୁ ହେ ରଘୁନନ୍ଦନ
ଚିତ୍ତାକାଶ, ଭୂତାକାଶମାନଙ୍କ ଜନମ ।
ଚିଦାକାଶ ଚିତ୍ତାକାଶ ସ୍ୱରୂପକୁ ଧରି
ଜଗତକୁ ବିଚାରଇ ଇନ୍ଦ୍ର ଜାଲ ପରି ।
ଅଜ୍ଞାନୀ ଚିଦାକାଶରେ ଚିତ୍ତଭାବ ଘେନେ
ଶାମୁକାକୁ ରୂପାମଣେ ଅବୋଧ ଯେସନେ ।
ଆତ୍ମବୋଧ ସମ୍ପନ୍ନଙ୍କୁ ଏ କଥା ସ୍ୱପନ
ନିଜର ମୂର୍ଖତା ଜାଣ ଅଟଇ ବନ୍ଧନ ।

ଜ୍ଞାନ ପ୍ରାପ୍ତି ମୋକ୍ଷ ଦୁହେଁ ଅଟନ୍ତି ସମାନ
ଜ୍ଞାନ ପ୍ରାପ୍ତି ସଙ୍ଗେ ସଙ୍ଗେ ମୋକ୍ଷ ମିଳେ ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ,**
**ଚିଦାକାଶ ମହାତ୍ମ୍ୟ ବର୍ଣ୍ଣନେ,**
**ନାମ ୭୩ତମ ସର୍ଗଃ ।**



## ୭୪ତମ ସର୍ଗଃ
## ଚିତ୍ତ ଉପାଖ୍ୟାନ

ବୋଲନ୍ତି ବଶିଷ୍ଠ ଏବେ ଶୁଣ ହେ ଅନଘ
ଯେଉଁ ପ୍ରକାରେ ଏ ଚିତ୍ତ ହେଉବା ଉଦ୍‌ଭବ ।
ବ୍ରହ୍ମ ସହ ତାକୁ ଯୋଗ କରିବାକୁ ହେବ
ଯାହା କିଛି ବାଧା ବିଘ୍ନ ଏଡ଼ି ଯାଉଥିବ ।
ବ୍ରହ୍ମେ ଲୀନ ଚିତ୍ତ ଶୁଦ୍ଧ, ବାସନା ବିହୀନ
ହୋଇ ଆତ୍ମ ସ୍ୱରୂପତା ଲଭିବ ହେ ରାମ ।
ଏ ସାରା ଜଗତ ଯେଣୁ ଚିତ୍ତର ଅଧୀନ
ମୁକ୍ତି ଓ ବନ୍ଧନ ତାଠୁଁ ନୁହନ୍ତି ସ୍ୱାଧୀନ ।
ପୂର୍ବେ ବ୍ରହ୍ମା ମୋତେ ଯେଉଁ ଚିତ୍ତ-ଉପାଖ୍ୟାନ
କହିଥିଲେ କହୁଛି ମୁଁ କର ତା ଶ୍ରବଣ ।
ଥିଲା ଏକ ସୁବିସ୍ତୃତ ଭୀଷଣ ଅରଣ୍ୟ
ପଶୁପକ୍ଷୀ ଜୀବଜନ୍ତୁ ଥିଲେ ତହିଁ ଶୂନ୍ୟ ।
ବିପୁଳକାୟ ବ୍ୟାକୁଳ ବୁଦ୍ଧି ଏକ ଲୋକ
ବାସ କରୁଥିଲା ତହିଁ ହେ ରଘୁ ନାୟକ ।
ସହସ୍ର ବାହୁ ତାହାର ସହସ୍ର ନୟନ
ହସ୍ତମାନଙ୍କରେ ଧରିଥାଏ ଗଦାମାନ ।
ନିଜ ପୃଷ୍ଠଦେଶେ ନିଜେ କରେ ଗଦାଘାତ
ଭୀତ ହୋଇ ପଳାୟନ କରେ ଇତସ୍ତତଃ ।
ବିହ୍ୱଳ ହୋଇଣ ଦୂରେ ପଳାୟନ କରେ
କ୍ଲାନ୍ତିରେ କଚାଡ଼ି ହୋଇପଡ଼େ ଭୂମିତଳେ ।
କାନ୍ଦି କାନ୍ଦି ଯାଉଁ ଯାଉଁ ଭୀଷଣ କୂପରେ
ପଡ଼ିଯାଇ ରହିଲା ସେ ହତାଶ ଭାବରେ ।
ବହୁକାଳ ଗଡ଼ିଯାନ୍ତେ କୂପରୁ ବାହାରି
ନିଜକୁ ନିଜେ ମୁଦ୍‌ଗରାଘାତ କରି କରି ।
ପଳାୟନ କରୁଥାଏ କ୍ଷୀପ୍ର-ଶର ସରି
ଅଗ୍ନି ଦେଖିଣ ପତଙ୍ଗ ଧାଏଁ ଯେଉଁପରି ।

କଣ୍ଟକମୟ ଏକଇ କରଞ୍ଜ ବନରେ
ପ୍ରବେଶ ହୋଇଲା ବୀର ଅତି କ୍ଷିପ୍ରତରେ ।
କ୍ଷଣକାଳ ପରେ ସେହି ବନରୁ ବାହାରେ
ଆପେ ପିଟି ହେଉଥାଏ ସାରାଶରୀରରେ
ପଳାଇ ପଶିଲା ଏକ କଦଳୀ ବନରେ
ବାହାରି ଆଘାତ କରେ ଆପଣା ଦେହରେ ।
ଧାଇଁ ଧାଇଁ ଅନ୍ଧକୂପେ ପଡ଼ିଲା ସେ ଯାଇଁ
ବିଷଣ୍ଣ ଭାବେ ପଡ଼ିଣ ରହିଲା ସେ ତହିଁ ।
ଅନ୍ଧକୂପରୁ ବାହାର ହୋଇ ଧାତିକାରେ
ଯାଇଣ ପଶିଲା ପୁଣି କଦଳୀ ବନରେ ।
ପୁଣି କରଞ୍ଜ ବଣରେ ହୋଇଲା ପ୍ରବେଶ
ପିଟି ହେବା କଥା ତା'ର ନୋହୁଥାଏ ଶେଷ ॥
ତହୁଁ ଧାଇଁଯାଇ ପଡ଼େ ପୁଣି ସେ କୂପରେ
କୂପୁ ବାହାରି ପଶଇ କଦଳୀ ବନରେ
ମୁଦ୍‌ଗର ଆଘାତ ଚାଲୁଥାଏ ବାରମ୍ବାର
ନିଜକୁ ନିଜେ ସେ ଯେତେ କଲେହେଁ ପ୍ରହାର ।
ବହୁକ୍ଷଣ ଧରି ଦେଖେଁ ତା'ର ଏହି କାର୍ଯ୍ୟ
ବଳପୂର୍ବକ ଧଇଲି ନ ସହନ୍ତେ ଧୈର୍ଯ୍ୟ ।
ପଚାରିଲି ତୁମେ କିଏ କିମ୍ପାଇ ଏସନ
ଅସହ୍ୟ କଷ୍ଟମାନ କରୁଛ ବରଣ ?
କି ଅଭିଳାଷ ତୁମର, କି ଆଶା ପୋଷିଛ
କେଉଁ କାରଣରୁ ମୋହ ବଶ ହୋଇଅଛ ?
ହେ ରଘୁନନ୍ଦନ ମୋର ଏହି ପ୍ରଶ୍ନ ଶୁଣି
ସେ କହିଲା ମୁହିଁ କେହି ନୁହେଁ ଆହେ ମୁନି ।
ନିୟତି ଟାଣଇ ମୋତେ ପ୍ରକୃତିକୁ ଘେନି
କିଛି କରୁନାହିଁ ମୁହିଁ ରଖ ଏହା ଜାଣି ।
ମୋର ଗତି ରୁଦ୍ଧ କରୁଅଛ ତୁମେ ଯେଣୁ
ହେ ମୁନି ମୋର ବଇରୀ ଅଟ ତୁମେ ତେଣୁ ।
ଅସନ୍ତୁଷ୍ଟ ହୋଇ ସେହୁ କହିଣ ଏସନ
ଉତ୍କଟ ରବରେ କରି ଉଠିଲା କ୍ରନ୍ଦନ ।
କିଛି କାଳପରେ ନିଜ ଶରୀରକୁ ଚାହିଁ
ହାସ୍ୟ, ଚିତ୍‌କାରମାନ କରି ବସେ ସେହି ।
ଏହିପରି ଅଟ୍ଟହାସମାନ କରି କରି
ଅଙ୍ଗମାନ ତେଜିଲା ସେ ଗୋଟି ଗୋଟି କରି ।
ମୋହର ଆଗରେ ଏହି ନାଟକ ଲାଗିଲା
ଗଣ୍ଡି ଛିଡ଼ି ମୁଣ୍ଡ ଆଗ ତଳେ ଗଡ଼ିଗଲା ।

ଗୋଟି ଗୋଟି ହୋଇ ହସ୍ତ ତଳେ ଯା'ନ୍ତି ଲୋଟି
ରହୁଁ ରହୁଁ ବକ୍ଷସ୍ଥଳ ଯାଏ ତା'ର ଫାଟି ।
ଯହୁଁ ତା' ଉଦର ଗୋଟି ତଳେ ଲୋଟିଗଲା
ନିୟତି ନିର୍ଦ୍ଦିଷ୍ଟ ସ୍ଥଳେ ଗୁପତ ରହିଲା ।
ସେହି ଅରଣ୍ୟ ମଧ୍ୟରେ ଅନ୍ୟ ଏକ ସ୍ଥାନେ
ଏହି ରୂପ ଅନ୍ୟ ବ୍ୟକ୍ତି ଦେଖିଲି ନୟନେ ।
ନିଜକୁ ନିଜେ ମୁଦ୍‌ଗରାଘାତ କରେ ସେହି
ଧାଇଁ କାହିଁ କୂପମଧ୍ୟେ ନିପତିତ ହୋଇ ।
ପଡୁଥାଏ ଉଠୁଥାଏ ପୁଣି ପଡୁଥାଏ
ପଡ଼ିବା ଉଠିବା ନାଟ ସଦା ଚାଲୁ ରହେ ।
ସ୍ତମ୍ଭୀତ କରି ଦେଇ ମୁଁ ତାକୁ ଯୋଗବଳେ
ପୂର୍ବପରି ପ୍ରଶ୍ନମାନ ପଚାରଇ ହେଲେ ।
ପୂର୍ବୋକ୍ତ ବ୍ୟକ୍ତିଙ୍କ ପରି ଦେଇ ସେ ଉତ୍ତର
ହାସ୍ୟ କ୍ରନ୍ଦନ ସହିତ ଅବୟବ ତା'ର ।
ଗୋଟି ଗୋଟି କରି ପରିତ୍ୟାଗ କରିଦେଇ
ନିୟତି ନିର୍ଦ୍ଦିଷ୍ଟ ସ୍ଥାନେ ରହିଲାକ ଯାଇ ।
କ୍ରମେ କ୍ରମେ ସେହି ଘୋର ଅରଣ୍ୟ ମଧ୍ୟରେ
ବହୁ ପୁରୁଷ ପଡ଼ିଲେ ମୋ ନେତ୍ର ପଥରେ ।
ପ୍ରତ୍ୟେକ ନିଜକୁ ନିଜେ ପ୍ରହାର କରନ୍ତି
ଅବିକଳ ଏହି ରୂପ ଚାଲେ ନାଟ ରୀତି ।
କେହି କେହି ମୋ ପ୍ରଶ୍ନରେ ଅବୟବମାନ
ତେଜିଦ୍ୟନ୍ତି ଗଛୁ ପତ୍ର ଝଡ଼ିଲା ସମାନ ।
ପୁଣି କେହି କେହି ମୋର ବଚନକୁ ଶୁଣି
ଘୃଣାବଶରୁ ଉପେକ୍ଷା କରନ୍ତି ମୋ ବାଣୀ ।
ସେ ଘୋର ଅରଣ୍ୟ ମଧ୍ୟ ଏବେ ସେହିପରି
ବିଦ୍ୟମାନ ରହିଅଛି ଆହେ ଧନୁର୍ଦ୍ଧାରୀ ।
ତହିଁର ପୁରୁଷମାନେ ପୂର୍ବ ପରକାରେ
ଚାଲି ଚଳଣି ଦେଖାନ୍ତି ସେ ବନ ମଧ୍ୟରେ ।
ତୁମେ ମଧ୍ୟ ଆହେ ରାମ ଦେଖିଛ ସେ ବନ

ପୂର୍ଣ୍ଣ ବିବେକ ଅଭାବୁ ନ ପଡ଼େ ତା ମନ ।
**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ,**
**ଚିତ୍ତ ଉପାଖ୍ୟାନେ, ନାମ ୭୪ତମ ସର୍ଗଃ ।**

❑

## ୭୫ତମ ସର୍ଗଃ

### ଚିତ ଉପାଖ୍ୟାନ

କି ରୂପ ସେ ମହାରଣ୍ୟ ପୁଚ୍ଛନ୍ତି ଶ୍ରୀରାମ
କେବେ ମୁଁ ବା ଦେଖିଲଇଁ ସେ ମହା ଅରଣ୍ୟ ।
କିଏ ସେ ପୁରୁଷମାନେ ଯା'ଙ୍କ ବିବରଣ
ବର୍ଣ୍ଣନ କରିଲ ମୁନେ ମୋର ଅଗ୍ରତେଣ ।
କେଉଁ କାରଣ ହେତୁରୁ ଏହି ଆଚରଣ
ଦେଖାଉଥିଲେ ସେମାନେ ସେ ବନ ମଧ୍ୟେଣ ।
ବଶିଷ୍ଠ ବୋଲନ୍ତି ରାମ ସେ ମହା ଅରଣ୍ୟ
ସୁଦୂର ନୁହଇ, ଅତି ନିକଟ ସେ ଜାଣ ।
ସେ ବନ ମନୁଷ୍ୟଗଣ ସୁଦୂରେ ନାହାନ୍ତି
ତୁମ ନେତ୍ରପଥେ ସର୍ବେ ବିଚରୁଣଛନ୍ତି ।
ଏହି ଯେ ସଂସାର ଅଟେ ସେ ମହା ଅରଣ୍ୟ
ଅଧିବାସୀଗଣ ତାର ଦୁଃଖରେ ନିମଗ୍ନ ।
ବିବେକ ଦୃଷ୍ଟିରେ ତାହା କରେ ମୁଁ ଦର୍ଶନ
ସ୍ଥୂଳ ଦୃଷ୍ଟିରେ ସେ ସବୁ ଦେଖିବା କଠିନ ।
କମଳକୁ ସୂର୍ଯ୍ୟ ଯଥା କରେ ଉଲ୍ଲସିତ
ବିବେକ ବଳେ ମୁଁ ତାଙ୍କୁ କଲି ପ୍ରବୋଧିତ ।
ବିବେକ ପ୍ରସାଦେ ଲାଭକରି ତତ୍ତ୍ୱଜ୍ଞାନ
ପରମ ପଦକୁ ଲାଭକଲେ କେତେ ମନ ।
ମୋହବଶ ହୋଇ ପୁଣି କେଉଁ କେଉଁ ମନ
ଘୃଣାକରି ଅନ୍ଧକୂପେ କଲେକ ଗମନ ।
ସେହି ଅନ୍ଧକୂପ ଅଟେ ଗଭୀର ନରକ
ଯାହାକି କଦଳୀବନ ତାହା ସ୍ୱର୍ଗ ଲୋକ ।
ଅନ୍ଧକୂପେ ପଡ଼ି ଯେହୁ ଆସି ନ ପାରଇ
ମହାପାପଗ୍ରସ୍ତ 'ମନ' ତାହାକୁଟି କହି ।
କଦଳୀ ବନେ ଯେ ପଶେ କୂପ ମଧ୍ୟୁ ଉଠି
ପୁଣ୍ୟଫଳ ଭୋକ୍ତା ସ୍ୱର୍ଗ ଭୋଗ ମନ ସେ'ଟି ।
କରଞ୍ଜ ବନରୁ ଫେରିବାକୁ ଯେ ଅକ୍ଷମ
ତାହାକୁ ଜାଣିବ ରାମ ମନୁଷ୍ୟର 'ମନ' ।
ବିବେକ ଦ୍ୱାରା ପ୍ରବୁଦ୍ଧ ହୋଇ କେହି କେହି
ମୁକ୍ତି ଲାଭ କରିଥାନ୍ତି ଆହେ ରଘୁସାଇଁ ।
କଣ୍ଟକମୟ କରଞ୍ଜ ବନ ଏ ସଂସାର
ପୁତ୍ର କଳତ୍ର ଇତ୍ୟାଦି ରସ ଭୋଗ ତାର ।
ସେ ବନେ ଯେସବୁ ମନ ପ୍ରବେଶ କରନ୍ତି
କଣ୍ଟକ ଦଂଶନ ରସ ଅସ୍ୱାଦ କରନ୍ତି ।
ଯେ ସକଳ ବ୍ୟକ୍ତି ମୋତେ ତିରସ୍କାର କଲେ
ଅନାତ୍ମଜ୍ଞ ମନ ତାଙ୍କୁ ଜାଣ ରାମ ଭଲେ ।
ଆତ୍ମଜ୍ଞାନେ ଶ୍ରଦ୍ଧାହୀନ ସେହିମାନେ ଯେଣୁ
ନିଜ ନିଜ ବିବେକକୁ ନିନ୍ଦନ୍ତି ସେ ତେଣୁ ।

"ତୁମଦ୍ୱାରା ଦୃଷ୍ଟ ହୋଇ ହେଲି ମୁଁ ବିନଷ୍ଟ
ତେଣୁ କରି ତୁମେ ମୋର ଶତ୍ରୁପରି ଅଟ ।"
ଏହି କଥା ମୋର ଆଗେ କଲେ ଯେ ବଖାଣ
ମନର 'ବିଳାପ' ରାମ ସେହିମାନେ ଜାଣ ।
ଚିତ୍କାର କରି ଯେ ବ୍ୟକ୍ତି କଲେକ ରୋଦନ
ତାହାକୁ ଜାଣ ହେ ରାମ ଭୋଗ ତ୍ୟାଗୀ ମନ ।
କିଞ୍ଚିତ ବିବେକଶୀଳ ଅଟେ ଯେଉଁମନ
ଭୋଗ ତ୍ୟାଗ ବଳେ ତାର ପରିତାପ ଜନ ।
ଦେଖୁଥିଲା ଯେ ପୁରୁଷ ଅବୟବମାନ
ସେ ସ୍ୱଳ୍ପ ବିବେକଶାଳୀ ମନ ବୋଲି ଜାଣ ।
ପରିବାର ସ୍ନେହବଶେ ସେହୁ ଭାବୁଥିଲା
କିପରି ଛାଡ଼ିବି ଏହି ଗୃହାଶ୍ରମ ଲୀଳା ।
ମୋତେ ଦେଖି ଆନନ୍ଦିତ ଯେହୁ ହୋଇଥିଲା
ବିବେକ ପ୍ରାପ୍ତ ସେ ମନ ସନ୍ତୋଷରେ ଥିଲା ।
ନିଜ ଅବୟବ ଦେଖି ଯେହୁ ହସିଥିଲା
ବିବେକ ପ୍ରାପ୍ତ ସେ ମନ ଆହେ ରଘୁବଳା ।
ଭାବୁଥିଲା ମନେ ମନେ ଏମନ୍ତ ସେ ମନ
ମିଥ୍ୟା ସଙ୍କଳ୍ପ ଜନିତ ଏହି ଅଙ୍ଗମାନ ।
ଆତ୍ମଜ୍ଞାନ ସଦୃଶ ଯେ ଅମୂଲ୍ୟ ରତନ
ତହୁଁ ଆଜି 'ଯା' ବଞ୍ଚିତ କଲେ ଏହି ମାନ ।
ପରମ ପଦେ ବିଶ୍ରାନ୍ତି ଲଭେ ଯେବେ ମନ
ପ୍ରାକ୍ତନ୍ ଦୁଃଖାଧାରକୁ କରି ନିରୀକ୍ଷଣ ।
ଉପହାସ କରୁଥାଏ କରି ହେୟ ଜ୍ଞାନ
ବିବେକୀ ମନର ଏହା ସିନା ନିଦର୍ଶନ ।
ବଳ ପ୍ରୟୋଗେ ଯାହାକୁ ସ୍ତବ୍ଧ କରିଥିଲି
ତା ବିଷୟେ ପ୍ରଶ୍ନମାନ ମୁହିଁ ପଚାରିଲି ।
ମନର ସ୍ତବ୍ଧ ଅବସ୍ଥା ଅଟଇ ସେ ଜାଣ
ଏଥିର ରହସ୍ୟ ବୁଝୁଥିବ ହେ ଶ୍ରୀରାମ ।
ଅଙ୍ଗ ପ୍ରତ୍ୟଙ୍ଗ ବିବର୍ଣ୍ଣ ହେବା କଥା ଯାହା
ପୂର୍ବେ କହିଅଛି ମୁହିଁ ଆହେ ରଘୁନାହା ।
ଚିତ୍ତ ନଥିଲେ ବିଷୟ, ବିଷୟ ବାସନା
ନଷ୍ଟ ହୋଇଯାଏ ତା'ର ମର୍ମ ଏହା ସିନା ।
ଏ ସବୁ ଲୋକଙ୍କ ସସ୍ରବାହୁ ସସ୍ର ଆଖି
ଅନନ୍ତ ଚିତ୍ତ ଆକାର ତହିଁ ଦେଖାଇଛି ।
ନିଜେ ନିଜକୁ ମୁଦଗରେ ପିଟନ୍ତି ଯେମାନେ
କୁଚିନ୍ତାରେ ତାଙ୍କ ମନ ଦହେ ଅନୁକ୍ଷଣେ ।
ସେଥିରୁ ଆତ୍ମାର ସିନା ହୁଅଇ ଦହନ
କିପରି ହେଉଛି ଦେଖ ମୁଦ୍‌ଗର ପିଟନ ।
ନିଜକୁ ପିଟିଣ ଯେହୁ ନିଜେ ପଳାଉଛି
ବାସନା ଆଘାତେ ମନ ଡରିଣ ଧାଇଁଛି ।
ଅଜ୍ଞାନର କି ଅଦ୍ଭୁତ କାର୍ଯ୍ୟ ଦେଖ ରାମ
ଆପେ ପିଟି ହୋଇ ମନ କରେ ପଳାୟନ ।
ସକଳ ମନ ହେ ରାମ ଅଟନ୍ତି ଏମନ୍ତ
ମନହିଁ ଦାରୁଣ ଦୁଃଖ କରୁଛି ବିସ୍ତୃତ ।
ପୁଣି ସେହି ଦୁଃଖେ, ମନ ହୋଇଣ ଦୁଃଖିତ
କାପୁରୁଷ ପରି ଧାଏଁ ହୋଇ ଅସ୍ତ ବ୍ୟସ୍ତ ।
ବାଳକ ସଦୃଶ ଅଟେ ଏ ଚପଳ ମନ
ଭାବୀ ଦୁଃଖ ଦରଶନେ ହୋଇଣ ଅକ୍ଷମ ।
ଯହିଁରେ ଅନର୍ଥ ତା'ର ହେବ ଅନିବାର୍ଯ୍ୟ
ସେହି ଭାବେ କ୍ରୀଡ଼ା କରିବା ହିଁ ତା'ର କାର୍ଯ୍ୟ ।
ମନର ଉଚ୍ଛୃଙ୍ଖଳତା ହେତୁ ଆହେ ରାମ
ଦୁଃଖ ଜାଲ ତା'ର ବଢ଼େ ଗିରିଶୃଙ୍ଗ ସମ ।
ସେହି ମନ ଯେବେ ହୁଏ ଜ୍ଞାନ ବଶୀଭୂତ
ଏକରସରେ ଆସକ୍ତ ହୋଇ ତେତେବେଳେ
ଜୀବନ-ମୁକତି ଅନାୟାସେ ଲାଭ କରେ ।
ପ୍ରଳୟ କାଳର ଯେତେ ଭୀଷଣ ଆଶଙ୍କା
ଦେଇ ନପାରନ୍ତି ତା'ର ମନେ କିଛି ଦକା ।
**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଚିତୋପାଖ୍ୟାନ ନାମ ୭୫ତମ ସର୍ଗଃ ।**

❑

## ୭୬ତମ ସର୍ଗଃ



## ଚିତ୍ତ ଚିକିତ୍ସା ବର୍ଣ୍ଣନ

କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ପରମ ପଦରୁ ଏହି ଚିତ୍ତର ଜନମ ।
ଜଳ ଦୃଷ୍ଟିରେ ତରଙ୍ଗ ସଲୀଳ ବୋଲାଇ
ତରଙ୍ଗ ଦୃଷ୍ଟିରୁ ତାହା ଜଳ କେବେ ନୋହି ।
ବ୍ରହ୍ମ ଦୃଷ୍ଟିରୁ ଏ ଚିତ୍ତ ଅଟେ ବ୍ରହ୍ମମୟ
ଚିତ୍ତ ଦୃଷ୍ଟିରୁ କେବଳ ରହେ ଚିତ୍ତ ମୟ ।

ପ୍ରବୃଦ୍ଧ ମାନଙ୍କ ପକ୍ଷେ ଏହି ମନ ବ୍ରହ୍ମ
ଅପ୍ରବୁଦ୍ଧଙ୍କ ଭାଗ୍ୟରେ ସଂସାର ବନ୍ଧନ ।
ବ୍ରହ୍ମ ସର୍ବ ଶକ୍ତିମାନ ବ୍ରହ୍ମ ଯେ ଅବ୍ୟୟ
ସେହି ବ୍ରହ୍ମ ନିତ୍ୟ, ପୂର୍ଣ୍ଣ ସଦା ଅନାମୟ ।
ଯାହା ନାହିଁ ସେହି ଆତ୍ମ ସ୍ୱରୂପ ବ୍ରହ୍ମରେ
ସେପରି କୌଣସି ବସ୍ତୁନାହିଁ ଏ ବିଶ୍ୱରେ ।
ଷଡ଼ ଐଶ୍ୱର୍ଯ୍ୟ ସମ୍ପର୍ଣ୍ଣ ସର୍ବ ଶକ୍ତିମାନ
ଅଟନ୍ତି ସେ ବ୍ରହ୍ମରାମ ସନାତନ ତମ ।
ଯେତେବେଳେ ଯେଉଁ ଇଚ୍ଛା ହୁଅଇ ବ୍ରହ୍ମର
ତଦ ଅନୁରୂପ ଶକ୍ତି ବିସ୍ତାରେ ତତ୍‌କାଳ ।
ବ୍ରହ୍ମର ଯେ ଚିତ୍ ଶକ୍ତି ଏହି ଜଗତରେ
ଭୂତମୟ ଶରୀରରେ ବିଚରଣ କରେ ।
ପଥରରେ ଜଡ଼ ଶକ୍ତି ଅଗ୍ନିରେ ଦାହିକା
ଗଗନେ ଶୂନ୍ୟ ଶକତି ତାହାରି ହିଁ ଏକା ।
ନାଶ ଶକ୍ତି ତାର ରାମ ବିନାଶ କାଳରେ
ଶୋକ ଶକ୍ତିର ପ୍ରକାଶ ଶୋକାର୍ତ୍ତ ଜନରେ ।
ଆନନ୍ଦ ଶକତି ତା'ର ଆନନ୍ଦ ସମୟେ
ପ୍ରତ୍ୟକ୍ଷୀଭୂତ ହୁଅଇ ଆହେ ରଘୁରାୟେ ।
ସୃଷ୍ଟିକାଳେ ସୃଷ୍ଟି ଶକ୍ତି ହୁଏ ପରିଦୃଷ୍ଟ
ବ୍ରହ୍ମ ଶକ୍ତି ବିବରଣ ବୁଝ ରଘୁ ଇଷ୍ଟ ।
ଶାଖା ପତ୍ର ପୁଷ୍ପ ବୃକ୍ଷ ଯଥା ବୀଜ ମଧ୍ୟେ
ବ୍ରହ୍ମ ମଧ୍ୟେ ଚରାଚର ତଥା ରଘୁନିଧେ ।
ବ୍ରହ୍ମ ମଧ୍ୟେ ଆବରଣ ଶକ୍ତିର ସ୍ଫୁରଣ
ହେଲେ ଜନ୍ମ ହୁଏ ଚିତ୍ତ, ଜଡ଼ିତ ଚେତନ ।
ଜୀବ ଜଗତ ନାମରେ ଚିତ୍ତହିଁ କେବଳ
ଅଭିହିତ ହୋଇଥାଏ ଆହେ ରଘୁବାଳ ।
ଅଭ୍ୟାସ କର ହେ ରାମ ଏହି ଦରଶନ
"ମୁଁ ଜଗତଁ" ରୂପେ ନାଚେ ଯେ ଜୀବ ସର୍ଜନ ।
ଏ ସର୍ବ ଅଟନ୍ତି ସେହି ବ୍ରହ୍ମ ସନାତନ
ଅତ୍ୟୁକ୍ତି ନୁହଇ ରାମ ଏ ମୋର କଥନ ।
ବ୍ରହ୍ମ ସର୍ବଗ୍ରାସୀ ବ୍ରହ୍ମ ଜଗତ ଆକାର
ନିତ୍ୟ ବର୍ତ୍ତମାନ ତା'ର ଏ ମହା ଶରୀର ।
ମନନ ଧର୍ମ ଆଚରି ବ୍ରହ୍ମ ହୁଏ ମନ
ମନନାତ୍ମିକା ଆକୃତି ଧରେ ସେହି ବ୍ରହ୍ମ ।
ଏ ସବୁ ସେ ବ୍ରାହ୍ମୀଶକ୍ତି ବ୍ୟତୀତ ହେ ରାମ
ଅନ୍ୟ କିଛି ନୁହେଁ ହେତୁ ରଖ ନିଜ ମନ ।

ବାସନା, କାମ, କର୍ମାଦି ଯେ ସକଳ ଶକ୍ତି
ଜୀବ ଓ ବ୍ରହ୍ମ, ଭେଦର କାରଣ ବୋଲାନ୍ତି ।
ସେ ସବୁ ଅଟନ୍ତି ସେହି ସର୍ବ ଶକ୍ତିମାନ
ବ୍ରହ୍ମର ପ୍ରକାଶ ବୁଝ ହେ ରଘୁନନ୍ଦନ ।
ଯାହା କିଛି ଅଛି ରାମ ଏ ମନ ମଧ୍ୟରେ
ସେ ସବୁ ବ୍ରହ୍ମପ୍ରକାଶ, ରୂପ ରଘୁବୀରେ ।
ବସନ୍ତ ଋତୁର ଧର୍ମ ବସନ୍ତ ଆଗମେ
ଲତା ବୃକ୍ଷାଦିରେ ହୁଏ ପ୍ରକାଶ ଯେସନେ ।
ମନର ଧର୍ମ ସ୍ୱରୂପ ଏ ବ୍ରାହ୍ମୀ ଶକତି
ସେହି ରୂପେ ପ୍ରକାଶିତ ହୁଏ ରଘୁପତି ।
ଯଥା କାଳେ, ଯଥା ସ୍ଥାନେ ଧାନ ବୁଣିବାରେ
ମୃତ୍ତିକାର ଧାନ୍ୟ ଶକ୍ତି ଧାନରୂପ ଧରେ ।
ଏ ସକଳ ବ୍ରାହ୍ମୀ ଶକ୍ତି ସେହିପରି ରାମ
ଯଥା କାଳେ, ଯଥାସ୍ଥାନେ ହୁଏ ଉତପନ୍ନ ।
ଏକ କାଳେ ଏକକ୍ଷେତ୍ରେ ସର୍ବ ବ୍ରହ୍ମ ଶକ୍ତି
ପ୍ରକାଶ ପାଇ ନପାରେ ଏହାହିଁ ନିୟତି ।
ଯାହାକିଛି ଦେଖ ରାମ, ସର୍ବ ପ୍ରତିଭାସ
ବସ୍ତୁଗତ ହୋଇ କିଛି ନୁହଇ ପ୍ରକାଶ ।
ଏ ସବୁକୁ ବ୍ରହ୍ମ ବୋଲି ଏ ଦୃଢ଼ ବିଶ୍ୱାସ
ରଖି ଚଳୁଥିବ ରାମ ଯେ ଯାଏ ନିଃଶ୍ୱାସ ।
ଜଳ ତରଙ୍ଗ ଆକାରେ ଯେସନ ସାଗରେ
ଆର୍ବିଭୂତ ହେଉଥାଏ ଅଣ ଅବସରେ ।
ତେସନ ସେ ପୂର୍ଣ୍ଣବ୍ରହ୍ମ ଏ ବିଶ୍ୱସଂସାରେ
ଆବିର୍ଭୂତ ହେଉଛନ୍ତି ନିଶି ଦିବସରେ ।
ତରଙ୍ଗାୟିତ ସାଗରେ ଯଥା ଜଳ ଭିନ୍ନ
ଅନ୍ୟ କିଛି କଳପନା ଆସେ ନାହିଁ ମନ ।
ନାମ ରୂପ କର୍ମାକାର ବ୍ରହ୍ମ ସମୁଦ୍ରରେ
ଅନ୍ୟ କିଛି କଳପନା ହୋଇ ତ ନପାରେ ।
ସେ ବ୍ରହ୍ମ ସାଗରେ ଯେଉଁ ତରଙ୍ଗ ଉଠିଣ
ଅବସ୍ଥାନ କରି ପୁଣି ହୁଅଇ ବିଲୀନ ।
ବ୍ରହ୍ମରେ ସେ ସବୁ ଖାଲି ବ୍ରହ୍ମ ବିବର୍ତ୍ତନ
ହେଉଛି ବୋଲି ଜାଣ ହେ କୌଶଲ୍ୟା ନନ୍ଦନ ।
ତେଣୁ ଆତ୍ମା କେଉଁଠାରେ ବଦ୍ଧ ବା ମୁକତ
ବୁଝିବାକୁ ଏହା ମୁହିଁ ଅଟେ ଅସମର୍ଥ ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ,**
**ଚିତ୍ତ ଚିକିତ୍ସା ବର୍ଣ୍ଣନେ**
**ନାମ ୭୬ ତମ ସର୍ଗଃ ।**



# ୭୭ତମ ସର୍ଗଃ

## ବାଳକାଖ୍ୟାୟିକା ବର୍ଣ୍ଣନ

ମନଦୃଢ଼ଭାବେ ଯାହା ଧାରଣା କରଇ
ତାହା ତ ତକ୍ଷଣେ ଆର୍ବିଭୂତ ହୋଇ ଥାଇ ।
ବନ୍ଧନ ନଥାଏ ବୋଲି କହିବା କେସନ
ବୁଝିବାକୁ ଅକ୍ଷମ ମୁଁ ଆହେ ତପୀରାଣ ।

### ବଶିଷ୍ଠ ଉବାଚ

ବନ୍ଧନ, ମୁକ୍ତି, ଅଜ୍ଞାନୀ ଲୋକଙ୍କୁ ପ୍ରତୀତ
ଆତ୍ମଜ୍ଞାନ ଉଦୟରେ ଏ ଦୁହେଁ ଅସତ ।
ପ୍ରଥମରେ ମନ ରାମ ତାପରେ ବନ୍ଧନ
ତତପରେ ଆସିଯାଏ ମୁକତିର ଜ୍ଞାନ ।
ତା'ପରେ ବିଶ୍ୱ ପ୍ରପଞ୍ଚ ବାଳକ ଆଗରେ
କୁହାଯାଉଥିବା ମିଥ୍ୟା ଗଳ୍ପ ପରକାରେ ।
କ୍ରମେ କମେ ବନ୍ଧମୂଳ ଏ ସକଳ ଭବ
ହୋଇ ରହିଯାଏ ଜାଣ ହେ ରଘୁପୁଙ୍ଗବ ।
ତତ୍ତ୍ୱ ଦୃଷ୍ଟିରେ ଜାଣିବ ଏହାର ଅସ୍ତିତ୍ୱ
କେବେ ହେଲେ ତିଷ୍ଠି ନପାରିବ ରଘୁନାଥ ।
ଶ୍ରୀରାମ ବୋଇଲେ ଆହେ ମୁନିବର ଶୁଣ
ବାଳକ ଆଗରେ ଯେଉଁ ମିଥ୍ୟା ବିବରଣ ।
ଆପଣ ଯେ କହିଗଲେ ତାହାର ତାତ୍ପର୍ଯ୍ୟ
ବୁଝାଇ କହିବା ହେଉ ମୋତେ ଆହେ ଆର୍ଯ୍ୟ ।
କହନ୍ତି ବଶିଷ୍ଠ ରାମ ଏବେ ତାହା ଶୁଣ
ଧାଈ ମା ଯା' କହିଥାଏ ବାଳକ ଅଗ୍ରେଣ ।
ଚିତ୍ତ ବିନୋଦନ ପାଇଁ ନାନା ମିଥ୍ୟାଗଳ୍ପ
ରଚନା କରି କହଇ ତାହାର ସମୀପ ।
ଗୋଟିଏ ରାଜାର ଥିଲେ ତିନୋଟି ନନ୍ଦନ
ଦୁଇ ଜଣ ତହୁଁ ହୋଇ ନଥିଲେ ଜନମ ।
ଅନ୍ୟ ଏକ କେଉଁ ଗର୍ଭେ ପାଇ ନାହିଁ ସ୍ଥାନ
ପୁତ୍ରମାନେ ବୁଲି ବାହାରିଲେ ଏକ ଦିନ ।
ଯାଉ ଯାଉ ତିନିଗୋଟି ନଦୀ ସେ ଦେଖିଲେ
କଳ କଳ ରବ କରି ବହି ଯାଉଥିଲେ ।
ଗୋଟିଏ ଶୁଖି ପଡ଼ିଛି ବାଲି ଉଡୁଥାଇ
ଅନ୍ୟ ଦୁଇଟିରେ ଟୋପେ ପାଣ ନ ଦିଶଇ ।
ସେ ତିନି ନଦୀରେ ତିନି ଭାଇ କଲେ ସ୍ନାନ
ତୃଷା ନିବାରିଲେ କରି ତହିଁ ଜଳପାନ ।
କ୍ଷୀରତୁଲ୍ୟ ଜଳ ତାର ମନ ମୁଗ୍ଧକର
ଆତ୍ମତୃପ୍ତି ଲାଭ କଲେ ସେ ତିନି ସୋଦର ।
ଚିରକାଳ ପର୍ଯ୍ୟନ୍ତ ହିଁ ଜଳକ୍ରୀଡ଼ା କଲେ
ଆକାଶ ଗଙ୍ଗାରେ ବ୍ରହ୍ମା ବିଷ୍ଣୁ ରୁଦ୍ର ତୁଲେ ।
ଦିବସ ଅନ୍ତ ହୁଅନ୍ତେ ଯାଆନ୍ତି ବାହୁଡ଼ି
ଭିବିଷ୍ୟ ନଗର ପାଶେ ଗଲେ ସେ ହାବୁଡ଼ି ।
ଉଡ଼ଇ ତାରକାମାନ ଅଟ୍ଟାଳିକା ଶିରେ
ମଣି ଖଚିତ ସୁମେରୁ ମାନ ଉଡୁଥିଲେ ।
ହୀରା ଲୀଳା ମାଣିକରେ ଜଡ଼ିତ ମନ୍ଦିର
ମନ ନୟନ ହରିଲା ତିନି ଭାଇଙ୍କର ।
ନିରାକାର ମନ୍ଦିରର ଧବଳ ପାବଚ୍ଛ
ସ୍ଫଟିକ ମାଳ-ଚହଟ ପଡ଼ିଯିବ ତୁଚ୍ଛ ।
ସୁନ୍ଦରୀ ଯୁବତୀଗଣ ଉଭାଛନ୍ତି ତହିଁ
ସିନ୍ଦୁର ବିନ୍ଦୁ ଧବଳ କେଶ ଚହଟଇ ।
ରନ୍ଧନ ଯୋଗାଣ ମାନ କଲେ ସେ ବିଧାନ
ବ୍ରାହ୍ମଣମାନଙ୍କୁ ଦେବେ ସୁଭୁରି ଭୋଜନ ।
ତିନୋଟି ସୁବର୍ଣ୍ଣ ହଣ୍ଡା ମଗାଇ ଆଣିଲେ
ଦୁଇଟିର କାରୀଗର ଜନମି ନ ଥିଲେ ।
ତୃତୀୟଟି ଥିଲା ସୁନା ଚୁନା ଗଦାପରି
ଷୋଳସେର ଚାଉଳ ଯେ ତହିଁ ଦେଲେ ଭରି ।
ବିଦେହ ବିଧାତା ପୁଣି ମୁଖହୀନ ଦ୍ୱିଜେ
ସାଦରେ ଭୋଜନ ପାଇଁ କଲେ ଆସେ ବିଜେ ।
ଏକ ଶତ ଦ୍ୱିଜ ସହ ସେହି ତିନିଭାଇ
ଭୋଜନ କରି ଆସ୍ୱସ୍ତ ଭରିଲେକ ତହିଁ ।
ଆଜିଯାଏ ତିନିଭାଇ ଅଛନ୍ତି ଜୀବିତ
ଆନନ୍ଦରେ କାଳ କରୁଛନ୍ତି ଅତିପ୍ରୀତ ।
ଏହି ରମଣୀୟ କଥା ମନେ ରଖିଥିବୁ
ତେବେ ଯାଇ ସୁପଣ୍ଡିତ ବୋଲି ବୋଲାଇବୁ ।
ଧାଈ ମା'ର ଏହି କଥା ବାଳକ ଶୁଣିଲା
ଶତ ଶତ ଧନ୍ୟବାଦ ତାକୁ ଅରପିଲା ।
ଧାଈ ମା'ର ଏ ଗପଟି ଯଦିଓ ଅଳୀକ
ସଙ୍ଗତ ଓ ସତ୍ୟ ବୋଲି ମଣିଲା ବାଳକ ।
ସେହି ରୂପେ ଏ ସଂସାର ଅଳୀକ ହେଲେ ହେଁ
ସଙ୍କଳ୍ପ ବଳରେ ସତ୍ୟ ବୋଲି ଜଣାଯାଏ ।

ବାସ୍ତବିକ୍ ଏ ସର୍ତ୍ତର ସଙ୍କଳପ ବିନା
ଅନ୍ୟ କିଛି ନାହିଁ ଭବେ ରାମ ମହାମନା ।
ଏହି ସଙ୍କଳ୍ପର ମୂଳ ଉତ୍ପାଟନ କର
ନିର୍ବିକଳ୍ପ ଜ୍ଞାନ ପାଇଁ ଶାନ୍ତିରେ ବିଚର ।
ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି
**ପ୍ରକରଣେ, ବାଳକ ଆଖ୍ୟାୟନ ବର୍ଣ୍ଣନେ,**
**ନାମ ୭୭ ତମ ସର୍ଗଃ ।**



## ୭୮ତମ ସର୍ଗଃ

## ମନ ନିର୍ବାଣ ଉପଦେଶ

ଶ୍ରୀରାମ ବୋଲଲେ ଆହେ ବ୍ରହ୍ମଙ୍କ ପ୍ରଧାନ
ସଙ୍କଳ୍ପର କର୍ତ୍ତା କିଏ କରିବା ବର୍ଣ୍ଣନ ।
କେଉଁ ମାର୍ଗ ଆଚରିବ ତା' କ୍ଷୟ ସାଧନେ
ଅନୁଗ୍ରହ କରି ତାହା କହ ମହାମୁନେ ।
ବଶିଷ୍ଠ ବୋଇଲେ ରାମ ବାଳକ ଯେପରି
ମିଥ୍ୟା ଭୂତ ଯୋନିମାନ କଳପନା କରି ।
ଅବିଦ୍ୟା ବଶତଃ ଆତ୍ମା ଉପହିତ ହୋଇ
ପ୍ରାକ୍ତନ ଜୀବଭାବକୁ ସ୍ମରଣ କରଇ ।
ଅହଙ୍କାର ଆସିଯାଏ ସେ ଜୀବ ମନରେ
ଅଳୀକ ବସ୍ତୁ, ଏ ଅହଂ, ଜାଣ ରଘୁବୀରେ ।
ଏକମାତ୍ର ବ୍ରହ୍ମ ସତ୍ୟ ଅନ୍ୟ ସବୁ ମିଥ୍ୟା
ପରମାତ୍ମାଠାରେ ନାହିଁ ଅହଂ ଭାବ ସତ୍ତା ।
ଅଯଥାର୍ଥ ଦର୍ଶୀ ମନେ ଅହଂଭାବ ଥାଏ
ଅହଂଭାବ ନାନା ଉପଦ୍ରବ ଉପୁଜାଏ
ନିଜକୁ ଆଶ୍ରୟ କରି ଜଳ ଆବର୍ତ୍ତିତ ।
ମନକୁ ମନା ଆସିଣ ଜନ୍ମାଏ ଜଗତ
ଜଳକୁ ଆଶ୍ରା ନକଲେ ଭଉଁରୀ ବା କାହିଁ ?
ମନକୁ ଆଶ୍ରା ନକଲେ ଜଗତ ନ ଥାଇ
ଅସତ୍ୟ ଦୃଷ୍ଟିକୁ ପରିହାର କରି ରାମ
ସତ୍ୟ ସମ୍ୟକ୍ ଦୃଷ୍ଟିକୁ କର ହେ ବରଣ ।
ଅସତ୍ୟ ବିଷୟେ ଚିନ୍ତା ଛାଡ଼ ହେ ଶ୍ରୀରାମ
ବିବେକ ସହ କରହେ ସତ୍ୟ ଅନ୍ୱେଷଣ ।
ହେ ରାମ ଯେ ନୁହେଁ କେଭେଁ ବନ୍ଧନ ଅଧୀନ
ତା' ବନ୍ଧନ ଚିନ୍ତି କିମ୍ବା ହୁଅ ଶୋକାଛନ୍ନ ।

ଅନନ୍ତ ଅସୀମ ଅଟେ ଯେଉଁ ଆତ୍ମତତ୍ତ୍ୱ
ତାକୁ ବାନ୍ଧିବା ପାଇଁକି କେ ହେବ ସମର୍ଥ ?
ବ୍ରହ୍ମତତ୍ତ୍ୱେ ଏକ, ବହୁ ଏହି ଦ୍ୱିଧା ଭାବ
କଳ୍ପନା ବଳରେ ତାହା ପ୍ରକାଶ ରାଘବ ।
ଅବସାନ ହୋଇ ଯାନ୍ତେ ସେହି କଳ୍ପନାର
ସର୍ବମୟ ବ୍ରହ୍ମତତ୍ତ୍ୱ ରହଇ କେବଳ ।
ତେତେବେଳେ କିଏ ବଦ୍ଧ କିଏ ବା ମୁକତ
ଏ ବିଷୟ ଘେନି ଆତ୍ମା ନୋହିଥାଏ ଆର୍ତ୍ତ ।
ଆତ୍ମା ତ ହୁଅଇ ନାହିଁ ଯଥାର୍ଥରେ ଆର୍ତ୍ତ
ଦେହ ଆର୍ତ୍ତ ହେଲେ ଆତ୍ମା ଆର୍ତ୍ତ ପ୍ରତିଭାତ ।
ବସ୍ତୁତଃ ଆତ୍ମାରେ ନାହିଁ କୌଣସି ଆର୍ତ୍ତିତ
ଶରୀର ନାଶେ ଆତ୍ମାର ନୁହେଁ କିଛି କ୍ଷତି ।
କୁମ୍ଭାରର ଭାତି ଯେତେବେଳେ ଜଳିଯାଏ
ତାହା ମଧ୍ୟେ ଥିବା ବାୟୁ ଦଗଧ କି ହୁଏ ?
ଥାଉ ବା ନ ଥାଉ ଲୋକ ଆମ ଏ ଶରୀର
କିଛି କ୍ଷତି ହୁଏ ନାହିଁ ଆମ ଏ ଆତ୍ମାର ।
ଆକାଶ ବିହାରି ମଧୁକର ଆମ୍ଭେମାନେ
ଏ ଦେଶ ପଦ୍ମ ସଦୃଶ ବୁଝ ରଘୁନାନେ ।
ସୁଖ ଦୁଃଖର ତୁଷାରପାତ ହେବ ଯେବେ
ନଭଦେଶେ ଆମ୍ଭେମାନେ ଉଡ଼ିଯିବା ତେବେ ।
ଏକାନ୍ତ ପୃଥକ ଶରୀରରୁ ଯେଣୁ ଆମ୍ଭେ
ଶରୀର ବିନାଶେ ଆତ୍ମ କ୍ଷତି ନାହିଁ ତେବେ ।
ବାୟୁ-ମେଘ ପଦ୍ମ-ଭୃଙ୍ଗ ସମ୍ବନ୍ଧ ଯେସନ
ଶରୀର ସହ ଆତ୍ମାର ସମ୍ପର୍କ ତେସନ ।
ମନ ହିଁ ଜଗତ ପୁଣି ମନ ହିଁ ଶରୀର
ମନ ପ୍ରଥମଜ ଶକ୍ତି ଅଟେ ସବୁଙ୍କର ।
ମନର ବିନାଶେ କେଭେଁ ଆତ୍ମ ଚଇତନ
ବିନାଶ ନୁହଁଇ ଆହେ କୌଶଲ୍ୟା ନନ୍ଦନ ।
ଜ୍ଞାନାଗ୍ନି ବ୍ୟତୀତ ସଂସରଣଶୀଳ ମନ
ଯେହେତୁ ନୁହଁଇ କେଭେ ତା'ର ବିନାଶନ ।
ଆତ୍ମାର ବିନାଶ ହେବା ସମ୍ଭବ କେସନ
ଏ ସବୁ ତତ୍ତ୍ୱ ବୁଝିବା କଠିନୁ କଠିନ !
ଘଟ ମଧ୍ୟେ ଆକାଶର ଯଥା ଅବସ୍ଥାନ
ଆତ୍ମାର ସ୍ଥିତି ତାଦୃଶ ଶରୀର ମଧ୍ୟେଣ ।
ଭଙ୍ଗାଘଟେ'ତା ମଧ୍ୟସ୍ଥ ଆକାଶ ଯେସନ
ମହାକାଶ ମଧ୍ୟେ ସଙ୍ଗେ ସଙ୍ଗେ ହୁଏ ଲୀନ ।

ବିନାଶ ଲଭଇ ଯେତେବେଳେ ଏ ଶରୀର
ପରମାତ୍ମା ମଧ୍ୟେ ଆତ୍ମା ସଂସ୍ଥିତ ତତ୍କାଳ ।
ଏ ମନ ଶରୀର କରି ଦେଶ, କାଳ, ତ୍ୟକ୍ତ
ମୃତ୍ୟୁ ବସନରେ ପୁନଃ ପୁନଃ ଆଚ୍ଛାଦିତ ।
କିଛି କି କାରଣ ଅଛି ତା'ର ବିନାଶରେ
ଦୁଃଖ ପ୍ରକାଶ ପାଇଁକି ଆହେ ରଘୁବୀରେ ।
ଆତ୍ମାରବସ୍ଥାନ ରାମ ଦେଶକାଳ ଘେନି
ମୃତ୍ୟୁ ନାମେ ଅଭିହିତ ଏ ମର ଅବନୀ ।
ଜାଣି ପାରିଲେ ମୃତ୍ୟୁର ଏବଂ ବିଧରୂପ
ମୂର୍ଖ ବ୍ୟକ୍ତିର ମରଣେ ନଥାଏ ସନ୍ତାପ ।
କେହି କେବେ ଦେଖି ନାହିଁ ଆତ୍ମାର ମରଣ
(ତାର) ଦେହ ଛାଡ଼ି ଯିବା ଦେଖିଥାନ୍ତି ସର୍ବଜନ ।
ମିଥ୍ୟା, ଅହଂଭାବ ତେଜ ହେ ରଘୁନନ୍ଦନ
ପକ୍ଷୀ ଶାବକ ତେଜଇ ଅଣ୍ଡକୁ ଯେସନ
ଅହଂଭାବ ରୂପ ଏହି ବାସନା ହିଁ ଜାଣ ।
ମନର ଶକତି ଅଟେ ଦଶରଥ ନାନ ।
ଅଭିଳକ୍ଷିତ ଅଥବା ଅନଭିଳକ୍ଷିତ
ବିଷୟରେ ରାଗ-ଦ୍ୱେଷ କରିଥାଏ ଜାତ ।
ମିଥ୍ୟା ଭ୍ରାନ୍ତି ସ୍ୱରୂପିଣୀ ଏହି ଯେ ବାସନା
ସ୍ୱପ୍ନ ସ୍ୱରୂପ ଜଗତ ଜାତ କରେ ସିନା ।
ଦୂରତିକ୍ରମ ଅବିଦ୍ୟା ବାସନାକୁ ମଣ
ଦୁଃଖର ପାଇଁକି ରାମ ଏହାର ବର୍ଦ୍ଧନ ।
ଯେତେକାଳ ଏ ଅବିଦ୍ୟା ଅବିଜ୍ଞାତ ଥାଏ
ତେତେକାଳ ମିଥ୍ୟାଭାବ ଜଗତ ବଢ଼ାଏ ।
କୁହୁଡ଼ିରେ ମ୍ଳାନ ଯଥା ନିର୍ମଳ ଗଗନ
ବାସନା ପ୍ରଭାବେ ଜୀବହୁଏ ମୋହାଚ୍ଛନ୍ନ ।
ତେଣୁ ମ୍ଳାନ-ନଭ ପରି ଦିଶେ ସେ ମଳିନ
'ମୋହ'ର ପ୍ରଭାବ କେଡ଼େ ବୁଝ ଆହେ ରାମ ।
ବାସନା ରୂପିଣୀ ମନ ଶକତି ବଶତଃ
ସୁଦୀର୍ଘ-ସ୍ୱପ୍ନ ସ୍ୱରୂପ ଏ ବିଶ୍ୱ ଅସତ ।
ଏ ଅସତ୍ - ବିଶ୍ୱ ସତ ଆକାରେ ପ୍ରତୀତ
କି ଖେଳ ଖେଳୁଛି ବ୍ରହ୍ମ ଆହେ ରଘୁନାଥ ।

ଭାବନାହିଁ ଏକମାତ୍ର ବାସନାର ରୂପ
ଭାବନାହିଁ ବାସନାର କରତା ସ୍ୱରୂପ ।
ରୌଦ୍ରେ ହିମପରି ବାସନକୁ ହେ ଶ୍ରୀରାମ
ବିଚାର ବଳରେ କର ତା'ର ବିନାଶନ ।
ହିମ ନାଶ ପାଇଁ ସୂର୍ଯ୍ୟ ଉଦିତ ହୋଇଣ
ଅଭିଷ୍ଟ କାର୍ଯ୍ୟ ତାଙ୍କର କରନ୍ତି ସାଧନ ।
ମନ ବିକାଶ ପାଇଁକି ବ୍ରତ ଯେ ଧରିବ
ମନ ନିଜେ ତାର ଇଚ୍ଛା ପୂରଣ କରିବ ।
ବିବେକ ଦ୍ୱାରା ସଂସ୍କୃତ ହୋଇଲେ ଏ ମନ
ସଙ୍କଳ୍ପ ବିକଳ୍ପ ଭାବ କରେ ବିରଜନ ।
ଆତ୍ମ ସ୍ୱରୂପରେ ସେହୁ ପାଏ ଦରଶନ
ଧନ୍ୟ ସେ ଜନ, ଯେ ଜିଣେ ଏ ମନ ରାଜନ ।
ମନର ବିନାଶେ ଦୁଃଖ ସମୂଳେ ବିନାଶ
ମହାନ୍ ଅଭ୍ୟୁଦୟ ତାର ଯେ ଜୀବ ବିଶେଷ ।
ଏ ସଂସାର ଜାଣ ରାମ ନିବିଡ଼ ଅରଣ୍ୟ
ସୁଖ ଦୁଃଖ ରୂପ ବୃକ୍ଷରାଜିରେ ସେ ପୂର୍ଣ୍ଣ ।
ମୃତ୍ୟୁରୂପ ସର୍ପ ସମାକୁଳ ସେ ଅରଣ୍ୟ
ମହା ବିପଦ କାରଣ ସୁବିବେକ ଶୂନ୍ୟ ।
ଏକମାତ୍ର ପ୍ରଭୁ ତହିଁ ଅଟଇ ଏ ମନ
ମନ ବିନାଶାୟ ରାମ ହୁଅ ଯତ୍ନବାନ ।
ଶ୍ରୀରାମଙ୍କୁ ଉପଦେଶ ଦେଉଛନ୍ତି ମୁନି
ଅସ୍ତାଚଳ ଗମିଲେକ ସୂର୍ଯ୍ୟ ସେହିକ୍ଷଣି ।
ନିଜ ନିଜ ସାୟଂକୃତ୍ୟ କରିବାର ପାଇଁ
ସଦସ୍ୟ ଗଣ ମିଳିଲେ ସ୍ୱ ଆଶ୍ରମେ ଯାଇ ।
ଉଦୟ ହୁଅନ୍ତେ ପ୍ରାଚୀ ନଭେ ଦିନମଣି
ସଦସ୍ୟ ଗଣ ପ୍ରବେଶ ସଭାସ୍ଥଳେ ପୁଣି ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ମନ-ନିର୍ବାଣ ଉପଦେଶ ବର୍ଣ୍ଣନେ,**
**ନାମ ୭୮ତମ ସର୍ଗଃ ।**



## ୭୯ତମ ସର୍ଗଃ

## ଚିତ୍ତ ମହାତ୍ମ୍ୟ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ଏବେ ହେ ରାଘବ
ବ୍ରହ୍ମଶକ୍ତି ମନର ଯେ ଏସନ ପ୍ରଭାବ ।
ପରକୁ ଆପଣା କରେ ଆପଣାକୁ ପର
ହ୍ରସ୍ୱକୁ ଦୀର୍ଘ କରାଇ ସେ ପ୍ରବୀଣବର ।
ପୁଣି ଦୀର୍ଘକୁ ହ୍ରସ୍ୱ ସେ କରି ଯେ ପାରଇ
ଏମନ୍ତ ପ୍ରଭାବଶାଳୀ ସେ ମନ ଅଟଇ ।
ଅତି ସୂକ୍ଷ୍ମ ରେଣୁକୁ ସେ ଭାବନା ବଳରେ
ପର୍ବତ ଆକାର ଦେଇ ପାରଇ ସତ୍ୱରେ ।
ସମୁଦ୍ରେ ତରଙ୍ଗମାଳା ଉଠଇ ଯେସନ
ବ୍ରହ୍ମରୁ ମନ ଉତ୍ଥିତ ହୁଅଇ ତେସନ ।
ପରମାତ୍ମାରୁ ଜନମି ମନ ବଳବାନ
ନିମିଷକେ ଜଗତର କରଇ ସର୍ଜନ ।
ଆଉ ମଧ୍ୟ ନିମିଷେକ ମଧ୍ୟେ ତା ସଂହାରେ
ମନର ଅଦ୍ଭୁତ ଶକ୍ତି ହେଜ ରଘୁବୀରେ ।
ସ୍ଥାବର ଜଙ୍ଗମାତ୍ମକ ଏହି ଯେ ଜଗତ
ଏକମାତ୍ର ମନରୁ ତା ହୁଏ ସମୁଦ୍ଭୁତ ।
ବାଳକ ଯେପରି ନିଜ ଇଚ୍ଛା ଅନୁସାରେ
ମୃତ୍ତିକା ପୁତ୍ତଳିମାନ ଗଢ଼ି ଥୋଇ ପାରେ ।
ମନ ତେମନ ନିଜର ଅନ୍ତର୍ଭାବ ନେଇ
ଜଗତମାନ ସର୍ଜନା କରୁଣ ଅଛଇ ।
କାଳଯଥା ଋତୁ ଘେନି ବୃକ୍ଷ ଲତାବର
ରୂପଭେଦ ସମ୍ପାଦନ କରେ ନିରନ୍ତର,
ମନ ମଧ୍ୟ ସେହିପରି ପଦାର୍ଥ ଗଣର
ଭିନ୍ନ ଭିନ୍ନ ରୂପଦିଏ ଇଚ୍ଛା ଅନୁସାର ।
ସ୍ୱପ୍ନ ଓ ସଂକଳ୍ପ ଆଦି ମନଲୀଳା ଘେନି
ଶତ ଯୋଜନ ବ୍ୟାପଇ ଗୋଷ୍ପଦ ଧରଣୀ ।
କଳ୍ପକୁ କରଇ କ୍ଷଣ କ୍ଷଣକୁ କଳପ
ଏପରି ଅଟଇ ରାମ ମନର ପ୍ରତାପ ।
ତେଣୁକରି ଦେଶ କାଳ ମନର ଅଧୀନ
ମନକୁ କଳିବ କିଏ ମନ ଅକଳନ ।
ଯଦି କହ ମନ ସବୁ କରି ଯେ ପାରଇ
ସେ ଶକତି ଆମ ମନେ କିମ୍ପା ନ ଦିଶଇ ?
ଗୁଣ ଭେଦ ମାନନେଇ ମାନସୀ ଶକ୍ତିର
ତାରତମ୍ୟ ଘଟିଥାଏ ଜାଣ ରଘୁବୀର ।
ରଜଗୁଣ ଉତ୍କର୍ଷରେ ମାନସୀ ଶକ୍ତିର
ତୀବ୍ରତା ବଢ଼ି ଚଳଇ ଆହେ ରଘୁବୀର ।
ତମଗୁଣ ଉତ୍କର୍ଷରେ ତାହା ମାନ୍ଦାଧରେ
ତହିଁର ପ୍ରଭାବ ମାନ ଶୁଣ ରଘୁବୀରେ ।
ଖାଦ୍ୟପେୟର ଯେ ଉପଚୟ ଅପଚୟ
ସୃଷ୍ଟ୍ୟାନୁକୂଳ ତପସ୍ୟା ତାରତମ୍ୟଚୟ,
ସକଳ ମନର ସର୍ବସୃଷ୍ଟିର ଶକତି
ବିକଶି ନ ପାରେ ଶୁଣ ଆହେ ରଘୁପତି ।
ତେଣୁ ମନ ଯେ ସରବ ଶକତି ସମ୍ପନ୍ନ
ନୁହଁଇ କହିବା ଅସଙ୍ଗତ ରଘୁରାଣ ।
ବୃକ୍ଷରେ ଅସଂଖ୍ୟ ତାଳପତ୍ର ଥିଲା ପରି
ଅସଂଖ୍ୟ ସୃଷ୍ଟି ସର୍ଜନା ମନରେ ସଞ୍ଚରି ।
ଦେଶକାଳ ପାତ୍ର ଆଦି ଯାହା କିଛି ଦେଖ
ମନରୁ ଉପୁଜିଛନ୍ତି ହେ ରଘୁ ନାୟକ
ଉତାପ ହିଁ ବହ୍ନି ପୁଣି ଜଳହିଁ ସାଗର
ତଥା ଅଭିନ୍ନ ଅଟଇ ମନ ଓ ସଂସାର ।
ସ୍ୱର୍ଣ୍ଣ ଅଳଙ୍କାର ସ୍ୱର୍ଣ୍ଣକାର ପ୍ରତିସୁନା
ତତ୍ତ୍ୱଦର୍ଶୀ ନେତ୍ରେ ଭବ, ଚିତ୍ତରୂପ ସିନା ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ଚିତ୍ତମହାତ୍ମ୍ୟ ବର୍ଣ୍ଣନେ
ନାମ ୭୯ତମ ସର୍ଗଃ**



## ୮୦ତମ ସର୍ଗଃ

## ଇନ୍ଦ୍ରଜାଲ୍ ଉପାଖ୍ୟାନ

କହନ୍ତି ବଶିଷ୍ଠ ରାମ ମନ ଦେଇ ଶୁଣ
ଗୋଟିଏ ପ୍ରାଚୀନ ଗପ କରୁଛି ବର୍ଣ୍ଣନ ।
ଏ ଜଗତ ଅଟେ ରାମ ଇନ୍ଦ୍ରଜାଲ ପରି
ମନର ଅଧୀନ ହୋଇ ପ୍ରକାଶେ ଯେପରି ।
ଏହି ପୃଥିବୀର ରାମ କୌଣସି ପ୍ରାନ୍ତରେ
ସୁବିଶାଳ ଜନପଦ ତହିଁରେ ବିସ୍ତାରେ ।
ଉତ୍ତରା ପାଣ୍ଡବ ନାମ ଅଟେ ସେ ଦେଶର
ପ୍ରାକୃତିକ ଦୃଶ୍ୟ ରାଜି ଅତି ମନୋହର ।
ହରିଶ୍ଚନ୍ଦ୍ର ରାଜାଙ୍କର ଅଟେ ବଂଶଧର
ଲବଣ ବୋଲିଣ ନାମ ବିଖ୍ୟାତ ସଂସାର ।
ପରମ ଧାର୍ମିକ ପ୍ରଜାପ୍ରିୟ ନରପତି
ସେହି ବିଖ୍ୟାତ ରାଜ୍ୟର ଥିଲେ ଅଧିପତି ।

ପ୍ରବଳ ପ୍ରତାପୀ କ୍ଷତ୍ରୀବର ଶତ୍ରୁଗଣ
ତାର ନାମ ଶୁଣି ତାଙ୍କ ହୃଦୟ କମ୍ପନ ।
ଉଦାର ଗୁଣରେ ସରିସମ ତାଙ୍କପରି
କେହିତ ନ ଥିଲେ ରାମ ଏହି ବସୁନ୍ଧରୀ ।
ଅଦ୍ଭୁତ କର୍ମକୁଶଳୀ ସେହି ନରପତି
ସଦାଚାର ଗୁଣ ତାଙ୍କ ସାଧୁଏ ଗାଆନ୍ତି ।
ଦିନେ ରାଜା ସିଂହାସନ ପରେ ବସିଥିଲେ
ଆଲଟ ଚାମର ଭୃତ୍ୟମାନେ ଢାଳୁଥିଲେ ।
ଅମାତ୍ୟ ସାମନ୍ତଗଣ ପାଶେ ବିରାଜନ୍ତି
ପାତ୍ରମାନେ ରାଜାଙ୍କୁ ଚାହିଁ ବସିଛନ୍ତି ।
ଜନୈକ ଇନ୍ଦ୍ରଜାଲିକ କାହୁଁ ପହଞ୍ଚିଲା
ରାଜାଙ୍କ ପାଦ ପଦ୍ମରେ ପ୍ରଣିପାତ କଲା ।
ହାତଯୋଡ଼ି ଉଭାରହି କହଇ ବଚନ
ମଣିମା ଶୁଣିମା ହେଉ ମୋହର କଥନ ।
ଗୋଟିଏ ଆଶ୍ଚର୍ଯ୍ୟ କ୍ରୀଡ଼ା ଦେଖାଇବି ମୁହିଁ
ଶ୍ରୀ ଆଜ୍ଞା ହେଉ ତାହା ମୁଁ ଦେଖାଇବି ରହି ।
ଅନୁମତି ପାଇ କ୍ରୀଡ଼ା ଆରମ୍ଭ ସେ କଲା
ସଭାସଦଗଣଙ୍କର ମନ ହରି ନେଲା ।
ଚାହୁଁ ଚାହୁଁ ପିଞ୍ଜରାଟି ଆପେ ଥୋଇ ଦେଲା
ମୟୁର ପୁଚ୍ଛଟି ତହୁଁ ବାହାର କରିଲା ।
ଶିଖି ପୁଚ୍ଛଟି ଧରିଣ କରଇ ଘୂର୍ଣ୍ଣନ
ଦେଖି ଉତ୍କଣ୍ଠିତ ହେଲେ ସଭାସଦ ଗଣ ।
ପରମାତ୍ମା ଯେଉଁପରି ମାୟାଶକ୍ତି ବଳେ
ନାନା ଭାବେ ପ୍ରତିଭାତ ହୁଅନ୍ତି ମହୀତଳେ ।
ମୟୂର ପୁଚ୍ଛ ଘୂରାଇ ସେ ଐନ୍ଦ୍ରଜାଲିକ
ନାନାଦି ହଟ୍ଟ ଚମଟ ପ୍ରକାଶ କଲାକ ।
ଏକଇ ଅଶ୍ୱପାଳକ ଅଶ୍ୱ ଘେନିକରି
ପହଞ୍ଚଣ ଯାଏ ଆସି ସେହି ସଭାସ୍ଥଳୀ ।
ରାଜାଙ୍କୁ ସମ୍ବୋଧି କହେ ଏମନ୍ତ ବଚନ
ହେ ରାଜନ ! ଏ ଅଶ୍ୱର ଗୁଣମାନ ଶୁଣ ।
ଉଚ୍ଚୈଶ୍ରବା ଅଶ୍ୱପରି ଏହାର ଧାବନ
ଦେଖି ମନେ ହୁଏ ବାୟୁଦେବ ମୂର୍ତ୍ତିମାନ ।
ଏହି ଅଶ୍ୱ ରତ୍ନଟିକୁ ସାମନ୍ତ ମୋହର
ହଜୁରଙ୍କ ପାଇଁ ଦେଇଛନ୍ତି ଉପହାର ।
ଅଶ୍ୱପାଳ ଏହିପରି କହୁ କହୁ ଜାଣ
ଐନ୍ଦ୍ରଜାଲିକ ରାଜାଙ୍କୁ କହଇ ଏସନ ।
ହେ ଦେବ ଏହି ଅଶ୍ୱରେ କରି ଆରୋହଣ
ଭ୍ରମଣ କରିବା ହେଉ ଯହିଁ ଇଚ୍ଛାମନ ।
ସେ ଅଶ୍ୱକୁ ଦେଖୁ ଦେଖୁ ସେ ମହାରାଜନ
ନିଶ୍ଚଳ ରହିଲେ ଚିତ୍ରପ୍ରତିମା ସମାନ ।
ଏହା ଦେଖି ସକଳେ ଯେ ଏମନ୍ତ ଭାବନ୍ତି
କୌଣସି ଗୂଢ଼ ଚିନ୍ତାରେ ରାଜା ମଜ୍ଜିଛନ୍ତି ।
ରାଜାଙ୍କ ନିଶ୍ଚଳ ଦୃଷ୍ଟି ଦେଖି ମନ୍ତ୍ରୀଗଣ
ଚିନ୍ତାର ସାଗରେ ସର୍ବେ ହୋଇଲେ ମଗନ ।
ଅତିବାହିତ ହୁଅନ୍ତେ କେତେକ ମୁହୂର୍ତ୍ତ
ଚେତା ପାଇଁ ରାଜାଙ୍କର ଥରେ ସାରା ଗାତ୍ର ।
କମ୍ପି କମ୍ପି ତଳେ ପଡ଼ି ଯାଉଥିଲାବେଳେ
ସଭା ସଦ୍‌ଗଣ ତାଙ୍କୁ ଧରି ପକାଇଲେ ।
କିଛିକ୍ଷଣ ଏହିପରି ଗଡ଼ିଗଲା ପରେ
ଅସ୍ପଷ୍ଟ ସ୍ୱରେ ରାଜନ ଏମନ୍ତ ବୋଇଲେ ।
'ମୁଁ କେଉଁଠି ପୁଣି ଏହି ସଭା ଯେ କାହାର'
"କିପରି ଆସିଲି ମୁହିଁ ଏହି ବନ୍ୟ ସ୍ଥଳ ।"
ମନ୍ତ୍ରୀଗଣ କହୁଛନ୍ତି ଶୁଣ ହେ ରାଜନ
ଆପଣଙ୍କ ଶୋଚନୀୟ ଅବସ୍ଥା ଦେଖିଣ ।
ଆକୁଳ ସରବେ ଆମ୍ଭେ ସଭା ସଦଗଣ
କି ପ୍ରତିକାର କରିବୁ ନ ଆସଇ ମନ ।
ମୋହଗ୍ରସ୍ତ ହୋଇଛି କି ଆପଣଙ୍କ ମନ
କିପରି ତା ସମ୍ଭବିଲା ନ ଆସେ ଏ ମନ ।
ସୁବିବେକ ସୁନିର୍ମଳ ଆପଣଙ୍କ ମନ
ଭୟଭୀତ ହେଲା ଦେବ କେବଣ କାରଣ ?
ଆପଣଙ୍କ ପରି ବିଜ୍ଞ ବ୍ୟକ୍ତିଙ୍କର ମନ
ଏପରି ହେବାର ରାଜା ନ ଦିଶେ ଶୋଭନ ।
ମନ୍ତ୍ରୀ ବର୍ଗଙ୍କର ଏହିରୂପ ବାଣୀ ଶୁଣି
ମୋହ ଭଙ୍ଗ ହୁଅନ୍ତେ ରାଜା ଉଠିଲେ ସେକ୍ଷଣି ।
ଐନ୍ଦ୍ରଜାଲିକଙ୍କୁ ଦେଖି କ୍ରୋଧବଶ ହୋଇ
ଉଚ୍ଚସ୍ୱରେ ସେ ରାଜନ ଯାଉଛନ୍ତି କହି ।
"ଅସମୀକ୍ଷାକାରୀ ଏଠି ରହି କରି ତୁହି"
କ୍ଷଣକରେ ମାୟା ଜାଲ ଦେଲୁ ତୁରେ ଫେଇ ।
ଶାନ୍ତ ସମୁଦ୍ରକୁ ତୁହି କ୍ଷଣକ ମଧରେ
ଅଶାନ୍ତ କଲୁ ନିର୍ବୋଧ କେଉଁ ଉଦ୍ଦେଶ୍ୟରେ ।
ସଭା ସଦ୍‌ଗଣ ଏବେ ଶୁଣ ମୋ ବଚନ
ଏ ନିର୍ବୋଧ ଯାହା କଲା ଆମ୍ଭ ସହିତେଣ ।

ମୁହୂର୍ତ୍ତକ ମଧ୍ୟେ ଯାହା ଦେଖାଇଲା ମୋତେ
ବର୍ଣ୍ଣନ କରୁଛି ତାହା ଶୁଣ ହେ ସମସ୍ତେ ।
ଏକାକୀ ସେ ଅଶ୍ୱଚଢ଼ି ଗଲି ମୃଗୟାରେ
ଦ୍ରୁତ ବେଗେ ଯାଇଁ ପହଞ୍ଚିଲି ବହୁ ଦୂରେ ।
କ୍ଳାନ୍ତ ଶ୍ରାନ୍ତ ହୋଇ ଅଶ୍ୱ ହୋଇଅଛି ଥକ୍କା
ଶୁଷ୍କ ଅରଣ୍ୟରେ ମୁହିଁ ଉଭାଉଛି ଏକା ।
ସେହି ଅରଣ୍ୟରେ ମୁହିଁ ହୋଇ ଭୟଭୀତ
ଅପେକ୍ଷା କରି ରହିଲି ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ।
ସେହି ଅଶ୍ୱ ଆରୋହୀଣ ଅନ୍ୟ ଜଙ୍ଗଲରେ
ପ୍ରବେଶ କରିଲି ଯାଇଁ କ୍ଷଣକ ମଧ୍ୟରେ ।
ଭୟାନକ ଥିଲେ ସେହି ବନ ପ୍ରଜାଗଣ
ଅପେକ୍ଷାକୃତ କିଞ୍ଚିତ ସୁଖକର ଜାଣ ।
ଏକ ଜମ୍ବୀର କୁଞ୍ଜରେ ହେଲି ପରବେଶ
ବସି ରହିଥାଏ ସେହି ଅଶ୍ୱ ପୃଷ୍ଠ ଦେଶ ।
ଓହ୍ଲାଇ ପଡ଼ି ଦେଖନ୍ତେ ଅଶ୍ୱ ଆଉ ନାହିଁ
ଜମ୍ବୀର ବୃକ୍ଷର ତଳେ ବିଶ୍ରାମିଲି ମୁହିଁ ।
କଷ୍ଟେ ମଷ୍ଟେ ତହିଁ ମୁହିଁ ରାତି ପୁହାଇଲି
ଆରଦିନ ପହରକେ ଉଠି ମୁଁ ଦେଖିଲି ।
ଝିଅଟିଏ ମୋ ନିକଟେ ଆସେ ଘେନି ଭାତ
ସଙ୍କେତ ଦେଲି ମୁଁ ମୋତେ ତା ଦେବା ନିମିତ୍ତ ।
ମୋତେ ଭାତ ନ ଦେଇ ସେ ସ୍ଥାନାନ୍ତରେ ଚଳି
ମୁହିଁ ମଧ୍ୟ ଧାଉଁଥାଏ ତାର ପଛ ଧରି ।
ଯାଉଁ ଯାଉଁ ସେ ବୋଲଇ ଶୁଣ ହେ ରାଜନ
ଚଣ୍ଡାଳ ଜାତିରେ ମୋର ହୋଇଛି ଜନମ ।
ଯଦି କିଛି ନ କରିବ ମୋର ଉପକାର
ଦେଇ ନ ପାରେ ମୁଁ ଅନ୍ନ ଏହି କଥା ସ୍ଥିର ।
ଦେଖ ମୋର ବାପ ଆଗେ ହଳ କରୁଅଛି
ତାହାର ଭୋଜନ ପାଇଁ ଭାତ ମୁଁ ନେଉଛି ।
ମୋତେ ବିଭା ହେବାପାଇଁ ହେଲେ ସନମତ
ଦେଇପାରେ ତୁମ୍ଭଙ୍କୁ ମୁଁ ଏଥୁଁ କିଛି ଭାତ ।
"ଅଗତ୍ୟା ବିବାହ ପାଇଁ ହେଲି ମୁଁ ସମ୍ମତ"
କଲି କ୍ଷୁଧା ନିବାରଣ ଖାଇ ତାଠୁଁ ଭାତ ।
ଯଥାକାଳେ ସେ କନ୍ୟାକୁ ବିବାହ ମୁଁ କଲି
କ୍ରମେ କ୍ରମେ ଦୁଇ ପୁତ୍ର କନ୍ୟାଏଁ ଲଭିଲି ।
ଚଣ୍ଡାଳ ଗୃହସ୍ଥ ହୋଇ କଲି ଅବସ୍ଥାନ
ଏହିପରି ଗଡ଼ିଗଲା ତହିଁ କେତେ ଦିନ ।

ନାନା ଦୁଃଖ ଦାରିଦ୍ର୍ୟରେ ବହୁ ବର୍ଷ ଗତ
ତତ୍‌ପରେ ହୋଇଲଇଁ ମୁହିଁ ଭାରାକ୍ରାନ୍ତ ।
ପ୍ରଚଣ୍ଡ ଦୁର୍ଭିକ୍ଷ ଆସି ପଡ଼ିଲା ସେ ଦେଶେ
ସ୍ତିରୀ, ପୁତ୍ର ଘେନି ମୁହିଁ ଚଳେ ଅନ୍ୟ ଦେଶେ ।
ସେ ଦେଶରେ ଯାଇଁ ବହୁ ଦୁଃଖ ମୁଁ ଭୋଗିଲି
କୁଟୁମ୍ବ ପୋଷିବା ପାଇଁ ଧନ ନ ପାଇଲି ।
ପିଲାମାନେ କ୍ଷୁଧାତୁରେ ଅଥୟ ହୋଇଣ
କାନ୍ଦି କାନ୍ଦି ମୋତେ ଆସି କଲେ ଆଲିଙ୍ଗନ ।
ସେ ଅସହ୍ୟ ଦୁଃଖକୁ ମୁଁ ସହି ନ ପାରିଲି
ଦେହତ୍ୟାଗ ପାଇଁ କୃତ ସଂକଳ୍ପ ହୋଇଲି ।
କାଷ୍ଠ ଆହରଣ କରି ଚିତା ସଜାଡ଼ିଣ
ଯାଆନ୍ତେ ତହିଁରେ କରିବାକୁ ଆରୋହଣ,
ପୂର୍ବଭାବ ଫେରିଆସେ ଏହି ଅବସରେ
କମ୍ପୁଅଛି ଦେଖ ମୁହିଁ ସିଂହାସନ ପରେ ।
ଭେରି ତୁରୀ ଜୟ ଶବ୍ଦ ତୁମର ବଚନ
କାନେ ପଶି ଫେରିଆସେ ମୋର ଚଇତନ୍ୟ ।
ରାଜା ଲବଣଙ୍କ ଏହି କଥିତ ବଚନ
ଐନ୍ଦ୍ରଜାଲିକ ତା ଶୁଣି ହୁଏ ଅନ୍ତର୍ଦ୍ଧାନ ।
ବିସ୍ମିତ ହୋଇ ସେ କ୍ଷଣି ସଭାସଦଗଣ
ମହାରାଜାଙ୍କୁ ସମ୍ଭାସି କହନ୍ତି ବଚନ ।
ଏ ବ୍ୟକ୍ତି ଐନ୍ଦ୍ରିଜାଲିକ ନୁହେଁ ସେ ରାଜନ
ଧନ ଇଚ୍ଛାରେ ଏହା ସେ କରି ନାହିଁ ଜାଣ ।
ସେ ଉଦ୍ଦେଶ୍ୟ ତାର ଯେବେ ଥାଆନ୍ତା ହେ ରାଜା
କେବେ ହେଁ ସଭାସ୍ଥଳକୁ ନ କରନ୍ତା ତେଜ୍ୟା ।
ସମ୍ଭବତଃ ଯାହା ସର୍ବେ କହନ୍ତି ସଂସାର
ସେ ସଂସାର ଅଟେ ରାଜା ଏହି ପରକାର ।
କେବଳ ମନ ବିଳାସ ଅଟେ ଏ ସଂସାର
ହେଜାଇ ଦେବାକୁ ଏହି ତତ୍ତ୍ୱ ସଂସାରର. ।
କେଉଁ ଦୈବୀ ମାୟା ଆସି ହୋଇଣ ହାଜର
ଚେତାଇ ଦେଲା ତୁମ୍ଭଙ୍କୁ କିସ ଏ ସଂସାର ।
କାହିଁ ତୁମେ ରାଜା ଲୋକପାଳ ମହୀପତି
କାହିଁ ପୁଣି ଏ ବିଷମ ମୋହ ମନୋବୃତ୍ତି ।
ମନୁଷ୍ୟକୁ ମୋହଗ୍ରସ୍ତ କରାଇବା ନୀତି
ଐନ୍ଦ୍ରଜାଲିକର କାର୍ଯ୍ୟ ନୁହେଁ ହେ ଭୂପତି ।
ଯେହେତୁ ଐନ୍ଦ୍ରଜାଲିକେ ଅର୍ଥ ପ୍ରତ୍ୟାଶାରେ
ଆଶ୍ଚର୍ଯ୍ୟ ଜନକ କାର୍ଯ୍ୟ ଦେଖାନ୍ତି ସଂସାରେ ।

ମନୁଷ୍ୟକୁ ଦୁଃଖଦାୟୀ ମୋହରେ ପକାଇ
ଅର୍ଥଲାଭ ସମ୍ଭାବନା ରହେ ଆଉ କାହିଁ ।
ଅର୍ଥ ପ୍ରତ୍ୟାଶୀ ଏ ବ୍ୟକ୍ତି ଯଦି ହୋଇଥାନ୍ତା
ଏପରି ଅଦ୍ଭୁତ ଭାବେ ଅନ୍ତର ନୁହନ୍ତା ।
ଏ ଘଟନା ଦେଖି ଆମ୍ଭେମାନେ ଯେ ସମସ୍ତେ
ସଂଶୟାଛନ୍ନ ହୋଇଛୁ ଜାଣ ହେ ଭୂପତେ ।
ବଶିଷ୍ଠ କହିଲେ ରାମ ଏ ଘଟନା ଯେବେ
ଘଟିଥିଲା ସେ ସଭାରେ ନିଜେ ଥିଲୁ ଆମ୍ଭେ ।
ସ୍ୱଚକ୍ଷୁରେ ଏହା ମୁହିଁ ଦେଖିଛି ହେ ରାମ
ଶୁଣିବା କଥା ତୁମ୍ଭକୁ କହୁନାହିଁ ଜାଣ ।
କଳ୍ପନାମୟ ମନର ଜୟ ଚିରକାଳ
ହୋଇ ଆସୁଅଛି ଆହେ କୌଶଲ୍ୟା ଦୁଲାଳ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଇନ୍ଦ୍ରଜାଲ ଉପାଖ୍ୟାନ ବର୍ଣ୍ଣନେ**
**ନାମ ୮୦ତମ ସର୍ଗଃ**



## ୮୧ତମ ସର୍ଗଃ
## ଚିତ୍ ବର୍ଣ୍ଣନ

ବଶିଷ୍ଠ ବୋଇଲେ ଏବେ ଶୁଣ ଆହେ ରାମ
ଚୈତନ୍ୟ ବିଷୟେ କିଛି କରୁଛି ବର୍ଣ୍ଣନ ।
ଚୈତନ୍ୟ ପ୍ରଥମେ ନିଜ ସଙ୍କଳ୍ପ ବଳରେ
ସ୍ୱକୀୟ ଜ୍ଞେୟ ସ୍ୱରୂପ ଅରଜନ କରେ ।
ପରେ ନାନା ବୈଚିତ୍ର୍ୟର ସଂସ୍ପର୍ଶେ ଆସିଣ
ମଳିନତା ଲାଭ କରିଥାଏ ଚଇତନ୍ୟ ।
କ୍ରମେ ମିଥ୍ୟା ମୋହ ଗାଢ଼ଭାବ ଗ୍ରସ୍ତହୋଇ
ସ୍ୱୀୟ ପୂର୍ଣ୍ଣ ସ୍ୱରୂପତା ଭୁଲିଯାଇ ଥାଇ ।
ମନର ଆକୃତି ଗୋଟି କରିଣ ଗ୍ରହଣ
ଜନ୍ମ ମରଣ ଭ୍ରମରେ ହୁଏ ନିମଗନ ।
ଭୂତ ଯୋନି କଳପିଣ ବାଳକ ଯେସନ
ଅନର୍ଥକ ଭୟଭୀତ ହୁଏ ତାର ମନ ।
ବାସନା ଜନିତ ମଳିନତା ଘେନିମନ
ବୃଥା ଦୁଃଖ ଜାଲ କରୁଥାଏ ବିସ୍ତାରଣ ।
ଚିତ୍ ସ୍ୱରୂପରେ ଅବସ୍ଥାନ ଯେବେ କରେ
ବାସନା କ୍ଷୟ ହୁଅଇ ତାର ତେତେବେଳେ,
ସତ୍ୟଭାବେ, ଅନୁଭୂତ ପୂର୍ବଦୁଃଖମାନ
ମିଥ୍ୟାରୂପେ ପ୍ରତିଭାତ ହୁଅନ୍ତି ହେ ରାମ ।
ପକ୍ଷୀ ଶାବକକୁ ଯଥା ଦେଇଣ ଯନ୍ତ୍ରଣା
ବାଳକ ଯେସନ ହେଉଥାଏ ହୃଷ୍ଟମନା ।
ଦୁଷ୍ଟମନ ସେହିପରି ଏ ଜୀବ ଉପରେ
ଯନ୍ତ୍ରଣା ଦେଇ ଆନନ୍ଦ ଉପଭୋଗ କରେ ।
ଦୂରରୁ ଗଛଟେ ଦେଖି କ୍ଷୀଣ ଦୃଷ୍ଟିଲୋକ
ଭୂତ ବୋଲି ଭାବି ହେଉଥାଏ ଦକଦକ ।
ବାସନା ବିମୁଢ଼ ମନ ସେହିପରି ଜାଣ
ଅଭୟପ୍ରଦ ଲୋକକୁ ଦେଖି ଭୟେଛନ୍ନ ।
ମଳିନ ମନ ଯାହାର ଜାଣ ରଘୁବୀରେ
ସଙ୍କୋଟ ମିତ୍ରକୁ ଭୟ ଆଶଙ୍କାରେ ଡ଼ରେ ।
ତେଣୁ ଏ ମନର ତୀବ୍ର ବାସନା କେବଳ
ଏକମାତ୍ର ଦୁଃଖର ଯେ ହେତୁ ରଘୁବାଳ ।
ତେଣୁ କରି ବାସନାର ସମୂଳେ ବିନାଶ
ଯେପରି ହୋଇପାରିବ କର ସେ ପ୍ରୟାସ ।
ବାସନା ରଜ୍ଜୁରେ ଚିତ୍ତମୃଗ ବନ୍ଧ ହୋଇ
ସଂସାରାରଣ୍ୟେ କାତରେ କଷ୍ଟ ଭୋଗୁଥାଇ ।
ମନ ଯାହା କରେ ତାହା କୃତ ବୋଲି ଜାଣ
ମନ ଯାହା ପରିହରେ ତ୍ୟକ୍ତ ତାହା ରାମ ।
ଭୂମି, ଆକାଶ, ଭୁବନ ଜଳ ଆଦି କରି
ଏ ସକଳ 'ମନ' ଜାଣ ଆହେ ଧନୁର୍ଦ୍ଧାରୀ ।
ମନ ଯଦି ଏ ସକଳ କଳ୍ପନା ନ କରେ
ସୂର୍ଯ୍ୟାଦିଙ୍କ ପରକାଶ ହୋଇତ ନ ପାରେ ।
ମୋହଗ୍ରସ୍ତ ହୋଇଥାଏ ଯାହାର ମାନସ
ମୂଢ଼ ତାଲିକାଭୁକ୍ତ ସେ ହୁଏ ରଘୁଶିଷ୍ୟ ।
ଶବ ଶରୀରକୁ କେହି ମୂଢ଼ ନ କହଇ
ମୋହଗ୍ରସ୍ତ ଭାବ ଯେଣୁ ତା ଠାରେ ନ ଥାଇ ।
ସରବ ଶକ୍ତି ସମ୍ପନ୍ନ ଅଟଇ ଯେ ମନ
ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଏହିମାନ,
କର୍ଣ୍ଣ, ତ୍ୱକ୍, ଚକ୍ଷୁ, ଜିହ୍ୱା, ନାସାଦି ରୂପରେ
ପ୍ରକାଶ ହୋଇ ଅଛଇ ବିଶ୍ୱଚରାଚରେ ।
ଆହେ ରାମ ଏ ସକଳ ଇନ୍ଦ୍ରିୟ ବୃତ୍ତିରେ
ନାନାଦି ବୈଚିତ୍ର୍ୟମାନ ନିହିତ ତହିଁରେ ।
ସେମାନେ ତ ପରସ୍ପର ଅଟନ୍ତି ବିଭିନ୍ନ
ଶରୀରରେ ମନ ଧରେ ନାନା ବୃତ୍ତିମାନ ।
ଏକ୍ଷଣି ଯା ସ୍ୱାଦ ପରକ୍ଷଣେ ତା ଅସ୍ୱାଦ
କ୍ଷଣକେ ହରଷ ପୁଣି କ୍ଷଣକେ ବିଷାଦ ।

ଆଜି ଯାହା ସତ୍ୟ ପୁଣି କାଲି ତା ଅସତ୍ୟ
ସତ୍ୟ ଅସତ୍ୟ ମଧ୍ୟରେ ମନ କରେ ନୃତ୍ୟ ।
ଆଜି ଯାହା ପ୍ରିୟ ପୁଣି କାଲି ତା ଅପ୍ରିୟ
ଏ ଚପଳ ମନ ରାମ ସର୍ବଦା ଅଥୟ ।
ଏହିପରି ନାନା ମୂର୍ତ୍ତି ମନ ଯେ ଧରଇ
ଚପଳ ମନକୁ ରାମ ବିଶ୍ୱାସ ନ ଯାଇ ।
ମହାରାଜ ହରିଶ୍ଚନ୍ଦ୍ର ବ୍ରହ୍ମଲୋକେ ଗଲେ
ମନବଶେ ଯୁଗ, କାଳ, ମୁହୂର୍ତ୍ତ ମଣିଲେ ।
ଚିତଶକ୍ତି ସାକ୍ଷୀ ହୋଇ ସକଳ ବସ୍ତୁରେ
ସଂଲଗ୍ନ ରହି ଅଛଇ ଅଭିନ୍ନ ଭାବରେ ।
ଚିତ୍‌ଶକ୍ତି ସ୍ୱରୂପିଣୀ ଆତ୍ମଶକ୍ତି ବଳେ
ଇନ୍ଦ୍ରିୟମାନଙ୍କୁ ମନ 'କରାଗତ କରେ ।
ଇନ୍ଦ୍ରିୟାଦି କବଳରୁ ହେଲେହେଁ ମୁକତ
ଦେହରେ ତଦାତ୍ମ୍ୟଭାବ କରାଇ କଳ୍ପିତ,
ବ୍ରହ୍ମକୁ ଜଡ଼ ଆକାରେ 'କରେ ପରିଣତ
ମନର ଶକତି ରାମ ଦେଖ କି ଅଦ୍ଭୂତ ।
ମନନ ସଂକଳ୍ପ ଆଦି କରଇ ଅନ୍ତରେ
ନଦନଦୀ ଗିରିବନ କଳ୍ପଇ ବାହାରେ ।
ଏହିପରି ନିରର୍ଥକ କଳ୍ପନା କରିଣ
ଭ୍ରାନ୍ତିବଶ ମନ ସଦା ହୁଏ ଧାବମାନ ।
ଆତ୍ମ ସର୍ବସ୍ୱରୂପତା ଅଟେ ଅପ୍ରତ୍ୟକ୍ଷ
ବୈଚିତ୍ର୍ୟ ମାନ ପ୍ରକାଶେ ମନ ତା ସମକ୍ଷ ।
ତତ୍ତ୍ୱଜ୍ଞାନୀମାନଙ୍କର ସମକ୍ଷେ ଏ ମନ
କିଛି ମାତ୍ର କରିବାକୁ ସର୍ବଦା ଅକ୍ଷମ ।
ଯେହେତୁ ଏ ସବୁ ମିଥ୍ୟା ବୋଲି ସେ ଜାଣନ୍ତି
ମନ ଦୁର୍ବଳତାମାନ ସବୁ ସେ ବୁଝନ୍ତି ।
ଯାହା କିଛି ପରକାଶ କରିଯାଏ ମନ
ମନର ସ୍ୱୈରାକାର୍ଯ୍ୟ ନ ଜାଣନ୍ତି ଯେଉଁମାନ,
ସ୍ୱପନେ ବା ଜାଗରଣେ ତାଙ୍କ ପାଶେ ମନ
ଅନ୍ତରେ ପ୍ରକାଶେ ନଦୀ ପର୍ବତ ରୂପେଣ ।
ହେଲେହେଁ ସେ ମନ ରାମ ସ୍ୱୟଂ ନିରାକାର
ସଙ୍କଳ୍ପ ବଳରେ ଜୀବଭାବ ପ୍ରାପ୍ତି ତାର ।
ସେହି ସଙ୍କଳ୍ପରୁ ତାର ଜନମ ମରଣ
ଘଟୁଥାଏ ଜାଣ ଆହେ ଦଶରଥ ନାନ ।
ତିଳରେ ତଇଳ ଯଥା ଥାଏ ସୁରକ୍ଷିତ
ମନ ମଧ୍ୟେ ସୁଖ ଦୁଃଖ ତଥା ବିରାଜିତ ।

ଘଣାରେ ରାଶି ପେଡ଼ିଲେ ତେଲ ବାହାରଇ
ମନ, ବସ୍ତୁ-ସଂଯୋଗରେ ଏମନ୍ତ ଘଟଇ ।
ସୁଖ ଅବା ଦୁଃଖମାନ ଉପୁଜିଣ ଥାନ୍ତି
ତେଣୁ ଜୀବ କେବେ ପାଇ ନ ପାରଇ ଶାନ୍ତି ।
କାଳ କ୍ରିୟାରେ ସଙ୍କଳ୍ପ ହୁଏ ଦୃଢ଼ୀଭୂତ
ଦେଶ କାଳ ପାତ୍ର ଆଦି ମନ ମଧ୍ୟେ ସ୍ଥିତ ।
ମନଟି ଚପଳ ଅଟେ ଯାହାର ଶ୍ରୀରାମ
ନାନା ପ୍ରକାରେ ଜଗତ ତାକୁ ଦୃଶ୍ୟମାନ ।
ଆତ୍ମପଦେ ମନ ଯାର ହୋଇଥାଏ ସ୍ଥିତ
ଦୁଃଖ ଦୁର୍ଦ୍ଦଶା ସତ୍ତ୍ୱେ ସେ ନୁହେଁ ତୁହୁଁ ଚ୍ୟୁତ ।
ହୋଇଲେ ହେଁ ଅଶ୍ୱାରୋହୀ ରଣେ ନିପତିତ
ଅଶ୍ୱ ରହିଥାଏ କିନ୍ତୁ ତା ପ୍ରତି ଆସକ୍ତ ।
ଦଇବାତ ଯୋଗୀମନ ହେଲେ ବିଚଳିତ
ତଥାପି ସେ ତାର ବଶେ ରହେ ଅବିରତ ।
ବୈରାଗ୍ୟ ବଳେ ମନରୁ ଚପଳତା ନାଶ
ତେବେ ହୋଇଥାଏ ମନ ସାଧକର ବଶ ।
ଶ୍ରେଷ୍ଠ ମହାପୁରୁଷଟି ଅଟେ ସେହି ଜନ
ଆତ୍ମପଦେ ସ୍ଥିର ରହିଥାଏ ଯା'ର ମନ ।
ସଂସାରୁ ନିବୃତ୍ତ ରହି, ବଶ ତାର ମନ
ରଜ୍ଜୁରେ ବନ୍ଧନ ହସ୍ତୀ ଆୟତ୍ତ ଯେସନ ।
ସଂସାର ଆଡ଼କୁ ଯାର ମନ ଧାବମାନ ।
ଆବର୍ଜନା କୀଟଠାରୁ ହୀନ ତାର ମନ ।
ପର୍ବତ ପରି ଅଟଳ ଯାହାର ମାନସ
ସଂସାର ଭାବ ଯାହାକୁ ଲାଗୁଥାଏ ବିଷ,
ସଙ୍ଗହୀନ ହୋଇ ଯେହୁ କରେ ବିଚରଣ
ବିପଦ ସମ୍ପଦ ସୁଖ ଦୁଃଖ ଯା ସମାନ ।
ଆତ୍ମପଦେ ଚିତ୍ତ ରହିଥାଏ ଏକାଗ୍ରତେ
ଜୀବନ ମୁକତ ସେହୁ ହୁଏ ଏ ଜଗତେ ।
ମନରୁ ମନନ ଯେବେ ହୋଇଯାଏ ଦୂର
ଶାନ୍ତିପ୍ରାପ୍ତ ହୋଇଥାଏ ଆହେ ରଘୁବୀର ।
ଭୋଗ ପ୍ରତି ଧାବମାନ ହୁଏ ଯେଉଁ ମନ
ସଂସାର ବିଷବୃକ୍ଷର ବୀଜ ସେହୁ ଜାଣ ।
ସଂସାର ଜଳ ଉଭଁରୀ ମଧ୍ୟେ ପଡ଼ି ଜୀବ
ଛଟପଟ ହେଉଅଛି କିଏ ବା କଳିବ ?

ମନକୁ ସ୍ଥିର କରିଣ ଶାନ୍ତ ଆତ୍ମା ହୁଅ
ଜଗତରେ ଶାନ୍ତି ଧାରା ସଦା ଢ଼ାଳୁଥାଅ ।
**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ଚିତ୍ତ ବର୍ଣ୍ଣନେ ନାମ ୮୧ତମ ସର୍ଗଃ**



## ୮୨ତମ ସର୍ଗଃ

## ଚିତ୍ତ ଚିକିତ୍ସା

ବଶିଷ୍ଠ ବୋଇଲେ ରାମ ଚିତ୍ତ ମହାବ୍ୟାଧି
ତାର ନିବାରଣ ପାଇଁ ବାଢୁଛି ଔଷଧି ।
ନିଜ ଛଡ଼ା ଅନ୍ୟ କିଛି ନ ଜାଣଇ ମୁହିଁ
ସର୍ବତ୍ର ସର୍ବ ଆକାରେ ନିଜକୁ ଦେଖଇଁ
ଦୃଢ଼ତା ସହ ହେ ରାମ ଏହି ରୂପ ଜ୍ଞାନ
ଅଭ୍ୟାସ ଯଦ୍ୟପି କରିପାରିବ ସୁଜାଣ ।
ବିଷୟାନୁରାଗ ରୂପ ମନ ବ୍ୟାଧି ତାର
ବିଦୂରିତ ହୋଇଯିବ ଆହେ ରଘୁବୀର ।
ବୋଧ ସମ୍ପର୍ଣ୍ଣ ହୋଇବ ତେବେ ଯାଇଁ ମନ
ମିଥ୍ୟାରୁ ସତ୍ୟ ଆଡ଼କୁ ଢ଼ଳିବ ସେ ଜାଣ ।
ଲାଳନ, ପାଳନ ଅବା ଭୟ ଦେଖାଇଣ
କାର୍ଯ୍ୟରେ ଲଗାନ୍ତି ଯଥା ବାଳକର ମନ ।
ଅବିକଳ ସେହିପରି ଏ ମନକୁ ରାମ
ଉଲ୍ଲିଖିତ ଅଭ୍ୟାସରେ ପକାଇବ ଜାଣ ।
ଏକାଗ୍ରତା ଅଭ୍ୟାସରେ ହୁଅନ୍ତେ ପ୍ରବୃତ୍ତ
ପଉରୁଷ ବଳେ ମନ ଆତ୍ମାର ସହିତ,
ଏକୀଭୂତ କରାଯାଇପାରେ ରଘୁନାଥ
"ସ୍ୱ ସଂବେଦନ" ଏହିଟି ଜ୍ଞାନୀଙ୍କର ମତ ।
ପରମ ମଙ୍ଗଳ ପଦ ଆହେ ରଘୁଈଶ
ବିଷୟ ବୈରାଗ୍ୟ ପୁଣି କାମନା ବିନାଶ ।
ନୁହଇ ତା ଶ୍ରମ ସାଧ୍ୟ ମନୁଷ୍ୟ ପକ୍ଷରେ
ଅକ୍ଷରେ ଅକ୍ଷରେ ସତ୍ୟ ଜାଣ ରଘୁବୀରେ ।
ଅସୁନ୍ଦରକୁ ସୁନ୍ଦର ମନେ ଧରିନେବ
ବ୍ରହ୍ମକୁ ସେହି ସୁନ୍ଦର ରୂପରେ ଚିନ୍ତିବ ।
ବଳବାନ ଯୋଦ୍ଧା ଯଥା ଅତି ଅକ୍ଲେଶରେ
ବାଳକକୁ ଜୟକରି ପାରିବ ଯୁଦ୍ଧରେ,
ବିଜିତ ହୋଇପାରଇ ସେହିପରି ମନ
ଅନାୟାସେ ବ୍ରହ୍ମପଦ ଲବ୍ଧ ହୁଏ ରାମ ।
ଚିତ୍ତ ଶାନ୍ତି ନ ଆସିଲେ ବିଷୟା ବିନାଶେ
ଦୀକ୍ଷା, ଶାସ୍ତ୍ରଜ୍ଞାନ ଆଦି କାମରେ ନ ଆସେ ।
ମନ୍ତ୍ର, ମନ୍ତ୍ରାଦି ସାଧନା ଯାଆନ୍ତି ବିଫଳ
ଅଳୀକ ନହଁଇ ଏହା ଆହେ ରଘୁବାଳ ।
ସର୍ବ ପଦାର୍ଥରେ ବ୍ରହ୍ମଭାବ ଉଦେ ହେଲେ
ସକଳ ସଙ୍କଳ୍ପ ମାନ ନିବର୍ତ୍ତନ୍ତି ହେଲେ ।
ସାଧନ ସମ୍ପର୍ଣ୍ଣ ହେଲେ ଶାନ୍ତ୍ୟାଦି ସକଳ
ଜୀବନ ମୁକତି ଲାଭ ନୁହଁଇ ବିଫଳ ।
ଶରୀର ନ ଜାଣେ ଆଉ କଉଣସି କଷ୍ଟ
ଏହି ତ ଚିକିତ୍ସା ମହୌଷଧି ସର୍ବଶ୍ରେଷ୍ଠ ।
ତେଣୁକରି ଦୈବଠାରେ ନରଖି ନିର୍ଭର
ପୁରୁଷକାରକୁ କର ଆଦର୍ଶ ଭଣ୍ଡାର ।
ଆତ୍ମ ଦରଶନରୂପ ଜ୍ଞାନ ବଳ ବଳେ
'ମନ' ପରମ ଶତ୍ରୁକୁ ନାଶ ଅବହେଳେ ।
ବ୍ରହ୍ମ ପଦବୀରେ ମନହେଲେ ନିଯୋଜିତ
ମନର ବିନାଶ ହେଲା ଜାଣ ରଘୁନାଥ ।
ଚିତ୍ତକୁ ସେ ଚିତ୍ଦ୍ୱାରା ଗ୍ରାସ କରାଇବ
ଚିନ୍ମାତ୍ର ହୋଇଣ ଅବସ୍ଥାନ କରୁଥିବ ।
ପ୍ରଥମରେ ଚିନ୍ମାତ୍ରଙ୍କୁ ମନରେ ଚିନ୍ତିବ
ପରେ ସେହି ଭାବନାକୁ ସୁଦୃଢ଼ କରିବ ।
ସୁଦୃଢ଼ ଭାବନା ବଳେ ସେ ପରମ ଭାବ
ପ୍ରାପ୍ତ ହେଲେ ବିନାଶର ଆଶଙ୍କା ନ ଥିବ ।
ସର୍ବ ସମ୍ପଦର ମୂଳ ଉଦ୍‌ବେଗ ଶୂନ୍ୟତା
ଉଦ୍‌ବେଗ ଶୂନ୍ୟତା ପେଡ଼ିଦିଏ ମନସତ୍ତା ।
ମନକୁ ଜିଣିଲେ ତ୍ରିଭୁବନ ଆଧିପତ୍ୟ
ନଗଣ୍ୟ ବୋଲି ମନରେ ହୁଅଇ ପ୍ରତୀତ ।
ଉଦ୍‌ବେଗ ଶୂନ୍ୟତା ସର୍ବ ସମ୍ପଦର ମୂଳ
ଅନୁଦ୍‌ବେଗେ ହୁଏ ମନ ବିଜୟ ସଫଳ ।
ସାମ୍ରାଜ୍ୟ ଜୟେ ନିହିତ ଅଛି ଯଦି କ୍ଳେଶ
ମନ ବିଜୟେ ସେପରି କ୍ଳେଶ ନାହିଁ ଲେଶ ।
କରି ପାରିଲେ ହେ ରାମ ମନକୁ ବିଜୟ
ତାର ପକ୍ଷେ ଅତି ତୁଚ୍ଛ ତିନିଲୋକ ଜୟ ।
ମନକୁ ଜିଣିବା ରାମ ନୁହେଁ କଷ୍ଟକର
ସ୍ୱଭାବେ ରହି ପାରିଲେ ମନ ଜୟ କର ।
ସ୍ୱଭାବେ ରହିବା ପାଇଁ ଯେମାନେ ଅକ୍ଷମ
ନାନାଦି ଭାବରେ କରୁଥାନ୍ତି ଆସ୍ଫାଳନ ।

"ମୁଁ ଅଟେ ମନୁଷ୍ୟ ମୁହିଁ ଲଭିଛି ଜନମ
ମୋର ବଞ୍ଚିବା ମରିବା ଅନିବାର୍ଯ୍ୟ ଜାଣ ।"
ଚପଳ ମନର ଏହି ମିଥ୍ୟା ତରଙ୍ଗରେ
ନିମଜ୍ଜିତ ରହିଥାନ୍ତି ପୁଣି କାଳେ କାଳେ ।
କେହି ଜନ୍ମେ ନାହିଁ କେହି ମରେ ନାହିଁ ଭବେ
ଜନ୍ମମୃତ୍ୟୁ ଆଣେ ମନ ଆପଣା ସ୍ୱଭାବେ ।
ନିଜକୁ ନିଜେ ଏ ମନ ଜନ୍ମାଏ ବା ମାରେ
ଅନ୍ୟର ଜନ୍ମ ମରଣ ଏହିମନ କରେ ।
ଅନ୍ୟମାନଙ୍କ ବିଷୟେ ମନର ଏ ନୀତି
ବଦ୍ଧ ପରିକର ଥାଏ ଆହେ ରଘୁପତି ।
ପରଲୋକ ଗମନ ଯା ଲୋକରେ ବିଦିତ
ମନର ସ୍ଫୁରଣ ମାତ୍ର ଆହେ ରଘୁନାଥ ।
ମୁକତି ନ ହେବାଯାଏ ଏପରି ଧାରଣା
ଚଳୁ ରହିଥାଏ ଆହେ ରାମ ମହାମନା ।
ମୃତ୍ୟୁ ଭୟର ଅସ୍ତିତ୍ୱ କାହିଁ ଅଛି ରାମ ?
ମୁକତି ଲଭିବା ମାତ୍ରେ ସେ ଭୟ ବିଲୀନ ।
ଇହ ଲୋକେ ଅବା ପରଲୋକେ ଏହି ମନ
ଯେତେ ଦିନ ଯାଏ କରୁଥାଏ ବିଚରଣ ।
ତେତେଦିନ ଯାଏ ମନ 'ମନ' ଆକାରରେ
ମୁକ୍ତି ନ ପାଇବା ଯାଏ ରହେ ନିରନ୍ତରେ ।
ଏକମାତ୍ର ମନଛଡ଼ା ଅନ୍ୟ କିଛି ନାହିଁ
କେହି ତ ରହଇ ନାହିଁ ଏ ମରତ ଭୂଇଁ ।
ପୁତ୍ର କଳତ୍ରାଦିଙ୍କର ମୃତ୍ୟୁ ଶୋକେ ଯେହି
ଶୋକଗ୍ରସ୍ତ ହୁଏ ଜାଣ ଅଜ୍ଞାନୀ ଯେ ସେହି ।
ଆତ୍ମାରେ ସେହି ମନର ବିଲୟ ବ୍ୟତୀତ
ନାହିଁ ଅନ୍ୟ ପଥ ଜାଣିବାକୁ ଆତ୍ମତତ୍ତ୍ୱ ।
ହୃଦୟ ଆକାଶେ ଥିବା ଚିତ୍-ଚକ୍ର ଦ୍ୱାରା
ମନକୁ ବିନଷ୍ଟ କରି ହୁଅ ଶତ୍ରୁ ହରା ।
କରିବା ପାଇଁ ତା ତୁମେ ହୋଇଲେ ସକ୍ଷମ
ମନ ବ୍ୟାଧି ନ ଗ୍ରାସିବ ତୁମକୁ ହେ ରାମ ।
ଆପାତଃ ମଧୁର ଯେହୁ ବିଷୟ ଅଟଇ
ଜ୍ଞାନ ବଳେ ତାହା ଯେବେ ଅପ୍ରମାଣ ହୋଇ,
ମନର ଅଙ୍ଗ ପ୍ରତ୍ୟଙ୍ଗ ତେବେ ଆହେ ରାମ
ଛେଦନ ହୋଇପାରିଛି ବୁଝାଯିବ ଜାଣ ।
"ଏହି ମୁଁ ଅମୁକ" "ନାମ" ଅଟଇ ମୋହର
"ଏ ପୁତ୍ର କଳତ୍ର ମୋର ଘର ଦ୍ୱାର ମୋର ।"
ଏହି ଯେ ଭ୍ରାନ୍ତି ତା ଅଟେ ମନର ଶରୀର
ସେ ଭ୍ରାନ୍ତି ବିନାଶେ ନାଶ ମନ-କଳେବର ।
ଭ୍ରାନ୍ତି-ଜ୍ଞାନ ଶୂନ୍ୟ, ଜ୍ଞାନ-ଖଡ୍‌ଗ ଧରିଣ
ମନରୂପ ଶରୀରକୁ କରିବ ଛେଦନ ।
"ମୁଁ ପୁଣି ମୋହର" ଏହି ଭ୍ରାନ୍ତି କଳପନା
ଅଭାବରେ ମନ ହୁଏ ଗଣ୍ଡେ ଦେହହୀନା ।
ଚପଳ ମନକୁ ଯେହୁ କରିଛି ବିନାଶ
ହେଲେହେଁ ପ୍ରଳୟ କାଳ ନ ଥାଏ ତା ତ୍ରାଶ ।
ସୁଖ ଦୁଃଖ ଶୁଭାଶୁଭ ସଂସାର ବିଭବ
ମାନସ ବୀଜରୁ ହୋଇ ଅଛଇ ଉଦ୍ଭବ ।
ମନକୁ ବିଜୟ କରି ପରମ ସନ୍ତୋଷେ
ପରମ ଉତ୍କର୍ଷ ଲାଭ ଆହେ ରଘୁ ଶିଷ୍ୟେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଚିତ୍ତ ଚିକିତ୍ସା ବର୍ଣ୍ଣନେ**
**ନାମ ୮୨ତମ ସର୍ଗଃ ।**



## ୮୩ତମ ସର୍ଗଃ

## ସୁଖ ଉପଦେଶ

ପଚାରନ୍ତି ରାମଚନ୍ଦ୍ର ଆହେ ତପୋଧନ
ସଂସାର ଶକ୍ତି ପ୍ରକାଶେ ମନହିଁ କାରଣ ।
କି ରୂପେ ଚଞ୍ଚଳ ମନ ହେବ ବଶୀଭୂତ
କେଉଁ ଉପାୟରେ ହେବ କହ ତପୋବନ୍ତ ?
ବଶିଷ୍ଠ କହନ୍ତି ଶୁଣ ଆହେ ରଘୁଶିଷ୍ୟ
ଚଞ୍ଚଳତା ହୀନ ମନ ନୁହେଁ କାହିଁ ଦୃଶ୍ୟ ।
ଉତ୍ତାପ ଯେସନ ଅଟେ ଅଗ୍ନିର ଧରମ
ଚଞ୍ଚଳତା ସେହିପରି ଏ ମନର ଧର୍ମ ।
ମାୟା ଜଡ଼ିତ ଚୈତନ୍ୟ ଜଗତ କାରଣ
ସେ ଚୈତନ୍ୟ ସ୍ପନ୍ଦନରୁ ମନର ଜନମ ।
ସ୍ପନ୍ଦନ ବିହୀନ ମନ ଅସ୍ତିତ୍ୱ ବିହୀନ
ମନର ମୃତ ଅବସ୍ଥା ବୋଲି ତାକୁ ଜାଣ ।
ସେହି ଅବସ୍ଥାକୁ ଜାଣ ମନର ମୁକତି
ଶାସ୍ତ୍ରମତେ, ବେଦମତେ ସିଦ୍ଧ ଏ ଉକତି ।
ମନର ବିନାଶେ ସର୍ବ ଦୁଃଖର ବିନାଶ
ମନ ଉଦୟେ ସରବ ଦୁଃଖର ପ୍ରକାଶ ।
ସେହେତୁ ଅନନ୍ତ ସୁଖ ଭୋଗପାଇଁ ରାମ
ମନ ବିନାଶ ପାଇଁକି ହୁଅ ଯତ୍ନବାନ ।

ମନର ଚଞ୍ଚଳତା ହିଁ ଅବିଦ୍ୟା, ବାସନା
ଛେଦି ଦିଅ ବାସନାର ମୂଳ ମହାମନା ।
ବାହ୍ୟ ବିଷୟ ତେଜନ୍ତେ ଅବିଦ୍ୟା, ବାସନା
ବିଲୟ ସାଧିତ ହୁଏ ରାମ ମହାମନା ।
ପରମଶ୍ରେୟ ହୁଅଇ ତହୁଁ ଅଧିଗତ
ଭୁଲିବ ନାହିଁ ଏକଥା ଆହେ ରଘୁନାଥ ।
ସତ ଓ ଅସତଙ୍କର ମିଳନ ଅବସ୍ଥା
ଜଡ଼ ଚଇତନ୍ୟଙ୍କର ହୁଅନ୍ତେ ଏକତା,
ଜ୍ଞାନୀଙ୍କ ମତରେ ତାହା ଅଟଇ ଯେ ମନ
ଉଭୟ ଦିଗରେ ମନ ରହିଛି ସଂଲଗ୍ନ ।
ଅଭିନିବିଷ୍ଟ ହୋଇଣ ଜଡ଼ତ୍ୱରେ ମନ
ଜଡ଼ଭାବ ପ୍ରାପ୍ତ ହୋଇଥାଏ ଆହେ ରାମ ।
ବିବେକ ଅଭ୍ୟାସ ବଳେ ପୁଣି ଏହି ମନ
ଚୈତନ୍ୟ ସ୍ୱରୂପ ପ୍ରାପ୍ତ ହୋଇଥାଏ ଜାଣ ।
ପୌରୁଷ ବଳେ ମନକୁ ଯେ ଲକ୍ଷ୍ୟେ ଚଳିବ
ଅଭ୍ୟାସ ବଳେ ଏ ମନ ସେ ଲକ୍ଷ୍ୟ ଲଭିବ ।
ପୁରୁଷକାର ପ୍ରଭାବ ବଳରେ ଶ୍ରୀରାମ
ମନର ଚିନ୍ମୟ ଅଂଶ କରି ପ୍ରକାଶନ,
ଜଡ଼ ଅଂଶକୁ ତାହାର କରିବ ବିନାଶ
ପରମ ପଦ ଲଭିବ ହେ ରଘୁ ବିଳାସ ।
ସଂସାର ଭାବନାଶୀଳ ମନକୁ ହେ ନାଥ
ବିବେକ ନିର୍ମଳ ମନ ଦ୍ୱାରା କବଳିତ,
କରି ନ ପାରିଲେ ଶ୍ରେୟ ଲାଭର ନିମିତ୍ତ
ଅନ୍ୟ କୌଣସି ଉପାୟ ନାହିଁ ସୁନିଶ୍ଚିତ ।
ବିବେକ-ଉଜ୍ଜ୍ୱଳ-ମନ ଦ୍ୱାରା ତୁମେ ରାମ
ଭ୍ରାନ୍ତି-ସମାକୁଳ-ମନ ବିନାଶନେ କ୍ଷମ ।
ରାଜାହିଁ ରାଜାକୁ ଜିଣିବାକୁ ସମରଥ
ଭ୍ରମକୁ ତୁମ ବିବେକ କରିବ ଆୟତ୍ତ ।
ସଂସାର ସାଗରେ ଯେହୁ ହୋଇ ନିପତିତ
ତୃଷ୍ଣା କୁମ୍ଭୀରର ଦ୍ୱାରା ହୁଏ କବଳିତ,
ତହୁଁ ନିଷ୍କୃତି ପାଇଁକି ତା ନିଜର ମନ
ନଉକା ସମ ସହାୟ ହେବ ତହିଁ ଜାଣ ।
ମନୋମୟ ବନ୍ଧନକୁ ମନଦ୍ୱାରା ଛେଦି
ଆତ୍ମାକୁ ମୁକ୍ତ ନ କରି ପାରେ ଯେ ଦୁର୍ବୁଦ୍ଧି,
ଅନ୍ୟ କୌଣସି ଉପାୟେ ବନ୍ଧନୁ ମୁକତି
ଲାଭକରି ନ ପାରିବ କେଭେଁ ସେ ଦୁର୍ମତି ।

**ଇତିଶ୍ରୀ ଯୋଗବାଶିଷ୍ଠେ ସୁଖ ଉପଦେଶ**
**ବର୍ଣ୍ଣନେ ନାମ ୮୩ତମ ସର୍ଗଃ**



## ୮୪ତମ ସର୍ଗଃ
## ଅବିଦ୍ୟା ବର୍ଣ୍ଣନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ରାଘବ
ବର୍ଣ୍ଣନ କରୁ ଅଛି ଅବିଦ୍ୟା ପ୍ରଭାବ ।
ଆକାଶେ ଦ୍ୱିତୀୟ ଚନ୍ଦ୍ର ଭ୍ରାନ୍ତିର ପରାୟ
ନାନାଦି ମିଥ୍ୟା ବାସନା ମନରେ ଉଦୟ ।
ମୂଳ ଉତ୍ପାଟନ ତା'ର ଏକାନ୍ତ କର୍ତ୍ତବ୍ୟ
ନୋହିଲେ ଜୀବନ ଶାନ୍ତି ଜଳିପୋଡ଼ି ଯିବ ।
ଅବିବେକ ଜ୍ଞାନଶୂନ୍ୟ ଅଟନ୍ତି ଯେମାନ
ପ୍ରତିଭାତ ହୁଏ ତାଙ୍କୁ ସତ୍ୟର ସମାନ ।
ବିବେକ ସମ୍ପନ୍ନ ବ୍ୟକ୍ତିମାନଙ୍କ ଦୃଷ୍ଟିରେ
ସଂପୂର୍ଣ୍ଣ ନିରର୍ଥକ ଏ ଜାଣ ରଘୁବୀରେ ।
ହେ ରାମ ବିଚାର କରି ନିଜେ ତୁମେ ଦେଖ
ମୋହର କହିବା କଥା କିପରି ପ୍ରତ୍ୟକ୍ଷ ।
ଜଳବ୍ୟତୀତ ସାଗରେ ଅନ୍ୟକିଛି ନାହିଁ
ପରମାତ୍ମା ବିନା ଭାବେ ଆଉ କି ଅଛଇ ?
ଆରୋପିତ କର ନାହିଁ ଭାବ ବା ଅଭାବ
ସେହି ଶୁଦ୍ଧ ପରମାତ୍ମାଠାରେ ହେ ରାଘବ ।
ଜାଣିଛ ତ ତୁମେ ନିଜେ ନୁହଁ ସେ କରତା
କର୍ତ୍ତୃତ୍ୱ ବୁଦ୍ଧି କିମ୍ପାଇ ଦେଖାଅ ଅଯଥା ।
ଏକମାତ୍ର ପରମାତ୍ମ ଥାନ୍ତେ ବିଦ୍ୟମାନ
ଅନ୍ୟକିଏ ଅଛି କ୍ରିୟା କରିବ ସମ୍ପନ୍ନ ?
ତଥାପି ସଂପୂର୍ଣ୍ଣ ଭାବେ ଅଭିମାନ ଶୂନ୍ୟ
ହୋଇ ନ ପାରିବ କେଭେଁ କୌଶଲ୍ୟା ନନ୍ଦନ ।
କର୍ତ୍ତା ଅଭିମାନ କିଞ୍ଚିତ୍ ନ ରହିବ ଯେବେ
ପୁରୁଷାକାର କର୍ମରଫଳ କି ସମ୍ଭବେ ।
ଅଶକ୍ତି ବିହୀନ କର୍ତ୍ତା ଏବେ ତୁମେ ହେବ
କର୍ତ୍ତୃତ୍ୱାଭିମାନ କିନ୍ତୁ ନ ରହିବ ତୁମ୍ଭ ।
ହେଲେ ହେଁ କରତା ତୁମେ ଅଜ୍ଞ ବ୍ୟକ୍ତିପରି
କରତା ନୋହିବ ମନେ ରଖ ଚାପଧାରୀ ।
ଏକମାତ୍ର ବ୍ରହ୍ମ ହେବ ତୁମ ଅବସ୍ଥିତି ।
ଅବସ୍ତୁ ଜଗତ ଏହି ସର୍ବମାୟାମୟ
ଅବସ୍ତୁ ପାଇଁକି କିମ୍ପାରଖ ତୁମେ ମୋହ ?
କିସ ତେଜ୍ୟ କିସ ଗ୍ରାହ୍ୟ ସେ ଅବସ୍ତୁ ମଧ୍ୟେ
ଭାବୁଛ କି କିଛି ଥାଇପାରେ ରଘୁନିଧେ ?

ସଂସାରର ବୀଜରୂପ ଏହି ଯେ ଅବିଦ୍ୟା
ଅଳୀକ ହେଲେହେଁ ସତ୍ୟପରି ତା ଆସ୍ପର୍ଦ୍ଧା ।
ଏହି ଯେ ବିଶାଳ କିନ୍ତୁ ଅସାର ସଂସାର
ହେଉଅଛି ସଦା ତୁମ ନୟନ ଗୋଚର ।
ନୁହେଁ କି ସେହି ମୋହିନୀ ମନର ବାସନା
କି ଅଛି ଆଶ୍ଚର୍ଯ୍ୟ ଏଥି ରାମ ମହାମନା ?
ଏ ବାସନା ନିର୍ଝରିଣୀ ତରଙ୍ଗ ସଦୃଶ
ମୃଦୁ କିନ୍ତୁ ତୀକ୍ଷ୍ଣ କଷ୍ଟଦାୟିନୀ ତାଦୃଶ ।
ନଦୀର ତରଙ୍ଗ ଯଥା ବିଲୀନ ଉତ୍ପନ୍ନ
ପୁନଶ୍ଚ ପ୍ରକାଶେ ଏହା ହେଲେ ହେଁ ଉଚ୍ଛିନ୍ନ ।
ସତ୍ତ୍ୱ ଗୁଣରୁ ବାସନା ଦିଅଇ ଉଜ୍ଜ୍ୱଳ
ତମ ପ୍ରଭାବରୁ ତାହା ଜିଣଇ କଜ୍ଜ୍ୱଳ ।
ସାନ୍ନିଧ୍ୟ ଲଭିବା ପୂର୍ବୁ ପରମାତ୍ମାଙ୍କର
ବାସନା ଉଦୟ ହେଉଥାଏ ନିରନ୍ତର ।
ସୁଭାଗ୍ୟରୁ ହୋଇଯାନ୍ତେ ବିଭୁ ସାକ୍ଷାତ୍କାର
ଧ୍ୱଂସପ୍ରାପ୍ତ ହୋଇଯାଏ ବାସନା ଅନ୍ଧାର ।
ନିର୍ମଳ ଆତ୍ମାଲୋକରେ ବାସନା ସୀମିତ
ତମଗୁଣ ପରିଶନ୍ତେ ହୁଏ ପ୍ରସ୍ଫୁଟିତ ।
ଅଯାଚିତେ ଆସି ହୁଏ ବାସନା ପ୍ରବେଶ
ସୁନ୍ଦର ହେଲେ ହେଁ ଦୁଃଖ କରେ ପରକାଶ ।
ଭ୍ରାନ୍ତିବଶେ ଜଣାଯାଏ ସୁଖ ପ୍ରଦାୟକ
ବିଚାର ବଳେ ଏହା ଯେ ଅନର୍ଥ ଜନକ ।
ମୁହୂର୍ତ୍ତକୁ ଯୁଗ କଲା ଲବଣ ରାଜାର
ବାସନା କୁହୁକ ଶକ୍ତି ବୁଝ ରଘୁବୀର ।
ବାସନାଗ୍ରସ୍ତ ମାନବ ଭବଭ୍ରାନ୍ତି ପଛେ
କି ଆବେଗେ ଅନ୍ଧଭାବେ ଧାଏଁ ଖାଲି ମିଛେ ?
ବାସନା ଯଦି ଆତ୍ମାକୁ କରେ କଳୁଷିତ
ବିଚିତ୍ର ଭ୍ରମ ତରଙ୍ଗ ଚିତ୍ତେ ଉଦ୍‌ବେଳିତ ।
ସତ୍ୟରୂପୀ ପରଂବ୍ରହ୍ମ ବାସନା ପ୍ରଭାବେ
ପ୍ରତୀତ ହୋଇଣ ଥାନ୍ତି ଭବେ ଅସତ୍ ଭାବେ ।
ତେଣୁ କରି କଦାକାର ଅସତ୍ୟ ଜଗତ
ସତ୍ୟରୂପେ ଲୋକେ ହୋଇଥାଏ ପ୍ରତିଭାତ ।
ଶବର ପାଶରେ ପକ୍ଷୀ ଧରାହେଲା ପରି
ଲୋଭ ଦେଖାଇ ଅବିଦ୍ୟା ମନ ନିଏ ହରି ।
ଜୀବଗଣର ଜନନୀ ଅଟଇ ଅବିଦ୍ୟା
ପ୍ରଲୋଭନରେ ସବୁଙ୍କୁ କରିଥାଏ ସିଧା ।
କିଛି ନାହିଁ ହେଁ ରାଘବ ! ଅବିଦ୍ୟା ଅସାଧ
ତା ବଳେ ମିଛକୁ ସତ୍ୟ ମଣିବାକୁ ବାଧ ।
ବାସ୍ତବକୁ ଅବାସ୍ତବ ନିଶ୍ଚୟ କହିବ
ସମ୍ଭବକୁ ଅସମ୍ଭବ କରି ତ ପାରିବ ।
ଅସମ୍ଭବକୁ ସମ୍ଭବ ବୋଲି ପ୍ରମାଣିତ
ସତ୍ୟକୁ ଗୁପ୍ତ ରଖିବା ଅବିଦ୍ୟା ସ୍ୱଭାବ ।
ବିବେକ ଶକତି ରାମ ଖଣ୍ଡା ଦାଢ଼ ପରି
ଛେଦି ପକାଇବ ଶିର ଅଜ୍ଞାନ ଅଇରୀ ।
ପ୍ରବାହ ନିରୁଦ୍ଧେ ନଦୀ ଜଳହୀନ ବୋଲି
ଅବିଦ୍ୟା ନିରୋଧେ ମନ-ନଦୀ ପଡ଼େ ଖାଲି ।
**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଅବିଦ୍ୟା ବର୍ଣ୍ଣନେ ନାମ ୮୪ତମ ସର୍ଗଃ ।**



## ୮୫ତମ ସର୍ଗଃ

## ଯଥାକଥିତ

## ଦୋଷପରିହାରୋପଦେଶ ବର୍ଣ୍ଣନା

କହନ୍ତି ଶ୍ରୀରାମ ଏବେ ଶୁଣ ତପୀବର
ମାନସ ତୃପତ ହୁଏ ଶୁଣ ତବ ଗୀର ।
ଅବିଦ୍ୟା ଜନିତ ମହାମୋହ ଅନ୍ଧକାର
କିପରି ବିଧ୍ୱଂସ ହେବ କହ ଋଷିବର ?
କହନ୍ତି ବଶିଷ୍ଠ ଏବେ ଶୁଣ ହେ ରାଘବ
ଯେ ଘେନି ମାନସ ତବ ତୃପତି ଲଭିବ ।
ତପନ ଉଦୟେ ଯଥା ତରଳେ ତୁଷାର
ଆତ୍ମ ଜ୍ଞାନୋଦୟେ ନାଶ ଅବିଦ୍ୟା ଅନ୍ଧାର ।
ଆତ୍ମ ଦରଶନ ପାଇଁ ଏହି ଅବିଦ୍ୟାର
ଯେତେଦିନ ଜନ୍ମିନାହିଁ, ଅଭିଳାଷ ତାର ।
ଦେହାଭିମାନୀ ଅଟଇ ଏମନ୍ତ ଯେ, ନର
ନୃତ୍ୟଶୀଳ କରି ରଖିଥାଏ ଅହଙ୍କାର ।
ନିଜ ମଧ୍ୟେ ଆନ୍ଦୋଳିତ ହୁଅଇ ସତତ
ଅବିଦ୍ୟାର ଖେଳ ଦେଖ କେଡ଼େ ଚମତ୍କୃତ ।
ଆତପ ଇଛିଲେ ଛାୟା ହୁଏ ଅସ୍ତମିତ
ଆତ୍ମଦର୍ଶନ ଇଛିଲେ ଅବିଦ୍ୟାର ଅସ୍ତ ।
ଏକାବେଳେ ସବୁଠାରେ ସୂର୍ଯ୍ୟୋଦୟ ହେଲେ
ଛାୟା ରହି ନ ପାରଇ କଉଣସିଠାରେ ।
ସର୍ବଗତ ପରମାତ୍ମା ସାକ୍ଷାତ ଲଭିଲେ
ଆପେ ଅବିଦ୍ୟା ବିଲୟ ପ୍ରାପ୍ତ ହୁଏ ଭଲେ ।

କାମନା ମାତ୍ରକେ ରାମ ଅବିଦ୍ୟା ବୋଲାଏ
ଅବିଦ୍ୟା ବିନାଶ ହେଲେ ମୁକ୍ତ ମିଳିଥାଏ ।
କିଛି ମାତ୍ର ସଙ୍କଳପ ଯେବେ ନରହଇ
ମୁକତି ଲାଭ ହେ ରାଜ ସୁଲଭ ଅଟଇ ।
ବାସନା ରଜନୀ ଶେଷେ ମନ ଆକାଶରେ
ଚିନମୟ ଦୀନମଣି ଉଦେ ଅବାଧରେ ।
ସୂର୍ଯ୍ୟୋଦୟେ ଯଥା ରଜନୀର ଅବସାନ
ବିବେକ ଉଦୟ ହେଲେ ଅବିଦ୍ୟା ବିଲୀନ ।
ପୁଣି ରାମ ପଚାରନ୍ତି ଆହେ ଗୁରୁଦେବ
ଯାହା ମୁଁ ଦେଖୁଛି ସବୁ ଅବିଦ୍ୟା ଏ ଭାବ ।
ଆତ୍ମ ଭାବନାରେ ଏହି ଅବିଦ୍ୟା ବିନାଶ
ଏହା ମଧ ବୁଝିଅଛି ଆହେ ତପୀଈଶ ।
ଆତ୍ମା ଯେ କିପରି ବସ୍ତୁ ତାହା ମତେ କହ
ମୋ ମନୁ ବିନାଶ କର ସକଳ ସନ୍ଦେହ ।
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ଆତ୍ମାର ସ୍ୱରୂପ ଗୋଟି କରୁଛି ବର୍ଣ୍ଣନ ।
ବିଷୟ ବ୍ୟାପ୍ତି ବିହୀନ ସର୍ବତ୍ରର ସେହି
ଅବିଦ୍ୟା ବରଣ ଶୂନ୍ୟ ଚିଦ୍ ବସ୍ତୁ ଯେହି ।
ସେହି ସେ ଆତ୍ମା ଯେ ଅଟେ ପରମ କାରଣ
କାରଣ ବିହୀନ, ପୁଣି ନିତ୍ୟ ନରଞ୍ଜନ ।
ସେହି ଆତ୍ମା ହିଁ ବୋଲାନ୍ତି ପରମଈଶ୍ୱର
ଇନ୍ଦ୍ରିୟ ବିହୀନ କିନ୍ତୁ ଇନ୍ଦ୍ରିୟଙ୍କ ଘର ।
ତୃଣରୁ ଆରମ୍ଭି ବିଶ୍ୱ-ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ
ପୂରି ରହିଛନ୍ତି 'ଆତ୍ମା'ଅମର ଅଚିନ୍ତ୍ୟ ।
ଅବିଦ୍ୟା ବୋଲିଣ କଉଣସି ପଦାର୍ଥର
ଲେଶମାତ୍ର ଚିହ୍ନ ନାହିଁ ଏହାଙ୍କ ମଧ୍ୟର ।
ଏହି ସମସ୍ତ ଯେ ନିତ୍ୟ ଅଖଣ୍ଡ ପରମ
ଅଟନ୍ତି ଯେ ଚିନ୍ମୟ ବ୍ରହ୍ମ ସନାତନ ।
କୌଣସି କଳ୍ପିତ ବସ୍ତୁ 'ମନ' ନାମ ଧରି
ଏହାଙ୍କ ମଧରେ ନାହିଁ ଆହେ ଚାପଧାରୀ ।
କେହି ଜନ୍ମୁ ନାହିଁ, ମରୁ ନାହିଁ ଏ ଜଗତେ
ବିକାରଶୀଳ ହୋଇ କେ ନାହିଁ ଏ ମରତେ ।
କେବଳ ପ୍ରକାଶମୟ ଅଖଣ୍ଡ ଚିନ୍ମାତ୍ର
ବିଦ୍ୟମାନ ରହିଅଛି ଏ ବିଶ୍ୱେ ସର୍ବତ୍ର ।

ସେହି ନିତ୍ୟ, ଶାନ୍ତ, ନିର୍ବିକାର ପରମାତ୍ମା
ତାଙ୍କ ଦ୍ୱାରା ଆବୋରିତ ଅଛି ଯେ ଚିଦାତ୍ମା ।
ଦୃଶ୍ୟ କଳ୍ପନା ପୂର୍ବକ ବିଚରଣଶୀଳ
ସେହି ଆବୋରିତ ଚିତ୍ ଏ ମନ କେବଳ ।
ଜଳରୁ ତରଙ୍ଗମାନ ଉତ୍‌ଥିତ ଯେସନ
ପରମାତ୍ମା ଯେ ଅଟନ୍ତି ସର୍ବଶକ୍ତିମାନ ।
ଆତ୍ମାର ବିଭାଗକରୀ ଶକ୍ତି ତାଙ୍କଠାରୁ
ଉଦିତ ହୋଇଛି ତଥା ଧର୍ମ ମହାମେରୁ ।
ଶାନ୍ତ ବିସ୍ତୃତ ପରମ ଆତ୍ମାଙ୍କ ବ୍ୟତୀତ
ଅନ୍ୟ କିଛି ନାହିଁ ଏହି ବିଶ୍ୱ ମଧ ଗତ ।
ସଙ୍କଳ୍ପ ବଳରୁ ଏହି ସଂସାରର ଜାତ
ଆତ୍ମାର ମଧେ ସତ୍ୟ ପରି ହୁଏ ପ୍ରତିଭାତ ।
ବାୟୁରୁ ଜନମ ଲାଭ କଲେ ହେଁ ଅନଳ
ପ୍ରଦୀପାଗ୍ନି ନିର୍ବାପିତ ଘେନି ବାୟୁବଳ ।
ସଙ୍କଳ୍ପରୁ ଜନମିଣ ଏ ମର୍ତ୍ତ୍ୟ ସଂସାର
ସଙ୍କଳ ବଳରେ ତିରୋଧାନ ହୁଏ ତାର ।
ସ୍ୱତନ୍ତ୍ର ସଙ୍କଳ୍ପ ବଳେ ମନେ ହୁଏ ବଦ୍ଧ
ସର୍ବ ବ୍ରହ୍ମ କଳ୍ପନାରୁ ମୁକ୍ତି ତାର ସିଦ୍ଧ ।
ତେଣୁ ସଂକଳ୍ପରୁ ଜିଣି ଅଭିଷ୍ଟ ସାଧନ
ଅକ୍ଳେଶରେ କରିଯାଅ ହେ ରଘୁନନ୍ଦନ ।
ଭବ ବନ୍ଧନ ଜନନୀ ଅବିଦ୍ୟାକୁ ମୁଢ଼େ
କେବଳ ଦୁଃଖ ନିମିତ୍ତ କଳପନ୍ତି ଦୃଢ଼େ ।
ଫଳତଃ ମୁଁ କୃଶ ଦୁଃଖୀ ଆଉ ପୁଣି ବଦ୍ଧ
ଭାବି ଭାବି ତଦାକାରେ ହୁଅନ୍ତି ଆବଦ୍ଧ ।
ପୁଣି ମୋର ଦେହ ନାହିଁ, ନୁହେଁ ମୁହିଁ ଦୁଃଖୀ
କାହିଁ ଆଉ ମୋ ବନ୍ଧନ ମୁଁ ତ ଏବେ ସୁଖୀ ।
ଏବଂବିଧ ଭାବନାରେ ସେମାନେ ମୁକତ
ଏଥୁ ବଳି ଲାଭ ଆଉ କାହିଁ ରଘୁନାଥ ।
ଏ ଦେହରୁ ଅଟେ ମୁହିଁ ସମ୍ପୂର୍ଣ୍ଣ ପୃଥକ
ଏହି ରୂପ ଦୃଢ଼ସ୍ଥିର ମର୍ନା ଯେଉଁ ଲୋକ ।
* "କ୍ଷୀଣାବିଦ୍ୟା" ଆଖ୍ୟା ତାକୁ ଦିଅନ୍ତି ପଣ୍ଡିତେ
ମୋ କହିବା ତତ୍ତ୍ୱ ବୁଝିଲଟି ରଘୁନାଥେ ।
'ମୁହିଁ ଅଜ୍ଞ' ଏ ସଂକଳ୍ପ ହୋଇଯାନ୍ତେ ଦୃଢ଼
ଅବିଦ୍ୟା ଉଦୟ ତାର ସର୍ବମତେ ମୂଢ଼ ।

* କ୍ଷୀଣାବିଦ୍ୟା - ଯାହାର ଅବିଦ୍ୟା କ୍ଷୀଣ ହୋଇଯାଇଛି ।

ଏ ରୂପ ସଂକଳ୍ପ ମନୁ ଯାଆନ୍ତେ ପାଶୋର
ଅବିଦ୍ୟା ଉପୁଡ଼ିଯାଏ ମୂଳରୁ ତାହାର ।
ଏ ଜଗତ୍ ପ୍ରପଞ୍ଚର ଭାବନା-ବାସନା
ସବୁରି ମୋହ-ଜନନୀ ଆହେ ମହାମନା ।
ଆତ୍ମଦର୍ଶନ ଯେ ଯାଏ ନୋହିଁଛି ତାହାର
ସେ ବାସନା ବଢ଼ି ଚାଲିଥାଏ ନିରନ୍ତର ।
ଆତ୍ମଦର୍ଶନ ଘଟିବା ମାତ୍ରକେ ଶ୍ରୀରାମ
ବିନଷ୍ଟ ହୁଅଇ ତାହା ବୁଝ ଏହି ମର୍ମ ।
ମନ୍ତ୍ରୀ ପାଳି ଚାଲିଥାଏ ରାଜାର ଆଦେଶ
ଇନ୍ଦ୍ରିୟଗଣ ପୂରାନ୍ତି ମନ ଅଭିଳାଷ ।
ବିଷୟ ଅନୁସନ୍ଧାନ କରି ନିବାରଣ
କବଳିତ କରିପାରେ ମନକୁ ଯେ ଜନ ।
ଯଦି ସେ ସତତ ବ୍ରହ୍ମ ଭାବନା କରଇ
ଅବଶ୍ୟ ସେ ଶାନ୍ତିଧନ ଲାଭ କରିଥାଇ ।
ଯାହାକିଛି ଦେଖୁଅଛି ସେ ସକଳ ବ୍ରହ୍ମ
ତା' ଛଡ଼ା ମନନ ଯୋଗ୍ୟ କିଛି ନାହିଁ ଜାଣ ।
ଯତ୍ନସହ ଯଥାଯୋଗ୍ୟ ପଉରୁଷ ବଳେ
ଚିତ୍ତରୁ ଭୋଗ ବାସନା ଉଚ୍ଛେଦ ସମ୍ଭଳେ ।
ଜରା, ମରଣ, କାରଣ ଯେ ପରମ-ମୋହ
ବାସନା କାରେ ରହିଛି ତାହା ନିଃସନ୍ଦେହ ।
ଏବେ ଗୁହ୍ୟ ତତ୍ତ୍ୱ ବୁଝି ପାରିଛ ଶ୍ରୀରାମ
ବ୍ରହ୍ମ ବ୍ୟତୀତ ଅସ୍ତିତ୍ୱ ନାହିଁ କା'ର ଜାଣ ।
ଏ ସମସ୍ତ ପୁତ୍ରଭାର୍ଯ୍ୟା, ଗୃହାଦି ମୋହର
"ମୁଁ ଏହି" ଏହି ଦ୍ୱିବିଧ ଭାବ ପରିହର ।
ଯାହାକିଛି ଦେଖାଯାଏ ଏ ବେନି ନୟନ
ସତ୍ୟରୂପୀ ଆତ୍ମାଛଡ଼ା ନୁହେଁ କିଛି ଅନ୍ୟ ।
ଦର୍ଶନ ମାତ୍ରହିଁ ସୃଷ୍ଟି କାରିଣୀ ଅବିଦ୍ୟା
ନବ ନବ ଆକାରରେ କ୍ରୀଡ଼ାଶୀଳ ସଦା ।
ତାହାର ସଙ୍କଳ୍ପ ମାତ୍ରେ କାର୍ଯ୍ୟର ଉଦୟ
ଆତ୍ମ ସାକ୍ଷାତରେ ପୁଣି ହୁଏ ତା ବିଲୟ ।
ଜ୍ଞାନ ସମ୍ପନ୍ନ ପୁରୁଷ ମାନଙ୍କ ଦୃଷ୍ଟିରେ
ଏ ଅବିଦ୍ୟା ପ୍ରତିଭାତ ନୁହେଁ ରଘୁବୀରେ ।
ମହିମା ସମ୍ପୂର୍ଣ୍ଣ ବ୍ରହ୍ମରୂପରେ କେବଳ
ପ୍ରତିଭାତ ହୁଏ ରାମ ତାଙ୍କ ନୟନର ।
କେବେହେଁ ହେ ରାମ ! ତୁମେ ନ ରହିବ ଅଜ୍ଞ
ସଂସାର ବାସନା ତେଜ ଯେସନ କି ପ୍ରାଜ୍ଞ ।
ଅନାତ୍ମ ବସ୍ତୁରେ ଆତ୍ମଭାବ ପୋଷି ରାମ
କିମ୍ପା ବୃଥା କାନ୍ଦୁଅଛ ଅଜ୍ଞବ୍ୟକ୍ତି ସମ ।
ସେ ଜଡ଼ ଶରୀର ତୁମ କିଏ ସେ ହେ ରାମ
ଯା ଘେନି ଦୁଃଖ ସୁଖରେ ସନ୍ତୁଛ ଆପଣ ।
କାଠ ଓ ଜଉ ଜଡ଼ିତ ହେଲେ ହେଁ ଯେସନ
ଏକବସ୍ତୁ ନ ବୋଲନ୍ତି ରାମ କଦାଚନ ।
ତେସନ ଶରୀର ଆଉ ଶରୀରୀ ଯେ ଏକ
ଏପରି ଚିନ୍ତା କରନ୍ତି ଯେହୁ ଅବିବେକ ।
ଆତ୍ମାର ବିନାଶ ନାହିଁ ଶରୀର ବିନାଶେ
ଆତ୍ମା ଅବିନାଶୀ ଆତ୍ମା ସଦା ପରକାଶେ ।
"ମୁଁ ସୁଖୀ ମୁଁ ଦୁଃଖୀ" ଏହି ଭ୍ରମ ପରିହରି
ସତ୍ୟରୂପୀ ଏକ ବ୍ରହ୍ମଠାରେ ଆଶ୍ରାକରି ।
ଅବିଦ୍ୟାର ଚିତ୍ତଭୋଗେ ଦୁର୍ଦ୍ଦଶା ଅସହ୍ୟ
ଅବିଦ୍ୟାରୁ ମନ ମଧ୍ୟରେ ସଂସାର ବାସନ
ଯେବେ ନ କରାଏ ଜାତ ରାମ ମହାମନା ।
ଜାଗରଣ ସ୍ୱପନରେ ଦୁଃଖ ଦୁର୍ଦ୍ଦଶାଦି
ଆତ୍ମାକୁ ବାଧି ପାରେକି ଆହେ ରଘୁନିଧି ?
ମିଥ୍ୟାଜ୍ଞାନ ଉଦେହେଲେ କୁଞ୍ଜ ମଧ୍ୟେ ମଧ
ରୌରବ ଯନ୍ତ୍ରଣାମାନ ହୁଏ ଉପଲବ୍ଧ ।
ଅବିଦ୍ୟା ଦ୍ୱାରା ଏ ମନ ଯଦି ହୁଏ ବିଦ୍ଧ
ମୃଣାଳ ସୂତ୍ରରେ ଦୃଷ୍ଟ ବିଶାଳ ସମୁଦ୍ର ।
ଭବ-ବନ୍ଧନ-ଜନନୀ ବାସନାକୁ ତେଜି
ସ୍ଫଟିକ ସଦୃଶ ରହ ସ୍ୱଚ୍ଛଭାବ ଭଜି ।
"ଅହଂବ୍ରହ୍ମ" ଜ୍ଞାନ ଧରି ନିଶ୍ଚଳ ଭାବରେ
ଆସକ୍ତି ତେଜିଣ ତତ୍ତ୍ୱଗଣଙ୍କ ମଧ୍ୟରେ ।
ଅବସ୍ଥାନ କରୁଥାଅ ଅଚଞ୍ଚଳ ମନେ
ଜନ୍ମ ମରଣାଦି ଭ୍ରମ ତୁଟିବ ତକ୍ଷଣେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ ଯଥାକଥିତ ଦୋଷ ପରିହାର ଉପଦେଶ ବର୍ଣ୍ଣନେ ନାମ ୮୫ତମ ସର୍ଗଃ**



## ୮୬ତମ ସର୍ଗଃ

## ସୁଖ, ଦୁଃଖ, ଭୋକ୍ତା ଉପଦେଶ

କହନ୍ତି ବାଲ୍ମୀକି ମୁନି ଶୁଣ ଭରଦ୍ୱାଜ
ବଶିଷ୍ଠଙ୍କ କଥା ଶୁଣି ରାମ ରଘୁରାଜ ।

ପଦ୍ମ ପଲାଶ ଲୋଚନ କୌଶଲ୍ୟା କୁମର
ଫୁଟିଲା ଫୁଲର ପରି ଉଲ୍ଲାସେ ଅନ୍ତର ।
ସୂର୍ଯ୍ୟୋଦୟେ କମଳିନୀ ଯଥା ପ୍ରଫୁଲ୍ଲିତ
ଶ୍ରୀରାମଚନ୍ଦ୍ରଙ୍କ ହୃଦ ତଥା ଉଲ୍ଲସିତ ।
କି କୁହୁକ ଆଜି ଗୁରୋ ! ଖେଳିଲ ଆପଣ
ମୃଣାଳ ତନ୍ତୁରେ କଲ ପର୍ବତ ବନ୍ଧନ ।
କୌଣସି ଅସ୍ତିତ୍ୱ ନାହିଁ ଯେଉଁ ଅବିଦ୍ୟାର
କବଳ କରି ରଖିଛି ଏ ଜୀବ ସଂସାର ।
ହେଲେ ହେଁ ତୃଣ ସଦୃଶ ସଂସାର କଷଣ
ଅବିଦ୍ୟା ବଶତଃ ବଜ୍ରଠାରୁ ସେ କଠିନ ।
ଶରୀର ଶରୀରୀ ମଧ୍ୟୁଁ କିଏ ସେ ହେ ଦେବ
ସଂସାରୀ ହୋଇ କରଇ କର୍ମ ଫଳ ଭୋଗ ।
କିପାଇଁ ଲବଣ ରାଜା ଏସନ ବିପନ୍ନ
ହୋଇ ପଡ଼ିଥିଲେ ଦେବ କରତା ବର୍ଣ୍ଣନ ।
କିଏ ସେ ଐନ୍ଦ୍ରଜାଲିକ କେବଣ କାରଣ
କିମ୍ପାଇଁ ସେ ପଳାଇଲା କହ ମୋ ଅଗ୍ରେଣ ।
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ଏ ଶରୀରର ଅଟେ କାଷ୍ଠ ପରି ଅଚେତନ ।
କେବେହେଲେ ସତ୍ୟ ବସ୍ତୁ ନୁହେଁ ଏ ଶରୀର
ସପନ ପଦାର୍ଥ ପରି କଳ୍ପନା ଚିତ୍ତର ।
ଚିତ୍ ଶକ୍ତି ହେତୁ ଚିତ୍ତ ଜୀବ ଭାବ ଧରେ
ନାନା ଶରୀରରେ କର୍ମ ଫଳ ଭୋଗ କରେ ।
ଅହଙ୍କାର, ମନ, ଜୀବ ନାମେ ପରିଚିତ
ସେ ଚିତ୍ତ ବିଚରୁଥାଏ ଏ ସାରା ଜଗତ ।
ଅପ୍ରବୃଦ୍ଧ ଅବସ୍ଥାରେ କେବଳ ରାଘବ
ମନରେ ହିଁ ସୁଖ ଦୁଃଖ ହେଉଥାଏ ଭୋଗ ।
କଉଣସି ମତେ ଦେହେ ନୁହେଁ ଏହା ଭୋଗ
କି ବିଚିତ୍ର କଥା ଏହା ଖାଲି ଅନୁଭବ ।
ଅପ୍ରବୃଦ୍ଧ ମନ ନାନା ବୃତ୍ତି ଆକାରରେ
ନାନା ନାମ ଧରି, ନାନା ରୂପ ମଧ୍ୟ ଥରେ ।
ଜ୍ଞାନାଲୋକେ ଆଲୋକିତ ନ ହେବା ପର୍ଯ୍ୟନ୍ତ
ମନର ନିଦ୍ରିତାବସ୍ଥା, ମନ ନିଦ୍ରାଗତ ।
ସଂସାର ସପନ ଦେଖେ ସେ ନିଦ୍ରାବସ୍ଥାରେ
ସଂସାର ସପନ ଦେଖେ ସେ ନିଦ୍ରାବସ୍ଥାରେ
ସଂସାର ସ୍ୱପ୍ନ ନ ଦିଶେ ପ୍ରବୃଦ୍ଧ ମନରେ ।
ଅଜ୍ଞାନ ନିଦ୍ରା ବଶତଃ ଏହି କ୍ଷୁବ୍‌ଧ ଜୀବ
ସଂସାର ଭ୍ରାନ୍ତି କି କରୁଥାଏ ଅନୁଭବ ।

ଜ୍ଞାନ ଉଦୟେ ମନର ଏହି ଅନ୍ଧକାର
ଦୂରୀଭୂତ ହୋଇଯାଏ କୌଶଲ୍ୟା ତୁମର ।
ଅବିଦ୍ୟା, ବାସନା, ମନ, କର୍ମ, ଜୀବ, ଚିତ୍ତ
ତତ୍ତ୍ୱଜ୍ଞଙ୍କ ମତେ ଯେହୁ ଏ ନାମେ ବିଦିତ ।
ସେହି ଶରୀର ହିଁ ଦୁଃଖ ଅନୁଭବ କରେ
ଜଡ଼ ଶରୀର ତା କେଭେଁ କରି ତ ନ ପାରେ ।
ଅବିଚାର ହେତୁ ଶରୀରୀର ଦୁଃଖ ଜାତ
ବିଚାର ଶୂନ୍ୟତା ଅଟେ ଦୁଃଖ ତାତ ମାତ ।
ତେଣୁ ଅଜ୍ଞାନ ଯାବତ ଦୁଃଖର କାରଣ
ବିବେକ ଅଭାବେ ଆସେ ସକଳ କଷଣ ।
ଏହି ଶରୀରରେ ମନ ହୁଅଇ ଉନ୍ନତ ।
ଏହି ଦେହେ ଥାଇ ମନ ହୁଏ ଅନୁନ୍ନତ ।
ଗମନ, ଭୋଜନ, ଆସ୍ଫାଳନ ଆଦି କରି
ମନ କରୁଥାଏ ସବୁ ଶରୀର ନ ପାରି ।
ଗୃହ ମଧ୍ୟେ ଥାଇ ଗୃହସ୍ୱାମୀ ଯେଉଁ ପରି
ନାନା ଚେଷ୍ଟା କରେ ଗୃହ ମଙ୍ଗଳ ବିଚାରି ।
ଜଡ଼ ଗୃହ କି କେବେ ହେଁ ତାହା କରିପାରି
ଗୃହ ସ୍ୱାମୀ ଇଚ୍ଛା ଘେନି ଶରୀର ଯାହାରି ।
ସୁଖ, ଦୁଃଖାଦିର ଭୋଗ କର୍ମ ସମ୍ପାଦନ
କରତା ଅଟଇ ରାମ ଏ ଅଦୃଶ୍ୟ ମନ ।
ତେଣୁ ସର୍ବ ଫଳଭୋକ୍ତା ଅଟଇ ଏ ମନ
ଶରୀର କେବେହେଁ ଭୋକ୍ତା ନୁହେଁ ହେ ଶ୍ରୀରାମ ।
ସ୍ମରଣ କରିଣ ପିତାମହଙ୍କର ଯାଗ
ଲବଣ ନୃପତି ହେଲେ ମନରେ ସରାଗ ।
ନିଜେ ସେହି ରୂପ ଯଜ୍ଞ ସମ୍ପାଦନ ପାଇଁ
ଆଗ୍ରହ ହୋଇ ନୃପତି ମନରେ ଭାଳଇ ।
ଯଜ୍ଞ ସାମଗ୍ରୀ ଯେତେକ ଶାସ୍ତ୍ର ଅନୁସାରେ
ସମ୍ପାଦି ରଖିଲେ ନୃପ ମାନସ ପଟରେ ।
ଯଜ୍ଞ ଦୀକ୍ଷା ନେବାପାଇଁ ଅଭିଳାଷ କରି
ଋତ୍ୱିକ ମାନଙ୍କୁ ମନେ ଆମନ୍ତ୍ରଣ କରି ।
ମୁନି ଋଷି ସାଧୁଜନ ପୂଜା ସଂପାଦିଲେ
ବହ୍ନି ସଂସ୍ଥାପନ କରି ଯଜ୍ଞ ଆରମ୍ଭିଲେ ।
ମାନସ ଯଜ୍ଞ କରନ୍ତି ଉପବନେ ଥାଇ
ଦେବ ଋଷି ଦ୍ୱିଜଗଣେ ଯଜ୍ଞ ଭାଗ ଦେଇ ।
ଏ ବିଧିରେ ଏକବର୍ଷ ଗତ ହୋଇଗଲା
ଯଜ୍ଞ ବିଧିରେ ସର୍ବସ୍ୱ ରାଜ୍ୟଦାନ ହେଲା ।

ମାନସ ଯଜ୍ଞର କର୍ମ ଯେବେ ହୁଏ ଗତ
ବାହ୍ୟ ଜଗତର ସ୍ମୃତି ହେଲା ଜାଗରିତ ।
ମାନସ ଓ ରାଜସ୍ୱୀୟ ଯଜ୍ଞ ବିଧି ସାରି
ପରମ ସନ୍ତୋଷ ମହରାଜା ଲାଭ କରି ।
ଯଜ୍ଞର ଅନିଷ୍ଟକର ଫଳ ଯାହା ହେଲା
ସଙ୍ଗେ ସଙ୍ଗେ ରାଜାଙ୍କୁ ତା ପ୍ରାପତ ହୋଇଲା ।
ତେଣୁ ରାମ 'ମନ' ଅବା 'ଚିତ୍ତ' କୁ ତୁମର
କର୍ତ୍ତା, ସୁଖ, ଦୁଃଖ ଭୋକ୍ତା ବୋଲିଣ ବିଚାର ।
ସତ୍ୟ ବସ୍ତୁରେ ତାହାକୁ ସଂଯୋଜିତ କର
କାଷ୍ଠା ନିଷ୍ଠା ଫଳ ରାମ ମିଳିବ ସତ୍ୱର ।
**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ସୁଖ, ଦୁଃଖ, ଭୋକ୍ତା ଉପାଖ୍ୟାନ ବର୍ଣ୍ଣନେ**
**ନାମ ୮୬ତମ ସର୍ଗଃ ।**



## ୮୭ତମ ସର୍ଗଃ
## ସାଧକ ଜନ୍ମାବତାର

ରାମଚନ୍ଦ୍ର କହୁଛନ୍ତି ଆହେ ଗୁରୁଦେବ
ଏ ମୋର ସନ୍ଦେହ ଗୋଟି ଖଣ୍ଡନ କରିବ ।
ଐନ୍ଦ୍ରଜାଲିକ ପ୍ରଭାବେ ରାଜା କଷ୍ଟ ପାଇ
ଚଣ୍ଡାଳ ରୂପ ଧରିଣ ଏଣେ ତେଣେ ଧାଇଁ ।
ତାହାକି ଏହି ମାନସ ରାଜସ୍ୱୀୟ ଯାଗ
ଅନିଷ୍ଟ ଫଳ ପ୍ରମାଣ ଅଟେ ମହାଭାଗ ।
କହନ୍ତି ବଶିଷ୍ଠ ଏବେ ତାହା ଶୁଣ ରାମ
ସେତେବେଳେ ସେ ସଭାରେ ଥିଲି ମୁହିଁ ଜାଣ ।
ଐନ୍ଦ୍ରଜାଲିକ ଅନ୍ତର ହୋଇଗଲା ପରେ
ରାଜା ସର୍ବ ସଭ୍ୟଗଣ ମୋତେ ପୁଛିଥିଲେ ।
ଧ୍ୟାନବଳେ ସେ ଘଟଣା ଇତିବୃତ୍ତମାନ
ଯାହା ଦିଶିଥିଲା କହିଥିଲି ସେହିମାନ ।
ତାହା ଏବେ ତୁମ ଆଗେ ଗୋଟି ଗୋଟି କରି
କହି ଯାଉଅଛି ଶୁଣ ଆହେ ଚାପଧାରୀ ।
"ରାଜସ୍ୱୀୟ ଯଜ୍ଞର ଯେ ଅନୁଷ୍ଠାତା ହେବ"
ବାରବର୍ଷ ଯାଏ ନାନା କଡ଼ଡ଼ା ଖାଇବ ।
ନାନା ଦୁଃଖେ ନାନା କଷ୍ଟେ ପେଡ଼ି ହେଉଥିବ
ଅନିବାର୍ଯ୍ୟ ଏହା ଜାଣ ହେ ରଘୁପୁଙ୍ଗବ ।

ରାଜାଙ୍କୁ କଷଣ ଦେବାପାଇଁ ଇନ୍ଦ୍ରଦେବ
ଦେବଦୂତକୁ ପଠାଇଥିଲେ ହେ ରାଘବ ।
ଐନ୍ଦ୍ରଜାଲିକ ବେଶରେ ସେହି ଦେବଦୂତ
ଅନ୍ତର୍ଦ୍ଧାନ ହେଲା ଦେଇ କଷଣ ପୂର୍ବୋକ୍ତ ।
ତେଣୁ ମୋର ଏହା ଅଟେ ପ୍ରତ୍ୟକ୍ଷ ଦର୍ଶନ
ସନ୍ଦେହର ଲେଶ ମାତ୍ର ନାହିଁ ଏଠି ଜାଣ ।
ଏ ରୂପେ ହେ ରାମ ! ମନ କରତା ଭୋକତା
ସେ ମନର ସଂଶୋଧନ ପାଇଁ କର ଚେଷ୍ଟା ।
ଆତପେ ହିମ ସଦୃଶ ବିବେକ ବଳରେ
ମନକୁ ବିଲୀନ କର ଆହେ ରଘୁବୀରେ ।
ତେବେ ପରମ ମଙ୍ଗଳ ହେବ ଯେ ତୁମର
ବ୍ରହ୍ମପଦ ପାଇଁ ଧନ୍ୟ ହେବ ଚରାଚର ।
ମନର ଲୟ ସାଧନେ ସକଳ ଦୁଃଖର
ଅବସ୍ଥାନ ଘଟିଥାଏ ତପସ୍ୱୀ ପ୍ରବର ।
ଚପଳ ମନକୁ କେଉଁ ରୂପେ ଆହେ ଦେବ
କବଳିତ କରିବଇଁ ଏକଥା କହିବ ।
କହନ୍ତି ବଶିଷ୍ଠ ଆହେ ରଘୁକୁଳଚନ୍ଦ୍ର
ଆବ୍ରହ୍ମ ଜୀବପର୍ଯ୍ୟନ୍ତ ଯେ ଜନ୍ମ ତ୍ରିବିଧ ।
ଏଥିପୂର୍ବେ ତୁମ୍ଭଙ୍କୁ ମୁଁ କହିଅଛି ସର୍ବ
ଆଶାକରେ ସେ ସକଳ ତୁମ୍ଭ ମନେ ଥିବ ।
କଳ୍ପନାରୁ ଚତୁର୍ମୁଖ ଦେହଧାରୀ ବ୍ରହ୍ମା
ଏ ପ୍ରପଞ୍ଚ ଜଗତର କରନ୍ତି ସର୍ଜନା ।
କଳ୍ପନାମୟୀ ଅବିଦ୍ୟା ଜନ୍ମମୃତ୍ୟୁ ଆଦି
ବିଚିତ୍ର ସଂସାରମାନ ସକଳ ସମ୍ପାଦି ।
ଚାରି ସହସ୍ର କଳପ କରି ଅବସ୍ଥାନ
ଅନନ୍ତଶାୟୀ ଶ୍ରୀବିଷ୍ଣୁ ହୁଅନ୍ତି ବିଲୀନ ।
କଳ୍ପନା ରୂପୀ ଅବିଦ୍ୟା ବାରମ୍ବାର ହୋଇ
ଉତ୍ପନ୍ନ ହୋଇଣ ଭବ ରୂପକୁ ଧରଇ ।
ପରେ ଆପେ ଆପେ ପୁଣି ନିବୃତ୍ତ ହୋଇଣ
ସମଷ୍ଟି ଅବିଦ୍ୟା ରୂପେ ପରମରେ ଲୀନ ।
ସେହି ପରମାତ୍ମାରୂପୀ ଯେବଣ ଈଶ୍ୱର
ବ୍ୟଷ୍ଟିରୂପେ ଏ ଜଗତେ ହୁଅଇ ସଞ୍ଚାର ।
ସେହି ପୁଣି ପଞ୍ଚୀକୃତ ଗଗନ ମଧ୍ୟରେ
ଜଳରୂପ ଧରି ପୁଣି ପ୍ରବେଶେ ଶୂନ୍ୟରେ ।
ଶସ୍ୟ ମଧ୍ୟେ ପ୍ରବେଶିଣ ଅନ୍ନରୂପ ଧରେ
ଭକ୍ଷିବା ପୁରୁଷ ଦେହେ ରହେ ଶୁକ୍ରାକାରେ ।

ମାତାପିତା ସମ୍ଭୋଗରେ ଗର୍ଭେ ପ୍ରବେଶିଣ
ଜୀବରୂପେ ଏ ଜଗତେ ଲଭଇ ଜନମ ।
ବାଲ୍ୟକାଳେ ବିଦ୍ୟାଭ୍ୟାସେ ଗୁରୁ ଅନୁଗାମୀ
ଅବଶ୍ୟ କର୍ତ୍ତବ୍ୟ ତାର ଆହେ ରଘୁମଣି ।
ଗୁରୁଦେବଙ୍କ ଗୃହରୁ ବାହୁଡ଼ି ଆସିଣ
ଅନୁସରୁଥିବ ସଦା ଗୁରୁଙ୍କ ବଚନ ।
ତୁମପରି ସୁବିବେକ ବୈରାଗ୍ୟ ସାଧନ
କରିବା ପାଇଁକି ସେହୁ ହୋଇବ ସକ୍ଷମ ।
ଏହି ଉପାୟ ଧରିଲେ ଏ ଚଳନ ମନ
ଆୟତ୍ତ ହୋଇପାରିବ ହେ ରଘୁନନ୍ଦନ ।
ସଂସାର ସର୍ବଥା ହେୟ, ମୁକ୍ତି ଉପାଦେୟ
ସ୍ୱଚ୍ଛଦୃଷ୍ଟି ବଳେ ଏହି ବିଚାର ଉଦୟ ।
ଏପରି ବିଚାରଶୀଳ ଅଟେ ଯେ ପୁରୁଷ
ସତ୍ତ୍ୱଗୁଣ ସୁସମ୍ପନ୍ନଧୀର ସେ ମନୁଷ୍ୟ ।
ପ୍ରକୃତ ଅଧିକାରୀ ସେ ମନ ବିଜୟରେ
ସେହି ଏକା ସପ୍ତଯୋଗ ମାର୍ଗକୁ ଆଚରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ସାଧକ ଜନ୍ମାବତାର ବର୍ଣ୍ଣନେ**
**ନାମ ୮୭ ତମ ସର୍ଗଃ**



## ୮୮ତମ ସର୍ଗଃ

## ଅଜ୍ଞାନ ଭୂମିକା ବର୍ଣ୍ଣନ

ବୋଲନ୍ତି ଶ୍ରୀରାମ ଶୁଣ ଆହେ ଭଗବାନ
ସପ୍ତଯୋଗ ମାର୍ଗ କଥା କହିଲ ଆପଣ ।
ପୁରୁଷାର୍ଥ ସାଧିନୀ ସେ ଯୋଗମାର୍ଗ କଥା
ବୁଝାଇ କହିବା ହେଉ ଆହେ ମହାମଥା ।
କହନ୍ତି ବଶିଷ୍ଠ ଜ୍ଞାନ ଭୂମି ସପ୍ତପଦୀ
ପୁଣି ଅଜ୍ଞାନ ଭୂମିଟି ସେହି ସପ୍ତପଦୀ ।
ଅସଂଖ୍ୟ ସୋପାନ ଭେଦ ଏ ଉଭୟ ମାର୍ଗେ
ସେମାନଙ୍କ ବିବରଣ ଶୁଣ ରାମ ଆଗେ ।
ପୁରୁଷ ପ୍ରବୃତ୍ତି ଅଟେ ସହଜାତ ଜାଣ
ସୁଦୃଢ଼ ଭୋଗ ବାସନା ତହିଁଯୁକ୍ତ ପୁଣ ।
ଉଭୟଙ୍କ ସଂଯୋଗରେ ଅଜ୍ଞାନର ଭୂମି
ଉଦ୍‌ଭୂତ ହୋଇଣ ଥାଏ ଆହେ ରଘୁମଣି ।

ସାଧନ ଚତୁଷ୍ଟୟ ଯା ଶାସ୍ତ୍ରରେ ବର୍ଣ୍ଣିତ
ଶ୍ରବଣ ମନନ ଆଦି ଯା କିଛି କଥିତ ।
ଜ୍ଞାନଭୂମିର ଉତ୍ପନ୍ନ ଏଥିମଧ୍ୟୁ ଜାଣ
ଅଜ୍ଞାନଭୂମି ବିଷୟ ଆଗେ ଶୁଣ ରାମ ।
ବ୍ରହ୍ମ ସ୍ୱରୂପରେ ଯଦି କରିପାର ସ୍ଥିତି
ଜ୍ଞାନୀଙ୍କ ମତରେ ତାହା ବୋଲାଇ ମୁକତି ।
ତହିର ଅଭାବେ ଯେହୁ ଅହଙ୍କାର ଭାବ
ଉଦୟ ହୁଏ 'ବନ୍ଧନ' ତାହାକୁ ଜାଣିବ ।
ରାଗଦ୍ୱେଷ ବଶୀଭୂତ ନୁହଁନ୍ତି ଯେମାନେ
ଜ୍ଞାନ ରୂପରୁ ଚାଳିତ ନୁହନ୍ତି ସେମାନେ ।
କେବେ ହେଁ ନୁହଁନ୍ତି ସେହୁ ଅଜ୍ଞତାର ବଶ
ସ୍ୱରୂପ କହିଲି ଜାଣ ଦଶରଥ ଶିଷ୍ୟ ।
ବିଚ୍ୟୁତ ହୋଇପଡ଼ିଲେ ସ୍ୱରୂପରୁ ରାମ
ଅସତ୍ୟ ପଦାର୍ଥ ମଧ୍ୟେ ହୋଇଯିବ ଲୀନ ।
'ବିଷମ ମୋହ' ବେଳା ହିଁ ଏହି ସେ ଅବସ୍ଥା
ଏଥିକି ଗୋଡ଼ ଖସିଲେ ପଡ଼େ ଦୂରବସ୍ଥା ।
ଅନ୍ତରର ଅହଂଭାବ ବାହ୍ୟ ଭେଦବୁଦ୍ଧି
ଅସ୍ତମିତ ହେଲେ ଯେବେ ଆସେ ଶୁଦ୍ଧବୁଦ୍ଧି ।
ସପ୍ରକାଶ ଚଇତନ୍ୟ ରହେ ଅବଶିଷ୍ଟ
ସ୍ୱରୂପ ସ୍ଥିତିର ସପ୍ରକାଶ ଚୈତନ୍ୟରେ
ଅଜ୍ଞାନ ଭାବ ହେ ରାମ ଆରୋପିତ ହେଲେ ।
ସପ୍ତବିଧ ଅଜ୍ଞାନ ଭୂମିର ପରକାଶ
ସେ ସବୁ କହିବା ରାମ ଏବେ ସବିଶେଷ ।
ବୀଜ ଜାଗ୍ରତ, ଜାଗ୍ରତ, ମହା ଜାଗରତ
ଜାଗରତ ସ୍ୱପ୍ନ, ସ୍ୱପ୍ନ, ମହା ଜାଗରତ ।
ସୁସୁପ୍ତିକି ମିଶାଇଣ ସପ୍ତବିଧ ଜାଣ
ଅଜ୍ଞାନ ଭୂମିର ଏହିମାନ ଯେ ପ୍ରମାଣ ।
ସୁନିର୍ମଳ ମାୟାଶକ୍ତିମାନ ଚଇତନ୍ୟ
ଯା ମଧ୍ୟେ ଭାବୀଜଗତ୍‌ବୀଜ ସୁପ୍ରଚ୍ଛନ୍ନ ।
ଯେହୁ ପୁଣି ସୁନିର୍ମଳ ଚିଦାପାସ ରୂପୀ
'ବୀଜ ଜାଗ୍ରତଭୂମି' ସେ ଜାଣ ସର୍ବବ୍ୟାପୀ ।
ଏହି ଯେ ଜଗଦ୍‌ବୀଜ ଅଙ୍କୁରିତ ହୋଇ
"ଏହିମୋ ଦେହ, ମୋ ଭୋଗ୍ୟ ପଦାର୍ଥ ବୋଲାଇ ।"
ଏହି ଆକାରରେ ଯେହୁ ହୁଏ ଆକାରିତ
'ଜାଗ୍ରତଭୂମି' ତା ନାମ ଆହେ ରଘୁସୁତ ।

ଏ ଜାଗ୍ରତ ପ୍ରତ୍ୟୟର ସୁଦୃଢ଼ ଅବସ୍ଥା
"ମହା ଜାଗ୍ରତ ଭୂମି" ତା' ରାମ ମହାମଥା ।
ମହାଜାଗ୍ରତର ମନୋନୟ ଯେ ବିସ୍ମୃତି
'ଜାଗ୍ରତ ସ୍ୱପ୍ନ' ତାହାକୁ କହି ରଘୁପତି ।
ସପନରେ ସତ୍ୟ କିନ୍ତୁ ଜାଗରଣେ ମିଥ୍ୟା
ଏ ପ୍ରତ୍ୟୟ 'ସ୍ୱପ୍ନଭୂମି' ବିଦିତ ସର୍ବଥା ।
ମହାଜାଗ୍ରତ ଭୂମିର ହୃଦ ମଧ୍ୟେ ସ୍ଥିତ
କଣ୍ଠରୁ ହୃଦୟ ଯାଏ ଯେ ନାଡ଼ୀ ବିସ୍ତୃତ ।
ଏହି "ସ୍ୱପ୍ନଭୂମି ସ୍ଥାନ" ଅଟେ ତା ଶ୍ରୀରାମ
ଜଗନ୍ମୟୀ ବିଶ୍ୱଧାତ୍ରୀଙ୍କର ବାସସ୍ଥାନ ।
ସ୍ୱପନରେ ସ୍ଥୂଳଦେହ ଅଟେ ଅଗୋଚର
ପ୍ରଫୁଲ୍ଲତା ଶୂନ୍ୟ ତେଣୁ ଏ ସ୍ଥୂଳ ଶରୀର ।
ସୁଦୃଢ଼ ଅଭିନିବେଶ ବଳରେ ସେ ସ୍ୱପ୍ନ
ସତ୍ୟ ରୂପେ ପ୍ରତିଭାତ ହୋଇଥାଏ ଜାଣ ।
"ମହା ଜାଗ୍ରତ ଭୂମିର" ସ୍ୱରୂପ ସେ ଧରେ
'ସ୍ୱପ୍ନ ଜାଗ୍ରତ ଭୂମି' ତା ଜାଣ ରଘୁବୀରେ ।
ଅସ୍ତିତ୍ୱବୋଧ ହୀନତା ନିଦ୍ରାସମୟରେ
ଜୀବର ଯେ ଅବସ୍ଥା ତା "ସୁସୁପ୍ତି" ନାମରେ ।
କଥିତ ହୋଇଛି ସର୍ବ ଶାସ୍ତ୍ରମାନଙ୍କରେ
ଭାବୀ ଦୁଃଖର ବାସନା ସକ୍ରିୟ ସେ କାଳେ ।
ଏହି ଯେ ସପ୍ତ ଅଜ୍ଞାନ ଭୂମି ହେ ଶ୍ରୀରାମ
ଶତ ଶାଖା ପ୍ରଶାଖାରେ ବିଭକ୍ତ ସେମାନ ।
ନିର୍ମଳ ବୋଧ ସ୍ୱରୂପ ଆତ୍ମ ଦରଶନ
ବିଚାର ବୁଦ୍ଧି ବଳରେ କରିଲେ ସାଧନ ।
ଏହି ସପତ ଅଜ୍ଞାନ ଭୂମିରୁ ହେ ରାମ
ଉତ୍ତୀର୍ଣ୍ଣ ହୋଇପାରିବ ସତ୍ୟ ଏ ବଚନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ଉତ୍ପତ୍ତି ପ୍ରକରଣେ**
**ଅଜ୍ଞାନ ଭୂମିକା ବର୍ଣ୍ଣନେ**
**ନାମ ୮୮ତମ ସର୍ଗଃ**



## ୮୯ତମ ସର୍ଗଃ
## ଜ୍ଞାନ ଭୂମିକା ଉପଦେଶ

ବୋଲନ୍ତି ବଶିଷ୍ଠ ହେ ନିଷ୍ପାପ ଏବେ ଶୁଣ
ସପ୍ତପଦୀ ଜ୍ଞାନଭୂମି କରୁଛି ବର୍ଣ୍ଣନ ।
ଏହି ଜ୍ଞାନଭୂମି କଥା କରନ୍ତେ ଶ୍ରବଣ
କେଭେଁହେଲେ ମୋହଗ୍ରସ୍ତ ନୋହିବେ ଆପଣ ।
ଏ ସପ୍ତଭୂମି ଜ୍ଞାନକୁ ସୁଜ୍ଞାନୀ ପ୍ରବୀଣ
'ଅବବୋଧ', ବୋଧ ନାମେ କରନ୍ତି ବଖାଣ ।
ସତ୍ୟସ୍ୱରୂପର ବୋଧ କି ଅବା ମୁକତି
'ଏକ' କଥା ବୁଝୁଥିବ ଆହେ ରଘୁପତି ।
ପ୍ରଥମେ 'ଶୁଭେଚ୍ଛା' ଦ୍ୱିତୀୟରେ 'ବିଚାରଣା'
ତୃତୀୟେ 'ତନୁମାନସା' ଆହେ ମହାମନା ।
ଚତୁର୍ଥରେ 'ସତ୍ତାପତ୍ତି' ପରେ 'ଅସଂସକ୍ତି'
ଷଷ୍ଠେ 'ପଦାର୍ଥ ଭାବିନୀ' ଆହେ ରଘୁପତି ।
ସପ୍ତମେ 'ତୁର୍ଯ୍ୟାଗା' ଏହି ସପ୍ତଜ୍ଞାନ ଭୂମି
ଅନୁସରି ଚଳୁଥିଲେ ହେବ ତତ୍ତ୍ୱଜ୍ଞାନୀ ।
ଅଧିଗତ ହୋଇଗଲେ ଏହି ସପ୍ତଭୂମି
ମୁକତି ଲାଭ କରଇ ପୁରୁଷ ସେକ୍ଷଣି ।
ଗୁରୁଶାସ୍ତ୍ର ସହାୟରେ ପରମତତ୍ତ୍ୱ ଲାଭ
ଆଉ ମୂଢ଼ଭାବେ ରହିବାଟା ଅସମ୍ଭବ ।
ବୈରାଗ୍ୟ ଉଦୟ ହେଲେ ଏମନ୍ତ ଯେ ଇଚ୍ଛା
ପଣ୍ଡିତଗଣ କହନ୍ତି ତାହାକୁ 'ଶୁଭେଚ୍ଛା' ।
ଶାସ୍ତ୍ର, ସତ୍‌ସଙ୍ଗ ପ୍ରଭାବେ ବୈରାଗ୍ୟ ଆଚରୀ
ସଦାଚାର ପ୍ରାପତିକୁ 'ବିଚାରଣା' ବୋଲି ।
'ଶୁଭେଚ୍ଛା' ଓ 'ବିଚାରଣା' ପଥ ଅନୁସରି
ଇନ୍ଦ୍ରିୟ ଭୋଗ୍ୟ ବିଷୟେ ଆସକ୍ତି ନ କରି ।
'ତନୁମାନସା' ନାମରେ ଏହି ଅନାସକ୍ତି
ପ୍ରସିଦ୍ଧି ଲଭିଛି ଜାଣ ଆହେ ରଘୁପତି ।
ଏହି ସମୟରେ ମନ ଲଭେ କ୍ଷୀଣାବସ୍ଥା
ତେଣୁ କରି ଏହା 'ତନୁମାନସ' ଅବସ୍ଥା ।
ଏ ତିନି ଭୂମିରେ ଦୃଢ଼ ଅଭ୍ୟାସ ଲଭିଲେ
ବିଷୟ ବିରତି ଆସି ପହଞ୍ଚଇ ହେଲେ ।
ଏ ଚିତ୍ତ ଆତ୍ମାରେ ଅବସ୍ଥାନ କରେ ତେବେ
ସତ୍ତାପତ୍ତି' ଆଖ୍ୟା ତାକୁ ଦ୍ୟନ୍ତି ଜ୍ଞାନୀ ସର୍ବେ ।
ସକଳ ସଂସ୍କାରମାନ ବାହ୍ୟ ଓ ଅନ୍ତର
'ସତ୍ତାପତ୍ତି' ଅବଲମ୍ବେ କ୍ଷୟ ତାହାଙ୍କର ।
ତା ଫଳେ ସମାଧି ଲାଭ ହୁଏ ସାଧକର
ଫଳରେ ସାଧକ ଲଭେ ବ୍ରହ୍ମ ସାକ୍ଷାତ୍‌କାର ।
'ଅସଂସକ୍ତି' ବୋଲି ତାକୁ କହନ୍ତି ପଣ୍ଡିତେ
ଜ୍ଞାନର ପାବଛମାନ ବୁଝ ରଘୁନାଥେ ।
ପରେ "ମୁହିଁ ସେହି ବ୍ରହ୍ମ" ଏ ବୋଧ ଆସିଲେ
ପଦାର୍ଥ ଜ୍ଞାନ ନ ପଶେ ଅନ୍ତରେ, ବାହାରେ ।

"ପଦାର୍ଥ ଭାବିନୀ" ସେହି ଅବସ୍ଥା ବୋଲାଇ
ସାଧକର ଭେଦଜ୍ଞାନ ସତ୍ତା ନ ରହଇ ।
ସାଧକର ବାହ୍ୟ କର୍ମ ଯାହା ଦରକାର
ସେଥିପ୍ରତି କିଛି ଚେଷ୍ଟା ନ ଥାଏ ତାହାର ।
ଅନ୍ୟମାନେ ତାହା ସବୁ କରନ୍ତି ସମ୍ପୂର୍ଣ୍ଣ
ବିଦେହ ଅବସ୍ଥାର ଯେ ଏହି ସବୁ ଚିହ୍ନ ।
ଏ ଷଡ଼ବିଧ ଜ୍ଞାନଭୂମି ହୃଦେ ଅବସ୍ଥିତ
ହେଲେ ସର୍ବ ବିଘ୍ନ ଚେଷ୍ଟାମାନ ପରାଚିତ ।
ସେହି ଜ୍ଞାନ ଭୂମି ନାମ୍ନ 'ତ୍ୱର୍ଯ୍ୟଶା' ଅଟଇ
ଭେଦ ଜ୍ଞାନ ପାଇଁ ତହିଁ ବାଟ ଆଉ କାହିଁ ?
ଜୀବନ୍ମୁକ୍ତ ବ୍ୟକ୍ତିମାନେ ଏହି ତ୍ୱର୍ଯ୍ୟଗାରେ
ବିଚରଣ କରୁଥାନ୍ତି ରାମ ସଦାବେଳେ ।
ଏ ସପ୍ତମ ଜ୍ଞାନଭୂମି ଯେହୁ ଲଭିଥାଇ
ଆତ୍ମାରାମ ରୂପେ ଆତ୍ମକ୍ରୀଡ଼ା କରୁଥାଇ ।
ମହତ ପଦ ପ୍ରାପତ ହୁଏ ରାମ ସେହି
ବାହ୍ୟ କର୍ମେ ଲିପ୍ତ ପାଇଁ ଇଚ୍ଛା ନ ବଳଇ ।
ଷଷ୍ଠ ଭୂମିରେ ପୂର୍ଣ୍ଣ ନିଃଚେଷ୍ଟ ରହନ୍ତି ।
ତଥାପି ନିକଟବର୍ତ୍ତୀ ବ୍ୟକ୍ତିଙ୍କ କଥାରେ
ସଦାଚାର ମାନ ପାଳିଥାଆନ୍ତି ସାଦରେ ।
ସୁନ୍ଦରୀ କାମିନୀ ଯେହ୍ନେ, ସୌନ୍ଦର୍ଯ୍ୟ ଦେଖାଇ
ସୁଷୁପ୍ତ ବ୍ୟକ୍ତିର ମନ ଟାଳି ନ ପାରଇ ।
କୌଣସି କର୍ମରେ ସୁଦ୍ଧା ଆତ୍ମାରାମ ବ୍ୟକ୍ତି
ପ୍ରଭାବିତ ହୋଇ ନ ପାରନ୍ତି ରଘୁପତି ।

**ଇତିଶ୍ରୀ ଯୋଗବାଶିଷ୍ଠ ଉତ୍ପତ୍ତି ପ୍ରକରଣେ**
**ଜ୍ଞାନଭୂମିକା ଉପଦେଶ ବର୍ଣ୍ଣନେ**
**ନାମ ୮୯ତମ ସର୍ଗଃ**



## ୯୦ତମ ସର୍ଗଃ

## ଯୁକ୍ତ ଉପଦେଶ

ମୁଦ୍ରିକାକାର ଧରନ୍ତେ ସୁବର୍ଣ୍ଣ ଯେପରି
ନିଜକୁ ମୁଦ୍ରିକା ବୁଝେ ସ୍ୱର୍ଣ୍ଣତ୍ୱ ପାଶୋରି ।
ଆତ୍ମା ସେପରି ନିଜତ୍ୱ ଭୁଲିଯାଇ କରି
ନିଜ ମଧ୍ୟେ ଜୀବଭାବ କଳପନା କରି ।
ରୋଦନ କରି ବସଇ ନିଜତ୍ୱ ପାଶୋରି
ଅହଂଭାବର ପ୍ରଭାବ ବୁଝି ଚାପଧାରୀ ।
ଗୁରୁଙ୍କଠାରୁ ଏସନ ଶୁଣି ରଘୁପତି
ସନ୍ଦେହ ମୋଚନ ପାଇଁ ପୁଣି ପଚାରନ୍ତି ।
ସ୍ୱର୍ଣ୍ଣରେ ମୁଦ୍ରିକା ଭାବ ଉଦେହେଲା ସମ
ଆତ୍ମାରେ "ମୁଁ ଭାବ" କିମ୍ବା ଦାତ ତପୋଧନ ।
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ଯାହାକି ସତ୍ ଅଥବା ସତ୍ୟ ଯେ ପଦାର୍ଥ ।
କେବଳ ତାର ଉତ୍ପତ୍ତି ବିନାଶ କାରଣ
ଉଚିତ୍ ହେବ ପଚାରି ବୁଝିବା ହେ ରାମ ।
କିସ ବା ଉତ୍ପତ୍ତି କିମ୍ବା ବିନାଶ ତାହାର
ଯାହାକି ଅସତ୍ୟ ଅଟେ ଆହେ ରଘୁବୀର ।
ସତ୍ୟ ନୁହେଁ ଅହଂଭାବ ବସ୍ତ କଦାଚନ
ସୁବର୍ଣ୍ଣରୁ ମୁଦ୍ରିକାର ଉତ୍ପନ୍ନ ଯେସନ ।
ସତ୍ୟ ସ୍ୱରୂପ ବ୍ରହ୍ମ ହିଁ 'ଅହଂ' ଆକାରରେ
ଉତ୍ପନ୍ନ ହୋଇ ଯେ ଥାଏ ଅବିଦ୍ୟା ବଳରେ ।
ମୁଦ୍ରିକା ଯଦି ସୁବର୍ଣ୍ଣ ବୋଲାଇବ ଦେବ
ମୁଦିକି ମୁଦ୍ରିକା ବୋଲି କିମ୍ବା କୁହାଯିବ ।
ମନେହୁଏ ଏହି ତଥ୍ୟ ହୋଇଲେ ନିର୍ଣ୍ଣିତ
ବ୍ରହ୍ମର ସ୍ୱରୂପ ଜାଣିପାରିବି ନିଶ୍ଚିତ ।
କହନ୍ତି ବଶିଷ୍ଠ ରାମ ଅସଦ ପଦାର୍ଥର
କୌଣସି ଆକାର ନ ଥାଏଟି ରଘୁବୀର ।
ତାହାର ଆକାର ଯଦି ବର୍ଣ୍ଣିବାକୁ ଚାହଁ
ବନ୍ଧ୍ୟାପୁତ୍ରର ଆକାର କିରୂପ ତା କହ ।
ବାସ୍ତବରେ ଏ ମୁଦ୍ରିକା ଭ୍ରାନ୍ତିହିଁ କେବଳ
ଅସତ୍‌ମାୟା ଅବିଦ୍ୟା ତାର କଳେବର ।
ମରୀଚିକା, ଦୁଇଚନ୍ଦ୍ର, 'ମୁଁ ଭାବ' ରାଘବ
ବିଚାର ବଳେ ବିଲୀନ ହେବାଯାଏ ଥିବ ।
ତେତେବେଳେ ବୁଝିଯିବ ତାହାର ଆକୃତି
ଅସତ୍ୟ ଭ୍ରମ ସଙ୍କୁଳ ବୋଲି ରଘୁପତି ।
ଶୁକ୍ତିରେ ରଜତ ଯେହ୍ନେ କରଇ ଦର୍ଶନ
ଅଣୁମାତ୍ର ରଜତକି ପାଏ ସେ ଅଜ୍ଞାନ ।
ବିଚାର ଦୃଷ୍ଟି ବିହୀନେ ଘଟେ ସେ ସକଳ
ବିଚାର ଦୃଷ୍ଟିରେ ମିଥ୍ୟା ଏହା ରଘୁବାଳ ।
ବାସ୍ତବରେ ଯାହାନାହିଁ, ଭାବିଲେ କେବଳ
ନାସ୍ତିତ୍ୱ ପ୍ରମାଣ ତାର ହୁଏ ରଘୁବୀର ।
ଅସତ୍ ଅହଂ ଭାବର ଯେଉଁ କଳପନା
ତା ଅଟେ ଅବିଦ୍ୟା ମାୟା ସୃଷ୍ଟି ସରଜନା ।

ସୁନାରେ ମୁଦ୍ରିକା ଭାବ ନ ଥାଏ ଯେସନ
ପରମାତ୍ମାରେ 'ମୁଁ' ଭାବ ନ ଥାଏ ତେସନ ।
ବିଧାତା, ବ୍ରହ୍ମାଣ୍ଡେ, ପ୍ରଜାପତି ଆଦି ଯେତେ
ଏ ସକଳ ଭାବ ରାମ ଜାଣ ସେହି ମତେ ।
ବ୍ରହ୍ମ ଛଡ଼ା ତୁମେ ଆମେ ଆଦିକରି ଯେତେ
ସ୍ୱତନ୍ତ୍ର ସତ୍ତା ବିହୀନ ଅଟୁ ଯେ ସମସ୍ତେ ।
ବ୍ରହ୍ମ, ଜୀବ-ଜଗତର ପରମାର୍ଥ ରୂପ
ଶାନ୍ତ ସ୍ୱତନ୍ତ୍ର ଶାଶ୍ୱତ ଯେ ଶିବ ସ୍ୱରୂପ ।
ଶ୍ରୀରାମ ବୋଇଲେ ଦେବ ପୁଣି ମତେ କହ
ବୁଝିଲି ମୁଁ ପରଂବ୍ରହ୍ମ ସର୍ବ ସୃଷ୍ଟିମୟ ।
ଏ ବିଶାଳ ସୃଷ୍ଟି କିମ୍ବା ଦୃଷ୍ଟିରେ ଗୋଚର
ବୁଝାଇ କହିବା ହେଉ ଆହେ ତପୀବର ।
କହନ୍ତି ବଶିଷ୍ଠ ଏବେ ଶୁଣ ମୁଁ କହୁଛି
ପୂର୍ଣ୍ଣ ସ୍ୱରୂପ ଯେ ବ୍ରହ୍ମ ହେଜ ରଘୁବଂଶୀ ।
ପୃଥକ୍ ନୁହେଁ ଏ ସୃଷ୍ଟି ବ୍ରହ୍ମଠାରୁ ରାମ
ଜଳହିଁ ସାଗର ଜଳେ ଯଥା ବିଦ୍ୟମାନ ।
ଦ୍ରବଭାବ ଘେନି ଜଳେ ଚଞ୍ଚଳତା ରହେ
ପରମ ପଦେ ଚାଞ୍ଚଲ୍ୟ କିଛି ହିଁ ନଥାଏ ।
ବ୍ରହ୍ମସ୍ଥିର, ଅଚଞ୍ଚଳ, ବ୍ରହ୍ମ ଯେ ଅଟଳ
କଳ୍ପନା ରାଜ୍ୟର ବସ୍ତୁ ବ୍ରହ୍ମ ସୁନିର୍ମଳ ।
ସେହି ସ୍ଥିର ଚଇତନ୍ୟ ପରମପଦରୁ
ସ୍ଫୁରନ୍ତି କୋଟି ବ୍ରହ୍ମାଣ୍ଡ ଏକାଂଶ ମଧରୁ ।
ସେ ସବୁ ଜଗତ ମଧ୍ୟ ଚୈତନ୍ୟ ସ୍ୱରୂପ
ପ୍ରକାଣ୍ଡ ଅଗ୍ନିପଟଳ, ସ୍ଫୁଲିଙ୍ଗୁ ଯେ ରୂପ ।
ପରିପକ୍ୱ ହୋଇ ନାହିଁ ଯେଣୁ ତୁମ ଜ୍ଞାନ
ଜଗଦାକାରେ ସ୍ଫୁରିତ ସେହି ଚଇତନ୍ୟ ।
ଚେତ୍ୟ ବା ବିଷୟାକାରେ ହୁଏ ପ୍ରତିଭାତ
ସୃଷ୍ଟି ରୂପେ ସେ ଚୈତନ୍ୟ ତୁମକୁ ପ୍ରତୀତ ।
ଜ୍ଞାନ ପରିପୃଷ୍ଟ ଯେବେ ହୋଇବ ତୁମର
ବ୍ରହ୍ମରୂପେ ଦେଖାଯିବ ଏ ସୃଷ୍ଟି ସକଳ ।
ବ୍ରହ୍ମ ନାମାନ୍ତର ମାତ୍ର ଏ ସୃଷ୍ଟି ସମସ୍ତ
ଆକାଶ ମଧ୍ୟେ ଆକାଶ କଳ୍ପନା ଯେମନ୍ତ ।
ଜଗତର ଆବିର୍ଭାବ ମନରୁ ହିଁ ଜାଣ
ମନର ଧ୍ୱଂସ ହୁଅନ୍ତେ ଏ ସୃଷ୍ଟି ବିଲୀନ ।
ହେଲେ ହେଁ ସୃଷ୍ଟି ପରମ ପଦେ ଅବସ୍ଥିତ
ମନ ବିନାଶେ ନଥାଏ ସୃଷ୍ଟିର ଅସ୍ତିତ୍ୱ ।
ସୃଷ୍ଟି ଆକାରରେ ବ୍ରହ୍ମ ବ୍ରହ୍ମେ ଅବସ୍ଥିତ
ଏହି କଥା ମନେରଖ ଆହେ ରଘୁନାଥ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଯୁକ୍ତ ଉପଦେଶ ବର୍ଣ୍ଣନେ**
**ନାମ ୯୦ତମ ସର୍ଗଃ ।**



## ୯୧ତମ ସର୍ଗଃ

## ଚଣ୍ଡାଳୀ ମୋଚନ

ବୋଲନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଅବିଦ୍ୟା ବିଷୟେ କଲି ବହୁତ ବର୍ଣ୍ଣନ ।
ଯଦିଓ ବିବେକୀ ପାଇଁ ନାହିଁ ତହିଁ କିଛି
ଅବିବେକୀ ପାଇଁ ତାର ଗୁରୁତ୍ୱ ରହିଛି ।
ଯେଦିନ ଲବଣ ନୃପ ଭ୍ରାନ୍ତି ଦର୍ଶନରେ
ଶ୍ରୁତି ଅଗୋଚର ଦୁଃଖମାନ ଭୋଗ କଲେ ।
ସଚୀବ ମଣ୍ଡଳୀ ସହ ପରଦିନ ପୁଣି
ବିନ୍ଧ୍ୟ ପର୍ବତେ ଚଳିଲେ ସେ ନୃପ ଅଗ୍ରଣୀ ।
ସେଠାରେ ପହଞ୍ଚି ଏଣେତେଣେ ସେ ବୁଲନ୍ତି
ସ୍ୱପ୍ନ ଦୃଷ୍ଟବନ ଅନୁସରଣ କରନ୍ତି ।
ସେହି ଭୟାବହ ଶୁଷ୍କ ଅରଣ୍ୟ ମଧ୍ୟରେ
ଦଳବଳ ସହ ରାଜା ଆସି ପହଞ୍ଚିଲେ ।
ପୂର୍ବ ଅନୁଭୂତ ସବୁ ବିଷୟ ଦେଖିଲେ
ଚଣ୍ଡାଳମାନଙ୍କୁ ଦେଖି ଚିହ୍ନି ପକାଇଲେ ।
ନିଜେ ସେ ଯେଉଁ ସ୍ଥାନରେ ଚଣ୍ଡାଳ ରୂପରେ
ଅବସ୍ଥାନ କରୁଥିଲେ, ତହୁ ପହଁଞ୍ଚିଲେ ।
ଅବିକଳ ସେହି ଗ୍ରାମ ଚଣ୍ଡାଳ ନିବାସ
ଚଣ୍ଡାଳ ବାଳକଙ୍କର ସେ କ୍ରୀଡ଼ା ବିଳାସ ।
ରାଜାଙ୍କର ଅନୁଗାମୀ ସେ ଚଣ୍ଡାଳଗଣ
ଆପଣାର ବନ୍ଧୁହୀନ ପୁତ୍ର କନ୍ୟାମାନ ।
ଧାଇଁ ଆସେ କାନ୍ଦି କାନ୍ଦି ବୁଢ଼ୀ ଚଣ୍ଡାଳୁଣୀ
ସନ୍ତାନ ହରାଇ ବୁକୁ ଫାଟେ ତାର ପୁଣି ।
ସାନ୍ତ୍ୱନା ଦେଇ ତାହାକୁ ପୁଚ୍ଛନ୍ତି ରାଜନ
କହ କି ଘଟିଛି ତୋର କିମ୍ବା ଏ ରୋଦନ ।
ରାଜା ବାଣୀ ଶୁଣି ବୃଦ୍ଧା ବାଷ୍ପାକୁଳ କଣ୍ଠେ
କହିଯାଏ ତାର କଥା ରାଜାଙ୍କ ନିକଟେ ।
ପୁକ୍‌କସ ଘୋଷ ଅଟଇ ମୋର ସ୍ୱାମୀ ନାମ
ତାଙ୍କ ଔରସେ କନ୍ୟାଏ ହୋଇଲା ଜନମ ।

ବିବାହ ବୟସ ତାର ଯହୁଁ ଆସି ହେଲା
ଦୈବାତ୍ ଜନୈକ ରାଜା ଆସି ପହଞ୍ଚିଲା ।
ସେ ରାଜା ସହିତ ତାର ହୋଇଲା ବିବାହ
ଦୁହିଙ୍କି ଘାରି ବସିଲା ଦୁନିଆର ମୋହ ।
ଏହି ଗ୍ରାମେ ରାଜା ରହି ବସବାସ କଲେ
ଦୁଇ ପୁତ୍ର ଏକ କନ୍ୟା ଜନମ ଲଭିଲେ ।
ଏହିପରି ବହୁ କାଳ ଗତ ହୋଇଗଲା
ଅକାଳ ଦୁର୍ଭିକ୍ଷ ଆଦି ଏ ଗ୍ରାମେ ପଡ଼ିଲା ।
ଖାଦ୍ୟଭାବେ ଗ୍ରାମବାସୀ ଦୂରେ ପଳାବନ୍ତି
ପଥ ମଧ୍ୟେ ବହୁଜନ ପରାଣ ହରାନ୍ତି ।
ମୋର ଝିଅ ଜ୍ୱାଇଁ, ପୁତ୍ର, କନ୍ୟାଙ୍କ ସହିତ
ପଳାୟନ କରୁଥିଲେ ପାଇ ପେଟ କଷ୍ଟ ।
ପଥ ମଧ୍ୟେ ମୃତ୍ୟୁ ଆସି ତାଙ୍କୁ ଗ୍ରାସ କଲା
ସୁନାର ସଂସାର ମୋର ଚୂନା ହୋଇଗଲା ।
ଏହିତ ରାଜନ ମୋର ରୋଦନ କରିଣ
ଆଉ କି କହିବି ରାଜା ତୁମେ ତ ସର୍ବଜ୍ଞ ।
ବୁଢ଼ୀ ଚଣ୍ଡାଳୁଣୀଠାରୁ ଏହି କଥା ଶୁଣି
ଚିତ୍ର ପ୍ରତିମା ପରାଏ ଉଭା ସେ ନୃମଣି ।
ଆଶ୍ଚର୍ଯ୍ୟ ହୋଇ ରାଜନ କରନ୍ତି ଚିନ୍ତନ
ପୂର୍ବ ଅନୁଭୂତିମାନ ନାଚେ ତାଙ୍କ ମନ ।
ଧନରତ୍ନମାନ ରାଜା ବୁଢ଼ୀ ହସ୍ତେ ଦେଲେ
ସକଳ କଷ୍ଟ ତାହାର ନିବାରଣ କଲେ ।
କିଛି କାଳ ତହିଁ ରାଜା ଅବସ୍ଥାନ କରି
ନିଜର ରାଜଧାନୀକୁ ଆସନ୍ତି ବାହୁଡ଼ି ।
ପରଦିନ ପ୍ରାତଃ କାଳେ ସଭାକୁ ଆସନ୍ତି
ଏହି ଗୁରୁ ପ୍ରଶ୍ନ ଗୋଟି ମୋତେ ପଚାରନ୍ତି ।
'ହେ ମୁନେ ! ସପନ ମାର୍ଗେ ଯାହା ଦେଖିଥିଲି
ସ୍ଥୁଳ ଜଗତେ ସେ ସବୁ ଘଟିଲା କିପରି ?
ସମୀଚୀନ ଉତ୍ତର ମୁଁ ତାଙ୍କୁ ପ୍ରଦାନନ୍ତେ
ରାଜାଙ୍କ ସଂଶୟ ଦୂରୀଭୂତ ଆଚମ୍ୱିତେ ।
ମନୁଷ୍ୟମାନଙ୍କୁ ରାମ ଏହି ଯେ ଅବିଦ୍ୟା
ଭ୍ରାନ୍ତ କରି ପଦେ ପଦେ ଘାରୁଥାଏ ସଦା ।
ସତକୁ ଅସତ କରେ ଅସତକୁ ସତ
ଅବିଦ୍ୟାର ଖେଳ ଏବେ ବୁଝ ରଘୁନାଥ ।
ରାମ ବୋଇଲେ ହେ ଦେବ ନୃପତି ଲବଣ
ସପନରେ ଯାହାସବୁ କଲେକ ଦର୍ଶନ ।

ଯାହାସବୁ ଉପଭୋଗ କରିଥିଲେ ତେବେ
ସ୍ଥୁଳ ଜଗତରେ ତାହା ଘଟିଲା କି ଭାବେ ?
ମୋର ଏ ସଂଶୟ ଦେବ କର ବିଦୂରୀତ
କାଳ କାଳ ଯେପରି ମୁଁ ହେବି ଉପକୃତ ।
ବୋଲନ୍ତି ବଶିଷ୍ଠ ରାମ ଅବିଦ୍ୟା ପ୍ରଭାବେ
ସକଳ ସମ୍ଭବ ହୁଏ ଏ ନଶ୍ୱର ଭବେ ।
ଅବିଦ୍ୟା ହେତୁରୁ ଚିତ୍ତ ବିପର୍ଯ୍ୟୟ ହେଲେ
ଭ୍ରମ, ମୋହ, ଅହଂଭାବ ଜନମନ୍ତି ଭଲେ ।
କାକତାଳୀୟ ମତରେ ଚିତ୍ତସ୍ଥ ବାସନା
ଆଣି ପହଞ୍ଚାଉଥାଏ ସକଳ ଘଟନା ।
ସତ ହେଉ ବା ଅସତ ପୂର୍ବକାଳେ ରାମ
ଲବଣ ନାମକ ରାଜା ଥିଲେ ଏହି ଗ୍ରାମ ।
ଏହି ଯେ ଘଟଣା ଘଟିଥିବ ତେତେବେଳେ
ଏ ଲବଣ ରାଜା ଏବେ ଦେଖେ ପ୍ରତ୍ୟକ୍ଷରେ ।
କେବେ କେବେ ସ୍ୱପନରେ ପୂର୍ବକାଳ କଥା
ଠିକ୍ ଠିକ୍ ମନେ ପଡ଼ି ଯାଉଥାଏ ଯଥା ।
ସେହି ଭାବେ ବୋଧହୁଏ ବିନ୍ଧ୍ୟ ପର୍ବତରେ
ଚଣ୍ଡାଳ ଗ୍ରାମ ଘଟଣା ଘଟେ ଏ ପ୍ରକାରେ ।
ଲବଣ ରାଜା ମନରେ ଆସି ନାଚିଗଲା
ଗୋଟି ଗୋଟି କରି ଘଟାଇଲା ସବୁ ପାଲା ।
ଅଥବା ଐନ୍ଦ୍ରଜାଲିକ ପ୍ରଭାବେ ରାଜନ
ଯାହାସବୁ ଦେଖିଥିଲେ ସ୍ୱପନ ରାଜ୍ୟେଣ ।
ବିଦ୍ୟାଚଳବାସୀ ଚଣ୍ଡାଳଙ୍କ ମନେ ତାହା
ପ୍ରତିବିମ୍ବିତ କରାଇଥିଲା ରଘୁନାହା ।
ସର୍ବାଧାର ଚିନ୍ମୟ ଆତ୍ମସତ୍ତା ଦ୍ୱାରା
ବାହ୍ୟ ଅନ୍ତର୍ଗତ ବସ୍ତୁ ପୂର୍ଣ୍ଣ ସୃଷ୍ଟି ସାରା ।
ପ୍ରକାଶ ମାନ ହୁଅନ୍ତି ଜାଣ ହେ ଶ୍ରୀରାମ
ଚୈତନ୍ୟ ହିଁ ଚୈତନ୍ୟର ପ୍ରକାଶକ ଜାଣ ।
ଚୈତନ୍ୟ ଯେ ଚୈତନ୍ୟରୁ ବୋଲାନ୍ତି ସ୍ୱତନ୍ତ୍ର ।
ଚଇତନ୍ୟ ଛଡ଼ା ତାହା ନୁହେଁ କିଛି ମାତ୍ର ।
ଜଳ ଓ ତରଙ୍ଗ ପୁଣି ଦୀଜ ଓ ପାଦପ
ଆକାର ଭେଦେ ଧରନ୍ତି ଭିନ୍ନ ଭିନ୍ନ ରୂପ ।
ବାସ୍ତବରେ ଅଟନ୍ତି ସେ ଏକଇ ପଦାର୍ଥ
ସେପରି ଅଭିନ୍ନ ଜାଣ ଦୃଶ୍ୟ ଓ ଜଗତ ।
ଆତ୍ମାର ବିଦ୍ୟମାନତା ବଶତଃ ହେ ରାମ
ଜଗତ ସତ ଅସତ ପ୍ରକାଶ ଜାଣିମ ।

ସତଜ୍ଞାନ କଲେ ତାହା ହୁଏ ସତ୍‌ବୋଧ
ଅସତ୍ ମଣିଲେ ତାହା ହୁଏ ଅସତ୍‌ବୋଧ ।
ସତ୍ ଅସତ୍ ଜଗତ ପ୍ରତୀତ ଏମାନ
ଭ୍ରାନ୍ତି ଛଡ଼ା ଅନ୍ୟ କିଛି ନୁହେଁ ଆହେ ରାମ ।
ବାଲିରେ ତରଳ ବସ୍ତୁ ହୁଅନ୍ତେ ପତିତ
କେଉଁଣେ ଛପିଯାଏ ଯଥା ତାହାର ଅସ୍ତିତ୍ୱ ।
ଏସନ ବ୍ରହ୍ମଙ୍କ ମଧ୍ୟେ ଅବିଦ୍ୟା ଅସ୍ତିତ୍ୱ
ପରିଦୃଷ୍ଟ ନ ହୋଇଣ ଯାଏ ଅସ୍ତମିତ ।
ପଦାର୍ଥମୟ ବିଶ୍ୱକୁ ବ୍ରହ୍ମ ବୋଲି ଜାଣ
ଯେଣୁ ବ୍ରହ୍ମ ସର୍ବରୂପେ ପରକାଶ ମାନ ।
ତେଣୁ ବିଶ୍ୱ ସତ୍‌ବୋଲି ମଣ ଆହେ ରାମ
ବିଶ୍ୱ ବ୍ରହ୍ମ ଏହି ଦୁହେଁ ଅଟନ୍ତି ଅଭିନ୍ନ ।
ଅପୂର୍ବ ଚିତ୍‌ବିଳାସ ଅଟେ ଏ ଜଗତ
ଅନ୍ୟ କିଛି ନାହିଁ ଚିତ୍ ଚୈତନ୍ୟ ବ୍ୟତୀତ ।
ଜାଗ୍ରତରେ ଥାଅ କିମ୍ବା ସମାଧିରେ ଥାଅ
ଚିଦ୍‌ଘନ ରୂପେ ରାମସ୍ଥିତ ସଦାରହ ।
ଜାଗ୍ରତରେ ଥାଇ ତୁମେ ଯାହା କିଛି କର
ତାହା ସବୁକିଛି ନୁହେଁ ବୋଲିଣ ବିଚାର ।
ଚିତ୍ତବୃତ୍ତିରେ ଆସକ୍ତି ବିନାଶ ଲଭିବ
ତେବେ ଆତ୍ମସ୍ୱରୂପରେ ସ୍ଥିତି ଲାଭ ହେବ ।
ପାଷାଣରେ ଜଳ ରହି ନପାରେ ଯେସନ
ଆତ୍ମା ମଧ୍ୟେ ଚିତ୍ତ ନାସ୍ତି ଜାଣିବ ତେସନ ।
ପରମାତ୍ମା ମଧ୍ୟେ ଚିତ୍ତ ରହିବ କିପରି ?
ନିର୍ମଳରେ ମଳିନତା ସମ୍ଭବ ଯେପରି ?
ବିଚାର ଦୃଷ୍ଟିରେ ଯାର ଅସ୍ତିତ୍ୱ ନ ଥାଇ
ସେ ଯଦି କୌଣସି କାର୍ଯ୍ୟ କରି ସାରି ଥାଇ ।
ଯଥାର୍ଥ କୃତତା ବୋଲି କହି କି ପାରିବ ?
ଅଜ୍ଞାନୀ ପକ୍ଷେ ଅନ୍ୟଥା ସମ୍ଭବ ରାଘବ ।
ଏକାନ୍ତ ଅନାତ୍ମଭୂତି ଚିତ୍ତକୁ ଯେ ଜନ
ଅନୁସରଣ କରିଣ ହୁଏ ଧାବମାନ ।
ଚଣ୍ଡାଳ ଲୋକକୁ ଅନୁକରଣ କରିବା
ଶ୍ରେୟସ୍କର ତା ପକ୍ଷରେ ଅଟେ ଆରେ ବାବା ।
ଚିତ୍ତ ଚଣ୍ଡାଳକୁ ତୁମେ ପରିତ୍ୟାଗ କର
ପାଷାଣ ପ୍ରତିମା ପରି ରହହେ ନିଶ୍ଚଳ ।
ଇଚ୍ଛାକଲେ ଚିତ୍ତକୁ ତ ଦେଖି ନ ପାରିବ
ବାସ୍ତବରେ ଚିତ୍ତ ତୁମ ନାହିଁ ହେ ରାଘବ ।
ମିଥ୍ୟାଚିତ ଯା' କରୁଛି ତାପାଇଁ ରାଘବ
ବୃଥା ଉଦ୍‌ବିଗ୍ନ କିମ୍ପାଇଁ ହେଉଛି ଉଭବ ।
ତତ୍ତ୍ୱଜ୍ଞାନ ଅନୁସରି ମନକୁ ତରଳ
କରିବାକୁ ଶିଖି ରଖ ଆହେ ରଘୁବାଳ ।
ତତ୍ପରେ ନିର୍ମଳ ଆତ୍ମା ହୋଇଣ ପାରିବ
ସଂସାରର ପରପାରେ ଗମନ କରିବ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ଚଣ୍ଡାଳୀ ଶୋଚନା ବର୍ଣ୍ଣନେ**
**ନାମ ୯୧ତମ ସର୍ଗଃ**



## ୯୨ତମ ସର୍ଗଃ
## ସ୍ୱରୂପ ନିରୂପଣ

କହନ୍ତି ବଶିଷ୍ଠ ରାମଚନ୍ଦ୍ରଙ୍କୁ ଏମନ୍ତ
କିଞ୍ଚିତ ମାନବ ବୁଦ୍ଧି ହେଲେ ବିକଶିତ ।
ସତ୍‌ସଙ୍ଗ କରିବା ତାର କର୍ତ୍ତବ୍ୟ ଅଟଇ
ସତ୍‌ସଙ୍ଗ ବଳେ ବିବେକ ଉଦିତ ହୁଅଇ ।
ଶାସ୍ତ୍ରର ବିଚାର ପୁଣି ସାଧୁସଙ୍ଗ ବିନା
ଅବିଦ୍ୟା ନଦୀ ତରିବା ଅସମ୍ଭବ ସିନା ।
ସାଧୁସଙ୍ଗ ଶାସ୍ତ୍ରଜ୍ଞାନ ବଳରେ ବିବେକ
ଉଦୟ ହେଲେ ମାନବ ହେବ ସୁବିବେକ ।
ହେୟ ଉପାଦେୟ ଭେଦ ଜାଣି ଯେ ପାରିବ
କିସ ତେଜ୍ୟ କିସ ଗ୍ରାହ୍ୟ ଏହା ବୁଝିନେବ ।
'ଶୁଭେଚ୍ଛା' ଜ୍ଞାନ ଭୂମିରେ ତେବେ ପହଞ୍ଚିବ
ତତ୍‌ପରେ 'ବିଚରଣ' ଭୂମି ଆସିଯିବ ।
ଅସତ୍ ବାସନାମାନ କ୍ରମେ ଉଡ଼ିଗଲେ
ସଂସାର ବାସନା ମନୁ କ୍ଷୟ ହୁଏ ଭଲେ ।
'ତନୁମାନସା' ନାମକ ସୁଜ୍ଞାନ ଭୂମିରେ
ଉପନୀତ ହୁଏ ନର ଅତି ଅକ୍ଲେଶରେ ।
'ସତ୍ତ୍ୱାପତି' ଅସଂସକ୍ତ ଆଦି ଭୂମିମାନ
ଏହିପରି ଅତିକ୍ରମି ସପ୍ତଭୂମି ସ୍ଥାନ ।
ଅପାର ସଂସାର ବାରିଧିକୁ ଏହିପରି
ପାର ହୋଇପାରେ ନର ଆହେ ଚାପଧାରୀ ।
ସବୁ ତ ବୁଝିଛ ରାମ କରି ତନ୍ନ ତନ୍ନ
ତୁମର ବାସନା ମାନ ହୋଇଛନ୍ତି କ୍ଷୀଣ ।
ଦେହସ୍ଥ ବା ଦେହାତୀତ ଯେଉଁଭାବେ ଥାଅ
ତୁମେ ଯେ ସେହି ସ୍ୱଚ୍ଛାତ୍ମା ଭୁଲିଣ ନଯାଅ ।

ଅଟଳ ରହିବ ରାମ ଏହି ସ୍ଥିର ଜ୍ଞାନେ
ବିଷାଦଗ୍ରସ୍ତ କେବେହେଁ ନ ହୋଇବ ମନେ ।
ତୁମେ ସେହି ସ୍ୱପ୍ରକାଶ ସର୍ବଗ ନିର୍ମଳ
ତୁମେ ସେ ସଦା ଉଦିତ ଆତ୍ମାହିଁ କେବଳ ।
ସୁଖ ଦୁଃଖ ସ୍ଥାନ ରାମ ତୁମ ଆଉ ନାହିଁ ?
ଜନ୍ମ ମୃତ୍ୟୁ ତୁମ୍ଭର ବା ସମ୍ଭବିବ କାହିଁ
ବସ୍ତୁତ୍ୱ ନାହାନ୍ତି କେହି ତୁମ୍ଭର ବାନ୍ଧବ
ବି ଅର୍ଥେ ବନ୍ଧୁଙ୍କ ପାଇଁ ଶୋକ କିମ୍ପା ତବ ।
ଯେଣୁ ଆତ୍ମା ଅଦ୍ୱିତୀୟ ଜାଣ ହେ ରାଘବ
ଦ୍ୱିତୀୟ ବାନ୍ଧବ ତାର କାହୁଁ ସମ୍ଭବିବ ।
ଅବିନଶ୍ୱର ହୋଇଣ ତୁମେ ହେ ଶ୍ରୀରାମ
ବିନାଶ ଆଶଙ୍କା କରି କିମ୍ପାଇ ରୋଦନ ।
ସୁନିର୍ମଳ ସର୍ବଗ ଯେ ଶାଶ୍ୱତ ଆତ୍ମାର
କିପରି ବିନାଶ ହେବ ଆହେ ରଘୁବୀର ?
ଘଟ ଭଗ୍ନ ହେଲେ ଯଥା ଘଟସ୍ଥ ଆକାଶ
ବିନଷ୍ଟ ହୋଇ ନଥାଇ ଆହେ ରଘୁଈଶ ।
ତେସନ ଦେହ ବିନାଶେ ଆତ୍ମା କସ୍ମିନ୍‌କାଳେ
ବିନଷ୍ଟ ହୋଇ ନଥାଏ ଆହେ ରଘୁବାଳେ ।
ତୁମ ଅନ୍ତର ସାଗରେ ତେଣୁ ହେ ଶ୍ରୀରାମ
ବିଅର୍ଥ ବାସନା ଢେଉ ଉଠେ କି କାରଣ ?
ଭ୍ରାନ୍ତି ତରଙ୍ଗମାଳାର ଅବସର କାହିଁ
ବୁଝିବାକୁ ମୁଁ ଅକ୍ଷମ ଆହେ ରଘୁସାଇଁ ।
ଅଦ୍ୱିତୀୟ ଆତ୍ମା ଯେହୁ ଦ୍ୱିତୀୟ ଆତ୍ମାର
କଳ୍ପନା କରିବ କିମ୍ପା ଆହେ ରଘୁବୀର ?
ଦର୍ଶନ, ଶ୍ରବଣ, ଘ୍ରାଣ, ସ୍ପର୍ଶ ଆସ୍ୱାଦନ
ଏ କେହି ନୁହନ୍ତି ରାମ ଆତ୍ମାଠାରୁ ଭିନ୍ନ ।
ସର୍ବଶକ୍ତି ମାନ ସେହି ଅବ୍ୟକ୍ତ ଆତ୍ମାରେ
ଏ ସକଳ ସୃଷ୍ଟିଶକ୍ତି ଛନ୍ତି ଗୋପନରେ ।
ଶୂନ୍ୟତା ବିରାଜେ ଯଥା ଆକାଶ ମଧ୍ୟରେ
ଏହି ସୃଷ୍ଟି ଶକ୍ତିମାନ ତଥା ସେ ଆତ୍ମାରେ ।
ସତ୍ତ୍ୱ, ରଜ, ତମ ଗୁଣ ଚିତ୍ତରୁ ଜନ୍ମିଣ
ଲୋକ ତ୍ରୟରେ କରନ୍ତି ଆକାର ଧାରଣ ।
ସକଳ ଭ୍ରାନ୍ତିର ଏହିମାନେ ହିଁ କାରଣ
ଏ ସବୁ କହିଛି ପୂର୍ବେ ଆହେ ରଘୁରାଣ ।
ବାସନା କ୍ଷୟ ସାଧନ ଚିତ୍ତ ବିନାଶର
ଉପାୟ ଅଟଇ ଜାଣ ଆହେ ରଘୁବୀର ।

କ୍ରିୟା ଶକ୍ତିର ଆଧାର ଏମନ୍ତ ଯେ ମାୟା
ଚିତ୍ତ ବିନାଶରେ ତାର ନ ରହଇ କାୟା ।
ଏହି ବାସନା ବ୍ରହ୍ମରୁ ହୁଅଇ ନିର୍ଗତ
ଯେତେକାଳ ଯାଏ ରହିଥାଏ ସେ ଅଜ୍ଞାତ ।
ମୋହଜାତ କରୁଥିବ ତାହାର ଏ ଧର୍ମ
ଜ୍ଞାତ ହେଲେ ବ୍ରହ୍ମସୁଖ ଲଭିବ ହେ ରାମ ।
ବ୍ରହ୍ମାଗତ ଏ ବାସନା ସଂସାରେ ବିଚରେ
ଭୋଗ ଲୀଳା ଖେଳ ସବୁ ତହିଁରେ ଆଚରେ ।
ଅଧ୍ୟାତ୍ମ ପ୍ରଭାବୁ ଲୀଳା ତାର ଶେଷ ହେଲେ
ବ୍ରହ୍ମ ସ୍ମୃତି ଉଦେ ହୁଏ ତାହାର ଅନ୍ତରେ ।
ବ୍ରହ୍ମ ସ୍ମୃତି ଲାଭକରି ପୁଣି ସେ ଫେରିଣ
ସେହି ବ୍ରହ୍ମ ମଧ୍ୟେ ଯାଇ ହୋଇଥାଏ ଲୀନ ।
ଅଗ୍ନିରେ ଉତ୍ତାପ ଯଥା କରେ ଅବସ୍ଥାନ
ବାସନାମୟ ବ୍ରହ୍ମରୁ ଜଗତ ଉତ୍ପନ୍ନ ।
ସେହି ବ୍ରହ୍ମରେ ଜଗତ କରେ ଅବସ୍ଥାନ
ଜଗତ ବ୍ରହ୍ମର ଅଂଶ ହେ ରଘୁନନ୍ଦନ ।
ନିଖିଳ ଭୂତଙ୍କ ଆତ୍ମା ଅଟନ୍ତି ସେ ବ୍ରହ୍ମ
ଆତ୍ମାକୁ ଚିହ୍ନିଲେ ସାରା ବିଶ୍ୱକୁ ଚିହ୍ନିମ ।
ଏ ଜଗତ ମଧ୍ୟେ ସେହି ଏକମାତ୍ର ଜ୍ଞାତା
ତାଙ୍କ ଛଡ଼ା ନାହିଁ ଅନ୍ୟ କାହାର ହିଁ ସତ୍ତା ।
ଗଗନ ସଦୃଶ ସେହି ଚିଦ୍‌ଆତ୍ମା ମଧ୍ୟରେ
ଜଗତ ପ୍ରତିବିମ୍ବିତ ପୃଥକ୍ ଆକାରେ ।
ପ୍ରତିବିମ୍ବିତ ହୋଇଣ ବୁଦ୍ଧି ଚିଦାତ୍ମାରେ
ଷଡ଼ରିପୁମାନ ଅନୁବରତନ କରେ ।
ଏହି ରୂପେ ଭବ ବୁଦ୍ଧି ଲୋଭ ମୋହମାନ
ପ୍ରତିଫଳିତ ହୁଅନ୍ତି ଚିଦାତ୍ମାରେ ଜାଣ ।
ବାସ୍ତବରେ ଏ ସକଳ ଆତ୍ମାର ସ୍ୱରୂପ
ଆତ୍ମାଠାରୁ ନାହିଁ ତାଙ୍କ ଅନ୍ୟ କିଛି ରୂପ ।
ବିକଳ୍ପ ବିହୀନ ଚିତ୍ ଆକାର ତୁମର
ତା ବ୍ୟତୀତ ଅନ୍ୟକାର ନାହିଁ ଯେ ତୁମର ।
ତେଣୁ ଭୟ ଲଜ୍ଜା ମୋହ କିମ୍ପାଇ ତୁମର
ଉପୁଜୁଅଛନ୍ତି କହ ଆହେ ରଘୁବୀର ।
ଶରୀର ବିହୀନ ହୋଇ ଅଳୀକ ଲଜ୍ଜାରେ
କିମ୍ପା ଅଭିଭୂତ ହୁଅ ଆହେ ରଘୁବୀରେ ।
ଅସମ୍ୟକ ଦର୍ଶୀ ଦେହ ବିନାଶେ ରାଘବ
ଆତ୍ମାର ବିନାଶ କେଉଁ ନୁହଇ ଜାଣିବ ।

ସମ୍ୟକ ଦର୍ଶୀର ଆତ୍ମା ବିନାଶ ପ୍ରସ୍ତାବ
କେବେ ଉଠି ନ ପାରଇ ହେ ରଘୁପୁଙ୍ଗବ ।
ଦେହ ଥାଉ ବା ନଥାଉ ଜ୍ଞାନ ବା ଅଜ୍ଞାନ
ପୁରୁଷ ସର୍ବଦା ରହିଥିବ ବର୍ତ୍ତମାନ ।
ମୃତ୍ୟୁକାଳେ ଯେଉଁ ଦୁଃଖ କଷ୍ଟମାନ ଆସେ
ସେ ସବୁ ଶରୀର ଧର୍ମ ଜାଣ ରଘୁଶ୍ରେଷ୍ଠେ ।
ଚିନ୍ମୟ ଆତ୍ମାର ତହିଁ ନ ଥାଇ ସମ୍ବନ୍ଧ
ବୃଥାରେ ମାନବ ତେବେ ହୋଇଥାଏ ଅନ୍ଧ ।
ଚିଦାତ୍ମା ଯେଣୁ ଅଟଇ ମନର ଅତୀତ
ଦୁଃଖ ସୁଖ ଦ୍ୱାରା କେହ୍ନେ ହେବ ସେ ଗ୍ରସିତ ।
ପଦ୍ମ ତେଜି ଭୃଙ୍ଗ ଯଥା ନଭେ ଯାଏ ଉଡ଼ି
ଶରୀର ତେଜିଣ ଆତ୍ମା ଈଶ୍ୱରେ ବାହୁଡ଼ି ।
ବାସନା ବିନାଶ ନୋହିଥିବାରୁ ଶ୍ରୀରାମ
ଈଶ୍ୱର ପାଶେ ମୁକତ ହେବାକୁ ଅକ୍ଷମ ।
ଏ ଜୀବାତ୍ମା ଯଦି ରାମ ହୁଅଇ ଅସତ
ତୁମର ଶରୀର ଯଦି ହୁଅଇ ବିଧ୍ୱଂସ୍ତ ।
କି କ୍ଷତି ହୋଇବ ରାମ ଏଥିରେ ତୁମର
କି କାରଣେ ହେଉଅଛ ତୁମେ ଶୋକାତୁର ।
ସ୍ୱୟଂ ତୁମେ ରାମ ଅଟ ଜୀବନ ସଦୃଶ
ନିତ୍ୟ ବିଦ୍ୟମାନ ଥିବ ଦେହ ଗଲେ ନାଶ ।
ଏ ଜୀବ-ଭୂତ ଆତ୍ମାକୁ ସତ୍ୟ ବୋଲି ମଣ
ଅସତ୍ ଭ୍ରାନ୍ତି ଦେହକୁ ବାସ୍ତବ ନମଣ ।
ନିର୍ମଳ ନିରୀହ ଆତ୍ମା ଅଟେ ଇଚ୍ଛାହୀନ
କାରଣ ଆତ୍ମା ଅଟନ୍ତି ନିତ୍ୟ, ତୃପ୍ତ, ପୂର୍ଣ୍ଣ ।
ସେ ଆତ୍ମା ବିରାଜିଛନ୍ତି ସାକ୍ଷୀ ସ୍ୱରୂପରେ
ତାଙ୍କର ଇଚ୍ଛା ନ ଥାଇ କୌଣସି କାର୍ଯ୍ୟରେ ।
ଜଗତ ପ୍ରତିବିମ୍ବିତ ହୁଏ ତାଙ୍କଠାରେ
ଆସକ୍ତି ନ ଥାଏ ତାଙ୍କ ଜଗତ ଛାୟାରେ ।
ଦର୍ପଣ ଓ ପ୍ରତିବିମ୍ବ ଦୁହିଁଙ୍କ ମଧ୍ୟରେ
ଭେଦ, ଅଭେଦ ରହଇ ଯେମନ୍ତ ପ୍ରକାରେ ।
ଆତ୍ମା ଓ ଜଗତ ଭେଦ ଅଭେଦ ସେପରି
କାୟା, ଛାୟାର ସମ୍ବନ୍ଧ ଅଟେ ଯେଉଁପରି ।
ଦର୍ପଣରେ ପ୍ରତିବିମ୍ବ ଯଥା ମନେକର
ଆତ୍ମାରେ ଜଗତ ସେହିପରି ରଘୁବୀର ।
ଏହି ସବୁ ଯୁକ୍ତି ଦ୍ୱାରା ଜାଣ ହେ ଶ୍ରୀରାମ
ଏ ଜଗତ ସ୍ଥୂଳବସ୍ତୁ ନୁହେଁ ଏ ପ୍ରମାଣ ।

ଆକାଶ ସଦୃଶ ଅଟେ ଏହି ଯେ ଜଗତ
ଏ ଧାରଣା ତୁମ ମନେ ଅଛି ଦୃଢ଼ୀଭୂତ ।
ଜଳୁଥିବା ଦୀପ ମଧ୍ୟୁଁ ଆଲୋକ ଯେସନ
ସ୍ୱତଃ ପ୍ରକାଶିତ ହୁଏ ଶ୍ରୋତୃବର୍ଗ ଗଣ ।
ଆତ୍ମାର ବିଦ୍ୟମାନତା ବଶତଃ ହେ ରାମ
ସ୍ୱଭାବତଃ ଏହି ଭବ ସଦା ବିଦ୍ୟମାନ ।
ଆକାଶରେ ନୀଳବର୍ଣ୍ଣ ହେଲେ ହେଁ ଅସତ୍ୟ
ଜନ ନେତ୍ରେ ସେ ନୀଳିମା ଦିଶେ ସତ୍ୟବତ୍ ।
ପରମ ଆତ୍ମାଙ୍କଠାରୁ ହେଲେହେଁ ଜନମ
ମନ ଅସତ୍ୟ, ଅରୂପ ସତ୍ତା ସଦ୍‌ଗଣ ।
ସେହି ମନ ମଧ୍ୟରୁ ଏ ଜଗତ ପ୍ରକାଶ
ସତ୍ୟପରି ଜଣାଯାଏ ହେ ସର୍ବ ବିଦୁଷ ।
ସଙ୍କଳ୍ପ କ୍ଷୟରେ ହୁଏ ଚିତ୍ତର ବିନାଶ
ଚିତ୍ତର ବିନାଶେ ଭବ ମୋହଯାଏ ନାଶ ।
ଭବମୋହ ନାଶ ଗଲେ ସ୍ୱଚ୍ଛ ଚିନ୍‌ମାତ୍ର
ପ୍ରତ୍ୟଗାତ୍ମା ରୂପେ ସେହୁ ହୁଅନ୍ତି ଉଦିତ ।
ସମଷ୍ଟି ମନ ପ୍ରଥମେ ହୁଅନ୍ତି ଉଦୟ
ତହିଁରୁ କମଳ ଯୋନି ବ୍ରହ୍ମା ଅଭ୍ୟୁଦୟ ।
ସେହି ବ୍ରହ୍ମାଜୀବ-ଭାବ ହୁଅନ୍ତେ ପ୍ରାପତ
ପ୍ରପଞ୍ଚ ଜଗତ ତାଙ୍କ ମନରୁ ବିସ୍ତୃତ ।
ତଥା ବିଧ ମନ ରାମ ହେଲେହେଁ ଅସତ
ଚୈତନ୍ୟେ ଜଗଦାକୃତି ଧରି ବସେ ସେତ ।
ବହିଃ ଦୃଷ୍ଟିକି ସେ ସତ ଆହେ ରଘୁନାଥ
ବ୍ରହ୍ମ ବ୍ୟତିରେକ ଅନ୍ୟ କିଛି ନୁହେଁ ସେତ ।
ପ୍ରଶାନ୍ତ ସାଗରେ ଢେଉ ଉଠଇ ଯେସନ
ଅବଲୀଳା କ୍ରମେ ହୋଇ ଯାଉଥାଏ ଲୀନ ।
ବ୍ରହ୍ମରେ ଜଗତ୍‌ଜାତ ହୋଇ ପୁନଃ ପୁନଃ
କ୍ଷଣ କ୍ଷଣକେ ବିଲୀନ ହେଉଥାଏ ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ**
**ସ୍ୱରୂପ ନିରୂପଣ ବର୍ଣ୍ଣନେ**
**ନାମ ୯୨ତମ ସର୍ଗଃ**
**ସମାପ୍ତ ମିଦଂ ଉତ୍ପତ୍ତି ପ୍ରକରଣଂ**

❑

ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ-ମହାରାମାୟଣ

ସ୍ଥିତି ପ୍ରକରଣ

ଓ

ଉପଶମ ପ୍ରକରଣ

(ଭାବାନୁବାଦ)

ଶ୍ରୀ ମର୍ଦ୍ଦଗାଜି ରାୟ



## ଦାଣ୍ଡ ଭେଟି

ହେ ଅନନ୍ତ ପଡ଼ିଆରୀ
ଯୁଧିଷ୍ଠି ଯାଗକୁ ଥିଲ ସଜାଡ଼ି, ହେ କଳାବଦନ,
ପଡ଼ିଆରୀ ପଣ କରି, ହେ କଳାବଦନ ।

ଏ ଦେଶ ଦୁର୍ଦ୍ଦଶା ମୂଳ
ସ୍ୱାର୍ଥମେଧ ଯଜ୍ଞ ଯାଉ ପାଶୋର, ହେ କଳାବଦନ,
ମାଗୁଣି ଏତିକି ମୋର, ହେ କଳାବଦନ ।

ମାନବ ବାସନା-ବ୍ୟାଧି
ହଟି ଯାଉ ଦୂରେ ହେ କୃପାନିଧି, ହେ କଳାବଦନ,
ତୁମେ ତ ତାର ଔଷଧି, ହେ କଳାବଦନ ।

# ସୂଚୀପତ୍ର

## ସ୍ଥିତିପ୍ରକରଣ



## ଉପଶମ ପ୍ରକରଣ

## ସୂଚୀପତ୍ର

আদিকবি বাল্মীকি মহর্ষিঙ্ক রচিত

# ଯୋଗବାଶିଷ୍ଠ ରାମାୟଣ

## ବା

# ବଶିଷ୍ଠ-ମହାରାମାୟଣ

## ସ୍ଥିତି ପ୍ରକରଣ

### ୧ମ ସର୍ଗଃ

### ଜଗତ ନିରାକରଣ

କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ଉତ୍ପତ୍ତି ପ୍ରକରଣଟି କଲତ ଶ୍ରବଣ ।
ଏବେ ସ୍ଥିତି ପ୍ରକରଣ କରୁଛି ବର୍ଣ୍ଣନ
ନିର୍ବାଣ ପ୍ରାପ୍ତିର ପଥ ଦେଖାଏ ଯେ ଜ୍ଞାନ ।
ଦୃଶ୍ୟମାନ ଏ ଜଗତ ଅହଙ୍କାର-ଜ୍ଞାନ
ଆକୃତି ବିହୀନ ମିଥ୍ୟା ପୁଣି ଭ୍ରାନ୍ତିପୂର୍ଣ୍ଣ ।
ନଭପଟେ ନାନାବର୍ଣ୍ଣ ଚିତ୍ର ରେଖାପରି
ଏ ଦୃଶ୍ୟ ଜଗତ ରାମ ଜାଣ ସେହିପରି ।
ନାହିଁ ଯା ଦର୍ଶକ କେହି କିନ୍ତୁ ଦେଖାଯାଏ
ଏହରା ଦ୍ରଷ୍ଟା ଯା' ମଧ୍ୟେ ଅନ୍ତର୍ଗତ ଥାଏ ।
ଜାଗ୍ରତ ସ୍ୱପନ ସମ ଏହା ପ୍ରତିଭାତ
ଅନ୍ୟ କିଛି ନୁହେଁ ଏହା କଳ୍ପନା ବ୍ୟତୀତ ।
ସୁଦୂର ଗେରୁ ପାହାଡ଼ ଦେଖିଣ ବାନର
ଅଗ୍ନିମଣି ଶୀତ ନିବାରଣେ ତତପର ।
ତା' ଦୃଶ୍ୟ ଜଗତ ମିଥ୍ୟା ହେଲେହେଁ ଶ୍ରୀରାମ
ଅଜ୍ଞ ବ୍ୟକ୍ତିଙ୍କର ଇଚ୍ଛା କରଇ ପୂରଣ ।
ଅଜ୍ଞାନୀ ସୂର୍ଯ୍ୟକୁ କିରଣରୁ ମଣେ ଭିନ୍ନ
ଶୂନ୍ୟ ଜଗତ, ଆକାଶ ତା ମତେ ତେସନ ।
କେ' କହେ ଜଗତ ଜଡ଼ କା'ମତେ ଚେତନ
ଅଣୁ ପରମାଣୁମୟ କାହା ମତେ ଶୂନ୍ୟ ।
ହେଲେହେଁ ପଞ୍ଚଭୂତରୁ ଭିନ୍ନ ଏ ଜଗତ
ଶୂନ୍ୟ ଶୂନ୍ୟ ମହାଶୂନ୍ୟ, ଶୂନ୍ୟରୁ ଅତୀତ ।
'ମୁଁ ପ୍ରାଣୀ' ଏମନ୍ତ ଅହଙ୍କାର ଭାବ ଘେନି-
ପ୍ରକାଶ ପାଇ ପାରୁଛି ଆହେ ରଘୁମଣି ।
ଶ୍ରୀରାମ କହନ୍ତି ଶୁଣ ଆହେ ଗୁରୁଦେବ
ଆଉ ଏକ ପ୍ରଶ୍ନ ମୋର ମନରେ ଉଦ୍‌ଭବ ।
ବୀଜ ମଧ୍ୟେ ଲୁପ୍ତ ଥାଏ ଅଙ୍କୁର ଯେସନ
ମହାପ୍ରଳୟାନ୍ତେ ଭବ ବ୍ରହ୍ମେ ଥାଏ ଲୀନ ।
ବ୍ରହ୍ମମଧ୍ୟୁ ପୁଣି ଉପୁଜଇ ସେ ଜଗତ
ଯଥାର୍ଥ କି ଏ ସିଦ୍ଧାନ୍ତ ଆହେ ତପୋବନ୍ତ ?

ବଶିଷ୍ଠ କହନ୍ତି ତାହା ଶୁଣ ରଘୁନାଥ
ଯଥାର୍ଥ ନୁହଇ ଜାଣ ଏହି ଯେ ସିଦ୍ଧାନ୍ତ ।
ତାହାର କାରଣ ଏବେ କହୁଅଛି ଶୁଣ
ଯୁକ୍ତିର ଅତୀତ ନୁହେଁ ଏ କାରଣ ମାନ ।
ହୋଇଥାନ୍ତା ଯଦି ଏହା ଇନ୍ଦ୍ରିୟ ଗୋଚର
ଯୁକ୍ତି ସଙ୍ଗତ ହୁଅନ୍ତା ବୟାନ ତୁମର ।
ବ୍ରହ୍ମ ଯେ ଅଦୃଶ୍ୟ ଏହା ଜାଣତ ଶ୍ରୀରାମ
ଜଗତ କର୍ତ୍ତୃତ୍ୱ ସେହି ବ୍ରହ୍ମଙ୍କ ଅଧିନ ।
ଅଦୃଶ୍ୟ ବ୍ରହ୍ମରୁ ଦୃଶ୍ୟ ଏହି ଯେ ଜଗତ
କିପରି ସମ୍ଭବିପାରେ ଆହେ ରଘୁନାଥ ?
ଯଦି କହ ସେ ଚିଦାତ୍ମା ବୀଜଭାବ ଧରେ
ତାହା ମଧ୍ୟ ନ ଆସଇ ଯୁକ୍ତିର ମଧ୍ୟରେ ।
ସୂକ୍ଷ୍ମାଦପି ସୂକ୍ଷ୍ମ ମନକୁ ଯେ ଅଗୋଚର
ସେ ସ୍ୱୟଂଭୂ ଆତ୍ମା ବୀଜ ହେବ କି ପ୍ରକାର ?
ଅନାଖ୍ୟ, ଅଲିଙ୍ଗ ଅଟଇ ଯେ ପରମାତ୍ମା
ଧରି ପାରିବ କି କେବେ ଜଗତ୍-ବୀଜ ସତ୍ତା ।
ତାହା ଯଦି ଅସମ୍ଭବ ତେବେ ହେ ରାଘବ
ବୀଜ ଅଭାବେ ଅଙ୍କୁର କେସନ ସମ୍ଭବ ?
ଅଛି କି ଏପରି କିଛି ପଦାର୍ଥ ଭବରେ
ଯାହାର କି ଠାବ ହୋଇପାରେ ବ୍ରହ୍ମଠାରେ ?
ଠାବକରିବାର ଯେବେ ସମ୍ଭାବନା ଥାନ୍ତା
କିମ୍ବା ହେ ରାମ, ତା ପରିଦୃଷ୍ଟ ନ ହୁଅନ୍ତା ?
ତେଣୁ ପରମାତ୍ମାଠାରେ ପରମାତ୍ମା ବିନା
ଅନ୍ୟ କିଛି ନାହିଁ ଜାଣ ରାମ ମହାମନା ।
କିପରି ରହିବ ତାହା କହ ହେ ରାଘବ
ଆତପରେ ଛାୟା ସ୍ଥିତି କେବେ କି ସମ୍ଭବ ?
ନିରାକାର ବ୍ରହ୍ମେ ଅନ୍ୟ କୌଣସି ବସ୍ତୁର
ସ୍ଥାନ ରହିବା ଅଟଇ ଅସମ୍ଭବପର ।
ଆକାର ସମ୍ପୂର୍ଣ୍ଣ ବଟ ବୀଜାଦି ମଧ୍ୟରେ
ଅଙ୍କୁର ରହିବା ଯୁକ୍ତିଯୁକ୍ତ ରଘୁବୀରେ ।
**ନିରାକାର ବ୍ରହ୍ମମଧ୍ୟେ ସାକାର ଜଗତ**
**ତିଷ୍ଠି ରହିବା ଧାରଣ ନୁହେଁ ଯୁକ୍ତିଯୁକ୍ତ ।**
**କେବଳ ବ୍ରହ୍ମ ହିଁ ସତ୍ୟ ମୋର କହିବାରେ**
**ଆଦି, ମଧ୍ୟ, ଅନ୍ତ କିଛି ନାହିଁ ବ୍ରହ୍ମଠାରେ ।**

ତାଙ୍କ ବିନା ଏ ନିଖିଳ ଜଗତ ଶ୍ରୀରାମ
ଅନ୍ୟକିଛି ନୁହେଁ ଖାଲି ସେହି ପରମ୍ବ୍ରହ୍ମ ।



## ୨ୟ ସର୍ଗଃ

## ସୃଷ୍ଟିବୀଜ ଉପନ୍ୟାସ

ବଶିଷ୍ଠ କହନ୍ତି ରାମ ପ୍ରଳୟ ଅନ୍ତରେ
ଜଗତ ସ୍ୱତନ୍ତ୍ର ସତ୍ତା ଅଙ୍ଗୀକୃତ ହେଲେ ।
ଯେ ପ୍ରମାଦ ମାନ ଆସି ହୁଏ ଉପସ୍ଥିତ
ତାହା ମୁଁ କହୁଛି ଏବେ ଶୁଣ ରଘୁନାଥ ।
ଭବର ଆଦି ଅଙ୍କୁର ନିର୍ମଳ ବ୍ରହ୍ମରେ
ବିଦ୍ୟମାନ ଥାଏ ଯଦି ଆହେ ରଘୁବୀରେ ।
ଅଙ୍କୁର ଉଦ୍‌ଗମ ପାଇଁ ଯାହା ଦରକାର
ସାହାଯ୍ୟକାରୀ କାରଣ ଏବେ ସ୍ଥିରକର ।
ସେ କାରଣ ବିନା ବୀଜୁ ଅଙ୍କୁର ଉଦ୍‌ଗମ
ହେବାକି କେହି ଦେଖିଛୁ ଏ ଜଗତେ ରାମ ?
ସେ ସହକାରୀ କାରଣ ବ୍ୟତୀତ ହେ ରାମ
ଜଗତ ସ୍ୱତଃ ଉଦ୍ଭୁତ ଯଦି ମନେ ଘେନ ।
ରଜ୍ଜୁକୁ ସର୍ପ ମଣିଲେ ଯେଉଁପରି ଭ୍ରମ
ଜଗତ ମୂଳକାରଣ ତାଦୃଶ ଜାଣିମ ।
ଆଦିସୃଷ୍ଟି କାଳେ ଯେବେ ଜୀବ ଚଇତନ
ପରମାତ୍ମଭୂତ ହୋଇ ତହିଁଥାଏ ମଗ୍ନ ।
ତହିଁ ମଧ୍ୟରେ କିଏବା ଜନକ, କେ ଜନ୍ୟ
ଜଣାପଡ଼ିବ କିପରି କର ଅନୁଧ୍ୟାନ ।
କ୍ଷିତ୍ୟାଦି ଯେ ପଞ୍ଚଭୂତ ଯଦି ସେ କାରଣ
ସୃଷ୍ଟି ପୂର୍ବରୁ ସେମାନେ ଆସିବେ କେସନ ?
ଅନ୍ୟୋନ୍ୟାଶ୍ରୟକ ଦୋଷ ଲାଗୁଛି ଏଠାରେ
ତେଣୁ ଏ ମତ ଯଥାର୍ଥ ନୁହେଁ ରଘୁବୀରେ ।
ତେଣୁ ମୁଁ କହୁଛି ରାମ ନଦୀ ପରବତ
ବନ ଉପବନ ଘେନି ଏହି ଯେ ଜଗତ ।
କସ୍ମିନକାଳେ ନ ଥିଲାତ ନାହିଁ ବା ନୋହିବ
ଘେନୁଛକି ଏହି ଯୁକ୍ତି ମନକୁ ରାଘବ ।
ଚିଦାକାଶହିଁ କେବଳ ପରମାତ୍ମାଠାରେ
ଏହିରୂପ ଭ୍ରମଜ୍ଞାନ ଉତପନ୍ନ କରେ ।
ସମ୍ପୂର୍ଣ୍ଣ ରୂପେ ଅଭାବ ଯେଣୁ ଏ ଜଗତ
ସକଳ ବ୍ରହ୍ମାଣ୍ଡ ବ୍ରହ୍ମ, ଅଭ୍ରାନ୍ତ ଏ ସତ୍ୟ ।

ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ ଦୃଶ୍ୟମାନ ଭବ
କେବଳ ଚିଦାକାଶର ଜ୍ଞାନହିଁ ଜାଣିବ ।

ତାହାଛଡ଼ା ଜଗତ୍ ବୋଲି ଅନ୍ୟକିଛି ନାହିଁ
ଅହଂକାର ଧରି ସର୍ବେ ଧନ୍ଦି ହେଉଛନ୍ତି ।

ମୁଁ ଏହି ମୁଁ ନୁହେଁ ଆଦି ଜଗଦ୍ ବ୍ୟବହାର
ଉପନ୍ୟାସ ଲେଖାପରି ଅଳୀକ ମାତର ।

ସମୁଦ୍ର, ପୃଥିବୀ, ଅଗ୍ନି, ବର୍ଷ, ମାସ, ଦିନ
କ୍ଷଣ, ଜନ୍ମ, ମୃତ୍ୟୁ ଆଦି ଏମାନଙ୍କ ଜ୍ଞାନ ।

ଭ୍ରମବଶେ ଆପେ ଆପେ ହୁଅନ୍ତି ଉଦିତ
ଏମାନଙ୍କ ଲୀଳା ଖେଳା ବିକାର ଜଡ଼ିତ ।

ଅନାଦି ଅନନ୍ତ ମହାଗଗନ ସ୍ୱରୂପ
ଜ୍ଞାନମୟ-ବ୍ରହ୍ମ ଅଟେ ନିରାକାର ରୂପ ।

ଅତୀତେ ସେ ଥିଲେ ଯାହା ବର୍ତ୍ତମାନ ତାହା
ଭବିଷ୍ୟରେ ତାଙ୍କ ସେହି ରୂପ ରଘୁନାହା ।

ସର୍ବକାଳେ ଏକଭାବେ ଅଛନ୍ତି ସଂସ୍ଥିତ
ପରିବର୍ତ୍ତନ ତାହାଙ୍କୁ ସଦା ଅବିଦିତ

ଜଳାକବାଟି ମଧ୍ୟରୁ ସୂର୍ଯ୍ୟ କିରଣରେ ।
ତ୍ରସରେଣୁମାନ ଭାସୁଥାନ୍ତି ଅସଂଖ୍ୟରେ
ମହାଚିତ୍ ରୂପୀ ସେହି ପରଂବ୍ରହ୍ମଠାରେ ।
ଅସଂଖ୍ୟ ଜଗତମାନ ଥାନ୍ତି କାଳେ କାଳେ
ସ୍ଫଟିକର ରେଖାମାନ ସ୍ଫଟିକ ବ୍ୟତୀତ ।
ଅନ୍ୟକିଛି ନୁହେଁ ଯଥା ଆହେ ରଘୁନାଥ ।

ଜଗତ ତାଦୃଶ ବ୍ରହ୍ମ ଭିନ୍ନ ଅନ୍ୟକିଛି
ନୁହଇ, ୟା ଜାଣିରଖ ଆହେ ରଘୁବଂଶୀ ।

ଅବିଦ୍ୟା ରୂପିଣୀ ଦୀର୍ଘ ନିଦ୍ରାରୁ ଜନମ
ବସ୍ତୁ କଳ୍ପନା ସ୍ୱରୂପ ଯେ ସପନମାନ ।

ଶୀଘ୍ର ଭୁଲିଯାଅ ମନୁ ହେ ରଘୁନାୟକ
ତତ୍ତ୍ୱଜ୍ଞାନ ଅରଜିଣ ହୁଅ ସୁବିବେକ ।

ଜନ୍ମମୃତ୍ୟୁ ଭୟ ତୁମ ଆଉ ନ ରହିବ
ପାଶୋର ନଯିବ ଯେହ୍ନେ ହେଜ ରଖିଥିବ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ସ୍ମୃତିବିଜୋପନ୍ୟାସ ବର୍ଣ୍ଣନେ**
**ନାମ ୨ୟ ସର୍ଗଃ**



## ୩ୟ ସର୍ଗଃ

## ଜଗତ ଅନନ୍ତ ବର୍ଣ୍ଣନା

କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ଅନ୍ୟ ଏକ ପ୍ରଶ୍ନ ମୋର ମନରେ ଉଦ୍‌ଭବ ।
ସ୍ୱୟମ୍ଭୂ ପରଜାପତି ସୃଷ୍ଟି ଆରମ୍ଭରେ
ଜନମ ଲଭିଣ ସୃଷ୍ଟି ସରଜନା କରେ ।
ତାହା ସଂକଳ୍ପରୁ ଉତପନ୍ନ ଅବିରତ
ତେଣୁ ସ୍ୱୟମ୍ଭୂ ନାମରେ ଜଗତ ବିଖ୍ୟାତ ।
ସାହାଯ୍ୟକାରୀ କାରଣ ଥିଲେହେଁ ହେ ଦେବ
ତହିଁକି ଆପତ୍ତି କିଂପା କିଏବା କରିବ ।
କହନ୍ତି ବଶିଷ୍ଠ ଶୁଣ କୌଶଲ୍ୟା ନନ୍ଦନ
ବିହିତ ଉତ୍ତର ଏବେ କରୁଛି ବର୍ଣ୍ଣନ ।
ସ୍ୱୟମ୍ଭୂ ପ୍ରଜାପତିଙ୍କ ଉତପତ୍ତି କଥା
ତାହାଙ୍କ ସଂକଳପରୁ ଉତପନ୍ନ ବାର୍ତ୍ତା ।
ଅକ୍ଷରେ ଅକ୍ଷରେ ତାହା ସତ୍ୟ ହେ ଶ୍ରୀରାମ
ପରମାତ୍ମାଙ୍କର କିନ୍ତୁ ନୁହଇ ଜନମ ।
ଅଜ ଅମର ଅପରିବର୍ତ୍ତନୀୟ ସେହି
ତାହାର ସ୍ମୃତି କେବେହେଁ ହୋଇ ନ ପାରଇ ।
ନିଦପରେ ଜାଗରଣ ବେଳେ ତପୀବର
ପୂର୍ବସ୍ମୃତି ଫେରିଆସେ ଏ ମନ ମଧ୍ୟର ।
ଆଦି ସୃଷ୍ଟିକାଳେ ପ୍ରଜାପତିଙ୍କ ମନରେ
ପୂର୍ବ କଳପ ସ୍ମୃତିର ଉଦୟ ହେବାରେ,
ବାଧା କିଂପା ପହଞ୍ଚିବ ବୁଝି ମୁଁ ନପାରେ
କିଛିତ ଯୁକ୍ତି ନ ଆସେ ମୋ ମନ ମଧ୍ୟରେ ।
ବଶିଷ୍ଠ କହନ୍ତି ଶୁଣ ରାମ ମହାବୀର
ପୂର୍ବ ପୂର୍ବର ପ୍ରଳୟମାନଙ୍କ ଖବର ।
ସେତେବେଳେ ଯେଉଁଯେଉଁ ବ୍ରହ୍ମାମାନେ ଥିଲେ
ନିର୍ବାଣ ପ୍ରାପ୍ତି ତାଙ୍କର ହୋଇଅଛି ଭଲେ ।
ଖାଲି ନିର୍ବାଣ କାହିଁକି ବ୍ରହ୍ମତ୍ୱ ପ୍ରାପତି
ସେମାନଙ୍କର ଘଟିଛି ଆହେ ରଘୁପତି ।
ସେହି ସ୍ମୃତି-ଯୁକ୍ତ ପ୍ରଜାପତି ମାନଙ୍କର
ନିର୍ବାଣର ପରେ ସ୍ମୃତି ବିଲୀନ ତାଙ୍କର ।
ହେ ସୁବ୍ରତ ! ସ୍ମୃତିକର୍ତ୍ତାଙ୍କର ଅଭାବରେ
ସ୍ମୃତି ଉଦୟ ତାଙ୍କର ହେବକି ପ୍ରକାରେ ।

ଜଗତ ସୃଷ୍ଟି କାରଣ ହେତୁ ଯେଉଁ ସ୍ମୃତି
ଅନୁମାନ କରୁଅଛ ଆହେ ରଘୁପତି ।
ତା ନୁହେଁ ଯଥାର୍ଥ ସ୍ମୃତି ମନେରଖ ରାମ
ତା କେବଳ ଏ ବିଶାଳ ଦୃଶ୍ୟ ବୋଲି ଜାଣ ।
ଚିତ୍‌ପ୍ରଭା ସଂବିତ୍ ଜଗତ ଏହିମାନେ ଜାଣ
ସ୍ୱୟମ୍ଭୁ ରୂପରେ ଚିଦାକାଶେ ବିଦ୍ୟମାନ ।
ଅନାଦି କାଳରୁ ଥିବା ବ୍ରହ୍ମଙ୍କ ପ୍ରକାଶ
"ବୈରାଜ" ନାମେ ପ୍ରସିଦ୍ଧ ଆହେ ରଘୁଶିଷ୍ୟ ।
ଆତିବାହିକ ସେ ସୂକ୍ଷ୍ମ ଶରୀର ବୋଲାଇ
ବ୍ରହ୍ମାଣ୍ଡ-ଶରୀରର ଉପାଦାନ ସେ ଅଟଇ ।
କାଳ ସୃଷ୍ଟିରୁ ଆରମ୍ଭି ଏହି ଚିଦାଣୁରେ
ତ୍ରିଭୁବନ ପରାକାଶ ପାଏ ରଘୁବୀରେ ।
ଦେଶକାଳ, କ୍ରିୟାଦ୍ରବ୍ୟ, ଦିନ ଆଉ ରାତି
ତ୍ରିଭୁବନ ପରମାଣୁ ମଧ୍ୟେ ବିରାଜନ୍ତି ।
ଏହି ପରମାଣୁ 'ମନ୍‌ବ୍ରହ୍ମ' ନାମ ଧରି
ବିଦିତ ହୋଇଛି ଜାଣ ଆହେ ଋପଧାରୀ ।
ସେହି ମନ-ବ୍ରହ୍ମ ମଧ୍ୟେ ଅସଂଖ୍ୟ ଜଗତ
ବନ, ଗିରି, ନଦୀ ସାଗରାଦି ସମ୍ବଳିତ ।
ଅନ୍ୟ ଅନ୍ୟ ପରମାଣୁମାନେ ମଧ୍ୟଛନ୍ତି
ଗିରି ନଦ୍ୟାଦୀ ସଂଯୁକ୍ତ ବ୍ରହ୍ମାଣ୍ଡେ ଅଛନ୍ତି ।
ଏହି ଯେ ଜଗତ ତୁମ ଆଗେ ବିରାଜଇ
ପରମବ୍ରହ୍ମ ପ୍ରକାଶ ଭିନ୍ନ୍ୟ କିଛି ନୋହି ।
ତତ୍ୱଜ୍ଞ ବ୍ୟକ୍ତିମାନଙ୍କ ବ୍ରହ୍ମ ଦରଶନ
ଅଜ୍ଞମାନଙ୍କ ଅସତ ଜଗତ ଦର୍ଶନ ।
ଏହି ଦ୍ୱିବିଧ ଜଗତ ଦର୍ଶନ ମଧ୍ୟରେ
ଅସଂଖ୍ୟ ଜଗତ ଛନ୍ତି ଉକ୍ତ ପରକାରେ ।
**ତତ୍ତ୍ୱଜ୍ଞାନୀଙ୍କ ଜଗତ ଯା' ଶାଶ୍ୱତ ବ୍ରହ୍ମ**
**ଅଜ୍ଞାନୀ ନେତ୍ରେ ବିଶାଳ ଜଗତ ସେ ରାମ ।**
ସୂର୍ଯ୍ୟାଲୋକେ, ଜଳେ ପୁଣି ଧୂଳିପଟଳରେ
କୋଟି କୋଟି ପରମାଣୁ ଭାସେ ଯେ ପ୍ରକାରେ ।
ଚିଦାକାଶେ ମଧ୍ୟ କୋଟି ଜଗତ-ପରମାଣୁ
ଭାସମାନ ହେଉଛନ୍ତି ଦଶରଥ ସୁନୁ ।
ଶୂନ୍ୟ ଭୂତାକାଶ ଯେହ୍ନେ ବସ୍ତୁ ପରି ଦିଶେ
ଚିଦାକାଶ ତେହ୍ନେ ବସ୍ତୁ ପରି ନେତ୍ରେ ଭାସେ ।

'ସର୍ଗ'କୁ 'ସୃଷ୍ଟି' ଅର୍ଥରେ ବୁଝନ୍ତି ଯେମାନେ
ଅଧୋଗତି ପରାପତ ହୁଅନ୍ତି ସେମାନେ ।
'ବ୍ରହ୍ମ' ଅର୍ଥରେ ଯେମାନେ ତାହାକୁ ବୁଝନ୍ତି
ପରମ କଲ୍ୟାଣ ତାଙ୍କୁ ମିଳେ ରଘୁପତି ।
ଜଗତ ବୀଜ ସ୍ୱରୂପ, ଯେ ସର୍ବ ନିୟନ୍ତା
ବିଜ୍ଞାନାତ୍ମା, ଜୀବରୂପ ପୂର୍ଣ୍ଣ ଏକ ସତ୍ତା ।
ଯହିଁରୁ ନିଖିଳ ବିଶ୍ୱ ହୁଏ ଆବିର୍ଭୂତ
ଜ୍ଞାନ ଉଦୟେ ପୁଣି ଯେ ବିଶୁଦ୍ଧ ଚିନ୍ମାତ୍ର ।
ସେହି ପରମବ୍ରହ୍ମଙ୍କ ଉପଲବ୍ଧି ପାଇଁ
ସତତ ଯତ୍ନ କରିବା ଉଚିତ ଅଟଇ ।
**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଜଗତ୍-ଅନନ୍ତ ବର୍ଣ୍ଣନେ ନାମ ତୃତୀୟ ସର୍ଗଃ**



## ୪ର୍ଥ ସର୍ଗଃ
## ମନ ଅଙ୍କୁର୍ ବର୍ଣ୍ଣନା

କହନ୍ତି ବଶିଷ୍ଠ ପୁଣି ଶୁଣ ଧନୁର୍ଦ୍ଧର
କିପରି ଲଙ୍ଘିବ ଏହି ଭବ ପାରାବାର ।
ଇନ୍ଦ୍ରିୟ ନିଗ୍ରହ ସେତୁ ଆଶ୍ରୟ କରିଣ
ସଂସାର ସାଗର ତରି ପାରିବ ହେ ରାମ ।
ଶାସ୍ତ୍ର ଅନୁଧ୍ୟାନ ପୁଣି ସତସଙ୍ଗ ବଳେ
ବିବେକ ଉଦୟ ହେଲେ ଅନ୍ତର ମଧ୍ୟରେ ।
ଜିତେନ୍ଦ୍ରିୟ ହୋଇପାରେ ଯେବଣ ପୁରୁଷ
ଚିରକାଳ ପାଇଁ ଲୀନ ତା ଜଗତ ଦୃଶ୍ୟ ।
ସଂସାର ସାଗର ଯେଣୁ ହୁଏ ପ୍ରବାହିତ
ଯେ ଉପାୟେ ପୁଣି ତାହା ହୁଏ ଶୁଷ୍କବତ ।
ତାହା ସବୁ ତୁମ ଆଗେ କରିଛି ବର୍ଣ୍ଣନ
ସେ ସମ୍ବନ୍ଧେ ଅତିରିକ୍ତ କି ବୋଲିବି ପୁଣ ?
ସୁନିଶ୍ଚିତ ଭାବେ ଏହା ଜାଣିରଖ ରାମ
ବିଶାଳ କର୍ମ ବୃକ୍ଷର ଅଙ୍କୁର ହିଁ ମନ ।
ଏ ମନ ବିନଷ୍ଟ ହେଲେ ସଂସାର ଅରଣ୍ୟ
ପୋଡ଼ି ଜଳିଯାଏ ପତ୍ତା ନ ରହେ ତା ଜାଣ ।
ଏ ବିଶ୍ୱେ ଯା' କିଛି ଅଛି ତତ୍-ସମସ୍ତର
ମନହିଁ ନିଦାନ ଅଟେ କୌଶଲ୍ୟାକୁମର ।
ମାନସରୂପୀ ବ୍ୟାଧିର ସୁଚିକିତ୍ସା ହେଲେ
ଜଗତ ଦର୍ଶନ ବ୍ୟାଧି ଆରୋଗ୍ୟ ସେ କାଳେ ।
ମନ ସଙ୍କଳ୍ପରୁ ଜାଣ ହେ ରଘୁନନ୍ଦନ
ନାନାଦି ଶରୀର ଜାତ ହୁଏ ଏ ବିଶ୍ୱେଣ ।

* ସ୍ମୃତ୍ୟାତ୍ମା – ପୂର୍ବକଳ୍ପୀ ସ୍ମୃତିସଂପନ୍ନ ।

କଳେବର ଅଛି କିନ୍ତୁ ମନର ଅଭାବ
କେବେ କେ ଦେଖିଛି କହ ହେ ରଘୁପୁଙ୍ଗବ ।
ଦୃଶ୍ୟ ସୃଷ୍ଟିର ଅତ୍ୟନ୍ତ ଅଭାବ ନୋହିଲେ
ମନ-ପିଶାଚ ବିନାଶ ନୋହିପାରେ ଭଲେ ।
ଦୃଶ୍ୟ ପଦାର୍ଥର ଯେଉଁ ନାସ୍ତିତ୍ୱ ସ୍ୱରୂପ
ମନ-ରୋଗର ତା ମୃତ୍ୟୁ ସଞ୍ଜିବନୀ ରୂପ ।
'ମୋହ' ବୋଲି କରି ଯା'କୁ ବୋଲନ୍ତି ଜଗତେ
ମନ ହିଁ କାରଣ ତାର ଜାଣ ରଘୁନାଥେ ।
ଆପେ ଆପେ ଜନ୍ମେ ମନ ଆପେ ଆପେ ମରେ
ମନ ଜନକ ଜନନୀ ନାହିଁ ଜଗତରେ ।
ସ୍ୱ କଳ୍ପନା ବଳେ ମନ ହୁଅଇ ଆବଦ୍ଧ
ମୁକତ ହୁଏ ସେ ପୁଣି ହେଲେ ଜ୍ଞାନ ଲବ୍ଧ ।
ସଙ୍କଳ୍ପରେ ପରିପୂର୍ଣ୍ଣ ଏମନ୍ତ ମନରେ
ବିଶ୍ୱବ୍ରହ୍ମାଣ୍ଡ ସ୍ଫୁରିତ ହୁଏ କାଳେ କାଳେ ।
କିନ୍ତୁ ମନରୁ ଜଗତ ଅଟଇ ସ୍ୱତନ୍ତ୍ର
ସବୁରି ଏ ଧାରଣାଟି ଅଟେ ଦୃଢ଼ୀଭୂତ ।
ଦିବାକରଙ୍କ ଶରୀରେ ଯଥା ରଶ୍ମୀଜାଳ
ମନ ମଧ୍ୟରେ ଜଗତ ସେପରି ଅଟଳ ।
ତେଣୁ ମନହିଁ ଜଗତ, ଜଗତହିଁ ମନ
ଜଡ଼ିତ ଅଛନ୍ତି, ଦୁହେଁ ଅଭେଦ ଅଛିନ୍ନ ।
ମନର ବିନାଶେ ହୁଏ ଜଗତର ନାଶ
ଜଗତର ବିନାଶରେ ମନ ନୁହେ ନାଶ ।
ଅତୀବ କଠିନ ଅଟେ ମନର ବିନାଶ
ମନର ବିନାଶେ କିନ୍ତୁ ଉଭୟଙ୍କ ନାଶ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ
ମନ ଅଙ୍କୁରବର୍ଣ୍ଣନେ ନାମ ୪ର୍ଥ ସର୍ଗଃ ।**



## ୫ମ ସର୍ଗଃ

## ଭାର୍ଗବ ସଂବିତ୍ ଗମନ

କହନ୍ତି ଶ୍ରୀରାମ ଏବେ ଶୁଣ ଗୁରୁଦେବ
ମନ ମଧ୍ୟେ ବିକଶଇ କିପରି ଏ ଭବ ?
ଦୃଷ୍ଟାନ୍ତ ସହ ସେ ସବୁ ପ୍ରାଞ୍ଜଳ ଭାବରେ
ବୁଝାଇ କହନ୍ତୁ ମୋତେ ଆହେ ତପୀବରେ ।
କହନ୍ତି ବଶିଷ୍ଠେ ଏବେ ଶୁଣ ହେ ଶ୍ରୀରାମ
ପୂର୍ବେ କରିଥିଲ ଇନ୍ଦୁ ପୁତ୍ରଙ୍କ ବ୍ୟାଖ୍ୟାନ ।
ସଠିକ କରିଣ ଏବେ କହୁଅଛି ଶୁଣ
ଶରୀର ନ ଥିଲା ଇନ୍ଦୁ ପୁତ୍ରଙ୍କର ଜାଣ ।
କିନ୍ତୁ ତାଙ୍କ ମନ ମଧ୍ୟେ ଏକାନ୍ତ ସୁସ୍ପଷ୍ଟ
ଜଗତ ଅକ୍ଷୁର୍ଣ୍ଣ ରୂପେ ଥିଲା ଜାଗରିତ ।
ତେସନ ସବୁରି ମନ ମଧ୍ୟରେ ହେ ରାମ
ଅଭିନବ ଏ ଜଗତ ଅଛି ବିଦ୍ୟମାନ
ଐନ୍ଦ୍ରଜାଲିକ ପ୍ରଭାବେ ଲବଣ ରାଜନ
ଚଣ୍ଡାଳତ୍ୱ ଗ୍ରାସ କରିଥିଲା ତାଙ୍କ ମନ ।
ଭୃଗୁସୁତ ଶୁକ୍ରଙ୍କର ସ୍ୱର୍ଗଭୋଗ ଇଚ୍ଛା
ଅପ୍ସରାଗଣଙ୍କ ସହ ବିଳସିବା ବାଞ୍ଛା,
ପୁଣି ଏ ମର୍ତ୍ତ୍ୟ ସଂସାର ଲୀଳାଖେଳା ପାଇଁ
ଜନ୍ମାନ୍ତର ଘଟିଥିଲା ଆହେ ରଘୁସାଇଁ ।
ସବୁରି ମନ ମଧ୍ୟରେ ତେସନ ହେ ରାମ
ଭ୍ରାନ୍ତିମୟ ଏ ଜଗତ ଅଛି ବିଦ୍ୟମାନ ।
ପ୍ରଥମ ଦୁଇ ଦୃଷ୍ଟାନ୍ତ କରିଛି ବଖାଣ
ଏହି ତୃତୀୟ ଦୃଷ୍ଟାନ୍ତ ମନ ଦେଇ ଶୁଣ ।
ଶ୍ରୀରାମ କହନ୍ତି ଶୁଣ ଆହେ ତପୀବର
ସ୍ୱର୍ଗଭୋଗର ବାସନା ଶୁକ୍ରାଚର୍ଯ୍ୟଙ୍କର ।
ଅପ୍ସରା ସଂଭୋଗ ପୁଣି ସାଂସାରିକ ଭାବ
କେଉଁପରି ଘଟିଥିଲା କୁହ ଗୁରୁଦେବ ।
କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ଭୃଗୁମୁନି କାଳଙ୍କର କଥୋପ କଥନ ।
ତାହା ତୁମ ଆଗେ କରୁଅଛଇ କୀର୍ତ୍ତନ
ଶ୍ରବଣ କରନ୍ତୁ ତାହା ଦେଇ ମନ କର୍ଣ୍ଣ ।
ପୂର୍ବେ ମନ୍ଦର ପର୍ବତ ସମତଳ ଦେଶେ
ଭୃଗୁ ମହାମୁନି ତହିଁ ତପ କରିବସେ ।
ପିତାଙ୍କ ସେବା କରନ୍ତି ଶୁକ୍ର ମହାମୁନି
ନିଜକୁ ଧନ୍ୟ ମଣନ୍ତି ପିତୃସେବା ଘେନି ।
ଭୃଗୁ ତହିଁ ବହୁକାଳ ସମାଧିସ୍ଥ ହେଲେ
ଅବଶେଷେ ନିର୍ବିକଳ୍ପ ସମାଧି ଲଭିଲେ ।
ଏହି ଅବସର ଦେଖି ସେ ମୁନି କୁମର
ବିଚରଣ କରୁଥାନ୍ତି ସେ ବନ ମଧ୍ୟର ।
ମୁନିପୁତ୍ର ନିରେଖନ୍ତି ଆକାଶ ମଧ୍ୟରେ
ଅପସରୀ ଗତିକରେ ଅତି କ୍ଷିପ୍ରତରେ ।
ବିଜୁଳି ପରି ଝଟକେ ତାର କାନ୍ତି ପ୍ରଭା
ଥକାହୋଇ ମୁନିବଳା ରହିଗଲେ ଉଭା ।

ପୁନିଅ ଚନ୍ଦକୁ ଦେଖି ସାଗର ଯେସନ
ଉଲ୍ଲସିତ ହୋଇ ଉଠେ ଶୁକ୍ର ଅପଘନ ।
ରୂପଲାବଣ୍ୟ ଦେଖିଣ ସେ ସ୍ୱର୍ଗବାଳାର
ଭୁଲିଗଲେ ଶୁକ୍ରମୁନି ନିଜ କଳେବର ।
ଶୁକ୍ରମୁନି ମୁଖ ଦେଖି ସ୍ୱର୍ଗ ଅପସରୀ
ଅନ୍ତର ଥରି ଉଠଇ ପଲକ ନ ପଡ଼ି ।
ଚିତ୍ତବୃତ୍ତି ତାଙ୍କ ଟାଣି ନେଇଛି ଅପ୍‌ସରୀ
ତା' କବଳୁ ଶୁକ୍ରମନ ନ ପାରଇ ଫେରି ।
ମାନସ ଚକ୍ଷୁରେ ଶୁକ୍ର କରନ୍ତି ଦର୍ଶନ
ସେହି ସ୍ୱର୍ଗବାଳା ନାଚେ ତାଙ୍କର ନୟନ ।
ଚକାମୁଣ୍ଡି ପକାଇ ସେ ଧ୍ୟାନେ ବସିଗଲେ
ବାଳା ଧ୍ୟାନେ ମନୋମୟ ରାଜ୍ୟ ବିସ୍ତରିଲେ ।
ଦେଖୁଥାନ୍ତି ସେହି ବାଳା କରୁଅଛି ନୃତ୍ୟ
ତାହାଦେଖି ମୁନି ହେଉଥାନ୍ତି କୃତ କୃତ୍ୟ ।
ଆହା କି ! ଆମୋଦ-କର ଏ ଅମର ଭୂଇଁ
କି ତପ ବଳ ମୋ ଥିଲା ଏହା ଲଭିଲଇଁ ।
ଦେଖ ଚଉରିଆଡ଼େ ବସିଅଛି ଦେବସଭା
ଦେବଙ୍କ ମନ୍ଦାରମାଳା ଦିଶେ କେଡ଼େ ଶୋଭା ।
ନିଜ ମନକୁ ନିବୃତ୍ତ କରିବାର ପାଇଁ
ବହୁ ଚେଷ୍ଟା କରି ଥକିଲେ ସେ ତପିସାଇଁ ।
ଏକାଗ୍ର ମନ ଥିବାରୁ ଅପସରା ଠାଇଁ
ସର୍ବଦା ସେ ବାଳା ତାଙ୍କ ନେତ୍ରେ ନାଚୁଥାଇ ।
ଚଞ୍ଚଳ ନୟନା ମୃଗନେତ୍ରୀ ନାରୀଙ୍କର
ନୟନ ଭ୍ରମ ଜନ୍ମାଏ ସୁନୀଳ କମଳ ।
ଇନ୍ଦ୍ର, ମରୁତ, ବରୁଣ ଲୋକପାଳଗଣ
ଅନଳ ଜିଣି ଦିଶନ୍ତି କେଡ଼େ ସୁଶୋଭନ ।
ବିମାନ ବିହାରୀ ଦେବଗଣ ସ୍ୱର୍ଗପୁରେ
ନକ୍ଷତ୍ରପରି ଦିଶନ୍ତି ଅମର ନିକରେ ।
ଐରାବତ ଗତ ଦେଖ ଆକାଶ ଗଙ୍ଗାରେ
ଜଳକ୍ରୀଡ଼ା କରୁଅଛି କେଡ଼େ ଆନନ୍ଦରେ ।
ସୁରପତି ଇନ୍ଦ୍ର ବିଜେ ରତ୍ନ ସିଂହାସନେ
ବାମ ପାଶ ଶଚିଦେବୀ କରନ୍ତି ମଣ୍ଡନ ।
ଆହାକି ସୁଯୋଗ ମୋତେ ମିଳିଅଛି ଏବେ
ଯଥାବିଧି ପ୍ରଣିପାତ ଦେବି ଇନ୍ଦ୍ରଦେବେ ।
କହୁ କହୁ ସାଷ୍ଟାଙ୍ଗରେ କରି ପ୍ରଣିପାତ
ନିଜକୁ କୃତାର୍ଥ ମଣେ ଭୃଗୁମୁନି ସୁତ ।
କଳ୍ପିତମୟ ସେ ଦେବରାଜ ଧାଇଁ ଆସି
କର ପଲ୍ଲବ ପ୍ରସାରି ଶୁକ୍ରଙ୍କୁ ସମ୍ଭାସୀ ।
ସମାଦର କରି ତାଙ୍କୁ ଘେନି ଚଳିଗଲେ
ନିଜ ସିଂହାସନ ପାଶେ ତାଙ୍କୁ ବସାଇଲେ ।
କହନ୍ତି ଶଚୀରମଣ ଆହେ ତପୋଧନ
ତୁମକୁ ଦେଖି ନିଜକୁ ମଣଇ ମୁଁ ଧନ୍ୟ ।
ମୋର ଏ ଅମରପୁରୀ ଆହେ ତପୋଧନ
ଅଧିକ ସୌନ୍ଦର୍ଯ୍ୟଶାଳୀ ହେଲା ଆଜ ଜାଣ ।
ଏହି ସ୍ଥାନେ ଚିରକାଳ ତୁମେ ବାସକର
ମୋ ଦେବସଭାକୁ ମଣ୍ଡୁଥାଅ ନିରନ୍ତର ।
ଏହିପରି ଶୁକ୍ରାଚାର୍ଯ୍ୟ ସରଗ ରାଇଜେ
ନିଜକୁ ଧନ୍ୟ ମଣନ୍ତି ତହିଁ କରି ବିଜେ ।
ଏହିପରି ମନୋମୟ ସ୍ୱର୍ଗେ ଶୁକ୍ରମୁନି
ମନୋମୟ ସ୍ୱର୍ଗ ସୁଖେ ବୁଡ଼ିଥାନ୍ତି ପୁଣି ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଭାର୍ଗବ ସଂବିଦ୍‌ଗମନ ନାମ ପଞ୍ଚମସର୍ଗଃ ।**



## ୬ଷ୍ଠ ସର୍ଗଃ

## ଭାର୍ଗବ ମନୋରାଜ୍ୟ ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ପୁଣି ଶୁଣ ହେ ଶ୍ରୀରାମ
କାଳ୍ପନିକ ସ୍ୱର୍ଗେ ରହି ସେ ଭୃଗୁନନ୍ଦନ ।
ପାଶୋରି ବସିଲେ ତାଙ୍କ ସର୍ବ ପୂର୍ବଭାବ
ପିତୃସେବା ଆଦି କରି ଯାହାକି କର୍ତ୍ତବ୍ୟ
ସ୍ୱର୍ଗସୁଖ ଭୋଗେ ହୋଇକରି ଆତ୍ମହରା
ଏଣେ ତେଣେ ବୁଲନ୍ତି ସେ ଦେବଭୂମି ସାରା ।
ଅନ୍ୟ ଅପସରା ଗଣେ ବିଚରୁଣ ଥାନ୍ତି
ତାଙ୍କ ମଧ୍ୟେ ପୂର୍ବଦୃଷ୍ଟ ଅପ୍‌ସରୀ ଗମନ୍ତି ।
ଶୁକ୍ରଙ୍କ ଦୃଷ୍ଟି ପଡ଼ନ୍ତେ ସେ ବାଳା ଉପରେ
ଥରି ଉଠେ ମୁନି ଅପଘନ ଭାବ ଭୋଳେ ।
ଥକାହୋଇ ମୁନି ତହୁଁ ରହିଯାନ୍ତେ ଉଭା
ସେ ସରଗବାଳା ତାଙ୍କୁ ଦେଖି ହୁଏ ବାବା ।
ଅପଲକ ନେତ୍ରେ ମୁନି ରହିଥାନ୍ତି ଚାହିଁ
ସେ ସୁର କାମିନୀ ମଧ୍ୟ ଭାବେ ଭୋଳହୋଇ,
ଅଧୀନ ହୋଇଲା ବାଳା ଭାର୍ଗବଙ୍କୁ ଦେଖି
ମଥାପୋତି ରହିଲା ସେ ନ ପଡ଼ଇ ଆଖି ।

ଦେବରାଜ ଇନ୍ଦ୍ରଙ୍କର ନନ୍ଦନ କାନନ
ଯେ ତହିଁ ଯାଏ ତା ଇଚ୍ଛା କରେ ସେ ପୂରଣ ।।
ସେଇଥି ପାଇଁକି ଅବା ଅନଙ୍ଗ ଦେବତା
ବାଣ ବର୍ଷଣ କରନ୍ତେ ବୁଢ଼େ ତାର ଚେତା ।।
ଦେବବାଳାର ଅବସ୍ଥା ଦେଖି ଭୃଗୁସୁତ
ଅନ୍ଧକାର କଳପନା କରନ୍ତି ତ୍ୱରିତ ।
ଦେବଲୋକେ ଯେଉଁସ୍ଥାନେ ଉଭାଥିଲେ ସେହି
ଘୋର ଅନ୍ଧକାର ଘୋଟେ ସେହି ଦେବଭୂଇଁ ।।
ସଖିଗଣ ସେ ଦୁହିଁଙ୍କ ଭାବ ବୁଝିପାରି
ପ୍ରସ୍ଥାନ ପୂର୍ବକ ତହୁଁ ଗଲେ ଅପସରି ।
ଲଜ୍ଜାବଶ ମଥାପୋତି ସେହି ଦେବବାଳା
ମୁନିଙ୍କର ହସ୍ତଧରି ଆଗେଇ ଚଳିଲା ।
ମନୋମୟ ପ୍ରାସାଦର ଫାଟକ ଡ଼େଇଁଣ
ଗୃହମଧ୍ୟେ ପ୍ରବେଶିଲେ ତହିଁ ଦୁଇଜଣ ।
କଳ୍ପନାମୟ ପଲଙ୍କେ ଉପବିଷ୍ଟ ହୋଇ
ବିହାର କରନ୍ତି ଦୁହେଁ ଭାବେ ଭୋଳହୋଇ ।।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଭାର୍ଗବ ମନୋରାଜ୍ୟ ବର୍ଣ୍ଣନେ**
**ନାମ ୬ଷ୍ଠ ସର୍ଗଃ ।**



## ୭ମ ସର୍ଗଃ
## ଭାର୍ଗବ ସଂଗମ

କଳ୍ପନା ନଗର ମାନ ରଚେ ଭୃଗୁସୁତ
ବନ ଉପବନ ଆଦି ଯା ଯହିଁ ଉଚିତ ।
ମନ ଅଟ୍ଟାଳିକାମାନ ହୋଇଗଲେ ଠିଆ
ଆଖି ନ ପାଇବ ଦେଖି ଫୁଲି ଉଠେ ହିଆ ।।
ମନଗଢ଼ା ପ୍ରଣୟରେ ରହିଛନ୍ତି ବୁଡ଼ି
ଦେବବାଳା ସହ ନାନା ସ୍ଥାନେ ଯାନ୍ତି ବୁଲି ।।
ଆକାଶ ବାହିନୀ ଗଙ୍ଗା ହରି ନିଏ ମନ
ଦଳ ଦଳ ମତ୍ତ ହଂସ ଯହିଁ ବିଚରଣ ।
ହେମ ପଙ୍କଜେ ଶୋଭିତ ଧବଳାଙ୍ଗୀ ବକ୍ଷ
ଦିନରାତି ଜଗି ବସିଥାନ୍ତି ଯାକୁ ଯକ୍ଷ ।
ପାରିଜାତ କୁଞ୍ଜ ମଧ୍ୟେ ରସାୟନ ପାନ
ସରୋବରେ ଜଳକ୍ରୀଡ଼ା ନନ୍ଦନ କାନନ ।
ଚୈତ୍ରରଥ କାନନରେ ନୃତ୍ୟ ମଣ୍ଡପରେ
ଦୋଳି ଖେଳ ଖେଳୁଥାନ୍ତି ଦେବାଙ୍ଗନାମେଳେ ।।
କୈଳାସବନ କୁଞ୍ଜରେ ଦେବଗୀତିଗାନ
ରୋମ ଟାଙ୍କୁରି ଉଠଇ କରିଯା ଶ୍ରବଣ ।
ଲୋକାଲୋକ ତଟପ୍ରାନ୍ତେ କ୍ରୀଡ଼ାକଉତୁକ
ନୟନ ମନ ହରଇ ଦେଖି ଚକ୍ରବାକ ।
ଦୁଆତ୍ରିଂଶ ଯୁଗହେଲା ଏହିପରି ଗତ
ଲୀଳା ବିହାର ତାଙ୍କର ନ ହୁଅଇ ଅନ୍ତ ।
'ପୁଣ୍ୟବଳ କ୍ଷୟହେଲା' ବୋଲି ଏ ଭାବନା
ପରଶନ୍ତେ ମନତାଙ୍କ ଶୁକ୍ର ମହାମନା ।
ସରଗରୁ ଖସି ଆସି ପଡ଼ନ୍ତି ମରତେ
ଅମର ବିଳାସିନୀ ସେ କାମିନୀ ସହିତେ ।
ସ୍ୱର୍ଗରୁ ଖସି ଆସନ୍ତେ ତାଙ୍କରି ଶରୀର
ବିଚୂର୍ଣ୍ଣ ହୋଇ ଧରଇ ଧୂଳିର ଆକାର ।
ଆଧାର ବିହୀନ ହୋଇ ଚିତ୍ତ ତାହାଙ୍କର
ଉଡ଼ିଣ ବୁଲଇ ସେହି ଗଗନ ମଣ୍ଡଳ ।
ପରେ ସେହି ଚିତ୍ତ ଦ୍ୱୟ ଚନ୍ଦ୍ର କିରଣରେ
ମିଶିଯାଇ ହିମକଣା ଆକୃତି ଧରିଲେ
ଭୂତଳରେ ପଡ଼ି ସେହି ହିମକଣାମାନ
ପୃଥ୍ୱୀରସେ ମିଶି ଶାଳିଧାନେ ଅବସ୍ଥାନ ।
ଦଶାର୍ଣ୍ଣ ଦେଶ ନିବାସୀ ଜନୈକ ବ୍ରାହ୍ମଣ
ସେ ଧାନ୍ୟର ତଣ୍ଡୁଳକୁ କଲେକ ଭୋଜନ ।
ବ୍ରାହ୍ମଣର ଶୁକ୍ରାକାରେ ସେ ଭୃଗୁନନ୍ଦନ
ଦ୍ୱିଜ ପତ୍ନୀ ଗର୍ଭୁ ପୁତ୍ର ରୂପରେ ଜନମ ।
ସେହି ଅପସରା ଜଣେ ମୁନିଙ୍କ ଶାପରେ
ହରିଣୀରୂପେ ଜନମ ଲଭେ ଧରାତଳେ ।
ମୁନିଗଣଙ୍କ ସଙ୍ଗରେ ସେ ଭୃଗୁ ତନୟ
ମେରୁ ଦେଶେ ବନ ମଧ୍ୟେ ତପେ ରଖେ ଲୟ ।
ଭୃଗୁ ପୁତ୍ର ଔରସରେ ହରିଣୀ ଗର୍ଭରେ
ପୁତ୍ରେକ ଜନମ ହୁଏ ମନୁଷ୍ୟ ଆକାରେ ।
ପୁନରପି ଭୃଗୁ ମୁନି ପୁତ୍ର ସ୍ନେହ ବଶେ
ମୋହଗ୍ରସ୍ତ ହୋଇ ତପ ଧ୍ୟାନ ଛାଡ଼ି ବସେ ।
ପୁତ୍ରର ଉନ୍ନତି କଷ୍ଟେ କଟିଲା ଜୀବନ
କିପରି ସେ ପୁତ୍ର ତାଙ୍କ ହେବ ଧନବାନ ।
ଆୟୁଷ୍ମାନ ହେବ ପୁଣି ହେବ ଗୁଣବାନ
ଦିନରାତି ଅହରହ ମୁନିଙ୍କର ଧ୍ୟାନ ।
କାଳବଶ ହୋଇ ମୁନି ତେଜିଲେ ଜୀବନ
ମଦ୍ରଦେଶ ରାଜା ହୋଇ ଲଭିଲେ ଜନମ ।

ମଦ୍ରଦେଶେ ଦୀର୍ଘକାଳ ରାଜ୍ୟ ଭୋଗକରି
ଜରାଗ୍ରସ୍ତ ହୋଇ ମୁନି ଶେଷେ ପ୍ରାଣ ହାରି ।
ମଦ୍ର ଦେଶେ ରାଜଭୋଗ କରୁଥିବା ବେଳେ
ତପ ବାସନା ତାଙ୍କର ମନରେ ସଞ୍ଚରେ ।
ସେ ବାସନା ଫଳେ ଗଙ୍ଗା ନଦୀର ତଟରେ
ତପସ୍ୱୀ ସନ୍ତାନରୂପେ ଜନମ ଲଭିଲେ ।
କଠୋର ତପସ୍ୟାରେ ସେ ହୋଇଲେ ମଗନ
ଜଣା ନ ଯାଏ କିପରି କଟେ ରାତ୍ରିଦିନ ।
ନିଶ୍ଚଳ ନିସ୍ପନ୍ଦ ଭାବେ ସମାହିତ ରହି
ଅଚଳ ସଦୃଶ ତାଙ୍କ ଦିନ କଟୁଥାଇ

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଭାର୍ଗବ ସଂଗମ ବର୍ଣ୍ଣନେ ନାମ ୭ମ ସର୍ଗଃ ।**



## ୮ମ ସର୍ଗଃ

## ଶୁକ୍ର-ବିବିଧ ଜନ୍ମାନୁଭବ

ବଶିଷ୍ଠ କହନ୍ତି ରାମ ଭୃଗୁଙ୍କ ନନ୍ଦନ
ପିତାଙ୍କ ସମକ୍ଷେ ବସି କଳ୍ପନ୍ତି ଏସନ ।
ନାନା ଭୋଗ ସମ୍ଭୋଗରେ ବହୁକାଳ ଗତ
ଏହିପରି ହୁଏ ତାଙ୍କ କଳ୍ପନା ସମ୍ଭୁତ ।
ପିତୃ ସମକ୍ଷରେ ଥିବା ଶୁକ୍ରଙ୍କ ଶରୀର
ବାୟୁ, ରୌଦ୍ର, ଜଳଦ୍ୱାରା କ୍ଷୟ ହୁଏ ତାର ।
ସଢ଼ି ଝଡ଼ିପଡ଼େ ତଳେ ମେଦ ମାଂସ ଆଦି
ଭୃଗୁଙ୍କ ତପ ପ୍ରଭାବ ରଖିଛି ସମ୍ପାଦି ।
ବନ୍ୟ ପଶୁ, ପକ୍ଷୀ, କୀଟ, ପତଙ୍ଗାଦି ମାନ
ସାହାସ ନ କଲେ କରିବାକୁ ତା ଭକ୍ଷଣ ।
ଦେବମତେ ସହସ୍ର ବର୍ଷ ହୋଇଗଲା ଗତ
ସମାଧି ତେଜିଣ ଭୃଗୁ ହୁଅନ୍ତି ଜାଗ୍ରତ ।
ପୁତ୍ରଙ୍କୁ ନ ଦେଖି ମୁନି ହୁଅନ୍ତି ବିକଳ
ସମ୍ମୁଖେ ଦେଖନ୍ତି ମୁନି ପଡ଼ିଛି କଙ୍କାଳ ।
ଉଭାହୋଇ ଚଉଦିଗେ ଦିଅନ୍ତି ଅନାଇ
ପୁତ୍ରର ଧଡ଼ସ ବାରି ନ ପାରନ୍ତି କାହିଁ ।
ପୂର୍ବାପର ବିବେଚନା ନ କରି ତପୀଶ
"ଗତାସୁ" ହେଲା କି ପୁତ୍ର, ଏ କି ଅବଶେଷ ।
ପୁତ୍ର ମୃତ୍ୟୁ ଆଶଙ୍କାରେ ଅଧୀର ହୋଇଣ
ଭବିତବ୍ୟତା ବିଷୟ ଭାବି ନ ପାରିଣ ।
'କାଳ କି ଅକାଳେ' ମୋର ପୁତ୍ରକୁ ନାଶିଲା
ଏ ଭାବନା ମୁନି ହୃଦ ଚମକାଇ ଦେଲା ।

କାଳ ପ୍ରତି କ୍ରୋଧବଶ ହୋଇ ତପୋବନ୍ତ
ଅଭିଶାପ ଦେବାପାଇଁ ହୁଅନ୍ତେ ଉଦ୍ୟତ ।
ମୂର୍ତ୍ତିବନ୍ତ ହୋଇ କାଳ ସମ୍ମୁଖିରେ ଉଭା
ଝଲସି ଉଠେ କବଚ କୁଣ୍ଡଳର ପ୍ରଭା ।
ଛଅଗୋଟା ମୁଣ୍ଡ ତାର ସମସ୍ତଙ୍କୁ ଖାଏ
ଦ୍ୱାଦଶ ଭୁଜରେ ଖଡ୍‌ଗ, ପାଶ ଆଦି ଥାଏ ।
କିଙ୍କର ଓ ସେନାଗଣ ରହିଛନ୍ତି ପାଶ
ଦେଖି ଯମ ରାଜାଙ୍କର ଉଡ଼ିଯିବ ହୋସ ।
ଦେହ କାନ୍ତିର ଝଲକେ ଆକାଶ ମଣ୍ଡଳେ
କିଂଶୁକ ଶୋଭିତ ଗିରି ଭ୍ରମ ଦିଏ ଡୋଳେ ।
ତ୍ରିଶୂଳ ମୁନରୁ ଅଗ୍ନି ସ୍ଫୁଲିଙ୍ଗ ପଟଳ
ଦିଗ ଅଙ୍ଗନାଙ୍କର କି କନକ କୁଣ୍ଡଳ ।
ପ୍ରଚଣ୍ଡ ନିଃଶ୍ୱାସ ବଳେ ଧରାଧର ମାନ
ତ୍ରାସ ଜନମାନ୍ତି ନଭେ ହୋଇ ଉଡ୍‌ଡ୍ରୀୟାନ ।
କାଳାଗ୍ନି ଭ୍ରମ ଜନ୍ମାଏ କରବାଳ ତେଜ
ସହି କି ପାରିବ ସାରା ବିଶ୍ୱ ତାର ଓଜ ।
କାଳାଗ୍ନି ଧୂମ୍ର ପଟଳ ସୂର୍ଯ୍ୟ ପରେ ପଡ଼ି
ଶ୍ୟାମାୟମାନ ଦିଶନ୍ତି ଗଗନ ବିହାରୀ ।
ବୃଦ୍ଧ ମୁନି ନିକଟରେ ମହାକାଳ ଥାଇଁ
ପ୍ରିୟ ବାକ୍ୟ ସମ୍ବୋଧିଣ ମୁନିଙ୍କୁ କହଇ ।
ମହା ମୁନେ ! ଏବେ ଶୁଣ ମୋର କହିବାର
ଆପଣଙ୍କୁ ପୂର୍ବାପର ସକଳ ଗୋଚର ।
ଆପଣଙ୍କ ପରି ସିଦ୍ଧ ମହାତ୍ମାଗଣେ
ମୋହଗ୍ରସ୍ତ ହୋଇ ନଥାନ୍ତି ତ କଦାଚନେ ।
"ମୋହ"ର କାରଣମାନ ଯେତେ ଥାଉ ପଛେ
ସବୁ ଦାବିଦୁବି ଦେଇ ରହିଥାନ୍ତି ଉଚ୍ଚେ
କିସ ବା ନ ଜାଣ ଦେବ ସଂସାରର ରୀତି
ନିୟତି ଅଧିନ ଆମେ ସେଇ ଆମ ଗତି ।
ଆପଣ ବ୍ରାହ୍ମଣ ପୁଣି ତପ ପରାୟଣ
ସକଳଙ୍କ ପୂଜନୀୟ ସେହେତୁ ଆପଣ ।
ବୃଥାରେ ତପସ୍ୟାକ୍ଷୟ ନକର ହେ ମୁନି
ସର୍ବନାଶ ହେବ ତୁମ ସ୍ୱଳ୍ପବୁଦ୍ଧିଘେନି ।
ଅକ୍ଷମ ପ୍ରଳୟ ଅଗ୍ନି ମୋତେ ଦହିବାକୁ
ଭଲକରି ଭାବିଦେଖ ଦହିବ କାହାକୁ ।
କି କରି ପାରିବ ତୁମ ଶାପାନଳ ମୋର
ଶତ ଶତ ବ୍ରାହ୍ମଣ ଯେ ମୋହର ଆହାର ।

କୋଟି କୋଟି ବିଷ୍ଣୁ ପୁଣି କୋଟି କୋଟି ରୁଦ୍ର
ପଲକ ମାତ୍ରକେ ଚଳୁ କରିପାରେ ଭଦ୍ର ।
କି ଅଛି ଅସାଧ୍ୟ ମୋର ପାରିବକି କହି
ନିୟତି ଏ ସବୁ ସ୍ଥିର କରି ଯେ ଅଛଇ ।
ଆପଣମାନଙ୍କ ସହ ବ୍ରହ୍ମାଣ୍ଡ ସକଳ
ମୋହର ଭୋଜନ ମୁନେ, ମୋହର ଆହାର ।
ମୋର ଇଚ୍ଛା ନୁହେଁ କିନ୍ତୁ ନିୟତି ବଶତଃ
ପୂର୍ବରୁ ହେ ମୁନି ! ହୋଇଅଛି ସ୍ଥିରୀକୃତ ।
ଅଗ୍ନି ଉର୍ଦ୍ଧ୍ୱଗାମୀ ପୁଣି ଜଳ ନିମ୍ନଗାମୀ
ନିୟତିର ଏ ନିୟମ ଜାଣିରଖ ମୁନି ।
ବିନାଶ କାଳ ହେ ମୁନେ, ହୁଅନ୍ତେ ଆଗତ
ଭୋକ୍ତା ସମୀପେ ଭୋଜନ ଆସି ଉପସ୍ଥିତ ।
ସୁବିଚାର ବଳେ ମୁନି ବୁଝିବ ତାତ୍ପର୍ଯ୍ୟ
କେହି ନୁହେଁ ଭୋକ୍ତା ପୁଣି କେହି ନୁହେଁ ଭୋଜ୍ୟ ।
ସକଳ ଅଟନ୍ତି ଜାଣ ସେହି ପରମାତ୍ମା
ତାହାଙ୍କ ବ୍ୟତୀତ ନାହିଁ ଅନ୍ୟ କାହା ସତ୍ତା ।
ମୁହିଁ ସେହି ପରମାତ୍ମା, ମୁହିଁ ଭୋକ୍ତା ଭୋଜ୍ୟ
କେବଳ କଳ୍ପନା ଏହା, ଏହାହିଁ ତାତ୍ପର୍ଯ୍ୟ ।
ପରମାତ୍ମା ହିଁ କେବଳ ଜଗତ ଆକାରେ
ପ୍ରକାଶ ପାଇ ଅଛନ୍ତି ବିଶ୍ୱ ଚରାଚରେ ।
ତେଣୁ ସର୍ବ ସଂହାରକ ସେହି ପରମାତ୍ମା
କି ଅଛି ସଂଶୟ ଏଥି କହ ହେ ପୁଣ୍ୟାତ୍ମା ?
ବିବେକ ଦୃଷ୍ଟିରେ ଯେବେ ଦେଖିବ ହେ ମୁନି
କେହି ନାହିଁ କର୍ତ୍ତା କିମ୍ବା ଭୋକ୍ତା ଏ ମେଦିନୀ ।
ଅଜ୍ଞାନରୁ ବହୁ କର୍ତ୍ତା ଭୋକ୍ତା ଦେଖାଯାନ୍ତି
ଅଜ୍ଞାନ ଘୋଡ଼ାଇ ଅଛି ସଦା ଏହି କ୍ଷିତି ।
ଅଜ୍ଞାନ ଅନ୍ଧାର ଯାର ଦୃଷ୍ଟି କି ଘାରିଛି
ଏକ କହେ ଆନ ବ୍ୟକ୍ତି ଏହା କରିଅଛି ।
ଏପରି କେବେଁ ନ ଦେଖେ ଯେ ବିଚାରବାନ୍
ଏ ସବୁ ମନର ଭ୍ରାନ୍ତି ବୋଲି ତାଙ୍କ ଜ୍ଞାନ ।
ଶାନ୍ତଭାବ ଧର ମୁନି ନାଶ କ୍ରୋଧ ଅଗ୍ନି
ଅଧୈର୍ଯ୍ୟ ନହୁଅ ବୃଥା ପୁତ୍ର ଶୋକ ଘେନି ।
କ୍ରୋଧ ହିଁ ଜାଣିବ ନାନା ଅନର୍ଥ କାରଣ
ଯଥାଯଥ ଭାବେ ଯେବେ ଦେଖିବ ଏ ମାନ ।
କଉଣସିଠାରେ କିଛି ବ୍ୟତିକ୍ରମ ନୋହି
ଯାହା ଯେଉଁପରି ଥିଲା ସେପରି ଅଛଇ ।

ଖ୍ୟାତି ପ୍ରତିପତ୍ତି ପାଇଁ ନାହିଁ ମୋ ଆକାଂକ୍ଷା
ନିୟତି ନିୟମ ଖାଲି କରିଥାଏ ରକ୍ଷା ।
କୌଣସି ଅଭିମାନର ନୁହେଁ ମୁହିଁ ବଶ
ନିୟତି ଶାସନ ଖାଲି ମୋହର ଆଦର୍ଶ ।
ନିୟତି ନିୟମ ଅଛି ତପସ୍ୱୀ ସମ୍ମାନ
ରକ୍ଷା କରିବାକୁ ହେବ ଆହେ ତପୋଧନ ।
ସେହି ଅନୁରୋଧେ ଜାଣ ଏଠାକୁ ଆସିଛି
ଶାପ ପାଇଁ ଭୟଭୀତି ନାହିଁ ମୋର କିଛି ।
ମୋର ଅଧୀନ ହୋଇଣ ଆହେ ମୁନିବଳା
କର୍ତ୍ତବ୍ୟ ସାଧନେ ନ କରିବ ଅବହେଳା ।
କାହିଁଗଲା ତୁମ୍ଭର ସେ ଜ୍ଞାନଦୃଷ୍ଟି ମୁନି ?
ଅସୀମ ଧୈର୍ଯ୍ୟ; ମହତ୍ୱ ଅଛି କେଉଁମୁଣି ?
କର୍ମ ବିପାକ ବଶତଃ ତୁମ୍ଭର ପୁତ୍ରର
ଶୋଚନୀୟ ଦଶା କିପାଁ ହୁଡ଼ ମୁନିବର ?
ମୂର୍ଖପରି ବୃଥା ଅଭିଶାପ ଦେବାପାଇଁ
ଆଗେଇ ଆସିଛ କିପାଁ ହେ ତପୀ ଗୋସାଇଁ ?
ଜାଣି ନାହଁ କି ହେ ମୁନି ପ୍ରାଣୀମାନଙ୍କର
ବିଧାତା ଦେଇଛି ଦୁଇ ପ୍ରକାର ଶରୀର ।
ପଞ୍ଚଭୂତମୟ ପୁଣି ମନୋମୟ ଦୁଇ
ପ୍ରାଣୀଙ୍କ ଶରୀର ଜାଣ ଆହେ ତପୀସାଇଁ ।
କ୍ଷଣଭଙ୍ଗୁର ଅଟଇ ଭୌତିକ ଶରୀର
କ୍ରୋଧାଦି ପିଡ଼ନ୍ତି ମନୋମୟ କଳେବର ।
ରଥକୁ ଚଳାଉଥାଏ ସାରଥୀ ଯେସନ
ଭୌତିକ ଦେହକୁ ମନ ଚଳାଏ ତେସନ ।
ମାଟିରୁ ବାଳକ ଗଢୁଥାନ୍ତି ମୂର୍ତ୍ତିମାନ
ଭାଙ୍ଗୁଥାନ୍ତି, ଗଢୁଥାନ୍ତି, ସ୍ୱଇଚ୍ଛାମତେଣ ।
ଶରୀରାନ୍ତର କଳ୍ପନା କରି ଏହି ମନ
ପୂର୍ବ ଶରୀରର ଧ୍ୱଂସ କରଇ ସାଧନ ।
ମନ ହିଁ ପୁରୁଷ ମୁନି ଏ ମର ସଂସାରେ
ମନ କାର୍ଯ୍ୟହିଁ ପୁରୁଷ କାର୍ଯ୍ୟ ମୁନିବରେ ।
କଳ୍ପନା ବଳେହିଁ ମନ ଲଭଇ ବନ୍ଧନ
କଳ୍ପନା ବିନାଶେ ମୁକ୍ତି ଲବଧ ତେସନ ।
ଯେତେବେଳେ ସମାଧିସ୍ଥ ହୋଇଲେ ଆପଣ
ଆପଣଙ୍କ ପୁତ୍ର ମନ ତେଜିଲା ଏ ସ୍ଥାନ ।
ଶରୀର ରହିଲା ଏଥି, ମନ ସ୍ୱର୍ଗପୁରେ
ବିଚରଣ କରୁଥାଇ ଅପସରୀ ମେଳେ ।

**ବିଶ୍ୱାଚୀ** ଅପ୍‌ସରା ସହ ପ୍ରଣୟ ହୋଇଲା
ଦ୍ୱାତ୍ରିଂଶ ଯୁଗ ସେଠାରେ ସୁଖେ କଟାଇଲା ।
ଭୂତଳେ ପଡ଼ନ୍ତେ ଦଶାର୍ଣ୍ଣ ଦେଶ ମଧ୍ୟେ ଯାଇଁ
ବ୍ରାହ୍ମଣ ଘରେ ଜନମ ଲଭିଲା ସେ ତହିଁ ।
କୋଶଳ ଦେଶରେ ରାଜା, ଅରଣ୍ୟେ ଧୀବର
ଗଙ୍ଗାତଟେ ହଂସ, ପୌଣ୍ଡ୍ରଦେଶେ ରାଜେଶ୍ୱର ।
ଶାଲ୍ୱଦେଶେ ଦ୍ୱିଜ, ପରେ ସ୍ୱର୍ଗେ ବିଦ୍ୟାଧର
ମଦ୍ରଦେଶେ ରାଜାହୋଇ ରହେ ତୋ କୁମର ।
ଏବେ ସମଙ୍ଗା ତଟରେ ତାର ଅବସ୍ଥାନ
ବାସୁଦେବ ତପସ୍ୱୀଙ୍କ ସନ୍ତାନ ରୂପେଣ ।
ଏବେ ତପସ୍ୟାରେ ରତ ହୋଇ ସେ ଅଛନ୍ତି
ଏଥିରୁ ବୁଝହେ ଭୃଗୁ ତବ ପୁତ୍ର ଗତି ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ଶୁକ୍ର ବିବିଧ ଜନ୍ମାନୁଭବ ବର୍ଣ୍ଣନେ ନାମ ଅଷ୍ଟମ ସର୍ଗଃ ।**



## ୯ମ ସର୍ଗଃ

## ଭାର୍ଗବ କଳେବର ବର୍ଣ୍ଣନ

ପୁଣି କାଳ କହୁଛନ୍ତି ଶୁଣ ମୁନିବର
ଯେ ଭ୍ରାନ୍ତି ବିଳାସ ତୁମ୍ଭ ତନୟ ମନର ।
ଇଚ୍ଛା ଯେବେ ଦେଖିବାକୁ ବଳଇ ତୁମ୍ଭର
ଜ୍ଞାନ ନୟନ ଫେଡ଼ିଣ ଦେଖ ତପୀବର ।
ବଶିଷ୍ଠ କହନ୍ତି ଶୁଣ ଆହେ ରଘୁରାଣ
ଜଗତ ଚଳକ ମହାକାଳଙ୍କ ବଚନ ।
ଶୁଣିକରି ଭୃଗୁ ମୁନି ଧ୍ୟାନରେ ମଗନ
କ୍ରମେ କ୍ରମେ ହେଲେ ମୁନି ବାହ୍ୟଜ୍ଞାନ ଶୂନ୍ୟ ।
କ୍ଷଣକାଳ ମଧ୍ୟେ ଜ୍ଞାନ ଜ୍ୟୋତି ସମୁଦିତ
ବୁଦ୍ଧି ରୂପ ଦରପଣେ ହୁଏ ପ୍ରତିଭାତ ।
ପୁତ୍ରର ସର୍ବ ଘଟଣା ଗୋଟି ଗୋଟି ହୋଇ
ମୁନିଙ୍କର ନୟନରେ ଭାସମାନ ରହି ।
କାଳଙ୍କୁ ଚାହିଁଣ ମୁନି କହନ୍ତି ବଚନ
ତ୍ରିକାଳର ସର୍ବଜ୍ଞାତା ତୁମ୍ଭେ ଭଗବାନ ।
ଅନ୍ତରର ମଳିନତା ନିମିତ୍ତ ହେ ଦେବ
ଏ ସବୁ ଦେଖିବା ଆମ ପକ୍ଷେ ଅସମ୍ଭବ ।
ମିଥ୍ୟା ହେଲେ ହେଁ ଜଗତ ଲାଗେ ସତ୍ୟ ପରି
ପଣ୍ଡିତମାନଙ୍କ ବୁଦ୍ଧି ନେଇଯାଏ ଚାଳି ।
ମନର ବୃତ୍ତି ସମୂହ ଇନ୍ଦ୍ରଜାଲ ପରି
ମହମୋହ ଉପୁଜାଏ, ମନ ଯାଏ ଟଳି ।
ବିଶେଷ ଭାବରେ ତାହା ଜାଣନ୍ତି ଆପଣ
ଯେଣୁ ଏହା ସବୁ ତୁମ୍ଭ ମଧ୍ୟେ ବିଦ୍ୟମାନ ।
ପୁତ୍ରର ଏପରି ଦଶା ନଥିବାରୁ ଜାଣି
ତାହାର ମୃତ୍ୟୁ ଆଶଙ୍କା ମନ ମଧ୍ୟେ ଗୁଣି,
ଏପରି ଅଧୀର ହୋଇ ପଡ଼ିଥିଲି ଦେବ
ବିଧି ନିବନ୍ଧ ଅନ୍ୟଥା କିଏ ବା କରିବ ?
ସଂସାରର ଏହି ଗତି ଜାଣିଲେ ହେଁ ପିତଃ
ବିପଦେ ଅଧୀର ହେଉ ସମ୍ପଦେ ଉଦ୍‌ଭ୍ରାନ୍ତ ।
ଉପକାରୀ ଲୋକଠାରେ ବିଦ୍ୱେଷ ରଖିବା,
ଏହାହିଁ ତ ଦେବ ଅଟେ ସଂସାରର ରୀତି
ଉପକାରୀ ଯେଣୁ, ଘେନ ମୋହର ଭକତି ।
ଜଗତ୍‌ଭ୍ରାନ୍ତି ବିଦୂରିତ ନୋହିବା ପର୍ଯ୍ୟନ୍ତ
କର୍ତ୍ତବ୍ୟାକର୍ତ୍ତବ୍ୟ -ବୋଧ ରହିବ ଜାଗ୍ରତ ।
ଭବଦୀୟ କୃପାବଶ ତତ୍ତ୍ୱବୋଧ ମୋର
ଉଦିତ ହୋଇ ନାଶିଲା ଭ୍ରମ ମାୟାଜାଲ ।
ସଂସାରିକ ମତେ ଯାହା କ୍ରୋଧ, ପ୍ରସନ୍ନତା
ଅତୀବ ହେୟ ସେ ସବୁ ବୁଝିଲି ଏ କଥା ।
ଆପଣଙ୍କ ପ୍ରତି ଯେଣୁ କ୍ରୋଧ ପ୍ରକାଶିଲି
ଅବଶ୍ୟ ମୁଁ ଯୁକ୍ତି ମତେ ଦଣ୍ଡଯୋଗ୍ୟ ହେଲି ।
ଏବେ ମୁଁ ବୁଝିଲି ଦେବ ଏହି ଜଗତର
ସକଳ ପ୍ରାଣୀଙ୍କ ଅଛି ଦ୍ୱିବିଧ ଶରୀର ।
ମନୋମୟ ଶରୀରଟି ଅଟେ ସର୍ବତ୍ରଗ
ସର୍ବ ଅନୁଭବ ପାଇଁ ମନହିଁ ପାରଗ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ଭାର୍ଗବ କଳେବର ବର୍ଣ୍ଣନ ନାମ ନବମ ସର୍ଗଃ ।**



## ୧୦ମ ସର୍ଗଃ

## କାଳ ବଚନ

କାଳ କହନ୍ତି ହେ ମୁନି ଯଥାର୍ଥ ବଚନ
କହିଣ ତୋଷ କରିଛ ଏ ମୋହର ମନ ।

ଦ୍ୱିବିଧ ଶରୀର ଯାହା ଅଛି ପୁରୁଷର
ସ୍ଥୂଳ ଦୃଷ୍ଟିର ବିଷୟ ତାହା ତପୀବର ।
ସୂକ୍ଷ୍ମ ଦୃଷ୍ଟିରୁ ଯାହାକି ଦେଖାଯାଏ ଜାଣ
ମନ କଳ୍ପନାରୁ ସର୍ବ ସୃଷ୍ଟିର ଭିଆଣ ।
ଅଳୀକ ହେଲେ ହେଁ ତାହା ସତ୍ୟ ବୋଧହୁଏ
ଗୁପତ ଭାବେ ଅସତ୍ୟ ସତ୍ୟ ରୂପ ନିଏ ।
ଦୁଇ ଚନ୍ଦ୍ର ନଭେ ଦିଶେ ଦୃଷ୍ଟି ଦୋଷ ଥିଲେ ।
ନାନା ଦୃଶ୍ୟ ଉପୁଜଇ ନାନା ବାସନାରେ ।
ଭେଦଭାବନାର ବଶୀଭୂତ ହୋଇ ମନ
ସଂସାର ଭାବରେ ବୁଡ଼ି ହୁଏ ଛନ୍ନ ଛନ୍ନ ।
ମୁହିଁ କୃଶ, ମୁହିଁ ଦୁଃଖୀ ମୁହିଁ ଅଜ୍ଞ ଚିନ୍ତି
ବୃଥା ଘାରି ହେଉଥାଏ ଦୁଃଖେ ଅସରନ୍ତି ।
ବ୍ରହ୍ମ ଅଟେ ସତ୍ୟ, ସ୍ୱୀୟ କଳ୍ପନା ଅସତ୍ୟ
ଜାଣି ପାରିଲେ ମନନ କର୍ମରୁ ନିବୃତ୍ତ,
ହୋଇକରି ମନ ଲଭେ ବ୍ରହ୍ମ ସ୍ୱରୂପତା
ତେବେ ଅପସରିଯାଏ ତା ସକଳ ଚିନ୍ତା ।
ଚଞ୍ଚଳ, ଚପଳ, ବିଚିତ୍ରାକାର, ନାନା ଶକ୍ତି
ବ୍ରହ୍ମଙ୍କ ମଧ୍ୟରେ ଯେମାନଙ୍କ ଅବସ୍ଥିତି ।
ସେହି ଶକ୍ତି ଜଗତର ନାନା ବୈଚିତ୍ର୍ୟର
କାରଣ ଅଟଇ ଜାଣ ଆହେ ମୁନିବର ।
ଜଳେ ତରଙ୍ଗ ସଦୃଶ ଏକମାତ୍ର ବ୍ରହ୍ମ
ନିଜେ ନିଜ ମଧ୍ୟେ ହେଉଛନ୍ତି ପ୍ରକାଶନ ।
ବ୍ରହ୍ମଙ୍କର ସେହି ବିଶ୍ୱାକାର ବିବର୍ତ୍ତନ
ବ୍ରହ୍ମଙ୍କଠାରୁ କେଉଁଠେଁ ତ ନୁହଁଇ ସେ ଭିନ୍ନ ।
ଜଗତ ବୋଲି ଯା' କହ କେବଳ କଳ୍ପନା
ନଥିଲା, ନାହିଁ, ବୋହିବ କେବେହେଁ ସେ ଜଣା ।
ଜଗତ ବ୍ରହ୍ମ ମଧ୍ୟରେ ଭେଦ ବିନ୍ଦୁ ମାତ୍ର
ବିଦ୍ୟମାନ ନାହିଁ ଜାଣ ଆହେ ତପୋବନ୍ତ ।
ପରିଦୃଶ୍ୟମାନ ଅଟେ ଯେ ବିଶ୍ୱ ଜଗତ
ସଂପୂର୍ଣ୍ଣ ବ୍ରହ୍ମମୟ ସେ ନାହିଁ ଅନ୍ୟ ମତ ।
ସର୍ବଦୃଶ୍ୟ ପରିହରି ବ୍ରହ୍ମଙ୍କୁ ହିଁ ହେଜ
ଏକ ମାତ୍ର ବ୍ରହ୍ମ ଅଛି ଏହାହିଁ ତାତ୍ପର୍ଯ୍ୟ ।
ସର୍ବଦା, ସର୍ବତ୍ର, ଏକରୂପା ଯେ ନିୟତି
ବ୍ରହ୍ମ ସ୍ୱରୂପିଣୀ ମୂଳ ଶକ୍ତି ଯେ ଅଟନ୍ତି ।
ନାନା ସ୍ୱରୂପ ଧରିଣ ପଦାର୍ଥ ମଧ୍ୟରେ
ପ୍ରଚ୍ଛନ୍ନ ଭାବେ ଅଛନ୍ତି ଲୋକ ଅଗୋଚରେ ।

ଏକମାତ୍ର ଆତ୍ମା ନିଜେ ନିଜର ମଧ୍ୟରେ
ନିଜକୁ ସୃଷ୍ଟି କରୁଛି ନାନା ଆକୃତିରେ ।
କୋଷାକାର କୀଟ ଯଥା ନିଜର ବନ୍ଧନ
ରଚି ଚିନ୍ତାକରେ ମୁକ୍ତ ହେବ ସେ କେସନ,
ଆତ୍ମା ତଥା ସୃଷ୍ଟି କରି ଆପଣା ବନ୍ଧନ
ମୁକତି ହେବାକୁ ଚେଷ୍ଟା କରେ ଅନୁକ୍ଷଣ ।
ନିଜର ସ୍ୱରୂପ ଆତ୍ମା ନିଜେ ଚିନ୍ତାକରି
ସଂସାର ରୂପ ବନ୍ଧନ ହୋଇଥାଏ ପାରି ।
ପୂର୍ଣ୍ଣ ଅଟେ ଆତ୍ମା, ଆତ୍ମା ସର୍ବଶକ୍ତିମାନ
ସ୍ୱ ଭାବନା ଅନୁସାରେ ଧରେ ରୂପମାନ ।
ଆତ୍ମା ଯେତେବେଳେ ଯେଉଁ ଶକ୍ତି ଇଚ୍ଛା କରେ
ଅବିଳମ୍ବେ ଆତ୍ମା ସେହି ଶକ୍ତିରୂପ ଧରେ ।
ବନ୍ଧନ ନାହିଁ କି ମୁକ୍ତି ନ ଥାଇ ଆତ୍ମାର
ଆତ୍ମା ସଦା ମୁକ୍ତ ନିରାମୟ ନିରାକାର ।
ଅବିଦ୍ୟା କଳଙ୍କେ କଳଙ୍କିତ ହୋଇକରି
ଭୋକ୍ତା ଭୋଗ୍ୟ ଭାବଧରି ହେଉଥାଏ ଘାରି ।
ଆତ୍ମା ଆବଦ୍ଧ ଅଥବା ଅଟଇ ମୁକତ
କେବଳ ଆଭାସ ମୁନେ ଏଥି ନାହିଁ ସତ୍ୟ ।
ସେ ଅଖଣ୍ଡ ଆତ୍ମା ତଥା ସେ ଅଖଣ୍ଡ ବ୍ରହ୍ମ
ଚିତ୍ତର ଭାବନା କରିଥାଏ ଯେଉଁକ୍ଷଣ,
ସ୍ୱ ରଚିତ ସେହି ଚିତ୍ତ ରୂପ ଆବରଣେ
ପଡ଼ିରହେ ଅଖଣ୍ଡାତ୍ମାଙ୍କର ଏକ କୋଣେ ।
ଚିତ୍ତ, ଚିତ୍ତଶକ୍ତି ମଧ୍ୟେ କିଛି ଭେଦ-ନାହିଁ
ଏହି ଶକ୍ତି ବଳେ ନାନା ଦେହ କଳପଇ ।
ଗୋଟିଏ ଆତ୍ମାରୁ କୋଟି କୋଟି ଚିତ୍ତ ଶକ୍ତି
ନିରନ୍ତର ବିସ୍ତାରିତ ହେଉଥାନ୍ତି ଯତି ।
ହେଲେହେଁ ଚିତ୍ତୁ ଜନମ ଚିତ୍ତରେ ନିହିତ
ପୃଥକ ପୃଥକାକାରେ ହୁଅନ୍ତି ପ୍ରତୀତ ।
ଅନ୍ୟତ୍ର ଅଛନ୍ତି ବୋଲି ହୁଅନ୍ତି ପ୍ରତୀତ
ଏବେ ବୁଝୁଥିବ ମୁନେ ମୋ କହିବା ତତ୍ତ୍ୱ ।
ପରମାତ୍ମାଙ୍କ ସ୍ୱରୂପ ମହାସମୁଦ୍ରର
କେଡ଼େ ଶକ୍ତିଶାଳୀ ପ୍ରତି-ଜଳକଣା ତାର ।
ଏକ କଣା ବ୍ରହ୍ମା ହୋଇ ସୃଷ୍ଟି ସରଜଇ
ଏକ କଣା ବିଷ୍ଣୁରୂପେ ପାଳନ କରଇ ।
ଏକ କଣା ଶିବରୂପେ କରେ ସଂହାରଣ
କେତେ କଣାରୁ ଜନମ ହୁନ୍ତି ରୁଦ୍ରଗଣ ।

କେଉଁ ଶକତିରୁ ଦେବଗଣଙ୍କ ଜନମ
ଯକ୍ଷ, ରାକ୍ଷସ ଗନ୍ଧର୍ବଙ୍କର କାହୁଁ ଜନ୍ମ ।
ନର, କୀଟ, ପଶୁ, ପକ୍ଷୀ, ପତଙ୍ଗାଦି ଯେତେ
ଏକ ଏକ କଣା ମଧ୍ଯୁ ଜନ୍ମନ୍ତି ସମସ୍ତ ।
ଏହି ଯେ ସ୍ୱପନମୟ ସଂସାର ଭୂମିରେ
ଭିନ୍ନ ଭିନ୍ନ ଶକ୍ତି ଧରି ସେମାନେ ଜନ୍ମିଲେ ।
କେ ହେଲା ଚିରାୟୁ ପୁଣି କେ ହେଲା ଦୀର୍ଘାୟୁ
ପୂର୍ବ କର୍ମଫଳେ ପୁଣି କେ ହେଲା କ୍ଷୀଣାୟୁ ।
କିଏ ଚିନ୍ତାଶୀଳ ପୁଣି କିଏ ସୁବହତ
କିଏ କ୍ଷୁଦ୍ର ଧନବାନ୍, କିଏ ଦୈନ୍ୟଗ୍ରସ୍ତ ।
ନାନାକାରେ ନାନା ଭାବେ ସେହି ମହାଶକ୍ତି
ପ୍ରତିଭାତ ହେଉଅଛି ଏପରି ହେ ଯତି ।
ଅପାର ସମୁଦ୍ରରୂପୀ ସେହି ପରମାତ୍ମା
ଯାହା ଗର୍ଭୁ ଜନମନ୍ତି ସସ୍ତ୍ର ସୃଷ୍ଟି ସତ୍ତା ।
ପୂର୍ବ ଉକ୍ତ ସେହି ଚିତ୍ ସଂବିତ୍ ସକଳ
ଅଟନ୍ତି ତହିଁ ତରଙ୍ଗମାଳ ସୁଚଞ୍ଚଳ ।
ଏହି ଚିତ୍ ସଂବିତ୍‌ର ଅନ୍ୟ ନାମ ମୁନି
"ମନନ" ବୋଲି କହନ୍ତି ସକଳ ସୁଜ୍ଞାନୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ସଂସାରପ୍ରବର୍ତ୍ତଂ ବର୍ଣ୍ଣନ ନାମ ୧୦ଶ ସର୍ଗଃ ।**



## ୧୧ଶ ସର୍ଗଃ

## ସଂସାରୋତ୍ପତ୍ତି ବିସ୍ତାର

ପୁଣି କାଳ କହୁଛନ୍ତି ଶୁଣ ଭୃଗୁ ମୁନି
ଦେବାସୁର ନର ଯେତେ ଅଛନ୍ତି ଅବନୀ ।
ଚିତ ସଂବିତ୍ ସମସ୍ତେ ସେ ବ୍ରହ୍ମ ଅର୍ଣ୍ଣବରୁ
ପୃଥକ ନୁହନ୍ତି ଜାଣି ରଖ ଜ୍ଞାନୀଗୁରୁ ।
ଏହି ସିଦ୍ଧାନ୍ତ ହିଁ ସତ୍ୟ ଆହେ ମୁନିବର
ଅନ୍ୟ ସକଳ ସିଦ୍ଧାନ୍ତ ଅଳୀକ କେବଳ ।
ସ୍ୱୀୟ ବିକଳ୍ପ ଶକ୍ତିର ସ୍ୱଭାବକୁ ଘେନି
ଚିତ୍ତ ମଳିନତା ଜନ୍ମିଥାଏ ମହାମୁନି ।
ମିଥ୍ୟା ଭାବନାରୁ "ମୁଁ ବ୍ରହ୍ମ ନୁହେଁ" ଏ ଧରଣା
ଅଧୋଗାମୀ କରିଥାଏ ତାକୁ ମହାମନା ।
ହେଲେ ହେଁ ଏମାନେ ବ୍ରହ୍ମାର୍ଣ୍ଣବ ଅନ୍ତର୍ଗତ
ଅଖଣ୍ଡ ବ୍ରହ୍ମେ ଖଣ୍ଡିତ ଜ୍ଞାନ କରି ଜାତ ।
ନାନା ଦୁଃଖ ଭୋଗ କରିବାକୁ ତାଙ୍କ ହୁଏ
ଅଜ୍ଞତାର ପରିଣାମ ଏହା ହୋଇଥାଏ ।
ଆବ୍ରହ୍ମ ତୃଣ ପର୍ଯ୍ୟନ୍ତ ବିବିଧ ଶରୀର
କର୍ମ କଳ୍ପନା ବୀଜରୁ ଜନ୍ମ ସବୁଙ୍କର ।
ବିଶୁଦ୍ଧ ଚେତ୍ତା କେତେକ ଯଥା ହରି, ହର
ସପ୍ନ ମୋହଗତ କେତେ ଯଥା ଦେବ, ନର ।
କେହି ଅତି ମୋହଗ୍ରସ୍ତ ଯଥା ତରୁଲତା
କେହି କେହି ଅତି ମୂଢ଼ କୃମି କୀଟ ଯଥା ।
ତୃଣପରି ଭାସେ କେହୁ ବ୍ରହ୍ମାର୍ଣ୍ଣବ କୋଣେ
ସତ୍ କର୍ମ କରି ନଥାନ୍ତି ଜୀବନେ କେ କ୍ଷଣେ ।
କଲେ ହେଁ ଯୋଗ ସାଧନା ମନୁଷ୍ୟ ହୋଇଣ
ତାର ଯେ ସତ୍ କର୍ମରୂପ ସୂଚନାଦି ମାନ,
ସେ ସୂଚନା ମାନଙ୍କର ଶୁଭ ସୂତ୍ରମାନ
* 'ଦୂରଦୃଷ୍ଟ' ମୂଷିକା ତା କରଇ କର୍ତ୍ତନ ।
ବ୍ରହ୍ମସୂତ୍ର ମଧ୍ୟେ ଯେହୁ ପ୍ରବେଶିଣ ଥାନ୍ତି
ବ୍ରହ୍ମା ପରି ସଶରୀରେ ତନ୍ମୟ ହୁଅନ୍ତି ।
ବ୍ରହ୍ମାର୍ଣ୍ଣବର ଆକାର ଏପରି ବିସ୍ତୃତ
ତା ତୀର ଦର୍ଶନେ କେହି ନୁହନ୍ତି ସମର୍ଥ ।
ମୋହ ତେଜି କେହି କେହି ସମାଧିସ୍ଥ ହୋଇ
ତାଙ୍କୁ ଅବଲମ୍ବି କାଳ କାଳ ଥାନ୍ତି ରହି ।
କୋଟି କୋଟି ଜନ୍ମ ପରେ କେଉଁ କେଉଁ ଜନ
ଜନ୍ମ ମୃତ୍ୟୁ ରୂପ ଦୁଃଖ ଭୋଗିବା କାରଣ ।
ବିଷୟ ଅନୁରାଗରେ ଅନ୍ଧ ହୋଇକରି
କେବଳ ବୃଥାରେ ଥାନ୍ତି ନର ଜନ୍ମ ଧରି ।
ଉର୍ଦ୍ଧ୍ୱରୁ ଅଧଃକୁ ହୁଏ ଗମନ କାହାର
କାହାର ଗମନ ଅବା ଉର୍ଦ୍ଧ୍ୱ ଉର୍ଦ୍ଧ୍ୱତର ।
ନିମ୍ନରୁ ନିମ୍ନତରକୁ କେହିବା ଗମନ୍ତି
ଏସନ ଅସଂଖ୍ୟ ଯୋନି ବିଚରୁଣ ଥାନ୍ତି ।
ଜୀବର ଏହି ଅବସ୍ଥା ଜନ୍ମ ମୃତ୍ୟୁ ରୂପ
ଅପାର ଦୁଃଖମାନଙ୍କ କାରଣ ସ୍ୱରୂପ ।
ପରମବ୍ରହ୍ମଙ୍କୁ ଯେଣୁ ଭୁଲି ଯାଇଥାନ୍ତି
ତାଙ୍କର ଏ ଦଶା ଘଟିଥାଏ ମହାଯତି ।

* ଦୂରଦୃଷ୍ଟ - କର୍ମାଶୟରୁ ଉତ୍ପନ୍ନ କର୍ମଫଳ

ବ୍ରହ୍ମ ଉପଲବ୍ଧି ଲାଭ ହୋଇପାରେ ଯେବେ
ସଂସାର ଦୁଃଖୁ ନିବୃତ୍ତି ମିଳିପାରେ ତେବେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ଶୁକ୍ର ବିବିଧ ଜନ୍ମାନୁଭବ ବର୍ଣ୍ଣନେ ନାମ ୧୧ଶ ସର୍ଗଃ ।**



## ୧୨ଶ ସର୍ଗଃ

## ଭୃଗୁ ଆଶ୍ୱାସନା

ମହାକାଳ ବୋଇଲେକ ଆହେ ତପୀସାଇଁ
ନିଖିଳ ପ୍ରାଣୀଙ୍କର ଯେ ଦଶା ଘଟିଥାଇ ।
ସାଗର ତରଙ୍ଗ ପରି ବିଚିତ୍ର ଭାବରେ
ଇତସ୍ତତଃ ଧାବମାନ ହୁଅନ୍ତି ସଂସାରେ ।
ତାହାଙ୍କ ମଧ୍ୟରୁ ପୁଣି କେଉଁ କେଉଁ ମାନେ
ମନୋଗତ ମୋହ ଧ୍ୱଂସ କରିଣ ଯତନେ,
ଜୀବନ ମୁକତ ରୂପେ ଏ ଭବ ସଂସାରେ
ବିରାଜମାନ ଅଛନ୍ତି ଆହେ ତପୀବରେ ।
ସେ ସକଳ ଆତ୍ମତତ୍ତ୍ୱବେତ୍ତାମାନେ ଜାଣ
ଶୁଦ୍ଧଚିତ୍ତଙ୍କର ଆତ୍ମା-ଉନ୍ନତି କାରଣ,
ଶାସ୍ତ୍ରମାନଙ୍କର କରିଛନ୍ତି ପ୍ରଣୟନ
ମୋକ୍ଷ ଶାସ୍ତ୍ର ରୂପେ ତାହା ଜଣାଶୁଣା ଜାଣ ।
ଅନ୍ତର ଶୁଦ୍ଧ ଯାହାର ପାପ ନାଶ ପରେ
ସେହି ଶାସ୍ତ୍ର ପଢ଼ି ତାଙ୍କ ଜ୍ଞାନ-ଜ୍ୟୋତି ଜଳେ ।
ସୂର୍ଯ୍ୟୋଦୟେ ଅନ୍ଧକାର ବିନାଶ ଯେସନ
ମନ ଅନ୍ଧକାର ଯାଏ ସେ ଶାସ୍ତ୍ର ପଢ଼ିଣ ।
ଯେଉଁଯାଏ ମନ ମୋହ ନ ହୋଇଛି ନାଶ
ଗଭୀର ମୋହ କରଇ କ୍ରମେ କ୍ରମେ ଗ୍ରାସ ।
ମନୋମୟ-ଶରୀର ହିଁ ପ୍ରତ୍ୟେକ ପ୍ରାଣୀର
ହୋଇଥାଏ ସବୁ ସୁଖ ଦୁଃଖର ଆକର ।
ଭୌତିକ ଦେହର ତହିଁ ନଥାଏ ପ୍ରଭାବ
ସୁଖ ଦୁଃଖ ଭୋଗ ଯେଣୁ ମନର ସ୍ୱଭାବ ।
ଶରୀରୀର ମନୋମୟ-ଶରୀର ହିଁ ଜାଣ
ହୋଇଥାଏ ସର୍ବ ଦୁଃଖ ସୁଖର କାରଣ ।
ରକ୍ତ ମାଂସ ଗଢ଼ା ଏହି ଭୌତିକ ଶରୀର
ବାସ୍ତବ ନୁହେଁ, ସେ ଖାଲି ମନର ବିକାର ।
ହେ ମୁନେ, ତୁମ୍ଭର ପୁତ୍ର ମନ-ଶରୀରରେ
ଯାହା କରିଛି, ଭୋଗିଛି ଅକ୍ଷରେ ଅକ୍ଷରେ ।
ଏ ବିଷୟେ ମୋର କିଛି ନାହିଁ ଅପରାଧ
ମୋହର କର୍ତ୍ତବ୍ୟ ମୁନେ ! ଜାଣିବ ଅବାଧ ।
ବାସନାବଳେ ଯେ ଯେଉଁ କାର୍ଯ୍ୟ କରିଥାଏ
ଅନୁରୂପ ଫଳ ତାକୁ ଭୋଗିବାକୁ ହୁଏ ।
କାହାରି କିଛି କର୍ତ୍ତୃତ୍ୱ ନ ଥାଇ ତହିଁରେ
ମନ ବାସନା ଅନ୍ତରେ ଯେଉଁ କର୍ମ କରେ ।
ଏମନ୍ତ କି ଐଶୀଶକ୍ତି ଅଛି ଏ ସଂସାରେ
ସେ କର୍ମକୁ ଅନ୍ୟଥା ଯା କରିଦେଇ ପାରେ ।
ଜନ୍ମ, ମୃତ୍ୟୁ, ନର୍କଭୋଗ-ଆଦି କରି ଯେତେ
ମନର ମନନ ମାତ୍ର ଅଟନ୍ତି ସମସ୍ତେ ।
ଏପରି ମନନ ଖାଲି ଦୁଃଖର କାରଣ
ଅଧିକ କିଛି କହିବା ନାହିଁ ପ୍ରୟୋଜନ ।
ଏବେ ଆପଣଙ୍କ ପୁତ୍ର ଅଛି ଯେଉଁଠାରେ
ଚାଲ ଆମ୍ଭେ ଦୁହେଁ ଚଳିଯିବା ସେହିଠାରେ ।
କାଳଦେବ ଏହିପ୍ରକି ବଚନ କହିଣ
ହାତ ଧରି ମୁନିସହ କରନ୍ତି ପ୍ରସ୍ଥାନ ।
କ୍ଷୀଣକଣ୍ଠେ ଭୃଗୁମୁନି କହନ୍ତି ଏସନ
ଆହା ! କି ବିଚିତ୍ର ଗତି ନିୟତିର ପୁଣ ।
ଭୃଗୁ, କାଳ ଯେତେବେଳେ କଲେ ଗାତ୍ରୋତ୍ଥାନ
ଏକାବେଳେ ଉଇଁଲେ କି ଚନ୍ଦ୍ରମା ତପନ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ଭୃଗ ଆଶ୍ୱାସନା ନାମ ୧୨ଶ ସର୍ଗଃ ।**



## ୧୩ଶ ସର୍ଗଃ

## ଭାର୍ଗବ ଜନ୍ମାନ୍ତର ସ୍ମରଣ

କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜେ ଚାହିଁ
ମହାମୁନି ବଶିଷ୍ଠ ଏମନ୍ତ ବୋଲୁଛନ୍ତି ।
ଏ ସମୟେ ସୂର୍ଯ୍ୟଦେବ ହେଲେ ଅସ୍ତମିତ
ସାୟଂକ୍ରିୟା ପାଇଁ ହେଲେ ସକଳେ ଉଦ୍ୟତ ।
ଯଥାବିଧି ସନମାନ ପରସ୍ପରେ ଦେଇ
ସ୍ୱ ସ୍ୱ ଆଶ୍ରମେ ସକଳେ ମିଳିଲେକ ଯାଇଁ ।

ପରଦିନ ପ୍ରାତଃକାଳେ ସଭାରେ ମିଳିଲେ
ଯଥାଯୋଗ୍ୟ ସନମାନ ପରସ୍ପରେ ଦେଲେ ।
ବଶିଷ୍ଠ କହନ୍ତି କାଳ, ଭୃଗୁ ଚଳିଗଲେ
ମନ୍ଦର ପର୍ବତ ପାଶେ ଯାଇଁ ପ୍ରବେଶିଲେ ।
ପର୍ବତର ପ୍ରାକୃତିକ ଶୋଭା ଦେଖୁଛନ୍ତି
ସମଙ୍ଗା ନଦୀ ତଟରେ ଆସି ପହଞ୍ଚନ୍ତି ।
ନଦୀ ତୀରେ ଏକ ସ୍ଥାନେ ଭୃଗୁ ତପୋନିଷ୍ଠ
ଦେଖିଲେକ ଶୁକ୍ର ମୁନି ଛନ୍ତି ଉପବିଷ୍ଟ ।
ଦେଖନ୍ତି ପୁତ୍ରର ପୂର୍ବ ଭାବ ଆଉ ନାହିଁ
ଆଶ୍ଚର୍ଯ୍ୟ ପରିବର୍ତ୍ତନ ଘଟିଣ ଅଛଇ ।
ପୃଥକ ଆକୃତି ତାଙ୍କ ପୃଥକ ଭାବନା
ଧୀର, ସ୍ଥିର, ଶାନ୍ତ, ଶିଷ୍ଟ ଶୁକ୍ର ମହାମନା ।
ସମାଧିସ୍ଥ ହୋଇ ଶୁକ୍ର ବିଶ୍ରାମ ଲଭନ୍ତି
ଭୃଗୁଙ୍କୁ କାଳଦେବତା ଏମନ୍ତ କହନ୍ତି ।
"ଏହି ଦେଖ ମୁନେ, ତୁମ ପୁତ୍ର ବସିଅଛି
ପ୍ରବୁଦ୍ଧ ହୁଅନ୍ତୁ ମୁଁ ମୋ ଇଚ୍ଛା ପ୍ରକାଶୁଛି ।"
କହୁଁ କହୁଁ ଏହିପରି ସେ କାଳ ଦେବତା
ସମାଧି ତେଜିଣ ଶୁକ୍ର ପାଇଲେକ ଚେତା ।
ନୟନ ଫେଇ ଦେଖନ୍ତି କାଳଦେବ ନିଜେ
ତାଙ୍କର ସମୀପେ ଆସି କରିଛନ୍ତି ବିଜେ ।
ଭୃଗୁ ମହାମୁନି ତାଙ୍କ ପାଶେଛନ୍ତି ଠିଆ
ଦେଖି ଶୁକ୍ର ମୁନିଙ୍କର ଫୁଲିଉଠେ ହିଆ ।
ଆସନ ତେଜିଣ ଯଥାବିଧି ମାନ୍ୟ ଦେଲେ
ଉଭୟଙ୍କୁ ସମ୍ବୋଧିଣ ଏମନ୍ତ କହିଲେ ।
"ଆପଣଙ୍କ ଦର୍ଶନରେ ହେଲି କୃତ କୃତ୍ୟ
ମୋହର ସୌଭାଗ୍ୟ ଅବା ହୋଇଲା ଉଦିତ ।
ଶାସ୍ତ୍ରାନୁଶୀଳନ ଆଉ ତପସ୍ୟା ପ୍ରଭାବ
କାଟି ନ ପାରିଣ ଥିଲେ ମୋର ମୋହଭାବ ।
ଆଜିଯାଏଁ ଯେଉଁ ମୋହ ନାଶ ନୋହିଥିଲା
ଆପଣଙ୍କ ଦରଶନେ ତା ବିନଷ୍ଟ ହେଲା ।
ଚନ୍ଦ୍ର, ସୂର୍ଯ୍ୟ ଉଦୟରେ ପବିତ୍ର ଗଗନ
ଜଳ, ସ୍ଥଳ ଆଦି କରି ଏ ତିନି ଭୁବନ ।
ଆପଣଙ୍କ ତେଜପୁଞ୍ଜ କଳେବର ଘେନି
ପବିତ୍ର ହେଲା ଆଜ ମୋ ଏହି ତପଭୂମି ।
ଭବଦୀୟ ପରିଚୟ ଦେଇକରି ମୋତେ
କୃତାର୍ଥ କରିବା ହେଉ ଆହେ ମହାମତେ ।"
ମୂଢ଼ ନୋହୁ ତୁ ହୋଇଛି ତୋ ଜ୍ଞାନ ଉଦୟ
ସ୍ମରଣ କର ତୁ ନିଜେ ନିଜର ବିଷୟ ।
ପ୍ରବୁଦ୍ଧ ହୋଇଲେ ତପୀ ଭୃଗୁ ବାକ୍ୟ ଶୁଣି
ଧ୍ୟାନଯୋଗୀ ଜାଣିନେଲେ ସର୍ବ ବିବରଣୀ ।
ମହା ଆନନ୍ଦରେ ଶୁକ୍ର କହନ୍ତି ଏସନ
"କେହି ଜାଣି ନ ପାରନ୍ତି ଯାର କାର୍ଯ୍ୟମାନ,
ବିଶାଳ ସଂସାର ଚକ୍ର ଯାହାର ଇଙ୍ଗିତେ
ଘୂର୍ଣ୍ଣନ କରୁଅଛଇ ସଦା ଦିବାରାତ୍ରେ,
ସେହି ପରମ ଦୟାଳୁ ବିଶ୍ୱ ପିତାଙ୍କର
ଜୟଗାନ କରଇ ମୁଁ ସେ ମାୟା ଶକ୍ତିର ।
ଆହା କି ଅଦ୍ଭୁତ ! ମାୟା ଶକତିର ବଳ
ଦେଖାଇ ଦେଲା ମୋ ପୂର୍ବ ଜନମ ସକଳ ।
ଏପରିକି ଭୋଗ୍ୟବସ୍ତୁ ଅଛି ଏ ସଂସାରେ
ଯାହା ନ ଭୋଗିଛି ପୂର୍ବ ଜନ୍ମମାନଙ୍କରେ ।
ଏମନ୍ତ କି କାର୍ଯ୍ୟ ଅଛି ଯାହା ନ କରିଛି
ଦୁଃଖ ସୁଖ କର୍ମମାନ ଯାହା କିଛି ଅଛି ।
ଯାହାକି ଯଥାର୍ଥ ଜ୍ଞାନେ ଏବେ ମୁଁ ଜାଣିଲି
ସକଳ ଭ୍ରମ ମୋହର ଦୂରୀଭୂତ କଲି ।
ହେ ପିତଃ ! ଏବେ ଚଳିବା ମନ୍ଦିର ପର୍ବତେ
ମୋର ଯେ ଦେହ ପଡ଼ିଛି ଦେଖିବି ତା ନେତ୍ରେ ।
କୌଣସି ବସ୍ତୁପାଇଁ ମୁଁ ନୁହେଁ ଆକାଂକ୍ଷିତ
ଦେଖିବା ପାଇଁ ନିୟତି ବିଧିର ବିଚିତ୍ର ।
ଆକାଂକ୍ଷା ଜନମି ଅଛି ଏହି ମାର ଚିତ୍ତ
ତେଣୁ ବିଳମ୍ବ ନ କରି ଚଳିବା ତ୍ୱରିତ ।
ମୋ ଅଭିନିବେଶ ପୁଣି ସଂସାର ମଧ୍ୟକୁ
ଆଶଙ୍କା କରିବ ନାହିଁ କହୁଛି ତୁମ୍ଭଙ୍କୁ ।
ଯେହେତୁ ପରମାତ୍ମା ହିଁ ଏ ଜଗତେ ସତ୍ୟ
ଅନ୍ୟ ସକଳ ଯା କିଛି ଅଟଇ ଅସତ୍ୟ,
ଏ ନିଶ୍ଚୟାତ୍ମକ ଆର୍ଯ୍ୟ ଜନୋଚିତ ପଥେ
ବିଚରୁ ଅଛଇ ମୁହିଁ ଜାଣ ଏ ଜଗତେ ।
ପୂର୍ବଦେହେ ଫେରିବାକୁ ନାହିଁ ମୋ ବାସନା
ଆଶଙ୍କା ନ କର ଚିତ୍ତେ ଏହି ସମ୍ଭାବନା ।
ଏହା ଯେ ମୋର ପ୍ରାରବ୍ଧ କରମର ଫଳ
ସନ୍ଦେହ କରିବା ବୃଥା କଳ୍ପନା କେବଳ" ।

ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତିପ୍ରକରଣେ ଭାର୍ଗବ ଉପାଖ୍ୟାନେ ଭାର୍ଗବ ଜନ୍ମାନ୍ତର ସ୍ମରଣ ବର୍ଣ୍ଣନେ ନାମ ୧୩ଶ ସର୍ଗଃ ।



## ୧୪ଶ ସର୍ଗଃ

## ଭାର୍ଗବ ପରିବେଦନ ପ୍ରସଙ୍ଗେ ଉପଦେଶକରଣ

ଏହିପରି କଥାବର୍ତ୍ତା ହୋଇ ତିନିଜଣ
ଭୃଗୁଙ୍କ ଆଶ୍ରମେ ଆସି କଲେ ପଦାର୍ପଣ ।
ପତ୍ରାଚ୍ଛାଦିତ ନିଜର ପୂର୍ବ ଦେହ ଦେଖି
ଭୃଗୁ ତନୟ କହନ୍ତି ପିତାଙ୍କୁ ନିରେଖି ।
"ଉତ୍ତମ ପଦାର୍ଥ ଦେଇ ଯେ ଦେହକୁ ପିତଃ !
ଲାଳନ ପାଳନ କଲ ହୋଇ ମୋଦଗ୍ରସ୍ତ ।
ବିଶୁଷ୍କ ହୋଇପଡ଼ିଛି ଏହି ସେହି ଦେହ
ଅଗୁରୁ ଚନ୍ଦନ ଲିପୁଥିଲେ ଧାତ୍ରୀଚୟ ।
ଦେଖ ତୁମ ସମାଦର ସେହି ଦେହ ଗୋଟି
କି ନାରଖାର ହୋଇଣ ଧରଣୀରେ ଲୋଟି ।
ମନ୍ଦାର ପୁଷ୍ପ ଯା' ପାଇଁ କର ଆହରଣ
ଗନ୍ଧ ଚନ୍ଦନ ଯେ ଅଙ୍ଗେ କରାଅ ଲେପନ ।
ଯୋଗାଉଥିଲ ଯା'ପାଇଁ ସୁକୋମଳ ଶଯ୍ୟା
ଦେଖ କିପରି ପଡିଛି ବରି ଭୂମି ଶଯ୍ୟା ।
ନନ୍ଦନ ବନେ ବିଳାସ ରତ ଯେ ଶରୀର
ଶୁଷ୍କ କଙ୍କାଳ ବିଭତ୍ସ ରୂପ ଦିଶେ ତାର ।
ସରିସୃପଗଣ ତାକୁ ଖଣ୍ଡ ଖଣ୍ଡ କରି
ଗଡ଼ାଇ ଦେଇ ଅଛନ୍ତି ଏହି ବସୁନ୍ଧରୀ ।
ଯା' ଚିତ୍ତ ସାଗର ମଧ୍ୟେ କାମର ତରଙ୍ଗ
ଅହରହ ଉଠୁଥିଲା ହୋଇଣ ଉଦ୍‌ବେଗ ।
ସୁରଙ୍ଗନା ଅଙ୍ଗ କରିବାକୁ ପରଶନ
ଚିତ୍ତ ବୃତ୍ତି ଶୂନ୍ୟ ହୋଇ ପଡ଼ିଛି କେସନ ।
ଦେଖ ତାର ସୁକୋମଳ ଶରୀର କିପରି
ଅରକ୍ଷ ପରି ଲୋଟଇ ଧରାତଳ ଧୂଳି ।
ସେସବୁ ବିଳାସ ତେଜି ହାୟରେ ଶରୀର
ଅଭୂତପୂର୍ବ ଆକାର ଧରୁ କଳେବର ।
ଭୁଲିଛୁ ସେ ସବୁ ଦଶା ସକଳ ଭାବନା
ଶବ ନାମ ଧରି ଲୋଟୁଅଛୁ ଧୂଳିକଣା ।
ଧିକ ମତେ ଯେଉଁ ଦେହେ ନାନା ବିଳାସରେ
ମୁଗ୍ଧ ରହୁଥିଲି ଦିବା ନିଶି ନିରନ୍ତରେ ।
ତାହାରି ଏ କଳଙ୍କିତ ରୂପ ଆଜି ଦେଖି
ହା ହତୋଽସ୍ମି ହେଉଛି ମୁଁ ନ ଫିଟେ ମୋ ଆଖି ।
ଆହା ମୋର ସେ ବିଶାଳ ବକ୍ଷ-ନଭଦେଶେ
ଦୀପ୍ତିମାନ ମଣିମାଳା ନକ୍ଷତ୍ର ସଦୃଶେ ।
ଝଲକୁଣ ଥିଲେ କେଡ଼େ ମନୋହର ବେଶେ
ପିପିଲିକା ବାସଭୂମି ହୋଇଛି ଆଜି ସେ ।
ଏହି ବିକଟାଳ ରୂପ ଦେଖିଣ ମୋହର
ବନମୃଗ ପଳାବନ୍ତି ଭୟେ ଥରହର ।
ମୋ ଶବ କଙ୍କାଳ ଦେହ ଉଦର ବିବରେ
ସୂର୍ଯ୍ୟ କିରଣେ ଶୋଭାୟମାନ ଯେ ପ୍ରକାରେ ।
ମନେହୁଏ ବିବେକ ହିଁ ମୂର୍ତ୍ତିବନ୍ତ ହୋଇ
ଶୋଭାୟମାନ ହୁଏ କି ଏଥି ମଧ୍ୟେ ରହି ।
ମୋର ଏହି ଶୁଷ୍କ ତନୁ ପର୍ବତ ଶିଖରୁ
ଜ୍ଞାନୀଙ୍କୁ ବୈରାଗ୍ୟ ଶିକ୍ଷା ଦିଏ ଅବା ଗୁରୁ !
ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଇତ୍ୟାଦିର
ଲୋଭରୁ ବିମୁକ୍ତ ହୋଇ ପଡ଼େ ମୋ ଆଗର ।
ନିର୍ବିକଳ୍ପ ସମାଧି କି ଲଭିଅଛି ସେହି
ନୀରସ ତନୁ ହୋଇଣ ଅଗ୍ରେ ବିରାଜଇ ।
ଚିତ ପିଶାଚ ଛାଡ଼ିଣ ଯାଆନ୍ତେ ତୋ ତହୁଁ
ସେ ପାଇଁକି ଏଥି ସୁଖେ ବିରାଜିତ ରହୁ ?
ଦୈବ ବିପତ୍ତି କି ଭୟ ନ ଆସେ ତୋ ମନ
ନ ଦେଖି-ଚିତ୍ତ ବେତାଳ ଆନନ୍ଦ ପରାଣ ।
ତ୍ରୈଲୋକ୍ୟାଧିପତି କାହୁଁ ପାଏ ସେ ଆନନ୍ଦ
ଯାହା କି ପାଉଛୁ ତୁହି ତେଜି ସବୁ ଦ୍ୱନ୍ଦ୍ୱ ।
ହେ ତାତ ଦେଖନ୍ତୁ ମୋର ଏ ଦେହ କିପରି
ବନ ମଧ୍ୟେ ଶୋଇଅଛି ଧୂଳିଶେଯ ପାରି ।
ବିଗତ ସନ୍ଦେହ ସେହୁ ଗତ କଉତୂକ
କଳ୍ପନା ଜାଲୁ ଉଦ୍ଧାର ପାଇଛି ସେ ଦେଖ ।
ଚିତ୍ତରୂପ ଅର୍ଣ୍ଣବରୁ ବିଭକ୍ତ ହୋଇଣ
ଖାତିର ନ କରେ, ସିଂହ ମେଘ ଗରଜନ ।
ପରମାନନ୍ଦ ମଗନ ହୋଇ ଅବା ସେହି
ଏ ପର୍ବତ ଭାଗେ ରହେ ସମାଧିସ୍ଥ ହୋଇ ।
ଶାନ୍ତଧୀ ନିର୍ମଳ ଜ୍ଞାନୀ ପୁରୁଷଙ୍କ ପରି
ପରମ ସୁଖ ସମ୍ଭୋଗ କରୁଛି ଯେପରି ।

ଭୋ ତାତ ! କେଡ଼େ ସୌଭାଗ୍ୟବାନ ଆଜ ମୁହିଁ
ମୋ ଗତ ଶରୀର ଦେଖିବାକୁ ପାଇଲଇଁ ।
ସର୍ବ ଦୁଃଖ-ଦଶା ଶୂନ୍ୟ ନିର୍ମଳ ସେ ଦେହ
ଧୂଳିଶେଯେ ଗଡୁଅଛି ନାହିଁ ମାୟାମୋହ ।
ଏହିପରି ସ୍ୱୀୟ ମନ ପ୍ରତିକ୍ରିୟାମାନ
ବଖାଣ କରନ୍ତି ଶୁକ୍ର ପିତୃ ସନ୍ନିଧାନ ।
କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ତୁମ୍ଭଙ୍କୁ ତ ଜଣାଅଛି ଘଟନ ସରବ ।
ବହୁ ଶରୀର ତ ଶୁକ୍ର ଧରି ସାରିଥିଲେ
ଭାର୍ଗବ ଶରୀର ପାଇଁ କିମ୍ପା ବିଳପିଲେ ?
ବହୁକାଳ ପୂର୍ବେ ତାଙ୍କ ସେହି ଯେ ଶରୀର
ଲୀନ ହୋଇ ପଡ଼ିଥିଲା ବିସ୍ମୃତି ଗର୍ଭର ।
ଏତେକାଳ ପରେ ସେହି କଙ୍କାଳବିଶିଷ୍ଟ
ଶରୀର ପାଇଁକି କିମ୍ପା ହେଲେ ସେ ଆକୃଷ୍ଟ ?
ପରିବେଦନା ପାଇଁ କି ଥିଲା କି କାରଣ ?
ସବିଶେଷ ମୋ ଆଗରେ କରନ୍ତୁ ବର୍ଣ୍ଣନ ।
ବୋଲନ୍ତି ବଶିଷ୍ଠ ରାମ ତାହା ଏବେ ଶୁଣ
କହୁଛି ତୁମ ସନ୍ଦେହ ମୋଚନ କାରଣ
ଭୃଗୁ ସୁତ ହେବା ପୂର୍ବେ ସେହୁ ଜୀବଥିଲେ
ବହୁତ ସତ୍‌କର୍ମ କରି ପୁଣ୍ୟ ଅରଜିଲେ ।
ତାଙ୍କ କର୍ମଫଳ ପାଇଁ ନିୟତି ନିୟମେ
ସ୍ଥିର ହେଲା ଗ୍ରହ ହୋଇ ରହିବେ ଗଗନେ ।
ସେ ଫଳପ୍ରାପ୍ତି ପୂର୍ବରୁ ପ୍ରଳୟ ଘଟିଲା
ତାଙ୍କ ଶୁଭ କର୍ମଫଳ ସ୍ୱସଞ୍ଚିତ ଥିଲା ।
ନୂତନ କଳ୍ପରେ ପୁଣି ସୃଷ୍ଟି ସଂଚରିଲା
ସେ ଜୀବ ଆକାଶଭାବ ପ୍ରାପତ ହୋଇଲା ।
ଚନ୍ଦ୍ର କିରଣରେ ମିଶି ପୃଥ୍ୱୀକି ଖସିଲା
ପୃଥ୍ୱୀରସ ସଙ୍ଗେ ମିଶି ଶସ୍ୟ ଭାବନେଲା ।
ବିଧି ନିବନ୍ଧରୁ ଭୃଗୁ ସେ ଶସ୍ୟ ଭକ୍ଷିଲେ
ସେ ଜୀବ ଭୃଗୁଭିତରେ ଯୁକତ ରହିଲେ ।
ଭୃଗୁପତ୍ନୀ ଗର୍ଭେ ସ୍ଥାନ ପାଇ ଜନମିଲେ
ଭାର୍ଗବ ବା ଶୁକ୍ର ନାମେ ପରିଚିତ ହେଲେ ।
ପିତା ଭୃଗୁଙ୍କ ସେବାରେ ନିଯୁକ୍ତ ସେ ଥାନ୍ତି
କାଳବଶ ମନୋମୟ ଶରୀର ଧରନ୍ତି ॥
ସ୍ୱର୍ଗ ଅପସରୀ ସହ ହୋଇଲା ମିଳନ
ଗ୍ରହ ପଦ ଅବରୋଧ ଘଟିଲା ଏସନ ।
ସେ ପ୍ରାକ୍ତନ ବାସନାର ଫଳଭୋଗ ପାଇଁ
ଏ ଶରୀର ପ୍ରତି ତାଙ୍କ ସ୍ନେହ ଉପୁଜଇ ।
ଗ୍ରହପଦ ପ୍ରାପତିର ଇଚ୍ଛା ବଳବତୀ
ଏ ଶରୀର ପାଇଁ ତାଙ୍କ ମମତା ରହିଛି ।
ନିୟତିର ଅଛି ଯେଉଁ ଅବ୍ୟର୍ଥ ବିଧାନ
ଗ୍ରହ ହେବା ତାଙ୍କ ଅଧିକାର ବୋଲି ଜାଣ ।
ଏହି ଯେ ଅପରିହାର୍ଯ୍ୟ କାରଣ ଜନିତ
ଏ ଶରୀର ପ୍ରତି ତାଙ୍କ ମମତା ଜଡ଼ିତ ।
ହେଲେ ହେଁ ସେ ବାସନା ବା ଅନୁରାଗ ହୀନ
ପରିତ୍ୟକ୍ତ ଦେହପାଇଁ ଆସକ୍ତି ସମ୍ପୂର୍ଣ୍ଣ ।
ଦେହ ଧାରଣର ଫଳ ଏହା ହେ ଶ୍ରୀରାମ
ନିୟତିର ବିଧାନ ଯେ ନ ହୋଇବ ଆନ ।
ଯେତେଦିନ ଯାଏ ଏହି ଦେହ ରହିଥିବ
ଜ୍ଞାନୀ ବା ଅଜ୍ଞାନୀ ଦେହ ଧର୍ମ ଆଚରିବ ।
ଜ୍ଞାନୀମାନେ ଅନାସକ୍ତ ଭାବ ଆଚରନ୍ତି
ଅଜ୍ଞାନୀ ଏ ଦେହ ଧର୍ମେ ଆସକ୍ତ ରହନ୍ତି ।
ସୂର୍ଯ୍ୟ ପ୍ରତିବିମ୍ବ ଜଳେ ଦିଶଇ ଚଞ୍ଚଳ
ଆକାଶରେ ସୂର୍ଯ୍ୟ କିନ୍ତୁ ରହିଥାନ୍ତି ସ୍ଥିର ।
ଜ୍ଞାନୀଗଣ ଅନାସକ୍ତ ଅଜ୍ଞାନୀ ଆସକ୍ତ
ସେପରି ଲୌକିକ କର୍ମେ ରହିଥାନ୍ତି ରତ ।
ବାହାରକୁ ଚଞ୍ଚଳତା ଜ୍ଞାନୀ ପ୍ରକାଶନ୍ତି
ଅନ୍ତରରେ ଅଚଞ୍ଚଳ ସଦା ରହିଥାନ୍ତି ।
ହେ ଶ୍ରୀରାମ ପରିହରି ସକଳ ବାସନା
ଅନ୍ତରେ ଅଭେଦ-ଜ୍ଞାନ ହୁଅ ମହାମନା ।
ନିଶ୍ଚଳ ଚିତ୍ତ ହୋଇଣ ଲୌକିକ ଧରମ
ବାହ୍ୟ ବ୍ୟବହାରେ କରୁଥାଅ ସମ୍ପାଦନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ଭାର୍ଗବ ପରିବେଦନ ପ୍ରସଙ୍ଗେ ଉପଦେଶ କରଣେ ନାମ ୧୪ଶ ସର୍ଗଃ ।**



## ୧୫ଶ ସର୍ଗଃ

## ଶୁକ୍ରଙ୍କ ପୁନର୍ଜୀବନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଭାର୍ଗବଙ୍କୁ ମହାକାଳଙ୍କର ଯେ କଥନ ।
ଅନିଚ୍ଛାରେ ମହାକାଳ ଗମ୍ଭୀର ସ୍ୱରରେ
ଭାର୍ଗବଙ୍କ ପ୍ରତି ନିଜ ଇଚ୍ଛା ପ୍ରକାଶିଲେ ।

"ହେ ଭୃଗୁ ତନୟ ଏବେ ମୋର ବୋଲକର
ଏ ଶରୀର ତେଜି ପଶ ସମ୍ମୁଖ ଶରୀର ।
ପୂର୍ବତନ ଏହି ତୁମ ଶରୀରେ ପଶିଲେ
ଦାନବକୁଳର ଗୁରୁ ହୋଇବ ହେ ଭଲେ ।
କଳ୍ପ ଶେଷେ ଏ ଶରୀର ତୁମ ନାଶ ଗଲେ
ଶରୀରାନ୍ତର ଗ୍ରହଣ ନ କରିବ ହେଲେ ।
ତୁମର କଲ୍ୟାଣ ହେଉ ଏବେ ମୁଁ ଚଳିଲି"
ଶୁକ୍ର ମୁନି ଥରି ଉଠେ ଏହା ଶୁଣିକରି ।
ଭବିତବ୍ୟତା ଅଲଘ୍ୟ, ନିୟତି ଅଟଳ
ଏହା ଭାବି ଶୁକ୍ର ପଶେ ତା ପୂର୍ବ ଶରୀର ।
ତାପସ ଶରୀର ତାଙ୍କ ଛିନ୍ନ ଦ୍ରୁମପରି
ସଙ୍ଗେ ସଙ୍ଗେ ନିପତିତ ହୁଏ ବସୁନ୍ଧରୀ ।
ମନ୍ତ୍ରପୂତ ଜଳ ଘେନି ଭୃଗୁ ମୁନିବର
ସିଞ୍ଚନ କରନ୍ତେ ତାଙ୍କ ତନୟ ଶରୀର,
ପଲ୍ଲବି ଆସଇ ଶୁକ୍ର ମୁନି କଳେବର
ଶକ୍ତି ମାଂସ ଆଦି ଯାହା ଶରୀର ଅନ୍ତର ।
ପ୍ରାଣବାୟୁ ସଞ୍ଚରଇ ସାରା ଶରୀରରେ
ଝାଡ଼ିଝୁଡ଼ି ହୋଇ ମୁନି ବସିଲେ ଭୂତଳେ ।
ପିତୃ ଚରଣେ ସାଷ୍ଟାଙ୍ଗ ପ୍ରଣିପାତ କଲେ
ସାଦରରେ ଭୃଗୁ ତାଙ୍କୁ କୋଳାଗ୍ରତ କଲେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଭାର୍ଗବ ଉପାଖ୍ୟାନେ ଶୁକ୍ରଙ୍କ ପୁନର୍ଜୀବନଂ ନାମ ୧୫ଶ ସର୍ଗଃ ।**



## ୧୬ଶ ସର୍ଗଃ

## ମନୋରାଜ୍ୟ ସମ୍ମିଳନ

କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ଏବେ ମୋ ସନ୍ଦେହ ଗୋଟି ମୋଚନ କରିବ ।
ଶୁକ୍ରଙ୍କ ସ୍ୱର୍ଗ ବାସନା ପୂର୍ଣ୍ଣ ହେଲାପରି
ଅନ୍ୟଙ୍କ ବାସନା କିମ୍ବା ନ ହୁଏ ସେପରି ?
ବଶିଷ୍ଠ କହନ୍ତି ଏବେ ଶୁଣ ହେ ରାଘବ
ଶୁକ୍ରଙ୍କ ସେହି ଶରୀର ବ୍ରହ୍ମରୁ ଉଦ୍ଭବ ।
ଏହାଛଡ଼ା ପୂର୍ବ ଜନ୍ମ ସତ୍‌କର୍ମାଦି ବଳେ
ଯାବତ ଦୋଷ ତାଙ୍କର ଧ୍ୱଂସ ଲଭିଥିଲେ ।
ପୂର୍ବଜନ୍ମମାନଙ୍କର ଯେ ଦୁଷ୍କୃତ ଫଳ
ସର୍ବନାଶ ଲଭିଥିଲା ଏ ଜନ୍ମ ପୂର୍ବର ।
ବିଶୁଦ୍ଧ କଳଙ୍କହୀନ ଥିଲା ଏ ଶରୀର
ଯେଣୁ ନ ଥିଲା ପୂର୍ବର ଅପକର୍ମ ବଳ ।
ସତ୍ତ୍ୱଗୁଣମୟ ଯେଉଁ ସୁନିର୍ମଳ ଚିତ୍ତ
ଯାହା ଭାବିନିଏ ତାହା ଘଟେ ସୁନିଶ୍ଚିତ
ଶୁକ୍ର ମୁନି ଜଗତ୍‌ଭ୍ରାନ୍ତି ସ୍ୱତଃ ଜାତ ହୁଏ
ପ୍ରତ୍ୟେକ ପୁରୁଷରହିଁ ତାହା ହୋଇଥାଏ ।
ଭ୍ରାନ୍ତିମୟ ଅଟେ ଯେଉଁ ଦ୍ୱୈତ ଦରଶନ
ସକଳ ପ୍ରାଣୀଙ୍କଠାରେ ତାହା ଘଟେ ଜାଣ ।
ଯେ ମିଥ୍ୟା ଜଗତ ଭାସେ ଆମ ନେତ୍ର ପଥ
ପ୍ରତି ବ୍ୟକ୍ତି ହୃଦେ ଜାତ ପୁଣି ତିରୋହିତ ।
ଜଗତର ସୃଷ୍ଟି, ସ୍ଥିତି, ନାଶ କିଛି ନାହିଁ
ଯଥାର୍ଥରେ ତାହା ଭ୍ରମ ବୋଲି କୁହାଯାଇ ।
ଏକମାତ୍ର ମାୟାଶକ୍ତି ପାଗଳଙ୍କ ପରି
ଏସନ ନୃତ୍ୟ କରୁଛି ଆହେ ଋପଧାରୀ !
ସ୍ୱପ୍ନ ଦୃଷ୍ଟ, ସଙ୍କଳପ-ଦୃଷ୍ଟ ମଧ୍ୟେ ଭେଦ
ଯେପରି ନ ଥାଏ ଆହେ ରଘୁକୁଳ ଚନ୍ଦ୍ର,
ସଂସାର ଭ୍ରାନ୍ତି ତେସନ ବୁଝିବ ରାଘବ
ଭ୍ରାନ୍ତିମୟ ଯାହା, ତହିଁ ତର୍କ କି ସମ୍ଭବ ?
ଯକ୍ଷ, ରାକ୍ଷସ, ପିଶାଚ ଆଦି ଏ ଜଗତେ
ସଙ୍କଳ୍ପ ବଳେ ଶରୀର ଧରନ୍ତି ସମସ୍ତେ ।
ସଙ୍କଳ୍ପିତ ଦେହ ଧରି ଆମ୍ଭେମାନେ ସର୍ବେ
ମିଥ୍ୟା ଜଗତକୁ ସତ୍ୟ ମଣୁଥାଉ ଭବେ ।
ଏ ସଙ୍କଳ୍ପ ସୃଷ୍ଟିମାନ ହିରଣ୍ୟ ଗର୍ଭରେ
ବିରାଜମାନ କରନ୍ତି ଆହେ ରଘୁବୀରେ ।
ବାସ୍ତବ ସତ୍ତା କିଛିହିଁ ଯାଙ୍କ ମଧ୍ୟେ ନାହିଁ
ବ୍ରହ୍ମହିଁ ସର୍ବ ଜଗତ ଆକାର ଧରଇ ।
ବ୍ରହ୍ମର ଜଗଦାକୃତି ଅଟଇ ଅସତ
ବ୍ରହ୍ମ ଆକାର ତାହାର କେବଳ ହିଁ ସତ୍ୟ ।
ପ୍ରଥମ ଦୃଷ୍ଟିରେ ଏହି ଜଗତ ପ୍ରତୀତ
ପରମାର୍ଥିକ ଦୃଷ୍ଟିରୁ ବ୍ରହ୍ମ ପ୍ରତିଭାତ ।
ଧୋଇଦେଲେ ପଙ୍କବୋଳା ମଣିକି ଯେମନ୍ତ
ଉଜ୍ଜ୍ୱଳତା ତାର ହୋଇଥାଏ ପ୍ରତିଭାତ ।
ସେହିପରି ଉପାସନା ଦ୍ୱାରା ଏହି ଚିତ୍ତ
ସୁନିର୍ମଳ ହୋଇ ଜ୍ୟୋତି କରେ ପ୍ରକାଶିତ ।
ରାଗ, ଦ୍ୱେଷ-ପଙ୍କେ କଳଙ୍କିତ ଯେଉଁ ଚିତ୍ତ
ଅଦ୍ୱୈତାତ୍ମଜ୍ଞାନ ତହିଁ ନୁହେ ପ୍ରକାଶିତ ।

ମାନବ ମାନସ ଚିନ୍ତା ସଫଳ ନିମିତ୍ତ
ଦୁଇଟି କାରଣ ଅଛି ଆହେ ରଘୁନାଥ ।
ସତ୍ୟ ସଙ୍କଳ୍ପତା ହେତୁ ଯେଉଁ ଚିତ୍ତ ଶୁଦ୍ଧି
ପ୍ରଥମ କାରଣ ଏହା ଜାଣ ରଘୁନିଧି ।
ମରଣ ଅବ୍ୟବହିତ ପୂର୍ବୁ ରଘୁରାୟ
ଭାବୀ ଭୋଗପ୍ରଦ ଧର୍ମାଧର୍ମର ଉଦୟ ।
ଦ୍ୱିତୀୟ କାରଣ ଏହା ଜାଣ ରଘୁରାୟ
ମରଣ ସମୟ ଯେଣୁ ଉତ୍କୃଷ୍ଟ ସମୟ ।
ସତ୍ୟ ସଙ୍କଳପ ହେତୁ ଶୁକ୍ର ମନ ଭାବ
ସଫଳ କାମ ହୋଇଲା ଜାଣିବ ରାଘବ ।
ପୂର୍ବକଳ୍ପେ ଶୁକ୍ରଙ୍କର ଶେଷ ମୃତ୍ୟୁବେଳେ
ଚିତ୍ତ ଦୋଷ କଟିଥିଲା ତପସ୍ୟାର ଫଳେ ।
ଏ ଜନ୍ମେ ବ୍ରାହ୍ମଣକୂଳେ ଜନମିବା ପାଇଁ
ଅଧିକାରୀ ଥିଲେ ଶୁକ୍ର ଆହେ ରଘୁସାଇଁ ।
ସତ୍ୟ ସଙ୍କଳ୍ପତା ସିଦ୍ଧି ଯେଣୁ ଲଭିଥିଲେ
ମନ କାମନା ପୂରଣ ହେଲା ତାର ବଳେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଭାର୍ଗବ ଉପାଖ୍ୟାନେ ମନୋରାଜ୍ୟ**
**ସମ୍ମିଳନ ବର୍ଣ୍ଣନେ ନାମ ୧୬ଶ ସର୍ଗଃ ।**

❑

## ୧୭ଶ ସର୍ଗଃ
## ଜୀବପଦ ବର୍ଣ୍ଣନ

ଶ୍ରୀରାମ କହନ୍ତି ଦେବ ଏବେ କହ ମୋତେ
ଶୁକ୍ର ଚିତ୍ତସ୍ଥ ଜଗତ ବିଷୟ ଯେମନ୍ତେ,
କେବଳ କଳ୍ପନାମୟ ଥିଲା ସେ ଜଗତ
ସତ୍ୟ ଆକାରେ କେସନ ହେଲା ପ୍ରମାଣିତ ।
କାଳକ୍ରମ ଅନୁସାରେ କ୍ରିୟାବାନ ହୋଇ
ସଫଳତା ଲାଭକଲା କିପରି ଯେ ସେହି ?
ବୋଲନ୍ତି ବଶିଷ୍ଠ ତାହା ଶୁଣ ଏବେ ରାମ
ଶୁଣିଲେ ତୁମ ସନ୍ଦେହ ହେବ ବିମୋଚନ ।
ଜଗଦ୍ ବିଷୟକ ଜ୍ଞାନ ପିତାଠୁଁ ଶୁଣିଲେ
ନିଜେ ଶାସ୍ତ୍ର ଚର୍ଚ୍ଚାକରି ଜ୍ଞାନ ଲାଭକଲେ ।
ସେ ସବୁ ଶୁକ୍ରଙ୍କ ଚିତ୍ତେ ସଂସ୍କାର ରୂପରେ
ବଦ୍ଧମୂଳ ରହିଥିଲା ଜୀବନ୍ତ ଭାବରେ ।
ସେ ସଂସ୍କାରମାନ କ୍ରମେ ପ୍ରକାଶ ଲଭଇ
କର୍ମକ୍ଷେତ୍ରରେ ପ୍ରେରଣା ତାକୁ ଦେଉଥାଇ ।
ଯେଉଁ ବାସନାରେ ଜୀବ ହୁଅଇ ଆବଦ୍ଧ
ଅନ୍ତର ମଧ୍ୟରେ ତାହା ହୁଏ ଉପଲବ୍ଧ ।
ସୈନିକ ହେବା ବାସନା ରଖି ନରଗଣ
ଯୁଦ୍ଧକ୍ଷେତ୍ରେ ସେମାନଙ୍କ ଦେଖି ଆଚରଣ,
ରାତ୍ରିକାଳେ ସେମାନଙ୍କୁ ଦେଖନ୍ତି ସ୍ୱପ୍ନରେ
ସଂସାର ଦର୍ଶନ ତଥା ବାସନାର ବଳେ,
ଲଭୁଥାଏ ଜୀବ ନିଜ ଇଚ୍ଛାନୁକ୍ରମେଣ
ବାସନାମାନ ତାହାର ହୁଅନ୍ତି ପୂରଣ ।
ବାସନାନୁସାରେ ଜଗଦ୍‌ଭ୍ରମ ହୋଇଥାଏ
ମନ କଳ୍ପନାରୁ ଏ ସଂସାର ଜାତ ହୁଏ ।
ଏ କଥା ମୁଁ ଭଲରୂପେ ବୁଝିଛି ହେ ଦେବ
ଶୁକ୍ର ତ କରି ନ ଥିଲେ ପୂର୍ବରୁ ଏ ସର୍ବ ।
ସ୍ୱର୍ଗ ବାସନା ତାଙ୍କର ଜନ୍ମିତ ନ ଥିଲା
ଅପସରା ସଙ୍ଗ ପୂର୍ବେ ଘଟିତ ନ ଥିଲା ।
ତେଣୁ ବାସନା ସଂସ୍କାର ମନରେ ତାଙ୍କର
କିପରି ଉଦୟ ହେଲା ଆହେ ତପୀବର ?
ସଂସାରର ଭୋଗ ପୁଣି ମନର ବାସନା
ଏମାନଙ୍କ ମଧ୍ୟେ ମେଳ କେତେ ସମ୍ଭାବନା ?
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁସାଇଁ
ମିଳନ ମନରେ ଶୁଷ୍କ ମନ କି ମିଳଇ ?
ଖରା ତରାଙ୍କର ଭେଟ କଠିନ ଯେସନ
ମଳିନ ତ ଶୁଷ୍କ ମନ ମଳିନ ତେସନ ।
ମଳିନ ମନ ଅବୀର୍ଯ୍ୟ ପୁଣି ଶକ୍ତିହୀନ
ଉଭୟଙ୍କ ମେଳ ଅବା ସମ୍ଭବ କେସନ ?
ହାସଲ କରିପାରିଲେ ସମାଧିସ୍ଥ ଜ୍ଞାନ
ଶୁଦ୍ଧ ଶୁଷ୍କ ହୋଇପାରେ ଯେ ମଳିନ ମନ ।
ଉତ୍ତପ୍ତ ଲୌହ ସହିତ ଉତ୍ତପ୍ତ ଲୌହର
ମିଳନ ସହଜ ଯଥା ଆହେ ରଘୁବୀର,
ଏକ ଜାତି ଜଳ ସହ ସେହି ଜାତି ଜଳ
ମିଶିଯାଏ ନ ଦିଶଇ ପାର୍ଥକ୍ୟ ତହିଁର ।
ସେହିପରି ଶୁଦ୍ଧ ଚିତ୍ତ ଶୁଦ୍ଧ ଚିତ୍ତ ସହ
ଐକ୍ୟଭାବ ଜନମାଏ କୌଶଲ୍ୟା ତନୟ ।
ଭୌତିକ ଅନୁଭୂତିର ଚିହ୍ନ ଯହିଁ ନାହିଁ
ଯେଉଁ ଚିତ୍ତରେ ସର୍ବଦା ସମତା ରାଜଇ ।

ଏପରି ବିଶୁଦ୍ଧ ଚିତ୍ତ ତତ୍ତ୍ୱଜ୍ଞାନ ପାଏ
ମୁନିମାନଙ୍କର ମତ ଜାଣ ରଘୁରାଏ ।
**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଜୀବପଦ ବର୍ଣ୍ଣନେ ନାମ ୧୭ଶ ସର୍ଗଃ ।**



## ୧୮ଶ ସର୍ଗଃ

### ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତୁରୀୟ ରୂପ ବର୍ଣ୍ଣନ

ଚିନ୍ମୟ ଆତ୍ମା ସର୍ବଦା କଳ୍ପେ ଯେ ଆକୃତି
ତଦ୍ୱାରା ପ୍ରତି ଜୀବରେ ନାନା ଭାବ ସୃଷ୍ଟି ।
ସ୍ଥୂଳ, ସୂକ୍ଷ୍ମ, କାରଣ ଇତ୍ୟାଦିରୂପ ନେଇ
ଜୀବଙ୍କ ମନରେ ତାହା ପ୍ରକାଶ ଲଭଇ ।
ଅସଂଖ୍ୟ ହେଲେହେଁ ସୃଷ୍ଟରୂପା ନଦୀମାନ
ସେହିମାନଙ୍କର ଦ୍ରଷ୍ଟା ଏକହିଁ ଚୈତନ୍ୟ ।
ସକଳ ଚିତ୍ତମାନଙ୍କ କଳ୍ପିତ ସର୍ଜନା
ସମସ୍ତଙ୍କ ନିକଟରେ ସତ୍ୟ ଭାବେ ଜଣା ।
ସୁଷୁପ୍ତି ପରେ ଜନମେ ଯେ ଦ୍ୱୈତ ପ୍ରବୃତ୍ତି
ବାସ୍ତବରେ ତା ଚିନ୍ମୟ ଆତ୍ମାର ପ୍ରକୃତି ।
ଚିନ୍ମୟ ଆତ୍ମା ସହିତ ଏକତା ବଶତ
ଜୀବ ଦରଶନ କରେ ଯାହା ଏ ଜଗତ,
ଆତ୍ମଜ୍ୟୋତି ଦ୍ୱାରା ତାହା ହୁଏ ଦୃଶ୍ୟମାନ
ଆତ୍ମାହିଁ ସରବ ସ୍ଥଳେ ଦର୍ଶନ କାରଣ ।
ଏକହିଁ ବ୍ରହ୍ମ ଚୈତନ୍ୟ ହେତୁ ରଘୁନାଥ
ବିଭିନ୍ନ କଳ୍ପନା ଭିନ୍ନ ଭିନ୍ନ ମନେ ଜାତ ।
ଅବାସ୍ତବ ହୋଇଲେ ହେଁ ସେ ସବୁ କଳ୍ପନା
ବିଶୁଦ୍ଧ ଚିତ୍ତେ ଫଳିତ ହୋଇଥାନ୍ତି ସିନା ।
ସାଧନା ବଳରେ ଜୀବ ହୁଅନ୍ତେ ସର୍ବଜ୍ଞ
ସେହି ସର୍ବଜ୍ଞ ହିଁ ଦୃଶ୍ୟମାନଙ୍କର ବିଜ୍ଞ ।
ପ୍ରତି ପରମାଣୁ ଧରେ ଅସଂଖ୍ୟ ଜଗତ
ବ୍ରହ୍ମର ମାୟା କାନନ ବୋଲି ତା ବିଦିତ ।
ସେମାନେ ନିବିଡ଼ ଭାବେ ହେଲେହେଁ ମିଳିତ
ସର୍ବେ ସେ ସବୁଙ୍କୁ ଦେଖିବାଟା ଅନିଶ୍ଚିତ ।
ଯାହାର ଯାହା ସହିତ ସମ୍ବନ୍ଧ ଅଛଇ
ସେ ତାକୁ ଦେଖିପାରଇ, ଅନ୍ୟ ନ ପାରଇ ।
ଏକ ମନ ଅପରର ମନୋମୟ ରାଜ୍ୟ
ଭୋଗ ବା ଦର୍ଶନେ ଅସମର୍ଥ ରଘୁରାଜ ।

ମନର ବୈକଲ୍ୟ ହେତୁ ଏହି ଅକ୍ଷମତା
ତେଣୁ ଜୀବଗଣ ମଧ୍ୟେ ଘଟେ ବିଷମତା ।
ମନରୂପ ଉପାଧିଟି ହେବାରୁ ବିଭିନ୍ନ
ଜୀବ ଭେଦ ଭାବନାର ତା ତହୁଁ ଉତ୍ପନ୍ନ ।
କର୍ମଫଳ ଭୋଗପାଇଁ ଯାହା ଅନୁକୂଳ
ତାହା ହିଁ ଦେଖି ମାନବ କାଟୁଥାଏ କାଳ ।
ପ୍ରତ୍ୟେକ ସର୍ଜନା ଉକ୍ତ ନିୟମ ଅଧୀନ
ଏହି ହେତୁ ଜୀବ କରେ ସୃଷ୍ଟି ସନ୍ଦର୍ଶନ ।
**ଏକ ଜାତି ବହୁ ଇଚ୍ଛା ଏକଇ କାଳରେ**
**ପରସ୍ପର ସମ୍ମିଳିତ ଭାବ ଯେବେ ଧରେ ।**
**ସ୍ଥୂଳ ଦେହର ଉତ୍ପନ୍ନ କାରଣ ତା ହୋଇ**
**ସ୍ଥୂଳ ଦେହ ବିନା ସେ ବାସନା ପୂର୍ଣ୍ଣ ନୋହି ।**
ସ୍ଥୂଳ ଦେହ ଅଟେ ବ୍ୟାଧିମାନଙ୍କ ସମଷ୍ଟି
ସ୍ଥୂଳ ଦେହ କାହିଁ ହେଲେ ବାସନା ବିସୃତି ?
ଭୂଷଣରୂପେ ସ୍ୱର୍ଣ୍ଣର ହେଲେ ଆତ୍ମବୋଧ
ଆତ୍ମବିସ୍ମୃତି ତାହାର ଘଟେ ସ୍ୱତଃସିଦ୍ଧ ।
ଦେହ ମଧ୍ୟେ ଚିତ୍ ଶକ୍ତି ହୁଅନ୍ତେ ତୃପତ
ଆତ୍ମ ବିସ୍ମୃତି ଘଟେ ତା, ହୁଏ ସେ ଲୁପତ ।
**ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତିନି ଅବସ୍ଥାରେ**
**ଜଡ଼ିତ ହୁଅନ୍ତେ ଆତ୍ମା ଜୀବଭାବ ଧରେ ।**
ସେତେବେଳେ ଯାଇଁ ତାର ଦେହଭାବ ଆସେ
ସମ୍ୟକ ପର୍ଯ୍ୟାଲୋଚନା ଦେହଭାବ ନାଶେ ।
ଜଳରେ ତରଙ୍ଗ ଉଠି ଜଳେ ହୁଏ ଲୀନ
ଜଳଭାବର ଘଟଇ ପୁନରାବର୍ତ୍ତନ ।
ତଥା ଦେହ ଭାବ ହୋଇ ଯାଆନ୍ତେ ବିନାଶ
ପୁନରପି ଆତ୍ମଭାବ ହୁଏ ପରକାଶ ।
ସଂସାର ମୁଗ୍ଧ ସେ ଜୀବ କଳ୍ପନା ବଶତ
ସାଂସାରିକ ପ୍ରବୃତ୍ତିରେ ହୁଅଇ ଜଡ଼ିତ ।
ତତ୍ତ୍ୱଜ୍ଞ ଜୀବ ସୁଷୁପ୍ତି ଅବସ୍ଥା ଅତୀତ
ତୁରୀୟ ଚୈତନ୍ୟ ପଦ ହୋଇ ପରାପତ ।
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଅବସ୍ଥା ଜଡ଼ିତ
ପରିତ୍ୟାଗ କରେ ଜୀବ-ଭାବକୁ ତ୍ୱରିତ ।
ଜ୍ଞାନୀ ବା ଅଜ୍ଞାନୀଙ୍କର ସୁଷୁପ୍ତି କାଳରେ
ପ୍ରଭେଦ ନ ଥାଇ, ଦୁହେଁ ଥାନ୍ତି ଆନନ୍ଦରେ ।

ବେଦବାକ୍ୟ ମଧ୍ୟ ଏହା କରେ ସମର୍ଥନ
ଅଜ୍ଞାନୀ ସୁଷୁପ୍ତି କିନ୍ତୁ ଆତ୍ମଜ୍ଞାନ ହୀନ ।
ଭ୍ରାନ୍ତିମୟ ବାସନାରେ ଥାଏ ସେ ଜଡ଼ିତ
ସୁଷୁପ୍ତିର ଅନ୍ତେ ପୁଣି ସଂସାରରେ ଲିପ୍ତ ।
ଚିତ୍‌ଶକ୍ତି ସର୍ବଗାମୀ ଅଟେ ଯେଣୁକରି
କେତେକ ଅଜ୍ଞାନୀ ସେହି ବଳ ଅନୁସରୀ ।
ସୁଷୁପ୍ତି କାଳରେ ଅନ୍ୟ ମନୋନୟ ରାଜ୍ୟେ
କେବେ କେବେ ପଶିପାରି ଥାଆନ୍ତି ସହଜେ ।
ଏ ଜଗତ ମଧ୍ୟେ ନାନା ଜଗତ ଅଛନ୍ତି
ସେମାନଙ୍କ ମଧ୍ୟେ ନାନା ଭାବ ବିରାଜନ୍ତି ।
କଦଳୀ ଗଛେ ବାସୁଙ୍ଗା ଯଥା ବିଦ୍ୟମାନ
ଜଗତମାନଙ୍କ ସ୍ଥିତି ସେହିପରି ଜାଣ ।
ଏ ଅନନ୍ତ ଜଗତ୍‌ପୁଞ୍ଜ ମଧ୍ୟେ ହେ ଶ୍ରୀରାମ
ସର୍ବତ୍ର ସମାନଭାବେ ବ୍ରହ୍ମ ବିଦ୍ୟମାନ ।
ଏହି ସକଳ ଜଗତ ପ୍ରକାଶ କରିଣ
ବ୍ରହ୍ମ କରନ୍ତି ଆପଣ ବ୍ରହ୍ମତ୍ୱ ଦର୍ଶନ ।
ତେଣୁ ବ୍ରହ୍ମ ଆଉ ତାଙ୍କ ସୃଷ୍ଟିର ମଧ୍ୟରେ
କୌଣସି ପ୍ରଭେଦ ନାହିଁ ଜାଣ ରଘୁବୀରେ ।
ବୃକ୍ଷ ଆକାର ଧରିଣ ବୀଜ ଯେଉଁପରି
ପୁଣି ବୀଜ ଆକାରକୁ ଆସିଥାଏ ଫେରି ।
ମନ ଆକାର ଧରିଣ ବ୍ରହ୍ମ ସେହିପରି
ବ୍ରହ୍ମଭାବ ପ୍ରାପ୍ତହୁଏ ଜ୍ଞାନ ଶକ୍ତି ଧରି ।
**ବୀଜଭାବ ତେଜି ବୀଜ ବୃକ୍ଷ ପାଲଟଇ**
**ବ୍ରହ୍ମତ୍ୱ ନ ତେଜି ବ୍ରହ୍ମ ଜଗଦରୂପ ହୋଇ ।**
ବୁଝ ହେ ଶ୍ରୀରାମ ଏହି ଜଗତ ହିଁ ଆତ୍ମା
ଅଜ୍ଞାନୀ ବୁଝି ନ ପାରେ ଜଗତ ଯେ ଆତ୍ମା ।
ନିଜେ ଦ୍ରଷ୍ଟା ହୋଇ ଜୀବ ଆତ୍ମାକୁ ନିଜର
ଦୃଶ୍ୟ ଆକାରେ ଦର୍ଶନ କରେ ରଘୁବୀର ।
ଭ୍ରାନ୍ତିମୟ ଅଟେ ଯେଣୁ ଏ ରୂପ ଦର୍ଶନ
ତେଣୁ ହୁଏ ନାନା ଅନର୍ଥର ସମ୍ମୁଖୀନ ।
ଭ୍ରାନ୍ତିମୟ ଅଟେ ଯେଣୁ ଜଗତ ଦର୍ଶନ
ଜୀବର ଜ୍ଞାନକୁ ତେଣୁ କରେ ଆଚ୍ଛାଦନ ।
କାହିଁ ତାର ସ୍ଥିତି ଜୀବ ଜାଣି ନ ପାରଇ
ସ୍ୱ ପ୍ରକାଶ ପୂର୍ଣ୍ଣାନନ୍ଦ ଭାବ ନ ଜାଣଇ ।

ନିଜ ଆଖି କେହି ଦେଖି ନ ପାରେ ଯେପରି
ଜୀବ ନିଜ ଆତ୍ମା ଦେଖି ନ ପାରେ ସେପରି ।
ସମସ୍ତ ଦୃଶ୍ୟ ଦର୍ଶନେ ଆଖି ହିଁ ସକ୍ଷମ
ନିଜକୁ ଦେଖିବା ପାଇଁ କିନ୍ତୁ ସେ ଅକ୍ଷମ ।
ଦ୍ରଷ୍ଟାଜୀବ ସେହିପରି ସବୁ ଦେଖିପାରେ
କିନ୍ତୁ ଅକ୍ଷମ ନିଜକୁ ଦେଖି ପାରିବାରେ ।
ଅଛିକି ଅଦ୍‌ଭୂତ ଭ୍ରମ ଏହାର ସଦୃଶ ?
ବିଚାର କରିଣ ବୁଝ ଆହେ ରଘୁଈଶ ।
ବହିର୍ଦୃଷ୍ଟି ଅଭାବରୁ ଯେ ମୁକତ ଜନ
ଅକ୍ଷମ ସେ କରିବାକୁ ଦ୍ୱୈତ ଦରଶନ ।
ଆକାଶ ପରି ଯେ ଆତ୍ମା ବିଶାଳ ନିର୍ମଳ
ଭ୍ରାନ୍ତ ଜୀବର ସେ ନୁହେଁ ନୟନ ଗୋଚର ।
ନିଜେ ସେ ନିଜକୁ ଯେଣୁ ଦେଖି ନ ପାରିଛି
ଅପର ଆତ୍ମା ଦର୍ଶନେ ସମର୍ଥ ନୋହୁଛି ।
ସୁବିଶାଳ ଆତ୍ମାଙ୍କର ଦରଶନ ପାଇଁ
ଜ୍ଞାନଦୃଷ୍ଟି ବିନା ଅନ୍ୟ କିଛି ଲୋଡ଼ା ନାହିଁ ।
ଜ୍ଞାନଦୃଷ୍ଟି ସାହାଯ୍ୟରେ ସୂକ୍ଷ୍ମ ଚିନ୍ମାତ୍ରରେ
ମନ ଯଦି ସୁସଂସ୍ଥିତ ତହିଁ ରହିପାରେ ।
ଅନ୍ୟ କିଛି ବସ୍ତୁ ଦୃଶ୍ୟ ରୂପେ ପ୍ରତିଭାତ
ହୋଇ ନ ପାରଇ ଜାଣ ଆହେ ରଘୁନାଥ ।
ତେଣୁ ସୂକ୍ଷ୍ମ ଜ୍ଞାନଦୃଷ୍ଟି ବଳେ ହେ ଶ୍ରୀରାମ
ଦ୍ୱୈତଭ୍ରମ ତେଜିବାକୁ ହୁଅ ହେ ସକ୍ଷମ ।
ଏ ଜଗତ କିସ ପୁଣି ମୁହିଁ ଅବା କିଏ ?
ଜାଣିବାର ସ୍ପୃହା ଯାର ଉଦିତ ନ ହୁଏ,
ଅନ୍ତରର ଭ୍ରାନ୍ତିରୂପ ଜ୍ୱର ବ୍ୟାଧି ତାର
ସେ ପର୍ଯ୍ୟନ୍ତ କମି ନାହିଁ ବୁଝ ରଘୁବୀର ।
ଉପଯୁକ୍ତ ମହୋଷଧି ପଥ୍ୟ ସାହାଯ୍ୟରେ
ଶାରୀରିକ ବ୍ୟାଧି ଯଥା ଉଣା ହୋଇପାରେ ।
ତଥା ଇନ୍ଦ୍ରିୟ ନିଗ୍ରହ ଅଭ୍ୟାସର ବଳେ
ଫଳପ୍ରସୂ ହୋଇପାରେ ଏ ବିବେକ ଭଲେ ।
କେବଳ ବାକ୍‌ପଟୁତା ଯାହାର ଅଛଇ
ବାକ୍ୟ ଅନୁସାରେ କାର୍ଯ୍ୟ ଯେବେ ନ କରଇ,
ବୃଥା ବିବେକ ତାହାର ଆହେ ରଘୁବୀର
ଅବିବେକୀ ହେବାଠାରୁ ମୃତ୍ୟୁ ଶ୍ରେୟସ୍କର ।
ଚିତ୍ରାଙ୍କିତ ଅଗ୍ନି ଯଥା ନୁହଇ ଯଥାର୍ଥ
ବାକ୍ୟ, ବିବେକିତା ବୃଥା ଖାଲି ଅଯଥାର୍ଥ ।

ପ୍ରବୋଧ ଫଳ ନ ଦିଏ ବାଚ୍ଚିକ ବିବେକ
ବାଚିକ ଭୋଜନ କେବେ ନିବାରିଛି ଭୋକ ?
ବିବେକ ବଶରୁ ଭୋଗ ଲାଳସାର କ୍ଷୀଣ
ଇଷ୍ଟାନିଷ୍ଟ ବିନାଶରେ ପ୍ରବୃତ୍ତିର ମ୍ଳାନ ।
ତତ୍‌ପରେ ସୁଜ୍ଞାନର ପ୍ରତିଷ୍ଠା ଜନମ
ବିବେକ ହିଁ ଏକମାତ୍ର ପରମ ପାବନ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ତୁରୀୟ ସ୍ୱରୂପ**
**ବିଚାର ବର୍ଣ୍ଣନେ ନାମ ୧୮ଶ ସର୍ଗଃ ।**



## ୧୯ଶ ସର୍ଗଃ

## ଜୀବପଦ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଆକାଶ ସଦୃଶ ବ୍ରହ୍ମ ସର୍ବବିଦ୍ୟମାନ ।
ଯେ ଘେନି ଚିନ୍ମୟ ଆତ୍ମା ସର୍ବବିଦ୍ୟମାନ୍
ସର୍ବ ଜୀବଙ୍କର ବୀଜ ପରମାତ୍ମା ଜାଣ,
ପରମାତ୍ମାଙ୍କ ସ୍ଫୁରଣ ଜୀବ ନାମ ଧରେ
ଜଗତ ବିରାଜମାନ ସେ ଜୀବ ମଧ୍ୟରେ ।
ସେ-ଜୀବ ଜଗତ ମଧ୍ୟେ ବହୁ ଜୀବ ବାସ
ଏଥିରେ ବିଚିତ୍ର କଥା ଅଛି ଆଉ କିସ ?
ସିଦ୍ଧି ପାଇଁ ଜୀବ ହେଲେ ଯତ୍ନ ପରାୟଣ
ଉପାସନା ଅନୁରୂପ ଫଳ ପ୍ରାପ୍ତି ଜାଣ ।
ଦେବ ଉପାସକମାନେ ଦେବତ୍ୱ ଲଭନ୍ତି
ଯକ୍ଷ ଉପାସକମାନେ ଯକ୍ଷଲୋକ ଯାନ୍ତି ।
ବ୍ରହ୍ମ ଉପାସକ କରେ ବ୍ରହ୍ମ ପଦ ଲାଭ
ଯାହା ସତ୍ୟ ତା ଆଶ୍ରୟ ନେବାହିଁ କର୍ତ୍ତବ୍ୟ ।
ଅପସରା ଚିନ୍ତାକରି ଭୃଗୁ ସୁତ ଶୁକ୍ର
ବନ୍ଧନେ ଆବଦ୍ଧ ହୋଇ ଗତି ତାର ବକ୍ର ।
ପରେ ନିର୍ମଳ ଆତ୍ମାର ଉପାସନା କରି ।
ମୁକ୍ତ ହୋଇ ପାରିଥିଲେ ଶୁକ୍ର ତପଚାରୀ ।
* ବାଳାସଂବିତ୍‌ରେ ଯେଉଁ ଭାବନା ଆସିବ
ତଦରୂପ ଆକାର ସେ ଧାରଣ କରିବ ।
ଯେଉଁ ଉପାୟରେ ବ୍ରହ୍ମ ଭାବ ସେ ଧରିବ
ସେହି ଉପାୟକୁ ଅବଲମ୍ବନ କରିବ ।

ଶ୍ରୀରାମ କହନ୍ତି ଏବେ ଶୁଣ ଗୁରୁଦେବ
ଜାଗ୍ରତ, ସ୍ୱପ୍ନାବସ୍ଥାର ପାର୍ଥକ୍ୟ କହିବ ।
ସପନେ ଯା ଦେଖାଯାଏ ତେତେବେଳେ ସତ୍ୟ
ଜାଗରଣେ ଯାହା ଦେଖ ସେକାଳେ ତ ସତ୍ୟ ।
ତେବେ କିମ୍ପା ସ୍ୱପ୍ନଜ୍ଞାନ ହୋଇବ ଅସତ୍ୟ ?
ଦୃଶ୍ୟ ଯେବେ ସ୍ଥିର ଭାବେ ହୁଅଇ ପ୍ରତୀତ
ଜାଗ୍ରତ ନାମରେ ତାହା ହୁଏ ଅଭିହିତ ।
ଅସ୍ଥିର ଆକାରେ ଯେବେ ଦୃଶ୍ୟ ପ୍ରତିଭାତ
ସପନ ନାମରେ ତାହା ହୁଏ ଅଭିହିତ ।
ଜାଗରଣେ ଦୃଶ୍ୟ ଯଦି ହୁଏ କ୍ଷଣସ୍ଥାୟୀ
ସ୍ୱପ୍ନ ପଦବାଚ୍ୟ ତାହା ବୁଝ ରଘୁସାଇଁ ।
ସ୍ୱପ୍ନ ଦୃଷ୍ଟ ଦୃଶ୍ୟ ଦୀର୍ଘକାଳ ସ୍ଥାୟୀ ହେଲେ
ଜାଗ୍ରତ ଦର୍ଶନ ବୋଲି କୁହାଯାଏ ଭଲେ ।
ସ୍ଥିର ଭାବ ବା ଅସ୍ଥିର ଭାବର ବ୍ୟତୀତ
ଜାଗ୍ରତ ସ୍ୱପ୍ନ ଦୃଶ୍ୟରେ ନ ଥାଇ ତଫାତ ।
ଉଭୟ କାଳରେ ଅନୁଭବଟି ସମାନ
ଯଥାର୍ଥ ବୋଲି ବୁଝିବ ହେ ରଘୁନନ୍ଦନ ।
ଏମନ୍ତ ବସ୍ତୁ ଅଛଇ ଏ ଦେହ ମଧ୍ୟରେ
ପ୍ରଧାନ କାରଣ ଯେହୁ ବଞ୍ଚି ରହିବାରେ ।
'ଜୀବଧାତୁ' ନାମେ ସେହୁ ଖ୍ୟାତ ଏ ସଂସାରେ ।
ଜୀବଧାତୁ ଦ୍ୱାରା ଶରୀରର ତେଜ, ବଳ
ଉଦ୍ଦିପ୍ତ ରହେ ସର୍ବଦା ଆହେ ରଘୁବୀର ।
ବାକ୍ୟ, ମନ, କର୍ମଦ୍ୱାରା ଦେହ ଯେତେବେଳେ
କ୍ରିୟାବାନ ହୋଇଉଠେ ରାମ ତେତେବେଳେ ।
ପ୍ରାଣବାୟୁ ଦ୍ୱାରା ସେହୁ ହୋଇଣ ଚାଳିତ
ହୃଦ୍‌ତନ୍ତ୍ର ମଧ୍ୟରୁ ସେ ହୁଅଇ ନିର୍ଗତ ।
ସେହି ଜୀବଧାତୁ ଶରୀରର ସର୍ବସ୍ଥଳେ
ଯହିଁ ଯେତେ ଲୋଡ଼ା ତହିଁ ସଞ୍ଚରଣ କରେ ।
ତେତେବେଳେ ଜ୍ଞାନବହା ନାଡ଼ୀର ମଧ୍ୟରେ
ପ୍ରବେଶ କରଇ ଯାଇ ସଂବିତ୍ ଆକାରେ ।
ତେତେବେଳେ ଏହି ସଂବିତ୍‌ହିଁ ଅନୁଭୂତ
ଜଗତ-ଭ୍ରମ ବିଲୀନ ଅନ୍ତର ମଧ୍ୟସ୍ଥ ।

* ବାଳାସଂବିତ୍-ପ୍ରଥମ ବୟସର ଜ୍ଞାନ

ସେହି ଜଗତ୍-ଭ୍ରମ ଚିତ୍ତ ନାମେ ପରିଚିତ
ଚିତ୍ତର ଜନ୍ମ କିପରି ବୁଝ ରଘୁନାଥ ।
ଇନ୍ଦ୍ରିୟମାନଙ୍କ ଦ୍ୱାରା ଲଭିଣ ବିସ୍ତାର
ସେ ସଂବିତ୍ ଚିତ୍ତ ମଧ୍ୟେ ଆରମ୍ଭେ ତା ଖେଳ ।
ଇନ୍ଦ୍ରିୟ ଯୋଗେ ସଂବିତ୍ ହୋଇ ବିସ୍ତାରିତ
ଆତ୍ମାକୁ ଦର୍ଶାଉଥାଏ ଏ ଦୃଶ୍ୟ ଜଗତ ।
ବାହ୍ୟଦୃଷ୍ଟିମୟୀ ସଂବିତ୍ ସ୍ଥିର ଯେତେବେଳେ
ଜାଗ୍ରତ ନାମେ ନାମିତ ହୁଏ ତେତେବେଳେ ।
ଇନ୍ଦ୍ରିୟାଦି ଦ୍ୱାରା ଦେହ ନୋହିଲେ ଚଳିତ୍
ଆତ୍ମ ଶାନ୍ତି, ଜୀବଧାତୁ ରହିଥାଏ ସ୍ୱସ୍ଥ ।
ସାମ୍ୟଭାବ ଧରେ ଶରୀରସ୍ଥ ବାୟୁ ଯେଣୁ
କ୍ଷୁବ୍ଧଭାବ ରହେ ନାହିଁ ହୃଦୟରେ ତେଣୁ ।
ଅବୟବ, ଇନ୍ଦ୍ରିୟାଦିମାନଙ୍କ ମଧରେ
ସଂବିତ ପରିଚାଳିତ ନୁହେ ସେତେବେଳେ ।
ଜୀବ ଚୈତନ୍ୟ ସେକାଳେ ଆତ୍ମାର ସହିତ
ଏକତ୍ୱ ଲଭନ୍ତେ ହୁଏ ସୁଷୁପ୍ତି ପ୍ରାପତ ।
ସୁଷୁପ୍ତି ଅବସ୍ଥା ଯୋଗୁ ସେହି ଜୀବ ଚିତ୍ତ
ସର୍ବ ପ୍ରକାର କର୍ମରୁ ହୁଅଇ ନିବୃତ୍ତ ।
**ଜୀବ, ଚିତ୍, ଦ୍ୱୈତଭାବ କଟିଗଲା ପରେ**
**ଜୀବ ସକ୍ଷମ ହୁଅଇ ବ୍ରହ୍ମ ସାକ୍ଷାତରେ ।**
ସ୍ୱପ୍ନେ ଜାଗରଣେ ଅବା ସୁଷୁପ୍ତି କାଳରେ
ଯେଉଁ ଅବସ୍ଥାରେ ଜୀବ ଅବସ୍ଥାନ କରେ ।
ତୁରୀୟ ଅବସ୍ଥା ତାହା କଥିତ ଶାସ୍ତ୍ରରେ
ସେ ଅବସ୍ଥା ପ୍ରାପ୍ତ ବ୍ରହ୍ମ ଦରଶନ ପରେ ।
ସୁଷୁପ୍ତିରେ ପ୍ରାଣ ପ୍ରାପ୍ତ ହୁଏ ସୌମ୍ୟଭାବ
ବିଷମ ଭାବ ବିଷୟ ଶୁଣ ହେ ରାଘବ ।
ଭୋକ୍ତାର ଦୁର୍ଭାଗ୍ୟବଶ ଜୀବଧାତୁ ଯେବେ
ଚାଳିତ ବିଷମ-ପ୍ରାଣ ବାୟୁର ପ୍ରଭାବେ ।
ଜୀବ ଚୈତନ୍ୟ ସେ କାଳେ ଚିତ୍ତ ରୂପ ଧରେ
ଜୀବ ତେତେବେଳେ ପଡ଼ିଯାଏ ହରବରେ ।
ଯୋଗୀ ଯଥା ଯୋଗବଳେ ବୀଜର ମଧ୍ୟରେ
ଭାବି ବୃକ୍ଷର ସ୍ଥିତିକି ଦରଶନ କରେ ।

ଚିତ୍ତ ସେହିପରି ତାର ଅନ୍ତରେ ନିହିତ
ଜଗତ ସମୂହ ଦେଖେ ଭ୍ରାନ୍ତିର ବଶତ ।
ଏବଂ ବିଧ ଜଗଦର୍ଶନର ନାମ ସ୍ୱପ୍ନ
କି ଖେଳ ଖେଳୁଛି ବ୍ରହ୍ମ ହେ ରଘୁନନ୍ଦନ ।
ଜୀବଧାତୁ ବାୟୁଦ୍ୱାରା ହୁଅନ୍ତେ ଚାଳିତ
ସ୍ୱପ୍ନେ ନଭଗତି ତାର ହୁଏ ଅନୁଭୂତ ।
ଜଳତତ୍ତ୍ୱ ଦ୍ୱାରା ଯେବେ ହୁଏ ସେ ପ୍ଲାବିତ
ସ୍ୱପନେ ଦେଖଇ ଯେହ୍ନେ ଜଳେ ନିପତୀତ ।
ପିତ୍ତ ରସ ଦିଏ ଗ୍ରୀଷ୍ମ ତାପ ଅନୁଭବ
ଏବେ ଶୁଣ ରାମ ଉକ୍ତ ରସର ପ୍ରଭାବ ।
ଜୀବଧାତୁ ଆସିଯାନ୍ତେ ରକ୍ତର ସଂସ୍ପର୍ଶେ
ଅନ୍ତରେ ସମସ୍ତ ଦୃଶ୍ୟ ରକ୍ତବର୍ଣ୍ଣ ଦିଶେ ।
ବାହ୍ୟ ଇନ୍ଦ୍ରିୟ ନିଷ୍କ୍ରିୟ ଥାନ୍ତି ଯେତେବେଳେ
ଅନ୍ତରର ଜୀବ ଯାହା ଦେଖେ ତେତେବେଳେ,
ସ୍ୱପନ ବୋଲି ତାହାକୁ ବୋଲନ୍ତି ପଣ୍ଡିତେ
ଜାଗ୍ରତ ଅବସ୍ଥା ଏବେ ଶୁଣ ରଘୁନାଥେ ।
ବାହ୍ୟ ଇନ୍ଦ୍ରିୟ ସକ୍ରିୟ ରହନ୍ତି ଯେ କାଳେ
ଅନ୍ତର୍ଦ୍ଦେଶେ ଜୀବ ଯାହା ଦେଖେ ତେତେବେଳେ,
ଜାଗ୍ରତ ଅବସ୍ଥା ତାହା ଋଷିଙ୍କର ମତ
ଜାଗ୍ରତ ସପନ ମଧ୍ୟେ ଏହାହିଁ ତଫାତ ।
ଏହା ସବୁ ଅବଗତ ହୋଇଣ ଶ୍ରୀରାମ
ଜଗତ ଯେ ସତ୍ୟ ଏହା ନଘେନିବ ମନ ।
ଜଗତକୁ ସତ୍ୟ ବୋଲି ଯଦ୍ୟପି ମଣିବ
* ତ୍ରିବିଧ ମୃତ୍ୟୁକୁ ନିଶ୍ଚେ ବରଣ କରିବ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତୁରୀୟାବସ୍ଥା**
**ବର୍ଣ୍ଣନେ ନାମ ଊନବିଂଶ ସର୍ଗଃ ।**



## ୨୦ଶ ସର୍ଗଃ
## ମନରୂପ ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ରାମ ସ୍ୱପ୍ନ ବା ଜାଗ୍ରତ
ଯା ସବୁ କହିଲି ମୁହିଁ ତୁମ୍ଭର ଅଗ୍ରତ

*ତ୍ରିବିଧ ମୃତ୍ୟୁ - ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ

କେବଳ ମନ ସ୍ୱଭାବ ଜାଣିବା ନିମିତ୍ତ
ତା ବ୍ୟତୀତ ଅନ୍ୟ କିଛି ନୋହିବ ସାଧିତ ।
ସୁଦୃଢ଼ ଧାରଣା ଧରି ମନ ଯେତେବେଳେ
ଯେ ରୂପ ଭାବନା କରେ ଅନ୍ତର ମଧ୍ୟରେ ।
ତେତେବେଳେ ସେହି ରୂପ ହୁଏ ସେ ପ୍ରାପତ
ମନର ବିଚିତ୍ର ଗତି ବୁଝ ରଘୁନାଥ ।
ଗ୍ରାହ୍ୟ, ଅଗ୍ରାହ୍ୟ ଅଥବା ସତ୍ୟ ବା ଅସତ୍ୟ
ସକଳ ଅଟନ୍ତି ରାମ ଚୈତନ୍ୟ କଳ୍ପିତ ।
ସତ୍ୟ ବା ଅସତ୍ୟ ନୁହେଁ ଏହି ଦୃଷ୍ଟିକୋଣ
ମନ ଚଞ୍ଚଳତା ଅଟେ ଏହାର କାରଣ ।
ମନକୁ ବୁଝିବ ରାମ 'ମୋହ'ର ଜନନୀ
ଜଗତ ସ୍ଥିତି କାରଣ ସେହି ମନ ଘେନି ।
ବ୍ୟଷ୍ଟି ଓ ସମଷ୍ଟି ରୂପେ ଜାଣ ଏହି ମନ
ଜଗତର ସୁବିସ୍ତୃତି କରଇ ସାଧନ ।
'ମନ'କୁ ପୁରୁଷ ବୋଲି ଜାଣ ରଘୁରାଣେ
ତାକୁ ନିଯୋଜିବ ଶୁଭ ବିଷୟ ସାଧନେ ।
ଅଷ୍ଟସିଦ୍ଧି ଲାଭ ହୁଏ 'ମନ' ବିଜୟରେ
'ମନ' ଯାହା ଭାବେ ତାହା ହାସଲ ସେ କରେ ।
ଉପାଧି ବିହୀନ ସେହି ବ୍ରହ୍ମଙ୍କ ଚିନ୍ତନ
ଯତ୍ନ ସହ କରୁଥାଅ ହେ ରଘୁନନ୍ଦନ ।
ତନ୍ମୟତା ବଳେ ସର୍ବ ସିଦ୍ଧି ରଘୁରାୟ ।
ପୁରୁଷ ହୋଇ ଥାଆନ୍ତା ଯେବେ ଏ ଶରୀର
ପାରନ୍ତେ କି ଶୁକ୍ର ଧରି ଶତ ଜନ୍ମାନ୍ତର ?
କିଛି ତ ସନ୍ଦେହ ନାହିଁ ଏହି ବିଷୟରେ
କରିଥିଲ ବ୍ରହ୍ମ ଚିନ୍ତା ଯତ୍ନ ସହକାରେ ।
ଗ୍ରହଣ କରିବ ଯେବେ ମୋର ଉପଦେଶ
ବ୍ରହ୍ମ-ତନ୍ମୟତା ପ୍ରାପ୍ତ ହୋଇବ ଅବଶ୍ୟ ।
ଶରୀରର ଗତି ମନ ଅଭିଳାଷ ଘେନି
ମନ କେଉଁ ନୁହେଁ ଶରୀରର ଅନୁଗାମୀ ।
ପରିହରି ଦେହ ଇନ୍ଦ୍ରିୟାଦି ଦ୍ୱୈତ ଭ୍ରମ
ଅଦ୍ୱୈତ ବ୍ରହ୍ମର ଆଶ୍ରାକର ହେ ଶ୍ରୀରାମ ।
ସତ୍ୟ ଅଭିମୁଖେ ଗତି କରୁ ତୁମ ମନ
ପରିତ୍ୟକ୍ତ ହେଉ ଦେହ ଇନ୍ଦ୍ରିୟାଦି ଭ୍ରମ ।
**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ମନୋରୂପ ବର୍ଣ୍ଣନେ ନାମ ବିଂଶତମ ସର୍ଗଃ ।**



# ଏକବିଂଶ ସର୍ଗଃ

## ବିଜ୍ଞାନବାଦ ବର୍ଣ୍ଣନ

କହନ୍ତି ଶ୍ରୀରାମ ଏବେ ଶୁଣ ତପୋଧନ
ପୁନଶ୍ଚ ସଂଶୟ ଏକ କରନ୍ତୁ ଛେଦନ ।
ଦିଗ କାଳ ଦ୍ୱାରା ନୁହେଁ ମନ ପରିଚ୍ଛିନ୍ନ
ତେଣୁ ତାହା ନିତ୍ୟ ନିରାମୟ ନିରଂଜନ ।
କଳୁଷିତ ମନୋମୟ ସଂବିତ୍ ଯେ ମାନ
ଶୁଦ୍ଧ ବ୍ରହ୍ମରୁ କିପରି ହୁଏ ଉତପନ୍ନ ?
କି ଅବା ସ୍ୱରୂପ ଅଟେ ସେହ ସଂବିତ୍‌ର
ବୁଝାଇ କହନ୍ତୁ ମୋତେ ଆହେ ମୁନିବର ।
ଅବିଦ୍ୟା କଳଙ୍କ ବଶେ ଘଟିଥାଏ ଯେବେ
କିପରି ସମ୍ଭବପର ହୁଅଇ ତା ତେବେ ?
ଭୂତ, ଭବିଷ୍ୟତ, ବର୍ତ୍ତମାନ ତିନିକାଳେ
ଦ୍ୱିତୀୟତା ନାହିଁ ମୁନି ଯାର କେତେବେଳେ,
କଳଙ୍କର ସମ୍ଭାବନା କାହିଁ ତାର ତହିଁ ?
ଏହାର କାରଣ ଦେବ କହିବା ବୁଝାଇ ।
ବୋଲନ୍ତି ବଶିଷ୍ଠ ରାମ ତୁମର ଏ ପ୍ରଶ୍ନ
ଉତ୍ତମଠାରୁ ଉତ୍ତମ ମହା ଗରୀୟାନ ।
ମନେହୁଏ ତୁମ ମନ ମୋକ୍ଷ ଅନୁଗାମୀ
ଶଙ୍କର ଆଦିଙ୍କ ଗତି ଲଭିବ ସେ ଘେନି ।
ସଙ୍ଗତ ନୁହେଁ ଏ ପ୍ରଶ୍ନ ବର୍ତ୍ତମାନ ପାଇଁ
ଏହାର ସମୟ ଅଛି ଆହେ ରଘୁସାଇଁ ।
ଯେତେବେଳେ ସିଦ୍ଧାନ୍ତରେ ପହଞ୍ଚିବି ମୁହିଁ
ଏ ପ୍ରଶ୍ନର ଅବସର ଆସିବ ଗୋସାଇଁ ।
ତେବେ ଅତି ସହଜରେ ଆହେ ରଘୁବୀର
ହୃଦୟଙ୍ଗମ ହୋଇବ ଏହା ଯେ ତୁମର ।
ମନ ବିଷୟେ ଯାହା ମୁଁ କରୁଛି ବର୍ଣ୍ଣନ
ସାବଧାନ ହୋଇ ତାହା କର ହେ ଶ୍ରବଣ ।
ଏ ମନର ବଶୀଭୂତ ହୋଇ ହେ ସୁବ୍ରତ
ପୁନଃ ପୁନଃ ଜନ୍ମ ଲଭେ ନର ଏ ଜଗତ ।
ଦୃଷ୍ଟି ଶକ୍ତି ବଳପାଇ ଏ ମନ-ନୟନ
ଶ୍ରବଣ ଶକତି ବଳେ ମନହିଁ ଶ୍ରବଣ ।

ମନହିଁ ଜ୍ଞାନ ଇନ୍ଦ୍ରିୟ, ମନ କର୍ମେନ୍ଦ୍ରିୟ
ଏମାନଙ୍କ ଯୋଗୁ ଧର୍ମାଧର୍ମ ଭାବୋଦୟ ।
ଏହି ଧର୍ମାଧର୍ମ ଭାବ କେବଳ ସେ ମନ
**ଯାବତୀୟ କର୍ମ ବୀଜ ଏହି ମନ ଜାଣ ।**
ଫୁଲର ସୁଗନ୍ଧ ବଳେ ବାୟୁ ସୁଗନ୍ଧିତ
ଫୁଲର ଦୁର୍ଗନ୍ଧ ଘେନି ବାୟୁ ଦୁର୍ଗନ୍ଧିତ ।
ଚଞ୍ଚଳ ମନ, ମନନ କାର୍ଯ୍ୟ ସମାଧାନେ
ବାସିତ ହୁଏ ଘେନିଣ ଯେ ବାସନାମାନେ,
ତଦନୁରୂପ ଆକୃତି ପ୍ରାପତ ସେ ହୁଏ
ସୁଗନ୍ଧ ଦୁର୍ଗନ୍ଧ ବାୟୁ ଯଥା ହୋଇଥାଏ ।
ଅହଂକାର ଅନୁରାଗ ବଶ ହୋଇ ମନ
କଳ୍ପିତ ଆକୃତି ଧରିଥାନ୍ତି ଯେଉଁମାନ,
ନିଶ୍ଚୟ-ଆତ୍ମିକା ବୁଦ୍ଧି ସେମାନଙ୍କୁ ଦେଇ
ପୁନଃ ପୁନଃ ଆସ୍ୱାଦନ ଅନ୍ତରେ କରଇ ।
**ଯେଉଁ ଯେଉଁ ଭାବମାନ ମନ ଧରୁଥାଇ**
**ମନ ଅଧୀନ ଶରୀର ସେ ଭାବ ଘେନଇ ।**
**ପ୍ରବଳ ବାୟୁ ବେଗରେ ଉଡ଼େ ଧୂଳି ଯଥା**
**ଜ୍ଞାନେନ୍ଦ୍ରିୟ ବଳେ କର୍ମେନ୍ଦ୍ରିୟ ଦଶା ତଥା ।**
ଜ୍ଞାନେନ୍ଦ୍ରିୟ ଯେଉଁ ଯେଉଁ କର୍ମ ଆଚରନ୍ତି
କର୍ମେନ୍ଦ୍ରିୟ ସେହି ପଥେ କ୍ରମେ ଧାଇଁଯାନ୍ତି ।
ଜ୍ଞାନେନ୍ଦ୍ରିୟ କର୍ମେନ୍ଦ୍ରିୟ ନିଜ ନିଜ ଶକ୍ତି
ଯେତେବେଳେ ଏ ଦେହରେ ପ୍ରକାଶ କରନ୍ତି,
ସେତେବେଳେ କରମର ହୁଏ ସଂପାଦନ
**ତେଣୁ ସର୍ବ କରମର ବୀଜ ଏହି ମନ ।**
**ଯଥା ପୁଷ୍ପ, ଗନ୍ଧ ମଧ୍ୟେ ନ ଥାଇ ପାର୍ଥକ୍ୟ**
**ତଥା କର୍ମ, ମନ ମଧ୍ୟେ ସେହି ସମ୍ପର୍କ ।**
ଦୃଢ଼ ଅଭ୍ୟାସରେ ଯେଉଁ ଭାବ ଧରେ ମନ
ସେହି ଅନୁସାରେ କର୍ମେନ୍ଦ୍ରିୟଙ୍କ ସ୍ପନ୍ଦନ ।
କର୍ମ ବୃକ୍ଷ ନିଜ ଶାଖା ପ୍ରଶାଖା ମେଲାଏ
ତାହା ଆସ୍ୱାଦନ କରି ମନ ବଦ୍ଧହୁଏ ।
ମନର ବାସନା ଘେନି ଭାବ ପ୍ରକାଶଇ
ଭାବକୁ ବସ୍ତୁ ରୂପେ ସେ ଗ୍ରହଣ କରଇ ।
ତେତେବେଳେ ମନ ଏହା ଧାରଣା କରଇ
ଏହା ବ୍ୟତୀତ ଉତ୍କୃଷ୍ଟ ଆଉ କିଛି ନାହିଁ ।

ଏହି ଦୃଢ଼ ଧାରଣାରେ ନିବଦ୍ଧ ହୋଇଣ
ମୁକ୍ତି ପାଇଁ ମନ ଯଦି ଯତ୍ନ ପରାୟଣ,
ସେ ଅମୃତ ପ୍ରାପ୍ତ ହୋଇଥାଏ ସେହୁ ହେଳେ
ମନହିଁ କାଉଁରୀକାଠି ସର୍ବ ସାଧନାରେ ।
ବିବିଧ ମଣି ଆକର ଯଥା ରତ୍ନାକର
ମନହିଁ ଅଧ୍ୟାତ୍ମବାଦ ମାନଙ୍କ ଆକର ।
ଯା କିଛି ଅଧ୍ୟାତ୍ମବାଦ ବିଦିତ ଜଗତେ
ମନହିଁ ଉତ୍ପତ୍ତିସ୍ଥାନ ଆହେ ମହାମତେ ।
ମନ ଦ୍ୱାରା ଦୃଢ଼ଭାବେ ଯାହାହିଁ ଅଭ୍ୟସ୍ତ
ତାହା ସେହିଭାବେ ହୁଏ ଉପଲବ୍ଧ ମାତ୍ର ।
କୃତ୍ରିମତା ଶୂନ୍ୟ ପୁଣି ଆନନ୍ଦ ଯେ ବ୍ରହ୍ମ
ମନ ତହିଁରେ ଯେପରି ରହିବ ନିମଗ୍ନ,
ସକଳ ଜନଙ୍କ ଏହା ଅଟଇ କର୍ତ୍ତବ୍ୟ
ମନ ଯେପରି ତହିଁରେ ବୁଡ଼ି ରହିଥିବ ।
ଅହୋ ମହାବାହୋ ! ତୁମେ ଏଇ ମୁହୂର୍ତ୍ତରୁ
ବନ୍ଧନ ଜନକ ଦୃଶ୍ୟ ପୋଛ ହେ ମନରୁ ।
ଯାହାଘେନି ମନ ମୋହଗ୍ରସ୍ତ ହେଉଥିବ
ସୁଦୂରୁ ତାହାକୁ ସର୍ବଭାବେ ବରଜିବ ।
**ଏହି ଦୃଶ୍ୟକୁ କହନ୍ତି ଅବିଦ୍ୟା ବା ମାୟା**
**ଏହା ଘେନି ଥରୁଥାଏ ସମସ୍ତଙ୍କ କାୟା ।**
ସକଳ ସଂସାର ଭୀତି ଜନମେ ତହିଁରୁ
ତେଣୁ ସାବଧାନ ଥିବ ସର୍ବଦା ଆଗରୁ ।
ମାୟା ସହ ଆତ୍ମ ଚଇତନର ସମ୍ବନ୍ଧ
'କର୍ମ ଉପାଧି' ଦିଅନ୍ତି ସକଳ ବିବୁଧ ।
ସେହିରୂପ କର୍ମ ଅଟେ ବନ୍ଧନ କାରଣ
ସଂସାର ବିଳାସ, କିନ୍ତୁ ମୁକତି ସପନ ।
ମୋହଗ୍ରସ୍ତ ଏ ମନକୁ ଦୃଶ୍ୟ ବୋଲି ଜାଣ
ଧୋଇ ପକାଅ ଯେ ମିଥ୍ୟା ମଳିନ କର୍ଦ୍ଦମ ।
ଦୃଶ୍ୟ, ଜ୍ଞାନ ମଧ୍ୟେ ସ୍ୱାଭାବିକ ତନ୍ମୟତା
ସଂସାର ମଦ ଆବର ଅବିଦ୍ୟାର ସତ୍ତା ।
ଅବିଦ୍ୟା ଲାଭ କରିଲେ କଲ୍ୟାଣ ଲାଭର
କଉଣସି ସମ୍ଭାବନା ନାହିଁ ରଘୁବୀର ।
ସଂକଳ୍ପ ବଳେ ଅବିଦ୍ୟା ଲଭଇ ଜନମ
ସଂକଳ୍ପ ତେଜିଲେ ଅବିଦ୍ୟାର କ୍ଷୟ ଜାଣ ।

ଶ୍ରବଣ ମନନ ଆଦି ସୁବିଚାର ବଳେ
ସମାଧିର ସୁଦୃଢ଼ତା ସାଧିତ ହୋଇଲେ ।
"ମୁହିଁ ସେହି ଆତ୍ମା" ଏହିପରି ଦୃଢ଼ ଭାବ
ସର୍ବ ପଦାର୍ଥରେ ସ୍ଥିର ଭାବ ଆଣିଦେବ ।
ସତ୍ୟ-ଜ୍ଞାନ ଉଦୟରେ ମିଥ୍ୟା-ଜ୍ଞାନ ଯାଏ
ନିର୍ବିକଳ୍ପ ଯେ ଚିନ୍ମୟ ଆତ୍ମା ଦେଖାଦିଏ ।
କୃତାର୍ଥ ହୁଅଇ ନର ଜୀବନ ସାର୍ଥକ
ବୁଝି ପାରୁଥିବ ଏବେ ହେ ରଘୁନାୟକ ।
ସତ୍ତାବାନ ନୁହେଁ ଆତ୍ମା ନ ଅସତ୍ତାବାନ
କୈବଲ୍ୟ ସ୍ୱରୂପ ସଦା ରହେ ରଘୁନାନ ।
ଦେହେ ଆତ୍ମଭାବ ନାନା ଅନର୍ଥ କାରଣ
ଆତ୍ମାରେ ନ ଥାଇ ଚିତ୍ତ ଇନ୍ଦ୍ରିୟର ସ୍ଥାନ ।
ମେଘଶୂନ୍ୟ ନଭ ପରି ଆତ୍ମା ସୁନିର୍ମଳ
ବାସନା ବିହୀନ ଆତ୍ମା ଜଳେ ଯଥା ତେଲ ।
ରଜ୍ଜୁରେ ସର୍ପର ଜ୍ଞାନ ଉପୁଜେ ଯେସନ
ଆବଦ୍ଧ ଆତ୍ମାରେ ବନ୍ଧ ଭାବ ତଥା ରାମ ।
କଳ୍ପନା ରାଜ୍ୟର ବସ୍ତୁ ମାତ୍ର ଏ ସକଳ
ସତ୍ୟ ବୋଲି ଯାହା ତାହା ବ୍ରହ୍ମ ହିଁ କେବଳ ।
ଦିବସେ ବା ନିଶାକାଳେ ଏକଇ ଆକାଶ
ଭିନ୍ନ ଭିନ୍ନ ବର୍ଣ୍ଣମାନ କରଇ ପ୍ରକାଶ ।
ବ୍ରହ୍ମ ମଧ୍ୟ ସେହି ରୂପେ ନାନା କଳ୍ପନାରେ
ବିଭିନ୍ନ ସମୟେ ଭିନ୍ନ ଭିନ୍ନ ରୂପ ଧରେ ।
ବୈଭବ ଦାରିଦ୍ର୍ୟ ଆଦି ମନୁଷ୍ୟଗଣର
ସତ୍ୟ ରୂପ ଧରି ଦିଏ ସୁଖ ଦୁଃଖ ଘୋର ।
ତତ୍ତ୍ୱଜ୍ଞାନ ଉଦୟରେ ସର୍ବ ଶୁଭାଶୁଭ
କ୍ଷଣ ମଧ୍ୟେ ଦର୍ଶାଏ ତା ଅସତ୍ୟ ସ୍ୱଭାବ ।
ଭାବନା ପ୍ରଭାବେ ଯେଉଁ ସୁଖ ଦୁଃଖ ଆସେ
ସେ ସକଳ ଦୃଶ୍ୟ ରାମ ଜ୍ଞାନୀଙ୍କୁ ନ ଦିଶେ ।
ଦୃଶ୍ୟ ପଦାର୍ଥ ସକଳ ସତ୍ୟ ବା ଅସତ୍ୟ
କିଛିହିଁ ନୁହଁନ୍ତି ମନେରଖ ରଘୁନାଥ ।
କେବଳ ଭାବନା ବଳେ ତାଙ୍କ ସତ୍ୟାସତ୍ୟ
ପ୍ରତିପନ୍ନ ହୋଇଥାଏ ଏହି ତ୍ରିଜଗତ ।
ଯେ ପଦାର୍ଥ, ଯେ ଆକାରେ ଯେ କରେ ନିର୍ଣ୍ଣିତ
ତଦାକାରେ ସେ ତାହାକୁ ଦେଖଇ ନିରତ ।
ଯାହାକିଛି ଦରଶନ କର ତୁମେ ରାମ
ମନର ସଂକଳ୍ପ ତାହା ସବୁ ବୋଲି ଜାଣ ।
ତେଣୁ ସେ ସଂକଳ୍ପ ତେଜି ସୁଷୁପ୍ତି ଭୂମିରେ
ପାରମାର୍ଥିକ ଆନନ୍ଦ ଭୋଗ କାଳେ କାଳେ ।
ଜଡ଼ ଯେଣୁ ଦରପଣ, ସ୍ୱୀୟ ଶରୀରରେ
ଅନ୍ୟଦ୍ରବ୍ୟ ପ୍ରତିବିମ୍ବ ନିବାରି ନପାରେ ।
କିନ୍ତୁ କି କାରଣୁ ତୁମେ ଜଗତ୍ ପ୍ରତିବିମ୍ବ
ତୁମ ଆତ୍ମାରୁ ଦୂରେଇ ଦେଇ ନ ପାରିବ ?
ତୁମପରି ପ୍ରାଜ୍ଞପାଇଁ ଏସନ କରମ
ଅସାଧ୍ୟ ହେବ କିପାଇଁ କହ ହେ ଶ୍ରୀରାମ ।
ଏ ଜଗତ ପ୍ରତିବିମ୍ବ ତୁମ ଆତ୍ମା ପରେ
ଅହରହ ପଡୁଅଛି ଜାଣ ରଘୁବୀରେ ।
ପଦାର୍ଥ ବୋଲି କେବେହେଁ ନମଣ ତାହାଙ୍କୁ
ସେ ଭାବରେ କେଭେଁ ଲିପ୍ତ ନକର ନିଜକୁ ।
ସତ୍ୟ ସ୍ୱରୂପ ପରମ ଆତ୍ମା ତାଙ୍କୁ ମଣ
ଅନନ୍ତ ଆତ୍ମା ସାଗରେ ସଦାରହ ମଗ୍ନ ।
**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତିପ୍ରକରଣେ**
**ବିଜ୍ଞାନ-ବାଦ ବର୍ଣ୍ଣନେ ନାମ ଏକବିଂଶ ସର୍ଗଃ ।**



## ୨୨ଶ ସର୍ଗଃ

## ଅନୁତ୍ତମ ପଦ-ବିଶ୍ରାନ୍ତି

ବଶିଷ୍ଠ ବୋଇଲେ ପୁଣି ଶୁଣ ହେ ଶ୍ରୀରାମ
ବିଚାର ବଳର କଥା କରିବା ବର୍ଣ୍ଣନ ।
ବିଚାର ବଳରେ ରାମ ଚିତ୍ତବୃତ୍ତିମାନ
ମନର ଶୂନ୍ୟ ଅବସ୍ଥା ଆସେ ଯେବେ ଜାଣ,
ଆତ୍ମା ଭାବେ ପରିଣତ ଚିତ୍ତବୃତ୍ତିମାନ
ଦୃଶ୍ୟ ଅଜ୍ଞାନ ଭୂମିକୁ ତେଜି ତତକ୍ଷଣ,
ଜ୍ଞାନଭୂମି ଆକାଶରେ ଯେବେ ବିହରନ୍ତି
ସକଳ ଦୃଶ୍ୟ ଚିନ୍ମୟ ଆକାର ଧରନ୍ତି ।
ଦ୍ରଷ୍ଟାଭାବେ ପ୍ରତିଭାତ ହେଲେ ଦୃଶ୍ୟମାନ
ଭୌତିକ ଆକାଶ ତେତେବେଳେ ହେ ଶ୍ରୀରାମ,
ଚିଦାକାଶ ସହ ଏକ ହୋଇଯାଏ ପୁଣ
ଆତ୍ମା ତେତେବେଳେ ଲଭେ ପ୍ରସନ୍ନତା ଜାଣ ।
ପିଞ୍ଜରା ଆବଦ୍ଧ ପକ୍ଷୀ ମୁକ୍ତ ହେଲାପରି
ଭୋଗଭୂମି ଛାଡ଼ି ମନ ମୋହରୁ ଉବୁରି ।
ନିଃସନ୍ଦେହ ଯାବତୀୟ ଭ୍ରମ ବିଦୂରୀତ
ମନ ଶୋଭା ପାଉଥାଏ ପୂର୍ଣ୍ଣଚନ୍ଦ୍ରବତ ।

ନୋହୁଥାଏ ଯେତେବେଳେ ବାୟୁ ପ୍ରବାହିତ
ସାମ୍ୟଭାବ ଧରିଥାଏ ସାଗର ଯେମନ୍ତ ।
ତଥା ମନର ଭାବନା ଯାର ଦୂରୀଭୂତ
ସମଦୃଷ୍ଟି ସମ୍ପୂର୍ଣ୍ଣ ସେ ହୁଅଇ ସର୍ବତ୍ର ।
ତେବେ ତାହାର ସକଳ ସଂସାର ବାସନା
ସୂର୍ଯ୍ୟୋଦୟେ ରାତ୍ରି ପରି ଲୀନଯାଏ ସିନା ।
ମନ ତେତେବେଳେ ରାମ ଦେଖେ ଚିତ୍ସୂର୍ଯ୍ୟ
ଉଦିତ ହୋଇ ଦେଖାନ୍ତି ତାଙ୍କ ତେଜପୁଞ୍ଜ ।
ବିବେକ ପଦ୍ମିନୀ ପୁଣି ହୁଏ ବିକଶିତ
ସତ୍ତ୍ୱ ଗୁଣମାନ ସବୁ ହୁଅନ୍ତି ବୃଦ୍ଧିପ୍ରାପ୍ତ ।
ମନମୋହିନୀ ଯେ ପ୍ରଜ୍ଞା ଶୁଭ୍ର ଜ୍ୟୋତ୍ସ୍ନାପରି
ବିବର୍ଦ୍ଧିତ ହୋଇ ନିଏ ମନ-ନେତ୍ର ହରି ।
ଏ ବିଷୟେ ଅଧିକ ବା କହିବଇଁ କିସ
ଉତ୍ସାହ ଦିଏ ତୁମର ମନର ହରଷ ।
ଜ୍ଞାତବ୍ୟ ବିଷୟ ସବୁ ଜାଣି ଯେ ପାରିଛି
ଅନନ୍ତାତ୍ମା ଉଦୟାସ୍ତ ନ ଦେଖଇ କିଛି ।
ବିଚାର ବଳେ ଆତ୍ମାକୁ ଯେହୁ ଜାଣିପାରି
ଆତ୍ମାରୂପେ ସମୁଦିତ ରହେ ବିଶ୍ୱପୁରୀ ।
ଇନ୍ଦ୍ରାଦି ଦେବତାଗଣ ଯାହା ନିକଟରେ
ଅନୁକମ୍ପା ପ୍ରାର୍ଥୀ ହୋଇ ଥାନ୍ତି କାଳେ କାଳେ ।
**ଚିତ୍ତରୁ ଜନମଲାଭ କରି ପ୍ରାଣୀଗଣ**
**ବିଲୀନ ହୁଅନ୍ତି ସେହି ଚିତ୍ତ ମଧ୍ୟେ ପୁଣ ।**
**ଅବଗତ ହୋଇନାହିଁ ଯେ ପ୍ରାଣୀ ଏତତ୍ତ୍ୱ**
**ଜନମ ମରଣ ତାର ସଦା ସୁନିଶ୍ଚିତ ।**
ଯେ ଜାଣିପାରିଛି ଏହି ତତ୍ତ୍ୱ ରଘୁବଂଶ
ଜନମ ମରଣ ତାର ନିକଟରେ ତୁଚ୍ଛ ।
ଜନମ, ମରଣ ଦୁହେଁ ସଂସାର ପ୍ରତୀକ
ଉଭୟଙ୍କୁ ସମ ମଣେ ଯେଉଁ ଜ୍ଞାନୀ ଲୋକ ।
ସଂସାରର କଉତୁକ ଦେଖିବାର ପାଇଁ
ସଦା କ୍ରୀଡ଼ାଶୀଳ ରହି ବିଚରୁଣ ଥାଇ ।
ଅଜ୍ଞ ବ୍ୟକ୍ତି ସଂସାରରେ ଆସକ୍ତି ଲଭିଣ
ସାଂସାରିକ ରୀତି ମଧ୍ୟେ ଲଭଇ ବନ୍ଧନ ।
ଉତ୍ପତ୍ତି ବା ନାଶ ନାହିଁ ଘଟ ଆକାଶର
ଦେହର ଜନ୍ମ ମରଣେ ଆତ୍ମା ନିର୍ବିକାର ।

ଭ୍ରାନ୍ତିରୁ ଜାତ ଏ ଦେହ ବିପଦର ଘର
ଦେହକୁ ଆତ୍ମାର ସମ ନ ମଣେ ଯେ ନର,
ବାସ୍ତବ ତତ୍ତ୍ୱଜ୍ଞ ସେହୁ ଅଟେ ଏ ଜଗତେ
ମନେ ରଖିଥିବ ସଦା ଆହେ ରଘୁନାଥେ ।
ଦେଶ କାଳ ପ୍ରଭାବରୁ ଜାତ ଯେ ଶରୀର
ପ୍ରଭାବିତ ନୁହେଁ ଯେହୁ ସୁଖେ ଦୁଃଖେ ତାର,
ସେହି ଏକା ତତ୍ତ୍ୱଦର୍ଶୀ ବୁଝିବ ଶ୍ରୀରାମ
ସବୁ ମତେ ଅନାସକ୍ତ ରହେ ସେହି ଜନ ।
ସକଳ ପଦାର୍ଥେ ଯେହୁ ଆତ୍ମାକୁ ଦେଖଇ
ଯଥାର୍ଥ ଆତ୍ମଦର୍ଶୀ ସେ ଜାଣ ରଘୁସାଇଁ ।
ଯେ ଜାଣିପାରିଛି ଆତ୍ମା ଅଟେ ସର୍ବମୟ
କେଶାଗ୍ରର ଲକ୍ଷ୍ୟାଂଶରୁ ସୂକ୍ଷ୍ମ ତାର କାୟ ।
ଜୀବ ଆବର ଅନ୍ୟାନ୍ୟ ଦୃଶ୍ୟାବଳୀ ଯେତେ
ଚୈତନ୍ୟ ଜ୍ୟୋତି ଅଟନ୍ତି ବୁଝେ ସେ ସମସ୍ତେ ।
ଯଥାର୍ଥ ଦ୍ରଷ୍ଟା ସେ ଅଟେ ଜାଣ ରଘୁରାଣ
ବ୍ରହ୍ମଙ୍କ ଚିନ୍ତାରେ ବୁଡ଼ିଥାଏ ଅନୁକ୍ଷଣ ।
ଯେ ଆତ୍ମା ଅଟେ ଅନନ୍ତ ସର୍ବଶକ୍ତିମାନ
ପ୍ରତି ପଦାର୍ଥ ଅନ୍ତରେ ଛନ୍ତି ବିଦ୍ୟମାନ,
ଊର୍ଦ୍ଧ୍ୱ, ଅଧଃ ଚତୁର୍ଦ୍ଦିଗେ ଯାହାର ମହିମା
ପରିବ୍ୟାପ୍ତ ରହିଅଛି ନ ଥାଇ ଯା ସୀମା,
ଯାହା ବ୍ୟତୀତ ଦ୍ୱିତୀୟ ଅନ୍ୟ କିଛି ନାହିଁ
ଏପରି ଭାବେ ଆତ୍ମାକୁ ଯେ ଦେଖିପାରଇ,
ବାସ୍ତବ ଦ୍ରଷ୍ଟା ସେ ଅଟେ ଜାଣ ରଘୁନାଥ
ଏପରି ଦ୍ରଷ୍ଟା ଦର୍ଶନେ ନର ଯେ କୃତାର୍ଥ ।
ସୂତ୍ର ଦ୍ୱାରା ମଣିମାନ ଯେସନେ ଗ୍ରଥିତ
ଆତ୍ମା ରଜ୍ଜୁରେ ସକଳ ବସ୍ତୁହିଁ ଗ୍ରଥିତ ।
ଏହି ତତ୍ତ୍ୱ ଉପଲବ୍ଧ କରିଛି ଯେ ଜନ
ବାସ୍ତବ ଦର୍ଶନବେତ୍ତା ଅଟେ ସେହି ଜାଣ ।
ଯେ ଚିନ୍ତିପାରେ ସରଗ, ମରତ, ପାତାଳ
ଆତ୍ମାର ଶରୀର ରୂପେ ରାଜେ କାଳକାଳ,
ଆତ୍ମାଦ୍ୱାରା ପରିପୂର୍ଣ୍ଣ ଏ ସାରା ଜଗତ
ଏହାର ଏକ କ୍ଷୁଦ୍ରାଂଶେ "ମୁହିଁ" ଅବସ୍ଥିତ ।
ଏଥିରୁ କିସ ମୁଁ ନେବି କିସ ବା ଛାଡ଼ିବି
ଏପରି ଭାବି ଯେ ହୃଦ ମଧ୍ୟେ ଯାଏ ଦବି ।
ପ୍ରକୃତ ଆଖି ଯେ ଫିଟି ଯାଇଛି ତାହାର
ଖୋଜି ଦେଖିବା ଉଚିତ ତାକୁ ରଘୁବୀର ।

ଏକାତ୍ମତା ଲଭିଛି ଯେ ଆକାଶର ବତ
ସର୍ବବ୍ୟାପୀ ହୋଇ ନୁହେଁ କାହିଁରେ ଆସକ୍ତ,
ମହେଶ୍ୱର ପଦବାଚ୍ୟ ଏସନ ମହାତ୍ମା
କେଡ଼େ ମହତ ସେ ଲୋକ ଦଶରଥ ଆତ୍ମା ।
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ତିନି ଅବସ୍ଥାର
ଉପରେ ରହିପାରିଛି ଯେ ବିମୁକ୍ତ ନର,
ମୃତ୍ୟୁର ପ୍ରେମ ଅସ୍ପଦ ହୋଇ ଯେ ପାରିଛି
ସ୍ୱଚ୍ଛ ତୁରୀୟ ଅବସ୍ଥା ପ୍ରାପତ ହୋଇଛି,
ସେହି ପରମ ପଦକୁ ଲଭିଛି ଯେ ନର
କୋଟି କୋଟି ନମସ୍କାର ତାହାଙ୍କୁ ମୋହର ।
ଏକମାତ୍ର ସେହି ବ୍ରହ୍ମ ଏ ସର୍ବ ଜଗତ
ଏହି ସ୍ୱରୂପ ତାଙ୍କର ଯାହାକୁ ବିଦିତ ।
ପରମ ବୋଧ ସମ୍ପର୍ଣ୍ଣ ଶିବରୂପୀ ସେହି
ମହାପୁରୁଷଙ୍କୁ ନମସ୍କାର ମୁଁ କରଇ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଅନୁତ୍ତମପଦ ବିଶ୍ରାନ୍ତି ବିର୍ଣ୍ଣନେ**
**ନାମ ୨୨ଶ ସର୍ଗଃ ।**

❑

## ୨୩ଶ ସର୍ଗଃ
## ଶରୀର ନଗର

କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ଏ ଶରୀର ଅଟେ ଏକ ନଗର ପ୍ରକାର ।
ଯେଉଁ ବ୍ୟକ୍ତି ଅବଲମ୍ବି ସେ ପରମ ପଦ
ଏ ଶରୀର ନଗ୍ରେ ଭୋଗକରେ ରାଜପଦ ।
ଅଥଚ କୌଣସି ମତେ ଲିପ୍ତ ନୁହେଁ ତହିଁ
ଏ ସୌମ୍ୟ ନଗରୀ ତାକୁ ସୁଖ ପ୍ରଦାନଇ ।
ତେଣୁ ଦୁଃଖ ଭୋଗ କ୍ଳେଶ ତାହାଙ୍କୁ ସ୍ୱପନ
ଏ ଶରୀରେ ମୋକ୍ଷ ପ୍ରାପ୍ତି ହୁଏ ତାଙ୍କୁ ଜାଣ ।
ଶ୍ରୀରାମ ପୁଚ୍ଛନ୍ତି ନମୋ ! ଆହେ ତପୋଧନ
ମହାନଗରୀ ଏ ଦେହ କେବଣ କାରଣ ?
ଯୋଗୀ ଏ ନଗରେ ଥାଇ କିସ ରାଜଭୋଗ
କରେ ତାହା ମୋର ଆଗେ କହ ମହାଭାଗ ।
କହନ୍ତି ବଶିଷ୍ଠ ଆହେ ରାମ ତାହା ଶୁଣ
ଜୀବନ୍ ମୁକ୍ତ ପୁରୁଷର ଏ ବିହାର ସ୍ଥାନ ।
ସର୍ବଗୁଣାନ୍ୱିତ ଅତିଶୟ ମନୋରମ
ଆତ୍ମାରୂପୀ ସୂର୍ଯ୍ୟ ଯେଣୁ ଥାନ୍ତି ବିଦ୍ୟମାନ ।

ତାଙ୍କ ଜ୍ୟୋତିରେ ନଗରୀ ହୁଏ ଉଦ୍‌ଭାସିତ
ସକଳ ସୁରମ୍ୟ ବସ୍ତୁ ହୁଏ ପ୍ରକାଶିତ ।
ଏ ନଗର ପ୍ରାସାଦର ଚକ୍ଷୁ-ଝରକାରେ
ଇନ୍ଦ୍ରିୟମୟ-ପ୍ରଦୀପ ଜଳେ ନିରନ୍ତରେ ।
ସେ ପ୍ରଦୀପ ଆଲୋକରେ ହୋଇ ଆଲୋକିତ
ପ୍ରକାଶିତ ହେଉଛନ୍ତି ସମସ୍ତ ଜଗତ ।
ହସ୍ତ ଦୁଇଟି ଏହାର ସୁବିସ୍ତୃତ ପଥ
ଚରଣଯୁଗଳ ତାର ବନଭୂମିବତ ।
ଲୋମରାଜି ନଗରୀର ଲତାଗୁଳ୍ମ ପରି
ଜଙ୍ଘ ଦୁଇଟି ଶୋଭନ୍ତି ସ୍ମୃତିସ୍ତମ୍ଭ ସରି ।
ଉପସ୍ଥ ଇନ୍ଦ୍ରିୟମାନ ସ୍ରୋତସ୍ୱତୀସମ
ମସ୍ତକକ୍ରୀଡ଼ା ପର୍ବତ ବୋଲିଣ ଜାଣିମ ।
କାନନ ଅଟନ୍ତି ତାରା ଶ୍ମଶ୍ରୁ, ବକ୍ଷ, ଲୋମ
ମସ୍ତକର କେଶ ଗଛ ପତ୍ରର ସମାନ ।
ଓଷ୍ଠ ଲଲାଟ ଆବର ଭୂରୁ ଦୁଇ ଜାଣ
ପଲ୍ଲବ ପୁଷ୍ପ ସ୍ୱରୂପେ ଦିଶନ୍ତି ଶୋଭନ ।
ମୁଖମଣ୍ଡଳ ଅଟଇ ନଗରୀ ଉଦ୍ୟାନ
ସୁଶୋଭନ ହେତୁ ହରିନିଏ ମନପ୍ରାଣ ।
ନଗରୀ ବିହାରଭୂମି ଅଟଇ କପାଳ
ନୀଳପଦ୍ମ ସମାକୀର୍ଣ୍ଣ କଟାକ୍ଷ ଯୁଗଳ ।
ବକ୍ଷସ୍ଥଳକୁ ମଣିବ ସରୋବର ସମ
ପୟ ପ୍ରଣାଳୀ ଅଟନ୍ତି ଏଥି ଦୁଇସ୍ତନ ।
ସ୍କନ୍ଧଦ୍ୱୟ ନଗରୀର ଅଟନ୍ତି ପର୍ବତ
କେଶ ବୃକ୍ଷାଦିରେ ହୋଇଥାନ୍ତି ସେ ଆବୃତ ।
ଉଦର ଅଟଇ ନଗରୀର ଧନାଗାର
ଖାଦ୍ୟପେୟ ଧନ ସବୁ ନିକ୍ଷିପ୍ତ ତହିଁର ।
କଣ୍ଠନାଳୀରୁ ନିର୍ଗତ ପ୍ରାଣବାୟୁ ଦ୍ୱାରା
ଶବ୍ଦ ବାହାରି ଜଣାଏ କବାଟ ଖୋଲିଲା ।
ହୃଦୟ ରୂପ ବିପଣୀ ତହିଁ ବିଦ୍ୟମାନ
ଇନ୍ଦ୍ରିୟେ ଯୋଗାନ୍ତି ରୂପ ରସ ଦ୍ରବ୍ୟମାନ ।
ଏ ପ୍ରାସାଦ ଦୁର୍ଗେ ନବଦ୍ୱାର ବିଦ୍ୟମାନ
ପ୍ରାଣାଦି ବାସିନ୍ଦାଙ୍କର ଗମନା ଗମନ ।
ମୁଖଦେଶେ ଜିହ୍ୱାଚଣ୍ଡୀଛନ୍ତି ବିଦ୍ୟମାନ
ଆହାର୍ଯ୍ୟ ବସ୍ତୁକୁ କରୁଥାନ୍ତି ଆସ୍ୱାଦନ ।
ଲୋମତୃଣେ ଆଚ୍ଛାଦିତ କର୍ଣ୍ଣକୂପମାନ
ଶବଦମାନଙ୍କ ତହିଁ ଗମନାଗମନ ।

ଚିତ୍ତ ଉଦ୍ୟାନରେ ଆତ୍ମ ଚିନ୍ତନ ରୂପିଣୀ
ବରାଙ୍ଗନାମାନେ ତହିଁ କ୍ରୀଡ଼ା ପରାୟଣୀ ।
ଚଞ୍ଚଳ ଇନ୍ଦ୍ରିୟ-ରୂପ ଯେ ବାନର ବୃନ୍ଦ
ବୃଦ୍ଧି ରୂପ ଶୃଙ୍ଖଳାରେ ରହନ୍ତି ଆବଦ୍ଧ ।
ମୁଖରୂପ ଉଦ୍ୟାନରେ ହାସ୍ୟରୂପ ଫୁଲ
ସବୁବେଳେ ଫୁଟି ରଖେ ମନକୁ ପ୍ରଫୁଲ୍ଲ ।
ଶରୀର ମନର ତତ୍ୱ ବୁଝିଛି ଯେ ଜ୍ଞାନୀ
ତାହାପକ୍ଷେ ଏ ନଗରୀ ସୁଖ ପ୍ରଦାୟିନୀ ।
ଅଜ୍ଞପ୍ରତି ବହୁ ଦୁଃଖ ଦାୟୀ ଏ ଶରୀର
ତତ୍ୱଜ୍ଞ ପୁରୁଷପ୍ରତି ସୁଖର ଭଣ୍ଡାର ।
ଏ ଦେହ ବିନଷ୍ଟ ହେଲେ ତତ୍ୱଜ୍ଞ ବ୍ୟକ୍ତିର
କିଛିମାତ୍ର କ୍ଷତି ନୋହିଥାଏ ରଘୁବୀର ।
ଏ ଦେହ ନ ଥିଲେ ମଧ୍ୟ ତାର ସବୁ ଅଛି
ବୁଝୁଛଟି ରଘୁନାଥ ମୁଁ ଯାହା କହୁଛି ?
ଏ ଶରୀରେ ଥାଇ ସେହୁ ଭୁକ୍ତି ମୁକ୍ତି ପାଇଁ
ସଂସାରେ ବିହାର କରେ ସେହି ରଥେ ସାଇଁ ।
ଅମରାବତୀରେ ଥାଇ ଦେବରାଜ ଇନ୍ଦ୍ର
ବିହାର କରନ୍ତି ଆହେ ରଘୁକୁଳଚନ୍ଦ୍ର ।
ତତ୍ୱଜ୍ଞ ପୁରୁଷ ଟିଥା ଦେହ ନଗରୀରେ
ସାମ୍ରାଜ୍ୟ ସୁଖ ଭୋଗଇ ଆହେ ରଘୁବୀରେ ।
ମନ ଘୋଡ଼ାକୁ କେବେହେଁ ବିଷୟର ଦାନା
ଦେଇତ ନଥାନ୍ତି ସେ ତତ୍ୱଜ୍ଞ ମହାମନା ।
ଅଧାର୍ମିକ ଭୋଗୁଥାଏ ଲୋଭ ବୃକ୍ଷଫଳ ।
କାହାର ବା ହାତ ଅଛି ଶ୍ରୀରାମ ତହିଁର ?
ବିବେକ କନ୍ୟାକୁ ତାର ଅଜ୍ଞାନୀର ହସ୍ତେ
ଦେଇକି ପାରଇ ରାମ ଜ୍ଞାନୀ କଦାଚିତେ ?
ଅଜ୍ଞାନ ଶତ୍ରୁ ତାହାଙ୍କ ନଗରେ ପ୍ରବେଶ
କରିବା ପାଇଁଙ୍କି ଛିଦ୍ର ପାଏ ନାହିଁ ଲେଶ ।
ଏ ନଗ୍ରରେ ଥାଇକରି ସେହି ଜ୍ଞାନୀ ଜାଣ
ଭବଶତ୍ରୁକୁ ସମୂଳେ କରେ ନିପାତନ ।
ଅନ୍ତରେ ବାହାରେ ସଦା ବ୍ରହ୍ମ ଦରଶନ
ପାଉଥାଏ ଯେଣୁ, ତାର ହୁଏ ତୀର୍ଥସ୍ନାନ ।
ଦୃଶ୍ୟ ବିଷୟଙ୍କ ସୁଖେ ଉଦାସୀନ ରହି
ଅନ୍ତର୍ମୁଖୀ ରହେ ସଦା ଧ୍ୟାନମଗ୍ନ ରହି ।
ଯେ ନଗରୀ ଥିଲେ ସବୁ ଲାଭ ମିଳୁଥାଇ
ଆବର ଧ୍ୱଂସ ହୋଇଲେ କିଛି କ୍ଷତି ନୋହି ।
ସୁଖପ୍ରଦ ନୋହିବ ସେ କିପାଇଁ ହେ ରାମ ?
ଉଭୟ କ୍ଷେତ୍ରରେ ନାହିଁ ଦୁଃଖର କାରଣ ।
ଘଟ ଭାଙ୍ଗିଗଲେ ତନ୍ମଧ୍ୟସ୍ଥ ଆକାଶର
କିଛି କ୍ଷତି ନୋହିଥାଏ ଆହେ ରଘୁବୀର ।
ଦେହ ନଗରୀ ଧ୍ୱଂସରେ ତତ୍ତ୍ୱଜ୍ଞ ଲୋକର
କୌଣସି କ୍ଷତି ନୁହଇ କୌଶଲ୍ୟାକୁମର ।
ବାସ୍ତବ ସୌଭାଗ୍ୟବାନ ଅଟଇ ସେ ନର
ଚିତ୍ତକୁ ରଖିଛି ଯେହୁ ଆପଣା କବଳ ।
ହୃଦୟ ବିବରେ ଚିତ୍ତ କୁଣ୍ଡଳୀନୀ ସର୍ପ
ବଶୀଭୂତ କରିଛି ଯେ ଧନ୍ୟ ତାର ଦର୍ପ ।
ସ୍ୱରୂପେ ପ୍ରକାଶମାନ ସେ ତତ୍ତ୍ୱଜ୍ଞ ପଦେ
କୋଟି କୋଟି ନମସ୍କାର ମୋର ପଦେ ପଦେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଶରୀର ନଗର ବର୍ଣ୍ଣନେ ନାମ ୨୩ଶ ସର୍ଗଃ ।**



## ୨୪ଶ ସର୍ଗଃ

## ମନସି ସତ୍ୟତା ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ଏବେ ରଘୁବୀର
ଇନ୍ଦ୍ରିୟ ରିପୁ ବିଜୟ ଅତୀବ କଠୋର ।
ପାପରାଶି, ଏ ଶରୀର ମତ୍ତହସ୍ତୀ ଜାଣ
ନାନାଦି ବିଷୟ ଆଶା ଶାଣିତ କୃପାଣ ।
ଇନ୍ଦ୍ରିୟ ସକଳ ତହିଁ ଶାଗୁଣା ସଦୃଶ
ଚହିଁଛନ୍ତି ଖାଇବାକୁ ବିଷୟ ଆମିଷ ।
ବିବେକ ଜାଲରେ ତାଙ୍କୁ ବାନ୍ଧି ଯେ ପାରିଛି
ଅଙ୍ଗ ପ୍ରତ୍ୟଙ୍ଗ ତାହାର ନିରାପଦ ଅଛି ।
ବିବେକ ଧନରେ ଯେହୁ ଅଟେ ଧନଶାଳୀ
କଷଣ ଦେଇ ନ ପାରେ ଇନ୍ଦ୍ରିୟ ବଇରୀ ।
ଚିତ୍ତକୁ ଆୟତ୍ତ କରି ପାରିଛି ଯେ ଜନ
ଏ ଦେହ ନଗରୀ ରାଜା ବୋଲି ତାଙ୍କୁ ଜାଣ ।
ସେ ଯେଉଁ ସୁଖର ହୋଇପାରେ ଉପଭୋଗୀ
ସୁବିଶାଳ ରାଜେଶ୍ୱର ନ ପାରେ ତା ଭୋଗୀ ।
ଏ 'ମନ' ଶତ୍ରୁଙ୍କୁ ଜିଣି ପାରିଛି ଯେ ଜନ
ଇନ୍ଦ୍ରିୟମାନେ ଅଟନ୍ତି ତାହାର ଅଧୀନ ।
ବସନ୍ତ କୁସୁମ ପରି ତା ବିଶୁଦ୍ଧ ବୃଦ୍ଧି
ବିକଶିତ ହୋଇଥାଏ ଆହେ ଦୟାନିଧି ।

ଶୁଭ ବୁଦ୍ଧି ଉଦୟରେ ତା ଭୋଗବାସନା
କ୍ଷୀଣ ହୋଇଯାଏ ଆହେ ରାମ ମହାମନା ।
ମନକୁ ନ ଜିଣେ ଯେହୁ ତତ୍ତ୍ୱବୁଦ୍ଧି ବଳେ
ଦିନୁ ଦିନୁ ବଢ଼ନ୍ତି ତା ବାସନା ସକଳେ ।
ବିବେକରୀର ଇଚ୍ଛାମତେ ମନ କାର୍ଯ୍ୟକରେ
ମନ ତାକୁ ସେବାକରେ ସେବକ ରୂପରେ ।
ସତ୍ କର୍ମର କାରଣଟି ହୋଇ ସେହି ମନ
ମନ୍ତ୍ରୀ ହେବା ପାଇଁ ପୁଣି ହୁଅଇ ଭାଜନ ।
ଇନ୍ଦ୍ରିୟ ଦମନ କରି ପାରୁଥାଏ ଯେଣୁ
ବିବେକ ରାଜା ସାମନ୍ତ ହୁଅଇ ସେ ତେଣୁ ।
ଲାଳନ କରିବା ହେତୁ ଅଟେ ସେ ରମଣୀ
ପାଳନ ବରିବା ହେତୁ ପିତୃସମ ଜାଣି ।
ବିଶ୍ୱାସୀ ବନ୍ଧୁ ସଦୃଶ ମନୀଷୀଙ୍କ ମନ
ଏ ମନ-ପିତାକୁ ଆତ୍ମାରୂପେ ଯେବେ ଘେନ,
ମନ ରୂପ ଛାଡ଼ି ସେହୁ ଆତ୍ମା ରୂପ ଧରେ
ନିର୍ଲିପ୍ତ ଭାବେ ଏ ଭବ ସଂସାରେ ବିହରେ ।
ମନ ମନ୍ତ୍ରୀ ଶାସ୍ତ୍ରୋଚିତ କ୍ରର୍ମ ଅନୁଷ୍ଠାନେ
ଯଥୋଚିତ ସୁମନ୍ତ୍ରଣାମାନଙ୍କୁ ପ୍ରଦାନେ ।
ଜନ୍ମ ମୃତ୍ୟୁ ସ୍ୱରୂପ ଏ ସଂସାର ବୃକ୍ଷର
କୁଠାର ରୂପେ ଛେଦନ କରେ ତାର ମୂଳ ।
ଫଙ୍କାବୃତ୍ତ ତୁମ ମନ ମଣି କି ହେ ରାମ
ଧଉତ କରି ପକାଅ ବିବେକ ଜଳେଣ ।
ସେ ମଣିରେ ଆତ୍ମଜ୍ୟୋତି ହେବ ଝଲସିତ
ଅନ୍ତଃକରଣ ତୁମର ହେବ ଦୀପ୍ତିବନ୍ତ ।
ସଂସାର କ୍ଷେତ୍ରେ ବିବେକହୀନର ସଦୃଶ
ବିବଶ ନ ହୁଅ କେବେ ଆହେ ରଘୁଇଶ ।
ବିବେକ ବଳରେ ପୁଣି ଜ୍ଞାନ ପ୍ରଭାବରେ
ସତ୍ୟ ସ୍ୱରୂପ ଆତ୍ମାକୁ ଦେଖ ରଘୁବୀରେ ।
ତେବେ ଏ ଭବ ସାଗର ହୋଇଯିବ ପାର
ବିବେକ ହିଁ ମୂଳ ଅସ୍ତ୍ର ବୁଝ ରଘୁବୀର

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ମନସ୍ୱୀ ସତ୍ୟତା ପ୍ରତିପାଦନେ ନାମ**
**୨୪ଶ ସର୍ଗଃ ।**



## ୨୫ଶ ସର୍ଗଃ

## ଦାମ, ବ୍ୟାଳ, କଟ ଉତ୍ପତ୍ତି ବର୍ଣ୍ଣନା

ଧୀ ଶକ୍ତି ସମ୍ପୂର୍ଣ୍ଣ ତୁମ୍ଭେ ଅଟ ରଘୁବୀର
ଶମଦମାଦି ସାଧନା ସରିଛି ତୁମ୍ଭର ।
ଆତ୍ମାର ଶ୍ରେୟ ସାଧନେ ଅଟ ଯତ୍ନଶୀଳ
ଦାମ, ବ୍ୟାଳ, କଟ ନ୍ୟାୟ ନ ହେଉ ତୁମ୍ଭର
ଭୀମ, ଭାସ, ଦୃଢ଼ ପରି ହୋଇ ତୁମେ ରାମ
ବିଶୋକ ଭାବ ପ୍ରାପତ ହୁଅ ଅନୁକ୍ଷଣ ।
ଦାମ, ବ୍ୟାଳ, କଟ ପୁଣି ଭୀମ, ଭାସ, ଦୃଢ଼
ସାପ କି ବେଙ୍ଗ ଏହା ମୁଁ ବୁଝିବାକୁ ମୂଢ଼ ।
ଏଥିର ମରମ କିସ ବୁଝାଇ କହିବ ?
କାଳେ କାଳେ କୃତଜ୍ଞ ମୁଁ ରହିଥିବି ଦେବ ।
କହନ୍ତି ବଶିଷ୍ଠ ରାମ ଶମ୍ବର ନାମରେ
ଦୈତ୍ୟ ଏକ ବାସ କରେ ପାତାଳପୁରରେ
ଏକଦା ସେ ଦୈତ୍ୟଗଣ ଦଳବଳ ଘେନି
ଯୁଦ୍ଧରେ ପରାସ୍ତ କରି ଦେଲା ସସ୍ରଯୋନି ।
ମାୟା କଳପିତ ସୈନ୍ୟ ସେହି ଶମ୍ବରର
ଗାଢ଼ ନିଦ୍ରାଗତ ଥିଲେ ନିଶ୍ଚିନ୍ତ ଭାବର ।
ଏ ସମୟେ ଦେବଗଣ ସିନ୍ଧୁ ଢେଉ ସମ
ମାଡ଼ି ଆସି ଅସୁରଙ୍କୁ କଲେକ ନିଧନ ।
ବିଲୀନ ହୋଇଲେ ଢେଉ ସମୁଦ୍ର ଯେସନ
ଅସଂଖ୍ୟ ତରଙ୍ଗମାନ କରେ ଉତପନ୍ନ ।
ମାୟାବଳେ ସେ ସମ୍ବର ଅସଂଖ୍ୟ ସଇନ
ଆକାଶୁ ବରଷା ପରି ସୃଷ୍ଟି କରେ ପୁଣ ।
ଛିଦ୍ରପାଇ ଦେବଗଣ ମାୟା ସୈନ୍ୟଦଳ
ଦାନବ ସୈନ୍ୟମାନଙ୍କୁ କରେ ନିରିମୂଳ ।
ଅତର୍କିତ ଭାବେ ଦେବଗଣ ପୁନଃ ପୁନଃ
ମାୟା ଅସୁର ଦଳଙ୍କୁ କରନ୍ତି ଦଳନ ।
ଉଦ୍‌ବିଗ୍ନ ହୋଇ ଶମ୍ବର ସୈନ୍ୟ ରକ୍ଷାପାଇଁ
ମାୟାବଳେ ତିନିଗୋଟି ଦୈତ୍ୟ ସରଜଇ ।
ସେହି ତିନି ମାୟାସୁର ଶମ୍ବର ସୈନ୍ୟଙ୍କୁ
ଯତ୍ପରୋନାସ୍ତି ଚେଷ୍ଟାରେ ରକ୍ଷାକଲେ ତାଙ୍କୁ ।
ସେହି ଅସୁରଙ୍କ ନାମ ଦାମ, ବ୍ୟାଳ, କଟ
ଦେବ ସଇନଙ୍କୁ କଲେ ବହୁ ଛଟପଟ ।
ସଞ୍ଚିତ କରମ କିଛି ନଥିଲା ତାଙ୍କର
ତେଣୁ ବାସନା ବିହୀନ ତାଙ୍କ କଳେବର ।
ଚେତନାମୟ ଶରୀର ଯହୁଁ ବହିଥିଲେ
ଦୁଷ୍କର କରମମାନ କରିପାରୁଥିଲେ ।

ସୁପ୍ତ ବାଳକ ଯେସନ ହସ୍ତ ପଦ ଚାଳେ
ଆତ୍ମାଭିମାନର ସତ୍ତା ନ ଥାଏ ତହିଁରେ ।
ଏ ତିନି ଅସୁରଙ୍କର କାର୍ଯ୍ୟ ସେହିପରି
ହାରିବା ଜିଣିବା ଭାବ ନ ଥିଲା ତାଙ୍କରି ।
ଆକ୍ରମଣକାରୀ ଶତ୍ରୁ ସେନାଙ୍କୁ ଦେଖିଲେ
ଅଚିରେ ମାଡ଼ି ପଡ଼ନ୍ତି ତାହାଙ୍କ ଉପରେ ।
ଏପରି ପ୍ରହାରମାନ ଅଜାଡ଼ି ପକାନ୍ତି
ଗିରି ପର୍ବତ ସକଳ ଚୂର୍ଣ୍ଣ ହୋଇଯାନ୍ତି ।
ଏପରି କାର୍ଯ ଦେଖିଣ ଶମ୍ବର ସନ୍ତୁଷ୍ଟ
ଭାବେ "ଏଣିକି ମୋ ସୈନ୍ୟ ହେବେ ସୁରକ୍ଷିତ ।
ଅତର୍କିତଭାବେ ଶତ୍ରୁ ମାଡ଼ି ନ ଆସିବେ ।
କୌଣସି ପ୍ରଭାବ ଆଉ ଦେଇ ନ ପାରିବେ ।"

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଦାମ, ବ୍ୟାଳ, କଟ ଉତ୍ପତ୍ତି ବର୍ଣ୍ଣନେ**
**ନାମ ୨୫ଶ ସର୍ଗଃ ।**



## ୨୬ଶ ସର୍ଗଃ

## ଦାମ, ବ୍ୟାଳ କଟ ସଂଗ୍ରାମ ବର୍ଣ୍ଣନ ।

ହେ ରାମ ! ଶମ୍ବର ଏବେ ଏମନ୍ତ ଯେ କଲା
ମୟା ଦେହୀ ଅସୁରଙ୍କୁ ଭୂତଳେ ପେଶିଲା ।
ସଦଳବଳ ସହିତ ତାହାଙ୍କୁ ଦେଖିଣ
ଭୟେ ଚମକି ପଡ଼ିଲେ ସର୍ବ ଦେବଗଣ ।
ସୁମେରୁ କୁଞ୍ଜ କନ୍ଦର ତେଜନ୍ତି ତକ୍ଷଣ
ସ୍ୱର୍ଗ ମର୍ତ୍ତ୍ୟ ମଧ୍ୟ ସ୍ଥଳେ ତୁମୂଳ ସଂଗ୍ରାମ ।
ଉଭୟ ଦଳର ଯେବେ ସଂଗ୍ରାମ ଚଳଇ
ଦାମ ଦୈତ୍ୟ ଯୁଦ୍ଧସ୍ଥଳେ ମିଳିଲାକ ଯାଇ ।
ଦେବ ସୈନ୍ୟଙ୍କୁ ଘେରିଣ ସିଂହନାଦ କରେ
ଦେବ ବାସସ୍ଥଳୀ ବ୍ୟାଳ ଚୁରମାର କରେ ।
ଦେବତାମାନଙ୍କୁ ଦଳିଯାଏ କଟ ଦୈତ୍ୟ
କିଛି କାଳ ଏହିପରି ଚଳେ ଯୁଦ୍ଧ ନୃତ୍ୟ ।
ରଣଭଙ୍ଗ ଦେଇ ଦେବେ କଲେ ପଳାୟନ
ଏ ତିନି ଦୈତ୍ୟେ କରନ୍ତି ପଶ୍ଚାତ ଧାବନ ।
ଲୁକ୍କାୟିତ ଦେବଙ୍କର ନ ପାଇ ସନ୍ଧାନ
ପାତାଳେ ଯାଇ ମିଳନ୍ତି ଶମ୍ବର ସଙ୍ଗେଣ ।
ପରାଜିତ ଦେବଗଣ କ୍ଷୁନ୍ନମନା ହୋଇ
ବ୍ରହ୍ମାଙ୍କର ନିକଟରେ ଜଣାକଲେ ଯାଇ ।
ମାୟାଦେହୀ ତିନି ଦୈତ୍ୟ ଶମ୍ବର ଭିଆଇଲା
ଦେବଗଣଙ୍କୁ ଯେପରି ଯୁଦ୍ଧରେ ଜିତିଲା ।
ଆଶ୍ୱାସନା ଦେଇ ବ୍ରହ୍ମା କରନ୍ତି ଏସନ
ଶୁଣ ଶୁଣ ଦେବଗଣ ମୋହର ବଚନ ।
ଆଜିଠାରୁ ଆୟୁତେଜ ବରଷ ଅନ୍ତରେ
ଶମ୍ବର ଦୈତ୍ୟ ମରିବ ବିଷ୍ଣୁଙ୍କ ହସ୍ତରେ ।
ଅପେକ୍ଷା କର ହେ ଦେବେ ସେ ସମୟ ଯାଏ
ମାୟା ଯୁଦ୍ଧ ଲାଗୁଥିବ ତେତେ ବେଳେ ଯାଏଁ
ଥରକୁ ଥର ଲାଗିବ ସେ ମାୟା ସମର
ପରାଜୟ ଲଭୁଥିବ ତୁମେ ପ୍ରତିଥର ।
ବାରମ୍ବାର ବିଜୟରେ ଗର୍ବ ଜନମିବ
ସେ ତିନିଙ୍କ ହୃଦୟରେ ବାସନା ଜନ୍ମିବ ।
ତେବେ ଯାଇ ତୁମ୍ଭେମାନ ତାହାଙ୍କୁ ଜିତିବ
ଏବେ ଧୈର୍ଯ୍ୟ ସହ ଅପେକ୍ଷାରେ ରହିଥିବ ।

**ସୁଖଦୁଃଖ ବାସନାଦି ଯେଣୁ ତାଙ୍କନାହିଁ**
**ଧୈର୍ଯ୍ୟ ତପନ ସର୍ବଦା ତାଙ୍କ ହୃଦେ ଉଇଁ ।**

ଦୁର୍ଜୟ ଅଟନ୍ତି ତେଣୁ ସେହିମାନେ ଜାଣ
ବାସନା ରଜ୍ଜୁରେ ଯେଣୁ ନୁହନ୍ତି ବନ୍ଧନ ।
ବାସନା ବିହୀନ ଅନାସକ୍ତ ଯେଉଁମାନେ
ହର୍ଷ କ୍ରୋଧରେ ଚାଳିତ ନୁଅନ୍ତି ଯେମାନେ,
ସେ ବୀର ଗଣଙ୍କୁ କେହି କେତେବେଳେ ହେଲେ
ପରାଜିତ କରି ନ ପାରନ୍ତି କାଳେ କାଳେ ।
ଯେତେବେଳ ପରିଯନ୍ତେ ସେ ତିନି ଅସୁରେ
ନୋହିଛନ୍ତି ଆସ୍ଥାବାନ ସଂସ୍କାର ସ୍ଥିତିରେ,
ତେତେବେଳ ଯାଏ ତୁମ୍ଭେମାନେ ଦେବତାଏ
ପ୍ରାଭବ ଦେଇ ନ ପାର କୌଣସି ଉପାୟେ ।
ଆହେ ଦେବରାଜ ଏହି ଅସୁର ତ୍ରୟର
ଅଭିମାନ ଜନମିବ ଯେମନ୍ତ ପ୍ରକାର ।
ଚେଷ୍ଟାକର ଦେବଗଣ ସେହି ଉପାୟର
ତେବେ ବାଞ୍ଛା ପୂର୍ଣ୍ଣ ହେବ ତୁମମାନଙ୍କର ।
ଦାମ, ବ୍ୟାଳ, କଟ ଏହି ତିନି ଯେ ଅସୁର
ଯୁଦ୍ଧରେ ମାତିଣ ରହୁଥିବେ ବାରମ୍ବାର ।
ଅବଶ୍ୟ ବାସନା ଯୁକ୍ତ ହୋଇବେ ସେମାନେ
ବିଜୟ ଲାଭ କରିବ ତେବେ ତୁମ୍ଭେମାନେ ।

ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ
ଦାମ, ବ୍ୟାଳ, କଟ, ସଂଗ୍ରାମ ବର୍ଣ୍ଣନେ
ନାମ ୨୬ଶ ସର୍ଗଃ ।

❑

## ୨୭ଶ ସର୍ଗଃ

## ଦାମ ବ୍ୟାଳ କଟଙ୍କ ପୁନର୍ବାର ଯୁଦ୍ଧ ।

ବୋଲନ୍ତି ବଶିଷ୍ଠ ରାମ ବ୍ରହ୍ମା ଏହା କହି
ଦେଖୁ ଦେଖୁ ଦେବଗଣ ଅନ୍ତର୍ହିତ ହୋଇ ।
ସ୍ୱ ସ୍ୱ ସ୍ଥାନେ ଦେବଗଣ କଲେକ ପ୍ରସ୍ଥାନ
କିୟତ୍‌କାଳ ନିରବରେ କଲେକ ବିଶ୍ରାମ ।
ଅଦୂରବର୍ତ୍ତୀ ବୁଝିଣ ନିଜ ଅଭ୍ୟୁଦୟ
ଦଇତଙ୍କ ସହ ଯୁଦ୍ଧ କଲେ ପୁନରାୟ ।
କିଛିକାଳ ଭୟାବହ ଯୁଦ୍ଧ ହେଲାପରେ
ପୁଣି ଦେବଗଣ ମାୟା ଯୁଦ୍ଧ ଆରମ୍ଭିଲେ ।
କେବେ ମଲ୍ଲ ଯୁଦ୍ଧ ପୁଣି କେବେ ପଳାୟନ ।
କେବେ ଧୈର୍ଯ୍ୟଧରି ରଣଭୂମି ଅବସ୍ଥାନ ।
ପ୍ରଚ୍ଛନ୍ନ ରହିଣ କେବେ କେବେ ଆତ୍ମରକ୍ଷା
ବାଗ୍‌ଯୁଦ୍ଧ କରିଣ କେବେ ପାଉଥାନ୍ତି ରକ୍ଷା ।
ପ୍ରଥମ ଯୁଦ୍ଧ ଚାଲିଲା ତ୍ରିଂଶବର୍ଷ ଯାଏ
ଦ୍ୱିତୀୟ ଯୁଦ୍ଧ ଆରମ୍ଭ ତତପରେ ହୁଏ ।
ପାଞ୍ଚ ବର୍ଷ ଆଠମାସ ଦଶଦିନ କାଳ
ଲାଗିଥାଏ ଘୋରରଣ ଦ୍ୱିତୀୟ ଯୁଦ୍ଧର ।
ମୋଟେ ବାରଦିନ ଲାଗେ ତୃତୀୟ ସମର
ତିନି ଦଇତଙ୍କ ମନେ ଜନ୍ମେ ଅହଂକାର ।
ସୁଦୃଢ଼ ଅଭ୍ୟାସ ବଶେ ଅହଂ ବାସନାରେ
ଅନୁରାଗ ଜନମଇ ଦୈତ୍ୟଙ୍କ ଚିତ୍ତରେ ।
ଅହଂ ଭାବମୟ ଯେଣୁ ହୁଏ ତାଙ୍କ ମନ
'ଏମୋ ପ୍ରାଣ' 'ଏମୋ ଦେହ' ଭାବେ ହେଲେ ଲୀନ
'ଏହା ଭଲ' 'ଏହା ମନ୍ଦ' ଇତ୍ୟାଦି ଯେ ଭାବ
ତହିଁରେ ଜଡ଼ିତ ହୋଇ ମନେ ଆସେ ଗର୍ବ ।
ନିଜର ଦେହ କିପରି ଚିରସ୍ଥାୟୀ ହେବ
ଏହି ଚିନ୍ତା ଆଣିଦିଏ ତାଙ୍କୁ ଦୈନ୍ୟଭାବ ।
ଯେବଣ ଅସୀମ ଧୈର୍ଯ୍ୟ ଥିଲା ତାହାଙ୍କର
ଶତ୍ରୁ ତାପନ କ୍ଷମତା ଯା ଥିଲା ତାଙ୍କର,
ଯେଣୁ ଯେ ହେଲେ ଶରୀର ବାସନା ଅଧୀନ
ଏ ସବୁ ସୁଗୁଣମାନ ହେଲେ ଅନ୍ତର୍ଦ୍ଧାନ ।
ଭୟଭୀତ ହୋଇ ସେହି ସମର ପ୍ରାଙ୍ଗଣେ
ମଲି ମଲି କହି ଧାଇଁଥାନ୍ତି ଏଣେତେଣେ ।
ଆକ୍ରମଣ କରିବାକୁ ସୁର ସୈନ୍ୟଗଣ
ଧାଆନ୍ତେ ପଳାନ୍ତି ସେହୁ ତେଜି ରଣସ୍ଥାନ ।
ଦାମ, ବ୍ୟାଳ କଟ ଯେବେ କଲେ ପଳାୟନ
ସୁର ବଳ କରିଦ୍ୟନ୍ତି ଦାନବ ଦଳନ ।

ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ
ଦାମ, ବ୍ୟାଳ, କଟ ପୁନର୍ବାର ଯୁଦ୍ଧ
ବର୍ଣ୍ଣନେ ନାମ ୨୭ଶ ସର୍ଗଃ ।

❑

## ୨୮ଶ ସର୍ଗଃ

## ଦାମ, ବ୍ୟାଳ କଟ ଜନ୍ମାନ୍ତର

ବଶିଷ୍ଠ ବୋଲନ୍ତ ରାମ ଦାମ କଟ ବ୍ୟାଳ
ଯୁଦ୍ଧେ ହାରିଯାଇ ହେଲେ ଅତୀବ ବିକଳ ।
ବାର୍ତ୍ତା ଶୁଣି ଶମ୍ବର ଯେ ହେଲା କୋପ ବଶ
ନ ଜାଣେ କିପରି କଟେ ରଜନୀ ଦିବସ ।
କାଳାନଳ ଜିଣି ଦିଶେ ନୟନ ଯୁଗଳ
ପ୍ରଳୟ ବଜ୍ର ଜିଣେ କି ଘୋର ରଡ଼ି ତାର
"କାହିଁ ଗଲେରେ ସେ ଶଠ ଦାମ କଟ ବ୍ୟାଳ
କେଉଁ କାଳ ଆଜି ରଖୁ ଜୀବନ ତାଙ୍କର ।"
ଶାର୍ଦ୍ଦୁଳ ଦେଖି ଛାଗଳ କମ୍ପଇ ଯେସନ
ଥରିଯାଏ କଟ ଦାମ ବ୍ୟାଳ ଅପଘନ ।
ବାଟ ନ ଦିଶଇ କେଣେ ଯିବେ ସେ ପଳାଇ
ମୁହୂର୍ତ୍ତକେ ପଶିଯାନ୍ତି ପାତାଳରେ ଯାଇଁ ।
ସପ୍ତମ ପାତାଳେ ଯାଇ ହୋଇଲେ ପ୍ରବେଶ
ଘୋର ଅନ୍ଧକାରେ ନ ଦିଶଇ ଦଶଦିଶ ।
ଶମ୍ବର କଥାତ ରାମ ଅତି ଦୂରତର
ଯମ ପଶିବାକୁ ଯହିଁ ଭୟେ ଥରହର,
ସାକ୍ଷାତ୍ ମୃତ୍ୟୁ ସଦୃଶ ନରକ ପାଳକ
ଯମ କିଙ୍କରମାନଙ୍କ ବାସ ସେହି ଲୋକ ।
ଶରଣାଗତ ତହିଁ ଯେ ଏ ତିନି ଅସୁର
ଅଭୟ ପ୍ରଦାନ କଲେ ସେ ଯମ କିଙ୍କର ।
ମୂର୍ତ୍ତିମନ୍ତ ଚିନ୍ତାପରି ଏକ ଏକ କନ୍ୟା
ପ୍ରତ୍ୟେକଙ୍କୁ ଅରପିଲେ ଜାଣ ମହାମନା ।
ଦାମ ବ୍ୟାଳ କଟ ଏହି କନ୍ୟା ଲାଭକରି
ସ୍ୱଚ୍ଛନ୍ଦେ ବିହାର କଲେ ସେ ପାତାଳପୁରୀ ।

ଏହିଏରି ଦଶସସ୍ର ବର୍ଷ ବୋହିଗଲା
ଅହଂକାର ଭାବ ତାଙ୍କ ସୁଦୃଢ଼ ହୋଇଲା ।
ଏହି ମୋର କନ୍ୟା ପୁଣି ଏହି ମୋ କାମିନୀ
ମାୟାରେ ଆବଦ୍ଧ ହେଲେ ସେ ଦାନବ ତିନି ।
ନରକ ପରିଦର୍ଶନ କରିବାର ପାଇଁ
ଧର୍ମରାଜ ଯମ ଯାଇଁ ପହଞ୍ଚିଲେ ତହିଁ ।
ସେ ତିନି ଦାନବ ତାଙ୍କୁ ଚିହ୍ନି ନ ପାରିଲେ
ଯମଦୂତ ମଣି ନମସ୍କାର ବିବର୍ଜିଲେ ।
ଏହାଦେଖି ଯମରାଜ ମହାକୋପ କଲେ
କିଂକରମାନଙ୍କୁ ଡାକି ଦଣ୍ଡ ବିଧାନିଲେ ।
ଜଳନ୍ତା ଅନଳେ ନେଇ ତାଙ୍କୁ ନିକ୍ଷେପିଲେ
ପରିବାର ସହ ସର୍ବେ ଭସ୍ମ ହୋଇଗଲେ ।
ଯମଦୂତ ମାନଙ୍କର ସହ ଯେତେବେଳେ
ବସବାସ କରୁଥିଲେ ସେ ପାତାଳପୁରେ
ତାଙ୍କର ଦଣ୍ଡବିଧାନ ମାନ ଦେଖିକରି
ତାଦୃଶ ବାସନା ତାଙ୍କ ମନରେ ସଂଚରି ।
କ୍ରୁର କର୍ମ ବାସନାର ଫଳଭୋଗ ପାଇଁ
ତିନିହେଁ କିରାତ ରାଜ୍ୟେ ଜନମିଲେ ଯାଇଁ ।
କୀରାତ ଜୀବନ ପରେ ବାୟସ ଯୋନିରେ
ଜନମ ଲଭିଣ ଥିଲେ ସେ ତିନି ଅସୁରେ ।
ତତପରେ ଗୃଧ୍ର ଜନ୍ମ, ପରେ ହେଲେ ଶୂକ
ଶୂକରରୂପେ ଜନ୍ମିଲେ ସେ ତିନିହେଁ ଯାକ ।
ପାର୍ବତୀୟ ମେଷ ହେଲେ ପର୍ବତ ଉପରେ
ତତ୍‌ପରେ ପୁଣି ଯାଇ କୀଟ ଜନ୍ମ ନେଲେ ।
ଏହି କୀଟ ଜନ୍ମ ତାଙ୍କ ବିସ୍ତର ଦୁଃଖର
କାରଣ ହୋଇ ଯେ ଥିଲା ଆହେ ରଘୁବୀର ।
ତତପରେ ମସ୍ୟ ହୋଇ କାଶ୍ମୀର ଦେଶରେ
ନନମ ଲଭି ଅଛନ୍ତି ଏକ ସରୋବରେ ।
ଦାବାନଳ ଉତ୍ତାପରେ ସେ ପୋଖରୀ ଜଳ
ଉତ୍ତପ୍ତ ହୋଇ ରହିଛି ପଙ୍କିଳ କେବଳ ।
ଜୀବନ୍ମୃତ ଅବସ୍ଥା ସେ ପାଇ ରହିଛନ୍ତି
ବାସନାନୁରୂପେ ଫଳକୁ ଭୋଗ କରୁଛନ୍ତି ।
ବାସନା ଯନ୍ତ୍ରଣା ତାଙ୍କ ଆଜିଯାଏଁ ରାମ
ଏତେ ଜନ୍ମ ପରେ ହୋଇନାହିଁ ଉପସମ ।
ବାସନାର ପରିଣାମ କେଡ଼େ ନିଦାରୁଣ
ତଥାପି ବାସନା ନ ଛାଡ଼ଇ ଜୀବମନ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ ଦାମ, ବ୍ୟାଳ, କଟ ଜନ୍ମାନ୍ତର ବର୍ଣ୍ଣନେ ନାମ ୨୮ତମ ସର୍ଗଃ ।**



## ୨୯ତମ ସର୍ଗଃ

## ଦାମ ବ୍ୟାଲ କଟ ଜନ୍ମାନ୍ତର ବିବରଣ

ବଶିଷ୍ଠ ବୋଲନ୍ତି ରାମ ଏଥିପାଇଁ ମୁହିଁ
କହିଅଛି ତୁମକୁ ମୁଁ ସକଳ ବୁଝାଇ ।
ଦାମ ବ୍ୟାଳ କଟ ପରି ତୁମ ପରିଣତି
ଯେପରି ନ ହୁଏ ଦେଖ ଆହେ ରଘୁପତି ।
ଅବିବେକିତା ବଶତଃ ଚିତ୍ତ ଏହିପରି
ଭବ ପୀଡ଼ା ପାଇ ଭବେ ହେଉଥାଏ ଘାରି ।
ଅସୁର ତ୍ରୟଙ୍କ ଏହି ଅହଂକାର ରୂପ-
ଅଙ୍କୁରରୁ ଜନମିଲା ସଂସାର ପାଦପ ।
ତେଣୁ ରାମ ଯତ୍ନ ସହ ତୁମ ଅହଂକାର
ବିଦୂରୀତ କର ମନ ମଧ୍ୟରୁ ତୁମର ।
"ମୁହିଁ କିଛି ନୁହେଁ କିନ୍ତୁ ମୋହର ଆତ୍ମାରେ
ଚିନ୍ମୟ ପରମଆତ୍ମା ପରକାଶ ଧରେ ।
ଏହିପରି ଚିନ୍ତାଶୀଳ ତୁମେ ହୋଇକରି
ଭାବେ ସୁଖୀ ହୋଇରହ ଆହେ ଦଇତାରି" ।
ଅହଂକାର ମେଘଦ୍ୱାରା ଆତ୍ମାରୂପ ଚନ୍ଦ୍ର
ଆଚ୍ଛାଦିତ ହେଲେ ଦିଶେନାହିଁ ରାମଚନ୍ଦ୍ର ।
ଶମ୍ବର ମାୟାରୁ ଜାତ ସେ ତିନି ଅସୁର
ସତ୍ତାବାନ ହେଲେ ଜନମନ୍ତେ ଅହଂକାର ।
ନାନାଦି ଦୁଃଖ ଯନ୍ତ୍ରଣା ଭୋଗନ୍ତି ସେମାନେ
ବାସନା ପ୍ରଭାବ ଏବେ ବୁଝ ରଘୁନାନେ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ଗୁରୁଦେବ
ଅସତ୍ ଯେ ସତ୍ କେବେ ହୋଇ ନ ପାରିବ
ସତ୍ ଯେ ଅସତ୍ ହେବା କିପରି ସମ୍ଭବ ?
ଏହି ଯେ ସନ୍ଦେହ ମୋର ମୋଚନ କରିବ ।
ହେଲେ ହେଁ ଅସତ ବସ୍ତୁ ସେ ତିନି ଅସୁର
ସତ୍ୟ ହୋଇ ପାରିଥିଲେ କେଉଁ ପରକାର ?
କହନ୍ତି ବଶିଷ୍ଠ ରାମ ତୁମେ ଯା କହିଲ
ଯଥାର୍ଥ ଅଟଇ ତାହା ଅକ୍ଷର ଅକ୍ଷର ।
କାହାକୁ କହନ୍ତି ସତ କିଏ ବା ଅସତ
ବୁଝାଇ କହିବ ମୋତେ ଆହେ ରଘୁନାଥ ।

କହନ୍ତି ଶ୍ରୀରାମ ଦେବ ଆମ୍ଭେ ଯେ ସକଳେ
ରହିଅଛୁ, ଏହା ସତ୍ୟ ମୋର ଭାବନାରେ ।
ତେଣୁ ଆମ୍ଭେମାନେ ସତ୍‌ରୂପେ ଅବସ୍ଥିତ
ଦାନବଙ୍କ କଥା ଏବେ କହ ତପୋବନ୍ତ ।
କହନ୍ତି ବଶିଷ୍ଠ ତାହା କହୁଛି ମୁଁ ଶୁଣ
ହେଲେହେଁ ଅସତ ସେ ଦାନବ ତିନିଜଣ ।
ମରୀଚିକା ଜଳପରି ସତ୍ୟ ରୂପେ ଥିଲେ
ଆମ୍ଭର ସତ୍ୟତା ମଧ୍ୟ ମରୀଚିକା ତୁଲେ ।
ଶୋଇଥିବା ବେଳେ ନିଜ ମୃତ୍ୟୁ ସପନରେ
ସତବୋଲି ଜଣାଯାଉ ଥାଏ ଅବିକଳେ ।
ବାସ୍ତବରେ ତା ଯେପରି ନୋହିଥାଏ ସତ
ଆମ୍ଭେମାନେ, ଏ ଜଗତ ସବୁ ତଦବତ ।
ସ୍ୱପ୍ନରେ ଦେଖିଲ ତୁମ୍ଭେ ତୁମ ବନ୍ଧୁ ମଲା
ତାହା ତୁମ ତତ୍‌କାଳିକ ଅନୁଭବ ହେଲା ।
ଅନୁଭବ ସିଦ୍ଧି ସିନା, ବାସ୍ତବ ଅସତ୍ୟ
ତୁମ ବନ୍ଧୁ ମୃତ୍ୟୁଜ୍ଞାନ ନୁହଁଇଟି ସତ୍ୟ ।
ଏ ଜଗତ ସତ୍ୟ ବୋଲି ମଣଇ ଯେ ଜନ
ନିତାନ୍ତ ବିମୂଢ଼ ସେହୁ ମୂଢ଼ଙ୍କ ପ୍ରଧାନ ।
ଏ ଜଗତ ମିଥ୍ୟା ବୋଲି କେବେହେଁ ସେ ଲୋକ
କହି ନ ପାରିବ ଆହେ ବୀରଙ୍କ ନାୟକ ।
ଆତ୍ମା ଅନୁଭୂତି ବିନା ସର୍ବ ଅନୁଭବ
ଅନ୍ୟଥା ତାକୁ ସେ କେବେ କରି ନ ପାରିବ ।
ଅନ୍ତରେ ସୁଦୃଢ଼ଭାବେ ଯାହା ବଦ୍ଧମୂଳ
ଆତ୍ମବୋଧ ବିନା କଟି ନ ପାରେ ତା ମୂଳ ।
ଜଗତ ଅସତ୍ୟ ମାତ୍ର ବ୍ରହ୍ମ ଏକା ସତ
ମୂର୍ଖଲୋକ ମତେ ତାହା କେବଳ ଉଦ୍‌ଭ୍ରାନ୍ତ ।
ଉପହାସ କରି ତାକୁ ଉଡ଼ାଇ ଦିଅନ୍ତି
ଯାହା ଦେଖନ୍ତି ତା ସତ୍ୟ ବୋଲି ନାଚୁଥାନ୍ତି ।
ଆଲୋକ ଅନ୍ଧାର ଯଥା ନୁହନ୍ତି ଏକତ୍ର
ମୂର୍ଖ, ପ୍ରାଜ୍ଞ ଲୋକ, ବୋଧ ସଦା ବିପରୀତ ।
ଅଜ୍ଞାନୀ ଲୋକକୁ ଯେତେ ବୁଝାଇଲେ ସୁଦ୍ଧା
ବାହ୍ୟ ଦ୍ୱୈତ-ଜ୍ଞାନ ଘେନି ଦୃଢ଼ ସେ ସର୍ବଦା ।
ତାକୁ ବୁଝାଇବା ଚେଷ୍ଟା ବିଫଳ ସେପରି
ଶବ କିପରି ଚଳିବ, ଏ ଚେଷ୍ଟା ଯେପରି ।

**ଏ ଜଗତ ବ୍ରହ୍ମମୟ, ବ୍ରହ୍ମ ସନାତନ**
**ଏହି ଉପଦେଶ ସ୍ୱଳ୍ପ ଜ୍ଞାନୀଙ୍କି ଶୋଭନ ।**
**ପୂର୍ଣ୍ଣ ଜ୍ଞାନୀଙ୍କ ନିକଟେ ଏହି ଉପଦେଶ**
**ପ୍ରଯୁଜ୍ୟ ନ ହୋଇପାରେ ଆହେ ରଘୁଇଶ ।**
ଯେ ହେତୁରୁ ଅହଂ ଭାବ ତାହାଙ୍କ ଚିତ୍ତରେ
ଉପୁଜି ନ ପାରେ ତାଙ୍କ ହୃଦ କମଳରେ ।
ସକଳ ଜଗତ ତାଙ୍କୁ ଲାଗେ ବ୍ରହ୍ମମୟ
କେଉଁ ପୁଅ ସେ ଜ୍ଞାନକୁ କରିବ ବିଲୟ ।
ପରମାତ୍ମା ସତ୍ତା ଛଡ଼ା ଅନ୍ୟ କିଛି ଭାବ
ଅଛି ବୋଲି ତାଙ୍କୁ ଲାଗେ ଅତି ଅସମ୍ଭବ ।
ମିଥ୍ୟା ଅହଂଭାବ ଧରେ ଯେ ପୁରୁଷ ଅଜ୍ଞ
ପରମାତ୍ମା ବୋଧ ସୁସମ୍ପର୍ଣ୍ଣ ଯେହୁ ବିଜ୍ଞ,
ଏ ଉଭୟ ଲୋକଙ୍କର ଅଟେ ଯେ ସ୍ୱଭାବ
କେହି ତା ଅନ୍ୟଥା କରି ନ ପାରେ ରାଘବ ।
ଅନ୍ୟଥା କରିବ କିଏ କାହାର ସ୍ୱଭାବ
"ସ୍ୱଭାବ ମୂର୍ଦ୍ଧ୍ନି ବର୍ତ୍ତତେ" ଜାଣ ହେ ରାଘବ ।
ଯଦି କେହି ବ୍ୟକ୍ତି କହେ ମୁହିଁ ଅଟେ ଘଟ
ତେବେ ବୁଝିବାକୁ ହେବ ତା ଚିନ୍ତା ଉଦ୍‌ଭଟ ।
ପୁଣି ଯଦି କେହି କହେ ମୁଁ ଅଟେ ମନୁଷ୍ୟ
ପାଗଳ ପ୍ରଳାପ ତାହା ନୁହେଁ କି ଅବଶ୍ୟ ?
ଦାମାଦି ଅସୁର ତ୍ରୟ ଆମ ସହିତରେ
ଅସତ୍ୟ ଅଟନ୍ତି ଜାଣ ଆହେ ରଘୁବୀରେ ।
ଶୁଦ୍ଧ, ନିରଞ୍ଜନ, ଅଜ, ଅବିନାଶୀ ଶାନ୍ତ
ସର୍ବଗତ, ସର୍ବମୟ ଯେ ପୁଣି ପ୍ରଶାନ୍ତ,
ସମ୍ବେଦନ ରୂପ ଏକମାତ୍ର ବୋଧାକାଶ
ସତ୍ୟ ବୋଲି ଜାଣ ସେହି ଆହେ ରଘୁଇଶ ।
ସେହି ସୁନିର୍ମଳ ବୋଧାକାଶେ ପ୍ରତିଭାସ
ଏ ଅନନ୍ତ ସୃଷ୍ଟି ହୋଇଅଛି ରଘୁଇଶ ।
ସେହି ଚିଦାକାଶ ଆପଣାକୁ ଯେ ଭାବରେ-
ଭାବେ, ସେ ଆକାର ଧରିଥାଏ ସେ ଅଚିରେ ।
ତେଣୁ ପ୍ରକୃତ ଅସତ୍ୟ ହେଲେ ହେଁ ଜଗତ
ବୋଧାକାଶ ଦର୍ଶନରେ ସତ୍ୟ ଅନୁଭୂତ ।
ତେଣୁ ମୁଁ କହେ ହେ ରାମ ଏ ଆତ୍ମା ବ୍ୟତୀତ
ଜଗତରେ ଅନ୍ୟ କିଛି ନାହିଁ, ଧ୍ରୁବ ସତ୍ୟ ।

ଯେତେବେଳେ ଯାହା ତାଙ୍କ ହୁଏ ବୋଧଗତ
ତେତେବେଳେ ସେହି ଆକାରରେ ସମୁଦିତ ।
ଦାମାଦି, ଅସୁରଗଣ ଯେ ରୂପେ ଉଦ୍ଭୁତ
ଆମ୍ଭେମାନେ ମଧ୍ୟ ସେହି ରୂପେ ପ୍ରକାଶିତ ।
ତେଣୁ ଏ ବିଷୟେ ସତ୍ୟାସତ୍ୟର କଳ୍ପନା
କିପାଇଁ କରୁଛ ଆହେ ରାମ ମହାମନା ?
ସେହି ନିରାକାର ସର୍ବଗତ ଓ ଅନନ୍ତ
ଚିଦାକାଶ ମଧ୍ୟସ୍ଥିତ ଚିତ୍ ରଘୁନାଥ,
ଯେଉଁ ଆକାର ଧରି ସେ ହୁଏ ସମୁଦିତ
ନିଜେ ସେହି ଆକାରେ ହିଁ ହୁଏ ପ୍ରତିଭାତ ।
ଦାମାଦି ଅସୁରରୂପେ ଚିଦାକାଶ ଚିତ୍
ଯେଉଁ ସମୟେ ହୋଇଥିଲେ ସେ ଉଦିତ,
ଅନୁଭବ କରି ସେହି ଅସୁର ଆକାର
ନିଜେ ସେହିରୂପେ ହୋଇଥିଲେ ଅବତାର ।
ଆତ୍ମ ଆକୃତିରେ ଯେତେ ପ୍ରକାଶ ଲଭନ୍ତି
ସେହି ଆକୃତି ଚିନ୍ତିଣ ଉଦ୍ଭୂତ ହୁଅନ୍ତି ।
ମରୁସ୍ଥଳେ ସୂର୍ଯ୍ୟ ରଶ୍ମି ଦିଶେ ଜଳ ପରି
ଚିଦାକାଶ ସ୍ୱପ୍ନଛାୟା ଭବ ସେହିପରି ।
ଜଗଦ୍‌ଭାବ ଆସିଯାନ୍ତେ ସେହି ଚିଦାକାଶେ
ଦୃଶ୍ୟ-ବିଶ୍ୱ ସଙ୍ଗେ ସଙ୍ଗେ ଆସି ପରକାଶେ ।
ସୁଷୁପ୍ତ ରହେ ସେ ଯେବେ ନିଜେ ନିଜ ମଧ୍ୟେ
ସେତେବେଳେ ମୋକ୍ଷ ନାମ ଧରେ ରଘୁନିଧେ ।
ଏହା ମଧ୍ୟ କଳପନା ଜାଣ ହେ ଶ୍ରୀରାମ
ଜାଗ୍ରତ ବା ସୁଷୁପ୍ତ ସେ କିଛି ନୁହେଁ ଜାଣ ।
ସମଗ୍ର ଦୃଶ୍ୟ-ଜଗତ ବ୍ରହ୍ମ ବୋଲି ମଣ
ବିଶ୍ୱାତ୍ମା ନିଜେ ନିଜକୁ କରେ ଦରଶନ ।
ତେଣୁ ଏ ଦୃଶ୍ୟ-ଜଗତ ଅନ୍ୟ ନୁହେଁ କିଛି
ଜଗତ ଆକାରେ ସେହି ବ୍ରହ୍ମ ପ୍ରକାଶୁଛି ।
ସର୍ବ ଭେଦଭାବ, ଶୋକ, ଭୟ ତେଜି କରି
ପୂର୍ଣ୍ଣ ବ୍ରହ୍ମରୂପେ ରାଜା ସଦା ବସୁନ୍ଧରୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଦାମ, ବ୍ୟାଳ କୀଟ ଜନ୍ମାନ୍ତର ବର୍ଣ୍ଣନେ ନାମ ୨୯ଶ ସର୍ଗଃ ।**



## ୩୦ଶ ସର୍ଗଃ

## ଦାମ ବ୍ୟାଳ କଟ ଉପାଖ୍ୟାନ

ପୁଣି ପୁଚ୍ଛନ୍ତି ଶ୍ରୀରାମ ଆହେ ଗୁରୁଦେବ
ଦାମାଦିଙ୍କ ଦୁଃଖ ଶେଷ କିପରି ହୋଇବ ?
କହନ୍ତି ବଶିଷ୍ଠ ରାମ ଏହି ବିଷୟରେ
କିଙ୍କର ସମୂହ ଯମ ରାଜାଙ୍କ ଆଗରେ,
ପ୍ରାର୍ଥନା କରନ୍ତେ ଯାହା ଉତ୍ତର ସେ ଦେଲେ
ଏବେ ମୁଁ କହୁଛି ତାହା ଶୁଣ ରାମ ଭଲେ ।
ଏହି ଯେ ଅସୁରଗଣ ପୃଥକ ଭାବରେ
ସ୍ୱୀୟ ବୃତ୍ତାନ୍ତ ଶୁଣିବେ ରାମ ଯେତେବେଳେ
ତେତେବେଳେ ଯାଇଁ ତାଙ୍କ ହୋଇବ ମୁକତି
ଅପେକ୍ଷା କର ଶୁଣିବ ସକଳ ବିବୃତି ।
ସେମାନେ କାଶ୍ମୀର ଦେଶେ ଏକ ସରୋବରେ
ପୁନଃ ପୁନଃ ମତ୍ସ୍ୟ ଜନ୍ମ ଲଭିବେ ତହିଁରେ ।
ସେହି ସରୋବରେ ପୁଣି ସାରସ ରୂପରେ
ଜନମ ଲଭି ବିହାର କରିବେ ତହିଁରେ ।
ସାରସ ଦେହ ଛାଡ଼ନ୍ତେ ପୃଥକ ହୋଇଣ
କାଳ କଟାଇବେ ପୁଣି ଆଉ କିଛି ଦିନ ।
ଚଟକ ପକ୍ଷୀ ହୋଇଣ ଜନମିବ ବ୍ୟାଳ
ଦାମ ଦାନବ ଧରିବ ମଶକ ଶରୀର ।
କଟ ଦାନବ ଘେନିବ ଶାରୀଙ୍କ ସ୍ୱରୂପ
ବିଭିନ୍ନ ସ୍ଥାନେ ରହିବେ ଧରି ଭିନ୍ନରୂପ ।
ସେହି କାଶ୍ମୀର ଦେଶର ବିଭିନ୍ନ ସ୍ଥାନରେ
କିଛିକାଳ କଟାଇବେ ସ୍ୱତନ୍ତ୍ର ଭାବରେ ।
ଦାମ, ବ୍ୟାଳ କଟଙ୍କର ଉପାଖ୍ୟାନ ମାନ
ଜ୍ଞାନୀଙ୍କ ରଚିତ ଶ୍ଳୋକ ଆକାରେ ସେମାନ
ବିଭିନ୍ନ ଗୃହରେ ପୁଣି ବିଭିନ୍ନ ସମୟେ
ପାଠ ହେଉଥିଲା ବେଳେ ଶୁଣିବେ ତିନିହେଁ ।
ମନ ମଧ୍ୟେ ଆତ୍ମସ୍ମୃତି ହେବ ଜାଗରିତ
ସୌଭାଗ୍ୟ ଉଦୟ ହେବ ହେବେ ସେ ମୁକ୍ତ ।
କଟ ଦାମ ବ୍ୟାଳଙ୍କର ସମସ୍ତ ବୃତ୍ତାନ୍ତ
କହିଗଲି ତୁମକୁ ମୁଁ ଆହେ ରଘୁନାଥ ।
ନିଶ୍ଚିତ ଭାବରେ ତୁମେ ହୁଅ ଅବଗତ ।
ଅଟଇ ଏକାନ୍ତ ମୟାମୟ ଏ ଜଗତ
ମରୀଚିକା ଭ୍ରାନ୍ତି ପରି ଏହି ମାୟାରାଣୀ
ସ୍ୱଚ୍ଛ ବୁଦ୍ଧିଙ୍କୁ ନରଏ ସଂସାର ତରଣୀ ।
ମୂଢ଼ଜନ ଏହି ମାୟା ବଶ ହୋଇକରି
ହୀନ ଦଶା ଭୋଗେ ଦାମ, ବ୍ୟାଳ କଟ ପରି ।

ଯେଉଁ ତିନି ଦାନବଙ୍କ କଟାକ୍ଷ ମାତ୍ରରେ
ମେରୁ ଶୃଙ୍ଗ ଅଟ୍ଟାଳିକା ଚୂର୍ଣ୍ଣ ହୋଇପାରେ
କାହିଁ ସେ ବିକ୍ରମଶୀଳ ଅସୁରଙ୍କ ଦଶା
କାହିଁ ଚଟକ, ମଶକ, ଶାରୀକା ଦୁର୍ଦ୍ଦଶା ।
ଆହା କି ପରିତାପର ବିଷୟ ଯେ ଏହି
ନିର୍ବିକାର ଚିଦାକାଶ ଅହଂ ବଶ ହୋଇ
ସ୍ୱରୂପ ପାଶୋରି ବିରୂପତାକୁ ଭଜଇ
ଅହଙ୍କାର କେଡ଼େ ଶକ୍ତିଶୀଳ ରଘୁରାଇ ।
ହେଲେ ହେଁ ନଶ୍ୱର, ମର ଏ ଜୀବ ସକଳ
ଭ୍ରମ ବାସନା ଜାଲରେ ହୁଅନ୍ତି କଲବଲ ।
ଚିଦାକାଶ ସ୍ୱରୂପରୁ ବିଚ୍ଛିନ୍ନତା ଲଭି
ପରିଣାମ ଭୋଗି ଶେଷେ ହେଉଥାନ୍ତି ଭାବି ।
ଯେଉଁ ବ୍ୟକ୍ତି ଶାସ୍ତ୍ର, ଜ୍ଞାନ ସୁବିଚାର ବଳେ
ଜଗତର ଅସାରତା ଉପଲବ୍ଧି କରେ,
ପାର ହୋଇପାରେ ସେହି ଭବ ପାରାବାର
ଜାଗତିକ ଭୟ ଭୀତି ତା ପ୍ରତି କିଂକର ।
ଶୃଙ୍ଖିଳାଯୁକ୍ତି ତର୍କକୁ ଯେ କରେ ଆଶ୍ରୟ
ସଂସାର ଗର୍ତ୍ତରେ ତାର ପଡ଼ିବା ନିଶ୍ଚୟ ।
ଆତ୍ମଗତି-ଲଭିବା ତ ସୁଦୂରର କଥା
ଯେତେ ଭାବୁଥିବ ଘୂରି ଯାଉଥିବ ମଥା ।
ଅନୁଭବ ସିଦ୍ଧ ଶ୍ରୁତି ସନ୍‌ମତ ପଥ
ଆଶ୍ରୟ କରେ ଯେ ନୁହେ ବିନାଶ ପ୍ରାପତ ।
ପରମ ଗତିକି ଲାଭ କରିପାରେ ସେହୁ
ଆଉ କି ଅଧିକ କହିବଇଁ ମହାବାହୁ ।
**ଉଦାର ବୁଦ୍ଧି ଉନ୍ନତ ଚେତା ସେହି ଜନ**
**ଜଗତକୁ କରେ ଯେହୁ ତୃଣବତ ଜ୍ଞାନ ।**
ସକଳ ଆପଦ ଏଡ଼ିପାରେ ସେହି ଜନ
କାତି ଛାଡ଼ି ଦେଇଥାଏ ଉରଗ ଯେସନ ।
**ସତତ ଯା ଚିତ୍ତେ ବିକଶଇ ସତ୍ତ୍ୱଗୁଣ**
**ଲୋକ ପାଳଗଣ ତାକୁ କରନ୍ତି ପାଳନ ।**
**ଯେତେ ଇଚ୍ଛା ତେତେ ଭୟ ଆସି ପହଂଚିବ**
**ଅସତ ପଥକୁ କେଭେଁ ଢଳିଣ ନ ଯିବ ।**
ସତ୍‌ଶାସ୍ତ୍ର ସତ୍‌ସଙ୍ଗ ଯେବେ ଆବୋରିବ
ମୋହ ଅନ୍ଧକାର ମଧ୍ୟେ କେଭେଁ ନ ପଡ଼ିବ ।

ବୈରାଗ୍ୟ ଶମଦମାଦି ଗୁଣେ ସୁସମ୍ପର୍ଣ୍ଣ
ହେଲେ ଅବଶକୁ ବଶ କରିବ ସେ ଜନ ।
ସକଳ ଆପଦ ତାର ହୁଏ ଦୂରୀଭୂତ
ଶ୍ରେୟ ଲାଭ କରେ, ହୁଏ ଜଗତେ ବିଦିତ ।
**ବୈରାଗ୍ୟରେ ଆସ୍ଥା ନାହିଁ କିନ୍ତୁ ଯେ ଉଦାର**
**ସତ୍ୟ ଅଧ୍ୟାତ୍ମ ଶାସ୍ତ୍ରରେ ଖାତର ଯାହାର,**
**ପ୍ରକୃତ ମନୁଷ୍ୟ ମଧ୍ୟେ ସେହି ଏକା ଗଣ୍ୟ**
**ଅନ୍ୟମାନଙ୍କୁ ଜାଣିବ ପଶୁଙ୍କ ସମାନ ।**
ବାରମ୍ବାର ବିଷୟାଦି ଭୋଗେ ହୋଇ ଲୀନ
ପୁନଃ ପୁନଃ ଦୃଶ୍ୟମାନ କରି ଦରଶନ
ଏ ମୂଢ଼ ମାନବ ଆତ୍ମ ବିନାଶ ନିମିତ୍ତ
ସେହି ଭୋଗ୍ୟ ଦୃଶ୍ୟାଦିରେ ଅଛଇ ଜଡ଼ିତ ।
ଏହାଠାରୁ ଆଶ୍ଚର୍ଯ୍ୟ କି ଅଛଇ ଜଗତେ
ସୁନିର୍ମଳ ମନେ ହେଜ ରାମ ମହାମତେ ।
ହେ ରଘୁକୁଳ ତିଳକ ଏମନ୍ତ କରିବ
ଶାସ୍ତ୍ର ମର୍ଯ୍ୟାଦା ଆଚାର ମାନ ବରଗିବ ।
**ଅନ୍ତରେ ଭୋଗ୍ୟ ସକଳ ଅଳୀକ ମଣିଣ**
**ମୁକ୍ତି ପଥ ଧରି ସଦା ଚଳହେ ଶ୍ରୀରାମ ।**
**ବୈରାଗ୍ୟାଦି ଗୁଣ ଏବଂ କୀରତି ନିମିତ୍ତ**
**ସାଧୁଗଣଙ୍କ ମୁଖରେ ହୁଅ ପ୍ରଶଂସିତ ।**
**ମୃତ୍ୟୁରୁ ରକ୍ଷା କରନ୍ତି ଉକ୍ତ ଗୁଣମାନ**
**ଭୋଗ ନ ପାରେ ମୃତ୍ୟୁର କରି ପରିତ୍ରାଣ ।**
ଏମନ୍ତ କେ ବ୍ୟକ୍ତି ଅଛି ଏ ମର ଜଗତେ
ପୁରୁଷକାର ଆଚରୁ ଥିବ ଶାସ୍ତ୍ର ମତେ ।
କର୍ମ ଅନୁଷ୍ଠାନ ମାନ ଆଚରୁଣ ଥିବ
ସେହି ପୁରୁଷ କି ସିଦ୍ଧି ଲଭି ନ ପାରିବ ?
ଏବେ ତୁମେ ଶୋକ ଭୟ ପରିତ୍ୟାଗ କର
ଶାସ୍ତ୍ର ମତେ କରୁଥାଅ ସତ୍ ବ୍ୟବହାର ।
ଦୁର୍ଗନ୍ଧମୟ ପଙ୍କିଳ ତପତ ସଂସାରେ
କି ଆଶା ଅଛି ମାନବ ବଞ୍ଚି ରହିବାରେ ?
ଭୋଗ୍ୟ ବସ୍ତୁରେ ତୁମ୍ଭର ନାହିଁ ପ୍ରୟୋଜନ
ଅନ୍ତରୁ ଭୋଗ ବାସନା କର ପ୍ରତ୍ୟାଖ୍ୟାନ ।
ପରିହର ସକଳ ବିଷୟ ଆହେ ବୀର୍ଯ୍ୟ
ମୋକ୍ଷ ଶାସ୍ତ୍ର ଧରି ଚଳ ଏହିଟି ତାତ୍ପର୍ଯ୍ୟ ।

ସକଳ ପଦାର୍ଥ ଜାଣ ପ୍ରତିବିମ୍ବ ମାତ୍ର
ଯତ୍ନବାନ ହୁଅ ତୁମ୍ଭେ ଲଭିବାକୁ ସତ୍ୟ ।
ଅନୁସରି ପର ମତ ପଶୁପରି ରାମ
ନ କରିବ କଉଣସି କର୍ମ ଆଚରଣ ।
**ପରିହର ସେହି ମହାନିଦ୍ରା ଆହେ ରାମ**
**ଦୁର୍ଭାଗ୍ୟଦାୟିନୀ ଦୀନ ଆଶିବା ଯେ ଗୁଣ ।**
**ହୀନବିଚାରଣାରୂପୀ ଯେଉଁ ମହାନିଦ୍ରା**
**ପ୍ରବୁଦ୍ଧ ହେଲେ ଭାଙ୍ଗିବ ତା ସକଳ ଧନ୍ଦା ।**
କଚ୍ଛପ ସଦୃଶ ଆଉ ନୁହଁ ନିଦ୍ରାଗତ
ଜରା ମରଣ ଦୁଃଖର ସୁଶାନ୍ତି ନିମିତ୍ତ
ଉଜାଗର ରହ ସଦା ଆହେ ରାମଚନ୍ଦ୍ର
ସକଳେ ଗାଉଣଥାନ୍ତୁ "ସଦା ତୁମେ ଭଦ୍ର" ।
**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଦାମ ବ୍ୟାଳ କଟ ଉପାଖ୍ୟାନେ ସଦାଚାର**
**ନିରୂପଣ ବର୍ଣ୍ଣନେ ନାମ ୩୦ଶ ସର୍ଗଃ ।**



## ୩୧ଶ ସର୍ଗଃ
## ସଦାଚାର ବିଚାର ।

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଯତ୍ନେ ଦୃଢ଼ଥିଲେ ସର୍ବବାଞ୍ଛାର ପୂରଣ ।
କଉଣସି ଶୁଭକର୍ମ କେବେ ନ ତେଜିବ
ଶୁଭକର୍ମ କରି 'ନିନ୍ଦୀ' ଲଭିଥିଲେ 'ଶିବ' ।
ମରଣକୁ ମଧ୍ୟ ଜୟ କରିଥିଲେ ସେହି
ଯତ୍ନ କଲେ ରତ୍ନମିଳେ କଥା ଅଛି ରହି ।
ବଳି ଆଦି ଦାନବେ ଯେ ଉଦ୍ୟମ ବଳରେ
ଦେବତାମାନଙ୍କୁ ଜିଣିଥିଲେ ଅକ୍ଳେଶରେ ।
ଚନ୍ଦ୍ରବଂଶ ଅଧିପତି ମରୁତ ରାଜନ
ସମ୍ବର୍ତ୍ତ ଋଷିଙ୍କୁ ଯଜ୍ଞେ କଲେକ ବରଣ ।
ମହର୍ଷି ସମ୍ବର୍ତ୍ତ ସୁର ଅସୁରଙ୍କୁ ନେଇ
ଦ୍ୱିତୀୟ ଜଗତ ସୃଷ୍ଟ ଭିଆଇଲେ ସେହି ।
କର୍ମ, ତପ, ପ୍ରଭାବରେ ବିଶ୍ୱାମିତ୍ର ମୁନି
ଦୁର୍ଲ୍ଲଭ ବ୍ରହ୍ମତ୍ୱ ଲାଭ କରିଥିଲେ ପୁଣି ।
ଶ୍ୱେତନାମା ମହାମୁନି ତପ ପ୍ରଭାବରେ
ଜଗତ ସଂହାରକାରୀ କାଳକୁ ଜିଣିଲେ ।

**ଜଗତେ ଏପରି କେହି ଦେଖାଯାଏ ନାହିଁ**
**ଶୁଭକର୍ମ କରି ଯେହୁ ଫଳ ପାଏ ନାହିଁ ।**
ତେଣୁ ଏହି ସବୁ ଚିନ୍ତା କରି ହେ ରାଘବ
ମନୁଷ୍ୟ ମାତ୍ରକେ କେଉଁ ଚେଷ୍ଟା ନ ଛାଡ଼ିବ ।
**ଅନ୍ୟାନ୍ୟ ସବୁ ବିଷୟ ଅପେକ୍ଷା ହେ ରାମ**
**ବିଶେଷ ଉଦ୍ୟମ ଲୋଡ଼ା ପାଇଁ ଆତ୍ମଜ୍ଞାନ ।**
ଆତ୍ମଜ୍ଞାନ ଲାଭେ ସବୁ ଦୁଃଖ ଦୁର୍ଗତିର
ମୂଳ ଉତ୍ପାଟନ ହୁଏ ଆହେ ରଘୁବୀର ।
ସଜ୍ଜନ ସେବା ବ୍ୟତୀତ ଖାଲି ତପସ୍ୟାରେ
ଭବସାଗର ଲଙ୍ଘନ ହୋଇ ତ ନ ପାରେ ।
ସେହି ଏକା ସତ୍‌ଜନ ବୋଲାଏ ହେ ରାମ
ଶାସ୍ତ୍ରାନୁକରଣେ କଟୁଥାଏ ଯାର ଦିନ ।
କର୍ମଅନୁଷ୍ଠାନ ବଳେ ଷଡ଼ରିପୁମାନ
କ୍ଷୟ ପ୍ରାପ୍ତ ହେଉଥାନ୍ତି ଯାର ଦିନୁଦିନ ।
ଏହିପରି ସତ୍‌ଜନଙ୍କର ସେବା ଫଳେ
କ୍ରମେ ଆତ୍ମବିତ୍ ପୁରୁଷଙ୍କ ଦେଖାମିଳେ ।
ତାଙ୍କ କୃପାବଳେ ସେବକର ଅହଂଭାବ
ବିଦୂରିତ ହୋଇଯାଏ ଜାଣ ହେ ରାଘବ ।
ଏ ଦୃଶ୍ୟ ଜଗତ ମିଥ୍ୟା ଅନୁଭୂତ ହେଲେ
ସେହି ବିଶ୍ୱଆତ୍ମା ଥିବା ଜ୍ଞାନ ଆସେ ଭଲେ ।
ଅନ୍ୟାନ୍ୟ ବସ୍ତୁର ହୁଏ ସଂପୂର୍ଣ୍ଣ ଅଭାବ
ପୂର୍ଣ୍ଣଭାବେ ଲୀନ ହୋଇଯାଏ ତହିଁ ଜୀବ ।
**ଦୃଶ୍ୟ ପଦାର୍ଥ କେବେହେଁ ନୋହେ ଉତପନ୍ନ**
**ନାହିଁ, ନ ଥିଲା, ନୋହିବ କେବେହେଁ ଶ୍ରୀରାମ ।**
କେବଳ ପରମ ଆତ୍ମା ସଦା ବିଦ୍ୟମାନ
ଶତ ସସ୍ର ଯୁକତିରେ ହୋଇଛି ପ୍ରମାଣ ।
ତତ୍ତ୍ୱଜ୍ଞ ପୁରୁଷମାନେ ଏ ବିଷୟ ଚିନ୍ତି
ଯେଉଁ ରୂପ ଅନୁଭବ ପାଇ ପାରିଛନ୍ତି ।
ସେହି ରୂପେ ମୁଁ ତୁମକୁ ଦେଖାଉଛି ତାହା
ଅନୁଧ୍ୟାନ କର ତାହା ଆହେ ରଘୁନାହା ।
ଏହି ଯେ ଜଗତଭ୍ରମ ତୁମ ଅନୁଭୂତ
ନିର୍ମଳ ଶାନ୍ତ ପରମ ଆତ୍ମା ସେ ସଂବିତ,

ମାୟାମୟ ବସ୍ତୁ ଯାହା ଦେଖ ଏ ଜଗତ
କେଉଁଠାରୁ କିପରି ବା ତାଙ୍କ ଠହୁଁ ଜାତ ?
ଚପଳ ଚିତ୍ତହିଁ ଅବିଚଳିତ ଆତ୍ମାରେ
ଏହିରୂପ ଦୃଶ୍ୟାବଳି ସଞ୍ଚରିତ କରେ ।
କେବଳ ସେ ଚିତ୍‌ଶକ୍ତିର ଆକସ୍ମିକ ଛାୟା
ଜଗତ ଆକାରେ ଆଭାସଇ ତାର କାୟା ।
ଜଗତର ଯାହାକିଛି ବିଭିନ୍ନ ସ୍ୱରୂପ
ସେ ସକଳ ଚିଦାତ୍ମାଙ୍କ ଭିନ୍ନ ଭିନ୍ନ ରୂପ ।
ଆଦିତ୍ୟ, କିରଣ ଦୁହେଁ ଯେସନ ଅଭିନ୍ନ
ଜଗତ ଚିଦାତ୍ମା ତଥା ନୁହନ୍ତି ବିଭିନ୍ନ ।
**ବିକଳ୍ପମୟ ଚିଦ୍‌ବୃତ୍ତି ସ୍ଫୁରଣୁ ଜଗତ**
**ଉଦୟ ହୋଇଣ ଥାଏ ଆହେ ରଘୁନାଥ ।**
ତାହାର ଅଭାବେ ଅସ୍ତମିତ ଏ ଜଗତ
ଜଗତ ଧନ୍ଦା ଆତ୍ମଙ୍କୁ କରେ ଅସ୍ତବ୍ୟସ୍ତ ।
ଯେ ଯାଏ ନ ଜାଣି ଅଛ ଅହଂକାର ତତ୍ତ୍ୱ
ସେ ଯାଏ ତା ଚିଦାକାଶେ ମଳ ଭାବେ ସ୍ଥିତ ।
ଜଣାପଡ଼ିଗଲେ ସେହି ଅହଂକାର ରୂପ
ପ୍ରକାଶ ପାଏ ତା ବିଶ୍ୱ-ଆତ୍ମାଙ୍କ ସ୍ୱରୂପ ।
ଅହଂଭାବ ସୁବିଜ୍ଞାତ ହୋଇବା ମାତ୍ରେଣ
ଅନହଂଭାବ ଧରେ ସେ ରାମ ତତକ୍ଷଣ ।
ସଲିଳ ସହ ସଲିଳ ମିଶିଗଲା ପରି
ପରମାତ୍ମା ସହ ଅହଂ ମିଶେ ସେହିପରି ।
ତେଣୁ ଅହଂଭାବ ଆଉ ଏ ଦୃଶ୍ୟ ଜଗତ
ଏମାନଙ୍କର ନ ଥାଏ କିଛିହିଁ ଅସ୍ତିତ୍ୱ ।
ଅହଂଭାବ ଯେ ପର୍ଯ୍ୟନ୍ତ ଘାରି ରହିଥାଏ
ଅନ୍ତରସ୍ଥ ଚିଦାଦିତ୍ୟ ପ୍ରକାଶ ନ ପାଏ ।
ହୃଦପଦ୍ମ ସେ ପର୍ଯ୍ୟନ୍ତ ନୁହେଁ ବିକଶିତ
ଅହଂ ମେଘ ତିରୋଧାନେ ସର୍ବ ଦ୍ୱନ୍ଦ୍ୱ ଅସ୍ତ ।
ସେତେବେଳେ କାହିଁ ସ୍ୱର୍ଗ କାହିଁ ବା ନରକ
କାହିଁ ବା ବନ୍ଧନ କାହିଁ ମୁକତିର ଟେକ ?
ଯେତେବେଳେ ଚିଦ୍-ସୂର୍ଯ୍ୟ ଅହଂମେଘାବୃତ
ଜଡ଼ତାହିଁ ତେତେକାଳ ଥାଏ ପ୍ରକାଶିତ ।
କେବେହେଲେ ଚିଦାଲୋକ ନୁହେଁ ପ୍ରକାଶିତ
ଖାଲି ଦୁଃଖ ପାଇଁ ଅହଂକାର କଳପିତ ।

ଦାମାଦି ଦାନବ ପରି ଏହି ମିଥ୍ୟା ଗର୍ବ
ବିରଚଇ ନରହୃଦେ ମୋହ ଜାଲ ସର୍ବ ।
ସେ ମୋହ ଜାଲରୁ ଜନ୍ମଲାଭ କରେ ତମ
ସ୍ଥୂଳ ଦେହଭାବ ଅହଂ, ତମରୁ ଜନମ ।
ସାଂସାରିକ ଦୁଃଖ ସୁଖ ଅହଂର ବିକାର
ବିଚାର ବଳେ ଯେ କରିପାରେ ତା ସଂହାର ।
ଜ୍ଞାନ ଉଦୟ ହୁଅଇ ଅନ୍ତରେ ତାହାରି
ଫଳରେ ମୁକତି ଲାଭ କରେ ସେହି ନର ।
ଅଂଭାବହୀନ ଆତ୍ମା ଅହଂଭାବ ବଳେ
ଆତ୍ମ ବିସ୍ମୃତିରେ ମଗ୍ନ ହୋଇଥାଏ ହେଳେ ।
ତେଣୁ ସଂସାର ଚକ୍ରରେ କରଇ ଭ୍ରମଣ
ଅହଂକାରର କରଣୀ ବୁଝିଲଟି ରାମ ?

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ସଦାଚାର ବିଚାର ବର୍ଣ୍ଣନେ**
**ନାମ ୩୧ଶ ସର୍ଗଃ ।**



## ୩୨ଶ ସର୍ଗଃ

## ଅହଂକାର ବର୍ଣ୍ଣନ

ବୋଲନ୍ତି ଶ୍ରୀରାମ ଦେବ କି ଉପାୟ ବଳେ
ଅହଂଭାବ ବିବର୍ଦ୍ଧିତ ପୁଣି ନୋହିପାରେ ?
ମୋହର ସଂସାର ଭୀତି ଦୂରହେବା ପାଇଁ
ବିଶଦ ଭାବେ ବୁଝାନ୍ତୁ ଆହେ ତପୀସାଇଁ ।
ଆତ୍ମାକୁ ଚିହ୍ନି ପାରିଲେ ଆତ୍ମଜ୍ଞାନ ବଳେ
ଚିନ୍ମାତ୍ର ରୂପେ ସେ ବ୍ୟକ୍ତି ଅବସ୍ଥାନ କରେ ।
ଅହଂଭାବ ବୃଦ୍ଧିପ୍ରାପ୍ତ ନୁହଁଇ ତାହାର
ଯେଣୁ ଜଗତ ଅଳିକ ଇନ୍ଦ୍ରଜାଲ ସମ
ଅନୁରାଗ ବିରାଗର କାହିଁ ପ୍ରୟୋଜନ ?
ତୁମ ଅନ୍ତରେ ଏ ଭାବ ହୁଅନ୍ତେ ଉଦିତ
ଅହଂକାର ଭାବ ପୁଣି ନୋହିବ ଉଦ୍‌ଭୂତ ।
କୌଣସି ଦୃଶ୍ୟ ଅଥବା କିଞ୍ଚିତ୍ ଅହଂଭାବ
ଆତ୍ମାରେ ନଥାଇ ଏହା ଯେ ଜନ ବୁଝିବ ।
ତଦନୁସାରେ ସକଳ କର୍ମ ଆଚରିବ
ଅହଂକାର ଭାବ ତାର କେଭେଁ ନ ବଢ଼ିବ ।
ଦ୍ରଷ୍ଟା, ଦର୍ଶନ ଓ ଦୃଶ୍ୟ ଏହି ତିନି ଭାବ
ଲୀନ ହୋଇ ଯେବେ ସମଭାବ ଉପୁଜିବ ।

ପୁନଃ ବୃଦ୍ଧି ନ ପାଇବ ତାର ଅହଂଭାବ
ମୁକତି ପଥରେ ତାର କଣ୍ଟା ନ ରହିବ ।
ଶ୍ରୀରାମ ବୋଲନ୍ତି ଏବେ କହ ତପସ୍ୱୀ
ଏହି ଯେ ଅହଂକାର ତା ଆକୃତି କିପରି ?
ତାକୁ ତେଜିବାର ଅଛି କେବଣ ଉପାୟ
ବୁଝାଇ କହ ମୋ ଯାଉ ସକଳ ସଂଶୟ ।
କହନ୍ତି ବଶିଷ୍ଠ ତାହା ଶୁଣ ହେ ରାଘବ
**ତ୍ରିବିଧ ଅଟଇ ଏହି ଅହଂକାର ଭାବ**
ତନ୍ମଧ୍ୟରୁ ଦୁଇବିଧ ଅଟଇ ଯେ ଶ୍ରେଷ୍ଠ
ତୃତୀୟ ପରିହର୍ତ୍ତବ୍ୟ ଯେଣୁ ତା ନିକୃଷ୍ଟ ।
"ମୁହିଁ ଏହି ସାରା ବିଶ୍ୱ, ମୁହିଁ ସେ ଅଚ୍ୟୁତ
ମୁହିଁ ସେହି ପରମାତ୍ମା ସର୍ବଭାବେ ସ୍ଥିତ ।
ମୋହ ବ୍ୟତୀତ ଅନ୍ୟତ୍ର କାହିଁ କିଛି ନାହିଁ"
ଏହି ଭାବ ଶ୍ରେଷ୍ଠ ଅହଂକାର ଯେ ବୋଲାଇ ।
ଏହି ଅହଂକାର ଜାଣ କାରଣ ମୁକ୍ତିର
**ଜୀବନ ମୁକ୍ତଙ୍କ ଥାଏ ଏହି ଅହଂକାର ।**
**ଅନ୍ୟ ସକଳ ବସ୍ତୁରୁ ପୃଥକ ଯେ ମୁହିଁ**
**ଦ୍ୱିତୀୟ ଅହଂଭାବଟି ଏହାକୁ ଯେ କହି ।**
କେଶାଗ୍ରର ଏକ ଶତାଂଶରୁ ଏହା ସୂକ୍ଷ୍ମ
ଜୀବନମୁକ୍ତଙ୍କ ଅଧିକାର ଏଥି ଜାଣ ।
ଏହା ପୁଣି ସେମାନଙ୍କ ମୁକ୍ତିର କାରଣ
ଦ୍ୱିତୀୟ ଅହଂକାରର ଏହି ମାତ୍ର ଗୁଣ ।
**ଅବୟବ ଯୁକ୍ତ ଯେହୁ ମାନବ ଶରୀର**
**ତହିଁ ଥିବା ଅହଂଜ୍ଞାନ ଶେଷ ଅହଂକାର**
ଏହି ଅହଂକାର ଜାଣ ଆତ୍ମାର ବଇରୀ
ଏହା କବଳରୁ ପ୍ରାଣୀ ନ ପାରେ ଉବୁରି ।
ଏ ଅହଂକାର ଭାବର ହୋଇ କବଳିତ
ନାନା ସଂକଟରେ ପ୍ରାଣୀ ହୁଏ ନିପତିତ ।
ଶ୍ରେଷ୍ଠ ଦୁଇ ଅହଂକାର ଭାବ ହୃଦେ ଧରି
ରାଗାଦି ରିପୁ ସମୂହ ଯେହୁ ତେଜିପାରି ।
ନିକୃଷ୍ଟ ଅହଂକାରରୁ ମୁକତି ସେ ପାଏ
ଅହଂକାର ଏଠି ଗୁଣ ବୋଲି ଧରାଯାଏ ।
ଦାମାଦି ଅସୁରଙ୍କର ଯେବଣ ଦୁର୍ଦ୍ଦଶା
ନିକୃଷ୍ଟ ଅହଂକାରରେ ତାଙ୍କ ବଳ କଷା ।
ଯାହା ସେ ଭୋଗିଅଛନ୍ତି ବର୍ଣ୍ଣିବ କିଏ ସେ
ସେ କଥା ଭାବିଲେ ମନେ ମହାଦୁଃଖ ଆସେ
ଶ୍ରୀରାମ କହନ୍ତି ଏବେ ଶୁଣ ଗୁରୁଦେବ
ତୃତୀୟ ଅହଂକାର ଯେ ବରଜି ପାରିବ ।
କିଭାବ ସମ୍ପୂର୍ଣ୍ଣ ହେବ ସେପରି ମାନବ
ସଦୟ ହୋଇ ବୁଝାଇ କହ ଗୁରୁଦେବ ।
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ତୃତୀୟ ଅହଂକାରକୁ କରି ପରିହାର ।
ଯେଉଁଭାବେ ଅବସ୍ଥାନ କରିଲେ ହେଁ ପ୍ରାଣୀ
ଆତ୍ମବୋଧ ଉତ୍କର୍ଷତା ଲଭେ ତାହା ଘେନି,
ଉତ୍କୃଷ୍ଟ ଅହଂକାରକୁ ଆଶ୍ରୟ କରିଣ
ତହିଁ ଅବସ୍ଥାନ କରିପାରେ ଯେଉଁ ଜନ ।
ପରମପଦକୁ ଲାଭ କରିପାରେ ସେହି
ଭାଗ୍ୟବାନ ତାହାଠାରୁ ଜଗତରେ ନାହିଁ ।
ଉତ୍କୃଷ୍ଟ ଅହଂକାରକୁ ତେଜିପାରେ ଯେହି
ଏକବାରେ ଅହଂକାର ଶୂନ୍ୟ ହୁଏ ସେହି ।
ପୂର୍ବାପେକ୍ଷା ଉଚ୍ଚପଦେ କରେ ଆରୋହଣ
ପରମାନନ୍ଦ ପଦରେ ରହେ ଚିରଦିନ ।
ସେ ପରମାନନ୍ଦ ପଦ ଲଭିବାର ପାଇଁ
ନିକୃଷ୍ଟ ଅହଂକାରକୁ ତେଜିବା ଯୋଗାଇ ।
ପାପପୂର୍ଣ୍ଣ ଅଟେ ଏହି ତୃତୀୟାହଂକାର
ଶରୀରସ୍ଥ ବ୍ୟାଧି ମଣି ତେଜି ହେ ମୁକର,
ସର୍ବଶ୍ରେଷ୍ଠ ଉପାୟ ତା ପରଂପଦ ପାଇଁ
ଧନ୍ୟ ସେ ମାନବ ତାକୁ ଲଭିପାରେ ଯେହି ।
ପରିହରି ଏହି ଲଉକିକ ଅହଂକାର
ଯେ କୌଣସି କର୍ମ କରୁଥାଉ ପଛେ ନର,
ତାହାଦ୍ୱାରା ଅଧୋଗତି ପ୍ରାପତ ନୋହିବ
ଭବବ୍ୟାଧି ମହୌଷଧି ଏହା ଯେ ରାଘବ ।
ଅହଂକାର ତେଜି ଯେହୁ ସନ୍ତୁଷ୍ଟ ଚିତ୍ତରେ
କାଳକାଟେ ଭୋଗାକାଂକ୍ଷା ନଥାଇ ତାହାରେ ।
ବିଷୟ ଭୋଗକୁ ବିଷପରି ମଣେ ସେହୁ
ବିଷୟ ବାସନା ଆଉ ରହିବ ତା କାହୁଁ ?
ଭୋଗ ବାସନାର ଯେବେ ଘଟଇ ନିବୃତ୍ତି
ସ୍ୱତଃ କଲ୍ୟାଣ ଶ୍ରୀ ତାର ପାଶେ ପହୁଞ୍ଚନ୍ତି ।
ମନ ଅନ୍ଧକାର ଯେବେ ହୁଏ ବିଦୂରିତ
କାହିଁ ବାଧା କଇଲାଣ ପ୍ରାପତିର ପଥ ?

ଧୈର୍ଯ୍ୟ, ଯତ୍ନସହ ଅହଂକାର ବରଜିଲେ
ଭବସାଗରକୁ ତରିପାରେ ଜୀବ ଭଲେ ।
"ଏସବୁ ମୋହର ମୁହିଁ ଏ ଦୃଶ୍ୟ ସମସ୍ତ"
ଏପରି ଭାବ ଅନ୍ତରେ ହୁଅନ୍ତେ ଉଦିତ
ବିଶୁଦ୍ଧ ଆତ୍ମ ସଂବିଦ୍ ଅବଲମ୍ବନରେ
ପରମ ପଦକୁ ନର ଲଭିଥାଏ ହେଳେ ।

**ଇତିଶ୍ରୀ ଯୋଗବାଶିଷ୍ଠ ସ୍ଥିତି ପ୍ରକରଣେ**
**ଦାମ, ବ୍ୟାଳ କଟ ଅହଂକାର**
**ବର୍ଣ୍ଣନେ ନାମ ୩୨ଶ ସର୍ଗଃ ।**



## ୩୩ଶ ସର୍ଗଃ

## ଭୀମ, ଭାସ, ଦୃଢ଼ ଉପାଖ୍ୟାନ

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ଦାମ, କଟ, ବ୍ୟାଳଙ୍କର ପୁରିଯାନ୍ତେ କାଳ ।
ବିନାଶପ୍ରାପ୍ତ ହୁଅନ୍ତେ ଶମ୍ବର ସଇନ
ଭାଳେଣି କରେ ଶମ୍ବର ବସି ମନେ ମନ ।
ଦାମ ବ୍ୟାଳ କଟ ମୋର ମୂର୍ଖତା ବଶତଃ
କ୍ରମେ କ୍ରମେ ହୋଇଥିଲେ ଅହଂକାରଗ୍ରସ୍ତ ।
ତେଣୁ ସେମାନେ ଅକାଳ ମରଣ ଲଭିଲେ
ଦେବଗଣଠାରୁ ଯୁଦ୍ଧେ ପରାଜିତ ହେଲେ ।
ରାଗଦ୍ୱେଷ ଅହଂକାର ରିପୁର ଏ ଫଳ
ତତ୍ତ୍ୱଜ୍ଞାନ ଅଭାବରୁ ଘଟିଲା ସକଳ ।
ଏବେ ଏମନ୍ତ ଅସୁର ବଳ ଭିଆଇବି
ସ୍ୱର୍ଗପୁରକୁ ଶ୍ମଶାନ ଭୂମି କରିଦେବି ।
ତତ୍ତ୍ୱଜ୍ଞାନ ବଳେ ବଳିୟାର ହେବେ ସେହି
ଅହଂକାର ବଶୀଭୂତ କେବେ ହେବେ ନାହିଁ ।
**ଅହଂକାରହିଁ ଯାବତ ଅବନତି ମୂଳ**
**ଅବିବେକିତା ତହିଁକି ଝୋଟକୁ ଅନଳ ।**
ଅଧ୍ୟାତ୍ମଜ୍ଞାନରେ ବଳୀ ହୁଅନ୍ତେ ସେମାନେ
ଚିରକାଳ ଛତ୍ରଭଙ୍ଗ ଦେବେ ଦେବଗଣେ ।
ମାୟାବଳେ ସେ ଶମ୍ବର ଏମନ୍ତ ଯେ କଲା
ତିନୋଟି ଅସୁର ସୃଷ୍ଟି କରି ଠିଆକଲା ।
ସେମାନଙ୍କ ନାମ ଦେଲା ଭୀମ, ଭାସ, ଦୃଢ଼
ଦାମ, କଟ, ବ୍ୟାଳ ସମ ନୁହନ୍ତି ସେ ମୂଢ଼ ।
ତିନିଜଣଯାକ ଆତ୍ମତତ୍ତ୍ୱରେ ଅଭିଜ୍ଞ
ଶାସ୍ତ୍ର ଆଲୋଚନାବେଳେ ହାରୁଥାନ୍ତି ବିଜ୍ଞ ।
ନିଷ୍ପାପ ଓ ବୀତରାଗ ବୁଦ୍ଧି ସୁନିର୍ମଳ
ସଦା ବାସନା ବିହୀନ ତାଙ୍କ ହୃଦସ୍ଥଳ ।
ନ ଜାଣନ୍ତି ଅହଂକାର ନମ୍ରତାରେ ଧନୀ
ତାଙ୍କୁ ଦେଖି ମଥା ପୋତୁଥାନ୍ତି ସର୍ବଜ୍ଞାନୀ ।
ଯେତେବେଳେ ଯେଉଁ କାର୍ଯ୍ୟେ ଦିଅନ୍ତି ସେ ହାତ
ଏକାଗ୍ର ଚିତ୍ତେ ଲାଗନ୍ତି ସରିବା ପର୍ଯ୍ୟନ୍ତ ।
ଜଗତକୁ ତୃଣପରି ମଣନ୍ତି ସେମାନେ
ଯୁଦ୍ଧେ ମାତିଗଲେ ବହୁ ବର୍ଷ ପରିମାଣେ ।
ଯେତେବେଳେ ଯୁଦ୍ଧ ଲାଗେ ଦେବେ ହାରୁଥାନ୍ତି
ଏହିପରି ବହୁ ବର୍ଷ ଗଲା କେଣେ ବିତି ।
କ୍ଷଣକାଳ ପାଇଁ ମଧ୍ୟ ତାହାଙ୍କର ମନ
ଗର୍ବ ଅହଂକାର ନ ଛୁଇଁଲା କଦାଚନ ।
ବାସନା ଜନ୍ମିଲା କ୍ଷଣି ତାଙ୍କର ହୃଦରେ
ବିନାଶ କରନ୍ତି ତାହା ସୁବିଚାର ବଳେ ।
"ଏ ଦେବଗଣ ଅସତ୍ୟ ଆମ୍ଭେ ମଧ୍ୟ ତଥା"
ଏହି ଜ୍ଞାନ ବଳେ ଫୁଲି ଉଠେ ତାଙ୍କ ମଥା ।
ଖାତିରି ନାହିଁ ଦେବଙ୍କୁ ନାହିଁ ତାଙ୍କୁ ଭୟ
ଆତ୍ମ ବଳହିଁ ସମ୍ପତ୍ତି, ଧନର ଆଶ୍ରୟ ।
ବାସନା ଓ ଅହଂକାର ଯେଣୁ ବିବର୍ଜିତ
ନିଜେ କଲେ ବୋଲି ଅଭିମାନ ନୁହେଁ ଜାତ ।
ଏ ଅଟେ ପ୍ରଭୁର କାର୍ଯ୍ୟ ତେଣୁ ଏ କର୍ତ୍ତବ୍ୟ
ଭାବି, ଯୁଦ୍ଧେ ମାତନ୍ତି ନ ଡରି ଭବିତବ୍ୟ ।
ଭୀମାଦି ଅସୁରଙ୍କର ଯୁଦ୍ଧ କୌଶଳରେ
କ୍ରମଶଃ ଦେବତାଗଣ ହତ ଦଗ୍ଧ ହେଲେ ।
ଛତ୍ରଭଙ୍ଗ ଦେଇ ଦେବେ କଲେ ପଳାୟନ
ବିଷ୍ଣୁଙ୍କ ସାନ୍ନିଧ୍ୟେ ଯାଇ ପଶିଲେ ଶରଣ ।
ଦେବଙ୍କୁ ଆଶ୍ୱାସ ଦେଇ ବିଷ୍ଣୁ ଭଗବାନ
ନିଜେ ଶମ୍ବର ସହିତେ ଆରମ୍ଭିଲେ ରଣ ।
ସେ ଯୁଦ୍ଧରେ ଦୈତ୍ୟଗଣ ହୋଇଲେ ନିଧନ
ବିଷ୍ଣୁ ଧାମକୁ ଶମ୍ବର କଲେକ ଗମନ ।
ଭୀମ, ଭାସ, ଦୃଢ଼ ଏହି ତିନି ଯେ ରାକ୍ଷସ
ବିଷ୍ଣୁଙ୍କ ହସ୍ତରେ ସେହୁ ଲଭନ୍ତେ ବିନାଶ ।
ଯେଣୁ ତାଙ୍କର କୌଣସି ବାସନା ନ ଥିଲା
ଦେହାନ୍ତେ ପରମ ଶାନ୍ତି ତାହାଙ୍କୁ ମିଳିଲା ।
**ବାସନା ପ୍ରଭାବେ ମନ ସଂସାରେ ଆବଦ୍ଧ**
**ବାସନା ବିନାଶ ହେଲେ ଲଭେ ମୁକ୍ତି ପଦ ।**

ତେଣୁ ମୁଁ କହୁଛି ରାମ ବିବେକ ବଳରେ
ବାସନା ଶତ୍ରୁକୁ ନାଶ ଦୃଢ ମନବଳେ ।
**ଆତ୍ମା ସତ୍ୟ-ସ୍ୱରୂପତା କଲେ ଦରଶନ**
**ସକଳ ବାସନାମାନ ହୁଏ ବିନାଶନ ।**
ବାସନା ବିଲୀନ ହେଲେ ଆସେ ଚିର ଶାନ୍ତି
ଜ୍ଞାନ ଖଡ୍‌ଗ ବାସନାକୁ ଛେଦ ରଘୁପତି ।
ଆତ୍ମା-ମୟ ଅଟେ ଏହି ସକଳ ଜଗତ
ଆତ୍ମା ବ୍ୟତୀତ ଜଗତେ ନାହିଁ କିଛି ସତ୍ୟ ।
**ସେହି ପୂର୍ଣ୍ଣାତ୍ମା କେବଳ ନାନା ଚିନ୍ତାକରେ**
**ମୋହର କୌଣସି ଚିନ୍ତା ନ ଥାଇ ତହିଁରେ ।**
**ଏହି ଜ୍ଞାନହିଁ ଯଥାର୍ଥ ଜ୍ଞାନ ହେ ରାଘବ**
**ଏହାଛଡ଼ା ଅନ୍ୟସବୁ ଅଜ୍ଞାନ ବୁଝିବ ।**
**ସତ୍ୟ ସ୍ୱରୂପ ଆତ୍ମାର ହେଲେ ଦରଶନ**
**ବାସନା ଚିତ୍ତ ଯହିଁରେ ହୁଅଇ ବିଲୀନ ।**
**ତାହାହିଁ ପରମ ପଦ ବୁଝ ହେ ରାଘବ**
**ଯାହାର ଦରଶନ ହିଁ ମାନବ କର୍ତ୍ତବ୍ୟ ।**
**ବାସନାରେ ବଦ୍ଧହୋଇ ଚିତ୍ତ ହୁଏ ଚିତ୍ତ**
ବାସନା ମୁକତ ହେଲେ ସେ ଚିତ୍ତ ଅଚିତ୍ତ ।
ଦେହେ ଆତ୍ମଭାବ ଘେନି ଦାମ ବ୍ୟାଳ କଟ
ବଦ୍ଧଚିତ୍ତ ହୋଇ ହେଉଥାନ୍ତି ଛଟପଟ ।
ତୁମର୍ ଚିତ୍ତ ଯେସନ ସେ ରୂପ ନ ହୋଇ
ଭୀମ ଭାସ ଦୃଢ଼ଙ୍କର ସୁଦଶା ଲଭଇ ।
ଧୀମାନ ଅଗ୍ରଣୀ ତୁମେ ପୁଣି ମୋର ଶିଷ୍ୟ
ତୁମ ଆଗେ ଯାହା ମୁହିଁ କଲି ପରକାଶ ।
ମୋର ପିତା ବ୍ରହ୍ମା ତାହା କହିଥିଲେ ମୋତେ
ଏଥିରେ ମୋର ନିଜତ୍ୱ ନାହିଁ କଦାଚିତେ ।
ପୁନର୍ବାର କହୁଅଛି ତୁମର ଅଗ୍ରତେ
ଦାମ ବ୍ୟାଳ କଟ ଦଶା ନ ଘଟେ ଯେମନ୍ତେ ।
ଭୀମ ଭାସ ଦୃଢ଼ଙ୍କର ଆଦର୍ଶ ଯେସନ
ତୁମ ହୃଦେ ନୃତ୍ୟ କରୁଥାଏ ରାତ୍ରିଦିନ ।
ସକଳ ବିଷୟେ ତୁମେ ଅନାସକ୍ତ ହେବ
ଭୀମାଦିଙ୍କ ଭାବ ଯେବେ ଆଦର୍ଶ ରଖିବ ।
ବିଷୟାଶକ୍ତ ଅଭାବେ ତତ୍ତ୍ୱଜ୍ଞାନୋଦିତ
ସଂସାର ବନ୍ଧନୁ ତେବେ ହୋଇବ ମୁକତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଭୀମ,ଭାସ ଦୃଢ଼ ଉପାଖ୍ୟାନ**
**ବର୍ଣ୍ଣନେ ନାମ ୩୩ଶ ସର୍ଗଃ ।**



## ୩୪ଶ ସର୍ଗଃ

## ଉପଶମ ରୂପ ବର୍ଣ୍ଣନ

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁରାଇ
ମନକୁ ଯେ ଜିଣେ ସେହି ବାସ୍ତବ୍ ବିଜୟୀ ।
ନିଜ 'ମନ'କୁ ଯେ କରି ପାରଇ ଅଧୀନ
ତାହାକୁ ଜାଣିବ ରାମ ବୀର ଅଗ୍ରଗଣ୍ୟ ।
ନିଜର ମନକୁ କରିପାରେ ଯେ ସଂଯତ
ଭବ ପାରାବାର ତରିବାକୁ ସେ ସମର୍ଥ ।
ନିଖିଳ ଜ୍ଞାନ ମଧରେ ଯାହା ଶ୍ରେଷ୍ଠ ଜ୍ଞାନ
ତାହା ମୁଁ ତୁମ୍ଭକୁ କରୁ ଅଛଇ ପ୍ରଦାନ ।
ଭୋଗ ବାସନାହିଁ ଅଟେ ସଂସାର ବନ୍ଧନ
ସେ ବାସନା ପରିତ୍ୟାଗ ମୁକତି ସମାନ ।
ବହୁ ଶାସ୍ତ୍ର ଶ୍ରବଣରେ ନାହିଁ ପ୍ରୟୋଜନ
ମୋ କଥାରେ ବିଷୟକୁ ବିଷବତ ମଣ ।
ବିନା ବିଚାରେ ବିଷୟ ଭୋଗ ବରଜନ
କଷ୍ଟକର ଅଟେ ଆହେ ଶ୍ରୀ ରଘୁନନ୍ଦନ ।
ବିଚାରଶୀଳ ହୋଇ ଯେ ବିଷୟ ଭୋଗଇ
ଅବଶେଷେ ସୁଖପ୍ରଦ ତାହା ହୋଇଥାଇ ।
ବୀଜ ବପନରୁ ଯଥା ବୃକ୍ଷ ଉପୁଜଇ
ଚିତ୍ତ ବାସନାରୁ ରାଗ ରୋଷ ଜନମଇ ।
ବାସନା ବିହୀନ ଚିତ୍ତ ସ୍ୱତଃ ନିମୀଳିତ
ରାଗ ଦ୍ୱେଷ ବିହୁନରେ ହୁଏ-ଶାନ୍ତି ପ୍ରାପ୍ତ ।
ଶୋକ, ମୋଦ, ଚପଳତା ଭୟ ଓ ସଂଶୟ
କ୍ଷୋଭ ଆଦି ସବୁଙ୍କର ହୁଅଇ ବିଲୟ ।
ତୃଷ୍ଣା ଓ ସନ୍ଦେହାତ୍ମକ ମନୋମୟୀ ମୂର୍ତ୍ତି
ତାକୁ ବିନାଶ କରିଣ ଲଭେ ନବଶକ୍ତି ।
ଜୀବନ ମୁକତି, ପରମାର୍ଥ ସାଧନରେ
ଯତ୍ନବାନ ହୋଇ ସିଦ୍ଧି ଲାଭ କରିପାରେ ।

**"ମନ ଅଭ୍ୟୁଦୟ ନାମ" ପୁରୁଷ ବିନାଶ**
ପୁରୁଷର ଅଭ୍ୟୁଦୟେ ମନ ଯାଏ ନାଶ ।
ତା ଚିତ୍ତ ବିଲୀନ ହୁଏ ଯେ ପୁରୁଷ ବିଜ୍ଞ
ବର୍ଦ୍ଧିତ ହୁଏ ତା ଚିତ୍ତ ଯେ ପୁରୁଷ ଅଜ୍ଞ ।
ମନହିଁ ସର୍ବ ଜଗତ ମନହିଁ ଦେବତା
ମନହିଁ ବଇରୀ, ମନ ଅରଜେ ମିତ୍ରତା ।
ଚିଦାତ୍ମ ବିସ୍ମୃତିରୁ ହିଁ ମନର ଜନମ
କାଳିମାଯୁକ୍ତ ଯେ ଚିତ୍ତ ଧରେ ଜୀବ ନାମ ।
ଦୃଶ୍ୟ ରୂପେ ପରିଣତ ହୋଇ ଏ ଚିତ୍ତତ୍ୱ
ପାଶୋରି ଦିଏ ନିଜର ଆତ୍ମସ୍ୱରୂପତ୍ୱ ।
ଆତ୍ମ-ବିଶୁଦ୍ଧି ଲଭିଛି ଯେବଣ ମାନବ
ତାହାର ଅବସ୍ଥା ଏବେ ଶୁଣ ହେ ରାଘବ ।
ସଂସାରେ ଥାଇଣ ମଧ୍ୟ ନୁହେଁ ସେ ସଂସାରୀ
ଶରୀର ଥିଲେ ହେଁ ସେହୁ ଅଟେ ଅଶରୀରୀ ।
ମହତ ଅଟଇ ଯଥା ବିଶାଳ ଗଗନ
ନିର୍ଲେପ ଚୈତନ୍ୟ ରୂପେ କରେ ଅବସ୍ଥାନ ।
ଏ ଶରୀର ଜଡ଼ ରାମ, ମନ ଅଟେ ଜୀବ
ବିଶୁଦ୍ଧ ଚିତ୍ତ କେବେହେଁ ନୁହଁଇଟି ଜୀବ ।
ଆକାରସମ୍ପନ୍ନ ହୋଇ ମନ ଯେ ମାନବ
ପୁଣି ସେ ନିଜକୁ ମଣେ ଆତ୍ମା ହେ ରାଘବ ।
ଲାଗିପଡ଼ି କୋଷାକାର କୀଟ ଗଢ଼େ କୋଷ
କାଳେ ସେହି କୋଷ ହୁଏ ତା ବନ୍ଧନ ବାସ ।
ବାସନାରାଶି ଘେନିଣ ମନ ସେହିପରି
ନିଜେ ବନ୍ଧନେ ପଡ଼ଇ ଜୀବରୂପ ଧରି ।
ପରେ ଏହି ମନ-ଜୀବ ଦେହତ୍ୟାଗ କରି
ଦେଶାନ୍ତରେ କାଳାନ୍ତରେ ଅନ୍ୟ ଦେହ ଧରି ।
ଯେପରି ବାସନାମାନ ପୋଷିଥାଏ ସେହି
ସେହି ଭାବ ଧରି ଜନ୍ମଗ୍ରହଣ କରଇ ।
ଶୁଭ୍ର ମହାନ ବାସନା ଧରି ଏହି ମନ
ଜନମିଲେ ସେହି ଭାବ କରଇ ଧାରଣ ।
ପୁଣି କ୍ଷୁଦ୍ର ଓ ଅଶୁଭ ବାସନାରେ ବଳେ
କ୍ଷୁଦ୍ର ବା ଅଶୁଭ ଭାବ ଧରିଥାଏ ହେଲେ ।
ସୁନିର୍ମଳ ଥାଏ ଯେବେ ସରୋବର ଜଳ
ଆବିଳତା ରହି ନ ପାରଇ ଯେ ତହିଁର ।
ସେହି ଜଳ ଯେତେବେଳେ ଆବିଳ ହୁଅଇ
ତହିଁ ମଧ୍ୟେ ନିର୍ମଳତା ଦେଖାଯାଏ ନାହିଁ ।
ସେହିପରି ମନ ଯେବେ ମଳିନ ହୁଅଇ
ଅନୁରୂପ ଫଳ ଭୋଗ ସେହୁ କରୁଥାଇ ।
ପୁଣି ଯେତେବେଳେ ମନ ହୁଅଇ ନିର୍ମଳ
ତଦ ଅନୁରୂପ ଲଭୁଥାଏ ସେହୁ ଫଳ ।
ସମ୍ପୂର୍ଣ୍ଣ ଭାବେ ନିର୍ମଳ ଅଟେ ଯାର ମନ
ଦୈବବଶେ ହୁଏ ଯେବେ ବିପଦ ଆପନ୍ନ ।
ମନ ମଧ୍ୟେ ମଳିନତା ଯେବେ ଆସିଯାଏ
ଉଦ୍‌ଯୋଗ ବଳେ ସତ୍ୱର ନିର୍ମଳତା ପାଏ ।
ଏପରି ଦୃଷ୍ଟାନ୍ତ ମଧ୍ୟ ଦେଖାଯାଇଥାଏ
ଶୁଦ୍ଧ ଚିତ୍ତଠୁ ବିପଦ ସଦା ଦୂରେ ରହେ ।
ଏହି ଜଗତ କେବଳ ଇନ୍ଦ୍ର ଜାଲ ପରି
ମିଥ୍ୟା, ମାୟା, ଭ୍ରାନ୍ତିପୂର୍ଣ୍ଣ ଦୃଷ୍ଟିରେ ତାଙ୍କରି ।
ଦୃଶ୍ୟ ଅଦୃଶ୍ୟ ଜଗତ ସବୁ ଅଟେ ବ୍ରହ୍ମ
ତା ମଧ୍ୟରେ ଦ୍ୱୈତାଦ୍ୱୈତ କିଛି ନାହିଁ ଜାଣ ।
"ମୁହିଁ କ୍ଷୁଦ୍ର ପରିଚ୍ଛିନ୍ନ" ଏଇ ମିଥ୍ୟାଜ୍ଞାନ
"ମୁଁ ଅନନ୍ତ ସର୍ବବ୍ୟାପୀ" ଚିନ୍ତାରେ ତା ଲୀନ ।
ସର୍ବଗ ନିର୍ମଳ ଆତ୍ମା ଥିଲେ ହେଁ ହେ ରାମ
**'ଦେହୋହଂ' ଏଇ ଧାରଣା ଆଣଇ ବନ୍ଧନ ।**
ସ୍ୱୀୟ ବାସନା ବଳେ ହିଁ ଜାତ ଏ ବନ୍ଧନ
ବାସନା ହିଁ ସର୍ବକାଳେ ବନ୍ଧନ କାରଣ ।
ସର୍ବ ସ୍ୱରୂପ ବ୍ରହ୍ମର ବନ୍ଧନ, ମୁକତି
ଏକତ୍ୱ ବା ଦ୍ୱୈତଭାବ କିଛି ତ ନାହାନ୍ତି ।
ଅନାଶକ୍ତି ବଳେ ମନ ହେଲା ସୁନିର୍ମଳ
ମନ ରୂପ ଆକୃତି ତା' ଯେବେ ହୁଏ ଦୂର ।
ଏହି ଶରୀରରେ ମଧ୍ୟ ବ୍ରହ୍ମ ସାକ୍ଷାତ୍‌କାର
ନିଃସନ୍ଦେହେ ଘଟିପାରେ ଦଶରଥବାଳ ।
"ମଦୀୟ ଆତ୍ମା ଏ ସର୍ବ" ଏମନ୍ତ ଚିନ୍ତିଣ
ହେୟ ଉପାଦେୟ ବୁଦ୍ଧି କରିଦିଅ ଛିନ୍ନ ।
ତେବେ "ବନ୍ଧନ ମୁକତି" ଏହି ଭାବମାନ
ପରିହାର କରିବାକୁ ହେବ ହେ ସକ୍ଷମ ।
ସ୍ଫଟିକ ମଣିରୁ ଦ୍ୟୁତି ନିର୍ଗତ ଯେସନ
ଏ ଜଗତ ପ୍ରତିଭାସ ମନ ମଧ୍ୟୁ ଜାଣ ।
ବାହ୍ୟ ପଦାର୍ଥରେ ଯେଉଁ ଚିତ୍ତ ବିରାଜିତ
ବ୍ରହ୍ମେ ଏକାଗ୍ରତା କେଭେଁ ନୁହେଁ ସେ ପ୍ରାପତ ।
ଅନ୍ତରେ ବାହାରେ ଯେତେବେଳେ ଏହି ଚିତ୍ତ
ଦୃଶ୍ୟ ଦର୍ଶନରୁ ସଦା ହୁଅଇ ବିରତ ।

ତେତେବେଳେ ବ୍ରହ୍ମପଦ ଲଭି ସେ ପାରଇ
ଏହି ତତ୍ତ୍ୱ ବୁଝିରଖ ଆହେ ରଘୁରାଇ
ଦୃଶ୍ୟ ରୂପରେ ବିସ୍ତୃତି ଚିତ୍ତର ସ୍ୱରୂପ
ଏହା ବ୍ୟତୀତ ଚିତ୍ତର ନାହିଁ ଅନ୍ୟ ରୂପ ।
ଚିତ୍ତର ଆଦି ବା ଅନ୍ତ ଯେବେ ନୁହେଁ ସତ
ମଧ୍ୟ ଅଂଶ ତାର ତେଣୁ ନିଶ୍ଚୟ ଅସତ ।
ଏ ରହସ୍ୟ ଯେ ଜନକୁ ନୁହଇ ବିଦିତ
ବହୁ ଦୁଃଖ ଭୋଗିବ ସେ ଏହା ସୁନିଶ୍ଚିତ ।
ଏକମାତ୍ର ଆତ୍ମା ଅଟେ ଏହି ଯେ ଜଗତ
ଯେତେବେଳେ ଯାଏ ନୁହେଁ ଏ ଭାବ ଉଦିତ ।
ବହୁ ଦୁଃଖ ଦେଇଥାଏ ତାଙ୍କୁ ଏ ଜଗତ
ହେତୁ ରଖ ଯା କହୁଛି ଅଟେ ଧ୍ରୁବସତ୍ୟ ।
ଜଗତରେ ଆତ୍ମବୋଧ ହେଲେ ପ୍ରତିଷ୍ଠିତ
ଭୁକ୍ତି ମୁକ୍ତି ଉଭୟ ହିଁ ହୁଏ ପରାପତ ।
ଜଳ ଏକ ବସ୍ତୁ କିନ୍ତୁ ତରଙ୍ଗ ଯେ ଅନ୍ୟ
ଏହି ରୂପ ଭେଦଜ୍ଞାନ ଅଟଇ ଅଜ୍ଞାନ ।
ଆକୃତିରେ ବିଭିନ୍ନତା ଥିଲେହେଁ ତାଙ୍କର
ଉଭୟେ ଏକଇ ବସ୍ତୁ ଏ ମତ ଯାହାର ।
ସେହି ସିନା ଏ ଜଗତେ ଅଟେ ଜ୍ଞାନୀବର
ଭେଦଜ୍ଞାନ ଥିଲେ ଅଟେ ଅଜ୍ଞାନୀପ୍ରବର ।
"ଏ ଅଟେ ଉତ୍‌କୃଷ୍ଟ କିନ୍ତୁ ସେ ଅଟେ ନିକୃଷ୍ଟ"
ଏହିପରି ଜ୍ଞାନ ଥିଲେ ପାଏ ବହୁ କଷ୍ଟ ।
ଶ୍ରେୟର ଅପ୍ରାପ୍ତି କିନ୍ତୁ ଅଶ୍ରେୟର ପ୍ରାପ୍ତି
କଷଣ ଭୋଗର ହେତୁ ସଦା ହୋଇଥାନ୍ତି ।
ତତ୍ତ୍ୱଜ୍ଞାନେ ଏ ଭେଦକୁ କରିଦେଲେ ନଷ୍ଟ
ଅଖଣ୍ଡ ଜ୍ଞାନହିଁ ମାତ୍ର ରହେ ଅବଶିଷ୍ଟ ।
ଜଣା ନ ଯାଏ କୌଣସି ଅଭାବ ସେ ବେଳେ
ଦୁଃଖଭୋଗ ଅବସର କାହୁଁ ତେତେବେଳେ ?
ମନ ଯେ ଅସତ୍ ଏହା ଏବେ ସ୍ଥିର ଜାଣ
ତା ଧ୍ୱଂସରେ କାହିଁ ତବ ଦୁଃଖର କାରଣ ?
ସ୍ନେହହୀନ ବନ୍ଧୁଙ୍କର ଉପେକ୍ଷାକରଣ
ନୋହିପାରେ କେବେ କିଛି କ୍ଷତିର କାରଣ ।
କେବେହେଁ ଆସକ୍ତ ନୁହ ଦୃଶ୍ୟ ପ୍ରତି ରାମ
ତାର ଉପେକ୍ଷାରେ ତୁମ କ୍ଷତି ନାହିଁ ଜାଣ ।
ସ୍ନେହହୀନ ବନ୍ଧୁଙ୍କର ସୁଖ ଦୁଃଖ ଦେଖି
ନର ନୋହିଥାଏ ଯେଉଁପରି ସୁଖୀ ଦୁଃଖୀ ।

ତତ୍ତ୍ୱଜ୍ଞାନ-ସୂର୍ଯ୍ୟ ଯାର ଅନ୍ତରେ ଉଦୟେ
ଭୌତିକ ସୁଖେ ଦୁଃଖେ ସେ ଚଳିତ ନ ହୁଏ ।
ଦ୍ରଷ୍ଟା ଦୃଶ୍ୟ ଉଭୟଙ୍କ ମଧ୍ୟରେ ଶ୍ରୀରାମ
ଯେ ଦର୍ଶନ-ରୂପ ଜ୍ଞାନ ଅଛି ବିଦ୍ୟମାନ ।
ସେହି ସତ୍ୟ ସେହି ଶିବ, ବ୍ରହ୍ମ ସନାତନ
ସୁନିଶ୍ଚିତ ଭାବେ ଯାକୁ ଧରିବ ଯେ ଜନ ।
ଉପଶମ ପରାପତ ହେବ ତାର ମନ
ଦ୍ରଷ୍ଟା ଦୃଶ୍ୟ ଭାବ ରାମ ହୋଇଗଲେ ଲୀନ ।
ମନରୂପୀ ଝଞ୍ଜା ଯେବେ ହୁଏ ପ୍ରଶମିତ
ସ୍ଥୂଳ-ଦେହ-ରୂପ ଧୂଳି ହୁଏ ଭୂମିସାତ ।
ବାସନା କ୍ଷୀଣରେ ଚିତ୍ତ ପୂର୍ଣ୍ଣ ସୁନିର୍ମଳ
ଜଡ଼ତା, ହୃଦୟ ଛାଡ଼ି ହୁଅନ୍ତି ଅନ୍ତର ।
ସଂବିଦ ଆକାଶେ ଜୀବ-ସୂର୍ଯ୍ୟର ଉଦୟ
ସାକ୍ଷାତ ଲଭଇ ବ୍ରହ୍ମ ଯେ ଆନନ୍ଦମୟ ।
ତେତେବେଳେ ଜୀବ ଚିତ୍ତ ବିଶ୍ୱାତ୍ମା ଜ୍ୟୋତିରେ
ଉଦ୍‌ଭାସିତ ହୋଇ ଭାସେ ଆନନ୍ଦ ସାଗରେ ।
ତତ୍ତ୍ୱଜ୍ଞ ପୁରୁଷ ସ୍ୱୀୟ ପାପରାଶି ଧୋଇ
ଜୀବନ୍ମୁକ୍ତ ଭାବେ ଦେହ ନଗ୍ରେ ବିରାଜଇ ।
**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଉପଶମ ରୂପ ବର୍ଣ୍ଣନେ ନାମ ୩୪ଶ ସର୍ଗଃ ।**



## ୩୫ଶ ସର୍ଗଃ

## ଚିଦାଦିତ୍ୟ ସ୍ୱରୂପ ନିରୂପଣ ।

ଜଗତାତୀତ ଚିନ୍ମୟ ଆତ୍ମାର ମଧ୍ୟରେ
ଏ ଜଗତ ଯେଉଁଭାବେ ଅବସ୍ଥାନ କରେ ।
ଆହେ ଗୁରୁଦେବ ମୋର ବୋଧଗମ୍ୟ ପାଇଁ
ପୁନଶ୍ଚ ମୋ ଆଗେ ତାହା କହ ତପୀସାଇଁ ।
ବଶିଷ୍ଠ କହନ୍ତି ତେବେ ଶୁଣ ରଘୁବୀର
ତରଙ୍ଗମାଳା ଯେସନ ଜଳର ବିକାର ।
ଜଳ ମଧ୍ୟେ ଥାଏ ତାହା ଅବ୍ୟକ୍ତ ଭାବରେ
ତେସନ ଏ ସାରା ସୃଷ୍ଟି ଚିନ୍ମୟ ଆତ୍ମାରେ ।
ଆତ୍ମା ରୂପରେ ବିରାଜମାନ ଯେ ତହିଁରେ
ଅବସ୍ଥିତ ନୁହେଁ ତାହା ପୃଥକ ରୂପରେ ।
ହୋଇଲେ ହେଁ ସର୍ବଗତ, ବିରାଟ ଆକାଶ
ସୂକ୍ଷ୍ମତ ବଶତଃ ରହେ ଚକ୍ଷୁର ଅଦୃଶ୍ୟ ।

ସେହିପରି ସର୍ବଗାମୀ ହେଲେହେଁ ଚିତ୍ ତତ୍ତ୍ୱ
ହୋଇଣ ନ ପାରେ କେଉଁ ନୟନ ଲକ୍ଷିତ ।
ସ୍ଫଟିକରେ ଯେଉଁ ପ୍ରତିବିମ୍ବ ନିପତିତ
ତାହା ଯେଉଁପରି ନୁହେଁ ସତ ବା ଅସତ ।
ଆତ୍ମାରେ ଏ ସୃଷ୍ଟି ନୁହେଁ ସତ୍ୟ ବା ଅସତ୍ୟ
ସେ ସତ୍ୟ ଅସତ୍ୟ ଭାବ ମନରୁ କଳ୍ପିତ ।
ଗଗନ ଯଦିଚ ଅଟେ ମେଘର ଆଧାର
ମେଘ କେଉଁେ ଛୁଇଁ ନ ପାରଇ ତା ଶରୀର ।
ଚିନ୍ମୟ ଆତ୍ମାରେ ସୃଷ୍ଟି ହୋଇଲେ ହେଁ ସ୍ଥିତ
ଆତ୍ମାକୁ ଛୁଇଁ ନ ପାରେ ତାହା କଦାଚିତ ।
ସୂର୍ଯ୍ୟ ପ୍ରତିବିମ୍ବ ଜଳ ମଧ୍ୟେ ପଡ଼ିଥାଇ
ଜଳ କିନ୍ତୁ ସେ ସୂର୍ଯ୍ୟକୁ ଛୁଇଁ ନ ପାରଇ ।
* ସୂର୍ଯ୍ୟଷ୍ଟକାତ୍ମକ ଦେହ ଆତ୍ମାକୁ ସେପରି
ଛୁଇଁ ନ ପାରଇ କେଉଁେ ଆହେ ରୂପଧାରୀ ।
ଆତ୍ମଚୈତନ୍ୟର କିଛି ସଂକଳପ ନାହିଁ
ସେହି ଆତ୍ମା ଅବିନାଶ ସ୍ୱଭାବ ଅଟଇ ।
ଏ ଦୃଶ୍ୟ ସୃଷ୍ଟି ସକଳ ତା କଳ୍ପିତ ନାମ
ଆକାଶ ସଦୃଶ ତାହା ଅତି-ବଡ଼ ସୂକ୍ଷ୍ମ ।
ଆବର ଅଟଇ ନିଷ୍କଳଙ୍କ ସୁନିର୍ମଳ
ଚଇତନ୍ୟର ଉପମା ଚୈତନ୍ୟ କେବଳ ।
ଜ୍ଞାନୀମାନେ ଯାହା କହିଛନ୍ତି ତାହା ଶୁଣ
ଥିଲେ ହେଁ ଏହି ସୃଷ୍ଟିର ଅବୟବମାନେ
ଆତ୍ମା ମଧ୍ୟେ ଅବୟବହୀନ ଯେ ଏମାନେ ।
ଆତ୍ମା ଘେନି ସକ୍ରିୟ ସେ ହୁଅନ୍ତି ସର୍ବଗୁଣେ ।
ଆତ୍ମାର ଜଗତରୂପ ଆତ୍ମା ହିଁ ଦେଖାଏ
ଆତ୍ମା ବିନା ଏହି ସାରା ସୃଷ୍ଟି କିଛି ନୁହେଁ ।
ସମୁଦ୍ରଠାରୁ ଅଭିନ୍ନ ତା ବିକାର ଭାବ
ଜଳ ତରଙ୍ଗ ଏଥିରେ ଦୃଷ୍ଟାନ୍ତ ବୁଝିବ ।
"ମୁଁ ତୁ" ଆଦି ଦ୍ୱୈତ ଭାବ ଚିତ୍ ସମୁଦ୍ରରେ
ଚିତ୍‌ସହ ଅପୃଥକ ଥାନ୍ତି କାଳେ କାଳେ ।
ଚିତ୍ତଠାରୁ ବିଶ୍ୱ ଭିନ୍ନ ମୂର୍ଖର କଳ୍ପନା
ଜ୍ଞାନୀଙ୍କ ମତରେ ସବୁ ସେ ଚିନ୍ମୟ ଆତ୍ମା ।

ସୂର୍ଯ୍ୟାଦି ଗ୍ରହଗଣଙ୍କୁ ସ୍ୱୀୟ ଈକ୍ଷଣରେ
ପ୍ରକାଶମାନ କରୁଣଥାନ୍ତି ସଦାବେଳେ ।
ଜୀବଗଣଙ୍କ ବିଷୟ ଅନୁଭବ ଶକ୍ତି
ଈକ୍ଷଣ ବଳରେ ସଦା ସେହି ପ୍ରକାଶନ୍ତି ।
ଏ ସବୁ କରି ସୁଦ୍ଧା ସେ କିଛି ନ କରନ୍ତି
ଉଦୟାସ୍ତ ଯାତାୟତ କିଛି ନ ଜାଣନ୍ତି ।
ଏହି ଯେ ନିର୍ମଳ ଆତ୍ମା ଆତ୍ମ ସ୍ୱରୂପରେ
ସଂସ୍ଥିତ ଥାଇ ପ୍ରକାଶେ ଜଗତ ଆକାରେ ।
ଆତ୍ମଚିତ୍ ସ୍ୱରୂପରୁ ଏହି ଯେ ଜଗତ
ଏକାନ୍ତ ଅଭିନ୍ନ ଅଟେ ଆହେ ରଘୁନାଥ ।
ତାହାଙ୍କ ଚିତ୍ ସ୍ୱଭାବ ଅବୟବ ହୀନ
ସର୍ବଗ ହେତୁ ସେ ଅବୟବ ଯୁକ୍ତ ଜାଣ ।
ଅଜ୍ଞାନ ଦ୍ୱାରା ଆଚ୍ଛନ୍ନ ଯେବେ ସେ ହୁଅନ୍ତି
ତେଣୁ ନିଜର ସ୍ୱରୂପ ପାଶୋରି ପକାନ୍ତି ।
**ଏହି ରୂପ ଅବିଦ୍ୟାରେ ପ୍ରଭାବିତ ହୋଇ**
**ଚିଦାତ୍ମାଜୀବ ଆକୃତି ଗ୍ରହଣ କରଇ ।**
ତତ୍ତ୍ୱଜ୍ଞାନ ଅଭାବରୁ ସଂସାର ଚକ୍ରରେ
ବାରମ୍ବାର ଜନ୍ମ ମୃତ୍ୟୁ ଅନୁଭବ କରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି**
**ପ୍ରକରଣେ ଚିଦାଦିତ୍ୟ ସ୍ୱରୂପ ବର୍ଣ୍ଣନେ**
**ନାମ ୩୫ଶ ସର୍ଗଃ ।**



## ୩୬ଶ ସର୍ଗଃ

## ଶାନ୍ତି ଉପଦେଶ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ବ୍ରହ୍ମରୁ ଉଦ୍‌ଭବ ହୋଇ ଏ ମର ସଂସାର,
କିଛିକାଳ ସ୍ଥିର ଭାବେ କରି ଅବସ୍ଥାନ
ପୁନଶ୍ଚ ବ୍ରହ୍ମରେ ଯାଇଁ ହୁଅଇ ବିଲୀନ ।
ସ୍ପନ୍ଦନଶୀଳତା ଅଟେ ସଲୀଳର ଧର୍ମ
ଅଗାଧ ଜଳଧି ମଧ୍ୟେ ତାହାର ସ୍ପନ୍ଦନ,
ଲକ୍ଷକରି ନ ହେବାରୁ ମଣନ୍ତି ତା ଶାନ୍ତ
କିନ୍ତୁ ସ୍ପନ୍ଦନ ଚାଲିଣ ଥାଏ ଅବିଶ୍ରାନ୍ତ ।
ଚିଦାକାଶେ ଅନୁଭୂତ ନୋହିଲେହେଁ ଭବ

* ସୂର୍ଯ୍ୟଷ୍ଟକାତ୍ମକ ଦେହ - ଭୂତ, ଇନ୍ଦ୍ରିୟ, ମନ, ବୁଦ୍ଧି, ବାସନା, କର୍ମ ଓ ଅବିଦ୍ୟାମୟ ଶରୀର ।

ଏ ଭବକୁ ଚିତ୍‌ଶକ୍ତି ବୋଲିବାକୁ ହେବ ।
ଚିତ୍ ଯେଣୁ ଧରିଅଛି ଜଗତର ବେଶ
ତେଣୁ ଜଗତ ଅସତ୍ ନୁହେ ରଘୁଈଶ ।
ତତ୍ତ୍ୱଜ୍ଞାନ ଉଦୟରେ ନ ଦିଶେ ଜଗତ
ତେଣୁ ସତ୍ ପଦବାଚ୍ୟ ନୁହେଁ ରଘୁନାଥ ।
ବ୍ରହ୍ମର ବାହାର କିମ୍ବା ବ୍ରହ୍ମରୁ ସ୍ୱତନ୍ତ୍ର
ବ୍ରହ୍ମର ଭିତର କିମ୍ବା ବ୍ରହ୍ମ ପରତନ୍ତ୍ର,
ଏହା ସବୁ ସତ କିମ୍ବା ଏସବୁ ଅସତ
ଚିନ୍ତିବାର ଯୋଗ୍ୟନୁହେଁ ଆହେ ରଘୁନାଥ ।
ଯାହା ସାହାଯ୍ୟରେ ତୁମେ ଶବ୍ଦ, ରସ, ଗନ୍ଧ
ସ୍ପର୍ଶ, ରୂପ, ଆଦିଙ୍କର ଜାଣୁଛ ସୁଆଦ ।
ସେହି ଏକା ବ୍ରହ୍ମ ପୁଣି ସେହି ପରମାତ୍ମା
ସମଗ୍ର ଜଗତ ପୂରିଅଛି ତାଙ୍କ ସତ୍ତା ।
**ଏକମାତ୍ର ସତ୍ୟବସ୍ତୁ ଏହି ଆତ୍ମା ଜାଣ**
**ସର୍ବଗାମୀ ଆତ୍ମାଠାରୁ ନୁହଁ କିଛି ଭିନ୍ନ ।**
ଅପର ବସ୍ତୁମାନଙ୍କ ସତ୍ତା ବ ଅସତ୍ତା
ବସନା ବଶେହିଁ କଳପିତ ଧନୁହସ୍ତା ।
ଏ ସବୁ କଳ୍ପନାମାନ ଆହେ ରଘୁନାଥ
ଅନାତ୍ମାରୂପିଣୀ ମାୟାରହିଁ ଅନ୍ତଃର୍ଗତ ।
ତତ୍ତ୍ୱଦୃଷ୍ଟିରେ ଏହା ଯେ ଦେଖାଯାଇ ଥାଏ
ଆତ୍ମା ମଧରେ ହିଁ ଏହି ନାଟ ଲାଗିଥାଏ ।
ବସ୍ତୁ ଆତ୍ମାରୁ ପୃଥକ ଏହା ଯଦି କହ
ଆତ୍ମାର ସୃଷ୍ଟି ବାସନା ଥିବା ନିଃସନ୍ଦେହ ।
ଆତ୍ମାରୁ ପୃଥକ ବୋଲି ତେଣୁ କିଛି ନାହିଁ
କିବା ବାସନା ସେ ଅବା କରିବ ଗୋସାଇଁ ।
କେଉଁ ବିଷୟ ପାଇଁ ସେ ହେବ ଧାବମାନ
ତହିଁରୁ କି ଫଳ ଅବା ଲଭିବ ସେ ରାମ ?
**ତେଣୁ କୌଣସି ବିକଳ୍ପ ନାହିଁ ଆତ୍ମାଠାରେ**
**ଇଚ୍ଛା ବିହୀନ ବୋଲି ସେ କିଛିହିଁ ନ କରେ ।**
କର୍ତ୍ତା, କରଣ, କରମ ଏ ସବୁତ ଏକ
ତଥାପି ଏହାତ କେଭେଁ ନ କହେ ବିବେକ ।
ତଥାପି ବାସନା ଶୂନ୍ୟ କର୍ମହୀନ ବୋଲି
ଆତ୍ମାକୁ କେହିତ କେଭେଁ କହିତ ନପାରି ।
ଆତ୍ମାର ବାସନା ଥାଏ କର୍ମ ମଧ ଥାଏ
ସେ ବାସନା କର୍ମ ତାହାଠାରୁ ଭିନ୍ନ ନୁହେଁ ।
ଆତ୍ମା କର୍ମହୀନ ବୋଲି ଯେବେଟି କହିବ
ପୂର୍ବରୁ ତା କର୍ମଥିବା ଅନୁମିତ ହେବ ।
ଆତ୍ମାର ପୃଥକ କର୍ମ ଏକବାରେ ନାହିଁ
ଜଗତରୁ ଆତ୍ମା ଭିନ୍ନ କହି ନ ଯୋଗାଇ ।
**ଆତ୍ମାସ୍ଥିତି ବୋଲି ଯାହା ତୁମକୁ କହିଲି**
**ବ୍ରାହ୍ମିସ୍ଥିତି ବୋଲି ତାହା ଜାଣ ଚାପଧାରୀ ।**
ଜଗତ ଆତ୍ମାରୁ ଭିନ୍ନ ଏହା ଯଦି କହ
ଦ୍ୱନ୍ଦ୍ୱାତୀତ ଗତଜ୍ୱର ଯଦି ହୋଇଥାଅ,
ତଥାପି କର୍ତ୍ତା ହେବାକୁ ତୁମକୁ ପଡ଼ିବ
କର୍ତ୍ତାଭାବ କେବେହେଁ ତୁମକୁ ନ ଛାଡ଼ିବ ।
କର୍ତ୍ତାଭାବ ଧରି ଯଦି କର୍ମ ଆଚରିବ
ଦେହାଦି ଭାବରେ ତୁମ ପ୍ରାଧାନ୍ୟ ଘଟିବ ।
ନିତ୍ୟାନନ୍ଦମୟ ଉପଯୁକ୍ତ ଆତ୍ମଭାବ
ତୁମ ମନ ମଧ୍ୟେ କେଭେଁ ସ୍ଫୁରିତ ନ ହେବ ।
କର୍ତ୍ତୃତ୍ୱ ଭାବନା ତୁମେ କର ପରିହାର
ଅକର୍ତ୍ତା ଭାବେ ବିଶ୍ୱାସ ରଖ ରଘୁବୀର ।
ସ୍ମୃତି ଗୁରୁବାକ୍ୟମାନ ଶିରୋଧାର୍ଯ୍ୟ କରି
ସ୍ୱସ୍ଥ, ସ୍ୱଚ୍ଛ ନିର୍ବିକାର ହୁଅ ଧନୁର୍ଦ୍ଧାରୀ ।
ଏହିଭାବେ ଯଦି କରିପାର ଅବସ୍ଥାନ
ଅପରିଚ୍ଛିନ୍ନ ଆନନ୍ଦ ଲଭିବ ହେ ରାମ ।
ବହୁତ ଯତ୍ନ ଆବର ସୁଦୂର ଭ୍ରମଣ
କଲେହେଁ ଲଭି ନ ପାର ଏ ଅବସ୍ଥା ରାମ ।
ବାହ୍ୟ ପଦାର୍ଥରୁ ମନ ଲେଉଟାଇ ଆଣ
ତୁମେ ହିଁ ଚିନ୍ମୟ ଆତ୍ମା ତୁମେ ହିଁ ପରମ ।
**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଶାନ୍ତି ଉପଦେଶ ବର୍ଣ୍ଣନେ**
**ନାମ ୩୬ଶ ସର୍ଗଃ ।**



## ୩୭ଶ ସର୍ଗଃ
## ମୋକ୍ଷ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଏବେ ବର୍ଣ୍ଣନ କରିବା କର୍ତ୍ତୃତ୍ୱ ବିଧାନ ।
ଆତ୍ମାରେ କର୍ତ୍ତୃତ୍ୱବୋଧ ନ ଥାଏ ଯାହାର
ସୁଖ, ଦୁଃଖ, ଭୋଗ, ଯୋଗ ବିଭୂତିର ଫଳ,
ସେଥିରେ ଚଳିତ କେଭେଁ ନୁହନ୍ତି ସେମାନେ
ଏସବୁ ଅସତ୍ୟ ବୋଧହୁଏ ତାଙ୍କ ମନେ ।

କର୍ତ୍ତୃତ୍ୱାଭିମାନୀ ପ୍ରତି ତାହା ସବୁ ସତ-
ବୋଲି ପ୍ରତୀତ ହୁଅଇ ଆହେ ରଘୁନାଥ ।
କିପରି କର୍ତ୍ତୃତ୍ୱ ରୂପ ତାହା ଏବେ ଶୁଣ
**କର୍ତ୍ତୃତ୍ୱ ନୁହଇ ଦେହକୃତ କ୍ରିୟାମାନ ।**
ବୁଦ୍ଧି ଯୁକ୍ତ ନ ହୋଇଛି ଯେବଣ କାର୍ଯ୍ୟରେ
"ମୁଁ କରିଲି" ଏହି ଭାବ ନ ଜନ୍ମେ ତହିଁରେ ।
ଅନ୍ତଃକରଣ ନିଶ୍ଚୟାତ୍ମକ ମନୋବୃତ୍ତି
କର୍ତ୍ତୃତ୍ୱ ଅବା ବାସନା ତାହା ଦାଶରଥି !
ଅନୁରୂପ ଫଳଭୋଗ ହୋଇଥାଏ ରାମ
ବାସନାଧୀନ ଚେଷ୍ଟାର ଫଳୁ ତା' ଜନମ ।
କରୁ ବା ନ କରୁ ଯାହା କିଛି ବାହ୍ୟକର୍ମ
ମନର ବାସନା ଘେନି ଫଳ ଲଭେ ଜାଣ ।
କରୁ ବା ନ କରୁ କିଛି କର୍ମ ସେହି ନର
କର୍ତ୍ତାଭାବଟି ଅବଶ୍ୟ ରହିବ ତାହାର ।
କର୍ତ୍ତାଭାବ କେବେହେଲେ ତତ୍ତ୍ୱଜ୍ଞ ମନରେ
ଉଦିତ ହୋଇ ନ ପାରେ ଆହେ ରଘୁବୀରେ ।
ଯେହେତୁ କର୍ତ୍ତୃତ୍ୱବୋଧ ବାସନାର ମୂଳ
ତାହାଙ୍କ ହୃଦରୁ ହୋଇଥାଏ ନିର୍ମୂଳ ।
କର୍ମ କରୁଥିଲେ ସୁଦ୍ଧା ଫଳପ୍ରାପ୍ତି ଆଶା
ପୋଷି ନ ଥାନ୍ତି ମନରେ ସେହି ମହାଯଶା ।
ଅନାସକ୍ତ ଭାବେ କର୍ମ କରି ଯାଉଥାନ୍ତି
ପ୍ରାରବ୍ଧ ଫଳକୁ ଆତ୍ମା ବୋଲି ସେ ମଣନ୍ତି ।
କର୍ମ ନ କଲେହେଁ ଭୋଗାଗ୍ରସ୍ତ ଅଜ୍ଞ ଜନ
କର୍ତ୍ତାଭାବେ ନିଜକୁ ସେ ମଣେ ମନେମନ ।
**ଯଥାର୍ଥ କର୍ମ ତା ଜାଣ ଯାହା କରେ ମନ**
**ମନ ଯାହା ନ କରଇ ତାହା ନୁହେଁ କର୍ମ ।**
**ମନହିଁ କରତା ରାମ ଦେହ ନୁହେଁ କର୍ତ୍ତା**
ଦେହ କର୍ମ ଫଳର ଯେ ଦେହହିଁ ଭୋକତା ।
ଚିତ୍ତମାତ୍ର ଏ ସଂସାର ଚିତ୍ତରୁ ଉଦିତ
ବିଚାର କରିଣ ଦେଖ ଚିତ୍ତେ ଅବସ୍ଥିତ ।
**ସମସ୍ତ ବିଷୟ ପୁଣି ସର୍ବଚିତ୍ତ ବୃତ୍ତି**
**କ୍ଷୀଣ ହୋଇ ଶେଷେ ଲଭେ ବାସନା ଆକୃତି ।**
ସେହି ବାସନା ନିଅଇ ଜୀବର ଆକୃତି
ବାସନା ନ ଥାଇ କାହିଁ ଜୀବର ବା ସ୍ଥିତି ।

ସେମାନଙ୍କ ମଧ୍ୟେ ଯେହୁ ପାଏ ଆତ୍ମଜ୍ଞାନ
ମନ ସେହିମାନଙ୍କର ପାଏ ଉପଶମ ।
ବିଦ୍ୟମାନ ରହନ୍ତି ସେ ତୁରୀୟାବସ୍ଥାରେ
ନିତ୍ୟାନନ୍ଦ ସ୍ୱରୂପକୁ ତହିଁ ଭୋଗକରେ ।
ବାସନାମୂଳକ କର୍ମେ ତତ୍ତ୍ୱଜ୍ଞ ପୁରୁଷ
ପ୍ରବୃତ୍ତ ନୁହଇ କେବେ ଆହେ ରଘୁଶିଷ୍ୟ ।
ଭୋଗ ବିଳାସ ପାଇଁକି ଅଜ୍ଞର ଲାଳସା
ଆତ୍ମତତ୍ତ୍ୱ ପାଇଁ ତାର ନ ବଳଇ ଆଶା ।
ଯଦି କେହି ଲୋକ ଭାବେ ଗର୍ତ୍ତେ ପଡ଼ିଗଲି
ପଡ଼ିଗଲି, ପଡ଼ିଗଲି ଭାବୁଥାଏ ଖାଲି ।
ଶୟନେ ବା ଜାଗରଣେ ପଡ଼ିଥିବା ଲୋକ
ସଦା ସରବଦା ଭୋଗକରେ ସେହି ଦୁଃଖ ।
ଉପଶମ ପ୍ରାପ୍ତ ତତ୍ତ୍ୱଜ୍ଞାନୀଙ୍କର ମନ
ଗର୍ତ୍ତେ ପଡ଼ି ନ ଜାଣଇ ସେ ଯନ୍ତ୍ରଣାମାନ ।
ମନ ଉପଶମ ହେତୁ ମଣେ ତାହା ସୁଖ
କୌଣସି ବିପଦେ ସେହୁ ନ ହୁଏ ବିମୁଖ ।
ଜଣେ ଗର୍ତ୍ତେ ପଡ଼ି ସୁଦ୍ଧା ନ ଜାଣଇ ଦୁଃଖ
ଜଣେ ଗର୍ତ୍ତେ ନ ପଡ଼ିଣ କରୁଥାଇ ଶୋକ ।
ଏକମାତ୍ରକ କାରଣ ଏଥି ସେହି ଚିତ୍ତ
ଯେମନ୍ତ ଚିତ୍ତ, ପୁରୁଷ ହୁଅଇ ତେମନ୍ତ ।
କର୍ତ୍ତା ହୁଅ ବା ନ ହୁଅ ତୁମେ ରଘୁନାଥ
ଚିତ୍ତ ଯେପରି ତୁମର ନ ହୁଏ ଆସକ୍ତ ।
ଜାଣିରଖ ଆତ୍ମା ଭିନ୍ନ ଆଉ କିଛି ନାହିଁ
ଯହିଁ ଆସକ୍ତି ତୁମର ଆତ୍ମା ଥାଏ ତହିଁ ।
ତହିଁରେ ବିଷୟଭାବ ନ ରଖି ଶ୍ରୀରାମ
ଆତ୍ମା ଭାବରେ ତାହାକୁ କର ଦରଶନ ।
ଯେବେ ତୁମେ ତାହା କରିପାର ରଘୁବାଳ
ତେବେ ଯାଇ ଚିତ୍ତ ତୁମ ହୋଇବ ନିର୍ମଳ ।
ଆଧାର ଅଟଇ ଆତ୍ମା ଆତ୍ମାହିଁ ଆଧେୟ
ଏହି ଜ୍ଞାନ ଯେତେବେଳେ ହୋଇବ ନିଶ୍ଚୟ,
ତେବେ ଏହି ଜଗତର କରତା ଭୋକ୍ତା
ଏକମାତ୍ର ସୂକ୍ଷ୍ମାଦପି ସୂକ୍ଷ୍ମ ମୋର ସତ୍ତା,
ଏହି ରୂପ ଜ୍ଞାନ ଯେବେ ହୋଇବ ଉଦୟ
"ମୋ ବ୍ୟତୀତ ଅନ୍ୟ କିଛି ନାହିଁ ଯା ନିଶ୍ଚୟ ।"
ସର୍ବ ଜଗତର ପ୍ରକାଶକ ମୁଁ ସର୍ବଗ
ସୁଖ ଦୁଃଖରୁ ଅତୀତ ସବୁରେ ପାରଗ ।

ଏହି ଜ୍ଞାନ ଯେତେବେଳେ ଉଦୟ ହୋଇବ
ଅନାସକ୍ତେ କ୍ରୀଡ଼ାରସେ ଚିତ୍ତ ମାତିଯିବ ।
ସଂକଟରେ ପଡ଼ିଲେ ହେଁ ଏପରି ମାନବ
ସୃଷ୍ଟି କି ଆନନ୍ଦମୟ ସେହୁ ମଣୁଥିବ ।
କୌଣସି କଷଣ ତାର ନୁହେ ଅନୁଭବ
କର୍ମ କରି ସୁଦ୍ଧା କର୍ତ୍ତା ଭାବ ତା ନ ଥିବ ।
ଚେଷ୍ଟା ଭାବ ଲୋକମତେ ସର୍ବବିଧ କର୍ମ
ସବୁରି ବୀଜ ଅଟଇ ଏହି ମନ ଜାଣ ।
ସେ ମନକୁ ତେଜିବାକୁ ହୋଇଲେ ସମର୍ଥ
ସରବ କରମ ତାର ହୁଏ ପରିତ୍ୟକ୍ତ ।
ଯାବତ ଦୁଃଖ ଦୁର୍ଦ୍ଦଶା ହୁଅଇ ବିଲୀନ
ସକଳ କର୍ମର ଘଟେ ପୂର୍ଣ୍ଣ ଅବସାନ ।
ଶାରୀରିକ ମାନସିକ କୌଣସି କର୍ମରେ
ଆକ୍ରାନ୍ତ ନ ହୁଏ ସେହୁ କୌଣସି ପ୍ରକାରେ,
କର୍ମେ ଅନୁରାଗ ତାର ବିନାଶ ପ୍ରାପତ
ତେଣୁ କରମରେ ସେହୁ ନୁହେ ବଶୀଭୂତ ।
ଏତାଦୃଶ ଆତ୍ମା ନୁହେଁ କରତା ବା ଭୋକ୍ତା
ନିଜ ଛଡ଼ା ନ ଦିଶଇ ତାକୁ ଅନ୍ୟ ସତ୍ତା ।
ଯେଉଁ କର୍ତ୍ତାଭାବ ଦେଖାଯାଏ ଆତ୍ମାଠାରେ
ଅଧ୍ୟାରୋପିତ ତା ଅନ୍ୟେ ନୁହେଁ ଯଥାର୍ଥରେ ।
ଜୀବ ପକ୍ଷେ ଅନିବାର୍ଯ୍ୟ ଏ କର୍ତ୍ତୃତ୍ୱ ଭାବ
ଜୀବ ଥିବାଯାଏ ଏହି ମୋହ ନ ଛାଡ଼ିବ ।
ବସ୍ତୁତଃ ପକ୍ଷରେ ଏହା ନୁହେଁ ଅନିବାର୍ଯ୍ୟ
ବିଜ୍ଞର ବଳରେ କିନ୍ତୁ ହୁଏ ପରିହାର୍ଯ୍ୟ ।
ସର୍ବାଦୌ କର୍ତ୍ତୃତ୍ୱଭାବ ତେଜ ରଘୁବୀର
ଆତ୍ମନିଷ୍ଠ ହୋଇ ଅହଂକାର ତେଜ୍ୟାକର ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ମୋକ୍ଷ ଉପଦେଶ ବର୍ଣ୍ଣନେ**
**ନାମ ୩୭ଶ ସର୍ଗଃ ।**



## ୩୮ଶ ସର୍ଗଃ

## ସର୍ବୈକତ୍ୱ ପ୍ରତିପାଦନ

ପୁଚ୍ଛନ୍ତି ଶ୍ରୀରାମ ଏବେ କହ ତପୋଧନ
ଏକହିଁ ବ୍ରହ୍ମ ଯଦ୍ୟପି ଥାନ୍ତି ବିଦ୍ୟମାନ ।
କାହୁଁ ଏ ଜଗତ ପୁଣି ସମ୍ଭବିଲା ଦେବ
ବିଶଦ ଭାବରେ ମୋତେ ବୁଝାଇ କହିବ ।
କହନ୍ତି ବଶିଷ୍ଠ ଶୁଣ ଆହେ ରାଜସୁତ
କେବଳ ବ୍ରହ୍ମ ବିବର୍ତ୍ତ ଅଟେ ଏ ଜଗତ ।
ଯେଣୁ ସେ ବ୍ରହ୍ମ ଅଟନ୍ତି ସର୍ବ ଶକ୍ତିମାନ
ସର୍ବବିଧ ଶକ୍ତି ତାଙ୍କ ମଧ୍ୟେ ବିଦ୍ୟମାନ ।
ସତ୍ୟ, ମିଥ୍ୟା ଦ୍ୱୈତାଦ୍ୱୈତ ଏକ ଓ ଅନେକ
ଆଦି, ଅନ୍ତ, ସକଳହିଁ ଆତ୍ମାର ପ୍ରତୀକ ।
ଚନ୍ଦ୍ରୋଦୟେ ସିନ୍ଧୁଜଳ ଉଲ୍ଲସିତ ହୋଇ
ନାନା ଆକାରରେ ଯଥା ପ୍ରକାଶ ଲଭଇ ।
ସେହିପରି ଚିତ୍‌ଘନ ଆତ୍ମାହିଁ କେବଳ
ପ୍ରଥମେ ଚିତ୍ତ ସ୍ୱରୂପେ ଉଦେ ହୃଦସ୍ଥଳ ।
ତତପରେ ସେ ଚିତ୍ତରୁ ବାସନାରୂପିଣୀ
କର୍ମମୟୀ ମନୋମୟୀ ଶକ୍ତି ସ୍ୱରୂପିଣୀ,
ପ୍ରକାଶ ପାଇଣ ଦୃଶ୍ୟ ଆକାର ଧରଇ
ପରେ ଉପଭୋଗ ଦ୍ୱାରା କବଳିତ ହୋଇ ।
ଏହିପରି ସର୍ବଜୀବ, ନାନାବିଧ ଜ୍ଞାନ
ବ୍ରହ୍ମରୁହିଁ ରାମ ହେଉଥାନ୍ତି ଉତପନ୍ନ ।
ପରମାତ୍ମା ବ୍ରହ୍ମଠାରୁ ଉଦିତ ହୁଅଇ
ଏ ସକଳ ଶକ୍ତି ପୁଣି ଲୀନ ତାଙ୍କ ତହିଁ ।
**ସାଗର ତରଙ୍ଗ ଯେହ୍ନେ ଖାଲି ଜଳମୟ**
**ସାରା ଜଗତ ତେସନ ଖାଲି ବ୍ରହ୍ମମୟ ।**
କହନ୍ତି ଶ୍ରୀରାମ ତବ ଏହି ଉପଦେଶ
ଅତୀବ ଦୁରୁହ ଅଟେ ଆହେ ତପୀଇଶ ।
କାହିଁ ମନ ଅଗୋଚର ସେହି ବ୍ରହ୍ମତତ୍ତ୍ୱ
କାହିଁ ପୁଣି ତହୁଁ ଜାତ ଏ ମର ଜଗତ ?
ବୁଝିବାକୁ ମୁଁ ଅକ୍ଷମ ଆହେ ତପୋଧନ
ଦୟାକରି ମୋ ସନ୍ଦେହ କରିବା ମୋଚନ ।
ବ୍ରହ୍ମଙ୍କଠାରୁ ଉଦିତ ଯଦି ଏ ଜଗତ
ତେବେ ତଦ ଅନୁରୂପ ହେବା ଯା ଉଚିତ ।
କାର୍ଯ୍ୟକାରଣ ସାଦୃଶ୍ୟ ପ୍ରସିଦ୍ଧ ଏ ମତ
ଯଥା ଉଚିତ ଉତ୍ତର ଦିଅ ତପୋବନ୍ତ ।
ଗୋଟିଏ ଦୀପରୁ ଅନ୍ୟ ଦୀପ ପ୍ରଜ୍ୱଳିତ
ଏକପୁରୁଷରୁ ଅନ୍ୟ ପୁରୁଷର ଜାତ ।
ନିର୍ବିକାର ଆତ୍ମାଠାରୁ ଉତ୍ପନ୍ନ ଜଗତ
ବିକାର ଶୂନ୍ୟ ହେବାହିଁ ଅଟେ ଯୁକ୍ତିଯୁକ୍ତ ।

ବିକାର ଭାବ ବା ଏଥି କାହୁଁ ସମ୍ଭବିବ
ନିଷ୍କଳଙ୍କ ଆତ୍ମାରେ କି କଳଙ୍କ ସମ୍ଭବ ?
ବ୍ରହ୍ମର୍ଷି ବଶିଷ୍ଠ ତହୁଁ କହନ୍ତି ରାଘବ
ତରଙ୍ଗମାଳାରେ ଯଥା ଜଳହିଁ ସମ୍ଭବ ।
ଧୂଳିରାଶି ତରଙ୍ଗିତ ହୁଏ କି ତହିଁରେ
ତାପ ଛଡ଼ା ଅନ୍ୟ ଭାବ ନ ଥାଇ ଅଗ୍ନିରେ ।
ଜଗତରେ ସେହିପରି ବ୍ରହ୍ମଙ୍କ ବ୍ୟତୀତ
ଅନ୍ୟ କୌଣସି କଳ୍ପନା ନୁହଇ ଯୁକତ ।
ଶ୍ରୀରାମ କହନ୍ତି ପୂର୍ବେ କରିଛ ବର୍ଣ୍ଣନ
ବ୍ରହ୍ମ ଯେ ଅଟନ୍ତି ଦୁଃଖ, ଦ୍ୱନ୍ଦ୍ୱଭାବ ହୀନ ।
ତାଙ୍କଠାରୁ ଏ ଜଗତ ଅଟେ ଉତପନ୍ନ
ଦୁଃଖ ଦ୍ୱନ୍ଦ୍ୱମୟ ଅବା ହେବ ତା କେସନ ?
ତେଣୁ ଉପଦେଶ ତବ ବୁଝି ମୁଁ ନ ପାରେ
ସନ୍ଦେହ ମୋଚନ କର ଆହେ ତପୀବରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ସର୍ବୈକତ୍ୱ ପ୍ରତିପାଦନେ**
**ନାମ ୩୮ଶ ସର୍ଗଃ ।**

❑

## ୩୯ଶ ସର୍ଗଃ
## ବ୍ରହ୍ମ ପ୍ରତିପାଦନ

ଗୁରୁ ଶିଷ୍ୟଙ୍କର ଯେଉଁ କଥୋପ କଥନ
ତାହା ଶୁଣିକରି ବାଲମିକ ତପୋଧନ ।
ଭାରଦ୍ୱାଜଙ୍କୁ କହନ୍ତି ଏମନ୍ତ ବଚନ
ଶୁଣିଲ ଶିଷ୍ୟଙ୍କୁ ଗୁରୁ ଉପଦେଶମାନ ।
ବଶିଷ୍ଠ ରାମଙ୍କୁ ଉପଦେଶ ଦେବାପାଇଁ
କିଛିକାଳ ନୀରବ ରହିଲେ ତପୀସାଇଁ ।
ମନେମନେ ବିଚାରନ୍ତି ଶ୍ରୀରାମଙ୍କ ବୁଦ୍ଧି
ଏ ପର୍ଯ୍ୟନ୍ତ ଲାଭ କରିନାହିଁ ପରିଶୁଦ୍ଧି ।
ବାହ୍ୟବସ୍ତୁ ତେଜିବାରେ କିଞ୍ଚିତ ମାତ୍ରାରେ
ନିର୍ମଳ ହୋଇଛି ସିନା ଲିପ୍ତ ଜଗତରେ ।
ଯେ ପୁରୁଷ ଜଗତର ଜଡଭାବ ତେଜି
ଚିନ୍ମୟ ରସାସ୍ୱାଦନେ ରହିଅଛି ମଜି ।
"ସମସ୍ତ ହିଁ ବ୍ରହ୍ମମୟ" ଏହି ଉପଦେଶ
କଷ୍ଟକର ନୁହେଁ ତାର ତହିଁ ପରବେଶ ।
ସ୍ୱଳ୍ପଜ୍ଞାନୀ ମାନଙ୍କୁ ଏ ଉପଦେଶମାନ
ପ୍ରଦାନ କରିବା ଅଟେ ନୁହେ ସମୀଚୀନ ।
ଯେଣୁ ତାର ଦୃଶ୍ୟ ପ୍ରତି ଅଛି ଆକର୍ଷଣ
ଏ ଉପଦେଶ ମରମ ବୁଝିବ କେସନ ?
ଏହିପରି ଚିନ୍ତା କରି କରି ତପୋଧନ
ଶ୍ରୀରାମ ଚନ୍ଦ୍ରଙ୍କୁ ପୁଣି କହନ୍ତି ଏସନ ।
ବ୍ରହ୍ମରେ କିଛି କଳଙ୍କ ଅଛି ଅବା ନାହିଁ
ଏହାପରେ ମୁଁ ତୁମ୍ଭଙ୍କୁ କହିବି ବୁଝାଇ ।
ସର୍ବବ୍ୟାପୀ, ସର୍ବଗତ, ସର୍ବଶକ୍ତିମାନ
ଅଟନ୍ତି ସେହି ପରମ ବ୍ରହ୍ମ ସନାତନ ।
"ସବୁ ମୁହିଁ" ଏହି ରୂପ କରନ୍ତି ଦର୍ଶନ
"ମୋହ ବିନା କିଛି ନାହିଁ ଜଗତ କାରଣ" ।
ସ୍ୱୀୟ ମାୟାବଳେ ଐନ୍ଦ୍ରଜାଲିକ ଯେସନ
ଅସତକୁ ସତ ବୋଲି କରାଏ ପ୍ରମାଣ ।
ସତକୁ ଅସତ ମଧ୍ୟ କରି ସେ ଦେଖାଏ
ଆତ୍ମାମଧ୍ୟ ସେହିପରି କୁହୁକ ଭିଆଏ ।
ମୟାମୟ ନୋହି ସୁଦ୍ଧା ମାୟାମୟ ପରି
ଏହି ସକଳ ସୃଷ୍ଟିକି ସରଚନା କରି ।
ତେଣୁ ଏ ଭବେ ଯା କିଛି ଥିଲା, ଅଛି, ହେବ
ପ୍ରତିବିମ୍ବ ବୋଲି ତାଙ୍କୁ ମନେ ବିଚାରିବ
ବ୍ୟକ୍ତ ରୂପ ଧରି କରି ସେ ପରମେଶ୍ୱର
ଆପଣାକୁ ପ୍ରକାଶନ୍ତି ଏ ସର୍ବପ୍ରକାର ।
ଏହି ସମସ୍ତ ହେ ରାମ ଏକବସ୍ତୁ ଜାଣ
କେବଳ ହିଁ ସେହି ଏକାଛନ୍ତି ବିଦ୍ୟମାନ ।
ତେଣୁ ଗର୍ବ, କ୍ରୋଧ, ହର୍ଷ ବିସ୍ମୟାଦିଙ୍କର
ଅବସ୍ଥିତିର କାରଣ କାହିଁ ରଘୁବୀର ?
ଯେ ପର୍ଯ୍ୟନ୍ତ ସମଭାବ ତୁମର କବଳ
ହୋଇ ନ ପାରିଛି ଜାଣ ଆହେ ରଘୁବୀର ।
ସେ ପର୍ଯ୍ୟନ୍ତ ଦେଶ, କାଳ, ଅବିଚ୍ଛିନ୍ନ ଭାବେ
ଦୃଶ୍ୟର ରଚନାମାନ ଦେଖା ଦେଉଥିବେ ।
ପରମାତ୍ମା ନ କରନ୍ତି ଏ ଦୃଶ୍ୟ ସର୍ଜନ
ଆସିଗଲେ ମଧ୍ୟ ନ କରନ୍ତି ତା ବର୍ଜନ ।
ଯଦି କହ କି ରୂପରେ ତାଙ୍କ ଆଗମନ
ଦୁଗ୍‌ଧେ ଘୃତ, ବୀଜେ ବୃକ୍ଷ ଥାଆନ୍ତି ଯେସନ,
ତାଦୃଶ ଆତ୍ମାରେ ହୁଏ ତାଙ୍କ ଅବସ୍ଥାନ
ତୁମର ଉତ୍ତର ଏଥିଁ ବୁଝ ରଘୁନାନ ।
ଦୁଧରୁ ଘିଅ ବାହାରି ହୁଏ ବ୍ୟବହାର
ଆତ୍ମାରୁ ଶକ୍ତି ସଞ୍ଚରି ସର୍ଜନା ସୃଷ୍ଟିର ।

ଏହି ଯେ ବ୍ୟବହାରିକ ଜ୍ଞାନ ଦେଖ ରାମ
କେବଳ କଳ୍ପନାଠାରୁ ତାହାର ଜନମ ।
ବାସ୍ତବରେ ଏ ଜଗତ ନୁହଇ ନିର୍ମିତ
ଜଳ ତରଙ୍ଗ ସଦୃଶ ଏ ସ୍ୱତଃ ସମ୍ଭୁତ ।
କେହି ନାହିଁ ଜଗତର କରତା ଭୋକତା
ଆବର କେହିତ ନାହିଁ ସଂସାର କରତା ।
କେବଳ ହିଁ ଆତ୍ମତତ୍ତ୍ୱ ସାକ୍ଷୀ ସ୍ୱରୂପରେ
ଦେଖୁ ଅଛନ୍ତି ଏହାକୁ ନିଶି ଦିବସରେ ।
ନିରାମୟ ସେହି ଆତ୍ମା ଅକ୍ଷୁବ୍ଧ ଅଟନ୍ତି
ଅଥଚ ତାହାଙ୍କଠାରୁ ସକଳେ ଜନ୍ମନ୍ତି ।
ପ୍ରଦୀପ ଚେଷ୍ଟା ନ ଥାଏ ଆଲୋକ ପ୍ରକାଶେ
ବିଭୁଙ୍କ ଚେଷ୍ଟା ନ ଥାଏ ସୃଷ୍ଟି ପରକାଶେ ।
ଯାହା ସବୁ ଦେଖାଯାଏ ବ୍ରହ୍ମର ଆଭାସ
ବାୟୁ ସ୍ପନ୍ଦନ ସଦୃଶ ତାର ପରକାଶ ।
ହେଲେ ହେଁ ସୁନିର୍ମଳ ସେ ପୁଣି ଦୋଷହୀନ
ମନେହୁଏ ସେ କରତା ସଂହର୍ତ୍ତା ସମାନ ।
ନଭଦେଶେ ତାରାଗଣ କେବେ ସୁପ୍ରକାଶ
କେବେ ସ୍ୱଳ୍ପପରକାଶ କେବେ ଅପ୍ରକାଶ ।
ଆତ୍ମାରେ ଜଗତ କେବେ ହୁଏ ଅପ୍ରକାଶ
କେବେ ସ୍ୱଳ୍ପ ପରକାଶ ପୂର୍ଣ୍ଣ ପରକାଶ ।
ତେଣୁ ଆତ୍ମାର ନୁହଇ ଯାହା ଆତ୍ମଗତ
ତାହାର ଧ୍ୱଂସ ସମ୍ଭବ ନିଶ୍ଚେ ରଘୁନାଥ ।
ଆତ୍ମାଗତ ହୋଇ ଯାହା ରହେ ଆତ୍ମାଠାରେ
କେବେ କି ରାମ ତାହାର ଧ୍ୱଂସ ହୋଇପାରେ ?
ଯାହାକି ଆତ୍ମାର ନୋହି ଥାଏ ଆତ୍ମଗତ
ଉତ୍ପତ୍ତି ବିହୀନ ସେହୁ ଜାଣ ରଘୁନାଥ ।
ଯାହାକି ଆତ୍ମାର ହୋଇଥାଏ ଆତ୍ମଗତ
ତାହାର ଉତ୍ପତ୍ତିରୂପ ସତ୍ତା ମାତ୍ର ସ୍ଥିତ ।
ଆତ୍ମାର ଆତ୍ମସ୍ୱରୂପ ଯାହାକି ଅଟଇ
କହି କିରୂପେ ତାହାର ଉତ୍ପତି ଯେ ହୋଇ ?
ତାହାର ଉତ୍ତର ଏବେ କହୁଛି ମୁଁ ଶୁଣ
ଏ ସତ୍ତା ଜଗତେ ଥାଏ ଅଧ୍ୟସ୍ତ ରୂପେଣ ।
ସ୍ପଷ୍ଟ ଭାବରେ ଯଦ୍ୟପି ଏହାକୁ ବୁଝିବ
ଜାଣିବ ବ୍ରହ୍ମରୁ ଜଗତର ହିଁ ସମ୍ଭବ ।
ବ୍ରହ୍ମରୁ ଉଦିତ ଯେଉଁକ୍ଷଣ ସେ ପଦାର୍ଥ
ତେତେବେଳେ ହିଁ ଅବିଦ୍ୟା ହୁଏ ଆର୍ବିଭୂତ ।
ଯେଉଁକ୍ଷଣି ସେ ଅବିଦ୍ୟା ହୁଏ ଦୃଢ଼ୀଭୂତ
ତେତେବେଳେ ଏ ସଂସାର ବୃକ୍ଷ ଆବିର୍ଭୂତ ।
ଶତ ଶାଖା ପ୍ରଶାଖାଏ ଦିଶନ୍ତି ଶୋଭନ
ଫଳ ଫୁଲ ପଲ୍ଲବାଦି ହରନ୍ତି ନୟନ ।
ଆଶା ମରୀଚିକା ଏହି ବୃକ୍ଷର ମଞ୍ଜରୀ
ଭୋଗ ଏହାର ପଲ୍ଲବ, ଜରା ପୁଷ୍ପପରି ।
ଏ ବୃକ୍ଷର ଶାଖା ଅଟେ ତୃଷ୍ଣା ବୈତରଣୀ
ଦୁଃଖ ଭଣ୍ଡାର ଏହାର ଫଳ ବୋଲି ଜାଣି ।
ବିବେକ କୁଠାରଦ୍ୱାରା ତୁମ୍ଭେ ଆହେ ରାମ
ସଂସାର ବୃକ୍ଷକୁ କରି ଦିଅହେ ଛେଦନ ।
ବନ୍ଧନ ମୁକତ ରାଜରାଜଙ୍କ ସଦୃଶ
ସ୍ୱଚ୍ଛନ୍ଦେ ବିହାରକର ରଘୁକୁଳଈଶ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ ବ୍ରହ୍ମ ପ୍ରତିପାଦନ ବର୍ଣ୍ଣନେ ନାମ ୩୯ଶ ସର୍ଗଃ ।**



## ୪୦ଶ ସର୍ଗଃ
## ଅବିଦ୍ୟା

ବୋଲନ୍ତି ଶ୍ରୀରାମ ପ୍ରଭୁ ଏହି ଜୀବଗଣ
ବ୍ରହ୍ମଙ୍କଠାରୁ କିପରି ହୋଇଲେ ଉତ୍ପନ୍ନ ?
ସେମାନଙ୍କ ସଂଖ୍ୟା କେତେ ସ୍ୱଭାବ କିପରି
ସବିଶେଷ ଭାବେ ମୋତେ କହ ତପଚାରୀ ।
ବଶିଷ୍ଠ ବୋଲନ୍ତି ଏବେ ଶୁଣ ହେ ନିଷ୍ପାପ
ବ୍ରହ୍ମରୁ ଜୀବଗଣଙ୍କ ଉତ୍ପତ୍ତି ଯେ ରୂପ ।
ବର୍ଦ୍ଧନ ବିନାଶ ସ୍ଥିତି ଘଟଇ ଯେପରି
ଶକତି ଗତି ଲଭିଣ ଥାନ୍ତି ଯେଉଁପରି ।
ସର୍ବ ଶକ୍ତିମତୀ ଶୁଦ୍ଧ ବ୍ରାହ୍ମୀ ଚିତ୍‌ଶକ୍ତି
ଯେପରି ତାଙ୍କର ଇଚ୍ଛାହୁଏ ସେହି ମତି,
ଜୀବ ପ୍ରାକ୍ତନ ବାସନା ମାନ ଅନୁସରି
ଜୀବମାନଙ୍କ ଶରୀର ସର୍ଜନ୍ତି ଯେପରି ।
ନିଜେ ସେହି ଚିତ୍‌ଶକ୍ତି ଆକାର ଧରିଣ
ଭାବି କଳେବର ରୂପେ ହୁଅନ୍ତି ସ୍ଫୁରଣ ।
ଦୃଶ୍ୟରୂପେ ପୁଣି କରିଥାନ୍ତି ଅବସ୍ଥାନ
ସେହି ଦୃଶ୍ୟ ଅହଙ୍କାର ଭାବକୁ ଧରିଣ ।
ସେହି ଅହଂକାର କ୍ରମେ ହୁଏ ଘନିଭୂତ
ତତପରେ ଯେ ଅବସ୍ଥା ଶୁଣ ରଘୁନାଥ ।

ଘନିଭୂତ ଅହଙ୍କାର ସଙ୍କଳ୍ପ ବଳରେ
ମନ ଓ ଜୀବ ଉପାଧି ଧରେ ଅବହେଳେ ।
ସଙ୍କଳ୍ପ ବଳେ ଏ ମନ ସର୍ଜଇ ଜଗତ
ଗନ୍ଧର୍ବ ନଗରୀ ଯଥା ନଭଦେଶେ ସ୍ଥିତ ।
ତେତେବେଳେ ବୋଧହୁଏ ଏ ମନ ଯେପରି
ସ୍ୱତନ୍ତ୍ର ରହଇ ବ୍ରହ୍ମ-ସତ୍ତା ତେଜିକରି ।
ସପ୍ତାକାଶ ଚିତ୍‌ସତ୍ତା ଶୂନ୍ୟ ରୂପ ଧରେ
ସେ ଦୃଶ୍ୟାବସ୍ଥା ବିଦିତ ଆକାଶ ନାମରେ ।
ସେ ଆକାଶ ପଦ୍ମ ଯୋନି ରୂପ କଳପନ୍ତେ
ପଦ୍ମଯୋନି ରୂପ ଦେଖେ ନିଜେ ଗର୍ଭଗତେ ।
ଦକ୍ଷ ଆଦି ପ୍ରଜାପତି ରୂପଧରି ସେହି
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡାଦି କଳ୍ପନା କରଇ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଏ ଚିତ୍ତୁ ନିର୍ଗତ
ଅସଂଖ୍ୟ କୋଟି ପ୍ରାଣୀଏ ତହୁଁ ଉପଜାତ ।
ତେଣୁ ଖାଲି ଚିତ୍ତମୟ ଅଟେ ଏହି ସୃଷ୍ଟି
ପୁଣି ଶୂନ୍ୟମୟ ଅଟେ ଏହାର ମୂରତି ।
ତେଣୁ ଏହା ଭ୍ରାନ୍ତିଛଡ଼ା ନୁହେଁ ଅନ୍ୟ କିଛି
ଆକାଶ ଅଟଇ ସେହି ସୃଷ୍ଟିର ମୂରତି ।
ମହା ମୋହାଛନ୍ନ କେହୁ ଅଟେ ଏ ଭୁବନେ
ସୁଜ୍ଞାନ ସମ୍ପନ୍ନ ଅଟନ୍ତି ବା କେଉଁମାନେ ।
କେଉଁ ପ୍ରାଣୀମାନେ ଜ୍ଞାନ ମାର୍ଗ ଅନୁସରୀ
ପ୍ରତିବନ୍ଧକ ହେତୁ ବା ସ୍ଖଳନ କାହାରି ।
ମନୁଷ୍ୟ ରୂପ ଧରି ଯେ ଜନମ ଲଭନ୍ତି
ଜ୍ଞାନ ଉପଦେଶ ପାଇଁ ଉପଯୁକ୍ତ ହ୍ୱନ୍ତି ।
ସତ୍ତ୍ୱ ରଜ ଗୁଣଶାଳୀ ଯେଉଁ ଲୋକମାନ
ତାଙ୍କ ଗୁଣ ତୁମ ଆଗେ କରୁଛି ବର୍ଣ୍ଣନ ।
ସର୍ବବ୍ୟାପୀ ଅଟନ୍ତି ଯେ ନିରାମୟ ବ୍ରହ୍ମ
'କି ରୂପେ ଜୀବ ଆକୃତି କରନ୍ତି ଧାରଣ ।
ତାହା ବି ତୁମ ଆଗରେ କରୁଛି ବର୍ଣ୍ଣନ
ରଘୁବୀର ତାହା ସବୁ ମନଦେଇ ଶୁଣ ।
ସ୍ଥିର ସମୁଦ୍ରେ ତରଙ୍ଗ ଜନମେ ଯେମନ୍ତ
ନିଶ୍ଚଳ ପରମାତ୍ମାଙ୍କ ଏକଦେଶେ ସ୍ଥିତ ।
ଜୀବଭାବ କେଉଁ ରୂପେ ହୁଏ ଘନୀଭୂତ
ବର୍ଣ୍ଣନ କରିବି ମୁହିଁ ତୁମରି ଅଗ୍ରତ ।
କହନ୍ତି ଶ୍ରୀରାମ ଏବେ ଗୁରୁଦେବ ଶୁଣ
ଆତ୍ମତତ୍ତ୍ୱେ ଏକଦେଶ କି ବିଷୟ ପୁଣ ?

ତାହାର ବିକାର ପୁଣି ତାର ଦ୍ୱୈତଭାବ
'କି ରୂପ ଅଟେ ତା ମୋତେ ବୁଝାଇ କହିବ ।
ଏ 'ଜଗତର ନିମିତ୍ତ' ଅଟନ୍ତି ଯେ ବ୍ରହ୍ମ
ବୋଲନ୍ତି ବଶିଷ୍ଠ ତାହା ଏବେ ଶୁଣ ରାମ ।
"ଉପାଦାନର-କାରଣ" ସେହି ମାତ୍ର ଜାଣ
ଏପରି ବର୍ଣ୍ଣନ ଖାଲି ଶାସ୍ତ୍ରର କଥନ ।
ଅବୟବ, ଦିକ୍‌ସତ୍ତା ବିକାର ପ୍ରଦେଶ,
ବ୍ରହ୍ମଠାରୁ ହିଁ କେବଳ ଏହାଙ୍କ ପ୍ରକାଶ ।
ପ୍ରତ୍ୟକ୍ଷ ହେଲେହେଁ ଏହା ବ୍ରହ୍ମରେ ନ ଥାନ୍ତି
ବ୍ରହ୍ମଛଡ଼ା ତହିଁ ଅନ୍ୟ କଳପନା ନାସ୍ତି ।
କେବେହେଁ ନ ଥିଲା ପୁଣି କେବେହେଁ ନୋହିବ
କହିବା ବାହୁଲ୍ୟ ମାତ୍ର ଜାଣ ହେ ରାଘବ ।
ତାଙ୍କ ତହିଁ କିଛି କାର୍ଯ୍ୟ, କାରଣର ଭାବ
ବ୍ୟବହାରଗତ ଶବ୍ଦ ଦେବା ଅସମ୍ଭବ ।
ଶବ୍ଦ, ଅର୍ଥ, ବାକ୍ୟ ଆଦି ଯେତେକ କଳ୍ପନା
ସକଳ ବ୍ରହ୍ମରୁ ଜାତ, ବ୍ରହ୍ମମୟ ସିନା ।
ଅଗ୍ନିରୁ ଉତ୍ପତ୍ତି ଅଗ୍ନି, ଅଗ୍ନି ହିଁ ଯେମନ୍ତ
ବ୍ରହ୍ମରୁ ଉତ୍‌ଥିତ ଭବ ବ୍ରହ୍ମହିଁ ତେମନ୍ତ ।
ଜନ୍ୟ, ଜନକ, ଉଭୟେ ଯେହେତୁ ହିଁ ବ୍ରହ୍ମ
ଭେଦ କଳ୍ପନା ତା' ମଧ୍ୟେ ହେବା ଅକାରଣ ।
ବ୍ରହ୍ମରୁ ହିଁ ଏ ଜଗତ ହୋଇଛି ସମ୍ଭୁତ
ଜନ୍ୟ ଓ ଜନକ ଭାବ ଯେ ଘେନି ପ୍ରତୀତ ।
କ୍ରିୟାଶକ୍ତିର ସ୍ୱଳ୍ପତା କିମ୍ବା ଅଧିକତା
ଉତ୍ପତ୍ତି ଶକ୍ତିର ମଧ୍ୟ ତଦ୍ରୂପ ଅବସ୍ଥା ।
ଜନ୍ୟ ଜନକ ମଧ୍ୟରେ ସେ ଘେନି ପାର୍ଥକ୍ୟ
ବିଚାର କରି ଦେଖିବ ହେ ରଘୁତିଳକ ।
ଏହା ଏହି ରୂପ ପୁଣି ତାହା ଅନ୍ୟରୂପ
ଏହି ଭାବେ ବ୍ୟବହୃତ ଯେଉଁ ନାମ ରୂପ,
କେବଳ ବାକ୍ୟାଡ଼ମ୍ବର ତାହା ସବୁ ଜାଣ
ବ୍ରହ୍ମ ଯେ ସର୍ବଦା ନାମ-ରୂପାଦି ବିହୀନ ।
ଏ ଭିନ୍ନତା ଘଟେ ପରିଚ୍ଛେଦ ଥିବା ସ୍ଥଳେ
ଅପରିଚ୍ଛିନ୍ନ ବ୍ରହ୍ମେ ତା ଘଟିତ ନ ପାରେ ।
ଏକ ପ୍ରଦୀପରୁ ଅନ୍ୟ ପ୍ରଦୀପ ଉତ୍ପନ୍ନ
ପ୍ରଥମ ଦୀପ; ଦ୍ୱିତୀୟ ଦୀପର କାରଣ ।
ବାକ୍ୟ, ବୈଚିତ୍ର୍ୟ କେବଳ ଏପରି କଥନ
ତେଣୁ ଏହା କେବେ ନୋହିପାରେ ସମୀଚୀନ ।

"ଜଗତ ନିମିତ୍ତ" ଉପାଦାନ ବୋଲି ବ୍ରହ୍ମ
ଦ୍ୱିତୀୟ ବାକ୍ୟାଡ଼ମ୍ବର ସେପରି କଥନ ।
ବ୍ରହ୍ମଙ୍କଠାରେ ଜନ୍ୟ ଓ ଜନକର ଭାବ
ପ୍ରଯୁକ୍ତ୍ୟ ହୋଇ ନପାରେ କେବେହେଁ ରାଘବ ।
ଏକ ହୋଇଲେ ହେଁ ବ୍ରହ୍ମ ଯେହେତୁ ଅନନ୍ତ
କେଉଁଭାବେ କେଉଁବସ୍ତୁ ହେବ ତହୁଁ ଜାତ ?
ଭେଦ ଏବଂ ସଂଖ୍ୟା ଆଦି କଳପନା ମାନ
ବାକ୍ୟର ସ୍ୱଭାବ ଘେନି ତାଙ୍କର କଳ୍ପନ ।
ସଦା ସର୍ବଦା ବିଭିନ୍ନାର୍ଥକ ବାକ୍ୟମାନ
ବିଭିନ୍ନ ଭାବେ ବ୍ରହ୍ମରୁ ହୁଅନ୍ତି ସ୍ଫୁରଣ ।
ପଣ୍ଡିତଙ୍କ ମତେ ବ୍ରହ୍ମ, ସେହି ବାକ୍ୟମାନ
ସାଗର ଜଳେ ତରଙ୍ଗ ଉତ୍ପତ୍ତି ଯେସନ ।
ପ୍ରତ୍ୟାଗାତ୍ମା, ମନ, ବୁଦ୍ଧି, ଶବ୍ଦ, ଅର୍ଥ ଯେତେ
ମନୋବୃତ୍ତି ସହିତରେ ବ୍ରହ୍ମ ଯେ ସମସ୍ତେ ।
ସେହି ବ୍ରହ୍ମ ଅଟନ୍ତି ଏ ସକଳ ଜଗତ
ପୁଣି ବ୍ରହ୍ମପଦ ସେହି ଜଗତ-ଅତୀତ ।
ଜଗତ ବୋଲି ପଦାର୍ଥ ଏକବାରେ ନାହିଁ
ଏ ସାରାଜଗତ ଖାଲି ବ୍ରହ୍ମଙ୍କୁ ବୁଝାଇ ।
ଏହା ଏହି ରୂପ ପୁଣି ତାହା ଅନ୍ୟ ରୂପ
ଆତ୍ମା ଆକାଶରେ ଏହି ବିଭାଗ ସ୍ୱରୂପ,
ମିଥ୍ୟା ଜ୍ଞାନର ଉଦ୍ଭବ ଏହିମାନଙ୍କର
ବିକଳ୍ପ ବଶରୁ ହୋଇଥାଏ ରଘୁବୀର ।
କୁଟସ୍ଥ ବ୍ରହ୍ମରେ ନିତ୍ୟ ସିଦ୍ଧ ବ୍ରହ୍ମଛଡ଼ା
ଅନ୍ୟ କିଛି ସିଦ୍ଧ ନୁହେଁ ହେ ରାମ ବାପୁଡ଼ା ।
ଯେ ବିକଳ୍ପ ବାକ୍ୟମାନ ତାଙ୍କ ତହୁଁ ଜାତ
ଭ୍ରାନ୍ତିବଶ ସତ୍ୟ ବୋଲି ହୁଏ ତା ପ୍ରତୀତ ।
ତମୋବଶେ ଜ୍ଞାନଦୃଷ୍ଟି ଯେଣୁ ପ୍ରତିହତ
ଭ୍ରାନ୍ତିର କାରଣ ତାହା ଜାଣ ରଘୁନାଥ ।
ବ୍ରହ୍ମତତ୍ତ୍ୱରୁ ବ୍ରହ୍ମଙ୍କ ବ୍ୟତୀତ ଶ୍ରୀରାମ
ଅନ୍ୟ କିଛି ଉପୁଜଇ ନାହିଁ ବୋଲି ଜାଣ ।
ତେଣୁ ଏ ସକଳ ଦୃଶ୍ୟ ଅଟନ୍ତି ସେ ବ୍ରହ୍ମ
ଏହାହିଁ ଯଥାର୍ଥ ରୂପେ ପରମାର୍ଥ ଜ୍ଞାନ ।
ଏପରି ବିଶ୍ୱାସ ଯେବେ ହୋଇବ ତୁମର
ଏ ବିଷୟେ ଅନ୍ୟ ତତ୍ତ୍ୱ କରିବି ଗୋଚର ।
ବ୍ରହ୍ମରେ ଅବିଦ୍ୟା ଆଦି ନାହିଁ କିଛି ଦୋଷ
ସେ ତତ୍ତ୍ୱ ବୁଝିବ ହେଲେ ଅଜ୍ଞାନ ବିନାଶ ।
ଅଜ୍ଞାନ ଦୋଷରୁ ଯେଉଁ ଜଗତ୍ ପ୍ରତିଭାତ
ତା ଅଭାବେ ପରଂପଦେ ହେବ ସୁସଂସ୍ଥିତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ ଅବିଦ୍ୟା ବର୍ଣ୍ଣନେ ନାମ ୪୦ଶ ସର୍ଗଃ ।**



## ୪୧ଶ ସର୍ଗଃ

## ଜୀବାବତରଣ

ପୁଚ୍ଛନ୍ତି ଶ୍ରୀରାମ ତେବେ ଆହେ ତପୋଧନ
ବ୍ରହ୍ମଙ୍କ ପ୍ରକାଶ ଯଦି ନିତ୍ୟ ବର୍ତ୍ତମାନ ।
ପରିଚ୍ଛିନ୍ନତା ବିକାର ତାଙ୍କ ତହିଁ ଦେବ
ବୁଝାଇ କୁହନ୍ତୁ କେଉଁ ରୂପେ ସମ୍ଭବିବ ?
କହନ୍ତି ବଶିଷ୍ଠ ରାମ ଯାହା ଅଟେ ସତ୍ୟ
ତାହା ତୁମ୍ଭ ଆଗେ କରିସାରିଛି ବ୍ୟକତ ।
ତୁମ୍ଭ ଜ୍ଞାନ ଦୃଷ୍ଟି ଯେବେ ହେବ ସୁନିର୍ମଳ
ତତ୍ତ୍ୱଜ୍ଞାନ ଉପୁଜିବ ତୁମ ହୃଦସ୍ଥଳ ।
ମୋ କହିବା କଥାର ଯେ ସତ୍ୟତା ହେ ରାମ
ଉପଲବ୍ଧି କରିବାକୁ ହୋଇବ ସକ୍ଷମ ।
ଯାହା ଯାହା ତୁମ୍ଭଙ୍କୁ ମୁଁ କରିଛି ବ୍ୟକତ
ଅଧିକାରୀଙ୍କୁ କେବଳ କହିବା ଉଚିତ ।
ଶାସ୍ତ୍ରମାନଙ୍କର ଅର୍ଥ ଜଣାଇବା ପାଇଁ
ଉପଦେଶମାନ ରାମ ଦିଆଯାଇଥାଇ ।
କହିବାକୁ ଗଲେ ଏହା ଏକରୂପ ଭ୍ରମ
ଯଥାର୍ଥ ଭାବେ କରିବା ସେ ଭ୍ରମ ମୋଚନ ।
ସତ୍ୟ ସ୍ୱରୂପ ବ୍ରହ୍ମଙ୍କୁ ଯେବେ ଜାଣିପାର
ବାଚ୍ୟ ବାଚକାଦି ଭ୍ରମ ହୋଇଯିବ ଦୂର ।
ଅଜ୍ଞ ପୁରୁଷମାନଙ୍କ ଜ୍ଞାନୋଦୟ ପାଇଁ
ଏହିପରି ଉପଦେଶ ଦିଆଯାଇଥାଇ ।
ଚିତ୍ ଶକତିର ଯେଉଁ ଦୃଶ୍ୟୋନ୍ମୁଖୀଭାବ
ଆବିଦ୍ୟା ଇତ୍ୟାଦି ଯାହା କିଛି ରହିଥିବ,
ଆତ୍ମାରେ ସେ ସବୁକିଛି ନ ଥାଇ ହେ ରାମ
ନିର୍ଲେପ ବ୍ରହ୍ମ ହିଁ ଜଗତ୍ ଏ ସତ୍ୟ ଜାଣିମ ।
ନିଜ ବିନାଶ କାମନା କରିଣ ଅବିଦ୍ୟା
ଆବାହାନ କରିଥାଏ ଅବିନାଶୀ ବିଦ୍ୟା ।
ଅସ୍ତ୍ରଦ୍ୱାରା ଅସ୍ତ୍ରମାନ ହୁଏ କବଳିତ
ଶତ୍ରୁଦ୍ୱାରା ଶତ୍ରୁମାନେ ହୁଅନ୍ତି ନିହତ ।

ମାୟାର ସ୍ୱଭାବ ଏହା ଜାଣ ରଘୁନାଥ
ନିଜ ବିନାଶରେ ଆନେ କରେ ଆନନ୍ଦିତ ।
**ଜଗତର ଉତପତି କାରିଣୀହିଁ ମାୟା**
**ବିବେକକୁ ଆବୋରିଣ ଥାଏ ତାର କାୟା ।**
ଏହି ଯେ ମାୟା, ସେ କିଏ ତାହା ଜାଣିବାର
କିଛି ହିଁ ଉପାୟ ନାହିଁ ଆହେ ରଘୁବୀର ।
ସଂସାର ବନ୍ଧନ ହେତୁ ଅଟଇ ଏ ମାୟା
ଅତ୍ୟାଶ୍ଚର୍ଯ୍ୟ ବୁଝି ନ ହୁଅଇ ତାର କ୍ରିୟା ।
ସମ୍ପୂର୍ଣ୍ଣ ଭାବେ ସେ ମାୟା ଅଟଇ ଅସତ୍ୟ
କାର୍ଯ୍ୟକାରୀ ହୋଇଥାଏ ଯେପରି ତା ସତ୍ୟ ।
ଏକାନ୍ତ ଭେଦ ବିହୀନ ଯେ ପରମ ପଦ
ମାୟାହିଁ ରଚନା କରିପାରେ ତହିଁ ଭେଦ ।
ପରମାର୍ଥ ଦୃଷ୍ଟିରୁ ଏ ମାୟା ଯେ ଅସତ୍ୟ
ଏ ଦୃଢ଼ ଭାବନା ବଳେ ତୁମେ ରଘୁନାଥ,
ଆତ୍ମାର ସ୍ୱରୂପ ଯେବେ ହୁଅ ଅବଗତ
ହୃଦୟଙ୍ଗମ କରିବ ମୋ ବାକ୍ୟର ଅର୍ଥ ।
ଯେ ପର୍ଯ୍ୟନ୍ତ ତାହା ଲଭି ନ ପାରିଛି ରାମ
ମୋ ବଚନେ ଦୃଢ଼ ଆସ୍ଥା କର ହେ ସ୍ଥାପନ ।
ଅବିଦ୍ୟାର କିଛିମାତ୍ର ସତ୍ତା ନାହିଁ ରାମ
ଏ ଦୃଢ଼ ବିଶ୍ୱାସ ଜନ୍ମ ଲଭୁ ତୁମ ମନ ।
ମନୋବୃତ୍ତିର ସ୍ୱରୂପ ଏହି ଯେ ଜଗତ
ଦୃଶ୍ୟ ଆକାରରେ ହେଉ ଅଛଇ ପ୍ରତୀତ,
ମନର ମନନ ବୋଲି ଜାଣ ତାହା ରାମ୍
ଅସତ ସେ ଅଟେ ଯେଣୁ ମନର ଜୃମ୍ଭଣ
ବ୍ରହ୍ମହିଁ ଅଟନ୍ତି ସତ୍ୟ ଏ ନିଶ୍ଚିତ ଜ୍ଞାନ
ଅନ୍ତରେ ଉଦୟ ଯାର ସେ ମୁକତ ଜନ ।
ସ୍ୱପ୍ନପରି ଭ୍ରାନ୍ତିମୟ ଏହି ଯେ ଜଗତ
ଯାହାର ହୃଦୟେ ହୋଇଅଛି ଦୃଢ଼ୀଭୂତ
କେବେହେଲେ ଦୁଃଖ ଭୋଗ ନ କରିବ ସେହି
ଧ୍ରୁବ ସତ୍ୟ ଏହା ଜାଣ ଆହେ ରଘୁସାଇଁ ।
ଅହଂଜ୍ଞାନ ଥାଇ ଯାର ଦେହ ଇନ୍ଦ୍ରିୟରେ
ଅବିଦ୍ୟା ବଢ଼ଇ ଦିନୁଦିନ ତା ହୃଦରେ ।
ମଳି ନ ଥାଇ ଯେସନ ନିର୍ମଳ ଜଳରେ
ବିକାର ଦୋଷ ନ ଥାଏ ବ୍ରହ୍ମଙ୍କ ମଧ୍ୟରେ ।

ନାମ ରୂପାତ୍ମକ ଭବ ବ୍ୟବହାର ପାଇଁ
କଳ୍ପିତ ହୋଇ ଅଛଇ ଆହେ ରଘୁସାଇଁ ।
ବାସ୍ତବରେ ଆତ୍ମାଠାରୁ ନୁହଇ ଏ ଭିନ୍ନ
ବ୍ୟବହାର ବିନା ଆଉ କାହିଁ ଶାସ୍ତ୍ରଜ୍ଞାନ ?
ବିନା ଜ୍ଞାନ ଉଦୟରେ ଅବିଦ୍ୟା ତଟିନୀ
ପାରହେବା ଅସମ୍ଭବ ଆହେ ରଘୁମଣି ।
ସେହି ଅବିଦ୍ୟା ରୂପିଣୀ ନଦୀ ପରପାରେ
ଅକ୍ଷର ବ୍ରହ୍ମ ପଦହିଁ ବିରାଜଇ ଭଲେ ।
ଅବିଦ୍ୟା ରୂପିଣୀ ମାୟା କାହୁଁ ସମ୍ଭବଇ
ତାହା ଜାଣିବାରେ ତୁମ ପ୍ରୟୋଜନ ନାହିଁ ।
କେଉଁପରି ଏ ମାୟାକୁ କରିବ ବିନାଶ
ସେହି କଥା ଚିନ୍ତାକର ଆହେ ରଘୁଈଶ ।
**କ୍ଷୀଣ ହୋଇ ଅସ୍ତଯିବ ଯେବେ ଏହି ମାୟା**
**ତେବେ ବୁଝିବ କେଉଁଠୁ ପାଇଲା ଏ କାୟା ।**
କିପରି ମୂରତି ତାର କିପରି ସେ ମଳା
ସବୁ ଅବଗତ ହୋଇଯିବ ରଘୁବଳା ।
କହିବାକୁ ଗଲେ ମାୟା ଏକାନ୍ତ ଅସତ୍ୟ
ଅନୁସନ୍ଧାନ କଲେ ସେ ନୋହିବ ପ୍ରାପତ ।
ଗୁଣ ପାଇଁ ନୁହେଁ ଖାଲି ଦୋଷମାନ ଘେନି
ମୂର୍ତ୍ତିମନ୍ତ ହୋଇ ମାୟା ଖେଳେ ଏ ଅବନୀ ।
ପ୍ରଥମେ ଏହାର ଧ୍ୱଂସ କର ହେ ଶ୍ରୀରାମ
ପରେ ପରିଜ୍ଞାତ ହେବ ତାର ତତ୍ତ୍ୱମାନ ।
ଏପରି ପୁରୁଷ ଭବେ ଦେଖାଯାଏ ନାହିଁ
ଅବିଦ୍ୟା ବଶୀଭୂତ ଯେ କେଭେ ନୋହିଛଇଁ ?
ଏକ ପ୍ରକାର ବ୍ୟାଧି ଯେ ଅଟଇ ଅବିଦ୍ୟା
ଏହାର ବିନାଶ ପାଇଁ ସାଧ ଗୁଣୀବିଦ୍ୟା ।
ଅନ୍ତର ଆତ୍ମଜ୍ଞାନକୁ ମୋହଦ୍ୱାରା ମୋହି
ଅବିଦ୍ୟା ସ୍ଥୁଳ ଶରୀର କାରଣ ହୁଅଇ ।
ବଳପୂର୍ବକ ଏହାକୁ କର ହେ ବିନାଶ
ଭବସାଗର ତରିଣ ଯାଅ ରଘୁଈଶ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଜୀବାବତରଣ ବର୍ଣ୍ଣନେ**
**ନାମ ୪୧ଶ ସର୍ଗଃ ।**

❑

# ୪୨ଶ ସର୍ଗଃ

## ଜୀବ ବୀଜ ସଂସ୍ଥାନ

ପୁଣି ବଶିଷ୍ଠ ବୋଲନ୍ତି ଶୁଣ ହେ ରାଘବ
ଅବିଦ୍ୟା ରୂପକ ବ୍ୟାଧି ଯେଣେ ନାଶଯିବ ।
ତହିଁର ଔଷଧମାନ ଦେଉଛି ବତାଇ
ମନଦେଇ ଶୁଣ ତାହା ଏବେ ରଘୁରାଇ ।
ପୂର୍ବେ ରାଜସ-ସାତ୍ତ୍ୱିକ ଜନମର କଥା
କହିବାକୁ କହିଥିଲି ଆହେ ଧନୁହସ୍ତା ।
ଏବେ ତାହା କହୁଅଛି ମନଦେଇ ଶୁଣ
ଯାହାବଳେ ଶାନ୍ତିମୟ ହେବ ଏ ଜୀବନ ।
ସର୍ବବ୍ୟାପୀ ବ୍ରହ୍ମଙ୍କର ଚିତ୍ ପ୍ରତିବିମ୍ବ
ଚିତ୍ ସ୍ପନ୍ଦନ ଏକାଂଶେ ତା, ଧରେ ଘନଭାବ ।
ବାୟୁ ଯଥା ନିଜେ ନିଜେ ହୁଏ ପ୍ରବାହିତ
ଆତ୍ମଶକ୍ତି ବଳେ ଆତ୍ମା ତେସନ ସ୍ପନ୍ଦିତ ।
ଶରତକାଳୀନ ସୂର୍ଯ୍ୟ ସାଗର ଜଳରେ
ଆଉଟା ସୁନାର ଭାବି ଦିଏ ମାନସରେ ।
ଚିତ୍-ସମୁଦ୍ର ଏ ଆତ୍ମାର ସ୍ପନ୍ଦନ କାରଣ
ଜଗତ ଭ୍ରମ ଜନ୍ମାଏ ହେ ରଘୁନନ୍ଦନ ।
ମହାଚିଦାକାଶେ ଚିତ୍ ଶକ୍ତିର ଆକୃତି
ଉଲ୍ଲସିତ ହୋଇଉଠେ ଆହେ ରଘୁପତି ।
ହେଲେହେଁ ସେ ଚିତ୍‌ଶକ୍ତି କଥଞ୍ଚିତ କ୍ଷୁବ୍ଧ
ସ୍ୱଚ୍ଛ ଚିନ୍ମୟ ରୂପରେ ରହଇ ସ୍ତବଧ ।
ବାସ୍ତବରେ ଆତ୍ମାଠାରୁ ନୋହିଣ ପୃଥକ
ପ୍ରତୀତ ହୋଇଥାଏ ସେ ଯେସନ ପୃଥକ ।
ସେହି ପାର୍ଥକ୍ୟ ହେତୁରୁ ଉପାଧି ଅଧୀନ
ପୃଥକ ସ୍ୱତନ୍ତ୍ର ଭାବ, ପାଏ ତତକ୍ଷଣ ।
ସେହି ଚିତ୍‌ଶକ୍ତି ହୋଇ ସର୍ବ ଶକ୍ତିମୟୀ
କିଛିକାଳ ନିଜେ ନିଜେ ପ୍ରସ୍ଫୁରିତ ହୋଇ ।
ତଦପରେ ପରକାଶେ ସ୍ୱକୀୟ ଶକତି
ଦେଶକାଳ କ୍ରିୟାଶକ୍ତି ତହୁଁ ପ୍ରକାଶନ୍ତି ।
ଏ ଚିତ୍‌ଶକ୍ତି ଜାଣନ୍ତେ ସ୍ୱକୀୟ ସ୍ୱଭାବ
ଅନାଦି ଅନନ୍ତ ପଦେ କରେ ସ୍ଥିତି ଲାଭ ।
ତା ନୋହିଲେ କ୍ରମେ କ୍ରମେ ତା' ସ୍ୱତନ୍ତ୍ର ଭାବ
ଭ୍ରାନ୍ତିବଶ ବିବର୍ଦ୍ଧିତ ହୁଏ ହେ ରାଘବ ।
ବସ୍ତୁଗତ ଭାବନା ତା ଆସେ ଯେତେବେଳେ
ନାମ ସଂଖ୍ୟା ବିଜ୍ଞାନ ଯେ ଆସିଯାଏ ହେଲେ ।
"ଆତ୍ମାରୁ ଭିନ୍ନ" ଯେତେକ କଳ୍ପନା ହେ ରାମ
ଯେଣୁକରି ତାହା ସବୁ ସତ୍ୟ ନୁହେ ଜାଣ
'ଚିତ୍‌ଶକ୍ତିରୁ' କଳ୍ପିତ ଯେତେକ କଳ୍ପନା
ବିଶୁଦ୍ଧ ଚିତ୍ ସେ ସବୁ ରାମ ମହାମନା ।
ଆତ୍ମାରେ କଳ୍ପିତ ହୁଏ ଯେତେ କଳପନା
ଆତ୍ମାରୁ ଭିନ୍ନ ନୁହନ୍ତି ସେ ସର୍ବ କଳ୍ପନା ।
ଭାବନା ଭେଦରେ ଯଥା ସ୍ୱର୍ଣ୍ଣ ଓ ବଳୟ
ପ୍ରଭେଦ ଲକ୍ଷିତ ହୁଏ କୌଶଲ୍ୟା ତନୟ,
ତଥା ଭାବନା ଦୋଷରୁ ଆତ୍ମାରୁ ଚିତ୍‌ର
ପ୍ରଭେଦ ଲକ୍ଷିତ ହୁଏ ଆହେ ରଘୁବୀର ।
ଜଗତ ଭାବ ଆତ୍ମାର ଏକଦେଶ ମାତ୍ର
ଆତ୍ମା ଚିଦାଭାସଙ୍କର ପାର୍ଥକ୍ୟ ତେମନ୍ତ ।
ଦୀପରୁ ଦୀପର ଆବିର୍ଭାବ ଯେଉଁପରି
ଚିଦାତ୍ମାରୁ ଏ ସକଳ ଉତ୍ପତ୍ତି ସେପରି ।
ଦେଶ, କାଳ, ପ୍ରଭାବରୁ ଏ ଚିତ୍‌ଶକତି
ସଂକଳ୍ପ ବଳେ ଆକୃତି ସଂପନ୍ନ ହୋଇଣ
ଦେଶ କାଳ କ୍ରୀୟାଦିର ଆଶ୍ରୟ ଧରିଣ,
ଚିତ୍‌ଶକ୍ତିର ଏହି ଯେଉଁ ରୂପ ପ୍ରକଟିତ
'କ୍ଷେତ୍ରଜ୍ଞ' ନାମରେ ତାହା ଅଟଇ ବିଦିତ ।
କ୍ଷେତ୍ର ଶବଦର ଅର୍ଥ ଅଟଇ ଶରୀର
ଚୈତନ୍ୟ ଜାଣନ୍ତି ତାର ଅନ୍ତର ବାହାର ।
ଅଖଣ୍ଡ ଭାବରେ ଯେହୁ ରହନ୍ତି ଜଡ଼ିତ
ସେହି ଚୈତନ୍ୟ କ୍ଷେତ୍ରଜ୍ଞ ନାମରେ ବିଦିତ ।
ସେହି କ୍ଷେତ୍ରଜ୍ଞ ବାସନାମାନ ଅନୁସରୀ
ଶେଷେ ଅହଙ୍କାର ଭାବ ନିଅନ୍ତି ଆବୋରି ।
ସେହି ଅହଂକାର ଅନ୍ୟ ରୂପ କଳପିଲେ
କଳ୍ପନା କଳଙ୍କେ କଳଙ୍କିତ ହୁଏ ଭଲେ ।
ସେତେବେଳେ ବୁଦ୍ଧିନାମ ଧାରଣା ସେ କରେ
ବୁଦ୍ଧି ସଂକଳ୍ପ ବଶତଃ ମନରୂପ ଧରେ ।
ଘନୀଭୂତ ବିକଳପ ଶକତି ବଳରେ
ମନ ଯେ ଇନ୍ଦ୍ରିୟ ଆକାରରୁ ଜାଣ ଧରେ ।
ଇନ୍ଦ୍ରିୟଗଣ ଶରୀର ଆକାର ଧରନ୍ତି
ଲଉକିକ ଜ୍ଞାନଗମ୍ୟ ତେବେ ସେ ହୁଅନ୍ତି ।

ଜୀବଭାବ ତେତେବେଳେ ସ୍ଥୁଳତ୍ୱ ଧରଇ
ଦୁଃଖ ସୁଖ ଭୋଗ ତାକୁ ଅବଶ୍ୟ ମିଳଇ ।
ଚିତ୍‌ଶକ୍ତି ଏହି ରୂପେ ଧରି ଜୀବଭାବ
ସଙ୍କଳ୍ପ ବାସନା ଜାଲେ ପଡ଼ଇ ରାଘବ ।
ପରିପକ୍ୱ ହୋଇଗଲେ ବରକୋଳି ଫଳ
ଆକୃତି ତାହାର ରହିଥାଏ ଅବିକଳ ।
ରୂପ, ରସ, ଗୁଣମାନ ହୁଅଇ ବଦଳ
ଅଲଂଘ୍ୟ ପ୍ରକୃତି ନିୟମର ଏହି ଫଳ ।
ସେହିପରି ଜୀବ ହେଲେ ଅବିଦ୍ୟା କବଳ
ଚିତ୍ ସ୍ୱରୂପତା ତାର ରହେ ସୁନିର୍ମଳ ।
ବଦଳାଇ ଦିଏ ଜୀବ ଲକ୍ଷଣ ଅବିଦ୍ୟା
ସଂସାର ଚକ୍ରରେ ତାକୁ ଭ୍ରମାଏ ସର୍ବଦା ।
ଚିତ୍ ସ୍ୱରୂପତା ଯେଣୁ ନୁହେ ପରିଣାମୀ
ପରିବର୍ତ୍ତନ ତହିଁରେ କେ ପାରିବ ଆଣି ?
ସଙ୍କଳ୍ପ ବଶରୁ ଜୀବ ଅହଂକାରୀ ହୁଏ
ଅହଂକାର ତେଣୁ କରି ଜୀବ ରୂପ ନିଏ ।
ସେହି ବୁଦ୍ଧି ପୁଣି କ୍ରମେ ମନ ରୂପ ଧରେ
ତହୁଁ ଇଚ୍ଛାଦି ଶକତି ଜନ୍ମଲାଭ କରେ ।
ତେଣୁ କରି ଚିତ୍ତ ନାନା ଦୋଷଯୁକ୍ତ ହୁଏ
ଚିତ୍ତର ବନ୍ଧନ ବାଟ ତେଣୁ ଫିଟିଯାଏ ।
ନିଜ ଦୋଷେ ଆତ୍ମା ନିଜ ସଂକଳ୍ପାନୁସାରେ
ବନ୍ଧନ ଦଶା ପ୍ରାପତ ହୁଏ ନିରନ୍ତରେ ।
ଆତ୍ମା ଯଥାର୍ଥରେ ବୁଝେ ଏବେ ସେ ଯେ ବଦ୍ଧ
ତେଣୁ ତାର ନ ଜନ୍ମଇ ବିଦ୍ୟାତତ୍ତ୍ୱବୋଧ ।
କେବଳ ଅବିଦ୍ୟା ଯହିଁ ରହେ ବନ୍ଧମୂଳ
ବିଦ୍ୟାତତ୍ତ୍ୱ ଯେଣୁ ହୋଇଥାଏ ନିରିମୂଳ
ଅକର୍ତ୍ତାତ୍ମା କର୍ତ୍ତା ହୁଏ ବାସନା ବଳରେ
ବଶୀଭୂତ ହୁଏ ସ୍ୱେଚ୍ଛାକୃତ ଅହଂକାରେ ।
ବିବଶ ହୋଇ କର୍ତ୍ତବ୍ୟ ବୁଝି ନ ପାରଇ
ତେଣୁ ସଂସାର ଜାଲରେ ଘାଣ୍ଟି ହେଉଥାଇ ।
ସଂସାରେ ଆବଦ୍ଧ ହୋଇ ଏହିପରି ଚିତ୍ତ
ତୃଷ୍ଣା, ଶୋକ, ପୀଡ଼ା ପାଇ ଦୁଃଖେ ଭାରାକ୍ରାନ୍ତ ।
ମୋହ ଜରା ମୃତ୍ୟୁ ତାକୁ କରେ ବଶୀଭୂତ
ସଂସାର ଜ୍ୱାଳା ତାହାକୁ ଘାରେ ଅବିରତ ।
ଶରୀରରେ ଆସ୍ଥା ରଖି ତୁମର ଯେ ମନ
ଘୋର ଦୁଃଖ ସାଗରରେ ହୋଇଛି ନିମଗ୍ନ ।
ଜଗତ ଜାଲରେ ପଡ଼ିଅଛି ତୁମ ମନ
ଆକାଶ ସଦୃଶ ସେହି ଜଗତ ଯେ ଶୂନ୍ୟ ।
କର୍ଦ୍ଦମ ନିମଗ୍ନ ହସ୍ତୀ ପରି ତୁମ ମନ
ତାହାକୁ ଉଦ୍ଧାର କର ହେ ରଘୁନନ୍ଦନ ।
ଜରା, ମୃତ୍ୟୁ, ବିଷାଦରେ ମୂର୍ଚ୍ଛାଗତ ମନ
ଏହା ଦେଖି ଯେଉଁ ବ୍ୟକ୍ତି ନୁହଇ ବିଷଣ୍ଣ ।
ଧରିଥିଲେ ହେଁ ସେ ଜନ ନର କଳେବର
ବାସ୍ତବରେ ରାକ୍ଷସ ସେ ଜାଣ ରଘୁବୀର ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ
ଜୀବ ବୀଜ ସଂସ୍ଥାନ ବର୍ଣ୍ଣନେ
ନାମ ୪୨ଶ ସର୍ଗଃ ।**



## ୪୩ଶ ସର୍ଗଃ
## ସଂସାର ଅବତରଣ

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ଜୀବଙ୍କ ଉତ୍ପତ୍ତି ଏବେ କରିବା ବିଚାର ।
ନିର୍ଝରରୁ ଝରୁଥିବା ଜଳବିନ୍ଦୁ ମାନ
କିଏ ବା ସଂଖ୍ୟାରେ କରିପାରିବ ଗଣନ
ଶତ ଶତ ଲକ୍ଷ କୋଟି କୋଟି ଜୀବ
ବ୍ରହ୍ମରୁ ଜନମୁଛନ୍ତି କିଏ ତା କଳିବ ?
ଜନ୍ମିଥିଲେ ଜନ୍ମୁଛନ୍ତି ପୁଣି ଜନମିବେ
କାଳେ କାଳେ ଦହି ହେଉଥିବେ ଭବାର୍ଣ୍ଣବେ ।
ବାସନା ବିବସ ହୋଇ ଏହି ଜୀବକୁଳ
ନାନା ଦଶାରେ ପଡ଼ିଣ ହୁଅନ୍ତି ଆକୁଳ ।
ଜଳ ବୁଦ୍‌ବୁଦ୍ ସଦୃଶ ସ୍ଥଳେ ବା ଜଳରେ
ଉତ୍‌ଥିତ ହୋଇ ବିଲୀନ ହୁଅନ୍ତି ସତ୍ୱରେ ।
କିଏ ଥରେ, ଦୁଇଥର ଶତ ଶତ ଥର
କିଏ ପୁଣି ଜନମନ୍ତି, ସଂଖ୍ୟାତୀତବାର ।
ବର୍ତ୍ତମାନ ଜନ୍ମି ନାହିଁ ପରେ କେ ଜନ୍ମିବ
ଜୀବନ-ମୁକତ ହୋଇ କିଏ ବା ରହିବ ।
କୈବଲ୍ୟ ମୁକତି କେହୁ ଲାଭ କରିଥାନ୍ତି
କଳ୍ପ କଳ୍ପାନ୍ତରେ ବାରମ୍ବାର କେ ଜନ୍ମନ୍ତି ।
ସ୍ୱର୍ଗ ସୁଖ ଭୋଗ କରେ କିଏ ସ୍ୱର୍ଗରେ
ନରକ ଯନ୍ତ୍ରଣା ଭୋଗେ କିଏ ବା ନର୍କରେ ।
କିଞ୍ଚିତ୍ ସୁଖ ଭୋଗ କରୁଥାଏ କେ ମରତେ
ଅନିଶ୍ଚିତ ଏ ଅବସ୍ଥା ଚଲେ ଅବିରତେ ।

ନର, ପଶୁ, ପକ୍ଷୀ, କୀଟ, ପତଙ୍ଗ, ଭୁଜଙ୍ଗ,
ସରୀସୃପ, ବୃକ୍ଷ, ଲତା, ଗୁଳ୍ମ, ନାନାରଙ୍ଗ,
ପରବତ, ନଦନଦୀ, ଯକ୍ଷ, ଗନ୍ଧରବ,
ଦେବେଯାନୀ ସହ ନାନା ଯୋନିର ଉଦ୍ଭବ ।
ଅଶେଷ ଆକାର ଅଗଣିତ ରୂପମାନ
ଧରି ଜୀବକୁଳ କରୁଅଛନ୍ତି ଭ୍ରମଣ ।
ତାହାର ଇୟତ୍ତା କିଏ କରି କି ପାରିବ
ଅତୀବ ବିସ୍ମୟ ପ୍ରଦ ଏ ସୃଷ୍ଟି ରାଘବ ।
ଏହି ବ୍ରହ୍ମାଣ୍ଡର ପରି ଅନ୍ୟ ବ୍ରହ୍ମାଣ୍ଡରେ
ଅସଂଖ୍ୟ ଜୀବ ଜଗତ ବିଚରଣ କରେ ।
ଏ ଅସଂଖ୍ୟ ଜୀବରାଶି ବ୍ରହ୍ମରୁ ନିର୍ଗତ
ପୃଥକ ଭାବେ ନିର୍ଦ୍ଦିଷ୍ଟ ହେବା ଅନିଶ୍ଚିତ ।
ବ୍ରହ୍ମରେ ଏ ଜୀବଗଣ କରି ଅବସ୍ଥାନ
ନାନା ଶରୀରେ କରନ୍ତି ନାନା ଭୋଗମାନ ।
ପୁଣି ଯଥାକାଳେ ବ୍ରହ୍ମେ ହୁଅନ୍ତି ବିଲୀନ
ଜୀବ ଜଗତର ଜାଲ ଏପରି ଶ୍ରୀରାମ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ ସଂସାର ଅବତରଣ ପ୍ରତିପାଦନ ବର୍ଣ୍ଣନେ ନାମ ୪୩ଶ ସର୍ଗଃ ।**



## ୪୪ଶ ସର୍ଗଃ
## ଯଥା ଭୂତାର୍ଥବୋଧ - ୧

କହନ୍ତି ଶ୍ରୀରାମ ଏବେ ଶୁଣ ଭଗବାନ
ଅନ୍ୟ ଏକ ସନ୍ଦେହ ମୋ କରିବା ମୋଚନ ।
ପ୍ରଳୟାନ୍ତେ ଜୀବଗଣ ପରମ ପଦରେ
ବିଲୀନ ହୋଇଣ ଥାନ୍ତି ଯଦି ଯଥାର୍ଥରେ ।
ମୁକତି ଲାଭ ତାଙ୍କର ହୋଇଥାଏ ଦେବ
ମୁକତି ପାଇବା ଜୀବ କିମ୍ବା ଜନମିବ ?
ପୁଣି ସୃଷ୍ଟି ଆରମ୍ଭରେ ଦେହଭାବ ଧରି
କିମ୍ପାଇ ଜନମ ହେବେ ଆହେ ତପଚାରୀ ?
ବୋଲନ୍ତି ବଶିଷ୍ଠ ରାମ ପୂର୍ବେ ମୁଁ ତୁମ୍ଭଙ୍କୁ
ବୁଝାଇ କହିଛି କିମ୍ବା ନ ବୁଝିଲ ତାକୁ ।
ପୂର୍ବାପର ସୁବିଚାର ତୁମ ସେହି ବୁଦ୍ଧି
କାହିଁ ହଜିଗଲା କହ ଆହେ ରଘୁନିଧି ।
ସ୍ଥାବର ଜଙ୍ଗମମୟ ଏହି ଯେ ଜଗତ
ଆତ୍ମାର ଆଭାସ ମାତ୍ର ଜାଣ ରଘୁନାଥ ।
ଆତ୍ମାର ବିବର୍ତ୍ତ ମାତ୍ର ଆଭାସ ଜାଣିବ
ତେଣୁ ସ୍ୱପ୍ନପରି ଏହା ମିଥ୍ୟା ହେ ରାଘବ ।
ଏ ଜଗତ ଅଟେ ଏକ ସୁଦୀର୍ଘ ସପନ
ଆକାଶେ ଦ୍ୱିତୀୟଚନ୍ଦ୍ର ଅଳୀକ ଯେସନ ।
ଅଜ୍ଞାନ ନିଦ୍ରା ତେଜି ଯେ ହୋଇଛି ଜାଗ୍ରତ
ଆଉ ନ ଦେଖଇ କେବେ ସେ ସ୍ୱପ୍ନ ଅସତ ।
ମୁକ୍ତିଲାଭ ପରେ ମଧ୍ୟ ସୂକ୍ଷ୍ମ ଆକାରରେ
ଜୀବ କଳ୍ପିତ ସଂସାର ପରମାତ୍ମାଠାରେ ।
ଲୀନ ହୋଇ ରହିଥାଏ ଜାଣ ହେ ରାଘବ
ମୁକ୍ତିପରେ ଜନ୍ମଲାଭ ନୁହେ ଅସମ୍ଭବ ।
ଜଳରେ ଆବର୍ତ୍ତ ଯଥା ଥାଏ ପ୍ରଚ୍ଛନ୍ନରେ
ତରଳ ଆକାରେ ଦେହ ରହେ ଜୀବଠାରେ ।
ବହୁରୂପୀ ଏ ମନକୁ ଜାଣ ହେ ରାଘବ
ବାସନା ଦେହ ତା ଥିବା ନୁହେଁ ଅସମ୍ଭବ ।
ଯେଉଁ କାରଣରୁ ସବୁ କାମ ଏକାବେଳେ
ସଂପାଦନ କରିହୁଏ ନାହିଁ କେତେବେଳେ ।
ସବୁ ବାସନା ଶରୀର ଏକ ସମୟରେ
ଜନମିବା ଅସମ୍ଭବ ଜାଣ ରଘୁବୀରେ ।
ମନର ବାସନା ଘେନି ସୃଷ୍ଟି ଆରମ୍ଭରେ
ଜୀବ କଳେବର ଧରେ ଇଚ୍ଛା ଅନୁସାରେ ।
ପ୍ରଜାପତିଙ୍କର ସୃଷ୍ଟି ସଙ୍କଳ୍ପାନୁସାରେ
ଏହି ସୃଷ୍ଟି ପରମ୍ପରା ଚାଲେ କାଳେ କାଳେ ।
ପୁଣି କହନ୍ତି ଶ୍ରୀରାମ ଶୁଣ ଗୁରୁଦେବ
ମନୋମୟ ହୋଇକରି ଯେଉଁପରି ଜୀବ ।
କରିପାରି ଥିଲା ସେ ବିରଞ୍ଚି ପଦ ଲାଭ
ପୁନରାୟ ସେହି କଥା କହ ମୋତେ ଦେବ ।
ବଶିଷ୍ଠ ବୋଲନ୍ତି ଆହେ ମହାବାହୁ ଶୁଣ
ବ୍ରହ୍ମା ଯେଉଁପରି କଲେ ଶରୀର ଧାରଣ ।
ସେ ସବୁ ମୁଁ ସବିଶେଷେ କରୁଛି ବର୍ଣ୍ଣନ
ମନକର୍ଣ୍ଣ ଦେଇ ତାହା ଶୁଣ ଏବେ ରାମ ।
ତାହା ଶୁଣି ଜଗତର ସ୍ଥିତି ବିଷୟରେ
ସବୁ ଅବଗତ ହେବ କୌଶାଲ୍ୟା କୁମରେ ।
ଅଖଣ୍ଡ ଜ୍ଞେ ଆତ୍ମତତ୍ତ୍ୱ ସ୍ୱୀୟ ଶକ୍ତିବେଳେ
ଦେଶ କାଳ ଘେନି ପରିଚ୍ଛିନ୍ନାକାର ଧାରେ ।
ବାସନା ସମ୍ପନ୍ନ ଅଟେ ସେ ଯେଉଁ ଆକୃତି
ସଙ୍କଳ୍ପ ଉନ୍ମୁଖୀ ମନ ତାହାକୁ କହନ୍ତି ।

ଏକଇ ପଦାର୍ଥ ଦୁହେଁ ଜୀବ ଆଉ ମନ
ପ୍ରକୃତି ଦୃଷ୍ଟିରୁ ହୋଇଥାନ୍ତି ସେ ବିଭିନ୍ନ ।
ସଙ୍କଳ୍ପ ବଳରେ ମନ ଆକାଶ ଚିନ୍ତଇ
କ୍ରମେ ଆକାଶରେ ତାହା ଘନୀଭୂତ ହୋଇ ।
ସ୍ପର୍ଶତନ୍ମାତ୍ର ବଳରେ ବାୟୁଭାବ ନେଇ
ବାୟୁଓ ଆକାଶ ତତ୍ତ୍ୱ ସୂକ୍ଷ୍ମଭାବେ ରହି ।
କଳ୍ପନାମୟ ଚଞ୍ଚଳ-ସ୍ୱଭାବ ଯେ ମନ
ଆତ୍ମତତ୍ତ୍ୱରୁ ସେ ହୋଇଥାଏ ଉତପନ୍ନ ।
ବାସନା ପରିଚ୍ଛଦରେ ବିଭୂଷିତ ହୋଇ
ଜୀବ ସଂଜ୍ଞାଧରିବାକୁ ଉନ୍ମୁଖ ହୁଅଇ ।
ସେହି ମନ-ଶକ୍ତି ପୁଣି କ୍ଷଣକ ମଧ୍ୟରେ
ସ୍ୱୀୟ ଆବିର୍ଭାବ ପୁଣି କଳପନା କରେ ।
ପ୍ରବୃତ୍ତ ହୋଇ ସେ ପୁଣି ସୃଷ୍ଟି କଳ୍ପନାରେ
ଆକାଶ ଭାବନା ଧରେ କ୍ଷଣକ ମଧ୍ୟରେ ।
ଶବଦ-ତନ୍ମାତ୍ର ଶ୍ରୋତ୍ର ଇନ୍ଦ୍ରିୟତ୍ୱ ବରି
ବାୟୁ ତତ୍ତ୍ୱ ସ୍ପର୍ଶତନ୍ମାତ୍ର ସୃଷ୍ଟି କରି ।
ନଭତତ୍ତ୍ୱ ବାୟୁତତ୍ତ୍ୱ ଦୁହିଙ୍କ ମଧ୍ୟରେ
ଘାତ ପ୍ରତିଘାତ ଚଳି ଅନଳ ସଞ୍ଚରେ ।
ଅନଳ ତତ୍ତ୍ୱରୁ ଚକ୍ଷୁ ଆଦି ଇନ୍ଦ୍ରିୟର
ସୃଷ୍ଟି ହୋଇ ପରେ ଆବର୍ଭାବ ଆଲୋକର ।
ଆକାଶ, ବାୟୁ, ଅନଳ, ତିନିତତ୍ତ୍ୱ ମିଳି
ରସ ତନ୍ମାତ୍ର ରସନେନ୍ଦ୍ରିୟ ସୃଷ୍ଟି କରି ।
ଆକାଶ, ଅନଳ, ବାୟୁ ଜଳତତ୍ତ୍ୱ ଘେନି
ମନ ସୃଷ୍ଟି କରେ ଗନ୍ଧତନ୍ମାତ୍ର ମେଦିନୀ ।
ଶବ୍ଦ, ସ୍ପର୍ଶ, ରୂପ, ରସ ବିଶିଷ୍ଟ ଏ ତତ୍ତ୍ୱ
ଗନ୍ଧ ବୀଜାତ୍ମକ ଘ୍ରାଣେନ୍ଦ୍ରିୟ କରେ ଜାତ ।
ଏହିରୂପେ ମନ ପଞ୍ଚଭୂତ ସରଜିଣ
ପଞ୍ଚଭୂତ ସୂକ୍ଷ୍ମ ଦେହ କରେ ସେ ଧାରଣ ।
ମନରୁ ପୃଥକ ନୁହେଁ ଏହି ଭୂତ ସୃଷ୍ଟି
ସୁଦୃଢ଼ କଳ୍ପନା ବଳେ ପଡ଼େ ମନ ଦୃଷ୍ଟି ।
ଗଗନେ ଅଗ୍ନି କଣିକା ପ୍ରସ୍ଫୁରଣ ସରି
ଚିଦାକାଶ ଏକାଂଶରେ ମନ ସେହିପରି ।
ସୂକ୍ଷ୍ମଭୂତ ଅହଂକାର ବୁଦ୍ଧି ବୀଜ ଦେହ
ନିଜ ମଧ୍ୟେ ଅନୁଭବ କରେ ନିଃସନ୍ଦେହ ।
ପୂର୍ଯ୍ୟଷ୍ଟକ ଲିଙ୍ଗ ଦେହ ନାମେ ଏ ଶରୀର
ମନର ଅଟଇ ଜାଣ ଆହେ ରଘୁବୀର ।

ଏହି ମନ ବ୍ରହ୍ମପରେ ସୂକ୍ଷ୍ମ ଶରୀରରେ
ଭାସ୍ୱର ବୃହତ ବପୁ ମନ ମଧ୍ୟେ ଧରେ ।
ସୁଦୃଢ଼ ମନନ ଘେନି ବିଲ୍ୱଫଳ ପରି
ନିଜକୁ ସ୍ଥୁଳ ଶରୀରୀ ବିବେଚନା କରି ।
ତରଳ ସୁନା ଛାଞ୍ଚରେ ଯେପରି ଭାବରେ
ଆକାର ଧରିଣ ଥାଏ ଛାଞ୍ଚ ଅନୁସାରେ ।
ମନ ସେହିପରି ସ୍ୱୀୟ ଭାବନାନୁସାରେ
ବ୍ୟୋମ ଛାଞ୍ଚେ ସ୍ୱ ଶରୀର କଳପନା କରେ ।
ଊର୍ଦ୍ଧ୍ୱଦେଶରେ ମସ୍ତକ ପାଦ ଅଧୋଦେଶେ
ପାର୍ଶ୍ୱେ ହସ୍ତ ପୁଣି ମଧ୍ୟେ ଉଦର ପ୍ରକାଶେ ।
କଳ୍ପନା ବଳେ ନିଜର ବୃହତ୍ ଶରୀର
ବ୍ୟାପୃତ କରି ବସଇ ଆହେ ରଘୁବୀର ।
ଏହି ମନ ମହାମୁନି ବାସନା ବସତଃ
ପୂର୍ଣ୍ଣ କରିବାକୁ ବସେ ନିଜ ମନୋରଥ ।
ଅନଳ ବିଗ୍ରହ ପରି ବିଶାଳ ବପୁରେ
ପ୍ରକାଶି ନିଜକୁ ବ୍ରହ୍ମା ବୋଲି ମନେକରେ ।
ଦଳବୃଦ୍ଧି, ଅଇଶ୍ୱର୍ଯ୍ୟ, ଉତ୍ସାହ, ବିଜ୍ଞାନ
ସତ୍ତ୍ୱାଦି ଗୁଣମାନଙ୍କେ ହୋଇ ପରିପୂର୍ଣ୍ଣ ।
ଲୋକ ପିତାମହ ବୋଲି ନିଜକୁ ବୋଲାଏ
ବିଗଳିତ ସ୍ୱର୍ଣ୍ଣପରି ତେଜ ଶୋଭାପାଏ ।
ଏହି ଯେ ହିରଣ୍ୟଗର୍ଭ ଗଗନ ସମ୍ଭୃତ
ଚିତ୍ତ ଲୀଳା ଦ୍ୱାରା ମୋହ କରେ ଉପଜାତ ।
କେବେ କେବେ ସେ ଅସୀମ ବ୍ୟୋମରୂପ ଧରେ
କେବେ ଆଦି ଅନ୍ତହୀନ ସଲୀଳ ରୂପରେ ।
କେବେ କଳ୍ପାନ୍ତ କାଳୀନ ହୁତାସନ ରୂପେ
କେବେ ସୁଶ୍ୟାମଳ ବନ ଭୁବନ ସ୍ୱରୂପେ ।
କନକ କୁଣ୍ଡଳଯୁକ୍ତ ଭୁବନ ପାଳକ
ବିଷ୍ଣୁ ରୂପ ଧରି ପ୍ରକାଶନ୍ତି ବିଶ୍ୱଲୋକ ।
ଆପଣା ଲୀଳା ବଳରେ ବ୍ରହ୍ମାଣ୍ଡ ପାଳକ
ନିଜକୁ ପାଳି ସୃଷ୍ଟିକି ପାଳନ୍ତି କାଳକ ।
ପରମ ପଦରୁ ଯେବେ ଅବତୀର୍ଣ୍ଣ ହୁନ୍ତି
ମୋହବଶ ପୂର୍ବଦେହ ଜ୍ଞାନ ପାଶୋରନ୍ତି ।
ବ୍ରହ୍ମାନନ୍ଦ-ଭାବ ତାଙ୍କ ହୁଅନ୍ତେ ବିସ୍ମୃତ
ସୁଷୁପ୍ତି ସୁଖ ଲଭନ୍ତି ଅଣ୍ଡଗର୍ଭ ଗତ ।
ଦୀର୍ଘ ନିଦ୍ରା ଯେତେବେଳେ ହୁଅଇ ଭଗନ
ସ୍ୱୀୟ ଭାସ୍ୱର ଶରୀର କରନ୍ତି ଦର୍ଶନ ।

ମନେ ମନେ ଏହିପରି କରନ୍ତି ବିଚାର
ଯେତେବେଳେ ନୋହିଥିଲା ଆବିର୍ଭାବ ମୋର ।
ଅପାର ଅନନ୍ତ ଏହି ବିସ୍ତୃତ ଆକାଶେ
କିସ ଘଟୁଥିଲା ତାହା କହିବ କିଏ ସେ ।
ଏହିପରି ଚିନ୍ତାମଗ୍ନ ହୋଇଥିଲାବେଳେ
ବହୁତ ଅତୀତ ସୃଷ୍ଟି ଦେଖିବାକୁ ମିଳେ ।
ଅନନ୍ତର କ୍ରମେ କ୍ରମେ ତାଙ୍କ ସ୍ମୃତି ପଥେ
ସକଳ ବିଷୟ ନାଚିଯାନ୍ତି ଅଦଭୂତେ ।
ବେଦମାନେ ସ୍ମୃତିପଥେ ହୁଅନ୍ତେ ଉଦୟ
ସର୍ବଜ୍ଞାନମାନଙ୍କର ହୁଏ ଅଭ୍ୟୁଦୟ ।
ଧର୍ମ, ଅର୍ଥ, କାମ, ମୋକ୍ଷ, ସ୍ୱର୍ଗ ଆଦିଙ୍କର
କଳ୍ପନା କରି ବସିଲେ ସେହି ବେଦବର ।
**ବ୍ରହ୍ମାରୂପୀ ମନରୁ ଯେ ଏ ସୃଷ୍ଟି ଜନମ**
ତା ସ୍ଥିତି ବିଧାନ ସବୁ ଜାଣିଲେ ଶ୍ରୀରାମ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଯଥା ଭୂତାର୍ଥବୋଧ ବର୍ଣ୍ଣନେ**
**ନାମ ୪୪ଶ ସର୍ଗଃ ।**



## ୪୫ଶ ସର୍ଗଃ
## ଯଥା ଭୂତାର୍ଥ ବୋଧ-୨

କହନ୍ତି ବଶିଷ୍ଠ ପୁଣି ଶୁଣ ରଘୁନାଥ
ଜଗତ ଉତ୍ପନ୍ନ ହେବା ହେଲେ ହେଁ ପ୍ରତୀତ,
ବାସ୍ତବରେ ଜଗତର ଉତପନ୍ନ ନାହିଁ
ପ୍ରତିଭାସିକ ମନର ବିଳାସ ଯେ ସେହି ।
ସ୍ୱପ୍ନ ଦୃଷ୍ଟ ବସ୍ତୁପରି ଜଗତ ଅସତ୍ୟ
ପ୍ରତିବିମ୍ବ ଯହିଁ ତହିଁ ଚୈତନ୍ୟହିଁ ସ୍ଥିତ ।
ଆକାଶ ସଦୃଶ ଶୂନ୍ୟ ତହିଁ ଏ ଜଗତ
ପରିଦୃଷ୍ଟ ହେଲେ ସୁଦ୍ଧା ଏହା ଯେ ଅସତ ।
ସରବ ଦେହ ଜଗତ, ମନର କଳ୍ପନା
ଜଗଦର୍ଶନ କାରଣ ସେହି ମନ ସିନା ।
ଘଟ, ପଟ ରୂପେ ଆବର୍ତ୍ତିତ ଯେ ଜଗତ
ତାହା କେବଳ ଅଟଇ ଚିଦାଭାସ ମାତ୍ର ।
ସତ୍ ସ୍ୱରୂପ ସେ ବ୍ରହ୍ମରୁ ଏହା ନୁହେଁ ଭିନ୍ନ
ମନ ନିଜପାଇଁ କରେ ଶରୀର ନିର୍ମାଣ ।
ସରବ ଶକ୍ତି ସମ୍ପନ୍ନ ଦେହମୟ ମନେ
କୌଣସି ଶକ୍ତି ଅଭାବ ନାହିଁ ରଘୁନାନେ ।
ଏ ମନ ରୂପ ଗୁହାର ମଧ୍ୟରେ ନ ଥାଇ
ଏପରି କୌଣସି ଶକ୍ତି କଳପିତ ନୋହି ।
ଆପଣା ଲୀଳା ବଳରେ ବ୍ରହ୍ମାଣ୍ଡ ପାଳକ
ନିଜକୁ ପାଳି ସୃଷ୍ଟିକୁ ପାଳନ୍ତି କାଳକ ।
ସର୍ବଶକ୍ତିମାନ-ବିଭୂ, ଏ ମନ ମଧ୍ୟରେ
ସର୍ବ ପଦାର୍ଥର ସତ୍ତା ଅସତ୍ତା ଯହିଁରେ,
ସର୍ବ ମୁହୂର୍ତ୍ତରେ ସମ୍ଭାବନା ତାହାଙ୍କର
ଅବାରିତ ରହିଥାଏ ଆହେ ରଘୁବୀର ।
**ଭାବନାର ପ୍ରଭାବରୁ ନିଜ ମଧ୍ୟୁ ମନ**
**କରିଅଛି ରାମ ଏହି ଶରୀର ନିର୍ମାଣ ।**
ଦେବ, ଦାନବ, ମାନବ ଏମାନେ ସକଳେ
ଜନମ ଲଭନ୍ତି ମନ ସଙ୍କଳପ ବଳେ ।
ମନର ସଙ୍କଳ୍ପ ଯେତେବେଳେ ନ ରହଇ
ତୈଳହୀନ ଦୀପପରି ନିର୍ବାପିତ ହୋଇ ।
ସଙ୍କଳ୍ପରୁ ପ୍ରକାଶିଛି ଏ ସାରା ଜଗତ
ଦୀର୍ଘ-ନିଦ୍ରା ସ୍ୱପ୍ନସମ ସେ ସବୁ ଅସତ ।
କେହି କେବେ ଜନ୍ମେ ନାହିଁ କିମ୍ବା ମରେ ନାହିଁ
ଜନ୍ମମରଣ କେବଳ କଳ୍ପନା ଅଟଇ ।
ହ୍ରାସନାହିଁ କିମ୍ବା ବୃଦ୍ଧି ନ ଥାଇ ଯାହାର
କିପରି ଖଣ୍ଡିତ ତାହା ହେବ ରଘୁବୀର ?
ଅଖଣ୍ଡ ବସ୍ତୁ ଯେବେଟି ଖଣ୍ଡିତ ନୁହଇ
ପରିଚ୍ଛିନ୍ନତା ତାହାର କେବେ କି ଘଟଇ ?
ଅଖଣ୍ଡ ଆତ୍ମଦର୍ଶନ ନ କରି ଅନ୍ତରେ
ଖଣ୍ଡିତ ଦର୍ଶନେ ମୁଗ୍ଧ କିମ୍ପା ରଘୁବୀରେ ?
ବସ୍ତୁତ ହିରଣ୍ୟଗର୍ଭେ ହେଲେହେଁ ଅସତ
ମନର ଦୃଢ଼ତା ଘେନି ହୁଅନ୍ତି ପ୍ରତୀତ ।
**ଆକାର ବିଶିଷ୍ଟ ବସ୍ତୁ ଯା ଦେଖ ଜଗତେ**
**ମନ କଳ୍ପନା ଘେନିଣ ପ୍ରକାଶ ସମସ୍ତେ ।**
ଅଜ୍ଞାନ ବଶରୁ ରାମ ଏ ମିଥ୍ୟା ପ୍ରକାଶ
ଘନୀଭୂତ ହୋଇ ଦିଏ ସତ୍ୟର ଆଭାସ ।
ନଉକାରେ ଗଲାବେଳେ ତଟ ବୃକ୍ଷମାନ
ଗତିଶୀଳ ପରି ଯଥା ହୁଅନ୍ତି ଦୃଶ୍ୟମାନ ।
ଆକାର ପ୍ରକାରବାନ ଅଟନ୍ତି ଯେମାନେ
ଉଦୟ ବିଲୀନ ଲଭୁଛନ୍ତି ପ୍ରତିକ୍ଷଣେ ।

ମାୟାବଳେ ଦୃଢ଼ୀଭୂତ ଏହି ଯେ ଜଗତ
ମନର ମନନ ତାହା ଜାଣ ରଘୁନାଥ ।
ଇନ୍ଦ୍ରଜାଲ ସମ ତାକୁ ମଣିବ ହେ ରାମ
ବ୍ରହ୍ମ ବ୍ୟତୀତ ଜଗତ ନୁହେଁ କିଛି ଅନ୍ୟ ।
ମନର ବାସନାତ୍ମକ ଏହି ଯେ ଜଗତ
ବିଚାରହୀନ ପାଇଁକି ସୁବିଶାଳ ବତ ।
ବିଚାର ବଳେ ଜଗତ ଭାବ ପରିହର
ପ୍ରପଞ୍ଚହୀନ ଆତ୍ମାର ଭାବ ହୃଦେ ଧର ।
କାମନା ସଙ୍କଳ୍ପକୁ ଯେ ମୂଳ ବୋଲି ଧରେ
ସେହି ମୂଢ଼ ଜଗତକୁ ସତ୍ୟ ମନେକରେ ।
ସାରା ଜୀବନ ତାହାର ଖାଲି ଦୁଃଖମୟ
କେବେହେଁ ସଂସାରେ ହୋଇ ନ ପାରେ ସେ ଥୟ ।
ଅବସ୍ତୁ ପ୍ରତି ଆସକ୍ତି ବସ୍ତୁ ଅଭାବରେ
ତେଡ଼େ ଦୋଷାବହ ନୁହେଁ ଜାଣ ରଘୁବୀରେ ।
କିନ୍ତୁ ବ୍ରହ୍ମବସ୍ତୁ ଯେତେବେଳେ ବିଦ୍ୟମାନ
ତାଙ୍କୁ ତେଜି ଜଗତ୍ ପ୍ରତି ଯେହୁ ଧାବମାନ,
କେବେହେଲେ ପୁରୁଷାର୍ଥ ଲଭି ସେ ନ ପାରେ
ପୁରୁଷାର୍ଥ ହିଁ ରବିଚି ସକଳ କାର୍ଯ୍ୟରେ ।
ମନର ଇଚ୍ଛାରେ ଏହି ଶରୀର, ଜଗତ
ମନ ଇଚ୍ଛା ଅନୁସାରେ ବିଲୀନ, ଉଦ୍ଭୂତ
କଳ୍ପନା ନଗର ରାମ ଥାଉ କି ନ ଥାଉ
କି ଲାଭ କି କ୍ଷତି ତହିଁ ଆହେ ମହାବାହୁ ?
ଯାହାକି ଅଳୀକ ତାର ଘଟିଲେ ବିନାଶ
କାହାର କି କ୍ଷତି ହେବ ଆହେ ରଘୁଈଶ ?
ତେଣୁ ଏ ମର ସଂସାରେ ବିଷାଦ ବା ଶୋକ
କିଛି ନୁହେଁ ଜାଣିରଖ ହେ ରଘୁନାୟକ ।
କି ଅବା ବିନାଶ ତାର ଯା ଅଟେ ଅସତ
କିମ୍ପାଇ ତା ଲାଗି ଦୁଃଖ ଯା ଅଟେ ଅନିତ୍ୟ ?
ଯା ଅଟେ ଅତୀବ ସତ୍ୟ କାହିଁ ବା ତା ଧ୍ୱଂସ
ସେହି ପରଂବ୍ରହ୍ମ ଜାଣ ଏହି ସାରା ବିଶ୍ୱ ।
ପ୍ରାଜ୍ଞ ବ୍ୟକ୍ତିର ଏଥିରେ ପରିହାର ଯୋଗ୍ୟ
କିଛି ଥାଇ ନ ପାରଇ ଆହେ ମହାଭାଗ ।
ଆତ୍ମାହିଁ ଅବିନଶ୍ୱର ଏହା ଜାଣି ରାମ
ସେହି ନିତ୍ୟ, ସ୍ଥିର ମଧ୍ୟେ କର ହେ ବିଶ୍ରାମ ।
କହନ୍ତି ବାଲ୍ମୀକି ମୁନି ଶୁଣ ଭରଦ୍ୱାଜ
ଏତେ କହି ତୁନି ହେଲେ ଗୁରୁ ତପୀରାଜ ।
ସନ୍ଧ୍ୟାରାଣୀ ପ୍ରବେଶନ୍ତେ ପିନ୍ଧି କଳା ଶାଢ଼ୀ
ସାୟଂକୃତ୍ୟ ପାଇଁ ସର୍ବେ ଆଶ୍ରମେ ବାହୁଡ଼ି ।
ପରଦିନ ପ୍ରଭାତରେ ନିତ୍ୟକୃତ୍ୟ ସାରି
ସକଳ ସଦସ୍ୟ ପରବେଶ ସଭାସ୍ଥଳି ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଯଥା ଭୂତାର୍ଥବୋଧ ବର୍ଣ୍ଣନେ**
**ନାମ ୪୫ଶ ସର୍ଗଃ ।**



## ୪୬ଶ ସର୍ଗଃ
## ଜଗତ ସତ୍ୟାସତ୍ୟ ବର୍ଣ୍ଣନ

କହନ୍ତି ବଶିଷ୍ଠ ଏବେ ରାମଚନ୍ଦ୍ର ଶୁଣ
ଜୀବନ-ମୁକତ ସ୍ଥିତି କରିବି ବର୍ଣ୍ଣନ ।
ତତ୍ତ୍ୱଜ୍ଞାନୀମାନଙ୍କର ସ୍ୱଭାବ ଏପରି
ଅତୀତ ଘଟଣାମାନ ଭୁଲି ଯାଇକରି,
ବର୍ତ୍ତମାନରେ ଯାହାକି ଆସି ପହଞ୍ଚନ୍ତି
ଅନାସକ୍ତ ଭାବେ ତାହା ସମ୍ପନ୍ନ କରନ୍ତି ।
ଅପ୍ରାପ୍ତ ବିଷୟ ପ୍ରତି ଇଚ୍ଛା ନ କରନ୍ତି
ସ୍ୱୟଂମାଗତ ବିଷୟ ଭୋଗ କରୁଥାନ୍ତି ।
କାମନା ଶତ୍ରୁ ତୁମ୍ଭଙ୍କୁ ଗୋପନ ଭାବରେ
ଆକ୍ରମଣ କରିବାକୁ ଅଛି ତତପରେ ।
ଦେଖ ତୁମେ ଯେପରି ତା ଅଧୀନସ୍ଥ ନୁହ
ମୋହଗ୍ରସ୍ତ ହୋଇ ତାର କବଳ ନ ହୁଅ ।
ଦୃଶ୍ୟ ପଦାର୍ଥରେ ଯେହୁ ଅନୁରକ୍ତ ନୁହେ
ପର ଅର୍ଥେ ଯାର ବୁଦ୍ଧି ଲାଗି ରହିଥାଏ,
କେବେ ସୁଦ୍ଧା ମୋହ ତାକୁ ଗ୍ରାସୀ ନ ପାରଇ
ମୁକତ ଭାବେ ସେ ସଦା ବିଚରଣୁ ଥାଇ ।
ବ୍ୟକ୍ତ ଅବ୍ୟକ୍ତ ବିଷୟେ ଅନ୍ତର ମଧ୍ୟରେ
ସମଭାବ ରଖି ଚଳୁଥାଅ ନିରନ୍ତରେ ।
ବ୍ରହ୍ମପଦ ଅନୁସରି ସଦାଯାଉ ଦିନ
କୃତାର୍ଥ ରହିବେ ପିତୃ ପିତାମହଗଣ ।
ଆକାଶ ପରି ନିର୍ଲିପ୍ତ ରହି ଚଳୁଥାଅ
ବିଷୟାକୁ ବିଷପରି ସଦା ମଣି ରହ ।
ଜାଗତିକ ବିଷୟରେ ତତ୍ତ୍ୱଜ୍ଞାନୀଙ୍କର
ଆକାଂକ୍ଷା ନ ଥାଇ ଜାଣ ଆହେ ରଘୁବୀର ।
ଜାଗତିକ ଧନ୍ଦା ଯଦି ଆସି ପହଞ୍ଚଇ
ଅନାଦର କରି ତାକୁ ନ ତେଜନ୍ତି ସେହି ।

ବିଷୟ ଦର୍ଶନ ପ୍ରତି ଆକାଂକ୍ଷା ନ ରଖ
ସେହି ବିଷୟ ଚେଷ୍ଟାରେ ହୁଅ ହେ ବିମୁଖ ।
ଅନ୍ତର୍ମୁଖୀ ହେବାପାଇଁ ଆଦର୍ଶ ରଖିବ
ସ୍ୱସ୍ଥ ରହିବା ପଦରୁ ପଦ ନ ଖସିବ ।
କହନ୍ତି ବାଲ୍ମୀକି ଶୁଣ ଭରଦ୍ୱାଜ ମୁନି
ବଶିଷ୍ଠଙ୍କର ଏସନ ସୁଧାସମ ବାଣୀ,
ବିଧୌତ ଦର୍ପଣପରି ରାମଙ୍କର ମନ
ସୁନିର୍ମଳ କରେ ଯଥା ପୂର୍ଣ୍ଣମୀର ଜହ୍ନ ।
ଅନ୍ତର ଦେଶ ତାଙ୍କର ହୁଏ ସୁଶୀତଳ
ତ୍ରିବିଧ ତାପମାନ ଯେ ହୋଇଲେ ନିର୍ମୂଳ ।
ସମ୍ବୋଧି ଗୁରୁଦେବଙ୍କୁ କହନ୍ତି ଶ୍ରୀରାମ
ବେଦବେଦାନ୍ତ ପାରଗ ଆହେ ତପୋଧନ,
ସର୍ବଧର୍ମ ବିଶାରଦ ଆହେ ତତ୍ତ୍ୱବିତ
ସୂର୍ଯ୍ୟବଂଶ ଉଦ୍ଧାରକ ଆହେ ପ୍ରଜ୍ଞାବନ୍ତ,
ନିର୍ମଳ ବିଶୁଦ୍ଧ ହୃତ୍‌ପଦ୍ମ ବିକାଶକ
ସୂର୍ଯ୍ୟସମ ସମୁଦିତ ଉଦାର ବିବେକ,
ଜ୍ଞାନପ୍ରଭା ସୁସଜ୍ଜିତ ବିଜ୍ଞ ଶିରୋମଣି
ତପୀକୁଳ ମଣ୍ଡନ ହେ ଜ୍ଞାନ ଗୁଣ ଖଣି,
ଭବଦୀୟ ଉପଦେଶ ବାକ୍ୟମାନ ଶୁଣି
କିଞ୍ଚିତ ଆଶିଷ ପ୍ରାପ୍ତ ହେଲି ତପୀମଣି ।
ରାଜସ ସାତ୍ତ୍ୱିକ ଜନ୍ମ ବରନନ କାଳେ
ବ୍ରହ୍ମାଙ୍କ ଉତ୍ପତ୍ତି ଘେନି ଯାହା କହିଥିଲେ ।
ସେ ବିଷୟେ ଉପଦେଶ ଦେଇ ସବିସ୍ତାରେ
ସନ୍ଦେହ ମୋଚନ ମୋର କର ମୁନିବରେ ।
ବଶିଷ୍ଠ କହନ୍ତି ଏବେ ଶୁଣ ହେ ରାଘବ
ବହୁ ବ୍ରହ୍ମା ବହୁ ବିଷ୍ଣୁ ବହୁ ସଦାଶିବ,
ଅନନ୍ତ ଅତୀତ କାଳୁ ବହୁ ସଂଖ୍ୟା ଧରି
କୀରତି ଦେଖାଇଥିଲେ ଏହି ବସୁନ୍ଧରୀ ।
ଏବେ ମଧ୍ୟ ଶତ ଶତ କୋଟି ବ୍ରହ୍ମାଣ୍ଡରେ
କୋଟି ବ୍ରହ୍ମା କୋଟି ବିଷ୍ଣୁ କୋଟି ମହେଶ୍ୱରେ,
ପ୍ରଚଣ୍ଡ ମାର୍ତ୍ତଣ୍ଡ ସମ ବିରାଜନ୍ତି ମହୀ
ପରେ ମଧ୍ୟ କେତେ ହେବେ ଇୟତ୍ତା ନ ଥାଇ ।
ବହୁ ସହସ୍ର ଜଗତେ ଏକ ସମୟରେ
ହିରଣ୍ୟଗର୍ଭେ ଜନ୍ମିବେ କୋଟ଼ି ସଂଖ୍ୟାରେ ।
କୋଟି ବ୍ରହ୍ମାଣ୍ଡେ ଏ ରୂପେ ଇନ୍ଦ୍ରଜାଲ ପରି
ପଦ୍ମଯୋନି ଜନମନ୍ତି କିଏ ସଂଖ୍ୟା କରି ?
ପଦ୍ମଯୋନି ସର୍ଜିଛନ୍ତି କେବଣ ବ୍ରହ୍ମାଣ୍ଡ
ବିଷ୍ଣୁ ସରଜନା କେତେ ବ୍ରହ୍ମାଣ୍ଡ ଅଖଣ୍ଡ
ଅସଂଖ୍ୟ ବ୍ରହ୍ମାଣ୍ଡ ପୁଣି ରୁଦ୍ରଙ୍କ ସର୍ଜନା
କେତେ ଯେ ସରଜି ଗଲେ ଋଷି ମହାମନା ।
କେଉଁ ବ୍ରହ୍ମାଣ୍ଡରେ ବ୍ରହ୍ମା ପଦ୍ମରୁ ଜନମ
କେଉଁ ବ୍ରହ୍ମାଣ୍ଡରେ ପୁଣି ଜଳୁ ଉତପନ୍ନ ।
ଅଣ୍ଡରୁ ଜନ୍ମ ଲଭନ୍ତି ପୁଣି କେତେବେଳେ
ଆକାଶରୁ ଉତପନ୍ନ ପୁଣି ଅନ୍ୟବେଳେ ।
କେଉଁ ବ୍ରହ୍ମାଣ୍ଡର ସୂର୍ଯ୍ୟ ତ୍ରିନୟନ ଶିବ
କାହିଁବା ପୁଣ୍ଡରୀକାକ୍ଷ ବିଷ୍ଣୁ ସୂର୍ଯ୍ୟଦେବ ।
ସସ୍ରଯୋନି ଇନ୍ଦ୍ର ପୁଣି କେଉଁ ବ୍ରହ୍ମାଣ୍ଡରେ
ତପନ କର୍ମ କରନ୍ତି ଜାଣ ରଘୁବୀରେ ।
କେଉଁ ବ୍ରହ୍ମାଣ୍ଡେ ବସନ୍ତି ଜୀବଜନ୍ତୁଗଣ
କେବଣ ବ୍ରହ୍ମାଣ୍ଡ ଖାଲି ବୃକ୍ଷଲତା ପୂର୍ଣ୍ଣ ।
କେବଣ ବ୍ରହ୍ମାଣ୍ଡ ଗିରି ପର୍ବତ ସଙ୍କୁଳ
କେବଣ ବ୍ରହ୍ମାଣ୍ଡ ପୂର୍ଣ୍ଣ ମୃତ୍ତିକା ପ୍ରସ୍ତର ।
ସୁବର୍ଣ୍ଣମୟୀ ମୃର୍ତ୍ତିକା କାହିଁ ବିରାଜଇ
ତାମ୍ରମୟୀ ଭୂମି ମଧ୍ୟ କାହିଁ ଦେଖାଯାଇ ।
କେତେ ଯେ ଆଶ୍ଚର୍ଯ୍ୟ ବସ୍ତୁ ଆମ୍ଭ ବ୍ରହ୍ମାଣ୍ଡରେ
ପରିପୂର୍ଣ୍ଣ ରହିଅଛି ଆହେ ରଘୁବୀରେ ।
ଆଶ୍ଚର୍ଯ୍ୟମୟ ଅନ୍ୟାନ୍ୟ ବ୍ରହ୍ମାଣ୍ଡ ସେପରି
କାହିଁ ଆଲୋକ ନ ଥାଇ, ଅନ୍ଧକାର ପୁରୀ ।
ଏହିପରି ବ୍ରହ୍ମରୂପ ମହା ଆକାଶରେ
ସାଗର ତରଙ୍ଗ ପରି ନିଶି ଦିବସରେ,
ଅନନ୍ତ କୋଟି ଜଗତ ହୋଇ ଉତପନ୍ନ
କ୍ଷଣକ ମଧ୍ୟରେ ପୁଣି ଲଭନ୍ତି ବିଲୀନ ।
ସଂଖ୍ୟାତୀତ ତ୍ରସରେଣୁ ସୂର୍ଯ୍ୟଙ୍କ ରଶ୍ମିରେ
ଭାସମାନ ରହିଥାନ୍ତି ଯଥା ସଦାକାଳେ ।
ସେହିପରି ବ୍ରହ୍ମାକାଶେ କେତେ ଯେ ଜଗତ
ଭାସମାନ ରହିଅଛି କେ କରିବ ଅନ୍ତ ?
ପ୍ରତି ମୁହୂର୍ତ୍ତରେ ଜନ୍ମ ଆବର ବିଲୀନ
କେତେ ଯେ ଜଗତ ହେଉଁ ଅଛନ୍ତି ଏସନ ।
କେତେ ପୂର୍ବକାଳୁ ଏହା ଚଳିଛି ହେ ରାମ
ସ୍ଥିର କରି କହିବାକୁ ହେବ କେ ସକ୍ଷମ ?
ତରଙ୍ଗ ସଦୃଶ ଏହି ଅନନ୍ତ ଜଗତ
ଅହରହ ଉଠି ପୁଣି ହୁଏ ଅନ୍ତର୍ହିତ ।

ହୃଦୟ ଆକାଶ ସ୍ଥିତ ବ୍ରହ୍ମଙ୍କ ମଧ୍ୟରେ
ଏବେ ମଧ୍ୟ କୋଟି ବିଶ୍ୱ ବିରାଜେ ତହିଁରେ ।
ଆକାଶରୁ ଜନମିଣ ଶବଦ ଯେସନ
ଆକାଶେ ବିଲୀନ ହେଉଥାଏ ଅନୁକ୍ଷଣ ।
ସେହିପରି ବ୍ରହ୍ମାକାଶେ ବିଶ୍ୱ କୋଟି କୋଟି
ଜନମ ବିଲୟ ଲଭୁଥାନ୍ତି ନିତି ନିତି ।
ମୃତ୍ତିକାରେ ଭାବି ଘଟ ଯଥା ବିରାଜିତ
ଭାବି ବ୍ରହ୍ମାଣ୍ଡ ତେସନ ବ୍ରହ୍ମାକାଶେ ସ୍ଥିତ ।
ଭାବି ଜଗତ ବ୍ରହ୍ମରୁ ଅଟଇ ଅଭିନ୍ନ
ଯେ ପର୍ଯ୍ୟନ୍ତ ନ ଜନ୍ମିଛି ଏହି ତତ୍ତ୍ୱଜ୍ଞାନ ।
ସେ ପର୍ଯ୍ୟନ୍ତ ହେବ ନାହିଁ ତାହାର ବିନାଶ
ଚିଦାକାଶେ ହେଉଥିବ ସଦା ପରକାଶ ।
ବୃଷ୍ଟି ଯେପରି ଜଳରୁ ନୁହଇ ପୃଥକ
ତତ୍ତ୍ୱଜ୍ଞ କହେ ଜଗତ ବ୍ରହ୍ମୁ ଅପୃଥକ ।
ମୋଠାରୁ ଭିନ୍ନ ଈଶ୍ୱର କରିଛି ଏ ସୃଷ୍ଟି
ମେଘରୁ ପଡୁଣଥାଏ ଯେମନ୍ତ କି ବୃଷ୍ଟି ।
ଅତତ୍ତ୍ୱଜ୍ଞାନୀମାନଙ୍କ ଧାରଣା ଯେ ଏହି
ଏଣେ ତେଣେ ମାଡୁଥାନ୍ତି ଭ୍ରମବଶ ହୋଇ ।
ଜଗତ ବ୍ରହ୍ମଙ୍କ ମଧ୍ୟେ ଭେଦ କିଛି ନାହିଁ
ଜ୍ଞାନୀ ଏହି ମତ ସଦା ଅଟଳ ରଖଇ ।
ଅଜ୍ଞାନୀ ମତେ ଜଗତ, ବ୍ରହ୍ମଙ୍କ ମଧ୍ୟରେ
ପାର୍ଥକ୍ୟ ନିଶ୍ଚୟ ଅଛି ଜାଣ ରଘୁବୀରେ ।
ଆକୃତି ସମ୍ପନ୍ନ ଅଟେ ଏହି ଯେ ଜଗତ
ଏଥିରେ ଜ୍ଞାନୀ ଅଜ୍ଞାନୀ ଦୁହେଁ ଏକମତ,
ପଞ୍ଚ ତନ୍ମାତ୍ରାର ନାମ ଅଟେ ଭୂତ ସୂକ୍ଷ୍ମ
ଅବ୍ୟାକୃତ ଆକାଶରୁ ଏହାଙ୍କ ଉତ୍ପନ୍ନ ।
ସେହି ଭୂତ-ସୂକ୍ଷ୍ମ, ସ୍ଥୂଳ ଆକାରକୁ ଧରେ
କ୍ରମେ କ୍ରମେ ସ୍ଥୂଳ ଜଗତକୁ ସୃଷ୍ଟି କରେ ।
ପ୍ରଥମେ ଆକାଶ ସ୍ଥୂଳ ଭାବ ଯେବେ ଧରେ
ଆକାଶଜ ବ୍ରହ୍ମା ଜନ୍ମ ହୁଅନ୍ତି ତତ୍ପରେ ।
ବାୟୁ ଯେତେବେଳେ ଆଗ ସ୍ଥୂଳଭାବ ଧରେ
ବାୟୁଜ ବ୍ରହ୍ମା ଜନମ ଲଭନ୍ତି ସେ କାଳେ,
ତେଜ କେବେ ପ୍ରଥମରୁ ଧରେ ସ୍ଥୂଳଭାବ
ତହିଁରୁ ତୈଜସ ପ୍ରଜାପତିଙ୍କ ଉଦ୍ଭବ ।
ଯେତେବେଳେ ଜଳ ସ୍ଥୂଳ ଭାବକୁ ଧରଇ
ବାରିଜ ପ୍ରଜାପତି ଯେ ତହୁଁ ଉପୁଜଇ ।
କେବେ ପ୍ରଥମେ ପୃଥିବୀ ସ୍ଥୂଳଭାବ ଧରେ
ପାର୍ଥୀବ ବ୍ରହ୍ମା ଜନମ ଲଭନ୍ତି ତତ୍ପରେ ।
ଏକ ଭୂତ-ସୂକ୍ଷ୍ମ ଯେବେ ହୋଇଣ ପ୍ରବଳ
ପ୍ରଭାବ ପକାଏ ଅନ୍ୟ ଭୂତଙ୍କ ଉପର ।
ସେହି ପ୍ରବଳ ଭୂତଙ୍କ ଅବଲମ୍ବନରେ
ପ୍ରଜାପତି ବ୍ରହ୍ମା ଜନ୍ମି ସୃଷ୍ଟିକ୍ରିୟା କରେ ।
କେବେ ପରମ ପୁରୁଷ ନାଭିକମଳରୁ
ବ୍ରହ୍ମାଙ୍କ ଜନମ ଲାଭ ହୁଅଇ ତହିଁରୁ ।
ପଦ୍ମଜନ୍ମା ବୋଲି ତାଙ୍କୁ କହନ୍ତି ସମସ୍ତେ
ହେଜ ରଖ ମୋ କହିବା ରାମ ମହାମତେ ।
ବ୍ରହ୍ମାଙ୍କ ଜନ୍ମ ବର୍ଣ୍ଣନା ଯାହା ବଖାଣିଲି
ଶ୍ରୁତି ମଧୁର ହେଲେହେଁ ଭ୍ରାନ୍ତିପୂର୍ଣ୍ଣ ଖାଲି ।
ଏହା ଯଦି ଭ୍ରାନ୍ତିମୟ ହୋଇଣ ନ ଥାନ୍ତା
ଅଦ୍ୱିତୀୟ ବ୍ରହ୍ମଠାରୁ ବ୍ରହ୍ମାକି ଜନ୍ମନ୍ତା ?
ମନର ଅଚିନ୍ତନୀୟ ଶକତିର ବଳେ
ବିଶୁଦ୍ଧ ଆକାଶୁ ସ୍ୱର୍ଣ୍ଣ ବ୍ରହ୍ମା ଜନ୍ମିପାରେ ।
କେବେ ଅବା ସେ ପୁରୁଷ ସୁଗଭୀର ଜଳେ
ବୀର୍ଯ୍ୟ ନିକ୍ଷେପିଲେ ସୃଷ୍ଟି ଜନ୍ମଲାଭ କରେ ।
କେବେ ସୂର୍ଯ୍ୟ, କେବେ ବାୟୁ, କେବେ ବା ବରୁଣ
ବ୍ରହ୍ମା ହୋଇ ଏ ସୃଷ୍ଟିକି କରନ୍ତି ସର୍ଜନ ।
ଏହି ଅସତ ସୃଷ୍ଟିରେ ବହୁ ବ୍ରହ୍ମା ଜନ୍ମ
ଦେଖିଯାଇଛନ୍ତି ସର୍ବ ପ୍ରତ୍ୟାଗାତ୍ମାଗଣ ।
ଉଦାହରଣ ସ୍ୱରୂପ ଯେତୋଟି ବିଷୟ
କହିଲି ତୁମ୍ଭଙ୍କୁ ଆହେ ରଘୁଙ୍କ ତନୟ ।
ଏପରି ଯେ ତାହା ସବୁ ଚାଲୁ ରହିଥିବ
ସେପରି କିଛି ନିୟମ ନାହିଁ ହେ ରାଘବ ।
ମନରୁ କେବଳ ଜନ୍ମ ଏ ମର ସଂସାର
ତୁମର ବୁଝିବା ପାଇଁ କଲି ଯା ପ୍ରଚାର ।
ଏକ ଦିବସ ଯେବେ କି ହୁଅଇ ଅତୀତ
ପର ଦିବସର କାର୍ଯ୍ୟ ଚାଲେ ପୂର୍ବବତ ।
ମନ୍ୱନ୍ତର କଳ୍ପ କଳ୍ପାନ୍ତର ସେହିପରି
ପୁନଃ ପୁନଃ ଯାଆ ଆସ ତାଙ୍କୁ ରୂପଧାରୀ ।
ଏ ଜଗତ ସେହିପରି ଚକ୍ରପରି ରାମ
ସଦା ଭ୍ରମଣ କରଇ, ନ ଜାଣି ବିଶ୍ରାମ ।
ପାଟିଲା ଲୁହାକୁ ଯଥା ହାତୁଡ଼ି ଧରିଣ
ପିଟିଲେ ଅଗ୍ନି ସ୍ଫୁଲିଙ୍ଗ ହୁଏ ଉତପନ୍ନ,

ସକଳ ପଦାର୍ଥ ସେହିରୂପେ ଚିଦାକାଶେ
ଅବସ୍ଥାନ କରିଛନ୍ତି ରଜନୀ ଦିବସେ ।
ମାୟାବୀଜ ପ୍ରଭାବରୁ କେତେବେଳେ ସିଏ
କେବେ ପରକାଶ ପାଏ କେବେ ବା ନ ପାଏ ।
ସକଳ ଆତ୍ମା ସ୍ୱରୂପ ଯେ ଚିତ୍‌ସ୍ପନ୍ଦନ
ତାହାହିଁ କରଇ ସର୍ବ ଆକୃତି ଧାରଣ ।
ଚନ୍ଦ୍ରର ନିର୍ମଳ ରଶ୍ମି ଚନ୍ଦ୍ର ମଧ୍ୟେ ଥାଏ
ଚନ୍ଦ୍ର ମଧ୍ୟେ ନ ଥିବାର ପରି ଦେଖାଯାଏ ।
ଚୈତନ୍ୟରେ ଅବସ୍ଥିତ ଥିଲେ ହେଁ ଜଗତ
ତହିଁରେ ନ ଥିଲାପରି ହୁଏ ବୋଧଗତ ।
କେବେହେଁ ବାସ୍ତବ ନୁହେଁ ଏ ମର ସଂସାର
ସର୍ବଶକ୍ତିମାନ ବ୍ରହ୍ମେ ଅଭାବ ଏହାର ।
ପୁଣି ଏ ଜଗତ ରାମ ନୁହଇ ଅସତ
ସର୍ବଶକ୍ତି ସତ୍ତା ବ୍ରହ୍ମ ମଧ୍ୟେ ଯେଣୁ ସ୍ଥିତ ।
ଏ ସବୁକୁ ବ୍ରହ୍ମବୋଲି ମଣନ୍ତି ଜ୍ଞାନୀଏ
ଯେଣୁ ସଂସାର ଅସତ ତାଙ୍କୁ ଦେଖାଯାଏ ।
ଅଜ୍ଞାନୀମାନେ ମଣନ୍ତି ସଂସାର ଯେ ସତ
ତେଣୁ ସେମାନେ ହୁଅନ୍ତି ସଦା ମାୟାଗ୍ରସ୍ତ ।
ଜଗତ୍-ପ୍ରବାହକୁ କର୍ମ ମୀମାଂସକ ଗଣ
ନିତ୍ୟ ବୋଲି ମଣୁଥିବା ସତ୍ୟ ସେ କଥନ ।
ଯେଣୁ ଏ ଜଗତ ପୁନଃ ପୁନଃ ଉତପନ୍ନ
ତେଣୁ ତା ଅସତ ବୋଲି ନ ଆଣନ୍ତି ମନ ।
ବ୍ରହ୍ମରେ ନ ଥିବା କଉଣସି ବସ୍ତୁମାନ
ପରିଦୃଷ୍ଟ ହୋଇ ନ ପାରଇ କଦାଚନ ।
ସକଳ ସମ୍ଭବପର ବ୍ରହ୍ମ ମଧ୍ୟେ ରାମ
କଳ୍ପନା କହିବା ତାକୁ ଅସଙ୍ଗତ ଜାଣ ।
କଉଣସି ରୂପ ଆଖ୍ୟା ଯାହାଙ୍କର ନାହିଁ
ତା ମଧ୍ୟେ କଳ୍ପନା ପ୍ରଶ୍ନ ଉଠିବ କିମ୍ପାଇ ?
ବାରମ୍ବାର ସୃଷ୍ଟି ପୁଣି ସେତିକି ପ୍ରଳୟ
ପରିବର୍ତ୍ତିତ ଏ ସୃଷ୍ଟି ଚକ୍ରର ପରାୟ ।
ମାୟାର ଭ୍ରାନ୍ତି ଅଟଇ ଅତୀବ ବିଶାଳ
ସତ୍ୟ ମିଥ୍ୟା ଜ୍ଞାନ ତହିଁ ଅତି କଷ୍ଟକର ।
ଦାଶୁର ଆଖ୍ୟାନ ପରି କଳ୍ପନା ଜନିତ
ବସ୍ତୁ ଛଡ଼ା ଅନ୍ୟ କିଛି ନୁହେଁ ଏ ଜଗତ ।
ତେଣୁ ତୁମର ଏପରି ମୋହ କିପାଁ ଜାତ
କଳ୍ପନା ବସ୍ତୁରେ ମନ ଦେବା ଅନୁଚିତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଜଗତ ସତ୍ୟାସତ୍ୟ ବର୍ଣ୍ଣନେ**
**ନାମ ୪୬ଶ ସର୍ଗଃ ।**



## ୪୭ଶ ସର୍ଗଃ
## ଦାଶୁର ଉପାଖ୍ୟାନ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
କାମ୍ୟକର୍ମେ ଆସକ୍ତ ହୁଅନ୍ତି ମୂଢ଼ଗଣ ।
କାମନା କେବଳ ତାଙ୍କ ହୁଅଇ ସଞ୍ଚିତ
ତତ୍ତ୍ୱଜ୍ଞାନ କେବେହେଲେ ନୁହଇ ଆଦୃତ ।
ସତ୍ୟ ସ୍ୱରୂପ ଆତ୍ମାକୁ ଦେଖି ନ ପାରନ୍ତି
ମାୟା ଜାଲେ ପଡ଼ି ଖାଲି ଘାରି ହେଉଥାନ୍ତି ।
ଇନ୍ଦ୍ରିୟବଶତା ଯେଉଁମାନେ ତେଜିଦ୍ୟନ୍ତି
ବୁଦ୍ଧିବଳେ ତତ୍ତ୍ୱଜ୍ଞାନ ଆଦର କରନ୍ତି,
ମାୟା ସ୍ୱରୂପ ନିର୍ଣ୍ଣୟେ ସେମାନେ ସମର୍ଥ
ହସ୍ତଗତ ବିଲ୍ୱଫଳ ଅଟଇ ଯେମନ୍ତ ।
ଅନାୟାସେ ସର୍ପ ଯଥା କାଂତି ଛାଡ଼ିବସେ
ସୁବିଚାରବନ୍ତ ମାୟା ତେଜେ ଅନାୟାସେ ।
କରିଲେ ହେଁ ଅବସ୍ଥାନ ଏ ସଂସାରେ ସେହି
ଆସକ୍ତ ବିହୀନ ହେତୁ ପୁଣି ନ ଜନ୍ମଇ ।
କେବଳ ଦେହ ନିମିତ୍ତ ଅଜ୍ଞ ଯତ୍ନବାନ
ଆତ୍ମାପାଇଁ କରେ ନାହିଁ କୌଣସି ଯତନ ।
ଦେହ ପାଇଁ ଯତ୍ନବାନ ଯେପରି ନ ହୁଅ
ତଦ୍ୱାରା କେବଳ ଦୁଃଖ ମିଳିବା ନିଶ୍ଚୟ ।
ତେଣୁ ଆତ୍ମବୋଧ ପରାୟଣ ହୁଅ ରାମ
ଅନ୍ୟଥା ନ ହେଉ ତୁମ ମାନବ ଜନମ ।
କହନ୍ତି ଶ୍ରୀରାମଚନ୍ଦ୍ର ଗୁରୁଦେବ ଶୁଣ
ଏ ଜଗତ ଅଟେ ଯଥା ଦାଶୁର ଆଖ୍ୟାନ ।
ଆପଣଙ୍କ ଏହି ମତ ମୁହିଁ ତ ଶୁଣିଲି
ଏହାର ଯଥାର୍ଥ ଅର୍ଥ ବୁଝି ନପାରିଲି ।
ବଶିଷ୍ଠ ବୋଇଲେ ରାମ ମଗଧ ଦେଶରେ
ଅରଣ୍ୟ ମଧ୍ୟେ କଦମ୍ବ ଗଛର ଅଗରେ ।
ଦାଶୁର ନାମକ ଏକ ମହାତପା ମୁନି
ବାସ କରୁଥିଲେ ତହିଁ ବହୁକାଳ ଘେନି ।
କୌତୂହଳବଶ ରାମ କହନ୍ତି ବଚନ
ବୃକ୍ଷାଗ୍ରରେ ବାସକଲେ କିପାଁ ତପୋଧନ ?

ବଶିଷ୍ଠ କହି ବସନ୍ତି ଦାଶୁର ଜନକ
ଶରଲୋମା ମୁନି ଥିଲେ ତପୀଙ୍କ ତିଳକ ।
ଏହି ଅରଣ୍ୟ ମଧ୍ୟରେ ପର୍ବତ ଉପରେ
ବାସ କରୁଥିଲେ ରାମ ସେହି ମୁନିବରେ ।
କାଳକ୍ରମେ ତପୋଧନ ଲଭିଲେ ନିଧନ
ଦେବଲୋକ ଯାଇଁ ମୁନି କଲେ ଅବସ୍ଥାନ ।
ପିତୃହୀନ ଋଷିପୁତ୍ର କରୁଛି କ୍ରନ୍ଦନ
ଦେଖି ବନଦେବୀଙ୍କର ଟଳିଲା ଆସନ ।
ଅଦୃଶ୍ୟରେ ରହି ଦେବୀ ଦେଲେ ଆଶ୍ୱାସନା
ଋଷିପୁତ୍ର କିପାଁ କାନ୍ଦୁ ନ ହୁଅ ବିମନା ।
ଅସତ ଅଟଇ ଜାଣ ଏ ସାରା ସଂସାର
ଉତ୍ପତ୍ତି ବିନାଶ ତାର ଘଟେ କାଳକାଳ ।
ସ୍ଥିର ନୁହଇ କୌଣସି ପଦାର୍ଥ ଏଥିରେ
ବ୍ରହ୍ମାଠାରୁ କୀଟ ଯାଏ ନଶ୍ୱର ସକଳେ ।
ପିତୃ ମରଣେ ବିଳାପ ନ କରରେ ସୁତ
ଜନମ ଲଭିଲେ ଜାଣ ମରଣ ନିଶ୍ଚିତ ।
ମେଘ ଉଦୟେ ମୟୂର ଯଥା ଲଭେ ଶାନ୍ତି
ତେସନ ଋଷିପୁତ୍ରର ହଜିଲା ଅଶାନ୍ତି ।
ଶାସ୍ତ୍ରୋଚିତ ପିତୃକ୍ରିୟା କରି ସମ୍ପାଦନ
ଋଷିପୁତ୍ର ତପସ୍ୟାରେ ବଳାଇଲେ ମନ ।
ତପ ଉପଯୁକ୍ତ ସ୍ଥାନ ଲୋଡ଼ଇ ବାଳକ
ଯହିଁ ଯାଏ ତହିଁ ଶଙ୍କିଯାଏ ତା ବିବେକ ।
ପ୍ରତ୍ୟେକ ସ୍ଥାନ ତାହାକୁ ଅଶୁଦ୍ଧ ଲାଗଇ
କୌଣସିନା କଉଣସି ବିଘ୍ନ ଦେଖାଯାଇ ।
ବୃକ୍ଷ ଶାଖାରେ ବସିଣ ତପସ୍ୟା କରିବ
ଏହି ସିଦ୍ଧାନ୍ତ ତା ମନେ କରିଲାକ ଠାବ ।
ପୁଣି ବିଚାରଇ ମନେ କେଉଁ ଉପାୟରେ
ତପସ୍ୟା କରିବ ବସି ଗଛର ଉପରେ ।
ଏସନ ବିଚାରି ମନେ ରଚଇ ହବନ
ନିଜର ମାଂସ କରିବ ଆହୂତି ପ୍ରଦାନ ।
ତାର ମନ ଜାଣି ଅଗ୍ନି ଚିନ୍ତନ୍ତି ଏସନ
ବ୍ରାହ୍ମଣ ମାଂସ କିପରି କରିବେ ଭୋଜନ ।
ମୁହିଁ ତ ଅଟେ ଦେବତାମାନଙ୍କର ମୁଖ
ଦେବତାମାନେ ଯେ ପୁଣି ହୋଇବେ ବିମୁଖ ।
ସାକାର ରୂପରେ ଅଗ୍ନି ହୋଇଣ ପ୍ରବେଶ
ବାଳ ତପସ୍ୱୀଙ୍କି ଦେଇଯାନ୍ତି ଉପଦେଶ ।

ହେ ଦ୍ୱିଜକୁମର ଏବେ ମାଗି ଘେନ ବର
ଯାହା କି ବାଞ୍ଛା ଅଛଇ ମନରେ ତୋହର ।
ଏବେ ଦାଶୁର ପୂଜନ ସାମଗ୍ରୀ ଆଣଇ
ଧୂପ, ପୁଷ୍ପ, ନୈବିଦ୍ୟାଦି ଯାହା ଲୋଡ଼ା ହୋଇ ।
ସନ୍ତୋଷ ମନରେ ପୂଜା କର୍ମ ଶେଷକରି
ବର ମାଗେ ବାଳତପୀ କରପତ୍ର ଯୋଡ଼ି ।
ପ୍ରାଣ ଆହୁତି ଦେବି ମୁଁ ବାୟୁ ଶରୀରରେ
ଉପଯୁକ୍ତ ଶୁଦ୍ଧ ସ୍ଥାନ ନ ଦିଶେ ପୃଥ୍ୱୀରେ ।
ତେଣୁ ମୋର ଇଚ୍ଛା ଯାଇଁ ପାଦପ ଶିଖରେ
କିପରି ବସିପାରିବ ଶକ୍ତି ଦିଅ ମୋରେ ।
ତପସ୍ୟା କରିବି ମୁହିଁ ତହିଁ ବସି ଦେବ
ଏହି ଶକତିଟି ମୋତେ ପ୍ରଦାନ କରିବ ।
ତଥାସ୍ତୁ କହିଣ ଅଗ୍ନିଦେବ ଅନ୍ତର୍ଦ୍ଧାନ
ବର ପାଇ ଫୁଲି ଉଠେ ବାଳଯୋଗୀ ମନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଦାଶୁର ଉପାଖ୍ୟାନ ଓ ବରପ୍ରାପ୍ତି**
**ବର୍ଣ୍ଣନେ ନାମ ୪୭ଶ ସର୍ଗଃ ।**

□

## ୪୮ଶ ସର୍ଗଃ

## ଦାଶୁର କଦମ୍ବ

ଯାଉଁ ଯାଉଁ ବାଳତପୀ ଦେଖଇ ଏସନ
କଦମ୍ବ ବୃକ୍ଷେକ ନଭ ଚୁମ୍ବଇ ଯେସନ ।
ଏକାର୍ଣ୍ଣବ ବଟବୃକ୍ଷେ ବିଷ୍ଣୁ ଯେଉଁପରି
ବିଶ୍ରାମ କରନ୍ତି ତହିଁ କାଳ କାଳ ଧରି,
କଦମ୍ବ ବୃକ୍ଷାଗ୍ରେ ବସି ଧ୍ୟାନମଗ୍ନ ହୋଇ
ତପସ୍ୟା ଆରମ୍ଭ କରେ ଦାଶୁର ଗୋସାଇଁ ।
'କଦମ୍ବ ଦାଶୁର' ନାମେ ତା ନାମ ବିଖ୍ୟାତ
ସେଦିନୁ ହେଲା ଜାଣିଲେ ସର୍ବ ତପୋବନ୍ତ ।
ତେତେବେଳେ ପରିଯନ୍ତେ ପରମାର୍ଥ ଜ୍ଞାନ
ପାଇପାରି ନଥିଲେ ସେ ବାଳ ତପୋଧନ ।
ଫଳ ଆଶାରେ ମାନସ ଯଜ୍ଞ ଆରମ୍ଭିଲେ
ଦେବ ଅର୍ଚ୍ଚନାରେ ଦଶ ବର୍ଷ ବିତାଇଲେ ।
ଅଶ୍ୱମେଧ, ନରମେଧ, ଗୋମେଧାଦି ଯଜ୍ଞ
ସମ୍ପାଦନ କଲେ ସେହି ଯୋଗୀଙ୍କ ଉତ୍ତମ ।
ଏହି ଭାବେ କିଛିକାଳ ହୁଅନ୍ତେ ଅନ୍ତର
ଚିତ୍ତ ନିର୍ମଳତା ଲଭିଲେ ସେ ମୁନିବର ।

ଅଜ୍ଞାନାବରଣ ତାଙ୍କ ହେଲା ଦୂରୀଭୂତ
ବାସନା ମଳ ସକଳ ହୁଏ ବିଗଳିତ ।
ଅନନ୍ତର ଏକ ଦିନେ ଲତାଗ୍ରେ ଆସୀନା
ବନଦେବୀଙ୍କୁ ଦେଖନ୍ତି ସେହି ମହାମନା ।
ପଦ୍ମ ପଲାଶ ଲୋଚନେ ତୁମେ ଯେ କିଏ ସେ
କିମ୍ପାଇଁ ବିରାଜି ଅଛ ଏହି ବନଦେଶେ ?
ଏହିପରି ପଚ୍ଛରନ୍ତେ ସେହି ବନଦେବୀ
କହିଲେ ମୁଁ ଏହି ବନ ଅଧିଷ୍ଠାତ୍ରୀ ଦେବୀ ।
ଯେ କଦମ୍ବ ବୃକ୍ଷେ ତୁମେ କରିଛ ନିବାସ
ସେହି ବୃକ୍ଷ ନିକଟରେ ଅଟେ ମୋର ବାସ ।
ବିଗତ ମଦନୋତ୍ସବ ବେଳେ ମହାମତେ
ସମ୍ମିଳିତ ହୋଇଥିଲେ ବନଦେବୀ ଯେତେ,
ମୁହିଁ ମଧ୍ୟ ସେହିଠାରେ ଉପସ୍ଥିତ ଥିଲି
ସମସ୍ତଙ୍କୁ ପୁତ୍ରବତୀ ଥିବା ମୁଁ ଦେଖିଲି ।
ପୁତ୍ରହୀନା ଅଭାଗିନୀ ମୁହିଁ ଏକମାତ୍ର
ତେଣୁ କରି ଦୁଃଖେ ମୋର ଶୁଖିଅଛି ଗାତ୍ର ।
କଳ୍ପବୃକ୍ଷ ସମ ତୁମେ ଥାଉଁ ବର୍ତ୍ତମାନ
ହେ ନାଥ ମୁଁ ପୁତ୍ରହୀନା ହେବି କି କାରଣ ?
ଏକମାତ୍ର ପୁତ୍ର ମୋତେ କରନ୍ତୁ ପ୍ରଦାନ
ନତୁବା ଅଗ୍ନିରେ ମୁହିଁ ହୋଇବି ଦହନ ।
ବନଦେବୀଙ୍କର ଏହି ବଚନ ଶୁଣିଣ
ଦାଶୁର ମୁନି କରନ୍ତି ପୁଷ୍ପେକ ପ୍ରଦାନ ।
ମାସକ ମଧ୍ୟରେ ତୁମେ ଲଭିବ ସନ୍ତାନ
ସେହି ପୁତ୍ର ହେବ ତତ୍ତ୍ୱଜ୍ଞାନୀଙ୍କ ପ୍ରଧାନ ।
ଏହିପରି ଦୀର୍ଘକାଳ ଗତ ହୋଇଗଲା
ବାର ବରଷ ପୁଅକୁ ଦେବୀ ସଙ୍ଗେ ନେଲା ।
ମୁନିଙ୍କୁ କହନ୍ତି ପ୍ରଭୁ ହୋଇ ଭାବାବେଶ
ଏ ପୁତ୍ର ଲଭିଛି ପାଇ ତୁମ୍ଭର ଆଶୀଷ ।
ଏହାକୁ ମୁଁ '***ସାଙ୍ଗବେଦ**' କରାଇଛି ପାଠ
ଜ୍ଞାନ ଉପଦେଶ ତାକୁ ଲୋଡ଼ା ମୁନିଶ୍ରେଷ୍ଠ ।
କୃପା କରିଣ ଆଧାତ୍ମ ଜ୍ଞାନରେ ନିପୁଣ
କରିବା ହୁଅନ୍ତୁ ତାକୁ ହେ ଜ୍ଞାନୀ ପ୍ରବୀଣ ।
"ଏବେ ମୋର ଶିଷ୍ୟ ହେଲା ତୁମର ଏ ପୁଅ
ତାକୁ ଏଠି ଛାଡ଼ିଦେଇ ଘରେ ଫେରିଯାଅ" ।

ଦାଶୁର ମୁନିଙ୍କଠାରୁ ଶୁଣି ଏ ବଚନ
ବନଦେବୀ ଚଳିଗଲେ ଆପଣା ଭୁବନ,
ସେହି ଧୀମାନ ବାଳକ ଦାଶୁରଙ୍କ ପାଶେ
ସୁସଂଯତ ଭାବେ କାଳ କଟାଏ ହରଷେ ।
ଗୁରୁଙ୍କ ଶୁଶ୍ରୂଷା ପୁଣି ବ୍ରତ ଆଚରଣ
କରି ଲାଭ କଲେ ସେ ପରୋକ୍ଷ ତତ୍ତ୍ୱଜ୍ଞାନ ।
ତତପର ସେ ଦାଶୁର ମୁନି ଉପଦେଶେ
ଅପରୋକ୍ଷ ଜ୍ଞାନ ଅରଜନ୍ତି ଅବଶେଷେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଦାଶୁର କଦମ୍ବ ଉପାଖ୍ୟାନ ବର୍ଣ୍ଣନେ**
**ନାମ ୪୮ଶ ସର୍ଗଃ ।**



## ୪୯ଶ ସର୍ଗଃ
## ଦାଶୁର୍ ସୁତବୋଧନ

ବଶିଷ୍ଠ କହନ୍ତି ଏକ ଦିନେ ମୁହିଁ ରାମ
କୈଳାସ ଗଙ୍ଗାକୁ ଗଲି କରିବାକୁ ସ୍ନାନ ।
ଆକାଶ ପଥରେ ଯାଉଥିବାବେଳେ ମୁହିଁ
ଦାଶୁର ମୁନି କଦମ୍ବ ବୃକ୍ଷ ପାଶଦେଇ ।
ଅଶରୀରୀ ଜଣେ କେହି କହିବା ଶୁଣିଲି
ତ୍ରିଲୋକ ମଧ୍ୟରେ ଏକ ମହାବଳଶାଳୀ ।
* ଖୋତ୍ଥ ନାମରେ ଜନୈକ ରାଜା ଅଛି ବୋଲି
ହେ ପୁତ୍ର ସେ ପୁଣି ଅଟେ ମହାବଳଶାଳୀ ।
ତ୍ରିଭୁବନରେ ସକଳେ ତାହାଙ୍କ ହୁକୁମ
ଶିରୋଧାର୍ଯ୍ୟ କରି ଚଳୁଥାନ୍ତିରେ ନନ୍ଦନ ।
ଦେବ, ଯକ୍ଷ, ରାକ୍ଷସ, ଗନ୍ଧର୍ବ ଆଦି ଯେତେ
କିନ୍ନର, କିନ୍ନରୀ, ନାଗଗଣଙ୍କ ସହିତେ,
ଅବନତ ମସ୍ତକରେ ତା ଅନୁଶାସନ
ଆଦର ସହିତ କରୁ ଥାଆନ୍ତି ପାଳନ ।
ଏପରି ସାହାସୀ ପୁଣି କୌଶଳ ସମ୍ପନ୍ନ
ତାକୁ ବଶ କରିବାକୁ ସରବେ ଅକ୍ଷମ ।
ତାର ସୁଖ ଦୁଃଖପ୍ରଦ କାର୍ଯ୍ୟାବଳୀ ଯେତେ
ଗଣନା କରିବା ପାଇଁ ଅକ୍ଷମ ସମସ୍ତେ ।
ତାର ସମ ବୀର୍ଯ୍ୟଶାଳୀ ତ୍ରିଭୁବନେ ନାହିଁ
ଅସ୍ତ୍ର, ଶସ୍ତ୍ର, ଅଗ୍ନିବଳେ କେହି ନ ପାରଇ ।

* ସାଙ୍ଗବେଦ – ସଂପୂର୍ଣ୍ଣ ବେଦ

ଅନାକ୍ରମ୍ୟ ଅଟେ ସେହୁ ଆକାଶ ସଦୃଶ
ଅସ୍ତ୍ର ଶସ୍ତ୍ର କାହିଁ ତାକୁ କରିବାକୁ ନାଶ ?
ଲୀଳାକ୍ରମେ ଯେ ସମସ୍ତ ସର୍ଜିପାରେ ସେହି
ହରିହର ବ୍ରହ୍ମା ଆଦି କେହି ନ ପାରଇ ।
**ତିନିବିଧ ଦେହ ଅଛି** ସେହି ରାଜାଙ୍କର
**ଉତ୍ତମ, ମଧ୍ୟମ, ଅଧମାଦି** ତ୍ରିପ୍ରକାର ।
ସମସ୍ତ ଜଗତ ଏହି ତିନି ଦେହ ମଧ୍ୟେ
ଆଚ୍ଛାଦିତ ରହିଅଛି ଆହେ ରଘୁନିଧେ ।
**ସ୍ଥୂଳ, ସୂକ୍ଷ୍ମ, କାରଣ ଯେ** ଏ ତିନି ଶରୀର
ଧାରଣ କରିଛି ସେହିଁ ଭୂପତି ପ୍ରବର ।
ଆକାଶ ସମ୍ଭୂତ ଅଟେ ସେହି ଯେ ରାଜନ
ବ୍ରହ୍ମାଣ୍ଡ ରୂପନଗର କରିଛି ନିର୍ମାଣ ।
ସରଗ, ମର୍ତ୍ତ୍ୟ, ପାତାଳ ଏ ତିନି ଭାଗରେ
ଏ ନଗ୍ର ବିଭକ୍ତ ହୋଇଅଛି ରଘୁବୀରେ ।
ଚତୁର୍ଦ୍ଦଶ ଲୋକ ବିରାଜନ୍ତି ଏ ନଗରେ
ପୁଣି ଚତୁର୍ଦ୍ଦଶ ବିଦ୍ୟାଛନ୍ତି ରଘୁବୀରେ ।
ଚତୁର୍ଦ୍ଦଶ ପଥବୋଲି ସେ ବିଦ୍ୟା ବିଦିତ
ଅଧଃ ଉର୍ଦ୍ଧେ ଛନ୍ତି ଦୁଇ ବାଣିଜ୍ୟର ପଥ ।
ସୁଖ ବାଣିଜ୍ୟ ଗୋଟିକେ ହୁଏ ଉର୍ଦ୍ଧ୍ୱଗତି
ଦୁଃଖ ବାଣିଜ୍ୟ ଅନ୍ୟରେ ପୁଣି ଅଧୋଗତି ।
ଏହି ବିଶାଳ ନଗର ମଧ୍ୟେ ସେ ରାଜନ
**ସର୍ଜିଛନ୍ତି ପୁଣି ବିଷୟାମୂଢ଼ ଜଙ୍ଗମ ।**
ସେମାନେ ନାନାପ୍ରକାରେ ନାନା ଧର୍ମଧାରୀ
ନାନା ଆକୃତି ବଶିଷ୍ଟ ଆହେ ଚାପଧାରୀ ।
ଏହି ଆକୃତିର ଛନ୍ତି ନବଦ୍ୱାର ମାନ
ପାଞ୍ଚଗୋଟି ପ୍ରଦୀପରେ ପ୍ରକାଶେ ଜଙ୍ଗମ ।
ମାୟାବଳେ ରାଜା ନିର୍ମାଣିଛି ଏ ଶରୀର
ତହିଁ ଥାଇ କ୍ରୀଡ଼ାକରେ ନାନାଦି ପ୍ରକାର ।
ଚଞ୍ଚଳମନା ସେ ରାଜା ନିଜ ବ୍ୟବହାରେ
ପରାଜିତ ହେଉଥାଏ ବହୁ ସମୟରେ ।
ତେତେବେଳେ "ମୁହିଁ ଅଜ୍ଞ ମୁହିଁ ପୁଣି ଦୁଃଖୀ"
କହି ଶୋକଗ୍ରସ୍ତ ହେଉଥାଏ ସେ ବିମୁଖୀ ।

କେବେଭାବେ ମୁହିଁ ହେଲେ ହୁଅନ୍ତି ବିନଷ୍ଟ
ସେତେବେଳେ ଶୀଘ୍ର ସେହୁ ହୋଇଯାଏ ନଷ୍ଟ ।
ଜଳରୁ ତରଙ୍ଗ ଯେହ୍ନେ ନିଜେ ଉତପନ୍ନ
ନିଜେ ନିଜେ ସେହୁ ରାଜା ହେଉଥାଏ ଜନ୍ମ ।
କର୍ମମୟ ବ୍ୟବହାର କରି ବିସ୍ତାରଣ
କେବେ ହସେ କେବେ ପୁଣି କରଇ କ୍ରନ୍ଦନ ।
ସ୍ୱଇଚ୍ଛାରେ ରୋଗ ରିପୁଗ୍ରସ୍ତ କେବେ ହୁଏ
ଦାରିଦ୍ର୍ୟ ବରଣ କରି କେବେ ଦୁଃଖ ପାଏ ।
ଶତ୍ରୁକୁ ଭେଟିବା କ୍ଷଣି ହୁଏ ଜୟଯୁକ୍ତ
ସମ୍ପତ୍ତି ଲଭିଣ କେବେ ହୁଅଇ ବର୍ଦ୍ଧିତ ।
ଅପ୍ରକାଶ ଭାବେ କେବେ ନିରବରେ ଥାଏ
ସବୁଥିରେ ଥାଇ ପୁଣି କାହିଁରେ ନ ଥାଏ !
ତଥାପି ଅନ୍ତର ତାର ଚୈତନ୍ୟ ଜ୍ୟୋତିରେ
ଜ୍ୟୋତିର୍ମୟ ହୋଇ ଝଲସଇ ନିରନ୍ତରେ !
ସାଗର ସଦୃଶ ଅଟେ ସେ ମହାମହିମ
ତା ମହିମା ବର୍ଣ୍ଣିବାକୁ ହେବ କେ ସକ୍ଷମ ?

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଦାଶୁର ସୁତ ବୋଧନ ବର୍ଣ୍ଣନେ**
**ନାମ ୪୯ଶ ସର୍ଗଃ ।**



## ୫୦ଶ ସର୍ଗଃ

## * ଖୋତ୍‌ଥ ବୈଭବ ବର୍ଣ୍ଣନ

ଅନନ୍ତର ସେ ନିଶାରେ ଦାଶୁର କୁମର
ପିତାଙ୍କୁ କହଇ ପିତଃ ଶୁଣ ମୋର ଗୀର ।
ଖୋତ୍‌ଥ ନୃପତି କିଏ ସେ କହ ମୋ ଆଗର
କିସ ଶିକ୍ଷା ଦେଲ ମୋତେ ଉପଦେଶ ଛଳ ।
ଦାଶୁର ବୋଇଲେ ଏବେ ଶୁଣରେ କୁମର
କେବଳ ମିଥ୍ୟା ହେଲେହେଁ ଏ ମାୟା ସଂସାର ।
ଅତି ଆଡ଼ମ୍ବର ପୂର୍ଣ୍ଣ ଅଟେ ତା ସୂଚନା
ଏହି ଗଳ୍ପ ଅଟେ ପୁତ୍ର ତାହାର ନମୁନା ।
**ପରମ ଆକାଶୁ ଯେଉଁ ସଂକଳ୍ପ ଉଦିତ**
**ଖୋତ୍‌ଥ ରାଜା ନାମେ ସେହୁ ଜଗତେ ବିଦିତ ।**

* ଖୋତ୍‌ଥ = ଖ = ଆକାଶ, ତହିଁରୁ ଉତ୍‌ଥ ଅର୍ଥାତ୍ ଉତ୍ପନ୍ନ

ଆପେ ଆପେ ଉଦୟ ସେ ହୁଏ ଇଚ୍ଛାବଳେ
ନିବୃତି ବଶରେ ଲୀନ ହୁଏ କାଳେ କାଳେ ।
ଏ ସଂକଳ୍ପ-ଉଦୟରୁ ବିଶ୍ୱର ଉଦୟ
ସଂକଳ୍ପ ବିଲୀନ ହେଲେ ବିଶ୍ୱର ବିଲୟ ।
ଏ ସଂକଳ୍ପ ଅବୟବ ବ୍ରହ୍ମା ବିଷ୍ଣୁ ଶିବ
ସଂକଳ୍ପର ସ୍ଥୂଳ ରୂପ ଏ ବିଶ୍ୱ ଜାଣିବ ।
ଅଧିଷ୍ଠାନଭୂତ ଚଇତନ୍ୟଙ୍କ ଆଶ୍ରାରେ
ଏହି ସଂକଳ୍ପ-ପୁତ୍ର ବ୍ରହ୍ମା ରୂପଧରେ ।
ଶୂନ୍ୟମୟ ଆକାଶରେ ଏହି ଜଗତକୁ
ନିର୍ମାଣ କରି ଅଛନ୍ତି ସେ ବ୍ରହ୍ମା ଏହାକୁ ।
ଚତୁର୍ଦ୍ଦଶ ଲୋକ ଏ ଜଗତେ ବିରାଜିତ
ଚନ୍ଦ୍ର ସୂର୍ଯ୍ୟ ଦୁଇଦୀପ ତହିଁ ପ୍ରଜ୍ଜ୍ୱଳିତ ।
ତିନିଭାଗରେ ବିଭକ୍ତ ଅଟେ ଏ ଜଗତ
ଅଧଃ, ମଧ୍ୟ ଊର୍ଦ୍ଧ୍ୱ ଏହି ନାମରେ ବିଦିତ ।
ଊର୍ଦ୍ଧ୍ୱଭାଗ ସରଗରେ ଦେବଙ୍କ ନିବାସ
ଅଧଃଭାଗ ପୃଥିବୀରେ ନରଙ୍କର ବାସ ।
ଏହାରି ମଧ୍ୟରେ ପୁଣ୍ୟ ପାପରୂପ ଧନ
ନର ଦେବତା ମେଳଛ ବଣିକ ଏ ମାନ ।
କ୍ରୟ ବିକ୍ରୟ କରନ୍ତି ବାଣିଜ୍ୟ ସମାନ
ଏହିପରି ଚଳେ ପାପ ପୁଣ୍ୟ ଅରଜନ ।
ସେହି ଖୋତ୍‌ଥ ରାଜା ନିଜ ସଂକଳ୍ପ ବଳରେ
ବିଚିତ୍ର କ୍ରୀଡ଼ା ଗୃହାଦି ନିରିମାଣ କରେ ।
ନିଜର କ୍ରୀଡ଼ା ନିମିତ୍ତ ଏ ଦେହ ଧାରଣ
ନିର୍ମାଣ କରିଛି ସେହି ଚତୁର ରାଜନ ।
ଦେବନାମଧାରୀ ଦେହୀ ରହନ୍ତି ସରଗେ
ନର ଦେହଧାରୀ ନିବସନ୍ତି ଅଧଃ ଭାଗେ ।
ନାଗାଦି ଦେହଧାରୀ ଏ ରହନ୍ତି ପାତାଳେ
ଖେଚରାଦି ଦେହଧାରୀ ଅନ୍ତରୀକ୍ଷ ସ୍ଥଳେ ।
ଏହି ଶରୀର ରୂପକ କ୍ରୀଡ଼ା ଗୃହମାନ
ପ୍ରାଣବାୟୁ ବାତ ଯନ୍ତ୍ରଦ୍ୱାରା ସଂଚଳନ ।
ଚକ୍ଷୁ କର୍ଣ୍ଣ ଆଦି ନବଦ୍ୱାର ରହିଛନ୍ତି
ପଞ୍ଚ ଜ୍ଞାନେନ୍ଦ୍ରିୟ ପଞ୍ଚ ପ୍ରଦୀପ ବୋଲାନ୍ତି ।
ନିଜ ମାୟାବଳେ ସେହି ସଂକଳ୍ପ ରାଜନ
ଅହଂକାର ରୂପି ଯକ୍ଷ କରିଛି ନିର୍ମାଣ ।
ପରମ ଆଲୋକ ଠାକୁ ସେହି ଯକ୍ଷମାନେ
ଭିତ ହୁଅନ୍ତି ଯିବାକୁ ତାଙ୍କ ସନ୍ନିଧାନେ ।

ଅହଂକାର ରୂପି ଅଟନ୍ତି ଯେ ଯକ୍ଷଗଣ
ଖୋତ୍‌ଥ ରାଜା ସହ ସଦା କରନ୍ତି କ୍ରୀଡ଼ନ ।

**ସଂକଳ୍ପିତ ବସ୍ତୁ ଯେବେ ସଂକଳ୍ପ ଦେଖିବ**
**ଭବିଷ୍ୟତ ଦେହ ତାର ପାଇଲା ବୁଝିବ ।**

ଏ ସଂକଳ୍ପ ଯେତେବେଳେ ସୁଷୁପ୍ତି କାଳରେ
ଅବସ୍ଥାନ କରିଥାଏ ବିଲୀନ ଭାବରେ ।

ବିନିଷ୍ଟ ବୋଲି ତାହାକୁ ତେତେବେଳେ କହି
ବିନାଶ ହେତୁରୁ ତାର ପୁନର୍ଜ୍ଜନ୍ମ ହୋଇ ।

ଅନନ୍ତ ଦୁଃଖ ନିମିତ୍ତ ଏହି ସଂକଳପ
ଯେପରିକି ପୁଣି ଧରୁଥାଏ ପୁନଃ ରୂପ ।

ଆତ୍ମାରେ ଜଗତ୍‌ରୂପ ବିସ୍ତାରିବା ପାଇଁ
ପୁଣି ଏହି ସଂକଳପ ସକ୍ଷମ ହୁଅଇ

ଭବ ଦୁଃଖ ନିବାରଣ ପାଇଁ ଏ ସଂକଳ୍ପ
ସକ୍ଷମ୍ ହୋଇଣ ଥାଇ ଜାଣ ଆରେ ବାପ ।

କିଳୋତ୍‌ପାଟିବ ବାନର ପରି ଏ ସଂକଳ୍ପ
ନିଜକୃତ କର୍ମପାଇଁ କରଇ ସନ୍ତାପ ।

ବାହ୍ୟବସ୍ତୁରୁ ଏହାକୁ ନିବୃତ୍ତ କରିବ
ତେବେ ବୁଦ୍ଧି ପ୍ରତ୍ୟଗ୍ ଚୈତନ୍ୟରେ ବିଶ୍ରାମିବ ।

**ଏହି ସଂକଳ୍ପ ଅଟଇ ମନ ବୋଲି ଜାଣ**
**ଏ ମନର ତ୍ରିଶରୀର ସତ୍ତ୍ୱ, ରଜ, ତମ ।**
**ଉତ୍ତମ, ମଧ୍ୟମ, ଅଧମ ଯେ ସେହିମାନ**
**ସେହିମାନେ ହିଁ ଜଗତ ଉତ୍ପତ୍ତି କାରଣ ।**

ଜଗତ ସ୍ଥିତି କାରଣ ଏହି ତିନି ଦେହ
ଅଧମରୁ ଜନ୍ମ କୃମି କୀଟ ନିଃସନ୍ଦେହ ।

ଜଗତ ଆସକ୍ତି କରେ ସ୍ତିରୀ ପୁତ୍ର ଜାତ
ମଧ୍ୟମ ସଂକଳ୍ପ ଫଳ ଏହା ଜାଣ ପୁତ୍ର ।

ଉତ୍ତମ ସଂକଳ୍ପ ଆଣେ ଧର୍ମରେ ଆସକ୍ତି
ମୁକ୍ତି ପଥର ନିକଟ ଦିଏ ସ୍ୱର୍ଗଗତି ।

ଯେତେବେଳେ ଏ ସଂକଳ୍ପ ହୁଏ କ୍ଷୟପ୍ରାପ୍ତ
ଏହି ତିନି ଶରୀରର ବିଲୟ ନିଶ୍ଚିତ ।

ତେବେ ସେ ପରମ ପଦ ହୁଅଇ ପ୍ରାପତ
ତେଣୁ ସଂସାର ଚକ୍ରରୁ ହୁଏ ସେ ମୁକତ ।

ଏବେ ସଂକଳ୍ପ କ୍ଷୟର ଉପାୟ ଯା ଶୁଣ
ବହିର୍ଦ୍ଦୃଷ୍ଟିକୁ ସମ୍ପୂର୍ଣ୍ଣ ଭାବରେ ତେଜିଣ ।
ମନ ସଂଯମେ ମନକୁ କରିବ ନିରୁଦ୍ଧ
ତେବେ ଯାଇ ପୁତ୍ର ହୋଇ ପାରିବୁ ତୁ ସିଦ୍ଧ ।
ଅବଲମ୍ବନ କରିଣ ଏହି ଯେ ପ୍ରଣାଳୀ
ବାହ୍ୟାନ୍ତର ସଂକଳ୍ପକୁ ପାରୁ କ୍ଷୟକରି ।
ସହସ୍ର ବରଷ ଘୋର ତପର ସାଧନ
କିଛି ଲାଭ ନ ହୋଇବ ଜାଣରେ ନନ୍ଦନ ।
ହରିହର ବ୍ରହ୍ମା କୃପା ପରବଶ ହୋଇ
ଉପଦେଶ ପ୍ରଦାନନ୍ତି ହୃଦ ଖୋଲି ଦେଇ ।
ତଥାପି ଏ ସଂକଳପ ପରିହାର ଛଡ଼ା
ଅନ୍ୟ କଉଣସି ପନ୍ଥା ନାହିଁରେ ବାପୁଡ଼ା
ତେଣୁ ବାବୁ ତୁ ପୁରୁଷକାର ପ୍ରଭାବରେ
ସଂକଳ୍ପକୁ ପ୍ରଶମିତ କରରେ କ୍ରମଶେ ।
ସଂକଳ୍ପ ସୂତ୍ରରେ ସର୍ବ ପଦାର୍ଥ ଗ୍ରଥିତ
ସେ ସୂତ୍ର ବିଚ୍ଛିନ୍ନେ ଶୀର୍ଣ୍ଣ ସକଳ ପଦାର୍ଥ ।
ସତ, ଅସତ ସହିତ ସଦାସଦଭାବ
ସଂକଳ୍ପରୁ ଜାଣ ବାବୁ ଏହାଙ୍କ ଉଦ୍ଭବ ।
ନିଜେ ତ ସଂକଳ୍ପ ନୁହେଁ ଏ ଭାବ ଅଧୀନ
ବ୍ରହ୍ମା ବା କିପରି ହେବେ ହେଜରେ ନନ୍ଦନ ।
ଯେଉଁ ବିଷୟରେ ଯେଉଁ ସଂକଳ୍ପ କରିବ
କ୍ଷଣକ ମଧ୍ୟରେ ତାହା ସେରୂପ ଧରିବ ।
ତେଣୁ କୌଣସି ବିଷୟେ ଜାଣରେ ତନୟ
ସଂକଳ୍ପ କରିବୁ ନାହିଁ ମନ କରି ଥୟ ।
ସଂକଳ୍ପ ଶୂନ୍ୟ ହୋଇଣ ରହିବୁରେ ତୁହି
ଯଥା ପ୍ରାପତିରେ ତୋଷ ଯେସନ ଆସଇ ।
ସଂକଳ୍ପ କ୍ଷୟ ଲଭିଲେ ଚିତ୍ ଶକତିର
ବିଷୟ ଉନ୍ମୁଖୀ ଭାବ ହୋଇଯାଏ ଦୂର ।
ଭିନ୍ନ ଭିନ୍ନ ଜୀବରୂପେ ପ୍ରକାଶିତ ହୋଇ
ବ୍ରହ୍ମହିଁ ସଂସାର ଦୁଃଖ ଅନୁଭବୁ ଥାଇ ।
ଜନ୍ମ ଜନ୍ମିତ ଦୁଃଖର ଅନୁଭବ ପାଇଁ
ବାରମ୍ବାର ମରଣରେ କି ଲାଭ ତୋ ହୋଇ ?
ଲେଶମାତ୍ର ଛୁଇଁନାହିଁ ଯାହାକୁ କଷଣ
ସେହି ବ୍ରହ୍ମର ଆଶ୍ରୟେ ଥାନ୍ତି ପ୍ରାଜ୍ଞଗଣ ।
ପ୍ରଥମେ ପାରମାର୍ଥିକ ଜ୍ଞାନ ଲାଭ କର
ବିସ୍ତୃତ ବିକଳ୍ପ ଭାବମାନ ପରିହର ।

ଅଖଣ୍ଡ ଆନନ୍ଦଭାବ ପାଇବା ନିମିତ୍ତ
ବ୍ରହ୍ମ ପଦର ସାଧନା କର ଆରେ ପୁତ୍ର ।
ସକଳ ଚିତ୍ତବୃତ୍ତିକୁ ସୁଷୁପ୍ତି ଦଶାରେ
ନିମଗ୍ନ କରରେ ପୁତ୍ର ଯତ୍ନ ସହକାରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ ଖୋତ୍‌ଥ ବର୍ଣ୍ଣନେ ନାମ ୫୦ଶ ସର୍ଗଃ ।**



## ୫୧ଶ ସର୍ଗଃ

## ସଂକଳ୍ପ ଚିକିତ୍ସା

ଦାଶୁରଙ୍କ ପୁତ୍ର ବୋଲେ ଶୁଣ ଆହେ ପିତଃ
ଯାହାକି ସଂକଳ୍ପ ବୋଲ ତା ଅଟେ କେମନ୍ତ ?
କିପାଁଇ ଉଦୟ ତାର କିପାଁ ତା ବର୍ଦ୍ଧନ
ବର୍ଦ୍ଧିଷ୍ଣ ହୋଇ ବିନଷ୍ଟ ହୁଏ କି କାରଣ ?
ଦାଶୁର ବୋଲନ୍ତି ତେବେ ଶୁଣରେ ନନ୍ଦନ
ଅନନ୍ତ ଆତ୍ମତତ୍ତ୍ୱର ସ୍ୱରୂପ ଚୈତନ୍ୟ ।
ସେ ଚୈତନ୍ୟ ଯେତେବେଳେ ଚେତ୍ୟ ବିଷୟରେ
ଉନ୍ମୁଖ ଭାବ ଧରଇ ବ୍ୟଗ୍ର ସହକାରେ ।
ସେହି ଉନ୍ମୁଖୀ ଭାବକୁ ବିଜ୍ଞବ୍ୟକ୍ତିଗଣ
କହନ୍ତି **ସଂକଳ୍ପ ବୃକ୍ଷ ଅଙ୍କୁର ବୋଲିଣ ।**
ଅଧିଷ୍ଠାନ ଚୈତନ୍ୟର ଚିତ୍‌ସ୍ୱରୂପତ୍ୱ
ଏ ଅଙ୍କୁର ଉଦ୍‌ଗମରେ ହୁଏ ତିରୋହିତ ।
ଜଡ଼ ପ୍ରପଞ୍ଚ ସାଧନା ପାଇଁ ସେ ଅଙ୍କୁର
ଚିଦାକାଶେ ଘନିଭୂତ ହୁଏ ତତପର ।
ବୀଜ ମଧ୍ୟେ ଥାଏ ଯଥା ଅଙ୍କୁର ସ୍ୱରୂପ
ଚୈତନ୍ୟ, ଚେତ୍ୟ, ଭାବନା ବଶତଃ ସ୍ୱେ ରୂପ ।
ସଙ୍କଳପ ଆକୃତିକୁ କରଇ ଧାରଣ
ନାନା ଆକାର ଧରିଣ ବଢ଼େ ସେହି ଜାଣ ।
ଜଳ ଭିନ୍ନ ସିନ୍ଧୁ ଯଥା ନ ହୁଅଇ ଆନ
ଏ ଜଗତ ସଙ୍କଳ୍ପରୁ ନୁହଇଟି ଭିନ୍ନ ।
ସଙ୍କଳ୍ପ ବ୍ୟତୀତ ତୋର ଜାଣରେ ତନୟ
ଅନ୍ୟ ସାଂସାରୀକ ଦୁଃଖ ନାହିଁ ନିଃସଂଶୟ ।
କାକତାଳିୟ ସ୍ୱରୂପ ଏହି ସଂଙ୍କଳପ
ନିରର୍ଥକ ଉଦଭୂତ ହୁଏ ଆରେ ବାପ ।
ଦ୍ୱିତୀୟ ଚନ୍ଦ୍ର ଅଥବା ମରୀଚିକା ସମ
ମିଥ୍ୟା ହେଲେହେଁ କ୍ରମଶଃ ହୁଏ ବର୍ଦ୍ଧମାନ ।

* ମାତୁଲିଙ୍ଗ ଫଳ ଯେହ୍ନେ କରଇ ଭକ୍ଷଣ
ଶ୍ୱେତବର୍ଣ୍ଣ କାଚ ତାକୁ ଦିଶେ ପୀତବର୍ଣ୍ଣ ।
ସେହିପରି ତୋର ହୃଦୟରେ ସଙ୍କଳପ
ଉଦୟ ହୋଇଣ ଧରିନେବ ନିଜରୂପ ।
ତୋହର ଏହି ଆକୃତି, ଜନ୍ମ, ଅବସ୍ଥାନ
ସକଳ ଅଳୀକ ବୋଲି ଜାଣରେ ନନ୍ଦନ ।
ତତ୍ତ୍ୱଜ୍ଞାନ ବଳେ ତୋର ଏହି ମିଥ୍ୟାଭାବ
ଆପେ ଆପେ ରେ ନନ୍ଦନ ବିଲୀନ ହୋଇବ ।
ମୁହିଁ ସେହି ବ୍ରହ୍ମ ଅଟେ ଏ ବିଶ୍ୱାସ ତୋର
ଏତେବେଳେ ଯାଏ ଜନ୍ମି ନାହିଁରେ କୁମର ।
ଏହି ଜଗତରେ ତୁହି ଏତେକାଳ ଯାଏ
ନିଷ୍ଠାବାନ ରହି ଦୁଃଖ ଭୋଗୁରେ ତନୟେ ।
ଯଥାର୍ଥରେ ତୁହି ଅଟୁ ଜାଣ ସେହି ବ୍ରହ୍ମ
ଭ୍ରାନ୍ତିରୁ ଜନ୍ମ-ସମ୍ବନ୍ଧ ତୋଠାରେ ଉତ୍ପନ୍ନ ।
ବ୍ରହ୍ମ ବିଳାସରେ ଜନ୍ମ, ଜରା, ମୃତ୍ୟୁ ଆଦି
ସମ୍ଭବପର କିପରି ଆରେ ପୁତ୍ରନିଧି ?
ନିରର୍ଥକ ମୁଗ୍ଧ ତୁହି ସ୍ୱ ସଙ୍କଳ୍ପ ବଶେ
ଯେତିକି କରିଛୁ, ଥାଉ ଭ୍ରମମାୟା ପାଶେ ।
ପୂର୍ବରୁ ଦୁଃଖ ସୁଖାଦି ଯେତେ ଅନୁଭବ
ସ୍ମରଣ କରିବୁ ନାହିଁ ସେ ସବୁ ପ୍ରାଭବ ।
ଏହିକ୍ଷଣି ଯେଉଁଭାବେ ଅଛୁ ବର୍ତ୍ତମାନ
ସେହିଭାବେ କରୁଥାଅ ତୁହି ଅବସ୍ଥାନ ।
କଲ୍ୟାଣକାମୀ ପୁରୁଷ ସେହିଭାବ ଧରି
କଲ୍ୟାଣ ଲାଭ କରନ୍ତି ଏହି ବସୁନ୍ଧରୀ ।
ସଂକଳ୍ପ ଧ୍ୱଂସ ପାଇଁକି କରନ୍ତେ ଉଦ୍ୟମ
କୌଣସି ଭୟ ନ ରହେ ଆରେ ବାପଧନ ।
ଅତୀତ ଭାବନାମାନ ଭୁଲିଯାନ୍ତେ ବାପ
ସଂକଳ୍ପ କ୍ଷୀଣତା ଲଭେ ନ ରହେ ସନ୍ତାପ ।
ସଂକଳ୍ପ ଧ୍ୱଂସ ପାଇଁକି ଯେ ହେବ ଇଚ୍ଛୁକ
ସ୍ମୃତି ବିସ୍ମରଣ ତାର ପନ୍ଥା-ମାତ୍ର ଏକ ।
ନିଜକୁ ଆନନ୍ଦମୟ ବ୍ରହ୍ମରୂପ ମଣି
ଆତ୍ମା ଯେବେ ସ୍ୱରୂପରେ ରହେ ପୁତ୍ରମଣି,
କିଛି ତ ଅସାଧ ତାକୁ ନୁହେ ପ୍ରତିଭାତ
ସର୍ବଦା ଆନନ୍ଦ ସେହୁ ସର୍ବଦା ଉଷତ ।

ସଂକଳ୍ପରେ ସଂକଳ୍ପକୁ ମନରେ ମନକୁ
ଉଚ୍ଛେଦ କରି ଆତ୍ମାରେ ରଖ ତୁ ନିଜକୁ ।
ଏହି ସାମାନ୍ୟ କର୍ମକୁ ମଣୁ କି କଠିନ ?
ସଂକଳ୍ପ ଧ୍ୱଂସରେ ଭବଦୁଃଖ ଅବସାନ ।
**ଚିତ୍ତ, ମନ, ଜୀବ, ବୁଦ୍ଧି, ସଂକଳ୍ପ ବାସନା**
**ଏକଇ ବସ୍ତୁ ଏମାନ ନାମେ ଭେଦ ସିନା ।**
ସଂକଳ୍ପ ବ୍ୟତୀତ ଅନ୍ୟ କିଛି ନାହିଁ କାହିଁ
ହୃଦୟରୁ ସେ ସଂକଳ୍ପ ପୋଛିଦିଅ ତୁହି ।
ଆକାଶ ସଦୃଶ ଶୂନ୍ୟମୟ ଏ ଜଗତ
ଆକାଶ, ଜଗତ ମିଥ୍ୟା ବିକଳ୍ପରୁ ଜାତ ।
ହୋଇଲେ ହେଁ ଶୂନ୍ୟମୟ ଏ ସକଳ ଦୃଶ୍ୟ
ଦୃକ୍ ସ୍ୱରୂପାତ୍ମା ଶୂନ୍ୟ ନୁହଇ ଅବଶ୍ୟ ।
**ସଂକଳ୍ପ ବିନାଶେ ସୃଷ୍ଟି ହେଲେହେଁ ବିନାଶ**
**କେବେହେଲେ ଏ ଆତ୍ମାର ନଘଟଇ ନାଶ ।**
ସତ୍ୟମଣି ଯାହାଠାରେ ଆସ୍ଥାବାନ ଥିବ
ଯେତେବେଳେ ତାହା ମିଥ୍ୟା ବୋଲି ଜଣାଯିବ,
ରହି କି ପାରିବ ଆଉ ତୁମର ବାସନା
ଚିନ୍ତାକରରେ କୁମର ଏ ବିଷୟ ସିନା ?
ଭାବନା କ୍ଷୟରେ ପୁତ୍ର ଆତ୍ମଲାଭ ସିଦ୍ଧି
ଉପସ୍ଥିତ ହୋଇଥାଏ ଆରେ ଗୁଣନିଧି ।
ତେତେବେଳେ ଅପ୍ରାପତ ଅନ୍ୟ କିଛି ବୋଲି
ରହେ ନାହିଁ ଏହି କଥା ଯଥାର୍ଥ କହିଲି ।
ଅଭ୍ୟାସ ବଳେ ଏ ଦୃଶ୍ୟ ହୋଇଗଲେ ତୁଚ୍ଛ
ଆତ୍ମା ବ୍ୟତୀତ ଦେଖିବ ଆଉ ସବୁ ମିଛ ।
ଦୃଶ୍ୟବସ୍ତୁ ତୁଚ୍ଛ ବୋଲି ଯେବେ ମନେ ଭାସେ
ଶାରୀରିକ ସୁଖେ ଦୁଃଖେ ନିର୍ଲିପ୍ତତା ଆସେ ।
ଦାରା, ତନୟ ଇତ୍ୟାଦି ସକଳ ଅସତ
ଏହିପରି ଜ୍ଞାନ ଯେବେ ହୁଅଇ ଉଦିତ,
ସ୍ନେହ ବନ୍ଧନ ତାପାଇଁ ନ ରହଇ ବାପ
ତାଙ୍କ ପାଇଁ ନ ଉପୁଜେ କ୍ରୋଧାଦି ସନ୍ତାପ ।
ସକଳ ଦୃଶ୍ୟ ଯେହେତୁ ଅଟଇ ଅସତ
ସୁଖ ଦୁଃଖ ଆଦି ଭ୍ରମ ହରାନ୍ତି ଅସ୍ତିତ୍ୱ ।

* ମାତୁଲିଙ୍ଗ - ଟଭାଲେମ୍ବୁ ଜାତୀୟ ଫଳ ।

କିଛି ନୋହୁରେ ପୁତ୍ର ତୁ ଏହି ସଂସାରର
ଏ ସଂସାର ମଧ୍ୟେ କିଛି ନୁହଇ ତୋହର ।
ତେଣୁ ଭ୍ରାନ୍ତି ଦୂରୀଭୂତ କର ପୁତ୍ରବର
ଭ୍ରାନ୍ତିଗଲେ ଆଉ ଦୁଃଖ ନ ଥିବ ତୋହର ।
ଅସତ୍ୟ ବସ୍ତୁକୁ ସତ୍ୟ ମଣିରେ ନନ୍ଦନ
ସଂସାର ଭାବନାଗ୍ରସ୍ତ ନୁହ କଦାଚନ ।
ମୁଁ ଅଟେ ସଂସାରୀ ଏ ମୋ ବିପୁଳ ବୈଭବ
ସତ୍ୟ, ନିତ୍ୟ, ଏ ମୋ ଭୋଗ, ବିଳାସ ସରବ,
ଯେପରି ଏ ଭ୍ରମ ତୋର ମନରେ ଉଦୟ
ନ ଆସେ ସତର୍କ ଥିବୁ ସଦାରେ ତନୟ ।
ଆତ୍ମତତ୍ତ୍ୱର ବିଳାସ ଏ ଯାବତ ଦୃଶ୍ୟ
ଏଥି ଲୟ ରଖି ପରଂପଦରେ ବିଳସ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଦାଶୁର ଉପାଖ୍ୟାନେ ସଂକଳ୍ପ ଚିକିତ୍ସା**
**ବର୍ଣ୍ଣନେ ନାମ ୫୧ଶ ସର୍ଗଃ ।**



## ୫୨ଶ ସର୍ଗଃ

## ଦାଶୁର୍ ବଶିଷ୍ଠ ମିଳନ

ବୋଲନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଶୁଣିକରି ପିତା ପୁତ୍ର କଥୋପ କଥନ ।
ଆକାଶୁ ଖସି କଦମ୍ବ ବୃକ୍ଷ ଶୀର୍ଷଦେଶେ
ଦାଶୁର ମୁନିଙ୍କ ପାଶେ ମିଳିଲଇଁ ଶେଷେ ।
ଯା ଦେଖିଲି ରୋମ ମୋର ଟାଙ୍କୁରି ଉଠଇ
ବନଭୂମି ତାଙ୍କ ତେଜେ ଆଲୋକିତ ହୋଇ ।
ମୋତେ ଦେଖି ପତ୍ରାସନ ଦେଲେକ ବିଛାଇ
ପାଦ, ଅର୍ଘ୍ୟ, ପୂଜା ଆଦି ଅରପିଲେ ତହିଁ ।
ଦାଶୁର ନନ୍ଦନଙ୍କୁ ଯେ ସମ୍ବୋଧନ କଲୁ
ଅଧ୍ୟାତ୍ମ ବିଦ୍ୟାଲୋଚନା ତହୁଁ ଆରମ୍ଭିଲୁ ।
ପରେ ଉପଦେଶ କାବ୍ୟମାନ କହି ମୁହିଁ
ସେହି ମୁନି ବାଳକକୁ ପ୍ରବୃଦ୍ଧ କଲଇଁ ।
ବ୍ରହ୍ମକଥା ଆଲୋଚନା କଲ ରାତ୍ରିଯାକ
ସେ ରାତ୍ରଟି ଜଣାଗଲା ମୁହୂର୍ତ୍ତ ମାତ୍ରକ ।
ରାତ୍ରିଶେଷେ ମନ୍ଦାକିନୀ-ତଟେ ମୁଁ ଚଳଇ
ମୁନି ପିତା ପୁତ୍ର ଦୁହେଁ ଆସନ୍ତି ବିଳାଇ ।
ବନପ୍ରାନ୍ତେ ତାଙ୍କଠାରୁ ବିଦାୟ ଘେନିଣ
ମନ୍ଦାକିନୀ ସ୍ନାନ ପାଇଁ କଲି ମୁଁ ଗମନ ।
ଏବେ ମୋ ବଚନ ତୁମ୍ଭେ ଶୁଣ ହେ ଶ୍ରୀରାମ
ଦାଶୁର ଆଖ୍ୟାନ ମୁହିଁ କରିଲି ବର୍ଣ୍ଣନ ।
ଯାହା ଯାହା କହିଛନ୍ତି ମହାତ୍ମା ଦାଶୁର
ସେ ସକଳ ସତ୍ୟ ବୋଲି ଜାଣ ରଘୁବୀର ।
ପ୍ରତିବିମ୍ବପରି ଏହି ଜଗତ ଅସତ
ତୁମର ଗୋଚର ପାଇଁ କଲଇଁ ବ୍ୟକତ ।
ଗ୍ରହଣକର ହେ ତୁମେ ଦାଶୁରଙ୍କ ବାକ୍ୟ
ଅବାସ୍ତବ ତେଜି ବାସ୍ତବକୁ ମନେରଖ ।
ବସ୍ତୁ କଳ୍ପନା ସକଳ ପରିତ୍ୟାଗ କରି
ଦାଶୁର ମୁନି ସିଦ୍ଧାନ୍ତ ମନମଧ୍ୟେ ଧରି ।
ଆତ୍ମାର ବିକଳ୍ପ ମନୁ କରି ପରିଷ୍କାର
ନିର୍ମଳ ଆତ୍ମତତ୍ତ୍ୱକୁ ଦରଶନ କର ।
ପରମ ପଦ ଅବଶ୍ୟ ପ୍ରାପତ ହୋଇବ
ପରମ ପୂଜ୍ୟ ହୋଇବ ଜଗତେ ରାଘବ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ଦାଶୁର ବଶିଷ୍ଠ ମିଳନ ବର୍ଣ୍ଣନେ**
**ନାମ ୫୩ଶ ସର୍ଗଃ ।**



## ୫୩ଶ ସର୍ଗଃ

## କର୍ତ୍ତୃତ୍ୱ ବିଚାର୍ ଯୋଗ

କହନ୍ତି ବଶିଷ୍ଠ ଶୁଣ ରାମ ଧନୁର୍ଦ୍ଧର
ନାହିଁତ ଅସ୍ତିତ୍ୱ ଏହି ଜଡ଼ ଜଗତର ।
ଏହା ଜାଣି ସାଂସାରିକ ନିଷ୍ଠା ପରିହର
ନାସ୍ତିତ୍ୱ ପଦାର୍ଥ ଆଶା କାହୁଁ ଅଭିଜ୍ଞର ?
ଦେଖାଯାଉଅଛି ବୋଲି ଦେହାଦିର ସତ୍ତା
ଅଛି ବୋଲି କହୁଅଛ ଆହେ ଧନୁହସ୍ତା ।
ତୁମଛଡ଼ା ସେହି ସତ୍ତା ନୁହଇଟି ଆନ
ତୁମେ ଥିବାରୁ ସେ ସବୁ ଅଛନ୍ତି ଜାଣିମ ।
ତେଣୁ ଅବନ୍ଧ ଭାବନା ନିଜଠାରେ ରଖ
ଜଡ଼ ଜଗତ ଭାବନା ନ ଦେଉଟି ଦୁଃଖ ।
ଯଦି ତା ସତ୍ତା, ଅସତ୍ତା ଉଭୟକୁ ମାନ
ତେଣୁ ଭାବନାର ନାହିଁ କିଛି ପ୍ରୟୋଜନ ।
ସମସ୍ତଙ୍କ କର୍ତ୍ତା ହୋଇ ମଧ୍ୟ ଏହି ଆତ୍ମା
ଅକର୍ତ୍ତା ଭାବ ଆବୋରି ରହେ ସେ ଅକର୍ତ୍ତା
ପ୍ରଦୀପ ଆଲୋକ ଦିଏ, କିନ୍ତୁ ଚେଷ୍ଟାହୀନ
ଆତ୍ମା ସେପରି ସକଳ କାର୍ଯ୍ୟେ ଉଦାସୀନ ।

ଜୀବର ଦୈନିକ କାର୍ଯ୍ୟ କରାଏ ତପନ
କିନ୍ତୁ ନିଜେ ରହିଥାଏ ସଦା କ୍ରିୟାଶୂନ୍ୟ ।
କର୍ତ୍ତାରୂପେ ଆତ୍ମା ତଥା ହୁଅଇ ପ୍ରତୀତ
ନିଷ୍କ୍ରିୟ ଭାବରେ ସଦା ଥାଏ ଅବସ୍ଥିତ ।
ସୂର୍ଯ୍ୟ ଉଦୟାସ୍ତ ଦେଖି ଭାବନ୍ତି ମାନବେ
ଗମନାଗମନ କରୁଛନ୍ତି ସୂର୍ଯ୍ୟଦେବେ ।
ବାସ୍ତବରେ ଯାତାୟତ ନ କରନ୍ତି ସେହି
ଏକସ୍ଥାନେ ରହିଥାନ୍ତି ସାକ୍ଷୀ ପ୍ରାୟ ହୋଇ ।
ଆତ୍ମା ଯେବେ ବୋଧହୁଏ ଗତିଶୀଳ ବୋଲି
ବାସ୍ତବରେ ଗମନ ସେ କଦାପି ନ କରି ।
ହେ ରାମ ତୁମେ ଯଦ୍ୟପି ଏହି ନିର୍ଣ୍ଣୟରେ
ଚୈତନ୍ୟ ବିଶୁଦ୍ଧ ବୋଲି ବୁଝିବ ଅନ୍ତରେ,
ଜଗତ ପ୍ରତି ତୁମର ଆହେ ଧନୁର୍ଦ୍ଧର
ଆସ୍ଥା ରହି ନ ପାରିବ ଏହା ହେତୁକର ।
ଭ୍ରାନ୍ତିବଶ ଯେ ପଦାର୍ଥ ଦୃଷ୍ଟ ହୋଇଥାଏ
ତହିଁରେ ଆସ୍ଥା ସ୍ଥାପନ କିପରି ଯୋଗାଏ ?
ତୃଷ୍ଣାତୁର ହୋଇଲେ ହେଁ ମରୀଚିକା ଜଳେ
କେହି ଆସ୍ଥା ରଖିପାରନ୍ତି କି କେତେବେଳେ ?
ଏହି ଜଗତ ସ୍ଥିତିରେ ତୁମେ କେତେବେଳେ
ଆସ୍ଥା କେଭେଁ ନ ରଖିବ ଆହେ ରଘୁବୀରେ ।
କଳ୍ପିତ ବ୍ୟକ୍ତିକୁ ଯଥା ମନେ ମନେ ଦେଖ
ଜାଗତିକ ପଦାର୍ଥକୁ ସେପରି ନିରେଖ ।
ଏ ସବୁରେ ଆସ୍ଥା ତେଜି ଇଚ୍ଛା ବା ଅନିଚ୍ଛା
କର୍ତ୍ତୃତ୍ୱ ବା ଅକର୍ତ୍ତୃତ୍ୱ ଯାହା କିଛି ବାଞ୍ଛା,
ପରିହାର କରି ତୁମେ ଯେ ରୂପେ ରହିବ
ସେହିଭାବ ଧରି ସଦା ବିହରୁଣ ଥିବ ।
ତୁମେ ହିଁ ସର୍ବାନ୍ତରସ୍ଥ ସର୍ବାତୀତ ଆତ୍ମା
ଉଦାସୀନ ରହି ଦେଖାଇବ ନିର୍ଲିପ୍ତତା ।
ଆତ୍ମା ସାନ୍ନିଧ୍ୟ ମାତ୍ରକେ ଏ ଜଗତ ଭାବ
ପ୍ରକାଶ ପାଇବ ନାହିଁ ଜାଣ ହେ ରାଘବ ।
ଯେଣେ ତୁମର ସ୍ୱଇଚ୍ଛା ଅବଗତ ଥିବ
ଅବିକଳ ସୂର୍ଯ୍ୟପରି ଭବେ ବିରାଜିବ ।
ଆତ୍ମାର ସାନ୍ନିଧ୍ୟ ହେତୁ ସୃଷ୍ଟି ପ୍ରକାଶିତ
ପରମାତ୍ମା ସାଧନ୍ନିରୁ ଜଗତ ସମ୍ଭୂତ ।
କର୍ତ୍ତୃତ୍ୱ ବା ଅକର୍ତ୍ତୃତ୍ୱ ଦୁଇବିଧ ଭାବ
ଆତ୍ମାରେ ଅଛଇ ବୋଲି ଜାଣିବ ରାଘବ ।

ଇଚ୍ଛା ବିହୀନ ହେତୁରୁ ଅକର୍ତ୍ତା ବୋଲଇ
ତାହାର ସାନ୍ନିଧ୍ୟବଶେ ସୃଷ୍ଟି ଉପୁଜଇ ।
ତେଣୁ କରି କର୍ତ୍ତା ବୋଲି ଆତ୍ମାକୁ କହନ୍ତି
ଆତ୍ମାର କରଣୀ ଏବେ ବୁଝ ରଘୁପତି ।
ଆତ୍ମା ଯେ ଅଟେ ଇନ୍ଦ୍ରିୟ ମନର ଅତୀତ
କର୍ତ୍ତା ଭୋକ୍ତା ଅଟେ ଯେଣୁ ମନେନ୍ଦ୍ରିୟେ ସ୍ଥିତ ।
କର୍ତ୍ତୃତ୍ୱ ଓ ଅକର୍ତ୍ତୃତ୍ୱ ପରମାତ୍ମାଠାରେ
ଦୁଇଭାବ ରହିଛନ୍ତି ଜାଣ ରଘୁବୀରେ ।
ଯହିଁରେ ଶ୍ରେୟ ଅଛଇ ତାହା ଘେନାକର
ସର୍ବଗତ, ଅକରତା ନିଜକୁ ବିଚାର ।
ଯଥା ପ୍ରାପ୍ତ କର୍ମ ଆଚରିଲେ ଏହିପରି
କର୍ମେ ଲିପ୍ତ ହେବାକୁ ନ ପଡ଼େ ରୂପଧାରୀ ।
**ମୁଁ ନୁହେଁ କରତା ଏହି ଦୃଢ଼ଭାବ ଯା'ର**
**ପ୍ରବୃତ୍ତି ବିନା ବୈରାଗ୍ୟ ଲଭେ ସେହି ନର ।**
ଭୋଗ ବିଳାସ ବାସନା ଅଛଇ ଯାହାର
କିପରି ଭୁଲି ପାରିବ ଏ ସବୁ ବେଭାର ।
"ମୁଁ ତ କିଛି କରୁନାହିଁ" ଏପରି ଭାବନା
ନିତି ଅଭ୍ୟାସ କର ହେ ରାମ ମହାମନା ।
ପରମାମୃତ ନାମକ ଯେଉଁ ସମଭାବ
ତାହାର ବଳେ ଉଦିତ ହୁଏ ହେ ରାଘବ ।
ମହା କର୍ତ୍ତୃତ୍ୱ ଭାବନା ଯଦି ଆଦରିବ
ସମଭାବ ଭୂମିପରେ ପହଞ୍ଚି ପାରିବ ।
"ଏ ଜଗତେ ଯାହାକିଛି ଯେଉଁଠି ଘଟଇ
ମୁହିଁ ତାର ଏକମାତ୍ର କରତା ଅଟଇ" ।
ଏହି ଦୃଢ଼ଭାବନା ହିଁ ସାଧୁଙ୍କ ମତରେ
"**ମହା କର୍ତ୍ତୃତ୍ୱ ବୋଲାଇ** ଆହେ ରଘୁବୀରେ ।
ମୁହିଁ କିଛି କରୁନାହିଁ" ଏ ମର ସଂସାରେ
ନିଜର ଏହି କର୍ତ୍ତୃତ୍ୱ ଅସ୍ୱୀକାର ହେଲେ ।
ବିଷୟାରେ ଅନୁରାଗ ବିଦ୍ୱେଷ କିଛିହିଁ
ରହି ନ ପାରଇ ଜାଣ ଆହେ ରଘୁସାଇଁ ।
ବିଷୟାରୁ ରାଗ, ଦ୍ୱେଷମାନଙ୍କର ଜନ୍ମ
ତେଣୁଭାବେ ବିଷୟାରୁ ମୁଁ ଅଟଇ ଭିନ୍ନ ।
ଯେତେବେଳେ 'ମୁହିଁ' ହେଲି ବିଷୟାରୁ ଭିନ୍ନ
ତା ସଙ୍ଗେ ଅସଙ୍ଗ ହେଲି ବୋଲିଣ ଜାଣିମ ।

ଅନୁରାଗ, ଦ୍ୱେଷ ସେ ବିଷୟା ପ୍ରତି ରାମ
ରହି ନ ପାରିବ ଏହା ନିଶ୍ଚୟ ଜାଣିମ ।
ମହାକର୍ତ୍ତୃତ୍ୱ ଭାବନା ଆଚରିଲେ ଜାଣ
ଅନୁରାଗ, ଦ୍ୱେଷଙ୍କର ଆଉକାହିଁ ସ୍ଥାନ ?
**ଜଗତ ଉଦୟ ଅସ୍ତ ଯେହେତୁ ଆତ୍ମର**
**କର୍ତ୍ତୃତ୍ୱ ଅଟଇ ଜାଣ ଆହେ ରଘୁବୀର ।**
**ତେଣୁ ଜଗତ ଅଟଇ ଅଧୀନ ଆମର**
**ଯଥାର୍ଥ ନୁହେ କି ରାମ ମୋର କହିବାର ?**
ଏହିପରି ଭାବନାର ପରିମାଣ ଫଳେ
ସୁଖ, ଦୁଃଖ, ରାଗ, ଦ୍ୱେଷ, ରହିତ ନ ପାରେ ।
ଜଗତର ଉଦୟାସ୍ତ ଆତ୍ମାର କର୍ତ୍ତୃତ୍ୱ
ତେଣୁ ଲୟପରେ ରହିଥାଏ ଯେ ସମତ୍ୱ ।
**ପରମ ସ୍ଥିତି ଜାଣିବ ଅଟେ ସେ ସମତ୍ୱ**
ସେ ସ୍ଥିତି ଲଭିଲେ ଜନ୍ମ ନ ଘଟେ ନିଶ୍ଚିତ ।
ସର୍ବ କର୍ତ୍ତୃତ୍ୱାକର୍ତ୍ତୃତ୍ୱ ଉଭୟଙ୍କୁ ତେଜି
ଏହି ମର୍ମର ବିନାଶ ମନ ମଧ୍ୟେ ଭଜି ।
ଯେଉଁ ଆକାର ତୁମର ବାକି ରହିଥିବ
ସେ ଆକାରେ ଅବସ୍ଥା କର ହେ ରାଘବ ।
ସର୍ବ କର୍ତ୍ତୃତ୍ୱାକର୍ତ୍ତୃତ୍ୱ ଏ ଉଭୟ ଦୃଷ୍ଟି
ସୁଖ ଲଭ୍ୟ ନୁହେଁ ଜାଣ ଆହେ ରଘୁପତି ।
ଦେହରେ ଅହଂ ଭାବନା ନିବୃତ୍ତିର ପାଇଁ
ଆବଶ୍ୟକ ହୁଏ ତାହା ଜାଣ ରଘୁସାଇଁ
'କାଳସତ୍ର' ନାମେ ଯେଉଁ ନରକ ବିଦିତ
ଦେହାତ୍ମଚିନ୍ତା ତହିଁକି ସୁବିସ୍ତୃତ ପଥ ।
ମହାବୀଚି ନରକରେ ବନ୍ଧନ ହେବାର
ବନ୍ଧନ ରଜ୍ଜୁ ତା ଅଟେ ଆହେ ରଘୁବୀର ।
ଅସିପତ୍ର ନରକର ବନଭୂମି ସେହି
ଦେହାତ୍ମ ଭାବ ଯତନେ ତେଜିବା ଯୋଗାଇ ।
ଆତ୍ମ ଚୈତନ୍ୟବରଣ ବିକ୍ଷେପ କାରିଣୀ
ଏ ଦେହାତ୍ମ ବୁଦ୍ଧି ପରିତ୍ୟେଜ୍ୟ ରଘୁମଣି ।
ନିର୍ମଳ ଜ୍ୟୋସ୍ନା ସଦୃଶ ଯେଉଁ ଆତ୍ମଜ୍ୟୋତି
ଉଦ୍‌ଭାସିତ ହୋଇଉଠେ ଆହେ ରଘୁପତି ।
ଏହି ଆତ୍ମଦୃଷ୍ଟି ଯେବେ ହୁଅଇ ଉଦିତ
ଭବ ସାଗର ତରଣେ ପୋତ ସୁନିଶ୍ଚିତ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**କର୍ତ୍ତୃତ୍ୱ ବିଚାର ଉପଦେଶ ବର୍ଣ୍ଣନେ**
**ନାମ ୫୩ଶ ସର୍ଗଃ ।**



## ୫୪ଶ ସର୍ଗଃ

## ପୂର୍ଣ୍ଣ ସ୍ୱରୂପ ବର୍ଣ୍ଣନ

ବୋଲନ୍ତି ଶ୍ରୀରାମ ଶୁଣ ଆହେ ଭଗବାନ
ଆପଣ ଯେ ଉପଦେଶ କଲେକ ପ୍ରଦାନ ।
ଶୁଣିକରି ସେହି ସୁମଧୁର ବାଣୀମାନ
ମୋ ହୃଦବୋଧ କରିଛି ସେହି ତତ୍ତ୍ୱଜ୍ଞାନ ।
ଏବେ ମଧ୍ୟ ମନରେ ମୋ ରହିଛି ସଂଶୟ
ମୋଚନ କରିବା ହେଉ ସେ ସଂଶୟ ଚୟ ।
**ସ୍ୱୟଂ ପ୍ରକାଶ ନିର୍ମଳ ଆତ୍ମାରେ ପ୍ରଥମେ**
**ଉପରୋକ୍ତ ଅଜ୍ଞାନ ଯେ କିରୂପେ ଜନମେ ?**
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ଯେତେବେଳେ ସିଦ୍ଧାନ୍ତରେ ହେବି ଉପନୀତ ।
ତୁମ ପ୍ରଶ୍ନର ଉତ୍ତର ଦେବି ତେତେବେଳେ
ମୁକ୍ତି ଉପାୟ ସିଦ୍ଧାନ୍ତ ହେବ ଯେତେବେଳେ ।
ତା ପୂର୍ବରୁ ଯେବେ ମୁଁ ତା କରିବି ବର୍ଣ୍ଣନ
ବୁଝି ନ ପାରିବ ଆହେ କୌଶଲ୍ୟା ନନ୍ଦନ ।
ପଥ ପ୍ରଦର୍ଶକ ମୋର ଉପଦେଶ ମାତ୍ର
ପ୍ରଣିଧାନ କରି ଅନୁସର ସେହି ପଥ ।
ତେବେ ତୁମେ ଆତ୍ମା କିସ ପାରିବ ତା ଜାଣି
ଆତ୍ମାହିଁ ନିଜକୁ ଜାଣେ ଅନ୍ୟ କେ ନଜାଣି ।
ନିଜକୁ ଏହି ଆକାରେ ନିଜେ ଜାଣିକରି
ଆକୃତି ଧରିଣ ଥାଇ ଆହେ ରୂପଧାରୀ ।
**ନିଜେ ପ୍ରସନ୍ନ ହୋଇଣ ନିଜକୁ ପାଇବ**
ଏହି ତତ୍ତ୍ୱ ସଦା ମନେ ରଖିବ ରାଘବ ।
ଅଖଣ୍ଡ ବ୍ରହ୍ମତତ୍ତ୍ୱକୁ ବୁଝାଇବା ପାଇଁ
କର୍ତ୍ତା, ଅକର୍ତ୍ତା, ବିଚାର କରାଯାଇ ଥାଇ ।
ତୁମ ବାସନା ଏ ଯାଏ ହୋଇନାହିଁ କ୍ଷୀଣ
ଆତ୍ମାର ଅଖଣ୍ଡ ରୂପ ଯେହେତୁ ନ ଜାଣ ।
ବାସନାବଦ୍ଧ ଯେ ବ୍ୟକ୍ତି ସେହି ଏକା ବଦ୍ଧ
ବାସନା ବିଳୟ ହେନ୍ତେ ନୁହେଁ ସେ ଆବଦ୍ଧ ।
**ବାସନା କ୍ଷୟ ଯେ ଜାଣ ଅଟଇ ମୁକତି**
ପ୍ରଥମେ ବାସନା ପରିହର ରଘୁପତି ।

ମୁକତି କାମନା ମଧ୍ୟ ତେଜ ହେ ଶ୍ରୀରାମ
**ତାମସୀ ବାସନା** ସଦା କଣ୍ଟକ ଜାଣିମ ।
ମୈତ୍ରୀ, କରୁଣା, ମୁଦିତା ଉପେକ୍ଷା ଇତ୍ୟାଦି
**ନିର୍ମଳ ବାସନା** ମାନ ବର ରଘୁନିଧି ।
ପରେ ତାହାକୁ ଯତନେ କରିବ ବର୍ଜନ
'ଆତ୍ମ ଚୈତନ୍ୟ ବାସନା ଦୃଢ଼କର ରାମ ।
ମନ, ବୁଦ୍ଧି ସହିତରେ ଚିନ୍ମାତ୍ର ବାସନା
ପରିତ୍ୟାଗ କରିବ ହେ ରାମ ମହାମନା ।
ଯହିଁରେ ଆତ୍ମତତ୍ତ୍ୱରେ ହେବ ସମାହିତ
କରଣୀୟ ତାହା, ରାମ କରିବା ଉଚିତ ।
ତା ପରେ ପ୍ରକାଶ ଅନ୍ଧକାର, କାଳ ସହ
ପ୍ରାଣ ସ୍ପନ୍ଦନ, ଇନ୍ଦ୍ରିୟ, ମିଳାଇଣ ରହ ।
ନିର୍ମଳ ଆକାଶ ସମ ଚିନ୍ମୟ ରୂପରେ
ଅବସ୍ଥାନ କରିପାରିବ ହେ ରଘୁବୀରେ ।
ତୁମେ ହିଁ ସର୍ବ ପୂଜିତ ଚିନ୍ମୟ ଆତ୍ମା
ତୁମେ ହିଁ ସର୍ବ ଘଟରେ ବିରାଜ ମହାତ୍ମା ।
ଅଭିମାନ ଶୂନ୍ୟ ହୋଇ ଯେଉଁ ବୁଦ୍ଧିମାନ
ସକଳ କଳଙ୍କ ହୃଦୁ କରେ ନିଷ୍କାସନ ।
ମୁକତ ପରମେଶ୍ୱର ସେହି ଏକା ରାମ
କାହୁଁ ମୁକତି ସମ୍ଭବ ଯହିଁ ଅଭିମାନ ?
ସର୍ବ ଅଭିମାନ ଯା ହୃଦରୁ ଦୂରୀଭୂତ
ସମାଧିସ୍ଥ ହେଉ ଅବା ଥାଉ କର୍ମରତ,
ସେହି ଯେ ମୁକ୍ତି ଲଭିଛି ତହିଁ ଲେଶମାତ୍ର
ସଂଶୟ ରହି ନ ପାରେ ଆହେ ରଘୁନାଥ ।
ବାସନା ବିହୀନ ଅଟେ ଯେଉଁ ଲୋକ ମନ
କର୍ମ, ସମାଧି, ତା ପାଇଁ ନୁହେଁ ପ୍ରୟୋଜନ ।
ଅଧ୍ୟାତ୍ମ ଶାସ୍ତ୍ର ବିଚାର ଅବା ମୌନବ୍ରତ
ଅବଲମ୍ବନ ତା ପକ୍ଷେ ସାଧନ ମହତ ।
ଦେଶ ଦେଶାନ୍ତର ଭ୍ରମି ଅନେକ ସାଧକ
ଦେଖୁଥାନ୍ତି ନାନା ଦୃଶ୍ୟ ହୋଇ ପର୍ଯ୍ୟଟକ ।
କ୍ୱଚିତ ଭାଗ୍ୟବାନଙ୍କ ଭାଗ୍ୟରେ ଶ୍ରୀରାମ
ଅକସ୍ମାତେ ଘଟିଥାଏ ସତ୍ୟ ଦରଶନ ।
ଅଭିଳଷିତ ଅଥବା ଅନଭିଳଷିତ
ଯାହା କିଛି ଆସୁଥାଏ ତୁମ ନେତ୍ର ପଥ,
ସେମାନଙ୍କ ମଧ୍ୟେ କିଛି ପାର୍ଥକ୍ୟ ନ ଥାଇ
ଏଥିରେ ସନ୍ଦେହ କିଛି ରହି ନ ପାରଇ ।

ଏ ଦୁହିଁଙ୍କର ଅତୀତ ଯେଉଁ ଆତ୍ମତତ୍ତ୍ୱ
କେ ତାର ଦର୍ଶନ ପାଇଁ ନୁହେଁ ଆକାଂକ୍ଷିତ ?
ଲୌକିକ ବୈଭବ କିମ୍ବା ଯାଗ ଯଜ୍ଞ କର୍ମ
କେବଳ ଏ ଦେହ ପାଇଁ ତାର ପ୍ରୟୋଜନ ।
ଆତ୍ମା ପାଇଁ ପ୍ରୟୋଜନ ଏଥି କିଛି ନାହିଁ
ଖାଲି ଚକ୍ଷୁକୁଟା କାମ ଜାଣ ରଘୁରାଇ ।
ଏ ଜଗତେ ତତ୍ତ୍ୱଦର୍ଶୀଙ୍କର ସଂଖ୍ୟା ରାମ
କୋଟିକେ ଗୋଟିଏ ଥିବା ଅଟେ ସନ୍ଦିହାନ ।
ଗ୍ରାହ୍ୟ, ତେଜ୍ୟ ଆଦି ଭାବ ଯାହାର ନ ଥାଇ
ସେପରି ତତ୍ତ୍ୱଜ୍ଞ ବ୍ୟକ୍ତି ଖୋଜିଲେ ନ ପାଇ ।
ତ୍ରିଭୁବନ ଅଧିପତି ହେଉ ପଛେ ନର
ଇନ୍ଦ୍ର ବା ବରୁଣ ପଦ କରଗତ ଯାର,
ଜଳେ ପଶିଯାଉ ଅବା ମେଘେ ମିଶିଯାଉ,
ପରମାତ୍ମା ତତ୍ତ୍ୱବିନା ଯାହା କିଛି ଭ୍ୟାଉ,
କାହିଁରେ ବିଶ୍ରାନ୍ତ ଘଟି ନ ଥାଏ ତାହାର
ହୃଦଗତ କର ଏହା ଆହେ ରଘୁବୀର ।
ଯେ ଜିତେନ୍ଦ୍ରିୟ ଲଭିଛି ଆତ୍ମ ସାକ୍ଷାତ୍କାର
ଜନ୍ମ, ମୃତ୍ୟୁ, ବ୍ୟାଧିର ସେ ଅଟଇ ଡାକ୍ତର ।
ତତ୍ତ୍ୱଜ୍ଞ ଗୋଷ୍ପଦ ତୁଲ୍ୟ ମଣେ ଏ ସଂସାର
ଅନ୍ୟ ପ୍ରତି ତା' ଉତ୍ତାଳ ତରଙ୍ଗ ସାଗର ।
ବ୍ରହ୍ମାନନ୍ଦ ଲାଭେ ଯାର ଚିତ୍ତ ବିଗଳିତ
କଦମ୍ବ କୁସୁମ ପରି ତାକୁ ଏ ଜଗତ,
ନଗଣ୍ୟ ନଗଣ୍ୟତର ପରି ହୁଏ ବୋଧ
ଦୃଢ଼ଭାବେ ମନେରଖ କୌଶଲ୍ୟା ସଂପଦ ।
ତତ୍ତ୍ୱଜ୍ଞ ଦୃଷ୍ଟିରେ କିଛି ନୁହଇ ଉତ୍ପନ୍ନ
ଯାହାକି ଉତ୍ପନ୍ନ ତାହା ଅଟେ ମିଥ୍ୟା ଭ୍ରମ ।
ଏ ସାରା ଜଗତ ପ୍ରାପ୍ତ ହେଲେ ରଘୁବୀର
କିଛି ଯାଏ ଆସେ ନାହିଁ ଚିନ୍ମୟ ଆତ୍ମାର ।
ସର୍ବ ତେଜି ଯେ ଲଭିଛି ବିପୁଳ ସୁଜ୍ଞାନ
ତାର ଅବସ୍ଥାନ ପାଇଁ ପୃଥିବୀ ନଗଣ୍ୟ ।
ମନ ବିହୀନ ଅଟଇ ଯେବଣ ତତ୍ତ୍ୱଜ୍ଞ
ଗଗନ ସଦୃଶ ଅଟେ ବିଶାଳ ଯେ ପ୍ରାଜ୍ଞ,
ଏକ, ସ୍ୱସ୍ଥ ହୋଇ ରହି ପାରିଛି ଯେ ନର
ଆକାଶ ପରି ଶୂନ୍ୟ ସେ ଦେଖେ ଏ ସଂସାର ।
ମେଘ ଯଥା ଲିପ୍ତ କରି ନ ପାରେ ଆକାଶ
ଜଗତ ମୋହି ନ ପାରେ ତତ୍ତ୍ୱଜ୍ଞ ପୁରୁଷ ।

ଶୈବାଳାଛନ୍ନ ଜଳରେ ରାଜହଂସଗଣ
ଇଚ୍ଛା ନ କରନ୍ତି କରିବାକୁ ସନ୍ତରଣ ।
ଆସକ୍ତ ହୁଅନ୍ତି ନାହିଁ ତତ୍ତ୍ୱଜ୍ଞ ପୁରୁଷ
ଏ ସଂସାର ବୈଭବରେ ଆହେ ରଘୁଶିଷ୍ୟ ।

**ଇତିଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**ପୂର୍ଣ୍ଣ ସ୍ୱରୂପ ବର୍ଣ୍ଣନେ ନାମ ୫୪ ସର୍ଗଃ ।**



## ୫୫ଶ ସର୍ଗଃ

## କଚଗାଥା ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ବୃହସ୍ପତି ପୁତ୍ର ଥିଲେ କଚ ତପୋଧନ ।
ଏ ବିଷୟେ ଯେଉଁ ଗାଥା କଲେକ କୀର୍ତ୍ତନ
ତାହା ଏବେ କହୁଅଛି ମନଦେଇ ଶୁଣ ।
ମେରୁ ପର୍ବତର ଏକ ଅରଣ୍ୟ ମଧ୍ୟରେ
ବାସକରି ବ୍ରହ୍ମବିଦ୍ୟା ଅଭ୍ୟାସୁଣ ଥିଲେ ।
ଅକସ୍ମାତ୍ ଆତ୍ମାରେ ସେ ବିଶ୍ରାନ୍ତି ଲଭିଲେ
ତଥା କଚ; ଆତ୍ମା ସହ ସାକ୍ଷାତକାର କଲେ ।
ଜ୍ଞାନାମୃତ ପାନକରି ଯେତେବେଳେ ମନ
ପୂର୍ଣ୍ଣତା ଲାଭ କରନ୍ତି ସେ ତପୀମଣ୍ଡନ ।
ଜୀବାତ୍ମା ସହିତ ତାଙ୍କ ପ୍ରୀତି ନ ରହଇ
ଆତ୍ମାଛଡ଼ା ଅନ୍ୟ କିଛି ତାଙ୍କୁ ନ ଦିଶଇ ।
ନିର୍ବେଦ ହୋଇ ସର୍ବତ୍ର ଆତ୍ମାକୁ ଦେଖନ୍ତି
ଯୁଗପତ୍ ହରଷିତ ବିସ୍ମୟ ଲଭନ୍ତି ।
ଏହି ଅବସ୍ଥାରେ ମନେ ମନେ ସେ ଭାଳନ୍ତି
"ଏବେ ମୁଁ କିସ କରିବି ବୋଲିଣ ଭାବନ୍ତି ।
କିସ ଗ୍ରହଣ କରିବି କିସବା ତେଜିବି
ଅଥବା କେଉଁ ସ୍ଥାନକୁ ଗମନ କରିବି ।
ଏହି ନିଖିଳ ଜଗତ ଆତ୍ମାପରିପୂର୍ଣ୍ଣ
କରିବି ତେଜେ ଜଗତ୍ ମୂଳାନୁସନ୍ଧାନ ।
ଦୁଃଖଭୋଗୀ ଜୀବ ଏବଂ ତାର କାମ୍ୟ ସୁଖ
ଆକାଶ ସଦୃଶ ତାକୁ ମଣେ ମୋ ବିବେକ ।
ଦିକ୍‌କାଳଠୁଁ ମହାନ ଯେଣୁ ସେ ଆକାଶ
ଆତ୍ମମୟ ବୋଧହୁଏ ତାହାର ବିକାଶ ।
ତେଣୁ ଯେ ସକଳ ବସ୍ତୁ ଖାଲି ଆତ୍ମମୟ
ଏସନ ବୁଝିପାରୁ ମୁଁ ତହିଁରେ ତନ୍ମୟ ।
ଏ ଆତ୍ମାକୁ ଲାଭକରି ମୋ ଦୁଃଖ ସକଳ
ପାଣିପରି ବୋହିଗଲା ଧନ୍ୟ ମୋ କପାଳ ।
ବାହ୍ୟ, ଅନ୍ତର, ଶରୀର ଚତୁର୍ଦ୍ଦିଗମାନ
ଉର୍ଦ୍ଧ୍ୱ, ଅଧଃ ସର୍ବ ସ୍ଥଳେ ଆତ୍ମା ବିଦ୍ୟମାନ ।
ଏଥି ମଧ୍ୟେ କଉଣସି ଦ୍ରବ୍ୟ ଅବା ସ୍ଥାନ
ଅନାତ୍ମମୟ ନୁହନ୍ତି ହୁଏ ମୋର ଜ୍ଞାନ ।
ଏହି ଆତ୍ମା ସର୍ବସ୍ଥଳେ ଅଛି ବିଦ୍ୟମାନ
ସବୁ ଆତ୍ମମୟ ସର୍ବ ଆତ୍ମାର ସମାନ ।
ମୁହିଁ ମଧ ସେ ଆତ୍ମାରେ ଆତ୍ମାରୂପେ ସ୍ଥିତ
ଚେତନ ବା ଅଚେତନ ବୋଲିଯା ବିଦିତ ।
ସେ ସକଳ ଅନ୍ତରରେ ମୁହିଁ ବିଦ୍ୟମାନ
ନିଜ ଛଡ଼ା ଅନ୍ୟକିଛି ନ ଦିଶେ ନୟନ ।
ଏ ଅନନ୍ତ ଆକାଶକୁ ପରିପୂର୍ଣ୍ଣ କରି
ସତ୍ୟରୂପେ ବିଦ୍ୟମାନ ମୁହିଁ ସର୍ବସ୍ଥଳୀ ।
ମୁହିଁତ ଆନନ୍ଦ ପୁଣି ମୁହିଁ ସେହି ସୁଖ
ସମ୍ପୂର୍ଣ୍ଣ ଜଳଧିପରି ମୁହିଁ ଏକା ଏକ ।
ଏହିପରି ଚିନ୍ତା କରୁ କରୁ କଚ ମୁନି
ଓଁକାର ଉଚ୍ଚାରି ବସେ କମ୍ପଇ ମେଦିନୀ ।
ଅ-ଉ-ମ ତ୍ରିମାତ୍ରାତ୍ମକ ଓଁ କାର ବଳରେ
ଦୃଶ୍ୟ ଆଦିଙ୍କୁ ବିଲୀନ କରି ତତପରେ,
ହୃଦୟ ଆକାଶେ ଅର୍ଦ୍ଧମାତ୍ରା ଚିନ୍ତାକରି
ତୁରୀୟ ଭାବେ ରହନ୍ତି ସେହି ତପଚ୍ଚରୀ ।
ଆତ୍ମା ସଂକଳ୍ପ କାଳିମା ପୋଛି ଦେଇକରି
ମେଘଶୂନ୍ୟ ଶାରଦୀୟ ଆକାଶର ପରି ।
ସଂସ୍ଥିତ ହୋଇ ରହିଲେ କଚ ତପଚ୍ଚରୀ
କେଉଁ ପୁଅ ଅବା ତାଙ୍କ ଭାବ କଳିପାରି ?

**ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ**
**କଚ ଗାଥା ବର୍ଣ୍ଣନେ ନାମ ୫୫ଶ ସର୍ଗଃ ।**



## ୫୬ଶ ସର୍ଗଃ

## କମଳଜ ବ୍ୟବହାର ଭ୍ରାନ୍ତି

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ପାନ, ଭୋଜନ, ଆବର କାମିନୀ, କାଞ୍ଚନ ।
ଏଥିରେ ମୁଗଧ ରହନ୍ତି ମୂଢ଼ଜନମାନ
ପରମପଦ ଆରୁଢ଼ ଯେ ମାନବଗଣ,

କିମ୍ବା ହୋଇବେ ଏସନ ବାଞ୍ଛାର ଅଧୀନ
ବିଧି ନିବନ୍ଧହିଁ ତାଙ୍କ ଭାଗ୍ୟକୁ ଲିଖନ ।
ବାହାରକୁ କେଶ, ପୁଣି ଭିତରେ ରୁଧିର
ଏହି ତ ମାଧୁରୀ ଅଟେ କାମିନୀ ଶରୀର ।
ସେହି ମାଧୁରୀରେ ତୋଷ ଲଭେ ଯେଉଁ ଜନ
ମନୁଷ୍ୟରେ ଗଣା ନୋହିବ ସେ କଦାଚନ ।
ଶ୍ୱାନ ଆଖ୍ୟା ତାଙ୍କ ପାଇଁ ଅଟଇ ସଙ୍ଗତ
ଯଥାର୍ଥରେ ଦେଉଛି ମୁଁ ଏହି ଅଭିମତ ।
କେବଳ ମୃତ୍ତିକାମୟ ବିରାଟ ଜଗତ
ବୃକ୍ଷମାନ, ଯା ଦେଖୁଛ ଶେଷେ ସବୁ କାଠ ।
ମାଂସମୟ ଅଟେ ଜାଣ ଏ ସାର ଶରୀର
ନିମ୍ନ ଦେଶେ ଭୂମି, ଊର୍ଦ୍ଧ୍ୱେ ଆକାଶ ମଣ୍ଡଳ ।
ଅପୂର୍ବ ସୁଖଦାୟକ କୌଣସି ପଦାର୍ଥ
ଏହା ମଧ୍ୟେ ନ ପଡ଼ଇ ମୋ ନୟନ ପଥ ।
ମାନବ ଅଟଇ ଯେଣୁ ସୁବିଚାର ହୀନ
ହରି ନେଉଥାଏ ଏହା ତା ନୟନ ମନ ।
ବାସ୍ତବିକ ଏ ସମସ୍ତ ମୋହର ନିଦାନ
ତତ୍ତ୍ୱ ଦୃଷ୍ଟିରୁ ଏହାର ନାହିଁ କିଛି ସ୍ଥାନ ।
ଅଗ୍ନିଶିଖା ବହିର୍ଦେଶେ କଜ୍ଜ୍ୱଳ ଯେସନ
ସୁଖ ଆଶାରେ ଦୁଃଖର କାଳିମା ତେସନ ।
ଅସ୍ଥି, ମାଂସ ଶରୀରରେ ଆତ୍ମ ଅଭିମାନୀ
ରକ୍ତମାଂସ ମୂରତିକି କାନ୍ତା ବୋଲି ମଣି ।
ମୋହ ଜନକ କନ୍ଦର୍ପ ତା କରାଇ ଥାଏ
ଜାଣି ଶୋଇବା ଲୋକକୁ ଚେତାଇବ କିଏ ?
ଅଜ୍ଞବ୍ୟକ୍ତି ଜଗତକୁ ସତ୍ୟବୋଲି ମଣେ
ଦେହ ମଧ ଚିରସ୍ଥାୟୀ ଦୃଢ଼ ତାର ମନେ ।
କ୍ଷଣ ଭଙ୍ଗୁର ଏ ସବୁ ଆବର ଅଳକୀ
ବୁଝିପାରିଥାନ୍ତି ଏହା ତତ୍ତ୍ୱଦର୍ଶୀ ଲୋକ ।
**ଭୋଗ ନ କରିଲେ ମଧ ଭୋଗର ବାସନା**
**ମୋହ ଉତପନ୍ନ କରେ ରାମ ମହାମନା ।**
ତେଣୁ ହେ ଶ୍ରୀରାମ ଭୋଗଇଚ୍ଛା ପରିହର
ଆତ୍ମାର ଏକତ୍ୱ ଭାବ ଦୃଢ଼ ମନେଧର ।
ବାସନା ଓ କରମର ଆନୁକୂଲ୍ୟ ନେଇ
ମନବ୍ରହ୍ମା ଏ ଜଗତ କଳପି ଅଛଇ ।

ପୁଚ୍ଛନ୍ତି ଶ୍ରୀରାମ ମନବ୍ରହ୍ମା କେଉଁପରି
ଜଗତ ସୃଷ୍ଟି କରନ୍ତି ଆହେ ତପଚାରୀ ?
ପୁନର୍ବାର ତାହା ମୋତେ କହନ୍ତୁ ବୁଝାଇ
ଯହିଁରେ ମୋ ପରିତୋଷ ଆସିବ ଗୋସାଇଁ ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଗର୍ଭଶୟନ ତେଜିଣ ସେ ଚତୁରାନନ ।
**ପ୍ରଥମେ 'ବ୍ରହ୍ମା' ଶବଦ କଲେ ଉଚ୍ଚାରଣ**
**ତେଣୁ କାଳକ ହୋଇଲା ବ୍ରହ୍ମା ତାଙ୍କ ନାମ ।**
ଆପଣାକୁ ଚତୁର୍ମୁଖ କଳ୍ପିକରି ମନ
ଚତୁର୍ମୁଖ ବ୍ରହ୍ମା ହୋଇଥିଲେ ଏହା ଜାଣ ।
ପ୍ରଥମେ ସଂକଳ୍ପ ବଳେ ତେଜ କଳପିଲେ
ତେଜ ପ୍ରଭାରେ ଗଗନ ସ୍ୱର୍ଣ୍ଣବର୍ଣ୍ଣ ଧରେ ।
ସେହି ପ୍ରଭାମୟ ତେଜପୁଞ୍ଜ ମଧ୍ୟେ ପୁଣି
ନିଜପରି ଅନ୍ୟ ରୂପେ ଚିନ୍ତେ ପଦ୍ମଯୋନି ।
ସେହି ତେଜ ପୁଞ୍ଜମଧ୍ୟୁ ଉଦେ ସୂର୍ଯ୍ୟଦେବ
ନିକ୍ଷେପନ୍ତି ବାକି ତେଜପୁଞ୍ଜ ସର୍ବଠାବ ।
ସେହି ନିକ୍ଷିପ୍ତ ତେଜରୁ ପ୍ରଜାପତିମାନ
ଆର୍ବିଭୂତ ହୋଇ ଉଭା ବ୍ରହ୍ମ ସନ୍ନିଧାନ ।
ପୁତ୍ର ପୌତ୍ର ଆଦି କ୍ରମେ ପ୍ରଜାପତି ଗଣ
ଦେବ ଦାନବାଦି ଯେତେ ଭୂତ ସୃଷ୍ଟିମାନ ।
କଳ୍ପନା ମାତ୍ରକେ ଉଭା ଆସି ସେହିମାନ
**ଏହି କ୍ରମରେ ଘଟିଲା ସୃଷ୍ଟିର ବିଧାନ ।**
ତାଙ୍କଠାରୁ କାଳକ୍ରମେ ଅନ୍ୟଭୂତମାନ
ସୃଷ୍ଟି ହେଉଥାନ୍ତି ଜାଣ ହେ ରଘୁନନ୍ଦନ ।
**ଏହି ଭୂତମାନେ କ୍ରମେ ସଙ୍କଳ୍ପ ତେଜିଲେ**
**ମୈଥୁନ ଧର୍ମରେ ନିଜ ବଂଶ ବୃଦ୍ଧି କଲେ ।**
ଚାରି ବେଦମାନଙ୍କୁ ସେ କରିଣ ସ୍ମରଣ
ପ୍ରବର୍ତ୍ତାନ୍ତି ସର୍ବ ଜାଗ ଯଜ୍ଞାଦି ବିଧାନ ।
ସେ ବିରାଟ ମନଧରି ବ୍ରହ୍ମାଙ୍କ ଆକୃତି
ପରିଦୃଶ୍ୟମାନ ବିଶ୍ୱ ସର୍ଜନା କରନ୍ତି ।
ସମୁଦ୍ର ପର୍ବତ ବୃକ୍ଷମାନ ପରିପୂର୍ଣ୍ଣ
କ୍ରମେ ଏ ଜଗତ ଶୋଭା କରନ୍ତି ବର୍ଦ୍ଧନ ।
ସତ୍ତ୍ୱ, ରଜ, ତମ ଗୁଣମାନ ଘେନିକରି
ଦୈହିକ ସୁଖ ଦୁଃଖାଦି ବୃଦ୍ଧି ଲାଭକରି ।

ଜରା, ଜନ୍ମ, ମୃତ୍ୟୁ ଆଦି ମାନସିକ ଦୁଃଖ
ସଂସାର ରୂପେ ଲୋକଙ୍କ ବଢ଼ାଏ ସନ୍ତାପ ।
ମନ କଳ୍ପିତ ଜଗତ ମୋହ ଏହିପରି
ସ୍ଥିରତ୍ୱ ଲଭି ବିରାଜେ ଆହେ ରୂପଧାରୀ ।
ସଂକଳପ ପ୍ରଭାବରୁ ଜଗତ ଉତ୍ପନ୍ନ
ଦେବଗଣ ତା ପ୍ରଭାବୁ ନିୟତି ଅଧୀନ ।
ବିରୁଦ୍ଧ ଧର୍ମାବଲମ୍ବୀ ଦେବ, ଦୈତ୍ୟ, ନର
ଅଧର୍ମ ଆଚରି ଉପିଡ଼ିଲେ ପ୍ରଜାକୁଳ ।
ଇନ୍ଦ୍ରର ବିଭବ ଦେଖି ବିରୋଚନ ଦୈତ୍ୟ
ଇନ୍ଦ୍ରସହ ଯୁଦ୍ଧେ କଲା ନାନା ଉତପାତ ।
ବ୍ରହ୍ମା ଭାବିଲେ ତାଙ୍କର ସଙ୍କଳ୍ପରୁ ଜନ୍ମି
ଏମାନେ ଏପରି ହେଉଛନ୍ତି ଅନ୍ୟୋଅନ୍ନି ।
ତେଣୁ କରି ସଙ୍କଳ୍ପରୁ ସେହୁ ନିବର୍ତ୍ତିଲେ
ପରମାତ୍ମା ଚିନ୍ତା ଧ୍ୟାନେ ମଗନ ରହିଲେ ।
**ସେହି ଧ୍ୟାନବଳେ ଧ୍ୱଂସ ହୁଅଇ ଜଗତ**
**ବ୍ରହ୍ମାସହ ଆତ୍ମାକାରେ ରହେ ଅବସ୍ଥିତ ।**
ଅହଙ୍କାର ମମତାଦି ବ୍ରହ୍ମା ପରିହରି
ଆତ୍ମାଦ୍ୱାରା ଆତ୍ମା ମଧ୍ୟେ ଅବସ୍ଥାନ କରି ।
ପରମାତ୍ମା ଧ୍ୟାନୁ ଯେବେ ବିରତ ରହନ୍ତି
ଜଗତ ସୃଷ୍ଟି ରୂପ ଏ ସଂସାର ଦେଖନ୍ତି ।
ଜୀବପ୍ରତି ଦୟାଭାବ ପରବଶ ହୋଇ
ପୁନର୍ବାର ମୋକ୍ଷଶାସ୍ତ୍ରମାନ ନିର୍ମାଣଇ ।
ବାରମ୍ବାର ଏହିପରି ସର୍ଜନା, ବିନାଶ
କରୁଥାନ୍ତି ସେହି ବ୍ରହ୍ମା କୁତୁହଳ ବଶ ।
ବାସ୍ତବରେ ବ୍ରହ୍ମାଙ୍କର ଶରୀର ଧାରଣ
ଅଥବା ନାନାପ୍ରକାର ସୃଷ୍ଟି ସରଜନ,
ଏପରି ଘଟଣାମାନ କିଛି ନ ଘଟଇ
ଏହି କଥା ହେଜରଖ ଆହେ ରଘୁରାଇ ।
ମୋ କଥିତ ଏ ପବିତ୍ର ବ୍ରହ୍ମସ୍ଥିତି ବାର୍ତ୍ତା
**ସାତ୍ତ୍ୱିକ ସ୍ଥିତି** ବୁଝିବ ରାମ ମହାମତା ।
ବ୍ରହ୍ମା ପ୍ରଜାପତିଗଣ ପୁଣି ଦେବଗଣ
ଏହି ସାତ୍ତ୍ୱିକ ସ୍ଥିତିରେ ତାଙ୍କ ଅବସ୍ଥାନ ।
**ତିନୋଟି ଭାଗ ଅଛଇ ସୃଷ୍ଟି ପ୍ରକ୍ରିୟାରେ**
ତାହା ଏବେ କହୁଅଛି ଶୁଣ ରଘୁବୀରେ ।
ପ୍ରଥମେ ବ୍ରହ୍ମା କଳ୍ପନା ବ୍ରହ୍ମ-ଆକାଶରେ
ଯେଉଁମାନଙ୍କ ଉତ୍ପତ୍ତି ଏହି ବିଭାଗରେ,
ବ୍ରହ୍ମଜ୍ଞାନ ସମ୍ପନ୍ନ ହୁଅନ୍ତି ସେହିମାନେ
ତାଙ୍କ ବ୍ରହ୍ମପ୍ରାପ୍ତି ଜ୍ଞାନ ବୈରାଗ୍ୟ ସାଧନେ ।
**ପ୍ରଜାପତିଗଣ ସୃଷ୍ଟ ଦେବାନିକଗଣ**
ସାତ୍ତ୍ୱିକ ସୃଷ୍ଟିରେ ମଧ୍ୟ ସେମାନଙ୍କ ସ୍ଥାନ ।
ପ୍ରଜାପତି ମାନଙ୍କଠୁଁ ଉପଦେଶ ପାଇ
ବ୍ରହ୍ମ ପ୍ରାପତି ସେମାନଙ୍କର ହୋଇଥାଇ ।
**ନର ବିଭାଗରେ ପୁଣି** ଯେ ମାନବଗଣ
ନିଜ ସଞ୍ଚିତ ଗୁଣର ହୋଇଣ ଅଧୀନ,
କିଏ ପାଏ ମୁକ୍ତି କାର ହୁଅଇ ବନ୍ଧନ
**ତୃତୀୟ ବିଭାଗେ** ରାମ ଏହିମାନେ ଗଣ୍ୟ ।
ସାଧୁସଙ୍ଗ, ଶାସ୍ତ୍ରାଭ୍ୟାସ, ଇନ୍ଦ୍ରିୟ ନିଗ୍ରହ
ଏମାନଙ୍କ ମୁକ୍ତି ପାଇଁ ଅନିର୍ବର୍ଜନୀୟ ।
ଇଷ୍ଟାନିଷ୍ଟ କର୍ମ, ଯାଗ, ଯଜ୍ଞ, ଉପାସନା
ଏଥି ବର୍ଦ୍ଧିତ, ବିଧୃତ, ସୃଷ୍ଟି ସରଜନା ।
ବ୍ରହ୍ମମଧ୍ୟେ ସତ୍ତାପାଇ ଏ ସୃଷ୍ଟି ଅଛଇ
ସୃଷ୍ଟିର ରହସ୍ୟ ଏହା ଜାଣ ରଘୁରାଇ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**କମଳଜ ବ୍ୟବହାର ଭ୍ରାନ୍ତି ବର୍ଣ୍ଣନେ**
**ନାମ ୫୬ଶ ସର୍ଗଃ ।**



## ୫୭ଶ ସର୍ଗଃ
## ବିରାଟ୍ ପୁରୁଷ ବର୍ଣ୍ଣନ

କହନ୍ତି ବଶିଷ୍ଠ ମୁନି କଳପାନ୍ତ କାଳେ
ବ୍ରହ୍ମ ଲୀନ ଜୀବ ବ୍ରହ୍ମୁ ନିର୍ଗତ ଯେ କାଳେ
ଯେ ପ୍ରକାରେ ଯେଉଁ କ୍ରମେ ଧରନ୍ତି ଶରୀର
ସେହି କ୍ରମ କହୁଅଛି ଶୁଣ ରଘୁବୀର ।
ବ୍ରହ୍ମାଙ୍କ ସମାଧି ଯେତେବେଳେ ଭାଙ୍ଗିଥାଏ
ସୃଷ୍ଟିର ପ୍ରାରମ୍ଭ ରାମ ତେତେବେଳେ ହୁଏ ।
ବ୍ରହ୍ମରୁ ଜନମ ଲଭିକରି ଜୀବଗଣ
ସଂସାର ମଧ୍ୟରେ କରୁଛନ୍ତି ବିଚରଣ ।
ଅନ୍ୟ ମନୋମୟ ସତ୍ତା ସକଳ ଯେ ଥିଲେ
ଈଶ୍ୱର ପୁତ୍ର ଭାବରେ ଶରୀର ଧରିଲେ ।
ପ୍ରଥମ ଆକାଶ ତାଙ୍କ ବିଚରଣ ସ୍ଥାନ
ଚତୁର୍ଦ୍ଦିଗେ ବିଚରନ୍ତି ବିକ୍ଷିପ୍ତ ହୋଇଣ ।
ବ୍ରହ୍ମରୁ ଜନ୍ମଲଭନ୍ତି ଯେଉଁ ଜୀବଗଣ
**ପ୍ରଥମେ ଆକାଶେ** କରିଥାନ୍ତି ପଦାର୍ପଣ ।

**ପରେ ପବନ** ସହିତ ଯାଇଣ ମିଶନ୍ତି
**ଜଳ, ପୃଥ୍ୱୀ, ତେଜସହ କ୍ରମଶଃ** ମିଳନ୍ତି ।
ଶବ୍ଦ ସ୍ପର୍ଶାଦି ତନ୍ମାତ୍ରାମାନଙ୍କ ସହିତ
ଲିଙ୍ଗ ଶରୀର ଧରନ୍ତି ହୋଇଣ ମିଳିତ ।
ଭୂତ ତନ୍ମାତ୍ରା ସହିତ ମିଳିତ ହୋଇଣ
ଖାଦ୍ୟ ଶସ୍ୟମାନଙ୍କରେ ମିଳନ୍ତି ତତ୍‌କ୍ଷଣ ।
ଅନ୍ନରୂପେ ସ୍ଥୂଳଦେହେ ପ୍ରବେଶ କରନ୍ତି
ଶୁକ୍ରଭାବ ଧରି ଦେହେ ତହିଁ ରହିଥାନ୍ତି ।
ତପ୍ପରେ ଜୀବ ଶରୀର କରନ୍ତି ଧାରଣ
ଅବ୍ୟକ୍ତ ରହନ୍ତି ତାଙ୍କ ଐଶ୍ୱର୍ଯ୍ୟାଦି ଜ୍ଞାନ ।
* ଦେବାନୀକ ଅନ୍ତର୍ଗତ ଯେଉଁ ଜୀବଗଣ
ଔଷଧ ଓ ବୃକ୍ଷ ମଧ୍ୟେ ତାଙ୍କ ପ୍ରବେଶନ ।
ଗାଭୀ ଶରୀରରେ ଦୁଗ୍ଧ ଘୃତ ରୂପ ଧରି
ହୋମାନଳ ଦ୍ୱାରା ସୂର୍ଯ୍ୟ ମଣ୍ଡଳେ ବିଚରି ।
ଚନ୍ଦ୍ର କିରଣରେ ମିଶି ନନ୍ଦନ ବନରେ
ପ୍ରବେଶ ହୁଅନ୍ତି ନାନା ଫଳକ ମଧରେ ।
କଶ୍ୟପାଦି ଋଷିଗଣ ସେ ଫଳ ଭକ୍ଷଣେ
ବୀର୍ଯ୍ୟରୂପେ ତାଙ୍କ ଦେହେ ରହନ୍ତି ଏମାନେ ।

**ଦେବାନୀକ ଜୀବଗଣ** ତାଙ୍କଠୁ ଜନମ
ଏହିପରି ଦେବତାଙ୍କ ଜନମଟି ଜାଣ ।

ଏବେ ଶୁଣିବା ହୁଅନ୍ତୁ ହେ ରଘୁତିଳକ
ବ୍ରହ୍ମା କଳ୍ପନାରୁ ଜାତ ପ୍ରଥମ ଅନୀକ ।

ବ୍ରହ୍ମ ଆକାଶରେ ଯାହାଙ୍କର ଅବସ୍ଥାନ
ତାହାଙ୍କର ଘଟେ ନାହିଁ ପୁନର୍ବାର ଜନ୍ମ ।

ଦେବାନୀକ ଅନ୍ତର୍ଗତ ସାତ୍ତ୍ୱିକ ରାଜସ
ପୁଣି ଜନମ ଲଭନ୍ତି ସେ ସବୁ ପୁରୁଷ ।

ପ୍ରଥମ * ଅନୀକ ମଧ୍ୟେ ଯେ ସାତ୍ତ୍ୱିକ ଲୋକ
ଜନମ ଲାଭ କରିଣ ଥାନ୍ତି ଇହଲୋକ ।

ଶ୍ରବଣ, ମନନ ଦ୍ୱାରା ଆତ୍ମତତ୍ତ୍ୱ ଜ୍ଞାନ
ଲାଭ କରିବା ପାଇଁକି ନିଅନ୍ତି ଜନମ ।

ସେହି ରୂପ ଗୁଣବାନ ବ୍ୟକ୍ତି ଏ ଜଗତ
ବିରଳ ଏ ଧରାଧାମେ ଆହେ ରଘୁନାଥ ।

**ବିଷୟାନୀକ** ବୋଲାନ୍ତି ଯେ ତାମସ ଜାତ
**ନରାନୀକ**ଠାରୁ ମଧ୍ୟ ସେମାନେ ନିକୃଷ୍ଟ ।
ଉତ୍ତମ ଜନମ ପାଇ ସଂସାରୀ ନୋହିବା
ଦେବତା ମାନବ ମଧ୍ୟେ ବିରଳ ଦେଖିବା ।
ଆତ୍ମ ବିଚାର ସମ୍ପନ୍ନ ମୋ ପରି ଯେମାନ
ରାଜସ, ସାତ୍ତ୍ୱିକ ମଧ୍ୟେ ତାଙ୍କର ଗଣନ ।
ରାଜ ପୌରହିତ୍ୟ ଯେଣୁ ସମାଧି ବିରୋଧ
ମୋ ପ୍ରାରବ୍ଧ ସହ ତାର ରହିଛି ସମ୍ବନ୍ଧ ।
ତେଣୁ ପ୍ରକୃତି ସାତ୍ତ୍ୱିକ ନିତାନ୍ତ ଦୁର୍ଲଭ
ଭାଗ୍ୟବାନ ସେହି ଯାର ସେଥିପ୍ରତି ଲୋଭ ।
ହେଲେହେଁ ତୁମେ ମୋପରି ବୈରାଗ୍ୟ ସମ୍ପନ୍ନ
ଆତ୍ମ ବିଚାରରେ ତୁମେ ଏବେ କି ଅକ୍ଷମ
ତେଣୁ ସେହି କାରଣରୁ ସଂସାର ବିଭ୍ରମ
ଏବେ ମଧ୍ୟ ତୁମଠାରେ ଅଛି ବିଦ୍ୟମାନ ।
ଆତ୍ମ ବିଚାରେ ପ୍ରବୃତ୍ତ ହୁଅ ହେ ସତ୍ୱର
ଅଦ୍ୱୟ ପରମପଦେ ହେବ ଅଧିକାର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ବିଚାର ପୁରୁଷ ବର୍ଣ୍ଣନେ**
**ନାମ ୫୭ଶ ସର୍ଗଃ ।**



## ୫୮ଶ ସର୍ଗଃ
## ଜନ୍ମମରଣ ସଂବିତ୍

ରାଜସ ସାତ୍ତ୍ୱିକ ହୋଇ ଯେମାନେ ଜନ୍ମନ୍ତି
ସର୍ବଦା ଆନନ୍ଦମୟ ସେମାନେ ଅଟନ୍ତି ।
ପୁଣି ସେମାନେ ଚନ୍ଦ୍ରମା ସମ ଦୀପ୍ତିଶୀଳ
ସେମାନଙ୍କ ପରଶଂସା ଗାଇବା ବାହୁଲ୍ୟ ।
କଉଣସି ମାନସିକ ଦୁଃଖ ତାଙ୍କ ନାହିଁ
ଦୁଃଖ କଷ୍ଟରେ ମାଳିନ୍ୟ ତାଙ୍କ ନ ଘଟଇ ।
ଏହିପରି ଜାଣ ସାଧୁ ମହାତମାଗଣ
ସର୍ବକ୍ଷଣ ରହିଥାନ୍ତି ସମଭାବାପନ୍ନ ।
ସମରସ ଭୋଗୀ ପୁଣି ସୌମ୍ୟଭାବ ଧରି
ବିରାଜମାନ ରହନ୍ତି ଏହି ବସୁନ୍ଧରୀ ।

* ଦେବାନୀକ-ପ୍ରଜାପତିଗଣ
* ଅନୀକ-ବିଭାଗ

ସେମାନଙ୍କ ଉପଦେଶ କରନ୍ତେ ଗ୍ରହଣ
କେବେହେଁ ନୋହିବେ କେହି ବିପଦ ଆପନ୍ନ
ସତ୍ ଶାସ୍ତ୍ର ବିଚାର ପୁଣି ସକଳ ଅନିତ୍ୟ
ଏହି ଭାବନାରେ ବୁଦ୍ଧି ହେଲେ ବିଶୋଧିତ,
ଏ ଦୈହିକ ଓ ପାରତ୍ରିକ କରମ ସକଳ
ଆପଦ ସମ୍ପନ୍ନ ବୋଲି ଜାଣିବ ସେ ନର ।
ଅଜ୍ଞାନ ଜନିତ ଅସମ୍ୟକ ଦୃଷ୍ଟିକୋଣ
ପରିହାର କରିବାରେ ହେବ ଯତ୍ନବାନ ।
"ମୁଁ କିଏ ବା ସଂସାର କେଉଁଠୁ ଉଦ୍ଭବ"
ସାଧୁ ଜନଙ୍କ ସହିତ ବିଚାର କରିବ ।
ମୟୂର ମେଘକୁ ଦେଖି ଆନନ୍ଦ ଯେସନ
ସାଧୁଗଣଙ୍କୁ ଦେଖିଲେ ହେବ ସୁପ୍ରସନ୍ନ ।
ଆତ୍ମ ବିଚାରରେ ମଗ୍ନ ହୋଇଣ ମାନବ
ସତ୍ୟ ସ୍ୱରୂପ ଆତ୍ମାକୁ ଦର୍ଶନ କରିବ ।
ମଣିମାଳା ଗୁନ୍ଥାହୁଏ ସୂତାରେ ଯେପରି
ପରମପଦେ ଗ୍ରଥିତ ପ୍ରପଞ୍ଚ ସେପରି ।
ବିରାଟ ବିଶ୍ୱ, ପୃଥିବୀ, ଆଦିତ୍ୟ, ଆକାଶ
ଚିଦ୍‌ରୂପେ ଯେ ପରମ ବ୍ରହ୍ମଙ୍କ ପ୍ରକାଶ
ସାମାନ୍ୟ କୀଟ ମଧ୍ୟରେ ସେହୁ ସେହିପରି
ବିରାଜମାନ ଅଛଇ ଆହେ ଚାପଧାରୀ ।
କଟୁ ତିକ୍ତ ଆଦି ରସେ ସ୍ୱାଦଗତ ଭେଦ
ଅନୁଭବ ଏକ, ତହିଁ ନ ଥାଇ ପ୍ରଭେଦ ।
ପରସ୍ପରଠାରୁ ଭିନ୍ନ ହେଲେହେଁ ଶରୀର
ଏକମାତ୍ର ବ୍ରହ୍ମ ବିରାଜନ୍ତି ସର୍ବ ସ୍ଥଳ ।
ଏକମାତ୍ର ସତ୍ ବସ୍ତୁ ଯଦି ବିଦ୍ୟମାନ
"ଏ ଜନ୍ମିଲା, ଇଏ ମଲା" କାହିଁ ଯାର ସ୍ଥାନ ?
ଯାହରା ଜନମ ଅଛି ଆବର ମରଣ
ବସ୍ତୁ ପଦବାଚ୍ୟ ତାହା ନୁହେଁ କଦାଚନ ।
ଯାହା କିଛି ଦେଖୁଅଛ ତୁମେ ରଘୁନାଥ
ଚିତ୍‌ରହିଁ ଆଭାସ ବା ପ୍ରତିବିମ୍ବ ମାତ୍ର ।
ସତ ନୁହନ୍ତି ଏମାନ ଜାଣ ରଘୁନାଥ
କିପରି ଅବା କହିବ ସେମାନେ ଯେ ସତ ?
ସତ ବୋଲିଣ କହିବ କି ପ୍ରମାଣ ଫଳେ
ଅସତ୍ୟ ବୋଲି କହିବ କେଉଁ ଦମ୍ଭବଳେ ?
ଚଞ୍ଚଳ ଚିତ୍ତ ଯେମାନେ ତା ସତ୍ୟ ମଣନ୍ତି
ଯେ ପର୍ଯ୍ୟନ୍ତ ହୋଇନାହିଁ ତାଙ୍କର ମୁକତି ।
ଚିତ୍ତର ଚାଞ୍ଚଲ୍ୟ ହୋଇଗଲେ ଦୂରୀଭୂତ
ଏ ସକଳ ଦୃଶ୍ୟ ନ ହୁଅନ୍ତି ଆଉ ଦୃଷ୍ଟ ।
ଏଥିପାଇଁ ଏହା ସବୁ ଅସତ୍ୟ ବୋଲିଣ
ବିଚାର କରିବା ଯୁକ୍ତିଯୁକ୍ତ ଅଟେ ରାମ ।
ଜଗତର ସତ୍ତା ଯେଣୁ ଅଟଇ ଅସତ
ମୋହ ବା ମୋହ କାରଣ ସମ୍ଭବ କେମନ୍ତ ?
ଜନ୍ମ, ମରଣ ଆବର ଜୀବଦଶା ପାଇଁ
ଚିନ୍ତା କରିବାର କିଛି ପ୍ରୟୋଜନ ନାହିଁ ।
ଆକାଶ ପରି ନିର୍ମଳ ସମଭାବ ହୋଇ
ଏ ଜଗତେ ବିଚରଣ କର ରଘୁସାଇଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ସ୍ଥିତି ପ୍ରକରଣେ**
**ଜନ୍ମ ମରଣ ସଂବିତ୍ ବର୍ଣ୍ଣନେ**
**ନାମ ୫୮ଶ ସର୍ଗଃ ।**



## ୫୯ଶ ସର୍ଗଃ
## ମୋକ୍ଷ ଉପାୟ ବର୍ଣ୍ଣନ

କହନ୍ତି ବଶିଷ୍ଠ ଏବେ ଶୁଣିବାକ ରାମ
ଧୀର ବିଚାରବନ୍ତ ଯେ ପୁରୁଷ ଉତ୍ତମ ।
ସାଧୁମାନଙ୍କ ସହିତ ନିଜ ବୁଦ୍ଧି ବଳେ
ଶାସ୍ତ୍ର ବିଚାର କରିବେ ନିର୍ମଳ ଚିତ୍ତରେ ।
ବିଷୟ ତୃଷ୍ଣା ବିହୀନ ସନ୍ଥଙ୍କ ସହିତ
ତତ୍ତ୍ୱ ବିଚାର କରିବ ହୋଇ ଧୀର ଚିତ୍ତ ।
ଯୋଗାବଲମ୍ବନଶୀଳ ଯଦି ହୋଇପାର
ପରମପଦ ପ୍ରାପତି ହୋଇବ ତୁମର ।
ଗୁରୁ ଉପଦେଶମତେ ଶାସ୍ତ୍ରାର୍ଥ ପାଳିବ
ସତସଙ୍ଗ ବୈରାଗ୍ୟ ଫଳେ ନିଜକୁ ଶୋଧିବ ।
ଆତ୍ମଜ୍ଞାନ ଲାଭ ପାଇଁ ସେହି ଉପଯୁକ୍ତ
ଏ ସାଧନ ପାଇଁ ଯେହୁ ଅଟଇ ସମର୍ଥ ।
ତୁମେ ସଦାଚାରୀ ଧୀର ସର୍ବଗୁଣ ଧାମ
ଦୂରୀତ ହୋଇଛି ତୁମ ମନର ମାଳିନ୍ୟ ।
ନିର୍ମଳ ଆକାଶ ସମ ତୁମେ ସୁନିର୍ମଳ
ସଂସାର ଭାବନା ନାହିଁ ତୁମ ହୃଦସ୍ଥଳ ।
ଉତ୍ତମ ଜ୍ଞାନ ପ୍ରାପତ ହୋଇଅଛ ତୁମେ
ନିଃସନ୍ଦେହ ତୁମ ମନ ପରମାତ୍ମ ଧ୍ୟାନେ ।
କିଛିମାତ୍ର ଭେଦଜ୍ଞାନ ନାହିଁ ତୁମ ମନେ
ନିରାଲମ୍ବ ପୁରୁଷ ହେ ରାମ ଅଟ ତୁମେ ।

ବ୍ରହ୍ମାକାରେ ପରିଣତ ଏବେ ତୁମ୍ଭ ଚିତ୍ତ
କହିବାକୁ ଗଲେ ତୁମେ ଏବେ ଯେ ମୁକତ ।
ଜୀବନମୁକ୍ତ ପୁରୁଷ ଅଟନ୍ତି ଯେମାନ
ଏଣିକି କରିବେ ତୁମ୍ଭ ପଦାନୁସରଣ ।
ତୁମ୍ଭପରି ସମଦର୍ଶୀ ହେବ ଯେଉଁ ଜନ
ସେହି ଏକା ମୋର ଉପଦେଶକୁ ଭାଜନ ।
ଇଚ୍ଛା, ସଂକଳପ ଏବେ ତୁମେ ତ୍ୟାଗକର
କର ଆଚରଣ ରାମ ଲୋକ ବ୍ୟବହାର ।
ଅନ୍ୟ ଋଷିଏ ଯେପରି ଶାନ୍ତି ଲଭିଛନ୍ତି
ସେହିପରି ଶାନ୍ତି ଲଭ ଆହେ ରଘୁପତି ।
ଯେଉଁ ଗୁଣ, ଜାତି ଧରେ ଜୀବ ଏ ଜନମେ
ସେହି ଏକା ତାର ପାଶେ ଠିଆ ପରଜନ୍ମେ ।
ପୂର୍ବାର୍ଜିତ କର୍ମଫଳ ଜୀବ ଭୋଗୁଥାଇ
ପୁରୁଷକାର ନିସ୍କୃତ ପାରେ ତାକୁ ଦେଇ ।
ତାମସ, ରାଜସ ଅବା ମିଶ୍ର ଗୁଣାପନ୍ନ
ହୋଇ ଯେଉଁ ବ୍ୟକ୍ତି ଲାଭ କରିଥାଏ ଜନ୍ମ ।
ପୌରୁଷ ଓ ଧୈର୍ଯ୍ୟ ବଳେ ବୁଦ୍ଧିକୁ ତାହାର
ବିଷୟାଶକ୍ତିରୁ କରିପାରିବ ଉଦ୍ଧାର ।
ଶୁଦ୍ଧ ସାତ୍ତ୍ୱିକ ଜାତିରେ ହେବ ଅବସ୍ଥିତ
ଆବର ହୋଇପାରିବ ଜୀବନ ମୁକତ ।
ପୌରୁଷ ବିବେକ ବଳେ ସାଧୁଗଣ ଭବେ
ସାତ୍ତ୍ୱିକ ଜନମ ଲଭିପାରନ୍ତି ସରବେ ।
ଚିତ୍ତ ଅବିକଳ ସେହିରୂପ ଧରି ବସେ
ଚିତ୍ତ ଦର୍ପଣ ସମ୍ମୁଖେ ଯେଉଁ ବସ୍ତୁ ଆସେ ।
ପୁରୁଷାକାର ନାମରେ ଅବିହିତ ସେହି
ମୁମୁକ୍ଷୁ ପୌରୁଷ ବଳେ ଶୁଭ ଜନ୍ମ ପାଇ ।
ଏମନ୍ତ ଯେ କିଛି ନାହିଁ ଏହି ତିନିପୁରେ
ଯାହାକି ନ ହୋଇପାରେ ପଉରୁଷ ବଳେ ।
ବ୍ରହ୍ମଚର୍ଯ୍ୟ, ଧୈର୍ଯ୍ୟ, ବୀର୍ଯ୍ୟ, ବଇରାଗ୍ୟ ବିନା
ପୁରୁଷାକାର ସିଦ୍ଧିର ନାହିଁ ସମ୍ଭାବନା ।
ଆତ୍ମତତ୍ତ୍ୱ ବିଷୟକ ଯେଉଁ ଉପଦେଶ
ଦେଲି ମୁଁ ତୁମକୁ ଆଜି ଆହେ ରଘୁଈଶ ।
ଆତ୍ୟନ୍ତିକ ଦୁଃଖର ଏ ଅଟେ ଧ୍ୱଂସକାରୀ
ନିରତିଶୟ ଆନନ୍ଦ ହେତୁ ଶୁଭକାରୀ ।
ବୁଦ୍ଧି ବଳେ ଏ ତତ୍ତ୍ୱକୁ ହୃଦ ମଧ୍ୟେ ଧରି
ଶୋକ ଶାନ୍ତିର ବିଧାନ କର ରୂପଧାରୀ ।
ଏହି ଉପାୟରେ ମଧ୍ୟ ଅନ୍ୟ ବ୍ୟକ୍ତିଗଣ
ଶୋକ ମାର୍ଗରୁ ମୁକତି ଲଭିବେ ତତ୍‌କ୍ଷଣ ।
ପୁରୁଷୋଚିତ କର୍ମରେ ନିବେଶିଣ ମନ
ଜୀବନ ମୁକତ ଭାବେ କାଟ ତୁମ୍ଭ ଦିନ ।
ସଂସାର ଆସକ୍ତି ନ ଲୋଭାଉ ତୁମ୍ଭ ମନ
ଘେନ ମୋର ଆଶୀର୍ବାଦ ହେ ରଘୁନନ୍ଦନ ।
ଅସ୍ତ ଗଲେ ଦିନମଣି ହେଲା ଦିନ ଶେଷ
ଆସଇ ରଜନୀ ରାଣୀ ପିନ୍ଧି କଳାବାସ ।
ବଶିଷ୍ଠଙ୍କ ଆଜ୍ଞା ଘେନି ସଭାସଦଗଣ
ସନ୍ଧ୍ୟାକୃତ ପାଇଁ କଲେ ସ୍ୱସ୍ଥାନେ ଗମନ ।
ନିତ୍ୟକର୍ମ ସାରି ସର୍ବେ ଶଯ୍ୟାଗତ ହେଲେ
ନିଦ୍ରା ନ ଆସଇ କିନ୍ତୁ ଶ୍ରୀରାମଙ୍କ ଡୋଳେ ।
ମାତାକୁ ଚିନ୍ତା କରିଣ କରଭ ଯେସନ
ନିଦ୍ରା ନ ଆସଇ ତାର ଯୁଗଳ ନୟନ ।
ବଶିଷ୍ଠଙ୍କ ଉପଦେଶ ଘାଣ୍ଟେ ରାମ ମନ
ଶଯ୍ୟାରେ ପଡ଼ିରହିଣ ଚିନ୍ତନି ଏସନ ।
"ସଂସାର ଭ୍ରମଣ କିସ ଏହି ଜୀବଗଣ
କିମ୍ପାଇ ଏ ସଂସାରକୁ ତାଙ୍କ ଆଗମନ ?
ପୁଣି ପ୍ରତି ଆଗମନ ତାଙ୍କର କିପାଁଇ
ଏହି ମାୟାଜାଲ ପୁଣି କାହୁଁ ଜନମଇ ?
କିପରି ବା ଏ ସମସ୍ତ ହୁଏ ପ୍ରବର୍ତ୍ତିତ
କେଉଁପରି ତାହା ସବୁ ହୁଏ ନିବର୍ତ୍ତିତ ?
ମାୟା ବିନିବୃତ୍ତ ହେବା ଦୋଷଗୁଣ କାହିଁ
କିଏ ଅବା ତାହା ମୋତେ ପାରିବ ବୁଝାଇ ?
ଆକାଶ ପରି ବିଶାଳ ଯେବଣ ପରମ
ସଂକୋଚ ଭାବ ତାଙ୍କର ହୁଏ କି କାରଣ ?
ଇନ୍ଦ୍ରିୟ ବିଜୟ ମନ ନାଶ ବିଷୟରେ
ଆତ୍ମବିଜ୍ଞାନ ଲାଭରେ କେଉଁ ଫଳ ଫଳେ ?
ଏ ସବୁ ତ କିଛି ମୁହିଁ ବୁଝି ନ ପାରଇ
କି ରୂପରେ ମନ ଶାନ୍ତି ପାଇବଇ ମୁହିଁ ?
ଆତ୍ମା ଧରି ଜୀବ, ଚିତ୍ତ, ମନ, ମାୟା, ରୂପ
ଏ ସଂସାରେ ବିସ୍ତାରିତ କରିଛି ସ୍ୱରୂପ ।
କିସ ବା ମରମ ଅଟେ ଏହି ବଚନର
କିଏ ବା ଉତ୍ତର ଦେବ ଏହି ମୋ ପ୍ରଶ୍ନର ?
ମନ ତନ୍ତୁରେ ଗ୍ରଥିତ ଏସବୁ ବିଷୟ
ମନ ତନ୍ତୁ କ୍ଷୟ ଗଲେ ଦୁଃଖଯାଏ କ୍ଷୟ ।

ମନ ତନ୍ତୁର ବିନାଶେ ଏ ବ୍ୟାଧି ଚିକିତ୍ସା
ସତ କି ଅସତ ବାସ୍ତବରେ ଏହି କଥା ?
ଜଳ ମିଶା କ୍ଷୀର ମଧ୍ଯୁ ହଂସ ଯେଉଁପରି
କ୍ଷୀର ପିଇଯାଏ ଜଳ ରହିଥାଏ ପଡ଼ି ।
ମୋ ବଳ ବୁଦ୍ଧି କିପରି ଭୋଗାଭ୍ରପଟଳ
କବଳୁ ରକ୍ଷାପାଇବ ରେ ଆତ୍ମନ ମୋର ।
ଆହା କି ସଂକଟ, ବଚନରେ ନୋହି କହି
ଏବେ ମଧ ଭୋଗ ତେଜି ନ ପାରଇ ମୁହିଁ ।
ଭୋଗ ତ୍ୟାଗ ବ୍ୟତିରେକେ ବିପଦୁ ଉଦ୍ଧାର
ହେବା ପାଇଁ ପଥ ନ ଦିଶଇ ମୋ ନେତ୍ରର ।
ଏକ ପକ୍ଷେ ଦେଖୁଅଛି ଆତ୍ମ ତତ୍ତ୍ୱଜ୍ଞାନ
ପାଇବା ପାଇଁକି ଉତ୍କଣ୍ଠିତ ମୋର ମନ ।
ଅନ୍ୟ ପକ୍ଷେ ସେହି ମନ ସକଳ ବିଷୟ
ଦର୍ଶନ କାରଣ ହୋଇ କରୁଛି ଅଥୟ ।
ଅଜ୍ଞାନ ଯକ୍ଷ ଯେପରି ଶିଶୁଙ୍କୁ ଡରାଏ
ମୋ ମାନସ ଯକ୍ଷ ତଥା ମୋ ଚିତ୍ତ ଥରାଏ ।
ପରମ ଶାନ୍ତି ଲଭିବ ସତେ କି ମୋ ମନ
ସତେ କି ସଂସାର ଭ୍ରମୁ ହେବ ସେ ବିଚ୍ଛିନ୍ନ ?
ପରମ ଶାନ୍ତି ଲଭିବି କେବେ ବା ମୋ ମନ
କେବେ ବା ଲଭି ପାରିବି ମୁହିଁ ଆତ୍ମଜ୍ଞାନ ?
ଚନ୍ଦ୍ରଜ୍ୟୋସ୍ନାରୁ ଶୀତଳ ଯେ ପରମପଦ
ଜୀବନମୁକ୍ତ ହେବି କି ଲଭି ସେ ସମ୍ପଦ ?
କଳ୍ପିତ ରୂପ ସକଳ କେବେ ମୋର ମନ
ପାଶୋରି ଦେଇ ରୋଧିବ ମୋର ଉଚ୍ଚାଟନ ।
ଜଳ ତରଙ୍ଗ ସଦୃଶ ବିଭୁପାଦେ ମଜ୍ଜି
ଭାଗ୍ୟବାନ ହୋଇବି ମୁଁ ନ ପାରଇ ବୁଝି ।
ତୃଷ୍ଣା ତରଙ୍ଗ ଆକୁଳ ସଂସାର ସାଗର
ଆଶା-ମକରଙ୍କ ଯହିଁ ଲାଗିଅଛି ଖେଳ ।
କେବେ ଅବା କତଜ୍ଞର ହୋଇ କରି ମୁହିଁ
ପାର ହେବାକୁ ସକ୍ଷମ ହେବି ନ ଜାଣଇ ।
ସର୍ବଶୋକ ବିସ୍ମୃତ ମୁଁ ହେବି କେତେଦିନେ
ସମଦର୍ଶୀ ଅବା ହୋଇ ପାରିବି କେସନେ ?
କେବେ ମୁଁ ଲଭିପାରିବି ସେ ପରମପଦ
ମୁମୁକ୍ଷୁଗଣଙ୍କ ଯାହା ଶାନ୍ତିର ଆସ୍ପଦ ।
ଅଙ୍ଗ ପ୍ରତ୍ୟଙ୍ଗାଦି ମୋର ଯାର ପ୍ରତାପରେ
ସନ୍ତାପିତ ହୋଇ ସଦା ବ୍ୟଥା ଦ୍ୟନ୍ତି ମୋରେ ।
ଦୈହିକ ଧାତୁ ସକଳ ହୁଏ ଉତ୍ତେଜିତ
ସେ ସଂସାର ଜ୍ୱରୁଁ କେବେ ହୋଇବି ମୁକତ ?
ରେ ବୁଦ୍ଧି କେବେ ତୋ ବ୍ୟଥା ହୋଇବାରେ ଅସ୍ତ
ନିର୍ବାତ ପ୍ରଦୀପ ପରି ହେବୁ ତୁରେ ଶାନ୍ତ ।
କୁଚେଷ୍ଟାରେ ମୋ ଇନ୍ଦ୍ରିୟ ଦଗ୍ଧ ହେଉଛନ୍ତି
ସେ ଦୁଃଖାନଳରୁ କେହ୍ନେ ପାଇବି ମୁଁ ଶାନ୍ତି ?
ପୁତ୍ର ଧନାଦି ଅଭାବେ ମୂଢ଼ଜନ ପରି
ମୁହିଁ ଯେ ରୋଦନ କରେ ଦିବସ ଶର୍ବରୀ ।
ଆତ୍ମଭ୍ରମହିଁ ତାହାର ପ୍ରଧାନ କାରଣ
କିପରି ବା ହେବ ସେହି ଭ୍ରମ ବିନାଶନ ?
ମୋ ବୁଦ୍ଧି ତ ପାରିଜାତ ବନେ ବୁଲୁଥାଇ
ତୃଣ ତୁଲ୍ୟ ତାକୁ କେବେ ତୁଚ୍ଛ ମଣିବଇଁ ?
ବାସ୍ତବ ଯେ ଆତ୍ମପଦ କିପରି ମିଳିବ
ମୋ ଦୁଃଖ ଦୁର୍ଦ୍ଦଶା କେବେ ମେଣ୍ଟଣ ହୋଇବ ?
ବିତରାଗ ଗଣଙ୍କର ଯାହାକି ବଖାଣ
କେବେ ତୁ ଲଭିବୁ ମନ ସେହି ଦୃଷ୍ଟିକୋଣ ?
ଦୁଃଖ ଅଜଗର ଗଣଙ୍କର ଭକ୍ଷ ହୋଇ
ହାହତୋସ୍ମି ହୋଇ ଯେହ୍ନେ ନ କାନ୍ଦଇ ମୁହିଁ ।
ହେ, ବୁଦ୍ଧି-ଭଗିନୀ ମୋର, ତୋ ଚରଣ ତଳେ
ପଡ଼ି ମୁଁ ପ୍ରାର୍ଥନା କରେ ପ୍ରାଣର ବିକଳେ ।
ଭାଇର ପ୍ରାର୍ଥନା ଶୁଣି ତାର ମୋକ୍ଷ ପାଇଁ
ବଶିଷ୍ଠ ଦେବଙ୍କ ବାକ୍ୟ ଚିନ୍ତ ମନଦେଇ ।
ଭବଚ୍ଛେଦ ମୁକ୍ତିପାଇଁ ରହ ତୁ ସୁସ୍ଥିର
ନ କରତୁ ଭବଜଳେ ମୋତେ କଲବଲ ।
ବୈରାଗ୍ୟ, ମୁମୁକ୍ଷୁ ସ୍ଥିତି ଉତ୍ପତ୍ତି ପ୍ରସଙ୍ଗ
ଯାହା କହିଗଲେ ବ୍ରହ୍ମାପୁତ୍ର ମହାଭାଗ ।
ଯଥାଯଥ ସୁବିଚାର ଆବର ସ୍ମରଣ
ଜ୍ଞାନଚକ୍ଷୁ ଖୋଲିଦେବ ଆରେ ମୋର ମନ ।
ଅତିଶୟ ନିପୁଣତା ସହକାରେ ତୁହି
ଶତବାର ବିଚାରରେ ଯାହା ଲବ୍ଧ ହୋଇ
ଅବଲମ୍ବନ କରଣେ ହୁଅ ତତପର
ସୁ ପ୍ରସନ୍ନ ହୋଇ ରହିବୁ ତୁ କାଳ କାଳ ।
ସୁ ପ୍ରସନ୍ନ ନ ଲଭିଲେ ବିଚାର ନିଷ୍ଫଳ
ମତି ପ୍ରସନ୍ନତା ଜାଣ ବିଚାରର ସାର ।
ଏହିପରି ଚିନ୍ତା କରୁଛନ୍ତି ରଘୁଈଶ
ରାତି ପାହିଯାଏ ପୁଣି ଦିବସ ପ୍ରବେଶ ।

କାକ କୋକିଳଙ୍କ ସ୍ୱନ ଶୁଣି ରଘୁମଣି
ଘଣ୍ଟା କାହାଳୀ ଶବଦ ଦେବାଳୟେ ପୁଣି,
ମନେ ପଡ଼େ ସଂଭାକୁ ସେ କରିବେ ଗମନ
ଉଦ୍‌ବେଗ, ବଶତଃ, ମନ ହୁଏ ଛନ୍ନଛନ୍ନ ।
ନିତ୍ୟକୃତ୍ୟ ସାରି ରାମ ସଭାରେ ପ୍ରବେଶ
ଦେଖି ସଭାସଦଗଣ ମନରେ ହରଷ ।
ପରସ୍ପରେ ଯଥୋଚିତ ସନମାନ ଦେଇ
ଆସନରେ ଉପବିଷ୍ଟ ହେଲେ ରଘୁସାଇଁ ।

ଇତି ଶ୍ରୀ ଯୋଗବାଶିଷ୍ଟେ ସ୍ଥିତି ପ୍ରକରଣେ
ମୋକ୍ଷ ଉପାୟ ବର୍ଣ୍ଣନେ ନାମ ୫୯ଶ ସର୍ଗଃ ॥

-ସମାପ୍ତ-



ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ-ମହାରାମାୟଣ

## ଉପଶମ ପ୍ରକରଣ

---

### ପ୍ରଥମ ସର୍ଗଃ
### ଜଗତ ନିରାକରଣ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ସ୍ଥିତି ପ୍ରକରଣ କଥା କଲ ତ ଶ୍ରବଣ ।
ମନସ୍ଥିତି ଅନୁସାରେ ଜଗତର ସ୍ଥିତି
ନିଗୂଢ଼ ଭାବେ ଜଡ଼ିତ କିପରି ଅଛନ୍ତି ।
ମୁଁ ଯାହା କହିଛି ସେହି ତତ୍ତ୍ୱର ତାତ୍ପର୍ଯ୍ୟ
ମନେ ଅଛି ତ ତୁମର ଆହେ ରଘୁରାଜ ?
ତୁମ ଚେହେରାରୁ ତୁମ ଚିନ୍ତାକୁଳ ମନ
ଗତ ରାତ୍ରିଯାକ ଯାହା କରିଛ ଚିନ୍ତନ,
ସେ ସକଳ ଭଲକରି ବୁଝି ମୁଁ ପାରିଛି
ମୋ କହିବାରୁ ବୁଝିବ ଆହେ ରଘୁବଂଶୀ ।
ସ୍ଥିତି ପ୍ରକରଣେ ସବୁ କରିଛି ବର୍ଣ୍ଣନ
ଏବେ ଶୁଣ ରାମ 'ଉପଶମ ପ୍ରକରଣ' ।
ସକଳ ସଂଦେହ ତୁମ ହୋଇଯିବ ଦୂର
ଚିତ୍ତ ଚଞ୍ଚଳ୍ୟ ତୁମର ନିଶ୍ଚେ ହେବ ସ୍ଥିର ।
ଏହି ପ୍ରକରଣ ତତ୍ତ୍ୱ ଯେବେ ବୁଝିପାର
ନିର୍ବାଣ ମୁକ୍ତି ନିକଟ ହୋଇବ ତୁମର ।
ସୁଦୃଢ଼ ସ୍ତମ୍ଭ ଯେପରି ଅଟଳ ଭାବରେ
ମଣ୍ଡପକୁ ଧରି ରଖିଥାନ୍ତି ନିର୍ବିଘ୍ନରେ ।
ରାଜସ, ତାମସ, ଗୁଣାନ୍ୱିତ୍ୱ ଜୀବଗଣ
ମାୟା ସଂସାରକୁ ଧରିଥାନ୍ତି ସୁଦୃଢ଼େଣ ।
ତୁମପରି ଧୀରସ୍ଥିର ପୁରୁଷମାନେ ହିଁ
ଅନାୟାସେ ସାପ ଯଥା କାତି ଛାଡ଼ିଦେଇ,
ସଂସାର ମାୟାକୁ ଏଡ଼ି ଦେବାକୁ ସମର୍ଥ
ହୋଇଥାନ୍ତି ଜାଣ ଆହେ ରଘୁକୁଳ ନାଥ ।
ସୃଷ୍ଟି ସର୍ଜନା ପୂର୍ବରୁ କିସ ଅବା ଥିଲା
ଏ ଜଗତ ପୁଣି କେଉଁଠାରୁ ବା ଆସିଲା
ସାତ୍ତ୍ୱିକ ବା କିଞ୍ଚିତ୍ ରଜ-ମିଶ୍ରିତ ପୁରୁଷ
ତାଙ୍କ ହୃଦୟରେ ଏହି ବିଚାର ପ୍ରକାଶ ।

ଶାସ୍ତ୍ରତତ୍ତ୍ୱ, ସାଧୁସେବା ସତ୍‌କର୍ମାନୁଷ୍ଠାନ
କରି ଯାର ପାପରାଶି ହୋଇଛି ଖଣ୍ଡନ,
ସାରବସ୍ତୁ ଗ୍ରହଣରେ ସେମାନଙ୍କ ବୁଦ୍ଧି
କ୍ଷିପ୍ରତର ହୋଇଥାଏ ଆହେ ରଘୁନିଧି ।
ଶାସ୍ତ୍ରପାଠ ହିଁ କେବଳ ନୁହଇ ଯଥେଷ୍ଟ
ନ ଲଭିଲେ ଶାସ୍ତ୍ରଜ୍ଞାନ ହୋଇ ଏକଚିତ୍ତ,
ପ୍ରତିଭାତ ନୋହିଥାଏ ଯା ପ୍ରକୃତ ତତ୍ତ୍ୱ
ସମ୍ଭବପର ନୁହଇ ଜ୍ଞାନୋଦୟ ଚିତ୍ତ ।
କ୍ଷତ୍ରିୟ ସ୍ୱଭାବେ ସତ୍ତ୍ୱ, ରଜ ଗୁଣାନ୍ୱିତ
ତନ୍ମଧ୍ୟେ ଯେ ପ୍ରାଜ୍ଞ, ଧୀର ସତ୍‌କୁଳ ସମ୍ଭୂତ ।
ସେହି କ୍ଷତ୍ରିୟୋତ୍ତମଙ୍କ ମଧ୍ୟରେ ହେ ରାମ
ମୋ ମତରେ ତୁମେ ଅଟ ଶ୍ରେଷ୍ଠ, ଅଗ୍ରଗଣ୍ୟ ।
ତେଣୁ ଦୂରଧୀଗମ୍ୟ ଯେ ଆତ୍ମତତ୍ତ୍ୱଜ୍ଞାନ
ତହିଁ ଅଧିକାରୀ ଅଟ ତୁମେ ହେ ଶ୍ରୀରାମ ।
ନିଜ ପ୍ରଜ୍ଞାବଳେ କିସ ସତ୍ୟ ବା ଅସତ୍ୟ
ସ୍ଥିର କରି ବୁଝିରଖ ଆହେ ରଘୁନାଥ ।
ପୂର୍ବେ ଯା ନ ଥିଲା, ଅବା ପରେ ଯା ନୋହିବ
କିପରି ତାହାକୁ ସତ୍ୟ ବୋଲିଣ ମଣିବ ?
ଯାହା ସତ୍ୟ ତାହା ଅଟେ ତିନିକାଳେ ସତ୍ୟ
ଅତୀତ ବା ବର୍ତ୍ତମାନ ଅବା ଭବିଷ୍ୟତ ।
ସତରେ ଅସତ କେଉଁ ସମ୍ଭବ ନୁହଇ
ଅନ୍ଧାର/ଆଲୋକ ଏକତ୍ରିତ କେଉଁ ନୋହି ।
ପୂର୍ବେ ବା ଶେଷେ ଅସ୍ତିତ୍ୱ ଯାହାର ନଥାଇ
କ୍ଷଣକ ପାଇଁ କି ଯାହା ପ୍ରତୀତ ହୁଅଇ,
ଯେଉଁମାନେ ଅନୁରକ୍ତ ଥାନ୍ତି ସେ ବସ୍ତୁରେ
ବିବେକ କି କେବେ ତାଙ୍କ ହୃଦେ ଉଇଁପାରେ ?
ମନହିଁ ଜନମେ, ମନ ଆପେ କ୍ଷୟ ଯାଏ
ମନହିଁ ଏହି ସଂସାରେ କ୍ଷୟ ବୃଦ୍ଧି ପାଏ ।
ମୁକ୍ତି କହିଲେ କେବଳ ମନର ମୁକତି
ହୋଇଥାଏ ବୋଲି ଜାଣ ଆହେ ରଘୁପତି ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଜଗତ ନିରାକରଣ ବର୍ଣ୍ଣନେ**
**ନାମ ୧ମ ସର୍ଗଃ ।**



## ୨ୟ ସର୍ଗଃ

## ପ୍ରଥମ ଉପଦେଶ

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣ ହେ ବ୍ରହ୍ମନ
ମନହିଁ ତିନି ଭୁବନେ କରେ ସଂଚରଣ ।
ଜରା ମରଣ କେବଳ ମନର ବ୍ୟାପାର
ଭଲ କରି ବୁଝିଛି ମୁଁ ଆହେ ତପୀବର ।
ଏହି ମନର ଶକତି ଅଥବା ବନ୍ଧନ
କିପରି ଘଟୁଥାଏ ତା କହ ତପୋଧନ ।
ରଘୁବଂଶ ନୃପତିଙ୍କ ହୃଦୟ ଅନ୍ଧାର
ଦୂରୀକରଣ କେବଳ ଆପଣ ଭାସ୍କର ।
ବଶିଷ୍ଠ କହନ୍ତି ଆଗ ଶାସ୍ତ୍ର ଅନୁଧ୍ୟାନ
ବଇରାଗ୍ୟ ସାଧୁସଙ୍ଗ କରିବ ସାଧନ ।
ଚିତ୍ତ ପବିତ୍ରତା ଆସିଯିବ ତାହା ବଳେ
ପବିତ୍ର ଚିତ୍ତହିଁ ସର୍ବ ସାଧ କରିପାରେ ।
ସରଳ ଚିତ୍ତ ହୋଇଣ ବୈରାଗ୍ୟ ଲଭିଲେ
ତତ୍ତ୍ୱଜ୍ଞ ଗୁରୁ ଆଶ୍ରୟ ନେବ ତତପରେ ।
ଗୁରୁ ଉପଦେଶ ଲାଭ କରିବା ଉତ୍ତାରେ
ଧ୍ୟାନ, ଧାରଣା, ପୂଜାଦି କର୍ମ ଆଚରିଲେ,
କ୍ରମେ କ୍ରମେ ବ୍ରହ୍ମପଦ ଲଭିପାରେ ନର
ହୃଦେ ଧରି ଏ ବିଶ୍ୱାସ ଚଳ ରଘୁବୀର ।
ବିଚାର ବଳେ ଅନ୍ତର ପରିଶୁଦ୍ଧ ହେଲେ
ଆତ୍ମାର ଯଥାର୍ଥ ରୂପ ଆତ୍ମାରେ ହିଁ ମିଳେ ।
ଯେତେଦିନ ଯାଏ ଜୀବ ଚିତ୍ତ ସାହାଯ୍ୟରେ
ବିଚାର ତଟିନୀ ତଟେ ପହଞ୍ଚି ନ ପାରେ,
ତେତେଦିନ ପର୍ଯ୍ୟନ୍ତ ଏ ସଂସାର ସାଗରେ
ତୃଣପରି ଭାସମାନ ରହେ ସଦାବେଳେ ।
ବିଚାରବଳେ ବୁଦ୍ଧିର ସ୍ଥିରତା ଆସିଲେ
ମନ ପୀଡ଼ା ଉପଶମ ଘଟିଥାଏ ହେଲେ ।
ଭସ୍ମାଚ୍ଛାଦିତ ସ୍ୱର୍ଣ୍ଣକୁ ଲୋକ ସାଧାରଣ
ସ୍ୱର୍ଣ୍ଣ ବୋଲି ଚିହ୍ନିବାକୁ ହୁଅନ୍ତି ଅକ୍ଷମ ।
ସ୍ୱର୍ଣ୍ଣକାର ସ୍ୱର୍ଣ୍ଣ ବୋଲି ତାକୁ ଚିହ୍ନିପାରେ
"ଆତ୍ମା ଅବିନାଶୀ" ସୁବିଚାରୀ ଜାଣେ ହେଲେ ।

ସଂସାର ମୋହ ତାହାର ଅତି ସହଜରେ
ଦୂରୀଭୂତ ହୋଇଯାଏ ତେଣୁ ରଘୁବୀରେ ।
ଯେଉଁ ସାର ପଦାର୍ଥକୁ ଜାଣି ନ ପାରିଣ
ଏ ଦୁଃଖ ସଂସାରେ ମୋହଗ୍ରସ୍ତ ହୁଏ ମନ ।
ସେହି ବସ୍ତୁ ଯେବେ ଉପଲବ୍ଧ ହୋଇପାରେ
ଅପାର୍ଥିବ ସୁଖ ହସ୍ତଗତ ହୁଏ ହେଳେ ।
ଆହେ ଜୀବଗଣ ଯାହା କହୁଛି ମୁଁ ଶୁଣ
ସର୍ବାଧିକ ଦୁଃଖର ଯେ ଏକଇ କାରଣ ।
ତାହା ଅଟେ ଏ ଆତ୍ମାକୁ ଜାଣି ନ ପାରିବା
କେତେଦିନ ବସିଥିବ ହୋଇକରି କାବା ?
ନିତ୍ୟ ଶାନ୍ତି, ଚିର ସୁଖ ଅବଶ୍ୟ ଲଭିବ
ଆତ୍ମାକୁ ଯଦ୍ୟପି ତୁମେ ଦର୍ଶନ କରିବ ।
ଆବୋରି ରଖିଛି ଦେହ ଆତ୍ମାକୁ ତୁମର
ଦେହାଧୀନ ହୋଇ ଆତ୍ମା ଭୋଗୁଛି ସଂସାର ।
ସୁବିଚାର ବଳେ ତୁମ୍ଭେ ଆତ୍ମାକୁ ତୁମ୍ଭର
ଦେହାଧୀନ କାରାଗାରୁ ପରିତ୍ରାଣ କର ।
ଏପରି ମୁକତି ଯେବେ ପାଇବଟି ସେହି
ବିକଶିତ ହେବ ସ୍ୱୀୟ ସ୍ୱଭାବ ଦେଖାଇ ।
କଳ୍ପନାମୂଳକ ସର୍ବ କଷଣ ତୁମର
ଅବସାନ ହୋଇଯିବ, ଏକଥା ବିଚାର ।
ଆତ୍ମା ସ୍ୱୟଂ ଜ୍ଞାନରୂପୀ ଆତ୍ମା ଯେ ବିଶୁଦ୍ଧ
କି କାର୍ଯ୍ୟ ତାର ଏ ଦେହେ ଯାହା ଅବିଶୁଦ୍ଧ ।
ପଙ୍କବୋଳା ସୁନା ଦେଖି ସୁନାର ମାଳିନ୍ୟ
ପଙ୍କ ବୋଲି କହିଥାନ୍ତି ଦରଶକଗଣ ।
ଦେହ ସହ କଳପିତ ସମ୍ବନ୍ଧର ପାଇଁ
ଆତ୍ମାଠାରେ ଦେହଭାବ କଳପିତ ହୋଇ ।
ଜଳେ ଥାଇ ପଦ୍ମପତ୍ର ଜଳେ ଲିପ୍ତ ନୋହି
ଶରୀର ବିକାରେ ଆତ୍ମା ଜଡ଼ିତ ନୁହଇ ।
ଶରୀର ଜଡ଼ିତ ଜୀବ ଆତ୍ମାଠାରୁ ଭିନ୍ନ
ଊର୍ଦ୍ଧ୍ୱବାହୁ ହୋଇଣ ମୁଁ କରେ ଉଚ୍ଚାରଣ,
କିନ୍ତୁ ସଂସାର ମୋହରେ ତୁମେ ଅନ୍ଧ ହୋଇ
ତାହା ମାନିବାକୁ ତୁମ ଇଚ୍ଛା ନ ବଳଇ ।
ଆତ୍ମ ବିଚାରେ ବିମୁଖ ଥିବାଯାଏ ଚିତ୍ତ
ପ୍ରବୃତ୍ତି ମାର୍ଗରେ ରତ ଥିବା ଯେ ପର୍ଯ୍ୟନ୍ତ ।
ଶତ ଶତ ଚନ୍ଦ୍ର ପୁଣି ଦ୍ୱାଦଶ ଆଦିତ୍ୟ
ତା ଅନ୍ଧାର (ଅଜ୍ଞାନ) ନାଶିବାକୁ ନୋହିବେ ସମର୍ଥ ।

ହୃଦାକାଶେ ବୋଧଜ୍ଞାନ ହୁଅନ୍ତେ ଉଦିତ
ହୃଦୟାନ୍ଧାକାର ତାର ହେବ ବିଦୂରୀତ ।
ଆତ୍ମା-ଦେହ-ମୋହ-ନିଦ୍ରା ଭାଙ୍ଗିବା ପର୍ଯ୍ୟନ୍ତ
ସୁପ୍ତ ଅନ୍ତଃକରଣକୁ କରିବ ସଚେତ,
ସୁଜ୍ଞାନ ବ୍ୟତୀତ ଏହି ସଂସାର ଯାତନା
ଶାନ୍ତ ହୋଇ ନ ପାରିବ ରାମ ମହାମନା ।
ଧୂଳି ପଟଳ ଦ୍ୱାରା ଏ ଯେସନ ଗଗନ
ବିଜଡ଼ିତ ନୋହିଥାଏ ହେ ରଘୁନନ୍ଦନ ।
ଶରୀର ସମ୍ବନ୍ଧ ନେଇ ଆତ୍ମାରେ ତେସନ
କୌଣସି ବିକାର ନୋହିଥାଏ ଉତପନ୍ନ ।
ଜଡ଼ ଶରୀର ସହିତ ସଂପୃକ୍ତ ହୋଇଣ
ଜଡ଼ ଧର୍ମାକ୍ରାନ୍ତ କେଭେଁ ନୁହଇ ଆତ୍ମନ ।
ଆତ୍ମାରେ ସୁଖ ଦୁଃଖାଦି ଅନୁଭୂତ ହୁଏ
ଏହି ରୂପ ଜ୍ଞାନ ମିଥ୍ୟା ଜାଣ ରଘୁରାଏ ।
ନିତ୍ୟ ନିର୍ଲିପ୍ତ ଅସଙ୍ଗଯେଣୁ ଅଟେ ଆତ୍ମା
ଦେହ ଧର୍ମେ ବିଜଡ଼ିତ ନୁହେ ସତ କଥା ।
ଆତ୍ମା ଦୁଃଖ ସୁଖ ଭୋଗେ କହେ ଅପଣ୍ଡିତ
ଅଜ୍ଞାନ ନାଶେ ଏ ଭାବ ରହିବ କେମନ୍ତ ?
ଅଜ୍ଞାନବଶତ କଳପିତ ସୁଖ ଦୁଃଖ
ତାହାର ସ୍ୱରୂପ ଧର୍ମ ନୁହେଁ ମନେରଖ ।
ତେଣୁ ଯା ଜଗତରେ କରୁଛ ଦର୍ଶନ
ସେ ସମସ୍ତ ବ୍ରହ୍ମ ବୋଲି ହୃଦେ କର ଜ୍ଞାନ ।
ଜଳର ତରଙ୍ଗ ଜଳଠାରୁ ନୁହେଁ ଭିନ୍ନ
ଆତ୍ମାଠାରୁ ଏ ଜଗତ ତେସନ ଅଭିନ୍ନ ।
ଉଜ୍ଜ୍ୱଳ ମଣି ଯେସନ ରହି ଅବିକୃତ
ନିଜ ଆଲୋକେ ଅନ୍ୟକୁ କରେ ପ୍ରକାଶିତ ।
ଜ୍ଞାନ ସ୍ୱରୂପ ଆତ୍ମାହିଁ ସେହିପରି ନିଜେ
ଅବିକୃତ ରହି ଏହି ଜଗତ ସରଜେ ।
ଆତ୍ମା ଜଗତ ଯେ ଏକ କହି ହେବନାହିଁ
ଆତ୍ମା ଜଗତ ଯେ ଭିନ୍ନ କହି ନ ଯୋଗାଇ ।
ଆତ୍ମାର ଆଭାସ ମାତ୍ର ଅଟେ ଏ ଜଗତ
ପରମାର୍ଥ କହେ ସତ୍ତାହୀନ ଏ ଜଗତ ।
ପରମାତ୍ମାହିଁ ସ୍ୱକୀୟ ଶକତି ବଳରେ
ପ୍ରକାଶ ପାଉଅଛନ୍ତି ଜଗତ ଆକାରେ ।
ତେଣୁ ତୁମେ ଯାହା କିଛି ଦେଖୁଛ ଶ୍ରୀରାମ
ଅନ୍ୟ କିଛି ନୁହେ ଯାହା ବ୍ରହ୍ମଠାରୁ ଭିନ୍ନ ।

'ମୁହିଁ ଏକ' ମୋହଠାରୁ ପୃଥକ ଜଗତ
ଅଜ୍ଞାନ ଅନ୍ଧମାନଙ୍କ ଏହା ଭ୍ରମ ମତ ।
ସମୁଦ୍ର ତରଙ୍ଗ ଯଥା ନୁହନ୍ତି ଅଭିନ୍ନ
ବ୍ରହ୍ମରୁ ଜନ୍ମ ଜଗତ ସ୍ୱତନ୍ତ୍ର କେସନ ?
ଆଉ ମଧ୍ୟ ସର୍ବରୂପୀ ବ୍ରହ୍ମଙ୍କ ସହିତ
ତତ୍‌ସମ୍ଭୂତ ଅନ୍ୟ ବସ୍ତୁ ସମ କେଉଁ ମତ ?
ବହ୍ନିରେ ସମ୍ଭବ ନୁହେ ଜଳ କଳପନା
ନିଜ ମଧ୍ୟେ ନିଜେ କରେ ନିଜ ସରଜନା ।
ନିଜେ ନିଜ ସରଜନା ଦୃଶ୍ୟ ରୂପ ଦେଖି
ପରଂବ୍ରହ୍ମ ବିରାଜନ୍ତି ହୋଇ ସର୍ବସାକ୍ଷୀ ।
ଏ ଆତ୍ମା ଅଟଇ ଅଜ ଏ ଆତ୍ମା ଅମର
ଶୋକ ଅବା ଦୁଃଖ କିଛି ନାହିଁ ଆତ୍ମାଠାର ।
ଯଥାର୍ଥ ବୋଲି ଯାହାକି ଅଛି ଏ ଜଗତେ
କେବେହେଲେ ବିନାଶ ତା ନାହିଁ ରଘୁପତେ ।
ବିନଷ୍ଟ କେବଳ ସେହି ଯା ଅଟେ କଳ୍ପିତ
ନିରାଟ ସତ୍ୟ ଏହା ହିଁ ଜାଣ ରଘୁନାଥ ।
ନିତ୍ୟ ସତ୍ତ୍ୱସ୍ଥ ଏ ଆତ୍ମା ସୁଖ ଦୁଃଖ ହୀନ
ତାହାର ଅପ୍ରାପ୍ତି ବୋଲି କିଛି ନାହିଁ ଜାଣ ।
ଆତ୍ମାରେ ଯା କିଛି ଅଛି ତାହା ଧ୍ୱଂସହୀନ
ତେଣୁ ଏ ଆତ୍ମା ଅଦ୍ୱୟ ପୁଣି ଶୋକଶୂନ୍ୟ ।
ଏହି କଥା ମନେରଖି ଚଳିବ ଶ୍ରୀରାମ
ସଂସାର ବ୍ୟାଧି ତୁମକୁ ନ ବାଧେ ଯେସନ ।
ସର୍ବଭୂତେ ସମଦର୍ଶୀ ସ୍ଥିର ବୁଦ୍ଧି ହୋଇ
ଅନ୍ତଃ ଦୁଖ ଦୂରକର ଆହେ ରଘୁସାଇଁ ।
ନିର୍ଜନବାସୀ, ସଙ୍କଳ୍ପ ରହିତ ହୋଇବ
ଆବର ବିଜିତ ବୁଦ୍ଧି, ଧୀରମତି ହେବ ।
ଯାହା ମିଳିବ ତହିଁରେ ସନ୍ତୁଷ୍ଟ ରହିବ
ଅଭାବ ଧାରଣା କେଉଁ ମନେ ନ ଆଣିବ ।
ବିଗତ ଶ୍ରମ, ନିଷ୍ପାପ, ଅନାଶକ୍ତ ରହ
ବିଶୁଦ୍ଧ ଚିତ୍ତରେ ତେଜ ହେୟ-ଉପାଦେୟ
ତେବେ ସଂସାର ବ୍ୟାଧିରୁ ଲଭିବ ମୁକତି
ଏହି ଉପଦେଶ ମୋର ଅହେ ରଘୁପତି ।
ଜଗତ ଅତୀତ ବ୍ରହ୍ମପଦ ଲାଭପାଇଁ
ପରପୂର୍ଣ୍ଣ ଅଇଶ୍ୱର୍ଯ୍ୟ ସମନ୍ୱିତ ହୋଇ
ସାଗର ସମ ଅକ୍ଷୁବ୍ଧ ଭାବ ହୃଦେ ଧରି
ସଂସାର ବ୍ୟାଧି ବିମୁକ୍ତ ହୁଅ ଋପଧାରୀ ।

ବିକଳ୍ପ ଭାବ ମୁକତ ମାୟା ବିବର୍ଜିତ
ହୋଇ ଆତ୍ମଲାଭେ ତୋଷ ଲଭ ରଘୁନାଥ ।
ଅପାର ଅନନ୍ତ ପରମାତ୍ମାଙ୍କ ସ୍ୱରୂପ
ନିରୂପଣ କରି ଲଭ ତଦୀୟ ସାରୂପ୍ୟ ।
ପରବତ ରୂପେ ସ୍ଥିର ଭାବେ ରହିକରି
ସଂସାର ଜ୍ୱରରୁ ମୁକ୍ତି ଲଭ ଋପଧାରୀ ।
ନିଜ ଜଳେ ନିଜେ ପୂର୍ଣ୍ଣ ରହଇ ସାଗର
ପ୍ରତ୍ୟାଶା ନ ରଖି ଅନ୍ୟ ଜଳର ଉପର ।
ତୁମେ ମଧ୍ୟ ଆତ୍ମାରେ ପୂର୍ଣ୍ଣତା ଲାଭ କରି
ଆହ୍ଲାଦ ଲଭ କଳଙ୍କହୀନ ଚନ୍ଦ୍ରପରି ।
ଯାହାକି ଦେଖୁଛ ଏହି ପ୍ରପଞ୍ଚ ଜଗତ
ଏକବାରେ ମିଥ୍ୟା ଏହା ଜାଣ ରଘୁନାଥ ।
ଆତ୍ମାକୁ ଜାଣିପାରିଛି ଯେବଣ ମାନବ
ଅନୁବର୍ତ୍ତନ ଏହାର କେଉଁ ନ କରିବ ।
ତୁମେ ମଧ୍ୟ ଆତ୍ମ ତତ୍ତ୍ୱ ଜାଣିଛ ଶ୍ରୀରାମ
ତୁମ ନିକଟରେ ଏହା ଅସତ୍ୟ ଜାଣିମ ।
ଯେଣୁ ତୁମେ ରାମ ଅଟ ନିତ୍ୟ ନିରାମୟ
ସ୍ଥିର ଭାବେ ଏହା ଜାଣି ଶୋକମୁକ୍ତ ହୁଅ ।
ସମଦରଶନ ସହ ପିତୃରାଜ୍ୟ ପାଳ
ତୁମ ଗୁଣେ ମୁଗ୍ଧଛନ୍ତି ଅନ୍ୟ ରାଜକୁଳ ।
ରାଜ୍ୟ ପରିତ୍ୟାଗ ଅବା ରାଜ୍ୟରେ ଆସକ୍ତି
ଉଚିତ ନୁହେ-ତୁମର ଆହେ ରଘୁପତି ।
ପ୍ରଜାର ମଙ୍ଗଳପାଇଁ ଅନାସକ୍ତ ରହି
ରାଜ୍ୟ ପାଳନ କର ହେ ରଘୁଙ୍କ ତନୟି ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ପ୍ରଥମ ଉପଦେଶ ବର୍ଣ୍ଣନେ**
**ନାମ ୨ୟ ସର୍ଗଃ ।**

□



## ୩ୟ ସର୍ଗଃ

### ମୁକ୍ତିକ୍ରମ ଉପଦେଶ

କହନ୍ତି ବଶିଷ୍ଠ ଏବେ ଶୁଣ ଆହେ ରାମ
ଫଳାକାଂକ୍ଷା ତେଜିକରି ଯେବଣ ସଜ୍ଜନ
କର୍ମ ସମ୍ପାଦନ ପାଇଁ ହୁଅଇ ସକ୍ଷମ
ମୋ ମତରେ ମୁକ୍ତ ଅଟେ ସେହି ଭାଗ୍ୟବାନ ।
ମୋହ ବଶରୁ ମାନବ ଅଭିମାନୀ ହୋଇ
ଶୁଭ ଅଶୁଭ କରମ ଆଚରିଣ ଥାଇ ।

ଫଳରେ ଭୋଗ କରଇ ସ୍ୱର୍ଗ ବା ନରକ
ଅଶୁଭ କର୍ମରୁ ଜନ୍ମେ ଯୋନିରେ ତୀର୍ଯ୍ୟକ ।
ବୃକ୍ଷରୂପ ଧରି ପରେ ଲଭଇ ଜନମ
ଶୁଭକର୍ମେ ଛିଡ଼େ କା'ର ସଂସାର ବନ୍ଧନ ।
ବିଚାର ବଳରୁ ଦିବ୍ୟ ଦୃଷ୍ଟି ଲାଭକରି
ବ୍ରହ୍ମପଦ ଲାଭ କରେ କେବଣ ଶରୀରୀ ।
ସାତ୍ତ୍ୱିକ, ରାଜସ ଜୀବ କେତେ ଜନ୍ମ ପରେ
ଜନ୍ମ ପାଇ ଚନ୍ଦ୍ର ପରି ବୃଦ୍ଧି ଲାଭ କରେ ।
ସର୍ବଦା ସୌଭାଗ୍ୟ ତାର ପଛେ ଧାବମାନ
ସର୍ବବିଧ ବିଦ୍ୟା ତାର ହୃଦେ ବର୍ଦ୍ଧମାନ ।
ଆର୍ଯ୍ୟଜନୋଚିତ ତାର ସ୍ୱଭାବ ବଳରେ
ମୈତ୍ରୀ, ଦୟା ଗୁଣମାନ ତାହାର ଆଶ୍ରାରେ ।
ଏପରି ଲୋକର କର୍ମ ସଫଳ ବିଫଳ
ଚଳିତ ନ କରେ ତାକୁ ତାର ଶେଷ ଫଳ
ଶୋକ ବା ହରଷ ତାକୁ ଜଣାଯାଏ ନାହିଁ
ସମଭାବ ହେତୁ ତାର ମନ ଶାନ୍ତି ପାଇ ।
ମୃଗଗଣ ମୁଗ୍ଧ ଯଥା ଶୁଣି ବଂଶୀସ୍ୱନ
ନର ମୁଗ୍ଧ ହୁଏ ଦେଖି ସଦାଚାରବାନ ।
ବକଶ୍ରେଣୀ ଅନୁସାରେ ଯଥା ମେଘମାଳ
ସଦଗୁଣ ଅନୁସାରେ ମୁମୁକ୍ଷୁ ଯେ ନର ।
ଯଥାକାଳେ ସେହି ବ୍ୟକ୍ତି ସଦ୍‌ଗୁରୁ ଲଭଇ
ବସ୍ତୁ ବିବେକ ସୁଜ୍ଞାନ ତାଙ୍କଠାରୁ ପାଇ ।
ବିଚାର ବୈରାଗ୍ୟ ବଳେ ସେହି ଯେ ସଜ୍ଜନ
ଅନାମୟ ଆତ୍ମଦେବ କରଇ ଦର୍ଶନ ।
ଆତ୍ମବୋଧ ଲାଭ ହେବା ପୂର୍ବରୁ ସେ ଜନ
ଗୁରୁ ଉପଦେଶ ପ୍ରତି ହୁଏ ଯତ୍ନବାନ ।
ଅଜ୍ଞାନ ନିଦ୍ରାରେ ସୁପ୍ତ ତାହାର ଯେ ମନ
ବିଚାର ବଳରେ ହୋଇଥାଏ ଜାଗରଣ ।
ସାତ୍ତ୍ୱିକ ଓ ରାଜସିକ ପ୍ରକୃତି ସମ୍ପନ୍ନ
ଏହିପରି ଗୁଣାନ୍ୱିତ ଯେ ମହାତ୍ମାମାନ,
ସଦଗୁରୁ ସେବା ଆଉ ବିଚାର ବଳରେ
ଆତ୍ମା ଚିହ୍ନି ନିମଜ୍ଜନ୍ତି ପରମ ଗତିରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ମୁକ୍ତିକ୍ରମ ଉପଦେଶ ବର୍ଣ୍ଣନେ ନାମ ୩ୟ ସର୍ଗଃ ।**



## ୪ର୍ଥ ସର୍ଗଃ

## ସିଦ୍ଧ ଗୀତା

ବୋଇଲେ ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ମୁକ୍ତି ସାଧାରଣ କ୍ରମ କଲଇଁ ବର୍ଣ୍ଣନ ।
ସେ ବିଷୟେ ଯାହା କିଛି ଅଧିକ ଅଛଇ
ତାହା ତୁମ୍ଭଙ୍କୁ କହୁଛି ଶୁଣ ରଘୁସାଇଁ ।
ଗୁରୁଠାରୁ ଉପଦେଶ ଲାଭ କରିସାରି
ତଦନୁସାରେ ସାଧନା କେତେକାଳ କରି
ଇହ ଜନ୍ମେ ଅବା କେତେ ପରଜନ୍ମ ପରେ
ମୁକତି ଲଭି ଥାଆନ୍ତି ଏ ସଂସାରେ ନରେ ।
ପ୍ରଥମକ୍ରମ ନାମରେ ତାହାହିଁ ବିଦିତ
ଏବେ ଶୁଣିବା ଦ୍ୱିତୀୟ କ୍ରମର ବୃତ୍ତାନ୍ତ ।
କେତେ କେତେ ଭାଗ୍ୟବାନ ବ୍ୟକ୍ତିଙ୍କ ଭାଗ୍ୟରେ
ଆକାଶୁ ପଡ଼ିଲା ପରି ଫଳ ଖସିପଡ଼େ ।
ବିନା ଗୁରୁ ଉପଦେଶେ ଆତ୍ମାଜ୍ଞାନ ହୋଇ
ମୁକତି ପଥ ତାଙ୍କର ସୁଗମ ଅଟଇ ।
ପ୍ରାଚୀନ ଗଳ୍ପ ଗୋଟିଏ ଏ ବିଷୟେ ଅଛି
ଶୁଣି ସମସ୍ତ ବୁଝିବ ଆହେ ରଘୁବଂଶି ।
ବିଦେହ ରାଜ୍ୟରେ ଥିଲେ ଏକଇ ରାଜନ
ଜନକ ନାମ ତାଙ୍କର ଥିଲା ରଘୁରାଣ ।
ଉଦାରଚେତା ସେ ପୁଣି ନିଜ ପୁଣ୍ୟ ବଳେ
ଆପଦ ବିପଦୁ ମୁକ୍ତି ପାଇଥାନ୍ତି ହେଳେ ।
ମନ ବିନୋଦନ ପାଇଁ ଦିନେକ ରାଜନ
ପହଞ୍ଚିଲେ ଯାଇ ଏକ ବନ ଉପବନ ।
ଅନୁଚରବର୍ଗଙ୍କୁ ଯେ ଦୂରେ ରଖିଦେଇ
କୁଞ୍ଜ ମଧ୍ୟେ ବିହରନ୍ତି ସଙ୍ଗେ କେହି ନାହିଁ ।
କୁଞ୍ଜ ମଧ୍ୟେ ଏକ ସ୍ଥାନେ ଉପବିଷ୍ଟ ହୋଇ
ଫୁଲରତୁ ସୌନ୍ଦର୍ଯ୍ୟରେ ମନ ତାଙ୍କ ମୋହି ।
ହଠାତ୍ ଶୁଣନ୍ତି ରାଜା ସୁମଧୁର ଗାନ
ଦୂରେ ଥାଇ ଗାନ କରୁଥିଲେ ସିଦ୍ଧଗଣ ।
ସେ ଗୀତ ଶୁଣିଲେ ମନେ ପରମାତ୍ମା ଚିନ୍ତା
ସ୍ୱତଃ ଜାତ ହୋଇଥାଏ ଆହେ ଧନୁହସ୍ତା ।
ସେହି ଗୀତ ଏହିପରି ଶୁଣ ରଘୁନାଥ
ଯାହା ଶୁଣିକରି ଚିତ୍ତ ହେବ ପ୍ରଫୁଲ୍ଲିତା ।

ବିଷୟର, ଇନ୍ଦ୍ରିୟର ହୋଇଲେ ମିଳନ
ଆନନ୍ଦ ସାଗରେ ସଦା ଭାସେ ଯେଉଁ ଜନ ।
ଅଥଚ ନିରୀହ ସଦାରୂପ ବିବର୍ଜିତ
ସେଇ ମୋର ଆତ୍ମା ତାକୁ ପ୍ରଣମି ସତତ ।
କାମନା କରିଣ ଯାର ଜଗତ କଳ୍ପନା
ଦ୍ରଷ୍ଟା, ଦୃଶ୍ୟ, ଦର୍ଶନରେ ନିଜର ଭାବନା ।
ଦୃଶ୍ୟାଦିର ଅନ୍ତରେ ଯେ ସଦା ବିରାଜିତ
ସେଇ ପରମାତ୍ମା ଦେବେ ପ୍ରଣାମ ସତତ ।
ଯହିଁରେ ସଂସାର, ପୁଣି ସଂସାର ଯାହାର
ସଂସାର ଯାଠାରୁ ଜାତ, ଯେ ନିଜେ ସଂସାର,
ଯାହାପାଇଁ ଏ ସଂସାର, ରଖେ ଯେଉଁ ଜନ
ସେ ସତ୍ୟ ଆତ୍ମାକୁ ମୋର ନିତ୍ୟ ଉପାସନ ।
"ମୁହିଁ ସେହି" ବେଦାନ୍ତରେ ଯାହାର ବର୍ଣ୍ଣନ
ଅନନ୍ତ ପ୍ରକାରେ ଯେହୁ ପୂଜ୍ୟ ସର୍ବଜନ ।
ମାୟାବଳେ ବହୁ ହୋଇ ଯେହୁ ଲୀଳାକରେ
ସେ ଦେବଙ୍କୁ ନମସ୍କାର କରେ ମୁଁ ଅନ୍ତରେ ।
ଏଇ ସେହି ଅନ୍ତର୍ଯ୍ୟାମୀ ଛାଡ଼ି ଯେଉଁ ଜନ
ପରଜ୍ଞାନେ, ଦେବଗଣେ କରେ ଉପାସନ ।
ହସ୍ତଗତ କୌସ୍ତୁଭକୁ ସେ ଜନ ତେଜିଣ
ତୁଚ୍ଛ ରତ୍ନ ବାସନାରେ ମରଇ ଭ୍ରମିଣ ।
ବିଷୟରେ ସୁଖ ନାହିଁ ଜାଣିଣ ଯେ ଜନ
ପୁନଶ୍ଚ ବିଷୟଲାଭେ କରଇ ଯତନ ।
ସେ ଜନ ମନୁଷ୍ୟ ନୁହେ, ନରାକୃତି ପଶୁ
ନରକ ବିବରେ ବାସ କରିବ ସେ ଆଶୁ ।
ଅତଏବ ଆତ୍ମାଦେବେ କରିବ ଭାବନା
ତହିଁରେ ନିବୃତ୍ତ ହେବ ସଂସାର ଯାତନା
ସେହି ତ ସବୁରି ହୃଦେ ଅଛନ୍ତି ସତତ
ତାଙ୍କୁ ଭାବି ନିରବଧି ସୁଖେ ହୁଅ ସ୍ଥିତ ।
ସିଦ୍ଧଗଣଙ୍କ ଗାୟନ ଉପରୋକ୍ତ ଗାଥା
ଶୁଣି ରାଜା ଜନକଙ୍କ ମନେ ଲାଗେ ବ୍ୟଥା ।
ପରିଜନଙ୍କ ସହିତ ଗୃହେ ଫେରିଆସି
ନିର୍ଜ୍ଜନ ସ୍ଥାନରେ ରାଜା ଯାଇକରି ବସି ।
ସଂସାର ଗତି ବିଷୟ ଚିନ୍ତା କରି କରି
ଆକ୍ଷେପ କରନ୍ତି ବସି ସେ ରାଜ କେଶରୀ ।
ହାୟ କି କଷଣ ! ସହିପାରେ କା ଅନ୍ତର ?
ପଥର ମାଡ଼ି ସହୁଚି ନ ହୋଇ କାତର ।
ସଂସାର-କୂପରେ ମୁହିଁ ନିପତୀତ ହୋଇ
ଅକାରଣେ ନିରନ୍ତର ଲୁଣ୍ଠିତ ହୁଅଇ ।
ଅସୀମ କାଳ ମଧ୍ୟରେ କ୍ଷଣକାଳ ପାଇଁ
ବଂଚିବି ମୁଁ ହତଭାଗ୍ୟ ବୁଝି ନ ପାରଇ ।
ସେହି କେତେ ବର୍ଷ ପାଇଁ ସଂସାର ମଧ୍ୟରେ
ଘାଣ୍ଟି ହୋଇ ମରୁଥିବି କିପାଁ ଯନ୍ତ୍ରଣାରେ ।
ଧିକ ମୋତେ ! ସେହି କତିପୟ ବର୍ଷପାଇଁ
ଆସକ୍ତି ଯୁକ୍ତ ହୋଇଣ ପଡ଼ିବି କିପାଇଁ ?
କେତେଦିନ ରହିବ ମୋ ବିଶାଳ ସାମ୍ରାଜ୍ୟ
କେତେଦିନ ଆୟୁ ମୋର କେ କହିବ ଆଜ ?
ରାଜ୍ୟ ଛାରଖାର ହେବ ଏହା ଭାବି କରି
କଷଣ ଭୋଗୁଛି ସିନା ମୂଢ଼ଜନ ପରି ।
ଶରୀର ନଶ୍ୱର ମୋର, ନାହିଁ ମୋର ନାଶ
ତାହାର ରକ୍ଷଣ ପାଇଁ କିପାଁ ମୋର ଆଶ ?
କେଭେ ହେଲେ ଆତ୍ମାର ତ ନୁହଇ ବିନାଶ
ଆତ୍ମାକୁ ଭୁଲିଯାଇ ମୁଁ ଲଭିବି କି ଯଶ ?
ପ୍ରପଞ୍ଚ ବିହୀନ ମୁହିଁ ଏହା ଧ୍ରୁବସତ୍ୟ
କିଏ ସେ ଐନ୍ଦ୍ରଜାଲିକ ଦିଏ ହେ ଆଘାତ ?
ଧିକ ମୁଁ ! ଐନ୍ଦ୍ରଜାଲିକ ପ୍ରଭାବେ ମୋହିତ-
ଯା ସତ ତା ତେଜି କିମ୍ବା ଜଗତେ ଆସକ୍ତ ?
ସାଧୁଗଣ ଦେଇଛନ୍ତି ନାନା ଉପଦେଶ
ଆତ୍ମଗତି ପାଇଁ ତାହା ପାଳିବି ଅବଶ୍ୟ ।
ହେ ବିବେକ ! ତୋତେ ମୋର କୋଟି ନମସ୍କାର
ସକଳ ହୃଦ କଲୁଷ କର ମୋର ଦୂର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ସିଦ୍ଧ ଗୀତା ବର୍ଣ୍ଣନେ ନାମ ୪ର୍ଥ ସର୍ଗଃ ।**



## ୫ମ ସର୍ଗଃ

## ଜନକ ବିଚାର

ବିଷର୍ଣ୍ଣ ଚିତ୍ତେ ଜନକ ଏହି ଚିନ୍ତା କରି
ଅନ୍ୟ ଚିନ୍ତାମାନ ମଧ୍ୟ ତା ମନେ ସଞ୍ଚରି ।
ଜ୍ୟେଷ୍ଠ ପ୍ରତିହାରୀ ଆସି ସମ୍ମୁଖେ ହାଜର
କରଯୋଡ଼ି ଜଣାଏ ସେ ଏମନ୍ତ ପ୍ରକାର ।
ମଣିମା ଚଳିବା ହେଉ ନିତ୍ୟକର୍ମ ପାଇଁ
ସ୍ନାନ ଦାନ ଦେବପୂଜା ଯା ବିଧି ଅଛଇ ।

ପ୍ରତିହାରୀର ବଚନ ନ ପଶଇ କାନ
ସଂସାର ଗତି ବିଷୟେ ତାଙ୍କ ଅନୁଧ୍ୟାନ ।
ଅନିତ୍ୟ, ଅସାର, ଅଟେ ରାଜ୍ୟସୁଖ ଭୋଗ
କ୍ଷଣଭଙ୍ଗୁର ପାଇଁକି କିପାଁ ଅନୁରାଗ ?
ଏହିପରି ଚିନ୍ତାମାନ ରାଜା ମନ ଘାଣ୍ଟେ
ପ୍ରତିହାରୀ ଉଭା ରହେ କୃତାଞ୍ଜଳୀ ପୁଟେ ।
ତେଜିବଇଁ ମିଥ୍ୟା, ମାୟାମୟ, ଭବଜାଲ
ଅରଣ୍ୟ ନିବାସ ମୋତେ ହେବ ଶେଷେ ଶଳ ।
ନାହିଁ ମୋର ପ୍ରୟୋଜନ ଏ ମିଥ୍ୟା ଭୋଗରେ
ସର୍ବବିଧ କର୍ମ ତେଜି ଦେବି ମୁଁ ଅଚିରେ,
ଏହି ନିର୍ଜନ ନିବାସ ଦେବ ମୋତେ ସୁଖ
ହେ ମନ ସଦୟ ହୋଇ ନ କର ବିମୁଖ ।
ଏ ତୁଚ୍ଛ ଭୋଗରେ ତୋର କିଛି ପ୍ରୟୋଜନ
ସିଦ୍ଧ ହୋଇ ନ ପାରିବ ଜାଣ ଆରେ ମନ ।
ଅକୃତ୍ରିମ ଆନନ୍ଦ ତୁ ପାଇବୁ ଯହିଁରୁ
ତାହା ଅନୁସରି ଚଳ ଆହେ ମନଗୁରୁ ।
ଏହା ଭାବି ତୁନି ହେଲେ ରାଜର୍ଷି ଜନକ
ତାଙ୍କ ହୃଦାସନ ମାଡ଼ି ବସିଲା ବିବେକ ।
ଚିତ୍ର ପୁତ୍ତଳିକା ପରି ରହିଲେ ସେ ସ୍ଥିର
ଚିତ୍ତ ଚାଞ୍ଚଲ୍ୟ ତାଙ୍କର ହୋଇଗଲା ଦୂର ।
ରାଜସନମାନ ପ୍ରତି ଖାତିରୀ ରଖିଣ
ଭୟେ ପ୍ରତିହାରୀ ଆଉ ନ କହେ ବଚନ ।
କିଛିକାଳ ସ୍ଥିର ଭାବେ କରି ଅବସ୍ଥାନ
ପୁଣି ଚିନ୍ତାମଗ୍ନ ହେଲେ ଜନକ ରାଜନ ।
କର୍ମ ମାତ୍ରାହିଁ ଯେହେତୁ ଅଟଇ ନଶ୍ୱର
କିଛିମାତ୍ର ପ୍ରୟୋଜନ ନାହିଁ ତହିଁ ମୋର ।
କର୍ମ କରୁ ବା ନ କରୁ ଏହି ମୋ ଶରୀର
ଯାଏ ଆସେ ନାହିଁ କିଛି ତହିଁରେ ମୋହର ।
ସମଭାବାପନ୍ନ ଶୁଦ୍ଧ ଆତ୍ମ ଚଇତନ୍ୟ
ଏହି ମୋର ରୂପ ଯେଣୁ ବୁଝେଁ ମୋର ମନ
ଅପ୍ରାପ୍ତ ବସ୍ତୁରେ ମୋର ନାହିଁ ଅଭିଳାଷ
ପ୍ରାପ୍ତ ବସ୍ତୁ ତେଜିବାରେ ପ୍ରୟୋଜନ କିସ ?
ନିଶ୍ଚଳ ଆତ୍ମ ଭାବରେ ମୋର ଅବସ୍ଥାନ
କର୍ମ ସାଧନେ, ବର୍ଜନେ ନାହିଁ ପ୍ରୟୋଜନ ।
ଉତ୍ତମ କାର୍ଯ୍ୟରେ ମୋର ନାହିଁ ଅଭିଳାଷ
ଏବେ ଯାଇଁ କରିବଇଁ ନିତ୍ୟକର୍ମ ଶେଷ ।
କାମନା ବିହୀନ ହୋଇ ସମଭାବେ ମନ
ଥିଲେ କିଛି କ୍ଷତି ନାହିଁ କଲେ ନିତ୍ୟକର୍ମ ।
କର୍ମ ସମ୍ପାଦନ କିମ୍ବା କରମ ବର୍ଜନ
ଉଭୟ ସମାନ ଯଦି ବୁଝୁଥିବ ମନ ।
ମନର କର୍ତ୍ତୃତ୍ୱ ଥାଏ କର୍ମ ସାଧନରେ
ସେହି ମନ ପୁଣି କର୍ମଫଳ ଭୋଗକରେ ।
ମନ ଶାନ୍ତ ଥିଲେ ଦେହକୃତ କର୍ମମାନ
କରି ନ ପାରନ୍ତି କେଭେ ଫଳ ଉତପନ୍ନ ।
କର୍ମର ମୂଳ ନିହିତ ମାନବ ଅନ୍ତରେ
ତେଣୁ ମନୁଷ୍ୟ ସର୍ବଦା କରମ ଆଚରେ ।
ଅବିନାଶୀ ଆତ୍ମପଦେ ରହିଛି ମୋ ମନ
ଶରୀର ତା କର୍ମ କଲେ କ୍ଷତିନାହିଁ ଜାଣ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଜନକ ବିଚାର ବର୍ଣ୍ଣନେ ନାମ ୫ମ ସର୍ଗଃ ।**



## ୬ଷ୍ଠ ସର୍ଗଃ

## ଜନକ ସିଦ୍ଧାନ୍ତ

କହନ୍ତି ବଶିଷ୍ଠ ଏହି ଚିନ୍ତା ମନେ ଧରି
ଚଳେ ଜନକ ରାଜନ ନିତ୍ୟକର୍ମ କରି ।
ଅନାସକ୍ତ ଭାବେ ଉପସ୍ଥିତ କର୍ମମାନ
କରିବାକୁ ସ୍ଥିର କଲେ ଜନକ ରାଜନ
ଅଭିଳକ୍ଷିତ ଅଥବା ଅନଭିଳାଷିତ
କର୍ମ ମନୁ ତେଜି ରାଜା ଯେସନ ସୁଷୁପ୍ତ
ଉପସ୍ଥିତ କର୍ମମାନ କରନ୍ତି ସମ୍ପନ୍ନ
ସବୁରି ମାନସ ଦ୍ୱନ୍ଦ୍ୱ ହୁଏ ଅବସାନ ।
ଦିବସେ କର୍ମ କରନ୍ତି ଧ୍ୟାନଗତ ରହି
ସେହିପରି ରାତ୍ରି କଟେ ଧ୍ୟାନରତ ଥାଇ ।
ରଜନୀ ଶେଷରେ ପୁଣି ଜନକ ରାଜନ
ମନକୁ ନିମ୍ନୋକ୍ତ ଭାବେ କରେ ପ୍ରବୋଧନ ।
"ଶୁଣରେ ଚଞ୍ଚଳ ମନ ଏହି ଯେ ସଂସାର
ତୋ ସୁଖ ପାଇଁକି ସୃଷ୍ଟି ନୋହିଛି ତାହାର ।
ଶାନ୍ତି ଲଭ ଆରେ ମନ ଘେନି ମୋ ବଚନ
ଶାନ୍ତିରୁ ହିଁ ଶାନ୍ତସୁଖ ମିଳେ ସଦା ଜାଣ ।
ଯେତେଯେତେ କଳପନା କରୁଥିବୁ ମନ
ସେତିକି ବିଶାଳ ହେଉଥିବ ଏ ଭୁବନ ।

ଜଳ ସେଚନରେ ବୃକ୍ଷ ଡ଼ାଳେ ପତ୍ରମେଲି
ଭୋଗ ଇଚ୍ଛା ତୋର ଶତ ଦୁଃଖ ନେବ ବରି ।
ଜନମ, ସଂସାର, ସୃଷ୍ଟି ଆରେ ମନ ମୋର
ତୋ ଚିନ୍ତା ବିଳାସ ସିନା କେବଳ ମାତର ।
ତେଣୁ ଚିନ୍ତା ପରିହରି ଶାନ୍ତି ଲାଭକର
ସଂସାର ପରି ଚପଳ ତୋ ଚିନ୍ତା ସକଳ ।
ଏ ସଂସାର ଆଉ ତୋର ଏ ଚପଳ ଚିନ୍ତା
ନିରୀକ୍ଷଣ କରି ବୁଝି ନିଅ ସବୁ କଥା ।
ଯଦି କିଛି ସାର ବସ୍ତୁ ଏଥିରୁ ମିଳଇ
ତହିଁରେ ହିଁ ରତ ହେବା ଉଚିତ ଅଟଇ ।
ନତୁବା ତୋର ଏ ଚିନ୍ତା ଅଥବା ସଂସାରେ
ଆସ୍ଥା ତେଜିବା ଉଚିତ ମୋହର ମତରେ ।
କୌଣସି ବସ୍ତୁକୁ ଏହି ସଂସାର ମଧ୍ୟର
କାମନା ସହ ଗ୍ରହଣ କଦାପି ନକର ।
ଅଥବା ତେଜ୍ୟା ନକର କାମନା ସହିତ
ନିର୍ଲିପ୍ତ ଭାବେ ରହିବା ସର୍ବଦା ଉଚିତ ।
ସତ୍ୟ ବା ଅସତ୍ୟ ହେଉ ଦୃଶ୍ୟବସ୍ତୁମାନ
ଦୋଷ ଗୁଣ ବାଛି ବିଚଳିତ ନୁହ ମନ ।
ଦୃଶ୍ୟ ସହିତ ସମ୍ବନ୍ଧ ତୋର କିଛି ନାହିଁ
ଦୃଶ୍ୟ, ପଦାର୍ଥ ସଦୃଶ ଅସତ୍ୟ ଯେ ତୁହି ।
ଅସତ୍ୟ ସହ ଅସତ୍ୟ ସମ୍ବନ୍ଧଟି ଯାହା
ନଭ-ଅଟ୍ଟାଳିକା ସମ ବୁଝିରଖ ଏହା ।
ଜୀବ ଆକାରେ ତୁ ସତ ଜଗତ ଅସତ
ସତ୍ୟ ସହ ଅସତର ସମ୍ବନ୍ଧ କେମନ୍ତ ?
ଯଦି ତୁମେ ଦୁହେଁଯାକ ହୋଇବଟି ସତ୍ୟ
ହର୍ଷ ବା ଶୋକ କାରଣ ଆସିବ କେମନ୍ତ ?
ସତ୍ୟର ପରିବର୍ତ୍ତନ କେଭେଁ ହୁଏ ନାହିଁ
ପରିବର୍ତ୍ତନ ନ ଥିଲେ ହର୍ଷ ଶୋକ କାହିଁ ?
ତେଣୁରେ ମନ ସର୍ବାଦୌ ଦୁଃଖ ତ୍ୟାଗକରି
ଆନନ୍ଦ ସ୍ୱରୂପ ଶାନ୍ତଭାବ ନିଅ ବରି ।
ନିଜକୃତ ଅମଙ୍ଗଳ ଭାବ ତ୍ୟାଗକର
ଶାନ୍ତିଲାଭ କରେ ଯଥା ଅକ୍ଷୁବ୍ଧ ସାଗର ।
ଏପରି ଉତ୍କୃଷ୍ଟ ବସ୍ତୁ ନାହିଁ ଏ ସଂସାର
ଯା'ର ଆଶ୍ରୟ ପୂର୍ଣ୍ଣତା ଲାଭ ହେବ ତୋର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ଜନକ ସିଦ୍ଧାନ୍ତ ବର୍ଣ୍ଣନେ**
**ନାମ ୬ଷ୍ଠ ସର୍ଗଃ ।**



## ୭ମ ସର୍ଗଃ
## ପ୍ରଜ୍ଞା ମହିମା

କହନ୍ତି ବଶିଷ୍ଠ ରାମ ଜନକ ରାଜନ
ଏହିପରି ହୋଇକରି ବିଚାର ସମ୍ପନ୍ନ ।
ଯାବତ କାର୍ଯ୍ୟ ତାଙ୍କର କଲେ ସମ୍ପାଦନ
ସ୍ଥିର ପ୍ରଜ୍ଞା ହେତୁ ମୁଗ୍ଧ କାହିଁ ନୁହେ ମନ ।
ଆନନ୍ଦରେ ଆନନ୍ଦ ସେ କେଭେଁ ନ ହୁଅନ୍ତି
ଦୁଃଖରେ ଦୁଃଖ କିପରି କେଭେଁ ନ ଜାଣନ୍ତି ।
ସଦା ସର୍ବଦା ତାହାଙ୍କ ମନ ଥାଏ ସ୍ଥିର
ବିଷୟ ପାଇଁ ଆକାଂକ୍ଷା ନ ଥିଲା ତାଙ୍କର ।
ବିଷୟ ତ୍ୟାଗ ପାଇଁକି ଚେଷ୍ଟା ନ କରନ୍ତି
ଅନାସକ୍ତ ଭାବେ ସର୍ବକାମ କରିଯାନ୍ତି ।
ରଜଗୁଣ ଜାତ ଯେହୁ ମମତା ମାଳିନ୍ୟ
ତାଙ୍କ ହୃଦଦେଶେ କେଭେଁ ପାଏ ନାହିଁ ସ୍ଥାନ ।
ବିବେକ-ଜାତ-ବ୍ରହ୍ମଙ୍କ ସ୍ୱରୂପ ଜ୍ଞାନରେ
ଚିତ୍ତ ପ୍ରଫୁଲ୍ଲତା, ଦିପ୍ତିମନ, ରୂପ ଧରେ ।
ଭାସ୍କର ଉଦୟେ ଯଥା ନିର୍ମଳ ଗଗନ
ହୃଦୟ ଆକାଶେ ତାଙ୍କ ଚିନ୍ମୟ ବ୍ରହ୍ମ ।
ସର୍ବାନ୍ତର ସର୍ବରୂପୀ ହୋଇକରି ସେହି
ନିଜ ମଧ୍ୟେ ସବୁଙ୍କୁ ସେ ଦେଖି ପାରୁଥାଇ ।
କେଭେଁ ଦୁଃଖ ଆନନ୍ଦରେ ବଶୀଭୂତ ନୋହି
ସ୍ଥିରଭାବେ ସ୍ୱ ପ୍ରକୃତି ଦର୍ଶନ କରଇ ।
ସେହି ଦିନଠାରୁ ସେହି ଜନକ ରାଜନ
ଜୀବନ ମୁକତ ଭାବେ କାଟୁଛନ୍ତି ଦିନ ।
ପରିପାଳନ କରି ସେ ବିଦେହ ସାମ୍ରାଜ୍ୟ
ପ୍ରାଣ ସ୍ୱରୂପ ପ୍ରଜାଙ୍କ ହେଲେ ଅଗ୍ରପୂଜ୍ୟ ।
ସାଧାରଣ ଲୋକ ପରି ହର୍ଷ ଶୋକ ତାଙ୍କୁ
ସମର୍ଥ ନୁହନ୍ତି ଆକ୍ରମଣ କରିବାକୁ ।
ଇଷ୍ଟାନିଷ୍ଟ ଦେଖି ରାଜା କାର୍ଯ୍ୟ ସମ୍ପାଦନେ
ହରଷ ବିଷାଦ କେଭେଁ ନ ଘେନନ୍ତି ମନେ ।
ଯଦିଓ ଲିପ୍ତ ରହନ୍ତି ବାହ୍ୟ କରମରେ
ସମ୍ପୂର୍ଣ୍ଣ ନିର୍ଲିପ୍ତ ଥାନ୍ତି ଅନ୍ତର ମଧ୍ୟରେ ।
ନିର୍ଲିପ୍ତ ରହି ଯେ କର୍ମ କରନ୍ତି ସାଧନ
ସେହି କର୍ମ କର୍ମ ରୂପେ ନୁହଇ ଗ୍ରହଣ ।

ସକଳ ବାସନା ଯେଣୁ ଲଭିଥିଲେ ଲୀନ
ଭୂତ ଭବିଷ୍ୟତ ପାଇଁ ନ ଥିଲେ ଉଦ୍‌ବିଗ୍ନ ।
ଅନୁସରଣ କରନ୍ତି ଖାଲି ବର୍ତ୍ତମାନ
ନିଜ ବିଚାରର ବଳରେ ଲଭି ପୂର୍ଣ୍ଣଜ୍ଞାନ ।
ତତ୍ତ୍ୱଦର୍ଶୀମାନଙ୍କର ଏହି ଅଭିମତ
ନିଜ ପ୍ରଜ୍ଞା ବଳେ ଜୀବ ଯେଉଁ ପରିଯନ୍ତ
ନ ଟପିଛି ବିଚାରର ସୀମା, ସେ ପର୍ଯ୍ୟନ୍ତ
ବିଚାର କରି ଚାଲିବ ସତ ଓ ଅସତ ।
ଗୁରୁଠାରୁ ବ୍ରହ୍ମପଦ ମିଳି ନ ପାରଇ
ଶାସ୍ତ୍ରାନୁଶୀଳନ ତାହା ଦେଇ ନ ପାରଇ ।
ପୂଣ୍ୟ ପ୍ରଭାବରୁ ମଧ୍ୟ ମିଳି ତା ନ ପାରେ
ଗୁରୁ ଉପଦେଶ ସତସଙ୍ଗ ଲାଭ ଫଳେ
ସୁନିର୍ମଳ, ସୁବିଚାର, ଉଦୟ ବଳରେ
ସଂଶୟାଦି ଉତପାତ ବିନଷ୍ଟ ତହିଁରେ ।
ତେତେବେଳେ ଯାଇଁ ନିଜ ହୃଦୟ ମଧ୍ୟରେ
ବ୍ରହ୍ମପଦ ପ୍ରାପ୍ତ ହୋଇପାରେ ରଘୁବୀରେ ।
ବିଚାର ସକ୍ଷମ, ତୀକ୍ଷ୍ଣ ପ୍ରଜ୍ଞା, ହୃଦୟରେ
ପ୍ରଜ୍ୱଳିତ ହୋଇଉଠେ ଆହେ ରଘୁବୀରେ ।
ଜଡ଼ତା ଅନ୍ଧାର ତାକୁ ଘାରି ନ ପାରଇ
ବେଳକୁବେଳ ଦେଦୀପ୍ୟମାନ ସେ ଦିଶଇ ।
ଦୁଃଖ ବିଷାଦ୍ ସାଗର ପାର ହେବାପାଇଁ
ଏକମାତ୍ର ପ୍ରଜ୍ଞା ନୌକା କାମରେ ଆସଇ ।
ଅତି ସାମାନ୍ୟ ବିପଦେ ପ୍ରଜ୍ଞାହୀନ ନର
ବ୍ୟାକୁଳ ହୋଇପଡ଼ିଣ ହୁଅଇ କାତର ।
ନ ଥିଲେହେଁ ଶାସ୍ତ୍ରଜ୍ଞାନ ବା ଅନ୍ୟ ଉପାୟ
ପ୍ରଜ୍ଞାବନ୍ତ କିନ୍ତୁ କିଛି ନ କରିଣ ଭୟ
ଏ ସଂସାର ସାଗରକୁ ହେୟଜ୍ଞାନ କରି
ଅନାୟାସେ ତାହାକୁ ସେ ପାରହୋଇ ପାରି ।
ବିଷୟ ଅର୍ଜ୍ଜନ ପାଇଁ ଯେପରି ଉଦ୍ୟମ
ପ୍ରଜ୍ଞାର୍ଜ୍ଜନ ପାଇଁ ମଧ୍ୟ ସେପରି ସାଧନ ।
ପ୍ରଜ୍ଞାର ଅଭାବେ ନର ନାନା ଦୁଃଖ ପାଏ
ସଂସାର ବୃକ୍ଷ ଅଙ୍କୁରୋଦ୍‌ଗମ ହୋଇଯାଏ ।
ପ୍ରଜ୍ଞା ଦୃଷ୍ଟିରେ ହେ ରାମ ନିଖିଳ ବିଶ୍ୱକୁ
ସମ୍ୟକଭାବେ ଦେଖିବ ନ କରି ହେଳାକୁ ।
ଏହି ସମ୍ୟକ ଦର୍ଶନ ଯେ କରିଛି ଲାଭ
ସମ୍ପଦ ବିପଦ ତାକୁ ନ ଦିଏ ଅଶୁଭ ।
ଅହଂକାର-ମେଘ ବ୍ରହ୍ମ-ମାର୍ତ୍ତଣ୍ଡକୁ ରାମ
ନିବିଡ଼ ଭାବେ ରଖିଛି କରିଣ ଆଛନ୍ନ ।
ଏକମାତ୍ର ପ୍ରଜ୍ଞାବାୟୁ ଦ୍ୱାରା ହିଁ କେବଳ
ଦୂର ହୋଇପାରେ ତାହା ଏହା ନିରାଧାର ।
ପରମପଦ ପାଇଁ କି ଯାର ଅଭିଳାଷ
ବିବେକ ବଳେ ପ୍ରଜ୍ଞାର ଶୋଧନ ଅବଶ୍ୟ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ପ୍ରଜ୍ଞା ମହିମା ବର୍ଣ୍ଣନେ ନାମ ୭ମ ସର୍ଗଃ ।**



## ୮ମ ସର୍ଗଃ
## ମନ ନିର୍ବାଣ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଯେପରି ନିଜକୁ ନିଜେ ଜନକ ରାଜନ ।
ବିଚାରବଳେ ପ୍ରଜ୍ଞାକୁ କରି ସଂଶୋଧନ
ପରମପଦ ଲାଭକୁ ହୋଇଲେ ସକ୍ଷମ,
ତୁମେ ସେହି ଜନକଙ୍କ ପଥ ଅନୁସରି
ପ୍ରଜ୍ଞାଶୀଳ ହୋଇପାର ଆହେ ଚାପଧାରୀ ।
ସହଜେ ପରମ ପଦ ହୋଇବ ପ୍ରାପତ
ଏଥିରେ ସନ୍ଦେହ କିଛି ନାହିଁ ରଘୁନାଥ ।
ବୁଦ୍ଧିମାନ ବ୍ୟକ୍ତି ନିଜ ଶୁଭକର୍ମଫଳେ
ତମୋଗୁଣ ଶୂନ୍ୟ ହୋଇ ଜନ୍ମଲାଭ କଲେ ।
ରାଜସ- ସାତ୍ତ୍ୱିକ ଗୁଣ ଲଭିପାରିଥିବ
ଜନକ ରାଜାଙ୍କ ପରି ଜିତେନ୍ଦ୍ରିୟ ହେବ ।
ଅକ୍ଲେଶରେ ପରଂପଦ ସେ ଲଭିପାରିବ
ପ୍ରସନ୍ନ ହୋଇ ତା ଆତ୍ମା ଆତ୍ମାରେ ରହିବ ।
ପରମାତ୍ମା ତୁଷ୍ଟ ହୋଇ ଉଦିତ ହୋଇଲେ
ଜୀବର କର୍ମ ବନ୍ଧନ ଛିଣ୍ଡିଯାଏ ଭଲେ ।
ସକଳ ବାସନା ତାର କ୍ଷୟ ହୋଇଯାଏ
ଆଧ୍ୟାତ୍ମିକ ଦୁଃଖମାନ ଦୂରୀଭୂତ ହୁଏ ।
ଚିତ୍ତ ବନ୍ଧନ କାରଣ ଯେଉଁ ଅହଂକାର
ବିଦୂରୀତ ହୋଇଯାଏ କୌଶଲ୍ୟା କୁମର ।
ତେଣୁ ମୁଁ କହୁଛି ଶୁଣ ଆହେ ଧନୁର୍ଦ୍ଧାରୀ
ନିଜକୁ ବ୍ରହ୍ମ ସ୍ୱରୂପ ଅନୁଭବ କରି,
ଐଶ୍ୱର୍ଯ୍ୟ ସମ୍ପନ୍ନ ହୁଅ ଜନକ ସଦୃଶ
ଜୀବନ ମହତ ହେବ ହେ ରଘୁବିଳାସ ।

ଭବ ଅନିତ୍ୟତା ଆଧ୍ୟାତ୍ମିକ ବିଚାରରେ
ବୁଝିପାରିଛି ଯେ ଜନ ସଉଭାଗ୍ୟ ବଳେ,
ରାଜର୍ଷି ଜନକ ପରି ତାହାଙ୍କର ଆତ୍ମା
ଅନାୟାସେ ଲାଭ କରିପାରେ ପ୍ରସନ୍ନତା ।
ମୁକ୍ତିକାମ ବ୍ୟକ୍ତିଙ୍କର ମୁକ୍ତି ଲାଭ ପାଇଁ
ନିଜ ଚେଷ୍ଟା ଛଡ଼ା ଅନ୍ୟ କିଛି ଲୋଡ଼ାନାହିଁ ।
ଧନ, ବନ୍ଧୁ, କର୍ମ, ଦୈବ ଏ ଆଦି ଯେତେକ
ମୁକ୍ତିପଥେ ତାଙ୍କ ଦାନ ନୁହେ ଆବଶ୍ୟକ ।
ବିବେକ ଓ ବୈରାଗ୍ୟରେ ଆସ୍ଥାଶୂନ୍ୟ ହୋଇ
ଭାଗ୍ୟ ଉପରେ କେବଳ ନିର୍ଭର କରଇ ।
ସେହି ବୁଦ୍ଧି ସେ ଜନର ବିନାଶ କାରଣ
ହୋଇଥାଏ ଜାଣିରଖ ହେ ରଘୁନନ୍ଦନ ।
ତେଣୁ କରି ତାହା ରାମ କୌଣସି ବ୍ୟକ୍ତିର
ଅନୁକରଣୀୟ ନୁହେ ହୃଦଗତେ ଧର ।
ଧୀ-ଶକ୍ତି ସମ୍ପନ୍ନ ବ୍ୟକ୍ତି ବିବେକ ବଳରେ
ନିପୁଣତା ସହ ଆତ୍ମ ଦରଶନ କରେ ।
ବୈରାଗ୍ୟ ଦାୟିନୀ ବୁଦ୍ଧି ଶକ୍ତି ପ୍ରଭାବରେ
ଅକ୍ଳେଶରେ ଭବସିନ୍ଧୁ ପାରହୋଇ ପାରେ ।
ଜନକଙ୍କ ଜ୍ଞାନୋଦୟ ବିଷୟରେ ରାମ
ଯାହା ମୁଁ କହିଲି ତାହା କଲ ତ ଶ୍ରବଣ ।
ଆକାଶୁ ପଡ଼ିବା ଫଳ ପ୍ରାପତ ଯେପରି
ଅତର୍କିତ ଭାବେ ତାହା ଉଦେ ହୋଇକରି,
ଅଜ୍ଞାନ ବୃକ୍ଷର ମୂଳ କରି ଉତ୍ପାଟନ
ଜୀବର ସୁଖ ସମୃଦ୍ଧି କରଇ ବର୍ଦ୍ଧନ ।
ବୋଧଜ୍ଞାନ ଲାଭକରି ଜନକ ସଦୃଶ
ସମ୍ୟକ୍ ଦରଶନ ଲାଭ କରେ ଯେ ପୁରୁଷ ।
ତା ଶରୀର ଅନ୍ତର୍ଗତ ପରମ ଦେବତା
ବିକଶିତ ହୋଇ ଉଠେ ପ୍ରାତଃ ପଦ୍ମ ଯଥା ।
ଆତପ ତାପେ ଗଳିତ ଯଥା ହିମକଣା
ବିଚାର ବଳେ ବିନାଶ ସଂସାର ବାସନା
ଦେହାତ୍ମ ଭାବନାରୂପ ଅଜ୍ଞାନ ତିମିର
ଗତ ହୋଇ ଆତ୍ମାଲୋକ ଦିଶଇ ଉଜ୍ଜ୍ୱଳ ।
ଦେହାତ୍ମ ବୁଦ୍ଧିରୂପକ ପରିଛିନ୍ନ ଭାବ
ଗତ ହେଲେ ବିଶ୍ୱବ୍ୟାପୀ ଯେଉଁ ଆତ୍ମଭାବ ।
ଅପରିଛିନ୍ନ ଭାବରେ ସ୍ୱତଃ ତା ଉଦୟ
ହୋଇଥାଏ ଜାଣ ଆହେ କୌଶଲ୍ୟ ତନୟ ।
ଅହଂକାର ତେଜିଥିଲେ ଯେପରି ଜନକ
ତୁମେ ମଧ୍ୟ ତାହା ତେଜ ଲଗାଇ ବିବେକ
ନିର୍ମଳ ଚିଦାକାଶରୁ ଅହଂକାର ମେଘ
ହଟିଗଲେ ଆତ୍ମସୂର୍ଯ୍ୟ ଉଦୟ ସୁଯୋଗ ।
ଅହଂଭାବ ଭାବନା ହିଁ ମୋହ ଅନ୍ଧକାର
ଆତ୍ମାପ୍ରକାଶ ଲଭଇ ହୁଅନ୍ତେ ତା ଦୂର ।
"ମୁହିଁ ବୋଲି କିଛି ନାହିଁ, ଅନ୍ୟ କିଛି ନାହିଁ"
ଅଥଚ ସକଳ ବିଶ୍ୱ ବିରାଜିତ ରହି ।
ଏପରି ଭାବନା ମନେ ହୁଅନ୍ତେ ଉଦିତ
ସ୍ୱତଃ ଶାନ୍ତି ମନ ମଧ୍ୟେ ହୁଏ ପ୍ରତିଭାତ ।
ବାହ୍ୟ ଉତ୍ତମ ବସ୍ତୁରେ ତାହାର ଆଶକ୍ତି
ଆଉ ରହି ନ ପାରଇ ଜାଣ ରଘୁପତି ।
ଉତ୍ତମ ବସ୍ତୁରେ ଯେବେ ହେବ ଅନୁରାଗ
ନିକୃଷ୍ଟ ବସ୍ତୁରେ ଯଦି ଆସିବ ବିରାଗ ।
ମନର ବନ୍ଧନ ବୋଲି ତାହାକୁ ଜାଣିବ
ଉତ୍ତମ, ନିକୃଷ୍ଟ, ଭାବ ତେଜ ହେ ରାଘବ ।
ଏହିପରି ଅନୁରାଗ, ବିରାଗ ଯେ ବୁଦ୍ଧି
ତେଜି ସ୍ୱଚ୍ଛଭାବେ ରହ ଆହେ ରଘୁନିଧି ।
ଗ୍ରାହ୍ୟ, ତେଜ୍ୟ ଭାବ ବୁଦ୍ଧି ନ ଥାଇ ଯାହାର
ପାଇବା ଛାଡ଼ିବା ଭାବ ନ ଥାଏ ତାହାର ।
ଚିତ୍ତରୁ ଯେ ଯାଏ ଦ୍ୱେଷ ଅନୁରାଗ ବୃତ୍ତି
କ୍ଷୟ ପାଇନାହିଁ ଜାଣ ଆହେ ରଘୁପତି,
ସେ ପର୍ଯ୍ୟନ୍ତ ଚିଦାକାଶେ ବ୍ରହ୍ମବୋଧୋଦୟ
ମେଘାଛନ୍ନ ଆକାଶରେ ଚନ୍ଦ୍ରୋଦୟ ପ୍ରାୟ ।
ହେୟ ଉପାଦେୟ ବୋଧେ ଯା ଚିତ୍ତ ଚଞ୍ଚଳ
ସମଜ୍ଞାନ ଉଦେ ନୋହିପାରେ ତା ହୃଦର ।
ପ୍ରୀତିପଦ ବସ୍ତୁପାଇଁ ଆଦର ସ୍ୱଭାବ
ଅପ୍ରୀତିକର ବସ୍ତୁରେ ଅନାଦର ଭାବ
ଏହିଭାବେ ଯାର ଇଚ୍ଛା ଦ୍ୱେଷ ଜନମଇ
ବୈରାଗ୍ୟ, ସମଜ୍ଞାନ, ତା' ହୃଦେ ନ ଆସଇ ।
ବ୍ରହ୍ମବୋଧ, ଜ୍ଞାନ ଯାର ହୃଦେ ପ୍ରକାଶଇ
ଇଷ୍ଟାନିଷ୍ଟ ଭାବ ତାର କେଉଁ ନ ଆସଇ ।
ଯା' ଚିତ୍ତ ବୃକ୍ଷରେ ଇଷ୍ଟାନିଷ୍ଟ ଭାବ ଦୁଇ
ବାନର ରୂପେ କରୁଣଥାନ୍ତି ଡିଆଁ ଡେଇଁ ।
କେଉଁହେଲେ ଶାନ୍ତିଲାଭ ନୁହଇ ତାହାର
ଅଶାନ୍ତିରେ ଦିନ କାଟୁଥାଏ କାଳ କାଳ ।

ଚିତ୍ତଯାର ରାଗଦ୍ୱେଷ ଶୂନ୍ୟ ହୋଇ ଥାଇ
ବାସନା ବୀଜ-ଅଜ୍ଞାନ ଦୂରୀଭୂତ ହୋଇ ।
ସେହି ପୁରୁଷ ଚିତ୍ତରେ ଯେ ସୁଗୁଣମାନ
ବିକଶିତ ହୁଏ ତାହା କରୁଛି ବର୍ଣ୍ଣନ ।
ତୃଷ୍ଣାହୀନ, ନିର୍ଭୀକ, ସେ ସମଜ୍ଞାନୀ ରହେ
ସନ୍ତୋଷ, ସମ୍ୟକବୋଧ, ହୃଦେ ବରିଥାଏ ।
ଧୈର୍ଯ୍ୟବାନ, ସୌମ୍ୟ, ସେହୁ ନିଶ୍ଚେଷ୍ଟ, ହୋଇଣ
ସର୍ବଭୂତେ ବନ୍ଧୁଭାବ, କରଇ ପୋଷଣ ।
ମୃଦୁଭାଷୀ, ଅନୁଗ୍ରହ ଭାବ, ଧରି ସେହି
ଆତ୍ମପ୍ରସାଦେ, ସର୍ବଦା ମଜ୍ଜି ରହିଥାଇ ।
ତୁମ ଚିତ୍ତ ଯେତେବେଳେ ନିକୃଷ୍ଟ ବିଷୟେ
ଧାବିତ ହୁଏ ଦେଖିବ ଆହେ ରଘୁରାଏ ।
ବାହ୍ୟ ଇନ୍ଦ୍ରିୟମାନଙ୍କ ସମ୍ବନ୍ଧ ତେଜିଣ
ସବଳେ ତାହାଙ୍କୁ କରିବାକ ନିରୋଧନ ।
ଶୟନେ ବା ଜାଗରଣେ ସର୍ବ ଅବସ୍ଥାରେ
ସକଳ ବାହ୍ୟ ବିଷୟ ତେଜ ରଘୁବୀରେ ।
ଅନ୍ତରାତ୍ମା ସହ ହେବ ଆସକ୍ତି ସମ୍ପନ୍ନ
ତେବେ ଯାଇଁ ମୁକ୍ତିଭାବ ପାଇବ ହେ ରାମ ।
ଚିନ୍ତା ସୂତ୍ରରେ ଗ୍ରଥିତ ବାସନାର-ଜାଲ
ସଂସାର-ଜଳେ ବିସ୍ତୃତ ଅଛି ସର୍ବକାଳ ।
ତୃଷ୍ଣା-ରୂପ ମତ୍ସ୍ୟ ପଡ଼ି ସେ ବାସନାଜାଲେ
ଜୀବରୂପ-ଜଳକୁ ସେ କଳୁଷିତ କରେ ।
ପ୍ରଜ୍ଞାରୂପ ତୀକ୍ଷ୍ଣ ଅସ୍ତ୍ରଦ୍ୱାରା ତୁମେ ରାମ
ସେହି ବାସନା ଜାଲକୁ କରିଦିଅ ଛିନ୍ନ ।
ରାଗ-ଦ୍ୱେଷ-ଦୁଷ୍ଟ ତୁମ ମନକୁ ହେ ରାମ
ବ୍ରହ୍ମୋଭାସିତ ମନରେ କର ପରିତ୍ରାଣ ।
ସଂସାର ଅନିତ୍ୟ ଏହା ସଦାହୃଦେ ଧର ।
ସର୍ବତ୍ର ସମଜ୍ଞାନରେ ବିଚରଣ କର
ତୁମେ ଅଜ, ମହେଶ୍ୱର, ସେହି ପରମାତ୍ମା
ବ୍ରହ୍ମ ଭିନ୍ନ ନୋହି ମଧ୍ୟ ମୋହଗ୍ରସ୍ତ ଆତ୍ମା,
ତେଣୁ ଏ ସଂସାରଭାବ କରୁଛ ପ୍ରକାଶ
ମନେରଖି କାର୍ଯ୍ୟ କଲେ ପାଉଥିବ ଯଶ ।
ସଂସାର ବାସନା ପୁଣି ରାଗ ଦ୍ୱେଷ ତେଜି
ଯେଉଁ ବ୍ୟକ୍ତି ସମଦର୍ଶୀ ଭାବରେ ବିରାଜି ।
ତାହାକୁହିଁ ମୁକ୍ତଯୋଗୀ କହନ୍ତି ଶାସ୍ତ୍ରରେ
ଯାହାକରୁ, ଯହିଁରହୁ, ଥାଏ ସେ ସମରେ ।
ଏ ଜଗତ ଅଟେ ଚିତ୍ ଶକ୍ତିର ପ୍ରକାଶ
ଯେ ଜାଣେ, ସେ ତେଜେ ସର୍ବ ଜଗତ ବିଳାସ ।
ଶାନ୍ତିପ୍ରାପ୍ତ ହୋଇଥାଏ ଏମନ୍ତ ମହାନ
ଶାନ୍ତି ଛଡ଼ା ନ ଗଣଇ ଅନ୍ୟ କିଛି ଧନ ।
ଜଡ଼ ପଦାର୍ଥ ଅଟଇ ଏହି ଚିତ୍ତ ଜାଣ
ଜଡ଼ ଚିତ୍ତଯୋଗୁଁ ଏହି ସଂସାର ବନ୍ଧନ ।
ଚିଦାଲୋକ ଚିତ୍‌ଶକ୍ତି ବିନା ସାହାଯ୍ୟରେ
ଜଡ଼ ଶକ୍ତିର ସ୍ପନ୍ଦନ କେଭେଁ ନୋହିପାରେ ।
ଚିତ୍ ଶକ୍ତିରେ ଏହି ମିଥ୍ୟା ସ୍ପନ୍ଦନ କଳ୍ପନା
ଚିତ୍ତ ନାମେ ପରିଚିତ ରାମ ମହାମନା ।
ସେହି କଳ୍ପନାରୂପତା ଚିତ୍ତ ଯେବେ ରାମ
ନିଜକୁ ଚିତ୍‌ସ୍ୱରୂପ ବୁଝେ ଯେଉଁକ୍ଷଣ,
ଶୁଦ୍ଧ ଚିତ୍ ସ୍ୱରୂପକୁ ହୁଏ ସେ ପ୍ରାପତ
ଏହା ଅଟଇ ସୁଜ୍ଞାନୀମାନଙ୍କର ମତ ।
ଚିତ୍ତ ଯେବେ ତେଜି ବସେ ବିଷୟ ଭାବନା
ବ୍ରହ୍ମରୂପେ ହୃଦ ମଧ୍ୟେ ଉଦେ ହୁଏ ସିନା ।
ପୁଣି ଯେବେ ଚିତ୍ତ କରେ ବିଷୟ ଭାବନା
ତେତେବେଳେ ତାର ନାମ ହୁଏ କଳପନା ।
ଚିତ୍ତ ମଧ୍ୟେ ସେ କଳ୍ପନା ପ୍ରକାଶ ବଳରେ
ନିଜ ଚିନ୍ମୟତା ଭୁଲି ଜଡ଼ଭାବ ଧରେ ।
ସେ ଜଡ଼ କଳ୍ପନା ହେୟ ଅବା ଉପାଦେୟ
ଦୁଇ ଭାଗରେ ବିଭକ୍ତ ରହେ ରଘୁରାୟ ।
ସଙ୍କଳ୍ପର ଅନୁଗାମୀ ହେଲେ ସେ କଳ୍ପନା
ଅଦ୍ୱୟ ବ୍ରହ୍ମ ଦର୍ଶନେ ଏହା ବିଡ଼ମ୍ବନା ।
ଯେତେଦିନ ଯାଏ ଗୁରୁ ଉପଦେଶ ବଳେ
ସମ୍ୟକ୍ ପ୍ରବୁଦ୍ଧ ସେହୁ ହୋଇଣ ନ ପାରେ ।
ତେତେଦିନଯାଏ ରାମ ଅଖଣ୍ଡ ବ୍ରହ୍ମର
ସ୍ୱରୂପ ବିଷୟେ ରହେ ଅଜ୍ଞାନ ସେ ନର ।
ଶାସ୍ତ୍ରଜ୍ଞାନ ବଇରାଗ୍ୟ ଇନ୍ଦ୍ରିୟ ସଂଯମ
ସାହାଯ୍ୟେ ସେ କଳ୍ପନାକୁ କରି ଉପଶମ ।
ତାହାପରେ ଜ୍ଞାନ, ଶାନ୍ତି କ୍ଷମତା ବଳରେ
ସେ କଳ୍ପନା ଜୀବ ହୃଦେ ବ୍ରହ୍ମରୂପ ଧରେ ।
ଯଦି ଏହା କରିବାକୁ ଅକ୍ଷମ ହୋଇବ
ସଂସାର ଭ୍ରମରୁ କେଭେଁ ମୁକ୍ତି ନ ପାଇବ ।

ହେଲେହେଁ ଏହି କଳ୍ପନା ଜଡ଼ଭାବାପନ୍ନ
ଚୈତନ୍ୟ ଘେନି ପ୍ରବୁଦ୍ଧ ହୁଅଇ ସେ ଜାଣ ।
ରାଜାଙ୍କ ଛବି ଯେସନ ଯୁଦ୍ଧ ପାଇଁ ରାମ
ହୋଇ ନ ପାରଇ କେତେବେଳେ ହେଁ ସକ୍ଷମ ।
ସେପରି ମିଥ୍ୟା କଳ୍ପନାମୟ ଏହି ମନ
ଆତ୍ମା ପ୍ରେରଣା ବ୍ୟତୀତ ରହଇ ଅକ୍ଷମ ।
ସଂକଳ୍ପ କଳ୍ପନା ଦ୍ୱାରା ଆକ୍ରାନ୍ତ ସଂବିତ
ବିଷୟ ଆକାରେ ଯେହୁ ନୁହେ ଆକାରିତ,
ତାହାଙ୍କର ସେ ବିଶୁଦ୍ଧ ସଂବିତହିଁ ରାମ
ପରମଆତ୍ମାଙ୍କ ଜ୍ୟୋତି ବିନୁ ନୁହେ ଆନ ।
"ମୁହିଁ" ଆକାରେ ନିଜକୁ ପରିଚିତ କରି
ପ୍ରାଣକୁ 'ମୋର' ଆକାରେ ଯେ ଗ୍ରହଣ କରି
ସେ ଆତ୍ମତତ୍ତ୍ୱହିଁ ଜୀବ ନାମରେ କଥିତ
ଜ୍ଞାନୀଙ୍କ ମତରେ କିନ୍ତୁ ଏହା ବିପରୀତ ।
ଜୀବ, ଚିତ୍ତ, ବୁଦ୍ଧି, ଏହି ତ୍ରିବିଧ ନାମରେ
ସେହି ମିଥ୍ୟା ସଙ୍କଳ୍ପହିଁ ବିଦିତ ସଂସାରେ ।
କିନ୍ତୁ ଜ୍ଞାନୀଙ୍କର ମତ ନୁହଇ ଏପରି
ତାଙ୍କ ମତେ ମନ ବୁଦ୍ଧି ଦେହ ଆଦିକରି,
ସକଳ ଆକାର ମଧ୍ୟେ ଅଛଇ ସଂସ୍ଥିତ
ଏକମାତ୍ର ଅବିନାଶୀ ଆତ୍ମା ରଘୁନାଥ ।
ଏ ସଂସାରେ ଯାହା କିଛି ଦେଖୁଛ ହେ ରାମ
ସେ ସମସ୍ତ ଆତ୍ମାଛଡ଼ା ନୁହେ କିଛି ଆନ ।
ଦିବସ, ରଜନୀ, କାଳ ରୂପେ ପ୍ରକାଶିତ
ଏହି ଆତ୍ମାହିଁ କେବଳ ଜାଣ ରଘୁନାଥ ।
ଗଗନ ଅପେକ୍ଷା ରାମ ଆତ୍ମା ଯେ ବିମଳ
ସତ୍ତା ବା ଅସତ୍ତା କିଛି ନ ଥାଇ ଆତ୍ମାର ।
ଇନ୍ଦ୍ରିୟଲଭ୍ୟ ନୋହିବା କାରଣୁ ସେ ଜାଣ ।
ବିଦ୍ୟମାନତା ତାହାର ନାହିଁ ହେ ଶ୍ରୀରାମ ।
ଚିତ୍ ସ୍ୱରୂପତା ଯେଣୁ ରହିଛି ତାହାର
କାହୁଁ "ଅଭାବ"ଆସିବ ତାର ରଘୁବୀର ।
ନିଜତ୍ୱକୁ ଅନୁଭବ କରିପାରେ ଯେଣୁଁ
ଉପଲବ୍ଧ ହୋଇପାରେ ସବୁଠାରେ ତେଣୁ ।
ଆଲୋକ ପାଖେ ଅନ୍ଧାର ରହିକି ପାରଇ ?
ଆତ୍ମ ସାକ୍ଷାତରେ ମନ ମରଣ ଲଭଇ ।

ଆତ୍ମଜ୍ୟୋତି ପାଶେ ପୁଣି ଏ ମଳିନ ମନ
କାହୁଁ ପ୍ରକାଶ ଲଭିବ କୌଶଲ୍ୟା ନନ୍ଦନ ?
ସଂକଳ୍ପ ବଳେ ଏ ମନ ବାହ୍ୟ ବିଷୟରେ
ବୃତ୍ତି ରହିଯାଏ ଯେବେ ପାର୍ଥିବ ବସ୍ତୁରେ
ପାରମାର୍ଥିକ ଭାବତା ହୁଏ ବିସ୍ମରଣ
ଅନିତ୍ୟ ବସ୍ତୁ ଆଡ଼କୁ ହୁଏ ଧାବମାନ ।
ପରମାତ୍ମାଙ୍କ ସଂକଳ୍ପମୟ ଭାବ ରାମ
ଚିତ୍ତ ରୂପେ ଅଭିହିତ ହୋଇଥାଏ ଜାଣ ।
ସଂକଳ୍ପ ଅଭାବେ ହୁଏ ଚିତ୍ତର ଅଭାବ
ଚିତ୍ତ ଅଭାବରେ ମୁକ୍ତି ଲଭିବା ସମ୍ଭବ ।
ସଂକଳ୍ପ ଆଡ଼କୁ ଆତ୍ମା ହେଲେ ଧାବମାନ
ତହିଁରୁ ଜନ୍ମିବ ଯେଉଁ ବିପରୀତ ଜ୍ଞାନ ।
ସେ ଜ୍ଞାନରୁ ହୋଇଥାଏ ଚିତ୍ତର ଜନମ
ସେହି ଚିତ୍ତ ସଂସାରର ମୂଳ ହେତୁ ଜାଣ ।
ଦର୍ପଣରେ ପଡ଼ିଥାଏ ଦ୍ରବ୍ୟ ପ୍ରତିବିମ୍ବ
ଦ୍ରବ୍ୟ ଅଭାବରେ ପ୍ରତିବିମ୍ବ ଅସମ୍ଭବ ।
ପ୍ରାଣଶକ୍ତି ନିରୁଦ୍ଧରେ ମନର ନିରୁଦ୍ଧ
ପ୍ରାଣଶକ୍ତି ଗଲେ ମନ ହୁଏ ଅବରୁଦ୍ଧ ।
ପ୍ରାଣରହିଁ ରୂପାନ୍ତର ଯେଣୁ ଏହି ମନ
ପ୍ରାଣ ନିରୁଦ୍ଧେ ନିରୁଦ୍ଧ ହୁଅଇ ସେ ଜାଣ ।
ନିଜର ସ୍ପନ୍ଦନ ଶକ୍ତି ବଳରେ ଏ ପ୍ରାଣ
ମନୋମୟ ବିଷୟକୁ ହୃଦୟେ ଧରିଣ,
ଅନ୍ୟସ୍ଥାନେ ଥିବା ପଦାର୍ଥର ଅନୁଭବ
* କରେ ବୋଲି ମନ ନାମ ତାହାର ରାଘବ
ବୈରାଗ୍ୟ, ସମାଧି, ପ୍ରଣାୟାମ, ତତ୍ତ୍ୱଜ୍ଞାନ
ବାସନାକ୍ଷୟ, ପ୍ରାଣର ନିରୁଦ୍ଧ କାରଣ ।
ଅନୁଭବ ଶକ୍ତି ନାହିଁ ହେ ରାମ ମନର
ସ୍ପନ୍ଦନ ଶକ୍ତି ପ୍ରାଣର, ଚିତ୍ ଶକ୍ତି ଆତ୍ମାର ।
ଚିତ୍ ଓ ସ୍ପନ୍ଦନ ଶକ୍ତି ହୁଅନ୍ତେ ମିଳନ
ସେହି ମିଳନହିଁ 'ମନ' ବୋଲିଣ ଜାଣିମ ।
ମନର ଉତ୍ପତ୍ତି ପୁଣି ମନର ଯେ ଜ୍ଞାନ
ଉଭୟ ମିଥ୍ୟା ଅଟନ୍ତି ହେ ରଘୁନନ୍ଦନ ।

*ପ୍ରାଣର ଅନ୍ୟ ନାମ 'ମନ'

'ଅବିଦ୍ୟା' ବୋଲାଇ ଏହି ମିଥ୍ୟା ଜ୍ଞାନ ଜାଣ
ସେହି ଅବିଦ୍ୟା ଧରିଣ ଥାଏ 'ମାୟା' ନାମ ।
ସଂସାର-ଗରଳ ଉପୁଯାଏ ଏହି ମନ
ଅଜ୍ଞାନ ନାମରେ ପରିଚିତ ସେହୁ ଜାଣ ।
ଚିତ୍‌ଶକ୍ତି ସ୍ପନ୍ଦନଶକ୍ତି ଉଭୟ ମିଳନେ
ମନ କଳ୍ପିତ ନୋହିଲେ ଆହେ ରଘୁନାନେ ।
ଦୂରୀଭୂତ ହୋଇପାରେ ଏ ସଂସାର ଭୀତି
ମନ ଅସ୍ତିତ୍ୱ ଅସିଦ୍ଧ ଜ୍ଞାନୀଏ କହନ୍ତି ।
ପରମାର୍ଥ ଜ୍ଞାନୋଦୟେ ମନର ବିଲୟ
ମନ ବିଲୟ ହୋଇଲେ ନାହିଁ ଦୁଃଖଭୟ ।
ମୁନି ପଦବୀ ହେ ରାମ ଲଭିତ ସାରିଛ
ଯଥାର୍ଥ ଜ୍ଞାନ ବଶତଃ ମିଥ୍ୟା ପାଶୋରିଛ ।
ହେ ରାଘବ ଏ ମନର ନାହିଁ ରୂପରେଖ
ଜଡ଼ ସେହି ସର୍ବକ୍ଷଣେ ମୃତ ଭାବିଦେଖ ।
କି ଆଶ୍ଚର୍ଯ୍ୟ ! ସେହି ମୃତ ମନ ରଘୁରାଇ
ଜୀବଗଣଙ୍କର ମୃତ୍ୟୁ ବିଧାନ କରଇ ।
ମୂର୍ଖଜୀବ ବୁଝି ଏହା ବୁଝି ନ ପାରଇ
ସଂସାର କଷଣ ଭୋଗ ଥୁଆ ତାର ପାଇଁ ।
ଦେହ, ଆତ୍ମା, ସ୍ଥାନ, ରୂପ ଯାର କିଛି ନାହିଁ
କି ଆଶ୍ଚର୍ଯ୍ୟ ସେହି ପୁଣି ଜୀବକୁ ଗ୍ରାସଇ ।
ସର୍ବ ଶୂନ୍ୟ ହୋଇ ମନ ଜୀବକୁ ପୀଡ଼ଇ
ପଦ୍ମଫୁଲ ଆଘାତରେ ମୁଣ୍ଡ କି ଫାଟଇ ?
ଯାହାକି କଳ୍ପିତ ଯା'ର ଅବସ୍ଥାନ ମିଥ୍ୟା
ଯା'କୁ ପାଇବାକୁ ଅନ୍ୱେଷଣ ହୁଏ ବୃଥା ।
ପରାଭବ ଦେବାପାଇଁ ଅନ୍ୟକୁ ତାହାର
ଶକତି କାହୁଁ ଆସିବ ଆହେ ରଘୁବୀର ?
ଯେ ମନ ଜୀବଗଣକୁ କରି ତ୍ରସ୍ତ ବ୍ୟସ୍ତ
ତାହା କେବଳ ହିଁ ରାମ ମାୟାର ଜନିତ ।
ଏହି ମୂର୍ଖ ତା ଯେବେକି ଜୀବକୁ ଘାରଇ
ନାନାଦି ଆପଦ ତାକୁ ଆସିଣ ଗ୍ରାସଇ ।
ବହୁତ ପରିତାପର ବିଷୟ ଯେ ଏହି
ଜୀବ ନିଜେ ଏ ମନର ସର୍ଜନା କରଇ ।
ପୁଣି ତାହାକୁ ଅସତ ପଥଗାମୀ କରେ
ନିଜ ଦୁଃଖ ଭୋଗ ପାଇଁ ବଢ଼ାଏ ଆଦରେ ।
ଶତ୍ରୁ ସୈନ୍ୟ ପ୍ରବଳତା ମନେ କଳପିଣ
ଭୀତିବଶେ ପରାଜୟ କରେ ସେ ବରଣ ।
ବାସ୍ତବରେ ସେହି ଭୀତି ପରାଜୟମାନ
ଭ୍ରାନ୍ତି ମାତ୍ରକ ଯେପରି, ସଂସାର ତେସନ ।
ସିଦ୍ଧ ହେଲେହେଁ ମନର ଏହି ମିଥ୍ୟାଭାବ
ତଥାପି ମନ ନିଜକୁ ବିନାଶି ପାରିବ ।
ଏ ମନକୁ ଆୟତ୍ତ ଯେ କରି ନ ପାରଇ
ଉପଦେଶ ଦେବା ତାକୁ କେଉଁ ନ ଯୋଗାଇ ।
ଯେଣୁ ତାର ମନ ବାହ୍ୟ ବିଷୟେ ନିମଗ୍ନ
ପ୍ରତ୍ୟଗାତ୍ମା ପ୍ରବଣତା ନୁହେ ତାର ଜାଣ ।
ବିଚାର କ୍ଷମତା ତାର ସୂକ୍ଷ୍ମ ବିଷୟରେ
ନ ଥିବାରୁ ଉପଦେଶ ବୃଥା ତା ପକ୍ଷରେ

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ମନ ନିର୍ବାଣ ବର୍ଣ୍ଣନେ ନାମ ୮ମ ସର୍ଗଃ ।**



## ୯ମ ସର୍ଗଃ

## ସ୍ୱ-ଚିତ୍ତ ନିରୂପଣ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ସଂସାର ସାଗରେ ଯେହୁ କରେ ସନ୍ତରଣ ।
ବିଷୟ ସୁଖ ସ୍ରୋତରେ ସଦା ଭାସୁଥାନ୍ତି
ନିଜର ବୁଦ୍ଧିକି ଜଡ଼ବତ କରିଦ୍ୟନ୍ତି ।
ତାଙ୍କ ପ୍ରତି ମୋର ଏହି ଉପଦେଶମାନ
ପ୍ରଯୁଜ୍ୟ ନୁହଇଁ ଜାଣ ହେ ରଘୁନନ୍ଦନ ।
ଚକ୍ଷୁ ଥାଇ ଦୂରଦୃଷ୍ଟି ରୋଗ ଯେ ଭୋଗଇ
ଦୂରେ ଥବା ବସ୍ତୁ ଦେଖି ନ ପାରଇ ସେହି ।
ତାକୁ ଦେଖାଇବା ଫୁଲବନ ଉପବନ
କି ଲାଭ ତହିଁରେ ଅଛି ହେ ରଘୁନନ୍ଦନ ?
ବିବେକ ଶକ୍ତି ସମ୍ପନ୍ନ ଅଟଇ ଯେ ଜନ
ତା ଦୃଷ୍ଟିରେ ମନ ସତ୍ତା ନ ଥାଇଟି ଜାଣ ।
ସହଜେ ମନକୁ ସେହୁ କରିପାରେ ଜୟ
ମନଜୟ ହେତୁ ତାର ଜଗତ ବିଜୟ ।
ସର୍ବଙ୍କ ଆତ୍ମା ସର୍ବଦା ଦରଶନ ଶୀଳ
ଦେଖିପାରେ ସେହି ତାଙ୍କୁ ଯା' ଆତ୍ମା ବିକଳ ।
ସ୍ପନ୍ଦନଶକ୍ତି ସମ୍ପନ୍ନ ପ୍ରାଣ ବିଦ୍ୟମାନ
ବିଷୟ ପାଇଁ ଇନ୍ଦ୍ରିୟେ ହନ୍ତି ଶକ୍ତିମାନ
ମନର ସ୍ଥାନ ସେଠାରେ କେଉଁଠି ଶ୍ରୀରାମ ?
କି କାର୍ଯ୍ୟ ତହିଁ ମନର ଅଛି ବିଦ୍ୟମାନ ।

ସବୁରି ସକଳ ଶକ୍ତି ପରମାତ୍ମା ପ୍ରଭା
ବିଷୟ ପାର୍ଥକ୍ୟ ଜ୍ଞାନେ କି ଯଶ ପାଇବା ?
ମନ ଆଦି ଶବଦରୁ ବିଷୟ ପାର୍ଥକ୍ୟ
କି କାରଣେ ଘଟାଇବା ହେ ରଘୁନାୟକ ?
ଜୀବ ନାମକ ବସ୍ତୁ ବା କାହାକୁ କହିବା
ଅନ୍ଧଭାବେ ଜଗତ୍ ଚଳେ ନ ଜାଣ କି ବାବା ?
ତାକୁ ଯେ ଚଳାଏ ତାଠୁଁ ଆତ୍ମା ଯେ ସ୍ୱତନ୍ତ୍ର
କେବେହେଁ ସତ୍ୟ ନୁହଇ ଏହା ରଘୁନାଥ ।
ଚିତ୍ତ ନାମେ କିଛି ବସ୍ତୁ ନାହିଁ ହେ ରାଘବ
ତାହାର ଶକତି ପୁଣି କେଉଁଠୁ ଆସିବ ?
ବିଷୟାନୁରତ ଆଉ ପଶୁଙ୍କ ମଧ୍ୟରେ
କିଛି ମାତ୍ର ଭେଦ ନାହିଁ ଜାଣ ରଘୁବୀରେ ।
ପଶୁମାନେ ରଜ୍ଜୁ ଦ୍ୱାରା ହୁଅନ୍ତି ଆବଦ୍ଧ
ଅବଶୀକୃତ ଚିତ୍ତରେ ବିଷୟୀ ଯେ ବନ୍ଧ ।
ମୋହ ପଙ୍କେ ପଡ଼ିଣ ସେ ଯାହାକି କରନ୍ତି
ତାର ବିନାଶ କାରଣ ସେ ସବୁ ଅଟନ୍ତି ।
ଅବିଜିତ ରହିଅଛି ଯେଉଁ ବ୍ୟକ୍ତି ଚିତ୍ତ
ତାର ଦୁଃଖ ଅନିବାର୍ଯ୍ୟ ଜାଣ ରଘୁନାଥ ।
ପୃଥିବୀ ପୃଷ୍ଠରୁ ସବୁ ଧୂଳି ଝାଡ଼ି ଦେବ
ଏହି କଥା ଅସମ୍ଭବ ଯେପରି ରାଘବ ।
କୌଣସି ମହାତ୍ମା ମଧ୍ୟ ସହଜରେ ରାମ
ତାଙ୍କ ଦୁଃଖ ନିବାରଣେ ହୋଇବେ ଅକ୍ଷମ ।
ଚିତ୍ତ, ଆତ୍ମାକୁ ଯେ ଜନ ପାରିଅଛି ଜିଣି
ତାର ଦୁଃଖ ଅନାୟାସେ ଦୂର ରଘୁମଣି ।
ତେଣୁ କରି ଜ୍ଞାନୀମାନେ ତହିଁରେ ପ୍ରବୃତ୍ତ
ରହି କରନ୍ତି ଦିବସ ରଜନୀ ଅତୀତ ।
ଯେବେ ବୁଝୁଛ ବସ୍ତୁତଃ ମନ ନାହିଁ ବୋଲି
ମିଥ୍ୟା ମନର କଳ୍ପନା ନ କର କହିଲି ।
ଯଦି କଳ୍ପନା କରିବ ମିଥ୍ୟା ମନପାଇଁ
ବେତାଳ ପରି ତୁମ୍ଭଙ୍କୁ ସଂହାରିବ ସେହି ।
ଆତ୍ମବିସ୍ମୃତି ତୁମର ଯେ ପର୍ଯ୍ୟନ୍ତ ଥିବ
ମନ-ଜନ୍ତୁ ତୁମ୍ଭ ହୃଦେ ଡିଆଁ ମାରୁଥିବ ।
ଆତ୍ମାସ୍ୱରୂପ ତୁମକୁ ହୋଇଛି ଗୋଚର
ସଂକଳ୍ପ ବର୍ଜ୍ଜିତ ମନ କର ପରିହାର ।
ସଂସାର ପାଇଁକି ଯଦି ରଖିବ ଆସକ୍ତି
ଚିତ୍ତବୃତ୍ତି କବଳିତ ହେବ ରଘୁପତି ।
ସଂସାର ତେଜିଲେ ତୁମେ ହେବ ଚିତ୍ତମୁକ୍ତ
ତେବେ ମୋକ୍ଷଲାଭ କରିବ ହେ ରଘୁନାଥ ।
ତ୍ରିଗୁଣର ମିଳନରେ ସଂସାର ବନ୍ଧନ
ତାହାକୁ ତେଜିଲେ ହେବ ଦୁଃଖ ନିବାରଣ ।
ଏହି ସବୁ ତତ୍ତ୍ୱବୁଝି ଆହେ ରଘୁବୀର
ଇଚ୍ଛା ଅନୁସରି ହେବ କାର୍ଯ୍ୟ ତତପର ।
"ତୁମ୍ଭେ ଆମ୍ଭେ" ଏହିପରି ଜ୍ଞାନର ଅସ୍ତିତ୍ୱ
କିଛି ମାତ୍ର ନାହିଁ ଜାଣ ଆହେ ରଘୁନାଥ ।
ନିତାନ୍ତ ମିଥ୍ୟା ଏ ଜ୍ଞାନ ଏହା ଜାଣିକରି
ପର୍ବତ ପରି ନିଶ୍ଚଳ ରହ ଚାପଧାରୀ ।
ଗଗନ ସ୍ୱରୂପ ଯେଉଁ ଆତ୍ମା ବିଶ୍ୱରୂପ
ସାକ୍ଷାତ ଲାଭକରିବ ରଘୁକୁଳ ଦୀପ ।
ପରମାତ୍ମାଠାରୁ ଜଗତ୍ ଅଟଇ ପୃଥକ
ଏହି ଭାବନା ଅଟଇ ଅତି ନିରର୍ଥକ ।
ତେଣୁ ସର୍ବଦା ଏହାକୁ ପରିତ୍ୟାଗ କରି
ସ୍ୱଚ୍ଛ ଭାବେ ଅବସ୍ଥାନ କର ଚାପଧାରୀ ।
ଆତ୍ମାକୁ ଭୁଲି ସଂସାର ଭାବନାରେ ଯେବେ
ରତ ହୁଅ, ଚିତ୍ତ ଆସି ଦୁଃଖ ଦେବ ତେବେ ।
ପରମାତ୍ମା ଭାବ ଛାଡ଼ି ସଂସାରେ ମଗନ
ହେଲେ ସଂସାରକୁ ଦେଖୁଥିବ ଅନୁକ୍ଷଣ ।
ଆତ୍ମାରେ ଚିତ୍ ଶକତି ପୃଥକ ଭାବରେ
ଉଦିତ ହେଲେ ମନର ଜନ୍ମ ହୁଏ ଭଲେ ।
ସେହି ଯେ ପୃଥକ ଭାବ ହେଲେ ତିରୋହିତ
ମନର ବିଲୟ ହୋଇଯାଏ ରଘୁନାଥ ।
ଆତ୍ମାହିଁ ଧରିଛି ବିଶ୍ୱରୂପ ହେ ଶ୍ରୀରାମ
ତେଣୁ କରି ଆତ୍ମା ବିଶ୍ୱଠାରୁ ନୁହେ ଭିନ୍ନ ।
ଏହି ଜ୍ଞାନ ଯେତେବେଳେ ହୁଅଇ ଉଦିତ
ଚିତ୍ତ, ଚୈତ୍ୟ ଭାବ ତେବେ ହୁଏ ଅସ୍ତମିତ ।
"ମୁହିଁ ଅଟେ ଦେହ ପୁଣି ଇନ୍ଦ୍ରିୟ ସମ୍ପନ୍ନ"
ଏହିରୂପ ଜ୍ଞାନ, ଚିତ୍ତ ବୋଲିଣ ଜାଣିମ ।
ଏ ସର୍ବ ଜଗତ ମାତ୍ର ଆତ୍ମାର ଆକୃତି
ଏ ଜ୍ଞାନ ଉଦୟେ ଚିତ୍ତ ବିଲୟ ଲଭନ୍ତି ।
ଏହି ଜ୍ଞାନେ ଯେବେ ଆତ୍ମା ହୁଏ ପ୍ରତିଷ୍ଠିତ
ସୂର୍ଯ୍ୟୋଦୟେ ତମ ସମ ମନ ଯେ ବିଲୁପ୍ତ ।
ମନ-ସର୍ପ ଯେତେଦିନ ଶରୀରରେ ଥିବ
ଆତ୍ମାରେ ଆତ୍ମା ମିଳନ ହୋଇ ନ ପାରିବ ।

ମନରୂପୀ ଯେ ବେତାଳ ତୁମ ହୃଦେ ଅଛି
ପରମାର୍ଥ ଜ୍ଞାନମନ୍ତ୍ରେ ତାକୁ ଦିଅ ପୋଛି ।
ଯେବେ ଜାଣିବ ତୁମର କାହିଁରେ ଆସକ୍ତି
କିବା ତାର ପ୍ରୟୋଜନ ନାହିଁ ରଘୁପତି,
ତେବେ ଜାଣିବ ତୁମର ଚିତ୍ତ ସତ୍ତାହୀନ
ଦୁଃଖାତୀତ ପରଂପଦ ଲାଭ ହେବ ଜାଣ ।
ତେବେ ନିଜେ ନିଜ ମଧ୍ୟେ ହୋଇବ ସଂସ୍ଥିତ
ଏହି ଉପଦେଶ ମନେରଖ ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ସ୍ୱ ଚିତ୍ତ ନିରୂପଣ ବର୍ଣ୍ଣନେ ନାମ ୯ମ ସର୍ଗଃ ।**



## ୧୦ମ ସର୍ଗଃ

## ତୃଷ୍ଣା

କହନ୍ତି ବଶିଷ୍ଠ ଆତ୍ମା ନିଜରୂପ ଭୁଲି
ଚିତ୍ତର ଅନୁବର୍ତ୍ତନ କରେ ବୁଲି ବୁଲି ।
ଅବିଦ୍ୟାଚ୍ଛନ୍ନ ଜ୍ଞାନ ତା ଆଁସିଯାଏ ଯେଣୁ
କଳ୍ପନା ରୂପକ ମନ୍ଦ ଛାୟେ ତାକୁ ତେଣୁ ।
ତେଣୁ କରି ତୃଷ୍ଣା ତାର ହୁଅଇ ଉଦିତ
ଅଜ୍ଞାନ ଅନ୍ଧକାର ତା ହୁଅଇ ବର୍ଦ୍ଧିତ ।
ଅନନ୍ତ ଆତ୍ମାରେ ତୃଷ୍ଣା ହୁଅନ୍ତେ ସ୍ଫୁରଣ
ମହାମୋହ ସୃଷ୍ଟ ହୋଇଥାଏ ରଘୁନାନ ।
ଅନ୍ୟକୁ ଛେଦନ କରେ ସାଧାରଣ ଅସ୍ତ୍ର
ନିଜକୁ ନିଜେ ଛେଦଇ ତୃଷ୍ଣାରୂପୀ ଶସ୍ତ୍ର ।
ମନୁଷ୍ୟ ସଂସାରେ ଯେଉଁ କଷଣ ଭୋଗଇ
ତୃଷ୍ଣାର ଫଳ କେବଳ ଜାଣ ରଘୁରାଇ ।
ମନୋମୟ ଗର୍ତ୍ତେ ଲୁଚି ସେ ତୃଷ୍ଣା କୁକୁରୀ
ନର ଦେହ ରକ୍ତ ମାଂସ ଖାଏ ଘେରିକରି ।
ତୃଷ୍ଣାକ୍ରାନ୍ତ ହୋଇ ନର ଅନ୍ତଃସାରଶୂନ୍ୟ
ଦୁର୍ବଳ ଓ ଦୈନ୍ୟଦଶାଗ୍ରସ୍ତ ହୁଏ ପୁଣ ।
ଯେଉଁ ମନୁଷ୍ୟ ବୃକ୍ଷକୁ ତୃଷ୍ଣାରୂପୀ ଘୁଣ
ଖାଇ ନ ପାରଇ, ସେହି ବୃକ୍ଷ ରଘୁରାଣ,
ପୁଣ୍ୟ ପୁଷ୍ପରାଶିଦ୍ୱାରା ସୁଶୋଭିତ ହୋଇ
ସୁଗନ୍ଧ ବିସ୍ତାର କରେ ଏ ମରତଭୂଇଁ ।
ବିବେକହୀନ ପୁରୁଷ ଚିତ୍ତ ଅରଣ୍ୟରେ
ତୃଷ୍ଣା ସ୍ୱରୂପିଣୀ ନଦୀ ବହେ କାଳେ କାଳେ ।
ଯେ ବିବେକ ଅଟେ ଜ୍ଞାନୋଦୟର କାରଣ
ତୃଷ୍ଣା ଖଡ଼୍‌ଗ ତାକୁ ସଦା କରେ ଛିନ୍ନଭିନ୍ନ ।
ଧାଇଁ ଧାଇଁ ତୃଷ୍ଣା ପଛେ ମୂଢ଼ ବ୍ୟକ୍ତିଗଣ
ଶେଷେ ନରକ ମଧ୍ୟରେ ପଡ଼ନ୍ତି ଯାଇଣ ।
ତେଣୁ ହେ ଶ୍ରୀରାମ ସଙ୍କଳ୍ପକୁ ତେଜିକରି
ତୃଷ୍ଣା ବଇତରଣୀକୁ ଦୂରେ ଦିଅ ପେଲି ।
ସଂକଳ୍ପ ବିହୀନ ମନ ରହି ନ ପାରଇ
ବାଧ୍ୟ ହୋଇ ତୁମ ମନ ଯିବ ଯେ ପଳାଇ ।
'ତୁମେ, ମୁହିଁ, ସେହି, ଏହି' ଏହିପରି ଭାବ
କେବେହେଲେ ହୃଦ ମଧ୍ୟେ ଦିଅ ନାହିଁ ଠାବ ।
ଯେହେତୁ ଏ ଭାବନାରୁ ମନର ଉତ୍ପନ୍ନ
ମୂଳରୁ ମାଇଲେ ଶତ୍ରୁ ହେବ ଉତ୍ପୀଡ଼ନ ।
ଅନହଂକାର ଅସ୍ତ୍ରର ବଳେ ହେ ଶ୍ରୀରାମ
ଅହଂକାର-ତୃଷ୍ଣାବେଳ କର ହେ ଛେଦନ ।
ଚିର ବ୍ରହ୍ମପଦେ ରାମ କର ଅବସ୍ଥାନ
ସାର୍ଥକ କରହେ ତୁମ ମାନବ ଜୀବନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ତୃଷ୍ଣା ବର୍ଣ୍ଣନେ ନାମ ୧୦ମ ସର୍ଗଃ ।**



## ୧୧ଶ ସର୍ଗଃ

## ତୃଷ୍ଣା ଚିକିତ୍ସା

କହନ୍ତି ଶ୍ରୀରାମ ଏବେ ଶୁଣନ୍ତୁ ବ୍ରହ୍ମନ
ଅହଂକାର ତେଜିବାକୁ କହିଲ ଆପଣ ।
ଗଭୀର ତାତ୍ପର୍ଯ୍ୟ ପୂର୍ଣ୍ଣ ସେହି ଉପଦେଶ
ହୃଦୟଙ୍ଗମ କରିଛି ଆହେ ତପୀଈଶ ।
ଅହଂକାର ତେଜିଗଲେ ଶରୀର ଛାଡ଼ିବ
ମୂଳ ବିନା ବୃକ୍ଷ ଯେଣୁ ତିଷ୍ଠି ନ ପାରିବ ।
ଅବଶ୍ୟମ୍ଭାବୀ ଅଟଇ ଶରୀର ପତନ
କ୍ଷୟିତ ହେବ ଯଦ୍ୟପି ଅହଂକାର ଜାଣ ।
ଅହଂକାରକୁ ହେ ଦେବ କିପରି ତେଜିବ
ଅହଂକାର ତେଜି ପୁଣି ଦେହକୁ ରଖିବ ?
ବଶିଷ୍ଠ ବୋଇଲେ ଆହେ ରାଜୀବ ଲୋଚନ
ମୁଁ ଯାହା କହୁଛି ଏବେ କରିବା ଶ୍ରବଣ ।
ବାସନାକୁ ତତ୍ତ୍ୱଜ୍ଞାନୀ ଦି ଭାଗେ କରନ୍ତି
ଜ୍ଞେୟ, ଧ୍ୟେୟ, ବୋଲି ତାଙ୍କୁ ଆଖ୍ୟା ଦେଇଥାନ୍ତି ।

'ମୁଁ ତାହାର, ସେ ମୋହର' ଏପରି ଭାବନା
ତୁମ ମନେ ନିଶ୍ଚେ ଅଛି ରାମ ମହାମନା ।
ଯେତେବେଳେ ତୁମ୍ଭେ ନିଜ ବିଚାର ବଳରେ
ବୁଝିବ ତୁମ୍ଭର କେହି ନୁହନ୍ତି ସଂସାରେ,
ତୁମେ ମଧ୍ୟ ଏ ସଂସାରେ ନୁହତ କାହାର
'ଧ୍ୟେୟ' ପରିତ୍ୟକ୍ତ ହେଲା ବୁଝିବ ତୁମ୍ଭର ।
ଏ ଜଗତ ବ୍ରହ୍ମମୟ ଏହି ଭାବ ଧରି
ମମତାଶୂନ୍ୟ ହୃଦୟେ ଜୀବ ଦେହ ଛାଡ଼ି ।
'ଜ୍ଞେୟ' ବାସନା ତାହାର ହୋଇଥାଏ କ୍ଷୟ
ବୁଝିପାରିଥିବ ନିଶ୍ଚେ ଆହେ ରଘୁରାୟ ।
ଅହଂକାରମୂଳକ ଯେ ଧ୍ୟେୟର ବାସନା
ପରିତ୍ୟାଗ କରିପାରେ ଯେହୁ ମହାମନା ।
ଜୀବନମୁକତ ସେହୁ ବିଦିତ ଜଗତେ
ଅତି କଷ୍ଟ ଅହଂକାର ତେଜିବା ମରତେ ।
ମୂଳବାସନା ତେଜିଣ ଯେଉଁ ବିଜ୍ଞ ନର
ସମତା ପ୍ରାପତ ହୋଇଥାଏ ଏ ସଂସାର,
ଜ୍ଞେୟବାସନା ତ୍ୟାଗୀ ସେ ମୁକତ ପୁରୁଷ
ଦ୍ୱନ୍ଦ୍ୱକାରୀ ବାସନା ତା ହୋଇଛି ନିରାଶ ।
'ଧ୍ୟେୟ' ବାସନା ତେଜିଣ ଜନକାଦି ଯେତେ
'ଜ୍ଞେୟ' ବାସନା ତେଜିଣ ଅନ୍ୟ ଜ୍ଞାନୀ କେତେ ।
ଜୀବନ ମୁକତ ଅବା ବ୍ରହ୍ମେ ଅବସ୍ଥିତି
ଅର୍ଜନ କରି ଅଛନ୍ତି ଆହେ ରଘୁପତି ।
ଏହି ଦ୍ୱିବିଧ ବାସନା-ତ୍ୟାଗ ହେ ଶ୍ରୀରାମ
ସମାନ ଭାବେ ହୁଅନ୍ତି ମୁକ୍ତିର କାରଣ ।
'ଧ୍ୟେୟ ତ୍ୟାଗୀ' ସାଧକ ଯେ ପ୍ରଦୀପ୍ତ ଦେହରେ
'ଜ୍ଞେୟ ତ୍ୟାଗୀ' ସାଧକ ଯେ ଶାନ୍ତି ଶରୀରରେ ।
ଅବସ୍ଥାନ କରି ରହିଥାନ୍ତି ଏ ଜଗତେ
ମୋର କଥା ବୁଝୁଥିବ ରାମ ମହାମତେ ।
"ଧ୍ୟେୟ ତ୍ୟାଗୀ" ରୋଗ ଶୋକ ବିହୀନ ହୋଇଣ
ଏହି ଶରୀରରେ ମୁକ୍ତି ପାଇଥାଏ ଜାଣ ।
"ଜ୍ଞେୟ ତ୍ୟାଗୀ" ସାଧକ ଯେ ଦେହ ତ୍ୟାଗ ପରେ
ମୁକ୍ତି ଲାଭ କରିଥାଏ ଆହେ ରଘୁବୀରେ ।
ହର୍ଷ ବା ବିଷାଦ ଯାର ନାହିଁ ସୁଖେ ଦୁଃଖେ
ମୁକତ ପୁରୁଷ ସେହି ଜାଣ ବିଶ୍ୱମୁଖେ ।
ଇଚ୍ଛା,ଦ୍ୱେଷ ନାହିଁ ଯାର ପ୍ରିୟ ଅପ୍ରିୟରେ
ଅନାସକ୍ତ ହୋଇ କର୍ମ କରେ ଯେ ସଂସାରେ ।
ସେ ମଧ୍ୟ ମୁକ୍ତ ପୁରୁଷ ଆହେ ରଘୁନାଥ
ତାହାର ପ୍ରଶଂସା ସଦା ଗାଏ ଏ ଜଗତ ।
ଶରୀରରେ ଅବସ୍ଥାନ କରି ଯେଉଁ ନର
ହେୟ ଉପାଦେୟ ବୁଦ୍ଧି ନ ରଖେ ତହିଁର,
ସେହୁ ମଧ୍ୟ ଜୀବନ୍ମୁକ୍ତ ହେ ରଘୁନନ୍ଦନ
ଅନ୍ୟ ମମତାହୀନଙ୍କ କଥା ଏବେ ଶୁଣ ।
କ୍ରୋଧ, ଭୟ, ଦ୍ୱେଷ, ଅଭିଳାଷ ଆଦିକରି
ଦୂରୀଭୂତ ହୋଇଛନ୍ତି ହୃଦରୁ ଯାହାରି
ଅନ୍ତରେ ଜାଗ୍ରତ କିନ୍ତୁ ବାହାରେ ସୁଷୁପ୍ତ
କ୍ରିୟାହୀନ ହୋଇଚଳେ ଯେଉଁ ଜ୍ଞାନବନ୍ତ,
ମୁକତ ପୁରୁଷ ତାଙ୍କୁ କହନ୍ତି ପଣ୍ଡିତେ
ସ୍ୱଚ୍ଛନ୍ଦେ ବିହାର କରୁଥାନ୍ତି ସେ ଜଗତେ ।
ବାଲ୍ମୀକ ମୁନି କହନ୍ତି ଶୁଣ ଭରଦ୍ୱାଜ
ବଶିଷ୍ଠ ବଚନ ଶୁଣୁଥିଲେ ରଘୁରାଜ ।
ଇତ୍ୟବସରେ ହୁଅନ୍ତେ ଦିବା ଅବସାନ
ସାୟଂକୃତ୍ୟ ପାଇଁ ସର୍ବେ କଲେକ ପ୍ରସ୍ଥାନ ।
ପରଦିନ ପ୍ରାତଃକାଳେ ସଭାରେ ପ୍ରବେଶ
ହୁଅନ୍ତେ ବଶିଷ୍ଠ ମୁନି ଦେଲେ ଉପଦେଶ ।
**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ତୃଷ୍ଣା ଚିକିତ୍ସା ବର୍ଣ୍ଣନେ ନାମ ୧୧ଶ ସର୍ଗଃ ।**



## ୧୨ଶ ସର୍ଗଃ

## ତୃଷ୍ଣା ଉପଦେଶ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ବାକ୍ୟାତୀତ ସେମାନେ ଯେ ବିଦେହ ମୁକତ ।
ଏକ ରୂପ, ଏକ ରସ ଓ ନିରତିଶୟ
ସ୍ୱ ପ୍ରକାଶ ଭୂମାନନ୍ଦେ ସର୍ବଦା ତନ୍ମୟ ।
ଗୁଣାତୀତ ଅବସ୍ଥାରେ ତାଙ୍କ ଅବସ୍ଥାନ
ବର୍ଣ୍ଣନାତୀତ ଅଟନ୍ତି ତାଙ୍କ ଗୁଣମାନ ।
ତାଙ୍କ କଥା ବର୍ଣ୍ଣିବାକୁ ବାକ୍ୟ ବା ଶବଦ
ଦିଶେ ନାହିଁ କହୁଅଛି ରଘୁକୁଳାନନ୍ଦ ।
ଯେଉଁମାନେ କେବଳହିଁ ଜୀବନ ମୁକତ
ତାହାଙ୍କ କଥା କହୁଛି ଶୁଣ ଦେଇ ଚିତ୍ତ ।
ମୁକ୍ତି ଲଭିବ କିପରି ଶରୀରରେ ଥାଇ
ବର୍ଣ୍ଣନା କରୁଛି ଶୁଣ ଆହେ ରଘୁସାଇଁ ।

ତୃଷ୍ଣା ବାସନା ବିହୀନ ହୋଇ ଯେଉଁ ନର
ବର୍ଣ୍ଣାଶ୍ରମ ଧର୍ମ ଆଚରଇ ନିରନ୍ତର,
ଜୀବନ୍‌ମୁକ୍ତ ଆଖ୍ୟା ତାଙ୍କୁ ଦିଅନ୍ତି ପଣ୍ଡିତେ
ହେତୁ ରଖ ଏହି ତତ୍ତ୍ୱ ଆହେ ରଘୁନାଥେ ।
ସଂସାର ଭୋଗ ଇଚ୍ଛାରେ ଯେଉଁ ଜୀବଗଣ
ବାହାର ବିଷୟ ପ୍ରତି ହୁଅନ୍ତି ଧାବମାନ ।
ସେ ତୃଷ୍ଣା ଶୃଙ୍ଖଳ ବୋଲି ପଣ୍ଡିତଙ୍କ ମତ
ସଂସାର ବନ୍ଧନ-ହେତୁ ବୋଲି ବିବେଚିତ ।
ଜୀବନ ମୁକତ ହୃଦେ ଯା ତୃଷ୍ଣା ଉଦୟ
ଭୋଗ ବାସନା ତ୍ୟାଗରେ ହୁଏ ତା ସହାୟ ।
ବାହାରକୁ ଲଉକିକ ପ୍ରୟୋଜନ ପାଇଁ
ଅବଶ୍ୟ କ୍ରିୟାମାନ ସେ ଆଚରୁଣ ଥାଇ ।
ବିଷୟାନୁରାଗ ହେତୁ ଯେ ତୃଷ୍ଣା ବର୍ଦ୍ଧିତ
ବନ୍ଧନ କାରଣ ସେହୁ ଜାଣ ରଘୁନାଥ ।
ବିଷୟାନୁରାଗ କମେ ଯେଉଁ ତୃଷ୍ଣା ଘେନି
ମୁକତ ପଥେ ଜୀବକୁ ନିଏ ସେହୁ ଟାଣି ।
"ଏହି ବସ୍ତୁ ମୋର ହେଉ" ଅନ୍ତର ଭାବନା
ଭବବନ୍ଧନ ଶୃଙ୍ଖଳ ନାମ କଳପନା ।
ବୁଦ୍ଧିମାନ ପୁରୁଷ ଯେ ସକଳ ପ୍ରକାରେ
ଯାବତ ତୃଷ୍ଣାମାନଙ୍କୁ ପରିତ୍ୟାଗ କରେ ।
ତେଣୁ ତୁମେ ଦେହ ଆଶା, ମୁକତି କାମନା
ସୁଖ ଦୁଃଖ ଭାବ ତ୍ୟାଗ କରିଦିଅ କିନା ।
ସ୍ଥିର ସାଗର ସଦୃଶ ଗମ୍ଭୀର ଭାବରେ
ଅବସ୍ଥାନ କରି ରହ ମାନସ ଶାନ୍ତିରେ ।
ଅଜର, ଅମର ପରମାତ୍ମାଙ୍କୁ ଚିହ୍ନିଣ
ଜନମ ମୃତ୍ୟୁ ଭୟରୁ ଲଭ ପରିତ୍ରାଣ ।
ନୁହନ୍ତି ଏ ଦୃଶ୍ୟମାନ ବସ୍ତୁଏ ତୁମର
ଜାଣିରଖ ତୁମେ ମଧ୍ୟ ନୁହ ହେ କାହାର ।
ତୁମ ବ୍ୟତୀତ ସକଳ ବସ୍ତୁ ଯେ ଅସତ୍ୟ
ପରମାତ୍ମରୂପ ହେତୁ ସରବେ ଯେ ସତ୍ୟ ।
ତେଣୁ ଏ ଅସତ୍ୟ ବିଶ୍ୱ ଥାଇ ମଧ୍ୟ ନାହିଁ
ଏହା ଭାବି ଦୃଶ୍ୟାତୀତ ଭାବେ ଥାଅ ରହି ।
ତୃଷ୍ଣା ଉତ୍ପନ୍ନ ତୁମ୍ଭର କିପରି ବା ହେବ
ଅଙ୍କୁରୋଦ୍‌ଗମ ପୂର୍ବରୁ ତୃଷ୍ଣା ନାଶଯିବ ।
ସତ ଅସତ ବିଚାରଶୀଳ ଯେଉଁମାନେ
ଚତୁର୍ବିଧ ସିଦ୍ଧାନ୍ତାଦି କରନ୍ତି ସେମାନେ ।

ପିତାମାତାଠାରୁ ଜାତ ଏହି ମୋ ଶରୀର
ପ୍ରଥମ ଭ୍ରମ ସିଦ୍ଧାନ୍ତ ହେତୁ ବନ୍ଧନର ।
ସର୍ବ ଭାବାତୀତ ମୁହିଁ ସୂକ୍ଷ୍ମାଦପି ସୂକ୍ଷ୍ମ
ଦ୍ୱିତୀୟ ସିଦ୍ଧାନ୍ତ ଏହା ମୋକ୍ଷର କାରଣ ।
ସକଳ ଦୃଶ୍ୟବସ୍ତୁହିଁ ମୁହିଁ ଏକା ଜାଣ
ତୃତୀୟ ସିଦ୍ଧାନ୍ତ ଏହା ମୁକତି କାରଣ ।
ମୁହିଁ ଏବଂ ଏ ଜଗତ ସକଳ ଯେ ଶୂନ୍ୟ
ତିନିକାଳେ ଅଟନ୍ତି ଏ ଗଗନ ସମାନ ।
ଏହି ଚତୁର୍ଥ ସିଦ୍ଧାନ୍ତ ମୁକ୍ତି ଦିଏ ଜାଣ
ଚାରି ସିଦ୍ଧାନ୍ତ କହିଲି ହେ ରଘୁନନ୍ଦନ ।
ପ୍ରଥମ ସିଦ୍ଧାନ୍ତ ହେଲା ବନ୍ଧନ କାରକ
ଶେଷ ତିନୋଟି ଅଟନ୍ତି ମୁକତି ସାଧକ ।
ବିଶୁଦ୍ଧ ସକଳ୍ପ ମଧ୍ୟ ଯେଣୁ ତାଙ୍କ ଜନ୍ମ
ମୁକତି ବାଟ ଫିଟାଉଥାନ୍ତି ଅନୁକ୍ଷଣ ।
ବନ୍ଧନ ଜନକ ତୃଷ୍ଣା ଥାଇ ପ୍ରଥମରେ
ତେଣୁ ସେ ବନ୍ଧନ ହେତୁ ହୁଏ ରଘୁବୀରେ ।
ଅପର ତିନୋଟି ତୃଷ୍ଣା ଯେହେତୁ ନିର୍ଦ୍ଦୋଷ
ତହିଁ ବିହରନ୍ତି ଜୀବନ୍ମୁକ୍ତ ଯେ ପୁରୁଷ ।
ସକଳ ବସ୍ତୁ ଯେ ମୁହିଁ ତୃତୀୟ ସିଦ୍ଧାନ୍ତ
ଯେ ଘେନିସେହି ସିଦ୍ଧ୍ୟାନ୍ତେ ମୋ ବୁଦ୍ଧି ଆଶ୍ରିତ
ତେଣୁ ସଦା ସର୍ବଦା ମୁଁ ରହିଛି ନିଶ୍ଚିନ୍ତ
କୌଣସି ବିଷାଦ ମୋତେ ନ କରେ ଆକ୍ରାନ୍ତ ।
ଅଧଃ, ଉର୍ଦ୍ଧ୍ୱ ପୁଣି ସର୍ବ ଦିଗ ବିଦିଗରେ
ଆତ୍ମ ମହିମାହିଁ ବିରାଜଇ ସବୁଠାରେ ।
ଯାହା ଦେଖେ ତାକୁ ଆତ୍ମା ରୂପେ ମନେକରି
ଉନ୍ମୁକ୍ତ ମୋ ହୃଦଗ୍ରନ୍ଥି ଜାଣ ଚାପଧାରୀ ।
ସର୍ବାନ୍ତବାଦୀ ଅଟନ୍ତି ଯେଉଁ ସାଧୁଗଣ
ଆତ୍ମାକୁ ଦେଇଣଥାନ୍ତି ଏପରି ଆଖ୍ୟାନ ।
ବ୍ରହ୍ମା, ଶିବ, ଈଶାନ, ପୁରୁଷ ଏହିମାନ
ଆତ୍ମା ସ୍ୱରୂପେ ପ୍ରସିଦ୍ଧ ଅଟନ୍ତି ସେ ଜାଣ ।
ପରମାର୍ଥିକ ଦୃଷ୍ଟିରୁ ଦେଖିଲେ ଜଗତ
ବୋଧହୁଏ ନାହିଁ କିଛି ସତ ବା ଅସତ ।
ଯେ ଯାଏ ସିନ୍ଧୁ ବ୍ୟାପିଛି, ମର୍ତ୍ତ୍ୟ ବା ପାତାଳ
ଜଳ ଛଡ଼ା ଅନ୍ୟ କିଛି ନାହିଁ ତା ମଧ୍ୟର ।
ଜଗତରେ ଯାହା କିଛି ଦେଖୁଛ ହେ ରାମ
ବ୍ରହ୍ମ ଛଡ଼ା ଅନ୍ୟ କିଛି ନୁହେ ତା ଜାଣିମ ।

ଭିନ୍ନ ହେଲେହେଁ ଆକାରେ ଅଳଙ୍କାରମାନ
ଦ୍ରବ୍ୟ ଦୃଷ୍ଟିରେ ସମସ୍ତେ ଅଟନ୍ତି ସୁବର୍ଣ୍ଣ ।
ସକଳ ବସ୍ତୁ ଯାହାକି ଦେଖ ଏ ଜଗତେ
ଆତ୍ମାଛଡ଼ା ଅନ୍ୟ କିଛି ନୁହେଁ ରଘୁନାଥେ ।
ପୁତ୍ର ମିତ୍ର ଆଦିଙ୍କର ଶୁଭ ଆଗମନେ
ସୁଖେ ଭାସିଯିବ ନାହିଁ ଜାଣ ରଘୁନାନେ ।
ବିୟୋଗ ଯଦି ଘଟଇ ସେହିମାନଙ୍କର
ଦୁଃଖର କାରଣ କିଛି ନାହିଁ ରଘୁବୀର ।
ଅଦ୍ୱୈତ ଭାବଆପନ୍ନ ହୋଇ ତୁମେ ରାମ
ଅଦ୍ୱୈତ ଭାବେ ସଂସ୍ଥିତ ରହ ଅନୁକ୍ଷଣ ।
ବର୍ଣ୍ଣାଶ୍ରମ କର୍ମ ଯେବେ କରିବ ନିର୍ବାହ
ଏହି ଅଦ୍ୱୈତ ଭାବକୁ ତେଜିକରି ରହ ।
ତେବେ ତୁମେ ଏ ଅଦ୍ୱୈତ-ଦ୍ୱୈତ ଭାବାପନ୍ନ
ଅକ୍ଳେଶେ ହୋଇପାରିବ ହେ ରଘୁ ନନ୍ଦନ ।
ସଂସାର ଭାବନାମୟ ଏ ଭବ ଭୂମିରେ
କେବେହେଲେ ନିପତିତ ନୁହ ରଘୁବୀରେ ।
ତାହାହେଲେ ଗର୍ତ୍ତେ ନିପତିତ ହସ୍ତୀପରି
ଦୁର୍ଦ୍ଦଶାଗ୍ରସ୍ତ ହୋଇବ ଆହେ ଧନୁର୍ଦ୍ଧାରୀ ।
କେବେହେଲେ ଦ୍ୱୈତ ଭାବ ନ ଥାଇ ଆତ୍ମାରେ
ଯାହା ଦେଖୁଛ ଏକତ୍ୱ ନ ଥିଲେ ତହିଁରେ ।
ସେ ସବୁକୁ ଆତ୍ମମୟ ମଣ ହେ ଶ୍ରୀରାମ
ଅଦ୍ୱୈତ ବୋଧରେ କର ତାଙ୍କ ଦରଶନ ।
ବାସ୍ତବରେ ମୁଁ ନାହିଁ କି ଜଗତ ବି ନାହିଁ
ଶାନ୍ତ ଆତ୍ମାରେ ଏ ଦୁଇଭାବ ଭାସୁଥାଇ ।
ଜଗତ ଜଗଦାକରେ ନିତ୍ୟହିଁ ଅସତ
ବିଜ୍ଞାନମୟ ଆତ୍ମାରେ ଏ ଜଗତ ସତ ।
ଅମୃତ ସ୍ୱରୂପ, ସର୍ବ ପ୍ରକାଶ, ପ୍ରକାଶ
ଜୀବର ଜୀବନ; ନିର୍ବିକାର ଯେ ପୁରୁଷ ।
ଅନାଦି, ଅଚିନ୍ତ୍ୟ, ଅଜ, ଇନ୍ଦ୍ରିୟ ଅତୀତ
କାରଣ ବିହୀନ, ସର୍ବ କାରଣ, ଅନନ୍ତ
ଏହି ସକଳ ନାମରେ ବ୍ରହ୍ମ ଅଭିହିତ ।
ଗୁଣାତୀତ ଗୁଣମାନ କେ କରିବ ଅନ୍ତ
ତୁମେ, ଆମେ ପୁନରପି ଈଶ୍ୱର, ଜଗତ
* ସେ ବିତତ ଚିତ୍-ପ୍ରକାଶ ମଧ୍ୟରେ ସଂସ୍ଥିତ ।

ଯାବତୀୟ ଅନୁଭବ କାରଣ ଯେ ସେହି
ସ୍ୱାନୁଭବଗମ୍ୟ ଚିତ୍ ଆଶ୍ରୟ ଅଟଇ ।
କୁଟସ୍ଥ ବ୍ରହ୍ମ ବୋଲିଣ ନିଶ୍ଚିତ ପ୍ରତ୍ୟୟ
ତୁମ୍ଭର ହେଉ ମୋ ଇଚ୍ଛା ଆହେ ରଘୁରାୟ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ତୃଷ୍ଣା ଉପଦେଶ ବର୍ଣ୍ଣନେ**
**ନାମ ୧୨ଶ ସର୍ଗଃ ।**



## ୧୩ଶ ସର୍ଗଃ

## ଜୀବନମୁକ୍ତ

କହନ୍ତି ବଶିଷ୍ଠ ଶୁଣ ରାମ ଧନୁର୍ଦ୍ଧର
ଜୀବନମୁକତ ମାନଙ୍କର ବ୍ୟବହାର ।
ଜଗତର ଜନ୍ମ, ଜରା, ମୃତ୍ୟୁ ଦେଖିକରି
ଏସବୁ ନିତାନ୍ତ ତୁଚ୍ଛ ମନରେ ବିଚାରି,
ସକଳ କାର୍ଯ୍ୟେ ସେମାନେ ହୋଇ ଆସ୍ଥାବାନ
ଧ୍ୟେୟ ବାସନା ସକଳ ମନରୁ ତେଜିଣ,
ମଧ୍ୟ ଭାବ ଧରି କରିଥାନ୍ତି ଅବସ୍ଥାନ
ଉଦ୍‌ବିଗ୍ନ ହୁଅନ୍ତି ନାହିଁ କୌଣସି କାର୍ଯ୍ୟେଣ ।
ବିବେକ ଦୀପରେ ଆତ୍ମା ଯେଣୁ ଆଲୋକିତ
ଉଦ୍‌ବିଗ୍ନତା ନ ଦେଖାନ୍ତି ସେହୁ କଦାଚିତ ।
ସର୍ବାତୀତ ବ୍ରହ୍ମପଦେ ଏକମାତ୍ର ଆଶା
ଚନ୍ଦ୍ରପରି ସୁଶୀତଳ ତାଙ୍କ ହୃଦ ଦଶା ।
କୌଣସି ବିଷୟେ ନୁହନ୍ତି ସେ ପୁଲକିତ
ପୁଣି କୌଣସି ବିଷୟେ ନୁହନ୍ତି ଦୁଃଖିତ ।
ତେଣୁ ମୂଢ଼ ବ୍ୟକ୍ତିପରି ସଂସାରେ ସେମାନେ
ଅବସାଦ ଗ୍ରସ୍ତ ନ ହୁଅନ୍ତି କଦାଚନେ ।
ସେହି ଦୟାଳୁ ସରଳ ହୃଦ ମୁନିଗଣ
ଶତ୍ରୁ ମିତ୍ରେ ସମବୁଦ୍ଧି କରନ୍ତି ସ୍ଥାପନ ।
ଗୁରୁଜନମାନଙ୍କଠି ରଖି ଅନୁରାଗ
କର୍ତ୍ତବ୍ୟ କରମମାନ ସାଧନ୍ତି ରାଘବ ।
ମୋହଗ୍ରସ୍ତ କରିବାକୁ ତାଙ୍କୁ ଏ ସଂସାର
ସର୍ବଦା ଅକ୍ଷମ ରହେ ଆହେ ରଘୁବୀର ।
ଇଷ୍ଟ ପ୍ରାପ୍ତିରେ ଆନନ୍ଦ ନୁହନ୍ତି ସେମାନେ
ଅନିଷ୍ଟରେ ଦ୍ୱେଷ ନ ଆସଇ ତାଙ୍କ ମନେ ।

* ବିତତ- ବ୍ୟାପ୍ତ, ବିସ୍ତୃତ

ପ୍ରିୟଜନ ପ୍ରିୟବସ୍ତୁ ବିୟୋଗେ ସେମାନେ
ଶୋକାକୁଳ ହୋଇ ନ ପଡ଼ନ୍ତି କଦାଚନେ ।
ବାସନା ରଖନ୍ତି ନାହିଁ ଅଭିଷ୍ଟ ବସ୍ତୁରେ
ଅବଶ୍ୟ କର୍ମ ସାଧନ୍ତି ମୌନ ଅବସ୍ଥାରେ ।
ସଂସାର ବେଭାରେ କେଭେଁ ନୁହନ୍ତି ମୁଗଧ
ଆକସ୍ମିକ ଘଟନାରେ ନୁହନ୍ତି ସେ ସ୍ତବ୍ଧ ।
ତାଙ୍କୁ ଯଦି କଉଣସି ପ୍ରଶ୍ନ ପଚାରିବ
ମଧୁର ବାକ୍ୟେ କେବଳ ଉତ୍ତର ମିଳିବ ।
ଅଜିଜ୍ଞାସିତ ଭାବରେ କୌଣସି ବଚନ
କହିବାକୁ ଇଚ୍ଛୁକ ନୁହନ୍ତି କଦାଚନ ।
ଜୀବ ଅନ୍ତର୍ଗତ ଭାବ ଯେଣୁ ସେ ଜାଣନ୍ତି
ସାଂସାରିକ ଭାବ କେଭେଁ ମଗ୍ନ ନ ହୁଅନ୍ତି ।
ଏମନ୍ତ ଲୌକିକ କର୍ମ ନାହିଁ ଏ ଜଗତେ
ଯାହା କି ସେ ନ ଜାଣନ୍ତି ନିଜ ହୃଦଗତେ ।
ଚିତ୍ତ ବଶୀଭୂତ କରି ଯେ ମହାତ୍ମା ଗଣ
ଅରଜନ କରିଥାନ୍ତି ବ୍ରହ୍ମ ଦରଶନ ।
ସେ ସବୁ ମହାତ୍ମା ମାନଙ୍କର ଯେ ସ୍ୱଭାବ
ବର୍ଣ୍ଣନ କରି କହିଲି ତୁମକୁ ରାଘବ ।
ଚିତ୍ତକୁ ବଶ ନ କରି ପାରି ଯେଉଁ ଜନ
ବିଷୟ ଭୋଗରେ ହୋଇଥାଏ ସେ ମଗନ,
କିସ ଯେ ଅଭିଷ୍ଟ ସେହି ମୂର୍ଖ ଜନଙ୍କର
କିଛି ଜାଣି ନାହିଁ ମୁଁ କୌଶଲ୍ୟା କୁମର ।
ବିବେକ ଅଭାବ ଜାଣ ତାଙ୍କ ଅଳଙ୍କାର
ରମଣୀ, ଅର୍ଥ ହିଁ ପ୍ରିୟ ବସ୍ତୁ ତାହାଙ୍କର ।
ସେହି ଅର୍ଥ ବ୍ୟୟେ ଯେଉଁ ଯଜ୍ଞ କର୍ମମାନ
ଆଚରିଣ ଥାନ୍ତି ଦମ୍ଭ, ମାତ୍ସର୍ଯ୍ୟ, ବଳେଣ ।
ନାନା ଅଭିସନ୍ଧି ମଧ ଥାଏ ଯେ ତହିଁରେ
କ୍ଷଣଭଙ୍ଗୁର ସେ କର୍ମମାନ ରଘୁବୀରେ ।
ସୁଖ ଓ ଦୁଃଖ ଦାୟକ ସେହି କର୍ମମାନ
ସେଥିପାଇଁ ନାହିଁ ମୋର କିଛି ହିଁ ବଚନ ।
ଧେୟ ବାସନାକୁ ପରିହର ହେ ଶ୍ରୀରାମ
ପୂର୍ଣ୍ଣ ଜ୍ଞାନ ଆଶ୍ରୟରେ କଟୁ ତୁମ ଦିନ ।
ଜୀବନ ମୁକତ ଭାବେ କର ବିଚରଣ
ଆଶା, ବାସନା, ଆସକ୍ତି ଅନ୍ତରୁ ତେଜିଣ ।
ବାହାରେ କରହେ କର୍ମ ଅନୁଷ୍ଠାନ ମାନ
ସର୍ବତ୍ୟାଗୀ ହୁଅ ରାମ ଅନ୍ତର ଦେଶେଣ ।
ଜାଗତିକ ବ୍ୟବହାର ବାହାରକୁ ଧରି
ଉଦାର, ମଧୁରାଚାରୀ ହୁଅ ଚାପଧାରୀ ।
ସୂକ୍ଷ୍ମ ରୂପେ ଏହି ସାଂସାରିକ ଭାବମାନ
ବିଚାର କର କହୁଛି ହେ ରଘୁନନ୍ଦନ ।
ସର୍ବୋତ୍‌କୃଷ୍ଟ ନିବନ୍ଧନ ଯେ ପଦ ପରମ୍
ଆଶ୍ରୟ କରି ଚଳ ହେ କୌଶଲ୍ୟାନନ୍ଦନ ।
ଅନ୍ତରେ ନୈରାଶ୍ୟ ଭାବ ବାହାରେ ଆଶାୟୀ
ଏ ଭାବ ଅନୁବର୍ତ୍ତନ କର ରଘୁରାଇ ।
ଅନ୍ତରରେ ନିରୁଦ୍‌ବେଗ ବାହାରେ ଉଦ୍‌ବେଗ
ଦେଖାଇ ପାରିଲେ ଲାଭ ସକଳ ସୁଯୋଗ ।
ଅନ୍ତରେ ନିଷ୍କ୍ରିୟ ରହ ସକଳ କର୍ମରେ
ବାହାରେ ସକ୍ରିୟ ରହ ସର୍ବ କରମରେ ।
ସକଳ ବିଷୟ ମର୍ମ ତୁମ ଅବଗତ
ସେହି ମର୍ମଦୃଷ୍ଟି ଧର ଦଶରଥସୁତ ।
ଯାହା ଇଚ୍ଛା ତାହା କର ଇହ ସଂସାରରେ
ଏହି ରୀତି ମାନି ଚଳ ଆହେ ରଘୁବୀରେ ।
ସନ୍ତୋଷ ଓ ଅସନ୍ତୋଷ ଉଭୟ ଅତୀତ
ପରମ ପଦରେ ରହ ସର୍ବଦା ସଂସ୍ଥିତ ।
ସନ୍ତୋଷଜନକ କର୍ମେ କୃତ୍ରିମ ସନ୍ତୋଷ
ଅସନ୍ତୋଷରେ ଦେଖାଅ କୃତ୍ରିମ ନୈରାଶ୍ୟ ।
ଅହଂକାର ବିବର୍ଜିତ ହୋଇ ରଘୁନାଥ
ଆଶ୍ରୟ କର ହେ ତୁମେ ସୁନିର୍ମଳ ପଥ ।
ଦେଦୀପ୍ୟମାନ ରହ ହେ ଚିଦାକାଶ ମଧ୍ୟେ
ଏହି ମୋର ଉପଦେଶ ଫଳୁ ରଘୁନିଧେ ।
ନିଷ୍କଳଙ୍କ ଚନ୍ଦ୍ରଠାରୁ ଅଧିକ ଉଜ୍ଜ୍ୱଳ
ତେବେ ଦେଖାଯିବ ତୁମେ ଆହେ ରଘୁବାଳ ।
ଆଶା ବନ୍ଧନରୁ ତୁମେ ରହ ହେ ମୁକତ
ସବୁଥିରେ ସମଦର୍ଶୀ ହୁଅ ରଘୁନାଥ ।
ବର୍ଣ୍ଣାଶ୍ରମ ଧର୍ମ ପାଳି ନିଷ୍କାମ ଭାବରେ
ସୁଖେ ଅବସ୍ଥାନ କର ଆହେ ରଘୁବୀରେ ।
ଦେହୀ ଆତ୍ମାର ନ ଥାଇ କୌଣସି ବନ୍ଧନ
ତେଣୁ ମୁକ୍ତି ବୋଲି କିଛି ନାହିଁ ରଘୁରାଣ ।
ତେଣୁ ପୁନଃ ପୁନଃ ଜନ୍ମ, ଜରା ଓ ମରଣ
ଐନ୍ଦ୍ରଜାଲିକ ବ୍ୟାପାର ସହିତ ସମାନ ।
ତୀବ୍ର ରୌଦ୍ରେ ଭ୍ରମବଶ ଜଳାଶୟ ଜ୍ଞାନ
ଅଜ୍ଞାନ ବଶରୁ ତଥା ଏ ସଂସାର ଭ୍ରମ ।

କିଛି ହିଁ ସତ୍ୟତା ନାହିଁ ଏଥିର ମଧ୍ୟେଣ
ଯଥା ଢୋଲ ଢାଉଁ ଢାଉଁ, ଭିତରଟା ଶୂନ୍ୟ ।
ଆତ୍ମା ଅଟେ ସର୍ବବ୍ୟାପୀ, ଅସଙ୍ଗ, ଅଦ୍ୱୈତ
ତାହାର ବନ୍ଧନ ଅବା ହେବ କେଉଁ ମତ ?
ବନ୍ଧନ ନାହିଁ ଯାହାର ମୁକତି ତା କାହିଁ ?
କାରଣହୀନ କାର୍ଯ୍ୟର ସମ୍ଭାବନା ନାହିଁ ।
ମିଥ୍ୟା ଜ୍ଞାନରୁ ସଂସାର ଭ୍ରମର ଉଦୟ
ତତ୍ତ୍ୱଜ୍ଞାନ ଉଦୟରେ ସେ ଭ୍ରମ ବିଲୟ ।
ଆତ୍ମାକୁ ଚିହ୍ନି ହୋଇଲେ ଅହଂକାର ଶୂନ୍ୟ
ନିର୍ମଳ ଭାବେ ରହିବ ଯେସନ ଗଗନ ।
ଭୋଗ୍ୟବସ୍ତୁ ଆଉ ମଧ୍ୟ ଜାଗତିକ ଭାବ
ବନ୍ଧୁ, ପରିଜନ, ଶୁଭାଶୁଭ କର୍ମ ସର୍ବ
ଆତ୍ମାର ଏହାଙ୍କ ସହ ନ ଥାଇ ସମ୍ପର୍କ
ଏମାନଙ୍କ ପାଇଁ ଶୋକ କିପାଁ ଆବଶ୍ୟକ ?
ଆତ୍ମା ଏକମାତ୍ର ସତ୍ୟ, ଆନନ୍ଦ ଆକର
ଏଥିରେ ନିଶ୍ଚୟ ଯେବେ ବିଶ୍ୱାସ ତୁମ୍ଭର,
ତେବେ ତୁମ୍ଭ କଉଣସି ଭୟ ନାହିଁ ରାମ
ଜଗତ୍‌ଭ୍ରାନ୍ତିରେ ତୁମ୍ଭର ଭୀତି କି କାରଣ ?
ଯଦି କେହି କିଛି ନୁହେ ପୁତ୍ର କଳତ୍ରାଦି
କିପାଁ ଶୂନ୍ୟ ପଦାର୍ଥରେ ସମ୍ବନ୍ଧ ସମ୍ପାଦି ।
କିପାଁଇ ଚିନ୍ତିତ ହେବ ତୁମେ ତାଙ୍କ ପାଇଁ
ଅତୀତ ଜନ୍ମେ ଯା'ଥିଲ ଏବେ ମଧ୍ୟ ତା'ହିଁ ।
ଭବିଷ୍ୟେ ସେହି ଅବସ୍ଥା ଘଟିବ ନିଶ୍ଚୟ
ଏହା ସତ୍ୟ ବୋଲି ଯେବେ ମଣ ରଘୁରାୟ ।
ଅତୀତ ଜନ୍ମର କୁଟୁମ୍ବାଦିଙ୍କ ନିମିତ୍ତ
ଶୋକ ପ୍ରକାଶ ନ କର କିପାଁ ରଘୁନାଥ ?
ପୂର୍ବେ ଜନ୍ମିଥିଲ ବର୍ତ୍ତମାନ ଜନମିଛ
ଭବିଷ୍ୟତେ ଜନ୍ମହେବା କଥା ଯେବେ ମିଛ,
ଶୋକର କାରଣ କିସ କହ ବାବୁ ଏବେ
ଅଶୋଚ୍ୟ ପାଇଁ ଶୋଚନା କର କିପାଁ ତେବେ ?
ଜାଗତିକ ବ୍ୟାପାରରେ ଦୁଃଖ ଅନୁଚିତ
ସନ୍ତୋଷରେ ସତକର୍ମ କରିବା ଉଚିତ ।
ଦୁଃଖିତ ହେବାକୁ ତୁମକୁ ମୁଁ କହୁନାହିଁ
କିମ୍ବା ସୁଖ ଅନ୍ୱେଷଣ ପାଇଁ ନ ବୋଲାଇ ।
ଆତ୍ମା ତୁମ ଯେଣୁ ସର୍ବ ସ୍ୱରୂପ ଅଟଇ
ସୁଖ ଦୁଃଖେ ସମ ରହ ଆହେ ରଘୁସାଇଁ ।
ନିର୍ମଳ ଆକାଶ ପରି ତୁମେ ଯେ ଅନନ୍ତ
ସେହି ଆତ୍ମ ସ୍ୱରୂପରେ ତୁମେ ବିରାଜିତ ।
ଆଲୋକମୟ ସ୍ଥାନରେ ଅନ୍ଧକାର ପରି
ନିତ୍ୟ ଶୁଦ୍ଧ ସପ୍ରକାଶ ଆତ୍ମାରେ ତୁମ୍ଭରି ।
ତମ ଗୁଣାତ୍ମକ ଶୋକ ଦୁଃଖ ପାଇଁ ସ୍ଥାନ
ରହିତ ପାରିବ ନାହିଁ ହେ ରଘୁନନ୍ଦନ ।
ଜଳ ତରଙ୍ଗ ସଦୃଶ ଏହି ଯେ ଜଗତ
ପରସ୍ପର ପରସ୍ପରେ ରହିଛି ଜଡ଼ିତ ।
ଜଳରେ ତରଙ୍ଗମାନ ଉଠିଲାର ପରି
ପରସ୍ପର ପରସ୍ପରେ ଜଡ଼ିତ ଯେପରି ।
ସେହିପରି ଚାଲୁଅଛି ଏହି ଯେ ଜଗତ
ଏହାର ସୀମା ଯେ କାହିଁ କହ ରଘୁନାଥ ।
ଚକ୍ରପରି ଘୂରୁଛି ଏ ଚଞ୍ଚଳ ଜଗତ
ଅଧଃ ଉର୍ଦ୍ଧ୍ୱଗାମୀ କେବେ ଉର୍ଦ୍ଧ୍ୱ ଅଧୋଗତ,
କେତେବେଳେ ସ୍ୱର୍ଗବାସୀ ନରକେ ପଡ଼ଇ
କେତେବେଳେ ନର୍କବାସୀ ସ୍ୱର୍ଗଲାଭ ପାଇ ।
କେତେବେଳେ ମହତ୍ ବ୍ୟକ୍ତି କୃପଣ ହୁଅନ୍ତି
କେତେବେଳେ କୃପଣ ବି ମହତ୍ତ୍ୱ ଲଭନ୍ତି ।
ପ୍ରାଣୀମାନେ କେତେବେଳେ ଅଧୋଗତି ପାନ୍ତି
କେତେବେଳେ ପୁଣି ଉର୍ଦ୍ଧ୍ୱ ଗତିକି ଲଭନ୍ତି ।
ପୁଣି କେତେବେଳେ ଇତସ୍ତତଃ ହୋଇକରି
ଭ୍ରମଣ କରୁଣ ଥାନ୍ତି ଏହି ବସୁନ୍ଧରୀ ।
ଏହି କାରଣରୁ ଜାଣ ଏହି ଜଗତର
ନିର୍ମଳ ବିଶୁଦ୍ଧ ଚିତ୍ତ ମିଳିବା ବିରଳ ।
ପରମ ସୌଭାଗ୍ୟବାନ ଯାହାକୁ ଦେଖୁଛ
ପରମ ମିତ୍ର ବୋଲିଣ ଯାହାକୁ ମଣୁଛ,
କିଛିକାଳ ପରେ ତାଙ୍କ ଅସ୍ତିତ୍ୱ ଶ୍ରୀରାମ
ରହି ନ ପାରିବ ଜାଣ ଏହି ମର୍ତ୍ତ୍ୟ ଧାମ ।
ଆତ୍ମୀୟ ବା ଅନାତ୍ମୀୟ ପର ବା ଆପଣା
ତୋର, ମୋର ଆଦି ସଂସାରର ବୁଝାମଣା ।
ଆକାଶେ ଦ୍ୱିତୀୟ ଚନ୍ଦ୍ର ଦର୍ଶନ ଯେପରି
ଅଳୀକ ଅଟଇ ରାମ ଏକଥା ସେପରି ।
ଦୂରୀଭୂତ ହେଉ ତୁମ ମିଥ୍ୟା ଦରଶନ
ବାସନାର ଭାରେ ପରିଶ୍ରାନ୍ତ ନୁହ ରାମ ।
ବାସନାନାଶିନୀ ବୁଦ୍ଧି ହୁଅନ୍ତେ ଉଦିତ
ସଂସାର ଲାଳସା ହେବ ଉପଶମ ପ୍ରାପ୍ତ ।

ଏହି ମୋର ବନ୍ଧୁ ପୁଣି ଏ ମୋର ଅଇରୀ
ଲଘୁଚିତ୍ତ ଜନ ଏହା ହୃଦେ ଥାଏ ଧରି ।
ମହାତ୍ମାଙ୍କ ବୁଦ୍ଧି ଏହି ଅଜ୍ଞାନାବରଣେ
ଆବୃତ ହୋଇ ନ ଥାନ୍ତି ରାମ କଦାଚନେ ।
ଏପରି ବ୍ୟକ୍ତି ବା ବସ୍ତୁ ନାହିଁ ଏ ଜଗତେ
ଯା' ସହ ମୋର ସମ୍ପର୍କ ନାହିଁ କଦାଚିତେ ।
ଯେବଣ ବସ୍ତୁ ମୋହର ନୁହେ ଏ ମରତେ
ଅସ୍ତିତ୍ୱ ତାର ବା ରହିପାରେ କେଉଁ ମତେ ?
ଧୀରମତୀ ଜନ ହୃଦେ ଏହି ରୂପ ଜ୍ଞାନ
ନିତ୍ୟହିଁ ଦେଦୀପ୍ୟମାନ ହେ ରଘୁନନ୍ଦନ ।
କଉଣସି ମତେ କିଛି ମିଥ୍ୟା ଆବରଣ
ଆବୃତ କରି ନ ପାରେ ଏହି ସତ୍ୟଜ୍ଞାନ ।
ଚିଦାକାଶ ପରି ଯାର ହୃଦୟ ମହତ
ଉଦୟାସ୍ତ ତାର କିଛି ନାହିଁ ରଘୁନାଥ ।
ସ୍ୱରୂପେ ସଂସ୍ଥିତ ହୋଇ ସେ ମହତ ଜନ
ନିଜକୁ ସବୁରିଠାରେ କରେ ଦରଶନ ।
ତୁମଠି ନିତ୍ୟ ସଂଯୁକ୍ତି ଏ ସକଳ ଜୀବ
ସ୍ୱତନ୍ତ୍ର ନୁହନ୍ତି ତୁମ ଠାରୁ ସେ ଜାଣିବ ।
ତୁମ ସହ ଏ ସକଳେ ଏକୀଭୂତ ରାମ
ତାଙ୍କୁ ଭିନ୍ନ ମଣିବାଟା ପ୍ରମାଦ ଜାଣିମ ।
**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଜୀବନମୁକ୍ତ ବର୍ଣ୍ଣନେ ନାମ ୧୩ଶ ସର୍ଗଃ ।**

❑

## ୧୪ଶ ସର୍ଗଃ

## ପାବନ ବୋଧ (୧)

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀରେ
"ଏହି ବନ୍ଧୁ ଏହି ନୁହେ" ଏହି ବିଷୟରେ
ପ୍ରାଚୀନ ଗଳ୍ପେକ ଶୁଣ ସେହି ପ୍ରସଙ୍ଗରେ ।
ସକଳ ସଂଶୟ ତୁମ ହଟିଯିବ ଦୂରେ ।
ମହେନ୍ଦ୍ର ପର୍ବତ ଶୃଙ୍ଗେ ଭାଗୀରଥିତୀରେ
ଦୀର୍ଘତପା ମୁନି ତହିଁ ବାସ କରୁଥିଲେ ।
ସେହି ମୁନିଙ୍କର ଥିଲେ ଦୁଇଟି କୁମର
ପୁଣ୍ୟ, ପାବନ ନାମକ ଦୁଇ ସହୋଦର ।
ଜ୍ୟେଷ୍ଠ ପୁତ୍ର ପୁଣ୍ୟ ନିଜ ସାଧନା ବଳରେ
ଜ୍ଞାନ ଲାଭ କରି ପରଂପଦ ଅରଜିଲେ ।

ପାବନ କିନ୍ତୁ ମୂରୁଖ ଦୋଷୁ ପାରହୋଇ
ବ୍ରହ୍ମ ପଦ କିସ ତାହା ଜାଣି ନ ପାରଇ ।
ଅର୍ଦ୍ଧ ପ୍ରବୁଦ୍ଧ ହୋଇଣ କରେ ସେ ଭ୍ରମଣ
ଚିତ୍ତ କିନ୍ତୁ ଥାଏ ସଦା ତା ଦୋଳାୟମାନ ।
କାଳକ୍ରମେ ଦୀର୍ଘତପା ଜରାଗ୍ରସ୍ତ ହେଲେ
ଦେହତ୍ୟାଗ କରି ପରଂପଦ ଲାଭ କଲେ ।
ଯୋଗ ଅବଲମ୍ବନରେ ପତ୍ନୀ ତାହାଙ୍କର
ଶରୀର ତେଜିଣ ଚଳିଗଲେ ବ୍ରହ୍ମପୁର ।
ମାତା ପିତା ବିୟୋଗରେ ଜ୍ୟେଷ୍ଠ ପୁତ୍ର ପୁଣ୍ୟ
ଶୋକ ତେଜି ପିତୃକାର୍ଯ୍ୟ କଲେ ସମାପନ ।
ଊର୍ଦ୍ଧ୍ୱ ଦୈହିକ କରମମାନ ଶେଷକରି
ନିଜ ଭାବେ ନିମଜ୍ଜିଲେ ବାଳ ତପସ୍ୱୀ ।
କନିଷ୍ଠ ପାବନ ପିତାମାତା ବିୟୋଗରେ
ଧୈର୍ଯ୍ୟ ହରାଇ ବୁଲଇ ଘୋର ବନସ୍ତରେ ।
ପିତା ମାତାଙ୍କର ଶେଷ କୃତ୍ୟ ସାରି ପୁଣ୍ୟ
ନ ପାଇଲେ ପାବନର କୌଣସି ସନ୍ଧାନ ।
ଖୋଜି ଖୋଜି ବନ ମଧ୍ୟେ ଭେଟନ୍ତି ପାବନ
କଥା ନ ଆସଇ ମୁଖେ କରୁଛି କ୍ରନ୍ଦନ ।
କନିଷ୍ଠକୁ ଦେଖି ଜ୍ୟେଷ୍ଠ କହନ୍ତି ବଚନ
କି ହେବରେ ଭାଇ ଆଉ କରିଲେ ରୋଦନ ?
ଜାଣିନାହୁଁ କିରେ ଭାଇ ଜନନୀ ତୋହର
ମରିନାହିଁ ପାଇଛି ସେ ଅମର ଶରୀର ।
ଦେହ ସିନା ଛାଡ଼ିଛନ୍ତି ମାତା ପିତା ଦୁଇ
ପରମାନନ୍ଦ ଭୋଗନ୍ତି ପରଂପଦେ ଥାଇ ।
ଜ୍ଞାନବଳେ ମୁକ୍ତିଲାଭ ହୋଇଛି ତାଙ୍କର
ଆଉ ତାଙ୍କ ପାଇଁ ଭାଇ ଶୋଚନା ନ କର ।
ପ୍ରାଣୀମାନଙ୍କର ଯେହୁ ଏକଇ ଆଶ୍ରୟ
ବ୍ରହ୍ମବେତ୍ତାଙ୍କ ଅଟନ୍ତି ଯେହୁ ସଦାଶୟ ।
ସେହି ସ୍ୱରୂପରେ ଭାଇ ଜନନୀ ପିଅର
ସମାରୂଢ଼ ରହିଛନ୍ତି ବ୍ରହ୍ମଙ୍କ ଶରୀର ।
ଆଉ କିପାଁ ତାଙ୍କ ପାଇଁ ଶୋକାତୁର ଭାଇ ?
ଶୋକାତୀତ ଅବସ୍ଥା ଯେ ଲଭିଛନ୍ତି ସେହି ।
ଅନୁଚିତ ତାଙ୍କ ପାଇଁ ଶୋକ କରିବାର
ଆଉ ମିଥ୍ୟା ଭାବନାରେ ନୁହ ଶୋକାତୁର ।
ଯାହାକୁ ଭାବୁଛୁ ପିତା ସେ ନୁହେ ତୋ ପିତା
ଯାହାକୁ ଭାବୁଛୁ ମାତା ସେ ନୁହେ ତୋ ମାତା ।

ଜାଣିରଖ ତୁହି ନୋହୁ ତାହାଙ୍କର ପୁତ୍ର
ଭ୍ରାନ୍ତିରେ ଝୁରି ମରୁଛୁ କିପାଁ ଆରେ ଭ୍ରାତ ?
ପୂର୍ବଜନ୍ମମାନଙ୍କରେ ଶତ ପିତାମାତା
ତାଙ୍କପରି ଥିଲେ ତୋର ଜାଣିରଖ ଭ୍ରାତା ।
ତାଙ୍କ ପୂର୍ବଜନ୍ମମାନଙ୍କରେ ମଧ୍ୟ ଭାଇ
ତୋର ପରି ଶତ ପୁତ୍ର ଥିଲେ ଜାଣ ତୁହି ।
ଫଳ ଧରିଥାନ୍ତି ବୃକ୍ଷେ ପ୍ରତ୍ୟେକ ଋତୁରେ
ଜୀବ ପାଏ ପିତା ମାତା ପ୍ରତି ଜନମରେ ।
ସ୍ନେହବଶ ଏ ଜନ୍ମର ପିତା ମାତା ପାଇଁ
ଶୋକ କରି ବୁଲୁଅଛୁ ଘୋରବନେ ଭାଇ ।
ପୂର୍ବ ଜନ୍ମମାନଙ୍କର ପିତା ମାତା ପାଇଁ
ଶୋକ କିପାଁ ନ କରୁଛୁ କହ ଆରେ ଭାଇ ?
ଏ ଜଗତ ମଧ୍ୟେ ଯାହା ଦେଖୁଛୁରେ ଭ୍ରାତ
ସକଳ ଅଳୀକ ବୁଝ ସବୁ ଭ୍ରମ ମାତ୍ର ।
କେହି ନୁହେ କାହା ପିତା କେହି କାହା ମାତା
ବିଚାର ଦୃଷ୍ଟିରୁ ସ୍ୱତଃସିଦ୍ଧ ଏହି କଥା ।
ଏହି ମୋର ବନ୍ଧୁ କିମ୍ବା ଏହି ମୋର ଅରି
ଭ୍ରମବଶ ବୁଝାଯାଇ ଥାଏ ଏହିପରି ।
ପରମାର୍ଥ ଦୃଷ୍ଟିରୁ ଯେ ବିଚାର କରିବ
କାହାର ବିନାଶ ନୋହି ଏହା ସେ ବୁଝିବ ।
ପରମାର୍ଥ ଦୃଷ୍ଟିରୁ ତୁ ସୁବିଚାର କର
ଭ୍ରମ ଜନିତ ଶୋକ ତୁ କର ପରିହାର ।
"ଏହି ବ୍ୟକ୍ତି ଜନମିଲା, ଏହି ବ୍ୟକ୍ତି ମଲା"
ସ୍ୱୀୟ ସଂକଳ୍ପ ଭ୍ରମରୁ ଏହା ଜାତ ହେଲା ।
ଅଜ୍ଞାନାଚ୍ଛନ୍ନ ଆତ୍ମାରେ ସ୍ୱ ବାସନା ଜଳ
ଶୁଭାଶୁଭ ଢେଉ ପରି ଉଠେ କାଳ କାଳ ।
ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ପାବନବୋଧ ବର୍ଣ୍ଣନେ
ନାମ ୧୪ଶ ସର୍ଗଃ ।



## ୧୫ଶ ସର୍ଗଃ
## ପାବନ ବୋଧ (୨)

ପୁଣ୍ୟ କହଇ ରେ ଭାଇ କିଏ ତୋର ପିତା
କିଏ ବା ବାନ୍ଧବ, ମିତ୍ର କିଏ ତୋର ମାତା ?
ପବନ ବେଗରେ ଯଥା ଧୂଳି ଯାଏ ଉଡ଼ି
ସ୍ୱୀୟ ଭ୍ରମ ସଂକଳ୍ପରୁ ଏ ସବୁ କୁହୁଡ଼ି ।
ପୁତ୍ର, ମିତ୍ର, ବନ୍ଧୁ, ଅନୁରାଗ, ଦ୍ୱେଷ, ମୋହ
ସଂସାର ଲକ୍ଷଣ ଏହା ସବୁ ନିଃସଂଶୟ ।
ନିଜ ପୂର୍ବକୃତ କର୍ମ ଦ୍ୱାରା ଜୀବଗଣ
ଏହି ସଂସାର ଭାବକୁ କରନ୍ତି ବର୍ଦ୍ଧନ ।
ସଂସାର ଭାବରେ ମୁଗ୍ଧ ଯେଉଁ ଜୀବଗଣ
କାହାକୁ ବନ୍ଧୁ ଭାବରେ କରନ୍ତି ଗ୍ରହଣ ।
କାହାକୁ ବା ଶତ୍ରୁ ମଣି କରନ୍ତି ବର୍ଜନ
ସଂସାର ନାଟକ କଥା କି ବର୍ଣ୍ଣିବି ପୁଣ ।
ଅପୃଥକ ଭାବେ ଆତ୍ମା ସର୍ବ ଶରୀରରେ
ବିଦ୍ୟମାନ ରହିଛନ୍ତି ନିର୍ଲିପ୍ତ ଭାବରେ ।
ସର୍ବଗତ ସେ ଆତ୍ମାରେ ଶତ୍ରୁ ମିତ୍ର ଭାବ
ରହିବାଟା କିପରି ବା ହେବ ଯେ ସମ୍ଭବ ?
ଏ ଶରୀରୁ ଭିନ୍ନ ପୁଣି ଚେତନା ଯୁକତ
ମୁଁ କିଏ ସର୍ବାଦୌ ଭାବି ଦେଖ ବାରେ ଭ୍ରାତ ।
ତେବେ ଯାଇ ବୁଝିବୁ ତୁ 'ମୁହିଁ' ସର୍ବତ୍ରଗ
ମାୟା ଅପସରି ଯିବ ହେବୁ ତୁ ସଜାଗ ।
ପାରମାର୍ଥିକ ଦୃଷ୍ଟିରୁ ବୁଝାଯିବ ଭାଇ
ପାବନ ନାମା କେ ନାହିଁ ପୁଣ୍ୟ ନାମା ନାହିଁ ।
ପୁଣ୍ୟ ପାବନ ନାମରେ ଆମେ ପରିଚିତ
ବ୍ୟବହାର ପାଇଁ ଏହା ଖାଲି ସମୂଚିତ ।
ମିଥ୍ୟା ଜ୍ଞାନ ଛଡ଼ା ଏହା ଅନ୍ୟ କିଛି ନୁହେ
ପିତା, ମାତା, ବନ୍ଧୁ, ଶତ୍ରୁ, ତୁମର ବା କିଏ ?
ଅନନ୍ତ ଚିଦାକାଶର ବିଶିଷ୍ଟ ପ୍ରକାଶ-
ବ୍ୟତୀତ ନୁହଇ ଆନ ଦୀର୍ଘତାପ ଶିଷ୍ୟ ।
ପୂର୍ବେ ଏହି ଜମ୍ବୁଦୀପେ ଶତ ସସ୍ର ବାର
ଜୀବ ଯୋନି ଧରି ଜନମିଛୁ ଭାଇ ମୋର ।
ସମ୍ୟକ୍ ଦର୍ଶନେ ଉଦ୍ଭାସିତ ବୁଦ୍ଧି ବଳେ
ଦେଖି ମୁଁ ପାରୁଛି ସେହି ବାସନା ସକଳେ ।
ତୋ ପରି ବହୁ ଅଜ୍ଞାନ ଜନ୍ମ ମୁଁ ନେଇଛି
ଏବେ ମଧ୍ୟ ଜ୍ଞାନ ନେତ୍ରେ ସେ ସବୁ ନାଚୁଛି ।
ସେସବୁ ଜନ୍ମ କେବଳ ଭ୍ରାନ୍ତିର ବିଳାସ
ପ୍ରତ୍ୟକ୍ଷ କରାଉଅଛି ଦୀର୍ଘତପା ଶିଷ୍ୟ ।
ସଂସାରରର ଏହି ରୀତି ଦେଖି ଏବେ ତୁହି
ବୁଝିରଖ କେତେ ଜନ୍ମ ଭୁଲ କରିଛଇଁ ।
ଶତ ଶତ ପିତା, ମାତା, ଭ୍ରାତା, ବନ୍ଧୁମାନ
ଅସଂଖ୍ୟ ମାତା କିଏ ତା କରିବ କଳନ ?

କହ ତେବେ କାହାପାଇଁ କରିବୁ ତୁ ଶୋକ
କାହା ପାଇଁ ଅବା ତୁହି ନ କରିବୁ ଦୁଃଖ ।
ଶୋକର କିଛି କାରଣ ନାହିଁ ମୁଁ କହୁଛି
ଯେହେତୁ ଏ ସଂସାରର ରୀତି ଏ ରହିଛି ।
ଗଛରୁ ଅନେକ ପତ୍ର ଝଡ଼ିବାର ପରି
ବହୁ ବନ୍ଧୁ ପିତାମାତା ଯାଇଛନ୍ତି ମରି ।
ଏହିପରି ଭବ ଦୁଃଖ ସୀମାକି ଅଛଇ
କହୁ ନାହୁଁ କିପାଁ ତୁନି ରହିଛୁରେ ଭାଇ ।
ତେବେ ଚାଲ ଏବେ ଭାଇ ଏମନ୍ତ କରିବା
ଭବଭାବନା ଦୁଃଖକୁ ମନୁ ପୋଛିଦେବା ।
ଆତ୍ମଜ୍ଞାନ ବିଶାରଦ ମହାତ୍ମାମାନଙ୍କ
ଅନୁସରଣ କରିବା ତାଙ୍କରି ପଦାଙ୍କ ।
ସ୍ୱର୍ଗେ ବା ନରକେ ଆତ୍ମା ବିଶ୍ରାମ ବିହୀନ
ଭ୍ରମଣ ଦେଖି ଶୋକାର୍ତ୍ତ ନୁହେଁ ପ୍ରାଜ୍ଞ ଜନ ।
କର୍ତ୍ତବ୍ୟ ବିଷୟେ ଅଭିମାନ ନ କରିଣ
କର୍ତ୍ତବ୍ୟ କରି ଯାଉଣ ଥାନ୍ତି ଜ୍ଞାନୀଗଣ ।
ଜରା, ମରଣ ବିହୀନ ଆତ୍ମାକୁରେ ଭାଇ
ଏକାଗ୍ର ଚିତ୍ତେ ସ୍ମରଣ କରୁଥାଅ ତୁହି ।
ତେଣୁ ତୋର ନାହିଁ ଜନ୍ମ, ମୃତ୍ୟୁ, ସୁଖ, ଦୁଃଖ
ନାହିଁ ପିତା, ନାହିଁ ମାତା, କିପାଁ ତୁ ବିମୁଖ ?
ଏକମାତ୍ର ଆତ୍ମା ଅଟେ ତୋହର ସ୍ୱରୂପ
ଶରୀର ପ୍ରଭୃତି ଆଦି ନାହିଁ ଅନ୍ୟ ରୂପ ।
ବାସନାଶୂନ୍ୟ ଆତ୍ମାକୁ ଧ୍ୟାନକର ତୁହି
ସଂସାର ଭ୍ରମଣ ଦୂର କର ଆହେ ଭାଇ ।
ସଂସ୍ଥିତ ରହ ତୁ ଭାଇ ସ୍ୱରୂପ ଆତ୍ମାରେ
ଆଦର୍ଶ ରଖି ତୁ ଯାଅ ଏ ଜୀବ ସଂସାରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ପାବନ ବୋଧ ବର୍ଣ୍ଣନେ**
**ନାମ ୧୫ଶ ସର୍ଗଃ ।**



## ୧୬ଶ ସର୍ଗଃ

## ତୃଷ୍ଣା ଚିକିତ୍ସା

କହନ୍ତି ବଶିଷ୍ଠ, ରାମ ପୁଣ୍ୟ ବାକ୍ୟ ଶୁଣି
ପାବନ ପ୍ରବୁଦ୍ଧ ହୋଇ ଯାଏ ତତ୍‌କ୍ଷଣି ।
ଆତ୍ମ ବିଷୟରେ ତାର ନ ରହେ ସଂଶୟ
ଆତ୍ମ ଜ୍ଞାନରେ ପ୍ରବୀଣ ହୋଇଣ ଉଭୟ ।
ବନରେ ପ୍ରାରବ୍ଧ ଶେଷ ହୋଇବା ପର୍ଯ୍ୟନ୍ତ
ବାସ କରି ରହିଲେ ସେ ଦୀର୍ଘତପାସୁତ ।
କିଛିକାଳ ପରେ ସେହି ଦୁଇ ଋଷି ସୁତ
ଶରୀର ତେଜି ହୋଇଲେ ଉପଶମ ପ୍ରାପ୍ତ ।
ଅତୀତ ଜନ୍ମରେ ଏହିପରି ରଘୁନାଥ
ବହୁ ବନ୍ଧୁ ମିତ୍ର ହୋଇ ଥାଆନ୍ତି ପ୍ରାପତ ।
କିନ୍ତୁ ସେମାନଙ୍କ ପାଇଁ ଏହି ଜନମରେ
ଟିକିଏ କେହି କାନ୍ଦେ ତ ନାହିଁ ରଘୁବୀରେ ।
ଅନନ୍ତ ସୁଖ ଦୁଃଖର ମୂଳ ଯେ ବାସନା
ଅନ୍ୟ ଉପାୟ ନାହିଁ ତା' ପରିତ୍ୟାଗ ବିନା ।
ଏମନ୍ତ କେ ଲୋକ ନାହିଁ ଏ ମର ସଂସାରେ
ବାସନା ବଢ଼ାଇ ସୁଖ ଦୁଃଖ ନାଶିପାରେ ।
କାଷ୍ଠର ସଂଯୋଗେ ଯଥା ଅଗ୍ନିର ବର୍ଦ୍ଧନ
ଚିନ୍ତା ଦ୍ୱାରା ହିଁ ଚିନ୍ତାର ଶରୀର ତେସନ ।
କାଠର ଅଭାବେ ଅଗ୍ନି ଯଥା ନିର୍ବାପିତ
ଚିନ୍ତା ଅଭାବରେ ଚିନ୍ତା ଲଭଇ ବିଲୁପ୍ତ ।
ତେଣୁ ଧ୍ୟେୟ ବାସନାକୁ କରି ପରିତ୍ୟାଗ
ଉପଭୋଗ କର ରାମ ସୁଖର ସମ୍ଭୋଗ ।
ସର୍ବଦା ବିବେକ ବନ୍ଧୁ ପରମାର୍ଥ ସଖୀ
ଏମାନଙ୍କ ସହ ବାସକରେ ଯେଉଁ ସୁଖୀ ।
କେବେହେଁ ବିପଦଗ୍ରସ୍ତ ନୁହଇ ସେ ଜନ
ବିପଦରେ ବିମୂଢ଼ ସେ ନୁହେ କଦାଚନ ।
ମନୁଷ୍ୟକୁ ଘେରିଥାଇ ଯେ ବିପଦ ଜାଲ
ବିଷୟ ବୈଭବ ତାର କରିଦିଏ ସଲ ।
ମିତ୍ରକୁ କରିଦିଏ ସେ ବଇରି ସମାନ ।
ଧୈର୍ଯ୍ୟ ବିନା କିଏ ତାର କରିବ ରକ୍ଷଣ ?
ବଇରାଗ୍ୟ ଶାସ୍ତ୍ରଜ୍ଞାନ ଅଭ୍ୟାସ ବଳରେ
ମହତ ଇତ୍ୟାଦି ସଦଗୁଣ ସଂଯୋଗରେ ।
ବିଷୟ ଗର୍ତ୍ତରୁ ନିଜ ମନକୁ ଶ୍ରୀରାମ
ଉଦ୍ଧାର କରିବା ଶ୍ରେଷ୍ଠ କର୍ତ୍ତବ୍ୟଟି ଜାଣ ।
ମହତ ଲାଭରେ ଯେଉଁ ଅପାର ଆନନ୍ଦ
ଉପଲବ୍ଧି ହୋଇଥାଏ ଆହେ ରାମଚନ୍ଦ୍ର ।
ତ୍ରିଭୁବନର ଐଶ୍ୱର୍ଯ୍ୟ ତାହାର ନିକଟ
ନିଶ୍ଚୟ ହୋଇ ପଡ଼ିବ ଅତୀବ ନିକୃଷ୍ଟ ।
ନିରନ୍ତର ଭୋଗନ୍ତି ଯେ ସ୍ୱର୍ଗ, ନର୍କ, ଜନ୍ମ
ଶୋକ ଦୁଃଖ ଭୋଗରେ ଯେ ସର୍ବଦା ନିମଗ୍ନ ।

ବିଶ୍ରାନ୍ତ ହୋଇ ନ ପାରେ କେବେ ତାଙ୍କ ଚିତ୍ତ
ଭ୍ରମଣ କରିବା କାର୍ଯ୍ୟ ଚଲେ ଅବିରତ ।
ମହତ୍ତ୍ୱ ଲଭି ଯା' ମନ ଶାନ୍ତିପୂର୍ଣ୍ଣ ରହେ
ଜଗତ ତ୍ରିତାପ ତାକୁ ଲାଗେ ସୁଧା ପ୍ରାୟେ ।
ଆଶା ବଶୀଭୂତ ହୋଇଥାଏ ଯେଉଁ ଚିତ୍ତ
ବୈରାଗ୍ୟ ଆସିଲେ ସୁଦ୍ଧା ନ ଲଭେ ପୂର୍ଣ୍ଣତ୍ୱ ।
ପଙ୍କ ଅବଶିଷ୍ଟ ଥିବା ସରୋବର ପରି
ଆଶାରେ ତା ଆଶା ରହିଯାଏ ଆଶ୍ରା କରି ।
ନିରାଶ ହେବାରୁ ରାଗ, ଦ୍ୱେଷ ଯାଏ ବଢ଼ି
ସବୁବେଳେ ହେଉଥାଏ ବାଡ଼େଇ କଚାଡ଼ି ।
ଚିତ୍ତ ପାଦପରେ ତାର ତୃଷ୍ଣା ମରକଟ
ନିବାସ କରି ତାହାକୁ କରେ ଛଟପଟ ।
ସୁବିସ୍ତୃତ ହେଲେହେଁ ତା ହୃଦୟ କାନନ
ସେ ବାନର ତା ଶୋଭାକୁ କରେ ଛିନ୍ନଭିନ୍ନ ।
ତୃଷ୍ଣା ମରୀଚିକା ଯାର ହୁଏ ଦୂରୀଭୂତ
ତ୍ରିଭୁବନଯାକ ତାକୁ ଲାଗଇ କିଞ୍ଚିତ ।
କଳ୍ପ ପର୍ଯ୍ୟନ୍ତ କାଳକୁ ମଣେ ସେ ନିମେଷ
ସୁଧାବ୍ଧି ପରାଏ ତାକୁ ଲାଗେ ସାରା ବିଶ୍ୱ ।
ତୃଷ୍ଣାଶୂନ୍ୟ ମନ ଯେଉଁପରି ଶୋଭାପାଏ
ପୂର୍ଣ୍ଣଚନ୍ଦ୍ର ଶୋଭାକୁ ତା ଟପି ଚାଲିଯାଏ ।
ଆଶା ଦ୍ୱାରା ନର ହୃଦ ହୁଏ କଳୁଷିତ
ଚିତ୍ତ ପାଦପର ଶାଖା ସ୍ୱରୂପ ନିର୍ଗତ
ହୋଇ ଦିଗମଣ୍ଡଳକୁ କରେ ପରିବ୍ୟାପ୍ତ
ଆଶାରାଣୀ ନାଟ ଦେଖି କେଡ଼େ ଚମତ୍କୃତ ।
ଏସବୁ ଶାଖାକୁ ଯେହୁ ଛେଦି ଦେଇପାରେ
ବ୍ରହ୍ମ ସ୍ୱରୂପକୁ ସେହୁ ଲାଭ କରିପାରେ ।
ଚିତ୍ତ ସ୍ଥାଣୁତ୍ୱ ଲଭିଲେ ଧଇର୍ଯ୍ୟ ପ୍ରକାଶ
ଧୀର ପୁରୁଷର ବ୍ରହ୍ମପ୍ରାପ୍ତି ଅନାୟାସ ।
ଆଶା ଅଙ୍କୁରର ଯଦି ନୋହିବ ଉଦ୍‌ଗମ
ଚିରକାଳ ଲୁପ୍ତ ହେବ ତୁମ ଜରା, ଜନ୍ମ ।
ଯେବେ ତୁମର ଚିତ୍ତର ହୋଇବ ମରଣ
ମୁକ୍ତାବସ୍ଥା ପ୍ରାପ୍ତହେବ ତଦାନ୍ତକରଣ ।
ଅନ୍ତର ଚିନ୍ତା ଯାହାକୁ କରଇ ଚଞ୍ଚଳ
ଆସି ଘେରିଯାନ୍ତି ତାକୁ ନାନା ଅମଙ୍ଗଳ ।
ବିଷୟ ଚିନ୍ତାର ନାମ ଅଟେ ଚିତ୍ତବୃତ୍ତି
ଚିତ୍ତ ଆଶା ଆଶ୍ରାକରି ଚିନ୍ତାର ଉତ୍ପତ୍ତି ।
ଆଶାରୂପ ଚିତ୍ତବୃତ୍ତି କରିଦେଲେ ତ୍ୟାଗ
ଶୂନ୍ୟତା ଲଭଇ ଚିତ୍ତ ଜାଣ ହେ ରାଘବ ।
ଯେ ବସ୍ତୁ ଯାହା ଉପରେ କରଇ ନିର୍ଭର
ତା ଅଭାବେ ସେ ବସ୍ତୁର କାହିଁ ଥଳକୂଳ ?
ଚିତ୍ତ ଉପଶମ ପାଇଁ ଯଦି ଇଚ୍ଛା କର
ଧ୍ୱଂସ କରେ ତୁମ ଚିତ୍ତ ବୃତ୍ତିକି ସକଳ ।
ଅନାୟାସେ ତେବେ କ୍ଷୟ ଯିବ ତୁମ ଚିତ୍ତ
ନିରାଧାର ମୋର ବାଣୀ ଜାଣ ରଘୁନାଥ ।
ସ୍ତିରୀ, ପୁତ୍ର, ସାଂସାରିକ ବାସନା ତେଜିଣ
ଜୀବନ୍ମୁକ୍ତ ହୁଅ ଭୁଲି ସଂସାର ବନ୍ଧନ ।
ଜୀବର ବନ୍ଧନକାରୀ ଆଶା-ରଜ୍ଜୁ ଜାଣ
ସେ ରଜ୍ଜୁ ଛିଣ୍ଡିଲେ ମୁକ୍ତି ନ ପାଏ କେ ଜନ ?

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ତୃଷ୍ଣା ଚିକିତ୍ସା ବର୍ଣ୍ଣନେ ନାମ ୧୬ଶ ସର୍ଗଃ ।**



## ୧୭ଶ ସର୍ଗଃ
## ବିରୋଚନ ଉପାଖ୍ୟାନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଯେ ସକଳ ଉପାୟ ମୁଁ କଲଇଁ ବର୍ଣ୍ଣନ ।
ନ ପାଳି ପାରିଲେ ମଧ୍ୟ ତାକୁ ହେ ଶ୍ରୀରାମ
ସହସା ବଳି ରାଜାର ବିଚାର ଯେସନ
ଉଦିତ ହୋଇଣ ତାକୁ କଲା ଜ୍ଞାନୀବର
ସେହିପରି ଜ୍ଞାନ ଲାଭ ହୋଇବ ତୁମର ।
ଶ୍ରୀରାମ ବୋଲନ୍ତି ପ୍ରଭୁ ତବ ଅନୁଗ୍ରହେ
ଲବ୍ଧବ୍ୟ ବସ୍ତୁ ମୁଁ ଲାଭ କରିଛି ଗୁରୁ ହେ ।
ଆବର ବିଶ୍ରାମ ପ୍ରାପ୍ତି ହୋଇଛି ମୋହର
ତୃଷ୍ଣା ବହ୍ନି ନିର୍ବାପିତ ଏବେ ମୋ ମନର ।
ପୂର୍ଣ୍ଣିମା ଚନ୍ଦ୍ରମା ପରି ଆଜି ମୋ ଅନ୍ତର
ସୁଧାମୟ କାନ୍ତିବାନ ହୋଇଛି ଆବର ।
ତଥାପି ଆକାଂକ୍ଷା ମୋର, ତବ ଉପଦେଶ
ନିବୃତ୍ତ ନୋହିଛି ଶୁଣିବାକୁ ହେ ମୁନୀଶ ।
ତେଣୁ ମୋର ବୋଧବୁଦ୍ଧି ପାଇଁ ହେ ମହାନ
ବଳି ରାଜା ଜ୍ଞାନ ଲାଭ କରନ୍ତୁ କୀର୍ତ୍ତନ ।
କହନ୍ତି ବଶିଷ୍ଠ ରାମ ଧରା ଅଧୋଭାଗେ
ପାତାଳ ଲୋକ ବିରାଜେ ଜାଣ ମହାଭାଗେ ।

ବିରୋଚନ ରାଜା ପୁତ୍ର ମହାବୀର ବଳି
ସେ ପାତାଳ ଦେଶେ ଥିଲେ ରାଜ୍ୟ ଅଧିକାରୀ ।
ଭଗବାନ ବିଷ୍ଣୁଙ୍କର ଭକ୍ତ ସେ ରାଜନ
ବିଷ୍ଣୁ ସ୍ୱୟଂ ସେ ବଳିର କରନ୍ତି ରକ୍ଷଣ ।
ଇନ୍ଦ୍ରାଦି ଦେବଗଣଙ୍କୁ ସେ ବଳି ରାଜନ
ଯୁଦ୍ଧେ ଜିଣି ବହୁକାଳ କରେ ରାଜପଣ ।
ବହୁକାଳ ରାଜ୍ୟ ଭୋଗେ ବିରକ୍ତି ଆସଇ
ଗବାକ୍ଷ ମାର୍ଗକୁ ଚାହିଁ ରାଜନ ଭାଳଇ ।
"ତ୍ରିଭୁବନେ ଏହିପରି ଶକ୍ତିଶାଳୀ ହୋଇ
କେତେକାଳ ରାଜପଣ କରିବି ଯେ ମୁହିଁ ?
ଏହି ବିପୁଳ ରାଜ୍ୟରେ ମୋର ଭୋଗ ପାଇଁ
ଅଭିଳକ୍ଷିତ ପଦାର୍ଥ କିସ ବା ନ ଥାଇ ?
ଏ ସକଳ ଭୋଗେ ମୋର ଅଛି କେଉଁ ଲାଭ ?
ଆପାତଃ ମଧୁର ସିନା ପରିଣାମେ କ୍ଷୋଭ ।
ଦିନ ପରେ ରାତ୍ରି ଆସେ, ରାତ୍ରି ପରେ ଦିନ
କ୍ରମାଗତ ଲାଗିରହେ ଏହି ମୋ ଜୀବନ ।
ବାରମ୍ବାର ସେହି ସ୍ନାନ, ଭୋଜନ ଶୟନ
ଇତ୍ୟାଦି କର୍ମେ କିଛିହିଁ ନଥାଇ ନୂତନ ।
ସେହି ଏକା କାର୍ଯ୍ୟ, ବାରମ୍ବାର ସମ୍ପାଦନ
ବିରକ୍ତ ଜନକ ତହିଁ ନ ଲାଗେ ମୋ ମନ ।
ସେହି ଖାଦ୍ୟ, ସେହି କ୍ରୀଡ଼ା, ନାରୀ ଆଲିଙ୍ଗନ
ସନ୍ତୋଷ ତ ଦୂର କଥା, ଲଜ୍ଜ୍ୟାହିଁ କଷଣ ।
ମହତ ଲୋକ ଏସବୁ କିପରି ସହିବ
ଧଇର୍ଯ୍ୟ ଧରି ରହିବା ଅତି ଅସମ୍ଭବ ।
ମନେହୁଏ ବିଜ୍ଞ ପାଇଁ ଏହା ହାସ୍ୟାସ୍ପଦ
ସଂସାରୀ ପ୍ରତି ଏ ସିନା ଶାନ୍ତିର ଆସ୍ପଦ ।
ଏ କର୍ମରୁ ଏପରିକି ଫଳ ମିଳିଥାଇ
ଯା ପ୍ରାପ୍ତିରେ ଆଉ କାହିଁ ଇଚ୍ଛା ନ ବଳଇ ?
କେତେକାଳ କରିବି ଏ ବୃଥା ଆଡ଼ମ୍ବର
ପରିଣାମେ କିସ ଲାଭ ହୋଇବ ମୋହର ?
ଭୋଗ ବ୍ୟତୀତ ଏଥିରେ ସ୍ଥାୟୀ ଫଳ ନାହିଁ
ଏକମାତ୍ର ଏହି ଚିନ୍ତା ମୋତେତ ଘାରଇ ।
ଏହିପରି ଭାବୁ ଭାବୁ ସେ ବଳି ରାଜନ
ପୂର୍ବ କଥାମାନ ତାଙ୍କ ହୁଅଇ ସ୍ମରଣ ।
ତତ୍ତ୍ୱଦର୍ଶୀ ମୋର ପିତୃଦେବ ବିରୋଚନ
ଯାହା ଯାହା କହିଥିଲେ ପଡ଼େ ମୋର ମନ ।
ସ୍ୱର୍ଗରୁ ଆନୀତ କଳ୍ପ ବୃକ୍ଷ ତଳେ ବସି
ଏହା ମୁଁ ପଚାରିଥିଲି ପିତାଙ୍କୁ ସମ୍ଭାସୀ ।
ଯେଠାରେ ବସିଲେ ମୁହିଁ ଲଭିବି ବିଶ୍ରାମ
ସେହି ନିତ୍ୟାନନ୍ଦ ସ୍ଥାନ କରିବା ବର୍ଣ୍ଣନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ବିରୋଚନ ଉପାଖ୍ୟାନଂ ବର୍ଣ୍ଣନେ**
**ନାମ ୧୭ଶ ସର୍ଗଃ ।**

□

## ୧୮ଶ ସର୍ଗଃ

## ବଳି ବୃତ୍ତାନ୍ତ

ପିତା କହିଥିଲେ ମୋତେ ଆରେ ପୁତ୍ରଗଣ
ବିଶାଳ ଗର୍ତ୍ତ ଗୋଟିଏ ଅଛି ଏକ ସ୍ଥାନ ।
ଆଖି ନ ପାଇବ ତାର ସୀମା ଅଛି କାହିଁ
ସହସ୍ର ସଂଖ୍ୟା ତ୍ରିଲୋକ ରହିପାରେ ତହିଁ ।
ସିନ୍ଧୁ, ଗିରି, ବନ, ମେଘ କିଛି ନାହିଁ ତହିଁ
ତୀର୍ଥ, ନଦୀ, ସରୋବର, ମାଟି ନ ଦିଶଇ ।
ନାହିଁ ଚନ୍ଦ୍ର, ନାହିଁ ସୂର୍ଯ୍ୟ, ନ ଥାଇ ଆକାଶ
ସ୍ୱର୍ଗ, ଦେବ, ଯକ୍ଷ, ରକ୍ଷ, ମାନବ, ରାକ୍ଷସ ।
ପିଶାଚ ବା ଲୋକପାଳ କେହି ନ ଦିଶନ୍ତି
ତରୁ, ଗୁଳ୍ମ, ଲତା, ତୃଣ, ସ୍ଥାବର ନ ଥାନ୍ତି ।
ଜଙ୍ଗମ, ସଲିଳ, ଅଗ୍ନି, ଅଧଃ, ଉର୍ଦ୍ଧ୍ୱଦିଗ
ହରିହର, ଇନ୍ଦ୍ର, ବ୍ରହ୍ମା, ଆବର ବିଦିଗ ।
'ମୁଁ' ବୋଲିଣ କଉଣସି ବ୍ୟକ୍ତି ବିଶେଷର
ଅବସ୍ଥାନ ନାହିଁ ବୋଲି ଜାଣରେ କୁମର ।
ମହାତେଜସ୍ୱୀ ରାଜା ଏ ଏକମାତ୍ର ତହିଁ
ସେହି ବିଶାଳ ରାଜ୍ୟରେ ବାସ କରୁଛନ୍ତି ।
ସର୍ବକର୍ମା, ସର୍ବକୃତ, ସର୍ବତ୍ରଗ ସେହି
ସର୍ବ ସ୍ୱରୂପ ସେ ରାଜା ସଦା ମୌନ ଥାଇ ।
ସଂକଳ୍ପ ସମ୍ଭୁତ ଏକ ମନ୍ତ୍ରୀ ଅଛି ତାର
ଅଘଟନ ଘଟାଏ ସେ ମନ୍ତ୍ରଣାରେ ତାର ।
ଏହି ରାଜାପାଇଁ ମନ୍ତ୍ରୀ ସବୁ କାର୍ଯ୍ୟ କରେ
କିଛି ନ ଜାଣେ ସେ ରାଜା ଭୋଗ ବି ନ କରେ ।
ନିର୍ଜନରେ ସ୍ୱସ୍ଥଭାବେ ରହେ ସେ ରାଜନ
ପିତାଙ୍କ ବଚନ ଶୁଣି କଲି ମୁହିଁ ପ୍ରଶ୍ନ ।
ଯେ ଦେଶ କଥା ଆପଣ କରିଲେ ବର୍ଣ୍ଣନ
କହିବା ହୁଅନ୍ତୁ ସେ ଦେଶର କିସ ନାମ ?

କେଉଁବାଟେ ସେ ଦେଶକୁ କରନ୍ତି ଗମନ
କେହି କି କେବେ ସେ ଦେଶ କରିଛି ଦର୍ଶନ ?
ସେ ମହାବଳି ରାଜନ କିଏ ହେ ପିଅର
କିଏ ଅବା ସେହି ରାଜାଙ୍କର ମନ୍ତ୍ରୀବର ?
ଅନାୟାସେ ତ୍ରିଭୁବନ କରିଛି ମୁଁ ଜୟ
ସେହି ରାଜନକୁ କରିନାହିଁ ପରାଜୟ ।
ସେତେବେଳେ ପିତା ମୋତେ ଦେଲେ ଏ ଉତ୍ତର
ମହା ପ୍ରତାପୀ ଅଟଇ ସେ ମନ୍ତ୍ରୀ ପ୍ରବର ।
ଏକଜୁଟ ହେବେ ଯଦି ଦେବାସୁରଗଣ
ଜିଣି ନ ପାରିବେ ତାକୁ କଲେ ଯେତେ ରଣ ।
ଇନ୍ଦ୍ର, ଯମ, କୁବେର କି ତାହାକୁ ମଣିବ
ତାହା ସଙ୍ଗେ ରଣ କଲେ ତୁମେ ତୁଚ୍ଛ ହେବ ।
ବଜ୍ର, ଚକ୍ର, ଗଦା ଆଦି ଯେତେ ଅସ୍ତ୍ରଶସ୍ତ୍ର
ଧୂଳିପରି ଚୂନା ହେବେ ପଡ଼ିଲେ ତା ଗାତ୍ର ।
ଅସ୍ତ୍ରଶସ୍ତ୍ରରେ ତାହାକୁ ଜିଣି ନ ପାରିବ
ବଶୀଭୂତ ତାର ଦେବାସୁର ଆଦି ସର୍ବ ।
ବିଷ୍ଣୁ ନୋହିଲେ ହେଁ ହିରଣାକ୍ଷକୁ ମାରିଛି
ନାରାୟଣ ଆଦି ଦେବଗଣେ ହରାଇଛି ।
ଦେବାସୁର ମଧ୍ୟେ ଯେଉଁ ଯୁଦ୍ଧ ପୁନଃ ପୁନଃ
କ୍ରୀଡ଼ା ବିଳାସ ଅଟଇ ସେ ମନ୍ତ୍ରୀର ଜାଣ ।
ସେହି ମହାରାଜା ଯେବେ ଇଚ୍ଛା ପ୍ରକାଶିବ
ସେହିହିଁ କେବଳ ଏହି ମନ୍ତ୍ରୀକି ଜିଣିବ
ତାହାଛଡ଼ା ଏହି ମନ୍ତ୍ରୀ ପର୍ବତ ସଦୃଶ
ଦୁର୍ଭେଦ୍ୟ ଅଟଇ ଅନ୍ୟମାନଙ୍କର ପାଶ ।
କେବେ କେବେ ସେ ରାଜନ ମନ୍ତ୍ରୀକି ଜିଣଇ
ପୁଣି କେବେ ତାଙ୍କୁ ଯୁଦ୍ଧେ ଜିଣି ନ ପାରଇ ।
ସେ ମନ୍ତ୍ରୀକି ଜିଣିପାରୁ ଯେବେ ଯୁଦ୍ଧେ ତୁହି
ପ୍ରଶଂସା ପାଇବୁ ତେବେ ଜାଣରେ ତନୟୀ ।
ମୋହ ଛାଡ଼ି ଯଦି ଦୃଢ଼ ଏକାଗ୍ର ଚିତ୍ତରେ
ଜିଣି ପାରିବୁ ତୁ ପୁତ୍ର ଏହି ମନ୍ତ୍ରୀବରେ ।
ହେବୁ ତୁହି ଧୀର ବୀର ମାନଙ୍କ ଅଗ୍ରଣୀ
ଅବିଜିତ ଲୋକମାନ ପରିବୁ ତୁ ଜିଣି ।
ଯେ ଯାଏ ତୁ ଜିଣିନାହୁଁ ସେହି ଲୋକ ସ୍ୱତ
ବାସତ୍ୱ ବିଜୟୀ ମଧ୍ୟେ ହେବୁ କି ଗଣିତ ?
ଅକ୍ଷୟ ସିଦ୍ଧି ଓ ଚିରନ୍ତନ ସୁଖ ପାଇଁ
ସବୁ କ୍ଳେଶ ବରିନିଅ ଆରେ ପୁତ୍ର ତୁହି
ଜିଣି ପାରିବୁ ଯେପରି ଏ ମନ୍ତ୍ରୀକୁ ପୁତ୍ର
ସୁରାସୁର ନାଗ ଆଦି ଯାର ବଶୀଭୂତ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ ବଳି ବୃତ୍ତାନ୍ତ ବର୍ଣ୍ଣନେ ନାମ ୧୮ଶ ସର୍ଗଃ ।**



## ୧୯ଶ ସର୍ଗଃ

## ବଳି ଉପାଖ୍ୟାନ

ବଳି ରାଜା ମନେ ମନେ ଭାବଇ ଏମନ୍ତ
ଏହି ମହାମନ୍ତ୍ରୀ ଯୁଦ୍ଧେ ହାରିବ ଯେମନ୍ତ ।
ଏ ମନ୍ତ୍ରୀରର ପରାଜୟ କିପରି ଘଟିବ
ସେ ସୂତ୍ର ତ କହିଛନ୍ତି ମତେ ପିତୃଦେବ ।
ଏକମାତ୍ର ଯୁକ୍ତିବଳେ ତାକୁ ଜିଣି ହେବ
ନୋହିଲେ ସେ ଦୁଷ୍ଟ ସର୍ପ ପରାୟେ ଦଂଶିବ ।
ଯୁକ୍ତି ସହ ଯେ ତାହାକୁ ବାଳକ ସଦୃଶ
ଲାଳନ ପାଳନ କରି କରେ ତାକୁ ବଶ ।
ସେହିମାନେ ହିଁ ରାଜାର ଦର୍ଶନ ଲଭନ୍ତି
ରାଜାଙ୍କୁ ଦେଖିଲେ ମନ୍ତ୍ରୀ ବଶେ ଆସିଯାନ୍ତି ।
ଯେ ଯାଏ ରାଜଦର୍ଶନ ହୋଇପାରି ନାହିଁ
ମନ୍ତ୍ରୀକି ଜୟ କରିବା ସମ୍ଭବ ନୁହଇ ।
ମନ୍ତ୍ରୀବର ଯେ ପର୍ଯ୍ୟନ୍ତ ନୋହିଛି ବିଜିତ
ରାଜଦର୍ଶନ ମିଳିବା ଅତି ଅନିଶ୍ଚିତ ।
ବିନା ରାଜ ଦର୍ଶନରେ ସେହି ମନ୍ତ୍ରୀ ଜାଣ
ଖାଲି କୁମନ୍ତ୍ରଣା ଦୁଃଖ କରଇ ପ୍ରଦାନ ।
ମନ୍ତ୍ରୀ ବିଜିତ ନୋହିଲେ ସେ ମହାରାଜନ
ସମ୍ପୂର୍ଣ୍ଣ ଅଦୃଶ୍ୟଭାବେ କରେ ଅବସ୍ଥାନ ।
ଜଣାଯାଏ ଯେପରି ସେ ନାହାନ୍ତି ଜଗତେ
ରାଜା, ମନ୍ତ୍ରୀ ଏହିପରି ରହନ୍ତି ନିରତେ ।
ରାଜା ଦରଶନ ପୁଣି ମନ୍ତ୍ରୀ ପ୍ରାଦୁର୍ଭାବ
ଏକାବେଳକେ ଯେପରି ଏକଥା ଘଟିବ ।
ସେହି ଉପାୟ ଅଭ୍ୟାସ କରିବା ଉଚିତ
ଏହିକଥା ତେତେବେଳେ କହିଥିଲେ ତାତ ।
ଜିତେନ୍ଦ୍ରିୟ ତୁମେ ଯଦି ଏମନ୍ତ କରିବ
ସର୍ବଦା ପୁରୁଷାକାର ଆଚରୁଣ ଥିବ ।
ତାର ବଳେ ଅତ୍ୟୁତ୍ତମ ଅଭ୍ୟାସ ଗଢ଼ିବା
ତେବେ ଯାଇ ସେ ଦେଶରେ ପହଞ୍ଚିପାରିବା ।

ଶୋକ କରିବାକୁ ଆଉ ନ ପଡ଼ିବ ପୁଣି
ଏହି କଥା ମନେରଖ ଆହେ ପୁତ୍ରମଣି ।
ଯେଉଁ ସବୁ ସାଧୁବୃନ୍ଦ ସେ ଦେଶେ ବସନ୍ତି
ସକଳ ସନ୍ଦେହ ତାଙ୍କ ଦୂର ହୋଇଯାନ୍ତି ।
ପରମାନନ୍ଦେ ତାଙ୍କର ହୁଏ ଅବସ୍ଥାନ
କେଡ଼େ କଉଶଳପୂର୍ଣ୍ଣ ପିତାଙ୍କ ବଚନ ।
ସର୍ବବିଧ ଦୁଃଖ ବିନାଶକ ଯେ ମୁକତି
ସେ ଦେଶର ନାମ ବୋଲି ପିତା କହିଛନ୍ତି ।
'ଆତ୍ମା' ହିଁ ଅଟନ୍ତି ସେହି ଦେଶର ରାଜନ
ତାଙ୍କ ମନ୍ତ୍ରୀ ଚିତ୍ତ ନାମ ଜାଣ ଆରେ ମନ ।
ମାଟି ପିଣ୍ଡେ, ଘଟଭାବ ଅବ୍ୟକ୍ତ ଭାବରେ
ଥାଏ ବୋଲି ମାଟି ପିଣ୍ଡ ଘଟାକାର ଧରେ ।
ଏହି ମନ ମଧ୍ୟେ ମଧ୍ୟ ଏ ସମଗ୍ର ବିଶ୍ୱ
ଅବ୍ୟକ୍ତ ବାସନାକାରେ କରିଥାଏ ବାସ ।
ତେଣୁକରି ଏହି ମନ ବିଶ୍ୱ ଆକାରରେ
ବିରାଜିତ ରହିଅଛି କଳ୍ପନା ରାଜ୍ୟରେ ।
ମନକୁ ଜିଣି ପାରିଲେ ସକଳ ବିଜୟ
ସର୍ବ ପରାପତ ହୁଏ ଏହା ନିଃସନ୍ଦେହ ।
କେବଳ ଯୁକ୍ତି ବଳରେ ସେ ଦୁର୍ଜ୍ଜୟ ମନ
ବଶୀଭୂତ ହୋଇଥାଏ ଜାଣରେ ନନ୍ଦନ ।
ସେତେବେଳେ ଏମନ୍ତ ଯେ କହିଥିଲି ମୁହିଁ
ସେ ଦୁର୍ଜ୍ଜୟ ମନ କେହ୍ନେ ବଶୀଭୂତ ହୋଇ ।
ତାହା ଶୁଣି ପିତା ମୋତେ କହିଲେ ରେ ପୁତ୍ର
ଦୁର୍ଜ୍ଜୟ ମନ ଯେମନ୍ତ ହେବ ବଶୀଭୂତ ।
"ଏକାନ୍ତ ଅନାସ୍ଥା ସର୍ବ ବିଷୟର ପ୍ରତି
ମନକୁ ଜିଣିବା ପାଇଁ ଅଟେ ଶ୍ରେଷ୍ଠ ଯୁକ୍ତି" ।
ଏହି ଯୁକ୍ତି ବଳେ ଜାଣ ଏ ମନ ମାତଙ୍ଗ
ବଶୀଭୂତ ହୋଇପାରେ ହେଲେ ସଉଭାଗ୍ୟ ।
ଏହି ଯୁକ୍ତ ଅଟେ ପୁତ୍ର ଅତୀବ ଦୁର୍ଲ୍ଲଭ
ପୁନଶ୍ଚ ଅଟଇ ତାହା ଅତୀବ ସୁଲଭ ।
ଅଭ୍ୟାସ ଅଭାବେ ଏହା ଅଟଇ ଦୁର୍ଲ୍ଲଭ
ଅଭ୍ୟାସ ବଳରେ ପୁଣି ଅଟଇ ସୁଲଭ ।
ସଲୀଳ ସିଞ୍ଚନେ ଯଥା ବଢ଼ଇ ପାଦପ
ଅଭ୍ୟାସ ବଳେ ବଢ଼ଇ ବୈରାଗ୍ୟ ତଦ୍ରୂପ ।
ବାୟୁ ନ ଥିଲେ ଯେସନେ ନ ଫଳଇ ଧାନ
ଅଭ୍ୟାସ ବିନା ବିଷୟ-ବୈରାଗ୍ୟ କେସନ ?

ଅଭ୍ୟାସବଳେ ବିଷୟ ବୈରାଗ୍ୟ ବର୍ଦ୍ଧନ-
ପାଇଁକି ସଚେଷ୍ଟ ହୁଅ ରେ କୁଳନନ୍ଦନ ।
ବିଷୟ ବୈରାଗ୍ୟ କ୍ଷମ ନ ହୋଇଲେ ଦେହୀ
ସଂସାର ଗର୍ତ୍ତେ ପଡ଼ିଣ ଦୁଃଖ ଭୋଗୁଥାଇ ।
ଦେଶାନ୍ତ ଗମନେ ଯଥା ଖଞ୍ଜ ନୁହେ କ୍ଷମ
ଅଭ୍ୟାସ ବ୍ୟତୀତ ତଥା ବଳଶାଳୀ ଜନ,
ବିଷୟ ବୈରାଗ୍ୟ ତାର ବିନା ଅଭ୍ୟାସରେ
ପ୍ରାପତ ନୁହଇ କେଭେ ଜାଣ ପୁତ୍ରବରେ ।
ବାସନା ବିନାଶ ପାଇଁ ଯଦି ଇଚ୍ଛା କର
ଅଭ୍ୟାସ ବଳରେ ତେବେ ଜାଣରେ କୁମର,
ବିଷୟ ବିରକ୍ତି ପାଇଁ କ୍ରମଶଃ ପ୍ରଯତ୍ନ
କରିବା କର୍ତ୍ତବ୍ୟ ଅଟେ ଜାଣରେ ନନ୍ଦନ ।
ପୁରୁଷାକାର ବ୍ୟତୀତ ଅନ୍ୟ କାହାଦ୍ୱାରା
ଶୁଭଫଳ ନ ମିଳଇ ଏ ସଂସାର ସାରା ।
ମନହିଁ କରତା ଅଟେ ଜାଣ ଆରେ ସୁତ
ଯାହା ସଂକଳ୍ପ କରିବ ତାହାହିଁ ପ୍ରାପତ ।
ନିୟତି ହେତୁ ଏ ମନ ଯାହା ସଂକଳ୍ପଇ
ନିୟତି ହିଁ ସେହି ରୂପେ ଉପସ୍ଥିତ ହୋଇ ।
ମନ କେବେ ଅନିୟତ କେବେ ବା ନିୟତ
ପୁଣି କେତେବେଳେ ତାହା ନିୟତାନିୟତ ।
ବିଷୟମାନଙ୍କ ସୃଷ୍ଟି କରିଥାଏ ସେହି
ନିୟତିର ସଂଯୋଜକ ଏ ମନ ଅଟଇ ।
ମନ ବଞ୍ଚିଥିବାଯାଏ, ଦୈବ ଓ ନିୟତି
ବଞ୍ଚିଥିଲେ ମଧ୍ୟ କିଛି କରି ନ ପାରନ୍ତି ।
ମନ ମରିଯିବା ପରେ ଯା' ହେବାର ହେଉ
ସେ ବିଷୟ ବର୍ତ୍ତମାନ ଚରଚ୍ଚ ନ ହେଉ ।
ଜୀବ ସ୍ୱରୂପେ ପୁରୁଷ ଜନମ ଲଭିଣ
ପୌରୁଷ ବଳେ ଯେମନ୍ତ କରଇ କରମ,
ତାହାହିଁ କେବଳ ତାକୁ ପ୍ରାପ୍ତ ହୋଇଥାଏ
ପୌରୁଷବଳ ପ୍ରାଧାନ୍ୟ ସଦା ରହିଥାଏ ।
ବ୍ରହ୍ମ ସାରୂପ୍ୟ ବ୍ୟତୀତ ଅନ୍ୟ କିଛି ତହିଁ
ସାର ପଦାର୍ଥ ଭାବରେ ଗଣ୍ୟ ନ ହୁଅଇ ।
ତେଣୁ ପୁରୁଷାକାରକୁ ଆଶ୍ରୟ କରିଣ
ବିଷୟ ବୈରାଗ୍ୟ ଧରି ଚଳ ସର୍ବକ୍ଷଣ ।
ବିରତି ନ ଆସେ ଭୋଗେ ଯେତେଦିନ ଯାଏ
ପ୍ରକୃତ ସୁଖ ନ ମିଳେ ତେତେଦିନ ଯାଏ ।

ବିଷୟାନୁରାଗ ରହିଥିବ ଯେତେଦିନ
ସେତେଦିନ ଚାଲିଥିବ ସଂସାର ବନ୍ଧନ ।
ଶ୍ରବଣ, ମନନ, ବଇରାଗ୍ୟର ଅଭ୍ୟାସ
ବିନା ସଂସାର ଯାତନା ନୋହିପାରେ ଶେଷ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ ବଳି ଉପାଖ୍ୟାନେ ଚିତ୍ତ ଚିକିତ୍ସା ଉପଦେଶ ବର୍ଣ୍ଣନେ ନାମ ୧୯ଶ ସର୍ଗଃ ।**



## ୨୦ଶ ସର୍ଗଃ

## ବଳି ଉପଦେଶ (୧)

ବଳି ରାଜା ମନେ ମନେ ହୁଅନ୍ତି ଉଦ୍‌ବିଗ୍ନ,
ବାସନା ବିନାଶ କଥା ଘାଣ୍ଟେ ତାଙ୍କ ମନ ।
ପିତାଙ୍କୁ ପଚାରିଥିଲେ ଏହିପରି ପ୍ରଶ୍ନ
ଜୀବ ହୃଦେ ଭୋଗ ତ୍ୟାଗ ହୁଅଇ କେସନ ?
ସେତେବେଳେ କହିଥିଲେ ପିତା ବିରୋଚନ
ଆତ୍ମ ଦର୍ଶନ ଲତିକା ବର୍ଦ୍ଧିତ ହୋଇଣ,
ଭୋଗ ବୈରାଗ୍ୟ ଫଳକୁ କରେ ଉତପନ୍ନ
ଆତ୍ମ ଦର୍ଶନ ହିଁ ତାର ସ୍ଥିତିର କାରଣ ।
ଶାସ୍ତ୍ରଜ୍ଞାନେ ପରମାତ୍ମା ଦରଶନ ଚେଷ୍ଟା
ବିଷୟାନୁରାଗ ତ୍ୟାଗ ପାଇଁକି ପ୍ରଚେଷ୍ଟା,
ଏକାବେଳେ କରିବାକୁ କହିଥିଲେ ତାତ
ସେ କଥା ଭାବି ମୋ ମନ ହୁଅଇ ବ୍ୟଥିତ ।
ଶାସ୍ତ୍ରୋକ୍ତ ନିୟମମାନ ପାଳିବାର ପାଇଁ
ଯେଉଁ ପର୍ଯ୍ୟନ୍ତ ଏ ଚିତ୍ତ ନିଷ୍ଠାବାନ ନୋହି,
ଶରୀର ଧାରଣ ପାଇଁ ଚିତ୍ତର ଅର୍ଦ୍ଧେକ
ବିଷୟ ଭୋଗ ପାଇଁକି ଦେବ ସୁବିବେକ ।
ଚତୁର୍ଥାଂଶ ଲଗାଇବ ଶାସ୍ତ୍ର ପଠନରେ
ବାକି ଚତୁର୍ଥାଂଶ ଦେବ ଗୁରୁ ଶୁଶ୍ରୂଷାରେ ।
ଶାସ୍ତ୍ର ନିୟମେ କିଞ୍ଚିତ୍ ନିଷ୍ଠାବାନ ହେଲେ
ପରିବର୍ତ୍ତନ କରିବ ଏହି ନିୟମରେ ।
ଚିତ୍ତର ଚଉଠେ ଦେବ ବିଷୟ ଭୋଗରେ
ଚଉଠେ ବ୍ୟୟ କରିବ ଶାସ୍ତ୍ରାଲୋଚନାରେ ।
ଅର୍ଦ୍ଧଭାଗ ଲଗାଇବ ଗୁରୁ ଶୁଶ୍ରୂଷାରେ
ଚିତ୍ତ ଯିବାଯାଏ ସହଜରେ ସତ୍ ପଥରେ ।
ବିଷୟ ବୈରାଗ୍ୟ ପୁଣି ଶାସ୍ତ୍ରାନୁଧ୍ୟାନରେ
ଚିତ୍ତର ଅର୍ଦ୍ଧେକ ବ୍ୟୟ କରିବ ତହିଁରେ ।
ଗୁରୁ ଅରଚନ ପୁଣି ଧ୍ୟାନ କରିବାରେ
ବାକି ଅର୍ଦ୍ଧେକ ବ୍ୟୟିତ କରିବ ତହିଁରେ ।
ଏହି ଚିତ୍ତ ବାଳକକୁ ଯୁକତି ବଳରେ
ପୁଣି ପୂତ ଉପଦେଶମାନଙ୍କ ଛଳରେ,
ଲାଳନ ପାଳନ କର ଏପରି ଭାବରେ
ଶାସ୍ତ୍ରର ଆଦର୍ଶ ଧରି ଚଳିବ ଯା' ବଳେ ।
ଆତ୍ମା ସହ ଚିତ୍ତ କ୍ରମେ ହେଲେ ଏକୀଭୂତ
ଜଡ଼ ବିଷୟରୁ ସେହୁ ହୋଇବ ନିବୃତ୍ତି ।
ଭୋକ୍ତା, ଜୀବ, ଭୋଗ୍ୟ, ଭୋଗ ଏ ସମସ୍ତ ବ୍ରହ୍ମ
ପ୍ରଜ୍ଞା ଦୃଷ୍ଟି ମୁକ୍ତ କଣ୍ଠେ କହେ ଏ ବଚନ ।
ଆତ୍ମ ଦରଶନ ପାଇଁ ବିଷୟ ବୈରାଗ୍ୟ
ବୁଦ୍ଧି ବଳେ, ସୁବିଚାର କଲେ ଉଦେ ଭାଗ୍ୟ ।
ପ୍ରଦୀପର ତେଜ ପୁଣି ତାର ଦୀପଭାବ
ଯଥା ପରସ୍ପରାଶ୍ରିତ ତାଙ୍କ ଏ ସ୍ୱଭାବ ।
ତଥା ଆତ୍ମଦରଶନେ ତୃଷ୍ଣାର ଅଭାବ
ତୃଷ୍ଣାର ଅଭାବେ ଆତ୍ମ ଦରଶନ ଲଭ ।
କଉଣସି ରସ ଯଦି ବିଷୟେ ନ ରହେ
ବିଷୟ ରୂପ କେବଳ ବ୍ରହ୍ମ ଦେଖାଯାଏ ।
ତେବେ ଯାଇଁ ବ୍ରହ୍ମ ମଧ୍ୟେ ବିଶ୍ରାନ୍ତି ମିଳିବ
ବ୍ରହ୍ମେ ଲୀନ ହେବା ପାଇଁ ଏପଥ ଜାଣିବ ।
ଆତ୍ମଦର୍ଶନ ବ୍ୟତୀତ ବିଷୟ ଭୋଗରେ
ଅନନ୍ତ ସୁଖୋପଲବ୍ଧି ହୋଇଣ ନ ପାରେ ।
ଯଜ୍ଞ, ଦାନ, ତପସ୍ୟାରେ ସୁଖ ମିଳେ ସତ
କିନ୍ତୁ ତା ଜାଣିମ ସ୍ୱଳ୍ପ ଅତୀବ କିଞ୍ଚିତ ।
ବିଷୟେ ବୈରାଗ୍ୟ ପୁଣି ଆତ୍ମ ଦରଶନ
ଅନନ୍ତ ସୁଖ ଭଣ୍ଡାର କରିଦିଏ ଦାନ ।
ପୁରୁଷାକାର ବ୍ୟତୀତ ଆତ୍ମଦରଶନ
ଜୀବର ଘଟି ନ ପାରେ ଜାଣ କଦାଚନ ।
ଯହିଁରେ ନିଜର ହେବ ପରଂପଦ ଲାଭ
ସେହି ପୁରୁଷାକାରକୁ ବରଣ କରିବ ।
ଦଇବର ତହିଁ କିଛି ନ ଥାଇ କର୍ତ୍ତୃତ୍ୱ
ପୁରୁଷାକାରହିଁ ବଳ ଆବର ବ୍ୟକ୍ତିତ୍ୱ ।
ଲାଳସା ରହିଛି ତୋର ବିଷୟ ନିମିତ୍ତ
ବାସ୍ତବରେ ନାହିଁ ତାର କିଛି ହିଁ ଅସ୍ତିତ୍ୱ ।
ଯେଣୁ ତୁହି ଅଟୁ ସେହି ସଦାଶିବ ବ୍ରହ୍ମ
କୋଟି ନମସ୍କାର ତୋତେ ମୋର ରେ ପରମ ।

ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ବଳି ଚିନ୍ତା ସିଦ୍ଧାନ୍ତ ଉପଦେଶ ବର୍ଣ୍ଣନେ
ନାମ ୨୦ଶ ସର୍ଗଃ ।



## ୨୧ଶ ସର୍ଗଃ

## ବଳି ଉପଦେଶ (୨)

ଏହିପରି ବଳି ରାଜା ଭାବେ ତାର ଚିତ୍ତେ
ଏହି ଉପଦେଶ ପିତା ପୂର୍ବେ ଦେଲେ ମୋତେ ।
ସୌଭାଗ୍ୟରୁ ତାହା ଏବେ ପଡ଼େ ମୋର ମନେ
ଭୋଗ ପାଶୋରି ଜ୍ଞାନ ମୁଁ ଲଭିଲି ଏକ୍ଷଣେ ।
ରାଜ୍ୟ ରକ୍ଷାପାଇଁ କେତେ ଦୁଃଖ ମୁଁ ଭୋଗିଛି ।
ଭାଗ୍ୟ ବଳେ ସୁନିର୍ମଳ ସୁଖ ମୁଁ ଲଭୁଛି ।
ଆହା ଏହି ଶାନ୍ତି ଅଟେ କେଡ଼େ ମନୋରମ
ସକଳ ଦୁଃଖ ମୋହର ଏବେ ଉପଶମ ।
ସତେକି ନିର୍ବାଣ ପଦ ଲାଭ 'ହେଲା ମୋର
ଅପୂର୍ବ ଆନନ୍ଦ ଉଦେ ଅନ୍ତରେ ମୋହର ।
ଯେଉଁ ସୁଖ ଲଭୁଥିଲି ରମଣୀର ପାଶ
ଏବେ ଭାବୁଛି ସେସବୁ "ମୋହ"ର ବିଳାସ ।
ବହୁ ଉପଭୋଗ ମୁହିଁ କରିଅଛି ପୂର୍ବେ
ରାଜ୍ୟ ପାଇଁ ଆକ୍ରମଣ କଲି ପ୍ରାଣୀ ସର୍ବେ ।
ପ୍ରଭୁତ୍ୱ ବିସ୍ତାର କରି ସବୁରି ଉପର
କାଳ କଟାଉଣ ଥିଲି ମୁହିଁ ମୂଢ଼ ନର ।
କି ସୁଖ ବା କି ମଙ୍ଗଳ ହୋଇଛି ମୋହର
କିପାଁଇ ବା କେହୁ ମୋତେ କରିବ ଆଦର ?
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ଯାହାକି ଅପୂର୍ବ
କିଛି ତ ମିଳିଲା ନାହିଁ ଦେଖାଇଣ ଗର୍ବ ।
ସୁବିଚାର ବଳେ ଏବେ ସର୍ବ ତ୍ୟାଗ କରି
ସ୍ୱସ୍ଥ ଭାବେ ରହିଅଛି ଆତ୍ମାରେ ମୋହରି ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ 'ସାର' ଯେଉଁ ଭୋଗ
କାଳ କର୍ତ୍ତୃକ ବିନଷ୍ଟ ହୁଅଇ ସେ ସର୍ବ ।
ଦୁଃଖ ବିନା ସ୍ଥାୟୀସୁଖ ଭୋଗ ସମ୍ଭାବନା
ତହିଁରୁ ଆଶା କରିବା ଖାଲି ବିଡ଼ମ୍ବନା ।
ନିତାନ୍ତ ବାଳକ ଥିଲି ଏତେଦିନ ଯାଏ
କିଛିମାତ୍ର ଜ୍ଞାନ ମୋର ଆଜିଯା ନଥାଏ ।
ତୁଚ୍ଛ ବିଷୟ ପାଇଁକି ଦେବଗଣ ସହ
ବିଦ୍ୱେଷ ପ୍ରକାଶୁଥାଏ ମୁହିଁ ଅହରହ ।
ଅଜ୍ଞାନ-ମଦିରା ମତ୍ତ ହୋଇ ଦୀର୍ଘକାଳ
ହାୟ ! ଅନର୍ଥ ସେବାରେ ଗଲା ମୋର ବେଳ ।
ତୃଷ୍ଣା ବ୍ୟାକୁଳ ହୋଇଣ ଏହି ତ୍ରିଭୁବନେ
ଅନୁତାପପ୍ରଦ କିସ ନ କଲି ଜୀବନେ ?
ପୂର୍ବର ସେହି ସକଳ ତୁଚ୍ଛ ବିଷୟରେ
ଚିନ୍ତାକରି କିଛି ଲାଭ ନାହିଁ ଯେ ତହିଁରେ ।
ଯହିଁରେ ଅଜ୍ଞାନ ଶାନ୍ତି, ବ୍ରହ୍ମେ ଏକ ଭାବ
ପରମ ସୁଖ ଲଭିବି ଯାହାକି ଦୁର୍ଲଭ ।
ଆଚାର୍ଯ୍ୟ ଶୁକ୍ରଙ୍କୁ ତାହା ପଚାରିବି ମୁହିଁ
ମହାତ୍ମାଙ୍କ ଉପଦେଶେ ସିଦ୍ଧି ଲାଭ ହୋଇ ।

ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ବଳି ଉପଦେଶ ବର୍ଣ୍ଣନେ
ନାମ ୨୧ଶ ସର୍ଗଃ ।



## ୨୨ଶ ସର୍ଗଃ

## ବଳି ବିଶ୍ରାନ୍ତି

ବଶିଷ୍ଠ କହିଲେ ଶୁଣ ଆହେ ଧନୁର୍ଦ୍ଧାରୀ
ବଳି ମହାରାଜା ଏହି ରୂପେ ଚିନ୍ତା କରି,
ଧ୍ୟାନ ଯୋଗ ବଳେ ଶୁକ୍ରାଚାର୍ଯ୍ୟଙ୍କୁ ଚିନ୍ତିଲେ
ସେହିକ୍ଷଣି ଶୁକ୍ରମୁନି ଆସି ପହଞ୍ଚିଲେ ।
ଗୁରୁଦେବ ପାଦ ପଦ୍ମ ପୂଜାକରି ବଳି
ଦିବ୍ୟ ଆସନେ ବସାନ୍ତି ସମାଦର କରି ।
"ସୂର୍ଯ୍ୟ ଯେସନ ପ୍ରାଣୀଙ୍କୁ କର୍ମେ ନିଯୋଜଇ
ଆପଣ ଆସିବା ମୋତେ ଉତ୍ସାହ ଦିଅଇ ।
ଯାହା କଲେ ଭୋଗ ଲିପ୍ସା ମୋ ମନରୁ ଯିବ
ସେହି ଉପଦେଶ ମୋତେ ପ୍ରଦାନ କରିବ ।
ଆପଣ, ମୁଁ, ପୁଣି ଏହି ଲୋକମାନେ କିଏ
ଅନୁଗ୍ରହ କରି ତାହା ବତାନ୍ତୁ ମୁନିଏ ?"
ଶୁକ୍ରମୁନି ବୋଲେ ଶୁଣ ଆହେ ଦାନବେନ୍ଦ୍ର
ଅଧିକ ମୁଁ କି କହିବି ତୁମ୍ଭଙ୍କୁ ହେ ଭଦ୍ର ।
ସଂକ୍ଷେପରେ ସାରକଥା କହୁଅଛି ମୁହିଁ
ମନଦେଇ ତାହା ଶୁଣ ହେ ଦାନବ ସାଇଁ ।
କେବଳ ଯେ ଚିତ୍ ମାତ୍ର ଅଛି ଏ ଜଗତେ
ତେଣୁ ତାହା ଚିତ୍, ଚିନ୍ମୟ ମହାମତେ ।
ତୁମେ ଚିତ୍, ମୁହିଁ ଚିତ୍, ଚିତ୍ ସର୍ବଲୋକେ
ଏହାହିଁ ଯେ ସାରକଥା ଜାଣନ୍ତି ତ୍ରିଲୋକେ ।

ଯଥାର୍ଥରେ ଶ୍ରଦ୍ଧବାନ ବିବେକ ସମ୍ପନ୍ନ
ଯଦି ହୋଇଥାଅ ତୁମେ ହେ ବଳି ରାଜନ,
ବିଶ୍ୱାସ ରଖି ଚଳିଲେ ଏ ସାର କଥାରେ
ସକଳ ପ୍ରାପ୍ତବ୍ୟ ବସ୍ତୁ ଲଭିପାରେ ହେଳେ ।
ତା ନୋହିଲେ ଯେତେ ଉପଦେଶ ପାଉଥିଲେ
କିଛି ଲାଭ ହେବନାହିଁ ଜାଣ ନିଶ୍ଚୟରେ ।
ଚିତ୍ତର ଚୈତ୍ୟ କଳ୍ପନା ନାମ ହିଁ ବନ୍ଧନ
କଳ୍ପନା ପ୍ରତ୍ୟାଖ୍ୟାନ ହିଁ ଧରେ ମୁକ୍ତି ନାମ ।
କଳ୍ପିତ ଚୈତ୍ୟରୁ ମୁକ୍ତ ଚିତ୍‌ହିଁ କେବଳ
ପରିପୂର୍ଣ୍ଣ ଆତ୍ମା ଅଟେ ଏହା ତତ୍ତ୍ୱ ସାର ।
ଏହି ସୁନିଶ୍ଚିତ ଜ୍ଞାନ ବଳେ ତୁମେ ଜାଣ
ହୋଇପାରିବ ତୁମର ଆତ୍ମ ଦରଶନ ।
ଏହି ଆକାଶରେ ସପ୍ତଋଷି ସମାଗମ
ଦେବକାର୍ଯ୍ୟ ପାଇଁ ମୁହିଁ କରିବି ଗମନ ।
ଦେହେ ପ୍ରାଣ ଥିବାଯାଏ ମୁକ୍ତଜନମାନ
ତେଜ୍ୟା ନ କରନ୍ତି ଉପସ୍ଥିତ କର୍ମମାନ ।
ଏହା କହି ଭୃଗୁ ସୁତ ଶୁକ୍ର ମହାମୁନି
ଆକାଶ ମାର୍ଗେ ଚଳନ୍ତି ଦେବକାର୍ଯ୍ୟ ଘେନି ।
**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ବଳି ବିଶ୍ରାନ୍ତି ବର୍ଣ୍ଣନେ ନାମ ୨୨ଶ ସର୍ଗଃ ।**



## ୨୩ଶ ସର୍ଗଃ

## ବଳି ବିଜ୍ଞାନ ପ୍ରାପ୍ତି

କହନ୍ତି ବଶିଷ୍ଠ ଶୁକ୍ର କରନ୍ତେ ପ୍ରସ୍ଥାନ
ଏହି ଚିନ୍ତା ଖେଳିଯାଏ ବଳିରାଜା ମନ ।
ତାହାହିଁ ଯଥାର୍ଥ ଯାହା ଶୁକ୍ର ଗଲେ କହି
ଜଗତ କେବଳ ଚିତ୍, ଅନ୍ୟ କିଛି ନୋହି ।
ମୁହିଁ, ଜୀବଗଣ, ଦିଗବିଦିଗ ସହିତ
ବାହାରେ ଭିତରେ ଥିବା ପଦାର୍ଥ ସମସ୍ତ,
ସକଳ ପ୍ରକାର କର୍ମ ଅଟେ ସବୁ ଚିତ
ଚିତ୍ ଛଡ଼ା ଅନ୍ୟ କିଛି ନାହିଁ ଏ ଜଗତ ।
ଚିତ୍ ଶକ୍ତି ବଳେ ଯେବେ ଏହି ଯେ ଆଦିତ୍ୟ
ସୂର୍ଯ୍ୟ ରୂପରେ ନ ହୋଇ ଥାନ୍ତା ଆଲୋକିତ ।
ତେବେ ଏ ସୂର୍ଯ୍ୟ ଓ ଅନ୍ଧକାରର ମଧ୍ୟର
ପ୍ରଭେଦ କିଛି ନଥାନ୍ତା ଏହା ନିରାଧାର ।
ଚିତ୍ ଶକ୍ତି ଦ୍ୱାରା ଚେତ୍ୟ ନୋହିଲେ ଧରିତ୍ରୀ
ଧୃତଶୀଳତା ତାହାର ଆସନ୍ତା କିମିତି ?
ଆକାଶ, ଦିଗ, ପର୍ବତ, ସସାଗରା ଧରା
ଚେତ୍ୟ ନୁହନ୍ତେ ଏ ରୂପେ ଚିତ୍‌ଶକତି, ଦ୍ୱାରା
ହୋଇକି ପାରନ୍ତେ ସେହୁ କେବେହେଁ ଉଦ୍‌ଭୂତ
ଜଗତ ସ୍ୱରୂପ ବସ୍ତୁ ଆସନ୍ତା କେମନ୍ତ ?
ଚିତ୍‌ଶକ୍ତିଦ୍ୱାରା ଦେହ ନୁହନ୍ତେ କଳ୍ପିତ
ଦେହୀଙ୍କର ଦେହଭାବ ରହନ୍ତା କେମନ୍ତ ?
ଶରୀର, ଇନ୍ଦ୍ରିୟ, ମନ ମାନସିକ ଇଚ୍ଛା
ମନର ପ୍ରବୃତ୍ତି, ଆଦି ଯେ ସକଳ ବାଞ୍ଛା,
ଏମନ୍ତ କିଏ ସମଗ୍ର ସଂସାର ଯେ ଚିତ୍
ବିଚିତ୍ର ନୁହଇ ଜାଣ ଏହି ଯେ ସିଦ୍ଧାନ୍ତ ।
ଚିତ୍‌ଶକ୍ତି ଦ୍ୱାରା ଏହି ଶବ୍ଦାଦି ବିଷୟ
ଭୋଗ କରୁଅଛୁ ଏଥି ନ ଥାଇ ସନ୍ଦେହ ।
ଯେଣୁ ଏ ସର୍ବ ଜଗତ ଆତ୍ମା-ଚିନ୍ମୟ
ଆମ୍ଭେ ମଧ୍ୟ ସେହି ଚିତ୍ ଏ କଥା ନିଶ୍ଚୟ ।
ଆକାଶ, ପତନ, ବାୟୁ, ଜଳ, ଦେବାସୁର
ସ୍ଥାବର, ଜଙ୍ଗମ ଆଦି ଏହି ଯେ ସକଳ,
ସର୍ବ ସ୍ଥଳେ ଯେଉଁ ଚିତ୍ ଅଛି ବିଦ୍ୟମାନ
ମୁହିଁ ମଧ୍ୟ ସେହି ଚିତ୍ ବିନୁ ନୁହେଁ ଆନ ।
ଚିତ୍ ଛଡ଼ା ଅନ୍ୟ ବସ୍ତୁ ସତ୍ତା ଯେଣୁ ନାହିଁ
ଦ୍ୱୈତଭାବ ଯେଉଁ ସ୍ଥଳେ ଅସମ୍ଭବ ହୋଇ,
କିଏ ଅବା ବନ୍ଧୁ କିଏ ଶତ୍ରୁ ସେହି ସ୍ଥଳେ
କେବେହେଲେ ସମ୍ଭବକି ଏହା ହୋଇପାରେ ?
ଯେଣୁ ଚିତ୍ ବ୍ୟାପିଅଛି ଏ ସର୍ବ ଜଗତ
ଶରୀରରୁ ମସ୍ତକକୁ କଲେହେଁ ଛେଦିତ,
ଚିତ୍ତର କୌଣସି କ୍ଷତି ହୋଇ ନ ପାରଇ
ଅବିନାଶୀ ଚିତ୍ ସଦା ଜଗତ ଧରଇ ।
ହିଂସା, ଦ୍ୱେଷ, କ୍ରୋଧ, ମୋହ ଆଦି ଯେ ଧରମ
ଚିତ୍‌ଶକ୍ତି ଦ୍ୱାରା ସର୍ବ ଚେତୀତ ଜାଣିମ ।
ତେଣୁ ହିଂସା ଦ୍ୱେଷ ଆଦି ଯାବତୀୟ ଧର୍ମ
ଚିତ୍ ସ୍ୱରୂପ ବୋଲିଣ ଜାଣିବ ସେମାନ
ଚିତ୍‌ଶକ୍ତିର ନ ଥାଇ ଦୋଷ, ଅନୁରାଗ
କୌଣସି ବୃତ୍ତି ବା ମନ ନ ଥାଏ ତା ସଙ୍ଗ ।
ତେଣୁ କରି ଏହିପରି ବିଶୁଦ୍ଧ ଚିତ୍ତରେ
ବିକଳ୍ପ କଳ୍ପନାମାନ ଜାତ ନୋହିପାରେ ।

ମୁହିଁ ଅଟେ ସର୍ବବ୍ୟାପୀ, ସର୍ବରୂପୀ ନିତ୍ୟ
ଆନନ୍ଦମୟ ଅଟଇ ଯାହାର ବ୍ୟକ୍ତିତ୍ୱ ।
ବିକଳ୍ପ କଳ୍ପନାତୀତ ଅଟଇ ଯେ ମୁହିଁ
ଏକ ଚିତ୍ ସ୍ୱରୂପ ମୁଁ ଦ୍ୱିତୀୟ ନ ହୋଇ ।
ମୋର ଏ ରୂପକୁ ମୁହିଁ କରେ ନମସ୍କାର
ଯାବତୀୟ ଦୃଶ୍ୟ ଭାବ ଅତୀତ ମୋହର ।
ସତ୍‌ଚିତ୍ ସ୍ୱରୂପ ମୁଁ ଅନନ୍ତ ମହାନ
ଆକାଶ ସଦୃଶ ମୁହିଁ ଅଛି ବିଦ୍ୟମାନ ।
ଅଣୁ ଅପେକ୍ଷା ମୁଁ ଅଣୁ, ତହୁଁ କ୍ଷୁଦ୍ରତର
ସୁଖ, ଦୁଃଖ, ବାଧି ନ ଘାରଇ ମୋ ଶରୀର ।
ଅସଂବେଦ୍ୟ ଅଟେ ମୁହିଁ ଆବର ଅଦୃଶ୍ୟ
ସଂବିତ ସ୍ୱରୂପ ପୁଣି ମୋହର ପ୍ରକାଶ ।
ଜଗତର ଭାବାଭାବ ପଦାର୍ଥ ସକଳ
ପରିଚ୍ଛିନ୍ନ କରିବାକୁ ନାହିଁ ତାଙ୍କ ବଳ ।
ପରିଚ୍ଛିନ୍ନ କରିବ ତ କରୁ ମୋ ଶରୀର
ତାଙ୍କରି ରୂପେ ପ୍ରକାଶ ହୋଇବ ମୋହର ।
ଏ ହାତ ପଦାର୍ଥ ଯଦି ସେ ହାତକୁ ଯାଏ
ସେ ବସ୍ତୁର କଉଣସି ହାନୀ ନୋହିଥାଏ ।
ତାଙ୍କ ରୂପେ ପରକାଶ ହୋଇଲେ ମୋହର
ହାନୀ ଅବା ଲାଭ କିଛି ନ ଘଟିବ ମୋର ।
ସର୍ବ କର୍ମୀ, ସର୍ବରୂପୀ ପୁଣି ସର୍ବଗାମୀ
ମୋର ରୂପ ବଦଳିଲେ ନାହିଁ କିଛି ହାନୀ ।
ସଂକଳ୍ପ-ରୂପ ବିକଳ୍ପ ମୋଠାରୁ ଜନ୍ମିଲେ
କି ହାନୀ ବା ହେବ ମୋର ଜାଣି ମୁଁ ନ ପାରେ ।
ଏତେକାଳ ଅଜ୍ଞାନରୁ ଥିଲି ମୁଁ ସଂକ୍ଷୁବ୍ଧ
ଏବେ ଉଦୟ ହୋଇଛି ମୋର ତତ୍ତ୍ୱବୋଧ ।
ବିଶ୍ରାମ କରିବି ମୁହିଁ ଏବେ ସେ ଆତ୍ମାରେ
ପରମ ପବିତ୍ର ଯେହୁ ଏ ବିଶ୍ୱ ସଂସାରେ ।
ପରମ ପ୍ରବୁଦ୍ଧ ବୋଲି ନିଜକୁ ଭାବିବି
ଚୈତନ୍ୟ ବୋଧ ଓଁକାର ତ୍ରିମାତ୍ରା ତେଜିବି ।
ତୁରୀୟ ବ୍ରହ୍ମ ସୂଚକ ଅର୍ଦ୍ଧମାତ୍ରା ଭାବ
ଧରିଣ ମଉନ ରୂପେ ମଜ୍ଜିବି ଏ ଭବ ।
ସଂକଳ୍ପ, ବିକଳ୍ପ, ଧାତା, ଧ୍ୟାନ, ଧ୍ୟେୟ ଭାବ
ଦୂରୀଭୂତ ହେଲା ବଳି ଚିତ୍ତରୁ ଏ ସର୍ବ ।
ସକଳ ବାସନା ତାର ହୋଇଲେ ବିଲୀନ
ପରମ ପଦରେ ତହୁଁ ହୋଇଗଲା ଲୀନ ।
ନିର୍ବାତ ନିସ୍ପନ୍ଦ ଦୀପ ଯେପରି ନିଶ୍ଚଳ
ସେହିପରି ସ୍ଥିତି ଲଭେ ବିରୋଚନ ବାଳ ।
ଉପଶାନ୍ତ ହୋଇଗଲା ବଳି ରାଜ ମନ
ଗବାକ୍ଷ ନିକଟେ ରହେ ପଥର ସମାନ ।
ବହୁକାଳ ଏହିପରି ହୋଇଗଲା ଗତ
ତାହା ପରେ ଯାହା ହେଲା ଶୁଣ ସେ ଉଦନ୍ତ ।
ସମାଧିସ୍ଥ ଥାଇ ବଳି ଏ ସବୁ ଦେଖିଲା
ସୌଭାଗ୍ୟ ତପନ ତାର ଉଦୟ କି ହେଲା ?

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ବଳି ବିଜ୍ଞାନ ପ୍ରାପ୍ତି ବର୍ଣ୍ଣନେ**
**ନାମ ୨୩ଶ ସର୍ଗଃ ।**

❑

## ୨୪ଶ ସର୍ଗଃ

## ବଳି ସମାଧି

ବଳି ରାଜାର ଏସନ ଅବସ୍ଥା ଶୁଣିଣ
ଧାଇଁଲେ ତା ଅନୁରାଗୀ ଅନୁଚର ଗଣ ।
ଡ଼ିମ୍ଭ ସହିତ ସଚିବଗଣ ଧାଇଁଛନ୍ତି
କୁମୁଦ ସହ ସାମନ୍ତ ରାଜାଏ ଚଳନ୍ତି ।
ବୃତ୍ତ ଆଦିକରି ଯେତେ-ସେନାପତି ଗଣ
ଚକ୍ର ଓ ଲଡୁକ ଆଦି ସୁହୃଦ ଯେମାନ ।
ସମବେତ ହେଲେ ଆସି ବଳିର ନିକଟ
ବେଗେ ବେଗେ ଧାଇଁଛନ୍ତି ଅସୁରଙ୍କ ଥାଟ ।
ଇନ୍ଦ୍ର, ଯମ, କୁବେରାଦି ଯେତେ ଦେବଗଣ
ପହଞ୍ଚିଲେ ତହିଁ ଘେନି ଉପହାରମାନ
ଯକ୍ଷ, ବିଦ୍ୟାଧର, ନାଗବୃନ୍ଦ ରହିଛନ୍ତି
ସେବା ଅବସର ପାଇଁ ପ୍ରତୀକ୍ଷା କରନ୍ତି ।
ନତମସ୍ତକ ହୋଇଣ ସକଳେ ଦେଖନ୍ତି
ପର୍ବତ ସଦୃଶ ବଳି ରାଜା ବସିଛନ୍ତି ।
ନିଶ୍ଚଳ ଅଙ୍ଗ ପ୍ରତ୍ୟଙ୍ଗ ମୁଦ୍ରିତ ନୟନ
ନିର୍ବିକଳ୍ପ ସମାଧିରେ ଅଛନ୍ତି ମଗନ ।
ମନ୍ତ୍ରୀଙ୍କ ସହ ସକଳେ କରନ୍ତି ବିଚାର
କିଛି କରିବାର ନାହିଁ ଆମ୍ଭମାନଙ୍କର ।
ସର୍ବଜ୍ଞ ଶୁକ୍ରାଚାର୍ଯ୍ୟଙ୍କୁ କରିବା ସ୍ମରଣ
ଏହା ଭାବି ଭାର୍ଗବଙ୍କୁ କଲେ ସେ ଚିନ୍ତନ ।
ଜ୍ୟୋତିର୍ମୟ ଶରୀରରେ ଶୁକ୍ରାଚାର୍ଯ୍ୟ ଆସି
ଯଥା ବିଧି ପୂଜା ପାଇଁ ଆସନରେ ବସି ।

ସମାଧି ଅବସ୍ଥା ଦେଖି ବଳି ରାଜାଙ୍କର
ଅନ୍ତରେ ସ୍ନେହର ଢେଉ ଉଠେ ବାରମ୍ବାର ।
ନିରୀକ୍ଷଣ କରି ତାଙ୍କୁ ଆଶ୍ଚର୍ଯ୍ୟ ପ୍ରବର
ଜାଣିଲେ ତା ଭବ-ଭ୍ରାନ୍ତି ହୋଇଅଛି ଦୂର ।
ଅସୁର ଗଣଙ୍କୁ ଶୁକ୍ର କରି ସମ୍ବୋଧନ
କହନ୍ତି ହେ ଦୈତ୍ୟଗଣ ଶୁଣ ମୋ ବଚନ ।
"ସଂକଳ୍ପ ଦ୍ୱାରା ବ୍ରହ୍ମତ୍ୱ ଲଭିଛନ୍ତି ବଳି
ବ୍ରହ୍ମ ସ୍ୱରୂପ ହୋଇଣ ବ୍ରହ୍ମେ ଛନ୍ତି ମିଳି ।
ସେହିପରି ଥାଆନ୍ତୁ ସେ ତାଙ୍କର ସହିତ
ବାର୍ତ୍ତାଲାପ କରିବାଟା ନୁହଇ ଉଚିତ ।
ତୁମ ଦୃଷ୍ଟିରେ ସେ ଏବେ ଅଛନ୍ତି ମୂର୍ଚ୍ଛିତ
ଅହଂଭାବ ଆସିଲେ ତା ହେବ ଦୂରୀଭୂତ ।
ଯେତେବେଳେ ନିଜେ ନିଜେ ଉଠିବେ ସେ ଜାଗି
ରାଜକାର୍ଯ୍ୟେ ମନ ଦିଅ ଉତ୍କଣ୍ଠା ବରଜି ।
ସହସ୍ର ବରଷ ପରେ ସମାଧି ତେଜିବେ
ସେ ଯାଏ ଧଇର୍ଯ୍ୟ ଧରି ରହ ହେ ସରବେ ।"
ଶୁଣି ଶୁକ୍ରାଚାର୍ଯ୍ୟଙ୍କର ଏପରି ବଚନ
ଦୁଃଖ ବିଷାଦ ତେଜିଲେ ସେ ଦାନବ ଗଣ ।
ଆଗନ୍ତୁକମାନେ ସ୍ୱ ସ୍ୱ ପୁରେ ବାହୁଡ଼ିଲେ
ରାଜକାର୍ଯ୍ୟ ଚଳେ ଯଥା ବିଧି ଅନୁସାରେ ।
**ଇତିଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ବଳି ସମାଧି ବର୍ଣ୍ଣନେ ନାମ ୨୪ଶ ସର୍ଗଃ ।**



## ୨୫ଶ ସର୍ଗଃ

## ବଳି ବିଶ୍ରାନ୍ତି

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ସହସ୍ର ବରଷ କ୍ରମେ ହୋଇଲା ଅତୀତ ।
ଦେବଗଣଙ୍କ ଦୁନ୍ଦୁଭି ସ୍ୱନ ଶୁଣି କରି
ବଳି ରାଜା ଅହଂଭାବ କ୍ରମେ ଆସେ ଫେରି ।
ସମାଧି ଭାବ ତାଙ୍କର ହୁଅନ୍ତେ ଭଗନ
ଜାଗ୍ରତ ଅବସ୍ଥା ଲଭେ ଦାନବ ରାଜନ ।
ବିଜୁଳି ପରାଏ ଖେଳିଯାଏ ଏ ସମ୍ବାଦ
ଲହଡ଼ି ପରି ଧାଇଁଲେ ସେ ଦାନବ ବୃନ୍ଦ ।
ଏହି ଅବସରେ ବଳି ଭାବନ୍ତି ଏମନ୍ତ
"ଆହା ସେ ପରମପଦ କି ଅମୃତବତ ।
କ୍ଷଣକାଳ ବିଶ୍ରାମି ମୁଁ ସେ ପରମ ପଦେ
ଅପୂର୍ବ ବିଶ୍ରାନ୍ତି ଲଭିଲଇଁ କି ଆନନ୍ଦେ ।
ପୁନର୍ବାର ସେହି ପଦେ କରିବି ବିଶ୍ରାମ
ବାହ୍ୟ ବିଷୟ ଭୋଗେ ମୋ କିସ ପ୍ରୟୋଜନ ?
ସେହି ସମାଧିରୁ ମିଳିଥିଲା ଯେ ଆନନ୍ଦ
ହୃଦ ଲଭିଥିଲା ଯେଉଁ ସନ୍ତୋଷ ଆମୋଦ
ଚନ୍ଦ୍ରମଣ୍ଡଳରେ ମୃଗରୂପେ କଲେ ବାସ
ମିଳି କି ପାରଇ ସେହି ସନ୍ତୋଷ ପୀୟୁଷ ?"
ମନେ ମନେ ଏହିପରି ଭାବିକରି ବଳି
ସମାଧି ଲଭିବା ପାଇଁ ଇଚ୍ଛା ତାର ବଢ଼ି ।
ସଙ୍ଗେ ସଙ୍ଗେ ଦୈତ୍ୟଗଣ ପହଞ୍ଚନ୍ତି ତହିଁ
ଦୃଷ୍ଟିପାତ କରି ବଳି ପ୍ରଣାମ ଘେନଇ ।
ମନେ ମନ ଏସନକ ଭାଳଇ ରାଜନ
ବିକଳ୍ପ ବିହୀନ ଚିତ୍ ମୁହିଁ ସେହି ମନ ।
କିସ ବା ଅଛି ମୋହର ଗ୍ରହଣ ପାଇଁକି
ମନ ମୋର ତାହା ପ୍ରତି ଧାଇଁବ କାହିଁକି ?
ମୁକ୍ତି କାମନା କିପାଁଇଁ କରିବଇଁ ମୁହିଁ
କେହି କି ବନ୍ଧନ ମୋତେ କେବେ କରିଛଇଁ ?
ନିଜେ ମୁହିଁ କଳପିଣ ନିଜର ବନ୍ଧନ
ଉଦ୍ଧାର ପାଇଁକି ପୁଣି ହେବି ମୁକ୍ତିକାମ ।
ହସିବ ଶୁଣିଣ ମୋର ମୂର୍ଖତା ଜଗତ
ନାସିକାରେ ହାତ ଦେବ ସିନା ଭବିଷ୍ୟତ ।
ବାସ୍ତବରେ ନାହିଁ ମୋର ମୁକ୍ତି ବା ବନ୍ଧନ
ସୁଦୂରେ ପଳାଇଅଛି ମୋର ମୂର୍ଖପଣ ।
ଧ୍ୟାନ ଦ୍ୱାରା ମୋର କିଛି ଲାଭ ତ ନ ହୋଇ
ଧ୍ୟାନ ବିନା କିଛି କ୍ଷତି ହେବ ଅବା କାହିଁ ?
ଭୋଗର ବାସନା କିଛି ନାହିଁତ ମୋହର
ଭୋଗର ଅଭାବ ହେବା ଇଚ୍ଛା ନୁହେ ମୋର ।
ଜଗତ ପାଇଁକି ମୋର ଆକାଂକ୍ଷା ନ ଥାଇ
ବ୍ରହ୍ମତ୍ୱ ପାଇଁକି ମଧ୍ୟ କାମନା ବି ନାହିଁ ।
ନୁହେ ମୃତ ମୁହିଁ କିବା ଜୀବିତ ମୁଁ ନୋହି
ସତ, ଅସତ, ସନ୍ନ୍ୟାସ କିଛି ନ ଜାଣଇ ।
ଉଲ୍ଲିଖିତ କାରଣରୁ ମୁଁ ଅଟେ ମହାନ
କୋଟି କୋଟି ନମସ୍କାର ତେଣୁ ମତେ ଜାଣ ।
ଯଦି ଏ ଜଗତ ଅଛି, ଅଛି ମୁଁ ସର୍ବତ୍ର
ଜଗତ ନ ଥିଲେ ଅବା କ୍ଷତି ମୋର କୁତ୍ର ?

ନିଜ ମଧ୍ୟେ ନିଜେ ମୁହିଁ ସର୍ବଦା ସଂସ୍ଥିତ
ଧ୍ୟାନ ବା ରାଜ୍ୟ ଭୋଗର ମୁଁ ଅଟେ ଅତୀତ ।
ଯା' ହେବାର ହେଉ ଅବା ଆସୁ ଯା' ଆସୁଛି
ମୋର ହୋଇ କରି ଅବା କାହିଁ ଅଛି କିଛି ?
ଯଦି ଓ କରଣୀୟ ମୋ ନାହିଁ କିଛି କାର୍ଯ୍ୟ
କିଛି ହାନୀ ନାହିଁ ତେଣୁ କଲେ ରାଜକାର୍ଯ୍ୟ ।
ଏହିପରି ମନେ ମନେ ସ୍ଥିର କରି ବଳି
ପ୍ରସିଦ୍ଧ ଦୈତ୍ୟଙ୍କ ଆଡ଼େ ଦୃଷ୍ଟିପାତ କରି,
ଅନ୍ତରରେ ଅନାସକ୍ତ ବାହାରେ ଆସକ୍ତ
ଭାବ ଦେଖାଇଣ ବଳି କଲେକ ରାଜତ୍ୱ ।
ଦେବ, ଗୁରୁ, ବିପ୍ରଙ୍କର ଅରଚନା କଲେ
ବନ୍ଧୁ, ସାମନ୍ତମାନଙ୍କୁ ସମାଦର ଦେଲେ ।
ଧନଧାନ୍ୟ ବିତରଣ କରିଣ ରାଜନ
ଭୃତ୍ୟ ଯାଚକଙ୍କୁ କଲେ ସନ୍ତୋଷ ବିଧାନ ।
ଏହିପରି ସୁଶାସନ ଚଳାଇଣ ବଳି
ରାଜ୍ୟ ଶ୍ରୀ ବର୍ଦ୍ଧନ କଲେ ପରଜାଙ୍କୁ ପାଳି ।
ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ
ବଳି ବିଶ୍ରାନ୍ତି ବର୍ଣ୍ଣନେ ନାମ ୨୫ଶ ସର୍ଗଃ ।



## ୨୬ଶ ସର୍ଗଃ

## ଚିତ୍ତ ବୋଧନ

ଏହିପରି କେତେ କାଳ କରନ୍ତେ ଶାସନ
ଯଜ୍ଞ ଆରମ୍ଭିବା ପାଇଁ ବଳେ ତାଙ୍କ ମନ ।
ଶୁକ୍ରାଚାର୍ଯ୍ୟ ସହ ନାନା ମହାତ୍ମା ସହିତ
ମହାଯଜ୍ଞ ପାଇଁ ବଳି ହୋଇଲେ ଦୀକ୍ଷିତ ।
ସେହି ଯଜ୍ଞକାର୍ଯ୍ୟ ସମ୍ପାଦିତ ହେଲାବେଳେ
ଯଜ୍ଞ ଫଳଦାତା ବିଷ୍ଣୁ ଆସି ପହଞ୍ଚିଲେ ।
ବଳି ଭୋଗନି-ସ୍ପୃହତା ଜାଣି ପାରିଛନ୍ତି
ଅଭିଷ୍ଟ ଫଳ ପ୍ରଦାନ କରଣେ ଇଛନ୍ତି ।
ଇନ୍ଦ୍ରଙ୍କୁ ତ୍ରୈଲୋକ ରାଜା କରିବାର ପାଇଁ
ବଳିକି ଛଳି ପାତାଳେ ବାନ୍ଧନ୍ତି ଗୋସାଇଁ ।
ନିର୍ବିକଳ୍ପ ସମାଧିରେ ମଗ୍ନ ହୋଇ ବଳି
ପାତାଳ ଦେଶ ମଧ୍ୟରେ ଅବସ୍ଥାନ କରି ।
ବିପଦ ପୁଣି ସମ୍ପଦ ଉଭୟାବସ୍ଥାରେ
ସମଭାବ ଧରି ବଳି ରହିଛି ସେଠାରେ ।

ତ୍ରଇଲୋକ ରାଜପଦ ଉପଭୋଗ କରି
ବଳି ଚିତ୍ତ ଉପଶମ ଲଭିଛି ଏପରି ।
ଏଇ ରୂପ ଦୃଷ୍ଟି ଆଶ୍ରେ କରି ହେ ଶ୍ରୀରାମ
ପରମ ଶ୍ରେୟ ଲାଭ ମୁଁ କହୁଛି ଏସନ ।
'ମୁହିଁ ନିତ୍ୟ' ଏହି ଭାବ ଧରି ହେ ଶ୍ରୀରାମ
ପୁରୁଷାକାର ବଳକୁ ଆଶ୍ରୟ କରିଣ,
ବଳି ସଦୃଶ ଅଦ୍ୱୈତ ପଦରେ ଆରୂଢ଼
ହୁଅ ହେ ଶ୍ରୀରାମ ତୁମ ଚିତ୍ତ କରି ଦୃଢ଼ ।
ଏ ଦୃଶ୍ୟ ଦର୍ଶନ ଆପାତତଃ ରମଣୀୟ
ହେଲେହେଁ ଯଥାର୍ଥ ତାହା ନୁହେ ରଘୁରାୟ ।
ଏବେ ମଧ୍ୟ ତୁମ ଚିତ୍ତ ଭୋଗରେ ଆକୃଷ୍ଟ
ପ୍ରବର୍ତ୍ତିଛ ତୁମେ ବ୍ୟବହାରରେ ନିକୃଷ୍ଟ ।
ସଂଯତ କରି ଚିତ୍ତକୁ ହୃଦୟ ଗହ୍ୱରେ
ଯତନେ ସ୍ଥାପିତ କର ଆହେ ରଘୁବୀରେ ।
ତୁମେ ଅଟ ସର୍ବବ୍ୟାପୀ ଚୈତନ୍ୟ-ତପନ
ତୁମ୍ଭର ଆତ୍ମୀୟ ବନ୍ଧୁ ଅଟେ କେଉଁ ଜନ ?
ବୃଥାରେ ସ୍ଖଳିତପଦ ହେଉଛ କିପାଇଁ
ଅନନ୍ତ ଆଦ୍ୟନ୍ତ ହୀନ ପୁରୁଷ ଯେ ତୁହି ।
ଚିତ୍ତ ଅଟେ ତୋ ଶରୀର, ହେ ରଘୁନନ୍ଦନ
ନିତ୍ୟେ ନିତ୍ୟ ସମୂଦିତ ଶୁଦ୍ଧବୋଧ ଜ୍ଞାନ ।
ଏହି ଜଗତ ଆକାରେ ତୁମେହିଁ ସଂସ୍ଥିତ
ଜଗତକୁ ସୂତ୍ର ରୂପେ କରିଛ ଗ୍ରଥିତ ।
ସ୍ଥାବର, ଜଙ୍ଗମ, ମଣି-ମାଳାଦିର ସୂତ୍ର
ତୁମଛଡ଼ା ଅନ୍ୟ କେହି ନାହିଁ ରଘୁନାଥ ।
ଅଜର ଅମର ତୁମେ ମୃତ୍ୟୁ ତୁମ ନାହିଁ
ଚିନ୍ମୟ ବିରାଟ ତୁମେ ଆହେ ରଘୁସାଇଁ ।
ଜନ୍ମ ମରଣର ଭ୍ରମ ଦେଖିବ ଶ୍ରୀରାମ
ଯେପରି ତୁମକୁ ନ ଘାରଇ କଦାଚନ ।
ତୃଷ୍ଣା ପ୍ରାବଲ୍ୟରେ ଜନ୍ମ ବ୍ୟାଧି ବୃଦ୍ଧିପାଏ
ତୃଷ୍ଣା କ୍ଷୟ ହେଲେ ବ୍ୟାଧି ଉପଶମ ହୁଏ ।
ଏହି ତଥ୍ୟ ହୃଦୟରେ କରିଣ ବିଚାର
ଏ ବ୍ୟାଧିର ମୂଳ, ତୃଷ୍ଣା ନିବାରଣ କର ।
ତୃଷ୍ଣା ତେଜି ଭୋଗ କଲେ କୌଣସି କାର୍ଯ୍ୟେତେ
କିଛି କ୍ଷତି ସହିବାକୁ ନ ପଡ଼ଇ ହେଳେ ।
ତୁମେ ଅଟ ସଦା ସମୂଦିତ ଜଗତ୍‌ପତି
ଚିଦ୍‌ଭାସ୍କର ପୁଣି ତୁମେ ଆହେ ରଘୁପତି ।

ତୁମଠାରେ ଆଭାସିତ ଏ ସ୍ୱପ୍ନ ସଂସାର
ନିରର୍ଥକ ଦୁଃଖେ ମଗ୍ନ ନୁହ ରଘୁବୀର ।
କୌଣସି ପ୍ରକାର ଇଚ୍ଛା ନାହିଁ ଯେ ତୁମର
ସର୍ବ ପ୍ରକାଶକ ସର୍ବ ଆତ୍ମା ରଘୁବୀର ।
ବର୍ତ୍ତମାନ ଭାବୁଅଛ ଯାହା ତୁମେ ଇଷ୍ଟ
ମଙ୍ଗଳପ୍ରଦ ନୁହଇ ଦେବ ତା ଅନିଷ୍ଟ ।
ଅନିଷ୍ଟ ବୋଲି ଯାହାକୁ କରୁଛ ବିଚାର
ଇଷ୍ଟ ଫଳ ଦେବ ଜାଣ ସେ ପୁରୁଷାକାର ।
ଏହି ରୂପ ଜ୍ଞାନେ ତୁମେ ଅଭ୍ୟସ୍ତ ରହିଲେ
ଇଷ୍ଟାନିଷ୍ଟ ବୁଦ୍ଧି ଅସ୍ତ ହୋଇଯିବ ଭଲେ ।
ସେତେବେଳେ ସମଜ୍ଞାନ ତୁମ ହୃଦୟରେ
ଉଦିତ ହେବ ହେ ରାମ ଜାଣ ଏହା ଭଲେ ।
ଏ ଶାଶ୍ୱତ ସମଜ୍ଞାନ ହୃଦୟରେ ଥିଲେ
ପୁନର୍ଜନ୍ମ ନ ଲଭଇ ଜୀବ ରଘୁବୀରେ ।
ଏ ମନ ଅଟଇ ରାମ ବାଳକ ସଦୃଶ
ଯେତେବେଳେ ଯାର ପାଶେ ଧାଇଁବ ଅବଶ୍ୟ,
ତହିଁରୁ ତାହାକୁ ରାମ ନିବୃତ୍ତ କରାଇ
ପରମାର୍ଥ ତତ୍ତ୍ୱେ ତାକୁ ନିଯୋଜିବ ନେଇ ।
ଏହି ଭାବେ ଏ ମନକୁ କରିଲେ ନିଯୁକ୍ତ
ଆତ୍ମଜ୍ଞାନ ଲବ୍ଧ ହୋଇ ଶ୍ରେଷ୍ଠ ଶ୍ରେୟ ପ୍ରାପ୍ତ ।
ଏ ଦେହକୁ ସାରବସ୍ତୁ ମଣେ ଯେଉଁ ଜନ
ମିଥ୍ୟାଜ୍ଞାନେ ଚିତ୍ତ ଯାର ଅଟଇ ମଳିନ,
ସେପରି ଜନଙ୍କ ପରି ନ ହୋଇବ କେବେଁ
ଏ ମନକୁ ସାଧ କରି ପାରିବ ଯେ ତେବେ ।
ଅବିବେକ-ମେଘ ହୃଦ ଆକାଶୁ ତୁମର
ବିବେକ ବାୟୁ ବଳେ ତା ବିତାଡ଼ିତ କର ।
ଆତ୍ମ ଦରଶନ ପାଇଁ ଆତ୍ମାକୁ ଯେଯାଏ
ଆତ୍ମା ଅନୁଗ୍ରହ ନ କରିଛି ସେହିଯାଏ,
ବିଚାର ଉଦୟ ହୃଦେ କେବେଁ ନ ଘଟଇ
ଅବିଚାର ଅନ୍ଧକାର ମାଡ଼ିବସିଥାଇ ।
ଯେଯାଏ ଆତ୍ମାର ନାହିଁ ଆତ୍ମଦରଶନ
ବେଦଶାସ୍ତ୍ର ତର୍କାଦିରେ ନୁହେ ବୋଧଜ୍ଞାନ ।
ଯଦିଓ ଆତ୍ମାରେ ତୁମେ ଅଛ ଅବସ୍ଥିତ
ବୁଝିଅଛ ଏ ଆତ୍ମାର ସରବ ବ୍ୟାପିତ୍ୱ,
ତଥାପି ମୋ ଉପଦେଶ ବଳେ ହେ ଶ୍ରୀରାମ
ସୁନିଶ୍ଚିତ ହୋଇଅଛି ତୁମ ବୋଧଜ୍ଞାନ ।

ତୁମର ସଂକଳ୍ପମାନ ଲଭିଛନ୍ତି କ୍ଷୀଣ
ଲୀନ ହୋଇଛି ବିଷୟ ଅନୁରାଗମାନ ।
ମୁକ୍ତିପାଇଁ କ୍ରମେ କ୍ରମେ ଜ୍ଞାନ ସୋପାନରେ
ଯେ ଉନ୍ନତି ଅନୁଭବ କରି ବିସ୍ମୟରେ ।
ଆତ୍ମତତ୍ତ୍ୱ ଆବରଣ ବିକ୍ଷେପ ଆବର
ତାହାଦ୍ୱାରା ଦୂରୀଭୂତ ହେବ ରଘୁବୀର ।
ସେତେବେଳେ ଏହା ସବୁ ତିଷ୍ଠି ନ ପାରିବ
ମୋ କହିବା କଥା ଏବେ ବୁଝିପାରୁଥିବ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଚିତ୍ତବୋଧନ ବର୍ଣ୍ଣନେ**
**ନାମ ୨୬ଶ ସର୍ଗଃ ।**



## ୨୭ଶ ସର୍ଗଃ
## ହିରଣ୍ୟକଶିପୁ

ବଶିଷ୍ଠ ବୋଇଲେ ଏବେ ଶୁଣ ରଘୁନାଥ
ପ୍ରହଲ୍ଲାଦ ଆତ୍ମଜ୍ଞାନ ଲାଭର ଚରିତ ।
ପାତାଳ ଦେଶରେ ବାସ କରେ ଦୈତ୍ୟବୀର
ହିରଣ୍ୟକଶିପୁ ନାମ ଅଟଇ ତାହାର ।
ଇନ୍ଦ୍ରଙ୍କୁ ଯୁଦ୍ଧରେ ଜିଣି ତ୍ରଇଲୋକ ରାଜ୍ୟ-
ଭୋଗ କରୁଥିଲା ସେହି ଦୈତ୍ୟକୁଳ ରାଜ ।
କାଳକ୍ରମେ ବହୁ ପୁତ୍ର ଜନମିଲେ ତାର
ପ୍ରହଲାଦ ଅଟେ ତାର ପ୍ରଧାନ କୁମର ।
ପ୍ରହଲ୍ଲାଦକୁ ସହାୟ ରୂପେ ପାଇକରି
ହିରଣ୍ୟକଶିପୁ ବୁଲେ ମତ୍ତଗଜ ସରି ।
ପୁଅ ବଳ ପାଇ ସେହି ଦୈତ୍ୟ ଶିରୋମଣି
ନାନାଭାବେ ଦେବତାଙ୍କୁ ପ୍ରପୀଡ଼ଇ ଜାଣି ।
ହଇରାଣ ହୋଇ ଦେବଗଣ ଚଳିଗଲେ
ବିଷ୍ଣୁଙ୍କ ଚରଣେ ଯାଇ ପ୍ରଣିପାତ କଲେ ।
ଯେଉଁପରି ଦଇତର ହୋଇବ ନିଧନ
ସେଥିପାଇଁ ଦେବଗଣ କଲେ ନିବେଦନ ।
ନରସିଂହ ଅବତାର ଧରିଣ ଶ୍ରୀହରି
ହିରଣ୍ୟକଶିପୁ ବକ୍ଷ ବିଦାରଣ କରି
ହିରଣ୍ୟ ଦୈତ୍ୟକୁ ବଧ କଲାବେଳେ ହରି
ଅଗ୍ନିଧାରା ନିରଗତ ନେତ୍ରରୁ ତାଙ୍କରି ।
ପୁର ଦୈତ୍ୟଗଣ ସେହି ଅଗ୍ନି ପ୍ରତାପରେ
ମାଛକୁ ପୋଡ଼ିଲା ପରି ପୋଡ଼ି ଜଳି ମଲେ ।

ଯେ ବଞ୍ଚି ରହିଲେ ଇତସ୍ତତଃ ହୋଇକରି
ପଳାୟନ କଲେ ପଥ ନ ଦିଶିଲା ପରି ।
ଦୈତ୍ୟଙ୍କର ବିନାଶରେ ଆସି ଦେବଗଣ
ନୃସିଂହଙ୍କ ପାଦପଦ୍ମେ କରନ୍ତି ଅର୍ଚ୍ଚନ ।
ଦେବତାମାନଙ୍କ ପୂଜା ଗ୍ରହଣ କରିଣ
ଆଶ୍ୱାସ ପ୍ରଦାନ କରି ହେଲେ ଅନ୍ତର୍ଦ୍ଧାନ ।
ଅବଶିଷ୍ଟ ଯେଉଁ ଦୈତ୍ୟଗଣ ବଂଚି ଥିଲେ
ପ୍ରହ୍ଲାଦ ସହ ସରବେ ନିଜ ପୁରେ ଗଲେ ।
ନିହତ ଦୈତ୍ୟମାନଙ୍କ ପ୍ରେତକ୍ରିୟା କଲେ
ଉଦ୍‌ବିଗ୍ନ, ବିଷଣ୍ଣ ଭାବେ ସମସ୍ତେ ରହିଲେ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ହିରଣ୍ୟକଶିପୁ ଉପାଖ୍ୟାନ ବର୍ଣ୍ଣନେ**
**ନାମ ୨୭ଶ ସର୍ଗଃ ।**



## ୨୮ଶ ସର୍ଗଃ

## ପ୍ରହ୍ଲାଦ ବିଜ୍ଞାନ

ଦୁଃଖର ସହ ପ୍ରହ୍ଲାଦ ମଉନ ଭାବରେ
ଏଣିକି ମୁଁ କି କରିବି ବୋଲିଣ ଭାବିଲେ ।
ଦୈତ୍ୟଙ୍କ ମଧ୍ୟେ ପ୍ରତାପଶାଳୀ ଯେ ହୋଇବ
ଅବଶ୍ୟ ବିଷ୍ଣୁଙ୍କ ହସ୍ତେ ନିଧନ ଲଭିବ ।
କେତେ ଦୈତ୍ୟ ବୀର ଜନମିଲେ ଏ ପାତାଳେ
ହିମାଳୟେ ଜାତ ପଦ୍ମପରି ସର୍ବେ ଗଲେ ।
ହାୟରେ ! କି ଦୁଃଖ ଏବେ ଆସିଣ ପଡ଼ିଲା
ଏବେ ମୋ ପିତାଙ୍କ ରାଜ୍ୟ ଆକ୍ରମଣ ହେଲା ।
ଯେଉଁ ଦେବଗଣ ପିତା ଗୋଡ଼ ମୋଡୁଥିଲେ
ପିତାଙ୍କ ରାଜ୍ୟକୁ ଏବେ ଦଖଲ ସେ କଲେ ।
ଭଗ୍ନୋତ୍ସାହ, ହୀନବଳ ହୋଇ ବନ୍ଧୁଗଣ
ଦୀନହୀନ ଭାବେ କରୁଛନ୍ତି ଅବସ୍ଥାନ ।
ବିଧାତାର ଅସାଧ୍ୟ ହିଁ କିଛିମାତ୍ର ନାହିଁ
ଦେବତାଙ୍କ ଲୀଳାଭୂମି ଦୈତ୍ୟପୁର ହୋଇ ।
ପତ୍ରଟିଏ ପଡ଼ିଯାଏ ଯେବେ ଭୂମିତଳେ
ଦାନବ କାମିନୀଙ୍କର ଡରେ ହୃଦ ଥରେ ।
ଆମ୍ଭଠାରେ ହରି ଯେଣୁ ପ୍ରସନ୍ନ ନୁହନ୍ତି
ପଦେ ପଦେ ଦୈତ୍ୟଗଣ ଏପରି ଭୋଗନ୍ତି ।
ଯେହେତୁ ଦେବଙ୍କଠାରେ ବିଷ୍ଣୁ ସୁପ୍ରସନ୍ନ
କେବେହେଁ ସେମାନେ ନ ହୁଅନ୍ତି ହଇରାଣ ।
ସେହି ମଧୁସୂଦନଙ୍କୁ ଆକ୍ରମଣ କରି
ପରାଜିତ କେହି ତାଙ୍କୁ କରି ତ ନପାରି ।
ନିରସ୍ତ୍ରରେ ଥିଲେ ମଧ୍ୟ ହରି ଯେ ଦୁର୍ଜ୍ଜୟ
ଅସ୍ତ୍ରବଳେ ଛିନ୍ନ ନୋହି ପାରେ ତାଙ୍କ କାୟ ।
ତାଙ୍କ ଆକ୍ରମଣ ପାଇଁ ଏକଇ ଉପାୟ
ଭାବି ଭାବି ଏବେ ମୁହିଁ କରିଅଛି ଥୟ ।
ସେ ଉପାୟ ଛଡ଼ା ଅନ୍ୟ କୌଣସି ଉପାୟ
କାର୍ଯ୍ୟକାରୀ ହୋଇ ନ ପାରିବ ଏହା ଥୟ ।
ସକଳ କର୍ମରେ ପୁଣି ସକଳ ବସ୍ତୁରେ
ସବୁ ବୁଦ୍ଧି ଖଟାଇବ ତାଙ୍କ ଚରଣରେ ।
ତାଙ୍କ ପ୍ରସନ୍ନତା ଲାଭ କରିବାର ପାଇଁ
ଏହାଛଡ଼ା ଅନ୍ୟ କିଛି ଉପାୟ ଯେ ନାହିଁ ।
ହରିଙ୍କଠାରୁ ପ୍ରବଳ ଅନ୍ୟ କେହି ନାହିଁ
ଜଗତର ସୃଷ୍ଟି, ସ୍ଥିତି, ଲୟ ସେ କରଇ ।
ଏହି ମୂହୁର୍ତ୍ତରୁ ମୁହିଁ ସେହି ହରିଙ୍କର
ପଦରେ ଆଶ୍ରୟ କରିଲଇଁ ନିରନ୍ତର ।
ଅହରହ ବାୟୁ ରହେ ଆକାଶେ ଯେସନ
"ନମୋ ନାରାୟଣ" ମନ୍ତ୍ର ରହିବ ସ୍ମରଣ ।
ଆକାଶ, ପୃଥିବୀ, ଦିଗ, ବିଦିଗ ସହିତେ
ଏ ସର୍ବ ଜଗତ ହରି ମୋର ହୃଦଗତେ ।
ମୁହିଁ ସେହି ହରି ନାମ ଅପ୍ରମେୟ ଆତ୍ମା
ହରିମୟ ହୋଇଯାଇଅଛି ମୋର ସତ୍ତା ।
ବିଷ୍ଣୁ ପୂଜା ପାଇଁ ନିଜେ ବିଷ୍ଣୁ ପାଲଟିବ
ତେବେ ଯାଇ ବିଷ୍ଣୁ ପୂଜା ଫଳ ଲାଭ ହେବ ।
ଯେହେତୁ ବିଷ୍ଣୁ ନ ହୋଇ ବିଷ୍ଣୁ ପୂଜାକରି
ବିଅର୍ଥ ସେ ପୂଜା ଚଷୁ କୁଟିଲାର ପରି ।
ତେଣୁକରି ମୁହିଁ ଏବେ ବିଷ୍ଣୁ ପାଲଟିଛି
ପ୍ରହ୍ଲାଦ ନାମକ ହରି ମୁହିଁ ବୋଲାଉଛି ।
ହରି ବ୍ୟତୀତ ସ୍ୱତନ୍ତ୍ର ସତ୍ତା ମୋର ନାହିଁ
ମୋ ଅନ୍ତରେ ଏହା ବଦ୍ଧମୂଳ ହୋଇଛଇ ।
ସର୍ବବ୍ୟାପୀ ହୋଇ ମୁହିଁ ଅନନ୍ତ ଆକାଶ
ପୂରି ରହିଛି ମୋହର ସର୍ବତ୍ର ପ୍ରକାଶ ।
ବିନତାସୁତ ଗରୁଡ଼ ମୋହର ବାହନ
କ୍ଷୀରସିନ୍ଧୁ ସୁତା ଲକ୍ଷ୍ମୀ ଚାମର ଧରିଣ,
ଉପବିଷ୍ଟା ମୋର ପାଶେ ସରାଗ ହୋଇଣ
ଅନ୍ୟ ପାର୍ଶ୍ୱେ ମାୟାଶକ୍ତି କରେ ଅବସ୍ଥାନ ।

ଚନ୍ଦ୍ର, ସୂର୍ଯ୍ୟ ଦ୍ୱୟ ମୋର ଏ ନେତ୍ର ଯୁଗଳ
ଯାହା ଘେନି ଏ ସଂସାର ଦିଶଇ ଉଜ୍ଜ୍ୱଳ ।
ପଞ୍ଚଜନ୍ୟ ଶଙ୍ଖ ରାଜେ ମୋହର ହସ୍ତରେ
କଉମୁଦୀ, ଗଦା, ସୁଦର୍ଶନ ମୋ ପାର୍ଶ୍ୱରେ ।
ନନ୍ଦକ ଖଡ଼ଗ ମୋର ହସ୍ତେ ବିରାଜିତ
ସାରଙ୍ଗ ଧନୁ ମୋ କରେ ଦେଖ ସୁଶୋଭିତ ।
ମୋ ଉଦରେ ବିରାଜଇ ଅନନ୍ତ ଜଗତ
ଧରଣୀ ରାଣୀ ବିରାଜେ ମୋ ଚରଣଗତ ।
ଆକାଶ ମସ୍ତକ ମୋର ଜଗତ ଶରୀର
ଦିଗ୍ ଚକ୍ର କୁକ୍ଷି ଦେଶ ଅଟଇ ମୋହର ।
ଶଙ୍ଖ, ଚକ୍ର, ଗଦାଧାରୀ ଗରୁଡ଼ ଆରୁଢ଼
ସାକ୍ଷାତ ବିଷ୍ଣୁ ମୁଁ ଅଟେ ସବୁଠାରୁ ବଡ଼ ।
ଏମନ୍ତ କେ ଅଛି ରଣ କରିବ ମୋ ସହ
କଲେ ବହ୍ନିରେ ପଡ଼ିବ ସଲଭର ନ୍ୟାୟ ।
ବିଷ୍ଣୁ ରୂପୀ ଈଶ୍ୱର ମୁଁ ବ୍ରହ୍ମା ଇନ୍ଦ୍ର ଶିବ
ଅଗ୍ନି ଦେବଗଣ ପଢୁଛନ୍ତି ମୋର ସ୍ତବ ।
ମୋହର ମହିମା ଚତୁର୍ଦ୍ଦିଗରେ ବିସ୍ତୃତ
ଏହି ଭବ ଭୟହାରୀ ରୂପକୁ ମୁଁ ନତ ।"

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ପ୍ରହ୍ଲାଦ ବିଜ୍ଞାନ ବର୍ଣ୍ଣନେ**
**ନାମ ୨୮ଶ ସର୍ଗଃ ।**



## ୨୯ଶ ସର୍ଗଃ
## ବିବିଧ ବ୍ୟତିରେକ୍ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ନାରାୟଣ-ରୂପ ଧରି ପ୍ରହଲ୍ଲାଦ ଭକ୍ତ ।
ପୁଣି ମନେ ମନେ କରୁ ଥାଆନ୍ତି ଚିନ୍ତନ
ମନ ମଧ୍ୟେ ଯେଉଁ ମୂର୍ତ୍ତି କଲି ମୁଁ ସ୍ଥାପନ ।
ଏହା ବିନା ଅନ୍ୟ ମୂର୍ତ୍ତି ନାହିଁ ବିଷ୍ଣୁଙ୍କର
ପୁଷ୍ପାଞ୍ଜଳି ଦେଇ ପୂଜା କରେ ମୁଁ ତାଙ୍କର ।
ଅନ୍ତରେ ଯେ ବିଷ୍ଣୁ ମୂର୍ତ୍ତି କରିଛି ଧାରଣ
ବାହାରେ-ସେହି ରୂପେ ମୁଁ କରେ ଅବସ୍ଥାନ ।
ବିଷ୍ଣୁଙ୍କ ମାନସ ପୂଜା ପ୍ରଥମେ ସାରିବି
ବହିସ୍ଥ ମୋ ବିଷ୍ଣୁ ପୂଜା ପରେ ଆରମ୍ଭିବି ।
ନାନାବିଧ ଉପଚାର କରି ଅରପଣ
ମାନସ ପୂଜା ପ୍ରହ୍ଲାଦ କଲେ ସମ୍ପାଦନ ।
ଦେବାଳୟେ ବସି ବାହ୍ୟ ଉପଚାରମାନ
ସଂଗ୍ରହ କରି ପ୍ରହ୍ଲାଦ କରନ୍ତି ପୂଜନ ।
ସଂସ୍କୃତ ଜଳରେ ତାଙ୍କୁ ସ୍ନାନ କରାଇଲେ
କର୍ପୂର ଚନ୍ଦନ ଅଙ୍ଗେ ବିଲେପନ୍ନ କଲେ ।
ଚିତ୍ର ବିଚିତ୍ର ବସନ ପିନ୍ଧାଇଲେ ନେଇ
ଅଳଙ୍କାରମାନ ଯଥା ସ୍ଥାନେ ଖଞ୍ଜିଦେଇ ।
ଧୂପ,ଦୀପ ପୁଷ୍ପାଞ୍ଜଳି ତହୁଁ ସମର୍ପିଲେ
ନୈବିଦ୍ୟ ସାମଗ୍ରିମାନ ସମ୍ମୁଖେ ବାଢ଼ିଲେ ।
କରଯୋଡ଼ି କୃତାଞ୍ଜଳି ପୁଟେ ଜଣାଇଲେ
ନମୋ ନମଃ ପରଂବ୍ରହ୍ମ ବୋଲି ଉଚ୍ଚାରିଲେ ।
ନ ଜାଣଇ ପୂଜା ବିଧି ନ ଜାଣେ ଅର୍ଚ୍ଚନ
ଅନ୍ତର ଆଦର ମୋର ଘେନ ଜନାର୍ଦ୍ଦନ ।
ଗଡ଼ି ପଡୁଥାଏ ଲୁହ ଟପ ଟପ ହୋଇ
ଓଠ ଥରି ଯାଉଥାଏ ବାକ୍ୟ ନ ସ୍ଫୁରଇ ।
ଚଉଦ ଭୁବନେ ଅଛି ଯେତେ ଉପଚାର
ବର୍ଣ୍ଣି ନ ପାରିବେ ଯାହା ଶିବ ବେଦବର ।
ତୁମକୁ ତ ନ ରୁଚଇ ପୁରୁଷ ଉତ୍ତମ
ଅନ୍ତର ଆବେଗ ମୋର ଘେନ ନାରାୟଣ ।
ଏହିପରି ପୂଜାବିଧି କରିଣ ଅର୍ପଣ
ସନ୍ତୋଷ ଲାଭ କରଇ ପ୍ରହଲ୍ଲାଦ ମନ ।
ଦୈନିକ ପୂଜା ତାଙ୍କର ଚାଲିଲା ଏପରି
ଏହା ଦେଖି ପ୍ରଜାମାନେ ହେଲେ କୁତୁହଳୀ ।
ନକଲ କରି ବସିଲେ ରାଜାଙ୍କ ଅର୍ଚ୍ଚନ
କ୍ରମେ ଦୈତ୍ୟଗଣ ହେଲେ ବିଷ୍ଣୁ ପରାୟଣ ।
ଅସୁରଙ୍କ ହରି-ରିପୁ ଭାବ କେଣେ ଗଲା
ଏ ସମ୍ବାଦ ଦେବଲୋକେ ଯାଇ ପହଞ୍ଚିଲା ।
ଇନ୍ଦ୍ର ଆଦି ଦେବଗଣ ଆଶ୍ଚର୍ଯ୍ୟ ହୋଇଣ
ନିଜ ନିଜ ମଧ୍ୟେ କଲେ କଥୋପକଥନ ।
କି ରୂପରେ ଦୈତ୍ୟଙ୍କର ଭାବାନ୍ତର ହେଲା
ବିଷ୍ଣୁଙ୍କ ଅର୍ଚ୍ଚନା ତାଙ୍କୁ କିଏ ଶିଖାଇଲା ।
କ୍ଷୀର ସାଗର ନିକଟେ ତହୁଁ ଚଳିଗଲେ
ବିଷ୍ଣୁଙ୍କୁ ସ୍ମରଣ କରି ଜଣାଣ ସେ କଲେ ।
ଜନ୍ମାବଧି ଦ୍ୱେଷ ଥିଲା ଯେଉଁ ଦୈତ୍ୟଙ୍କର
କିପରି ବଦଳି ଗଲା କୁହନ୍ତୁ ପ୍ରକାର ?
ବିଷ୍ଣୁ ଭାବାପନ୍ନ ସେହୁ କେମନ୍ତ ହୋଇଲେ
ବିଦ୍ୱେଷ ଭାବ ବିଷ୍ଣୁଙ୍କଠାରୁ ପାଶୋରିଲେ ।

ତାହାପରେ କ୍ରୌଞ୍ଚଦ୍ୱୀପ ତା'ର ଦୁଇଗୁଣ
ଦଧିସିନ୍ଧୁ ଘେରିଅଛି ଦ୍ୱିଗୁଣ ପ୍ରମାଣ ।
ଶାଲ୍ମଳୀ ଦ୍ୱୀପ ଅଟଇ ତା'ର ଦୁଇଗୁଣ
ସୁରାସାଗର ବେଢ଼ିଛି ଦ୍ୱିଗୁଣ ପ୍ରମାଣ ।
ତାହାପରେ ଦୁଇଗୁଣ ପ୍ଲକ୍ଷଦ୍ୱୀପ ଅଟେ
ଇକ୍ଷୁସାଗର ବେଢ଼ିଛି ତା'ର ଚାରିପଟେ ।
ତତ୍‌ପରେ ତା' ଦୁଇଗୁଣ ଅଟଇ ପୁଷ୍କର
ଦୁଇଗୁଣ ବେଢ଼ିଅଛି ସୁସ୍ୱାଦୁ ସାଗର ।
ବିଷମ ଆକାରେ ପଦ୍ମପତ୍ର ସରୋବରେ
ଶୋଭାପାଏ ଜଳରାଶି ଜିଣି ନୀଳିମାରେ ।
ତଥା ସପ୍ତଦ୍ୱୀପ ପୁଣି ସପତ ସମୁଦ୍ର
ମହାକାଶେ ଶୋଭାପାଇ ବଢ଼ାନ୍ତି ଆନନ୍ଦ ।
ଏ ସବୁ ଦ୍ୱୀପଙ୍କ ଦଶଗୁଣ ପରିମାଣ
ନିମ୍ନଭୂମି ରହିଅଛି ଗର୍ତ୍ତର ପ୍ରମାଣ ।
ପାତାଳପୁର ନାମରେ ବିଦିତ ଜଗତେ
ନାନା ଧାତୁ ପରିପୂର୍ଣ୍ଣଛନ୍ତି ସେହି ଗର୍ତ୍ତେ ।
ଏ ସବୁର ଦଶଗୁଣ ପାତାଳ ପଥରେ
ଅଛି ସର୍ବ ଉଚ୍ଚ ଲୋକାଲୋକ ଶୈଳବରେ ।
ଏହି ଶୈଳ ପାଦଦେଶେ ଭୀଷଣ ଗଭୀର
ମହାମହା ଗର୍ତ୍ତମାନ କେଡ଼େ ଭୟଙ୍କର ।
ସୂର୍ଯ୍ୟାଲୋକେ ପ୍ରକାଶିତ ଏହାର ଅର୍ଦ୍ଧାଂଶ
ତମସାଚ୍ଛନ୍ନ ଅଟଇ ଅପର ଯେ ଅଂଶ ।
ମଣିମାଣିକ୍ୟରେ ଶୋହେ ଅଗ୍ରଭାଗ ଯା'ର
ନାନା ପୁଷ୍ପେ ସୁଶୋଭିତ ଏହାର ଶିଖର ।
ଏହାପରେ ଅନ୍ୟ କିଛି ନାହିଁ ବୋଲି ଜାଣ
କେବଳ ଶୂନ୍ୟ ସଂସାର, ଶୂନ୍ୟର ପ୍ରମାଣ ।
ସାରା ଭୂମଣ୍ଡଳ ଦଶଗୁଣ ଏହି ଶୂନ୍ୟ
ଭୂତପ୍ରେତ ଯାତାୟାତ ନାହିଁ ଏହି ସ୍ଥାନ ।
ତଦୁପରି ଦଶଗୁଣ ମହାକାଳାନଳ
ରହିଅଛି ଶୋଷିନେବ ଆସିଲେ ତା' ବେଳ ।
ତଦୁପରି ଅଛି ଦଶଗୁଣ ପରିମିତ
ମହାବେଗଶାଳୀ ମହା ପ୍ରଳୟ ମରୁତ ।
ତଦୁପରି ଶତକୋଟି ଯୋଜନ ବିସ୍ତୃତ
ଘନ-ଗଗନ ମଣ୍ଡଳ ଅଛି ପରିବ୍ୟାପ୍ତ ।
ହେ ରାଘବ ସେ ମାନବୀ 'ଲୀଳା' ଏ ପ୍ରକାରେ
ସ୍ୱଗୃହ ଦେଖିଲେ ଭବ କଡ଼ାଇ ମଧରେ ।

ଇତିଶ୍ରୀ ଯୋଗବାଶିଷ୍ଠେ ଉତ୍ପତ୍ତି ପ୍ରକରଣେ
ଲୀଳା ଉପାଖ୍ୟାନ ଭୂଲୋକ ଗମନ ବର୍ଣ୍ଣନେ
ନାମ ଊନବିଂଶ ସର୍ଗଃ ।



## ବିଂଶ ସର୍ଗଃ
## ସିଦ୍ଧ-ଦର୍ଶନ

ବୋଲନ୍ତି ବଶିଷ୍ଠ ଶୁଣ ଆହେ ରଘୁରାୟ
ବ୍ରହ୍ମାଣ୍ଡ ମଣ୍ଡଳୁ ଫେରି ସେ ରମଣୀଦ୍ୱୟ ।
ବଶିଷ୍ଠ ବ୍ରାହ୍ମଣ ଯେଉଁ ଗୃହେ ରହୁଥିଲେ
ସେ ଗିରିଗ୍ରାମ ଗୃହରେ ଯାଇଣ ମିଳିଲେ ।
ଅଦୃଶ୍ୟ ଭାବରେ ଦୁହେଁ ଭିତରକୁ ଯାଇ
ଅନ୍ତପୁର ମଣ୍ଡପକୁ ନିରେଖନ୍ତି ତହିଁ ।
ଗୃହସ୍ୱାମୀ ଲଭିଛନ୍ତି ଅକାଳ ମରଣ
ଲଳନାଙ୍କ ମୁଖପଦ୍ମ ଦିଶଇ ମଳିନ ।
ଦାସ ଦାସୀ ପୁରବାସୀ ଦୁଃଖରେ କାତର
ନୟନରୁ ଅଶ୍ରୁଧାର ଝରେ ନିରନ୍ତର ।
ପତ୍ରହୀନ ଜୀର୍ଣ୍ଣତରୁ ଯଥା ଅଶୋଭନ
ସ୍ୱାମୀ ନିଧନରେ ଗୃହ ଦିଶଇ ତେସନ ।
ଆନନ୍ଦ ଉତ୍ସବ କିଛି ନହୁଏ ସେ ପୁରେ
ବଜ୍ରାହତ ବୃକ୍ଷପରି ଦିଶନ୍ତି ସକଳେ ।
ସେମାନଙ୍କୁ ଦେଖି ଏହିପରି ଶୋକାକୁଳ
ସତ୍ୟ ସଂକଳ୍ପା ଲୀଳା ଯେ ହେଲେ ଚିନ୍ତାଶୀଳ ।
ମନେ ମନେ ଚିନ୍ତନ୍ତି ଯେ ସେ ରାଜରମଣୀ
ଏହି ଅଧିବାସୀଗଣ ଆମ୍ଭଙ୍କୁ ଏକ୍ଷଣି,
ଦେଖିପାରନ୍ତୁ, ଏ ସକଳ ଜଳ ଆବରଣ
ସାଧାରଣ ନାରୀରୂପେ କରନ୍ତୁ ଦର୍ଶନ ।
ଏହି ଚିନ୍ତା ସଙ୍ଗେ ସଙ୍ଗେ ଅବଲୀଳାକ୍ରମେ
ଗୃହବାସୀଏ ଦୁହିଙ୍କୁ ଦେଖନ୍ତି ଏସନେ ।
ଗୌରୀରୂପେ ସରସ୍ୱତୀ, ଲୀଳା ଲକ୍ଷ୍ମୀରୂପେ
ଉଭା ହୋଇଛନ୍ତି କି ସେ ସବୁରି ସମୀପେ ।
କୁହୁକ କି ଖେଳିଯାଏ ସବୁରି ନୟନେ
ଚନ୍ଦ୍ରମା କି ଖେଳିଯାଏ ମରତ ଭୁବନେ ?
ଆକସ୍ମିକ ଛାୟା ନାଚି ଉଠେ ସର୍ବନେତ୍ରେ
କହି ନପାରି ଅବାକ ରହନ୍ତି ସମସ୍ତେ ।

ନବ ବିକଶିତ ପଦ୍ମେ ବିଭୂଷିତ ଅଙ୍ଗା
ସ୍ୱର୍ଣ୍ଣ ପିତାମ୍ବରଧାରୀ ତୁମେ ହେ ଶ୍ରୀରଙ୍ଗା ।
ଉତ୍ପତ୍ତି, ସ୍ଥିତି, ବିନାଶ ତୁମରି ଲୀଳାରେ
ଅହରହ ଘଟୁଅଛି ତୁମରି ଇଚ୍ଛାରେ ।
ବିଜୁଳି ସ୍ୱରୂପ ପ୍ରକାଶକ ଆହେ ହରି
ବଟ ପତ୍ର ଶାୟୀ ଆହେ ସକଳ ସଂହାରୀ ।
ଦେବ-ପଦ୍ମ ପ୍ରକାଶକ ହେ ସୂର୍ଯ୍ୟ ମଣ୍ଡଳ
ଦଇତ-କମଳଙ୍କର ତୁମେ ହେ ତୁଷାର ।
ସର୍ବସ୍ୱରୂପ ସର୍ବେଶ ସର୍ବଶକ୍ତିଶାଳୀ
ଶରଣ ଗଲି ଶ୍ରୀପଦ କମଳେ ତୁମରି ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ପ୍ରହ୍ଲାଦାଷ୍ଟକାନନ୍ତର ନାରାୟଣ ଆଗମନ ବର୍ଣ୍ଣନେ ନାମ ୩୦ଶ ସର୍ଗଃ ।**



## ୩୧ଶ ସର୍ଗଃ

## ପ୍ରହ୍ଲାଦଙ୍କୁ ଉପଦେଶ

କହନ୍ତି ବଶିଷ୍ଠ ପ୍ରହଲ୍ଲାଦ ସ୍ତବ ଶୁଣି
ଜଳଦଗମ୍ଭୀର ସ୍ୱରେ ପ୍ରଭୁ ଚକ୍ରପାଣି ।
ଦୈତ୍ୟପତି ପ୍ରହ୍ଲାଦଙ୍କୁ କହନ୍ତି ବଚନ
"ରେ ଭକତମଣି ଏବେ ମନଦେଇ ଶୁଣ ।
ଯହିଁରେ ଜନ୍ମ ମରଣ ଦୁଃଖ ନ ଲାଗଇ
ପ୍ରାର୍ଥନା କର ତୁ ଏହି ବର ନେବା ପାଇଁ ।"
ପ୍ରହ୍ଲାଦ ବୋଲନ୍ତି ସର୍ବ ଅନ୍ତର୍ଯ୍ୟାମୀ ଦେବ
ମୋ ପାଇଁ ଯା' ଭଲଭାବ ତାହାହିଁ କରିବ ।
"ଶ୍ରୀହରି କହନ୍ତି ଶୁଣ ଏବେରେ ଅନଘ
ଯେ ଯାଏ ବ୍ରହ୍ମରେ ତୋର ବିଶ୍ରାମ ନୋହିବ ।
ନିରତୀଶୟ ଆନନ୍ଦ ଲଭିବାର ପାଇଁ
ବିଚାର ପରାୟଣ ତୁ ହୁଅ ଭକ୍ତସାଇଁ ।"
ଭଗବାନ ପ୍ରହ୍ଲାଦକୁ କହି ଏ ବଚନ
ଅନ୍ତର୍ଦ୍ଧାନ ହୋଇଗଲେ ନ ଦେଖେ ନୟନ ।
ପଦ୍ମାସନେ ଉପବିଷ୍ଟ ହୋଇ ଦୈତ୍ୟରାଜ
ଏ ରୂପ ଚିନ୍ତାକରନ୍ତି ମନେ ବହି ଓଜ ।
"ବିଚାରବାନ ହେବାକୁ ଭଗବାନ ହରି
ମୋତେ କହିଗଲେ ଆହା କି ଭାଗ୍ୟ ମୋହରି ।
ଆତ୍ମ ବିଚାରରେ ଏବେ ହେବି ମୁଁ ପ୍ରବୃତ୍ତ
ଭୋଜନ ଇତ୍ୟାଦି କରେ ଥାଇ ଏ ଜଗତ ।
ଶୟନ, ଗମନ ପୁଣି ବାକ୍ୟ ଉଚ୍ଚାରଣ
ଦୈହିକ କ୍ରିୟାଦି ଯାହା କରେ ସମ୍ପାଦନ,
ସେହି "ମୁହିଁ କିଏ, ଏହା କେ କହିବ ମୋତେ
ବାହ୍ୟ ଜଗତ ମୁଁ" ନୁହେ ଜାଣୁଚି ତ ଚିତ୍ତେ ।
ଏହି ନଶ୍ୱର ଶରୀର ନୁହଇ ତ ମୁହିଁ
ମୁହିଁତ ଚେତନ, ଦେହ ଅଚେତନ ହୋଇ ।
ନୁହେ ଶବ୍ଦ, ନୁହେ ସ୍ପର୍ଶ, ନୁହେ ରୂପ ମୁହିଁ
ରସ, ଗନ୍ଧ ଆଦିକରି କିଛି ତ ନୁହଇ ।
ମୁଁ ଅଟେ ଚେତନ ସେମାନେ ତ ଅଚେତନ
ପଞ୍ଚେନ୍ଦ୍ରିୟ ଭ୍ରାନ୍ତି କିସ ନ ଜାଣେ ଏମାନ ।
ତେଣୁ ମୁଁ ମନନହୀନ, ନିର୍ମଳ, ପ୍ରଶାନ୍ତ
ବିଶୁଦ୍ଧ ଚେତନ ମୁହିଁ ଅବିନାଶୀ ତତ୍ତ୍ୱ ।
ମୁହିଁ ଯେ ଚିନ୍ମାତ୍ର ସର୍ବବ୍ୟାପୀ ସତ୍‌ରୂପ
ସକଳବସ୍ତୁ ପ୍ରକାଶେ ମୋହର ସ୍ୱରୂପ ।
ତେଣୁ ସେହି ସପ୍ରକାଶ ଆତ୍ମା ଅଟେ ମୁହିଁ
ମୋହଠାରୁ ଏହି ସର୍ବ ଇନ୍ଦ୍ରିୟ ସ୍ଫୁରଇ ।
ପ୍ରତିବିମ୍ବର ବିଶ୍ରାମ ସ୍ଥଳ ଦରପଣ
ଆତ୍ମା ସର୍ବ ପଦାର୍ଥର ଅନୁଭବ ସ୍ଥାନ ।
ବିଶ୍ରାମ ସ୍ଥଳ ଏ ଆତ୍ମା ସର୍ବ ପଦାର୍ଥର
ଆତ୍ମାରେ ପ୍ରତିବିମ୍ବିତ ପଦାର୍ଥ ସକଳ ।
ଆତ୍ମାର ଅନୁଗ୍ରହେହିଁ ଜଳଦ୍ରବ ଭାବ
ଚନ୍ଦ୍ର ଶୀତଳତା ନଗ କାଠିନ୍ୟ ସ୍ୱଭାବ,
ସୂର୍ଯ୍ୟର ଉଷ୍ଣତା ପୁଣି ପବନର ଗତି
ଅଗ୍ନିଦେବଙ୍କର ଯେଉଁ ଦାହିକା ଶକତି,
ଆତ୍ମା ଅନୁଗ୍ରହ ବଶେ ଏହି ଗୁଣମାନ
ସିଦ୍ଧ ହୋଇଅଛି ଏହା ଜ୍ଞାନୀଙ୍କ ବଚନ ।
ଆକାଶକୁ ଆଦି କର ସକଳ ପଦାର୍ଥ
ଆତ୍ମାହିଁ କାରଣ ଏହା ଅଟଇ ଯଥାର୍ଥ ।
ସେହି ଆତ୍ମା କାର୍ଯ୍ୟରୂପେ, ସତ୍ ସ୍ୱରୂପରେ
ବର୍ତ୍ତମାନ ରହି ସବୁ ନିରିବାହ କରେ ।
କିନ୍ତୁ ସେହି ଆତ୍ମା ଅଟେ କାରଣ ବିହୀନ
କାହିଁରେ ନ ଥାଇ ସବୁଥିରେ ଥାଏ ପୁଣ ।
ସୃଷ୍ଟି, ସ୍ଥିତି, ଲୟକାରୀ, ବ୍ରହ୍ମା, ବିଷ୍ଣୁ, ଶିବ
ଆତ୍ମା ହିଁ କାରଣ ରୂପେ କରେ ତହିଁ ଠାବ ।
ଦ୍ରଷ୍ଟା, ଦୃଶ୍ୟ, ସ୍ୱ ପ୍ରକାଶ, ନିତ୍ୟ, ନାମହୀନ
ଏପରି ଯେବଣ ଆତ୍ମା ତାହା ମୁହିଁ ଜାଣ ।

ତେଣୁ କରି ମୁହିଁ ମୋତେ କରେ ନମସ୍କାର
ଅଭିନ୍ନ ମୁଁ ସେହି ଆତ୍ମାଠାରୁ କାଳ କାଳ ।
ନିର୍ବିକଳ୍ପ ଅଟେ ଯେଉଁ ଆତ୍ମା ତନ୍ମଧ୍ୟରେ
ସର୍ବଭୂତ ଗୁଣ ରୂପେ ନିହିତ ତହିଁରେ ।
ମୃତ୍ୟୁ ପରେ ପୁଣି ଏହି ଆତ୍ମାରେ ପଶନ୍ତି
ଆତ୍ମାଠାରୁ ଭିନ୍ନ ହୋଇ ରହି ନ ପାରନ୍ତି ।
ଅନ୍ତର୍ଯ୍ୟାମୀ ରୂପେ ଆତ୍ମା ଯାହା ସଙ୍କଳ୍ପଇ
କାଳବଳେ ତାହାହିଁ ତ ସଂକଳ୍ପ ହୁଅଇ ।
ନିଜ ସତ୍ତା ବଳେ ଯାକୁ ଯେଉଁ ଆକାରରେ
ସତ୍ତାବାନ କରେ ସେହୁ ହୁଏ ସେ ପ୍ରକାରେ ।
ଯାହାଠାରେ ଏହି ଚିଦାତ୍ମାର ସତ୍ତା ନାହିଁ
ସତ ହେଲେ ହେଁ ଅସତ ରୂପେ ଗଣ୍ୟ ହୋଇ ।
ଦର୍ପଣ ସ୍ୱରୂପ ଏହି ବ୍ରହ୍ମ ଆକାଶରେ
କେତେ ଜଗତ ଯେ ପ୍ରତିବିମ୍ବିତ ତହିଁରେ ।
ସଂଖ୍ୟା କରି ନ ହୁଅଇ ଗଣନା କରନ୍ତେ
ଅଜ୍ଞ ବ୍ୟକ୍ତି ବ୍ରହ୍ମାକାଶ ଦେଖିବେ କେମନ୍ତେ ?
ଚିତ୍ତ ବିଗଳିତ ହୋଇଅଛି ଯାହାଙ୍କର
ବ୍ରହ୍ମାକାଶ ହୁଏ ସେହି ସାଧୁଙ୍କୁ ଗୋଚର ।
ଏହି ବ୍ରହ୍ମ ଆକାଶରୁ ଚଞ୍ଚଳ ସଂସାର
ଉଦ୍ଭୁତ ହୋଇଣ ଥାଏ କଳ୍ପ କଳ୍ପାନ୍ତର ।
ବ୍ରହ୍ମଠାରୁ ଆଦିକରି ତୃଣ ପରିଯନ୍ତ
ଏହି ଚିନ୍ମୟ ଆତ୍ମା ଛନ୍ତି ପ୍ରକାଶିତ ।
ମୁହିଁ ଯେ ଅଟଇ ଏହି ଚିନ୍ମୟ ଆତ୍ମା
ଅନାଦି, ଅନନ୍ତ, ସର୍ବଗାମୀ, ସର୍ବ ସତ୍ତା ।
ଚର ଅଚର ଇତ୍ୟାଦି ଭୂତଙ୍କ ମଧ୍ୟରେ
ମୁହିଁ ଅବସ୍ଥାନ କରେ ଜ୍ଞାନ ସ୍ୱରୂପରେ ।
ସ୍ଥାବର ଜଙ୍ଗମ ଆଦି ଏହି ଯେ ସଂସାର
ସେହି ଚିତ୍ ଆତ୍ମା ରୂପୀ ଏହି ମୋ ଶରୀର ।
ସପ୍ରକାଶ ଅନୁଭୂତି ସ୍ୱରୂପ ଏ ଆତ୍ମା
ଦ୍ରଷ୍ଟା, ଦୃଶ୍ୟ, ଦରଶନ ସକଳ ତା ସତ୍ତା ।
ତେଣୁ କରି ଏହା ଅଟେ ସହସ୍ର ଲୋଚନ
ସହସ୍ର ସଂଖ୍ୟା ଏହାର ବାହୁ ପରିମାଣ ।
ଏହି ଯେ ଈଶ୍ୱର ଆତ୍ମା-ସୂର୍ଯ୍ୟ ସ୍ୱରୂପରେ
ବିଚରଣ କରୁଅଛି ଆକାଶ ମଧ୍ୟରେ ।
ବାୟୁ ଭାବେ ପ୍ରବାହିତ ହେଉଅଛି ସେହି
ସମସ୍ତଙ୍କୁ ଛୁଏଁ ସେହୁ କେ ତାକୁ ନ ଛୁଇଁ ।
ନୀଳ ବର୍ଣ୍ଣ ମୋ ଶରୀର ଶଙ୍ଖ ଚକ୍ର ଗଦା
ଧରି ପରମ ସୌଭାଗ୍ୟ ଲଭଇ ସର୍ବଦା ।
ସବୁରି ଊର୍ଦ୍ଧ୍ୱଦେଶରେ ମୋର ଅବସ୍ଥାନ
ମୁହିଁ ସେହି ବିଷ୍ଣୁନାଥ ମୁହିଁ ସେ ପରମ ।
ପାର୍ବତୀଙ୍କ ମୁଖ-ପଦ୍ମେ ଅଳି ରୂପ ଧରି
ଶଙ୍କର ଶରୀର ଧରି ତହିଁରେ ବିଚରି ।
ପ୍ରଳୟରେ କୂର୍ମ ପରି ଅଙ୍ଗ ସଂକୋଚିଣ
ସର୍ବ ଜଗତକୁ ନିଜ ଗର୍ଭେ ଦିଏ ସ୍ଥାନ ।
ତ୍ରୈଲୋକ୍ୟ ପାଳନ କରେ ଇନ୍ଦ୍ର ରୂପ ଧରି
ନର, ନାରୀ, ବୃକ୍ଷ ରୂପେ ଜନମ ମୋହରି ।
ବୃକ୍ଷ, ଲତା, ତୃଣ ମଧ୍ୟେ ରସ ରୂପେ ମୁହିଁ
ଚିତ୍ କ୍ଷେତ୍ରରୁ ସେମାନଙ୍କୁ ଜନମ ଦିଅଇ ।
ମୋର କ୍ରୀଡ଼ା ପାଇଁ ଭ୍ୟାଇ ଅଛି ଏ ଜଗତ
କାରଣ ରୂପରେ ପୁଣି ବ୍ୟାପ୍ତ ଏ ଜଗତ ।
ଜଗତ ସତ୍ତା ଲଭିଛି ମୋର ବ୍ୟାପ୍ତି ଘେନି
ସେ ବ୍ୟାପ୍ତିକି ତେଜିଲେ ମୁଁ କାହିଁ ଏ ଅବନୀ ?
ଯାହା କି ପ୍ରତିବିମ୍ବିତ ହୁଅଇ ମୋଠାରେ
ତାହାଛଡ଼ା ଅନ୍ୟ କିଛି ନାହିଁ ଏ ସଂସାରେ ।
ମୋଠାରୁ ସ୍ୱତନ୍ତ୍ର ଅନ୍ୟ ବସ୍ତୁ କିଛି ନାହିଁ
ପୁଷ୍ପରେ ସୁଗନ୍ଧ ରୂପେ ମୁହିଁ ବିରାଜଇ ।
ନବୀନ ପତ୍ର ପଲ୍ଲବେ କାନ୍ତି ମୁଁ ଅଟଇ
କାନ୍ତିରେ ମୁଁ ରୂପ, ରୂପେ ଅନୁଭବ ମୁହିଁ ।
ସର୍ବ ପଦାର୍ଥ ଅନ୍ତରେ କରି ଅବସ୍ଥାନ
ସ୍ୱ ଇଚ୍ଛାରେ ଚିତ୍ ବୈଚିତ୍ର୍ୟ କରେ ସମ୍ପାଦନ ।
ଦୁଗ୍ଧେ ଘୃତ, ଜଳେ ରସ, ଥାଏ ଯେଉଁପରି
ଚିତଶକ୍ତି ରୂପେ ସର୍ବ ପଦାର୍ଥେ ବିହରୀ ।
ଚିତ୍ ମୁଁ, ମୋ ଏକାଂଶରେ ଅଛି ଏ ଜଗତ
କଉଣସି ଦୃଶ୍ୟଭାବ ନାହିଁ ତହିଁ ସ୍ଥିତ ।
ଇନ୍ଦ୍ର ସହ ଯୁଦ୍ଧ କରିବାକୁ ନ ପଡ଼ିଲା
ଦେବଙ୍କୁ ଅସ୍ତ୍ରେ ଦଳି ଦେବାକୁ ନୋହିଲା ।
ଖୋସାମତ କରିବାକୁ କାହିଁ ନ ପଡ଼ିଲା
ଅକ୍ଲେଶରେ ଏ ଜଗତ ହସ୍ତଗତ ହେଲା ।
ମନେହୁଏ ଏହିପରି ଜଗତ-ଶ୍ରୀ ଲାଭ
କାହାରି କପାଳେ କେବେ ଘଟିତ ନ ଥିବ ।
କି ଆଶ୍ଚର୍ଯ୍ୟ ! ଏବେ ମୁହିଁ ଆତ୍ମା ପାଲଟିଲି
ପ୍ରଳୟେ ସମୁଦ୍ର ପୃଥ୍ୱୀ ବୁଡ଼ାଇଲା ପରି ।

ଏକାର୍ଣ୍ଣବ ହୁଏ ଯଥା ସପତ ସାଗର
ଆତ୍ମା ମୋ ପ୍ଲାବିତ କଲା ସାରା ଭୂମଣ୍ଡଳ ।
ତେଣୁକରି ପରିଣାମ ନ ଘଟେ ମୋହର
ଏ ଯାଏ ମୋ ଅହଂଭାବ ଥିଲା କି ପ୍ରକାର !
ଜାଣି ନ ପାରି ଏପରି ସାମ୍ରାଜ୍ୟ ସମ୍ବାଦ
ପିତୃ ପିତାମହ ଭବେ ରହିଥିଲେ ମୁଗ୍‌ଧ ।
ମନେହୁଏ ଥିଲେ ସେହୁ ଦୀନଭାବାପନ୍ନ
ବୃଥା ଆସ୍ଫାଳନ କରି କାଟୁଥିଲେ ଦିନ ।
କାହିଁ ଏହି ପରିପୂର୍ଣ୍ଣ ବ୍ରହ୍ମରୂପ ଦୃଷ୍ଟି
ଆଶା ଭୁଜଙ୍ଗ ସଙ୍କୁଳ ସାମ୍ରାଜ୍ୟ କେଉଁଠି ?
ସବୁ ଭାବନା ଭିତରେ ଅଦୃଶ୍ୟ ରୂପରେ
ଥାଏ ମୁହିଁ ସେହି ଚିଦ୍ ଆତ୍ମା ସ୍ୱରୂପରେ ।
ପ୍ରତ୍ୟକ ଚେତନରୂପୀ ଆକାର ଯେ ମୁହିଁ
ପୁନଃ ପୁନଃ ନମସ୍କାର ନିଜକୁ କରଇ ।
ଖାଇଥିବା ଅନ୍ନ ଯଥା ହୁଅଇ ହଜମ
ସଂସାରକୁ ଜୀର୍ଣ୍ଣ କରି ପାରିଛି ମୁଁ ଜାଣ ।
ଏବେ ମୁଁ ହୋଇଛି ଜନ୍ମ, ମରଣ, ଅତୀତ
ଜୟ ଲାଭ କରିଅଛି ମୁହିଁ ଏ ଜଗତ ।
ଯା କିଛି ପ୍ରାପ୍ତବ୍ୟ ତାହା ସବୁ ମୁଁ ପାଇଛି
ତେଣୁ ପରମ ଉତ୍‌କର୍ଷ ଲାଭ କରିଅଛି ।
ଶାଶ୍ୱତ ଏହି ଯେ ବୋଧ ସାମ୍ରାଜ୍ୟକୁ ଛାଡ଼ି
ପାର୍ଥିବ ରାଜ୍ୟ ଆଶାରେ ନ ରହିବି ବୁଡ଼ି ।
ବନଦୁର୍ଗ, ଜଳଦୁର୍ଗ, ଗିରିଦୁର୍ଗ ଗଢ଼ି
ପାର୍ଥିବ ରାଜ୍ୟ ରକ୍ଷାର୍ଥେ ମୋହ ଗର୍ତ୍ତେ ସଢ଼ି ।
ସେହି ଅଜ୍ଞ ଦଇତଙ୍କୁ କରେ ମୁଁ ଧିକାର
ପାର୍ଥିବ ରାଜ୍ୟ ପାଇଁକି ଆସକ୍ତି ଯାହାର ।
ଅପରିମେୟ ପରମାନନ୍ଦ ତ୍ୟାଗକରି
ମୂର୍ଖଜନ ପରିମିତ ବିଷୟ ଆଦରି ।
କାହିଁ ତତ୍ତ୍ୱଜ୍ଞାନ ଯାହା ମୁକତିର ବାଟ
କାହିଁ ଦେହାତ୍ମବୁଦ୍ଧି ଯା ଲାଗି ଛଟପଟ ।
ବାସ୍ତବ ରାଜତ୍ୱ ସୁଖ ଚିତ୍ ତତ୍ତ୍ୱେ ଥାଇ
ଅନୁଭବ କରି ନର କିପାଁ ନ ଦେଖଇ ।
ସର୍ବ ଉତ୍କୃଷ୍ଟତା ଗୁଣମାନ ବ୍ରହ୍ମାଙ୍କର
କ୍ଷୀରାବ୍ଧି ତନୟା ଜୟଲକ୍ଷ୍ମୀ ବିଷ୍ଣୁଙ୍କର,
ପରମ ପୂର୍ଣ୍ଣଭାବ ଯା' ମହେଶ୍ୱରଙ୍କର
ସୂର୍ଯ୍ୟଙ୍କ ପ୍ରକାଶ ଶକ୍ତି, ହ୍ଲାଦିନୀ ଚନ୍ଦ୍ରର,
ବାୟୁର ବେଗତ୍ୱ, ଦ୍ରୁତଗାମିତ୍ୱ ମନର
ଯେଉଁଠାରେ ଯେଉଁ ଶକ୍ତି ଅଛଇ ଯାହାର,
ସେ ସମସ୍ତ ଚିତ୍‌ଶକ୍ତି ମଧ୍ୟୁ ପ୍ରାଦୁର୍ଭୂତ ?
ଆଉ ବା ରହିଲା ବୁଝିବାକୁ କେଉଁ ତତ୍ତ୍ୱ ?
ସୂର୍ଯ୍ୟାଲୋକ ବୃକ୍ଷେ ପଡ଼ି ବୃକ୍ଷାକୃତି ଧରେ
ନରାକୃତି ଧରେ ପଡ଼ି ମନୁଷ୍ୟ ଉପରେ ।
ଚିତ୍ତବୃତ୍ତି ବୈଚିତ୍ର୍ୟରେ ଚିତ୍ ସେହିପରି
ଆକୃତି ବୈଚିତ୍ର୍ୟ ପରାପତ ହୋଇପାରି ।
ସଂକଳ୍ପ ଜାଲରେ ପଡ଼ି ପିତୃଗଣ ମୋର
ବିଷୟ ଗର୍ତ୍ତରେ ହେଉଥିଲେ ହରବର ।
ଅବାଧ ଆତ୍ମଦର୍ଶନ ତେଣୁ ତାହାଙ୍କର
ପୁରୁଷାକାର ଅଭାବେ ନୋହିଲା କେବଳ
ଆତ୍ମଦୃଷ୍ଟି ଅଭାବରେ ଏହି ପୃଥିବୀରେ
ମଶକପରି ସଞ୍ଚରି ବିନଷ୍ଟ ଲଭିଲେ ।
ଆତ୍ମତତ୍ତ୍ୱ ଅବଗତ ହୋଇ ପାରିଥିଲେ
ଜନ୍ମ ମୃତ୍ୟୁ ଅନ୍ଧକୂପେ ନ ପଡ଼ନ୍ତେ ହେଲେ ।
ସତ୍ୟ ରୂପ ଆତ୍ମାକୁ ଯେ ଉପଲବ୍‌ଧି କରି
ଧନ୍ୟ ପିତା ମାତା ଧନ୍ୟ ଜୀବନ ତାହାରି ।
ସେହି ଯେ ଅପରିଚ୍ଛିନ୍ନ ଚିଦାତ୍ମା, ହିଁ ମୁହିଁ
ଆପେ ଆପଣାକୁ ପ୍ରଣିପାତ କରୁଛଇଁ ।
ରେ ଆତ୍ମନ ! ବହୁକାଳ ପରେ ତୋତେ ମୁହିଁ
ଲାଭ କରିଅଛି ଆହା କି ଭାଗ୍ୟ ଅଟଇ ।
ଦୀର୍ଘକାଳ ପରେ ତୋତେ ସ୍ପର୍ଶ କରିଲଇଁ
ପରମାର୍ଥ ରୂପଧରି ବିରାଜିଛୁ ତୁହି ।
ବହୁକାଳ ପରେ ତୋତେ ବିକଳ୍ପ ଜାଲରୁ
ଉଦ୍ଧାର କରିଲି ମୋର ସୌଭାଗ୍ୟବଶରୁ ।
ଯାହା ତୁ ହୋଇଥା ତୋତେ କୋଟି ନମସ୍କାର
ଅନନ୍ତ ଶିବରୂପୀ ତୁ ମୋର କଳେବର ।
ସେ ଘେନି ନିଜକୁ ମୋର କୋଟି ନମସ୍କାର
ଦେବ ଦେବ ପରମାତ୍ମା ଘେନ ନମସ୍କାର ।"

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ପ୍ରହ୍ଲାଦ ଉପଦେଶ ବର୍ଣ୍ଣନେ**
**ନାମ ୩୧ଶ ସର୍ଗଃ ।**

❑

## ୩୨ଶ ସର୍ଗଃ

## ପ୍ରହ୍ଲାଦ ଆତ୍ମଚିନ୍ତନ

ଭାବୁଛନ୍ତି ପ୍ରହଲ୍ଲାଦ ଏହି ଯେ ଜଗତ
ଓଁକାର ସ୍ୱରୂପ ପରମାତ୍ମା ତଦଗତ ।
ସୂର୍ଯ୍ୟଙ୍କ ଅନ୍ତରେ ରହି ସୂର୍ଯ୍ୟଙ୍କୁ ପ୍ରକାଶେ
ଅଗ୍ନିକୁ ଉଷ୍ମ ଜଳକୁ ଦ୍ରବ କରନ୍ତି ସେ ।
ସ୍ଥିର ହୋଇକରି ମଧ୍ୟ ଗତିଶୀଳ ସେହି
ଗତିଶୀଳ ହୋଇ ମଧ୍ୟ ସ୍ଥିର ସେ ଅଟଇ ।
କରମଫଳ ଭୋକତା ହୋଇଲେ ହେଁ ସେହି
ଉପଭୋଗ ସମୟରେ ନିର୍ଲିପ୍ତ ରହଇ ।
କର୍ମ ଅନୁସାରେ ଜନ୍ମ ଗ୍ରହଣ କରଇ
ସାନ୍ନିଧ ମାତ୍ରେ ଚଉଦ ବ୍ରହ୍ମାଣ୍ଡ ଚଳାଇ ।
ବାୟୁ ଅପେକ୍ଷା ଅଟନ୍ତି ସେହୁ ଗତିଶୀଳ
ସ୍ଥାଣୁଙ୍କଠାରୁ ବଳିଣ ଅଟେ ସେ ନିଶ୍ଚଳ ।
ଆକାଶଠାରୁ ଅଧିକ ନିର୍ଲେପ ଯେ ସେହି
ତଥାପି ସକଳ ବସ୍ତୁ ଢାଙ୍କି ରଖିଥାଇ ।
ବାୟୁଦ୍ୱାରା ଗଛପତ୍ର ହଲନ୍ତି ଯେସନ
ସବୁରି ମନ ଚଞ୍ଚଳ କରନ୍ତି ତେସନ ।
ଏହି ଆତ୍ମା ଇନ୍ଦ୍ରିୟଙ୍କୁ କରଇ ଚଳିତ
ଦୀନଭାବ ଧରି କାହିଁ ହୁଏ କର୍ମରତ ।
ନିଜେ ନିଜ ମଧ୍ୟେ କେବେ ରହି ଅବସ୍ଥିତ
ସମ୍ରାଟ ପରି, ବିଷୟ ଭୋଗାଦିରେ ରତ ।
ଏହି ଆତ୍ମା ଅନ୍ୱେଷବ୍ୟ, ଏ ଆତ୍ମା ଧ୍ୟାତବ୍ୟ
ଏହି ଆତ୍ମା ଅଟେ ପୁଣି ଜୀବର ସ୍ତୋତବ୍ୟ ।
ଅନ୍ୱେଷଣ କରି ତାକୁ ଯଦ୍ୟପି ଲଭିବ
ଜରା ମରଣ ମୋହରୁ ନିସ୍କୃତି ପାଇବ ।
ପ୍ରଣବ ଉଚ୍ଚାରି ତାଙ୍କୁ ସ୍ମରିଲା ମାତ୍ରକେ
ହାଜର ହୁଅନ୍ତି ପାଶେ ନେତ୍ର ଅପଲକେ ।
ଧନୀର ଅବଜ୍ଞା ପୁଣି ଅହଂକାର ଭାବ
ଏହି ଆତ୍ମାର ନ ଥାଇ ସେହିପରି ଭାବ ।
ହେଲେହେଁ ସର୍ବ ସମ୍ପଦ ଅଧିକାରୀ ସେହି
ଅହଂକାର ଭାବ ତାଙ୍କ ଠାରେ ମୋଟେ ନାହିଁ
କାହାରିକି ଅବଜ୍ଞା ସେ କେଭେଁ ନ କରନ୍ତି
ନତ ହୋଇ କାହାଠାରୁ ଗୋଇଠା ଖାଆନ୍ତି ।
ଫୁଲରେ ସୁଗନ୍ଧ ପୁଣି ତିଳରେ ତଇଳ
ସେହିପରି ଦେହ ମଧ୍ୟେ ଥାନ୍ତି ଆଦିମୂଳ ।
ଚଇତନ୍ୟ ରୂପେ ଆତ୍ମା ହୃଦେ ବିରାଜନ୍ତି
ଅବିଚାର ହେତୁ ତାଙ୍କୁ ଲୋକେ ନ ଜାଣନ୍ତି ।
ବିଚାରବଳେ ତାହାଙ୍କୁ ଯେ ଜାଣିପାରଇ
ହଜାଧନ ପ୍ରାପ୍ତି ଲାଭ ଆନନ୍ଦ ସେ ପାଇ ।
ପରମ ବନ୍ଧୁଏ ଆତ୍ମା, ଉପଲବ୍ଧ ହେଲେ
ଦିବ୍ୟ ଦୃଷ୍ଟି ଶକ୍ତି ଲାଭ ହୋଇଥାଏ ଭଲେ ।
ସେହି ଦିବ୍ୟ ଦୃଷ୍ଟି ପ୍ରଭାବରେ ସେତେବେଳେ
ଜରା ମରଣାଦି ଦୂରୀଭୂତ ହୁଏ ହେଲେ ।
ସମସ୍ତ ବନ୍ଧନ ଛିନ୍ନ ତେବେ ହୋଇଥାନ୍ତି
ଯାବତୀୟ ଶତ୍ରୁବର୍ଗ ଧ୍ୱଂସପ୍ରାପ୍ତ ହୁନ୍ତି ।
ଏ ମନକୁ ଆଶା କଉଣସି ବିଷୟରେ
ଧାବିତ କରି ନ ପାରେ କୌଣସି ପ୍ରକାରେ ।
ଆତ୍ମାକୁ ଦେଖିଲେ ସର୍ବ ଜଗତ ଦେଖିବ
ଆତ୍ମା ତତ୍ତ୍ୱ ଶ୍ରବଣରେ ସର୍ବ ଶୁଣାଯିବ ।
ଆତ୍ମାକୁ ଛୁଇଁ ପାରିଲେ ସର୍ବ ଜଗତର
ସ୍ପର୍ଶ ଅନୁଭୂତ ହୋଇପାରିବ ସତ୍ୱର ।
ଆତ୍ମାର ବିଦ୍ୟମାନତା ବଶତଃ ଏ ଭବ
ବିଦ୍ୟମାନ ରହିଅଛି ଏ କଥା ବୁଝିବ ।
ଜାଗ୍ରତ ରହିଣ, ସ୍ୱପ୍ନ ବ୍ୟକ୍ତିଙ୍କୁ ରଖଇ
ବିବେକହୀନଙ୍କୁ ଦୁଃଖ ପ୍ରଦାନ କରଇ ।
ମୁକତ କରଇ ତାକୁ ଯେ ବିପଦ ଗ୍ରସ୍ତ
ଏହି କାର୍ଯ୍ୟ କରଣରେ ଆତ୍ମା ସଦା ବ୍ୟସ୍ତ ।
ଈଶ୍ୱରଙ୍କ ଉପାସନା ଅନାତ୍ମ ଭାବରେ
ଯେ ଜନ କରଇ ସେହୁ ଇଷ୍ଟଲାଭ କରେ ।
ଜୀବସାଜି ଏହି ଆତ୍ମା ଲୋକ ଲୋକାନ୍ତରେ
ସଂସାରର ସ୍ଥିତି ପାଇଁ ଭ୍ରମଣ ସେ କରେ ।
ଭୋଗ ବିଷୟରେ ପୁଣି ହୁଏ ବିଳସିତ
ଅଳଙ୍କାର ବସ୍ତ୍ର ଶୋଭା କରେ ସୁଶୋଭିତ ।
ନିଜଦ୍ୱାରା ନିଜକୁ ସେ ସର୍ବରୂପେ ଜାଣେ
ଇନ୍ଦ୍ରିୟ ମନକୁ ଛାଡ଼ି ନ ରହେ ସେ କ୍ଷଣେ ।
ଇନ୍ଦ୍ରିୟ ଓ ମନ ଯାହା ପ୍ରକାଶ କରଇ
ସେହି ପ୍ରକାଶ ଆତ୍ମାର ସ୍ୱଭାବ ଅଟଇ ।
ଏହି ଗୁଣାତ୍ମକ ଆତ୍ମା ଦେବତାମାନଙ୍କୁ
ପ୍ରକାଶ କରୁଅଛଇ ସର୍ବଦା ତାହାଙ୍କୁ ।

ଏହି ଆତ୍ମା ନିତ୍ୟ ପୁଣି ଏହି ଆତ୍ମା ଶିବ
ଏହାଙ୍କୁ ଜାଣିବ ଯେହୁ ତା ଗୋଚର ସର୍ବ ।
ମୁହିଁ ଅଟେ ଆତ୍ମା, ଅନ୍ୟ ପରିଚୟ ମୋର
ଯାହାକିଛି ଅଛି ସବୁ କଳ୍ପନା ମାତର ।
ଧୂଳି ଆକାଶକୁ ଲିପ୍ତ କରି ନ ପାରଇ
ମୁଁ ଆତ୍ମା ମୋତେ କେ ଲିପ୍ତ କରି ବା ପାରଇ ?
ସର୍ବବିଧ ଭାବର ମୁଁ ଅଟଇ ଅତୀତ
କିଏ ଅଛି ମୋତେ କରିପାରେ କରଗତ ?
ଆକାଶ ସହ କାହାର କି ସମ୍ପର୍କ ଥାଇ
ଦେହ ବିନାଶେ ଆକାଶ-ଦେହୀର କି ଯାଇ ?
ନିରର୍ଥକ ଏହି ମନ ହୋଇଛି ଉଦିତ
ତତ୍ତ୍ୱଜ୍ଞାନ ବଳେ ଜଡ଼ ମନ ହେଲେ ଅସ୍ତ,
କିଛି ହିଁ କ୍ଷତି ନଥାଇ ତହିଁରେ ମୋହର
ଯେଣୁ ଆତ୍ମାହିଁ କାରଣ ସର୍ବ କାରଣର ।
ଯାହାର ବାସନା ଥାଏ ସେହି ଅଟେ ମନ
ପୂର୍ବେ ମଧ୍ୟ ଥିଲା ମୋର ସେହିପରି ଜ୍ଞାନ ।
ବର୍ତ୍ତମାନ ମୋର ଆଉ ନାହିଁ ସେହି ମନ
ପରମାନନ୍ଦ ମୋ ହୃଦେ ଯେଣୁ ବିଦ୍ୟମାନ ।
ଆଜିଯାଏ ପୀଡୁଥିଲା ଅଜ୍ଞାନ-ବଇରୀ
ବିବେକ ଧନକୁ ମୋର ଥିଲା ଘେରିକରି ।
ଆତ୍ମାରୂପୀ ବିଷ୍ଣୁଙ୍କର ଅନୁଗ୍ରହ ଘେନି
ପୁନଃପ୍ରାପ୍ତ ହୋଇଅଛି ସେହି ଧନ ପୁଣି ।
ସର୍ବମୋହ ମୋର ହୋଇଅଛି ଅପଗତ
ବିବେକ ଧନ ଦେଇଛି ପରମ ଦୌଲତ ।
ନିୟମ, ପ୍ରଣାମ, ସ୍ତୁତି ଶମ ଆଦି ନେଇ
ଆତ୍ମାରୂପୀ ଭଗବାନ ଲଭିଛଇଁ ମୁହିଁ ।
ହେ ଈଶ୍ୱର ଆପଣଙ୍କ ଦରଶନ ପାଇ
ଅହଂକାର ମୋର କେଣେଗଲା ଯେ ଉଭାଇ ।
ପାଦପରୁ ଅଜଗର କରନ୍ତେ ପ୍ରସ୍ଥାନ
ସ୍ୱସ୍ତ ଲଭେ ସେହୁ କେଣେ ଯାଏ ତା କଷଣ ।
ଅହଂକାର ପିଶାଚ ମୋ ଯେଣୁ ଦୂରୀଭୂତ
ଶାନ୍ତି ଲାଭକରି ମୁହିଁ ହୋଇଛି ଆଶ୍ୱସ୍ତ ।
ଆଶାମରୀଚିକା ଯେଣୁ ହୋଇଛି ବିନାଶ
ସୁଶୀତଳ ହୋଇଅଛି ମୋ ଅନ୍ତର ଦେଶ ।
ଆତ୍ମବିଚାରରେ ଆତ୍ମା ହୋଇଲେ ମାର୍ଜିତ
ଦୁଃଖ, ମୋହ, ଆଶା ମନକଷ୍ଟ ଯାନ୍ତି ଅସ୍ତ ।

ସରଗ, ନରକ, ମୁକ୍ତି ବନ୍ଧନ ପ୍ରଭୃତି
ଅହଂକାର ଭ୍ରାନ୍ତି ବଶୁଁ ଜନମ ଲଭନ୍ତି ।
ଫଳକର ଆବଶ୍ୟକ ଚିତ୍ରାଙ୍କନ ପାଇଁ
ଆକାଶ ଚିତ୍ରଣ ପାଇଁ କିଛି ଲୋଡ଼ା ନୋହି ।
ରେ ଆତ୍ମନ ! ତୁହି ମୁହିଁ ଏକଇ ପଦାର୍ଥ
ଅଯୌତିକ ନୁହେଁ ଏହା ଅଟଇ ଯଥାର୍ଥ ।
ଅହଂକାର ବିବର୍ଜିତ ଆନନ୍ଦ ନିର୍ମଳ
ଯେଣୁ ମୋ ଅନ୍ତରେ ବିରାଜଇ କାଳ କାଳ ।
ଇନ୍ଦ୍ରିୟ ଆୟତ୍ତେ ଯେଉଁ ଆନନ୍ଦର ସ୍ରୋତ
ଅନ୍ତର ମଧ୍ୟରେ ହେଉଥାଏ ପ୍ରବାହିତ ।
ତୋର, ମୋର ଛଡ଼ା ତାହା ନୁହେ ଅନ୍ୟ କିଛି
ବାରମ୍ବାର ତୋତେ ନମସ୍କାର କରୁଅଛି ।
ହୃଦୟରୁ ଅହଙ୍କାର ହୁଅନ୍ତେ ବିଲୀନ
ଦିକ୍‌ଦାବାଗ୍ନି ଯେ ବେଳେ ହୁଏ ପ୍ରଶମନ
ଯେଉଁ ବିମଳ ଆନନ୍ଦ ହୁଅଇ ଜନମ
ସେ ଆନନ୍ଦ ରୂପକୁ ମୋ କୋଟିଏ ପ୍ରଣାମ ।
ଆନନ୍ଦ ପଦ୍ମ ଯହିଁରେ ହୁଏ ପ୍ରସ୍ଫୁଟିତ
ଚିନ୍ତା ତରଙ୍ଗ ଯହିଁରେ ଥାଏ ପ୍ରଶମିତ ।
ତୁମେ ଅଟ ହଂସ ମୋର ସେ ମାନସ ସରେ
କୋଟି ନମସ୍କାର ମୋର ତବ ପଦତଳେ ।
ଶମ ଦମ ସୁସଂମର୍ଦ୍ଦ ମୋର ମନ ବଳେ
କାମାଗ୍ନି-ଦଗ୍ଧ ମନକୁ ବିନାଶିଛି ହେଲେ ।
ଇନ୍ଦ୍ରିୟକୁ ଇନ୍ଦ୍ରିୟରେ ମନକୁ ମନରେ
ଅହଙ୍କାରକୁ ପୁଣିହିଁ ଅହଙ୍କାର ବଳେ,
ଆଣି ରଖିପାରିବି ମୁଁ ନିଜ କବଳରେ
ତଦ ବଶିଷ୍ଟ ଚିନ୍ମାତ୍ରରୂପେ ମୁଁ ବିହରେ ।
ଅଶ୍ରଦ୍ଧାକୁ ଶ୍ରଦ୍ଧା ବଳେ, କରଗତ କରି
ସୁବୁଦ୍ଧିରେ ଦୁର୍ବୁଦ୍ଧିକୁ ଜୟଲାଭ କରି ।
ତୃଷ୍ଣାକୁ ବିତୃଷ୍ଣା ବଳେ କବଳିତ କରି
ଦେଦୀପ୍ୟମାନ ରହିଛୁ ରେ ଆତ୍ମା ମୋହରି ।
କି ଆଶ୍ଚର୍ଯ୍ୟ ! ଏତେକାଳ ଥିଲି ମୁଁ କିପରି
ବୃଥା ଅହଂକାରେ ଖାଲି ସଡ଼ି ମରୁଥିଲି ।
ବାସ୍ତବ ଜ୍ଞାନ ମୁଁ ଆଜି ଲାଭ କରିଅଛି
ତେଣୁ ନୂତନ ଜୀବନ ପ୍ରାପତ ହୋଇଛି ।
ଅହଂକାର ମହାମେଘ ମଧ୍ୟରୁ ମୁକତ
ହୋଇକରି ଲାଭ କରିଛି ମୁଁ ଆତ୍ମତତ୍ତ୍ୱ ।

ଅଦ୍ୱୟ ଚିତ୍ ସ୍ୱରୂପ ଯେଉଁ ମହେଶ୍ୱର
ପ୍ରାପତ ହେଲି ମୁଁ, ତାଙ୍କୁ କୋଟି ନମସ୍କାର ।
ଅଜ୍ଞାନ ଜଡ଼ତା ମୋର ଏବେ ଦୂରୀଭୂତ
ଆତ୍ମାଛଡ଼ା କିଛି ନାହିଁ ଏ ତିନି ଜଗତ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ଆତ୍ମଲାଭ ଚିନ୍ତନ ବର୍ଣ୍ଣନେ**
**ନାମ ୩୨ଶ ସର୍ଗଃ ।**



## ୩୩ଶ ସର୍ଗଃ

## ପ୍ରହ୍ଲାଦଙ୍କ ସଂସ୍ତବନ ବା ସ୍ତୁତି

ପ୍ରହ୍ଲାଦ ବୋଇଲେ ନମୋ ! ଆହେ ଭଗବାନ
ଭାଗ୍ୟବଶେ ଆଜ ପାଇଅଛି ଦରଶନ ।
ତ୍ରିଜଗତେ ତୁମ ଛଡ଼ା ବନ୍ଧୁ ମୋର କାହିଁ ?
ଅଛିକି ଏପରି କିଏ ମୁଁ ତ ନ ଜାଣଇ ।
ଯେଯାଏ ଆପଣ ଉପଲବ୍ଧ ନୋହିଥାଅ
ମୃତ୍ୟୁ ରୂପେ ଅଭକ୍ତଙ୍କୁ ସ୍ୱାହା କରୁଥାଅ ।
ତୋ ଭକ୍ତମାନଙ୍କୁ ତୁହି ରକ୍ଷା କରୁଥାଉ
ତାଙ୍କ ହୃଦେ ବସି ନିଜେ ନିଜ ସ୍ତୁତି ଗାଉ ।
ସ୍ୱତଃ ଆଗନ୍ତୁକ ହୋଇ ଆସ ତାଙ୍କ ପାଶ
ତୁମେହିଁ ପୂରାଇ ଥାଅ ଭକତଙ୍କ ଆଶ ।
ସେହି ଦୟାମୟଙ୍କୁ ମୁଁ କରିଅଛି ଲାଭ
କି ଦୟା ତୁମର, ମୋର ହୃଦେ କଲ ଠାବ ।
ନିଜ ସତ୍ତାବଳେ ସର୍ବବ୍ୟାପୀ ଅଛ ହୋଇ
ତୁମ୍ଭଙ୍କୁ ଖୋଜିବା ସ୍ଥାନେ ତୁମ୍ଭେ ଥାଅ ରହି ।
ତୁମ୍ଭ ମୋର ମଧ୍ୟେ ଥିଲା ବହୁ ବ୍ୟବଧାନ
ନାହିଁ ତାହା, ସମୀପସ୍ଥ ହୋଇଛ ଆପଣ ।
ଏବେ କୁଆଡ଼େ ପଳାଇ ଯିବୁ କହ ମୋତେ
ବନ୍ଧୁ ! କୃତକୃତ୍ୟ ହେଲି ଦେଖିକରି ତୋତେ ।
ହେ ଜଗତ କର୍ତ୍ତା, ଭର୍ତ୍ତା ଘେନ ନମସ୍କାର
ଚକ୍ର, ପଦ୍ମ, ଧାରୀ ଆତ୍ମା ଆହେ ମହେଶ୍ୱର ।
ତୁମ ମୋର ମଧ୍ୟେ ଅଛି ଯାହାକି ପ୍ରଭେଦ
ଜଳ ତରଙ୍ଗ ସଦୃଶ ଆହେ ଆଦିକନ୍ଦ ।
ତରଙ୍ଗ ବୈଚିତ୍ର୍ୟ ରୂପେ ତୁମେ ସବୁଠାରେ
ପ୍ରକାଶ ପାଉଛ ପ୍ରଭୁ ଅନ୍ତରେ ବାହାରେ ।
ଅନନ୍ତରୂପେ ପ୍ରକାଶମାନ ତୁମେ ଦେବ
କୋଟି କୋଟି ନମସ୍କାର ଘେନ ପଦ୍ମନାଭ ।

'ମୁଁ' ଭାବାପନ୍ନ ହୋଇଣ ଏତେକାଳଯାଏ
ମୋ ଦ୍ୱାରା ଗଳିତ ହେଉଥିଲା ଦେବରାଏ ।
ଜ୍ଞାନ, ଆଶ୍ଚର୍ଯ୍ୟ ତୁମର ତରୋହିତ ହୋଇ
ଅସତ୍ ପଥେ ଚଳୁଥିଲ ଆହେ ଦେବସାଇଁ ।
କେତେ ଜନ୍ମେ କେତେ ଦୁଃଖ ପାଇଛ ସେ ପାଇଁ
ତେଣୁ କରି ତୁମକୁ ମୁଁ ଲଭି ପାରିନାହିଁ ।
ତୁମ ଛଡ଼ା ଜଗତର ସତ୍ତାହିଁ ଅସିଦ୍ଧ
ତୁମକୁ ପାଇଲେ ସର୍ବ ଜଗତ ଲବଧ ।
ଆଜି ତୁମକୁ ଦେଖିଛି, ଲାଭ କରିଅଛି
ତୁମେହିଁ ଯଥାର୍ଥ ବସ୍ତୁ ଏହା ମୁଁ ବୁଝିଛି ।
ମୋ ଦ୍ୱାରା ଦୃଷ୍ଟ, ଗୃହୀତ ହୋଇଣ ଆପଣ
ମୋହମୁକ୍ତ ହୋଇଅଛ ଆହେ ନାରାୟଣ ।
ହେ ଦେବ ! ତୁମେ ତ ନିଜେ ସାକ୍ଷାତ୍ ଦର୍ଶନ
ମୋ ଦ୍ୱାରା ଦୃଷ୍ଟ ନୋହିବ କିମ୍ପାଇଁ ଆପଣ ?
ଆପଣ ତ ନିଜେ ସ୍ପର୍ଶ, ତେବେ ମୋ କର୍ତ୍ତୃକ
ସ୍ପୃଷ୍ଟ କିମ୍ପାଇ ନୋହିବ ହେ ବିଶ୍ୱବ୍ୟାପକ ।
ଶବ୍ଦ-ଶକ୍ତି ପ୍ରକାଶଇ ଯେହୁ ଶବ୍ଦ ଶୁଣି
ଦୂରେ କି ରହିପାରେ ସେ ବିଶ୍ୱାସ ନ ମଣି ?
ଜିଭରେ ଲାଗିଲା ମାତ୍ରେ ଖଟା ମିଠା ରସ
ସ୍ୱାଦଗମ୍ୟ ହୁଏ ଯେହୁ ଆହେ ଜଗଦୀଶ,
ଆସ୍ୱାଦନ କରି ତାକୁ କିଏ ବା ରହିବ
ଅଧିକ ସୁସ୍ୱାଦ ବସ୍ତୁ କାହୁଁ ବା ପାଇବ ?
ଘ୍ରାଣରୂପେ ହସ୍ତେ ଯେହୁ ପୁଷ୍ପ ଗନ୍ଧ ନିଏ
ସେ ହସ୍ତ ତ ସର୍ବ କରତଳଗତ ଥାଏ ।
ବେଦ ବେଦାନ୍ତାଦି ଶାସ୍ତ୍ର ଗାଆନ୍ତି ଯା ଗୀତି
ଥରେ ସେ ଆତ୍ମାକୁ ଜାଣିପାରେ ଯେଉଁ ମତି,
କେହିକି ତାହାକୁ କେବେ ପାରଇ ପାଶୋରି
ହସ୍ତ ଲବ୍ଧ ରତ୍ନ କିଏ ଦିଏ କି ଫୋପାଡ଼ି ?
ଯେ ସବୁ ଦୈହିକ ଭୋଗେ ଥିଲା ମୋ ଆଦର
ତୁମକୁ ଦେଖି ସେ ସ୍ପୃହା ଗତ ହେଲା ମୋର ।
ତୁମେ ହିଁ ସୂର୍ଯ୍ୟକୁ କରିଅଛ ତେଜୀୟାନ
ଚନ୍ଦ୍ରମାକୁ କରିଅଛ ଶୀତଳ ଚନ୍ଦନ ।
ଗୁରୁତ୍ୱ ଲଭେ ପର୍ବତ ତୁମରି ଇଚ୍ଛାରେ
ସର୍ବଂସହା ବସୁମତୀ ତୁମ କୃପାବଳେ ।
ବାୟୁ ପ୍ରଭୃତିଙ୍କୁ ତୁମେ କରିଛ ଧାରଣ
ତବ ଇଚ୍ଛାରେ ଆକାଶ ପରକାଶମାନ ।

ଭାଗ୍ୟବଳେ ଆଜି 'ତୁହି' ହୋଇଅଛୁ 'ମୁହିଁ'
ସେହି ଭାଗ୍ୟବଳେ ଆଜି ମୁହିଁ ହେଲି ତୁହି ।
ତେଣୁ ମୁହିଁ ଅଟେ ତୁହି, ତୁହି ପୁଣି ମୁହିଁ
ତୋହ, ମୋହଠାରେ କଉଣସି ଭେଦ ନାହିଁ ।
'ମୁହିଁ' 'ତୁହି' ଦୁଇ ଶବ୍ଦ ତୁମରି ବୋଧକ
ମୁଁ ଅଟେ କାର୍ଯ୍ୟ ଆତ୍ମା ତୁ, କାରଣ କାରକ ।
ଏହି ଦୁଇ ଶବଦକୁ ପ୍ରଣତି ମୋହର
ନିରହଂକାର ଅନନ୍ତ 'ମୋତେ' ନମସ୍କାର ।
ସମରୂପ ଅରୂପ 'ମୁଁ' ଘେନ ମୋ ପ୍ରଣତି
ସର୍ବବ୍ୟାପୀ ଅନ୍ତର୍ଯ୍ୟାମୀ ତୋତେ ମୋର ନତି ।
ଦିଗ କଳାର ଅତୀତ ଆହେ ଆତ୍ମାବତ
ନିରାକାର "ମୁହିଁ ରୂପୀ" ଆତ୍ମାରେ ସଂସ୍ଥିତ,
ସର୍ବ ସାକ୍ଷୀ ସ୍ୱରୂପ ହେ ଅନନ୍ତ ଅପାର
'ମୁହିଁ ରୂପୀ' ତୁମକୁ ମୋ କୋଟି ନମସ୍କାର ।
ଦେହ, ମନ, ପଞ୍ଚପ୍ରାଣ ଇନ୍ଦ୍ରିୟାଦି ଯେତେ
କିଛି ମୋ ସମ୍ପର୍କ ନାହିଁ ଏହାଙ୍କ ସହିତେ ।
ପ୍ରକୃତ 'ମୁହିଁ'କୁ ମୁହିଁ ବହୁକାଳ ପରେ
ଲାଭ କରି ପାରିଲଇଁ କେଉଁ ଭାଗ୍ୟବଳେ ।
କଳ୍ପ ଅବସାନେ ଯଥା ଜଗତର ଲୟ
ବହୁକାଳ ପରେ ମୋର ଭ୍ରମର ବିଲୟ ।
ସୁଦୀର୍ଘ ସଂସାର ଚକ୍ରେ ଘୂରି ଘୂରି ମୁହିଁ
ଶ୍ରାନ୍ତ ହୋଇପଡ଼ିଥିଲି, ଶାନ୍ତି ଲଭିଲଇଁ ।
ସର୍ବାତୀତ, ସର୍ବରୂପୀ, ମୁହିଁ ରୂପୀ ତୋତେ
ବାରମ୍ବାର ପ୍ରଣାମ ମୋ ଘେନ ବିଶ୍ୱପିତେ ।
ରେ ଆତ୍ମନ ! ଫୁଲ ଗନ୍ଧ ପରାୟ ଯେ ତୁହି
ସକଳ ଦେହେ ତୁ ଅଛୁ ତେଣୁ ସର୍ବଦେହୀ ।
ଅହଂକାର ହୀନ ହୋଇ ହିଂସା ପ୍ରକାଶୁଛୁ
ଦାନ କରୁଅଛୁ ପୁଣି ରକ୍ଷା କରୁଅଛୁ,
ଅବା ଆସ୍ପର୍ଦ୍ଧା ପ୍ରକାଶ କରି ବିରାଜୁଛ
ବିଚିତ୍ର ମାୟା ତୁମର, କାହିଁ ତାର କଛ ?
କ୍ଷୁଦ୍ରବୀଜ ମଧ୍ୟେ ଯଥା ବିଶାଳ ପାଦପ
ଜଗତ ତୋ ମଧ୍ୟେ ତଥା ହେ ଅଣୁସ୍ୱରୂପ ।
ମେଘମାଳା ଦେଖାଯାନ୍ତି ଯଥା ଆକାଶରେ
ହାତୀ, ଘୋଡା, ଓଟ ଆଦି ବିଭିନ୍ନ ରୂପରେ ।
ହେ ଦେବ ଆପଣ ନିଜ ସଂକଳ୍ପ ବଳରେ
ପରିଦୃଷ୍ଟ ହୁଅ ନାନା ବସ୍ତୁ ଆକାରରେ ।
ପଦାର୍ଥମାନଙ୍କ ଜ୍ଞାତା ଅଟନ୍ତି ଆପଣ
ଇନ୍ଦ୍ରିୟଙ୍କ କାର୍ଯ୍ୟ କରୁଥାନ୍ତି ସମ୍ପାଦନ ।
ପରିଚାଳକ ଆପଣ ଏ ପ୍ରାଣ ବାୟୁର
ମଦଧାରା ପୁଣି ତୁମେ ଏ ଚିତ୍ତ ହସ୍ତୀର ।
ତୁମେ ଉତ୍ତାପ କାରଣ ବୁଦ୍ଧି ପ୍ରକାଶକ
ଜଗତ କାରଣ ତୁମେ ଶାନ୍ତି ପ୍ରଦାୟକ ।
ଉପସଂହୃତ କଲାରୁ ଏହି ତତ୍ତ୍ୱବାଣୀ
ଅନ୍ତର୍ହିତ ହୋଇଥାନ୍ତି ଦେବ ତତକ୍ଷଣି ।
ଆପଣଙ୍କ ଇଚ୍ଛା ଘେନି ପୁଣି ସେହି ବାଣୀ
ଅନ୍ୟତ୍ର ପ୍ରକାଶ ପାନ୍ତି ହେ ଦେବ ଅଗ୍ରଣୀ ।
ମୁହିଁ, ତୁହି, ଏହି, ସେହି, ଏହିଭକ୍ତି ବଳେ
ନିଜକୁ ନିଜେ ପ୍ରକାଶ କର ଲୀଳା ଛଳେ ।
ଅସଂଖ୍ୟ ପ୍ରାଣୀ ରୂପରେ ନିଜକୁ ଆପଣ
ପ୍ରକାଶ କରି ଖେଳୁଛ ତୁମ୍ଭେ ହେ ଆତ୍ମନ ।
ଯେତେବେଳେ ଛାଡ଼ିଦିଅ ଏହି କଳେବର
କାଠପରି ଏହା ଲୋଟୁଥାଏ ଧରାତଳ ।
ସୂର୍ଯ୍ୟ ଉଦୟରେ ଯଥା ଲୁପ୍ତ ଅନ୍ଧକାର
ନକ୍ଷତ୍ରମାନଙ୍କ ପ୍ରଭା ନ ଦିଶେ ଆବର ।
ଆପଣଙ୍କ ଉଦୟରେ ପ୍ରଭୁ ସେହିପରି
ସୁଖ ଦୁଃଖର ପ୍ରଭାବ ଯାଏ ଅପସରି ।
କ୍ଷଣସ୍ଥାୟୀ ଅଟନ୍ତି ଯେ ସୁଖ ଦୁଃଖମାନ
ତବାନୁଗ୍ରହେ ହୁଅନ୍ତି ପରକାଶମାନ ।
ଯେତେବେଳେ ମିଳିଯାଏ ତବ ଦରଶନ
ଅଚିରେ ସେମାନେ ହୋଇ ଯାଆନ୍ତି ବିଲୀନ ।
ଅନନ୍ତ ରୂପେ ଓ ନାମେ ତୁହି ପରିଚିତ
ଅବିବେକୀ ହୃଦୟରେ ଯେ ଭାବେ ଉଦିତ,
ବର୍ଣ୍ଣନ କରିବି ନାହିଁ ସେସବୁ ରୂପର
କାଳେ ସେ ବାସନା ଉଦେ ହେବ ମୋ ଅନ୍ତର ।
ବ୍ରହ୍ମାଣ୍ଡଠାରୁ ମହାନ ତୁମ୍ଭେ ଆହେ ଈଶ
ଆଗମାତୀତ ଆପଣ, ଆଗମର ବାସ ।
ହେ ଜ୍ଞେୟ, ହେ ଅଜ୍ଞେୟ, ହେ ଜାତ, ହେ ଅଜାତ
ହେ ଭାବ, ହେ ଅଭାବ, ହେ କ୍ଷତ, ହେ ଅକ୍ଷତ ।
ଯଥାର୍ଥ ଜ୍ଞାନ ଲଭିଛି ଆହେ ଜ୍ଞାନମୟ
ବିଜୟ ଲଭିଛି ପୁଣି ଆହେ ଦୟାମୟ ।
ବିଜୟ ହେଉ ତୁମର, ଘେନ ନମସ୍କାର
ସଙ୍ଗେ ସଙ୍ଗେ ମୋତେ ମଧ୍ୟ କରେ ନମସ୍କାର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ ପ୍ରହ୍ଲାଦ ଉପାଖ୍ୟାନେ ସଂସ୍ତବନ ବର୍ଣ୍ଣନେ ନାମ ୩୩ଶ ସର୍ଗଃ ।**



## ୩୪ଶ ସର୍ଗଃ

## ପ୍ରହ୍ଲାଦ ବୋଧନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଏହିପରି ଚିନ୍ତାକରି ଭକତ ପ୍ରଧାନ ।
ନିର୍ବିକଳ୍ପ ସମାଧିରେ ହୁଅନ୍ତି ନିମଗ୍ନ
ସ୍ୱରୂପ ସାମ୍ରାଜ୍ୟ ଲଭି ପାଲଟେ ପାଷାଣ ।
ଏହିପରି କେତେକାଳ ଗତ ହୋଇଯାନ୍ତେ
ଅସୁର ପ୍ରଧାନଗଣ ଭାବିଲେକ ଚିତ୍ତେ ।
ପ୍ରହଲ୍ଲାଦଙ୍କ ସମାଧି ଭଗନ କାରଣ
ଘେରିଗଲେ ତାଙ୍କୁ ଆସି ସେ ଅସୁରଗଣ ।
ପ୍ରହଲ୍ଲାଦଙ୍କ ସମାଧି ଭଗନ ନୋହିଲା
ଏହିପରି ଏକ ସସ୍ରବର୍ଷ ଗତହେଲା ।
ପ୍ରହ୍ଲାଦ ଜୀବିତ ନାହିଁ ଭାବନ୍ତି ଅସୁରେ
କିଛି ଜାଣି ନ ପାରିଣ ସର୍ବେ ଭୟକଲେ ।
ଅରାଜକତା ରାଜତ୍ୱ କରେ ପାତାଳରେ
ନାନା ବିଶୃଙ୍ଖଳା ଘଟେ ରାଜ ଭବନରେ ।
ହତଶିରୀ ହୋଇଗଲା ସେ ପାତାଳପୁରୀ
ଜନଶୂନ୍ୟ ହୋଇକରି ଦିଶେ ହତଶିରୀ ।
ଦକ୍ଷିଣାୟନ ସଂକ୍ରାନ୍ତି ଯହୁଁ ଗତହେଲା
ଭଗବାନ ହରିଙ୍କର ନିଦ ଭାଙ୍ଗିଗଲା ।
ସ୍ୱର୍ଲୋକ ଭୁଲୋକ ପୁଣି ଯେ ପାତାଳପୁର
ନିରୀକ୍ଷଣ କରି ଦେଖନ୍ତି ଯେ ଚକ୍ରଧର ।
ନିର୍ବିକଳ୍ପ ସାମାଧିରେ ମଗ୍ନ ପ୍ରହଲ୍ଲାଦ
ସ୍ୱଚ୍ଛନ୍ଦରେ ଇନ୍ଦ୍ରରାଜା ଭୋଗେ ରାଜପଦ ।
ଭାବିଣ ଦେଖନ୍ତି ହରି ଭକ୍ତ ପ୍ରହଲ୍ଲାଦ
ବ୍ରହ୍ମପଦେ ମଜ୍ଜି ଭୋଗେ ଅଖଣ୍ଡ ଆନନ୍ଦ ।
ଅରାଜକତା ବ୍ୟାପିଛି ପାତାଳ ରାଜ୍ୟରେ
ପ୍ରତୀଦ୍ୱନ୍ଦୀ ନାହିଁ ବୋଲି ଆନନ୍ଦ ଅମରେ ।
ସମର ଆଶଙ୍କା ତାଙ୍କୁ ହୋଇଅଛି ଦୂର
ବିଜୟ ବାସନା ନାହିଁ ନିଷ୍କ୍ରିୟ ଅମର ।
ଦେବାସୁରମାନେ ଯେବେ ନିଷ୍କ୍ରିୟ ହୋଇବେ
ସୃଷ୍ଟି ବିପର୍ଯ୍ୟସ୍ତ ହୋଇ ପଡ଼ିଯିବ ତେବେ ।
"ସୃଷ୍ଟି ରକ୍ଷାପାଇଁ ଏବେ ପାତାଳକୁ ଯିବି
ପ୍ରହଲ୍ଲାଦକୁ କର୍ତ୍ତବ୍ୟେ ଉଦ୍‌ବୁଦ୍ଧ କରିବି ।
ଅସୁର ଗଣଙ୍କ ଅଧିପତି ହୋଇ କରି
ଜୀବନ ମୁକତ ଭାବେ ଭୋଗୁ ରାଜ୍ୟଶିରି ।
ତାହାହେଲେ ପୂର୍ବପରି ଶକ୍ତି ଦ୍ୱନ୍ଦ୍ୱଭାବ
ଉଜୀବିତ ହୋଇ ସୃଷ୍ଟି ରକ୍ଷା ପାଇଯିବ ।"
ଏହିପରି ମନେ ଭାବି ଭଗବାନ ହରି
ପାତାଳ ପୁରେ ଚଳିଲେ ପ୍ରହଲ୍ଲାଦ ପୁରୀ ।
"ପ୍ରବୁଦ୍ଧ ହୁଅ" ଏମନ୍ତ ବୋଲିଣ ଶ୍ରୀହରି
ପଞ୍ଚଜନ୍ୟ ଶଙ୍ଖଧ୍ୱନି ଅବିଳମ୍ବେ କରି ।
ପଞ୍ଚଜନ୍ୟ ଶଙ୍ଖଧ୍ୱନି ଶୁଣି ପ୍ରହଲ୍ଲାଦ
ଧୀରେ ଧୀରେ ଜ୍ଞାନ ଲଭି ହୋଇଲେ ପ୍ରବୁଦ୍ଧ ।
"କହନ୍ତି ଶ୍ରୀହରି ଏବେ ଶୁଣରେ ଭକତ
ନିଜ ଆକୃତି, ଦାନବ ରାଜ୍ୟ କଥାଚିନ୍ତ ।
ସହସା ତୁ ଦେହପାତ କରିବାର ପାଇଁ
ଉଦ୍ୟତ ହେଉଛୁ କିପାଁ ଆଶ୍ଚର୍ଯ୍ୟ ଲାଗଇ ।
ଶାରୀରିକ ସୁଖ ଦୁଃଖ ନ ଲାଗିବ ତୋତେ
କଳ୍ପାନ୍ତ ପର୍ଯ୍ୟନ୍ତ ତୁହି ରହିବୁ ଏମନ୍ତେ ।
ଏହି ନିୟତି ତୋହର ଜଣାଅଛି ମୋତେ
ତେଣୁକରି ଉଠ ଉଠ କହୁଅଛି ତୋତେ ।
ଯେଣୁ ତୁ ହୋଇପାରିଛୁ ଜୀବନ ମୁକତ
ରାଜ୍ୟ ପାଳନରେ ନୋହିବୁ ତୁ ହରକତ ।
କଳ୍ପ ଅବସାନେ ତୁହି ଛାଡ଼ିବୁ ଶରୀର
ଘଟାକାଶ ମହାକାଶେ ଲୀନ ଯେ ପ୍ରକାର ।
ନିଜ ମହତ୍ତ୍ୱରେ ତୁହି ହୋଇବୁ ସଂସ୍ଥିତ
ଏବେ ମୋର ଉପଦେଶ ଘେନ ତୋର ଚିତ୍ତ ।
ବ୍ରହ୍ମପଦ ଲାଭକରି ଅଛୁତୁ ଅନ୍ତରେ
ବ୍ରହ୍ମାଙ୍କ ଦିନେକମାତ୍ର ଭୋଗ ପାତଳରେ ।
ରାଜ୍ୟଶିରି କିଛି କାଳ ପାଇଁ ଭୋଗକର
ଅଚ୍ୟୁତ ପରମପଦ ଲାଭ ହେବ ତୋର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ ପ୍ରହ୍ଲାଦ ବୋଧନ ବର୍ଣ୍ଣନେ ନାମ ୩୪ଶ ସର୍ଗଃ ।**



## ୩୫ଶ ସର୍ଗଃ

## ପ୍ରହ୍ଲାଦ ଅଭିଷେକ

ପଦ୍ମନାଭ ବିଷ୍ଣୁଙ୍କର ଏହି କଥା ଶୁଣି
ଭକ୍ତବର ପ୍ରହଲ୍ଲାଦ କହନ୍ତି ଏ ବାଣୀ ।
ରାଜକୀୟ କର୍ମରେ ମୁଁ ଶାନ୍ତ ହୋଇଥିଲି
ସେଥିପାଇଁ କିଛି କାଳ ବିଶ୍ରାମ ଲଭିଲି ।
ଆପଣଙ୍କ କୃପାରେ ମୁଁ ସ୍ୱରୂପ ପାଇଛି
ପରମାର୍ଥ ରୂପେ ଏବେ ସ୍ଥିତ ହୋଇଅଛି ।
ବହୁକାଳ ଧରି ଅନ୍ତରରେ ଦେଖିଥିଲି
ସୌଭାଗ୍ୟରୁ ତୁମଙ୍କୁ ମୁଁ ବାହାରେ ଦେଖିଲି ।
ଭାବାଭାବରୁ ଅତୀତ ରହି ଏ ପର୍ଯ୍ୟନ୍ତ
ଅବସ୍ଥାନ କରୁଥିଲି ଆହେ ବିଶ୍ୱନାଥ ।
ଆପଣଙ୍କ ଆଦେଶରେ ଏ ରୂପ ଧରିଛି
ଭବଦୀୟ ଇଚ୍ଛା ମାନିବାକୁ ବାଧ୍ୟ ଅଛି ।
ଯାହା ଆଦେଶ କରିବେ ଆହେ ଦେବ ଦେବ
ଅବଶ୍ୟ ମୁଁ ପାଳିବଇଁ ତବ ଆଜ୍ଞା ସର୍ବ ।
ତ୍ରିଭୁବନେ ପୂଜନୀୟ ଅଟନ୍ତି ଆପଣ
ତେଣୁ ମୋ ପୂଜା ଅବଶ୍ୟ କରିବେ ଗ୍ରହଣ ।
ଏହା କହି ପ୍ରହଲ୍ଲାଦ ଗୋବିନ୍ଦଙ୍କ ପୂଜା
ସଂପାଦନ କରି ସ୍ଥିର ହେଲେ ଭକ୍ତରାଜା ।
କମଳାପତି କହନ୍ତି ହେ ଦାନବ ପତେ
ଉଠି ସିଂହାସନେ ବସ ମୋ ଆଦେଶ ମତେ ।
ଦାନବ ରାଜ୍ୟେ ତୁମକୁ ରାଜା କଲି ମୁହିଁ
ଶଙ୍ଖଧ୍ୱନି ଶୁଣି ଯେତେ ଲୋକ ଆସିଛଇଁ,
ସିଦ୍ଧ ସାଧ୍ୟ ଦେବଗଣ ଆଦି କରି ଯେତେ
ତୁମ ମଙ୍ଗଳ ବିଧାନ କରନ୍ତୁ ସମସ୍ତେ ।
ପଦ୍ମନେତ୍ର ବିଷ୍ଣୁ ଏହିପରି ବାକ୍ୟ କହି
ପ୍ରହ୍ଲାଦକୁ ସିଂହାସନେ ବସାଇଲେ ନେଇ ।
ସୂର୍ଯ୍ୟ, ଚନ୍ଦ୍ରମା, ପୃଥିବୀ, ସୁମେରୁ ପର୍ବତ
ଯେ ପର୍ଯ୍ୟନ୍ତ ରହିଥିବେ ହେ ଦାନବସୁତ,
ସେ ପର୍ଯ୍ୟନ୍ତ ତୁମେ ଏହି ଦାନବ ରାଜ୍ୟରେ
ଶାସନ ପାଳନ କରୁଥାଅ ଅବାଧରେ ।
କହନ୍ତି ବଶିଷ୍ଠ ଭଗବାନ ଏହିପରି
ପ୍ରହ୍ଲାଦକୁ କହି ଚଳିଗଲେ ନିଜ ପୁରୀ ।

ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ପ୍ରହ୍ଲାଦ ଅଭିଷେକ ବର୍ଣ୍ଣନେ
ନାମ ୩୫ଶ ସର୍ଗଃ ।



## ୩୬ଶ ସର୍ଗଃ

## ପ୍ରହ୍ଲାଦ ବ୍ୟବସ୍ଥା ବର୍ଣ୍ଣନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ପ୍ରହ୍ଲାଦଙ୍କ ଆତ୍ମବୋଧ କଲଇଁ ବଖାଣ ।
ପ୍ରହଲ୍ଲାଦ ତତ୍ତ୍ୱଜ୍ଞାନ ଲଭିଲେ ଯେପରି
ଏକାଗ୍ର ଚିତ୍ତେ ଯେ ତାକୁ ସୁବିଚାର କରି,
ଦୁଷ୍କୃତି ସମ୍ପନ୍ନ ହୋଇଥିଲେ ହେଁ ସେ ଜନ
ଅଚିରେ ଲଭି ପାରିବ ସେହି ଆତ୍ମଜ୍ଞାନ ।
ମାମୁଲି ବିଚାରେ ବା ନ ହୋଇବ କିସ
ପରମପଦ ବା କିପାଁ ନ ହୋଇବ ପ୍ରାପ୍ତ ?
ସୁବିଚାର କର ରାମ ହୋଇ ସ୍ଥିର ଚିତ୍ତ ।
ଶ୍ରୀରାମ ବୋଲନ୍ତି ଏବେ କହ ତପୋଧନ
ବ୍ରହ୍ମେ ବିଲୀନ ମହାତ୍ମା ପ୍ରହ୍ଲାଦଙ୍କ ମନ ।
ପାଞ୍ଚଜନ୍ୟ ଶଙ୍ଖ ଧ୍ୱନି ଶୁଣିଣ କେସନ
ଭଗ୍ନ ହେଲା, ତାହା ଏବେ କରିବା ବର୍ଣ୍ଣନ ।
କହନ୍ତି ବଶିଷ୍ଠ ରାମ ତାହା ଏବେ ଶୁଣ
ଦୁଇ ପ୍ରକାର ମୁକତି ଅଛଇ ବର୍ଣ୍ଣନ ।
ସଦେହ ମୁକତି ପୁଣି ବିଦେହ ମୁକତି
ଏହି ଦ୍ୱିବିଧ ମୁକତି ଜାଣ ରଘୁପତି ।
ବିଷୟରେ ଅନାଶକ୍ତ ରହି ଯେଉଁ ଜନ
କର୍ତ୍ତବ୍ୟ ବୁଦ୍ଧିରେ କରେ କାର୍ଯ୍ୟ ସମ୍ପାଦନ ।
ଇଷ୍ଟ ଅନିଷ୍ଟ ଦୁଇରେ ସମଭାବ ଧରି
କର୍ମ ସମ୍ପାଦନ କରେ ଅନାଶକ୍ତ ପରି ।
ଜୀବନ ମୁକତ ଅବା ସଦେହ ମୁକତ
ବୋଲିଣ ପୂଜା ପାଏ ସେ ଏ ସାରା ଜଗତ ।
ସେପରି ଜୀବନମୁକ୍ତ ଅଟଇ ଯେ ଜନ
ଦେହକ୍ଷୟେ ହୁଏ ଯେହୁ ଅବସ୍ଥା ସମ୍ପନ୍ନ,
ବିଦେହ ମୁକତ ଅଟେ ସେହିପରି ଜନ
ଏହି କଥା ବୁଝିରଖ ହେ ରଘୁନନ୍ଦନ ।
ଜୀବନମୁକ୍ତଙ୍କ ହୃଦେ ପୂର୍ବ ଜନମର
ବିଶୁଦ୍ଧ ବାସନା ରହିଥାଏ ନିରନ୍ତର ।

ସେହି ବାସନା ବଳୁ ତା ସମାଧି ଭଗନ
ହୋଇଥାଏ ମନେରଖ ହେ ରଘୁନନ୍ଦନ ।
ଭଜା ମଞ୍ଜିରୁ ଅଙ୍କୁର ନ ଜନ୍ମେ ଯେପରି
ଶୁଦ୍ଧ ବାସନାରୁ ଭାବାଙ୍କୁର ନୋହିପାରି ।
ସେହି ବିଶୁଦ୍ଧ ବାସନା ଶଙ୍ଖଧ୍ୱନି ବଳେ
ପ୍ରହ୍ଲାଦ ସମାଧି ଭଗ୍ନ କରିଦେଲା ହେଲେ ।
ବିଶେଷତଃ ଭଗବାନ ହରି ସର୍ବ ଆତ୍ମା
ତାଙ୍କ ଇଚ୍ଛା ଘେନି ପ୍ରହଲ୍ଲାଦ ପାଏ ଚେତା ।
ଏପରିକି କଷ୍ଟ କଥା ଅଛି ଏ ଜଗତେ
ଯାହା ହୋଇ ନ ପାରିବ ତାଙ୍କ ଇଚ୍ଛାମାତ୍ରେ ।
ଆତ୍ମ ଦରଶନ ହୋଇଅଛି ଯେ ଜନର
ଆତ୍ମା ରୂପେ ହରିଙ୍କି ସେ ଦେଖଇ ଅନ୍ତର ।
ଏହି ତତ୍ତ୍ୱ ଆଶ୍ରା କରି ତୁମେ ହେ ରାଘବ
ସଚେଷ୍ଟ ହୋଇଲେ ଆତ୍ମ ଦର୍ଶନ ପାଇବ ।
ଏସନ ବିଚାର ବଳେ ତୁମେ ହେ ଶ୍ରୀରାମ୍
ଶାଶ୍ୱତ ଆତ୍ମାର ପାଇପାର ଦରଶନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ପ୍ରହ୍ଲାଦ ବ୍ୟବସ୍ଥା ବର୍ଣ୍ଣନେ**
**ନାମ ୩୬ଶ ସର୍ଗଃ ।**



## ୩୭ଶ ସର୍ଗଃ
## ପ୍ରହ୍ଲାଦ ବିଶ୍ରାନ୍ତି

କହନ୍ତି ଶ୍ରୀରାମ ଦେବ କହ ଏବେ ମୋରେ
ସର୍ବଲାଭ ହୋଇଥାଏ ପୌରୁଷ ବଳରେ ।
ଏହି କଥା କହିଛନ୍ତି ପୂର୍ବେ ତ ଆପଣ
ପୌରୁଷ ବଳ ପ୍ରହ୍ଲାଦ ନ ଜାଣେ କେସନ ।
ପଞ୍ଚଜନ୍ୟ ଧ୍ୱନି ବିନା ସେ ଭକ୍ତଶେଖର
କିପାଁ ଫେରି ନ ପାଇଲା ଚେତନା ତାହାର ।
ବଶିଷ୍ଠ ବୋଇଲେ ଶୁଣ ଆହେ ରଘୁବୀରେ
ପ୍ରହ୍ଲାଦ ସବୁ ଲଭିଲା ପଉରୁଷ ବଳେ ।
ପୁରୁଷ ଓ ନାରାୟଣ ଅଟନ୍ତି ଅଭିନ୍ନ
ତେଣୁ ଯାହା କରିଥାନ୍ତି ସେହି ନାରାୟଣ,
ତାହାରି ନାମ ଅଟଇ ଯେ ପୁରୁଷକାର
ବୁଝିପାରୁଥିବ ଏହା ଆହେ ରଘୁବୀର ।
ବିଷ୍ଣୁ, ପୁରୁଷ ଅଥବା ସେ ଆତ୍ମା ପରମ
ପରମ ଶକ୍ତି ବଳରେ ହୋଇ ବଳବାନ,
ପ୍ରହ୍ଲାଦକୁ କରି ପାରିଥିଲେ ବିଷ୍ଣୁ ଭକ୍ତ
ପୁଣି ତାକୁ ସମାଧିରୁ କଲେକ ଜାଗ୍ରତ,
ପ୍ରହ୍ଲାଦ ମନକୁ ସ୍ୱୟଂ ସେହି ବିଷ୍ଣୁ ଜାଣ
କରି ପାରିଥିଲେ ତାକୁ ସୁବିଚାରବାନ ।
ତଦ୍ୱାରା ମଧ୍ୟ ସେ ନିଜେ ଜ୍ଞାନ ଲଭିଥିଲେ
ବିଷ୍ଣୁଙ୍କ କରଣି ସବୁ ଜାଣ ରାମ ଭଲେ ।
କେବେ କେବେ ଆତ୍ମା ନିଜେ ନିଜ ଶକ୍ତି ବଳେ
ଦିବ୍ୟ ଜ୍ଞାନ ଲାଭକରି ପାରିଥାଏ ହେଲେ ।
ଦେହଧାରୀ, ଭକ୍ତି ଲଭ୍ୟ ବିଷ୍ଣୁଙ୍କ ସହାୟେ
ପୂର୍ଣ୍ଣ ଦିବ୍ୟଜ୍ଞାନ ଲାଭ କେବେ କରିଥାଏ ।
ସମଭାବେ ସର୍ବଭୂତେ ହରି ପ୍ରୀତିମାନ
କାହାରି ପ୍ରତି ନ ଥାଏ ତାଙ୍କ ଭେଦଜ୍ଞାନ ।
ଅବିଚାରୀ ଚିତ୍ତେ ରହିଲେ ହେଁ ବହୁଦିନ
ତାକୁ ଦେଇ ନ ପାରନ୍ତି ଦିବ୍ୟ ଜ୍ଞାନ ଦାନ ।
ପୁରୁଷାକାର ବଳରେ ଯେଉଁ ସୁବିଚାର
ଆତ୍ମ ଦରଶନ ପାଇଁ ମୁଖ୍ୟ ସେ ବିଚାର ।
ବରଦାନ ହେତୁ ଯେଉଁ ଆତ୍ମଦରଶନ
ଜ୍ଞାନୀମାନଙ୍କ ମତରେ ସେ ଉପାୟ ଗୌଣ ।
ମୁଖ୍ୟ ଉପାୟରେ ଆତ୍ମ ଦରଶନ ପାଇଁ
ନିରନ୍ତର ଚେଷ୍ଟାକର ଆହେ ରଘୁସାଇଁ ।
ପ୍ରଥମରେ ଇନ୍ଦ୍ରିୟକୁ ବଶୀଭୂତ କର
ନିଜ ମନକୁ ବିଚାର ପରାୟଣ କର ।
ଯହିଁ ଯାହାକିଛି ଲାଭ କରିଥାଏ ନର
ସମ୍ପାଦନ କରେ ତାହା ଶକ୍ତିବଳେ ତାର ।
ତାହାଛଡ଼ା ଅନ୍ୟ କଉଣସି ଉପାୟରେ
କିଛି ଲାଭ ପାଏ ନାହିଁ ଜୀବ ଏ ସଂସାରେ ।
ପୁରୁଷାକାର ବଳରେ ଇନ୍ଦ୍ରିୟଙ୍କୁ ଜିଣ
ପରଂପଦ ଲଭ, ଭବ-ବାରିଧି ଲଙ୍ଘିଣ ।
ପଉରୁଷ ବିନା ହେଲେ ଆତ୍ମଦରଶନ
ଉଦ୍ଧାର ପାଇ ପାରନ୍ତେ ପଶୁପକ୍ଷୀଗଣ ।
ପୌରୁଷ ହୀନ ଶିଷ୍ୟଙ୍କୁ ଯଦି ଗୁରୁଦେବ
ଉଦ୍ଧାର କରିପାରିବା ହୁଅନ୍ତା ସମ୍ଭବ,
ଓଟ ବଳଦଙ୍କୁ ତେବେ ସେହି ଗୁରୁଦେବ
ଉଦ୍ଧାର କରିପାରନ୍ତେ ଜାଣ ହେ ରାଘବ ।
ଦେବେ କି ମହତ୍‌ପଦ ଧନ ଗୁରୁ ହରି ?
ମନ ବଶୀଭୂତ ହେଲେ ମହତ୍ ପଦମିଳି ।

ବୈରାଗ୍ୟ ଅଭ୍ୟାସ ବଳେ ଜିତେନ୍ଦ୍ରିୟ ହୋଇ
ତ୍ରିଭୁବନେ ଯାହା ମିଳେ, ଆତ୍ମା ଲଭିଥାଇ ।
ଆତ୍ମାଦ୍ୱାରା କର ତୁମେ ଆତ୍ମା ଆରାଧନା
ଆତ୍ମାଦ୍ୱାରା ପୁଣି କର ଆତ୍ମା ଅରଚନା ।
ଆତ୍ମାଦ୍ୱାରା ହିଁ ଆତ୍ମାକୁ କର ଦରଶନ
ଆତ୍ମାଦ୍ୱାରା ହିଁ ଆତ୍ମାରେ କର ଅବସ୍ଥାନ ।
ପୌରୁଷ, ବିଚାର ପୁଣି ଶାସ୍ତ୍ରାନୁଶୀଳନ
ପରାଂମୁଖ ହୋଇଥାନ୍ତି ଯେଉଁ ମୂଢ଼ଜନ ।
ସେମାନଙ୍କୁ ଶୁଭପଥେ ଟାଣି ନେବାପାଇଁ
ବିଷ୍ଣୁ ଶକ୍ତିର କଳ୍ପନା ହୋଇ ରଘୁସାଇଁ ।
ଇନ୍ଦ୍ରିୟଗଣ ଯଦ୍ୟପି ଆସନ୍ତି ବଶରେ
କି କାରଣେ ବିଷ୍ଣୁ ପୂଜା ଆଉ ଏ ସଂସାରେ ?
ଇନ୍ଦ୍ରିଗଣ ଯଦି ନ ହୁଅନ୍ତି ବଶୀଭୂତ
ବିଷ୍ଣୁ ପୂଜା ଫଳପ୍ରଦ ନୁହେ ରଘୁନାଥ ।
ଇନ୍ଦ୍ରିୟ ସଂଯମ ପୁଣି ସୁବିଚାର ବିନା
ଭଗବତ ଦରଶନ କଦାପି ହୁଏନା ।
ଇନ୍ଦ୍ରିୟ ନିଗ୍ରହ ପୁଣି ବିଚାର ବ୍ୟତୀତ
ବ୍ରହ୍ମାଙ୍କର ସୁଦ୍ଧା କିଛି ନ ପାଇ କର୍ତ୍ତୃତ୍ୱ ।
ବିଚାର ଉପଶମରେ ଚିତ୍ତକୁ ଲଗାଇ
ଆତ୍ମା ଆରାଧନା କଲେ ସିଦ୍ଧି ମିଳିଥାଇ ।
ବିଷ୍ଣୁଙ୍କ ପ୍ରାର୍ଥନା ପାଇଁ ଯଦି ଇଚ୍ଛାକର
ନିଜ ଚିତ୍ତଠାରେ ତାହା କିପାଁଇ ନ କର ?
ସର୍ବପ୍ରାଣୀଙ୍କ ଅନ୍ତରେ ବିଷ୍ଣୁ ଅବସ୍ଥିତ
ତାଙ୍କୁ ଛାଡ଼ି ବାହ୍ୟ ବିଷ୍ଣୁ ପୂଜାରେ ଯେ ରତ,
ମନୁଷ୍ୟମାନଙ୍କ ମଧ୍ୟେ ସେ ଅଟେ ଅଧମ
ଅଧମକୁ ଉଦ୍ଧାରିବା ପାଇଁ କେ ସକ୍ଷମ ?
ହୃଦ୍‌ଗୁହାଶାୟୀ ସେହି ଚଇତନ୍ୟ ତତ୍ତ୍ୱ
ଆତ୍ମାର ମୁଖ୍ୟ ଶରୀର ଜାଣ ରଘୁନାଥ ।
ଶଙ୍ଖ, ଚକ୍ର, ଗଦାଧାରୀ ତାଙ୍କ ବାହ୍ୟମୂର୍ତ୍ତି
ଗୌଣ ଶରୀର ତାଙ୍କର ଆହେ ରଘୁପତି ।
ମୁଖ୍ୟକୁ ଭୁଲି ଯେ ଗୌଣ ପ୍ରତି ଆକର୍ଷିତ
ସିଦ୍ଧ ରସାୟନ ଛାଡ଼ି ସାଧେ ଆଗ୍ରହିତ,
ବିବେକ ଅଭାବେ ଚିତ୍ତ ବଶୀଭୂତ ହୋଇ
ଆତ୍ମତତ୍ତ୍ୱ-ଜ୍ଞାନ ହୃଦେ ରଖି ନ ପାରଇ ।
ଚଞ୍ଚଳ ଚିତ୍ତ ସେ ବ୍ୟକ୍ତି ଶଙ୍ଖ ଚକ୍ରଧାରୀ
ବିଷ୍ଣୁଙ୍କ ବାହ୍ୟମୂର୍ତ୍ତିକି ଅରଚନା କରି ।
ବିଷ୍ଣୁଙ୍କର ବାହ୍ୟମୂର୍ତ୍ତି ପୂଜା ଉପାସନା,
ଏକ ପ୍ରକାର ତପସ୍ୟା ଜାଣ ମହାମନା ।
ସେହି ତପବଳେ ଯେବେ ବୈରାଗ୍ୟ ବିବେକ
ଉଦୟ ହୁଅନ୍ତି ତେବେ ହେ ରଘୁନାୟକ,
ଚିତ୍ତ ସୁନିର୍ମଳ ହୁଏ, ଭଲକରି ଜାଣ
ନିର୍ମଳ ଚିତ୍ତ କରାଏ ବିଶୁଦ୍ଧ ପୂଜନ ।
ଶାସ୍ତ୍ରରେ ବର୍ଣ୍ଣିତ ଯେତେ ବିଷ୍ଣୁ ପୂଜାଫଳ
ଆତ୍ମା ବିଷ୍ଣୁ ପୂଜନରେ ମିଳେ ସେ ସକଳ ।
ବିଷ୍ଣୁଠାରୁ ବରଲାଭ କରେ ଯେଉଁ ନର
ନିଜ ଅଭ୍ୟାସ ବୃକ୍ଷର ଅଟଇ ସେ ଫଳ ।
ଭୂମିରୁ ଯେପରି ହୁଏ ଶସ୍ୟ ଉତପନ୍ନ
ମନ ବଶୀଭୂତ ହେଲେ ସମ୍ପଦ ଜନମ ।
ଏକାଗ୍ରତା ବିନା ବାହ୍ୟ କର୍ମ ସମ୍ପାଦନ
ସମ୍ଭବ ନୁହଇ ଜାଣ ହେ ରଘୁନନ୍ଦନ ।
ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର ଆଦି ଦେବଗଣ
କରି ନ ପାରନ୍ତି ମନ ବ୍ୟାଧି ନିବାରଣ ।
ମନ ବ୍ୟାଧିର ଚିକିତ୍ସା ନିଜେହିଁ କରିବ
ଅନ୍ୟ ଦ୍ୱାରା କେବେ ତାହା ହୋଇ ନ ପାରିବ ।
ଜନ୍ମ ନିବୃତ୍ତି ସକାଶେ ତୁମେ ହେ ଶ୍ରୀରାମ
ପରିତ୍ୟାଗ କର ବାହ୍ୟ ମୂର୍ତ୍ତିର ଚିନ୍ତନ ।
ଅନ୍ତରସ୍ଥ ଚିନ୍ମୟ ଦେବତାଙ୍କୁ ଭେଜ
ମନବ୍ୟାଧି ନିବାରିତ ହେବ ରଘୁରାଜ ।
ବାହ୍ୟିକ ଓ ଆନ୍ତରିକ ବିଷୟ ମୁକତ
ଏହି ଯେ ଚିନ୍ମାତ୍ର ରୂପ ଦେବ ଜଗନ୍ନାଥ ।
ତାହାଙ୍କର ଆସ୍ୱାଦନ କରହେ ସତତ
ପାରି ହେବ ଜନ୍ମ ମୃତ୍ୟୁ ନଦୀ ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ପ୍ରହ୍ଲାଦ ବିଶ୍ରାନ୍ତି ବର୍ଣ୍ଣନେ**
**ନାମ ୩୭ଶ ସର୍ଗଃ ।**



## ୩୮ଶ ସର୍ଗଃ

## ଗାଲବୋପାଖ୍ୟାନ

ଏ ସଂସାରମୟୀ ମାୟା କହେ ବ୍ରହ୍ମାସୁତ
କାହିଁରେ ତ ହୋଇ ନ ପାରଇ ସେ ନିବୃତ୍ତ ।
ଆପଣା ଚିତ୍ତକୁ କରିପାରିଲେ ନିବୃତ୍ତ
ତେବେ ଯାଇଁ କରି ହୋଇପାରେ ସେ ଆୟତ୍ତ ।

ହେ ଅନଘ ଏ ବିଷୟେ ଅଛି ଇତିହାସ
ମନକର୍ଣ୍ଣ ଦେଇ ଶୁଣ କରୁଛି ପ୍ରକାଶ ।
ଗାଧିନାମେ ଦ୍ୱିଜବର କୋଶଳ ଦେଶରେ
ବସବାସ କରୁଥିଲେ ଅତି ଆନନ୍ଦରେ ।
ବୁଦ୍ଧିମାନ ବେଦବତ୍ତା ଥିଲେ ସେ ବ୍ରାହ୍ମଣ
ଶଇଶବ କାଳୁ ଥିଲେ ବୈରାଗ୍ୟ ସମ୍ପନ୍ନ ।
ଗୃହ ପରିତ୍ୟାଗ କରି ତପସ୍ୟା ନିମିତ୍ତ
ବନ ଗମନ କରନ୍ତି ସେହି ଦ୍ୱିଜସୁତ ।
ବିଷ୍ଣୁଙ୍କ ସାକ୍ଷାତ ଲାଭ କରିବା ନିମିତ୍ତ
ଆକଣ୍ଠ ଜଳମଗନ ରହି ତପେ ମତ ।
ଏହିପରି ଆଠମାସ ହୋଇଯାନ୍ତେ ଗତ
ଭଗବାନ ବିଷ୍ଣୁ ତାଙ୍କ ପାଶେ ଉପସ୍ଥିତ ।
କହନ୍ତି ହେ ବିପ୍ରବର ଜଳରୁ ଉଠିଣ
ବାଞ୍ଛିତ ବରକୁ ଏବେ କରହେ ଗ୍ରହଣ ।
ତୁମ ଭାଗ୍ୟବଳେ ତୁମ ତପସ୍ୟା ପାଦପ
ବାଞ୍ଛାଫଳ ଧରିଅଛି ହେ ତପୀ ଅଧିପ ।
ବ୍ରାହ୍ମଣ ବୋଲନ୍ତି ଶୁଣ ଆହେ ଭଗବାନ
ତବ ମୋହ ବିଧାୟିନୀ ମାୟା ଯେ କେସନ ?
କୌତୁହଳ ଆସେ ତାଙ୍କୁ କରିବି ଦର୍ଶନ
ଏହି ବର ଅନୁଗ୍ରହ କର ଭଗବାନ ।
ତାହା ଶୁଣି କହୁଛନ୍ତି ବିଷ୍ଣୁ ଭଗବାନ
'ମୋର ମାୟାକୁ ଦେଖିବୁ ତୋ ବେନି ନୟନ ।
ତଦପରେ ସେହି ମାୟା ମୁକ୍ତ ହେବୁ ତୁହି'
ଅନ୍ତର୍ଦ୍ଧାନ ହୋଇଗଲେ ବିଷ୍ଣୁ ଏହା କହି ।
ଅତି ଆନନ୍ଦରେ ସେହି ବନେ ସେ ବ୍ରାହ୍ମଣ
କାଳ କଟାଇଲେ ରହି ତହିଁ ସେ କିଛିଦିନ ।
ଦିନେ ସରୋବରେ ସ୍ନାନ କରି ଦ୍ୱିଜବର
ଜପ କରୁଥିଲେ ଅଘମର୍ଷଣ ମନ୍ତର ।
ହଠାତ ମନରୁ ତାଙ୍କ ମନ୍ତଟି ପାଶୋର
ଜ୍ଞାନ ଗତି ଚଳେ ବିପରୀତେ ମନ୍ତ୍ରାର୍ଥର ।
ଜଳ ମଧ୍ୟେ ଉଭାରହି ଦେଖନ୍ତି ବ୍ରାହ୍ମଣ
ନିଜେ ପଡ଼ିଛନ୍ତି ଘରେ ଲଭିଣ ମରଣ ।
ସ୍ୱଜନ ବର୍ଗ କାନ୍ଦନ୍ତି ଶବକୁ ବେଢ଼ିଣ
କାତର ସ୍ୱର ତାଙ୍କର ଫଟାଏ ଗଗନ ।
ଉପାୟ ନ ଦେଖି ଶବ ବହି ଘେନି ଗଲେ
ଶ୍ମଶାନରେ ନେଇ ତାକୁ ଦହନ କରିଲେ ।

କହନ୍ତି ବଶିଷ୍ଠ ସେହି ଗାଧି ଦ୍ୱିଜବର
ଜଳେ ଥାଇ ଦେଖୁଛନ୍ତି ଏମନ୍ତ ପ୍ରକାର ।
ଭୂତମଣ୍ଡଳ ନାମକ ଏକଇ ଗ୍ରାମରେ
ଭୂତ ଆତ୍ମା ତାର ପଶେ ଚଣ୍ଡାଳୀ ଗର୍ଭରେ ।
ଗର୍ଭ ଯନ୍ତ୍ରଣା ଭୋଗିଣ ତହିଁ କିଛିଦିନ
ଚଣ୍ଡାଳୀର ପୁତ୍ର ରୂପେ ହୋଇଲା ଜନମ ।
ମଳଲିପ୍ତ କୃଷ୍ଣ ବର୍ଣ୍ଣ ଶରୀର ତାହାର
ତାହାଦେଖି ଦ୍ୱିଜବର ଘୃଣାରେ କାତର ।
କ୍ରମଶଃ ଷୋଡ଼ଶ ବର୍ଷ ହୋଇଲା ପ୍ରାପତ
ବନେ ବିଚରଣ କରେ କୁକୁର ସହିତ ।
କୁକୁରଙ୍କ ସାହାଯ୍ୟରେ ମୃଗ ଶତଶତ
ଶିକାର କରଇ ସେହି ଚଣ୍ଡାଳର ସୁତ ।
କୃଷ୍ଣବର୍ଣ୍ଣା ଚଣ୍ଡାଳୁଣୀ କନ୍ୟାର ସହିତ
ବିବାହ କଲାକ ସେହି ଚଣ୍ଡାଳର ସୁତ ।
ନବଭାର୍ଯ୍ୟା ସହିତ ସେ ବନେ ବିଚରଇ
ମୃଗ ଶିକାରରେ ପାରଦର୍ଶିତା ଲଭଇ ।
ବନ ବିଚରଣେ ଅଭିଜ୍ଞତା ଆସିଯାଏ
ଯୁବକ ଯୁବତୀଙ୍କର କାଳ କଟୁଥାଏ ।
କାଳକ୍ରମେ ବହୁପୁତ୍ର କନ୍ୟା ଜନମିଲେ
ଚଣ୍ଡାଳ ଗୃହସ୍ଥ ହୋଇ ବ୍ରାହ୍ମଣ ରହିଲେ ।
ଯୌବନ ଅତୀତ ହୁଅନ୍ତେ ପୌଢ଼ ପ୍ରବେଶଇ
ଚଣ୍ଡାଳ ଗୃହସ୍ଥ ଧର୍ମ ଧରି ସେ ଚଳଇ ।
ଏହିରୂପେ ଜଳେ ଥାଇ ସେ ଗାଧି ବ୍ରାହ୍ମଣ
ଚଣ୍ଡାଳ ଗୃହସ୍ଥ ରୂପେ ନିଜକୁ ଦେଖିଣ ।
ହଠାତ୍ ଦେଖନ୍ତି ମୃତ୍ୟୁଦେବ ପହଞ୍ଚିଲେ
ପରିବାର ବର୍ଗଙ୍କୁ ତା ଘେନି ଚଳିଗଲେ ।
ପୁତ୍ର କଳତ୍ର ହରାଇ ଦୁର୍ଭାଗା ଚଣ୍ଡାଳ
ସଂସାର ପ୍ରତି ବିତୃଷ୍ଣା ଆସଇ ତାହାର ।
ଗୃହ ତେଜି ନାନାସ୍ଥାନେ ଭ୍ରମି ଭ୍ରମି ସେହି
ଅନ୍ୟଏକ ଦେଶେ ଯାଇ ପ୍ରବେଶ ହୁଅଇ ।
ପରଲୋକ ପ୍ରାପ୍ତହେତୁ ସେହି ଦେଶ ରାଜା
ଉପଯୁକ୍ତ ରାଜାପାଇଁ ପଡ଼ିଥାଏ ଖୋଜା ।
ମଙ୍ଗଳହସ୍ତୀ ଶୁଣ୍ଢରେ କଳସ ଧରିଣ
ଏଣେ ତେଣେ ରାଜପଥେ କରଇ ଭ୍ରମଣ ।
ସେ ମଙ୍ଗଳ ହସ୍ତୀ ଗାଧି ଚଣ୍ଡାଳକୁ ଦେଖି
ଶୁଣ୍ଢେଟେକି ନେଇ ତାକୁ ପିଠି ପରେ [illegible]

ମଙ୍ଗଳ ବାଜା ବାଜଇ ବେଢ଼ିଗଲେ ପ୍ରଜା
କୀର ଦେଶେ ନେଇ ତାକୁ କରିଲେକ ରାଜା ।
ଗାଲବ ନାମରେ ଖ୍ୟାତି ଲଭିଲା ସେ ରାଜା
ପରିପାଳନ କରଇ ପୁଅପରି ପ୍ରଜା ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପସମ ପ୍ରକରଣ ଗାଲବୋପାଖ୍ୟାନ ବର୍ଣ୍ଣନେ ନାମ ୩୮ଶ ସର୍ଗଃ ।**



## ୩୯ଶ ସର୍ଗଃ

## ରାଜ୍ୟ ପ୍ରଧ୍ୱଂସ

ରାଜ୍ୟେ ଅଭିଷିକ୍ତ ହୋଇ ଗାଲବ ରାଜନ
ଚଣ୍ଡାଳତ୍ୱ ଏକାବେଳେ ଦିଏ ପାଶୋରିଣ ।
ବଳି ଭାଟଗଣଙ୍କର ବନ୍ଦନା ଶୁଣିଣ
ଆନନ୍ଦରେ ଆଠବର୍ଷ କଲାକ ଯାପନ ।
ଏକ ଦିନେ ସେହି ରାଜା ଏମନ୍ତ ଯେ କଲା
ହାର କେୟୁର ଇତ୍ୟାଦି କାଢ଼ି ପକାଇଲା ।
ରିକ୍ତ ଦେହେ ରାଜବାଟୀ ବହିଃ ପ୍ରାଙ୍ଗଣରେ
ବସିଲା ସେ ରାଜା ତହିଁ ଆନନ୍ଦ ମନରେ ।
ବୀଣାବାଦ୍ୟ କରୁଥିବା ଏକଇ ଚଣ୍ଡାଳ
କଜ୍ଜ୍ୱଳ କଳା ପରାଏ ଶରୀର ତାହାର ।
ରାଜାକୁ ଦେଖି ହଠାତ୍ ଚିହ୍ନି ପକାଇଲା
ଆହେ କଟଞ୍ଜ ବୋଲିଣ ସମ୍ବୋଧନ କଲା ।
ବାର୍ତ୍ତାଳାପ ଆରମ୍ଭଇ ତାହାଙ୍କ ସଙ୍ଗର
ରାଜା କିନ୍ତୁ ତା କଥନ କଲେ ଅନାଦର ।
ପାତ୍ର ମନ୍ତ୍ରୀ ପ୍ରଜାଗଣ ତହିଁ ଯେତେ ଥିଲେ
ରାଜାଙ୍କୁ ଚଣ୍ଡାଳ ଜାଣି ବିଷଣ୍ଣ ଲଭିଲେ ।
ଏତେଦିନ ଆମ୍ଭେ ଚଣ୍ଡାଳର ସେବାକରି
ଅଗ୍ନିଝାସ ପ୍ରାୟଶ୍ଚିତ ଉଚିତ ଆମ୍ଭରି ।
ପାତ୍ର ମନ୍ତ୍ରୀ ସଭାସଦଗଣ ଯେତେ ଥିଲେ
ପୁରବାସୀ ସ୍ତ୍ରୀ ପୁରୁଷ ସମସ୍ତଙ୍କୁ ତୁଲେ ।
ଅଗ୍ନିକୁଣ୍ଡେ ଝାସଦେଇ ଦେହ ବିସର୍ଜିଲେ
ଏହା ଦେଖି ସେ ରାଜନ ମର୍ମାହତ ହେଲେ ।
ମୋ ଲାଗି ଏ ରାଜପୁର ଜନ ଗଲେ ନାଶ
ଏ ଜୀବନେ ମୋର ଆଉ ପ୍ରୟୋଜନ କିସ ?
ଏହାଭାବି ଅଗ୍ନିକୁଣ୍ଡେ ଝାସିଲେ ରାଜନ
ଦଗ୍ଧ ହୋଇ ଦେହ ତାଙ୍କ ଛାଡ଼େ ପଞ୍ଚପ୍ରାଣ ।
ଇତ୍ୟବଶେ ଜଳ ମଧ୍ୟେ ସେ ଦ୍ୱିଜ ପୁଙ୍ଗବ
ନିଜ ଅଙ୍ଗେ ଅଗ୍ନିଜ୍ୱାଳା କଲେ ଅନୁଭବ ।
ଚେତା ଆସିଯାନ୍ତେ ତାଙ୍କ ହୁଅନ୍ତି ପ୍ରବୁଦ୍ଧ
ପୂର୍ବ କଥାମାନ କିନ୍ତୁ ଦିଅଇ ବିଷାଦ ।
ଏତିକି କହିଅଛନ୍ତି ସେ ବଶିଷ୍ଠ ମୁନି
ଅସ୍ତାଚଳ ଆରୋହଣ କଲେ ଦିନମଣି ।
ନିଜ ନିଜ ସାୟଂକୃତ୍ୟ ପାଇଁ ସର୍ବେ ଗଲେ
ପରଦିନ ପ୍ରାତଃକାଳ ସଭାରେ ମିଳିଲେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ରାଜ୍ୟ ପ୍ରଧ୍ୱଂସ ବର୍ଣ୍ଣନେ ନାମ ୩୯ଶ ସର୍ଗଃ ।**



## ୪୦ଶ ସର୍ଗଃ

## ଗାଧି ବୋଧ ପ୍ରାପ୍ତି

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
"ନିଜେ ଚଣ୍ଡାଳ" ଏ ଭାବ ମନରୁ ତାଙ୍କର ।
ଅସ୍ତଯାନ୍ତେ, ଗାଧି ଦ୍ୱିଜ ଲଭିଲେ ଆନନ୍ଦ
ମୁଖ ବିକଶେ ତାଙ୍କର ଯଥା ପୂର୍ଣ୍ଣଚନ୍ଦ୍ର ।
ସରୋବର ତୀରେ ଯାଇଁ ହୁଅନ୍ତି ପ୍ରବେଶ
ଦିବସ ସପନ ମୋର ଏବେ ଗଲା ନାଶ ।
କି ଆଶ୍ଚର୍ଯ୍ୟ ଏତେକ୍ଷଣ କିସ ମୁଁ ଦେଖିଲି
କି କାର୍ଯ୍ୟ ବା କରି ଏତେକାଳ କଟାଇଲି ।
ଶୈଶବରୁ ପିତା ମାତା ଯାଇଛନ୍ତି ନାଶ
ଏ ପର୍ଯ୍ୟନ୍ତ କରିନାହିଁ ମୁଁ ତ ଗୃହବାସ ।
ସ୍ୱଜନ ବର୍ଗଙ୍କ ଆଗେ ମରଣ ଲଭିଲି
ବ୍ରାହ୍ମଣ ହୋଇ କିପରି ଚଣ୍ଡାଳ ମୁଁ ହେଲି ?
ଏ ସକଳ କି ଆଶ୍ଚର୍ଯ୍ୟ କିସ ଏ ବ୍ୟାପାର
ନିଶ୍ଚୟ ଏ ମାୟାଗ୍ରସ୍ତ ଭ୍ରମ ସିନା ମୋର ।
ଏହାଭାବି ନିଜ ଆଶ୍ରମକୁ ଫେରିଗଲେ
କିଛିକ୍ଷଣ ପରେ ଏକ ସନ୍ନ୍ୟାସୀ ମିଳିଲେ ।
ଯଥାବିଧି ପୂଜାମାନ୍ୟ ଗାଧି ସମ୍ପାଦିଲେ
ତପସ୍ୟା ବିଷୟମାନ ଆଲୋଚନା କଲେ ।
କଥା ପ୍ରସଙ୍ଗରେ ତପସ୍ୱୀଙ୍କି ପଚାରନ୍ତି
କି ପାଇଁ ଶ୍ରାନ୍ତ ଓ କୃଶ ଆପଣ ଅଟନ୍ତି ।
ତପସ୍ୱୀ କହନ୍ତି ଏବେ ଶୁଣ ଦ୍ୱିଜବର
କୀରଦେଶେ ଚଳିଲି ମୁଁ ଏକ ଦିବସର ।

ଆତିଥ୍ୟ ଘେନିଲି ମୁହିଁ ଏକ ଗୃହସ୍ଥର
ଏକ ମାସ ଅବସ୍ଥାନ କଲଇଁ ସେଠାର ।
କଥା ପ୍ରସଙ୍ଗରେ ଦିନେ ଏକ ବ୍ୟକ୍ତ ଭାଷେ
କିପରି ଚଣ୍ଡାଳ ରାଜା ହୋଇଛି ସେ ଦେଶେ ।
ଆଠ ବର୍ଷ ହେଲା ସେହୁ କରୁଛି ରାଜତ୍ୱ
ଅନ୍ୟ ଲୋକମାନେ ମଧ୍ୟ କହନ୍ତି ଏମନ୍ତ ।
ଆବର ଶୁଣିଲି ରାଜପୁରୀର ସମସ୍ତେ
ପୁନଶ୍ଚ ବ୍ରାହ୍ମଣମାନେ ତହିଁ ଥିଲେ ଯେତେ ।
ଚଣ୍ଡାଳ ରାଜା ହୋଇଛି ବୋଲି ଜାଣିପାରି
ଅନଳେ ପଶିଣ ସର୍ବେ ଦେହତ୍ୟାଗ କରି ।
ଶେଷକୁ ସେ ରାଜା ମଧ୍ୟ ଅଗ୍ନିରେ ପଶିଲା
ସରବ ଜନଙ୍କ ସହ ପ୍ରାଣତ୍ୟାଗ କଲା ।
ଏହା ଶୁଣିକରି ପାପ ମୁକ୍ତିପାଇଁ ମୁହିଁ
ଚାନ୍ଦ୍ରାୟଣ ଆଚରିଲି ପ୍ରୟାଗରେ ଯାଇଁ ।
ତ୍ରିବାର ସେ ବ୍ରତ ମୁହିଁ କରି ସମ୍ପାଦନ
ଏବେ ଆସି ପହଞ୍ଚିଛି ତୁମ୍ଭର ଆଶ୍ରମ ।
ତେଣୁ ତୁମେ ଦେଖୁଅଛ ମୋତେ ଶ୍ରାନ୍ତ କୃଶ
ନ ଜାଣଇ କିସ ମୋର ଅଛଇ ଭବିଷ୍ୟ ।
ଅତିଥି ବ୍ରାହ୍ମଣଠାରୁ ଶୁଣି ଏ ବଚନ
ଗାଧି ପଚାରି ବସନ୍ତି ନାନା ପ୍ରଶ୍ନମାନ ।
ଯଥାଯଥ ଉତ୍ତର ସେ ଅତିଥି ଦିଅନ୍ତି
ତାହା ଶୁଣି ଗାଧି ଉତ୍କଣ୍ଠିତ ହୋଇଯାନ୍ତି ।
ଗାଧି କହେ ଯାହାକୁ ମୁଁ ମଣିଥିଲି ଭ୍ରମ
ସତ୍ୟବୋଲି ପ୍ରତିପାଦ କଲେ ଏ ବ୍ରାହ୍ମଣ ।
ମୋର ମୃତ୍ୟୁ ପୁଣି ମୋର ଚଣ୍ଡାଳର ଦେହ
ମାୟାଛଡ଼ା ଅନ୍ୟ କିଛି ନୁହେଁ ନିଃସନ୍ଦେହ ।
ଏ ଅତିଥି ଦ୍ୱିଜ ପୁଣି ତାହାଙ୍କ ବଚନ
ମାୟା କି ଅଟେ ଏ ସବୁ ଆସେ ମୋର ମନ ?
ତେବେ ଏ ଭୂତମଣ୍ଡଳେ ଭ୍ରମଣ କରିବି
ମାୟା କି ସତ୍ୟ ଏ ଅଟେ ପ୍ରତ୍ୟକ୍ଷେ ଜାଣିବି ।
ଏହା ମନେ ସ୍ଥିର କରି ସେହୁ ବାହାରିଲେ
ସେ ଭୂତମଣ୍ଡଳେ ଯାଇଁ ବିଚରଣ କଲେ ।
ନରକ ସଦୃଶ ସେହି ଚଣ୍ଡାଳ ରାଇଜ
ଭୂତମଣ୍ଡଳ ସୀମାନ୍ତେ ଦେଖନ୍ତି ସେ ଦ୍ୱିଜ ।
ଚଣ୍ଡାଳ ଘରେ ଜନମି ଯାହା ଦେଖିଥିଲା
ସକଳ ନିଶାନ ତହିଁ ଥିବାର ଦେଖିଲା ।

ବହୁତ ସମୟ ତହିଁ ବିଚରଣ କରି
ସେ ସକଳ ଚିହ୍ନମାନ ନିରୀକ୍ଷଣ କରି ।
ବୈରାଗ୍ୟ ଉଦୟ ହୁଏ ତାହାଙ୍କର ଚିତ୍ତେ
ଗୋଟିଏ ଲୋକକୁ ଦେଖି ପଚାରେ ଏମନ୍ତେ ।
ସେହି ଚଣ୍ଡାଳ ବିଷୟେ ଯାହା ଶୁଣିଥିଲି
ସେ ସବୁ ବିଷୟମାନ ତାକୁ ପଚାରିଲି ।
ସେ ବ୍ୟକ୍ତି କହଇ ଶୁଣ ଆହେ ଦ୍ୱିଜବର
ଯଥାର୍ଥ ବୋଲି ତାହାକୁ ବିଚାର ମନର ।
କଟଞ୍ଜ ନାମକ ଏକ ଚଣ୍ଡାଳ ଯେ ଥିଲା
ବହୁ କୁଟୁମ୍ବୀ ଏଠାରେ ବାସ କରୁଥିଲା ।
ପୌଢ଼ ଅବସ୍ଥା ତାହାର ଯେବେ ପହଞ୍ଚିଲା
ପରିବାର ବର୍ଗଙ୍କର ମରଣ ହୋଇଲା ।
କୀର ନଗରେ ଯାଇଣ ପରେ ରାଜା ହୁଏ
ଏହିପରି ଆଠ ବର୍ଷ ତହିଁ ବିତିଯାଏ ।
ଚଣ୍ଡାଳ ବୋଲି ସେ ଯହୁଁ ଜଣା ପଡ଼ିଗଲା
ନଗ୍ରଯାକ ଏହିପରି ଭାଳେଣି ପଡ଼ିଲା ।
ଚଣ୍ଡାଳକୁ ସେବା କରି ପାପ ଲାଗିଅଛି
ମନ ବ୍ୟସ୍ତ ହୁଏ କରି ନ ପାରନ୍ତି କିଛି ।
ଅଗ୍ନିରେ ଦେହ ଝାସିଣ ସର୍ବେ ନାଶ ଗଲେ
ପାପ ନାଶ ପାଇଁ ଏହି ପ୍ରାୟଶ୍ଚିତ କଲେ ।
ଏହା ଦେଖି ସେ ଚଣ୍ଡାଳ ଅଗ୍ନିରେ ଝାସଇ
ଏସବୁ ବୃତ୍ତାନ୍ତ ଶୁଣି ଗାଧି ଲଜ୍ଜା ପାଇ ।
ସେହି ଦେଶେ ବହୁଦିନ କାଳ କଟାଇଲା
ତତପରେ କୀର ଜନପଦେ ଚଳିଗଲା ।
ସେହିଦେଶ ରାଜଧାନୀ ମଧ୍ୟେ ପ୍ରବେଶିଣ
ପ୍ରଜାଙ୍କୁ ସମ୍ବୋଧି କହେ ଆହେ ସାଧୁଗଣ ।
ଏ ରାଜ୍ୟରେ ଥିଲେ ଏକ ଚଣ୍ଡାଳ ରାଜନ
ଜାଣି ଥିଲେ ତାହା ମତେ କହିବ ଏକ୍ଷଣ ।
ନାଗରବାସୀ କହନ୍ତି ଆହେ ଦ୍ୱିଜବର
ମଙ୍ଗଳହସ୍ତୀ ଚଣ୍ଡାଳେ ଦେଲା ରାଜ୍ୟଭାର ।
ଆଠବର୍ଷ ଯାଏ ସେହୁ କଲାକ ରାଜତ୍ୱ
ଚଣ୍ଡାଳ ବୋଲି ଯହୁଁ ସେ ହେଲା ପରିଜ୍ଞାତ ।
ଅଗ୍ନି ମଧ୍ୟେ ପଶି ସେହୁ ଦେହତ୍ୟାଗ କଲା
ଏହା ଶୁଣିକରି ଗାଧି ଆଚମ୍ଭିତ ହେଲା ।
ଗାଧି ମନେ ମନେ ଏହା କରଇ ଚିନ୍ତନ
ମନର ମୋହ ଅଟଇ କୁହୁକ ସମାନ ।

ଜାଲବଦ୍ଧ ପକ୍ଷୀପରି ଅବଶ କରିଣ
ଆୟତ୍ତ କରିଛି ମତେ ସେହି ମାୟା ଜାଣ ।
ଭଗବାନ ବିଷ୍ଣୁ ଏହି ମହୀୟସୀ ମାୟା
ଦେଖାଇ ଅଛନ୍ତି ମୋତେ ନିଃସନ୍ଦେହ ଏହା ।
ମାୟାର ଉତ୍ପତ୍ତି ସ୍ଥିତି ଜାଣିବା ପାଇଁକି
ଚେଷ୍ଟା କରିବଇଁ ପଦେ ପଦେ ମୁଁ ଏଣିକି ।
ଏହା ଭାବି କୀର ନଗରରୁ ବାହାରିଲେ
ପର୍ବତ ଗୁହାରେ ଯାଇ ପ୍ରବେଶ ହୋଇଲେ ।
ବିଷ୍ଣୁଙ୍କ ସାକ୍ଷାତ ପାଇଁ ତପ ଆଚରିଲେ
ଦିନକୁ ଗଣ୍ଡୁଷେ ଜଳ ପିଇଣ ବଞ୍ଚିଲେ ।
ଏକ ବର୍ଷ କାଳ ତପସ୍ୟାରେ କଟିଯାନ୍ତେ
ଭଗବାନ ବିଷ୍ଣୁ ରହି ଗଗନର ପଥେ,
ଶୂନ୍ୟରୁ ଡାକି କହନ୍ତି ଶୁଣ ଦ୍ୱିଜବର
ଦେଖିଲ ତ ମାୟା ମୋର ଅଟେ କି ପ୍ରକାର ?
ମୋ ମାୟା ଦେଖିବା ପାଇଁ ଇଚ୍ଛା କରିଥିଲ
ମାୟା ତ ଦେଖିଲ, ଏବେ କି ଇଚ୍ଛା ତୁମର ?
ଯେଉଁ ତମୋମୟୀ ମାୟା ଦେଖାଇଲେ ଦେବ
ବିଷଦ ବ୍ୟାଖ୍ୟା ଏହାର ବୁଝାଇ କହିବ ।
ସ୍ୱପ୍ନପରି ଯେଉଁ ଭ୍ରାନ୍ତି ଦେଖିଲା ମୋ ମନ
ଜାଗରଣେ ବାହ୍ୟେ, ତାର କିପାଇଁ ଦର୍ଶନ ?
ଚଣ୍ଡାଳ ଭ୍ରାନ୍ତିରୁ ଜନ୍ମ ଚଣ୍ଡାଳ ଶରୀର
ମନ ମଧ୍ୟେ ନରହି ତା ବହିର୍ଜଗତର ।
କିମ୍ପାଇଁ ପ୍ରକାଶ ହେଲା କହିବା ବୁଝାଇ
ଉତ୍ପତ୍ତି ବିନାଶ ତାର ଯେପରି ଘଟଇ ।
ଶ୍ରୀହରି ବୋଲନ୍ତି ତୁମ ଏ ଜଗତ ଭ୍ରମ
ଚିତ୍ତ ଭାବାପନ୍ନ ଆତ୍ମା-ଆକୃତି ଏ ଜାଣ ।
ବାସନା ବ୍ୟାଧିରେ ତୁମ ଚିତ୍ତ ଯେ ଆକ୍ରାନ୍ତ
ତେଣୁ ଆତ୍ମତତ୍ତ୍ୱ ଦରଶନେ ଅସମର୍ଥ ।
ପୃଥିବୀ, ଆକାଶ, ଆଦି ଦିଗ ପରବତ
କେହି ନାହାନ୍ତି ବାହାରେ, ଛନ୍ତି ତୁମ ଚିତ୍ତ ।
ଚିତ୍ତରୁ ଉଦ୍ଭୁତ ବାହ୍ୟ ଆକାର ଧରନ୍ତି
କିନ୍ତୁ ବାସ୍ତବରେ ଚିତ୍ତ ମଧ୍ୟେ ତାଙ୍କ ସ୍ଥିତି ।
ଚକ୍ଷ୍ୱାଦି ଇନ୍ଦ୍ରିୟ, ଚିନ୍ତା ପରାୟଣ ମନ
କାଳତ୍ରୟ, ତାର ପରକାଶକ ତପନ ।
ଚିତ୍ତ ହିଁ କରିଅଛଇ ଏହାଙ୍କ ନିର୍ମାଣ
ଚିତ୍ତହିଁ କରୁଣ ଥାଇ ତାଙ୍କ ବିନାଶନ ।
ଭୂଇଁ ଭିତରକୁ ବୃକ୍ଷ ମୂଳକୁ ପୂରାଇ
ଡାଳ, ପତ୍ର, ଫୁଲ, ଫଳ ଯଥା ପ୍ରସବଇ ।
ସତ୍‌ସ୍ୱରୂପ ବ୍ରହ୍ମଙ୍କୁ ଆଶ୍ରୟ କରିଣ
ସଂଖ୍ୟା ଅତୀତ ଘଟନା ଚିତ୍ତର ଘଟନ ।
ଫୁଲ, ଫଳ ନ ଧରଇ ଉପୁଡ଼ିବା ଗଛ
ବାସନାମୁକତ ଜୀବ ଜନମିବା ମିଛ ।
ଯହିଁରେ ଅନନ୍ତ ବିଶ୍ୱ ଅଛି ବିଦ୍ୟମାନ
ବାସନାରୁହିଁ ଚଣ୍ଡାଳ ଭାବର ଜନମ ।
ବାସନାର ପ୍ରତିଭାସ ବଳେ ଯେଉଁପରି
ଚଣ୍ଡାଳତ୍ୱ ଅନୁଭବ କଲୁ ସେହିପରି,
ତୋର ଗୃହକୁ ଅତିଥି ଦ୍ୱିଜ ଆଗମନ
ତାଙ୍କ ଭୋଜନ, ଶୟନ, କଥୋପକଥନ,
ଏ ସକଳ ସେହିପରି ଭ୍ରମ ମାତ୍ର ଜାଣ
ବାସ୍ତବତା କିଛି ନାହିଁ ଏ ବିଶ୍ୱଭୁବନ ।
"ପହଞ୍ଚିଲି ଆସି ମୁହିଁ ଏ ଭୂତମଣ୍ଡଳେ
ଏହି ସେହି ଗ୍ରାମ ପୁଣି ଏ ନର ସକଳେ ।
ପ୍ରତ୍ୟକ୍ଷରେ ଦେଖିଅଛୁ ଯେ ସବୁ ଘଟନା
ସେ ସବୁ ଏପରି ଭ୍ରମ ଜାଣିବୁ ତୁ ସିନା ।
କଟଞ୍ଜ ବୋଲି ଯେ ତୋତେ କଲା ସମ୍ବୋଧନ୍
ଭ୍ରମ ଛଡ଼ା ତାହା ଅନ୍ୟ କିଛି ନୁହେ ଜାଣ ।
ମଣିଛ ମଣୁଛ ଯା'କୁ ସତ୍ୟ ଦ୍ୱିଜବର
ମୋହରୁ ଜନମ ଭ୍ରମ ଜାଣ ସେ ସକଳ ।
ସେ କୀର ନଗର ସେହି ଅତିଥି ବ୍ରାହ୍ମଣ
ସେଠାର ଯେ ଲୋକ ସବୁ ଭ୍ରମ ବୋଲି ଜାଣ ।
ସର୍ବଦା ହେ ମୁନେ ତୁମେ ଇତସ୍ତତଃ ବୁଲି
ଚିତ୍ତ ମଧ୍ୟେ ଭ୍ରମ ଦୃଶ୍ୟ ଦେଖ ଏହିପରି ।
ଉନ୍ମାଦଙ୍କ ପରି ତାକୁ ସତ୍ୟ ବୋଲି ମଣ
ଜାଣି ନ ପାର, ତା ତୁମ ଭ୍ରମ ଦରଶନ ।
ଏବେ ଚଳିଯାଅ ମୁନେ ହୋଇ ଶାନ୍ତ ଚିତ୍ତ
ନିଜ କର୍ମ କରୁଥାଅ ନୋହି ବ୍ୟତିବ୍ୟସ୍ତ ।
କରମ ନ କରି ନର ଶ୍ରେୟ ଲଭେ ନାହିଁ"
ଅନ୍ତର୍ଦ୍ଧାନ ହୋଇଗଲେ ବିଷ୍ଣୁ ଏହା କହି ।
କହନ୍ତି ବଶିଷ୍ଠ ବିଷ୍ଣୁ ଚାଲିଗଲା ପରେ
କୀର ଦେଶେ ଭୂତମଣ୍ଡଳକୁ ଗାଧି ଗଲେ ।
ନିଜର ମୋହଭାବକୁ ବିଚାର କରିଣ
ଦେଖିବା ପାଇଁ ଚଳିଲେ ସେ ଗାଧି ବ୍ରାହ୍ମଣ ।

ସେହି ସେହି ସ୍ଥାନେ ସେହି ସକଳ ବୃତ୍ତାନ୍ତ
ଦର୍ଶନ କରି ଫେରିଲେ ସେହି ପରବତ ।
ସେହି ପର୍ବତ ଗୁହାରେ କରି ଅବସ୍ଥାନ
ବିଷ୍ଣୁ ଧ୍ୟାନରେ ବ୍ରାହ୍ମଣ ରହିଲେ ମଗନ ।
ବିଳମ୍ବ ନ କରି ବିଷ୍ଣୁ ପହଞ୍ଚିଲେ ତହିଁ
ଗାଧିଙ୍କି ପୁଚ୍ଛା କରନ୍ତି ହୃଷ୍ଟମନା ହୋଇ ।
ପୁଣି ତପସ୍ୟା କରୁଛ ଆଉ କିସପାଇଁ
ଫିଟାଇ କହ ହେ ମୁନି ଯାହା ଇଚ୍ଛା ହୋଇ ।
ଗାଧି ବୋଇଲେ ହେ ଦେବ ସର୍ବସ୍ଥାନେ ଗଲି
ଯାହା ଦେଖିଥିଲି ପୂର୍ବେ ତାହାହିଁ ଦେଖିଲି ।
"ମାୟାବଳେ ଏହା ସବୁ ଦେଖାଇଲେ ବୋଲି
କିମ୍ପାଇ କହିଲ ମୋତେ ଆହେ ଚକ୍ରଧାରୀ ।
ମହତଙ୍କ ଉପଦେଶେ ହୁଏ ମୋହ ଧ୍ୱଂସ
ମୋର ମୋହ ବଢ଼ାଇଛି ତୁମ ଉପଦେଶ ।
କହନ୍ତି ଶ୍ରୀହରି ଏବେ ଶୁଣ ହେ ବ୍ରାହ୍ମଣ
କାକତାଳୀୟ ଯୋଗୁଁ ଯା ଘଟିଥାଏ ଜାଣ ।
ଭୂତମଣ୍ଡଳ ନିବାସୀ ଗଣଙ୍କର ଚିତ୍ତେ
କୀରଦେଶ ବାସୀଙ୍କର ଚିତ୍ତ ଅନ୍ତର୍ଗତେ ।
ପ୍ରତିବିମ୍ବିତ ହୋଇଛି ଚଣ୍ଡାଳ ବୃତ୍ତାନ୍ତ
ଯାହାକି ଘଟି ଅଛଇ ତବ ହୃଦଗତ ।
ତେଣୁ କରି ଏ ବୃତ୍ତାନ୍ତ ସେହି ଲୋକମାନେ
ତୁମକୁ ଶୁଣାଇ ଥିଲେ ହେଜରଖ ମନେ ।
ପ୍ରତିଭାସିତ ହୁଏ ଯା' ଥରେ ମାତ୍ର ଚିତ୍ତେ
ଅନ୍ୟଥା ନୁହଇ ତାହା ଜାଣ କଦାଚିତେ ।
ପୂର୍ବେ କୌଣସି ଚଣ୍ଡାଳ ସେହି ଗ୍ରାମ ପ୍ରାନ୍ତେ
ଘରଟିଏ ତୋଳିଥିଲା ରହିବା ନିମନ୍ତେ ।
ପରେ କେବେ ଭ୍ରାନ୍ତିବଶ ସେ ଗୃହକୁ ତୁମେ
ନିଜ ଗୃହରୂପେ ଦେଖିଅଛ ମହାତ୍ମନେ ।
କେବେ କେବେ ଅନେକଙ୍କ ଏହି ଭ୍ରମ ହୁଏ
ମଦ୍ୟପେ ଦେଖନ୍ତି ଦିକ୍‌ମଣ୍ଡଳ ଘୂରୁଥାଏ ।
ଅନେକ ସମୟେ ଏହିପରି ଘଟିଥାଏ
ଏକ ସ୍ୱପ୍ନ ସମସ୍ତଙ୍କୁ ଭ୍ରମେ ଦେଖାଯାଏ ।
ଏକ କଳ୍ପିତ କ୍ରୀଡ଼ାରେ ବହୁ ଶିଶୁ ରତ
ଯେଉଁପରି ହୋଇଥାନ୍ତି ଆହେ ଦ୍ୱିଜସୁତ ।
ସର୍ବ ବସ୍ତୁର ଉଦ୍ଭବ ଅନୁଭବ କର୍ତ୍ତା
କାଳହିଁ ଜାଣିମ ଆହେ ବ୍ରାହ୍ମଣ ଦେବତା ।

ମନର ସଂକଳ୍ପ ବିନା ଏହି କାଳ ଜାଣ
ଅନ୍ୟ କିଛି ନୁହେ ହେତୁରଖ ହେ ବ୍ରାହ୍ମଣ ।
ଯାହାକୁ କହନ୍ତି ଦ୍ୱିଜ ଅଖଣ୍ଡିତ କାଳ
ନିଜ ମଧ୍ୟେ ସଂସ୍ଥିତ ସେ ଯେଣୁ ଦ୍ୱିଜ ବାଳ,
କାହାରି ଉଦ୍ଭବ କିମ୍ବା ଅନୁଭବ ପାଇଁ
କୌଣସି ପ୍ରକାରେ ବାଧା କାଳ ଦିଏ ନାହିଁ ।
ଅଜ, ଅରୂପ, ସେ କାଳ ତତ୍ତ୍ୱଜ୍ଞଙ୍କ ମତେ
ବ୍ରହ୍ମ ବୋଲି ବିବେଚିତ ହୋଇଛି ଜଗତେ ।
ସୂର୍ଯ୍ୟ ଚନ୍ଦ୍ରଙ୍କର ଉଦୟାସ୍ତ କ୍ରୀୟାବଳେ
ଦେଖା ଦେଇଥାଏ କାଳ ଆହେ ଦ୍ୱିଜବାଳେ ।
ବସ୍ତୁର ଉଦ୍ଭବ ଅନୁଭବ ଯାହା ଘଟେ
ସେହି କାଳ କରୁଥାଏ ତାର ଇଚ୍ଛାମତେ ।
ସେ କାଳର ବଶ ହୋଇ ଏ ଭୂତ ମଣ୍ଡଳ
କୀରଦେଶବାସୀ ଅଟନ୍ତି ଯେ ପ୍ରଜାକୁଳ,
ଭ୍ରାନ୍ତିବଶ ତାଙ୍କ ଚିତ୍ତେ ଏହା ପ୍ରତିଭାତ
ଏକଇ ଆକାରେ ତାହା ହୋଇଥିଲା ଦୃଷ୍ଟ ।
ତୁମେ ଏବେ କର୍ତ୍ତବ୍ୟରେ ମନ ନିବେଶିଣ
ମୋହ ଦୂରକର ଆତ୍ମ ବିଚାର ବଳେଣ ।
ଶ୍ରୀହରି ତତ୍‌କ୍ଷଣେ ହୋଇଯାନ୍ତେ ଅନ୍ତର୍ଦ୍ଧାନ
ତଦପରେ ଗାଧି ହେନ୍ତି ଚିନ୍ତାରେ ମଗନ ।
ଗିରି ଗହ୍ୱରରେ କେତେ ମାସ କଟାଇଲେ
ତଦପରେ ବିଷ୍ଣୁ ଆରାଧନେ ନିମଜ୍ଜିଲେ ।
କିଛିଦିନ ପରେ ଗାଧି ମନ ଜାଣିକରି
ହରି ଆସି ଉଭା ହେଲେ ସମ୍ମୁଖେ ତାଙ୍କରି ।
କାୟ ମନୋବାକ୍ୟେ ଗାଧି ପୂଜା ଅରପିଣ
କୃତାଞ୍ଜଳି ପୁଟେ ଉଭା ହୋଇ ସମ୍ମୁଖେଣ,
କହନ୍ତି ହେ ଦେବ ମୋର ଶୁଣିବା ଗୁହାରି
ସଂସାର ଭାବ ଅଛଇ ମୋତେ ଗ୍ରାସକରି ।
ଆବର ଚଣ୍ଡାଳଭାବ ତାହା ସଙ୍ଗେ ଥାଇ
ମୋହ ମଗ୍ନ କରି ମତେ ସଦା ଘାଣ୍ଟୁଥାଇ ।
ମାୟାମୋହ ମୋର ଦୂର କରିବା ନିମନ୍ତେ
ଉପାୟ କହି ଦିଅନ୍ତୁ ଆହେ ଦୀନନାଥେ ।
କୌଣସି ଶୁଭ କର୍ମରେ କରନ୍ତୁ ନିଯୁକ୍ତ
ଦଇନି କରଇ ମୁହିଁ ପାଦପଦ୍ମ ଗତ ।
କହନ୍ତି ଶ୍ରୀହରି ଆହେ ଦ୍ୱିଜ ଏବେ ଶୁଣ
ଶମ୍ବରାସୁରର ଏ ସଂସାର ଲୀଳାସ୍ଥାନ ।

ମାୟାରୂପି ଅଟଇ ଯେ ଦାନବ ପ୍ରଧାନ
ତାଠାରେ ଆତ୍ମବିସ୍ମୃତି ଅନର୍ଥ କାରଣ ।
ଭୂତମଣ୍ଡଳରେ ଯାଇଁ କୀରକ ଦେଶରେ
ଯେଉଁ ଚଣ୍ଡାଳତ୍ୱ ପ୍ରାପ୍ତ ହେଲା ସେହିଠାରେ,
ଏପରି ଭ୍ରମ ଦର୍ଶନ କରନ୍ତି ସକଳେ
ଏ ଦୁଇଦେଶର ପ୍ରଜା ପଡ଼ନ୍ତି ସେ ଖାଲେ ।
ଥରେ ଏକ ସଙ୍କଳପ ଏକ ସମୟରେ
ଗ୍ରାସ କରିଥିଲା ତହିଁ ଯେତେଲୋକ ଥିଲେ ।
ତେଣୁକରି ସେ ଘଟନା ହୋଇଲେ ହେଁ ମିଥ୍ୟା
ସତ ବୋଲି ମାଡ଼ିବସିଥିଲା ସବୁ ମଥା ।
ଏପରି ଚିନ୍ତା ତୁମର ହଟିବ ଯେପରି
ସେ ଉପାୟ କହୁଅଛି ଶୁଣ ହେତୁକରି ।
ଭୂତମଣ୍ଡଳ ଗ୍ରାମରେ ଚଣ୍ଡାଳ ଗୃହରେ
ପୁତ୍ର ଏକ ଜନ୍ମିଥିଲା କଟଜ୍ଜ ନାମରେ ।
ପୁତ୍ର କଳତ୍ର ତାହାର ଲଭନ୍ତେ ମରଣ
କୀରଦେଶରେ ଯାଇ ସେ କରେ ରାଜପଣ ।
କିଛି କାଳପରେ ଅଗ୍ନି ମଧ୍ୟରେ ପଶିଣ
ବାସ୍ତବରେ ମୃତ୍ୟୁକୁ ସେ କଲାକ ବରଣ ।
ଜଳମଧ୍ୟେ ଉଭାହୋଇ ତୁହି ଯେତେବେଳେ
ତପସ୍ୟାରେ ମଗ୍ନଥିଲୁ ମୋ ପଦ କମଳେ ।
ତେତେବେଳେ ଜାଣ ମୋର ସଙ୍କଳପ ବଳେ
କଟଜ୍ଜ ଗଳ୍ପ ଫଳିତ କଲି ତୋ ଚିତ୍ତରେ ।
ସ୍ୱପନରେ ଚିତ୍ତ ଯଥା ରାଜ୍ୟ ଭୋଗ କରେ
ଜାଗ୍ରତ କାଳର ଭୋଗ ଅଟେ ସେ ପ୍ରକାରେ ।
ହେ ଗାଧେ, ସେ କଟଜ୍ଜର ଅତୀତ ବୃତ୍ତାନ୍ତ
ବର୍ତ୍ତମାନ ପରି ତୁମ ଚିତ୍ତେ ପ୍ରତିଭାତ ।
ଆତ୍ମଜ୍ଞାନୀଙ୍କି କେବେହେଁ ଭ୍ରମ ଦରଶନ
କରିବାକୁ ପଡ଼େନାହିଁ ଜାଣ ହେ ବ୍ରାହ୍ମଣ ।
ଯେଣୁ ସେ ଜାଣଇ ସର୍ବ ପଦାର୍ଥ ଯେ ସେହି
ଦୁଃଖ, ସୁଖ, ଦୃଶ୍ୟ ଭ୍ରମେ, ପତିତ ନୁହଇ ।
ଯେ ପର୍ଯ୍ୟନ୍ତ ଆତ୍ମଜ୍ଞାନ ନୋହିଛି ତୁମର
ଯାହାକି ଉଦିତ ହୁଏ ତୁମର ଅନ୍ତର ।
ତୁମକୁ ସେ ସବୁ କରୁଛନ୍ତି ଆକ୍ରମଣ
ଦଶ ବର୍ଷ ତପକର ଏହି ପର୍ବତେଣ ।
ତାହାହେଲେ ଜ୍ଞାନ ଲାଭ ହୋଇବ ତୁମର
ଅନ୍ତର୍ଦ୍ଧାନ ଗଲେ ବିଷ୍ଣୁ କହି ଏହି ଗୀର ।
ସକଳ ସଙ୍କଳ୍ପ ତେଜି ସେ ଗାଧି ବ୍ରାହ୍ମଣ
ଦଶ ବର୍ଷ ତପସ୍ୟାରେ ରହିଲେ ମଗନ ।
ତତ୍ତ୍ୱଜ୍ଞାନ ଲାଭ କରି ଜୀବନ୍ମୁକ୍ତ ହୋଇ
ବିଶ୍ରାନ୍ତ ହୋଇ ରହିଲେ ସେ ଗାଧି ଗୋସାଇଁ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଗାଧିବୋଧପ୍ରାପ୍ତି ବର୍ଣ୍ଣନେ**
**ନାମ ୪୦ଶ ସର୍ଗଃ ।**



## ୪୧ଶ ସର୍ଗଃ

## ମାୟା ଛେଦନ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ମହା ମୋହମୟୀ ବିଷ୍ଣୁ ମାୟା ଯେ ବିଷମ ।
ଅତୀବ ଦୁର୍ଜ୍ଞେୟ ପୁଣି କଳ୍ପନା ଅତୀତ
ବ୍ରହ୍ମା, ବିଷ୍ଣୁ, ମହେଶାଦି ସକଳେ ମୋହିତ ।
କାହିଁ କ୍ଷଣବ୍ୟାପୀ ସ୍ୱପ୍ନ ଭ୍ରମ ଦରଶନ
କାହିଁ ବହୁକାଳବ୍ୟାପୀ ଚଣ୍ଡାଳର ଭ୍ରମ ।
କାହିଁ ଭ୍ରମ ଜ୍ଞାନ ନାହିଁ ପ୍ରତ୍ୟକ୍ଷ ବିଜ୍ଞାନ
ତେଣୁ କରି ମହାବାହୁ ଏ ମାୟା ବିଷମ ।
ଅଜ୍ଞକୁ ସେ ଠେଲିଦିଏ ବିଷମ ସଂକଟ
ଅଣନିଃଶ୍ୱାସୀ ହୋଇ ସେ ହୁଏ ଛଟପଟ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ଗୁରୁଦେବ
ମାୟା ଯଦି ଏ ଆତ୍ମାକୁ ବିଚ୍ଛିନ୍ନ କରିବ,
ଚକ୍ରରୂପେ ଭ୍ରାମ୍ୟମାଣ ହୋଇ ଚାଲିଥିବ
ତହିରୁ ରକ୍ଷା ପାଇବ କେମନ୍ତେ ଏ ଭବ ?
କହନ୍ତି ବଶିଷ୍ଠ ଏବେ ଶୁଣ ହେ ରାଘବ
ସଂସାର ଚକ୍ରର ନାଭି ଚିତ୍ତହିଁ ବୁଝିବ ।
ପୌରୁଷ ବଳେ ଚିତ୍ତକୁ କରିଲେ ଆୟତ୍ତ
ମାୟାଚକ୍ର ତେବେ ହୋଇଯିବ ସ୍ତମ୍ଭୀଭୂତ ।
ଚକ୍ରଧରି ଯୁଝିବାକୁ ତୁମେ ତ ନିପୁଣ
ମାୟାଚକ୍ର ରୋଧିବାକୁ କିପାଁଇଁ ଅକ୍ଷମ ?
ବଳପୂର୍ବକ ନାଭିକୁ କରିଲେ ଆୟତ୍ତ
ତେବେଯାଇ ତା ଭ୍ରମଣ ହୋଇବ ନିବୃତ୍ତ ।
ଚିତ୍ତକୁ ଯେବେ ନିବୃତ୍ତ କରିଣ ପାରିବ
ସଂସାରଚକ୍ର ଭ୍ରମଣ ବନ୍ଦ ହୋଇଯିବ ।

ଏହି ଚିତ୍ତ ଯେତେବେଳେ ସ୍ଥିର ହୋଇଯିବ
ପରଂବ୍ରହ୍ମ ଅକ୍ଳେଶରେ ପ୍ରାପତ ହୋଇବ ।
ତୀର୍ଥ, ଦାନ, ତପସ୍ୟାଦି ସବୁ ତେଜିକରି
କେବଳ ଚିତ୍ତକୁ ବଶକର ଋପଧାରୀ ।
ଘଟ ମଧ୍ୟେ ଘଟାକାଶ ଥାଏ ଯେଉଁପରି
ଚିତ୍ତ ମଧ୍ୟେ ଏ ସଂସାର ରହେ ସେହିପରି ।
ଘଟ ଭାଙ୍ଗିଗଲେ ଆଉ ଘଟାକାଶ କାହିଁ
ଚିତ୍ତ ବିନାଶେ ସଂସାର ରହିବ ବା କାହିଁ ?
ଅନାଶକ୍ତ ରହି ଉପସ୍ଥିତ କର୍ମକର
ଭୂତ ଭବିଷ୍ୟ ବିଷୟ ଭାବନା ନ କର ।
ଚିତ୍ତର ଅଚିତ୍ତ ଭାବ ଆସି ପହଞ୍ଚିବ
ଯେବେ ଚିତ୍ତର ସଂକଳ୍ପ ଅଂଶ ତେଜି ଦେବ ।
ଚିତ୍ତ ସଂକଳ୍ପ କଳ୍ପନା ଯେତେ ଦିନ ଥାଇ
ଐଶ୍ୱର୍ଯ୍ୟ ସମ୍ପନ୍ନ ସେତେ ଦିନ ଚିତ୍ତ ରହି ।
ଚିଦାତ୍ମା ଚିତ୍ତ ସହିତ ଯେଯାଏ ସଂଲଗ୍ନ
ସଂକଳ୍ପ କଳ୍ପନା ରହେ ସେତେ କାଳ ଜାଣ ।
ଚିତ୍ତରୁ ଚିଦାତ୍ମା ଭିନ୍ନ, ଯଦି ଜାଣି ପାର
ତେବେ ବୁଝିବ ବିନାଶ ସଂସାରର ମୂଳ ।
ଚିତ୍ତରୁ ପୃଥକ ଅଟେ ଯେବଣ ଚେତନା
ପ୍ରତ୍ୟଗ୍ ଚୈତନ୍ୟ ତାହାର ନାମ ଜାଣ ସିନା ।
ମନହୀନ ଯେଣୁ କରି ପ୍ରତ୍ୟଗ୍ ଚଇତନ୍ୟ
କିଛିହିଁ ସଂକଳ୍ପ ତାର ନାହିଁ ବୋଲି ଜାଣ ।
ଚିତ୍ତ ବିଲୀନରେ ଆତ୍ମା ଶିବ ରୂପ ଧରେ
ସର୍ବଜ୍ଞ ହୋଇ ବିଚରେ ଏ ବିଶ୍ୱ ସଂସାରେ ।
ନାମାନ୍ତର ତାର ପରମାର୍ଥ ଦରଶନ
ଜୀବର ଉନ୍ନ ଉଦ୍ଦେଶ୍ୟ ଏହା ରଘୁନାନ ।
ମନ ଥିଲେ ଆଶା, ଆଶା ଥିଲେ ସୁଖ ଦୁଃଖ
ଏହା ହେଲା ଜାଣ ସଂସାରର ରୂପରେଖ ।
ତତ୍ତ୍ୱଜ୍ଞାନୀ ମାନଙ୍କର ମନ କିନ୍ତୁ ଥାଏ
ବସନା ବୀଜ ଯେ ଆଶା ତାଙ୍କର ନ ଥାଏ ।
ଯେହେତୁ ବସ୍ତୁର ତତ୍ତ୍ୱ ତାଙ୍କୁ ଜଣା ଥାଏ
ତାଙ୍କଠାରେ ଚିଦୋପ୍ତତ୍ତି କ୍ରୀୟାହୀନ ହୁଏ ।
ପରମାତ୍ମ ଦର୍ଶନର ପ୍ରଧାନ କାରଣ
ଆତ୍ମା ହିଁ ବାସ୍ତବ ହେତୁ, ହେ ରଘୁ ନନ୍ଦନ ।
ଦୁଃଖ ତ୍ୟାଗ କରିବାକୁ ସର୍ବାନ୍ତ କରଣେ
ଆତ୍ମା ଏକ ଇଚ୍ଛା ପ୍ରକାଶଇ ଅନୁକ୍ଷଣେ ।

ସର୍ବଦା ସର୍ବାବସ୍ଥାରେ ଯେ ମନନ ହୀନ-
ଚିନ୍ମୟ ଆତ୍ମାର କରି କରି ଅନ୍ୱେଷଣ,
ସ୍ୱୀୟ ଚଇତନ୍ୟ ଅଂଶେ ସ୍ଥିର ଭାବ ଧରି
ଅବସ୍ଥାନ କରୁଥାଅ ଆହେ ଧନୁର୍ଦ୍ଧାରୀ,
ଆବାଲ୍ୟରୁ ତୁମେ ବୃଦ୍ଧାବସ୍ଥା ପରିଯନ୍ତେ
ସୁଖେ ଅବା ଦୁଃଖେ ପୁଣି ସପନ ଜାଗ୍ରତେ,
ସର୍ବ ଅବସ୍ଥାରେ ତୁମେ ଆତ୍ମ ଚୈତନ୍ୟର
ଅନୁସନ୍ଧାନରେ ରତ ରହ ରଘୁବୀର ।
ପରିହରି ବାହ୍ୟ କଥା ସର୍ବ ପ୍ରଥମରେ
ମନର ବିଲୟ କର ଯତ୍ନ ସହକାରେ ।
ତଦପରେ ଆଶା-ପାଶ କରିଣ ଛେଦନ
ଆତ୍ମଚୈତନ୍ୟରେ ରାମ କର ଅବସ୍ଥାନ ।
ଏହିପରି ସର୍ବସାର ଚୈତନ୍ୟେ କେବଳ
ବୁଦ୍ଧି କି ତୁମର ରାମ ନିଯୋଜିତ କର ।
ପର, ଆପଣା, ଏ ଭାବ ପରିତ୍ୟାଗ କରି
ଆତ୍ମା ଆଶ୍ରା କରି ରହ ବଜ୍ରସ୍ତମ୍ଭ ପରି ।
କରି କରି ତୁମେ ଆତ୍ମ ତତ୍ତ୍ୱ ଆସ୍ୱାଦନ
ଚୈତନ୍ୟେ ପର୍ଯ୍ୟବଶିତ ହେଲେ ତୁମ ମନ,
ବିଷ ଲାଗିବ ତୁମକୁ ଅମୃତ ସମାନ
ଅନୁଧ୍ୟାନ କରୁଥାଅ ଏ ମୋର କଥନ ।
ଆତ୍ମଚୈତନ୍ୟକୁ ଯେବେ ପାଶୋରିଣ ଦେବ
ସଂସାର କାରଣ ମହାମୋହ ପହଞ୍ଚିବ ।
ଆତ୍ମା ଚୈତନ୍ୟରେ ଯେବେ ହେବ ଅବସ୍ଥିତ
ସେହି ମହାମୋହ ହୋଇଯିବ ଦୂରୀଭୂତ ।
ଆଶା ସମୁଦ୍ରରୁ ଯେବେ ହୋଇଯିବ ପାର
ସ୍ୱରୂପ ଲଭିପାରିବ ଆହେ ରଘୁବୀର ।
ତେବେ ସୂର୍ଯ୍ୟ ରଶ୍ମି ପରି ସକଳ ଜଗତେ
ବ୍ୟାପ୍ତ ହୋଇଯିବ ତୁମେ ଆହେ ରଘୁନାଥେ ।
ସ୍ୱଭାବରେ ଅବସ୍ଥିତ ଯେବେ ହୋଇକରି
ଆତ୍ମାନନ୍ଦ ଲାଭ କରିପାର ଧନୁର୍ଦ୍ଧାରୀ ।
ବିଷୟଚିନ୍ତା ଲାଗିବ ବିଷ ପରି ରାମ
କେଣେ ଅପସରି ଯିବ ସଂସାର ବନ୍ଧନ ।
ଆମପରି ପ୍ରତ୍ୟାଗାତ୍ମା ଯେହୁ ଲଭିଛନ୍ତି
ମିତ୍ରତା ରଖିବ ତାଙ୍କ ସହ ରଘୁପତି ।
ତାଙ୍କ ଭିନ୍ନ ଅନ୍ୟ ଯେଉଁ ମନୁଷ୍ୟ ଅଛନ୍ତି
ମନୁଷ୍ୟ ପଦବାଚ୍ୟ ସେ କେବେହେଁ ନୁହନ୍ତି ।

ଆତ୍ମଚୈତନ୍ୟରେ ଯେଉଁ ଜ୍ଞାନୀ ପ୍ରତିଷ୍ଠିତ
ଜ୍ଞାନପାଇଁ ଯୋଗୀ ତାଙ୍କ ପାଶେ ଉପସ୍ଥିତ ।
ଆତ୍ମ ପ୍ରତିଷ୍ଠିତ ଜ୍ଞାନୀ ମାନଙ୍କର ତେଜ
ନିଷ୍ପ୍ରଭ କରିଦିଏ ସେ ମଧ୍ୟାହ୍ନର ସୂର୍ଯ୍ୟ ।
ସୂର୍ଯ୍ୟାଦି ଜ୍ୟୋତିଷ୍କଗଣ ଯାର ପ୍ରଭା ଘେନି
ପ୍ରକାଶ ଲାଭ କରନ୍ତି ଦିବସ ରଜନୀ ।
ସେ ଆତ୍ମାରେ ଜ୍ଞାନୀମାନେ ଥାଇ ବିରାଜିତ
ତାର ତେଜରେ ତେଜସ୍ୱୀ ହୁଅନ୍ତି ସନ୍ତତଃ ।
ଯେ ଯାଏ ପାଶୋରି ଥାଏ ଆତ୍ମାକୁ ମାନବ
ସେହି ପର୍ଯ୍ୟନ୍ତ 'ମୋହ'ର ବିସ୍ତାର ଘଟିବ ।
ସେହି ମୋହମଗ୍ନ ନର ଏହି ଜଗତରେ
ଯଦିଚ ଚେତନ ପରି ବ୍ୟବହାର କରେ,
ଅଚେତନ ପଦବାଚ୍ୟ ପ୍ରଯୁଜ୍ୟ ତା ପାଇଁ
ଆତ୍ମବିତ୍ ହିଁ ଯଥାର୍ଥ ସଚେତନ ହୋଇ ।
ଚିତ୍ତ, ବୁଦ୍ଧି, ଦ୍ୱାରା ପୁଣି ସେହି ଆତ୍ମଜ୍ଞାନ
ଆଚ୍ଛାଦିତ ହୋଇପଡ଼େ ହେ ରଘୁନନ୍ଦନ ।
ତେଣୁକରି ବିଷୟ ଭୋଗକୁ ତ୍ୟାଗକରି
ଧୀରେ ଧୀରେ ଏ ଚିତ୍ତର କୃଶତା ଆଚରି ।
ଅନାତ୍ମ ବିଷୟ ଭୋଗ, ପରିବାର ସ୍ନେହ
ମୋର ପୁତ୍ର ମୋ କଳତ୍ର ଇତ୍ୟାଦି ଯେ ମୋହ ।
ଚିତ୍ତର ବୃଦ୍ଧି ଘଟାଇଥାନ୍ତି ଏହିମାନ
ଅହଂକାର ମୋହ ମିଳି ଏହାର କାରଣ ।
ସଂସାର ରମଣୀୟତା ଚିତ୍ତ ବୃଦ୍ଧିକରେ
ଏ ସଂସାର-ଚିରସ୍ଥାୟୀ ଚିତ୍ତ ମୋହ ବାଢ଼େ ।
କାମିନୀ, କାଞ୍ଚନ, ସ୍ନେହ, ମୋହ ଆଦି ଯେତେ
ଚିତ୍ତକୁ ବୃଦ୍ଧି କରନ୍ତି ବେଢ଼ିଣ ସମସ୍ତେ ।
ଦୁରାଶା-ଗୋରସ ପୁଣି ବିଷୟ-ପବନ
ଚିତ୍ତ-ସର୍ପ ଏହାଦ୍ୱାରା ଲଭଇ ବର୍ଦ୍ଧନ ।
ଦାହ, ମୂର୍ଚ୍ଛା ସୃଷ୍ଟି କରିଥାଏ ଯେଉଁ ଭୋଗ
ଚିତ୍ତ ବୃଦ୍ଧିର ଅଟନ୍ତି ଏହିମାନେ ରୋଗ ।
ତତ୍ତ୍ୱ-ବିଚାର କୁଠାର ଘେନି ହେ ଶ୍ରୀରାମ
ବିଷୟ-ବୃକ୍ଷକୁ କରିଦିଅ ହେ ଛେଦନ ।
ବିବେକ ବୈରାଗ୍ୟ ଗୁରୁ ଉପଦେଶ ମାନ
ଆତ୍ମ ବିଚାରରେ ଚିତ୍ତ ପିଶାଚକୁ ହାଣ ।
ତତପରେ ଏ ଆତ୍ମାର ହୋଇବ ଉଦୟ
ଭୀତିପ୍ରଦ ଚିତ୍ତ ସର୍ପ ଲଭିବ ବିଲୟ ।
ସମସ୍ତଙ୍କୁ ସେହି ସର୍ପ କରଇ ଦଂଶନ
ତାଠାରୁ ରକ୍ଷାପାଇବ ଥିଲେ ଆତ୍ମଜ୍ଞାନ ।
ବିଷୟାମିଷ କରିବା ପାଇଁକି ଭୋଜନ
ତୃଷ୍ଣା-ରୂପ ମୁଖକୁ ସେ କରିଛି ବ୍ୟାଦାନ ।
ଦୁଷ୍ଟ ଚିତ୍ତକୁ ବିଶୁଦ୍ଧ ଚିତ୍ତ ସାହାଯ୍ୟରେ
ସଂହାର କରି ଗଞ୍ଜିଲ୍ୟ ତେଜ ରଘୁବୀରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ମାୟାଚ୍ଛେଦନ ଉପଦେଶ ବର୍ଣ୍ଣନେ**
**ନାମ ୪୧ଶ ସର୍ଗଃ ।**



## ୪୨ଶ ସର୍ଗଃ
## ଉଦ୍ଦାଲକ ବିଚାର

କହନ୍ତି ବଶିଷ୍ଠ ଏହି ଦୁଷ୍ଟ ଚିତ୍ତ ପ୍ରତି
କେଉଁ ବିଶ୍ୱାସ ନ ରଖ ଆହେ ରଘୁପତି ।
ବହୁକାଳ ପରେ ଏହି ସଂସାର ମଧ୍ୟରେ
ପ୍ରଜ୍ଞା-ଲତା ତୁମ ଅଙ୍କୁରିଛି ରଘୁବୀରେ ।
ବିବେକ-ଜଳ ସିଞ୍ଚି ସେ ଲତାକୁ ବଢ଼ାଅ
ସୌଭାଗ୍ୟ ଉଦୟେ ତାହା ହୋଇବ ସହାୟ ।
କାଳ ଭାସ୍କର ତେଜରେ କାମନାର ଲତା
ଯେତେଦିନଯାଏ ନ ଲଭିଛି ବିଶୁଷ୍କତା ।
ତେତେଦିନଯାଏ ତାକୁ ପାଳିଣ ବଢ଼ାଅ
ମୋ କହିବା କଥା ତୁମେ ବୁଝିଲ କି କହ ।
ଉଦ୍ଦାଲକ ମୁନି କରୁଥିଲେ ଯେ ପ୍ରକାର
ପଞ୍ଚ ଭୂତଙ୍କୁ ସମ୍ପୂର୍ଣ୍ଣ କବଳିତ କର ।
ବିଚାର ସମ୍ପନ୍ନ ହୁଅ ତୁମେ ଅନ୍ତରରେ
ଜୀବନ ଉଦ୍ଦେଶ୍ୟ ପୂର୍ଣ୍ଣ ହେବ ଯେ ତହିଁରେ ।
ଶ୍ରୀରାମ ବୋଇଲେ ଶୁଣ ଆହେ ଗୁରୁଦେବ
ଉଦ୍ଦାଲକଙ୍କ ବିଚାର ଆମ୍ଭଙ୍କୁ କହିବ ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
କହୁଅଛି ଉଦ୍ଦାଲକ ମୁନି ବିବରଣ ।
କ୍ଷିତି ଆଦି ପଞ୍ଚତତ୍ତ୍ୱମାନଙ୍କ ବିଚାର-
ବଳେ ଜ୍ଞାନ ଲାଭ କରିଥିଲେ ଯେ ପ୍ରକାର ।
ଗନ୍ଧମାର୍ଦ୍ଦନ ପର୍ବତ ଅରଣ୍ୟ ମଧ୍ୟରେ
ଉଦ୍ଦାଲକ ମୁନି ତହିଁ ବାସ କରୁଥିଲେ ।
ପ୍ରଥମାବସ୍ଥାରେ ଅପ୍ରବୁଦ୍ଧ ଥିଲେ ସେହି
ସୁବିଚାର, ଶାସ୍ତ୍ରୋଚିତ୍ତ, କର୍ମ, ତପ ନେଇ ।

ବିବେକ ସମ୍ପନ୍ନ ସେହୁ ହୋଇ ପାରିଥିଲେ
ପଞ୍ଚତତ୍ତ୍ୱମାନ ଥିଲେ ତାଙ୍କ କବଳରେ ।
ଏକ ଦିନେ ଏମନ୍ତ ଯେ ଭାବନ୍ତି ସେ ମୁନି
"ଶୋକ ପୁନର୍ଜନ୍ମ ହୋଇ ନ ପାରେ ଯା' ଘେନି ।
ସେହି ପରମ ପବିତ୍ର ପାଦପଦ୍ମେ ମୁହିଁ
କେବେ ବା ବିଶ୍ରାମ ତହିଁ ଲଭିପାରିବଇଁ ।
ଭୋଗ ବିଷୟକ ତୃଷ୍ଣା ଯେ ମୋର ଅଛଇ
କେବେ ଅବା ତାକୁ ଦୂର କରିପାରିବଇଁ ।
ସେ ପରମପଦ କେବେ ଲାଭ ହେବ ମୋର
ସପନ କି ସତ ହୋଇପାରେ ମୋ ଭାଗ୍ୟର ?
ପଦ୍ମପତ୍ରେ ଜଳ ପରି କେବେ ମୋର ଚିତ୍ତ
ଏ ବିକଳ୍ପ କବଳରୁ ହେବ ବା ମୁକତ ?
ସଂସାର ଅରଣ୍ୟୁ କେବେ ହେବି ମୁଁ ବାହାର ?
ବିଧାତା କିସ ଲେଖିଛି ଭାଗ୍ୟରେ ମୋହର" ।
ଏତେ ଭାବି ଉଦ୍ଦାଳକ ସେହି ଅରଣ୍ୟରେ
ଧ୍ୟାନ ଅଭ୍ୟାସ କରିଣ ତପ ଆଚରିଲେ ।
ଚଞ୍ଚଳ ଚିତ୍ତ ତାଙ୍କର ବିଷୟା ନିମିତ୍ତ
ବାରମ୍ବାର ହେଉଥାଏ ସଦା ଆକର୍ଷିତ ।
ସମାଧି ଲାଭ କରିଣ ନ ପାରନ୍ତି ସେହି
କେବେହେଁ ମନରେ ତାଙ୍କ ଶାନ୍ତି ନ ଆସଇ ।
ବିଷୟ ଲୋଲୁପ ହୋଇ କେବେ ପକ୍ଷୀପରି
ଏଣେ ତେଣେ ଉଡ଼ିବୁଲେ ମାନସ ତାଙ୍କରି ।
ବିଷୟ ଅନୁସନ୍ଧାନ କେବେ ତେଜ୍ୟାକରି
ନିଦ୍ରା ଦେବୀଙ୍କର କୋଳେ ପଡ଼ିଯାନ୍ତି ଢ଼ଳି ।
ବ୍ୟାକୁଳ ଚିତ୍ତେ ବୁଲନ୍ତି ପର୍ବତ ଶିଖରେ
ଭ୍ରମି ଭ୍ରମି ପହଞ୍ଚିଲେ ଗହ୍ୱର ମଧ୍ୟରେ ।
କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ବଦ୍ଧପଦ୍ମାସନେ ବସେ ତପସ୍ୱୀ ପ୍ରବର ।
ବ୍ରହ୍ମାଦି ଗୁରୁବର୍ଗଙ୍କୁ କରନ୍ତି ପ୍ରଣାମ
ଭୁଲି ଯାଇଛନ୍ତି ମନୁ ବିଷୟାକର୍ଷଣ ।
"ସଂସାର ବିଷୟ ପ୍ରତି ରେ ଅବୋଧ ମନ
ଖୋଲି କହ ତହିଁ ତୋର କିସ ପ୍ରୟୋଜନ ?
ପରିଣାମ ଯାର ଭୟାବହ ଦୁଃଖ ପୂର୍ଣ୍ଣ
ତାଠାରୁ ଦୂରେ ରହନ୍ତି ସଦା ବୁଦ୍ଧିମାନ ।
ଆଶାପୋଷଣ କରିଣ ସଦା ଆରେ ମନ
ଏହିପରି କାଳ କଟୁଥାଉ ଅନୁକ୍ଷଣ ।
ଦୁଃଖ ବଢ଼ି ଚାଲିଥିବ କେବଳ ତୋହର
ଆଶା ମରୀଚିକା ତୋର ନୋହିବ ଅନ୍ତର ।
ଭୋଗ ଆଶା ତେଜି ତେଣୁ ଶ୍ରେୟ ଆଶ୍ରା କର
ନିତ୍ୟ ଶାନ୍ତି ଧାରା ସଦା ବହିବ ଅନ୍ତର ।
ଶବ୍ଦ, ସ୍ପର୍ଶ ରୂପଆଦି ବିଷୟ ନିମିତ୍ତ
ନିରର୍ଥକ ଧାରି ହେଉ କିପାଁ ଆରେଚିତ୍ତ ?
ଏହି ଭାବେ ଧାଇଁ ଧାଇଁ ଆଜଯାଏ ତୁହି
କିସ ଲଭିଅଛୁ ମନ ପାରିବୁକି କହି ?
ରେ ମୂର୍ଖ ଯହିଁରେ ତୁହି ଲଭିପାରୁ ସୁଖ
ସେହି ସମାଧି ପାଇଁକି କିମ୍ପା ତୁ ବିମୁଖ ?
ନିରର୍ଥକ ବହିର୍ମୁଖେ ଧାବିତ ହୋଇଣ
ଚକ୍ଷୁକର୍ଣ୍ଣ ଯାହା ତୋତେ କରନ୍ତି ପ୍ରଦାନ ।
ସେହି ବିଷୟାରେ କ୍ୱେଁଉଁ ନୁହ ତୁ ମଗନ
ଭାବିଦେଖ ଯା କହୁଛି ରେ ନିର୍ବୋଧ ମନ ।
ନିଜେ ନିଜକୁ ବାନ୍ଧୁଛୁ ବାସନା ଜାଲରେ
କୋଷକାର କୀଟ କରିଥାଏ ଯେ ପ୍ରକାରେ ।
ସଂସାର ବ୍ୟାଧି ତେଜିଣ ଯେବେ ଆରେ ମନ
ବିଶୁଦ୍ଧତା ଲାଭ କରିପାରୁ ତ ଅଜ୍ଞାନ ।
ନିଶ୍ଚୟ ଜୟ ପତାକା ଉଡ଼ିବ ତୋ ଶିରେ
ଏହା ନ ଚିନ୍ତିଣ କିମ୍ପା ଭ୍ରମୁ ଅନ୍ଧକାରେ ।
ଯଦି ନ ପାଳିବୁ ମନ ମୋର ଏ ବଚନ
ଉପଦେଶ ଦେବା ମୋର କିସ ପ୍ରୟୋଜନ ?
ବିଚାର ବଳରେ ଚିତ୍ତ ହୁଅଇ ବିନଷ୍ଟ
ଚିତ୍ତ ବିନାଶରେ ଲାଭ ହୋଇଥାଏ କଷ୍ଟ ।
ବିଚାର ପରାୟଣ ମୁଁ ଯଦି ହୋଇପାରେ
ଉତ୍କର୍ଷ ଲଭିପାରିବି ତେବେ ମୁଁ ଅଚିରେ ।
ତେବେ ଏ ଚିତ୍ତର ଯାଇଁ ହୋଇବ ଦମନ
ଅଜ୍ଞାନ ଦୂର ହୁଅନ୍ତେ ଚିତ୍ତର ଉଚ୍ଛିନ୍ନ ।
ଅଜ୍ଞାନରୁ ବୃଦ୍ଧିପାଏ ଚିତ୍ତ ପ୍ରବଳତା
ବିଚାର ବଳେ ଏ ଚିତ୍ତ ଲଭିଲେ ସୂକ୍ଷ୍ମତା,
ବିଶୁଦ୍ଧ ହୋଇଣ ଚିତ୍ତ ଲଭଇ କ୍ଷୀଣତା
ତେଣୁ ନଶ୍ୱର ଚିତ୍ତକୁ ଉପଦେଶ ବୃଥା ।
ରେ ଅସତ୍ ଚିତ୍ତ ! ଅହଂକାର ବୀଜ ତୁହି
ତେଣୁ କରି ତୋତେ ତ୍ୟାଗ କରିଲଇଁ ମୁହିଁ ।
ଚିତ୍‌ରୂପ ପ୍ରଦୀପ ମୁଁ ଅଟେ ରେ ଅଜ୍ଞାନ
ଅହଂକାର ବାସନା ମୋ କିଛି ନାହିଁ ଜାଣ ।

ଦେହଭାବ, ଭ୍ରମଦୃଷ୍ଟି ଅଛଇ ତୋହର
ବିନାଶ ସାଧନ କର ଏହା ମୂର୍ଖଙ୍କର ।
ଅନୁସରିବି ତ ନାହିଁ କେଉଁ ମୁହିଁ ତୋତେ
ବୋକା ମୋତେ କହିବେଟି ଜଗତେ ସମସ୍ତେ ।
ଗୋଡ଼ଠାରୁ ମୁଣ୍ଡଯାଏ ଖୋଜିଗଲି ମୁହିଁ
ଅହଂ ବୋଲି କାହାରିକି ଦେଖିଲି ତ ନାହିଁ ।
ଏ ସମସ୍ତ ଦିଗ୍‌ମଣ୍ଡଳ ପୂର୍ଣ୍ଣ କରି ମୁହିଁ
ଅଖଣ୍ଡ ଜ୍ଞାନ ସ୍ୱରୂପେ ବିରାଜୁ ଅଛଇ ।
ଏହି ମୋହର ଅଖଣ୍ଡ ଜ୍ଞାନ ସ୍ୱରୂପରେ
କୌଣସି ପରିଚ୍ଛିନ୍ନତା ନାହିଁତ ତହିଁରେ ।
ଅନ୍ୟ କୌଣସି ବସ୍ତୁର ସଂସ୍ପର୍ଶ ବି ନାହିଁ
'କାଳର ପ୍ରଭାବ ତହିଁ କିଛି ନ ଲାଗଇ ।
ମୋର ଏ ଜ୍ଞାନ ରୂପର ଇୟତ୍ତା ତ ନାହିଁ
ନାମ, ରୂପ ତ ନ ଥାଇ ଏକତ୍ୱ ବି ନାହିଁ
ଦ୍ୱିତ୍ୱ, ମହତ୍ତ୍ୱ, ଅଣୁତ୍ୱ ଆସିବ ବା କାହିଁ ?
ତେଣୁକରି ତୋତେ ମୁହିଁ ନିହତ କଲଇଁ ।
ପରମାର୍ଥିକ ଦୃଷ୍ଟିରୁ ମୋତେ ଯାଏ ଜଣା
ଦେହ, ପ୍ରାଣ, ମନ, ଚିତ୍ତ, ଇନ୍ଦ୍ରିୟ ବାସନା,
ମୋହଠାରୁ ସ୍ୱତନ୍ତ୍ର ଏ ସକଳ ଅଟନ୍ତି
ମୁହିଁ ଅଟେ ସେହି ଶୁଦ୍ଧ ଚଇତନ୍ୟ ମୂର୍ତ୍ତି ।
ଏତେକାଳ ସେହି ଧୂର୍ତ୍ତ ଅଜ୍ଞାନ ଯେ ମୋତେ
ଅହଂଭାବେ ପ୍ରତାରିତ କରିଛି ସତତେ ।
ଭାଗ୍ୟକ୍ରମେ ପରିଚୟ ପାଇଛି ତାହାର
ଆଉ କି ଆଶ୍ରାପାଏ ସେ ଅଜ୍ଞାନ ତସ୍କର ।
ପର୍ବତ ସହ ମେଘର ସମ୍ପର୍କ ଯେପରି
ଅଜ୍ଞାନ ତସ୍କର ସହ ମୋର ସେହିପରି ।
ଆନନ୍ଦମୟ ମୁଁ ଅଟେ ଆନନ୍ଦ ଆକର
ଦୁଃଖର ଆକର ସେହି ଅଜ୍ଞାନ ତସ୍କର ।
ଅହଂଭାବାପନ୍ନ ହୋଇ ତାହାର ସହିତ
ସମ୍ବନ୍ଧ ସ୍ଥାପନ କରି, ଥିଲି ମୁଁ ଜଡ଼ିତ ।
ଏଣିକି କେବେହେଁ ତାହା ନ କରିବି ମୁହିଁ
ଆତ୍ମ ଦରଶନେ ଯେଣୁ ଅହଂ ମୋର ନାହିଁ ।
ହାୟ ! ଏହି ଅହଂ ନାମ ଅବସ୍ତୁକୁ କିଏ
କିପାଁଇ କଳ୍ପନା କଲା ଜଣାତ ନ ଯାଏ ।
ତାଳଗଛ ପରି ଢେଙ୍ଗା ବେତାଳ ଯେପରି
ଅଜ୍ଞାନ ବାଳକ ମନ ଭୟଭୀତ କରି ।
ଅଜ୍ଞାନ ବ୍ୟକ୍ତିଙ୍କୁ ତଥା ଏହି ଯେ ଜଗତ
ଭୟଭୀତ କରି କରୁଥାଏ ହରକତ ।
ମୋହ ଗର୍ତ୍ତେ ନିପତିତ ଥିଲି ଏତେକାଳ
ଅଜ୍ଞାନ ତିମିର ଗ୍ରାସି ଥିଲା ମୋ ଅନ୍ତର ।
ଚକ୍ଷୁ କର୍ଣ୍ଣ ଆଦିକରି ଯେତେକ ଇନ୍ଦ୍ରିୟ
ବିଭବ ଦେଖାଇ କରୁଥିଲେକ ତନ୍ମୟ ।
ଅହଂ ଅଭିମାନୀ ତସ୍କର ନ ଦିଶୁନାହିଁ
କାହିଁଗଲା ତାହାର ତ ପତ୍ତା ନ ମିଳଇ ।
ଦର୍ଶନାଦି ପ୍ରକ୍ରିୟାର ଯେ ମୂଳ କାରଣ
ଅହଂ କଳପନ, ମରୁ ମରୀଚିକା ସମ ।
ରେ ଚିତ୍ତ ! ବାସନା ଶୂନ୍ୟ ହୋଇ କର୍ମ କଲେ
ସୁଖ, ଦୁଃଖ ଭୋଗ ଆଉ ନ ଘଟଇ ହେଲେ ।
ତେଣୁ ହେ ଇନ୍ଦ୍ରିୟଗଣ ! ବାସନା ତେଜିଣ
କର୍ମ ପରାୟଣ ହୋଇ ଚଳ ଅନୁକ୍ଷଣ ।
ଦୁଃଖ ନ ଆସିବ କେଉଁ ପାଶକୁ ତୁମ୍ଭର
କାଳ କାଟୁଥିବ ହୋଇ ଅଜର ଅମର ।
କଣ୍ଢେଇ ସାଇତି ରଖି ଥାନ୍ତି ପିଲାମାନେ
ଭାଙ୍ଗି ଗଲେ ବ୍ୟଥା ଆସେ ତାଙ୍କର ପରାଣେ ।
ବାସନା କଣ୍ଢେଇ କିମ୍ବା ଯନ୍ତ୍ରଆରେ ଚିତ୍ତ
ନ ଜାଣୁ କି ଦୁଃଖ ଅଛି ତହିଁରେ ନିହିତ ?
ଜଳ ତରଙ୍ଗ ଯେପରି ଅଟନ୍ତି ଅଭିନ୍ନ
ବାସନା ତେସନ ଆତ୍ମାଠାରୁ ନୁହେ ଭିନ୍ନ ।
ରେ ଚିତ୍ତ ! ଇନ୍ଦ୍ରିୟ ସହ ତୁହି ଯେ ଅନିତ୍ୟ
ଜାଣି ସୁନିର୍ମଳ ରହୁଥାଅ ତୁ ସତତ ।
ସୁବିଚାର ବଳେ ତୁହି ଘେନି ଏହି ଜ୍ଞାନ
ନିର୍ମଳ ବୋଧ ସ୍ୱରୂପ ଲଭିବୁ ନିର୍ବାଣ ।"

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଉଦ୍ଦାଳକ ବିଚାର ବର୍ଣ୍ଣନେ**
**ନାମ ୪୨ଶ ସର୍ଗଃ**



## ୪୩ଶ ସର୍ଗଃ

## ଉଦ୍ଦାଳକ ବିଶ୍ରାନ୍ତି

"ଉଦ୍ଦାଳକ ମୁନି ପୁଣି ଭାବନ୍ତି ଏସନ
ଅସୀମ ଅପାର ଅଟେ ଆତ୍ମ ଚଇତନ୍ୟ ।
ପରମାଣୁଠାରୁ ସୂକ୍ଷ୍ମତର ଅଟେ ସେହି
ତେଣୁ ବାସନାଦି ଦୋଷ ତାକୁ ନ ଲାଗଇ ।

ମୁହିଁ ତ ଅଟଇ ସେହି ଚୈତନ୍ୟ ସ୍ୱରୂପ
ସେହି ଅନନ୍ତ ଅଖଣ୍ଡ ନିର୍ଗୁଣ ଅରୂପ ।
ବୁଦ୍ଧି ଅହଂକାରେ ଯଦି ସେହି ଚଇତନ୍ୟ
ପ୍ରତିବିମ୍ବିତ ହୁଅନ୍ତି, ଜଡ଼ ଇନ୍ଦ୍ରିଗଣ,
ଯେଉଁ ସବୁ ବିଷୟଙ୍କୁ କରନ୍ତି ଗ୍ରହଣ
ବାସନାମାନଙ୍କ ତହିଁ ସୂକ୍ଷ୍ମ ଅବସ୍ଥାନ ।
ମନ ସେହି ବାସନାକୁ କରଇ ବିସ୍ତୃତ
ମନ ମଧ୍ୟେ ସେ ବାସନା ହୁଏ ଅନୁଭୂତ ।
ବୁଦ୍ଧି ଅହଂକାର ସମ୍ପାଦନ୍ତି ଯେଉଁ କର୍ମ
ଯାହାକିଛି ଅନୁଭବ କରୁଥାଏ ମନ,
ସ୍ପର୍ଶ କରି ନ ପାରନ୍ତି ମୋତେ ସେହିମାନ
ଯେହେତୁ ମୁଁ ଅଟେ ସେହି ଅସଙ୍ଗ ଚୈତନ୍ୟ ।
ସର୍ବଗାମୀ ଚୈତନ୍ୟର ଜନ୍ମ ମୃତ୍ୟୁ ନାହିଁ
ତେଣୁ ଏ ଜୀବର ମନ ! ମରଣ ବା କାହିଁ ?
ଏମନ୍ତ କେ ଅଛି ତାକୁ ଯେ ମାରି ପାରିବ
ଅବିନାଶୀକୁ ବିନାଶ କିଏ ବା କରିବ ।
ଅଦ୍ୱିତୀୟ ଅଟେ ଏହି ଆତ୍ମଚଇତନ୍ୟ
ବିଶ୍ୱର ସକଳ ବସ୍ତୁ ତହୁଁ ନୁହେ ଆନ ।
ଯେହେତୁ ଚିତ୍ ଅଟଇ ସବୁରି ଜୀବନ
ଜୀବନରେ ପୁଣି ତୋର କେଉଁ ପ୍ରୟୋଜନ ?
ଚଇତନ୍ୟର ଜୀବନ ଯେଣୁ ନାହିଁ ମନ
ମରଣ ତାହର ପୁଣି ହୋଇବ କେସନ ?
ମନର କଳ୍ପନା ଅଟେ ଜୀବନ ମରଣ
କିଛିହିଁ ସମ୍ପର୍କ ନାହିଁ ଆତ୍ମାସହ ଜାଣ ।
'ମୁହିଁ ଦେହ, ମୋର ଦେହ' ଏହା ଯେ ଭାବଇ
ଜନ୍ମ ମରଣ କେବଳ ତାହାକୁ ଲାଗଇ ।
ଯେହେତୁ ଆତ୍ମା ମଧ୍ୟରେ ଅହଂଜ୍ଞାନ ନାହିଁ
ଭାବ ବା ଅଭାବ ତହିଁ କିଛି ନ ଲାଗଇ ।
ମିଥ୍ୟା ମୋହରୁହିଁ ଅହଂଭାବର ଜନମ
ଏ ମନ ଅଟଇ ମରୀଚିକାର ସମାନ ।
ଅନ୍ୟାନ୍ୟ ସକଳ ବସ୍ତୁ ଅଟନ୍ତି ଯେ ଜଡ଼
ଏ ଅହଂକାର ଭାବନା କାହାର ରେ ମୂଢ଼ ?
ରକ୍ତମାଂସ ଘେନିକରି ଏ ଦେହ ନିର୍ମିତ
ଇନ୍ଦ୍ରିଗଣ ନିଜ ନିଜ କରମରେ ରତ ।
ସତ୍ତ୍ୱ, ରଜ, ତମ ତିନିଗୁଣ ପ୍ରକାଶନ୍ତି
ମୋହ ରୂପ ଧରି ତହିଁ ଅଛଇ ପ୍ରବୃତ୍ତି ।

ପ୍ରକୃତି ଯେ ନିଜ ମଧ୍ୟେ ନିଜେ ଅବସ୍ଥିତ
ସତ୍ ସ୍ୱରୂପରେ ବ୍ରହ୍ମ ସ୍ୱୟଂ ବିରାଜିତ ।
ଏମାନଙ୍କ ମଧ୍ୟେ ଅହଂଭାବ ସ୍ଥାନ କାହିଁ ?
ଭାବ ବା ଅଭାବ ଅହଂ ବୋଲି କିଛି ନାହିଁ ।
ଅହଂ ଅଭାବେ ଦ୍ୱିତ୍ୱର କଳପନା କାହିଁ ?
ତେଣୁ ଯାହା କିଛି ଅଛି ସକଳ ବ୍ରହ୍ମହିଁ
ମୁହିଁ ମଧ୍ୟ ସେହି ସତ୍ ସ୍ୱରୂପ ଯେ ବ୍ରହ୍ମ
ତେଣୁ ମୋର ଶୋକପାଇଁ ନ ଥାଇ କାରଣ ।
ଇନ୍ଦ୍ରିୟ ସହିତ ମନ ରହେ କାର୍ଯ୍ୟ ବ୍ୟସ୍ତ ।
ଚଇତନ୍ୟ ତାର ତହିଁ ନ ରହେ ଜଡ଼ିତ ।
ଚୈତନ୍ୟ ଇନ୍ଦ୍ରିୟ ପୁଣି ଦେହ ଆଉ ମନ
ସକଳେ ଏକତ୍ର କରିଲେ ହେଁ ଅବସ୍ଥାନ,
ପରସ୍ପର ସମ୍ବନ୍ଧ ତ ସେମାନଙ୍କ ନାହିଁ
ସମ୍ବନ୍ଧ ସ୍ଥାପନ ତହିଁ ପ୍ରମାଦ ବୋଲାଇ ।
କେବଳ ତତ୍ତ୍ୱଦର୍ଶନ ଅଭାବରେ ଜାଣ
ମିଥ୍ୟା ଅନୁଭବମାନ ଜନମନ୍ତି ମନ ।
"ଏହା ମୋର ଏହା ମୋର" କହିଥିଲେ ଜୀବ
ପରସ୍ପର ସମ୍ବନ୍ଧର ହେତୁ ତା ଜାଣିବ ।
ଭ୍ରାନ୍ତିମୟ ଜଗତର କାରଣରେ ମନ
ଏହି ସମ୍ବନ୍ଧ ଅଟଇ ନିଶ୍ଚୟ ତୁ ଜାଣ ।
ତତ୍ତ୍ୱ ଦର୍ଶନେ ଏ ଭ୍ରାନ୍ତି ହୁଅନ୍ତେ ବିଲୀନ
ଆତ୍ମାଛଡ଼ା ଅନ୍ୟସବୁ ହୁଏ ସତ୍ତାହୀନ ।
ତେଣୁକରି ଏହା ସବୁ ଅଟନ୍ତି ସେ ବ୍ରହ୍ମ
ଆଶ୍ୱସ୍ତ ରହିବି ବୁଝି ଏହି ତତ୍ତ୍ୱ ମର୍ମ ।
ପରସ୍ପର ଆଶ୍ରୟରେ ଶରୀର ଓ ମନ
କ୍ରିୟାଶୀଳ ହୋଇ ଚଳୁଥାନ୍ତି ଅନୁକ୍ଷଣ ।
ତେଣୁ ପରସ୍ପର ଅନୁରକ୍ତ ସେହିମାନେ
ସୁଖ ଅନୁଭବ କରୁଥାନ୍ତି ଅନୁକ୍ଷଣେ ।
ପରସ୍ପର ହୁନ୍ତି ଯେବେ ଦୁଃଖର କାରଣ
ନିଜ ନିଜ ପ୍ରତି ହୁନ୍ତି ବିଦ୍ୱେଷେ ସମ୍ପନ୍ନ ।
ଏସନ ଦେହ ମନର ସମୂଳ ବିନାଶ
ପରମ ସୁଖର ହେତୁ ଜାଣରେ ମାନସ ।
କେବଳ ଦେହ ନାଶରେ ବାସନା ଓ ମନ
ବିନାଶ ନ ଲଭି ହେଉଥାନ୍ତି ଛନ୍ନ ଛନ୍ନ ।
ଲାଗିପଡ଼ି ଅନ୍ୟ ଦେହ କରନ୍ତି ନିର୍ମାଣ
ମନର ବିନାଶେ ଜାଣ ସବୁରି ମରଣ ।

ତେଣୁ ମନ ନାଶ ପାଇଁ ହେବି ଯନ୍ତ୍ରବାନ
ସେଥିପାଇଁ କରିବି ମୁଁ ଅସାଧ୍ୟ ସାଧନ ।
ମନ ଅରଣ୍ୟର ବୃକ୍ଷ ଅଟଇ ସଙ୍କଳ୍ପ
ତୃଷ୍ଣା ଅଟଇ ସେ ବନେ ଲତିକା ସ୍ୱରୂପ ।
ଏହି ଲତା, ଏ ବୃକ୍ଷକୁ କରିଣ ଛେଦନ
ପରିଷ୍କୃତ କରିବଇଁ ସେ ମନ ଅରଣ୍ୟ ।
ସ୍ୱଚ୍ଛନ୍ଦରେ ସେ ଭୂମିରେ କରିବି ବିହାର
ଧନ୍ୟ ମୁଁ ଯେଣୁ ହୋଇଛି ମୋର ଭ୍ରମ ଦୂର ।
ସଙ୍କଳ୍ପ କ୍ଷୟରେ ମନ, ମନ ଆକାରରେ
ରହି ନ ପାରଇ କେଉଁ କସ୍ମିନ କାଳରେ ।
ମନ ଅଭାବେ ବାସନା ହୁଅଇ ବିଲୟ
ଦେହ ଥିବା ନ ଥିବାରେ ନାହିଁ ମୋ ପ୍ରତ୍ୟୟ ।
ମନର କ୍ଷୟ ସାଧନ ଯେମନ୍ତ ଘଟିବ
ତେମନ୍ତ କର୍ମ କରିବା ମୋହର କର୍ତ୍ତବ୍ୟ ।
ସକଳ ଅଙ୍ଗ ପ୍ରତ୍ୟଙ୍ଗ ଶବ ଦେହେ ଥାଇ
ଦର୍ଶନାଦି କ୍ରିୟା ତାର କିପାଁ ନ ଘଟଇ ।
ତେଣୁ ମୁହିଁ ନୁହେଁ ସେହି ଦେହ ଏହା ଧ୍ରୁବ
ଦେହ ମନ ଯେ ସ୍ୱତନ୍ତ୍ର ଶିଖାଏ ତା ଶବ ।
ଦେହରୁ ଚୈତନ୍ୟ ଯେଣୁ ଚାଲିଯାଇଥାଏ
ଦର୍ଶନାଦି କ୍ରିୟାପାଇଁ ଅକ୍ଷମ ସେ ହୁଏ ।
ଚୈତନ୍ୟ ଯେଣୁ ମୋ ଦେହେ ଅଛି ବିଦ୍ୟମାନ
ଦର୍ଶନ ଶ୍ରବଣ ପାଇଁ ଅଟେ ମୁଁ ସକ୍ଷମ ।
ତେଣୁ ମୁଁ ନୁହେ ଶରୀର ଏହି ବିଷୟରେ
କୌଣସି ସନ୍ଦେହ ତହିଁ ରହି ତ ନପାରେ ।
ତେଣୁ ମୁଁ ଶରୀରଠାରୁ ଅଟଇ ପୃଥକ
ନିତ୍ୟ ପ୍ରକାଶ ସ୍ୱରୂପ ଅଟେ ବାସ୍ତବିକ ।
ସୂର୍ଯ୍ୟ ମଣ୍ଡଳରେ ଥାଇ ସୂର୍ଯ୍ୟଙ୍କୁ ଯେ ଜାଣେ
ମୁହିଁ ସେହି ଚଇତନ୍ୟ କିଏ ବା ନଜାଣେ ?
ନୁହେଁ ମୁଁ ଅଜ୍ଞ ନାହିଁ ମୋ ଦୁଃଖ ବା ଅନର୍ଥ
ବିଗତ ଜ୍ୱର ମୁଁ ସଦା ଏ ଉକ୍ତି ଯଥାର୍ଥ ।
ଇନ୍ଦ୍ରିୟ, ମନ ବାସନା ନ ଥାନ୍ତି ଆତ୍ମାରେ
ସମ୍ରାଟ ପାଖେ ନଗଣ୍ୟ, ରହିତ ନ ପାରେ ।
ସେହି ଜୟଶୀଳ, ବ୍ରହ୍ମ ନିର୍ବାଣ ସ୍ୱରୂପ
କେବଳରୂପୀ ମୁଁ ସେହି ଅଗମ୍ୟ ଅମାପ ।
ନାହିଁ ମୋର ଅଭିଳାଶ, ନାହିଁ ମୋର ଅଂଶ
ନାହିଁ ଇଚ୍ଛା ବା ଅନିଚ୍ଛା ନାହିଁ ରାଗ ଦ୍ୱେଷ ।
ସୁଖ ନାହିଁ, ଦୁଃଖ ନାହିଁ, ସେ ସକଳ କ୍ଷୀଣ
ମୋହହୀନ ଅଟେ ମୁହିଁ ମୁଁ ମନ ବିହୀନ ।
ନିର୍ବିକାର ସ୍ୱରୂପରେ ଆତ୍ମାରେ ବିଶ୍ରାମ
ଲାଭ କରିଅଛି ମୁହିଁ, ମୁଁ ସେହି ଅସୀମ" ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପସମ ପ୍ରକରଣେ**
**ଉଦ୍ଦାଳକ ବିଶ୍ରାନ୍ତି ବର୍ଣ୍ଣନେ**
**ନାମ ୪୩ଶ ସର୍ଗଃ ।**



## ୪୪ଶ ସର୍ଗଃ
## ଉଦ୍ଦାଳକ ନିର୍ବାଣ

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁବୀର
ଉଦ୍ଦାଳକ ମୁନିଙ୍କର ଯେମନ୍ତ ବେଭାର ।
ବିଚାରବାନ ହୋଇଣ ଶୁଦ୍ଧ ବୁଦ୍ଧି ବଳେ
ଅର୍ଦ୍ଧନିମୀଳିତ ନେତ୍ରେ ପ୍ରଣବେ ମଜ୍ଜିଲେ ।
ପ୍ରଣବର ତିନି ମାତ୍ରା ଉଚ୍ଚାରଣ କରି
ଅର୍ଦ୍ଧମାତ୍ରା-ବ୍ରହ୍ମେ ଜୀବ ମିଶିବ ଯେପରି ।
ଜୀବାତ୍ମା ବିମଳାତ୍ମାରେ ଏକ ହେବାଯାଏ
ପ୍ରଣବରେ ମୁନିବର ନିମଜ୍ଜିତ ରହେ ।
ପରେ ନାନା ଜ୍ଞାନ ଭୂମି ଅତିକ୍ରମ କରି
ଶେଷେ ପରଂପଦେ ବସେ ସ୍ଥିର ଭାବ ଧରି ।
ଥରେ ମାତ୍ର ଏ ପରମପଦ ଲାଭ କଲେ
ଦୃଶ୍ୟଦୃଷ୍ଟିକି ସାଧୁଏ ନ ଫେରନ୍ତି ହେଲେ ।
ବୋଧପ୍ରାପ୍ତ ପରଂପଦେ ବିଶ୍ରାନ୍ତ ଯେ ଚିତ୍ତ
କଷ୍ଟ ମଣେ ସମାଧିରୁ ହେବାକୁ ବ୍ୟୁତ୍ଥିତ ।
ଅନ୍ୟ ବ୍ୟକ୍ତିର ସାହାଯ୍ୟ ସେଥିପାଇଁ ଲୋଡ଼ା
ସପ୍ତମ ଜ୍ଞାନଭୂମିରେ ହୋଇଯାନ୍ତେ ଛିଡ଼ା ।
ତାର ସମାଧି ଭଗନ ହେବା ଅସମ୍ଭବ
ଏହି ମହାତତ୍ତ୍ୱ ବୁଝିରଖ ହେ ରାଘବ ।
ସ୍ୱୟଂମାଗତ ସିଦ୍ଧିଏ ଆସି ପହଞ୍ଚନ୍ତି
ଉଦ୍ଦାଳକ ସେମାନଙ୍କୁ ଉପେକ୍ଷା କରନ୍ତି ।
ଛଅ ମାସ କାଳ ଏହିପରି ଗଡ଼ିଗଲା
ବସନ୍ତ ତପନ ପରି ମୁନି ଦେଖାଗଲା ।
ସମ୍ୟକବୋଧ ଲଭିବା ଉତ୍ତାରେ ସେ ମୁନି
ଦେଖିଲେ ଆସିଅଛନ୍ତି ଦେବଙ୍କ ରମଣୀ ।
ତେଜସ୍ୱୀନୀ କିନ୍ତୁ ଚନ୍ଦ୍ରକାନ୍ତି ପରି ଶୋଭା
ତାଙ୍କୁ ପ୍ରଣମିବା ପାଇଁ ଆସି ହେଲେ ଉଭା ।

ଋଷିଙ୍କୁ ପ୍ରଣାମ କରି କହନ୍ତି ବଚନ
ବିମାନରେ ବସି ଚଳ ସ୍ୱର୍ଗେ ତପୋଧନ ।
ସେମାନଙ୍କୁ ଯଥାବିଧି ଅରଚନା କରି
ନିଜ ନିଜ ସ୍ଥାନେ ଚଳ କହେ ତପଚାରୀ ।
ଏହା କହି ସମାଧିରେ ପୁନଶ୍ଚ ନିମଗ୍ନ
ରହିଲେକ ଉଦ୍ଦାଳକ ମୁନି ତପୋଧନ ।
କିଛିକାଳ ଉଦ୍ଦାଳକ ସହ କଟାଇଣ
ନିଜ ନିଜ ସ୍ଥାନେ ଗଲେ ସେ କାମିନୀଗଣ ।
ଏହିପରି ଉଦ୍ଦାଳକ ଜୀବନ୍ମୁକ୍ତ ହୋଇ
ସର୍ବତ୍ର ଇଚ୍ଛାନୁସାରେ ଭ୍ରମଣ କରଇ ।
ବିନ୍ଧ୍ୟ ହିମାଚଳ କଇଳାସ ପର୍ବତରେ
ମେରୁ, ମନ୍ଦିରରେ ପୁଣି ଋଷି ଆଶ୍ରମରେ ।
ଇଚ୍ଛାମତେ ନାନା ସ୍ଥାନେ ବିଚରଣ କରି
ଆନନ୍ଦରେ କାଳ କାଟୁଥାନ୍ତି ତପଚାରୀ ।
ସତ୍ତା-ସାମାନ୍ୟ ଅବସ୍ଥା ଯେଣୁ ଲଭିଛନ୍ତି
ଯହିଁ ଗଲେ ସୁଦ୍ଧା ଭୋଗୁଥାନ୍ତି ଚିତ୍ତ ଶାନ୍ତି ।
କହନ୍ତି ଶ୍ରୀରାମ ଏବେ ଶୁଣିବାକ ଦେବ
ସତ୍ତା-ସାମାନ୍ୟ ଅବସ୍ଥା ବୁଝାଇ କହିବ ।
କହନ୍ତି ବଶିଷ୍ଠ ତାହା ଶୁଣ ରଘୁବୀରେ
ଷଷ୍ଠ ଜ୍ଞାନଭୂମିକାରେ ପ୍ରବେଶ ହୋଇଲେ,
ଅବାନ୍ତର ଭେଦ ସବୁ ହୋଇ ଦୂରୀଭୂତ
ଚୈତ୍ୟ ବା ଦୃଶ୍ୟସଂସ୍କାର ଲଭଇ ଲଘୁତ୍ୱ ।
ଯଦି ଏ ଚିତ୍‌ତର ଘଟିଯାଏଟି ବିଳୟ
ତେତେବେଳେ ଯାହା ଘଟେ ଶୁଣ ରଘୁରାୟ ।
ଚିତ୍ ଓ ଅଚିତ୍ ସତ୍ତା ଏ ଉଭୟ ଜାଣ
ନିଜ ସତ୍ତାମାତ୍ରେ କରିଥାନ୍ତି ଅବସ୍ଥାନ ।
ଜୀବର ସତ୍ତା ସାମାନ୍ୟ ଅବସ୍ଥା ଯେ ଏହି
ତୁମ ପ୍ରଶ୍ନର ଉତ୍ତର ବୁଝ ରଘୁରାଈ ।
ସମସ୍ତ ଦୃଶ୍ୟ ଯେ କାଳେ ବିନାଶ ଲଭିଣ
ଚିତ୍‌ତ ଶକ୍ତି ଚୈତନ୍ୟରେ ହୋଇଯାନ୍ତି ଲୀନ ।
ନଭପରି ସୁନିର୍ମଳ ସେ ଚୈତନ୍ୟ ସ୍ଥିତି
ସତ୍ତା-ସାମାନ୍ୟ ଅବସ୍ଥା ଯୋଗରେ କହନ୍ତି ।
ଅଖଣ୍ଡ ବ୍ୟକ୍ତ ଚୈତନ୍ୟ ସ୍ୱୀୟ ଅନ୍ତର୍ଗତ
ବାହ୍ୟାନ୍ତର ଜଗତକୁ କରଇ ଅବ୍ୟକ୍ତ ।
ଚୈତନ୍ୟର ସେହି ଅବସ୍ଥିତିର ଯେ ନାମ
ସତ୍ତା-ସାମାନ୍ୟ ତାହାକୁ କହନ୍ତି ଶ୍ରୀରାମ ।

ସର୍ବ ଦୃଶ୍ୟ ଯେବେ ଲଭେ ଚିତ୍ ସ୍ୱରୂପତା
ବ୍ୟକ୍ତ ଚୈତନ୍ୟ ସେ କାଳେ ଧରେ ଯେ ଅବସ୍ଥା ।
ସତ୍ତା-ସାମାନ୍ୟ ଯେ ତାକୁ କହନ୍ତି ପଣ୍ଡିତେ
ଏହି ତତ୍ତ୍ୱ ହେଜରଖ ଆହେ ରଘୁପତେ ।
ବିନା ଆୟାସରେ ଅବା ବିନା ଭାବନାରେ
ସକଳ ଦୃଶ୍ୟ ଆତ୍ମାର ଲୀନ ହୋଇଗଲେ,
ସତ୍ତା-ସାମାନ୍ୟ ସେ କାଳେ ହୋଇଥାଏ ସିଦ୍ଧ
ଆଶା ମୋ ବଚନେ ହେବ ତୁମ ହୃଦବୋଧ ।
ସପ୍ତମ ଜ୍ଞାନଭୂମିରେ ଆରୂଢ଼ ଯେ ଚିତ୍ତ
ତୁରୀୟ ଅବସ୍ଥା ଚିତ୍ତ ସମ ସେହି ଚିତ୍ତ ।
ଜୀବନ ମୁକତ ଅବା ବିଦେହ ମୁକତ
ଏପରି ପରମ ଦୃଷ୍ଟି ଲଭିବା ଯୁକତ ।
ପଞ୍ଚମ ଜ୍ଞାନଭୂମିକୁ ଉଠେ ଯେଉଁ ଯୋଗୀ
ସତ୍ତା-ସାମାନ୍ୟ ଅବସ୍ଥା ପାରେ ସେହି ଭୋଗି ।
ସପ୍ତମ ଜ୍ଞାନଭୂମିରେ ଆରୂଢ଼ ଯେ ଜନ
ସମାଧି ଅବସ୍ଥା ତାର ଯଦି ହୁଏ ଭଗ୍ନ ।
ସତ୍ତା-ସାମାନ୍ୟ ଅବସ୍ଥା ରହିଥାଏ ତାର
ଏ କଥା ହେଜ ରଖିବ ଆହେ ରଘୁବୀର ।
ତତ୍ତ୍ୱଜ୍ଞାନୀ ମାତ୍ରେ ଲଭିଥାନ୍ତି ଜ୍ଞାନ ଦୃଷ୍ଟି
ଅନ୍ୟକୁ ପ୍ରାପତ ନୁହେ ଜାଣ ସେହି ଦୃଷ୍ଟି ।
ଜୀବନ୍ମୁକ୍ତ ମହାତ୍ମାଏ ଏହି ଜ୍ଞାନ ଧରି
ସର୍ବତୃଷ୍ଣା, ରଜଗୁଣେ, ଲିପ୍ତ ନୋହିକରି,
ଆକାଶରେ ବାୟୁ ଯଥା କରେ ବିଚରଣ
ଇହ ଜଗତରେ ତଥା ତାଙ୍କ ଆଚରଣ ।
ମୋ ସହିତ, ମହାଋଷି, ଦେବ ଋଷିଗଣ
ବ୍ରହ୍ମା ବିଷ୍ଣୁ ମହେଶାଦି ଯେତେକ ମହାନ,
ଏହିପରି ବୋଧଜ୍ଞାନେ ରହନ୍ତି ସଂସ୍ଥିତ
ସର୍ବଭୀତି ବିନାଶିନୀ ଯେଉଁ ଜ୍ଞାନ ତତ୍ତ୍ୱ ।
ଉଦ୍ଦାଳକ ମୁନି ଏହି ଦୃଷ୍ଟି ଅନୁସରି
ପ୍ରାରବ୍ଧ କ୍ଷୟ ପର୍ଯ୍ୟନ୍ତ ଜଗତେ ବିଚରି ।
ଏହିପରି ବହୁକାଳ ଗତ ହୋଇଗଲା
ବିଦେହ ମୁକତ ହେବା ସେ ମୁନି ଇଚ୍ଛିଲା ।
ଏହାଭାବି ଗିରିଗୁହା ମଧ୍ୟେ ସେ ପଶିଲେ
ଅର୍ଦ୍ଧନିମୀଳିତ ନେତ୍ରେ ଯୋଗ ଆରମ୍ଭିଲେ ।
ସକଳ ବୃତ୍ତିମାନଙ୍କୁ କରି ଏକତ୍ରିତ
ହୃଦ କମଳରେ ନେଇ କଲେକ ସ୍ଥାପିତ ।

ଆତ୍ମାମଧ୍ୟେ ସେ ବୃତ୍ତିଙ୍କୁ କରି ଏକୀଭୂତ
ଏକ ରସତ୍ୱ ଲଭିଲେ ଚୈତନ୍ୟ ସହିତ ।
ତତପରେ ସେହି ଏକରସ ଚଇତନ୍ୟ
ଚିତ୍‌ସାମାନ୍ୟରେ ଯାଇଁ ପ୍ରବେଶ କରିଣ ।
ଆନନ୍ଦ ଘନତ୍ୱ ପ୍ରାପ୍ତ ହୋଇକରି ତହିଁ
ନିରତିଶୟ ଆନନ୍ଦ ଭୋଗ କରୁଥାଇ ।
ନିରତିଶୟ ଆନନ୍ଦ ଭୋଗ କରି କରି
ଚିତ୍‌ସାମାନ୍ୟ ବିଲୟ ହୋଇଲା ତାଙ୍କରି ।
ଆହେ ରାମ ଏହିପରି ସେହି ମହାମତି
ବିଶ୍ୱବ୍ୟାପୀ ଆତ୍ମ ସତ୍ତା-ସାମାନ୍ୟ ଲଭନ୍ତି ।
କେତେକାଳ ପରେ ସୁନିର୍ମଳ ଆତ୍ମପଦେ
ଉପଶମ ପାଇ ମୁନି ରହିଲେ ଆନନ୍ଦେ ।
ଅନିର୍ବଚନୀୟ ସେହି ପରଂପଦ ଲାଭ
ସାଗରେ ତୃଣ ସମାନ ଇନ୍ଦ୍ରର ବିଭବ ।
ବାକ୍ୟାତୀତ, ସତ୍ୟ, ପୁଣି ଆପାରୁ ଆନନ୍ଦ
ଲଭିଲେ ସେ ମୁନିବର ପାଇ ପରଂପଦ ।
ଏ ସୁଖ ମଧ୍ୟେ ସ୍ଫୁରିତ ଅନନ୍ତ ଜଗତ
ବହୁ ଶୁଭ ଅଦୃଷ୍ଟରୁ ସେ ସୁଖ ପ୍ରାପତ ।
ସେହି ଆଦ୍ୟପଦ ଉଦ୍ଦାଳକ ମୁନି ପାଇ
ଗିରିଗୁହା ମଧ୍ୟେ ଛଅମାସ ବିତିଯାଇ ।
ରକ୍ତମାଂସ ଦେହ ତାଙ୍କ ଶୁଖିଲା ଦିଶଇ
ବ୍ରାହ୍ମୀ ଆଦି ମାତୃଗଣ ପ୍ରବେଶନ୍ତି ତହିଁ ।
ଶିଞ୍ଜିନୀନାମ୍ନୀ ଏକଇ ଚାମୁଣ୍ଡା ଉଠିଲା
କିରୀଟ ଅଗ୍ରରେ ମୁନି ଦେହକୁ ବାନ୍ଧିଲା ।
ବେଣୀପରି ପୃଷ୍ଠ ଭାଗେ ତାହା ଝୁଲୁଥାଏ
ଶିରଭୂଷଣ ମାନଙ୍କ ଶୋଭାକୁ ବଢ଼ାଏ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଉଦ୍ଦାଳକ ନିର୍ବାଣ ବର୍ଣ୍ଣନେ**
**ନାମ ୪୪ଶ ସର୍ଗଃ ।**



## ୪୫ଶ ସର୍ଗଃ

## ଧ୍ୟାନ ବିଚାର

କହନ୍ତି ବଶିଷ୍ଠ ଶୁଣ ଆହେ ରାମଚନ୍ଦ୍ର
ଆତ୍ମବିଚାର କରିଣ ଲଭ ପରଂପଦ ।
ପରମପଦ ପ୍ରାପତ ନୋହିଛି ଯେ ଯାଏ
ଦୃଶ୍ୟ ବିଲୟ ସାଧନ କର ରଘୁରାଏ ।
ଶାସ୍ତ୍ର, ତତ୍ତ୍ୱର, ବିଚାର, ଗୁରୁ ଉପଦେଶ
ଶୁଣିକରି ଚିତ୍ତଶୁଦ୍ଧ କର ରଘୁଈଶ ।
ଆତ୍ମ ବିଚାରରେ ରତ ହୋଇ ଦିନ ସାର
ତେବେ ମିଳିବ ପରମପଦ ଉପହାର ।
ବୈରାଗ୍ୟ ଅଭ୍ୟାସ ପୁଣି ଶାସ୍ତ୍ରାର୍ଥ ବିଚାର
ଗୁରୁ ଉପଦେଶ ଅବା ନିଜ ପ୍ରଜ୍ଞାବଳ ।
ପରଂପଦ ଲାଭ ହୁଏ ଏହାଙ୍କର ବଳେ
ଜୀବନ ସାର୍ଥକ ହୁଏ ସେ ପଦ ଲଭିଲେ ।
କହନ୍ତି ଶ୍ରୀରାମ କେହି କେହି ନିର୍ଜନରେ
ସମାଧିରେ ମଗ୍ନ ରହିଥାନ୍ତି ନିରନ୍ତରେ ।
କେହି କେହି ହୋଇ ବ୍ୟବହାର ପରାୟଣ
ବିଶ୍ରାମ କରୁଣଥାନ୍ତି ସମାଧିସ୍ଥ ସମ ।
ଏ ଦୁହିଁଙ୍କ ମଧ୍ୟେ କେହୁ ଅଟଇ ପ୍ରଧାନ
ଅନୁଗ୍ରହ କରି ତାହା କହ ତପୋଧନ ।
ବଶିଷ୍ଠ ବୋଲନ୍ତି ଏବେ ଶୁଣ ତା ଶ୍ରୀରାମ
ଗୁଣକୁ ଅନାତ୍ମଭାବେ କରେ ଯେ ଦର୍ଶନ ।
ଅନ୍ତଃଶୀତଳ ଅବସ୍ଥା ତାହାର ଯେ ରାମ
ସମାଧି ଆଖ୍ୟା ତାହାକୁ ଦ୍ୟନ୍ତି ଜ୍ଞାନୀଗଣ ।
ମନ ଥିଲେ ଦୃଶ୍ୟ ସହ ସମ୍ପର୍କ ରହିବ
କିନ୍ତୁ-"ମନ ନାହିଁ ମୋର" ଏହା ଯେ ଭାବିବ,
ଅନ୍ତଃଶୀତଳତା ପୁଣି ଲଭିଥିବ ସେହି
ତାଙ୍କ ମଧ୍ୟେ ଧ୍ୟାନମଗ୍ନ ରହିଥାନ୍ତି କେହି ।
କେହି ପୁଣି ହୋଇ ବ୍ୟବହାର ପରାୟଣ
ସାଧାରଣ ଜନପରି କାଟୁଥାନ୍ତି ଦିନ ।
ଅନ୍ତଃଶୀତଳ ଅଟନ୍ତି ଏ ଉଭୟ ଜାତି
ତେଣୁ ସମାନ ସୁଖୀ ଏ ଉଭୟେ ଅଟନ୍ତି ।
ତପସ୍ୟା ବଳେହିଁ ଅନ୍ତଃଶୀତଳତା ଲାଭ
ହୋଇ ପାରିଥାଏ ଜାଣ ହେ ରଘୁପୁଙ୍ଗବ ।
ଚଞ୍ଚଳତା ଲଭେ ଯଦି ସମାଧିସ୍ଥ ମନ
ସେ ସମାଧି ଅଟେ ଖାଲି ତାଣ୍ଡବ ସମାନ ।
ଯେଉଁ ସାଧକ ବାସନା ହୋଇଛି କ୍ଷୟିତ
ସମାଧି ସମାନ ଅଟେ ତା ଉନ୍ମତ୍ତ ନୃତ୍ୟ ।
ପ୍ରବୁଦ୍ଧ ହୋଇ ଜଗତ ବ୍ୟବହାରେ ରତ
କି ଅବା ସମାଧି ମଗ୍ନ ଅରଣ୍ୟ ମଧ୍ୟସ୍ଥ,

ଉଭୟେ ସମାନ ଜାଣ ଆହେ ରଘୁବୀର
ଯେଣୁ ବ୍ରହ୍ମପଦ ପ୍ରାପ୍ତି ହୋଇଛି ତାଙ୍କର ।
ଅନ୍ୟମନସ୍କ କାନରେ ଶବଦ ବାଜିଲେ
ସେ ଶବଦ ଶ୍ରୋତା ସେହୁ କେଉଁ ନେହିପାରେ ।
ବାସନା କ୍ଷୟ ଲଭିଛି ଯେବଣ ବ୍ୟକ୍ତିର
ଚିତ୍ତ କର୍ମ କଲେହେଁ ସେ କର୍ତ୍ତା ନୁହେ ତାର ।
ବାସନା ସମ୍ପନ୍ନ ଅଟେ ଯେଉଁ ବ୍ୟକ୍ତି ଚିତ୍ତ
କର୍ମ ନ କଲେହେଁ କର୍ତ୍ତା ଭାବେ ସେ ବିଦିତ ।
ଚିତ୍ତ ଅକର୍ତ୍ତୃତ୍ୱଭାବ ଉକ୍ରୃଷ୍ଟ ସମାଧି
କୈବଲ୍ୟ, ଶ୍ରେଷ୍ଠ ନିବୃତ୍ତି ନାମେ ଯା' ପ୍ରସିଦ୍ଧି ।
ଚଞ୍ଚଳ ଚିତ୍ତ ଧ୍ୟାନର ହୁଏ ପ୍ରତିକୂଳ
ଅଚଞ୍ଚଳ ଚିତ୍ତ କିନ୍ତୁ ଧ୍ୟାନ ଅନୁକୂଳ ।
ଧ୍ୟାନାର୍ଥ ସର୍ବଦା ଏହି ବିଧି ଆଚରିବ
ବାସନାବିହୀନ ସଦା ଚିତ୍ତକୁ କରିବ ।
ବାସନାବିହୀନ ମନ ଅଟେ ସୁନିଶ୍ଚଳ
ଧ୍ୟାମମଗ୍ନ ଅବସ୍ଥା ଏ ଅଟଇ ମନର ।
'କେବଳଭାବ' ଅଟଇ ତାର ଅନ୍ୟ ନାମ
ମନର ବିଭିନ୍ନ ନାମ ବୁଝ ହେ ଶ୍ରୀରାମ ।
ବାସନା କ୍ଷୟ ଆରମ୍ଭେ ଉର୍ଦ୍ଧ୍ୱେ ଚଳେ ମନ
ଆତ୍ୟନ୍ତିକ କ୍ଷୟେ ତାର କର୍ତ୍ତାଭାବ ଶୂନ୍ୟ ।
ବାସନା ସମ୍ପନ୍ନ ହେଲେ କର୍ତ୍ତାଭାବ ବଢ଼େ
କର୍ତ୍ତୃତ୍ୱ ସମ୍ପନ୍ନ ହୋଇ ନାନାଦୁଃଖେ ପଡ଼େ ।
ବାସନା ବିନଷ୍ଟ ହେବା ଅତି ଆବଶ୍ୟକ
ତାହାହେଲେ କାହିଁ ଆଉ ଦୁଃଖ ଅବା ଶୋକ ?
ଦେହ ଅବା ଜଗତରେ "ମୁହିଁ ମୋର" ଭାବ
ବିନାଶ ପ୍ରାପତ ହୁଏ ଯହିଁରେ ରାଘବ,
ଶୋକ ଆଉ ଭୟ ଆଦି ଯହିଁରେ ନଥାଇ
ଆତ୍ମା ଯହିଁରେ ସ୍ୱରୂପେ ପ୍ରତିଷ୍ଠିତ ହୋଇ,
ସମାଧି ଆଖ୍ୟା ତାହାକୁ ଦିଅନ୍ତି ପଣ୍ଡିତେ
ଯଥାର୍ଥ ଉକ୍ତି ନୁହେକି କହ ରଘୁନାଥେ ।
ଦୃଶ୍ୟପଦାର୍ଥରେ ରାମ 'ମୁହିଁ ମୋର' ବୁଦ୍ଧି
ପରିହାର କରି ଯେବେ ଚଳ ରଘୁନିଧି,
ପର୍ବତେ ବା ଗୃହ ମଧ୍ୟେ ଯହିଁ ତୁମେ ରହ
ପାର୍ଥକ୍ୟ ନ ଥାଏ ତହିଁ ଆହେ ରଘୁରାୟ ।
ଅହଂଭାବ ଯେ ବ୍ୟକ୍ତିର ହୋଇଛି ନିବୃତ୍ତ
ଏମନ୍ତ ଯେ ବ୍ୟକ୍ତି ଅଟେ ସମାହିତ ଚିତ୍ତ ।

ଘର ତାକୁ ଲାଗେ ରାମ ଅରଣ୍ୟ ସମାନ
ପ୍ରତ୍ୟାଗାତ୍ମା ପାଇଁ ଘର, ବନ ଏକ ଜାଣ ।
ପ୍ରଶାନ୍ତ ଚିତ୍ତ ପାଇଁକି ନଗର, ଅରଣ୍ୟ
ସମାନ ଶାନ୍ତି ଦେଇଣ ଥାନ୍ତି ତାଙ୍କ ମନ ।
ରାଗାଦି ବୃତ୍ତି ସମୂହେ ଯାର ଚିତ୍ତ ପୂର୍ଣ୍ଣ
ନିର୍ଜ୍ଜନ ବନ ତା ପ୍ରତି ନଗର ସମାନ ।
ଦୃଶ୍ୟାତୀତ, ଦୃଶ୍ୟମୟ ଉଭୟ ଆକାରେ
ଯେ ଜନ ଆତ୍ମାକୁ ଦେଖୁଥାଏ ନିରନ୍ତରେ,
ଯଥାର୍ଥରେ "ସମାହିତ" ଅଟେ ସେହିଜନ
କାହିଁରେ ଚଳିତ ନୁହେ ଯେଣୁ ତାର ମନ ।
ରାଗ ଦ୍ୱେଷ ବିବର୍ଜିତ ଅଟେ ଯେଉଁ ଜନ
ଅନ୍ତରରେ ହୋଇଛି ଯେ ସଦ୍ଭାବ ସମ୍ପନ୍ନ ।
ସକଳ ଭାବେଁ ଅଟନ୍ତି ଯାଠାରେ ସମାନ
ଜ୍ଞାନୀଙ୍କ ମତରେ ସେହି ସମାହିତ ଜନ ।
ସ୍ୱପନେ ବା ଜାଗରଣେ ସମାହିତ ଜନ
ସର୍ବଦୃଶ୍ୟ ସତ୍‌ରୂପେ କରେ ଦରଶନ ।
ଜଗତକୁ ଆତ୍ମାଠାରୁ ଭିନ୍ନ ନ ମଣଇ
ଭ୍ରମଦୃଶ୍ୟ କେବେହେଁ ତା ମନେ ନ ଜନ୍ମଇ ।
ଅନ୍ତର୍ମୁଖୀ ହୋଇଥାନ୍ତି ଯେଉଁ ଯୋଗୀ ଜନ
ସୁପ୍ତ, ଜାଗ୍ରତ, ଭ୍ରମଣ ତା ପ୍ରତି ସମାନ ।
ସର୍ବଦା ନଗର ଗ୍ରାମ ତା ପାଇଁ ଅରଣ୍ୟ
ସବୁକୁ ଦେଖଇ ସେହୁ ଆକାଶ ସମାନ ।
ତତ୍ତ୍ୱଦର୍ଶୀ କି ଜଗତ ଲାଗେ ସୁଶୀତଳ
ତୃଷ୍ଣାକୁଳ କୁ ଜଗତ ଅଟେ ଦାବାନଳ ।
କ୍ଷିତ୍ୟାଦି ପଞ୍ଚଭୂତ ଯେ ଅର୍ନ୍ତଦେଶେ ସ୍ଥିତ
ତୃଷ୍ଣାତୁର ଦେଖେ ତାଙ୍କୁ ସଦା ବିହିର୍ଗତ ।
ଆତ୍ମା ମଧ୍ୟେ ଯାହାଙ୍କର ଥାଏ ଅବସ୍ଥାନ
ତୃଷ୍ଣାତୁର ତାଙ୍କୁ କରେ ବାହ୍ୟେ ଦରଶନ ।
ବାସ୍ତବରେ ଅନ୍ତରେ ବା ବାହ୍ୟେ କିଛି ନାହିଁ
ବାସନା ବଳେ ଯାହାକି କଳପିତ ହୋଇ,
ସେହି ଆକାରେ ଆତ୍ମାର ହୁଅଇ ପ୍ରକାଶ
ଅନ୍ତଃବସ୍ତୁ ବିଶ୍ୱରୂପେ ହୁଏ ପରକାଶ ।
ଉପାଧି ଭିନ୍ନତା ଘେନି ବିଭିନ୍ନ ଆକାରେ
ସକଳ ବସ୍ତୁ ପ୍ରକାଶ ଲଭନ୍ତି ବିଶ୍ୱରେ ।
ଅନ୍ତର, ବାହାର, ଅହଂ, ଜଗତ ରୂପରେ
ଆତ୍ମା ହିଁ ପ୍ରକାଶ ପାଉଅଛି ନିରନ୍ତରେ ।

ଅହଂକାର, ଦୃଶ୍ୟବସ୍ତୁ ନୁହନ୍ତି ତ ସତ
ଯେ ଆତ୍ମା ଯାଙ୍କୁ ଗୁନ୍ଥିଛି ସେହି ଏକା ସତ ।
ବାସନାନୁସାରେ ଆତ୍ମା କରେ ଦରଶନ
ବାହ୍ୟ ଜଗତ ଅଥବା ସ୍ୱପ୍ନରାଜ୍ୟ ମାନ ।
ବାହ୍ୟାନ୍ତରର ଏ ଜଗତ ଆତ୍ମାରେ ଗ୍ରନ୍ଥିତ
ଆତ୍ମାରୁ ପୃଥକ ହେଲେ ଏମାନେ ଅସତ ।
ଯେବେ ତାହାଙ୍କୁ ପୃଥକ କରି ନ ପାରିବ
ଅହଂଭାବ ତେତେବେଳେ ଜନମ ଲଭିବ ।
କାଳ୍ପନିକ ଅଭାବର ହେବ ସରଜନା
ତ୍ରିତାପ ଜ୍ୱାଳା ତହିଁରୁ ଉପୁଜିବ ସିନା ।
ସତ୍‌ରୂପ ଆତ୍ମାଙ୍କୁ ଯେ ଦରଶନ କରି
ତାହା ପ୍ରତି ଅନୁରକ୍ତ ହୁଏ ଯେ ଶରୀରୀ ।
କାଳ୍ପନିକ ଅଭାବ ବା ସଭାବ ଯା ହେଉ
ଦୁଃଖିତ ବା ଆନନ୍ଦିତ କେଭେଁ ନୁହେ ସେହୁ ।
ସର୍ବବ୍ୟାପୀ ଆତ୍ମାଙ୍କୁ ଯେ ଦରଶନ କରି
ମନ ଯାର ଉପଶାନ୍ତ ହୁଏ ଧନୁର୍ଦ୍ଧାରୀ,
ସମାହିତ ପଦବାଚ୍ୟ ଅଟଇ ସେ ନର
କି ଅଭାବ ଅଛି ତାର ଏ ଧରା ଧାମର ।
ପ୍ରତ୍ୟଗାତ୍ମା, ବ୍ରହ୍ମ ଏହି ଉଭୟ ତତ୍ତ୍ୱରେ
ଜଗତ୍ ଓ ଅହଂଭାବ ଛନ୍ତି କେଉଁଥିରେ ?
ପ୍ରତ୍ୟାଗାତ୍ମା, ହେଉଛନ୍ତି ଦର୍ଶନ ସ୍ୱରୂପ
ଦୃଶ୍ୟ, ଜଗତ୍, ଅହଂ ତହିଁ ସମ୍ଭବ କିରୂପ ?
ଅଦ୍ୱୟ ଅସଙ୍ଗ ସମ ସ୍ୱରୂପ ଯେ ବ୍ରହ୍ମ
ତହିଁ କି ରହିବ ଅହଂ, ଜଗତ ବୈଷମ୍ୟ ?
ତରଙ୍ଗରେ ସୂର୍ଯ୍ୟ ରଶ୍ମି ଯେବେ ପଡ଼ିଯାଏ
ତରଳ ରଜତ ସମ ଦୂରୁ ଶୋଭାପାଏ ।
ସେପରି ଦେଖା ନ ଯାଏ ନିକଟକୁ ଗଲେ
ସେହିରୂପେ ଆତ୍ମାଠାରୁ ଦୂରେ ରହିଥିଲେ,
ଜଗତ ଓ ଅହଂଭାବ ଦେଖାଯାଏ ଭଲେ
ସେ ଦୃଶ୍ୟ ଦେଖା ନ ଯାଏ ଆତ୍ମା ଦର୍ଶନରେ ।
ବିଭାଗ କରତା ମନ ନାହିଁ ଯା' ଅନ୍ତର
ଚେତନ ଓ ଅଚେତନ ଭାବ ନାହିଁ ତାର ।
କେବଳ ସେ ସର୍ବବ୍ୟାପୀ ଆତ୍ମା ତା ଅନ୍ତରେ
ବିରାଜମାନ କରୁଣ ଥାଇ ନିରନ୍ତରେ ।
ଆକାଶ ସଦୃଶ ସୁନିର୍ମଳ ସେହି ଜନ
ନିର୍ବାହ କରଇ ଯଥାପ୍ରାପ୍ତ କର୍ମମାନ ।
ତାଠାରେ ହର୍ଷ ଶୋକାଦି କୌଣସି ବିକାର
ଦେଖାଯାଏ ନାହିଁ ଜାଣ ଆହେ ରଘୁବୀର ।
ସ୍ୱତଃ ସର୍ବ ପ୍ରାଣୀଠାରେ ଆତ୍ମ ଦରଶନ
କରୁଥାଏ ସଦା ରାମ ! ସେହି ଭାଗ୍ୟବାନ ।
ଐଶ୍ୱର୍ଯ୍ୟେ ବିମୁଗ୍ଧ ହୋଇ କରି ମୂଢ଼ ନର
ତହିଁ ମଜ୍ଜି ନ ବୁଝଇ ଅନିତ୍ୟତା ତାର
ଐଶ୍ୱର୍ଯ୍ୟାଧାର ଆତ୍ମାଙ୍କୁ କଲେହେଁ ଦର୍ଶନ
ତା ସତ୍‌ରୂପକୁ ବୁଝିବାକୁ ସେ ଅକ୍ଷମ ।
କିନ୍ତୁ ଯେଉଁ ବ୍ୟକ୍ତି ଲଭିଥାଏ ତତ୍ତ୍ୱଜ୍ଞାନ
ଆତ୍ମା ସତ୍‌ରୂପ, ବୁଝିବାକୁ ସେ ସକ୍ଷମ ।
ସମଦର୍ଶୀ ଭାବ ଲଭିଅଛି ଯେଉଁ ଜନ
ସୁଖ, ଦୁଃଖ, ଜରା, ମୃତ୍ୟୁ ବିଷ୍ଠା ବା ଚନ୍ଦନ ।
ତା ଦୃଷ୍ଟିରେ ଏହା ସବୁ ଅଟନ୍ତି ସମାନ
ସମଦର୍ଶୀର ମହତ୍ତ୍ୱ ବୁଝ ଆହେ ରାମ ।
ତତ୍ତ୍ୱଜ୍ଞ ବ୍ୟକ୍ତି ପକ୍ଷରେ ଯଜ୍ଞ, ଦାନ, କର୍ମ
ବିହିତ ବା ଅବିହିତ ନୁହେ କଦାଚନ ।
ଇଚ୍ଛା କଲେ ଏହା ସବୁ କରି ସେ ପାରଇ
ଇଚ୍ଛା ନୋହିଲେ, ନ କଲେ, କିଛି ହାନୀ ନାହିଁ ।
କର୍ମ ନ କଲେ ତାହାଙ୍କୁ ପାପ ନ ବାଧଇ
କର୍ମ କଲେ ସୁଦ୍ଧା ପୁଣ୍ୟ ନାହିଁ ତାଙ୍କ ପାଇଁ ।
ଯେଣୁ ଆତ୍ମା ସହ ସଦା ସେମାନେ ସଂସ୍ଥିତ
ଜଗତ୍ ପ୍ରପଞ୍ଚ ରୂପେ ସେ ସ୍ୱୟଂ ବିରାଜିତ ।
ନିଜେ ସେ ପାବନ ବ୍ରହ୍ମ ସ୍ୱରୂପ ଅଟନ୍ତି
ତତ୍ତ୍ୱବିତ୍‌ଙ୍କ ଲକ୍ଷଣ ଏହା ରଘୁପତି ।
ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ଧ୍ୟାନ ବିଚାର ବର୍ଣ୍ଣନେ
ନାମ ୪୫ଶ ସର୍ଗଃ ।



## ୪୬ଶ ସର୍ଗଃ

## ଭେଦନିରାଶ

କହନ୍ତି ବଶିଷ୍ଠ ପୁଣି ଶୁଣ ରଘୁବୀର
ଆତ୍ମ ପର୍ବତେ ଏ ଚିତ୍ତ ଉଦେ ଯେଉଁ କାଳ ।
ସତ୍ୟସିଦ୍ଧ ଭାବେ ଅନୁଭୂତ ଯେ ଗୁରୁତ୍ୱ
ତା ମଧ୍ୟେ ପ୍ରକାଶ ପାଏ ଏହି ଯେ ଜଗତ ।
ତୁମେ ଆମେ ଆଦିକରି ଯେତେ ଯାହା କହି
ତାହା ସବୁ ଆତ୍ମା ମଧ୍ୟେ ପରକାଶ ପାଇ ।

ଆତ୍ମାଗୁଡ଼ ମଧ୍ୟେ ଚିତ୍ ସ୍ୱାଦ ବିରାଜିତ
ସେ ଗୁଡ଼ର ସ୍ୱାଦ ଆତ୍ମା କରେ ଅନୁଭୂତ ।
ମୁହିଁ ତୁହି ଜଗତ୍‌ରୂପେ ଆତ୍ମା ତାକୁ ଚଖେ
ସେ ସ୍ୱାଦରେ ମଜ୍ଜି ଯାଇ ରହିଥାଏ ସୁଖେ ।
ଆତ୍ମାରୂପେ ଚନ୍ଦ୍ରେ ଥାଏ ଚିତ୍‌ରୂପ ସୁଧା
ସେହି ସୁଧା ଜଗତ୍ ରୂପେ ଅନୁଭୂତ ସଦା ।
'ମୁହିଁ ତୁହି' ଏହି ଭାବ ସ୍ୱତନ୍ତ୍ର ଭାବରେ
ଆବିର୍ଭୂତ ନୋହିଥାଏ ଜାଣ ରଘୁବୀରେ ।
ବାସ୍ତବରେ ଆତ୍ମା କିଛି ଜାଣି ନ ପାରଇ
ଯେହେତୁ ଜ୍ଞେୟ ବିଷୟ ତାଠାରେ ନ ଥାଇ ।
ଆତ୍ମା ମଧ୍ୟେ ଆଭାସିତ ଜଗତ ଆକୃତି
ଏକାନ୍ତ ଅସତ ତାହା ଜାଣ ରଘୁପତି ।
ଏ ଅନନ୍ତ ପୂର୍ଣ୍ଣ ଆତ୍ମା ଯାହାକି ନିବିଡ଼
ଆତ୍ମା ମଧ୍ୟେ ସଦାସ୍ଥିତ ଏହି ସତ୍ୟ ଦୃଢ଼ ।
ଅହଂ ଆଉ ଜଗତ୍‌ଭାବ ଆତ୍ମାରୁ ସ୍ୱତନ୍ତ୍ର
କେବେହେଁ ନୁହନ୍ତି ଜାଣ ଆହେ ରଘୁନାଥ ।
ଚିତ୍ତ ଚେତୟିତା ପୁଣି ଜଗଦାଦି ଭ୍ରମ
ଏହା ସବୁ କିଛି ନାହିଁ, ଖାଲି ଶାନ୍ତ ବ୍ରହ୍ମ ।
ଦ୍ରବଣ ହେତୁ ଜଳର ଆବର୍ତ୍ତ ବିକାର
ସେହିପରି ମାୟାଧୀଶ ସର୍ବଜ୍ଞ ଈଶ୍ୱର ।
ଜ୍ଞାନରୂପୀ ଆତ୍ମା ମଧ୍ୟେ କରେ ଦରଶନ
ଜୀବ ଓ ଜଗତଭାବ, ହେ ରଘୁନନ୍ଦନ
ଜଳ ଦ୍ରବଭାବ ସମ ସର୍ବଜ୍ଞ ଈଶ୍ୱରେ
ଅହଂ, ଦେଶ, କାଳ ଭାବ ଥାନ୍ତି ସ୍ୱଚ୍ଛନ୍ଦରେ ।
ସର୍ବଜ୍ଞ ଈଶ୍ୱର ସ୍ୱୀୟ ଐଶ୍ୱରିକ ଗୁଣେ
ନିରତିଶୟ ଆନନ୍ଦ ରୂପକୁ ସେ ଜାଣେ ।
ଅହଂକାରମୟ ଜୀବ ଭାବେ ପୁଣି ସେହି
ପ୍ରାଣ, ଇନ୍ଦ୍ରିୟ, ବିଷୟ ସହ ଏକ ହୋଇ
ଜୀବରୂପୀ ଆତ୍ମାରୂପେ ନିଜକୁ ମଣଇ
ଆତ୍ମାର ଏହି ସ୍ୱଭାବ ଜାଣ ରଘୁରାଇ ।
ଜୀବଭାବ ଜ୍ଞାନ ଯାହା ଆତ୍ମାରେ ନିହିତ
ତାତ୍ତ୍ୱିକ ଜ୍ଞାନ ତା ନୁହେ ଜାଣ ରଘୁନାଥ ।
ଅଜ୍ଞ ଜୀବ ଯାହା ପାଇଁ ଯେଉଁ ପରକାରେ
ବିଷୟ ଆସ୍ୱାଦ ଲଭି ତୃପ୍ତି ଲାଭ କରେ
ଈଶ୍ୱର ମଧ୍ୟ ତାହାର ଅନୁସରଣରେ
ବିବର୍ତ୍ତିତ ହୋଇଥାନ୍ତି ଜାଣ ରଘୁବୀରେ ।

ଆତ୍ମା ଅଟେ ସାର ବସ୍ତୁ ଜୀବ ଯେବେ ଜାଣେ
ସର୍ବଜୀବଙ୍କ ଜୀବନ ଆତ୍ମାକୁ ହିଁ ମଣେ ।
ଭୋଗ୍ୟ, ଭୋକ୍ତା ଏକ ବୋଲି ତେବେ ବୁଝିପାରେ
ଜୀବ ଈଶ୍ୱର ମଧ୍ୟରେ ପାର୍ଥକ୍ୟ ନ ଧରେ ।
ଜୀବ ଓ ଈଶ୍ୱର ଭେଦ ହେଲେ ତିରୋହିତ
ଈଶ୍ୱର, ତୁରୀୟ ବ୍ରହ୍ମ ଭେଦଯାଏ ଅସ୍ତ ।
କେବଳ ଶାନ୍ତ ଅଖଣ୍ଡ ବ୍ରହ୍ମ ବିରାଜଇ
ଏ ସାରା ଜଗତ ଏକ-ବ୍ରହ୍ମ ରଘୁରାଇ ।
କେବଳ ବ୍ରହ୍ମ ବ୍ୟତୀତ ସତ୍ତା ଯେ କାହାର
ନାହିଁ ବୋଲି ଜାଣିରଖ ଆହେ ରଘୁବୀର ।
ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ଭେଦ ନିରାଶ ବର୍ଣ୍ଣନେ
ନାମ ୪୬ଶ ସର୍ଗଃ ।



## ୪୭ଶ ସର୍ଗଃ

## ସୁରଘ ବୃତ୍ତାନ୍ତ ମାଣ୍ଡବ ଉପଦେଶ

କହନ୍ତି ବଶିଷ୍ଠ ମୁନି ରଘୁବୀର ଶୁଣ
କିରାତରାଜ ସୁରଘ ବୃତ୍ତାନ୍ତ ଯେସନ ।
ଗିରିବର ହିମାଳୟ ଉତ୍ତର ପ୍ରାନ୍ତରେ
ଶିବ ନିବାସ ବିରାଜେ କୈଳାସ ଶୃଙ୍ଗରେ ।
ସେ କୈଳାସ ଏକ ଅଂଶେ ହେମଜଟଗିରି
ତହିଁ ବିରାଜେ ବିଶାଳ କିରାତଙ୍କ ପଲ୍ଲୀ ।
ସୁରଘ ନାମକ ଏକ କିରାତ ରାଜନ
ତହିଁ ବାସକରି କରୁଥିଲେ ରାଜପଣ ।
ଖଳ ପ୍ରଜାଙ୍କର ଦୁଷ୍ଟ ସ୍ୱଭାବ ଦେଖିଣ
କଠୋର ଦଣ୍ଡ ବିଧାନ କଲେ ସେ ରାଜନ ।
ଦଣ୍ଡ ବିଧାନ କରିଣ ରାଜା ଦୁଃଖକରି
ଚିନ୍ତାରେ ନିମଗ୍ନ ରାଜା ଦିବସ ଶର୍ବରୀ ।
ମନେ ମନେ ଭାବୁଛନ୍ତି କିରାତ ରାଜନ
"ଅକାରଣେ କିମ୍ବା କଲି ଏ ଶାସ୍ତି ବିଧାନ ?
ପୀଡ଼ାଗ୍ରସ୍ତ ହେଲେ ମୁଁ ଯେପରି କଷ୍ଟ ପାଏ
ପ୍ରଜାଙ୍କୁ ସେପରି କଷ୍ଟ ଭୋଗିବାକୁ ହୁଏ ।
ତେଣୁ ଏଣିକି ପ୍ରଜାଙ୍କୁ ଦେବଇଁ ମୁଁ ଧନ
ତାହାହେଲେ ଆନନ୍ଦରେ କାଟିବେ ସେ ଦିନ ।
ଦୁଷ୍ଟ ପ୍ରଜାଙ୍କୁ ଦମନ ନ କରିବି ଯେବେ
ରାଜ୍ୟ ମଧ୍ୟେ ବିଶୃଙ୍ଖଳା ଉପୁଜିବ ତେବେ ।

ତେଣୁ ଘୋଟିଯିବ ଅରାଜକତା ରାଜ୍ୟରେ
ଅବଶ୍ୟ କର୍ତ୍ତବ୍ୟ ମୋର ତାଙ୍କୁ ଦଣ୍ଡିବାରେ ।
ସ୍ଥିର କରି ନ ପାରଇ କି କରିବି ବୋଲି
ଏତେ ଭାବି ଭାବି ରାଜା ସଂଶୟରେ ପଡ଼ି ।
ମାଣ୍ଡବ ମୁନି ତା ଘରେ ପହଞ୍ଚନ୍ତି ଆସି
ପାଦ୍ୟଅର୍ଘ୍ୟ ଦେଇ ରାଜା ମୁନିଙ୍କୁ ସମ୍ଭାସୀ ।
ସୁରଘ କହନ୍ତି ମୁନି ! ତବ ଆଗମନେ
ଭାଗ୍ୟ ଉଦୟ ମୋହର ହେଲା ଆଜ ଦିନେ ।
ସର୍ବ ଧର୍ମବେତ୍ତା ଦେବ ଅଟନ୍ତି ଆପଣ
ପରମ ପଦରେ ସଦା ଥାଏ ତୁମ ମନ
ଏକ ସଂଶୟ ମୋହର କରିବାକୁ ଦୂର
ପ୍ରଜାଙ୍କୁ ଦଣ୍ଡବିଧାନେ ଦୁଃଖ ମନେ ମୋର ।
ଅନୁଗ୍ରହ କରିବାକୁ ହୁଏ ମୁଁ କାତର
ଏହି ଚିନ୍ତା ମୁନି ମୋତେ କରଇ ଅସ୍ଥିର ।
ଯାହା କଲେ ଚିତ୍ତ ଶାନ୍ତି ଘଟିବ ମୋହର
ସମଭାବ ସମ୍ପନ୍ନ ମୁଁ ହେବି ସର୍ବସ୍ଥଳ,
ରୋଗକୁ ଔଷଧ ମୋର ବାଢ଼ିଦିଅ ମୁନେ
ନିରନ୍ତର ସେବୁଥିବି ତୁମର ଚରଣେ ।
"କହନ୍ତି ମାଣ୍ଡବ ଏବେ ଶୁଣ ହେ ରାଜନ
ନିଜ ଯତ୍ନେ ନିଜ ଦୁଃଖ ହେବ ନିବାରଣ ।
ଶରତ ଆଗମେ ଯଥା ମେଘମାଳା ଲୀନ
ଆତ୍ମ ବିଚାରରେ ହେବ ମନକଷ୍ଟ କ୍ଷୀଣ ।
ନିଜ ଶରୀର ନିଜର ଇନ୍ଦ୍ରିୟ ବିଷୟ
ମନେ ମନେ ବିଚାରିଣ ମନକର ଥୟ ।
"ମୁହିଁ କିଏ, ଏ ଜଗତ କିପରି ଜନ୍ମିଲା ।
ପ୍ରାଣୀଙ୍କ ଜନମ, ମୃତ୍ୟୁ କି କାରଣେ ହେଲା" ।
ମନେ ମନେ ବିଚାର ତା କରହେ ରାଜନ
ମହତ୍ତ୍ୱଲାଭ କରିବ୍ ଅବଶ୍ୟ ଆପଣ ।
ଏହି ବିଚାର ବଳରେ ନିଜର ସ୍ୱରୂପ
ଯେବେ ପରିଜ୍ଞାତ ହୋଇ ପାରିବ ହେ ନୃପ ।
ନିଜ ଚିତ୍ତ ସମଭାବେ ହେବ ଅବସ୍ଥିତ
ହର୍ଷକ୍ରୋଧରେ ଚଞ୍ଚଳ ନୋହିବ ତୋ ଚିତ୍ତ ।
ତରଙ୍ଗ ଭାବ ତେଜିଣ ଜଳର ତରଙ୍ଗ
ଜଳଭାବକୁ ନେବାରେ ଯଥା ହୁଏ ବ୍ୟଗ୍ର,
ଚଞ୍ଚଳ ମନକୁ ତେଜି ତୁମେ ସେହିପରି
ପରମଶାନ୍ତି ଲଭିବ ଆହେ ଦଣ୍ଡଧାରୀ ।
ତତ୍ତ୍ୱଦର୍ଶନରେ ଯେବେ ଲଭିବ ସନ୍ତୋଷ ।
ପୁତ୍ରପରି ପ୍ରଜାମାନେ ହେବେ ତୁମ ବଶ ।
ସବୁ ପ୍ରଜାଙ୍କର ପିତୃତୁଲ୍ୟ ହୋଇକରି
ଆନନ୍ଦେ ରାଜ୍ୟ ପାଳିବ ଆହେ ଦଣ୍ଡଧାରୀ ।
ବିବେକ ପ୍ରଦୀପ ଦ୍ୱାର ଆତ୍ମଦର୍ଶନରେ
ସକ୍ଷମ ହେଲେ ମହତ୍ତ୍ୱ ଲଭିବ ଅଚିରେ ।
ନଭ ଅପେକ୍ଷା ମହତ୍ତ୍ୱ ବଢ଼ିବ ତୁମ୍ଭର
ମୋ କହିବା କଥା ରାଜା ମନେ ହେଜକର ।
ସେ ମହତ୍ତ୍ୱବଳେ ତୁମ ଚିତ୍ତ ହେ ରାଜନ
ସଂସାରରେ ଲିପ୍ତହେବ ନାହିଁ କଦାଚନ ।
କାମନା ମୟ ଚିତ୍ତହିଁ କ୍ଷୁଦ୍ର ବିଷୟରେ
ଲିପ୍ତ ହୋଇ ସଢୁଥାଏ ରାଜା ନିରନ୍ତରେ ।
ଆତ୍ମ ଦରଶନେ ଦୃଶ୍ୟପ୍ରପଞ୍ଚ ରାଜନ
ଆପେ ଆପେ ଲୀନ ହୋଇଯାଇଥାଏ ଜାଣ ।
ବୁଦ୍ଧିବଳେ ଦୃଶ୍ୟମାନ ଯେବେ ତେଜିପାର
ସର୍ବ ସ୍ୱରୂପ ଆତ୍ମାକୁ ତେବେ ଲଭିପାର ।
ସବୁ ଅବସ୍ଥାକୁ ରାଜା ଗୋଟି ଗୋଟି କରି
ଯେବେ ତେଜ୍ୟା କରିପାର ଆହେ ଦଣ୍ଡଧାରୀ ।
ବାକିଯାହା ଅବଶିଷ୍ଟ ରହିବ ରାଜନ
ତାହାକୁ ହିଁ ଆତ୍ମା ବୋଲି ବୁଝିବ ଆପଣ ।
ମାମୁଲି ବସ୍ତୁ ଏ ଯେବେ ଇଚ୍ଛା ବ ରାଜନ
ଅନ୍ୟ ଏକ ବସ୍ତୁ ତେଜିବାକୁ ହେବ ଜାଣ ।
ଆତ୍ମାକୁ ଯଦ୍ୟପି ଲାଭ କରିବାକୁ ହେବ
ସକଳ ଅବସ୍ଥା ତେଜିବାକୁ ହିଁ ପଡ଼ିବ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସୁରଘ ବୃତ୍ତାନ୍ତେ ମାଣ୍ଡବ ଉପଦେଶ**
**ବର୍ଣ୍ଣନେ ନାମ ୪୭ଶ ସର୍ଗଃ ।**



## ୪୮ଶ ସର୍ଗଃ

## ସୁରଘ ବୃତ୍ତାନ୍ତ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ଶ୍ରୀ ରଘୁନନ୍ଦନ
ମାଣ୍ଡବ ଋଷି ସୁରଘ ରାଜାଙ୍କୁ ଏସନ ।
ଉପଦେଶ ଦେଇ ତହିଁ କରନ୍ତି ପ୍ରସ୍ଥାନ
ନିର୍ଜନରେ ବସି ତହୁଁ କିରାତ ରାଜନ ।
ଏସନ ରୂପ ଚିନ୍ତାରେ ହୁଅନ୍ତି ମଗନ
"ଏ ଜଗତ ମୋର ନୁହେଁ ଶୁଣ ଆରେ ମନ ।

ନୁହେ ଏ ପୃଥିବୀ ମୋର ଆରେ ମନ ବୁଝ
ମୁହିଁ ବା ମୋହର ନୁହେ ଏ କିରାତ ରାଜ୍ୟ ।
ଏହି ରାଜ୍ୟେ ଅଭିଷିକ୍ତ ହୋଇଛି ମୁଁ ଯେଣୁ
ଏହି କଳପନା ଯୋଗୁଁ ଏ ରାଜ୍ୟ ମୋ ତେଣୁ ।
କିନ୍ତୁ ସେ କଳ୍ପନା ଏବେ କଲି ପରିହାର
ତେଣୁ ଏ ଦେଶ ମୁଁ ନୁହେ ଅଥବା ମୋହର ।
ତେଣୁ ଏ ନଗର ପୁଣି ପରିଜନ ବର୍ଗ
ଯାଙ୍କ ସହ ମୋର ନାହିଁ କୌଣସି ସମ୍ପର୍କ ।
ଭୋଗ, ଭୋଗ୍ୟ, କଳତ୍ରାଦି ଅବଶିଷ୍ଟ ଯାହା
ମୁହିଁ ବା ମୋହର ନୁହେଁ ଜାଣଇ ମୁଁ ଏହା ।
ହସ୍ତ ପଦାଦି ବିଶିଷ୍ଟ ଏହି ଯେ ଶରୀର
ଏହାକି ମୁହିଁରେ ମନ ? ଏହା ନ ବିଚର ।
ଅସ୍ଥି ମାଂସ ମେଦ ଆଦି ଯା କିଛି ଏ ଦେହେ
ସେ ସବୁ ତ ଆରେ ମନ ମୁ ନୁହେଁ କେବେହେଁ ।
ଯେଣୁ ମୁଁ ଚେତନ ଏହା ସବୁ ଅଚେତନ
ତେଣୁ କରି ହସ୍ତ, ପଦ, ଚକ୍ଷୁ, ନାସା, କର୍ଣ୍ଣ,
କର୍ମେନ୍ଦ୍ରିୟ ଜ୍ଞାନେନ୍ଦ୍ରିୟ, ଅନ୍ୟ ଯାହା ଅଛି
ସେ ସକଳ ନୁହେ ମୁହିଁ, ନାହିଁ ମୋର କିଛି ।
ଏହି ଅହଙ୍କାର ବୁଦ୍ଧି ଏ ଚଞ୍ଚଳ ମନ
ନୁହେ ମୁହିଁ ଏହା, ମୋର ନୁହନ୍ତି ଏମାନ ।
ଆଉ କି ବାକି ରହିଲା ତାହାହିଁ ବିଚର
ଜୀବ ଅବଶିଷ୍ଟ ମାତ୍ର ଆସେ ମୋ ମନର ।
ଅବଶ୍ୟ ଜୀବ ଏ ମୁହିଁ ହୋଇପାରେ ମନ
କିନ୍ତୁ ତ ଜୀବର ନିଜ ଶକ୍ତି ନାହିଁ ଜାଣ ।
ଚୈତନ୍ୟ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥାଏ ଜୀବ
ମୁହିଁ ମଧ ଜୀବ ନୁହେ ଏହାହିଁ ବାସ୍ତବ ।
ତାହାହେଲେ ମୁଁ କେବଳ ସେ ବିଶୁଦ୍ଧ ଚିତ
ଏତେ କାଳ ଚେଷ୍ଟା ମୋର ଏବେ ସଫଳିତ ।
ମୁହିଁ ଯେ ଚିତ୍‌ସ୍ୱରୂପ ଏହା ବୁଝିପାରି
ଆତ୍ମଲାଭ କରିଲଇଁ ସୌଭାଗ୍ୟ ମୋହରି ।
ଇନ୍ଦ୍ର ଚନ୍ଦ୍ର ବାୟୁ ଆଦି ମଣିମାଳା ସମ
ଯେଉଁ ଆତ୍ମାସୂତ୍ରେ ଗୁନ୍ଥା ଅଛନ୍ତି ଏମାନ ।
ମୁହିଁ ଅଟେ ସେହି ଆତ୍ମା ଏବେ ମୁଁ ଜାଣଇ
ଦୃଶ୍ୟର ଆତ୍ମା ସହିତ ସମ୍ପର୍କ ନ ଥାଇ ।
ସକଳ ଦିଗ ବିଦିଗ ଚିତ୍‌ଶକ୍ତିରେ ପୂର୍ଣ୍ଣ
ସେହି ଚିତ୍‌ଶକ୍ତି ଅଟେ ଅତିଶୟ ସୂକ୍ଷ୍ମ ।

ତେଣୁକରି ସର୍ବଭାବେ ଅନୁଗତ ସେହି
ଯଦିଚ ଭାବ ଅଭାବ ତହିଁ କିଛି ନାହିଁ ।
ସର୍ବଭୂବନ ଅନ୍ତରେ ତାହା ଅବସ୍ଥିତ
ସର୍ବ ଶକ୍ତିର ଆଧାର ସ୍ୱରୂପ ସେହିତ ।
ସରବବିଧ ଆକାର ଧରେ ସେ ଶକତି
ଅଥଚ ତାହାର ନାହିଁ କୌଣସି ଆକୃତି ।
ନାନାଭୂତ ଆକାରରେ ପରକାଶେ ସେହି
ପୁଣି ସେହି ଭୂତଙ୍କୁ ସେ ଧାରଣ କରଇ ।
ଏହି ଯେ ପରମଚିତ୍, ସେ ମୋହର ଆତ୍ମା
ନାନା ଆକୃତିରେ ଆଭାସିତ ସେ ମୋ ଆତ୍ମା ।
ସର୍ବବ୍ୟାପୀ ଏହି ଆତ୍ମା, ସର୍ବବୁଦ୍ଧି, ସାକ୍ଷୀ
ଦ୍ରଷ୍ଟା, ଦୃଶ୍ୟ, ଦରଶନ ଆକାରେ ବ୍ୟାପିଛି ।
ତଦ୍ୱାରା ସକଳ ଭ୍ରମ ସୃଷ୍ଟି କରେ ସେହି
ଅତିକଷ୍ଟ ସେ ଭ୍ରମରୁ ପାଇବାକୁ ତ୍ରାହି ।
ଏହି ଚିତ୍‌ଶକ୍ତି ବୁଦ୍ଧି ପ୍ରଦୀପ ଜଳାଏ
ଚିତ୍ତ-ଅଭିନେତା ଅଭିନୟକୁ ଦେଖାଏ ।
ପ୍ରଜାଗଣଙ୍କ ଶାସନ, ପାଳନ ନିମିତ୍ତ
ବୃଥା ଦୈହିକ ଚେଷ୍ଟା ମୁଁ କଲି ଏ ପର୍ଯ୍ୟନ୍ତ !
ଏବେ ଦେଖ ସେ ଦୈହିକ ଚେଷ୍ଟା ନୁହେ କିଛି
ଆହେ ସେ କୁ-ଦୃଷ୍ଟି ମୋର ଦୂର ହୋଇଅଛି ।
ଏବେ ମୁଁ ବୁଝୁଛି ମୁଁ ଯେ ପ୍ରବୋଧ ଲଭିଛି
ଏ ଜଗତେ ମଧ ସର୍ବ ଶାନ୍ତି ବିରାଜୁଛି ।
ସକଳ ବିଷୟ ଭ୍ରାନ୍ତିମୟ ଏ ଜଗତେ,
ଭାଗ ଭାଗ କରି ତାକୁ ବୁଝିଲେ ସୁଚିତେ
ଭ୍ରମ ଛଡ଼ା ଅନ୍ୟକିଛି ତହିଁରେ ତ ନୋହି
ସବୁରି ନେତ୍ରକୁ ଭ୍ରମ ଜାଲ ଘେରିଛଇ ।
ଶାସନ, ପାଳନ, ହର୍ଷ, କ୍ରୋଧ ଯାଙ୍କ ସ୍ଥାନ
ଏପରି ବିଚର ବଳେ ରହିବ କେସନ ?
ସୁଖ ବା ଦୁଃଖ କିରୂପେ ତହୁଁ ଉପୁଜିବ
ଯେଣୁ ଏ ସକଳ ବ୍ରହ୍ମ, କିଏ ନ କହିବ ?
ଏତେଦିନଯାଏ ବୃଥା ମୋହେ ଗ୍ରସ୍ତ ଥିଲି
ଭାଗ୍ୟ ବଶେ ସେହି ମୋହ ଏବେ ପାଶୋରିଲି ।
ଆନନ୍ଦ ବ୍ରହ୍ମରେ କାହିଁ ଶୋକ ଅବା ମୋହ
ଶୋକ ମୋହ ସିନା ଖାଲି ମନର ବିଷୟ ।
ହେ ସୁନ୍ଦର ଚିଦାକାଶ ! ଭାଗ୍ୟବଶେ ମୁହିଁ
ଆଜି ତୁମ ଦରଶନ ଲାଭ କରିଲଇଁ ।

ତୁମ୍ଭଙ୍କୁ ମୋହର ବାରମ୍ବାର ନମସ୍କାର
ଆହା ! ଯଥାର୍ଥ ଜ୍ଞାନ ମୁଁ ଲଭିଛି ଏଥର ।
ଜ୍ଞାନ ଲଭି, ସେହି କ୍ଷୁଦ୍ର ଏବେ ମୁଁ ଅନନ୍ତ
ତେଣୁ ନିଜକୁ କରେ ମୁଁ କୋଟି ଦଣ୍ଡବତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସୁରଘ ବୃତ୍ତାନ୍ତ ବର୍ଣ୍ଣନେ**
**ନାମ ୪୮ଶ ସର୍ଗଃ ।**



## ୪୯ଶ ସର୍ଗଃ

## ସୁରଘ ବୃତ୍ତାନ୍ତ ସମାପ୍ତି

କହନ୍ତି ବଶିଷ୍ଠ ବିଶ୍ୱାମିତ୍ର ମହାମୁନି
ବ୍ରାହ୍ମଣତ୍ୱ ଲଭିଥିଲେ ଯେଉଁ ଚେଷ୍ଟା ଘେନି ।
ସୁରଘ ରାଜା ବିବେକ, ବିଚାର ବଳରେ
ବ୍ରହ୍ମପଦ ଲଭିଥିଲେ ସେହି ପରକାରେ ।
ରାଜକାର୍ଯ୍ୟ କଲାବେଳେ ଅନିଷ୍ଟ ଘଟିଲେ
ଦୁଃଖିତ ହୁଅନ୍ତି ନାହିଁ ରାଜା କେତେବେଳେ ।
ଇଷ୍ଟଲାଭ ହୋଇଥାଏ କାର୍ଯ୍ୟରେ ଯଦ୍ୟପି
ଆନନ୍ଦିତ ନ ହୁଅନ୍ତି ମନରେ କଦାପି ।
ଇଷ୍ଟ ବା ଅନିଷ୍ଟ ଆଦି ସକଳ ବିଷୟେ
ସମଦର୍ଶନ ସମ୍ପନ୍ନ ଥାନ୍ତି ନିଃସନ୍ଦେହେ ।
ଶାସନ ପାଳନ ରାଜକାର୍ଯ୍ୟ ସମ୍ପାଦନେ
ହରଷ ବିଷାଦ ନ ଆସଇ ତାଙ୍କ ମନେ ।
ହରଷ ବା କ୍ରୋଧ ଯେବେ ହୁଏ ଉପସ୍ଥିତ
ସାଗର ସମ ଗମ୍ଭୀର ରହନ୍ତି ସେ ସ୍ଥିତ ।
ନିର୍ଦ୍ଦୟ ବା ଦୟାଭାବ ନ ବହନ୍ତି ସେହି
ସୁଖ ବା ଦୁଃଖ ପ୍ରକାଶ କେଭେଁ ସେ ନୁହନ୍ତି
ପ୍ରାର୍ଥୀ ବା ଅପ୍ରାର୍ଥୀ ହେବା କଥା ନ ଜାଣନ୍ତି ।
ଏହିପରି ରାଜକାର୍ଯ୍ୟ କରି ସମ୍ପାଦନ
ଅନ୍ତ ଶୀତଳତା ଲାଭ କଲେ ସେ ରାଜନ ।
ସମଦର୍ଶୀ ହୋଇ ସେହୁ ପୂର୍ଣ୍ଣଚନ୍ଦ୍ର ସମ
ବିରାଜମାନ କରୁଣଥାନ୍ତି ସେ ରାଜନ ।
ଏ ଜଗତ ଚିତ୍‌ଶକ୍ତି ସଙ୍କଳ୍ପ ସମ୍ଭୁତ
ଏହିରୂପ ଦରଶନ ହୋଇ ସେ ପ୍ରାପତ ।
ଜାଗରଣେ ବା ସ୍ୱପନେ ଉଭୟାବସ୍ଥାରେ
ସମାଧିସ୍ଥ ଜନପରି ଥାନ୍ତି ନିର୍ବିକାରେ ।
ଅନାଶକ୍ତ ଭାବେ ରାଜ୍ୟ ପାଳନ କରନ୍ତି
ଏହିପରି ବହୁ ବର୍ଷ ଗଲା ତାଙ୍କ ବିତି ।
ସାଗରେ ପ୍ରବେଶ କରେ ନଦୀ ଯେଉଁପରି
ପ୍ରାରବ୍ଧ କ୍ଷୟେ ଶରୀର ତେଜିଣ ସେପରି,
ବ୍ରହ୍ମେ ପ୍ରବେଶ ହୋଇଲେ ସୁରଘ ତେସନ
ଆତ୍ମା ସହିତ ଏକତ୍ୱ ଲଭିଲେ ସେ ଜାଣ ।
ଘଟ ବିନାଶ ହୋଇଲେ ଯଥା ଘଟାକାଶ
ମିଶିଯାଏ ମହାକାଶେ ନ ରହେ ତା ଶେଷ ।
ମହାତ୍ମା ସୁରଘ ତଥା ଆତ୍ମାର ସହିତ
ସମ୍ମିଳିତ ହୋଇକରି ଲଭିଲେ ଏକତ୍ୱ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସୁରଘ ବୃତ୍ତାନ୍ତ ସମାପ୍ତି ବର୍ଣ୍ଣନେ**
**ନାମ ୪୯ଶ ସର୍ଗଃ ।**



## ୫୦ଶ ସର୍ଗଃ

## ସୁରଘ ପରିଘ ସମାଗମ

କହନ୍ତି ବଶିଷ୍ଠ ମୁନି ତୁମେ ହେ ରାଘବ
ତତ୍ତ୍ୱଜ୍ଞାନ ଲାଭ କରି ଦ୍ୱନ୍ଦ୍ୱାତୀତ ଭବ ।
ଅଜ୍ଞାନ ଅନ୍ଧକାରରେ ହୋଇଣ ନିମଗ୍ନ
ପରିତାପଗ୍ରସ୍ତ ଯଦି ହୋଇଯାଏ ମନ,
ତତ୍ତ୍ୱଦୃଷ୍ଟି ସାହାଯ୍ୟରେ ଆତ୍ମାଲୋକ ପାଇ
ସଙ୍ଗେ ସଙ୍ଗେ ପରିତାପ ତାର ଦୂର ହୋଇ ।
ମୋହ କୂପେ ମନ ନିପତିତ ହୋଇଥାଏ
ସୁରଘ ସମ ବିବେକ ରଜ୍ଜୁ ଯଦିପାଏ ।
ସେହି ବିବେକ ରଜ୍ଜୁକୁ ଧରି ଅନାୟାସେ
ମୋହ କୂପରୁ ନିର୍ଗତ ହୋଇଣ ପାରେ ସେ ।
ଅବଲମ୍ବନ କରିଣ ବିବେକକୁ ତୁମେ
ଏକ, ସମାଧାନ ହୋଇ ରହ ଧରା ଧାମେ ।
ଶ୍ରୀରାମ ପୁଚ୍ଛନ୍ତି ଶୁଣ ଆହେ ମୁନିବର
ମନତ ଅଟଇ ଦେବ ଅତୀବ ଚଞ୍ଚଳ ।
ଏକ ସମାଧାନତା ସେ ଲଭିବ କିପରି ?
ସେ ଜଟିଳ ପ୍ରଶ୍ନ ଦେବ କହନ୍ତୁ ବିସ୍ତାରି ।
କହନ୍ତି ବଶିଷ୍ଠ ଏବେ ହେ ରାଘବ ଶୁଣ
ସୁରଘ, ପର୍ଣ୍ଣାଦଙ୍କର ଯେଉଁ ବିବରଣ ।

ମହର୍ଷି ପର୍ଣ୍ଣାଦ ପୁଣି ସୁରଘ ପ୍ରବୃଦ୍ଧ
ଏକରୂପ ସମାଧିରେ ଯେହୁ ଥିଲେ ସିଦ୍ଧ ।
ତାହାଙ୍କର ପରସ୍ପର ଯେବଣ ଆଳାପ
ବର୍ଣ୍ଣନ କରୁଛି ଶୁଣ ତୁମର ସମୀପ ।
ପରିଘ ରାଜନ ଥିଲେ ପାରସୀକ ଦେଶେ
ସୁରଘଙ୍କର ପରମ ବାନ୍ଧବ ଥିଲେ ସେ ।
ପ୍ରଜା ପାପ ହେତୁ ସେହି ପରିଘ ରାଜ୍ୟରେ
ବହୁକାଳ ବିତେ ଇନ୍ଦ୍ର ବରଷା ନ କରେ ।
ଅନାବୃଷ୍ଟି ହେତୁ ତହିଁ ପଡ଼ଇ ଅକାଳ
ଅନ୍ନ ଅଭାବରେ ନାଶଗଲେ ପ୍ରଜାକୁଳ ।
ପ୍ରଜାଙ୍କ ରକ୍ଷଣ ପାଇଁ ହୋଇ ଅସମର୍ଥ
ଦୁଃଖମଗ୍ନ ହୋଇ ହେଲେ କଉପୀନ ବନ୍ତ ।
ରାଜ୍ୟ ତେଜି ତପସ୍ୟାର୍ଥେ ଗମନ୍ତି ବନସ୍ତ
ଆହାର ତାଙ୍କ କେବଳ ବନ ଶୁଷ୍କ ପତ୍ର ।
ତେଣୁ ପର୍ଣ୍ଣାଦ ନାମରେ ହେଲେ ସେ ବିଦିତ
ସେହି ପର୍ଣ୍ଣାଦ ନାମଟି ହେଲା ତହିଁ ଖ୍ୟାତ ।
ସହସ୍ର ବରଷ କାଳ ତପେ କଟିଗଲା
ରାଜାଙ୍କର ତତ୍ତ୍ୱଜ୍ଞାନ ଉଦିତ ହୋଇଲା ।
ଜୀବନମୁକତ ଭାବେ ପୃଥିବୀ ବୁଲନ୍ତି
ସୁରଘଙ୍କ ରାଜ୍ୟେ ଦିନେ ଆସି ପହଞ୍ଚନ୍ତି ।
ପରସ୍ପର ପରସ୍ପରେ ଆଲିଙ୍ଗନ କଲେ
ଅଭ୍ୟର୍ଥନା ପରେ ଏକ ଆସନେ ବସିଲେ ।
ସୁରଘଙ୍କୁ କହୁଛନ୍ତି ସେ ପରିଘ ମୁନି
ମାଣ୍ଡବ୍ୟଙ୍କ ସୁଦୟାରୁ ତୁମେ ତପୀ ଜ୍ଞାନୀ ।
ପରମାତ୍ମାଙ୍କ କୃପାରୁ ଲଭିଛି ମୁଁ ଜ୍ଞାନ
ଦୁଃଖାତୀତ ହୋଇଅଛ କି ହେ ତପୋଧନ ?
ପ୍ରସନ୍ନ ଚିତ୍ତ ତୁମେ କି ଆତ୍ମାରାମ ହୋଇ
ସମଭାବ ଲଭିପାରି ଅଛ କି ଗୋସାଇଁ ?
କର୍ତ୍ତବ୍ୟ କରିପାରୁଛ କିହେ ତପୀବର
ଆଧି ବ୍ୟାଧିହୀନ କିହେ ତୁମ ପ୍ରଜାକୁଳ ।
ଧନଧାନ୍ୟେ ପୂର୍ଣ୍ଣ ଅଟନ୍ତି କି ପ୍ରଜାକୁଳ
ପରିତାପଶୂନ୍ୟ ମନ ଅଟେ କି ତାଙ୍କର ?
ହୋଇଛି ତ ଶସ୍ୟପୂର୍ଣ୍ଣ ତୁମର ସାମ୍ରାଜ୍ୟ
ଦିଗନ୍ତ ବ୍ୟାପିଛି କିହେ ତୁମର ସୁକାର୍ଯ୍ୟ ?
ଆନନ୍ଦେ ପ୍ରଜାଏ ଗାଆନ୍ତି କି ତୁମ ଯଶ
ତୁମ ଯଶ ଗାୟନ କି ତାଙ୍କର ବିଳାସ ?
ଭଲେ ଅଛନ୍ତି କି ତୁମ ପୁତ୍ର ଓ କଳତ୍ର
ଭୃତ୍ୟ ନଗରବାସୀଙ୍କ ସର୍ବମଙ୍ଗଳ ତ ?
ଆଧିବ୍ୟାଧି ଶୂନ୍ୟ ହୋଇଛି କି ତୁମ ଦେହ
ଇହଲୋକ ପରଲୋକ ପୁଣ୍ୟଫଳ ପାଅ ?
ବିଷୟ ବିରକ୍ତ ଅଛି ଟିକି ତୁମ ମନ ?
ଅଥୟ କି ତୁମ୍ଭଙ୍କୁ ନ ଦେଖି ପ୍ରଜାଗଣ ?
ବହୁକାଳ ପରସ୍ପର ଦୂରେ ଥିଲେ ଆମ୍ଭେ
ସୌଭାଗ୍ୟ ବଶତଃ ଭେଟ ହୋଇଅଛି ଏବେ ।
ସମାଧି ପାଇଁକି ଅନୁଷ୍ଠାନ ଆଚରଣ
ପ୍ରତ୍ୟହ କରୁଛଟିକି କିରାତ ରାଜନ ?

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ସୁରଘ ପରିଘ ସମାଗମ ବର୍ଣ୍ଣନେ ନାମ ୫୦ଶ ସର୍ଗଃ ।**



## ୫୧ଶ ସର୍ଗଃ
## ସମାଧି ସିଦ୍ଧାନ୍ତ

କହନ୍ତି ସୁରଘ ରାଜା ପରିଘଙ୍କୁ ଚାହିଁ
ସମାଧି ବିଷୟେ ମୋତେ ପଚାର କିପାଁଇ ?
ସମାଧି ଅନୁଷ୍ଠାନ ମୁଁ କରୁଛି କି ନାହିଁ
ତୁମ ପ୍ରଶ୍ନର ଉଦ୍ଦେଶ୍ୟ ବୁଝି ନ ପାରଇ ।
ତତ୍ତ୍ୱ ପରିଜ୍ଞାତ ହୋଇଅଛି ଯେଉଁ ଲୋକ
ଅସମାହିତ କେବେକି ଥାଏ ତା ବିବେକ ?
ଯେ ଅଟେ ପ୍ରବୁଦ୍ଧ, ଆତ୍ମତତ୍ତ୍ୱେ ନିଷ୍ଠାବାନ
ବାହ୍ୟ କର୍ମେ ରତ ରହିଲେ ହେଁ ସେହି ଜନ,
ଅନ୍ତରରେ ସର୍ବକ୍ଷଣେ ଥାଏ ସମାହିତ
ସେହି ଅବସ୍ଥା ତାହାର ସାଧେ ସଦା ହିତ ।
ଆତ୍ମାପାଇଁ ନିଷ୍ଠାବାନ ନୁହେ ଯେହୁ ନର
ପଦ୍ମାସନେ ମୌନେ ଥାଏ ଯୋଡ଼ି ବେନିକର,
ଯଥାର୍ଥରେ ସମାହିତ ନୁହଇ ଯେ ସେହି
ତତ୍ତ୍ୱଜ୍ଞାନ ବାସ୍ତବରେ ସମାଧି ବୋଲାଇ ।
ନୀରବ ହୋଇ ବସିବା ନୁହଇ ସମାଧି
ବ୍ରହ୍ମରେ ସଂଲଗ୍ନ ନିତ୍ୟ ସନ୍ତୁଷ୍ଟ ଯେ ବୁଦ୍ଧି,
ପଣ୍ଡିତଙ୍କ ମତେ ତାହା ସମାଧି ବୋଲାଇ
ବ୍ରହ୍ମ ଲଭି ମନ ଯେବେ ନିଶ୍ଚିନ୍ତ ରହଇ ।
ତତ୍ତ୍ୱବୋଧେ ମନ ଯେବେ ହୁଏ ଉପନୀତ
ସେହି ମୁହୂର୍ତ୍ତରୁ ରହିଥାଏ ସମାଧିସ୍ଥ ।
ତତ୍ତ୍ୱବୋଧ ପୂର୍ଣ୍ଣ ମନ କେତେବେଳେ ହେଲେ
ସମାଧି ବିଚ୍ୟୁତ ନୋହିଥାଏ କସ୍ମିନ କାଳେ ।

ସ୍ରୋତ ସ୍ରୋତୀ ସଦା ଯଥା ରହେ ପ୍ରବାହିତ
ତତ୍ତ୍ୱଦର୍ଶୀ ସଦା ତତ୍ତ୍ୱଜ୍ଞାନେ ଥାଏ ରତ ।
ଆତ୍ମ ବିସ୍ମୃତ ନୁହଇ କେଉଁ ପ୍ରଜ୍ଞାବାନ
ନିରନ୍ତର ଆତ୍ମା ସହ ଥାଏ ସେ ସଂଲଗ୍ନ ।
ବାୟୁ ଯେସନ ସର୍ବଦା ପ୍ରବାହିତ ରହେ
ସ୍ୱଚିତ୍ ସ୍ୱରୂପ ପ୍ରାଜ୍ଞ ପାଶୋରି ନ ଦିଏ ।
ପ୍ରବୁଦ୍ଧ, ଶାନ୍ତ, ନିର୍ମଳ, ସମାହିତ ଭାବେ
ସଦା ମୁହିଁ କାଳ କାଟୁଅଛି ଏହି ଭବେ ।
ସମାଧି ବିଚ୍ୟୁତ ମୋତେ କେ କରିପାରିବ
ସମାଧି ସ୍ୱରୂପ ମୋର ହୋଇଛି ଏ ଭବ ।
ଯେ ହେତୁ ଆତ୍ମା ସର୍ବଦା ସରବ ସ୍ୱରୂପ
କେବେ ବା କିପରି ଅସମାଧି ହେବ ନୃପ ?
ସମାହିତ ଓ ଅସମାହିତ ଏହି ପ୍ରଶ୍ନ
ସଙ୍ଗତ ହୋଇ ନ ପାରେ ଜାଣ ହେ ସୁଜାଣ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସମାଧି ସିଦ୍ଧାନ୍ତ ବର୍ଣ୍ଣନେ**
**ନାମ ୫୧ଶ ସର୍ଗଃ ।**



## ୫୨ଶ ସର୍ଗଃ

## ସୁରଘ, ପରିଘ ସମାଧି ସିଦ୍ଧାନ୍ତ

ପରିଘ ବୋଲନ୍ତି ରାଜା ପ୍ରବୁଦ୍ଧ ହୋଇଛ
ଆବର ପରମପଦ ଲାଭ କରିଅଛ ।
ତୁମର ଅନ୍ତଃକରଣ ଯେଣୁ ସୁଶୀତଳ
ପୂର୍ଣ୍ଣଚନ୍ଦ୍ର ପରି ଶୋହେ ବଦନ ମଣ୍ଡଳ ।
ଶ୍ରୀମାନ, ସ୍ନିଗ୍ଧ ମଧୁର ପଦ୍ମ ଫୁଲ ପରି
ଶୋଭା ପାଉଅଛ ତୁମେ ଆହେ ଦଣ୍ଡଧାରୀ ।
ଅହଂଭାବ ମେଘ ତୁମ ହୃଦେ ଦୂରୀଭୂତ
ଶୋଭା ପାଉଅଛ ତୁମେ ଶରତ୍ ନଭବତ ।
ସର୍ବଗତ, ସ୍ୱସ୍ଥ ହୋଇ ତୁମେ ହେ ରାଜନ
ସନ୍ତୁଷ୍ଟ ଓ ବୀତରାଗ ହୋଇଅଛ ପୁଣ ।
ଧୀ-ଶକ୍ତି ବଳେ ହୋଇଣ ବିସ୍ତର ସମ୍ପନ୍ନ
ସମସ୍ତ ଯେ୍ ଏକ ବ୍ରହ୍ମ, ତୁମ ହୃଦଗମ ।
ଭୋଗାନୁରାଗ ଜନିତ ଚଞ୍ଚଳତା ତେଜି
ଶ୍ରୀଅଙ୍ଗ ତୁମ ଆନନ୍ଦ ସ୍ୱରୂପରେ ମଜ୍ଜି ।
ଅର୍ଣ୍ଣବ ଯେସନ ସ୍ୱୀୟ ଗର୍ଭସ୍ଥ ସୁଧାରେ
ପରିତୃପ୍ତ ଥାଏ ତୁମେ ଅଛ ସେ ପ୍ରକାରେ ।
ଆତ୍ମାମୃତ ପାନକରି ତାର ମହତ୍ତ୍ୱରେ
ପରିତୃପ୍ତ ଅଛ ରାଜା କିଏ ବର୍ଣ୍ଣିପାରେ ।
କେବେ ହେଲେ ରାଜା କ୍ଷୟ ନୋହିବ ତୁମର
ଏହା ଶୁଣି ସେ ସୁରଘୁ ଦିଅନ୍ତି ଉତ୍ତର ।
ଉପାଦେୟ ବୁଦ୍ଧି ନାହିଁ ଯେବଣ ବସ୍ତୁରେ
ବସ୍ତୁପଦବାଚ୍ୟ ନୁହେଁ ତାହା ନରବରେ ।
ଦୃଶ୍ୟାକାରେ ଯାହା କିଛି ଦେଖା ଯାଇଥାଏ
କହିବାକୁ ଗଲେ ତାହା କିଛିମାତ୍ର ନୁହେଁ ।
ପଦାର୍ଥ ଘେନି ହେୟ ବା ଉପାଦେୟ ଭାବ
ଯାହା କିଛି ମନ ମଧ୍ୟେ ହୁଅଇ ଉଦ୍ଭବ,
ସେ ସବୁରୁ ବନ୍ଧୁ ! ମୁହିଁ ହୋଇଛି ବିମୁକ୍ତ
ହେୟ ଉପାଦେୟ ଘେନି ନୁହେ ବିଚଳିତ ।
ଦେଶ କାଳ ଘେନି ପୂର୍ବେ ଯାହା ଥାଏ ହେୟ
ପରେ ତାହା ହୋଇଯାଏ ପୁଣି ଉପାଦେୟ ।
ପୂର୍ବ କାଳେ ଯାହା ହୋଇଥାଏ ଉପାଦେୟ
ପର କାଳେ ତାହା ପୁଣି ହୋଇଯାଏ ହେୟ ।
ଏଥିପାଇଁ ବିଜ୍ଞଗଣ ଏମନ୍ତ କରନ୍ତି
ବସ୍ତୁର ନିନ୍ଦା ପ୍ରଶଂସା ଉଭୟ ତେଜନ୍ତି ।
ଅନୁରାଗ ଅବା ବିରାଗର ବଶ ହୋଇ
ପ୍ରଶଂସା ବା ନିନ୍ଦା ନର କରି ବସିଥାଇ ।
ଅଭିଳଷିତ ବସ୍ତୁରେ ଆସେ ଅନୁରାଗ
ଅନଅଭିଳଷିତରେ ଜନମେ ବିରାଗ ।
ଯେହୁ ବୁଦ୍ଧିମାନ ସେହୁ ଉତ୍ତମ ବସ୍ତୁରେ
ଅଭିଳାଷ ରଖି ବସିଥାଏ କାଳେ କାଳେ ।
ସଂସାରେ ପୁତ୍ର, କଳତ୍ର, ବିଷୟ ସମ୍ପଦ
ସର୍ବେ ଅସତ୍ୟ ଅସାର, ଘଟାନ୍ତି ବିପଦ ।
ଅଭିଳାଷ ନ ରଖିଲେ ଏମାନଙ୍କଠାରେ
ଅନୁରାଗ, ବିରାଗର କ୍ଷୟ ଘଟିପାରେ ।
ଏକମାତ୍ର ସୁଖପ୍ରଦ ଆତ୍ମ ଦରଶନ
ଆତ୍ମା ସେବା କରିବା ହିଁ ପରମ ଧରମ ।
ଆତ୍ମାନନ୍ଦ ଲାଭରେ ହିଁ ପରମ ପଦରେ
ପ୍ରତିଷ୍ଠିତ ହୋଇପାରେ ଜୀବ ଏ ସଂସାରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସୁରଘ ପରିଘ ସିଦ୍ଧାନ୍ତ ବର୍ଣ୍ଣନେ**
**ନାମ ୪୨ଶ ସର୍ଗଃ ।**



# ୫୩ଶ ସର୍ଗଃ

## କାରଣ ଉପଦେଶ

କହନ୍ତି ବଶିଷ୍ଠ ମୁନି ସୁରଘ ସହିତ
ଆଳାପ କରି ପରିଘ ହୋଇଲେ କୃତାର୍ଥ ।
ଏକମାତ୍ର ବ୍ରହ୍ମ ସତ୍ୟ ଏହା ସତ୍ୟଧରି
ସ୍ୱସ୍ଥାନେ ପ୍ରସ୍ଥାନ କଲେ ସେହି ତପଋରୀ ।
ଏହି ତତ୍ତ୍ୱବୋଧ କଥା ଶୁଣି ହେ ଶ୍ରୀରାମ
ତୁମେ ମଧ ଲାଭକର ସେହି ତତ୍ତ୍ୱଜ୍ଞାନ ।
ଆତ୍ମ ବିଋରରେ ପ୍ରଜ୍ଞା ହୁଅନ୍ତେ ଉଦୟ
ଅହଂକାର ମେଘ ହୃଦୁ ଲଭଇ ବିଲୟ ।
ଚିତିଶକ୍ତି ଅନୁଧ୍ୟାନ କରି ରହେ ଯେହୁ
ମନଶୋକ ମୋହଗ୍ରସ୍ତ କେଭେଁ ନୁହେ ସେହୁ ।
ଯଦ୍ୟପି ସଂସାର ଭାବ ଧରି ସେ ଚଳଇ
ଭିତର ଗୁଣ ତାହାର ଜଣା ନ ପଡ଼ଇ ।
ନଗଣ୍ୟ ଲୋକ ରୂପେ ସେ ହୁଏ ବିବେଚିତ
ବନର ମାଳତୀ ପରି ରହେ ସେ ସତତ ।
ପଦ୍ମ ପତ୍ରେ ଜଳ ଯଥା ଲାଗି ନ ପାରଇ
ରାଗ ଦ୍ୱେଷରୁ ବାହାର ହୋଇ ସେ ଚଳଇ ।
ଆତ୍ମତତ୍ତ୍ୱ ପରିଜ୍ଞାତ ହୋଇ ଯେଉଁ ଜନ
ଶାନ୍ତ ଚିତ୍ତ ମୁନି ହୋଇ ପାରିଛି ଯେ ପୁଣ,
ବ୍ୟଥା ଦେଇ ନ ପାରଇ ତାକୁ କେଭେଁ ମନ
ସବୁରି ମତରେ ହୁଏ ଆଦର ଭାଜନ ।
ମନୋଗତ ମୋହରୁ ଯେ ହୋଇଛି ଉତ୍ତୀର୍ଣ୍ଣ
ଜଗତ ପାପ ତାହାକୁ ଛୁଏଁ ନାହିଁ ଜାଣ ।
ଅନ୍ଧକାରର ବିନାଶପାଇଁ ପ୍ରତିକାର
ପ୍ରଦୀପ ଅଟଇ ସିନା ଆହେ ରଘୁବୀର ।
"ଭବଭ୍ରାନ୍ତିମୟଜ୍ଞାନ" ଭବବ୍ୟାଧି ପାଇଁ
ମହା ମହୌଷଧି ଅଟେ ଆହେ ରଘୁସାଇଁ ।
ଜାଗରଣ ହେଲେ ସ୍ୱପ୍ନ ମିଥ୍ୟା ଜଣାଯାଇ
ଅବିଦ୍ୟାରୁ ଜଗତ୍ ଜାତ ଜଣା ଯେବେ ହୋଇ,
ଏ ଜଗତ ମିଥ୍ୟା ବୋଲି ହୁଅଇ ପ୍ରତୀତ
ମୋ କହିବା କଥା ତଥ୍ୟ ବୁଝ ରଘୁନାଥ ।
ଜଳ ନ ବାଧଇ ମସ୍ୟ ଚକ୍ଷୁକୁ ଯେସନ
ବ୍ରହ୍ମରେ ଯାହାର ଚିତ୍ତ ହୋଇଛି ମଗନ,
କେବେହେଲେ ସେହି ସାଧୁ ବ୍ୟକ୍ତି ପାପଦ୍ୱାରା
ପରାହତ ହୋଇ ନ ପାରଇ ଏହା ସାରା ।
ଉଜ୍ଜ୍ୱଳ ଚିତ୍‌ଆଲୋକ ହୁଅନ୍ତେ ଉଦୟ
ଅଜ୍ଞାନ ନିଶା ରାଣୀର ହୁଅଇ ବିଲୟ ।
ତତ୍ତ୍ୱଜ୍ଞ ହୋଇଣ ଜୀବ ପରମ ଆନନ୍ଦ
ଲାଭ କରିପାରେ ଆହେ ରଘୁକୁଳାନନ୍ଦ ।
ଜ୍ଞାନ ସୂର୍ଯ୍ୟୋଦୟେ ଜୀବ ସେହି ଜ୍ଞାନ ପାଏ
ଯଦ୍ୱାରା ସେ ମୋହଗ୍ରସ୍ତ କେବେହେଁ ନ ହୁଏ ।
ଜ୍ଞାନଚନ୍ଦ୍ରୋଦୟ ହେଇ ହୃଦୟ ଗଗନେ
ଚିଦ୍‌ଜ୍ୟୋତ୍ସ୍ନା ବିକୀରଣ କରେ ଅନୁକ୍ଷଣ ।
ଯଥାର୍ଥ ଜୀବନ ତେବେ ଲାଭ କରେ ନର
ସଫଳ ଆନନ୍ଦପ୍ରଦ ତା କାର୍ଯ୍ୟ ସକଳ ।
ଏହି ଆଦର୍ଶକୁ ଯେହୁ ଅବଜ୍ଞା ଦେଖାଏ
ଚିରକାଳ ଶୋକଗ୍ରସ୍ତ ହୋଇ ସେହୁ ରହେ ।
ଭବସାଗର ତରଣେ ପ୍ରଧାନ ଉପାୟ
ସଜ୍ଜନ ସଙ୍ଗହିଁ ନାବ ଜାଣ ରଘୁରାୟ ।
ଯେଉଁ ଦେଶରେ ସଜ୍ଜନ ଜନଙ୍କ ଅଭାବ
ପଣ୍ଡିତଙ୍କ ବାସଯୋଗ୍ୟ ନୁହେ ତା ଲାଘବ ।
ସ୍ୱଳ୍ପମାତ୍ର ବିବେକ ଯା ହୋଇଛି ଉଦିତ
ଭବ ନିଦ୍ରାରେ ନିଦ୍ରିତ ହେବା ଅନୁଚିତ ।
ଆତ୍ମାହିଁ ଆତ୍ମାର ବନ୍ଧୁ ଜାଣ ହେ ରାଘବ
ଆତ୍ମା ଦ୍ୱାରା ହିଁ ଏ ଆତ୍ମା ଉଦ୍ଧାର ଲଭିବ ।
ଦେହାଭିମାନ କର୍ଦ୍ଦମେ ଆତ୍ମାକୁ କେବେହେଁ
ଲିପ୍ତ ନ କରିବ ହେଜରଖ ରଘୁରାଏ ।
କିପରି ଯେ ଏ ଶରୀର ହୋଇଲା ଉଦ୍‌ଭୂତ
ଏହାର ମୂଳ କାରଣ କିସ ରଘୁନାଥ ।
କି ହେତୁ କ୍ଷୀଣତା ଲାଭ କରେ ଏ ଶରୀର
ସ୍ୱରୂପ କିପରି ସେହି ଶରୀର ଦୁଃଖର ।
ପ୍ରାଜ୍ଞ ବ୍ୟକ୍ତି ଯତ୍ନସହ ଏହା ବିଋରିବ
ସାମାନ୍ୟ ନୁହେ ଏ କାର୍ଯ୍ୟ ବୁଝ ହେ ରାଘବ ।
ଅର୍ଥ, ବନ୍ଧୁ, ପରିଜନ, ଅନାଧ୍ୟାତ୍ମ ଗ୍ରନ୍ଥ
ଆତ୍ମୋଦ୍ଧାରେ ଯତ୍ନଶୀଳ ଥାଏ ଯେହୁରତ,
ଏପରି ଯେ ବ୍ୟକ୍ତି ତାକୁ କେଉଁରୂପେ ହେଲେ
ବଳଦେଇ ନ ପାରନ୍ତି ଏହିମାନେ ଭଲେ ।
ଏକମାତ୍ର ଶୁଦ୍ଧ ମନ ବନ୍ଧୁ ସାହାଯ୍ୟରେ
ଆତ୍ମାର ଉଦ୍ଧାର ରାମ ସମ୍ଭବିଣ ପାରେ ।
ସଂସାର ନିମଗ୍ନ ଆତ୍ମାକୁ-ଆଶା ପୋଷଣ
ସଂସାର ଜ୍ୱାଳାରେ ଦଗ୍ଧ ହୋଇ ଅନୁକ୍ଷଣ,

ଶୋଚନୀୟ ଅବସ୍ଥାରେ ପଡ଼ି ହୁଏ ଘାଣ୍ଟି
ହାହାକାର କରି କରୁଥାଏ କେଡ଼େ ପାଟି ।
ଏବେ ତା ଉଦ୍ଧାର ପାଇଁ ହେଳା ନ କରିବ
ସେ ପାଇଁ ସତତ ଯତ୍ନବାନ ରହିଥିବ ।
ଅଜ୍ଞାନକୁ ଦୂରୀଭୂତ କରିପାର ଯେବେ
ଅହଙ୍କାର ନାଶ ପାଇଁ କ୍ଷମ ହୁଅ ଯେବେ,
ପରିତ୍ରାଣ ଏ ଆତ୍ମାର ହୋଇପାରେ ତେବେ
ଯତ୍‌ପରନାସ୍ତି ଚେଷ୍ଟା କର ଯା ସମ୍ଭବେ ।
ଅହଙ୍କାର ମେଘ ଯେବେ ଦୂରୀଭୂତ ହେବ
ଚିତ୍-ସୂର୍ଯ୍ୟଙ୍କର ତେବେ ଦର୍ଶନ ମିଳିବ ।
ଚିତ୍-ସୂର୍ଯ୍ୟରୂପେ ନିଜେ ହେଲେ ପରିଣତ
ନିର୍ମ୍ମଳ ପରମ ପଦ ହୋଇବ ପ୍ରାପତ ।
ବର୍ଣ୍ଣନା କରିଣ କେହି ପରମ ପଦକୁ
ବୁଝାଇ ପାରିବ ନାହିଁ କେବେ ହେଲେ ତାଙ୍କୁ ।
ଯେହେତୁ ତାହାର ନାହିଁ କୌଣସି ଉପମା
ଅନୁପମ, ଅନୁମେୟ, ସେହି ପରମାତ୍ମା ।
ତୁରୀୟାବସ୍ଥାରେ ତାଙ୍କୁ ବୁଝାଯାଇ ପାରେ
ଅକଳନକୁ, କଳନା କିଏ କରିପାରେ ?
ମନ ଅହଂକାର ଯେବେ ହୋଇବ ବିଲୀନ
ପାରମେଶ୍ୱରୀ ତନରୁ ଉଦେ ହେବ ଜାଣ ।
କେବଳ ଯୋଗବଳରେ ତାର ଆବିର୍ଭାବ
ବାକ୍ୟର ଅତୀତ, ଖାଲି ହୃଦୟ ବୁଝିବ ।
ଅନୁଭବେ ଜଣାଯାଏ ମୋଦକର ସ୍ୱାଦ
ଅନୁଭବ କହିଦିଏ ଆତ୍ମାର ଆସ୍ୱାଦ ।
ଯାହାକିଛି ଦେଖାଯାଏ ସବୁ ଆତ୍ମତତ୍ତ୍ୱ
ତା ବିନା କାହାରି କିଛି ନ ଥାଇ ଅସ୍ତିତ୍ୱ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**କାରଣ ଉପଦେଶ ବର୍ଣ୍ଣନେ**
**ନାମ ୫୩ଶ ସର୍ଗଃ ।**



## ୫୪ଶ ସର୍ଗଃ

## ଭାସ, ବିଳାସ, ବୃତ୍ତାନ୍ତ

କହନ୍ତି ବଶିଷ୍ଠ ଆହେ କମଳ ଲୋଚନ
ମୁଁ ଆଉ ମୋହର ବୁଦ୍ଧି କରିବାର ଜନ,
ମନରେ ମନକୁ କରିପାରିଲେ ଉଚ୍ଛିନ୍ନ
ଆତ୍ମାର ସାକ୍ଷାତ୍‌କାର ହୋଇଥାଏ ଜାଣ ।
ଆତ୍ମା ସାକ୍ଷାତକାର ବିନା ଜାଗତିକ ଦୁଃଖ
ଚିରକାଳ ରହିଥାଏ ଆହେ ପଦ୍ମମୁଖ ।
ପୁରାତନ ଇତିହାସ କହୁଅଛି ଶୁଣ
ଯାହାକି ବର୍ଣ୍ଣିତ ଅଛି ଏହି ବିଷୟେଣ
ସହ୍ୟ ନାମେ ରହିଅଛି ଏକ ଗିରିବର
ଅତ୍ରିମୁନିଙ୍କ ଆଶ୍ରମ ତାହା ନିକଟର ।
ଦୁଇଟି ତପସ୍ୱୀ ତହିଁ ବାସ କରୁଥିଲେ
ଯଥାକାଳେ ବେନି ପୁତ୍ର ତାଙ୍କ ଜନମିଲେ ।
ଭାସ, ବିଳାସ ବୋଲିଣ ଥିଲା ତାଙ୍କ ନାମ
ପୁଷ୍ପ ସୌଗନ୍ଧ ପରାୟ ରହନ୍ତି ସେ ଜାଣ ।
କ୍ରମଶଃ ଯୁବା ଅବସ୍ଥା ଆସେ ବେନିଙ୍କର
ବେନିଙ୍କର ପିତା ଚଳିଗଲେ ସ୍ୱର୍ଗପୁର ।
ଶୋକ ସନ୍ତପ୍ତ ହୋଇଣ ସେ ବେନି କୁମର
ଶୁଦ୍ଧିକ୍ରିୟା ଶେଷକଲେ ନିଜ ପିତାଙ୍କର ।
ବିଳାପ କରନ୍ତି ଶୋକେ ହୋଇ ଅଭିଭୂତ
କିଏ ବା କରିପାରିବ ତାଙ୍କ ହୃଦଶାନ୍ତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ଭାସ ବିଳାସ ବୃତ୍ତାନ୍ତ ବର୍ଣ୍ଣନେ**
**ନାମ ୫୪ଶ ସର୍ଗଃ ।**



## ୫୫ଶ ସର୍ଗଃ

## ଅନ୍ତର ପ୍ରସଙ୍ଗ

କହନ୍ତି ବଶିଷ୍ଠ ଶୋକାକୁଳ ସେ କୁମରେ
ନିଃସହାୟେ, ନିରୂପାୟେ କାଳ କଟାଇଲେ ।
ଏହିରୂପ ବହୁକାଳ ହୁଅନ୍ତେ ଅତୀତ
କ୍ରମେ କ୍ରମେ ସେ ବାଳକେ ହେଲେ ଜରାକ୍ରାନ୍ତ
ଏପର୍ଯ୍ୟନ୍ତ ତତ୍ତ୍ୱଜ୍ଞାନ ଲଭି ସେ ନଥାନ୍ତି
କିନ୍ତୁ ଉଭୟେ ବିଭିନ୍ନ ସ୍ଥାନେ ରହୁଥାନ୍ତି ।
ଦୈବବଶ ଏକ ଦିନ ହୁଅନ୍ତେ ମିଳନ
ବିଳାସ ଭାସକୁ ଡାକି ପଚାରେ ଏସନ ।
"ଆହେ ସାଧୁ ! ଏତେଦିନ କେଉଁଠାରେ ଥିଲ
ତପସ୍ୟା କରି କି କାଳ କଟୁଛି ତୁମ୍ଭର ?
ବୁଦ୍ଧି ଆତ୍ମା ତୁମର ତ ରହିଛି ପ୍ରସନ୍ନ
ବିଦ୍ୟାଫଳ ଲାଭ କରିଅଛ ତ ଆପଣ ?
"କୁଶଳେ ଅଛ ତ ତୁମେ ଆହେ ସାଧୁବର" ?
ଏମନ୍ତ ଶୁଣିଣ ଭାସ ଦିଅନ୍ତି ଉତ୍ତର ।

କୁଶଳରେ ଅଛି ସତ ମୁହିଁ ହେ ବିଳାସ
ଆତ୍ମା ଜାଣି ନ ପାରିଲେ ସେ କୁଶଳ କିସ ?
କାମ ସଂକଳ୍ପ ଯେଯାଏ କ୍ଷୟ ହୋଇନାହିଁ
ସଂସାର ମାୟା ଯେଯାଏ ଜାରି ରହିଛଇ,
ବାସ୍ତବ କୁଶଳ ବନ୍ଧୁ ଲଭିବି କିପରି ?
ସଂସାର ଯନ୍ତ୍ରଣା ଜ୍ୱାଳା ସହି ତ ନପାରି ।
ଚିତ୍ତୁ ଜାତ ଆଶା ଜାଲ ଯେତେଦିନ ଯାଏ
ଛିନ୍ନନ ହୋଇଛି ବନ୍ଧୁ ସେତେଦିନ ଯାଏ,
ଯେତେକାଳ ଜ୍ଞାନ ଲାଭ ହୋଇ ନ ପାରିଛି
ସମତା ଓ ତତ୍ତ୍ୱବୋଧ ଯେ ଯାଏ ନୋହିଛି,
ସେତେଦିନଯାଏ ଆମ ମଙ୍ଗଳ ବା କାହିଁ ?
ହାଂହତୋସ୍ମି ଭାବେ ଥିବା ସେତେଦିନ ଭାଇ ।
ଆତ୍ମାକୁ ଯେବେ ହେ ଭାଇ ଜାଣି ନ ପାରିବ
ଜ୍ଞାନରୂପ ମହୌଷଧି ସଂଗ୍ରହ ନୋହିବ ।
ଭବ ବିସୁଚିକା ବ୍ୟାଧି ସେତେଦିନଯାଏ
ବାରମ୍ବାର ଆକ୍ରମଣ କରିବ ନିଶ୍ଚୟେ ।
ଶୈଶବ ଅଟେ ସଂସାର ବୃକ୍ଷର ଅଙ୍କୁର
ଯୌବନ ପଲ୍ଲବ, ଜରା ପୁଷ୍ପ ଯେ ତାହାର ।
ବର୍ଷ ପରେ ବର୍ଷ ଭବେ ବୃଥା କଟୁଥାଏ
ଶୁଭାଶୁଭ କର୍ମେ ସ୍ୱର୍ଗ ନର୍କ ଭୋଗ ହୁଏ ।
କିସ ଅଭିନବ ଅବା ଏଥିରେ ରହିଛି
ତୃଷ୍ଣା ବିଷୟରେ ନରଜନ୍ମ କଟୁଅଛି ।
ସୁଖାକାରେ ସମାଗତ ଦୁଃଖ ଜାଲେ ପଡ଼ି
ଏ ଜୀବନ କଟି ଯାଉଥାଏ ଏହିପରି ।
ଏ ଆତ୍ମାକୁ ବିଚଳିତ କରିଦେଇ ମନ
ଅହରହ ଚତୁର୍ଦ୍ଦିଗେ କରଇ ଧାବନ ।
ଏହାକୁ କୁଶଳ ବୋଲି କିପରି କହିବ ?
ମରୀଚିକା କି କେବେହେଁ ତୃଷ୍ଣା ମେଣ୍ଟାଇବ
ଯଉବନ ଜଳ ଯେବେ ବୋହି ଚାଲିଯିବ
ଏ ଶରୀର ସରୋବର ଶୁଷ୍କତା ଲଭିବ ।
ତତ୍‌କ୍ଷଣାତ୍ ଆୟୁରୂପୀ ରାଜହଂସ ଭାଇ
କାହିଁ ଉଡ଼ି ଚାଲିଯାଏ ଜଣା ତ ନଯାଇ ।
ପ୍ରତ୍ୟାଗମନ ତାହାର କେଉଁଠେ ନ ହୁଅଇ
ବୃଥା ଘାରିହୁଏ ଜୀବ କିଛି ନ ବୁଝଇ
ସଂସାରୀର କାର୍ଯ୍ୟକ୍ରମ ନଦୀ ସ୍ରୋତପରି
ଅହରହ ପ୍ରବାହିତ, ଥୟ ନୋହିକରି ।
ତର୍କ, ନୀତି, ଶିଳ୍ପକଳା, ସର୍ବ କର୍ମମାନ
ସମସ୍ତଙ୍କୁ ଥରାଉଛି ତରଙ୍ଗ ସମାନ ।
ଏ ନଦୀର ଗଭୀରତା ଅତୀବ ଭୀଷଣ
ବନ୍ଧୁ, ବାନ୍ଧବ ସହିତ ଅନ୍ୟ ଯେତେ ଜନ
ଅନନ୍ତ କାଳସମୁଦ୍ର ଗଭୀର ଗର୍ଭରେ
ଲୀନ ହୋଇ ଯାଉଛନ୍ତି ପ୍ରତି ମୁହୂର୍ତ୍ତରେ ।
ଏହି ଶରୀର ଶଳାକା ପ୍ରତି ଜନମରେ
କାହିଁ ବୁଡି ଯାଉଥାଏ ମୃତ୍ୟୁ ସାଗରରେ ।
କାହାରିକି ଜଣାଯାଇ ନ ପାରେ ସେ କଥା
ଯେତେ ବାଡ଼େଇ କରଡ଼ି ହୋଇଲେ ତା ବୃଥା ।
ନଦୀର ଆବର୍ତ୍ତେ ଯଥା ତୃଣ ବିଘୂର୍ଣ୍ଣିତ
ଚିନ୍ତାବର୍ତ୍ତେ ଘୂରୁଅଛି କୁ-କର୍ମୀ ଯେ ଚିତ୍ତ ।
ଅନନ୍ତ କର୍ମ ତରଙ୍ଗେ ସଦା ନାଚୁଥାଇ
କ୍ଷଣକ ପାଇଁ କି ଚିତ୍ତ ବିଶ୍ରାମ ନ ପାଇ ।
ଏହା କରିଛି, କରୁଛି, ଆବର କରିବ
ଏହି କଳ୍ପନା ଜାଲରେ ଯେ ବୁଦ୍ଧି ପଡ଼ିବ,
ମୂର୍ଚ୍ଛିତ ହୋଇପଡ଼ିବ ସେହି ବୁଦ୍ଧି ସିନା
ତହିଁକି ନ ପାଏସର୍ବ କଳ୍ପନା ଜଳ୍ପନା ।
ଇଏ ମିତ୍ର, ଇଏ ଶତ୍ରୁ ଏସନ କୁବୁଦ୍ଧି
ମରମକୁ ନିପୀଡ଼ିତ କରେ ଯଥା ବ୍ୟାଧି ।
ସଂସାରୀ ମାନବ ଏହିପରି ବହୁ ଦୁଃଖ
ଆତ୍ମାରେ ସଞ୍ଚିତ କରି ହୁଅଇ ବିମୁଖ ।
ଜରା ମରଣରେ ସଦା ହୋଇଣ ପୀଡ଼ିତ
ଜଗତ ପର୍ବତେ ସଦା ହୁନ୍ତି ଚୂର୍ଣ୍ଣିଭୂତ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ଅନ୍ତର ପ୍ରସଙ୍ଗ ବର୍ଣ୍ଣନେ**
**ନାମ ୫୫ଶ ସର୍ଗଃ ।**



## ୫୬ଶ ସର୍ଗଃ
## ଅନ୍ତର ପ୍ରସଙ୍ଗ ବିଚାର

ବଶିଷ୍ଠ କହିଲେ ଭାସ, ବିଳାସ ଏ ବେନି
କଥୋପକଥନ କଲେ ବହୁକାଳ ଘେନି ।
କାଳକ୍ରମେ ଜ୍ଞାନ ଲାଭ କରି ସେହିମାନେ
ମୁକ୍ତିଲାଭ କରିଥିଲେ ଏହି ଭବଧାମେ ।
ଆହେ ମହାବାହୁ ତେଣୁ କହୁଛି ଯା ଶୁଣ
ବଦ୍ଧ ଚିତ୍ତର ବନ୍ଧନ ନୋହିଲେ ଛେଦନ,

ଜ୍ଞାନ ଲାଭ ହୋଇପାରିନାହିଁ ଯେ ପର୍ଯ୍ୟନ୍ତ
ମୁକ୍ତି ଲାଭ-ପାଇଁ ବାଟ ନାହିଁ କିଛି ମାତ୍ର ।
ଏହି ଯେ ଅସୀମ ଦୁଃଖ ଏ ଭବ ସଂସାରେ
ବିବେକ-ସମ୍ପନ୍ନ ଅନାୟାସେ ତରିପାରେ ।
କ୍ଷୁଦ୍ର ପକ୍ଷୀ କେଉଁ ସିନ୍ଧୁ ତରି ନ ପାରଇ
କିନ୍ତୁ ଗରୁଡ଼ ପକ୍ଷେ ତା ସହଜ ଅଟଇ ।
ଦେହ ଅଭିମାନ କେଉଁ ନ ଥାଇ ଯାହାର
ଚିନ୍ମାତ୍ର ଆତ୍ମାରେ ଥାଇ ଦେଖେ ଏ ଶରୀର ।
ଭବ ଦୁଃଖେ ଛଟପଟ ହେଲେହେଁ ଶରୀର
ନ ଜାଣେ କି କ୍ଷତି ତହିଁ ଅଛଇ ତାହାର ।
ପୁରାତନ ରଥ ଯଦି ଭଗ୍ନ ହୋଇଯାଏ
ସାରଥିର ତହିଁରେ ବା କିସ କ୍ଷତି ହୁଏ ?
ଆହେ ରାମ, ମନ ଯଦି କ୍ଷୁବ୍ଧ ହେଉଥାଏ
ଚିତ୍ ତତ୍ତ୍ୱର ତାଦ୍ୱାରା କିଛି କ୍ଷତି ନୁହେ ।
ତରଙ୍ଗ ବିକାର ହେତୁ ସାଗର ପୂର୍ଣ୍ଣତ୍ୱ
ବ୍ୟାହତ ହୋଇପାରେ କି କହ ରଘୁନାଥ ?
ଜଳ ସହିତ ହଂସର କି ଅବା ସମ୍ପର୍କ
ଆତ୍ମାଠାରୁ ଭୋଗ୍ୟବସ୍ତୁ ସମ୍ପୂର୍ଣ୍ଣ ପୃଥକ ।
ସମୁଦ୍ର ଗର୍ଭେ ପର୍ବତ ବୁଡ଼ି ରହିଥାଏ
ତା ସହିତ ସମୁଦ୍ରର ସମ୍ପର୍କ ନ ଥାଏ ।
ସେହିପରି ଆତ୍ମା ସହ, ଏହି ସଂସାରର
କୌଣସି ସମ୍ପର୍କ ନାହିଁ ଆହେ ରଘୁବୀର ।
କାଷ୍ଠ ଜଳ ସଂଘର୍ଷରେ ବୁଦ୍‌ବୁଦ ଉଠଇ
ଦେହ ଆତ୍ମା ସଂଯୋଗରେ ଚିତ୍ତ ଜନ୍ମଇ ।
ଦରପଣେ ପ୍ରତିବିମ୍ବ କେଉଁ ନୁହେ ସତ୍ୟ
ଆଉ ମଧ୍ୟ ମିଥ୍ୟା ନୁହେ ତାହା କଦାଚିତ ।
ଏ ଶରୀର ପ୍ରତିବିମ୍ବ ଆତ୍ମାରେ ସେପରି
ସତ୍ୟ ବା ଅସତ୍ୟ ନୁହେ ଆହେ ଧନୁର୍ଦ୍ଧାରୀ ।
କାଠ ପଥର ସଲିଳମାନଙ୍କ ସଂଯୋଗେ
ଅଥବା ସେହି ପଦାର୍ଥମାନଙ୍କ ବିଯୋଗେ,
କାହାର ଯେପରି କିଛି ଯାଏ ଆସେ ନାହିଁ
ପଞ୍ଚଭୂତଙ୍କ ସମ୍ବନ୍ଧ ଯେପରି ଅଟଇ,
ପଞ୍ଚଭୂତଙ୍କୁ ଘେନିଣ ଗଢ଼ାଏ ଶରୀର
ତାଙ୍କ ସଂଯୋଗ ବିଯୋଗେ କ୍ଷତି ନାହିଁ କାର ।
ଦୁଃଖ ସୁଖ ରୂପ ଏହି ଆଭାସ ସଂବିତ
ସମ୍ବନ୍ଧ ନଥାଇ ଚିତ ବା ଜଡ଼ ସହିତ ।

କେବଳ ଅଜ୍ଞତା ବଶ ଭାବେ ଏହା ନର
ଅଜ୍ଞାନ ଅଭାବେ ଚିତ୍ ରହଇ କେବଳ ।
ଅଜ୍ଞ ଜନପାଇଁ ସତ୍ୟ ଏହି ଯେ ସଂସାର
ଜ୍ଞାନୀଜନ ପାଇଁ ଏହା ଅଳୀକ ଅସାର ।
ମନୋବୃତ୍ତିରେ ସଂପୃକ୍ତ ବିଷୟାନୁଭୂତି
ଜ୍ଞାନୀ ଅନ୍ତରେ ପ୍ରବେଶ କରି ନପାରନ୍ତି ।
ଏକହିଁ ଶୁଦ୍ଧ-ସଂବିତ୍ ରହେ ସବୁଠାରେ
ଦ୍ୱୈତ କଳଙ୍କିତ ହୋଇ ନ ରହେ ସଂସାରେ ।
ଅହଂଭାବ ନ ଥିବାରୁ ଯେ ଜଡ଼ ପଦାର୍ଥ
ଦୁଃଖ ଅନୁଭବ କରି ନ ପାରଇ ସେତ ।
ଦେହ ସହ ଆତ୍ମା ଯେବେ ରହଇ ଅସଙ୍ଗ
ଶରୀରଜ ଦୁଃଖକେଉଁ ନ କରିବ ଭୋଗ ।
ଆତ୍ମା ଯେବେ ଶରୀରର ଭାବକୁ ଧରଇ
ଶାରୀରିକ ଦୁଃଖ ସଦା ଭୋଗ କରୁଥାଇ ।
ଏପରି ଭାବନା ଯେହୁ କରିପାରେ ତ୍ୟାଗ
ସେ ଦୁଃଖକୁ କେଉଁ ସେହୁ ନ କରଇ ଭୋଗ ।
ଦେହ, ଇନ୍ଦ୍ରିୟ ପୁନଶ୍ଚ ମନର ସହିତ
ଆତ୍ମା ତାଙ୍କ ସହ ରହିଥିଲେ ହେଁ ଜଡ଼ିତ ।
ଅନ୍ତରେ ଯଦି ନିଃସଙ୍ଗ ରହିପାରେ ସେହି
ଦୁଃଖ ତାହାକୁ ସ୍ପରଶ କରି ନ ପାରଇ ।
ଜୀବର ଜରା ମରଣ 'ମୋହ'ର ଯେ ବୀଜ
ଅନ୍ତର ସହ ସଙ୍ଗରେ ବଢ଼େ ତାର ତେଜ ।
ଅନ୍ତଃରେ ସଙ୍ଗବିଶିଷ୍ଟ ଅଟଇ ସେ ଜୀବ
ସଂସାର ସାଗରେ ମଗ୍ନ ତାହାକୁ ଜାଣିବ ।
ଅନ୍ତରରେ ସଙ୍ଗ ଭାବ ନ ଥାଇ ଯାହାର
ସଂସାର ସାଗର ସେହୁ ହୋଇଅଛି ପାର ।
ଅନ୍ତର ସଙ୍ଗଯୁକତ ଅଟେ ଯେଉଁ ଚିତ୍ତ
ଶତ ଶତ ଶାଖା ସେହୁ କରେ ବିସ୍ତାରିତ ।
ଅନ୍ତରେ ସଙ୍ଗ ନ ଥିଲେ ବିଲୀନ ସେ ଚିତ୍ତ
ମୁକ୍ତି ପଥ ଖୋଲାଥାଏ ତାର ଅବିରତ ।
ଅନ୍ତଃଆସକ୍ତ ଯେ ଚିତ୍ତ ଅଟଇ ସେ ବଦ୍ଧ
ତାର ବିପରୀତ ହେଲେ ଅଟଇ ସେ ସିଦ୍ଧ ।
ଅନ୍ତଃସଙ୍ଗ ଅଟେ ରାମ ବନ୍ଧନ କାରଣ
ଅନ୍ତଃସଙ୍ଗ ଅଭାବ ଯେ ମୁକ୍ତି ହେତୁ ଜାଣ ।
ଅନ୍ତଃସଙ୍ଗ ଦୋଷୁ ଯଦି ଚିତ୍ତ ହୁଏ ମୁକ୍ତ
ପ୍ରତ୍ୟଗାତ୍ମା ସହ ତାର ଘଟଇ ଏକତ୍ୱ ।

ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ଅନ୍ତର ସଙ୍ଗ ବିଚାର ବର୍ଣ୍ଣନେ
ନାମ ୫୬ଶ ସର୍ଗଃ ।



## ୫୭ଶ ସର୍ଗଃ
## ସଂସକ୍ତ ବିଚାର

ଶ୍ରୀରାମ କହନ୍ତି ଆହେ ଗୁରୁଦେବ ଶୁଣ
ସଙ୍ଗ କିଏ କେମନ୍ତ ତା ବନ୍ଧନ କାରଣ ?
ସଙ୍ଗ ଅଭାବରେ ମୁକ୍ତି ମିଳଇ କେସନ ?
ସଦୟ ହୋଇ ମୋ ଆଗେ କରିବା ବର୍ଣ୍ଣନ ।
ବଶିଷ୍ଠ ବୋଇଲେ ରାମ ତାହା ଏବେ ଶୁଣ
ଜୀବ ତା ଚିନ୍ମୟତ୍ୱକୁ ଭୁଲେ ଯେବେ ଜାଣ,
ଜଡ଼ ଦେହେ ଯେଉଁ ଆତ୍ମଭାବ ଆସେ ତାର
ତାହାକୁ କହନ୍ତି ସଙ୍ଗ, ହେତୁ ବନ୍ଧନର ।
ଅନନ୍ତ ଆତ୍ମାର ସୁଖ ସ୍ୱରୂପତା ଭୁଲି
ସେ ଆତ୍ମାରେ ପରିଚ୍ଛିନ୍ନ ଭାବ ଅନୁସରି,
ବୈଷୟିକ ସୁଖ ଇଚ୍ଛା ଯେବେ ଆଚରିବ
ବନ୍ଧନ-ଜନକ ସଙ୍ଗ ତେବେ ପ୍ରାପ୍ତ ହେବ ।
ସକଳ ପଦାର୍ଥ ଆତ୍ମା ବୋଲି ବୁଝୁଥିବ
ହେୟ ଉପାଦେୟ ଭାବ କିଛି ନ ଧରିବ ।
ଜୀବନ ମୁକ୍ତ ଅବସ୍ଥା ତାକୁ ବୋଲାଯାଏ
ଏଥିରେ ସନ୍ଦେହ ନାହିଁ ବୁଝ ରଘୁରାଏ ।
ନୁହଇ ମୁଁ ଅହଙ୍କାର ଦ୍ୱାରା ପରିଚ୍ଛିନ୍ନ
ଏ ଦେହ ପ୍ରତି ମୁଁ ନୁହେ ଆସକ୍ତି ସମ୍ପନ୍ନ ।
ବିଷୟ ପ୍ରତି ମୋହର ସେହି ଭାବ ଜାଣ
ଏହି ଦୃଢ଼ ଭାବ ଧରି କରି ଯେଉଁ ଜନ,
ଅନାସକ୍ତ ଭାବେ କାଟୁଥାଏ ତାର ଦିନ
ମୁକ୍ତିଲାଭ ପାଇଁ ସେହୁ ଅଟଇ ଭାଜନ ।
କର୍ମକୋଢ଼ୀ ହେବାକୁ ଯେ ନ କରେ ଆଦର
ଫଳାକାଂକ୍ଷା ରଖି କର୍ମ ନ କରେ ଯେ ନର,
ସଫଳତା ବିଫଳତା ଉଭୟାବସ୍ଥାରେ
ସମଜ୍ଞାନ ସମ୍ପନ୍ନ ଯେ ରହେ ନିରନ୍ତରେ,
ଏମନ୍ତ ଜନ ଅସଙ୍ଗ ବୋଲି ଧରାଯାଏ
କେଡ଼େ ଭାଗ୍ୟବାନ ସେହୁ ବୁଝ ରଘୁରାଏ ।
ଆତ୍ମନିଷ୍ଠ ହୋଇ ରହିପାରେ ଯେଉଁ ଜନ
ହର୍ଷ, କ୍ରୋଧେ ବଶୀଭୂତ ନୁହେ କଦାଚନ ।
ସଙ୍ଗହୀନ ଜୀବନ୍ମୁକ୍ତ ଜାଣ ସେ ଅଟଇ
ତାହାପରି ଭାଗ୍ୟବାନ ଥିବ ଆଉ କାହିଁ ?
କର୍ମ, କର୍ମଫଳ ଯେହୁ ମନରୁ ବିସୋରେ
ବାହ୍ୟତଃ ତାହାକୁ ତେଜି ଯଦିଚ ନ ପାରେ,
ତଥାପି ସେ ଅସଂସକ୍ତ ନାମେ ହୁଏ ଖ୍ୟାତ
କର୍ମ, କର୍ମ ଫଳାଫଳ ବୁଝ ରଘୁନାଥ ।
ଅସଙ୍ଗତା ଔଷଧିରେ ସଙ୍ଗ ଦୋଷ ବ୍ୟାଧି
ନିବାରିତ ହୋଇଥାଏ ଆହେ ରଘୁନିଧି ।
ସଙ୍ଗେ ସଙ୍ଗେ ଫଳ ଲାଭ ହୋଇଥାଏ ତାର
ଶ୍ରେୟ ଲାଭହିଁ ସେ ଫଳ ଜାଣ ରଘୁବୀର ।
ବନ୍ଧ୍ୟା ଓ ବନ୍ଧ୍ୟା ଦୁଇଟି ପ୍ରକାର ସଂସକ୍ତି
ଅଜ୍ଞଗଣଙ୍କ ସଂସକ୍ତି ବନ୍ଧ୍ୟା ନାମେ ଖ୍ୟାତି ।
ବନ୍ଧ୍ୟା ନାମେ ପରିଚିତ ତତ୍ତ୍ୱଜ୍ଞ ସଂସକ୍ତି
ଉଭୟଙ୍କ ଭେଦ ଏବେ ଶୁଣ ରଘୁପତି ।
ଆତ୍ମାକୁ ଜାଣି ନ ପାଇ ଯେବଣ ମାନବ
ଦେହ ଧନ ଆଦି ସବୁ ସତ୍ୟ ବିଚାରିବ,
ସଂସାର ବିଷୟେ ଦୃଢ଼ ଆସକ୍ତି ରଖିବ
ଜ୍ଞାନୀଙ୍କ ମତରେ ବନ୍ଧ୍ୟାଶକ୍ତି ତା ବୁଝିବ ।
ଆତ୍ମଜ୍ଞାନ ଲଭି ପରମାତ୍ମାରେ ଆସକ୍ତି
ଜ୍ଞାନୀଗଣ ତାକୁ କହିଥାନ୍ତି ବନ୍ଧ୍ୟା ଶକ୍ତି ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ଦେବଗଣ
ବନ୍ଧ୍ୟା ଶକ୍ତିରେ ତ୍ରିଲୋକ କରନ୍ତି ପାଳନ ।
ସିଦ୍ଧ ଲୋକପାଳ ଆଦି ଯେତେ ଦେବଗଣ
ବନ୍ଧ୍ୟା ସଂସକ୍ତିର ବଳେ ଛନ୍ତି ବିଦ୍ୟମାନ ।
ତତ୍ତ୍ୱଦର୍ଶୀଗଣ ବନ୍ଧ୍ୟା ସଂସକ୍ତି ବଳେଣ
ହେଲେହେଁ ସେମାନେ ଜରା ମରଣ ବିହୀନ,
ଶରୀର ଧାରଣକରି ଥାନ୍ତି ବିଦ୍ୟମାନ
ବନ୍ଧ୍ୟା ସଂସକ୍ତି ଗାରିମା ବୁଝ ରଘୁରାଣ ।
ମାଂସପିଣ୍ଡ ରମଣୀୟ ମଣେ ଯେଉଁ ଜନ
ଭୋଗ ବିଳାସ ଆମୋଦ ପ୍ରମୋଦେ ଯା' ମନ
ଶକୂନ ସଦୃଶ ତହିଁ ରହେ ନିମଗନ
ବନ୍ଧ୍ୟା ସଂସକ୍ତି ବିଳାସ ଅଟେ ତାହା ଜାଣ ।
ସଂସକ୍ତି ବଳରେ ବାୟୁ ହୁଏ ପ୍ରବାହିତ
ପଞ୍ଚଭୂତ ସ୍ୱ ସ୍ୱ ଆକାରରେ ଅବସ୍ଥିତ ।
ଜଗତ ପ୍ରକ୍ରିୟାମାନ ହୁଏ ସମ୍ପାଦିତ
ସ୍ୱର୍ଗେ ଦେବଗଣ ରହିଛନ୍ତି ଅବସ୍ଥିତ ।

ଭୂତଳେ ମାନବଗଣଙ୍କର ବାସସ୍ଥାନ
ପାତାଳେ ନାଗ ଅସୁରଛନ୍ତି ବିଦ୍ୟମାନ ।
କେବଳ ସଂସକ୍ତି ବଳେ ସ୍ୱ ସ୍ୱ ବ୍ୟାପାରରେ
ସ୍ଫୁରିତ ହେଉଅଛନ୍ତି ଏ ବିଶ୍ୱ ସଂସାରେ ।
ଅସଂଖ୍ୟ ପ୍ରାଣୀ ଯେ ହେଉଛନ୍ତି ଜାତ, ମୃତ
ଜଳ ତରଙ୍ଗ ସଦୃଶ ତାଙ୍କ ଆତଯାତ ।
ସଂସକ୍ତି ବଳେ କେବଳ ଘଟୁଛି ଏସନ
କି ଚମତ୍କାର ସଂସକ୍ତି ବଳ ହେ ଶ୍ରୀରାମ ?
ଚିତ୍ତର ଏହି ସଂସକ୍ତି ଅବିଦ୍ୟା ବୋଲାଇ
ସର୍ବତ୍ର ସଂସକ୍ତି ଶୂନ୍ୟ ଯେହୁ ହୋଇଥାଇ ।
ବିଦ୍ୟା ତାହାର ହୋଇଣ ଥାଏ ଅଭ୍ୟୁଦିତ
ସେହି ପୁରୁଷକୁ ରାମ କହନ୍ତି ମୁକତ ।
କହନ୍ତି ବଶିଷ୍ଠ ଯେହୁ ବିବେକ ସମ୍ପନ୍ନ
ଶାସ୍ତ୍ରୀୟ ଲୌକିକ କାମ କରେ ସମ୍ପାଦନ,
ଚିତ୍ତକୁ ଯେ ନ କରଇ କାହିଁ ଅନୁରକ୍ତ
ଅନାସକ୍ତ ରହେ ପଦ୍ମ ପତ୍ରେ ଜଳ ବତ,
ଅନ୍ୟାନ୍ୟ ସର୍ବ ଆସ୍ୱାଦ ପରିତ୍ୟାଗ କରି
ଚିତ୍ତ ତାର ସାକ୍ଷୀ ରୂପେ ଚିନ୍ମାତ୍ରେ ବିହରି ।
ପରମାନନ୍ଦ ରସରେ ହୋଇଣ ମଗନ
ଏହି ରୂପେ ଯଦି ଜୀବ କରେ ଅବସ୍ଥାନ,
କ୍ରମଶଃ ବ୍ରହ୍ମ ଭାବରେ ହୁଏ ଉପନୀତ
ଏହା ଯେ କରି ପାରଇ କେଡ଼େ ଭାଗ୍ୟବନ୍ତ ?
ବାହ୍ୟ କର୍ମ କରି ସୁଦ୍ଧା ଆତ୍ମ ଅନୁରକ୍ତ
ସବୁ କର୍ମ କଲେ ସୁଦ୍ଧା କର୍ତ୍ତା ନୁହେ ସେ ତ ।
ମେଘ ସହିତ ଆକାଶ ନିର୍ଲିପ୍ତ ଯେପରି
କର୍ମଫଳ ସହ ତାର ସମ୍ବନ୍ଧ ସେପରି
ଅଥବା ସାକ୍ଷିଭାବକୁ ପରିତ୍ୟାଗ କରି
ଚିଦ୍‌ଘନ ଶାନ୍ତ ଆତ୍ମାରେ ଅବସ୍ଥାନ କରି ।
ଆତ୍ମାରେ ନିର୍ବାଣ ଲଭି ଯେହୁ ଆତ୍ମାକାରେ
ସର୍ବଦା ପ୍ରକାଶ ପାଉଥାଏ ରଘୁବୀରେ ।
କର୍ମଫଳର ସହିତ କେବେହେଲେ ତାର
ସମ୍ବନ୍ଧ ନ ଥାଏ ଜାଣ କୌଶଲ୍ୟା କୁମର ।
କିନ୍ତୁ ପ୍ରାରବ୍ଧର ଶେଷ ନ ହେବା ପର୍ଯ୍ୟନ୍ତ
ଶରୀର ଧାରଣ କରିବାର ତା ନିଶ୍ଚିତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସଂସକ୍ତ ବିଚାର ବର୍ଣ୍ଣନେ**
**ନାମ ୫୭ଶ ସର୍ଗଃ ।**



## ୫୮ଶ ସର୍ଗଃ
## ସଂସକ୍ତ ଚିକିତ୍ସା

ସଦା ଅସଂସକ୍ତି ସୁଖ ଯେହୁ ଲଭୁଥାଏ
ସେ ମହାପୁରୁଷ ସଦା ବ୍ରହ୍ମେ ଲୀନ ରହେ ।
ଲୌକିକ ବ୍ୟବହାର ଯଦି ସେ ଦେଖାଇ
ଶୋକ ବା ଭୟ ତାହାକୁ ସ୍ପର୍ଶ ନ କରଇ ।
ଧନ, ପୁତ୍ର, କଳତ୍ରାଦି ବିନାଶ ଲଭିଲେ
ବନ୍ଧନ ବା ଅପମାନ ତାଙ୍କୁ କ୍ଷୋଭ ଦେଲେ,
ଯେଣୁ ତାର ଚିତ୍ତ ପରମାର୍ଥେ ଲାଗିଥାଏ
ପୂର୍ଣ୍ଣ ଭାବେ ସଂସ୍ଥିତ ଯେ ଅନ୍ତରରେ ରହେ ।
ଚନ୍ଦ୍ର ପରି ସୌମ୍ୟ ଭାବ ତା ମୁଖ ମଣ୍ଡଳେ
ଚହଟୁଥାଏ ହେ ରାମ ଅକ୍ଷୁଣ୍ଣ ଭାବରେ ।
ଦୃଶ୍ୟ ଭାବ ତେଜି ଚିଦାଶ୍ରୟୀ ଯାର ମନ
ମୂର୍ଖ ମଧ୍ୟ ତା କୃପାରୁ ରହଇ ପ୍ରସନ୍ନ ।
ଅଭ୍ୟୁଦୟସମ୍ପନ୍ନ ଓ ପ୍ରବୁଦ୍ଧ ଯେମାନେ
ବାହାରେ ଚଞ୍ଚଳ ଦେଖାଗଲେ ହେଁ ସେମାନେ ।
ଅନ୍ତରେ ସୁମେରୁ ପରି ଅଟନ୍ତି ଅଟଳ
ସୁଖେ ଦୁଃଖେ ଆତ୍ମବୋଧ ଚିତ୍ତ ଅଚଞ୍ଚଳ ।
ଜୀବତତ୍ତ୍ୱ, ବିଭୁତତ୍ତ୍ୱ ବୁଝିଛି ଯେ ଚିତ୍ତ
ସାଂସାରିକ ବିଷୟରେ ନୁହେ ପ୍ରଭାବିତ ।
ଆତ୍ମବୋଧ ଲଭି ସଦା ସମାଧିସ୍ଥ ପରି
ଅବସ୍ଥାନ କରେ ଯେହୁ ପରବତ ପରି,
ସେ ଅଟେ 'ସ୍ୱସକ୍ତ' ବୋଲି ଜ୍ଞାନୀଙ୍କର ମତ
ଯେତେବେଳେ ଏ ଅବସ୍ଥା ହୁଏ ଉପସ୍ଥିତ,
ଦ୍ୱନ୍ଦ୍ୱହୀନ, ନିତ୍ୟ, ଉଦୟାସ୍ତହୀନ ହୋଇ
ଜାଗରଣେ ସୁଷୁପ୍ତିରେ ଜୀବ ରହିଥାଇ ।
ଆତ୍ମଜ୍ଞାନ ଯେତେବେଳେ ହୁଅଇ ପ୍ରକାଶ
ଜାଗତିକ ସଂସକ୍ତିର ଘଟଇ ବିନାଶ ।
ଅନ୍ୟ କୌଣସି ଉପାୟେ ତାହା ଘଟେ ନାହିଁ
ନିରାଟ ସତ୍ୟ ଏ ଜାଣ କୌଶଲ୍ୟା ତନୟି ।
ଚନ୍ଦ୍ରକଳା ଦିନୁଦିନ ଯଥା କ୍ଷୟ ଯାଇ
ଅମାବାସ୍ୟା ସୂର୍ଯ୍ୟ ତାକୁ ଘୋଡ଼ାଇ ପକାଇ ।
ସେହିପରି ଜୀବ ଯେବେ ଲଭେ ଆତ୍ମଜ୍ଞାନ
ଚିତ୍ ସୂର୍ଯ୍ୟେ କବଳିତ ହୁଏ ତତକ୍ଷଣ ।
ଚିତ୍ତର ଚିତ୍ତଭାବଟି ହୁଅନ୍ତେ ବିଲୀନ
ଯେଉଁଭାବେ ତେବେ ଚିତ୍ତ କରେ ଅବସ୍ଥାନ,

ଜାଗ୍ରତ କାଳେ ସୁଷୁପ୍ତ ଭାବ ତାକୁ କହି
ଏ ଭାବ ଜୀବକୁ ସୁଖ ଦୁଃଖ ନ ଦିଅଇ ।
ଅହଂଭାବ ହେତୁ ଚିତ୍ତ ହୁଏ ପୀଡ଼ାଗ୍ରସ୍ତ
ଆତ୍ମଭାବେ ପରିଣତ ହେଲେ ସେହି ଚିତ୍ତ ।
ଏ ସଂସାରେ କିଏ ଅଛି ତାକୁ ଦେବ ପୀଡ଼ା
ଏ ସୁଷୁପ୍ତି ଲଭି ରାମ କର୍ମେ ହୁଅ ଛିଡ଼ା ।
ଆତ୍ମଜ୍ଞାନୀ ବରିନିଏ ଆସେ ଯେଉଁ କର୍ମ
ନିଜକୁ କରତା ବୋଲି ନ ଆଣେ ସେ ମନ ।
ଏହାବୁଝି ଯାହା ଇଚ୍ଛା ରାମ ! ତାହା କର
ସୁପ୍ତ ଶିଶୁ ହସ୍ତପଦ ଚଳେ ଯେ ପ୍ରକାର ।
ସେହିପରି ଫଳ ଆଶା ତୁମେ ନ ରଖିଣ
ଅନାସକ୍ତ ଭାବେ ହୁଅ କର୍ମପରାୟଣ ।
ବିଭୁପଦ ଲଭି ଜୀବ ଯେଉଁ କର୍ମ କରେ
ନିଜେ କର୍ତ୍ତା ବୋଲି ତାର ନ ଆସେ ମନରେ ।
ବିଭୁପଦେ ଲୀନ ଯେହୁ ବାହ୍ୟ କରମରେ
ବିଚଳିତ ନ ହୁଅଇ କୌଣସି ପ୍ରକାରେ ।
ସୁଷୁପ୍ତି ଭାବରେ ରହି ତୁମେ ହେ ଶ୍ରୀରାମ
ଅଚଳ ଅଟଳ ରହ ପର୍ବତ ସମାନ ।
ଅଭ୍ୟାସବଳେ ସୁଷୁପ୍ତି ଭାବ ଦୃଢ଼ ହେଲେ
ତୁରୀୟ ଅବସ୍ଥା ତାହା ତତ୍ତ୍ୱଜ୍ଞ ମତରେ ।
ଆତ୍ମଜ୍ଞ ପୁରୁଷ ରାମ ଏହି ପରକାରେ
ଆରୋହଣ କରି ରହେ ତୁରୀୟାବସ୍ଥାରେ ।
ସଂସାର ଭ୍ରମକୁ ସେହୁ କରି ଅତିକ୍ରମ
ଦୁଃଖ, ଶୋକ ଭୟମାନ ତାର ନାହିଁ ଜାଣ ।
ସେହି ଅବସ୍ଥାରୁ ପୁଣି ଖସି ସେ ନ ଆସେ
ଭ୍ରମ ସଂସାରକୁ ଉପହାସ କରି ବସେ ।
ଏହି ତୁରୀୟରେ ଥାଇ ଆନନ୍ଦେ ବିଲୀନ
ତୁରୀୟାତୀତ ମୁକତ ବୋଲାଏ ସେ ଜନ ।
ଜନମ ବନ୍ଧନ ତାର ହୁଅଇ ବିଚ୍ଛିନ୍ନ
ଧ୍ୱଂସ ହୋଇଯାଏ ସର୍ବ ତମ, ଅଭିମାନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସଂସକ୍ତ ଚିକିତ୍ସା ବର୍ଣ୍ଣନେ**
**ନାମ ୫୮ଶ ସର୍ଗଃ ।**



## ୫୯ଶ ସର୍ଗଃ

## ସଂସାର୍ ଯୋଗ ଉପଦେଶ

ବୋଲନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ତୁରୀୟ ବ୍ରହ୍ମର ଯେବେ ହୁଅଇ ସାକ୍ଷାତ ।
ଆତ୍ମାର କୈବଲ୍ୟ ଭାବ ହୁଏ ଉପସ୍ଥିତ
ଏହାହିଁ ଲଭ୍ୟ ତାହାର, ଯେ ଜୀବନ ମୁକ୍ତ ।
ବେଦ ଉପଦେଶ ଏହା ବୁଝ ରଘୁନାଥ
ମହାଭାଗ୍ୟବନ୍ତ ସେହୁ ଯେ ବୁଝେ ଏ ତତ୍ତ୍ୱ ।
ବିଦେହ ମୁକ୍ତ ହିଁ ଲଭେ ତୁର୍ଯ୍ୟାତୀତ ପଦ
ଏ ନୁହେଁ ଜୀବନମୁକ୍ତ ବା ବେଦ ସମ୍ବାଦ ।
ଜୀବନମୁକ୍ତ କିଛି କାଳ ସୁପ୍ତ ବ୍ୟକ୍ତିପରି
ଜାଗତିକ ବ୍ୟବହାର ଅନୁଭବ କରି,
ତୁରୀୟ ଅବସ୍ଥା ଲାଭ କରେ ତତପରେ
ଶାନ୍ତି ଲଭେ ପୁଣି ତୁର୍ଯ୍ୟାତୀତ ଅବସ୍ଥାରେ ।
ତୁମେ ମଧ୍ୟ ଦ୍ୱନ୍ଦ୍ୱାତୀତ ପଦ ଲାଭ ରାମ
ସୁଷୁପ୍ତ ଭାବେ କରହେ ସଂସାର କରମ ।
ମୃତ୍ୟୁ ଆଦି ସର୍ବଭୟ ହୋଇଯିବ ଦୂର
ଦେହ ସ୍ଥିତି ନାଶେ କ୍ଷତି ନାହିଁ ସଂବିତର ।
ଶରୀର ତୁମର ରହିଅଛି ବିଦ୍ୟମାନ
ନିତାନ୍ତ ଭ୍ରମ ଅଟଇ ଏସନ ଯେ ଜ୍ଞାନ ।
ଯେଣୁ ଦେହସ୍ଥିତ, ନାଶେ ନାହିଁ ହାନି ଲାଭ
ଆତ୍ମବୋଧେ ମୁଗ୍ଧ ହୋଇ ଲଭ ସମଭାବ ।
ଲଭି ପାରିଅଛ ତୁମେ ପରମାର୍ଥ ସତ୍ୟ
କଇବଲ୍ୟପୁରେ ହୋଇଅଛ ଉପନୀତ ।
ନିଜର ମଙ୍ଗଳ ପାଇଁ ହୁଅ ଶୋକହୀନ
ଶାନ୍ତି ଭଣ୍ଡାରର ରବି ଅଟେ ସେହି ଜାଣ ।
ଇଷ୍ଟ ଅନିଷ୍ଟ ବାସନା ଯେଣୁ ତୁମ ନାହିଁ
ଶରଦ ଆକାଶ ସମ ହୃଦ ଶୋଭା ପାଇ ।
ଖେଚରୀ ବିଦ୍ୟା ଅଭିଜ୍ଞ ଆକାଶ ତେଜିଣ
ଇଚ୍ଛା ନ କରଇ କେଭେଁ ଧରା ବିଚରଣ ।
ତୁମ ଚିତ୍ତରେ ତାଦୃଶ ବିଷୟ ବାସନା
କେଭେଁ ତ ନାହିଁ ଜାଣ ହେ ରାମ ମହାମନା ।
ଲଭିଅଛ ଯେଣୁ ତୁମେ ଶୁଦ୍ଧ ଚିତ୍ ଶକ୍ତି
"ମୁଁ ମୋହର" ଭ୍ରମ ଯେହ୍ନେ ପୁଣି ନ ଘାରନ୍ତି ।

ଲେଶମାତ୍ର ଦ୍ୱୈତବୋଧ ନାହିଁ ବ୍ରହ୍ମଠାରେ
ଶରୀର ସମ୍ବନ୍ଧ କିଛି ନ ଥାଇ ତହିଁରେ ।
ସୂର୍ଯ୍ୟ ସହ ଅନ୍ଧାରର ଥାଏ କି ସମ୍ବନ୍ଧ
ତୁନି ରହୁଅଛ କିମ୍ପା ଆହେ ରାମଚନ୍ଦ୍ର ?
ତେଣୁ ତୁମେ ଦ୍ୱୈତ ଭାବ କର ପରିହାର
ଅଦ୍ୱୈତ ଚିନ୍‌ମାତ୍ରରେ ଅବସ୍ଥାନ କର ।
ତହିଁରେ ସଂସ୍ଥିତ ହେଲେ ବନ୍ଧନ ବା ମୁକ୍ତି
କିଛି ରହି ନ ପାରିବ ଆହେ ରଘୁପତି ।
ଏହି ଜଗତକୁ ତେତେବେଳେ ଆହେ ରାମ
ପରମ ଆତ୍ମାସ୍ୱରୂପେ କରିବ ଦର୍ଶନ ।
ମୁହିଁ ଅଟେ ସୁଖୀ ଦୁଃଖୀ ମୁହିଁ ମୋହଗ୍ରସ୍ତ
ଏପରି ଭାବନା ସଦା ମିଥ୍ୟା ରଘୁନାଥ ।
ଏହାକୁ ସତ୍ୟ ବୋଲିଣ ଯଦ୍ୟପି ମଣିବ
ଅସୀମ ଦୁଃଖ ସାଗରେ ନିପତୀତ ହେବ ।
ପର୍ବତ ଓ ତୃଣ ମଧ୍ୟେ ରହେ ଯେ ପ୍ରଭେଦ
ଦେହ ପରମାତ୍ମା ମଧ୍ୟେ ରହେ ସେହି ଭେଦ ।
ଦେହର ସର୍ବପ୍ରକାର କ୍ରିୟା ହେ ରାଘବ
ପ୍ରାଣାଦି ବାୟୁ ବଳରେ ଚଳୁଛି ଜାଣିବ ।
କେବଳ ସଂବିତ୍‌କ୍ରିୟା ଅଟଇ ଆତ୍ମାର
ତାହାଛଡ଼ା ତିଷ୍ଠି ନ ପାରିବ ଏ ଶରୀର ।
ସୂକ୍ଷ୍ମାକାଶଠାରୁ ସ୍ଥୂଳ ପର୍ବତ ପର୍ଯ୍ୟନ୍ତ
ଆତ୍ମାର ସଂବିତ୍‌କ୍ରିୟା ସମାନ ସର୍ବତ୍ର ।
ତଥାପି ଦର୍ପଣମଧ୍ୟେ ପ୍ରତିବିମ୍ବ ପରି
ଚିତ୍ତ ମାଧ୍ୟମରେ ଦୃଷ୍ଟ ହୁଏ ତା ସେପରି,
ସ୍ୱୀୟ ବାସନା ବଳରେ ଚିତ୍ତ ଯହିଁ ଧାଏଁ ।
ସେହି ସ୍ଥାନେ ଆତ୍ମା ଏକୀଭୂତ ହେଉଥାଏ ।
ପୁଷ୍ପ ମଧ୍ୟେ ଗନ୍ଧ ଯଥା ଥାଏ ବିଦ୍ୟମାନ
ଚିତ୍ତ ମଧ୍ୟେ ଆତ୍ମା ତଥା କରେ ଅବସ୍ଥାନ ।
ଦର୍ପଣେ ପ୍ରତିବିମ୍ବିତ ସର୍ବବ୍ୟାପୀ ନଭ
ସର୍ବବ୍ୟାପୀ ଆତ୍ମା ଚିତ୍ତ ମଧ୍ୟେ କରେ ଠାବ ।
ତେଣୁ ଅନ୍ତଃକରଣହିଁ ଆତ୍ମାର ଆଧାର
ପ୍ରତିବିମ୍ବ ରାଜେ ତହିଁ ଆତ୍ମ ସଂବିତର ।
ଏ ସତ୍ୟାସତ୍ୟ ଜଗତ ତା ତହୁଁ ଜନମ
ଅନ୍ତଃକରଣହିଁ ଜଗତ୍ ସୃଷ୍ଟିର କାରଣ ।
ଯଦିଚ ଏ ଆତ୍ମା ପ୍ରତିବିମ୍ବର କାରଣ
ସ୍ୱରୂପତଃ ଆତ୍ମା ନୁହେ ତାହାର କାରଣ ।

ଅନ୍ଧକାର ବିନାଶଇ ପ୍ରଦୀପ ଯେପରି
କସ୍ତୁର ସ୍ୱରୂପ ଜାଣି ଚିତ୍ତ ସେହିପରି,
ଜୀବ, ଚିତ୍ତ, ମନ, ଅନ୍ତଃକରଣ ଯେମାନ
ବିଶେଷ ଭାବେ ବିଚର୍ଯ୍ୟେ ସେମାନଙ୍କ ନାମ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସଂସାର ଯୋଗ ଉପଦେଶ ବର୍ଣ୍ଣନେ**
**ନାମ ୫୯ଶ ସର୍ଗଃ ।**



## ୬୦ଶ ସର୍ଗଃ

## ମୋକ୍ଷ-ରୂପ ଉପଦେଶ

ଶ୍ରୀରାମ କହନ୍ତି ଶୁଣ ଆହେ ତପୋଧନ
ଚିତ୍ତରୁ ଏସବୁ ନାମ କିପରି ଉତ୍ପନ୍ନ ।
ସବିଶେଷ ଭାବେ ତାହା କହିବା ବୁଝାଇ
ଯେସନ ସନ୍ଦେହ ମୋର ଦୂର ହୋଇଯାଇ ।
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ସର୍ବଭାବ ଘର ଅଟେ ପରମାତ୍ମ ତତ୍ତ୍ୱ ।
ନଦୀ, ସାଗର, ତରଙ୍ଗ, ହ୍ରଦଆଦି ସ୍ଥଳେ
ଜଳହିଁ କେବଳ ରାମ ଅବସ୍ଥାନ କରେ ।
ଆତ୍ମା ଯଦିଚ ଚିତ୍ତାଦି ନାନା ସଙ୍ଗ ଧରେ
ସେହି ଏକ ଆତ୍ମା ରାଜେ ସେ ସର୍ବରୂପରେ ।
କାହିଁ ବୁଦ୍‌ବୁଦ କାହିଁ ବା ତରଙ୍ଗ ସେ ଜଳ
କାହିଁ ସେ ଭଉଁରା ପୁଣି କାହିଁ ରହେ ସ୍ଥିର ।
ଏତେ ରୂପ ଧରିଲେହେଁ ସେହି ଏକ ଜଳ ।
ଜଳରୂପେ ବିରାଜଇ ସେହୁ ସର୍ବସ୍ଥଳ ।
ସର୍ବ ଶକ୍ତିମାନ ଆତ୍ମା ସର୍ବ ଶରୀରରେ
ସେହି ଏକ ଆତ୍ମାରାମ ସର୍ବରୂପ ଧରେ ।
ଆତ୍ମତତ୍ତ୍ୱ ସହ ଏକୀଭୂତ ହେଲେ ଚିତ୍ତ
ଏ ସକଳ ଭାବ ତହୁଁ ହୁଏ ପ୍ରକାଶିତ ।
ଜୀବ ପ୍ରଭୃତି ସକଳେ ଅଟନ୍ତି ସେ ଆତ୍ମା
ଆତ୍ମାବିନା ରହି ନ ପାରଇ କାର ସତ୍ତା ।
ଅହଂଭାବ ହେତୁ ଆତ୍ମା ଜୀବରୂପ ଧରେ
ସିଂହପରି ପିଞ୍ଜରାରେ ଥାଏ ବିକଳରେ ।
ନିଶ୍ଚୟାତ୍ମକ ବୃତ୍ତିରୁ ବୁଦ୍ଧିର ଜନମ
ସଂକଳ୍ପ, ବିକଳ୍ପ, ଭାବୁ ଜନମ ଏ ମନ ।
ଚିନ୍ତନ ବୃତ୍ତିରୁ ଚିତ୍ତ ହୁଅଇ ଉତ୍ପନ୍ନ
ପ୍ରାକୃତ ଭାବୁ ପ୍ରକୃତୀ ଜନମଇ ଜାଣ ।

କେନ୍ଦ୍ର ରୂପେ ରହି ଆତ୍ମା ନାନା ରୂପଧରେ
ଜୀବ, ବୁଦ୍ଧି, ଚିତ୍ତ, ମନ ଇତ୍ୟାଦି ପ୍ରକାରେ ।
ପ୍ରକୃତି ଜଡ଼ ଅଟଇ ଜୀବ ଯେ ଚେତନ
ଦୃଶ୍ୟରେ ସଂବିତ ଭାଗ ଜଡ଼ ବୋଲି ଜାଣ ।
ଅଜଡ଼େ ଯେ ଅହଂଭାବ ଦ୍ରଷ୍ଟା ତାକୁ ଘେନ
ଦୃଶ୍ୟ ଦ୍ରଷ୍ଟା ମଧ୍ୟେ ପରମାତ୍ମ ଜ୍ଞାନ-ଜାଣ ।
ଜୀବ ଅଟେ ନିଜେ ନିଜ ସଂସାର କାରଣ
ଶରୀର କାରଣ, ଜଡ଼ ନୁହେ କଦାଚନ ।
ଆତ୍ମଜ୍ଞାନ ଛଡ଼ା ଜୀବତ୍ୱର ନାହିଁ ନାଶ
ଶରୀର ବିନାଶେ ଜୀବତ୍ୱର ନାହିଁ ଧ୍ୱଂସ ।
ପତ୍ର ଶୁଷ୍କ ହେଲେ ରସ ହୋଇଥାଏ ନଷ୍ଟ
ଏପରି ଭାବନା ଅଟେ ପ୍ରମାଦ ବିଶିଷ୍ଟ ।
ଯେହେତୁ ସୂର୍ଯ୍ୟ ରଶ୍ମିରେ ରହେ ସେହି ରସ
ତେଣୁ କେବେହେଁ ନୋହିବ ତାହାର ବିନାଶ ।
ସେହିପରି ଦେହ ନାଶେ ଦେହୀ ନାଶ ନୋହି
ବାସନାନ୍ୱିତ ହୋଇଲେ ବାସନାରେ ରହି ।
ବାସନା ରହିତ ହେଲେ ଆତ୍ମା ମଧ୍ୟେ ଠାବ
ଦେହ ନାଶେ ଦେହୀ ଲଭେ ଉପରୋକ୍ତ ଭାବ ।
ବାସନା ଉପାଧି ଯେବେ ହୋଇଯାଏ ନାଶ
ତେତେବେଳେ ଜୀବତ୍ୱର ଘଟଇ ବିନାଶ ।
ଜୀବତ୍ୱର ନାଶେ ଆତ୍ମା ହୁଅଇ ମୁକତ
ତେଣୁ ଜୀବର ବିନାଶ ସମ୍ପୂର୍ଣ୍ଣ ଅସତ୍ୟ ।
ଏକଇ ଜୀବ ଯେ ଦେଶାନ୍ତରେ କାଳାନ୍ତରେ
ଦେଖାଯାଏ, ବାରମ୍ବାର ଶରୀର ସେ ଧରେ ।
ବୃକ୍ଷଛାଡ଼ି ଅନ୍ୟ ବୃକ୍ଷେ ଡ଼ିଅଇଁ ବାନର
ଦେହ ଛାଡ଼ି ଅନ୍ୟ ଦେହ ଆଶ୍ରା କରେ ନର ।
ସେହି ଦେହ ଛାଡ଼ି ପୁଣି ଅନ୍ୟ-ଦେହ ଧରେ
ଦେହ ଛାଡ଼ିବା ସ୍ୱଭାବ ବାସନାବସରେ ।
ଏହିପରି କହୁଁ କହୁଁ ସେ ବଶିଷ୍ଠ ମୁନି
ସରବେ ପ୍ରସ୍ଥାନ କଲେ ସାୟଂକାଳ ଜାଣି ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ମୋକ୍ଷ ସ୍ୱରୂପ ଉପଦେଶ ବର୍ଣ୍ଣନେ ନାମ ୬୦ଶ ସର୍ଗଃ ।**



## ୬୧ଶ ସର୍ଗଃ

## ଆତ୍ମ ବିଚାର

ପରଦିନ ନିତ୍ୟକୃତ୍ୟ ମାନ ଶେଷକରି
ସଭାସ୍ଥଳେ ପ୍ରବେଶନ୍ତି ସର୍ବ ତପଚାରୀ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ଅକଳଙ୍କ ତୁମ୍ଭେ, ଆତ୍ମା ମଧ୍ୟେ ବିରାଜିତ ।
ଶରୀର ସହ ସମ୍ପର୍କ ନ ଥାଇ ତୁମର
ଶରୀର ବିନାଶେ ତୁମ ନାଶ କି ପ୍ରକାର ?
ନଶ୍ୱର ଶରୀର ଧ୍ୱଂସ ହେବାର ଦେଖିଣ
ନିଜ ଧ୍ୱଂସ ଆଶଙ୍କାରେ କାତର ଯେ ଜନ
ଧିକ ସେ ଅନ୍ଧ ମାନବ, ଧିକ ତା ଜୀବନ
ଦ୍ୱନ୍ଦ୍ୱ ମଧ୍ୟେ ପଡ଼ି ସେହୁ ହୁଏ ହୀନିମାନ ।
ରଥ, ଦଉଡ଼ି ଅଶ୍ୱଙ୍କ ସମ୍ବନ୍ଧ ଯେସନ
ଚିତ୍ତ, ଦେହାନ୍ଦ୍ରିୟ ସହ ଆତ୍ମାର ତେସନ ।
ସରୋବର ପଙ୍କ ପୁଣି ଜଳର ସହିତ
ଯେ ସମ୍ବନ୍ଧ ଥାଏ ଜାଣ ଆହେ ରଘୁନାଥ ।
ଶରୀର ଆତ୍ମା ମଧ୍ୟରେ ସେହି ସମ୍ପରକ
ଆତ୍ମା ଶରୀର ଉଭୟେ ସମ୍ପୂର୍ଣ୍ଣ ପୃଥକ ।
ବୃକ୍ଷରୁ କାଷ୍ଠ ପୁତ୍ତଳି ନିର୍ମିତ ଯେସନ
ପଞ୍ଚଭୂତରୁ ଶରୀର ଉତ୍ପନ୍ନ ତେସନ ।
କାଷ୍ଠ ପୁତ୍ତଳିରେ ଖାଲି କାଠ ଦେଖାଯାଏ
ପଞ୍ଚଭୂତ ଦେହେ ଖାଲି ପଞ୍ଚଭୂତ ଥାଏ ।
ପଞ୍ଚଭୂତଙ୍କ ମିଳନ, ବିୟୋଗ ଦେଖିଣ
ବୃଥା ସୁଖ ଦୁଃଖ କିମ୍ପା ଘାରେ ତୁମ ମନ ?
ଦୁଇଟି ମାଟି କଣ୍ଢେଇ ରଖିଲେ ଏକତ୍ର
କୌଣସି ଭାବ ତାଙ୍କର ନୁହଇ ଉଦିତ ।
ସେପରି ମନ, ବୁଦ୍ଧି ଓ ଇନ୍ଦ୍ରିୟ ସହିତ
ଆତ୍ମା ମିଳନରେ ଭାବ ଆସିବ କେମନ୍ତ ?
ତୃଣକୁ ଯଥା ତରଙ୍ଗ କରେ ଏକତ୍ରିତ
ପଞ୍ଚଭୂତଙ୍କୁ ଏ ଆତ୍ମା କରେ ଏକୀଭୂତ ।
ତୃଣ ଯଥା ଭାସୁଥାଏ ସାଗର ଜଳରେ
ଜୀବଗଣ ଭାସମାନ ସଂସାର ସାଗରେ ।
ତନ୍ମଧ୍ୟରୁ କେହି କେହି ଆତ୍ମାର ସହିତ
ସଂଯୁକ୍ତ ରହି ଅଛନ୍ତି ଆହେ ରଘୁନାଥ ।

ଚିତ୍ତ ରୂପ ପରିଧିକି ଆଶ୍ରୟ କରିଣ
ଆତ୍ମା ଶରୀର ଆଦିଙ୍କୁ କରେ ଆଲିଙ୍ଗନ ।
ଜ୍ଞାନର ଉଦୟ ହେଲେ ସେହି ଆତ୍ମାରାମ
ବିଷୟ ସଂସାର ତେଜି ରହେ ବିଦ୍ୟମାନ ।
ଜ୍ଞାନୋଦୟେ ଆତ୍ମା ତେଜି ବିଷୟ ସଂସ୍କାର
ସ୍ୱରୂପରେ ବିଦ୍ୟମାନ ରହେ ନିରନ୍ତର ।
ସେତେବେଳେ ଦେହାଦିକୁ ପୃଥକ ମଣଇ
ଦେହାତୀତ, ଅଜ ରୂପେ ପ୍ରକାଶିତ ହୋଇ ।
ଏପରି ଜ୍ଞାନ ସମ୍ପନ୍ନ ଜୀବନ୍ମୁକ୍ତଗଣ
ଉପନୀତ ହୋଇଥାନ୍ତି ପରମ ପଦେଣ ।
ବାସନା ବିହୀନ ହୋଇ ସେ ପୁରୁଷଗଣ
ଚିତ୍‌ତଗତ ବ୍ୟବହାର ଆଶ୍ରୟ କରିଣ ।
ଜଗତ ମଧ୍ୟେ କରୁଣଥାନ୍ତି ବିଚରଣ
ମଳିନ ଭାବ ନ ଛୁଏଁ କେଭେଁ ତାଙ୍କ ମନ
ଆତ୍ମଜ୍ଞଙ୍କର ସୁଖ ନାହିଁ ଭଲ ବ୍ୟବହାରେ
ମନ୍ଦ ବ୍ୟବହାରେ ଦୁଃଖ କେଭେ ସେ ନ କରେ ।
ସେମାନେ ଜାଣନ୍ତି ସର୍ବ ଜଗତ୍ ବ୍ୟବହାର
ଚିତ୍‌ତର ସ୍ଫୁରଣ ମାତ୍ର ଆହେ ରଘୁବୀର ।
ତ୍ରିକାଳରେ ଯାହା ଥିଲା, ଅଛି କିମ୍ବା ହେବ
ସେ ସବୁ ମନ ପ୍ରକାଶ ମାତ୍ର ହେ ରାଘବ ।
ସତ ବା ଅସତ ଯାହା ସଂହାର ବେଭାର
ଯେଣୁ କରି ମିଥ୍ୟା ଜାଣ ଆହେ ରଘୁବୀର,
ସୁଖ ବା ଦୁଃଖର ତହିଁ ନ ଥାଇ କାରଣ
ତେଣୁ ସୁଲୋଚନ ତେଜ ମିଥ୍ୟା ଦଶରନ ।
ପରମାର୍ଥ ପଦ ପ୍ରତି ଦୃଷ୍ଟିପାତ କର
ମୋହଗ୍ରସ୍ତ ନୁହେ ପରମାର୍ଥ ଦୃଷ୍ଟିଯାର ।
ମିଥ୍ୟାଜ୍ଞାନ ଉଦେ ହୁଏ ଦୃଶ୍ୟ ଦର୍ଶନରେ
ନିଜତ୍ୱାନୁଭୂତି ଯଦି ଜନ୍ମେ ସେ ଦୃଶ୍ୟରେ ।
ବ୍ରହ୍ମ ସ୍ୱରୂପ ନିର୍ଦ୍ଦିଷ୍ଟ ହୁଅଇ ତହିଁରେ
ଅସୀମ ସୁଖ ମିଳେ ସେ ରୂପ ଦର୍ଶନରେ ।
ଅଜ୍ଞଙ୍କୁ ସଂସାର ଭାବେ ମଜ୍ଜାଏ ଯେ ଦୃଶ୍ୟ
ପ୍ରାଜ୍ଞଙ୍କୁ ମୁକତି ଦାନ କରେ ସେ ଅବଶ୍ୟ ।
ଦୃଶ୍ୟର୍ ସେ ଆସ୍ୱାଦନ, ତଜ୍ଜନିତ ସୁଖ
ଲାଭ କରନ୍ତି କେବଳ ଆତ୍ମଜ୍ଞାନୀ ଲୋକ ।
ରାଗଦ୍ୱେଷ୍ ଇତ୍ୟାଦିରେ ଥାନ୍ତି ଯେ ମଗନ
ତାହାକୁ କେବଳ ରାମ ମିଳଇ ବନ୍ଧନ ।
ଏହି ବନ୍ଧନ ଛେଦନ ଅଟଇ ମୁକତି
ସ୍ଥାୟୀ ସୁଖ ଛଡ଼ା ଆନ ନୁହେ ସେ ମୁକତି ।
ସମ୍ପୂର୍ଣ୍ଣ ଆନନ୍ଦମୟ ଯେଉଁ ଅନୁଭୂତି
ପଣ୍ଡିତଗଣ ତାହାକୁ ମୁକତି ବୋଲନ୍ତି ।
ଏହି ମୁକ୍ତିରେ ତୁମର ଅଜ୍ଞାନ କଟିବ
ସ୍ୱରୂପରେ ତୁମେ ରାମ ପ୍ରତିଷ୍ଠିତ ଦେବ ।
ବସ୍ତୁର ଯେ ସତ୍ତା, ଆତ୍ମ ଶକତି ବ୍ୟତୀତ
ଅନ୍ୟ କାହିଁରେ ନ ଥାଏ ଆହେ ରଘୁନାଥ ।
ଆତ୍ମାଠାରୁ ମୁହିଁ ଅଟେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର
କେବଳ ପାଗଳ ଯେହ୍ନେ ପ୍ରଳପେ ଏମନ୍ତ ।
ତେଣୁ ତୁମେ ମହାମତେ ଆତ୍ମ ବୁଦ୍ଧିବଳେ
ଭବସାଗରୁ ଉତ୍ତୀର୍ଣ୍ଣ ହୁଅ ରଘୁବୀରେ ।

ଇତି ଶ୍ରୀ ଯୌଗବାଶିଷ୍ଠେ ଉପଶମ ପ୍ରକରଣେ
ଆତ୍ମ ବିଚାର ବର୍ଣ୍ଣନେ
ନାମ ୬୧ଶ ସର୍ଗଃ ।



## ୬୨ଶ ସର୍ଗଃ

## ନିରାସ୍ୱାଦ ମୌନ ବିଚାର

ପୁଣି କହନ୍ତି ବଶିଷ୍ଠ ହେ ରଘୁତିଳକ
ଶୁଣ ଯାହା କରିପାରେ ରତ୍ନ ପରୀକ୍ଷକ ।
ଚିନ୍ତାମଣି ପରି ରତ୍ନ ଲାଭ କରିପାରେ
ଅଭାବ ତାହାର କିଛି ନ ଥାଏ ସଂସାରେ ।
ତତ୍ତ୍ୱବିତ୍ ସୁବିଚାର ସୁବୁଦ୍ଧି ବଳରେ
ଦ୍ୱୈତ ଭାବ ଅକ୍ଳେଶରେ ପରିତ୍ୟାଗ କରେ ।
ସ୍ୱରୂପରେ ଅବସ୍ଥାନ କରିଣ ଯେ ସେହି
ମୁକ୍ତିଲାଭ କରିପାରେ ଆହେ ରଘୁରାଇ ।
ଜ୍ଞାନୀଜନ ଆପଣାକୁ ଏମନ୍ତ ମଣଇ
ମୁହିଁ ସୂର୍ଯ୍ୟ, ମୁହିଁ ଦିଗ ବୋଲି ବିଚାରଇ
ମୁଁ ଗଗନ, ମୁହିଁ ଦୈତ୍ୟ, ମୁହିଁ ଦେବଗଣ
ମୁଁ ଅଟେ ସକଳ ଲୋକ ମୁଁ ଚୌଦଭୁବନ ।
ରାତ୍ରି, ଦିବା, ପୃଥ୍ୱୀ, ସିନ୍ଧୁ, ବାୟୁ, ଅଗ୍ନି, ମୁହିଁ
ମୋ ବିନା ସାରା ଜଗତେ ଅନ୍ୟ କିଛି ନାହିଁ ।
ଏ ତିନି ଜଗତ ମଧ୍ୟେ ଯାହା କିଛି ଥାଇ
ସେ ସବୁ ଆକାରେ ଖାଲି ମୁହିଁ ବିରାଜଇ ।
ଏହି ଯେ ଦେହାଦି ମନ ମୋଠାରୁ ସ୍ୱତନ୍ତ୍ର
ନୁହନ୍ତି କେବେହେଁ ଏହା ଜାଣେ ମୁଁ ନିଶ୍ଚିତ ।

ତେଣୁ ଯେଣୁକରି ମୁହିଁ ରହିଛି କେବଳ
ଦ୍ୱୈତଭାବ ସମ୍ଭାବନା ହେବ କିପ୍ରକାର ?
ତୁମେ ମଧ୍ୟ ଅନ୍ତରରେ ଏହି ଦୃଢ଼ ଭାବ-
ଧରି ଜଗତକୁ ଆତ୍ମା ସ୍ୱରୂପ ଦେଖିବ ।
ଅଜିତେନ୍ଦ୍ରିୟ ବ୍ୟକ୍ତିର ସ୍ୱରୂପ ହେ ରାମ
ବିଷାଦଗ୍ରସ୍ତ କେବେହେ ନୋହିବ ଆପଣ ।
ଆହେ କମଳ ଲୋଚନ ଏ ସାରା ଜଗତ
ଯଦ୍ୟପି ଆତ୍ମ ସ୍ୱରୂପେ ହୋଇଲା ସଂସ୍ଥିତ ।
ଆତ୍ମୀୟ ବା ଅନାତ୍ମୀୟ ରହିବ କିପରି
ନିର୍ମଳ ସାତ୍ତ୍ୱିକ ଦରଶନ ଯେ ଏପରି ।
ତତ୍ତ୍ୱ ଜ୍ଞାନରୁ ଏ ଦୃଷ୍ଟି ହୁଏ ପ୍ରକାଶିତ
ମୁକତି ପରମ ପଦ କରଇ ପ୍ରଦତ୍ତ ।
"ଆକାଶ ସଦୃଶ ମୁହିଁ ସୂକ୍ଷ୍ମ ସର୍ବାତୀତ"
ଏହା ହିଁ ପ୍ରଥମ ଅହଂବୋଧ ରଘୁନାଥ ।
ମୁହିଁ ସମସ୍ତ, ମୋଠାରୁ ନାହିଁ ଅତିରିକ୍ତ
ଏହା ଯେ ଦ୍ୱିତୀୟ ଅହଂ ବୋଧ ରଘୁନାଥ ।
ତୃତୀୟ ଯେ ଅହଂ ଦୃଷ୍ଟି ଦେହ ଅଭିମାନ
ବୃଦ୍ଧି କରୁଥାଏ ଜାଣ ହେ ରଘୁନନ୍ଦନ ।
ତେଣୁ ଅଶାନ୍ତି, ଦୁଃଖର କରେ ସେ ବିସ୍ତାର
ବହୁ କଷ୍ଟକର ତହୁଁ ଲଭିବା ନିସ୍ତାର ।
ଏହି ତିନି ଅହଂକାର ଯେବେ ତେଜିପାର
ଅବଶିଷ୍ଟ ରହିଯିବ ଯାହା ରଘୁବୀର ।
ସେ ବିଶୁଦ୍ଧ ଚିନ୍ମୟରେ ନିର୍ଭର ଯେ କରି
ସତ୍ତାହୀନ, ସର୍ବାତୀତ ଭାବ ଆତ୍ମା ଧରି ।
ପୁଣି ସେହୁ ଜଗତକୁ କଲେହେଁ ଆବୃତ୍ତ
ଜଗତର ପ୍ରକାଶକ ହୁଏ ସେ ନିଶ୍ଚିତ ।
ହେ ତତ୍ତ୍ୱଜ୍ଞ ଭୁଲିଯାଅ ଯୁକ୍ତି ଶାସ୍ତ୍ର ଜ୍ଞାନ
ଅନୁଭୂତି ବଳେ ଛେଦ ହୃଦ ଗ୍ରନ୍ଥିମାନ ।
ଆପ୍ତବାକ୍ୟ, ଅନୁମାନ ଦ୍ୱାରା ରଘୁରାଇ
ପ୍ରତ୍ୟକ୍ଷ ଆତ୍ମ ଦର୍ଶନ ହୋଇ ନ ପାରଇ ।
କେବଳ ହିଁ ଅନୁଭୂତି ବଳରେ ହେ ରାମ
ପ୍ରତ୍ୟକ୍ଷୀଭୂତ ହୁଅନ୍ତି ସେହି ଆତ୍ମାରାମ ।
ଶବ୍ଦ, ସ୍ପର୍ଶ ଆଦି କରି ଯା' ପ୍ରକାଶ ପାଏ
ସେ ସକଳ ବାହ୍ୟାକୃତି ଯଦି ବ୍ୟକ୍ତ ହୁଏ ।
ଯାହା ଅବଶିଷ୍ଟ ରହେ ସେହି ଭଗବାନ
ସର୍ବବ୍ୟାପୀ, ସର୍ବତ୍ରଗ ସର୍ବ ଆତ୍ମା ଜାଣ ।

ବିଦ୍ୟମାନ ଥାଇ ସୁଦ୍ଧା ସେ ଅବିଦ୍ୟମାନ
ସ୍ଥୂଳ ହୋଇଲେ ହେଁ ସେହୁ ଅଣୁମାତ୍ର ଜାଣ ।
ଯଦିଓ ସେ ନୟନକୁ ନୁହନ୍ତି ଗୋଚର
ସର୍ବତ୍ର ବିଦ୍ୟମାନ ସେ ବିଶ୍ୱ ଚରାଚର ।
ତାଙ୍କ ଛଡ଼ା ଅନ୍ୟ କିଛି ଜଗତେ ନାହାନ୍ତି
ଜ୍ୟୋତିର୍ମୟ ରୂପେ ସେହୁ ସଦା ବିରାଜନ୍ତି ।
ସୂକ୍ଷ୍ମାଦପି ସୂକ୍ଷ୍ମ ଯେଣୁ ନୁହେ ଅନୁଭୂତ
ପଦାର୍ଥ ରୂପେ କେବେହେଁ ନ ଆସନ୍ତି ନେତ୍ର ।
ସୂର୍ଯ୍ୟୋଦୟେ ପ୍ରାଣୀଗଣ କର୍ମପରାୟଣ
ଭୋଗ ଭୋଗ୍ୟ ରୂପେ ଆତ୍ମା ସ୍ୱ ପ୍ରକାଶମାନ ।
ଜନମ ଅବା ମରଣ ନ ଥାଇ ଆତ୍ମାର
ଗ୍ରାହକ ବା ଗ୍ରାହ୍ୟ ଭାବ ତାକୁ ଅଗୋଚର ।
ଆତ୍ମା ଆବଦ୍ଧ କସ୍ମିନ କାଳେ ନ ହୁଅଇ
ଅଥବା ମୁକତ ସେହି କସ୍ମିନ୍ କାଳେ ନୋହି ।
ଆତ୍ମାର ସ୍ୱରୂପ ଜାଣି ନ ପାରିଣ ଜୀବ
ଅନାତ୍ମରେ ଆତ୍ମ ଜ୍ଞାନ ଯଦି ଆଚରିବ,
ତାହାହିଁ ହୋଇବ ତାର ସର୍ବ ଦୁଃଖ ମୂଳ
ଆତ୍ମାକୁ ନ ଦେଖି ହେଉଥିବ ସେ ବିକଳ ।
ଆତ୍ମା ଅନାଦି, ସେ ଘେନି ଜନ୍ମ ନାହିଁ ତାର
ଜନ୍ମ ନ ଥିବାରୁ କ୍ଷୟ କାହିଁବା ତାହାର ?
ଯେ କାରଣୁ ତାହା ଛଡ଼ା ଅନ୍ୟ କିଛି ନାହିଁ
ସେ କାରଣୁ ତାର କିଛି କାମନା ନ ଥାଇ ।
ଦେଶ କାଳ ଘେନି ସେହୁ ନୁହେ ପରିଚ୍ଛିନ୍ନ
ସେ କାରଣୁ ତାହାର ଯେ ନ ଥାଇ ବନ୍ଧନ ।
ବନ୍ଧନ ଅଭାବ ହେତୁ ମୁକ୍ତି ପ୍ରଶ୍ନ କାହିଁ ?
ସକଳ ଆତ୍ମା ଏ ରୂପ ବୁଝ ରଘୁରାଇ ।
ନିଜ ଅଜ୍ଞତାରୁ ଅଜ୍ଞ ଆତ୍ମାକୁ ନ ଜାଣି
ଶୋକଗ୍ରସ୍ତ ହୋଇ କାନ୍ଦୁଥାଏ ରଘୁମଣି ।
ପୂର୍ବାପର ଜାଗତିକ ବ୍ୟାପାର ହେ ରାମ
ଏହିରୂପେ ତୁମେ କରୁଥାଅ ଦରଶନ ।
ପୁନର୍ବାର ଶୋକଗ୍ରସ୍ତ ତୁମେ ନ ହୋଇବ
ଦୁଃଖ ବିଷାଦ ତୁମକୁ କେଉଁ ନ ଘାରିବ ?
ମୁକତି ନାମେ ବିଦିତ ଯାହା ଅଛି ରାମ
ସ୍ୱର୍ଗ, ମର୍ତ୍ତ୍ୟ ପାତାଳେ ତା ନାହିଁ ଅବସ୍ଥାନ ।
ସମ୍ୟକ୍ ଜ୍ଞାନେ ଉଭାସିତ ସୁନିର୍ମଳ ଚିତ୍ତ-
ବ୍ୟତୀତ ସେ ଅନ୍ୟ କିଛି ନୁହେ ରଘୁନାଥ ।

ଆକାଂକ୍ଷିତ ବିଷୟରେ ଅନାସକ୍ତି ଭାବ
ଉଦିତ ହୁଅନ୍ତେ ଚିତ୍ତ କ୍ଷୀଣତା ଲଭିବ ।
ତତ୍ତ୍ୱଦର୍ଶୀଙ୍କ ମତରେ ଜାଣ ରଘୁନାଥ
ତାହାହିଁ ମୁକ୍ତି ନାମେ ହୋଇଛି ବ୍ୟକତ ।
ଯେଉଁଯାଏ ନ ଉଇଁଛି ଶୁଦ୍ଧ ଆତ୍ମ ଜ୍ଞାନ
ସେ ପର୍ଯ୍ୟନ୍ତ ଚିତ୍ତ ରହିଥାଏ ବର୍ତ୍ତମାନ ।
ବନ୍ଧନ, ମୁକ୍ତି କଳ୍ପନା ପରିହାର କରି
ଆତ୍ମବୋଧ ଜ୍ଞାନଧରି ପାଳ ବସୁନ୍ଧରୀ ।
କହନ୍ତି ବଶିଷ୍ଠ ରାମ କଥା ଏକ ଶୁଣ
ଆଜ୍ଞା କରି ନ ପାରଇ ଆତ୍ମା ଦରଶନ ।
ଶରୀରକୁ ଆତ୍ମା ବୋଲି ମଣୁଥାଏ ସେହି
ଦେହ ଅଭିମାନ ଯେବେ ଉପସ୍ଥିତ ହୋଇ ।
ରାଗ ଦ୍ୱେଷ ଆଦି କରି ପହୁଞ୍ଚନ୍ତି ଆସି
ଜୀବର ସୁଗୁଣମାନ ହେଉଥାନ୍ତି ଗ୍ରାସୀ ।
ରାଗାଦି ବିକାର ହେତୁ ଏ ମିଥ୍ୟା ଜଗତ
ଉତପନ୍ନ ହୋଇଥାଏ ଆହେ ରଘୁନାଥ ।
ଜଳରୁ ତରଙ୍ଗ ଯଥା ହୁଅଇ ଉତ୍ପନ୍ନ
ଆତ୍ମାରୁ ସ୍ଫୁରିତ ହୁନ୍ତି ଏହି ଗୁଣମାନ ।
ଅହଂକାର, ବୁଦ୍ଧି, ମନ, ଇନ୍ଦ୍ରିୟ ବାସନା
ଭିନ୍ନ ଭିନ୍ନ ନାମ ଧରି ଜନମନ୍ତି ସିନା ।
ଅହଂକାର ଚିତ୍ତ ମଧ୍ୟେ ଯାହାକି ପ୍ରଭେଦ
ଶବ୍ଦଗତ ମାତ୍ରା ତାହା, ନାହିଁ ତହିଁ ଭେଦ ।
ଯାହା ଅହଂକାର ତାହା କେବଳ ଏ ଚିତ୍ତ
ଯାହା ଚିତ୍ତ ତାହା ଅହଙ୍କାର ରଘୁନାଥ ।
ଚିତ୍ତ ଅହଂକାର ମଧ୍ୟେ ଏକର ଅଭାବ
ଘଟିଲେ ନିଶ୍ଚେ ଅନ୍ୟର ଅଭାବ ଘଟିବ ।
ତେଣୁ ବୈରାଗ୍ୟ ବିବେକ ଅଭ୍ୟାସ ବଳରେ
ଚିତ୍ତର ଅସ୍ତିତ୍ୱ ଦୂର କରାଯାଇପାରେ ।
ସର୍ବାତୀତ ଆତ୍ମା ଯେବେ ସର୍ବଭୂତେ ମିଳେ
ବନ୍ଧନ, ମୁକ୍ତିର ସ୍ଥାନ ଅବା କେଉଁଠାରେ ?
ଚିତ୍ତ ମୂଳ ଉତ୍ପାଟନେ ହୁଅ ଯତ୍ନବାନ
ଚିତ୍ତହିଁ ଅଟଇ ସର୍ବ ଅନର୍ଥ କାରଣ ।
ଚିତ୍ଶକତି ଅଟେ ରାମ ଅତିଶୟ ସୂକ୍ଷ୍ମ
ସର୍ବବ୍ୟାପୀ, ନିଜେ କରେ ନିଜର ସ୍ପନ୍ଦନ ।
ଅନ୍ୟ କେହି କରି ନ ପାରଇ ତା ସ୍ପନ୍ଦନ
ନିଜ ସ୍ୱରୂପେ ସଂସ୍ଥିତ ଅଟେ ସେହୁ ଜାଣ ।
ସେହି ଏକା କରେ ଏହି ସଂସାର ପ୍ରକାଶ
ଅଦ୍ଭୁତ ତାହାର ଶକ୍ତି ହେ ରଘୁବିଳାସ ।
ଥାଉଁ ଥାଉଁ ଏ ପ୍ରକାର ସାରୂପ୍ୟ ଆତ୍ମାର
କି କାରଣେ ଦୁଃଖ ଭୋଗ କରୁଥାଏ ନର ?
ନିଜକୁ ଯେ କର୍ତ୍ତା, ଭୋକ୍ତା, ଜ୍ଞାତା ମଣେ ନର
ତାହା ଦେହ ଅଭିମାନ ଭ୍ରାନ୍ତିର ସେ ଫଳ ।
ପରମାର୍ଥ ଜ୍ଞାନ ରାମ ହୁଅନ୍ତେ ଉଦୟ
ସମୂଳେ ବାସନାମାନ ହୋଇଯାନ୍ତି କ୍ଷୟ ।
ଯେଉଁ ଅବିଦ୍ୟା ଆତ୍ମାକୁ ଘେରିଣ ଅଛଇ
ତାହାର ବିନାଶ ମଧ୍ୟ ଘଟେ ସେଥିପାଇଁ ।
ଆଶା-ବୈତରଣୀ ଯେବେ ହୃଦୟରୁ ଯାଏ
ଆହ୍ଲାଦ ସମ୍ପନ୍ନ ନର ଚନ୍ଦ୍ର ପରି ହୁଏ ।
ସର୍ବରୂପୀ ସର୍ବବ୍ୟାପୀ ହୁଏ ସେ ମହାତ୍ମା
ଦରଶନ ଲଭେ ସର୍ବାକାର ପରମାତ୍ମା ।
ସେହି ଶୁଦ୍ଧାତ୍ମା ସଂସାର ଭାବକୁ ତେଜିଣ
ଆତ୍ମା ସହ ଅନୁରାଗ ଭାବ ରଖେ ରାମ ।
ପରମ ପଦ ଲଭିଣ, ଭୋଗଇ ବିଶ୍ରାମ
ନିତ୍ୟ ଶାନ୍ତିଧାରା ତହିଁ କରୁଥାଏ ପାନ ।
ନୁହେ ପୁନରାଗମନ ଚଳିଲେ ଯେ ସ୍ଥାନେ
ବାକ୍ୟ, ମନ, କର୍ମ ସହ ବିରାଜେ ସେ ସ୍ଥାନେ ।
ଏହିଁ ଭାବ ଯେବେ ହୁଏ ବାସନା ମୁକତ
ଉପାଧି ତେଜିବା ପାଇଁ ହୁଅନ୍ତେ ସମର୍ଥ ।
ତେବେ ଯାଇଁ ହୋଇପାରେ ଜୀବନ ମୁକତ
ତେଣୁ ରାମ ତ୍ୟାଗ କର ବାସନା ସମସ୍ତ ।
ବାସନା ତେଜିଣ କର ମୌନାବଲମ୍ବନ
ମଉନ ଦିଏ ଜୀବକୁ ନୂତନ ଜୀବନ ।
ତ୍ରିଲୋକ୍ୟ ସମ୍ପଦ ରାମ ଯାହାପାଇଁ ତୃଣ
ଆଶା ନାଶେ ସେ ପରମ ସୁଖ ମିଳେ ଜାଣ ।
ବାସନାହୀନ ମହାତ୍ମା ଉପହାସ କରେ
ପ୍ରତିଗ୍ରହ, ଭୋଗ, ଦାନ, ସମ୍ପଦ ସଂସାରେ ।
କେତେବେଳେ ହେଲେ ସୁଦ୍ଧା ଆଶା ଯା ଅନ୍ତରେ
ସ୍ଥାନ ପାଇପାରେ ନାହିଁ ଆହେ ରଘୁବୀରେ ।
ତ୍ରିଭୁବନକୁ ସେ ବ୍ୟକ୍ତି ତୃଣ ପରି ଜ୍ଞାନ
କିମ୍ପା ନ କରିବ କହ ହେ ରଘୁନନ୍ଦନ ?
ନିର୍ମଳ ସୁଖ ସ୍ୱରୂପ ଯେଉଁ ନିରାଶତା
ଆଶ୍ରା କରି ରହ ତାକୁ ଶ୍ରୀରାମ ମହାତ୍ମା ।

ଆଶା କେହି ନୁହେ ତୁମ, ତୁମେ ସେ ଆଶାର
ଏ ଜଗତ ମିଥ୍ୟା ଭ୍ରମ ଆନ ନ ବିଚାର ।
ଆହେ ମହାବାହୋ ! ଲଭି ଏହିପରି ଜ୍ଞାନ
ଦେହ ଅହଂକାର ଭ୍ରମେ ମୁଗଧ କି କାରଣ ?
ବୁଝୁନାହଁ କିହେ ରାମ ଏ ସାରା ଜଗତ
କେବଳ ହିଁ ଆତ୍ମା, କିଛି ନୁହେ ତଦ୍‌ବ୍ୟତୀତ ?
ଆତ୍ମାର ସ୍ୱରୂପ ଜାଣି ଏ ସାରା ଜଗତ
ଜ୍ଞାନୀଗଣ ଦୁଃଖେ ନ ହୁଅନ୍ତି ବଶୀଭୂତ ।
ବସ୍ତୁର ଯଥାର୍ଥ ରୂପ ହେଲେ ପରିଜ୍ଞାତ
ନୈରାଶ୍ୟ ଆସି ପହଞ୍ଚି ଯିବା ସୁନିଶ୍ଚିତ ।
ବସ୍ତୁର ସେହି ସ୍ୱରୂପ ଦେଖିବାକୁ ଗଲେ
ଭାବ, ଅଭାବ ବିକାର ତେଜିବାକୁ ପଡ଼େ ।
ତହିଁରୁ ହୋଇଣ ଥାଏ ବିବେକ ଜନମ
ସେ ବିବେକ ବୈରାଗ୍ୟରେ ଯେ ବ୍ୟକ୍ତିର ମନ ।
ଦୃଢ଼ ହୋଇଉଠେ ଜାଣ ଆହେ ରଘୁବୀର ।
ସଂସାର ମାୟା ତାଠାରୁ ରହେ ବହୁଦୂର ।
ସୁନ୍ଦରୀ ନାରୀ କି ମଧ୍ୟ ସେ ଧୀର ପୁରୁଷ
ଦେଖଇ ପ୍ରସ୍ତର ପୁତ୍ତଳିକାର ସଦୃଶ ।
ଆନନ୍ଦ ଦେଇ ନପାରେ ଭୋଗ୍ୟ ବସ୍ତୁ ତାକୁ
ଅନିଷ୍ଟ ଘଟନା ଦୁଃଖ ନଦିଏ ତାହାକୁ ।
ମନୋହର ଦୃଶ୍ୟେ ସେହୁ ନୁହେ ଧୈର୍ଯ୍ୟଚ୍ୟୁତ
ଆତ୍ମଦର୍ଶୀ ସୁଖେ ଦୁଃଖେ ନୁହେଁ ବିଚଳିତ ।
ସର୍ବଭୂତ ଆତ୍ମାମଧ୍ୟେ ରହି ବିରାଜିତ
ବ୍ରହ୍ମାପରି କାଳୋଚିତ କର୍ମେ ରହେ ରତ ।
ଋତୁ ପରିବର୍ତ୍ତନରେ ଯଥା ପର୍ବତର
କିଛି ପରିବର୍ତ୍ତନ ନୁହେଁ ରଘୁବୀର,
ଦେଶକାଳ ଅନୁସରି ତେସନ ମହତ
ଉପସ୍ଥିତ ସୁଖ ଦୁଃଖେ ନୁହେଁ ବିଚଳିତ ।
ଦେହାତୀତ ଆତ୍ମାର ଯେ ପାଏ ଦରଶନ
ଦେହ କଟିଗଲେ ନ ଜାଣଇ ସେ କଷଣ ।
ବୃନ୍ତଚ୍ୟୁତ ପୁଷ୍ପଟିକୁ ଯେପରି ହେ ରାମ
ବୃନ୍ତେ ସଂଯୁକ୍ତ କରିବା ଅଟଇ କଠିନ ।
ହୃଦ୍‌ଗ୍ରନ୍ଥି ସକଳ ଯେବେ ଛିନ୍ନ ହୋଇଯାଏ
ଆବଦ୍ଧ ନୋହିପାରେ ସେ କୌଣସି ଉପାୟେ,
ଥରେ ଯେବେ ଅବିଦ୍ୟାକୁ ପାରିବ ଜାଣିଣ
ଆଉ ତହିଁ କେଭେଁ ନୋହି ପାରିବ ନିମଗ୍ନ ।

ରମଣୀର ଚିତ୍ରପଟେ କିଛିତ ନଥାଇ
ଶ୍ୱେତ-ପିତାଦି ବର୍ଣ୍ଣ ହିଁ ସମାବେଶ ତହିଁ ।
ସୁନ୍ଦରୀ ନାରୀକି ଦେଖି ତତ୍ତ୍ୱଜ୍ଞ ପୁରୁଷ
ମନେକରେ ପଞ୍ଚତତ୍ତ୍ୱ ମାତ୍ର ସମାବେଶ ।
ତେଣୁ ତାଙ୍କ ନିକଟରେ ସେ ସୁନ୍ଦରୀ ନାରୀ
ଲୋଭନୀୟ ବିବେଚିତ ହୋଇବ କିପରି ?
ଗୁଡ଼ର ମାଧୁର୍ଯ୍ୟ ଯଥା ତାପ ପ୍ରଭାବରେ
ବିନଷ୍ଟ ନୋହିଣ ରହିଥାଏ ଅକ୍ଷୁର୍ଣ୍ଣରେ ।
ଥରେ ମାତ୍ର ଆତ୍ମାନନ୍ଦ ହେଲେ ଅନୁଭୂତ
ବିନଷ୍ଟ ନୁହଇ କେଭେଁ ତାହା କଦାଚିତ ।
ଧୀର ଜନ ଶ୍ରେଷ୍ଠ ତତ୍ତ୍ୱେ ଲଭିଲେ ବିଶ୍ରାନ୍ତି
ଇନ୍ଦ୍ରାଦି ଦେବେ କି ତାକୁ ଛଳି ନ ପାରନ୍ତି ।
ଥରେ ମାତ୍ର ଜ୍ଞାନାମୃତ ସ୍ୱାଦ ଯେ ପାଇଛି
ଏ ସଂସାର କେଭେଁ ତାକୁ ଟାଳି ନ ପାରିଛି ।
ଅବିଦ୍ୟା ବିନାଶ ଯେଣୁ ହୁଏ ଜ୍ଞାନୀଙ୍କର
ସଂସାର ଭାବେ ବ୍ୟାପୃତ ହେଲେହେଁ ସେ ନର,
ଅନ୍ତରେ ଅସୀମାନନ୍ଦ କରେ ଅନୁଭବ
ଅବିଦ୍ୟା କ୍ଷୟର ଜାଣ ଏମନ୍ତ ପ୍ରଭାବ ।
ଅଶ୍ରୁ ବର୍ଷଣ କଲେହେଁ, ନକରେ ରୋଦନ
ଦାହ ଲାଗୁଥିଲେ ମଧ୍ୟ ନଲଭେ ଦହନ ।
ଶରୀର ବିନାଶେ ତା'ର ନହୁଅଇ ନାଶ
ବାହ୍ୟେ ବାହ୍ୟେ ଉଡ଼ିଯାଏ ତା ସକଳ ତ୍ରାସ ।
ସମ୍ପୂର୍ଣ୍ଣ ବିଲୀନ ନୁହେଁ ଯାବତ୍ ତା'ଚିତ୍ତ
ପ୍ରାରବ୍ଧ କର୍ମଫଳ ତା ଯା' ହୁଏ ପ୍ରାପତ,
ଦୁଃଖ, ଦାରିଦ୍ର୍ୟ, ସଙ୍କଟ ଆଦି କରି ଯେତ
କାହିଁରେ କେବେହେଁ ସେହୁ ନୁହେଁ ଅଭିଭୂତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକାରଣେ,**
**ନୀରାସ୍ୱଦ ମୌନ ବିଚାର ବର୍ଣ୍ଣନେ**
**ନାମ ୬୨ତମ ସର୍ଗଃ ।**



## ୬୩ଶ ସର୍ଗଃ

## ମୁକ୍ତ ଅମୁକ୍ତ ବିଚାର୍

କହନ୍ତି ବଶିଷ୍ଠ ଶୁଣ ହେ ରଘୁନାୟକ
ପ୍ରାଚୀନ ରାଜା ମାନ୍ଧାତା, ରାଜର୍ଷି ଜନକ ।

ସୂର୍ଯ୍ୟପୁତ୍ର ମନୁ ପୁଣି ଦିଲୀପ ରାଜନ
ଅନାଶକ୍ତ ଚିତ୍ତେ କଲେ ସ୍ୱରାଜ୍ୟ ପାଳନ ।
ଘୋର ଯୁଦ୍ଧ ବିଗ୍ରହରେ ଲିପ୍ତ ଥାଇ ମଧ୍ୟ
ଲାଭ କରି ପାରିଥିଲେ ସେ ପରମ ପଦ ।
ନମୁଚି, ପ୍ରହ୍ଲାଦ, ବୃତ୍ର, ବଳି ଆଦିକରି
ଅନାସକ୍ତ ଭାବେ ରଣ ରତ ଥାଇକରି ।
ଦାନବ ଗଣଙ୍କ ଟେକ ରଖି ପାରିଥିଲେ
ତଥାପି ଆନନ୍ଦ ପରଂପଦ ଲାଭ କଲେ ।
ଦେବମୁଖ ଅଗ୍ନି ସଦା ଯଜ୍ଞ ଭୋକ୍ତା ଥାଇ
ନିରନ୍ତରେ କର୍ମପରାୟଣ ରହି ସେହି,
ତଥାପି ମୁକତ ରୂପେ କରେ ଅବସ୍ଥାନ
ଅନାସକ୍ତି, ନିର୍ଲିପ୍ତତା ଏଥିର କାରଣ ।
ଦୈତ୍ୟଗୁରୁ, ଶୁକ୍ର, ସୁରଗୁରୁ ବୃହସ୍ପତି
ପବନ ଦେବ ଯେ ଅଟେ ଜଗତ୍ ପ୍ରାଣପତି,
ବ୍ରହ୍ମାମୃତ ପାନକରି କୁମୁଦ-ବାନ୍ଧବ
ଦୁଃଖ ସୁଖେ ଅସଂପୃକ୍ତ ରହିଣ ରାଘବ,
ଅନାସକ୍ତଭାବେ କରି ଯାନ୍ତି ନିଜ କର୍ମ
ମୁକତ ଭାବେ କରନ୍ତି ସଦା ଅବସ୍ଥାନ ।
ଅଧିକ ମୁଁ କି କହିବି ତୁମ୍ଭଙ୍କୁ ଶ୍ରୀରାମ
ସୃଷ୍ଟି ସର୍ଜନ, ପାଳନ, ପୁଣି ସଂହାରଣ,
କରି ଯାଇଛନ୍ତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର
ଅନାଶକ୍ତ ଭାବେ ଜାଣ ଆହେ ରଘୁବୀର ।
ଜ୍ଞାନରତ୍ନର ଆକାର ଦେବ ସେନାପତି
ବୀରବର କାର୍ତ୍ତିକେୟ ତାରକ ପ୍ରଭୃତି ।
ଅସୁରଗଣଙ୍କ ସଙ୍ଗେ ରଣେ ଥାଇ ରତ
ମୁକତ ଭାବେ ରହନ୍ତି ଆହେ ରଘୁନାଥ ।
ଭୃଗୁ ଭରଦ୍ୱାଜ ଜଗଦ୍‌ମାନ୍ୟ ବିଶ୍ୱାମିତ୍ର
ଶୁକ ନାରଦ ଇତ୍ୟାଦି ଯେ ଜୀବନ ମୁକ୍ତ ।
ସେମାନଙ୍କ ଗୁଣ ତୁମେ ଅବଶ୍ୟ ଜାଣିଛ
ରଜା ଶର୍ଯ୍ୟାତି, ସଗର ଗୁଣ ବୁଝିଅଛ ।
ସଗର, ଶର୍ଯ୍ୟାତି ଆଦି ରାଜ କାର୍ଯ୍ୟକରି
ଜ୍ଞାନଲାଭ କରିଥିଲେ ଆହେ ଚାପଧାରୀ ।
ଅନନ୍ତ କରି ଅଛନ୍ତି ପୃଥିବୀ ଧାରଣ
ଦିନ ପ୍ରକାଶ କରନ୍ତି ଯେ ଦେବ ତପନ ।
ଯମରାଜା କରୁଛନ୍ତି ସ୍ୱକାର୍ଯ୍ୟ ନିର୍ବାହ
ସକଳେ ମୁକତ ଜାଣ ଆହେ ରଘୁରାୟ ।

ଆଉ ମଧ୍ୟ କେତେ ସୁର କେତେ ବା ଅସୁର
ଜଗତ୍ କାର୍ଯ୍ୟ ନିର୍ବାହରେ ଛନ୍ତି ତତପର ।
ଜ୍ୟୋତିଶ୍ଚକ୍ରେ ଶତଶତ ମହାତମା ଗଣ
ଅନ୍ତରୀକ୍ଷେ ଅବସ୍ଥାନ କରୁଛନ୍ତି ଜାଣ ।
ତୀର୍ଯ୍ୟକ ଯୋନିରେ ଜନ୍ମି ବୀର ହନୁମାନ
ତାଙ୍କପରି ଯେତେ ଥିଲେ ମହାତମାଗଣ ।
ସେ ସରବେ ଥିଲେ ରାମ ସୁଜ୍ଞାନ ସମ୍ପନ୍ନ
ଅନାସକ୍ତ ଭାବେ କଟିଗଲା ତାଙ୍କ ଦିନ ।
ଦେବତା ଆଦି ଉତ୍ତମ ଯୋନିମାନଙ୍କରେ
ବହୁମୂଢ଼ ଅଜ୍ଞ ଜୀବ ଜନମ ଲଭିଲେ ।
ଅତୀବ ଆଶ୍ଚର୍ଯ୍ୟ ରାମ ବିଧିର ବିଧାନ
ସରବ ସମ୍ଭବପର ତା ସୃଷ୍ଟିରେ ଜାଣ ।
ଧାତା, ସର୍ବେଶ୍ୱର, ଦୈବ ଶିବ ଆଦି ନାମେ ।
ସେହି ବିଧି ବିରାଜିତ ଏହି ବିଶ୍ୱଧାମେ ।
ଆମ୍ଭମାନଙ୍କର ଆତ୍ମା ସେହି ଏକାଜାଣ
ତା ପ୍ରଭାବେ ସମ୍ଭବଇ ସକଳ ଘଟନ ।
ବଜ୍ରରୁ କଠିନ ଅଟେ ଏହି ଯେ ଧରଣୀ
ଚନ୍ଦ୍ରମା, ତପନ, ସିନ୍ଧୁ ଆଦି ରଘୁମଣି
ଯାହାଙ୍କ ବିଳୟ ଅଟେ କଳ୍ପନା ଅତୀତ
କଳ୍ପ ଅବସାନେ ସବୁ ହୁଏ ଧ୍ୱଂସସାତ୍ ।
ଦେଖି ସଂସାରର ଏହି ପରିବରତନ
ରାଗ ଦ୍ୱେଷ ପରିତ୍ୟାଗ କରହେ ଶ୍ରୀରାମ ।
ସମଭାବ ଅନୁସରି କାଟୁଥା ଅଦିନ
ଶାନ୍ତି ସମ୍ପୂର୍ଣ୍ଣ ରାଜ୍ୟରେ କର ବିଚରଣ ।
ମଙ୍ଗଳ ଆକାଂକ୍ଷାକରେ ଯେବଣ ବ୍ୟକତି
ଆତ୍ମବୋଧ ସାଧନରେ ଥିବ ତା'ର ମତି ।
ଆତ୍ମବୋଧ ଉଦୟରେ ସକଳ ଦୁଃଖର
ଅବସାନ ଘଟିଥାଏ ଆହେ ରଘୁବୀର ।
ବୈରାଗ୍ୟ ବିବେକବଳେ ହୋଇ ଧୈର୍ଯ୍ୟଶୀଳ
ଲୋଷ୍ଟ୍ରରେ ସ୍ୱର୍ଣ୍ଣରେ ସମଜ୍ଞାନକୁ ଆଚର ।
ମମତା କ୍ଷୟକୁ ମୁକ୍ତି କହନ୍ତି ଜ୍ଞାନୀଏ
ଦେହଥିଲେ ବା ଦେହାନ୍ତେ ତାହା ଘଟିଥାଏ ।
ବାସନାହୀନ ହୋଇଣ ଯେ ରହେ ଜୀବିତ
ଜୀବନ ମୁକତ ବୋଲି ସେ ହୁଏ କଥିତ ।
ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ମୁକ୍ତାମୁକ୍ତ ବିଚାର ବର୍ଣ୍ଣନେ
ନାମ ୬୩ତମ ସର୍ଗଃ ।

❑

## ୬୪ଶ ସର୍ଗଃ

## ସଂସାର୍ ସାଗର୍ ଉପଦେଶ

ବଶିଷ୍ଠ କହନ୍ତି ଏବେ ଶୁଣ ରଘୁନାଥ
ବ୍ରହ୍ମର ସ୍ୱରୂପ ଯଦି ନୋହିଥିବ ଜ୍ଞାତ ।
ଏ ମିଥ୍ୟା ସଂସାର ତେବେ ହୁଏ ପ୍ରକାଶିତ
ଅବିବେକ ହେତୁ ହୁଏ ଦୃଢ଼, ବିବର୍ଦ୍ଧିତ ।
ବିବେକ ଉଦୟେ ତାର ହେବ ଉପଶମ
ମିଥ୍ୟା ସଂସାର ସ୍ୱରୂପ ବୁଝିବ ସେ ଜନ ।
ବ୍ରହ୍ମସାଗରେ ଯେ ଭବ ତରଙ୍ଗ ଉଠଇ
କେହି ହେଲେ ତାର ସଂଖ୍ୟା କରି ନ ପାରଇ ।
ଜଗତ ସ୍ଥିତିର ହେତୁ ମିଥ୍ୟା ଦରଶନ
ସମ୍ୟଗ୍ ଦର୍ଶନେହିଁ ତାର ହୁଏ ଉପଶମ ।
ଅତୀବ ଦୁସ୍ତର ଘୋର ସଂସାର ସାଗର
ଜ୍ଞାନ ଓ ଚେଷ୍ଟା ବ୍ୟତୀତ ତାକୁ ତରିବାର,
ଅତି ଅସମ୍ଭବ ଅଟେ ଜାଣ ରଘୁବୀର
ମୋହରୂପ ଜଳେ ପୂର୍ଣ୍ଣ ଯେଣୁ ସେ ସାଗର ।
ଏ ସାଗରେ ଫେନପୁଞ୍ଜ ପୂର୍ଣ୍ଣ ରାଶି ପରି
ନରକ ଯନ୍ତ୍ରଣା ତହିଁ ବାଡ଼ବାଗ୍ନି ସରି ।
ମନରୂପ ସୁବୃହତ ଜଳଜନ୍ତୁମାନ
ତୃଷ୍ଣାରୂପ ତରଙ୍ଗଙ୍କୁ ଉତ୍‌କ୍ଷିପ୍ତ କରିଣ,
ସଂସାର ସାଗର ମଧ୍ୟେ କରନ୍ତି ଭ୍ରମଣ
ଏ ସାଗରେ ସର୍ପସମ ଆଧିବ୍ୟାଧି ମାନ ।
ଇନ୍ଦ୍ରିୟାଦି ଏଥି ଜଳଜନ୍ତୁଙ୍କ ସମାନ
ଭୀଷଣ ରବେ କରନ୍ତି ଭୀତି ଉତ୍‌ପାଦନ ।
ପ୍ରଜ୍ଞାରୂପ ନଉକାରେ କରି ଆରୋହଣ
ବିବେକରୂପ ନାବିକ ସାହାଯ୍ୟ ଘେନିଣ,
ଏ ଘୋର ସାଗରୁ ଯେହୁ ନ ହୁଏ ଉତ୍ତୀର୍ଣ୍ଣ
ଧିକ ସେ ମାନବ ଧିକ ତାହାର ଜୀବନ ।
ଜଗତକୁ ବ୍ରହ୍ମ ମଣି ଯେବଣ ସୁଜାଣ
ଅକ୍ଳେଶରେ ଭବପାରେ କରଇଁ ଗମନ ।
ସେହି ମହାତ୍ମା ଅଟଇ ଯଥାର୍ଥ ମାନବ
ପ୍ରଜ୍ଞାନେତ୍ରେ ସଂସାରକୁ ଦେଖ ହେ ରାଘବ ।
ତାପରେ ସଂସାରେ ଯେବେ କରିବ ପ୍ରବେଶ
ଶୋଭା ସୁସମ୍ପନ୍ନ ହେବ ତୁମେ ରଘୁଈଶ ।
ନଚେତ ସେଥିରେ ତୁମେ ହେବ ନିମଗନ
ସବୁରି ପାଇଁ କି ଜାଣ ଏହି ଯେ ନିୟମ ।
ବିଷଧର ସର୍ପପରି ଅତି ଭୟଙ୍କର
ବିଚାର ପୂର୍ବକ ସଂସାରକୁ ଭୋଗକର ।
ପରିଣାମେ, କଷ୍ଟପ୍ରଦ ନ ହୋଇବ ତାହା
ବିଚାର କରି ଭୋଗିଲେ ସୁଖଦେବ ଏହା ।
ବସ୍ତୁର ସ୍ୱରୂପ ଯେଣୁ ଜାଣି ପାରିଅଛ
ଚନ୍ଦ୍ରର ସଦୃଶ ତେଣୁ ଶୋଭା ପାଉଅଛ ।
ଏହିପରି ସୁଖେ ଅବସ୍ଥାନ କର ରାମ
ପରମ ଆଦର୍ଶ ପୂର୍ଣ୍ଣ ହେବ ତୁମଧାମ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ, ସଂସାର ସାଗର ଉପଦେଶ ବର୍ଣ୍ଣରେ ନାମ ୬୪ତମ ସର୍ଗଃ ।**



## ୬୫ଶ ସର୍ଗଃ

## ଜୀବନ୍ ମୁକ୍ତ ବର୍ଣ୍ଣନ

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ବ୍ରହ୍ମଙ୍କୁ ଯେ ଜାଣିପାରି ଅଛତ ଆପଣ ।
ମହାପୁରୁଷମାନଙ୍କ ଚରିତ୍ର କୀର୍ତ୍ତନ
କରି ମୋ ଚିତ୍ତକୁ ଦେବ କର ଉଦ୍‌ବୋଧନ ।
କହନ୍ତି ବଶିଷ୍ଠ ମହାବାହୁ ଆହେ ଶୁଣ
ଜୀବନ୍ମୁକ୍ତଙ୍କ ଲକ୍ଷଣ କରୁଛି ବର୍ଣ୍ଣନ ।
ମାନବର ବାସନାଦି ଯାହାକିଛି ଥାଏ
ଆତ୍ମଜ୍ଞାନ ଲାଭକଲେ ତାହା କ୍ଷୟଯାଏ ।
ତେଣୁ କରି ଅନାସକ୍ତ ଚିତ୍ତ ହୋଇକରି
ସଂସାରକୁ ସୁପ୍ତବତ ଦର୍ଶନ ସେ କରି ।
କୈବଲ୍ୟ ପାଇଣ ନିତ୍ୟାନନ୍ଦେ ମଗ୍ନ ହୁଏ
ସମବୁଦ୍ଧି ହେତୁ ଧନରତ୍ନ ଲଭିଲେହେଁ,
ଅନ୍ତରେ ସେ ଧନ ସେହୁ ଗ୍ରହଣ ନ କରେ
ପ୍ରଜ୍ଞାହେତୁ ସଂସାରକୁ ଉପହାସ କରେ ।
ଭବିଷ୍ୟତ ପାଇଁ ସେହୁ ଅପେକ୍ଷା ନ କରେ
ବର୍ତ୍ତମାନରେ ନିର୍ଲିପ୍ତ ରହେ ସେ ସଂସାରେ ।
ଅତୀତକୁ ସ୍ମୃତିପଥେ ନ ଆଣଇ ସେହି
ଅଥଚ ସେ ସବୁକଥା ସଦା କରୁଥାଇ ।

ଜଗତ ବ୍ୟବହାରରେ ଥାଇ ସୁପ୍ତବତ
ସର୍ବଦା ପ୍ରବୁଦ୍ଧ ଭାବେ ରହେ ସେ ପଣ୍ଡିତ ।
ଜାଗତିକ୍ ବିଷୟରେ ଥିଲେହେଁ ଜାଗ୍ରତ
ସବୁବେଳେ ରହିଥାଏ ସେହୁ ସୁପ୍ତବତ
ଉଦ୍‌ଯୋଗୀ ହେଲେହେଁ ସର୍ବ କରମରେ ସେହି
କିନ୍ତୁ ସର୍ବବିଷୟରେ ଉଦାସୀନ ଥାଇ ।
କୌଣସି ମାତ୍ର କାମନା ନଥାଏ ତା ମନେ
କୌଣସି ବିଷୟେ ଦ୍ୱେଷ କେଭେଁ ସେ ନଘେନେ ।
ଅନୁଗତକୁ ଦେଖାଏ ସେହୁ ଆନୁକୂଲ୍ୟ
ବିରୁଦ୍ଧତା କରେ ଯେହୁ ଅଟେ ପ୍ରତିକୂଳ ।
ଭକ୍ତକୁ ଦେଖାଏ ସେହୁ ଅନୁଗ୍ରହ ଭାବ
ଶଠ ଠାରେ ଦେଖାଉଣ୍ ଥାଏ ଶାଠ୍ୟଭାବ ।
ବାଳକମାନେ ବୁଝନ୍ତି ସେ ଅଟେ ବାଳକ
ଯୁବକକୁ ଜଣାଯାଏ ସେ ଜଣେ ଯୁବକ ।
ବୃଦ୍ଧ ପ୍ରତି ବୃଦ୍ଧ ସେହୁ ଧୀର ପ୍ରତି ଧୀର
ଦୁଃଖୀ ବ୍ୟକ୍ତି ମଣେତାକୁ ଯଥା ଆପଣାର ।
କହୁଥାଏ ସେହୁ ସଦାବେଳେ ପୁଣ୍ୟକଥା
ଦୈନ୍ୟ ଭାବ ନ ଆସଇ କେବେ ତାର ମଥା ।
ପ୍ରଜ୍ଞାବାନ ହୋଇ ଆନନ୍ଦରେ ସଦା ପୂର୍ଣ୍ଣ
ଆଗ୍ରହରେ ପୂଣ୍ୟକଥା କରଇ କୀର୍ତ୍ତନ ।
ପ୍ରତିଭା ଉଦୟେ ରହେ ପୂର୍ଣ୍ଣ ପ୍ରଜ୍ଞାବାନ
ତେଣୁ କରି ସଦାରହେ କୋମଳ, ପ୍ରସନ୍ନ ।
ପୂଣ୍ୟାର୍ଜ୍ଜନ କିମ୍ବା ସତକର୍ମ ଅନୁଷ୍ଠାନ
ତହିଁରେ ନ ଥାଇ ତା'ର କିଛି ପ୍ରୟୋଜନ ।
ନିଷିଦ୍ଧ କର୍ମ କଲେହେଁ ପାପଭାଗୀ ନୋହି
ଭୋଗ ବା ତ୍ୟାଗରେ ପ୍ରୟୋଜନ ତା ନଥାଇ ।
ବ୍ରହ୍ମରୂପେ ଦେଖାଗଲେ ପାର୍ଥିବ ପଦାର୍ଥ
ସାଂସାରିକ ଭୋଗ ତ୍ୟାଗ ତା ପାଇଁ କିଞ୍ଚିତ ।
ସମ୍ୟକ୍ ଜ୍ଞାନଉଦୟେ ସନ୍ଦେହ ହଜଇ
ସର୍ବ ବିଷୟେ ତା ଚିତ୍ତେ ଶଙ୍କା ନ ଆସଇ ।
ବାହାରକୁ କାର୍ଯ୍ୟ ବ୍ୟସ୍ତ ରହିଲେ ହେଁ ସେହି
ଅନ୍ତରେ ନିଶ୍ଚେଷ୍ଟ ଯେ କାରଣୁ ରହିଥାଇ,
ବାହ୍ୟ ବିଷୟ ସତ୍ୟତା ବୁଦ୍ଧି ନ ଜନ୍ମଇ
ତେଣୁକରି କର୍ମ ଫଳ ଭୋକ୍ତା ସେ ନ ହୋଇ ।
ଦୁଃଖକୁ ଉପେକ୍ଷା ନାହିଁ, ସୁଖକୁ ଆଦର
ନିର୍ଦ୍ଦୟ ନୋହି, ଦୟାଳୁ ନୁହେଁ ସେହି ନର ।
ଚନ୍ଦ୍ରମା ଉତ୍ତପ୍ତ କିମ୍ବା ସୂର୍ଯ୍ୟ ସୁଶୀତଳ
କାହିଁରେ ବିସ୍ମିତ ହୋଇ ନ ଥାଏ ସେ ନର ।
କେଭେଁ ହେଲେ ଦୈନଭାବ ନପ୍ରକାଶେ ସେହି
ଔଧତ୍ୟ ତାର ସ୍ୱଭାବେ କେଭେ ଦେଖା ନୋହି ।
ପରିବର୍ତ୍ତନ ଚାଲିଛି ସଦା ଏ ସଂସାରେ
ଜୀବଙ୍କର ଜନ୍ମ ମୃତ୍ୟୁ ଚାଲେ ନିରନ୍ତରେ ।
ପ୍ରାଜ୍ଞ ବ୍ୟକ୍ତି ସୁଖି ଅବା ହେବ କେଉଁପରି
ଦୁଃଖ ଦେଖି ବିଚଳିତ ହେବ ସେ କିପରି ?
ମାୟା ସୃଷ୍ଟି, ଧ୍ୱଂସ ଦେଖି ଜୀବନ ମୁକତ
କିପରି ହେବ ଦୁଃଖିତ ଅବା ଆନନ୍ଦିତ ?
ସଦା ଉତ୍‌ପତ୍ତି, ବିନାଶଶୀଳ ଏ ସଂସାରେ
ଆନନ୍ଦ ବା ଦୁଃଖ ସମ୍ଭବିବ କି ପ୍ରକାରେ ?
ଅବଶ୍ୟମ୍ଭାବୀ ଅଟଇ କରମର ଫଳ
ଏ ନିୟମ ମହାତ୍ମାଙ୍କ ନିକଟେ ବିଫଳ ।
ଅଟନ୍ତି ଯେଣୁ ସେମାନେ ଆକାଙ୍‌କ୍ଷା ବିହୀନ
କଉଣସି ଦୁଃଖ ତାଙ୍କୁ ନ ବାଧେ ହେ ରାମ ।
ଏ ଭବେ ଆତ୍ମା ବ୍ୟତୀତ ଅନ୍ୟ କିଛି ନାହିଁ
ଏ ଦୃଢ଼ ବିଶ୍ୱାସ ରାମ ଯେବେ ଜନମଇ ।
ଦୃଶ୍ୟ ପଦାର୍ଥ ଆତ୍ମାରେ ହୁଅନ୍ତି ବିଲୀନ
କ୍ଷୁଦ୍ରଭାବ କେଭେଁ ରହି ନ ପାରଇ ମନ ।
ଜ୍ଞାନରୂପ ଆତ୍ମା ସ୍ୱୀୟ ବିଶାଳତା ଘେନି
ସ୍ୱରୂପ ଆନନ୍ଦେ ତୃପ୍ତ ରହେ ରଘୁମଣି ।
ପ୍ରାରବ୍‌ଧ କ୍ଷୟ ପର୍ଯ୍ୟନ୍ତ ବଞ୍ଚିକରି ରହେ
ଯେଣୁ ଦୁଃଖ ସୁଖ ତାକୁ ଘାରୁଣ ନଥାଏ ।

**ଇତିଶ୍ରୀ ଯୋଗବାଶିଷ୍ଠ ଉପଶମ ପ୍ରକରଣେ**
**ଜୀବନ୍ ମୁକ୍ତ ବର୍ଣ୍ଣନେ**
**ନାମ ୬୫ତମ ସର୍ଗଃ ।**



## ୬୬ଶ ସର୍ଗଃ

## ଜୀବନ ମୁକ୍ତ ଜ୍ଞାନବୋଧ

କହନ୍ତି ବଶିଷ୍ଠ ମୁନି ରାମ ଏବେ ଶୁଣ
ବନାଟି ବୁଲିବା କଥା ହେଜ କର ମନ ।
ଅଗ୍ନିଚକ୍ର ପରି ତାହା ହୁଏ ପ୍ରତିଭାତ
ଅବିକଳ ସେହିପରି ବୁଲୁଛି ଏ ଚିତ୍ତ ।

ତେଣୁକରି ରାମଚନ୍ଦ୍ର ଏ ମିଥ୍ୟା ଜଗତ
ସମ୍ପୂର୍ଣ୍ଣ ସତ୍ୟ ବୋଲିଣ ହୁଅଇ ପ୍ରତୀତ ।
ଜଳଦ୍ରୁତ ଆବର୍ତ୍ତନେ ଭଉଁରୀ ଜନମ
ଚିତ୍ତ ଦ୍ରୁତ ଆବର୍ତ୍ତନେ ଜଗତ ଉତ୍ପନ୍ନ ।
ଯଥା ଜଳରୁ ସ୍ୱତନ୍ତ୍ର ଦିଶଇ ଭଉଁରୀ
ଚିତ୍ତଠୁଁ ସ୍ୱତନ୍ତ୍ର ଦିଶେ ଜଗତ ସେପରି ।
କହନ୍ତି ଶ୍ରୀରାମ କହ ଆହେ ତପୋଧନ
କି କାରଣେ ଏ ଚିତ୍ତର ହୁଅଇ ସ୍ପନ୍ଦନ ।
କେଉଁ ଉପାୟ ବଳରେ ଆହେ ତପୋଧନ
ଏ ଚିତ୍ତ ହୋଇ ପାରିବ ସ୍ପନ୍ଦନ ବିହୀନ ।
ବଶିଷ୍ଠ ବୋଲନ୍ତି ରାମ ତାହା ଏବେ ଶୁଣ
ଅଗ୍ନି ଓ ଦାହୀକା ଶକ୍ତି ଅଭିନ୍ନ ଯେସନ ।
ଅନୁରୂପ ଚିତ୍ତ ଏବଂ ସ୍ପନ୍ଦନ ଶକ୍ତିରେ
ପ୍ରଭେଦ କିଛି ହିଁ ନାହିଁ ଜାଣ ରଘୁବୀରେ ।
କଳ୍ପନା ମାତ୍ରକ ଏହା ଆହେ ରଘୁଶ୍ରେଷ୍ଠ
କହିବାକୁ ଗଲେ ଖାଲି ଅଭିଧାନ ପାଠ ।
ଚିତ୍ତ, ସ୍ପନ୍ଦନ, ମଧ୍ୟରୁ ଗୋଟିକ ଧ୍ୱଂସରେ
ଅନ୍ୟଟିର ଧ୍ୱଂସ ହୋଇଥାଏ ନିରନ୍ତରେ ।
ଯୋଗ ଓ ଜ୍ଞାନ ଅଟନ୍ତି ଚିତ୍ତ ବିନାଶର
ଦୁଇଟି ଶ୍ରେଷ୍ଠ ଉପାୟ ଜାଣ ରଘୁବୀର ।
ଚିତ୍ତବୃତ୍ତି ନିରୋଧକୁ ଯୋଗ ବୋଲାଯାଏ
ବସ୍ତୁ ସ୍ୱରୂପ ଦର୍ଶନ ଜ୍ଞାନ ନାମ ନିଏ ।
ଶ୍ରୀରାମ କହନ୍ତି ଶୁଣ ଆହେ ମୁନିବରେ
କେଉଁ ଯୋଗ ଦେବ ! ପୁଣି କେଉଁ ସମୟରେ,
ଅବଲମ୍ୱ ନ କରିଣ ଏହି ଜୀବନରେ
ସକ୍ଷମ ହୁଅଇ ଜୀବ ଶାନ୍ତି ଲଭିବାରେ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀରେ
ଏହି ଯେ ପୃଥିବୀ ଅଭ୍ୟନ୍ତର ପ୍ରଦେଶରେ ।
ଜଳ ଚଳାଚଳ କରେ ସରବ ସ୍ଥାନରେ
ତଥା ଏହି ଶରୀରର ନାଡ଼ୀମାନଙ୍କରେ,
ଯେଉଁ ଶକ୍ତି ଅହରହ କରେ ଚଳାଚଳ
ତାହାକୁ କହନ୍ତି ପ୍ରାଣ ଆହେ ରଘୁବୀର ।
ଶରୀର ମଧ୍ୟରେ ପ୍ରାଣ ହୋଇଣ ସ୍ପନ୍ଦିତ
ଦୈହିକ ସକଳ କାର୍ଯ୍ୟ କରେ ସମ୍ପାଦିତ ।
ଭିନ୍ନ ଭିନ୍ନ କାର୍ଯ୍ୟ ଘେନି ଭିନ୍ନ ଭିନ୍ନ ନାମ
ଧାରଣ କରିଅଛଇ ସେହି ମୁଖ୍ୟ ପ୍ରାଣ ।

ପ୍ରାଣ, ଅପାନ, ଉଦାନ, ବ୍ୟାନ ଓ ସମାନ
ଏହି ପଞ୍ଚନାମ ଧରିଅଛି ସେହି ପ୍ରାଣ ।
ପୁଷ୍ପର ସୁଗନ୍ଧ ଯଥା ପୁଷ୍ପରେ ନିହିତ
ଅଭିନ୍ନ ଭାବରେ ରହିଅଛନ୍ତି ଜଡ଼ିତ,
ସେହି ରୂପେ ଜାଣେ ଏହି ରସମୟ ପ୍ରାଣ
ଚିତ୍ତର ଆଧାର କିନ୍ତୁ ଚିତ୍ତଠୁଁ ଅଭିନ୍ନ ।
ଅନ୍ତଃସ୍ଥିତ ଏ ପ୍ରାଣର ସ୍ପନ୍ଦନ ବଶତଃ
ଚିତ୍ର ସଂସାରୋନ୍ମୁଖି ଯେ ଶକ୍ତି ଉଦ୍‌ଭୂତ ।
ତାହାକୁ ହିଁ ଚିତ୍ତ ବୋଲି କହନ୍ତି ଶ୍ରୀରାମ
ପ୍ରାଣ ସ୍ପନ୍ଦନଟି ତେଣୁ ଧରେ ଚିତ୍ତ ନାମ ।
ପ୍ରାଣର ନିରୁଦ୍ଧ ହେଲେ ଚିତ୍ତର ବିଲୁପ୍ତ
ଚିତ୍ତବିଲୀନରେ ଭବଭାବ ତିରୋହୀତ ।
ଶ୍ରୀରାମ ବୋଇଲେ ମୁନେ ପ୍ରାଣକୁ କିପରି
ନିରୁଦ୍ଧ କରନ୍ତି ତାହା କହନ୍ତୁ ବିସ୍ତାରୀ ।
ବଶିଷ୍ଠ କହନ୍ତି ଶୁଣ ଆହେ ଧନୁର୍ଦ୍ଧର
ସାଧୁସଙ୍ଗ ବୈରାଗ୍ୟକୁ ସଦା ଅନୁସର ।
ଅନାସକ୍ତ ଭାବେ ରହ ସଂସାର ମଧ୍ୟରେ
ଧ୍ୟାନ ପରାୟଣ ହୁଅ ଇଷ୍ଟ ବିଷୟରେ ।
ଦୀର୍ଘକାଳ ବ୍ରହ୍ମତତ୍ତ୍ୱ ଅଭ୍ୟାସ ଫଳରେ
ପ୍ରାଣ ସ୍ପନ୍ଦନ ନିରୁଦ୍ଧ ହୋଇଯାଇପାରେ ।
ଅଥବା ଏକାନ୍ତ ଭାବେ ଧ୍ୟାନ ଯୋଗ ସହ
ପୂରକ, କୁମ୍ଭକ, ରେଚକକୁ ଧରି ରହ ।
ପ୍ରାଣ ସ୍ପନ୍ଦନ ନିରୁଦ୍ଧ ହୁଅଇ ଏପରି
ଅଥବା ସୁଦୀର୍ଘ କାଳ ଓଁ କାର ଉଚ୍ଚାରି ।
ଉଚ୍ଚାରଣ ଶେଷେ ଯେଉଁ ସ୍ୱରୂପାନୁଭବ
ବସ୍ତୁଜ୍ଞାନ ସାମୟିକ ନିବୃତ୍ତ ରହିବ ।
ଏହିପରି କରୁ କରୁ ସୁଦୃଢ଼ ଅଭ୍ୟାସ
ପ୍ରାଣ ନିରୁଦ୍ଧ ହୁଅଇ ହେ ରଘୁବିଳାସ ।
ଅବା ବାରମ୍ବାର କଲେ ରେଚକ ଅଭ୍ୟାସ
ପ୍ରାଣୀ ଦୀର୍ଘତ୍ୱ ଲଭିଣ ବ୍ୟାପେ ବାହ୍ୟାକାଶ ।
ନାସିକା ବିବର ତେଜିକରି ତେତେବେଳେ
ଅବସ୍ଥିତ ରହେ ଯେବି ସେହି ପରକାରେ ।
ତାହାଫଳେ ପ୍ରାଣ ମଧ୍ୟ ରହଇ ନିରୁଦ୍ଧ
ପୂରକ, କୁମ୍ଭକ ଦ୍ୱାରା ସେହିପରି ମଧ୍ୟ ।
ଜିହ୍ୱାଗ୍ରକୁ ତାଳୁମୂଳେ ସ୍ଥାପିତ କରିଣ
ପ୍ରାଣକୁ ବ୍ରହ୍ମ ରନ୍ଧ୍ରରେ କରି ନିୟୋଜନ ।

ପ୍ରାଣକୁ ନିରୁଦ୍ଧ କରିଥାନ୍ତି ଯୋଗୀଗଣ
ପ୍ରାଣ ନିରୋଧ ପ୍ରଣାଳୀ ବୁଝ ରଘୁରାଣ ।
ଧ୍ୟାନବଳେ ହୃଦାକାଶ, ବାହ୍ୟପରକାଶ,
ତିରୋହିତ ହୋଇଯାନ୍ତେ ହେ ରଘୁବିଳାସ
ସଂସାର ଭାବ ନ ରହେ ଅନ୍ତରେ ବାହାରେ
ପ୍ରାଣ ନିରୁଦ୍ଧ ହୁଅଇ ଏହି ଅବସ୍ଥାରେ ।
ନାକ ଅଗରୁ ଦ୍ୱାଦଶ ଅଙ୍ଗୁଳ ପର୍ଯ୍ୟନ୍ତ
ବାହ୍ୟାକାଶେ ମନ, ଚକ୍ଷୁ ରହିଲେ ବିଶ୍ରାନ୍ତ,
ପ୍ରାଣର ନିରୋଧ ହୋଇପାରେ ସେ ଉପାୟେ
ବ୍ରହ୍ମ ମଧ୍ୟେ ପ୍ରାଣସ୍ଥିତ ହେଲେ ରଘୁରାଏ ।
ବାହାର ସହ ସମ୍ବନ୍ଧ ନଥାଇ ତାହାର
ସେ ଅବସ୍ଥାରେ ନିରୁଦ୍ଧ ଘଟଇ ପ୍ରାଣର ।
ଭ୍ରୂମଧ୍ୟେ ନେତ୍ର ଯୁଗଳ ହୁଅନ୍ତେ ସ୍ଥାପିତ
ଆତ୍ମାସ୍ୱରୂପେ ପରମ ଈଶ୍ୱର ଯେ ଜ୍ଞାତ ।
ତଦ୍ୱାରା ମଧ୍ୟ ପ୍ରାଣର ନିରୋଧ ଘଟଇ
ଈଶ୍ୱର ଦୟାରେ ତତ୍ତ୍ୱଜ୍ଞାନ ଯେବେ ହୋଇ ।
ଦହରାକାଶ ଯାକୁ କି ଚିଦାକାଶ କହି
ତହିଁ ମଧ୍ୟେ ପରବେଶ କରିପାରେ ସେହି ।
ପ୍ରାଣ ସ୍ପନ୍ଦନ ନିରୁଦ୍ଧ ହୁଅଇ ତାହାର
ପ୍ରାଣ ସ୍ପନ୍ଦନର ତତ୍ତ୍ୱ ବୁଝ ରଘୁବୀର ।
ଶ୍ରୀରାମ ବୋଇଲେ ଦେବ ହୃଦୟ ବିଷୟ
ଯାହା କିଛି କହିଗଲେ କରିଣ ନିର୍ଣ୍ଣୟ ।
ଯହିଁରେ ପ୍ରତିବିମ୍ବିତ ଏ ସାରା ଜଗତ
ଦର୍ପଣ ସଦୃଶ ତାହା ହୁଏ ପ୍ରାତିଭାତ ।
କି ପ୍ରକାର ସେ ହୃଦୟ କରନ୍ତୁ ବ୍ୟକତ
ଜ୍ଞାନ ସୂର୍ଯ୍ୟ ମୋ ହୃଦୟେ କରନ୍ତୁ ଉଦିତ ।
ବଶିଷ୍ଠ କହିଲେ ସାଧୋ ! କରୁଛି ବ୍ୟକତ
ପ୍ରାଣୀଙ୍କ ହୃଦୟ ଦୁଇ ଭାଗରେ ବିଭକ୍ତ ।
ବକ୍ଷ ପୃଷ୍ଠ ମଧ୍ୟେ ଅଛି ଯେବେଣ ହୃଦୟ
ନିକୃଷ୍ଟ ହୃଦୟ ଅଟେ ତାହା ରଘୁରାୟ ।
ଜ୍ଞାନୀ ଲୋକଙ୍କର ଜ୍ଞାନ ସ୍ୱରୂପ ହୃଦୟ
ଅନ୍ତରେ ବାହାରେ ସର୍ବ ସ୍ଥାନେ ତା ଉଦୟ ।
କଉଣସି ସ୍ଥାନେ ନରହଇ ସେ ଆବଦ୍ଧ
"ଉତ୍କୃଷ୍ଟ" ହୃଦୟେ ନାମେ ଅଟେ ସେ ପ୍ରସିଦ୍ଧ ।
ଏହି ହୃଦୟରେ ବିଶ୍ୱ ଅଛି ଅବସ୍ଥିତ
ସକଳ ବସ୍ତୁ ଦର୍ପଣ ସେହି ରଘୁନାଥ ।

ଦେହ ଅବୟବଙ୍କର ଅଂଶ ନୁହେଁ ଏହି
ସେ ହୃଦୟେ ଏ ଚିତ୍ତକୁ ଯେବେ ପାର ଥୋଇ ।
ପ୍ରାଣ ନିରୁଦ୍ଧ ଘଟଇ ସେତେବେଳେ ଜାଣ
ଏ ଯୋଗ ଅଭ୍ୟାସ କର ହୋଇ ସାବଧାନ ।
ତା ନୋହିଲେ ବାଧିଗ୍ରସ୍ତ ହୋଇଯାଏ ଜୀବ
ଅଭିଷ୍ଟ ସାଧନ ତେବେ ହେବ ଅସମ୍ଭବ ।
ଅତିଶୟ ବିବେଚନା ସହ ରଘୁବୀରେ
ଭ୍ରୂ, ନାସିକା, ତାଳୁ ଏହି ସକଳ ସ୍ଥାନରେ
ପ୍ରାଣାୟାମର ଅଭ୍ୟାସ ଯଦି କରିପାର
ଉପଶାନ୍ତ ହୋଇଯିବ ପ୍ରାଣ ସ୍ପନ୍ଦନର ।
ଚିତ୍ତର ବିଲୟ ଘଟିଯିବ ତତପରେ
ସଂସାରର ଭ୍ରମ ବିଦୁରିତ ହୋଇପାରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ,**
**ଜୀବନ ମୁକ୍ତ ଜ୍ଞାନ ବୋଧ ବିର୍ଣ୍ଣନେ**
**ନାମ ୬୬ଶ ସର୍ଗଃ ।**



## ୬୭ଶ ସର୍ଗଃ
## ସମ୍ୟକ୍ ଜ୍ଞାନ ବର୍ଣ୍ଣନ

ଶ୍ରୀରାମ ବୋଇଲେ ଦେବ ଚିତ୍ତ ଯେଉଁପରି
ଯୋଗଯୁକ୍ତ ହୋଇ ଉପଶମ ପାଇପାରି ।
ସେ ବିଷୟ ମୋ ଆଗରେ କଲତ ବଖାଣ
ସମ୍ୟକ ଜ୍ଞାନ ଲକ୍ଷଣ କରନ୍ତୁ ବର୍ଣ୍ଣନ ।
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ଅନାଦି, ଅନନ୍ତ ସପ୍ରକାଶ ପରଂବ୍ରହ୍ମ ।
ଅବ୍ୟୟ, ଅଦ୍ୱୟ ରୂପେଛନ୍ତି ବିଦ୍ୟମାନ
ଏହି ଦୃଢ଼ ସିଦ୍ଧାନ୍ତକୁ ମତିମାନଗଣ ।
"ସମ୍ୟକ୍ ଜ୍ଞାନ" ବୋଲିଣ କହିଛନ୍ତି ଜାଣ
ଘଟପଟ ଇତ୍ୟାଦି ଯେ ଆକୃତି ସମ୍ପୂର୍ଣ୍ଣ
ଦୃଷ୍ଟିଗୋଚର ହୁଅନ୍ତି ଯେ ପଦାର୍ଥ ଗଣ
ସେ ସକଳ ଆତ୍ମା ବୋଲି ଜାଣିରଖ ରାମ
ଆତ୍ମା ଛଡ଼ା ଅନ୍ୟ କିଛି ନୁହନ୍ତି ସେ ଜାଣ ।
ଏହି ସିଦ୍ଧାନ୍ତକୁ ସମ୍ୟକ୍ ଦରଶନ କହି
ଅସମ୍ୟକ ଜ୍ଞାନୁ ଏ ସଂସାର ପ୍ରକାଶଇ ।
ସମ୍ୟକ ଜ୍ଞାନ ଉଦୟେ ଭବ ଉପଶମ
ଭବ ଉପଶମ ହେଲେ ସର୍ବ ଶାନ୍ତି ଜାଣ ।

ସଙ୍କଳିତ ଅଂଶ ତ୍ୟାଗ କରି ଜ୍ଞାନ ଶକ୍ତି
ନିଜ ମଧ୍ୟରେ ପ୍ରକାଶ ଲାଭ କରିଥାନ୍ତି ।
ସେତେବେଳେ ମୁକ୍ତି ପଥେ ହୋଇ ଅଗ୍ରସର
ପରିଜ୍ଞାତ ହୁଏ ଶୁଦ୍ଧ ସ୍ୱରୂପ ନିଜର ।
ପରମାତ୍ମା ନାମ ତା'ର ତେତେବେଳେ ହୋଇ
ପରମାତ୍ମାଙ୍କୁ ଏପରି ଚିହ୍ନ ରଘୁରାଇ ।
ଅନ୍ତରରେ ଅଶୁଦ୍ଧତା ଯେବେ ତା'ର ଥାଇ
ଅବିଦ୍ୟା ନାମରେ ତେବେ ପରିଚିତ ହୋଇ ।
ଏହି ପରମଆତ୍ମାରେ ଜ୍ଞାନ ବା ଜ୍ଞେୟର
ପାର୍ଥକ୍ୟ ନଥାଏ ଜାଣ ଆହେ ରଘୁବୀର ।
ଏପରି ପୂର୍ଣ୍ଣ ପ୍ରତ୍ୟକ୍ଷ ସେହିଠାରେ ରାମ
ସୁନିଶ୍ଚିତ ଭାବେ ରହିଥାଏ ବର୍ତ୍ତମାନ ।
ସକଳ ପଦାର୍ଥ ରାମ ଯେଣୁ ଆତ୍ମା ହୋଇ
ଭାବ, ଅଭାବ, ବନ୍ଧନ, ମୁକ୍ତି ଅବା କାହିଁ ?
ଦୃଶ୍ୟ, ଦ୍ରଷ୍ଟା, ଭେଦ ରାମ ଯେତେବେଳେ ନାହିଁ
ସର୍ବାକାରେ ବ୍ରହ୍ମ ଯେଣୁ ପ୍ରକାଶ ଲଭଇ ।
ସକଳ ଦୃଶ୍ୟ ଯଦ୍ୟପି ଚିଦାକାଶ ହୁଏ
କାହାର ବନ୍ଧନ ଅବା ମୁକ୍ତି କା'ର ହୁଏ ?
ସର୍ବବୃହତ୍ତମ ସେହି ବ୍ରହ୍ମ ସନାତନ
ତୁମ ପାଶେ ଦୃଶ୍ୟାକାରେ କରେ ଅବସ୍ଥାନ ।
ଜ୍ଞାନବଳେ ଭେଦବୁଦ୍ଧି ତେଜି କରି ରାମ
ନିଜ ମଧ୍ୟେ ନିଜେ ସୁସଂସ୍ଥିତ ହୁଅ ପୁଣ ।
ଯେବଣ ସାମାନ୍ୟ ବସ୍ତୁ, ଆଦ୍ୟେ ବା ଅନ୍ତରେ
ଯେବଣ ଆକାରେ ନିଜେ ଅବସ୍ଥାନ କରେ ।
ଶାନ୍ତିମୟ ଆତ୍ମା ତାକୁ କହନ୍ତି ପ୍ରବୁଦ୍ଧ
ସେହି ଆତ୍ମମୟ ହୋଇ ରହ ହେ ପ୍ରସିଦ୍ଧ ।
ସ୍ଥାବର ଜଙ୍ଗମମୟ ସଂସାର ଆକାରେ
ଆନନ୍ଦମୟ ବ୍ରହ୍ମହିଁ ରାଜେ ସଦାକାଳେ ।
ଅଜ୍ଞ ଲୋକଙ୍କ ଦୃଷ୍ଟିରେ ଏହି ବ୍ରହ୍ମ ଜାଣ
ଜରା ମରଣ ରୂପରେ ହୁଏ ବିଦ୍ୟମାନ ।
ପ୍ରଜ୍ଞା ବଳରେ ସେ ତାକୁ ଆଲିଙ୍ଗନ କରେ
ସଂସାର ତାହାକୁ କେଭେଁ ଛୁଇଁ ତ ନପାରେ ।
ସ୍ୱୟଂ ଯେ ଆତ୍ମା ଅଟଇ ଏ ବିଶ୍ୱ ସଂସାର
ଅବିଦ୍ୟାର ଅସ୍ତିତ୍ୱ ଯେ ନାହିଁ କେଉଁଠାର ।
ଏ ରୂପ ଦର୍ଶନ କରି ତୁମ୍ଭେ ହେ ଶ୍ରୀରାମ
ସ୍ୱରୂପେ ସଂସ୍ଥିତ ହୁଅ ଧରି ଏହି ମର୍ମ ।
ଜଳହିଁ କେବଳ ଥାଏ ଯଥା ସରୋବରେ
ବ୍ରହ୍ମହିଁ ତେସନ ପୂରିଛନ୍ତି ଏ ସଂସାରେ ।
ଯାହାକି ଯଥାର୍ଥ ଅଟେ ବସ୍ତୁର ଆକୃତି
ସେହି ଭାବେ ତାକୁ ମୁକ୍ତ ଦର୍ଶନ କରନ୍ତି ।

ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ
ପ୍ରକରଣେ, ସମ୍ୟକ୍ ଜ୍ଞାନ ବର୍ଣ୍ଣନେ ନାମ
୬୭ଶ ସର୍ଗଃ ।



## ୬୮ଶ ସର୍ଗଃ
## ଚିତ୍ତ-ଉପଶମ

ବଶିଷ୍ଠ ବୋଲନ୍ତି ରାମ ସୁବିବେକ ବ୍ୟକ୍ତି
ଭୋଗ୍ୟ ବସ୍ତୁ ଦେଖି ସେହୁ ଆକୃଷ୍ଟ ନୁହନ୍ତି ।
ଚକ୍ଷୁର ପ୍ରିୟ ଅପ୍ରିୟ ବସ୍ତୁକୁ ଦେଖିଣ
ତଦ୍‌ଭୁତ ସୁଖ ଦୁଃଖ ଜୀବରହିଁ ଜାଣ ।
ବିବେକ ସମ୍ପର୍ଣ୍ଣ ଜୀବ ଭାବଇ ଏମନ୍ତ
ଚକ୍ଷୁ ତା ନିଜ ଭୋଗରେ ରହିଛି ଜଡ଼ିତ ।
ସେଥିରେ ତାହାର (ଜୀବର) କିଛି ଲାଭ କ୍ଷତି ନାହିଁ
ତା'ର ତ ମନ ରହିଛି ବ୍ରହ୍ମଙ୍କର ଠାଇଁ ।
ସୈନ୍ୟ ବାହିନୀର ଭାରବାହୀ ଗଧମାନ
ତହୁଁ ଏକ ଗଧ ହେଲେ ପଙ୍କେ ନିମଗନ ।
କୌଣସି କ୍ଷତି କି ହୁଏ ସେନାପତିଙ୍କର ?
ପୂର୍ବପରି ସର୍ବକାର୍ଯ୍ୟ ଚଳେ ତାହାଙ୍କର ।
ଯାହାଦ୍ୱାରା ହୋଇଥାଏ ଆତ୍ମାର ପ୍ରକାଶ
ଅନାତ୍ମ ଆତ୍ମ ସ୍ୱରୂପେ ହୁଏ ପରକାଶ ।
ସେହି ସକଳ କାର୍ଯ୍ୟରେ ପ୍ରାଜ୍ଞ ବ୍ୟକ୍ତିଗଣ
ନିରତ ଚିନ୍ତା କରନ୍ତି ଏମନ୍ତ ରୂପେଣ ।
"ହେ ନେତ୍ର ! ଆସକ୍ତ ନୁହ ଅସତ ରୂପେଣ
ସର୍ବଦର୍ଶୀ ଆତ୍ମା ଯହିଁ ରହେ ଉଦାସୀନ ।
ଚିତ୍ତସ୍ପର୍ଶୀ ରୂପ ଦେଖି ଅନ୍ୟ ସାହାଯ୍ୟେଣ
ବୃଥାରେ ରେ ନେତ୍ର କିପାଁ ରହିବୁ ମଗନ ।
ମିଥ୍ୟା ସଂସାର ବିଳାସେ ତୁହି ଆରେ ଚିତ୍ତ
ନିରର୍ଥକ କିପାଁ ତହିଁ ରହୁ ଅନୁରକ୍ତ ।
ଚଞ୍ଚଳ ଚିତ୍ତ ସ୍ଫୁରିତ ହେଲେ ପଛେ ଦେଉ
ରେ ଅହଙ୍କାର, ତା ସହ କିମ୍ବା ଜଡ଼ି ରହୁ ।
ଅଧମ ଅବା ମଧ୍ୟମ ଅଧିକାରୀ ଯେହୁ
ବିଚାର ବଳକୁ ଘେନି କାର୍ଯ୍ୟ କରେ ସେହୁ ।

ମନର ମନନରୂପ ବନ୍ଧନ ସୂତ୍ରକୁ
ଛିନ୍ନ ବିଛିନ୍ନ କରିଣ ଦେଇଥାଏ ତାଙ୍କୁ ।
ଯେଉଁ ଜନ ଅଟଇ ଉତ୍ତମ ଅଧିକାରୀ
ଜ୍ଞାନଯୋଗୁଁ ତା ଅଜ୍ଞାନ ଦୂର ହୋଇପାରି ।
ଅଜ୍ଞାନର କ୍ଷୟେ ମନ ହୁଅଇ ବିଲୀନ
ଆକାଙ୍‌କ୍ଷା ନଥାଏ ତାର ରୂପ ଦରଶନ ।
ଅନ୍ତରେନ୍ଦ୍ରିୟଙ୍କୁ ଚିତ୍ତ କରଇ ଉଦ୍‌ବୁଧ
ଅନ୍ତରୁ ସମୂଳେ ତାକୁ କରିବ ଉଚ୍ଛେଦ ।
ପର୍ବତ ଗୁମ୍ଫାରେ ଶୁପ୍ତ ଶୃଗାଳ ଯେସନ
ସିଂହ ଗରଜନ ଶୁଣି କରେ ପଳାୟନ ।
ବିବେକ୍ ଆଗମ ଦେଖି ଚିତ୍ତ ସେହିପରି
ଥୟଧରି ନ ପାରିଣ ପଳାୟନ କରି ।
ଏସନ କ୍ଷଣବିଧ୍ୱଂସୀ ହୋଇଲେ ହେଁ ଚିତ୍ତ
ସମସ୍ତଙ୍କୁ ସେ ଯେ କରିପାରେ ବଶୀଭୂତ ।
ଅତି ଆଶ୍ଚର୍ଯ୍ୟ ବିଷୟ ଅଟେ ଆରେ ମନ
କେଡ଼େ ବଳିୟାର ଅଟେ ଏହି ଚିତ୍ତ ଜାଣ ।
ଅଜ୍ଞାନୀ ଲୋକମାନଙ୍କୁ ତୁହି ଥାରେ ଚିତ୍ତ
କି ଅଦ୍ଭୂତ ଭାବେ କରିପାରୁ ନିପୀଡ଼ିତ ।
କି ବାହାଦୂରୀ ବା ଅଛି ଏଥିରେ ତୋହର
ନିଜେ ସିନା ନିଜକୁ ମାରୁଣ ଥାଏ ନର ।
ମତେ ଯଦି କରିପାରୁ ତୁହି ପରାଜିତ
ତେବେ ବୁଝାଯିବ ତୋର କେଡେ କରାମତ ।
ବିଚାରବଳେ ଚିତ୍ତକୁ କରିଛି ମୁଁ ଧ୍ୱଂସ
ଚିନ୍ତା ଅନଳ ଲଭିଛି ସମୂଳେ ବିନାଶ ।
ପଳାୟନ କରିଅଛି ଅହଂକାର ଦୈତ୍ୟ
"କେବଳସ୍ୱରୂପେ" ମୁହିଁ ଅଛି ଅବସ୍ଥିତ ।
ସେହି ଚିନ୍ମୟ ଆତ୍ମା ଅଟେ ସିନା ମୁହିଁ
ତେଣୁ ନିଜକୁ ମୁଁ ବାରମ୍ବାର ନମୁଛଇଁ ।
ଶୋକ ଅବା ମୋହ କିଛି ନାହିଁତ ମୋହର
ମୁହିଁ ସିନା ମୋର, ନୁହେଁ, ଅନ୍ୟ ଯେ କାହାର ।
ମୋହ ଛଡ଼ା ଅନ୍ୟ କେହି ନାହିଁ ଏ ଜଗତେ
ନମସ୍କାର କରୁଅଛି ମୁହିଁ ସିନା ମୋତେ ।
ଅତୀବ ସୁନ୍ଦର ଜାଣ ଅଟେ ଏ ଜଗତ
ଜଗତ ପ୍ରକାଶ କରି ଦୂରେ ଯେ ସଂସ୍ଥିତ,
ସେହି ଜରା ମୃତ୍ୟୁହୀନ, ଅଜ, ଗୁଣାତୀତ
ଅଦ୍ୱୈତ ଯେ ଭଗବାନ ପୁଣି ଯେ ଅଚ୍ୟୁତ,
ଆଗରେ ପଛରେତାଙ୍କ ବାମ ଡାହାଣରେ
କୋଟି କୋଟି ନମସ୍କାର ମୋର କାଳେ କାଳେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ,**
**ଚିତ୍ତ ଉପଶମ ବର୍ଣ୍ଣନେ**
**ନାମ ୬୮ଶ ସର୍ଗଃ ।**



## ୬୯ଶ ସର୍ଗଃ

## ଚିତ୍ ଶାନ୍ତି ପ୍ରତିପାଦନ

କହନ୍ତି ବଶିଷ୍ଠ ରାମ ଆତ୍ମା ହିଁ ଜଗତେ
ଏକଇ ଜ୍ଞାତବ୍ୟ ବସ୍ତୁ ଜାଣ ମହାମତେ ।
ଯେଉଁ ତତ୍ତ୍ୱଜ୍ଞାନୀମାନେ ଏହା ବୁଝିଛନ୍ତି
ବିଚାରବଳେ ସେମାନେ ଏମନ୍ତ ବୋଲନ୍ତି ।
"ଚିତ୍ତ ଯେ କେବଳ ମିଥ୍ୟା, ହୃଦେ ବୁଝ ରାମ
ଆତ୍ମା ଯେ ଜଗତ ଉଦେ ହେଲେ ଏହିଜ୍ଞାନ,
ଏ ଚିତ୍ତ ଯେ ରାମ ରହିପାରେ ବର୍ତ୍ତମାନ
ଅତୀବ ଆଶ୍ଚର୍ଯ୍ୟ ଏହା, ଆଶ୍ଚର୍ଯ୍ୟ ଚିନ୍ତନ ।
ଯେହେତୁ ମିଥ୍ୟା ଅଟଇ ଏହି ଯେ ଜଗତ
କିପରି ରହି ପାରିବ ଚିତ୍ତର ଅସ୍ତିତ୍ୱ ?
ମାୟାର ବିଳାସ ବୋଲି ଆହେ ରଘୁନାଥ
ସମ୍ପୂର୍ଣ୍ଣ ଅସତ୍ୟ ଅଟେ ଜାଣ ଏହି ଚିତ୍ତ ।
ଆକାଶ କୁସୁମ ପରି ଏହାର ପ୍ରକାଶ
ଅଜ୍ଞାନୀଙ୍କ ପାଇଁ ଖାଲି ତାହାର ବିକାଶ ।
ସମ୍ପୂର୍ଣ୍ଣ ଅସ୍ତିତ୍ୱହୀନ ଜ୍ଞାନୀଙ୍କ ମତରେ
ବ୍ରହ୍ମ ହିଁ କେବଳ ରୁହେ ଚିତ୍ତଲୀନ ହେଲେ ।"
ଏବେ ମୁଁ ହୋଇ ପାରିଛି ସନ୍ଦେହ ମୁକତ
ପରମାର୍ଥିକ ରୂପେ ମୁଁ ଅଛି ଅବସ୍ଥିତ ।
ବିକଳ୍ପ ଜ୍ୱର ମୋହର ହୋଇଅଛି ଗତ
ଚିତ୍ତ ମୋହଜାଲ ମୋର ଏବେ କ୍ଷୟ ପ୍ରାପ୍ତ ।
ଅହଙ୍କାର ଯେଣୁ ହୋଇଅଛି ଦୂରୀଭୂତ
ଅଜ୍ଞାନ ନିଦ୍ରାରୁ ଏବେ ହୋଇଛି ଉତ୍‌ଥିତ ।
ନିତ୍ୟ ଜାଗ୍ରତ ଆତ୍ମାରେ ଅଛି ମୁହିଁ ସ୍ଥିତ
ପ୍ରବୁଦ୍ଧ ଅବସ୍ଥା ହେତୁ ସବୁ ମୋତେ ଜ୍ଞାତ ।
ବ୍ରହ୍ମ ଯେଣୁ ସତ୍ୟ ପୃଥକ୍ ଭାବ ନାହିଁ ତାର
ଅସତ ଭାବ କିମ୍ପାଇଁ ହୃଦେ ଥିବ ମୋର ।

ଯେଣୁ ଜୀବାଭାସ ଶୂନ୍ୟ ପବିତ୍ର ବ୍ରହ୍ମରେ
ଅବସ୍ଥାନ କରିଛି ମୁଁ ସର୍ବଦ୍ୱ ଭାବରେ ।
ଅତୀଶୟ ସୂକ୍ଷ୍ମ ରୂପ କଲେହେଁ ଧାରଣ
ସର୍ବତ୍ରଗ ଆତ୍ମା ରୂପେ ସଂସ୍ଥିତ ମୁଁ ଜାଣ ।
ଏତେ କାଳ ଯେଣୁ ମୁହିଁ ମୂର୍ଖ ଭାବେ ଥିଲି
କିଛି ହିଁ ବିଚାର କରି ପାରି ତ ନ ଥିଲି ।
ଏବେ ମୁଁ ବିଚାରୁ ଅଛି ମୁହିଁ ଅବା କିଏ
କିବା ବିଚାର କରିବି ନାହିଁ ତାର ଥଯେ ।
ଏବେ କିଛି ପ୍ରୟୋଜନ ନାହିଁ ତ ମୋହର
ତୁରୀୟ ଆତ୍ମାରେ ଶାନ୍ତି ଭାବେ ଅଛି ସ୍ଥିର ।
ଗମନ, ଭୋଜନ, ଅବସ୍ଥାନ, ଶୟନରେ
ପ୍ରଥମେ ବିଚାର କରିଥାନ୍ତି ସାଧୁ ନରେ ।
ତତପରେ ସ୍ୱରୂପରେ ଅବସ୍ଥାନ କରି
ବର୍ଣ୍ଣାଶ୍ରମ କର୍ମମାନ ଥାଆନ୍ତି ଆଚରି ।
ଏହିପରି ପ୍ରଜ୍ଞାବାନ ବ୍ୟକ୍ତି ଅଭିମାନ
ବିଦୂରିତ ହୋଇଯାଏ ହେ ରଘୁନନ୍ଦନ ।
ଅନ୍ତରରେ ପ୍ରଫୁଲ୍ଲତା ଲାଭ କରେ ସେହି
ଶରଦ ଚନ୍ଦ୍ରମା ପରି କାନ୍ତିବାନ ହୋଇ ।
ବର୍ଣ୍ଣାଶ୍ରମ ଧର୍ମ ସେହୁ କରଇ ପାଳନ
ଆତ୍ମା ଲାଭର ସୁଗମ ପଥ ବର୍ଣ୍ଣାଶ୍ରମ ।
ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ଚିତ୍ତ ଶାନ୍ତି ପ୍ରତିପାଦନ ବର୍ଣ୍ଣନେ
ନାମ ୬୯ଶ ସର୍ଗଃ ।



## ୭୦ଶ ସର୍ଗଃ

## ବିତହବ୍ୟୋପାଖ୍ୟାନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ପଣ୍ଡିତ ଶ୍ରେଷ୍ଠ ସମ୍ବର୍ତ୍ତ ପୂର୍ବକାଳେ ଜାଣ ।
ଆତ୍ମାର ସ୍ୱରୂପ ଅବଗତ ହୋଇକରି
ବିନ୍ଧ୍ୟ ପର୍ବତ ଉପରେ ବିଚରଣ କରି ।
ସେତେବେଳେ କୃପାକରି ସେ ମୁନି ଉତ୍ତମ
ବିଚାର ବିଷୟେ ମୋତେ କହିଲେ ଏସନ ।
ପୂର୍ବେ ଯାହା କହିଥିଲେ କରିଛି ବର୍ଣ୍ଣନ
ବାକି ଯାହା ଥିଲା ଏବେ ମୋହଠାରୁ ଶୁଣ ।
"ବିଚାର ଶାଳିନୀ ପ୍ରଜ୍ଞା ସାହାଯ୍ୟ ବଳରେ
ଅସତ୍ ଦର୍ଶନ ନିରୁଦ୍ଧ ହେବ ଯେତେବେଳେ,
ଜ୍ଞାନର ପରିପକ୍ୱତା ଯେବେ ଆସିଯିବ
ସଂସାର ସାଗର ତୁମେ ସମୁତ୍ତୀର୍ଣ୍ଣ ହେବ ।
ବୀତହବ୍ୟ ମୁନିଙ୍କର ସ୍ୱରୂପ ଦର୍ଶନ
ଏବେ ତୁମ ଆଗେ ରାମ କରୁଛି ବର୍ଣ୍ଣନ ।
ଆଧି ବ୍ୟାଧି ସମାକୁଳ ଏ ଭବ ସାଗରେ
ଅତିଶୟ ଭୟଭୀତ ହୋଇ ମୁନିବରେ,
ପରମ ପଦକୁ ଲାଭ କରିବା ନିମିତ୍ତ
ଅରଣ୍ୟେ ପ୍ରବେଶ କଲେ ସେହି ତପୋବନ୍ତ ।
ଏସନ ବିଚାର କରି ଯାହା କହିଥିଲେ
ତାହା ବର୍ଣ୍ଣନ କରୁଛି ଶୁଣ ରାମ ଭଲେ ।"
"ମନର ନିଗ୍ରହ ପାଇଁ ଯେତେ ଚେଷ୍ଟା କରେ
କି ଆଶ୍ଚର୍ଯ୍ୟ ତାହା କେଭେଁ ସ୍ଥିର ନୋହିପାରେ ।
ଇନ୍ଦ୍ରିୟଙ୍କ ପ୍ରଭାବରେ ଅଥୟ ଏ ମନ
ବିଷୟୁ ବିଷୟାନ୍ତରେ ଧାଏଁ ପ୍ରତିକ୍ଷଣ ।
କି ଆଶ୍ଚର୍ଯ୍ୟ ମନର ଯେ କେସନ ସ୍ୱଭାବ
ଯାହା ମୁଁ ଇଚ୍ଛଇ ତହିଁ ନ ଦିଅଇ ଠାବ ।
ପାଗଳଙ୍କ ପରି ମୋତେ ତଡ଼ି ଘେନିଯାଏ
ପ୍ରଭାବ ଦେଖାଇ କବଳରେ ରଖିନିଏ ।
ଆତ୍ମ ଦର୍ଶନ ପାଇଁକି ହେ ଇନ୍ଦ୍ରିୟଗଣ
ବାଧା ଦେଇ ହରକତ କର କି କାରଣ ?
ରେ ଚଞ୍ଚଳ ଚିତ୍ତ ମୋର ଅନିଷ୍ଟ ପାଇଁକି
ଏସନ ଚପଳତା ତୁ ଦେଖାଉ କାହିଁକି ?
ମନର ଦ୍ୱାର ସ୍ୱରୂପ ହେ ଇନ୍ଦ୍ରିୟଗଣ
ଜଡ଼ ରୂପେ ରହିଥାଅ ତୁମେ ସର୍ବକ୍ଷଣ ।
ଏରୂପ ସ୍ପର୍ଦ୍ଧା ତୁମର ନୁହଇ ଶୋଭନ
ଶତବାର ଅନୁରୋଧ ତୁମ୍ଭଙ୍କୁ ମୋ ଜାଣ ।
ମୁଁ ଅଟେ ଚିନ୍ମୟ ଆତ୍ମା, ସାକ୍ଷୀ ରୂପେ ଥାଇ
ସକଳ କରମମାନ ସାଧନ କରଇ ।
ସେ ପାଇଁ ବ୍ୟାକୁଳ ହୁଅ ତୁମେ କି କାରଣ
ବାଡ଼େଇ କରଡ଼ି ହେବା ନିରର୍ଥକ ଜାଣ ।
ଇନ୍ଦ୍ରିୟମାନଙ୍କଠାରୁ ଚିନ୍ମୟ ଆତ୍ମା
ଦୂରେ ଥିଲେ ହେଁ ଦେଖାଏ ତାର ବଳବତ୍ତା ।
ସେହି ଚିନ୍ମୟ ଆତ୍ମାର ପ୍ରକାଶରୁ ଜାଣ
ଇନ୍ଦ୍ରିୟମାନଙ୍କ ବଳ ଥାଏ ସଂଚରିଣ ।
ତେଣୁ ଇନ୍ଦ୍ରିୟମାନଙ୍କ ଚଞ୍ଚଳ ସ୍ୱଭାବ
ନିରର୍ଥକ ଅଟେ ଜାଣ ମାନ ! ଅବିବେକ ।

ରେ ଚିତ୍ତ ! କୁକୁର ପରି ତହିଁ କି କାରଣ
ଜାଗତିକ ବିଷୟରେ ହେଉ ଧାବମାନ ।
ରେ ମନ ! ତୁହି ଯେ ମଣୁ ନିଜକୁ ଚେତନ
ନିତାନ୍ତ ମିଥ୍ୟା ତା ଅଟେ ଘେନ ମୋ ବଚନ ।
ଚୈତନ୍ୟ ତୋ ତହୁଁ ଅଟେ ଏକାନ୍ତ ତଫାତ
ଅହଂଜ୍ଞାନ ତୋର ନୁହେ ସତ୍ୟ ବା ଅସତ୍ୟ ।
ଏକାନ୍ତ ମିଥ୍ୟା ତୁ, ଅଟୁ ବୁଝ ଆରେ ମନ
ପୁଣି ତୁହି ଏକମାତ୍ର ଦୁଃଖର କାରଣ ।
ପରିତ୍ୟାଗ କର ତୁହି ଅହଂ ଅଭିମାନ
ଗୋଇଠା ଖାଇବା ସିନା ହେବ ତୋ ସମ୍ମାନ ।
ଆରେ ମୂର୍ଖ ଯେ କାରଣୁ କିଛି ତୁହି ନୋହୁ
ଅନର୍ଥକ ଚଞ୍ଚଳ ବା କି କାରଣେ ହେଉ ।
ଚିନ୍ମୟ ଆତ୍ମାହିଁ ଅଟେ ଅନାଦି ଅନନ୍ତ
ତାଙ୍କ ବିନା ଏ ଶରୀରେ ନାହିଁ କିଛି ସତ ।
ଚିତ୍ତ ନାମଧାରୀ ପୁଣି ତୁ କେବଣ ବସ୍ତୁ
ଉପହାସ୍ୟାସ୍ପଦ ହେଉ କି କାରଣ ହେତୁ ?
ଯେଣୁ ତୁହି ନୋହୁ ଭୋକ୍ତା ଅଥବା କରତା
ଅନ୍ୟରେ ବୋଧିତ ହୋଇ କିମ୍ପା ତୁ ହିନସ୍ତା ।
ଇନ୍ଦ୍ରିୟ ଆଶ୍ରୟେ କରି ଚପଲ୍ୟ ପ୍ରକାଶ
କି ପାଇଁରେ ଚିତ୍ତ ପାଉ ସଦା ଉପହାସ ?
ଜଡ଼ ଯେଣୁ ଭୋଗ, ଭୋଗ୍ୟ, ଆତ୍ମୀୟ ସ୍ୱଜନ
କିପରି ହରିପାରନ୍ତି କହ ବୁଝାଇଣ ?
ଈଶ୍ୱର ଆଶ୍ରୟେ ତେଣୁ ରହ ତୁହି ସ୍ଥିର
ନୋହିଲେ ସର୍ବ କର୍ମ ତୋ ହୋଇବ ନିଷ୍ଫଳ ।
ସ୍ୱଭାବତଃ ଜଡ଼ ଅଟୁ ତୁହି ଆରେ ଚିତ୍ତ
ପରମାତ୍ମା ଦ୍ୱାରା ଯେଣୁ ହେଉ ଉଦ୍‌ବୋଧିତ ।
ସେହି ହେତୁ ସତ୍ତା ଲାଭ କରିଅଛୁ ତୁହି
ସଦା ତୋତେ ଉଦ୍ଭାସିତ କରନ୍ତି ଯେ ସେହି ।
ତୋ ନାମ, କରମ, ରୂପ ନୁହନ୍ତି ସ୍ୱତନ୍ତ୍ର
ଏକମାତ୍ର ପରମାତ୍ମା ପ୍ରକାଶ ସର୍ବତ୍ର
ତାଙ୍କରି ଆଶ୍ରୟେ ତୁହି କରୁ ଅବସ୍ଥାନ
ସେ ଆତ୍ମା ଅଜ୍ଞତା ହେତୁ ତୋର ପ୍ରକାଶନ ।
ଆତ୍ମଜ୍ଞାନ ଉଦୟରେ ତୁହି ଆରେ ଚିତ୍ତ
କେବେହେଲେ ହୋଇ ନ ପାରିବୁ ପ୍ରକାଶିତ ।
ପରମାର୍ଥ ଦୃଷ୍ଟିରୁ ତୁ କିଛି ନୋହୁ ଯେଣୁ
ସର୍ବ ଅଭିମାନ ତୋର ଦୂର କର ତେଣୁ ।
ଜରା, ଜନ୍ମ, ମୃତ୍ୟୁ, ଦୁଃଖ ଆଦି କରି ଯେତେ
ସେହି ଅଭିମାନ ମାନ ପାଶୋର ତୁରିତେ ।
ଯଦ୍ୱାରା ସେହି ପରମପଦ ପାରୁ ଲଭି
ସେ ଉପାୟ ସ୍ଥିର କର ମନ ମଧ୍ୟେ ଭାବି ।
ତେବେ ଅପ୍ରାପତ କିଛି ନ ରହିବ ତୋର
ବିଶାଳ ବ୍ରହ୍ମ ପ୍ରକାଶ ଦୃଷ୍ଟ ହେବ ତୋର ।
ଯେଣୁ କରି ଆରେ ଚିତ୍ତ ନାହିଁ ତୋ ଶରୀର
ପ୍ରତିଭାସିତ କେବଳ ତୁ ବ୍ରହ୍ମ ଶରୀର ।
ବର୍ତ୍ତମାନ ଏତିକି ତୁ ଦେଖୁଥାଅ ଚିତ୍ତ
ତୁହି ଯଦି ଆତ୍ମା, ବ୍ୟାପୀ ଅଛୁ ତୁ ଜଗତ ।
ଯେବେ ଆତ୍ମା ନୋହୁ, କାହିଁ ତୋହର ଅସ୍ତିତ୍ୱ
ଆତ୍ମା ଭିନ୍ନ ଯେଣୁ କିଛି ନାହିଁ ତ୍ରିଜଗତ ।
ଅଦ୍ୱୟ ପରମ ଆତ୍ମା ଲୀଳାମୟ ହୋଇ
ଏ ଜଗତ ପ୍ରକାଶିତ କରୁଣ ଅଛଇ ।
କୌଣସି ବସ୍ତୁ ତାହାର ନ ଥାଇ ଅଲବ୍ଧ
ଦୃଶ୍ୟ ଦେଖି କି ହେତୁରୁ ହେଉ ତୁହି କ୍ଷୁବ୍ଧ ?
ସଂକଳ୍ପରୁ କିଛି ଲାଭ ହେବ ନାହିଁ ତୋର
ସମାଧିରୁ ସୁଖ ଲାଭ ହେବ ଯେ ତୋହର ।
କୌଣସି କର୍ତ୍ତୃତ୍ୱ ନାହିଁ ଆତ୍ମାଠାରେ ଚିତ୍ତ
ତୋ କଳପିତ ବ୍ୟବହାରେ ଆତ୍ମାର ସ୍ଫୁରିତ ।
ଆତ୍ମା ନିଜେ କଉଣସି କାର୍ଯ୍ୟ କରେ ନାହିଁ
ତୋ କଳ୍ପନା ଅନୁସାରେ ଆତ୍ମା ଯେ ସ୍ଫୁରଇ ।
ସଂକଳ୍ପ ଅଟଇ ଯେଣୁ ଦୁଃଖର କାରଣ
ଛାଡ଼ି, ସମାଧିର କର ଆଶ୍ରୟ ଗ୍ରହଣ ।
ସର୍ବସାର ବସ୍ତୁ ଅଟେ ଏହି ଆତ୍ମା ଜାଣ
ସଂବିତ ସ୍ୱରୂପ ଯେହୁ ନିତ୍ୟୋଦିତ ପୁଣ ।
ଯଦି ଆତ୍ମାକୁ ଚିହ୍ନିବୁ ସୁନିର୍ମଳ ହୋଇ
ତେବେ ସୁଖ ଦୁଃଖ ମୋର ଯିବ ଧ୍ୱଂସ ପାଇ ।
ସୁଖ ଦୁଃଖ ଜ୍ଞାନ ଅଟେ ମୋହମୟ ଭ୍ରାନ୍ତି
ସତ୍ୟ ନୁହେ ଆଭାସ ତା ଜ୍ଞାନୀଏ ବୁଝନ୍ତି ।"

**ଇତିଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ବିତହବ୍ୟୋପାଖ୍ୟାନ ବର୍ଣ୍ଣନେ**
**ନାମ ୭୦ଶ ସର୍ଗଃ ।**



## ୭୧ଶ ସର୍ଗଃ
## ଅନୁଶାସନ ଯୋଗ

ବୋଲନ୍ତି ବଶିଷ୍ଠ ବିତହବ୍ୟ ମୁନିରାଣ
ଏହି ଭାବରେ ଚିତ୍ତକୁ ସଂଯତ କରିଣ,
ଚିତ୍ତ ଇନ୍ଦ୍ରିୟଗଣଙ୍କୁ କହନ୍ତି ବଚନ
"ଅବିଚାର ବଶେ ତୁମ ସତ୍ତା ଉତପନ୍ନ ।
ଆମ୍ଭଙ୍କୁ ଦୁଃଖ ସଂକଟ ପ୍ରଦାନ କରୁଛି
ପରିଣାମରେ ନରକ ଗତି ଦେଉଅଛି ।
ତେଣୁ ତୁମ ମିଥ୍ୟା ସତ୍ତା ପରିତ୍ୟାଗ କର
ନରକ୍ ଗତି ତଦ୍ୱାରା ଘୁଞ୍ଚିବ ଆମ୍ଭର ।
ଆତ୍ମତତ୍ତ୍ୱ ଉପଦେଶ ଯାହା ମୁଁ ଦେଇଛି
ଅବଶ୍ୟ ତୁମ୍ଭର ସତ୍ତା କ୍ଷୀଣ ହୋଇଅଛି ।
ଅଜ୍ଞତା ଯେଣୁ ତୁମ୍ଭର ଜନମ କାରଣ
ଜ୍ଞାନୋଦୟେ ତେଣୁ ତୁମେ ବଞ୍ଚିବ କେସନ ?
ଜଳନ୍ତା ଅନଳ ଘେନି ବାଳକେ କ୍ରୀଡ଼ନ୍ତି
ତଦ୍ୱାରା ହସ୍ତ ପଦାଦି ଦଗଧ କରିଥାନ୍ତି ।
ସେହିପରି ତୁମ୍ଭେମାନେ ହେ ଇନ୍ଦ୍ରିୟଗଣ-
ସବୁବେଳେ ହୋଇଥାଅ ଦୁଃଖର କାରଣ ।
ଆରେ ସର୍ବନାଶୀ ଚିତ୍ତ, ହେ ଇନ୍ଦ୍ରିୟଗଣ
ଯେଉଁକ୍ଷଣ ହେବ ତୁମ୍ଭମାନଙ୍କ ମରଣ,
ବିକଶିତ ହୁଏ ପଦ୍ମ ପ୍ରଭାତେ ଯେପରି
ସଦ୍‌ଗୁଣମାନ ବିକଶି ଉଠିବେ ସେପରି ।
ହୃଦୟ ଗଗନ ଜ୍ଞାନାଲୋକେ ଉଦ୍ଭାସିତ
ମୋହରୂପୀ ପତଙ୍ଗ ଯେ ହୁଏ ଧ୍ୱଂସପ୍ରାପ୍ତ,
ରଜଗୁଣମାନଙ୍କର କ୍ରିୟା ଦୂରୀଭୂତ
ପରମ ପବିତ୍ର ମୈତ୍ରୀ ହୃଦୟେ ଉଦିତ ।
ସେତେବେଳେ ଶୁଷ୍କ ହୋଇ ପଡ଼େ ଏହି ଚିତ୍ତ
ଅଜ୍ଞାନ ବିନାଶେ ଜ୍ଞାନାଲୋକ ପ୍ରକାଶିତ ।
କାହିଁରେ ହୃଦୟ ନୋହିଥାଏ ଅଭିଭୂତ
ଧୈର୍ଯ୍ୟ, ଗାମ୍ଭୀର୍ଯ୍ୟ ଓ ସମଭାବ ହୁଏ ପ୍ରାପ୍ତ ।
ଅଜ୍ଞାନ ଧ୍ୱଂସରେ ଜ୍ଞାନ ହୁଏ ବିକଶିତ
ସର୍ବ ସୃଷ୍ଟି ତେତେବେଳେ ହୁଏ ଉଦ୍ଭାସିତ ।
ତୁ ମଧ୍ୟ ରେ ଚିତ୍ତ ! ହେବୁ ଆନନ୍ଦେ ମଗନ
କମ୍ପି ଉଠିବ ତୋହର ସାରା ଅପଘନ ।
ଆଶା ରଜ୍ଜୁରେ ଯେବେ ତୁ ରହିବୁ ଆବଦ୍ଧ
ନୋହି ତୁ ପାରିବୁ କେଉଁଭେଁ ସେ ଆନନ୍ଦେ ମୁଗ୍ଧ ।
ଆଶାର ନିଦାନ ଅଟୁ ତୁହି ଆରେ ଚିତ୍ତ
ତୋହର ଅଭାବେ ଆଶା ହୋଇବ ନିହତ ।
ତୋ ବିଲୟ ଅବା ଆତ୍ମଭାବେ ଅବସ୍ଥାନ
ଦୁଇଗୁଁ ଯେ ତୋ ମଙ୍ଗଳ କରିବ ବିଧାନ ।
ବରଣ କରି ନିଅ ତୁ ତାକୁ ଆରେ ଚିତ୍ତ
ମୋ ମତରେ ଆତ୍ମଭାବ କରିବ ତୋ ହିତ ।
ତେଣୁ ଅନ୍ୟ ସବୁ ଭାବ କରି ବରଜନ
ଆମଭାବେ ହିଁ ସର୍ବଦା ରହ ତୁ ମଗନ ।
ଯେ ଚୈତନ୍ୟମୟ ଆତ୍ମା ଅଛି ତୋ ଅନ୍ତରେ
ତାହାକୁ ଆଶ୍ରୟ କରି ରହ ନିରନ୍ତରେ ।
ରହି ତୁ ପାରିବୁ ଯଦି ତାର ଆଶ୍ରୟରେ
ବିନାଶ କାମନା ତୋର କିଏ କରିପାରେ ?
ଏତେକାଳ ବିବେକ ମୋ ନ ଥିଲାରେ ଚିତ୍ତ
ଦୁଃଖର କାରଣ ରୂପେ ହେଲୁ ତୁ ବର୍ଦ୍ଧିତ ।
ବିବେକ ଉଦୟେ ଏବେ ଅବିଦ୍ୟାର ଅସ୍ତ
ବିମଳ ଆତ୍ମା ମୋହର ଏବେ ଉଦ୍‌ଭାସିତ ।
ସେହି ବିବେକକୁ ମୋର କୋଟି ନମସ୍କାର
ପାର ହେବାର ବୋଇତ ଏ ଭବସାଗର ।
ଚିତ୍ତ ଆକାର ଧରିବା ପୂର୍ବରୁ ରେ ଚିତ୍ତ
ପରମେଶ୍ୱର ରୂପରେ ଥିଲୁ ବିରାଜିତ ।
ଜ୍ଞାନୋଦୟେ ଏବେ ସେହି ଭାବ ଧରି ରହ
ପୂର୍ବ ଚିତ୍ତ ରୂପ ତୋର ଲଭିଛି ବିଲୟ ।
ଆରେ ଇନ୍ଦ୍ରିୟ, ରାଜନ ଚିତ୍ତ ଏବେ ଶୁଣ
ସଂସାର ପାର ହୋଇଛୁ ତୁହି ବର୍ତ୍ତମାନ ।
ପୂର୍ବେ ତ ନଥିଲୁ ତୁହି, ନାହୁଁ ବର୍ତ୍ତମାନ
ଭବିଷ୍ୟତରେ ତୋହର ନାହି ଆଗମନ ।
ପରମ କଲ୍ୟାଣ ହେଉ ତୋର ଆରେ ମନ
ଯେଣୁ ତୁ ହୋଇ ପାରିଛୁ ବିବେକ ସମ୍ପନ୍ନ ।
ଏହା ମୁହିଁ, ସର୍ବ ମୁହିଁ ମୋହର ବ୍ୟତୀତ
ଅନ୍ୟ କିଛି ମାତ୍ରା ନାହିଁ ଏ ସାରା ଜଗତ ।
ନିତ୍ୟ ବୋଧ ସ୍ୱରୂପରେ ଅଛି ମୁଁ ସଂସ୍ଥିତ
ଯହିଁ ବାସନାର ନାହିଁ ଗନ୍ଧ ଲେଶ ମାତ୍ର ।
ପ୍ରାଣପାନ ଆଦିଙ୍କର ନ ଥାଇ ସ୍ଫୁରଣ
ଯେଠାରେ ପାର୍ଥକ୍ୟ ଜ୍ଞାନ ନାହିଁ କଦାଚନ ।

ଜଡ଼ତାର ସ୍ପର୍ଶ ମାତ୍ର ନାହିଁ ଯେଉଁ ସ୍ଥାନ
ସେ ଚିତ ରୂପ ଆତ୍ମାର ଆଶ୍ରୟ ଲଭିଣ,
ନିଶ୍ଚେଷ୍ଟ ଅନ୍ତରେ ସଦା ରହିଣ ମଗନ
ପରମ ସୁଖରେ ଲଭିଅଛି ମୁଁ ବିଶ୍ରାମ ।"

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ବିତହବ୍ୟୋପାଖ୍ୟାନେ ଅନୁଶାସନ ଯୋଗ ବର୍ଣ୍ଣନେ ନାମ ୭୧ଶ ସର୍ଗଃ ।**



## ୭୨ଶ ସର୍ଗଃ

## ଚିତ୍ତ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ବିତହବ୍ୟ ମୁନି କର ଏପରି ସିଦ୍ଧାନ୍ତ ।
ଚଞ୍ଚଳ ମନକୁ ଦୂରୀଭୂତ କରିଦେଇ
ବିନ୍ଧ୍ୟ ପର୍ବତ ଗୁହାରେ ସମାଧିସ୍ଥ ହୋଇ ।
ଅବଲମ୍ବନ କରିଣ ନିଶ୍ଚଳ ସଂବିତ
ପ୍ରଶାନ୍ତ ସାଗର ପରି ଦିଶନ୍ତି ଶୋଭିତ ।
ଏହିପରି ସମାଧିରେ ଶତ ବର୍ଷ ଗତ
ଜଣାଗଲା ତାହା କିବା ଏକଇ ମୁହୂର୍ତ୍ତ ।
ସମାଧିର ବିଘ୍ନ ପାଇଁ ବହୁ ବାଧାବିଘ୍ନ
ଅତିକ୍ରମ କରିଥିଲେ ସେ ମୁନି ଉତ୍ତମ ।
ଆବର କିୟତ୍ କାଳ ହୋଇଯାନ୍ତେ ଗତ
ମୁନିଙ୍କର ସାରା ଅଙ୍ଗ ହୁଏ ଭୂମିସାତ ।
ସମାଧି ଭାଙ୍ଗିଲା ମୁନି ଉଠିଣ ବସିଲେ
ପ୍ରାରବ୍ଧ ଭୋଗ ଆସିଣ ପ୍ରବେଶ ସେ କାଳେ ।
ମନୋନୟ ରୂପ ଧରି ହୃଦୟ ମଧ୍ୟରେ
ପ୍ରାରବ୍ଧ ଭୋଗନ୍ତି ମୁନି ଏମନ୍ତ ଭାବରେ ।
କୈଳାସ କାନନେ ଶତ ବର୍ଷ ବିତିଯାଏ
ଶହେବର୍ଷ ବିଦ୍ୟାଧର ରୂପେ କଟିଯାଏ ।
ଇନ୍ଦ୍ରାସନେ ସ୍ୱର୍ଗ ରାଜ୍ୟେ ପାଞ୍ଚ ଯୁଗ ଭୋଗ
ପ୍ରାରବ୍ଧ ଭୋଗ କରନ୍ତି ସେ ମୁନି ପୁଙ୍ଗବ ।
ଶ୍ରୀରାମ କହନ୍ତି ଦେବ ବିତହବ୍ୟ ଋଷି
ଏତେ ଦୀର୍ଘ କାଳ ନିଜ କ୍ଷୁଦ୍ର ହୃଦେ ବସି ।
କିପରି ବା କଟାଇଲେ ତାହା ଏବେ କହ
ଯେପରି ମନରୁ ମୋର ତୁଟିବ ସନ୍ଦେହ ।
କହନ୍ତି ବଶିଷ୍ଠ ଏବେ ରଘୁବୀର ଶୁଣ
ମନୋନୟ ରୂପେ ଯେହ୍ନେ କଲେ ଅବସ୍ଥାନ ।
ସର୍ବ ସ୍ୱରୂପିଣୀ ଅଟେ ଯେ ଚିତ୍ ଶକତି
ଯେବେ, ଯେଠାରେ, ଯେପରି ପ୍ରକାଶ ଲଭନ୍ତି ।
ଆତ୍ମାର ସହ ଅଭିନ୍ନ ଅଟନ୍ତି ସେ ଯେଣୁ
ସେଠାରେ ସେହି ଆକାରେ ଅନୁଭୂତ ତେଣୁ ।
ବୁଦ୍ଧିକି ଅନୁଭୂତ ସେ ଯେବେ ଯେଉଁପରି
ସେତେବେଳେ ସେହି ରୂପ ଧରେ ତପଚାରୀ ।
ତତ୍ ସ୍ୱରୂପକୁ ଲାଭ ଯେଣୁ କରିଥାନ୍ତି
ସ୍ୱପ୍ନ, କାଳେ ବହୁକାଳ ଭୋଗ ସେ ମଣନ୍ତି ।
ସ୍ୱପ୍ନ କାଳେ ସୁବିସ୍ତୃତ ଦେଶ ପର୍ଯ୍ୟଟନ
ଅନୁଭବ ରାଜ୍ୟେ ଯୋଗୀ କରନ୍ତି ଦର୍ଶନ ।
ସ୍ୱପ୍ନ ଅବସ୍ଥା ହିଁ ଜାଣ ହେ ରଘୁନନ୍ଦନ
ଏ ଅନୁଭୂତିର ଅଟେ ଶ୍ରେଷ୍ଠ ନିଦର୍ଶନ ।
ବିତହବ୍ୟ ମୁନି ମଧ୍ୟ ସ୍ୱୀୟ ଚିଦାକାଶେ
ନାନା ଜଗତ ଦର୍ଶନ କରିଣ ଥିଲେ ସେ
ଅଳ୍ପ କାଳ ମଧ୍ୟେ ଦୀର୍ଘ କାଳ ଅନୁଭୂତି
ଲାଭ କରି ପାରିଥିଲେ ବୀତହବ୍ୟ ଯତି ।
ପୁଣି ଅନ୍ୟ ଏକ କଳ୍ପ ଶିବ ପାରିଷଦ
ପଦ ଲଭି ପାରିଥିଲେ ମୁନି ବିଶାରଦ ।
ସରବ ବିଦ୍ୟମାନତା ସେହି ସମୟରେ
ଲାଭ କରି ପାରିଥିଲେ ସେହି ମୁନିବରେ ।
ତ୍ରିକାଳଜ୍ଞ ଭାବେ ଲଭି ପ୍ରତିଭା ସକଳ
ଖ୍ୟାତି ଲଭିଥିଲେ ବିତହବ୍ୟ ତପଶୀଳ ।
ଯେପରି ସଂସ୍କାର ଲାଭ କରିଥାଏ ଯେହୁ
ସେହିପରି ଅନୁଭୂତି ଲଭିଥାଏ ସେହୁ ।
ହେଲେହେଁ ଜୀବନମୁକ୍ତ ବୀତହବ୍ୟ ମୁନି
ନିଜ ପ୍ରାରବ୍ଧ ସଂସ୍କାର ଫଳମାନ ଘେନି ।
ଏହି ଅନୁଭବମାନ ତାଙ୍କ ଘଟିଥିଲା
ପ୍ରାରବ୍ଧ କରମ କିଏ ଏଡ଼ିପାରେ ଭଲା ?
ଶ୍ରୀରାମ ବୋଲନ୍ତି ଶୁଣ ଆହେ ମୁନିବର
କାହାକୁ ତ ଛାଡ଼େନାହିଁ ପ୍ରାରବ୍ଧର ବଳ ।
ଜୀବନ ମୁକତ ବୀତହବ୍ୟ ମୁନିବର
ସେହୁ ମଧ୍ୟ ଭୋଗ କଲେ ପ୍ରାରବ୍ଧର ଫଳ ।
ସାଧାରଣ ଲୋକ ଭାଗ୍ୟେ ଘଟେ ଯେଉଁପରି
କିପାଇଁ ଭୋଗିଲେ ବିତହବ୍ୟ ତପଚାରୀ ?
ବଶିଷ୍ଠ ବୋଲନ୍ତି ରାମ ଜୀବନ୍ମୁକ୍ତଗଣ
ଭୋଗ କରନ୍ତି ଯେ କାଳେ ପ୍ରାରବ୍ଧ କରମ ।

ତାଙ୍କ ପାଶେ ସେତେବେଳେ ଏହି ବିଶ୍ୱାକାଶ
ବ୍ରହ୍ମ ସ୍ୱରୂପ୍ ଧରିଣ ହୁଏ ପରକାଶ ।
ତେଣୁକରି ଏ ପ୍ରାରବ୍ଧ ଭୋଗ କଲାବେଳେ
ବନ୍ଧନ ବା ମୁକ୍ତି ତାଙ୍କ ନ ଥାଇ ସେ କାଳେ ।
ତାଙ୍କ ସଂବିତ ଆକାଶ ଯହିଁ ଯେ ଆକାରେ
ପରକାଶ ପାଇଥାଏ ଆହେ ରଘୁବୀରେ ।
ସେହିଠାରେ ସେହି ରୂପେ ତାଙ୍କ ଭାଗ୍ୟ ଭୋଗ
କରିବାକୁ ପଡ଼ିଥାଏ ଜାଣ ହେ ରାଘବ ।
ସର୍ବସ୍ୱରୂପ ଅଟନ୍ତି ଯେଣୁ ଜୀବନ୍ମୁକ୍ତ
ତେଣୁ ବ୍ରହ୍ମରୂପେ ଥାନ୍ତି ସେହୁ ଅବସ୍ଥିତ ।
ବ୍ରହ୍ମରୂପେହିଁ ପ୍ରାରବ୍ଧ ପ୍ରାପତ ଜଗତ
ଅନୁଭବ କରୁଥାନ୍ତି ଜୀବନ ମୁକତ ।
ସେହି ସବୁ ଜଗତର ସ୍ୱାକୃତି ନ ଥାଇ
ରୂପରେଖ ତାହାଙ୍କର ଆସିବ କିମ୍ପାଇ ?
ପ୍ରତିଭାସ ହେତୁ ସେହୁ ବିଶାଳ ଅସଂଖ୍ୟ
ବିତହବ୍ୟ ଚୈତନ୍ୟହିଁ ସେ ସବୁର ସାକ୍ଷ୍ୟ ।
ଶ୍ରୀରାମ କହନ୍ତି ଏହି ସକଳ ଜଗତ
ବିତହବ୍ୟଙ୍କର ହୁଏ ମାନସ କଳ୍ପିତ ।
ଯାହା କିଛି ଅଛି ସେହି ସର୍ବ ଜଗତରେ
କେବଳ ଯେ ଭ୍ରାନ୍ତିପୂର୍ଣ୍ଣ ଅଟେ ଯଥାର୍ଥରେ
ଇନ୍ଦ୍ରାଦିଙ୍କ ଦେହ ପୁଣି ସଚେତନ ସତ୍ତା
କି ରୂପେ ସମ୍ଭବି ପାରେ ଆହେ ବ୍ରହ୍ମବେତ୍ତା ?
କହନ୍ତି ବଶିଷ୍ଠ ଏହି ବିତହବ୍ୟ ମୁନି
ଭ୍ରାନ୍ତିହିଁ ତାଙ୍କର ରୂପ ମନେ ଥାଅ ଘେନି ।
ଭ୍ରାନ୍ତିମୟ ବିତହବ୍ୟଙ୍କର ସେ ଜଗତ
ଏହି ଉକ୍ତି ରାମ ଯଦି ହୋଇଥାଏ ସତ୍ୟ ।
ସେ ସବୁ ଜଗତ ରାମ ତୁମ୍ଭେ ବା କିପରି
ସଚେତନ ସତ୍ତା ବୋଲି ମନେ ଅଛ ଧରି ?
ଏ ସକଳ ଜଗତକୁ ଯଦି ତୁମେ ରାମ
ଦୈହିକ ଚୈତନ୍ୟ ବୋଲି ବିଚରିବ ମନ ।
ମନଭ୍ରମ ବୋଲି ତାକୁ କୁହାଯାଇପାରେ
ମନଭ୍ରମ କି ବାସ୍ତବ ରୂପ ଧରିପାରେ ?
କେବଳ ମନ ବୋଲିଣ ଯଦି ତାକୁ ମଣ
ଆକାଶ ପଦବାଚ୍ୟ ସେ ହେବ ହେ ଶ୍ରୀରାମ ।
ବାସ୍ତବରେ ଜଗତର ନୁହଇ ଏ ରୂପ
ଏହିରୂପ ଛଡ଼ା ତାର ନାହିଁ ଅନ୍ୟ ରୂପ ।

ତୁମ ପ୍ରତି ଜଗତର ସତ୍ତା କିଛି ନାହିଁ
ଯେଣୁ ବ୍ରହ୍ମହିଁ ଜଗଦାକାରେ ବିରାଜଇ ।
ସଂବିଦ୍ ସ୍ୱରୂପ ଧରିଥାଏ ଯେଉଁ ମନ
ଏ ଦୃଶ୍ୟ ଭବ ତା ଠହୁଁ ନୁହେ କିଛି ଅନ୍ୟ ।
ଏହିରୂପେ ଜଗତକୁ ନ ଜାଣ ଯେଯାଏ
ସେତେକାଳ ହୃଦ ମଧ୍ୟେ ବଜ୍ରପରି ଥାଏ ।
ଏହି ଭାବେ ଯେବେ ତାକୁ ଜାଣିପାର ରାମ
ଅନ୍ୟ କିଛି ନ ଦିଶଇ ଚିଦାକାଶ ଭିନ୍ନ ।
ମନହିଁ ଅଜ୍ଞତା ବଶେ ଜଗତ ଆକାରେ
ସ୍ଫୁରିତ ହେଉଛି ଜାଣ ଆହେ ରଘୁବୀରେ ।
ସ୍ୱରୂପେ ସଂସ୍ଥିତ ଚିଦାକାଶର ସ୍ୱଭାବ
"ମାୟା" ନାମ ଧରିଥାଏ ଜାଣ ହେ ରାଘବ ।
ମନନଶୀଳ ହେବାରୁ ସେ ମାୟା ପ୍ରଭାବେ
ଚିତ୍ତହିଁ ମନ ନାମରେ ପରିଚୟ ଲଭେ ।
ସେହି ମନ ଜଗତକୁ କରିଛି ବିସ୍ତୃତ
କିଛିହିଁ ବିସ୍ତୃତ ନୁହେ ଏ କଥା ପ୍ରକୃତ ।
ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ
ବିତହବ୍ୟ ଉପାଖ୍ୟାନେ ଚିତ୍ତ ଉପଦେଶ
ବର୍ଣ୍ଣନେ ନାମ ୭୨ଶ ସର୍ଗଃ ।



## ୭୩ଶ ସର୍ଗଃ

## ବିତହବ୍ୟ ମନୋଯଜ୍ଞ

ଶ୍ରୀରାମ ପଚାରୁଛନ୍ତି ଶୁଣ ଆହେ ମୁନି
ବିତହବ୍ୟ କେଉଁପରି ସ୍ୱଦେହକୁ ପୁଣି
ଉଦ୍ଭୁତ କରିପାରିଲେ କେଉଁବଳ ଘେନି
ଦେହ ମଧ୍ୟେ ପ୍ରବେଶିଲେ କେଉଁପରି ପୁଣି ?
ବୁଝାଇ କହିବା ହେଉ ଆହେ ତପଚାରୀ
କାଳେ କାଳେ କୃତଜ୍ଞ ମୁଁ ରହିବି ତୁମରି ।
ବଶିଷ୍ଠ ବୋଲନ୍ତି ଶୁଣ ବିତହବ୍ୟ ମୁନି
ସମାଧି ଯୋଗ ନିଜକୁ ବ୍ରହ୍ମ ବୋଲି ମଣି,
ଗତ ଜନ୍ମମାନଙ୍କର ସକଳ ବୃତ୍ତାନ୍ତ
ଜାଣିବାକୁ ଇଚ୍ଛା କଲେ ସେହି ତପୋବନ୍ତ ।
ତେଣୁକରି ଗତଜନ୍ମମାନଙ୍କ ଶରୀର
ଦେଖିବାକୁ ପାଇଥିଲେ ସେହି ମୁନିବର ।
ଶେଷକୁ ମୃର୍ତ୍ତିକାଛନ୍ନ ଦେହକୁ ଦେଖିଣ
ତାହାର ଉଦ୍ଧାର ପାଇଁ ଇଚ୍ଛୁକ ହୋଇଣ ।

ସୂର୍ଯ୍ୟ ମଣ୍ଡଳରେ ଯାଇ କରନ୍ତେ ପ୍ରବେଶ
ସୂର୍ଯ୍ୟଦେବ ସମୀକ୍ଷନ୍ତି ମୁନିଙ୍କ ସନ୍ଦେଶ ।
ଗିରିଗୁହା ମଧ୍ୟସ୍ଥିତ ମୃତ୍ତିକା ଆବୃତ
ମୁନିଙ୍କ ଶରୀର ହେଲା ତାଙ୍କ ନେତ୍ରଗତ ।
ସୂର୍ଯ୍ୟଦେବ ମୁନିଙ୍କର ଇଚ୍ଛା ଅନୁସରି
ଅନୁଚର ପିଙ୍ଗଳଙ୍କୁ ଦେଲେ ତହିଁ ପେଲି
ସୂର୍ଯ୍ୟଙ୍କୁ ପ୍ରଣାମ କରି ବିତହବ୍ୟ ମୁନି
ପିଙ୍ଗଳ ଶରୀର ମଧ୍ୟେ ପଶିଲେ ସେକ୍ଷଣି ।
ଏବେ ପିଙ୍ଗଳ ପ୍ରବେଶ ପର୍ବତ ଗୁହାରେ
ନଖରେ ମୃର୍ତ୍ତିକା ତାଡ଼ି ଦେହକୁ କାଢ଼ିଲେ
ବିତହବ୍ୟ ତଥି ମଧ୍ୟେ ପ୍ରବେଶନ୍ତି ଯାଇଁ
ପରସ୍ପରେ ଯଥାମାନ୍ୟ ହେଲେ ଦିଆଦେଇ ।
ଆକାଶ ମଣ୍ଡଳେ ଚଳିଗଲେକ ପିଙ୍ଗଳ
ସରୋବରେ ପ୍ରବେଶନ୍ତି ଯାଇଁ ତପଶୀଳ ।
ସ୍ନାନ ନିତ୍ୟକର୍ମ ମୁନି ସମ୍ପାଦନ କରି
ଦିନେ ମାତ୍ର କ୍ରୀଡ଼ା କଲେ ସମାଧିକୁ ଛାଡ଼ି ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ବିତହବ୍ୟ ମନୋଯଜ୍ଞ ବର୍ଣ୍ଣନେ**
**ନାମ ୭୩ଶ ସର୍ଗଃ ।**



## ୭୪ଶ ସର୍ଗଃ
## ବିତହବ୍ୟ ସମାଧିଯୋଗ

କହନ୍ତି ବଶିଷ୍ଠ ତତପରେ ସୂର୍ଯ୍ୟଦେବ
ଅସ୍ତମିତ ହେଲେ ଯାଇ ଯେ ପ୍ରତିଚୀ ନଭ
ପୁନର୍ବାର ସମାଧିସ୍ଥ ହେବାପାଇଁ ମୁନି
ଅନ୍ୟ ଏକ ଗୁହା ମଧ୍ୟେ ପ୍ରବେଶେ ସେକ୍ଷଣି ।
ଗୁହାରେ ପ୍ରବେଶ କରି ଭାବନ୍ତି ଏସନ
ଅଜ୍ଞତା ବଶତଃ ପୂର୍ବେ ଜୀବିତ ଥାଇଣ,
ମୃତପରି ସିନା କରୁଥିଲି, ଅବସ୍ଥାନ
ସମାଧି ଅବଲମ୍ବନ କରିବି ଏ କ୍ଷଣ ।
ଜ୍ଞାନ ଜଗତରେ ରହିବଇଁ ମୁଁ ଜୀବିତ
ବାହ୍ୟ ଜଗତରେ ରହିବଇଁ ମୃତବତ ।
ଏହା ଭାବି ଛଅ ଦିନ ସମାଧିସ୍ଥ ରହି
ପୁନଃ ପ୍ରବୁଦ୍ଧ ହୁଅନ୍ତି ସେହି ତପୀସାଇଁ ।
ଦୀର୍ଘକାଳ ଜୀବନ୍ମୁକ୍ତ ଅବସ୍ଥା ଧରିଣ
ବନେ ବନେ ବିଚରନ୍ତି ସେହି ତପୋଧନ ।
ପ୍ରିୟ ବସ୍ତୁକୁ ଦେଖିଣ ନୁହନ୍ତି ଆନନ୍ଦ
ଅପ୍ରିୟ ବସ୍ତୁକୁ ଦେଖି ନୋହି ନିରାନନ୍ଦ ।
ଇଷ୍ଟାନିଷ୍ଟ ଘଟନାରେ ହର୍ଷ ବା ବିଷାଦ
କେଭେଁ ଛୁଇଁ ନ ପାରଇ ସେ ମୁନିଙ୍କ ହୃଦ ।
ନିଜ ମନକୁ ସେ ମୁନି କରି ସମ୍ବୋଧନ
କହନ୍ତି ଶୁଣ ମୋ କଥା ଆରେ ବାୟା ମନ ।
କିପରି ତୁ ସୁଖୀ ଏବେ ବୁଝ ଆରେ ମନ
ଏହାପରେ ହେବୁ ମନ ଆସକ୍ତି ବିହୀନ ।
ତେବେ ଯାଇଁ କରିବୁ ତୁ ସୁଖେ ଅବସ୍ଥାନ
ଚପଲ୍ୟ ପ୍ରକାଶ ନ କରିବୁ କଦାଚନ ।
ମହାତପା ବିତହବ୍ୟ ବିଜ୍ଞ ତପୀବର
ଏହି ଉପଦେଶ ଦେଇ ମନକୁ ତାଙ୍କର ।
ସୁବିଚାର ପରାୟଣ ହୋଇକରି ମୁନି
ଶତ ଶତ ବର୍ଷ କାଟିଥିଲେ ଏ ଅବନୀ ।
ପୁନରାବୃତ୍ତି ଧ୍ୱଂସର ଆଶଙ୍କା କରିଣ
ସଦା ସର୍ବଦା ସ୍ୱରୂପେ କଲେ ଅବସ୍ଥାନ ।
ବ୍ରହ୍ମ-ମଧୁ ପାନ ପାଇଁ ଅଭିଳାଷୀ ହୋଇ
ସହ୍ୟ ପର୍ବତ ଗୁହାରେ ପ୍ରବେଶିଲେ ଯାଇଁ ।
ପଦ୍ମାସନେ ଉପବିଷ୍ଟ ହୋଇକରି ମୁନି
ଯୋଗଧ୍ୟାନେ ନିମଜ୍ଜିଲେ କେ ପାରେ ତା ଚିହ୍ନି ।
ରାଗ, ଦ୍ୱେଷ, ସୁଖ, ଦୁଃଖ, ସାଂସାରିକ ବୃତ୍ତି
ଯାହାରକି ଥିଲା ତାଙ୍କ ପୂର୍ବ ଅନୁଭୂତି ।
ନମସ୍କାର କରି ତାଙ୍କୁ ବିନୟ ଭାବରେ
ବିଦାୟ ଘେନିଲେ ମୁନି ସ୍ୱଚ୍ଛନ୍ଦ ମନରେ ।
ସର୍ବଲୋକ, ସିଦ୍ଧକ୍ଷେତ୍ର, ପର୍ବତ ଇତ୍ୟାଦି
ସମସ୍ତଙ୍କୁ ମୁନିବର ପ୍ରଣାମ କରନ୍ତି ।
"ଚକ୍ଷୁ ଜ୍ୟୋତି ମୋର ଏବେ ସୂର୍ଯ୍ୟମଣ୍ଡଳରେ
ବାଧା ବିଘ୍ନ ନ ପାଇଣ ପ୍ରବେଶୁ ତହିଁରେ ।
ମିଶିଯାଉ ପ୍ରାଣବାୟୁ ବହିର୍ବାୟୁ ସଙ୍ଗେ
ଶ୍ରବଣେନ୍ଦ୍ରିୟ ମୋ ମିଶୁ ମହାକାଶ ଅଙ୍ଗେ ।
ଚନ୍ଦ୍ର ମଣ୍ଡଳରେ ମିଶୁ ମୋର ରସନେନ୍ଦ୍ରିୟ
ଶାନ୍ତି ଲଭେ ସୂର୍ଯ୍ୟହୀନ ଦିବସ ପରାୟ ।
ତୈଳହୀନ ଦୀପ ପରି ଶାନ୍ତି ମିଳୁ ମୋତେ
ଓଁକାର ଉଚ୍ଚରି ରହେ ଆତ୍ମା ମଧ୍ୟଗତେ ।
ପରମାତ୍ମା ଯେବେ ସତ୍ୟ ମୋ ଇଚ୍ଛା ପୂରଣ
ଅବିଳମ୍ବେ ଘଟୁ କହି ରହିଲେ ମଉନ ।

ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ
ବିତହବ୍ୟ ସମାଧିଯୋଗ ବର୍ଣ୍ଣନେ
ନାମ ୭୪ଶ ସର୍ଗଃ ।



## ୭୫ଶ ସର୍ଗଃ

## ବିତହ୍ବବ୍ୟ ଇନ୍ଦ୍ରିୟ ନିର୍ବାଣ

ବୋଲନ୍ତି ବଶିଷ୍ଠ ରାମ ସେହି ମୁନିବର
ଦୀର୍ଘ ପ୍ରଣବ ଉଚ୍ଚରେ କରି ବାରମ୍ବାର ।
ଷଷ୍ଠ ଓ ସପ୍ତମ ଜ୍ଞାନ ଭୂମି ମଧ୍ୟେ ଯାଇ
ବ୍ରହ୍ମ ଅନୁଭବ କରେ ହୃଦ ମଧ୍ୟେ ସେହି ।
ମନ କର୍ଣ୍ଣ ଦେଇ ରାମ ଶୁଣ ମୋ ବଚନ
ଶୂନ୍ୟବାଦୀଙ୍କ ମତରେ ଯେ ଅଟନ୍ତି ଶୂନ୍ୟ,
ବ୍ରହ୍ମବାଦୀ ମାନଙ୍କର ଯେ ଅଟନ୍ତି ବ୍ରହ୍ମ
ବୈଜ୍ଞାନିକ ମାନଙ୍କର ଯେ ଅଟେ ବିଜ୍ଞାନ,
ପୁରୁଷ ଅଟନ୍ତି ସେହୁ ସାଂଖ୍ୟବାଦୀଙ୍କର
ଯୋଗୀଗଣଙ୍କର ଯେହୁ ଅଟନ୍ତି ଈଶ୍ୱର,
ଶୈବଗଣ ଶିବ ଆଖ୍ୟା ଯାହାଙ୍କୁ ଦିଅନ୍ତି
କାଳବାଦୀଙ୍କ ମତରେ କାଳ ଯେ ବୋଲାନ୍ତି,
ଆତ୍ମା ଯେ ଅଟନ୍ତି ଆତ୍ମଜ୍ଞାନୀ ମାନଙ୍କର
ସର୍ବବ୍ୟାପୀ ସର୍ବ ହୃଦଶାୟୀ ଯେ ଈଶ୍ୱର ।
ତାଙ୍କରି ସାରୂପ୍ୟ ଲଭେ ବିତହବ୍ୟ ମୁନି
ଭାବିନିଅ ରାମଚନ୍ଦ୍ର କି କରେ ସୁଜ୍ଞାନୀ ।
ନିଷ୍କ୍ରିୟ ଓ ତେଜ ଉର୍ଦ୍ଧ୍ୱେ ଯେ ଦେଦୀପ୍ୟମାନ
ସେହି ସ୍ୱାନୁଭବ ମାତ୍ରେ ରହେ ତପୋଧନ ।
ଏକ ହୋଇଲେହେଁ ପୁଣି ଯେ ହୁଏ ଅନେକ
ଅନ୍ଧକାର ହେଲେ ମଧ୍ୟ ଯେ ଅଟେ ଆଲୋକ ।
ସର୍ବାତୀତ ହେଲେହେଁ ଯେ ସର୍ବ ରୂପ ଧରେ
ବିତବର ବିତହବ୍ୟ ସେ ରୂପ ଧରିଲେ ।
ଆକାଶଠାରୁ ଅଧିକ ଯେହୁ ସୁନିର୍ମଳ
ଜରାଶୂନ୍ୟ ଓ ତୁରୀୟ ପଦ ଯେ ବିମଳ ।
ଅଜ, ଅନାଦି, ଅବ୍ୟକ୍ତ, ଅସୀମ ଯେ ପଦ
ବିତହବ୍ୟ ମୁନି ଲାଭ କଲେ ତା ଆସ୍ୱାଦ ।
ଈଶ୍ୱର ସ୍ୱରୂପ ହେଲେ ବିତହବ୍ୟ ମୁନି
କାଳ କାଳ ଗାଉଥିବ ତା କୀର୍ତ୍ତି ଧରଣୀ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ
ବିହତବ୍ୟ ଉପାଖ୍ୟାନେ ଇନ୍ଦ୍ରିୟ ନିର୍ବାଣ
ବର୍ଣ୍ଣନେ ନାମ ୭୫ଶ ସର୍ଗଃ ।**



## ୭୬ଶ ସର୍ଗଃ

## ନିର୍ବାଣ ଯୋଗ

ବୋଲନ୍ତି ବଶିଷ୍ଠ ରାମ ବୀତହବ୍ୟ ମୁନି
ସାଂସାରିକ ଦୁଃଖ ସବୁ ଗଲେ ଅତିକ୍ରମି ।
ପରମ ଶାନ୍ତି ଲଭନ୍ତି ପରମ ପଦରେ
ସମୁଦ୍ରେ ତରଙ୍ଗ ଲୀନ ହୁଏ ଯେ ପ୍ରକାରେ ।
ବ୍ରହ୍ମ ପଦେ ଲୀନ ହୋଇ ପରମ ନିବୃତ୍ତି
ଲାଭ କରି ପାରି ମୁନି ଭୋଗ କରେ ଶାନ୍ତି ।
କ୍ରମଶଃ ଶରୀର ତାଙ୍କ ଦିଶିଲା ମଳିନ
ନିଜ ବାସସ୍ଥାନ ହୃଦ, ତେଜିଯାଏ ପ୍ରାଣ ।
ଲିଙ୍ଗ ଦେହଁଗତ ତାଙ୍କ ଜୀବ ଚିତ୍‌ଶକ୍ତି
ଚିତ୍ ସାଗରେ ଯାଇଁଣ ପ୍ରବେଶ କରନ୍ତି ।
ରକ୍ତ ମାଂସ ଆଦି ଶାରୀରିକ ଧାତୁମାନ
ମିଳିତ ହୁଅନ୍ତି ନିଜ ନିଜ ଉପାଦାନ ।
ମୁନିଶ୍ରେଷ୍ଠ ବିତହବ୍ୟ ବାଣୀ ଉପଶମ
ତୁମର ନିକଟେ ରାମ କରିଲି ବୟାନ ।
ତୁମେ ଏବେ ନିଜେ ତାହା ଆଲୋଚନା କର
ଏ ନିର୍ମଳ ଦୃଷ୍ଟି ଧରି ଜ୍ଞାନ ଲାଭକର ।
ଜ୍ଞାନ ଉଦୟେ ମୁକତି, ଦୁଃଖର ବିନାଶ
ଜ୍ଞାନ ଘେନି ସିଦ୍ଧି ଲାଭ ହୁଏ ରଘୁଈଶ ।
ଜ୍ଞାନ ବଳେ ବିତହବ୍ୟ ଚିତ୍ତ ପର୍ବତକୁ
ଖଣ୍ଡ ଖଣ୍ଡ କରି କାଟି ପକାଇଲେ ତାକୁ ।
ସେହି ସୁବିବେକ ମୁନି ଇନ୍ଦ୍ରିୟ ବିକାର
ତେଜିଦେଇ ସଙ୍ଗଦୋଷ ଅବିଦ୍ୟାର ମଳ,
ରାଗାଦି ଦୋଷ ସକଳ ପରିତ୍ୟାଗ କରି
ପରମାର୍ଥ ପଦ ଲାଭ ଥିଲେ କରିପାରି ।
ଅନନ୍ତ ଯେ ମୋକ୍ଷପଦ ହୃଦକମଳରେ
ଲାଭ କରି ପାରିଥିଲେ ସେହି ମୁନିବରେ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ
ବିତହବ୍ୟ ଉପାଖ୍ୟାନେ ନିର୍ବାଣ ଯୋଗ
ବର୍ଣ୍ଣନେ ନାମ ୭୬ଶ ସର୍ଗଃ ।**



## ୭୭ଶ ସର୍ଗଃ

## ବିତହ୍ବବ୍ୟ ବିଶ୍ରାନ୍ତି

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ବିତହବ୍ୟ ମୁନିପରି ବହୁ ତପୋବନ୍ତ ।

ଜ୍ଞାତବ୍ୟ ବିଷୟମାନ ହୋଇ ପରିଜ୍ଞାତ
ବସବାସ କରୁଥିଲେ ନିଜ ରାଜ୍ୟଗତ ।
ବିଦିତବେଦ୍ୟ ହୋଇଣ ତୁମେ ସେହିପରି
ନିଜ ରାଜ୍ୟେ ସୁଖେ ରହ ଆହେ ରଘୁଧାରୀ ।
ଯଦିଚ ଏ ଆତ୍ମା ରାମ ଅଟେ ସର୍ବଗତ
କଉଣସି ସୁଖେ ଦୁଃଖେ ନୁହଇ ସେ ଲିପ୍ତ ।
ତେଣୁ ତୁମେ ରାମ ବୃଥା ଶୋକ କିମ୍ପା କର
ଅସଂଖ୍ୟ ଜ୍ଞାନୀ ପୁରୁଷଛନ୍ତି ଏ ସଂସାର ।
ଦୁଃଖ ବଶୀଭୂତ ରାମ ତୁମପରି କେହି
ସେହିମାନଙ୍କ ମଧ୍ୟରେ ଦେଖା ତ ନ ଯାଇ ।
ସ୍ୱସ୍ଥ, ସର୍ବତ୍ୟାଗୀ, ସମବୁଦ୍ଧି ହୋଇକରି
ସୁଖ ଭୋଗ କରୁଥାଅ ଏ ଅଯୋଧ୍ୟା ଶିରୀ ।
ସେହି ସର୍ବଗାମୀ ଆତ୍ମା ଅଟ ତୁମେ ରାମ
ଉତ୍ପତ୍ତି ବିନାଶ ନାହିଁ କେତେବେଳେ ତୁମ ।
କଉଣସି ମହାତମା ତୁମପରି ରାମ
ଦୁଃଖେ ବଶୀଭୂତ ନ ହୁଅନ୍ତି କଦାଚନ ।
ଶ୍ରୀରାମ କହନ୍ତି କହ ଆହେ ତପୋଧନ
ଜୀବନମୁକ୍ତ ଅଟନ୍ତି ଯେ ମହାତ୍ମାଗଣ ।
ଗମନାଗମନ ଘେନି ଆକାଶ ପଥରେ
ଆସକ୍ତ ନୁହନ୍ତି କିମ୍ପା ଆହେ ତପୀବରେ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ଅଲୌକିକ ବ୍ୟାପାର ସେ ସକଳ ବୃତ୍ତାନ୍ତ
ପଦାର୍ଥମାନଙ୍କ ସ୍ୱାଭାବିକ ଶକ୍ତି ବଳେ
ଏ ଅଲୌକିକ ଘଟନା, ଘଟେ ସବୁବେଳେ ।
ଯାହା ଦେଖାଯାଏ କିମ୍ପା ଯାହା କରାଯାଏ
ଦ୍ରବ୍ୟଶକ୍ତି ବଳରେ ହିଁ ତାହା ଘଟିଥାଏ ।
ଏଥିପାଇଁ ଏ ସକଳ ଆତ୍ମବିଦ୍‌ଗଣ
ଆସକ୍ତ ହୁଅନ୍ତି ନାହିଁ କେହି କଦାଚନ ।
ଯଦିଓ ଆତ୍ମାକୁ କେହି ଚିହ୍ନି ନ ପାରିଛି
ଦ୍ରବ୍ୟ, କର୍ମ, କାଳଶକ୍ତି ଆଶ୍ରା ଲଭିଅଛି ।
ଅକ୍ଲେଶରେ ଆକାଶରେ ଗମନାଗମନ
କରିଣ ପାରିବ ସେହି ଅମୁକ୍ତ ଜନ ।
କିନ୍ତୁ ତାକୁ ଅତି ତୁଚ୍ଛ ହେୟ ମନେକରି
ଆତ୍ମବିଦ୍‌ଗଣ ବାଞ୍ଛା କେଭେଁ ତା ନ କରି ।
ଆତ୍ମାକୁ ଲାଭ କରିଣ ଆତ୍ମବିଦ୍‌ଗଣ
ଆତ୍ମତୃପ୍ତ ହୋଇ କରୁଥାନ୍ତି ଅବସ୍ଥାନ ।

ଅବିଦ୍ୟା ଜନିତ ଏହି ତୁଚ୍ଛ ଫଳ ପାଇଁ
କେଭେଁହେଲେ ଅଭିଳାଷ ନ କରନ୍ତି ସେହି ।
ଅବିଦ୍ୟାମୟ ସକଳ ଜାଗତିକ ଭାବ
ଅବିଦ୍ୟା ବିନାଶୀ ମୁକ୍ତ ଅଟେ ଯେ ମାନବ,
ପୁନଶ୍ଚ କିମ୍ପାଇଁ ତହିଁ ହେବ ସେ ନିମଗ୍ନ
ପକାଇଥିବା ଛେପକୁ ଢୋକିବ କେସନ ?
ଯୋଗାଭ୍ୟାସ କରି ମଧ୍ୟ ଯେବଣ ମାନବ
ଅବିଦ୍ୟାକୁ ସୁଖ ମଣି ମନେ ଦିଏ ଠାବ ।
ଆତ୍ମଜ୍ଞ ବୋଲିଣ ତାକୁ କେହି ନ ବୋଲନ୍ତି
ପ୍ରଶଂସା ଭାଜନ ହେବ କିପରି ସେ ବ୍ୟକ୍ତି ?
ଆତ୍ମଜ୍ଞ ବା ଅନାତ୍ମଜ୍ଞ ଯେ କୌଣସି ବ୍ୟକ୍ତି
କାଳ, ଦ୍ରବ୍ୟ, କର୍ମ ଘେନି ଚେଷ୍ଟିତ ରହନ୍ତି,
ଆକାଶ ବିଚରଣରେ ହୁଅନ୍ତି ସକ୍ଷମ
ତହିଁ ବିସ୍ମିତ ହେବାର ନ ଥାଇ କାରଣ ।
ଆତ୍ମବିଦ୍‌ଗଣ ଯେଣୁ ବାସନା ବିହୀନ
ଆତ୍ମାରେ ସଦା ସନ୍ତୁଷ୍ଟ ରହେ ତାଙ୍କ ମନ ।
ଆକୃଷ୍ଟ ନୁହନ୍ତି ସେହୁ ଆକାଶ ଗମନେ
ଅଷ୍ଟସିଦ୍ଧି ଲାଭ କିମ୍ବା ଭୋଗର କାରଣେ ।
ସର୍ବଦା ସନ୍ତୋଷଶୀଳ ଆତ୍ମଜ୍ଞାନୀଗଣ
ଯେଣୁ ଅଟନ୍ତି ବିଷୟ ବାସନା ବିହୀନ ।
ବିଷୟାନୁରାଗ ଯେଣୁ ନ ଥାଇ ତାଙ୍କର
ସଦା ଶାନ୍ତି ବିରାଜଇ ତାଙ୍କର ଅନ୍ତର ।
ଆକାଶ ସଦୃଶ ଯେଣୁ ସର୍ବବ୍ୟାପୀ ହୋଇ
ଆତ୍ମାରେ ବିରାଜମାନ କରୁଣ ସେ ଥାଇ ।
ସୁଖ ଦୁଃଖ ଘଟନାରେ ନୁହନ୍ତି ନିର୍ଲିପ୍ତ
ମରଣ କାଳରେ ମଧ୍ୟ ନୁହନ୍ତି ବ୍ୟଥିତ ।
ପ୍ରତିକୂଳ, ଅନୁକୂଳ ଉଭୟାବସ୍ଥାରେ
ମଜ୍ଜି ରହିଥାନ୍ତି ସେହୁ ଆତ୍ମ ଅର୍ଚ୍ଚନାରେ ।
ଆତ୍ମଜ୍ଞାନହୀନ ବ୍ୟକ୍ତି ଯେ ସିଦ୍ଧି ଇଚ୍ଛଇ
ଦ୍ରବ୍ୟ ଶକ୍ତିରୁ ଆତ୍ମଜ୍ଞ ସେସବୁ ଲଭଇ ।
ଦେବଗଣଙ୍କର ଏହି ଗଗନଚରିତ୍ୱ
ତାହା ବସ୍ତୁ ସ୍ୱତଃସିଦ୍ଧ ସ୍ୱଭାବରୁ ଜାତ ।
ଗଗନ ବିହାର ଆଦି ଯା' କିଛି ବ୍ୟାପାର
କାଳ, ଦ୍ରବ୍ୟ ମନ୍ତ୍ରାଦିଙ୍କ ପ୍ରୟୋଗର ଫଳ ।
ଦ୍ରବ୍ୟ, କର୍ମ, କାଳ ଆଦି କ୍ରମ ଅନୁସାରେ
ପ୍ରୟୋଗ କରିଣ ଯୋଗୀ ସେହି କର୍ମ କରେ ।

ଅବିଦ୍ୟାକୁ ଅତିକ୍ରମ ଯେହୁ କରିଅଛି
ତଜ୍ଜନିତ ଶକତିକୁ ଲଘିଂ ସେ ପାରିଛି ।
ତେଣୁ ଆତ୍ମଜ୍ଞ ବ୍ୟକ୍ତିର ଏହି ବିଷୟରେ
ଆଗ୍ରହ ନ ଥାଇ ତାର କୌଣସି ପ୍ରକାରେ ।
ଜ୍ଞାନ ଲାଭ ପାଇଁ ଏହା ନୁହେଁ ଆବଶ୍ୟକ
ପ୍ରବଳ ଇଚ୍ଛାରେ ସିଦ୍ଧି ଲାଭ ସ୍ୱାଭାବିକ ।
ଆତ୍ମଜ୍ଞ ଜନର ଅନ୍ୟ କୌଣସି ବିଷୟେ
ଅଭିଳାଷ ଥାଏ ନାହିଁ ଜାଣ ରଘୁରାୟେ ।
ଅନ୍ୟ ସକଳ ଇଚ୍ଛାର ହେଲେ ଉପଶମ
ଆତ୍ମ ଜ୍ଞାନ ଲାଭ କରିଥାଏ ଜୀବ ଜାଣ ।
ଯେତେବେଳେ ହୋଇଯାଏ ଜ୍ଞାନର ଉଦୟ
ଜ୍ଞାନ ବିରୋଧୀ ଯେ ଇଚ୍ଛା, ନ ରହଇ ଥୟ ।
ଜ୍ଞାନୀର ଯଦି କୌଣସି ଇଚ୍ଛା ଜନମଇ
ସଙ୍ଗେ ସଙ୍ଗେ ତାହା ସେହୁ ଲାଭ କରିଥାଇ ।
ବାହ୍ୟିକ ସିଦ୍ଧି ନିମିତ୍ତ ବିତହବ୍ୟଙ୍କର
ଆଗ୍ରହ ଜନମେ ନାହିଁ କୌଣସି ପ୍ରକାର ।
ଯେପରି ଚେଷ୍ଟା ସେ କଲେ ଜ୍ଞାନ ଲାଭ ପାଇଁ
ତାହା ସବୁ ଆଗୁର ମୁଁ କହିଛି ବୁଝାଇ ।
ଯେ ପ୍ରକାର ସିଦ୍ଧି ନର ଲଭୁନା କାହିଁକି
ପ୍ରଗାଢ଼ ଉଦ୍ୟମ ତାର ଲୋଡ଼ା ଯେ ତହିଁକି ।
ରାମ ପଚାରନ୍ତି ମାଂସଭୋଜୀ ଜୀବଗଣ
ବିତହବ୍ୟ ଦେହ କିମ୍ପା ନ କଲେ ଭକ୍ଷଣ ?
ମାଟି ତଳେ ପୋତି ହୋଇ ତାଙ୍କର ଶରୀର
ବିନଷ୍ଟ ନୋହିଲା କିମ୍ପା କହ ତପୀବର ?
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ବାସନା ବଳେ ଦୂଷିତ ଯେ ଅଜ୍ଞ ସଂବିତ,
ଇହ ଜଗତରେ ରାମ ତାହାହିଁ କେବଳ
ଛେଦନ ଭେଦନ ଯୋଗ୍ୟ ଅଟେ ରଘୁବୀର ।
ବାସନାବିହୀନ ଥିଲା ବିତହବ୍ୟ ଦେହ
ପୁନରପି ଥିଲା ତାହା ଶୁଦ୍ଧ ସଂବିତ୍‌ମୟ
ଛିନ୍ନ ଭିନ୍ନ କରିବାକୁ ତାକୁ ଏ ଜଗତେ
ସମର୍ଥ ନୁହନ୍ତି କେହୁ ଜାଣ ରଘୁପତେ ।
ଦେହ ଛେଦ ଭେଦ ଆଦି ଯେ ସକଳ ଭ୍ରମ
ଯେଣୁ ଯୋଗୀଙ୍କୁ ନ କରିପାରେ ଆକ୍ରମଣ ।
ମନକର୍ଣ୍ଣ ଦେଇ ତାହା କର ହେ ଶ୍ରବଣ
ବର୍ଣ୍ଣନା କରୁଛି ମୁହିଁ ତହିଁର କାରଣ ।

ଏହି ଚିତ୍ତ ଯେତେବେଳେ ଯେଉଁ ପଦାର୍ଥରେ
ନିପତିତ ହୋଇଥାଏ ଆହେ ରଘୁବୀରେ ।
ରହୁଁ ରହୁଁ ତନମୟ ହୋଇଯାଏ ତହିଁ
ସେତେବେଳେ ଚିହ୍ନ ବର୍ଣ୍ଣ ତାର ନ ରହଇ ।
ଶତ୍ରୁକୁ ଦେଖିଣ ମନ ହୁଅଇ ବିକୃତ
ମିତ୍ରକୁ ଦେଖିଲା କ୍ଷଣି ହୁଏ ପ୍ରଫୁଲ୍ଲିତ ।
ସବୁରି ପ୍ରତ୍ୟକ୍ଷ ସିଦ୍ଧି ଅଟେ ଏହି ତଥ୍ୟ
ମନର ଗତି ହେ ରାମ କଳ୍ପନା ଅତୀତ ।
ବାଟ ପାଖେ ରହିଥିବା ବୃକ୍ଷ ବା ପର୍ବତ
ରାଗ ବା ଦ୍ୱେଷ ନ ଆଣେ ପଥିକର ଚିତ୍ତ ।
ସମସ୍ତଙ୍କ ଅନୁଭବ ସିଦ୍ଧ ଏହି ତତ୍ତ୍ୱ
ସମଭାବ ହେତୁ ମୁନି ଦେହ ସୁରକ୍ଷୀତ ।
ରସହୀନ ପଦାର୍ଥରେ ଆସେ ନିସ୍ପୃହତା
କଟୁ ବସ୍ତୁରେ ବିରକ୍ତି ସ୍ୱତଃସିଦ୍ଧ କଥା ।
ରାଗ ଦ୍ୱେଷହୀନ ଯତିମାନଙ୍କ ଦେହରେ
ବିଶୁଦ୍ଧ ସଂବିତ୍ ଖେଳାକରେ ବିଳାସରେ ।
ସେହି ଦେହେ ହିଂସ୍ରଜନ୍ତୁଗଣଙ୍କର ଚିତ୍ତ
ନିପତିତ ମାତ୍ରେ ହୁଏ ସେ ପରିବର୍ତ୍ତିତ ।
ସମଭାବାପନ୍ନ ହୋଇ ସେହି ଜନ୍ତୁଗଣ
ମନମଧ୍ୟ ହିଂସାଭାବ ଯାଆନ୍ତି ଭୁଲିଣ ।
ସମଦର୍ଶୀ ଯୋଗୀଙ୍କର ପାଇ ଦରଶନ
ହିଂସ୍ର ଜନ୍ତୁ ଚିତ୍ତ ହୁଏ ସମ ଭାବାପନ୍ନ ।
ଯେତେବେଳେ ତାଙ୍କଠାରୁ ହୁଅନ୍ତି ଅନ୍ତର
ପୁଣି ହିଂସାଭାବ ଖେଳେ ତାଙ୍କ ହୃଦସ୍ଥଳ ।
ତେଣୁ କରି ସିଂହ, ବ୍ୟାଘ୍ର ଶରୀସୃପ, କୀଟ
ବିତହବ୍ୟ ଦେହ କରି ନ ପାରନ୍ତି ନଷ୍ଟ ।
ସତ୍ତା-ସାମାନ୍ୟ ରୂପରେ ସେ ସଂବିତ୍‌ଭାବ
ସର୍ବତ୍ର ବିରାଜୁଥାଏ ହେ ରଘୁପୁଙ୍ଗବ ।
ଏକାଗ୍ରତା ସମ୍ପନ୍ନ ନୁହଇ ଯାର ଚିତ୍ତ
ପରିଚ୍ଛିନ୍ନ ଲଘୁଭାବେ ଦେଖନ୍ତି ସଂବିତ ।
କେବଳ ନିଜ ନିଜର ଶରୀର ମଧ୍ୟରେ
ସଂବିତକୁ ଦେଖୁଥାନ୍ତି ସେହୁ ସବୁବେଳେ ।
ତତ୍ତ୍ୱଜ୍ଞାନ, ସମାଧିରେ ବିତହବ୍ୟ ଦେହ
ସମସଂବିତକୁ ଲଭିଥିଲା ସେ ନିଶ୍ଚୟ ।
ଅନ୍ୟ ଏକଇ କାରଣ ଅଛଇ ହେ ରାମ
ପ୍ରାଣ ସ୍ପନ୍ଦନ ହିଁ ଅଟେ ନାଶର କାରଣ ।

ଚିତ୍ତ ପ୍ରାଣ ସ୍ପନ୍ଦନରୁ ଜନ୍ମେ ଏ ବିକାର
ପ୍ରାଣନ ହିଁ ଅଟେ ପ୍ରାଣ ସ୍ପନ୍ଦନ ମାତର ।
ପ୍ରାଣସ୍ପନ୍ଦନ ଯେବେଳେ ଶାନ୍ତି ହୋଇଯାଏ
ପଞ୍ଚପ୍ରାଣ ଶୀଳାପରି ଦୃଢ଼ୀଭୂତ ହୁଏ ।
ତେଣୁକରି ବିତହବ୍ୟ ମୁନିଙ୍କ ଶରୀର
ବିନଷ୍ଟ ହୋଇ ନ ଥିଲା ଆହେ ରଘୁବୀର ।
ଚିତ୍ତ ଜାତ ପ୍ରାଣଜାତ ଯେବଣ ସ୍ପନ୍ଦନ
ଅଙ୍ଗ ପ୍ରତ୍ୟଙ୍ଗେ ଯଦିଚ ନୁହେ ସଞ୍ଚାଳନ,
କ୍ଷୟ ବୃଦ୍ଧି ତାହାଙ୍କର ନ ଘଟଇ ରାମ
ସ୍ପନ୍ଦନ କେବଳ କ୍ଷୟ ବୃଦ୍ଧିର କାରଣ ।
ଶାନ୍ତି ହୋଇ ଯାନ୍ତେ ବାହ୍ୟ, ଅନ୍ତର ସ୍ପନ୍ଦନ
ମେଦ, ମାଂସ, ତ୍ୱକ ଆଦି ଦେହ ଧାତୁମାନ,
ଶରୀରରୁ ବିମୁକ୍ତ ସେ କେବେ ନୋହୁଥାନ୍ତି
ସୁମେରୁ ସଦୃଶ ସ୍ଥୈର୍ଯ୍ୟପ୍ରାପ୍ତ ହୋଇଥାନ୍ତି ।
ତେଣୁକରି ଯୋଗୀଙ୍କର ପରିତ୍ୟକ୍ତ ଦେହ
ବହୁକାଳ ଅକ୍ଷୁର୍ଣ୍ଣତା ରହେ ନିଃସନ୍ଦେହ ।
ସାଧାରଣ ଲୋକ ପକ୍ଷେ ଅସମ୍ଭବ ଯାହା
ଜ୍ଞାନୀ ବିତହବ୍ୟ ମୁନି ଲଭିଥିଲେ ତାହା ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ ବିତହବ୍ୟ ଉପାଖ୍ୟାନେ ବିଶ୍ରାନ୍ତି ସମାପ୍ତି ବର୍ଣ୍ଣନେ ନାମ ୭୭ଶ ସର୍ଗଃ ।**

❑

## ୭୮ଶ ସର୍ଗଃ
## ସିଦ୍ଧିଲାଭ ବିଚାର

ବଶିଷ୍ଠ ବୋଲନ୍ତି ରାମ ବିଚାରେ ପ୍ରଭାବେ
ବିତହବ୍ୟଚିତ୍ତ ଅସ୍ତ ହୋଇବସେ ଯେବେ ।
ମୈତ୍ରୀ ଆଦି ଗୁଣମାନ ତାଙ୍କ ହୃଦୟରେ
ବିକଶିତ ହୋଇ ଉଠିଥିଲେ ରଘୁବୀରେ ।
ଶ୍ରୀରାମ କହନ୍ତି ଚିତ୍ତ ବ୍ରହ୍ମେ ହେଲେ ଲୀନ
କାହିଁ କିପରି ଉଇଁବେ ମୈତ୍ରୀ ଆଦି ଗୁଣ ?
ବଶିଷ୍ଠ ବୋଲନ୍ତି ରାମ ତାହା ଏବେ ଶୁଣ
ଯାଦ୍ୱାରା ତୁମ ସନ୍ଦେହ ହୋଇବ ମୋଚନ ।
ଦୁଇ ପ୍ରକାର ଘଟଇ ଚିତ୍ତର ବିନାଶ
ସ୍ୱରୂପ, ଅରୂପ ନାମେ ଶାସ୍ତ୍ରରେ ପ୍ରକାଶ ।
ଜୀବନ ମୁକତଙ୍କର ଚିତ୍ତର ବିନାଶ
"ସ୍ୱରୂପ" ବୋଲାଏ ଜାଣ ରଘୁ କୁଳଈଶ ।
ବିଦେହ ମୁକତଙ୍କର ଚିତ୍ତର ବିନାଶ
"ଅରୂପ" ନାମରେ ଖ୍ୟାତ ଜାଣ ରଘୁଈଶ ।
ଚିତ୍ତର ବିଦ୍ୟମାନତା ଦୁଃଖର କାରଣ
ପୁଣୁ ଚିତ୍ତର ବିନାଶ ସୁଖ ହେତୁ ଜାଣ ।
ଚିତ୍ତର ବିନାଶ ରାମ ଅଟେ ବାଞ୍ଛନୀୟ
ଚିତ୍ତ ବିନାଶରେ ତତ୍ତ୍ୱ ଜ୍ଞାନର ଉଦୟ ।
ଅଜ୍ଞାନ ଜାତ ବାସନା ଜନ୍ମର କାରଣ
ସେହି ବାସନାରୁ ସିନା ମନର ଜନମ ।
ଏସନ ଜନମ ରାମ ଦୁଃଖର କାରଣ
ବାସନା ବ୍ୟାଧି କିପରି ହେବ ନିବାରଣ ?
ଦେହ ଇନ୍ଦ୍ରିୟମାନଙ୍କ କର୍ମକୁ ଯେ ଚିତ୍ତ
ନିଜର ବୋଲି ଆବୋରି ବସେ ରଘୁନାଥ ।
ତତ୍ତ୍ୱବୋଧହୀନ ଜୀବ ବୋଲି ତାକୁ କହି
ସାରା ଜୀବନଟା ଖାଲି ଦୁଃଖ ଭୋଗୁଥାଇ ।
ଯେତେକାଳ ଯାଏ ମନ ଥିବ ବର୍ତ୍ତମାନ
ତେତେକାଳ ଦୁଃଖ ନାଶ ନୁହେ କଦାଚନ ।
ଏହି ମନ ଯେବେ ହୋଇଯାଏ ଅସ୍ତମିତ
ଜୀବର ସଂସାର ଦୁଃଖ ହୁଏ ଦୂରୀଭୂତ ।
ବାସନା ଜଡ଼ିତ ଅଟେ ଯେ ଚଞ୍ଚଳ ମନ
ଦୁଃଖ ବୃକ୍ଷର ପ୍ରଥମ ଅଙ୍କୁର ସେ ଜାଣ ।
ଶ୍ରୀରାମ ବୋଇଲେ ଦେବ କେଉଁ ଲୋକ ମନ
କେଉଁ ପ୍ରକାରେ ବିନଷ୍ଟ ହୋଇଥାଏ ଜାଣ ।
ବିନାଶ ଘଟଇ ତାର କେବଣ ଭାବରେ
ସେ ବିନାଶର ସ୍ୱରୂପ କହ ମୁନିବରେ ।
ବଶିଷ୍ଠ କହନ୍ତି ତାହା ଶୁଣ ହେ ଶ୍ରୀରାମ
ଚିତ୍ତର ସତ୍ତା ତ ପୂର୍ବେ କରିଛି ବର୍ଣ୍ଣନ ।
ଚିତ୍ତ ବିନାଶ କିପରି ଘଟେ ଏବେ ଶୁଣ
ଶୁଣିଲେ ଜାଣିପାରିବ ସମସ୍ତ କାରଣ ।
ସୁଖ ଦୁଃଖ ଯା'କୁ ଆତ୍ମାଠାରୁ ହେ ଶ୍ରୀରାମ
କେତେବେଳେ ହେଲେ କରି ନପାରେ ବିଚ୍ଛିନ୍ନ ।
ବୁଝ ହେ ଶ୍ରୀରାମ ସେହି ମନ ଅଟେ ମୃତ
ମୁଁ ଭାବ ନଥାଇ ଯା'ର ମୃତ ତାର ଚିତ୍ତ ।
ଆପଦ ମୂଢ଼ତା, ଦୈନ୍ୟ ଅହଂକାର ମାନ
ଯାହାର ମୁଖ ଶୋଭାକୁ ନ କରେ ମଳିନ ।
ମନ ତାହାର ଲଭିଛି ମରଣ ଜାଣିମ
ଜୀବନମୁକତ ମନ ବିନାଶ ଏସନ ।

ସମସ୍ତ ମନଭାବକୁ ମୂଢ଼ତା ବୁଝିବ
ମନର ବିନାଶ ତାଙ୍କ ବିନାଶେ ଘଟିବ ।
ଜୀବନ ମୁକତଙ୍କର ସତ୍ତ୍ୱପ୍ରକାଶକ
ଆବର ଅଟଇ ଯାହା ମନ ବିନାଶକ,
ସେହି ସ୍ୱଭାବକୁ ଜାଣିରଖ ଜ୍ଞାନୀଗଣ
ଅଭିହିତ କରିଥାନ୍ତି ଚିତ୍ତ ବୋଲି ରାମ ।
ସେହି ଚିତ୍ତ ମଧ୍ୟେ ମୈତ୍ରୀ ଆଦି ଗୁଣାବଳୀ
ଉଦୟ ହୋଇଣ ଯେବେ ବ୍ରହ୍ମସହ ମିଳି ।
ଆଉ ତ ନୁହଇ ତାର ପୁନରାବର୍ତ୍ତନ
ଏକଥା ମନେରଖିବ ହେ ରଘୁନନ୍ଦନ ।
ଯେଉଁ ଜୀବନ ମୁକତ ପୁରୁଷର ମନ
ବ୍ରହ୍ମ ବାସନାରେ ରହିଥାଏ ପରିପୂର୍ଣ୍ଣ ।
କେବଳହିଁ ବ୍ରହ୍ମକୁ ସେ ଭାବୁଥାଏ ଯେଣୁ
ସତ୍ତ୍ୱନାମେ ଅଭିହିତ ହୁଅଇ ସେ ତେଣୁ ।
ଶରୀର ସହ ସମ୍ପର୍କ ନ ରହେ ତାହାର
ଏତାଦୃଶ ମନୋନାଶ ଜୀବନ ମୁକ୍ତର,
"ସ୍ୱରୂପ" ମନ ବିନାଶ ବୋଲି ଯୋଗୀଗଣ
ଏପରି ମନସ୍ଥିତିକି କହିଥାନ୍ତି ଜାଣ ।
ମୈତ୍ରୀ ଆଦି ଗୁଣାବଳୀ ତହିଁର ମଧ୍ୟରେ
ଉଦିତ ହୋଇଣଥାନ୍ତି ବୁଝ ରଘୁବୀରେ ।
ଅରୂପ ମନ ବିନାଶ ଆହେ ରଘୁରାଇ
କେବଳ ବିଦେହମୁକ୍ତ ମନରେ ଘଟଇ ।
ସକଳ ଗୁଣ ଆଧାର ଯେଉଁ ସତ୍ତ୍ୱମନ
ପରମ ପଦରେ ତାହା ରହିଥାଏ ଲୀନ ।
ସେତେବେଳେ ସେ ମନରେ କଉଣସି ଦୃଶ୍ୟ
ତିଳେହେଁ ମାତ୍ର ନ ଥାଏ ଆହେ ରଘୁଶିଷ୍ୟ ।
ଅନ୍ୟ କଉଣସି ଗୁଣ ନ ଥାଏ ତହିଁରେ
କେବଳ ହିଁ ଶ୍ରୀ ଗୁଣଟି ରାଜେ ନିରନ୍ତରେ ।
ଉଦୟ ବା ଅସ୍ତ ନାହିଁ ସେହି ସ୍ୱରୂପର
ସୁଖ, ଦୁଃଖ, ଦିବା, ରାତ୍ରି, ତେଜ ଅହଂକାର
ଊର୍ଦ୍ଧ୍ୱ ଅବା ଅଧଃ, ସନ୍ଧ୍ୟା, ଆକାଶ ଇତ୍ୟାଦି
ଏ ସବୁ କିଛି ନ ଥାଏ ତହିଁ ରଘୁନିଧି ।
ସଂସାର ପାର ଲଭିଛି ଯେବେଣ ମାନବ
ସେହି ବିଶାଳ ପଦରେ କେବଳ ତା ଠାବ ।
ସେ ପଦ-କମଳେ ଲେଶମାତ୍ର ଦୁଃଖ ନାହିଁ
ଗୁଣର ଅତୀତ ଯେଣୁ ସେ ପଦ ଅଟଇ ।
ଉନ୍ମେଷ ନିମେଷ ଆଦି କିଛି କ୍ରିୟା ନାହିଁ
ଜଡ଼ାତୀତ ହେତୁ ଆନନ୍ଦରେ ପୁରିଥାଇ ।
ଚିତ୍ତ ବିମୁକ୍ତ ହୋଇଣ ବିଦେହ ମୁକତ
ସେ ପରମପଦେ ରହିଥାନ୍ତି ବିରାଜିତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ସିଦ୍ଧିଲାଭ ବିଚାର ବର୍ଣ୍ଣନେ ନାମ ୭୮ଶ ସର୍ଗଃ ।**



## ୭୯ଶ ସର୍ଗଃ

## ସ୍ମୃତି ବୀଜ ବିଚାର

ଶ୍ରୀରାମ କହନ୍ତି ଗୁରୋ ! ଦେବାକ ବତାଇ
ସଂସାରରୂପୀ ଲତାର ବୀଜ ଅଛି କାହିଁ ?
ସେ ବୀଜର ବୀଜ ଅବା କାହୁଁ ଉତପନ୍ନ
ତାହାର ଯେ ବୀଜ ପୁଣି କାହୁଁ ଆସେ ପୁଣ ।
କେଉଁ ଉପାଦାନେ ତାହା ହୁଅଇ ନିର୍ମିତ
କୃପା ପରବଶ ହୋଇ କହ ତପୋବନ୍ତ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁରାଜ
ପଞ୍ଚଭୌତିକ ଶରୀର ସେ ଲତାର ବୀଜ ।
ତଥି ମଧ୍ୟେ ରହିଥାଇ ଯେ ଲିଙ୍ଗ ଶରୀର
ତହିଁ ଥାଏ ଶୁଭାଶୁଭ କରମ ଅଙ୍କୁର ।
ଆଶା ପଥେ ବିଚରଣଶୀଳ ଯେଉଁ ଚିତ୍ତ
ଲିଙ୍ଗ-ଶରୀରର ବୀଜ ତାହା ରଘୁନାଥ ।
ଦୁଃଖର ଆଧାର ଅଟେ ଜାଣ ଏହି ଚିତ୍ତ
ସତାସତ ଆବରଣେ ରହିଛି ଆବୃତ ।
ଭୂତ, ଭବିଷ୍ୟତ, ବର୍ତ୍ତମାନ ଇତ୍ୟାଦିରେ
ଯେବେଣ ଶରୀରମାନ ଜନ୍ମନ୍ତି ତହିଁରେ ।
ସେସବୁ ଶରୀରମାନ ଏ ଚିତ୍ତ ମଧ୍ୟରେ
ସ୍ୱପ୍ନପ୍ରାୟ ଅନୁଭୂତ ହୁଅନ୍ତି କାଳେ କାଳେ ।
ଚିତ୍ତ ବୃତ୍ତି ଘେନି ଜାଗତିକ ଭାବମାନ
ଜନମ ଲଭିଣ ଥାନ୍ତି ହେ ରଘୁନନ୍ଦନ ।
ଜୀବନଲତା ଲଟାଏ ଚିତ୍ତ ପାଦପରେ
ସେ ପାଦପ ବୀଜ ଜାଣ ଦୁଇ ପରକାରେ ।
ପ୍ରଥମ ବୀଜ ଅଟଇ ପ୍ରାଣର ସ୍ପନ୍ଦନ
ଦୃଢ଼ ବାସନା ଅଟଇ ଦ୍ୱିତୀୟଟି ଜାଣ ।
ପ୍ରାଣବାୟୁର ସ୍ପନ୍ଦନେ ଉଦ୍ଭୁତ ଏ ଚିତ୍ତ
ସେ ସ୍ପନ୍ଦନ ଅଭାବରେ ଜନ୍ମେ ନାହିଁ ଚିତ୍ତ ।

ପ୍ରାଣସ୍ପନ୍ଦନ ଯେ କାଳେ ହୁଅଇ ନିବୃତ
ସେତେବେଳେ କ୍ରିୟାଶୂନ୍ୟ ହୋଇଯାଏ ଚିତ୍ତ ।
ହେ ରାମ ତାହାକୁ କହିଥାଆନ୍ତି ମୁକତି
ଜୀବର ସେ ମୁକ୍ତି ବିନା କାହିଁ ଅନ୍ୟଗତି ?
ପ୍ରାଣ ସ୍ପନ୍ଦନରେ ସଂବିତ୍ ହୁଏ କ୍ରିୟାଶୀଳ
ସେ ସଂବିତ୍ ନିରୋଧନ ମୁକତିର ମୂଳ ।
ଯେତେବେଳେ ସେ ସଂବିତ୍ ହୁଏ ପ୍ରକାଶିତ
ସେତେବେଳେ ବିଷୟକୁ ହୁଅଇ ଧାବିତ ।
ତେଣୁ କରି ତାର ନିରୋଧନ ଆବଶ୍ୟକ
ଯେଣୁ ବିଷୟ ଅଟଇ ବିଷର ପ୍ରତୀକ ।
ବାହ୍ୟ ବିଷୟେ ସଂବିତ୍ ହୋଇ ଅନାସକ୍ତ
ଆତ୍ମବୋଧ ନିମିତ୍ତରେ ହୁଅନ୍ତେ ଉଦ୍ୟତ,
ସେତେବେଳେ ଯାଇଁ ବ୍ରହ୍ମପଦ ଉପଲବ୍ଧ
ହୋଇଥାଏ ଜାଣ ଆହେ ରଘୁକୁଳ ଚନ୍ଦ
ବାସନା ଓ ପ୍ରାଣସ୍ପନ୍ଦନକୁ ତୁମେ ରାମ
ସଂବିତ୍ରୁ କାଢ଼ିବାକୁ ହୋଇବ ସକ୍ଷମ ।
ତେବେଯାଇଁ ମୁକ୍ତି ଲାଭ ହୋଇବ ତୁମର
ମୋ କହିବା କଥା ହେଜୁଥାଅ ରଘୁବୀର ।
ଧ୍ୟାନ ପ୍ରାଣାୟାମ ଆଦି ନାନା ଉପାୟରେ
ପ୍ରାଣକୁ ନିରୁଦ୍ଧ କରିଥାନ୍ତି ଯୋଗୀବରେ ।
ପ୍ରାଣ ନିରୋଧନ ଦ୍ୱାରା ଚିତ୍ତ ଉପଶମ
ପୁଣି ସଂବିତ୍ର ସ୍ୱରୂପରେ ଅବସ୍ଥାନ,
ଯେଣୁ ହୁଏ ବୋଲି ଜାଣିଥାନ୍ତି ଯୋଗୀଗଣ
ତେଣୁ ଆଚରିଣ ଥାନ୍ତି ପ୍ରାଣ ନିରୋଧନ ।
ତେଣୁ କରି ବାସନା ଓ ପ୍ରାଣର ସ୍ପନ୍ଦନ
ଚିତ୍ତ ବୃକ୍ଷର ଦୁଇଟି ବୀଜ ବୋଲି ଜାଣ ।
ତନ୍ମଧ୍ୟରୁ ଗୋଟିକରେ ହୁଅନ୍ତେ ବିନାଶ
ଅପରର ନାଶ ଘଟେ ହେ ରଘୁବିଳାସ ।
ବାସନା ପ୍ରକାଶ ସଂବିତ୍ ହୁଏ ପ୍ରକାଶିତ
ସେହି ସଂବିତ୍ ପ୍ରାଣକୁ କରଇ ସ୍ପନ୍ଦିତ ।
ପ୍ରାଣ ସ୍ପନ୍ଦନରୁ ଜନ୍ମ ହୋଇଥାଏ ଚିତ୍ତ
ଏହିପରି ସଂବିତକୁ କରି ଜାଗରିତ ।
ଜନମ ଲଭଇ ଚିତ୍ତ ଆହେ ରଘୁରାଣ
ପ୍ରାଣ ସ୍ପନ୍ଦନ, ବାସନା ଚିତ୍ତର କାରଣ ।
ରଜ୍ଜୁକୁ ଦେଖିଣ ଯଥା ସର୍ପଜ୍ଞାନ ଭ୍ରମ
ଯଥାର୍ଥ ଜ୍ଞାନ ବଳରେ ହୁଏ ନିବାରଣ ।

ସମ୍ୟକଦର୍ଶୀମାନଙ୍କୁ ଏହି ଯେ ଜଗତ
ବିଶୁଦ୍ଧ ସଂବିତ ବୋଲି ହୁଏ ପ୍ରତିଭାତ ।
ସଂବେଦ୍ୟ ବା ଦୃଶ୍ୟ ବୋଲି ତହିଁ କିଛି ନାହିଁ
ତେଣୁ ପୂର୍ବ ଦୃଶ୍ୟ ଜ୍ଞାନୀ ମନୁ ପୋଛିଦେଇ,
ନୋହିଲେ ସଂସାର ସହ ରହିବ ଆସକ୍ତି
ଏସବୁ ବିହୁନେ ହୁଏ ଆତ୍ମାର ମୁକତି ।
ଯେବେ ଏ ଦୃଶ୍ୟ ଦର୍ଶନ ସର୍ବଦା ଘଟିବ
ଜନ୍ମ ମରଣର ତାହା କାରଣ ହୋଇବ ।
ଏସବୁ ଦୃଶ୍ୟର ଯେବେ ନୋହିବ ଦର୍ଶନ
ଜଡ଼ ସହିତ ସଂବିତ୍ ହୋଇବ ବିଚ୍ଛିନ୍ନ ।
ଜନ୍ମାଦି ବିହୀନ ନିତ୍ୟ ସୁଖ ଆଣି ଦେବ
ତେଣୁ ଦୃଶ୍ୟ ସଂବେଦନ ତେଜିବ ରାଘବ ।
ତେବେ ତୁମେ ଆତ୍ମାରୂପେ ହୋଇବ ପ୍ରବୁଦ୍ଧ
ଆତ୍ମଜ୍ଞାନ ଜନମିଲେ ନାଶଯିବ ଦ୍ୱନ୍ଦ୍ୱ ।
ଶ୍ରୀରାମ କହନ୍ତି ଏବେ ଶୁଣ ମହାଭାଗ
ଜଡ଼ତା ଓ ସଂବିତରୁ ଏକ କଲେ ତ୍ୟାଗ ।
ଅପରଟି ଅବଶିଷ୍ଟ ସିନା ରହିଯିବ
ସଂବିତ୍ ବିନା ଜଡ଼ତା କେହ୍ନେ ନାଶଯିବ ?
ବାହ୍ୟ ବିଷୟକୁ ଚିତ୍ କରନ୍ତେ ଗ୍ରହଣ
ତାହାହିଁ ସଂବିତ ବୋଲି ବୋଲାଇବ ରାମ ।
ଜ୍ଞାନୀ ମାନଙ୍କର ଏହା ନ ଥିଲେ ହେ ରାମ
ଅସଂବିତ ବୋଲି କରି ତାହାକୁ ମଣିମ ।
ହୋଇଲେହେଁ ଜ୍ଞାନୀଜନ କର୍ମପରାୟଣ
ସଦା ଧରିଥାଏ ସେହୁ ଅସଂବିତ ଗୁଣ ।
ଯାର ବୁଦ୍ଧି ଦୃଶ୍ୟସହ ଲିପ୍ତ ନୋହିଥାଇ
ଅସଂବିତ୍, ଅଜଡ଼ ଓ ଜୀବନ୍ମୁକ୍ତ ସେହି ।
ଅତୀତ ଓ ଭବିଷ୍ୟତ ଭବ ତେଜି ଜୀବ
ମୂକ ବ୍ୟକ୍ତିପରି ଯଦି ନିଶ୍ଚଳ ରହିବ
ତେତେବେଳେ ହେବ ସେହୁ ଜଡ଼ତା ମୁକତ
ସଂବିତ ଆଶ୍ରା କଲେହେଁ ନ ହୋଇବ ଲିପ୍ତ ।
ସମାଧି ବେଳରେ ଯଦି ବ୍ରହ୍ମ ସଂବେଦନ
ଅବଶ୍ୟ ଘଟିବ ଆହେ ରଘୁବୀର ରାମ
କିନ୍ତୁ ସେହି ଯେଉଁ ଅସଂବିତ ଯୋଗୀଗଣ
ବ୍ରହ୍ମରେ ତନ୍ମୟ ହୋଇ ରହିବାରୁ ଲୀନ,
ପୃଥକ ସଂବେଦନ ତା ନୁହଇ ହେ ରାମ
ବାହ୍ୟ କର୍ମେ ଯଦି ଲିପ୍ତ ହୁଏ ସେହୁ ଜାଣ ।

ଅଜଡ଼ ଓ ସଂବେଦନହୀନ ଭାବେ ରହି
ପୂର୍ଣ୍ଣାନନ୍ଦ ଭାବେ ଅବସ୍ଥାନ ସେ କରଇ ।
ସାମାନ୍ୟ ସଙ୍କଳ୍ପରୁ ବି ମିଥ୍ୟା ସଂବେଦନ
ଜନମ ଲଭିଣ ଥାଏ ହେ ରଘୁନନ୍ଦନ ।
ବାରମ୍ବାର ସଙ୍କଳପ ମାନ ଅନୁସରି
ସଂବିତ୍ ଯେତେବେଳେ ଦେହଲାଭ କରିପାରି ।
ସେତେବେଳେ ଜାଣ ଆହେ ଶ୍ରୀ ରଘୁନନ୍ଦନ
ସଂବିତ ହୁଅଇ ଜନ୍ମମାନଙ୍କ କାରଣ ।
ନିଜକୁ ନିଜେ ଉତ୍ପନ୍ନ କରି ଏ ସଂବିତ
ପୁଣି ନିଜକୁ ବନ୍ଧନ କରେ ରଘୁନାଥ ।
ନିଜେ ନିଜର ସ୍ୱରୂପ ଜାଣିପାରେ ଯେବେ
ନିଜକୁ ମୁକତ କରି ପାରିଥାଏ ତେବେ ।
ଯାହାକି ଚିନ୍ତା କରିଣ ଥାଏ ଏ ସଂବିତ
ତାହାହିଁ କ୍ରମଶଃ ଆସି ହୁଏ ଉପସ୍ଥିତ ।
ରାଗାଦି ମଳ ସହିତ ଲିପ୍ତଥାଏ ଯେଣୁ
ସ୍ୱରୂପ ପ୍ରାପତ ହୋଇ ନ ପାରେ ସେ ତେଣୁ ।
ତେଣୁ ଯକ୍ଷ, ଗନ୍ଧରବ ଦେବତା, କିନ୍ନର
ମାୟା ଶକ୍ତିବଳେ ଆତ୍ମା ଧରେ ଏ ଆକାର ।
ନିଜକୁ ନିଜେ ବନ୍ଧନ କରି କୋଷକାର
ଆତୁରୁ ହୋଇ ରୋଦନ କରେ ବାରମ୍ବାର ।
ନିଜକୁ ନିଜେ ବନ୍ଧନ କରି ସେହିପରି
ଆତ୍ମା ମଧ୍ୟ କାନ୍ଦୁଥାଏ ଦିବସ ସର୍ବରୀ ।
ନିଜେ ସେ ନିଜକୁ ପୁଣି ବନ୍ଧନ ମୁକତ
କରି ପାରିଥାଏ ଜାଣ ଆହେ ରଘୁନାଥ ।
ସ୍ଥାବର ଓ ଅସ୍ଥାବର, ଦିକ୍ ଓ ବିଦିକ
ସକଳେ ସଂବିତରୂପ ହେ ରଘୁନାୟକ !
ସରଗ, ପୃଥିବୀ, ବାୟୁ, ଆକାଶ ପ୍ରଭୃତି
ସର୍ବେ ସେ ସଂବିତ ସିନ୍ଧୁ ତରଙ୍ଗ ଅଟନ୍ତି ।
ସମ୍ପୂର୍ଣ୍ଣ ଭାବେ ଜଗତ ଅଟଇ ସଂବିତ
ଏସନ ସମ୍ୟକ ଜ୍ଞାନ ହୁଅନ୍ତେ ଉଦିତ ।
ସଂବିତର ଅଦ୍ୱୟତା ହୁଏ ପ୍ରମାଣିତ
ଏହି ତତ୍ତ୍ୱ ମନେରଖ ଆହେ ରଘୁନାଥ ।
କିଛିହିଁ କାମନା ଯଦି ନ କରେ ସଂବିତ
କେତେବେଳେ ହେଲେ ଯଦି ନୁହଇ ସ୍ପନ୍ଦିତ ।

କେବଳ ନିଜ ସ୍ୱରୂପେ ରହିଥାଏ ସ୍ଥିତ
ତେବେ ତା ପାର୍ଥକ୍ୟ ଏଥୁଁ ହୁଏ ଅନୁଭୂତ ।
ସତ୍ ମାତ୍ର ବ୍ରହ୍ମ ରାମ ସଂବିତ ଜନମ
ସେହି ବ୍ରହ୍ମ ଜାଣ ତେଣୁ ସଂବିତ କାରଣ ।
ଆଉ ମଧ୍ୟ ବହୁ ଏବଂ ଏକ ଆକାରରେ
ପ୍ରତିଭାସିତ ହୁଅନ୍ତି ବିଶ୍ୱ ଚରାଚରେ ।
ତୁମେ, ମୁହିଁ, ଘଟ, ପଟ ଆଦିର ଯେ ସତ୍ତା
ତାର ନାମ ବହୁ ଅଟେ ଜାଣ ହେ ମହାତ୍ମା ।
ଏ ସକଳ ବିଭାଗକୁ ପରିତ୍ୟାଗ କଲେ
ଜଗତର କର୍ତ୍ତାରୂପେ ଯେହୁ ରହେ ଭଲେ ।
ସେହି ଅଟେ ଏକ ରାମ, ଏକ କାଳେ କାଳେ
ସେ ଏକର ନାଶ ନାହିଁ କେତେବେଳେ ହେଲେ ।
ଦୃଶ୍ୟବସ୍ତୁ, ପରମାଣୁ, କାଳ ଆଦି ସତ୍ତା
ଛାଡ଼ି ଦେଇ ସନ୍ମାତ୍ରକୁ ଧର ହେ ମହାତ୍ମା ।
ସତ୍ତ୍ୱ-ସାମାନ୍ୟ ରୂପରେ ଦିକ୍‌ଦେଶ ଆଦିଙ୍କୁ
ସ୍ୱଚ୍ଛନ୍ଦରେ ଆଚ୍ଛାଦିତ କରି ରହେ ତାଙ୍କୁ ।
ସମ୍ପୂର୍ଣ୍ଣ ଆନନ୍ଦ ମଧ୍ୟେ ରହି ବିରାଜିତ
ଏହି ମୋର ଉପଦେଶ ଘେନ ରଘୁନାଥ ।
ଯହିଁ ଖଣ୍ଡିତ ସତ୍ତାର ହୁଅଇ ବିଲୀନ
ସେ ସିନା ଅଟନ୍ତି ଏହି ସଂସାର କାରଣ ।
କୌଣସି କଳ୍ପନା ରୂପ ନାହିଁ ତାଙ୍କଠାରେ
ଅନ୍ୟ କିଛି ଉପାଦାନ ନ ଥାଇ ତହିଁରେ ।
ସେ ପାଦେ ବିଶ୍ରାମ ଯଦି ଲଭିପାରେ ଜୀବ
ପୁନରାୟ କେଉଁ ଦୁଃଖେ ପତିତ ନୋହିବ ।
ତାଙ୍କ ତହିଁ ରହିବାକୁ ଯେବଣ ବ୍ୟକ୍ତିର
ଭାଗ୍ୟବାନ ସେହି ଯାର ଅଛି ଅଧିକାର ।
ସର୍ବ-କାରଣ କାରଣ ହେଲେହେଁ ସେ ପଦ
ନିଜେ ଅଟେ ନିଷ୍କାରଣ ଆହେ ରାମଚନ୍ଦ୍ର ।
ହୋଇଲେ ହେଁ ସର୍ବବସ୍ତୁମାନଙ୍କର ସାର
କିଛି ମାତ୍ର ସାର ନାହିଁ ମଧ୍ୟରେ ତାହାର ।
ସେହି ଆନନ୍ଦ ରୂପରୁ ଜାତ ଏ ସଂସାର
ତହିଁ ମଧ୍ୟେ ଥାଇ ବୃଦ୍ଧି ଘଟଇ ତାହାର ।
ପରିଣାମେ ତହିଁ ମଧ୍ୟେ ବିଲୀନ ସେ ହୁଏ
ସେହି ଏକ ସର୍ବକର୍ତ୍ତା ଅନ୍ୟ କେହି ନୁହେ ।

ସେ ପରମ ପବିତ୍ର ଯେ ଚିନ୍ମୟ ପଦ
ତାକୁ ଲଭିବାକୁ ଯତ୍ନ କର ରାମଚନ୍ଦ୍ର ।
**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ**
**ସ୍ମୃତିବୀଜ ବିଚାର ବର୍ଣ୍ଣନେ**
**ନାମ ୭୯ଶ ସର୍ଗଃ ।**

❑

## ୮୦ଶ ସର୍ଗଃ
## ସଂଶୟ ନିରାକରଣ

ଶ୍ରୀରାମ କହନ୍ତି ଶୁଣ ଆହେ ତପୀବର୍ଯ୍ୟ
ସଂସାର ବୀଜ ନାଶନେ ଯାହା କହିଅଛ ।
ତନ୍ମଧ୍ୟରୁ କେଉଁଟିକି ଧରିଣ ଚଳିଲେ
ସତ୍ୱର ପରମପଦ ହେବ ଲାଭ ହେବ ଭଲେ ?
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁରାଣ
ଗୋଟି ଗୋଟି କରି ତାହା କରିଛି ବଖାଣ ।
କ୍ରମ ଅନୁସାରେ ସେହି ଦୁଃଖର କାରଣ
ବିନାଶ ପାଇଁକି ତୁମେ ହେଲେ ଯତ୍ନବାନ ।
ପ୍ରତ୍ୟେକଟିରେ ସତ୍ୱର ସେ ପରମପଦ
ଲାଭ କରାଯାଇପାରେ ଆହେ ରାମଚନ୍ଦ୍ର ।
ଯଦ୍ୟପି ବାସନା ତେଜି ଯଥାଯଥ ଭାବେ
ଅବିନାଶୀ ପଦେ ଅବସ୍ଥାନ କର ତେବେ ।
ସେ ସଚ୍ଚିଦାନନ୍ଦ ପଦ ଲଭିବ ତ୍ୱରିତ
ଏହି କଥା ହେଜରଖ ଦଶରଥ ସୁତ ।
ସତ୍ତାସାମାନ୍ୟ ବୁଦ୍ଧିକି ଜଗତ୍ କାରଣର
ଯଦି ରଖି ଚଳିପାର ଆହେ ରଘୁବୀର ।
କିଛି ଅଧିକ ଯତ୍ନରେ କୌଶଲ୍ୟା କୁମର
ବ୍ରହ୍ମପଦ ଲାଭ ହୋଇ ପାରିବ ତୁମର ।
ସଂବିତ ସ୍ୱରୂପେ ହେଲେ ଧ୍ୟାନ ପରାୟଣ
ସେ ପଦ ପାଇଁକି ଲୋଡ଼ା ଅଧିକ ପ୍ରଯତ୍ନ ।
ଗମନ, ଚିନ୍ତନ, କିମ୍ବା କଥୋପକଥନ
ଯାହା କିଛି କାର୍ଯ୍ୟ କରୁଥାଏ ଏହି ମନ ।
ସର୍ବ ବିଷୟେ ସଂବିତ ରହେ କ୍ରିୟାଶୀଳ
ଯେଣୁ ସଂବିତ ସ୍ୱରୂପ ଅଟନ୍ତି ସକଳ ।
ଏସବୁ ଉପାୟ ମଧ୍ୟେ ବାସନା ନାଶନ
ସୁମେରୁ ତାଡ଼ିବାଠାରୁ ଅତୀବ କଠିନ ।
ଯେ ପର୍ଯ୍ୟନ୍ତ ଏହି ମନ ନୋହିଛି ବିଲୀନ
ବାସନା ତେଜିବା କଥା ଅଟଇ କଠିନ ।
ପୁଣି ଯେ ଯାଏ ବାସନା ନୋହିଛି ବିଲୀନ
ସେ ଯାଏ ହୋଇନପାରେ ମନ ଉପଶମ ।
ଯେ ଯାଏ ନୋହିଛି ତତ୍ତ୍ୱଜ୍ଞାନର ଉଦୟ
ଚିତ୍ତ ଶାନ୍ତି ଅସମ୍ଭବ ଜାଣ ରଘୁରାୟ ।
ଚିତ୍ତ ଶାନ୍ତ ନ ହୋଇଲେ କାହିଁ ତତ୍ତ୍ୱଜ୍ଞାନ ?
ବିନା ତତ୍ତ୍ୱଜ୍ଞାନେ କାହିଁ ବିଭୁ ଦରଶନ ?
ବିନା ବାସନା ବିନାଶେ ନୋହି ତତ୍ତ୍ୱଜ୍ଞାନ
ବିନା ତତ୍ତ୍ୱଜ୍ଞାନେ ନାହିଁ ବାସନା ନାଶନ ।
ବାସନା ବିନାଶ, ଚିତ୍ତନାଶ ତତ୍ତ୍ୱଜ୍ଞାନ
ପରସ୍ପର ପ୍ରକାଶର ଅଟନ୍ତି କାରଣ ।
ଅସାଧ୍ୟ ରୂପରେ ଯେଣୁ ତାଙ୍କ ଅବସ୍ଥାନ
ତେଣୁ ରାମ ତୁମେ ଯତ୍ନ, ବିବେକ ଘେନିଣ ।
ଭୋଗବାସନାକୁ ତେଜି ଦିଅ ରଘୁରାଣ
ଏ ତ୍ରିବିଧ ଉପାୟକୁ କର ହେ ବରଣ ।
ବାସନା ବିନାଶ, ଚିତ୍ତ ନାଶ, ତତ୍ତ୍ୱଜ୍ଞାନ
ଏ ତିନିହେଁ ଯୁଗପତ ହୁଅନ୍ତେ ସାଧନ ।
ଅଭିଷ୍ଟ ଫଳମାନଙ୍କୁ କରନ୍ତି ପ୍ରଦାନ
ଗୋଟି ଗୋଟି କରି କଲେ ତାଙ୍କର ସାଧନ ।
ଦୀର୍ଘକାଳ ଧରି ଯଦି ଅଭ୍ୟାସ କରିବ
ଦୁଷ୍ଟ ମନ୍ତ୍ରପରି ସିଦ୍ଧି ଦେଇ ନ ପାରିବ ।
ଅତିଶୟ ବୋଧବାନ ଦୀର୍ଘକାଳ ଧରି
ମାତ୍ର ଗୋଟିକର ସେବା ଆଚରଣ କରି ।
କେଭେଁ ସେ ପରମପଦ ଲଭି ନ ପାରଇ
ପରମପଦ ସପ୍ନ ଜାଣ ତାର ପାଇଁ ।
ଅତଏବ ଆହେ ବତ୍ସ ! ଏକ ସମୟରେ
ତିନୋଟିଯାକଙ୍କ ସେବା କର ଅବାଧରେ ।
ଦୀର୍ଘକାଳ ଧରି କଲେ ତିହ୍ନିଙ୍କ ଅଭ୍ୟାସ
ସକଳ ହୃଦୟ ଗ୍ରନ୍ଥି ଲଭନ୍ତି ବିନାଶ ।
ଶତ ଶତ ଜନ୍ମ ଧରି ଏ ସଂସାର ଭାବ
ଦୃଢ଼ୀଭୂତ ହୋଇଅଛି ଜାଣ ହେ ରାଘବ ।
ତିନି ଉପାୟର ଦୀର୍ଘ ଅଭ୍ୟାସ ବ୍ୟତୀତ
ଏ ସଂସାରଭାବ କେଭେଁ ନୋହେ କ୍ଷୟପ୍ରାପ୍ତ ।
ତେଣୁ ରାମ ନିଦ୍ରା, ଜାଗରଣ, ସ୍ପର୍ଶ, ଘ୍ରାଣ
ଗମନ, ଭୋଜନ, ଅବସ୍ଥାନ ଦରଶନ
ଶ୍ରବଣ ଇତ୍ୟାଦି ସର୍ବ କର୍ମ ସାଧନରେ
ମୁକ୍ତିରୂପ ଶ୍ରେୟଲାଭ ପାଇଁ ରଘୁବୀରେ ।

ଏ ତିନି ଉପାୟମାନ କର ହେ ଅଭ୍ୟାସ
ଏହା ମନେରଖି ଚଳ ହେ ରଘୁବିଳାସ ।
ବ୍ରହ୍ମପଦ ପାଇଁ ପ୍ରାଣାୟାମର ବିଧାନ
ଚତୁର୍ଥ ଉପାୟ କହିଛନ୍ତି ଜ୍ଞାନୀଗଣ ।
ସେହି ପ୍ରାଣାୟାମ ତୁମେ କର ହେ ଅଭ୍ୟାସ
ବ୍ରହ୍ମପଦ ଲାଭ ତୁମେ କରିବ ଅବଶ୍ୟ ।
ସମସ୍ତ ଦ୍ରବ୍ୟମାନଙ୍କ ଆଦ୍ୟେ, ମଧ୍ୟେ, ଶେଷେ
ସନ୍ମାତ୍ର ରୂପ ବିରାଜେ ଜାଣ ରଘୁଈଶେ ।
ନାମ ତାହାର ଅଟଇ 'ଯଥାଭୂତ ଅର୍ଥ'
ସେ ସ୍ୱରୂପ ଯଦି ଦେଖିପାର ରଘୁନାଥ ।
ସେ ଦ୍ରବ୍ୟପାଇଁ ବାସନା ପୁଣି ନୁହେ ଜାତ
ସମ୍ୟକ ଦର୍ଶନ ଯେଣୁ ହୋଇଥାଏ ପ୍ରାପ୍ତ ।
ସଂସାର ବାସନା ତାର ହୋଇଯାଏ ହତ
ଜୀବନଧାରଣ ତେଣୁ ହୁଏ ଅନାସକ୍ତ ।
ଏହି ଭାବେ ଦେହକୁ ଯେ ମଣଇ ଅନିତ୍ୟ
ବାସନା ସ୍ଥାନ ନ ପାଏ ତାର ହୃଦଗତ ।
ବାସନା ବିନାଶ ତାର ହେବାର ଦେଖିଣ
ଚିତ୍ତ ପ୍ରକାଶ ନ ପାଏ ତାର କଦାଚନ ।
ପ୍ରାଣ ସ୍ପନ୍ଦନ ନ ଥିଲେ ଚିତ୍ତର ସ୍ପନ୍ଦନ
କେଉଁ ହୋଇ ନ ପାରଇ ହେ ରଘୁନନ୍ଦନ ।
ଧୀ-ମାନ ପୁରୁଷ ଆଗେ ପ୍ରାଣ ଜୟପାଇଁ
ଯତ୍ନବାନ ହେଉଥିବ ଆହେ ରଘୁସାଇଁ ।
ପ୍ରାଣାୟାମ ଛଡ଼ା ଚିତ୍ତ ନିରୋଧନ ପାଇଁ
ଯଦି ଅଭିଳାଷ କର ଆହେ ରଘୁସାଇଁ ।
ପୁନଃ ପୁନଃ ଏକାଗ୍ରତା ସହ ଚିତ୍ତବୃତ୍ତି
ନିରୋଧ ଅଭ୍ୟାସ ଯେବେ କର ରଘୁପତି ।
ଦୀର୍ଘକାଳ ପରେ ଯାଇଁ ଅଭୀଷ୍ଟ ସାଧନ
ହୋଇପାରିବ ଜାଣ ହେ କୌଶଲ୍ୟା ନନ୍ଦନ ।
ଅଙ୍କୁଶ ବିହୁନେ ମତ୍ତହସ୍ତୀ କି ଯେସନ
ବଶୀଭୂତ କରି ନ ହୁଅଇ କଦାଚନ ।
ସେହିପରି ପ୍ରାଣରୋଧ ଆଶ୍ରା ନ କରିଲେ
ଚିତ୍ତକୁ ବଶରେ ଅଣାଯାଇ ତ ନ ପାରେ ।
ସତସଙ୍ଗ, ପ୍ରାଣାୟାମ, ବାସନା ତେଜନ
ପୁନଶ୍ଚ ଅଧ୍ୟାତ୍ମ ଶାସ୍ତ୍ରମାନ ଆଲୋଚନ ।
ଚତୁର୍ବିଧ ଉପାୟରେ ଚିତ୍ତ ନିରୋଧନ
ପ୍ରସିଦ୍ଧ ଅଟଇ ଜାଣ ହେ ରଘୁନନ୍ଦନ ।

ଏସନ ସୁସାଧ୍ୟ ଯୋଗମାନଙ୍କୁ ଛାଡ଼ିଣ
ହଠ ଯୋଗ ଆଶ୍ରା କରେ ଯେଉଁ ମୂଢ଼ଜନ ।
ବୃଥାଶ୍ରମ ତାର ଚିତ୍ତ ନିରୋଧନ ପାଇଁ
ପ୍ରଦୀପ ବିନା ଅନ୍ଧାରେ ପଥ କି ଦିଶଇ ?
ହଠଯୋଗ ତେଜି ତୁମେ ହେ ରଘୁନନ୍ଦନ
ସୁବିଶୁଦ୍ଧ ସଂବିତକୁ କର ହେ ବରଣ ।
ରାଗ ଦ୍ୱେଷ ଇତ୍ୟାଦିଙ୍କୁ ପରିତ୍ୟାଗ କର
ସ୍ଥିର ଭାବେ ଅବସ୍ଥାନ କର ରଘୁବୀର ।
ଯଥାର୍ଥରେ ସୁଖୀ ସେହୁ ଯେହୁ ଅଟେ ଜ୍ଞାନୀ
ଯଥାର୍ଥ ଜୀବିତ ସେହୁ ଜ୍ଞାନକୁ ଯେ ଜାଣି ।
ପ୍ରକୃତ ବଳଶାଳୀ ସେ ଯେହୁ ଜ୍ଞାନବାନ
ତେଣୁ ହେ ଶ୍ରୀରାମ ତୁମେ ହୁଅ ଜ୍ଞାନବାନ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ଉପଶମ ପ୍ରକରଣେ**
**ସଂଶୟ ନିରାକରଣ ବର୍ଣ୍ଣନେ**
**ନାମ ୮୦ଶ ସର୍ଗଃ ।**



## ୮୧ଶ ସର୍ଗଃ
## ଆର୍ଷଦେବ ଦୂତୋକ୍ତ ମୋକ୍ଷୋପାୟ ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ ବିଚାର ବଳରେ
କ୍ଷଣକ ପାଇଁ ଚିତ୍ତକୁ ନିଗୃହୀତ କଲେ ।
ସଫଳ ହୋଇଣ ଥାଏ ତାହାର ଜନମ ।
ଚିତ୍ତ ନିଗୃହୀତ ଫଳ ବୁଝ ରଘୁନାନ ।
ଅଣୁ ପ୍ରମାଣ ଅଙ୍କୁର ବିଚାର ବୃକ୍ଷର
ହୃଦୟ କମଳେ ଫୁଟି ଉଠଇ ଯାହାର ।
ଅଭ୍ୟାସ ଜଳ ସିଞ୍ଚନେ କ୍ରମେ ସେ ଅଙ୍କୁର
ଶାଖା ପ୍ରଶାଖା ମେଲାଇ ହୁଏ ବୃକ୍ଷବର ।
ବିଚାର ବୈରାଗ୍ୟ ବଦ୍ଧମୂଳ ଯା' ହୃଦୟେ
ଶମ ଦମ ଆଦି ଗୁଣ ଆସେ ଯା ଆଶ୍ରୟେ ।
ଆତ୍ମ ଦର୍ଶନ କରେ ଯେ ସମ୍ୟକ ବିଚାରେ
ଅବିଦ୍ୟା କେବେହେଁ ତାକୁ ପ୍ରଲବ୍ଧ ନ କରେ ।
ମାନସିକ ବୃତ୍ତି କିମ୍ବା ମାନସ ବେଦନା
ଅନ୍ୟ କଉଣସି ପୀଡ଼ା ତାହାକୁ ଘାରେନା ।
ଚତୁର୍ଥ ପଞ୍ଚମ ଜ୍ଞାନ ଭୂମିରେ ଯେ ଜୀବ
ବିବେକ ବଳରେ କରି ପାରିଅଛି ଠାବ ।
ପରବର୍ତ୍ତୀ ଜ୍ଞାନ ଭୂମି ଲଭିବାର ପାଇଁ
ପୁନଃ ପୁନଃ ଯତ୍ନବାନ ଯେହୁ ହେଉଥାଇ ।

ସେ ବିକ୍ରମୀ ଜ୍ଞାନୀ ପୁରୁଷକୁ ଇନ୍ଦ୍ରିଗଣ
ଆକ୍ରମଣ କରିବାକୁ ହେବେ କି ସକ୍ଷମ ?
ପରିପକ୍ୱ ନ ହୋଇଛି ଯା ବିଚାର ବୁଦ୍ଧି
ବିଷୟ ଶତ୍ରୁ ସହଜେ ତାକୁ କରେ ବନ୍ଦି ।
ସଦା ସର୍ବଦା ହେ ରାମ ଯେଉଁ ବ୍ୟକ୍ତିଚିତ୍ତ
ସତ ଭାବେ ହୋଇ ନ ପାରଇ ଅବସ୍ଥିତ
ଜୀବିତ ଥିଲେହେଁ ମୃତବତ ସେହୁ ଜାଣ
ବେଦ ବାକ୍ୟମାନଙ୍କର ଅଟେ ଏ ରତନ ।
ଆପଣାର ଜ୍ଞାନଚକ୍ଷୁ ଉନ୍ମୋଚନ କରି
ଗୁରୁ ସାଧୁଜନ ସହ ଆଲୋଚନା କରି ।
ସୁବିଚାର ପରାୟଣ ହୁଅ ତୁମେ ରାମ
ବ୍ରହ୍ମ ଦର୍ଶନ ଲଭିବ ତାହାର ବଳେଣ ।
ଅନ୍ଧାରେ ଥିବା ବସ୍ତୁକୁ ଦୀପ ଆଲୁଅରେ
ଦେଖାଯାଇପାରେ ରାମ ଅତି ଅକ୍ଳେଶରେ ।
ଭ୍ରମ ଅନ୍ଧକାର ନାଶି ବିଚାର ବଳରେ
ବ୍ରହ୍ମ ଦରଶନ ଲାଭ ହେବ ଅକ୍ଳେଶରେ ।
ବିଚାର ବଳେ ଲଭିବ ଯେ ଆତ୍ମ ବିଜ୍ଞାନ
ପଣ୍ଡିତମାନଙ୍କ ମତେ ସେହି ଏକା ଜ୍ଞାନ ।
ଯାବତୀୟ ଜ୍ଞେୟ ଏହି ଜ୍ଞାନେ ବର୍ତ୍ତମାନ
ଜ୍ଞାନାଲୋକ ସମୁଦିତ ଯାହାଠାରେ ଜାଣ ।
ସେହି ଜନ ଅନୁଭବ କରେ ସର୍ବକ୍ଷଣ
ଜ୍ଞାନର ସ୍ୱରୂପ ବ୍ରହ୍ମାନନ୍ଦ ଯେ ମହାନ ।
ତେଣୁ ବ୍ରହ୍ମ ଏକମାତ୍ର ଜ୍ଞେୟ ବୋଲି ଜାଣ
ଜ୍ଞାନସହ ସମ୍ପର୍କିତ ହେଲେ ଜ୍ଞେୟ ବ୍ରହ୍ମ ।
ଅବିଦ୍ୟା ଯେଉଁ କାରଣୁ ହୁଅଇ ବିଲୁପ୍ତ
ଜ୍ଞେୟ ବ୍ରହ୍ମ ନିଜେ ନିଜେ ହୁଅନ୍ତି ପ୍ରକାଶିତ ।
ସେ ଜ୍ଞାନୀ ପୁରୁଷ ଯେଣୁ ପରମାନନ୍ଦରେ
ଆପ୍ଲୁତ ରହିଣ ଥାନ୍ତି ନିରବଚ୍ଛିନ୍ନରେ ।
ଜୀବନ୍ମୁକ୍ତ ଅବସ୍ଥାରେ ସମ୍ରାଟଙ୍କ ପରି
ଆପ୍ତକାମ ହୋଇ ବିରାଜନ୍ତି ସର୍ବସ୍ଥଳୀ ।
ଅନାସକ୍ତ ଚିତ୍ତ ସେହି ସୁଜ୍ଞାନୀ ପୁରୁଷ
ନିଜ ଅଧୀନରେ ଯେଣୁ କରନ୍ତି ନିବାସ ।
ନନ୍ଦନବନ ବିହାରେ ନ କରେ ବିଳାସ
କଉଣସିଥିରେ ତାଙ୍କ ନ ଥାଇ ପ୍ରୟାସ ।
ନିଜ ମାଂସ ଭକ୍ଷିବାକୁ ଯେଉଁପରି କେହି
କଦାପି ଇଚ୍ଛା ନ କରେ ଆହେ ରଘୁରାଇ ।
ଉପଭୋଗ କରିବାକୁ ନିଜ ଅଙ୍ଗମାନ
ଇଚ୍ଛା ନ କରନ୍ତି କେଉଁ ଜ୍ଞାନୀଜନଗଣ ।
ଅନାସକ୍ତ ତ ପୁଣ୍ୟାତ୍ମା ସେହି ଜ୍ଞାନୀ ବ୍ୟକ୍ତି
ଦ୍ୱୈତ, ବାସନା ତେଜିଣ ମୌନ ଆଚରନ୍ତି ।
ପ୍ରିୟ ଅପ୍ରିୟ ଇତ୍ୟାଦି ସକଳ ବସ୍ତୁରେ
ସମଭାବ ଧରି, ସମସ୍ତଙ୍କୁ ତେଜ୍ୟା କରେ ।
ଉଦ୍ୟାନ ବିହାରେ ତାର ଆନନ୍ଦ ନ ଥାଇ
ମରୁଭୂମିରେ ଥିଲେ ହେଁ ଦୁଃଖିତ ସେ ନୋହି ।
ବୋଝ ଓହ୍ଲାଇ ମୁଣ୍ଡରୁ ବୋଝିଆ ଯେସନ
ବିଶ୍ରାମ ସୁଖକୁ ଅନୁଭବ କରେ ଜାଣ ।
ସେପରି ସେ ସ୍ୱ ଅନ୍ତରେ ଚିତ୍ତକୁ ସ୍ଥାପିଣ
ଉଦାସୀନ ଭାବେ ସଦା କାଟୁଥାଏ ଦିନ ।
ବିଷାକ୍ତ ଖାଦ୍ୟ ଅକ୍ଳେଶେ ହଜମ କରଇ
ଗୋବରଯୁକ୍ତ ଖାଦ୍ୟକୁ ଭ୍ରୂକ୍ଷେପ ନଥାଇ ।
ପ୍ରାଣ ବିନାଶ ପାଇଁକି ଉଦ୍ୟତ ଶତ୍ରୁକୁ
ପ୍ରାଣ ପ୍ରଦାନ ପାଇଁକି ଉଦ୍ୟଥ ବନ୍ଧୁଙ୍କୁ ।
ସମାନ ଭାବରେ ତାଙ୍କୁ କରେ ସମାଦର
ତିଳେ ତ୍ରୁଟି ନ ରଖଇ ମଧୁର ବେଭାର ।
ଦେବ ଦେହଧାରୀ କିମ୍ବା ମର୍ତ୍ତ୍ୟ ଦେହଧାରୀ
ସମସ୍ତଙ୍କୁ ଏକଭାବେ ଦେଖେ ସର୍ବସ୍ଥଳୀ ।
ଆନନ୍ଦ ବା ବିଦ୍ୱେଷ ତା ନ ଥାଇ କାହିଁରେ
ମିଠା, ପିତା ସମସ୍ୱାଦ ତାହାର ଜିହ୍ୱାରେ ।
ରାଗ, ରୋଷ କେଉଁ ହେଲେ ତା ଚିତ୍ତେ ନ ଥାଇ
ସର୍ବଙ୍କ ଯେଣୁ ଜଗତ ନୀରସ ଦେଖଇ ।
ତେଣୁ ସର୍ବ ବିଷୟରେ ଅଟେ ଆସ୍ଥାହୀନ
ପ୍ରଶ୍ରୟ ନ ଦେଇ ଇନ୍ଦ୍ରିୟଙ୍କୁ ବିଷୟେଣ ।
ଦୁଃଖହୀନ ବୁଦ୍ଧିରୁ ସେ କରଇ ଏସନ
ସେହି ବୁଦ୍ଧି ନ ଦିଅଇ ତାହାକୁ କଷଣ ।
ଆତ୍ମାକୁ ଯେବଣ ବ୍ୟକ୍ତି ଚିହ୍ନି ନ ପାରିଛି
ସର୍ବଦା ଚଞ୍ଚଳ ଶାନ୍ତଯୁକ୍ତ ଯେ ହେଉଛି ।
ତାହାକୁ ହିଁ ଇନ୍ଦ୍ରିୟାଦି କରିଥାନ୍ତି ଗ୍ରାସ
ଇନ୍ଦ୍ରିୟ ଅଧୀନ ହେଲେ ସର୍ବଯାଏ ନାଶ ।
ପ୍ରଜ୍ଞାବାନ ଅଟନ୍ତି ଯେ ମହାତମାଗଣ
ଜଗତ, ସଂବିତ୍ ମାତ୍ର କରନ୍ତି ଦର୍ଶନ ।
ଯେଣୁ କରି ସେହିମାନେ ଅଟନ୍ତି ସଂବିତ
ସଂବିତମୟ ଅଟଇ ତାଙ୍କ ପଞ୍ଚଭୂତ ।

ସଂବିତ୍‌ମୟ ଜଗତକୁ ଅନ୍ତରେ ଧରିଣ
ବିହାର କରୁଣଥାନ୍ତି ଏ ବିଶ୍ୱଭୂବନ ।
ଯାହା କିଛି ମାତ୍ର ଅଛି ଏ ସାରା ଜଗତେ
ସଂବିତ ସ୍ପନ୍ଦନ ମାତ୍ର ସେମାନଙ୍କ ମତେ ।
ହେୟ ବୋଲି ଏ ଜଗତେ କିଛି ନାହିଁ ଜାଣ
ଉପାଦେୟ କାହାକୁ ବା କହିବ କେ ଜନ ?
ହେ ରାମ ଏହା ସକଳ ଅଟଇ ସଂବିତ
ଭ୍ରମ ତାହା ସଂବିତର ଯାହା ବିପରୀତ ।
ତେଣୁକରି ରାମ ସଦା ତ୍ୟାଗ କର ଭ୍ରମ
ସେ ଭ୍ରମ ଅଟଇ ସର୍ବ ଅଶାନ୍ତି କାରଣ
ସଂବିତ ଅଟଇ ରାମ ଯାହାର ଶରୀର
କାମନା ବା ତ୍ୟାଗ କରିପାରେ କି ସେ ନର ?
ବିଚାର କରିଣ ତୁମେ ବିକଳ୍ପ ବୁଦ୍ଧିକି
ପରିତ୍ୟାଗ କରି ତୁମ୍ଭେ ଚଳ ହେ ଏଣିକି ।
ସଂବିତ ସ୍ୱରୂପ ହୋଇ ସଂସାର ତରିବ
ସଂସାର ତରଣ ନର ଆଦର୍ଶ ବୁଝିବ ।
ଶରୀର, ଇନ୍ଦ୍ରିୟଗଣ, ବୁଦ୍ଧି ଆଉ ମନ
ଏମାନଙ୍କୁ ନେଇ କର୍ମ ନ କରେ ଯେ ଜନ ।
ଅସଙ୍ଗ ହୋଇ ଯେ ପାରେ ସେ ଅଟେ ନିର୍ଲିପ୍ତ
ବ୍ରହ୍ମରେ ବିଲୀନ ଥାଏ ସେ ବ୍ୟକ୍ତିର ଚିତ୍ତ ।
ତେଣୁକରି ଯାହା କିଛି କର୍ମ ସେ କରଇ
କିଛି କର୍ମ କଲା ବୋଲି କେଭେଁ ନ ମଣଇ ।
ଚକ୍ଷୁରେ ଦେଖିଣ ମଧ୍ୟ କିଛି ନ ଦେଖଇ
ଶୁଣିଲେ ହେଁ ନ ଶୁଣିଲା ପରି ସେ ରହଇ ।
ଛୁଇଁଲେ ଛୁଇଁଲା ପରି ତାକୁ ଜଣାନୋହି
ଘ୍ରାଣ କଲେହେଁ କେବେହେଁ ଗନ୍ଧ ନ ଜାଣଇ ।
ଇଚ୍ଛିଲ କରିବା ପାଇଁ ତାକୁ କବଳିତ
ଇନ୍ଦ୍ରିୟଗଣ ତାଦ୍ୱାରା ହୁଅନ୍ତି ପରାଜିତ ।
ଏହିପରି ଦରଶନ କରିବାର ବେଳେ
ଅଦର୍ଶନ ବସ୍ତୁ କେଡ଼େ ସୁଶୋଭନ ଡୋଳେ ?
କେବଳ ଏକାଗ୍ର ଚିତ୍ତେ ଅଟନ୍ତି ଯେ ଜନ
ସେହିମାନଙ୍କର ଏହା ଅନୁଭବ ଗମ୍ୟ ।
ସିଦ୍ଧାନ୍ତ କରିଅଛନ୍ତି ଜ୍ଞାନୀ ବ୍ୟକ୍ତିଗଣ
ଆସକ୍ତି ସହ ପଦାର୍ଥ କଲେ ଦରଶନ ।
ତାହା ଦ୍ୱାରା ଘଟିଥାଏ ବାସନା ଜନମ
ତେଣୁ ବିଷୟ ସଙ୍ଗହିଁ ସଂସାର କାରଣ ।

ବିଷୟ ସଙ୍ଗହିଁ ରାମ ଆଶାର ନିଦାନ
ବିପଦ ଆପଦ ହେତୁ ସଙ୍ଗ ବୋଲି ଜାଣ ।
ଏହି ସଙ୍ଗ ତ୍ୟାଗ କଲେ ଦେହାଦି ସମ୍ବନ୍ଧ
ନିବୃତ୍ତ ହୋଇଣ ଘଟେ ମୁକତି ଲବଧ ।
ତେଣୁ ହେ ଶ୍ରୀରାମ ବସ୍ତୁ ସଙ୍ଗ ତେଜିଦିଅ
ଜୀବନମୁକ୍ତ ଭାବରେ ଦିନ କାଟୁଥାଅ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ମୁନିବର
ସଙ୍ଗ କାହାକୁ କହନ୍ତି, କହ ମୋ ଆଗର ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ସାଂସାରିକ ପ୍ରିୟବସ୍ତୁ ଅଟନ୍ତି ଯେମାନ ।
ଆବର ଅପ୍ରିୟ ବସ୍ତୁ ଯେମାନ ଅଟନ୍ତି
ତାଙ୍କ ସହ କ୍ରମେ ଯେବେ ଘଟଇ ଆସକ୍ତି ।
ସେହିପରି ବିଷୟରେ ଜୀବର ବାସନା
ଉଦୟ ହୁଅଇ ଜାଣ ରାମ ମହାମନା ।
ହରଷ ବିଷାଦ ତହୁଁ ହୁଏ ଉତପନ୍ନ
ବାସନା ହିଁ ଜାଣ ରାମ ତହିଁର କାରଣ ।
ସେହି ବାସନାମାନଙ୍କୁ ଜ୍ଞାନୀ ବ୍ୟକ୍ତିଗଣ
ସଙ୍ଗ ଆଖ୍ୟା ଦେଇଥାନ୍ତି ଆହେ ରଘୁରାଣ ।
ଯେତେବେଳେ ଏ ବାସନା ଜୀବନମୁକ୍ତର
ପ୍ରାରବ୍ଧ ଶେଷ ପର୍ଯ୍ୟନ୍ତ ରହେ ନିରନ୍ତର ।
ହର୍ଷ ଅବା ବିଷାଦର ନୋହିଲେ କାରଣ
ପୁନରାବୃତ୍ତିକି ତାର ଦୂର କରେ ଜାଣ ।
ଏହି ବାସନା ବୋଲାଏ ଅସଙ୍ଗ ବାସନା
ଏହା ଆଶ୍ରୟରେ ହୁଏ ଯେ କର୍ମ ସାଧନା ।
ସେ ସର୍ବ କରମ ନୁହେ ବନ୍ଧନ କାରଣ
କିନ୍ତୁ ଜୀବନ ମୁକତ ନୁହଇ ଯେ ଜନ ।
ବାସନା ହିଁ ହୁଏ ତାର ବନ୍ଧନ କାରଣ
ବାସନା, ଆସକ୍ତି ଦୁହେଁ ଦୁଇ ସଖୀ ଜାଣ ।
ବାସନାରୁ ପୁନଃ ପୁନଃ ଜନମ ଯେ ଘେନି
ଦୁଇ ସାଙ୍ଗ ଅଟନ୍ତି ସେ ପଣ୍ଡିତଙ୍କ ବାଣୀ ।
ବାସନା ସଙ୍ଗ ତେଜିଣ ଯେବେ ହେ ଶ୍ରୀରାମ
ଅନଆକୁଳିତ ଭାବେ କର ଅବସ୍ଥାନ ।
କରମ କଲେ ହେଁ ରାମ ତାହା ସଙ୍ଗେ ଲିପ୍ତ
କେବେହେଁ ନୋହିବ ଜାଣ ଆହେ ରଘୁନାଥ ।
ଅଧୀନ ନୋହିଲେ ତୁମେ ଦୁଃଖ ବା ସୁଖର
ରାଗ ଦ୍ୱେଷ ଭୟ ତୁମ ହୋଇଯିବ ଦୂର ।

ଅସଙ୍ଗତ୍ୱ ପ୍ରାପ୍ତ ହେବ ତୁମେ ହେ ଶ୍ରୀରାମ
ଅସଙ୍ଗତ୍ୱ ବଳେ ଯିବ ବୈକୁଣ୍ଠ ଧାମ ।
ଦୁଃଖରେ ଆକୁଳ କିମ୍ବା ସୁଖରେ ହରଷ
କେବେହେଁ ନୋହିବ ଯେବେ ହେ ରଘୁବିଳାସ ।
ତେବେ ଯାଇଁ ଆଶା ତେଜି ହୋଇବ ନିଃସଙ୍ଗ
ନିସଙ୍ଗର ଫଳ ହେବ ବୈକୁଣ୍ଠ ଭୋଗ ।
ସବୁ ସୁଖ ଦୁଃଖ ମଧ୍ୟେ କରି ବିଚରଣ
ପାଶୋରି ନ ଦେବ ଯଦି ରମଣୀୟ ବ୍ରହ୍ମ ।
ତେବେଯାଇଁ ତୁମେ ହୋଇପାରିବ ଅସଙ୍ଗ
ଅସଙ୍ଗତା ହିଁ ଜାଣିବ ସୁଗମ ମାରଗ ।
ଜୀବନ୍ମୁକ୍ତ ପରି ରହ ନିର୍ଲିପ୍ତ ଓ ସ୍ଥିର
ବିଷୟରୁ ଅନୁରାଗ ଛାଡ଼ ରଘୁବୀର ।
ଇନ୍ଦ୍ରିୟ ରଜ୍ଜୁକୁ ଧରି ଜୀବନ ମୁକତ
ମଦ, ମାତ୍ସର୍ଯ୍ୟ, ମନରୁ କରି ଦୂରୀଭୂତ ।
ସୁସ୍ଥଭାବେ ମୌନ ହୋଇ ରହେ ଅବସ୍ଥିତ
ସବୁଥିରେ ସମଦୃଷ୍ଟି ରଖି ସେ ମହତ ।
ବର୍ଣ୍ଣାଶ୍ରମୋଚିତ କର୍ମ ଛଡ଼ା ଅନ୍ୟ କର୍ମ-
ଅନୁଷ୍ଠାନ ନ କରନ୍ତି ସେହି ମହାଜନ
ଫଳାକାଂକ୍ଷା ତେଜି କରି କର୍ମ ଅନୁଷ୍ଠାନ
ଅନ୍ତରେ ସ୍ୱଚ୍ଛନ୍ଦ ରୂପେ କରେ ବିହରଣ ।
ବିପଦ ଆପଦ ଦେଖି ସେହି ପ୍ରଜ୍ଞାବନ୍ତ
ଅନ୍ତଃସ୍ଥିତ ଶମ ଦମ ନ କରେ ବ୍ୟକତ
ଭେଦ ବୁଦ୍ଧି, କ୍ରୋଧ ଆଦି ପ୍ରଥମେ ତେଜିବ
କର୍ମ ଫଳର ଆକାଂକ୍ଷାମାନ ବରଜିବ ।
ନିଜକୁ ଉତ୍ତମ ରୂପେ ବିଚାର କରିଣ
ନିଜର ହୃଦୟ ରାମ କର ତେଜୀୟାନ ।
ତେବେ ଯାଇଁ ବ୍ରହ୍ମ ମଧ୍ୟେ ହେବ ଅଧିଷ୍ଠିତ
ଏ ବିଚାର ସଦା ମନେରଖ ରଘୁନାଥ ।
ସେ ବିଚାର ବଳେ ଯେବେ ସମାଧି ଲଭିବ
ଶୁଦ୍ଧ ବୁଦ୍ଧି ବଳେ ବ୍ରହ୍ମ ପଦ ଲାଭ ହେବ ।
ସେ ପଦ ଆଶ୍ରୟ କର ତୁମେ ହେ ଶ୍ରୀରାମ
ଜନ୍ମ ବନ୍ଧନେ ଆବଦ୍ଧ ନୁହ କଦାଚନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉପଶମ ପ୍ରକରଣେ ଆର୍ଷଦେବ ଦୂତୋକ୍ତ ମୋକ୍ଷୋପାୟ ବର୍ଣ୍ଣନେ ନାମ ୮୧ଶ ସର୍ଗଃ ।**

**-ଉପଶମ ପ୍ରକରଣ ସମ୍ପୂର୍ଣ୍ଣ-**



**ମୁଦ୍ରଣ - ଭାରତୀ ପ୍ରେସ, ତେଲେଙ୍ଗା ବଜାର, କଟକ-୯**



ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ-ମହାରାମାୟଣ

## ନିର୍ବାଣ ପ୍ରକରଣ

### ପୂର୍ବ ଭାଗ

---

### ପ୍ରଥମ ସର୍ଗଃ
### ଦିବସ ରାତ୍ରି ବ୍ୟାପାର

କହନ୍ତି ବାଲ୍ମିକୀ ଭରଦ୍ୱାଜେ ସମ୍ଭାଷିଣ
ଉପଶମ ପ୍ରକରଣ କଲ ତ ଶ୍ରବଣ ।
ଏବେ ମୋକ୍ଷ ପ୍ରକରଣ ଶୁଣ ଦେଇମନ
ଯାହାର ଶ୍ରବଣେ ପ୍ରାପ୍ତ ହୋଇବ ନିର୍ବାଣ ।
ମୁନିନାୟକ ବଶିଷ୍ଠ ମୁନି ଉପଦେଶ
ଆଣିଦେଲା ସଭାସଦ୍‌ମାନଙ୍କ ସନ୍ତୋଷ ।
ନିଷ୍ପନ୍ଦ ହୋଇ ଶୁଣନ୍ତି ରାଜନ୍ୟମଣ୍ଡଳୀ
ଚିତ୍ରାଙ୍କିତ ଛବିପରି ଦିଶେ ସଭାସ୍ଥଳୀ ।
ଉପଲବ୍ଧି କରି ମୁନିନାୟକ ବଚନ
ଆତ୍ମବିସ୍ମୃତି ହୁଅନ୍ତି ଦଶରଥ ନାନ ।
ବିସ୍ମୟ ସାଗରେ ହୋଇ ଯାଆନ୍ତି ମଗନ
ପ୍ରସନ୍ନ ଅନ୍ତରଦେଶ କେ କରୁ ବର୍ଣ୍ଣନ ।
ମଣୁଥିଲେ ସତ୍ୟବୋଲି ଯେ ଜଗତ ସ୍ଥିତି
ମୁନି ଉପଦେଶ ଏବେ ନାଶେ ସେହି ଭ୍ରାନ୍ତି ।
ବିସ୍ମୟେ ବିହ୍ୱଳ ହୋଇ ସର୍ବ ସଭାଜନ
ସ୍ୱୀୟ ସ୍ଥିତି ସମ୍ବନ୍ଧରେ ହରାଇଲେ ଜ୍ଞାନ ।
ଆତ୍ମ ତତ୍ତ୍ୱଦର୍ଶୀ ଯେତେ ରାଜ ଋଷିଗଣ
ନିର୍ବାକ, ନିଶ୍ଚଳ ହୋଇ ରହନ୍ତି ମଉନ ।
ଏ ସମୟେ ଅସ୍ତାଚଳେ ଚଳିଲେ ତପନ
ତପ୍ତତେଜ ରାଶି ତାଙ୍କ ହୋଇଗଲା ମ୍ଳାନ ।
ବଶିଷ୍ଠଙ୍କ ଉପଦେଶ ଶୁଣି କି ସବିତା
ପ୍ରସନ୍ନ ହୋଇଣ ଲଭିଲେକ ଶୀତଳତା ।
ମନ୍ଦାର ପୁଷ୍ପ ମାଳାରେ ହୋଇ ସୁଶୋଭିତ
ସ୍ୱର୍ଗରାଜ୍ୟୁଁ ଆସିଥିଲେ ଯେ ସିଦ୍ଧଦୈବତ ।
ପବନ ପରଶେ ତାର ସୌରଭ ଶୀତଳ
ସୁଗନ୍ଧିତ କରିଦେଉଥିଲା ସଭାସ୍ଥଳ ।

ମନ୍ଦାର ସୁଗନ୍ଧେ ମତ୍ତ ହୋଇଣ ଭ୍ରମର
ଗୁଞ୍ଜନ ରବରେ ପୂର୍ଣ୍ଣ କଲେ ସଭାସ୍ଥଳ ।
ରାଜା, ଦେବତାଙ୍କ ଶିରେ ସୂର୍ଯ୍ୟମୁଖୀ ପୁଷ୍ପ
ସୂର୍ଯ୍ୟରଶ୍ମି ନାଶେ ସର୍ବେ ଲଭିଲେ ସନ୍ତାପ ।
କ୍ରମେ କ୍ରମେ ସୂର୍ଯ୍ୟମୁଖୀ ଲଭିଆସେ ମ୍ଳାନ
ଫୁଲରାଣୀ କମଳିନୀ ମୁଦିଲେ ନୟନ ।
ସଭାରେ ଆସୀନ ଥିଲେ ଯେଉଁ ଶିଶୁଗଣ
ପିଞ୍ଜରାରେ ବସିଥିଲେ ଯେଉଁ ପକ୍ଷୀମାନ ।
ଭୋଜନ ସମୟ ତାଙ୍କ ହୁଅନ୍ତେ ପ୍ରବେଶ
ଜନନୀଗଣ ଉଠନ୍ତି ହୋଇ ହସ ହସ ।
ଆସି ପ୍ରବେଶିଲା ଯେଣୁ ଚତୁର୍ଥ ପ୍ରହର
ନୌବତ ଶବଦେ କମ୍ପିତ ଉଠେ ରାଜପୁର ।
ଭେରୀ ତୂରୀ ନାଗରାର ଶବଦ ଶୁଣିଣ
ସ୍ତବ୍ଧ ହୋଇଯାଏ ସାରା ଜନତାର କାନ ।
ବଶିଷ୍ଠ ମୁନିଙ୍କ ବଜ୍ର ନିର୍ଘୋଷ ଶବଦ
ଦବାଇଦିଏ ତାହାକୁ ନାଗରାର ନାଦ ।
ବର୍ଷାକାଳ ଘଡ଼ଘଡ଼ି ଶବଦ ଶୁଣିଣ
କେକୀ ସ୍ୱନ ଦବିଯାଏ ଆନନ୍ଦେ ଯେସନ ।
ତେସନ ତୁଷ୍ଟୀ ଲଭିଲେ ମହର୍ଷି ବଶିଷ୍ଠ
ମନେ ମନେ ସୁମରନ୍ତି ଶ୍ରୀରାମଙ୍କ ଇଷ୍ଟ ।
ଏପରି ଘୋର ଘର୍ଘର ଶବଦ ଶୁଭିଲା
ଆକାଶ ପୃଥିବୀ ଆଦି ସବୁ ଥରିଗଲା ।
ପିଞ୍ଜରା ମଧ୍ୟରେ ପକ୍ଷୀ ଡେଣା ମେଲିକରି
ଫଡ୍ ଫଡ୍ ଶବ୍ଦକରି କାନଦିଏ ଭରି ।
ଭୂମିକମ୍ପ ଶବଦରେ ଲୋକେ ଯା'ନ୍ତି ଥରି
ହାହାକାର ଧ୍ୱନି ପୃଥ୍ୱୀ ଗଗନ ବିଦାରି ।
ବାଳକଗଣ ଆଉଜିଯାନ୍ତି ମାତା କୋଳେ
ଅଶ୍ୱମାନେ ହେଷାରବେ ଦିଗ କମ୍ପାଇଲେ ।
ମୁନି ଶାର୍ଦ୍ଦୁଳ ବଶିଷ୍ଠ କହନ୍ତି ବଚନ
ଶୁଣିବା ହୁଅନ୍ତୁ ଆହେ କୌଶଲ୍ୟାନନ୍ଦନ ।
ଚିତ୍ତ ପକ୍ଷୀକୁ ତୁମର ଧରିବା ନିମିତ୍ତ
ନିଜ ବାକ୍ୟ ଜାଲ ମୁହିଁ କରେ ବିସ୍ତାରିତ ।
ତେଣୁ ତୁମର ଚିତ୍ତକୁ ସ୍ୱବଶ କରିଣ
ଆତ୍ମପଦେ ସ୍ଥିର ରୁହ ହେ ରଘୁନନ୍ଦନ ।
ହେ ରାମ ତୁମ୍ଭଙ୍କୁ ଯେଉଁ ଉପଦେଶ ଦେଲି
ସାରକଥା, ନିଜ ଦୁର୍ବୁଦ୍ଧିକୁ ତେଜିକରି ।

ଚିତ୍ତକୁ ଆତ୍ମପଦରେ କର ନିୟୋଜିତ
ବୁଝିରଖ ମୋର କହିବାର ଯେ ଗୁରୁତ୍ୱ ।
ହଂସ ଯଥା ଜଳତେଜି ଦୁଗ୍ଧପାନ କରେ
ଆଦ୍ୟନ୍ତ କରି ମୋ ବାଣୀ ଧର ହୃଦୟରେ ।
ମହର୍ଷି ବଶିଷ୍ଠ କହି ଏମନ୍ତ ବଚନ
ଦେବଗଣଙ୍କୁ ପ୍ରଣମି କଲେ ଗାତ୍ରୋତ୍ଥାନ ।
ବିଶ୍ୱାମିତ୍ର ମୁନି ସହ ଆଶ୍ରମକୁ ଗଲେ
ଦଶରଥ ଆଦି ତାଙ୍କ ପଛରେ ଚଳିଲେ ।
ଆଶ୍ରମରେ ଗୁରୁଦେବ ହୁଅନ୍ତେ ପ୍ରବେଶ
ସକଳେ ନମନ୍ତି ଆସି ତାଙ୍କ ପଦଦେଶ ।
ଜଣ ଜଣ ହୋଇ ସର୍ବେ ନମସ୍କାର କରି
ନିଜ ନିଜ ଆଶ୍ରମକୁ ଯାଉଥାନ୍ତି ଚଳି ।
ଭକ୍ତିଭରେ ଦଶରଥ ମହର୍ଷି ପଦରେ
ପାଦ୍ୟ ଅର୍ଘ୍ୟ ଦେଇ ପୁଷ୍ପାଞ୍ଜଳି ଅରପିଲେ ।
ରାମଚନ୍ଦ୍ର ମଧ ଭ୍ରାତୃଗଣଙ୍କ ସହିତ
ପାଦ ବନ୍ଦନା କରିଣ ସ୍ୱ ପୁରେ ଆଗତ ।
ରାଜା, ରାଜପୁତ୍ର, ଋଷି, ମୁନି, ସଭ୍ୟଗଣ
ଏକାଗ୍ର ଚିତ୍ତରେ ଶୁଣି ମହର୍ଷି ବଚନ ।
ଏଡ଼େ ଯେ ତନ୍ମୟ ହୋଇ ପଡ଼ିଥିଲେ ସର୍ବେ
ରାତିଯାକ ତା ଭାବନ୍ତି ନିଦ୍ରା ନାହିଁ ଲବେ ।
ପାହିଲା ରାତିକି ଛାଇ-ନିଦ ଆସେ ଘାରି
ସେହି ନିଦରେ ସ୍ୱପନ ଦେଖନ୍ତି ଏପରି ।
"ମୁହିଁ ସବୁ" ଏ ଜ୍ଞାନର ନାମ ବ୍ରହ୍ମଜ୍ଞାନ
ଏହି ଜ୍ଞାନ ଉପଦେଶ ଦେଲେ ତପୋଧନ ।
ଏହି ଜ୍ଞାନ ଉପଲବ୍ଧି ସ୍ୱପ୍ନରେ ଘଟିଲେ
ଶାସ୍ତ୍ର କହେ ଏହାଘଟେ ବଡ଼ ଭାଗ୍ୟବଳେ ।
ମହର୍ଷି ବଶିଷ୍ଠ ତପୋଧନଙ୍କ କୃପାରେ
ଏହି ଉତ୍ତମ ସ୍ୱପନ ସେମାନେ ଦେଖିଲେ ।
ରାମ ଲକ୍ଷ୍ମଣ ପ୍ରଭୃତି ସାରା ରାତି ଯାକ
ଭାବନା କରନ୍ତି ମୁନି ବଶିଷ୍ଠଙ୍କ ବାକ୍ୟ ।
ରାତ୍ର ଶେଷକୁ ଅଳପ ସମୟର ପାଇଁ
ନିଦ୍ରା ବଶୀଭୂତ ହେଲେ ସେହି ଚାରି ଭାଇ ।
ସେହି କ୍ଷଣକ ନିଦ୍ରାରେ ଯେ ସ୍ୱପ୍ନ ଦେଖନ୍ତି
ସକଳ କ୍ଳାନ୍ତି ତାଙ୍କର ଦୂରୀଭୂତ ହୁନ୍ତି ।
ପରାଚୀ ଗଗନେ ସୂର୍ଯ୍ୟ ହୁଅନ୍ତେ ଉଦୟ
ପ୍ରାତଃକର୍ମ ସାରି ସର୍ବେ ହୁଅନ୍ତି ଅଥୟ ।

ଅନୁଚର ଗଣ ଘେନି ଯା'ନ୍ତି ଚରିଭାଇ
ବଶିଷ୍ଠ ମୁନିଙ୍କ ପାଦେ ପ୍ରଣମନ୍ତି ତହିଁ ।
ଦେଖନ୍ତି ବଶିଷ୍ଠ ମୁନି ଆଶ୍ରମୁଁ ନିର୍ଗତ
ଶେଷ ହୋଇଅଛି ତାଙ୍କ ପ୍ରାତକର୍ମ କୃତ୍ୟ ।
ଅର୍ଘ୍ୟ ଦେଇ ବନ୍ଦିଲେକ ଗୁରୁଙ୍କ ଚରଣ
ରାଜ ସଭା ଅଭିମୁଖେ କରନ୍ତି ଗମନ ।
ଏଣେ ରାଜା ଦଶରଥ ସାରି ପ୍ରାତଃ କୃତ୍ୟ
ପଥ ମଧ୍ୟେ ବଶିଷ୍ଠଙ୍କୁ କରନ୍ତି ସ୍ୱାଗତ ।
ଦଶରଥ ପୁଣି ଚରି ଭାଇଙ୍କ ସହିତ
ଗୁରୁଦେବ ସଭାସ୍ଥଳେ ହେଲେ ଉପସ୍ଥିତ ।
ପାତ୍ର ମନ୍ତ୍ରୀ ଆଦି ସର୍ବ ସଭାସଦଗଣ
ଉପବିଷ୍ଟ ହେଲେ ଯାଇଁ ନିଜ ନିଜ ସ୍ଥାନ ।
ବଶିଷ୍ଠ ଦେଖନ୍ତି ସର୍ବେ ଆଗ୍ରହ ସହିତ
ଉପଦେଶ ବାଣୀ ପାଇଁ ଛନ୍ତି ବ୍ୟାକୁଳିତ ।

## ବିଶ୍ରାମ ଦୃଢ଼ୀକରଣ

ଶ୍ରୀରାମଙ୍କୁ ଲକ୍ଷ୍ୟକରି କହନ୍ତି ବଚନ
"ମନେ ଅଛି ତ କାଲିର ଉପଦେଶମାନ" ?
ସେହି ଉପଦେଶ ମର୍ମ ଅତୀବ କଠିନ
ତାହା ଉପଲବ୍ଧି କରିପାର ଯେବେ ରାମ ।
ପରମାର୍ଥ ତତ୍ତ୍ୱଜ୍ଞାନ ହୋଇବ ତୁମର
ଜୀବନ ସାର୍ଥକ ହେବ ଆହେ ରଘୁବୀର ।
ସଂସାରୁ ନିବୃତ୍ତି ଲାଭ କରିବା ନିମିତ୍ତ
ସଂସାର ଯେ କି ପଦାର୍ଥ ବୁଝିବା ଉଚିତ ।
ସଂସାର ପ୍ରତି ଆସକ୍ତି ତେଜିବା ନିମିତ୍ତ
ସର୍ବ ପ୍ରଥମେ 'ଅଭ୍ୟାସ' କରିବା ଉଚିତ ।
ସଂସାର ତତ୍ତ୍ୱକୁ ତୁମେ ହୋଇ ପରିଜ୍ଞାତ
ତହିଁରେ ଆସକ୍ତି ହୀନ ହୁଅ ରଘୁନାଥ ।
ଯଥାଯଥ ଅବଗତ ହୋଇଲେ ସେ ତତ୍ତ୍ୱ
ସଂସାର ଅଜ୍ଞାନ ମାନ ହୁଏ ଦୂରୀଭୂତ ।
ତଦ୍ୱାରା ଭବସାଗର ହେବ ତୁମେ ପାର
ପରମ ପଦକୁ ପ୍ରାପ୍ତ ହେବ ରଘୁବୀର ।
ମୋର ବଚନକୁ ଯେହୁ ମାନି ନ ଚଳିବ
ନୀଚ ଗତିକୁ ଅବଶ୍ୟ ସେ ଜନ ଲଭିବ ।
ବିନ୍ଧ୍ୟାଚଳ ପର୍ବତର ଖାଇରେ ପଡ଼ିଣ
ମତ୍ତ ମାତଙ୍ଗ ଯେସନ କରଇ ଗର୍ଜନ ।
ତେସନ ଭବସାଗରେ ପଡ଼ିଣ ସେ ଜନ
ଘୋର ଯନ୍ତ୍ରଣା ଭୋଗିବ ବାକ୍ୟ ଅକଥନ ।
ମୋର ଉପଦେଶ ଯଦି ହୃଦେ ନ ଘେନିବ
ଅନ୍ଧପରି ଗର୍ତ୍ତେ ପଡ଼ି ଦୁଃଖ ଭୋଗୁଥିବ ।
ମୋହର କହିବା ମର୍ମ ବୁଝହେ ଶ୍ରୀରାମ
କାଳ ବଶ ଯେବେ ଯାହା ପାଶେ ଆସେ ତୁମ ।
ଯେତେବେଳେ ଯା' ଆସିବା ଯେଉଁ ରୂପଧରି
ଆନନ୍ଦରେ ତାହାସବୁ ନେଉଥିବ ବରି ।
ସୁଖ ଅବା ଦୁଃଖ କିମ୍ବା ଶୁଭ ବା ଅଶୁଭ
କାହିଁରେ ସୁଦ୍ଧା ଆସକ୍ତି ତୁମେ ନ ରଖିବ ।
ଏହାହିଁ ବୁଝିବ ମୋର କହିବା ତାତ୍ପର୍ଯ୍ୟ
ସକଳ ଶାସ୍ତ୍ର ସିଦ୍ଧାନ୍ତ ବୁଝ ରଘୁରାଜ ।
ଏହା ଅବଗତ ହୋଇ ଉଦାର ଚରିତ୍ର
ହେବାକୁ ଚେଷ୍ଟିତ ହୁଅ ଆହେ ରଘୁନାଥ ।
ଉଦାରତ ବଳେ ତୁମେ ଲଭିବ ମହତ୍ତ୍ୱ
ମହତ୍ତ୍ୱ ଅଟଇ ସିନା ସରବମୟତ୍ୱ ।
'ସର୍ବମୟତ୍ୱ' ବୁଝାଏ ଯାହା କି 'ଏକତ୍ୱ'
ଏକତ୍ୱ ହିଁ ଅଭିନ୍ନତା ବୁଝ ରଘୁନାଥ ।
"ମୁହିଁ ଅଟେ ଏ ସଂସାର" ଏହା ସାର ଜ୍ଞାନ
ଏ ତତ୍ତ୍ୱ ଯେ ନ ବୁଝଇ ସେ ଅଟେ ଅଜ୍ଞାନ ।
ଏହି ଜ୍ଞାନ ଲାଭ କରି ହୃଦୟ ଉଦ୍‌ବେଗ-
ପରିତ୍ୟାଗ କରିଦିଅ ଆହେ ମହାଭାଗ ।
ଆହେ ମହାରାଜ ଆହେ ରାଜନ୍ୟ ମଣ୍ଡଳୀ !
ସନ୍ଧ୍ୟାରାଣୀ ପହଞ୍ଚିଲେ ପିନ୍ଧି କଳା ଶାଢ଼ୀ ।
ଏତିକିରେ ବନ୍ଦ ରହୁ ଆଜ ମୋ ବୟାନ୍
ଆଗାମୀ ପ୍ରଭାତେ ପୁଣି କରିବି ବର୍ଣ୍ଣନ ।
ଆସକ୍ତି ଅଟଇ ସର୍ବ ଅନିଷ୍ଟ କାରଣ
ଆସକ୍ତିରୁ ଜନମନ୍ତି ସର୍ବ ଛିଦ୍ରମାନ ।
ସେହି ଆସକ୍ତି କିପରି ମନୁ ଦୂର ହେବ
କିପରି ମମତା ହୀନ ହୋଇବ ମାନବ ।
ବାସନା ଓ ସଙ୍କଳିପ୍‌ସା ଅଜ୍ଞାନ ବଶରେ
ଜନ୍ମ ଲଭିଥାଏ ଜାଣ ଆହେ ରଘୁବୀରେ ।
ଜ୍ଞାନୋଦୟେ ସ୍ୱତଃ ତାହା ହୁଅଇ ବିନଷ୍ଟ
ଶୋକ ଦୁଃଖର ଅସ୍ତିତ୍ୱ ହୋଇଯାଏ ନଷ୍ଟ ।
ସଦା ସରବଦା ଶାନ୍ତି ଧାରା ଝରୁ ଥାଇ
ନିର୍ମଳ ଆନନ୍ଦ ହ୍ରଦ ରାଜ୍ୟେ ବିରାଜଇ ।

ଗଭୀର ଚିନ୍ତାର ସହ ଯେବେ କି ଭାବିବ
ଜଗତର ଆଦି ଅନ୍ତ କିଛି ନ ପାଇବ ।
ଏଡ଼େ ସୁବିଶାଳ ଅଟେ ଏହାର ବିସ୍ତୃତି
କେଉଁ ଦିଗେ ତାର ସୀମା କେହି ନ ଦେଖନ୍ତି ।
ଅନାଦି କାଳରୁ ରାମ ଏହି ଯେ ଜଗତ
ଅବିକଳ ଏହି ରୂପେ ଅଛି ଅବସ୍ଥିତ ।
ତେଣୁ ବ୍ରହ୍ମ ବ୍ୟତୀତ ଏ ନୁହେ ଅନ୍ୟ କିଛି
ଜଗତ ବ୍ରହ୍ମଙ୍କଠାରୁ ଅଭିନ୍ନ ରହିଛି ।
ଏ ସଂସାରେ ଯାର ସତ୍ତା ଦେଖା ଯାଇଥାଏ
ଯାହା ରହିଅଛି ବୋଲି ଉପଲବ୍ଧ ହୁଏ,
ବ୍ରହ୍ମ ଛଡ଼ା ଅନ୍ୟ କିଛି ନୁହେ ତାହା ଜାଣ
ସେ ପ୍ରଶାନ୍ତ ବ୍ରହ୍ମ ସମଭାବେ ବିଦ୍ୟମାନ ।
ସେହୁ ଥାଉଁ ଥାଉଁ ଅନ୍ୟ ବସ୍ତୁର କଳ୍ପନା
କିପରି ସମ୍ଭବ ହେବ ରାମ ମହାମନା ।
ଜଗତର ଏହି ତତ୍ତ୍ୱ ହୋଇ ପରିଜ୍ଞାତ
ତେଜି ଦିଅ ଅହଙ୍କାର ଆହେ ରଘୁନାଥ ।
ଏହି ରୀତି ଅନୁସରି ଯଦି ତୁମେ ଚଳ
ମୁକ୍ତ ଦେହ ହେବ ଏହି ଦେହ ଯେ ତୁମର ।
ଯେତେବେଳେ ଏହି ଦେହେ ଅଜ୍ଞାନୁ ଉତ୍ପନ୍ନ
ସୁଃଖ ଦୁଃଖ ଅନୁଭବ ନୋହିବ ହେ ରାମ,
ତେବେ ଯାଇଁ ସୁବିଶାଳ ବ୍ରହ୍ମଙ୍କ ସଦୃଶ
ସୁବିଶାଳ ବପୁ ହେବ ତୁମେ ରଘୁଈଶ ।
ତୀବ୍ର ବେଗ ଗାମୀ ଯେଉଁ କର୍ମ ଫଳମାନ
ତୁମ୍ଭଙ୍କୁ ବିବ୍ରତ ନକରିବେ କଦାଚନ ।
ଅବସ୍ଥାନନ୍ତର ହୀନ ଯେ ଏକ ରୂପତା
ପ୍ରାପ୍ତ ହେବ ତୁମେ ଏହା ସ୍ୱତଃ ସିଦ୍ଧ କଥା ।
ନ କରିବ ସୁଃଖ ଦୁଃଖ ଅନୁଭବ ତୁମ୍ଭେ
ଅନ୍ତଃକରଣ ପ୍ରଶାନ୍ତ ହେବ ତୁମ ଯେବେ ।
ନିର୍ମଳ ଗଗନ ପରି ଯେ ଆନନ୍ଦ ବ୍ରହ୍ମ
ସାକ୍ଷାତ ସେ ରୂପ ହେବ ତୁମର ହେ ରାମ ।
ଜୀବ, ମନ, ଚିତ୍ତ, ପୁଣି ଅବିଦ୍ୟା ସକଳ
ଏପରି ଏ ଭାବେ କିଛି ନାହିଁ ରଘୁବର୍ାଳ ।
ଏମାନଙ୍କ ସ୍ଥିତି ଯାହା କର ଅନୁଭବ
ଅଜ୍ଞାନ ପ୍ରଭାବ ତାହା ବୁଝ ହେ ରାଘବ ।
ଜ୍ଞାନ ସମୁଦିତ ହେଲେ ତୁମକୁ ଦିଶିବ
ବ୍ରହ୍ମ ଭିନ୍ନ ଅନ୍ୟ କିଛି ନୁହନ୍ତି ସେ ସର୍ବ ।

ଅଜ୍ଞାନ ବିନଷ୍ଟ ହେଲେ ମୁକ୍ତି ଯେ ମିଳଇ
ଏକଥା ବୁଝିପାରିବ ଆହେ ରଘୁରାଇ ।
ଭଲ କରି ଜାଣି ରଖ ଆହେ ରଘୁନାଥ
ଏହି ଅଜ୍ଞାନ ନୁହଇ ସହଜ ପଦାର୍ଥ ।
ଅଜ୍ଞାନରୁ ଜାତ ଏହି ସଂସାର ସମ୍ପଦ
ବଳବାନ ଅଟେ ଯେହୁ ବିଷୟ ଉନ୍ମାଦ ।
ଭୋଗ୍ୟ ବସ୍ତୁ ଏବଂ ତାର ଭୋଗ ଆଦି ଯେତେ
ତହୁଁ ଜାତ ସୁଖ ଦୁଃଖ ସ୍ମୃତି ଯେ ସମସ୍ତେ ।
ବ୍ରହ୍ମପରି ଏ ସକଳ ଅନାଦି ଅନନ୍ତ
ବିଶାଳ ସାଗର ସମ ଏସବୁ ବିସ୍ତୃତ ।
ଏହି ଅସୀମ ଅଜ୍ଞାନ ବିନାଶକୁ ରାମ
ଯଦି ତୁମେ ଯାଅ କରିବାକୁ ଅତିକ୍ରମ ।
ତୃଣରୁ ସରଗ ଯାଏ ସର୍ବ ଜୀବଠାରେ
ଏପରିକି ଶୂନ୍ୟମୟ ଆକାଶ ମଧ୍ୟରେ ।
ସର୍ବ ବସ୍ତୁରେ ବ୍ରହ୍ମକୁ ଦର୍ଶନ ଚିନ୍ତନ
କରିବାକୁ ହେବ ଆହେ କୌଶଲ୍ୟାନନ୍ଦନ ।
ଯେ ହେତୁ ଏ ଭବେ ଏହି ବିଶାଳ ଜଗତେ
ବ୍ରହ୍ମ ବିନା ଅନ୍ୟ କିଛି ନାହିଁ ରଘୁସୁତେ ।
ଯାହାକୁ ହେ ରାମ ତୁମେ କର ଅନାଦର
ଯାହାକୁ ଉତ୍କୃଷ୍ଟ ବୋଲି ତୁମେ ମନ କର ।
ବନ୍ଧୁ ଅବା ଶତ୍ରୁ ବୋଲି ଯାହାକୁ ଭାବୁଛ
ଯାହାକୁ ଶରୀର ଅବା ସମ୍ପଦ ବୋଲୁଛ ।
ଅନାଦି ଅନନ୍ତ ବ୍ରହ୍ମ ବିନା ସେ ସକଳ
ଅନ୍ୟ କିଛି ନୁହେଁ ଏହା ଭାବ ନିରନ୍ତର ।
ଯେତେକାଳ ସର୍ବଭୂତେ ବ୍ରହ୍ମର ଭାବନା
ପରିପକ୍ୱ ହୋଇଅଛି ଆହେ ମହାମନା ।
ଯେତେଦିନ ଜଗତକୁ ମନୋହର ବ୍ରହ୍ମ
ବୋଲି ନ ବିଚାରୁଛ ହେ ରାଜୀବ ଲୋଚନ ।
ଅଜ୍ଞାନ ପ୍ରତିଫଳିତ ଭ୍ରାନ୍ତିମୟ ଭାବ
ଜୀବଠାରୁ ଦୂରୀଭୂତ ନୋହିବ ରାଘବ ।
ଏହି ଦେହେ ଯେତେ ଦିନ 'ମମତ୍ୱ' ରହିବ
ଏ ସଂସାର ମୋର ବୋଲି ମିଥ୍ୟା ଭାବ ଥିବ ।
ଯେତେ ଦିନ ପରିଯନ୍ତେ ଜୀବମାନଙ୍କର
ଚିନ୍ତା, ଭ୍ରାନ୍ତି ରହିଥିବ ଆହେ ରଘୁବୀର ।
ଚିତ୍ତ ଉଦାରତା କିମ୍ବା ଚିତ୍ତର ମହତ୍ତ୍ୱ
ଯେତେଦିନ ଯାଏ ରହିଅଛି ଉପସ୍ଥିତ ।

ସତସଙ୍ଗ ଯେତେଦିନ ପ୍ରାପତ ନୋହିବ
ଅଜ୍ଞାନ ବିନାଶ ରାମ କେଭେ ନ ହୋଇବ ।
ଅଜ୍ଞାନ ନଷ୍ଟ ନୋହିଲେ କ୍ଷୁଦ୍ରତା ବିଲୁପ୍ତ
ହୋଇ ନ ପାରିବ କେଉଁ ଆହେ ରଘୁନାଥ ।
ଚିତ୍ତ, ମନ, ଅହଙ୍କାର ଏହି ମାନଙ୍କର
ସ୍ୱତନ୍ତ୍ର ସତ୍ତା ନ ଥାଇ ଜାଣ ରଘୁବୀର ।
ତଥାପି ପ୍ରକାଶରୂପ ଯାହା ଦେଖାଯାଏ
ଜ୍ଞାନୋଦୟ ପୂର୍ବକ୍ଷଣ ଯାଏ ତାହା ଥାଏ ।
ଜ୍ଞାନ ଉଦୟ ହୋଇଲେ ଚିତ୍ତର ସହିତ
ଏ ମିଥ୍ୟା ସଂସାର, ମିଥ୍ୟା ଭାବ ଯାଏ ଅସ୍ତ ।
ଚିତ୍ତର କଳ୍ପନା ରାମ ଯେତେ ଦିନ ଥାଏ
ଅଜ୍ଞାନ ରାଜତ୍ୱ ଯେତେ ଦିନ ରହିଥାଏ ।
ତେତେ ଦିନ ଏ ଜୀବର ଅନ୍ଧତ୍ୱ ରାଘବ
ବିଦୁରିତ ହୋଇବାଟା ହେବ ଅସମ୍ଭବ ।
ଯେ ପରାଧିନତା ଏଥୁଁ ହୁଏ ଉପସ୍ଥିତ;
ଜୀବ ବୁଝିବାକୁ ନୋହିବାରୁ ତା ସମର୍ଥ ।
ବିଷୟ ବାସନା ସହ ତାହାର ମୂର୍ଖତା
ତାକୁ ମୋହ ଜାଲେ ଘାଣ୍ଟୁଥାଏ ଯେ ସର୍ବଥା ।
କେବଳ ବିବେକ ଉଦେ ହେଲେ ହେ ଶ୍ରୀରାମ
ଏହି ସମସ୍ତ ବିକାର ହୁଅନ୍ତି ବିଲୀନ ।
ବିଷୟ ବିଷ ଦୁଃର୍ଗନ୍ଧ ଯାହାର ଅନ୍ତରେ
ବର୍ତ୍ତମାନ ରହିଥାଏ ଆହେ ରଘୁବୀରେ ।
ବିବେକ ଉଦୟ ହୋଇବାକୁ ସେ ଅନ୍ତରେ
କେଉଁ ଇଛା କରେ ନାହିଁ ଆହେ ଧନୁର୍ଦ୍ଧରେ ।
ବିଷୟ ଭୋଗରେ ମନ ବିରକ୍ତ ହୋଇଣ
ବାସନା ବନ୍ଧନ ଯଦି କରିପାରେ ଛିନ୍ନ ।
ତେବେ ଯାଇଁ ସୁନିର୍ମଳ ସୁଖ ସେ ଲଭିବ
ଭ୍ରାନ୍ତି ଯାଇ ଜ୍ଞାନମୟ ଚିତ୍ତ ଉଦେ ହେବ ।
ମୋହ, ବିଷୟ, ଲାଳସା, ତ୍ୟାଗ କରିବାରେ
ସକ୍ଷମ ହେବାରୁ ସମ୍ୟକ ଜ୍ଞାନ ଲଭିପାରେ ।
ଭ୍ରାନ୍ତିସଙ୍କୁଳ ଚିତ୍ତର ବିନାଶ ନିମିତ୍ତ
ତ୍ୟାଗ ହିଁ ଅମୋଘ ଅସ୍ତ୍ର ଆହେ ରଘୁନାଥ ।
ତ୍ୟାଗ କରିବାକୁ ହୋଇ ପାରିଲେ ସକ୍ଷମ
ସେ ଚିତ୍ତର ଅନୁଭୂତି ହୋଇଯିବ ଲୀନ ।
ଜଗତ ଅସାର ବୋଲି ଯଦି ଉପେକ୍ଷିବ
ଜଗତ ପ୍ରତି ତା ଆସ୍ଥା କିପରି ଆସିବ ?
ଜଗତ ପ୍ରତି ନୋହିବ ଯଦି ଆସ୍ଥାବାନ
ଅଜ୍ଞାନ ଚିତ୍ତ କିପରି ହୋଇବ ଉତ୍ପୂର୍ଣ୍ଣ ?
ଏହି ଯେ ଅସଂଖ୍ୟ ଜୀବ ପ୍ରତ୍ୟକ୍ଷେ ଦେଖୁଛ
ଅଜ୍ଞାନ ବିଳାସ ତାହା ବୁଝ ରଘୁ ବତ୍ସ ।
ସେମାନଙ୍କୁ ବ୍ରହ୍ମମୟ ବ୍ରହ୍ମଙ୍କର ଚିହ୍ନ
ବୋଲି ଅନୁଭବ କରିପାରେ ଯେଉଁ ଜନ ।
କେବଳ ତାହାର ଏହି ଅଜ୍ଞାନ ବିଳାସ
ନିବୃତ୍ତି ଲଭିପାରଇ ଆହେ ରଘୁଈଶ ।
ସେହିକ୍ଷଣି ତା ଚିତ୍ତରୁ ଆହେ ରଘୁନାଥ
ଜାଗତିକ ଦ୍ୱୈତ ଜ୍ଞାନ ହୁଏ ଦୂରୀଭୂତ ।
ମିଥ୍ୟାଭ୍ରମର ଜନକ ଯେବଣ ସ୍ୱଭାବ
ତା ବିନାଶେ ଅଜ୍ଞାନର ଯେବେ ନାଶ ହେବ ।
ସୂର୍ଯ୍ୟଠାରୁ ସମଧିକ ଦିପ୍ତିମାନ ତେଜ
ଆବିର୍ଭାବ ହୋଇଯିବ ଆହେ ରଘୁରାଜ ।
ଅନ୍ଧକାର ଦୂରୀଭୂତ ସେ ତେଜ ପ୍ରଭାବେ
ଅଦୃଷ୍ଟ ଅଜ୍ଞାତ ବସ୍ତୁ ଜ୍ଞାତ ହୁଏ ତେବେ ।
ଭ୍ରାନ୍ତିସଙ୍କୁଳ ଚିତ୍ତର ବିନାଶ ଘଟଇ
ଜ୍ଞାନ ଦିଗ୍‌ବଳୟ ତେବେ ଉଜ୍ଜ୍ୱଳ ଦିଶଇ ।
ଚିତ୍ତ ବିନାଶେ ଜଗତ କିପରି ଚଳିବ
ଏହି ଆଶଙ୍କା ମନରେ ଯଦି ଉପୁଜିବ ।
ଚିତ୍ତ ନାମ ସେତେବେଳେ ହୋଇଯିବ ଲୁପ୍ତ
ସତ୍ତ୍ୱ ଆକାରେ ତେବେ ସେ ହେବ ପରିଣତ ।
ନୂତନ ଜନ୍ମ ଲଭିବ ସତ୍ତ୍ୱ ନାମ ଧରି
ସେହି ସତ୍ତ୍ୱବଳେ ଜଗତ୍‌ଭାବ ସେ ଆଚରି ।
ବ୍ରହ୍ମ ସାକ୍ଷାତ୍‌କାର ପୁଣି ଜୀବନ ମୁକତି
ଲାଭ କରି ପାରିଅଛି ଯେବଣ ସୁମତି ।
ସତ୍ତ୍ୱାକରେ ପରିଣତ ତାହାଙ୍କର ଚିତ୍ତ
ଲୋକ ବ୍ୟବହାର କରେ ଧରି ସେହି ତତ୍ତ୍ୱ ।
ଚିତ୍ତର ସତ୍ତା ସେକାଳେ ନ ଥାଇ ହେ ରାମ
ସତ୍ତ୍ୱ ଭାବ ଘେନି ସାଧିପାରେ ସର୍ବ କର୍ମ ।
ଯେଣୁ ସେ ସର୍ବତ୍ର ସମ ଦରଶନଶୀଳ
ତେଣୁ ଚିତ୍ତ ତାର ହୋଇଥାଏ ନିରିମୂଳ ।
ତେଣୁକରି ସତ୍ତ୍ୱ ଦ୍ୱାରା ସ୍ୱଛଳେ ବିହରେ
ଜାଗତିକ କର୍ମ ତାର ଚଳେ ନିର୍ଦ୍ୱନ୍ଦରେ ।
ଦ୍ୱୈତ ଜ୍ଞାନ ଶୂନ୍ୟ ଅଟେ ଯେବଣ ସୁଜନ
ସଂସାରକୁ ବ୍ରହ୍ମରୂପେ କରେ ଦରଶନ ।

ବାସନା ନ ଥାଏ କେଭେଁ ଅନ୍ତରେ ତାହାର
ଉଜ୍ଜ୍ୱଳ ସ୍ୱଭାବ ତାର ସବୁ ତା ଉଜ୍ଜ୍ୱଳ ।
ସତ୍ତ୍ୱେ ଅବସ୍ଥାନ କରି ସେଇ ବିଜ୍ଞଜନ
ସଂସାର ଯାତ୍ରା ତାହାର କରେ ସମ୍ପାଦନ ।
ସଦା ସରବଦା ଶାନ୍ତ ତେଣୁ ସେହିଜନ
ଜିତେନ୍ଦ୍ରିୟ ଭାବେ ରହି କାଟୁଥାଏ ଦିନ ।
ସବୁ କାମ କରୁଥାଏ ସେହି ଏ ସଂସାରେ
ଯେଣୁ ଦୃଷ୍ଟି ରଖିଥାଏ ପରମ ଜ୍ୟୋତିରେ ।
ସବୁ କାମ କଲେ ସୁଦ୍ଧା କିଛି ନ କରଇ
ଆସକ୍ତି ଭାବ ତାହାକୁ କେଭେଁ ନ ଛୁଅଁଇ ।
ସତ୍ତ୍ୱଭାବେ ପରିଣତ ହୋଇ ତାର ଚିତ୍ତ
ଅଗ୍ନି ସଦୃଶ ଯେ କାଳେ ହୁଏ ପ୍ରଜ୍ୱଳିତ ।
ସେତେବେଳେ ତାହା ମଧ୍ୟେ ଏହି ଯେ ଜଗତ
ଶୁଷ୍କ ତୃଣପରି ହୋଇଯାଏ ଭସ୍ମୀଭୂତ ।
ବିବେକୋଦୟେ ନିର୍ମଳ ହୁଏ ଯେଉଁ ଚିତ୍ତ
ସତ୍ତ୍ୱ ନାମ ଧରି ତାହା ହୁଏ ଅଭିହିତ ।
ଦଗ୍‌ଧବୀଜରୁ ଯେପରି ନ ଜନ୍ମେ ଅଙ୍କୁର
ସତ୍ତେ ପରିଣତ ଚିତ୍ତ ହୁଏ ସେ ପ୍ରକାର ।
ମୋହଭାବ କେଭେଁ ନ ଜନ୍ମଇ ସେ ଚିତ୍ତରେ
ମୋହସିନା ମାନବଙ୍କୁ ହଇରାଣ କରେ ।
ଚିତ୍ତାକାରେ ଚିତ୍ତ ରହିଥିବ ଯେତେ କାଳ
ଜନମ ନିବୃତ୍ତି ନ ଆସିବ ତେତେ କାଳ ।
ସତ୍ତ୍ୱ ଆକାରେ ସେ ଚିତ୍ତ ହେଲେ ପରିଣତ
ମୁକତି, ଜନ୍ମ ନିବୃତ୍ତି ହେବା ସୁନିଶ୍ଚିତ ।
ଜ୍ଞାନ ହେଲା ଅଗ୍ନି, ପୁଣି ଚିତ୍ତ ହେଲା ତୃଣ
ଅଗ୍ନିରେ ସମୂଳେ ତାକୁ କରିବ ଦହନ ।
'ମୋ ପୁତ୍ର, ବିତ୍ତ, କଳତ୍ର, ମୋର ପରିଜନ'
ଚିତ୍ତର ମୂଳ କାରଣ ଏହି ମିଥ୍ୟା ଜ୍ଞାନ ।
ସମୂଳେ ତାହାକୁ କରିପାରିଲେ ଦହନ
ଏକବାରେ ହେବ ତାହା ଅସ୍ତିତ୍ୱ ବୀହିନ ।
କିଞ୍ଚିତ୍ ମାତ୍ର ମୂଳ ଯେବେ ରହିଯିବ ତାର
ତା ପୁନଃ ଉତ୍ପତ୍ତି ସୁନିଶ୍ଚିତ ରଘୁବୀର ।
ଚିତ୍ତର ବିକାଶେ ହୁଏ ଜଗତ ବିକାଶ
ଚିତ୍ତର ବିନାଶେ ନାହିଁ ଜଗତ ପ୍ରକାଶ ।
ଏମନ୍ତ ଯେ ପ୍ରଶ୍ନ ଉଠିପାରେ ଏହିଠାରେ
ଚିତ୍ତନାଶେ ଜଗତର ନାଶ କି ପ୍ରକାରେ ?

ପୂର୍ବେ କହି ଅଛି ମୁହିଁ ବ୍ରହ୍ମହିଁ ଜଗତ
ସେମାନେ ଦ୍ୱିବିଧ ବସ୍ତୁ ହେବେ ବା କେମନ୍ତ ?
ସୁନିର୍ମଳ ଜ୍ଞାନମୟ ଚିତ୍ତ ପୁଣି ବ୍ରହ୍ମ
ଯେଉଁପରି ଏକ ବସ୍ତୁ ନୁହନ୍ତି ଅଭିନ୍ନ ।
ଜଗତ ଓ ବ୍ରହ୍ମ ଏକ ଜିନିଷ ଅଟନ୍ତି
ବ୍ରହ୍ମ ଜଗତ୍ ଭିନ୍ନ ବୋଲି ଅଜ୍ଞାନୀ ମଣନ୍ତି ।
ଅଜ୍ଞାନାଚ୍ଛନ୍ନ ଚିତ୍ତକୁ ଜ୍ଞାନ ଅଗ୍ନି ବଳେ
ସମ୍ପୂର୍ଣ୍ଣ ରୂପେ ଦଗଧ କରାଯାଇ ପାରେ ।
ବ୍ରହ୍ମରୁ ସ୍ୱତନ୍ତ୍ର ଲାଗେ ଯେବଣ ଜଗତ
ଆଉ ବା ରହିବ ନାହିଁ ତାହାର ଅସ୍ତିତ୍ୱ ?
ଏ ଜଗତ ଦେଖାଯିବ ଖାଲି ବ୍ରହ୍ମମୟ
କି ଅବା ବିଚିତ୍ର ଏଥି କୌଶଲ୍ୟା ତନୟ ?
ବ୍ରହ୍ମ ଛଡ଼ା ଭବେ ଯେଣୁ ଅନ୍ୟ କିଛି ନାହିଁ
ନିଜକୁ ଶରୀରୀ ଯେଣୁ ଭାବେ ରଘୁରାଇ ।
ତୁମେ ସେହି ଭ୍ରମପୂର୍ଣ୍ଣ ଚିତ୍ତର ବିଳାସ
ଭ୍ରମ ଥିବାଯାଏ ବ୍ରହ୍ମ ନୁହଁ ରଘୁଈଶ ।
ଯଦି ଜାଣିପାର, ଏ ଜଗତ ଜ୍ଞାନମୟ
ତେବେ ବୁଝିବ ତୁମର ଚିତ୍ତ ନିରାମୟ ।
ନିଜକୁ ଦେଖିପାରିବ ତୁମେ ଏହିପରି
ଏକ ଚିନ୍ମୟ ବିରାଟ ରୂପ ଅଛି ଧରି ।
ଯଥାର୍ଥ ରୂପ ତୁମର ଅଟେ ତାହା ରାମ
ଭୁଲି ନଯିବ କେଭେଁ ଏ ରୂପ ମନୁ ତୁମ ।
ଭୁଲିଯାଇ ଆପଣାର ବିରାଟ ଆକୃତି
ନିଜକୁ ନ ମଣ କ୍ଷୁଦ୍ର ଆହେ ରଘୁପତି ।
ବିରାଟ ହୋଇଣ ପରିମିତ ଜଗତକୁ
ଅପରିମିତ ଭାବରେ ଦେଖ ହେ ତାହାକୁ ।
ତେବେ ଦେଖିବ ହେ ରାମ ତୁମେ ସେହି ବ୍ରହ୍ମ
ତୁମେ ହିଁ ସେହି ଜଗତ ବ୍ରହ୍ମ ସନାତନ ।
ସ୍ଫଟିକ ସଦୃଶ ତୁମେ ଶୁଭ୍ର ଚିନ୍ମୟ
ଏ ସକଳ ନୁହଁ ତୁମେ ଆହେ ଜ୍ଞାନମୟ ।
ଏ ସବୁର ସାର ରୂପେ ତୁମେ ହିଁ ବିରାଜ
ବାକ୍ୟରେ ତୁମ୍ଭଙ୍କୁ କେ ବର୍ଣ୍ଣିବ ରଘୁରାଜ ?
ଦୁର୍ବିଜ୍ଞେୟ କେଭେଁ ତୁମେ ନୁହଁ ଆହେ ରାମ
ଯେଣୁ ତୁମେ ସବୁ, ତୁମ ବିନୁ ନାହିଁ ଆନ ।
ତେଣୁ ହେ ଶ୍ରୀରାମ ତୁମେ ଅଟ ସେହି ବ୍ରହ୍ମ
ଆହେ ଚିଦଘନ ରୂପ ଆହେ ସନାତନ ।

କୋଟି ନମସ୍କାର ମୋର କରିବ ଗ୍ରହଣ
ଘେନ ମୋ ମିନତି ଦେବ ହେ କଞ୍ଜନୟନ ।
ବୀଜ ମଧ୍ୟେ ବୃକ୍ଷ ଯଥା ସୂକ୍ଷ୍ମରୂପେ ଥାଇ
ଏ ଜଗତ ତୁମ ମଧ୍ୟେ ସେହିପରି ରହି ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଦିବସ ରାତ୍ରି ବ୍ୟାପାର ଓ ବିଶ୍ରାମ ଦୃଢ଼ୀକରଣ ବର୍ଣ୍ଣନେ ନାମ ପ୍ରଥମ ସର୍ଗଃ**



## ଦ୍ୱିତୀୟ ସର୍ଗଃ
## ବ୍ରହ୍ମ ଐକ୍ୟ ପ୍ରତିପାଦନ

ସମୁଦ୍ରର ରାଶି ରାଶି ତରଙ୍ଗ ଯେସନ
ସମୁଦ୍ର ଜଳ ବ୍ୟତୀତ ନୁହେଁ କିଛି ଆନ ।
ସେହିରୂପେ ଏ ଜଗତ ଜାଣ ରଘୁରାୟେ
ଚିତ୍ତର କଳ୍ପନା ଛଡ଼ା ଅନ୍ୟ କିଛି ନୁହେଁ ।
ଶୁଦ୍ଧସତ୍ତ୍ୱ ରୂପ ବ୍ରହ୍ମ ସେହି ଚିତ୍ତ ରାମ
ସେହି ସେ ଚିନ୍ମୟ ବ୍ରହ୍ମ ତୁମେ ଏକା ଜାଣ ।
ସେହି ଅଦ୍ୱିତୀୟ ବ୍ରହ୍ମେ ମିଥ୍ୟା ଜଗତର
ଅସ୍ତିତ୍ୱ ବିଲୀନ କରିଦେଲେ ରଘୁବୀର ।
ସେହି ବାସନା ସଂସାର ଚିରକାଳ ପାଇଁ
ଧ୍ୱଂସ ହୋଇଯାଏ ଜାଣ ଆହେ ରଘୁରାଇ ।
ଚିତ୍ତରୁ ଜନମ ଲଭେ ଏ ମର ସଂସାର
ସେ ଚିତ୍ତରୁ ଜନମନ୍ତି ଜୀବ ଚରାଚର ।
ଚିତ୍ତ କଳପିତ ବସ୍ତୁମାନଙ୍କ ବ୍ୟତୀତ
ଅନ୍ୟ କିଛି ନାହିଁ ଜାଣ ଏ ସାରା ଜଗତ ।
ତରଙ୍ଗ ସତ୍ତା ନ ଥାଏ ପ୍ରଶାନ୍ତ ସାଗରେ
ସଂସାର ଅସ୍ତିତ୍ୱ ଲୁପ୍ତ ଚିତ୍ତ ପ୍ରଶାନ୍ତିରେ ।
ଗଗନ ସମ ପ୍ରଶାନ୍ତ ସର୍ବତ୍ର ସମାନ
କ୍ଷୋଭହୀନ ସେହି ଚିତ୍ତସିନ୍ଧୁ ତୁମେ ରାମ ।
ଅଗ୍ନି ତଦୀୟ ଉଷ୍ଣତା ଅଭିନ୍ନ ଯେସନ
ଚିତ୍ତ, ଜଗତ ଅଭିନ୍ନ ଅଟନ୍ତି ତେସନ ।
ଏହି ଯେ ସଂସାର ଚକ୍ର ସର୍ବଦା ଘୂର୍ଣ୍ଣିତ
ଅନ୍ୟ କିଛି ନୁହେଁ ତାହା ଏ ଚିତ୍ତ ବ୍ୟତୀତ ।
ଜ୍ଞାନ ଦୃଷ୍ଟିରେ ଦେଖିଲେ ହେବ ଯେ ପ୍ରତୀତ
କିଛି ଘୁରୁନାହିଁ, ସବୁ ରହେ ଅଘୂର୍ଣ୍ଣିତ ।
ଅପରିଛିନ୍ନ ଏ ଆତ୍ମା ତେଣୁ ସେ ଅନନ୍ତ
ଆତ୍ମା ଦୃଷ୍ଟିରେ ଦେଖିଲେ ଦେଖିବ ଏମନ୍ତ ।
ଅପରିଛିନ୍ନ ଅଖଣ୍ଡ ଅଟେ ଏ ସଂସାର
ଗଗନେ ଗଗନ ସମ ସଂସାରେ ସଂସାର ।
ଚିତ୍ତ ନିର୍ଲିପ୍ତ ହୋଇଲେ ଜଗତ ନିର୍ଲେପ
ବ୍ରହ୍ମ ବିରାଜନ୍ତି ବ୍ରହ୍ମେ ଧରିନିଜ ରୂପ ।
ସତ୍ୟ ମଧ୍ୟେହିଁ ସତ୍ୟର ହୁଅଇ ସ୍ଫୁରଣ
ପୂର୍ଣ୍ଣରେ ପୂର୍ଣ୍ଣତ୍ୱ ଅନୁଭୂତ ହୁଏ ଜାଣ ।
ଜ୍ଞାନୀ ମଧ୍ୟ ଜଗତକୁ କରଇ ଦର୍ଶନ
ଜଗତ ଯେ ଉପାଦେୟ ନ ଆଣେ ସେ ମନ ।
କର୍ତ୍ତୃତ୍ୱ ବୁଦ୍ଧି ତାଙ୍କର ତେଣୁ ନ ଜନ୍ମଇ
ଜଗତ ଭାବରେ ଯେଣୁ ବିଶ୍ୱାସ ନ ଥାଇ ।
ଉପାଦେୟ ବସ୍ତୁ ବୋଲି ଯାହାକୁଟି କହି
ଆପାତ ସୁଖଜନକ ହୋଇଲେ ହେଁ ସେହି ।
ପରିଣାମେ କେବଳ ତା ଦୁଃଖ ଦେଇଥାଏ
ବାସ୍ତବ ସୁଖ ତହିଁରେ ଦେବ ଅବା କିଏ ?
ସାସଂାରିକ ଦେବା ନେବା କାରବାର ମାନ
ଅନୁପାଦେୟ ଜ୍ଞାନରେ କରିବା କଠିନ ।
କିନ୍ତୁ ଯେଉଁ ବ୍ୟକ୍ତି ତାହା କରିଦେଇ ପାରେ
ଜାଗତିକୁ ସୁଖ ଦୁଃଖ ନ ଘାରେ ତାହାରେ ।
ନାନା ବସ୍ତୁ ପୂର୍ଣ୍ଣ ଜଣାଗଲେ ହେଁ ଜଗତ
ଆପାତ ଦୃଷ୍ଟିରେ ଏହା ହୁଏ ଅନୁଭୂତ ।
ବାସ୍ତବରେ ଏହା ସବୁ ଏକ ବ୍ରହ୍ମଙ୍କର
ବିଭିନ୍ନ ରୂପ ବୋଲିଣ ହୃଦ ମଧ୍ୟେ ଧର ।
ବସ୍ତୁଗତ ଉପାଦେୟ ବୁଦ୍ଧି ଲୁପ୍ତ ଯାଏ
କେବଳ ସେ ବ୍ରହ୍ମ ବୋଲି ମନେ ଯାତ ହୁଏ ।
ନାହିଁ ଯା'ର ଅହଂବୁଦ୍ଧି ଆହେ ଧନୁର୍ଦ୍ଧର
କାହିଁରେ ଲିପ୍ତ ନ ହୁଏ ଧୀ ଶକ୍ତି ଯାହାର ।
ଅନ୍ୟକୁ ହତ୍ୟା କଲେ ହେଁ ନୁହେଁ ତା ହନନ
ନିଜେ ହତ ହେଲେହେଁ ତା' ହତ୍ୟା ନୁହେଁ ଜାଣ ।
ବାସ୍ତବରେ ଯାହା ନାହିଁ କିନ୍ତୁ ଅଛି ବୋଲି
ଧାରଣା ଆସନ୍ତେ ତାହା ମାୟା ନାମ ଧରି ।
ଜ୍ଞାନୋଦୟେ ସେହି ମାୟା ହୁଏ ତିରୋହିତ
ଅଗ୍ନିପରି ଜ୍ଞାନ ତାକୁ କରେ ଭସ୍ମୀଭୂତ ।
ସକଳ ବାସନା ଯାର ଲଭିଛି ବିନାଶ
ପ୍ରଜ୍ଞାବଳେ ଏ ସଂସାର ହୁଏ ତାର ବଶ ।

ଜାଗତିକ ବସ୍ତୁ ଘେନି ଯେ ନୁହେଁ ଆସକ୍ତ
ଜଗତ ଥାଉ ନ ଥାଉ ନ ହୁଏ ଯେ ବ୍ୟସ୍ତ ।
ହାନି ଅବା ଲାଭ ପାଇଁ ନୁହେଁ ଯେ ଚଳିତ
ସେହି ଏକା ରାମ ସୁଖ ଦୁଃଖର ଅତୀତ ।
ସେହି ମହାତ୍ମାହିଁ ଅଟେ ଜୀବନ ମୁକତ
ଜୀବନ ମୁକତ ପକ୍ଷେ ସକଳ ଅମୃତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ବ୍ରହ୍ମ ଐକ୍ୟ ପ୍ରତିପାଦନ ବର୍ଣ୍ଣନେ**
**ନାମ ଦ୍ୱିତୀୟ ସର୍ଗଃ**



## ତୃତୀୟ ସର୍ଗଃ
## ଚିତ୍ତଭାବାଭାବ ପ୍ରତିପାଦନ

ଅହଙ୍କାର, ମନ, ବୁଦ୍ଧି ସକଳ ଇନ୍ଦ୍ରିୟ
ଅନ୍ୟ କିଛି ନୁହନ୍ତି ସେ କେବଳ ଚିନ୍ମୟ ।
ନାନା ପଦାର୍ଥରେ ପୂର୍ଣ୍ଣ ଏହି ଯେ ସଂସାର
ପରମାତ୍ମାଙ୍କ ମହିମା ଜାଣ ରଘୁବୀର ।
ବହୁ ଦରପଣ ଥୋଇ ଚନ୍ଦ୍ରକୁ ଦେଖିଲେ
ପ୍ରତ୍ୟେକରେ ଏକ ଏକ ଚନ୍ଦ୍ର ଦେଖାପଡ଼େ ।
ଏକଚନ୍ଦ୍ର ବହୁ ବୋଲି ଦେଖାଯାଇଥାନ୍ତି
ଭ୍ରମବଶ ନୁହେଁ କି ତା' ଆହେ ରଘୁପତି ?
ସେହିପରି ଭ୍ରମବଶ ହୋଇ ଜୀବଗଣ
ଏକବ୍ରହ୍ମକୁ ଦେଖନ୍ତି ନାନା ଆକାରେଣ ।
ଜୀବର ଏ ଭ୍ରମ ଆଉ ବିଷୟ ବାସନା
ଦୂର ନୁହେଁ ବ୍ରହ୍ମଜ୍ଞାନ ଉପଦେଶ ବିନା ।
ଅଧ୍ୟାତ୍ମ ଶାସ୍ତ୍ରକୁ ଯେବେ କର ଅଧ୍ୟୟନ
ଅଜ୍ଞତା ବିନାଶ, ଚିତ୍ତ ବାସନା ବିଲୀନ ।
ମୁକ୍ତାମାଳା ଛିଣ୍ଡିଗଲେ ଯଥା ମୁକ୍ତାମାନେ
ବିଞ୍ଚିହୋଇ ପଡ଼ିଯାନ୍ତି ଭୂତଳେ ଯେସନ ।
ଅଚିତ୍ତତା ଲାଭ କରିଥାରେ ଯେବେ ଚିତ୍ତ
ସକଳ ବାସନା ତଥା ହୁଅନ୍ତି ବିଲୁପ୍ତ ।
ଶାସ୍ତ୍ର ଅର୍ଥକୁ ଯେମାନେ କରନ୍ତି କଦର୍ଥ
ନିର୍ମଳ କେଭେଁ ନୁହଇ ସେମାନଙ୍କ ଚିତ୍ତ ।
ମୋର ଉପଦେଶ ମାନ ଶୁଣି ତୁମେ ରାମ
ପରମ ତତ୍ତ୍ୱରେ ଚିତ୍ତ କରିଛ ଅର୍ପଣ ।
ନିଦ୍ରାଗତ ରାଜା ଯଥା ବାଦ୍ୟ ନାଦ ଶୁଣି
ନିଦ ଭାଙ୍ଗି ଉଠି ବସିଯା'ନ୍ତି ତତକ୍ଷଣି ।
ତୁମେ ସେହିପରି ଶୁଣି ମୋର ଉପଦେଶ
ଅଜ୍ଞାନ ନିଦ୍ରା ତେଜିଣ ଜ୍ଞାନରେ ବିଳସ ।
ହୃଦୟଙ୍ଗମ କରିଛ ମୋର ଉପଦେଶ
କେଭେଁ ବିଫଳ ନୋହିବ ତାହା ରଘୁବଂଶ ।
ମୁକ୍ତାମାଳା ପରି ମୋର ଉପଦେଶ ମାନ
ଯତ୍ନସହ ହୃଦୟରେ କର-ହେ ଧାରଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଚିତ୍ତ ଭାବାଭାବ ପ୍ରତିପାଦନ ବର୍ଣ୍ଣନେ**
**ନାମ ତୃତୀୟ ସର୍ଗଃ**



## ଚତୁର୍ଥ ସର୍ଗଃ
## ରାଘବ ବିଶ୍ରାନ୍ତି ବର୍ଣ୍ଣନ

କହନ୍ତି ଶ୍ରୀରାମ ଦେବ ତବ ଉପଦେଶ
ବୁଝିପାରି ହୃଦୟ ମୋ ଲଭିଛି ଉଲ୍ଲାସ ।
ଚିତ୍ ଛଡ଼ା ଅନ୍ୟ କିଛି ନଦିଶଇ ମୋତେ
ଆଉ ଏ ଜଗତ ନ ପଡ଼ଇ ମୋର ନେତ୍ରେ ।
ବିଶୁଦ୍ଧ ଅନ୍ତର ମୋର ବ୍ରହ୍ମରେ ବୁଡ଼ିଛି
ଅପାର ଆନନ୍ଦ ଅନୁଭବ ମୁଁ କରୁଛି ।
ସକଳ ଦୁଃଖ ମୋହର ଏବେ ଦୂରୀଭୂତ
ଅକଥ୍ୟ ସୁଖ ସାଗରେ ବୁଡ଼ିଛି ମୋ ଚିତ୍ତ ।
ଏତେ କାଳେ ହୋଇ ପାରିଅଛି ମୁହିଁ ସ୍ୱସ୍ଥ
ଅପାର ଆନନ୍ଦ ଲାଭ କରିଛି ମୁଁ ସତ ।
ଲୋକାଭିରାମ ବୋଲିଣ ମୋହର ଯେ ନାମ
ସାର୍ଥକ ହୋଇଛି ଆଜ କୃପା ବଳେ ତୁମ ।
ବ୍ରହ୍ମ ସ୍ୱରୂପତା ଆଜି ଲାଭ ମୁଁ କରିଛି
ଅପାର ଆନନ୍ଦେ ମଗ୍ନ ଏବେ ମୁଁ ରହିଛି ।
ତୁମରି କୃପାରୁ ପାଇଅଛି ଏ ସମ୍ପଦ
ନମସ୍କାର କରୁଅଛି ତୁମରି ଶ୍ରୀପଦ ।
ଆଉ ମଧ୍ୟ ବ୍ରହ୍ମରୂପୀ ନିଜକୁ ମୁଁ ଦେବ
ନମସ୍କାର କରୁଅଛି ଆହେ ଗୁରୁଦେବ ।
ଆଜି ଏ ହୃଦୟ ମୋର ଉନ୍ମୁକ୍ତ ନିର୍ମଳ
ଚନ୍ଦ୍ରମା ସଦୃଶ ମୁହିଁ ହୋଇଛି ଶୀତଳ ।
ସକଳ ଜ୍ୱାଳା, ଯନ୍ତ୍ରଣା ଆଜି ମୋ ଲିଭିଛି
କେବଳ ଆନନ୍ଦ ଛଡ଼ା ନଜାଣଇ କିଛି ।
ପବିତ୍ର ଚିନ୍ମୟ ଶୁଦ୍ଧ ଯେ ଆତ୍ମା ଅଟଇ
ଅଜ୍ଞାନ କାଳିମା ତାଙ୍କୁ କିମ୍ପାଇ ଘାରଇ ।

କାହୁଁ ବା ଆସଇ ତାହା କେହି ନ ଜାଣନ୍ତି
ଏସବୁ ସନ୍ଦେହ ମୋର ଦୂର ହୋଇଛନ୍ତି ।
ପରମାତ୍ମା ହିଁ କେବଳ ଛନ୍ତି ଏ ଜଗତେ
ସେହି ସବୁ ଏହା ସ୍ପଷ୍ଟ ଜଣାଯାଏ ମୋତେ ।
ଆପଣଙ୍କ ବାକ୍ୟରୂପ ଅମୃତ ପ୍ରବାହେ
ଅବଗାହୀ, ଶାନ୍ତ ହେଲି ମୋତେ ଜଣାଯାଏ ।
ଏହି ନିଖିଳ ସଂସାର ମୁହିଁ ଅଟେ ବୋଲି
ଅନୁଭବ କରି ମୁହିଁ ମନେ ମନେ ଫୁଲି ।
ହେ ଦେବ ତବ କୃପାରୁ, ମର୍ତ୍ତ୍ୟ ଲୋକେ ଥାଇ
ବ୍ରହ୍ମଲୋକେ ସଂସ୍ଥିତ ମୁଁ ନିଜକୁ ମଣଇ ।
ମୁଁ ବୁଝି ପାରିଛି ଏବେ ବିରାଟ ଜଗତେ
ଏକମାତ୍ର ମୁହିଁ ରହିଅଛି ମହାମତେ ।
ତେଣୁ ମୁଁ ମହାନ ପୁଣି ମୁହିଁ ହିଁ ନମସ୍ୟ
ମୁହିଁ ଏ ସମସ୍ତ ପୁଣି ମୁଁ ଅଟେ ଉପାସ୍ୟ ।
ତେଣୁ ମୁଁ ନିଜକୁ ନିଜେ କରେ ନମସ୍କାର
ନିଜ ମହତ୍ତ୍ୱରେ ମୁହିଁ ଅଛଇ ବିଭୋର ।
ତବ ଏ ଅମୃତମୟ ଉପଦେଶମାନ
ଗୁନ୍ଥି ସାଇତି ରଖିଛି ମୋ ହୃଦ ପଦ୍ମେଣ ।
ଶୋକ ଦୁଃଖର ଅତୀତ ଆନନ୍ଦ ଧାମରେ
ଉପନୀତ ହୋଇଅଛି ଆଜ ମୁନିବରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ରାଘବ ବିଶ୍ରାନ୍ତି ବର୍ଣ୍ଣନେ**
**ନାମ ଚତୁର୍ଥ ସର୍ଗଃ**



## ପଞ୍ଚମ ସର୍ଗଃ
## ଅଜ୍ଞାନ ମହାତ୍ମ୍ୟ ବର୍ଣ୍ଣନ (୧)

ବଶିଷ୍ଠ ବୋଇଲେ ମୋର ଉପଦେଶମାନ
ହୃଦୟଙ୍ଗମ ହୋଇଛି ତୁମର ହେ ରାମ ।
ନିରତିଶୟ ଆନନ୍ଦ ଲଭିଛି ମୁଁ ଶୁଣି
ପରମ ସନ୍ତୋଷ ଲାଭ କଲି ରଘୁମଣି ।
ତଥାପି ଅନ୍ୟମାନଙ୍କ ଶ୍ରେୟ ଲାଭ ପାଇଁ
ତୁମ୍ଭଙ୍କୁ ଲକ୍ଷ କରିଣ କହୁଛି ଗୋସାଇଁ ।
ଆଉ କିଛି ଉପଦେଶ ମୋହଠାରୁ ଶୁଣ
ଯାହାଦ୍ୱାରା ଜଗତର ହୋଇବ କଲ୍ୟାଣ ।
ଜଗତ ଓ ବ୍ରହ୍ମ ମଧ୍ୟେ କୌଣସି ପ୍ରଭେଦ
ନାହିଁ ବୋଲି ବୁଝି ଅଛ ଆହେ ରାମଚନ୍ଦ୍ର ।

ତଥାପି ପୁନର୍ବାର ମୁଁ ତୁମ୍ଭଙ୍କୁ କହୁଛି
ତୁମର ଜ୍ଞାନ ବର୍ଦ୍ଧିତ ହେବ ମୁଁ ଜାଣୁଛି ।
ଯେଉଁମାନେ ଏପର୍ଯ୍ୟନ୍ତ ତାହା ନ ଜାଣନ୍ତି
ସେମାନଙ୍କୁ ଦେବ ଏହା ଜ୍ଞାନ ପୁଣି ଶାନ୍ତି ।
ଶରୀରକୁ ଆତ୍ମାବୋଲି ମଣେ ଯେଉଁ ମୂଢ଼
ଶରୀର ହିଁ ସାରବସ୍ତୁ, ଏହାମଣେ ଦୃଢ଼,
ଇନ୍ଦ୍ରିୟମାନେ ତାହାର ଶତ୍ରୁ ହୋଇଯାନ୍ତି
ଶକ୍ତି ସାମର୍ଥ୍ୟ ତାହାର ହରଣ କରନ୍ତି ।
ପରାସ୍ତ କରନ୍ତି ତାକୁ ସ୍ୱ ବଶ କରିଣ
ନିରନ୍ତର କରୁଥାନ୍ତି ତାକୁ ହଇରାଣ ।
ଏ ଦେହ ଓ ସଂସାରକୁ ନଶ୍ୱର ବୁଝିଣ
ଚିନ୍ମୟ ବ୍ରହ୍ମକୁ ଆତ୍ମା ମଣେ ଯେଉଁ ଜନ ।
ଇନ୍ଦ୍ରିୟଗଣ ତାଦୃଶ ଜ୍ଞାନୀ ଜନଙ୍କର
ବନ୍ଧୁପରି ହିତକାରୀ ହୁଅନ୍ତି ତାଙ୍କର ।
ସଦା ସରବଦା ବଶୀଭୂତ ହୋଇ କରି
ହୁକୁମ ତାଲିମ ପାଇଁ ଥାନ୍ତି କାନ ଡେରି ।
ଶରୀର ସହ ଆତ୍ମାର ନ ଥାଇ ସମ୍ପର୍କ
ଅନ୍ଧାର ଆଲୋକ ମଧ୍ୟେ ଯେ ଦେଖ ସମ୍ପର୍କ ।
କିଛି ହିଁ ମାତ୍ର ବିକାର ନ ଥାଇ ଆତ୍ମାରେ
ବିକୃତ ନୁହଇ ଆତ୍ମା ଦେହାଦି ଭାବରେ ।
ଆତ୍ମା ପୂର୍ଣ୍ଣ ଅସଂପୃକ୍ତ ସଂସାର ସହିତ
ତେଲ ଓ ପାଣି ମଧ୍ୟରେ ସମ୍ପର୍କ ଯେମନ୍ତ ।
ଆତ୍ମା ଯେ ଅଟେ ଚିନ୍ମୟ ଆତ୍ମା ଅବିନାଶୀ
ନିତ୍ୟ ଐଶ୍ୱର୍ଯ୍ୟ ସମ୍ପନ୍ନ ଘଟ ଘଟ ବାସୀ ।
ନାହିଁ ଉଦୟ ଆତ୍ମାର, ନାହିଁ ତାର ଅସ୍ତ
ସଦା ସରବଦା ଏକରୂପେ ବିରାଜିତ ।
ଏହି ଦେହ ଜଡ଼ ପୁଣି ଚଇତନ୍ୟ ହୀନ
ନଶ୍ୱର ଏ ଦେହ ପୁଣି ବିକାର ସମ୍ପନ୍ନ ।
ଯାହା କିଛି ଘଟିଯାଏ ଏ ମର ଦେହରେ
ଆତ୍ମାର କିଛି ବିକାର ନ ଥାଇ ତହିଁରେ ।
ତେଣୁ କରି ଦେହ ଆଉ ଆତ୍ମାର ମିଳନ
ଏକବାରେ ଅସମ୍ଭବ ହେ ରଘୁନନ୍ଦନ ।
ଦିବସ ଆଗମେ ରାତ୍ରି, ନିଶାଗମେ ଦିନ
ପରିଦୃଷ୍ଟ ହୁଏ ନାହିଁ ହେ ରଘୁନନ୍ଦନ ।
ଆତ୍ମା ଅଭ୍ୟୁଦୟେ ଦେହ ଲଭେ ଅବସାନ
ଦେହ ଶ୍ରୀବୃଦ୍ଧିରେ ଆତ୍ମା ଅସ୍ତିତ୍ୱ ବିହୀନ ।

ଜ୍ଞାନ କେବେ ହେଁ ଅଜ୍ଞାନ ହୋଇତ ନ ପାରେ
ଆଲୋକ କି କେବେ ଅନ୍ଧକାର ହୋଇପାରେ ?
କେବେ ହେଁ ଏ ବ୍ରହ୍ମ ହୋଇ ନ ପାରେ ଅସତ
ଦେହ ସହ ଆତ୍ମା ହୋଇ ନ ପାରେ ସଂପୃକ୍ତ ।
ଜଳରୁ ଜନମି ପଦ୍ମ ଜଳର ସହିତ
କେଭେଁ ଦେଖାଯାଏ ନାହିଁ ହେବାର ସଂପୃକ୍ତ ।
ଦେହ ଗତ ଆତ୍ମା ଦେହ ସହ ଅସମ୍ପୃକ୍ତ
ଆତ୍ମା ସୁନିର୍ମଳ ଦେହ ଅଟେ ମଳିଯୁକ୍ତ ।
ଆକାଶସ୍ଥଃ ବାୟୁ ଧୂଳି ଧୂସରିତ ହେଲେ
ଆକାଶକୁ ଧୂଳିଜାଲ ସ୍ପରଶ ନ କରେ ।
ଯଉବନ ଜରା ସୁଖ ଦୁଃଖାଦି ବିକାର
ଦେହଗତ ହେଲେ ମଧ୍ୟ ଆତ୍ମାଠାରୁ ଦୂର ।
ଆତ୍ମସ୍ଥ ହୁଅ ହେ ରାମ ଏହା ବୁଝି କରି
ଆତ୍ମା ହିଁ ସାରା ଜଗତେ ରହିଅଛି ପୂରି ।
ଭ୍ରମବଶ ହୋଇ ଜୀବ କରଇ ଦର୍ଶନ
ଜଗତ ଶରୀର ଆଦି ସର୍ବ ଦୃଶ୍ୟମାନ ।
ତେଣୁ କରି ଜନ୍ମ ମୃତ୍ୟୁ ଆସି ପହଞ୍ଚନ୍ତି
କାଳଚକ୍ର ମଧ୍ୟେ ତାକୁ ପେଶି ଦେଇଥାନ୍ତି ।
ଜଳ ଓ ତରଙ୍ଗ ଯଥା ନୁହନ୍ତି ଅଭିନ୍ନ
ଆତ୍ମା, ଦେହ ଭବଠାରୁ ନ ହୁଅଇ ଭିନ୍ନ ।
ଜଳର ଚାଞ୍ଚଲ୍ୟ ହେତୁ ସୂର୍ଯ୍ୟ ପ୍ରତିବିମ୍ବ
ବିଚଳିତ ଦେଖାଯାଏ ଯଥା ହେ ରାଘବ ।
ବାସ୍ତବରେ ସୂର୍ଯ୍ୟଦେବ ରହିଥାନ୍ତି ସ୍ଥିର
ଜଳର ଚାଞ୍ଚଲ୍ୟ ହେତୁ ଦିଶନ୍ତି ଅସ୍ଥିର ।
ଆତ୍ମା ପ୍ରତିବିମ୍ବ ରୂପ, ଦେହର ବିନାଶେ
ଆତ୍ମା ବିନାଶ ନ ଘଟେ ଜାଣ ରଘୁଇଶେ ।
ଆତ୍ମା ଅଟେ ଅବିନାଶୀ ଆତ୍ମା ଅଟେ ସ୍ଥିର
କିଛି ହିଁ ପରିବର୍ତ୍ତନ ନ ଥାଇ ଆତ୍ମାର ।
ଜାଗତିକ ବସ୍ତୁମାତ୍ରେ ଚଞ୍ଚଳ ନଶ୍ୱର
ସବୁର କାରଣ ଆତ୍ମା, ମାତ୍ର ତାହା ସ୍ଥିର ।
ଦେହପ୍ରତି ଦେହୀ, ଆତ୍ମା ଏ ଉଭୟଙ୍କର
ଯଥାଯଥ ଚିତ୍ତ ବୁଝି ନ ପାରି ଯାଙ୍କର ।
ସୁଖ ଦୁଃଖାଦିରେ ମୋହଗ୍ରସ୍ତ ହୋଇ ଜୀବ
ବିଶୁଦ୍ଧ ନିର୍ମଳ ଜ୍ଞାନ ପାଇ ନ ପାରିବ ।
ଯାର ବୁଦ୍ଧି ଏହିପରି ମୋହେ ଅଭିଭୂତ
ଚିନ୍ମୟ ଆତ୍ମା ସୁଖରୁ ହୁଏ ସେ ବଞ୍ଚିତ ।

ଜଡ଼ବତ୍ ଅଟେ ରାମ ତାହାର ଜୀବନ
ଚେତନର ମୂଲ୍ୟ ସେହୁ ବୁଝିବ କେସନ ।
ଜାଗତିକ କର୍ମମାନ ଯାହା କରୁଥାଇ
ଆତ୍ମାର ତା ସହ କିଛି ସମ୍ପର୍କ ନ ଥାଇ ।
ପ୍ରାଣାଦି ବାୟୁ କର୍ତ୍ତୃକ ଚାଳିତ ହୋଇଣ
ହୋଇଥାନ୍ତି ସେହିମାନେ କର୍ମ ପରାୟଣ ।
ମଦ ଯେପରି ପ୍ରାଣୀକୁ କରଇ ଉନ୍ମତ୍ତ
ବିଷୟ ବାସନା ତାଙ୍କୁ କରଇ ତେମନ୍ତ ।
ଅନ୍ତରତମ ପ୍ରଦେଶେ କିନ୍ତୁ ତାହାଙ୍କର
ସେହି ପରମଆତ୍ମା ଯେ କିରଛନ୍ତି ଘର ।
ଅଜ୍ଞାନ ହେତୁ ସେମାନେ ବୁଝି ନ ପାରନ୍ତି
ଅଜ୍ଞାନ, ଆପଦ ମୂଳ ସମସ୍ତେ ଜାଣନ୍ତି ।
ଆତ୍ମା ସହ ଅସଂପୃକ୍ତ ଏହି ଯେ ଶରୀର
ତହିଁରେ ଆତ୍ମବୁଦ୍ଧ କି ଥାପେ ଯେଉଁ ନର ।
ଦେହ, ଧନ ପୁତ୍ର, ଦାରା, ଆସକ୍ତ ସେ ନର
ଦୁଃଖ ଉପଶମ କେବେ ନ ହୁଅଇ ତାର ।
ସମ୍ୟକ୍ ଆସ୍ଥା ନ ଥାଇ ଯେବଣ ବ୍ୟକ୍ତିର
ଅସତ ଭାବରେ ପୂର୍ଣ୍ଣ ବୁଦ୍ଧି ଅଟେ ଯାର ।
ସାଂସାରିକ ମାୟା ତାର ବିନଷ୍ଟ ହେବାର
କୌଣସି ଉପାୟ ନାହିଁ ଆହେ ରଘୁବୀର ।
ସାରବସ୍ତୁକୁ ନ ଦେଖି ଆତ୍ମାର ବସ୍ତୁରେ
ଆସକ୍ତ ହୋଇଣ ରହିଥାନ୍ତି ଯେଉଁ ନରେ,
ଚନ୍ଦ୍ରମାରୁ ସୁଧା ବରଷଣ ପରିବର୍ତ୍ତେ
ଗରଳ ବରଷା ଦେଖୁଥାନ୍ତି ସେ ସମସ୍ତେ ।
ଅଜ୍ଞାନୀ ଅନ୍ତରେ ନାନା ବାସନା ଜନ୍ମନ୍ତି
ସେ ବାସନା ଶୃଙ୍ଖଳାରେ ବନ୍ଧ ଯେ ରହନ୍ତି
ତାହାଙ୍କ ମନ ମାତଙ୍ଗ ସ୍ୱଚ୍ଛନ୍ଦ ଭାବରେ
ବିଚରି ନ ପାରି ବହୁ ଦୁଃଖ ଭୋଗ କରେ ।
ଯେ ବ୍ୟକ୍ତି ଅଜ୍ଞ ତାହାର ଆତ୍ମ ଚଇତନ୍ୟ
ସମ୍ମୁଦିତ ହୋଇ ନ ପାରଇ କଦାଚନ ।
ଜଡ଼ ରୂପକ ଅନ୍ତରେ ସେହି ମୂଢ଼ ନର
ନାନା ଦୁଃଖ ଭୋଗ କରୁଥାଏ ନିରନ୍ତର ।
ତେଣ୍ଡାରେ ବନ୍ଧା ମାଠିଆ, ଯଥା ନିରନ୍ତର
ଜଳମଧ୍ୟେ ବୁଡ଼ି, ଉଠୁଥାଏ ବାରମ୍ବାର ।
ସଂସାର ରୂପ ତେଣ୍ଡାରେ ଏହି ଜୀବ ଘଟ
ପୁନଃ ପୁନଃ ଜନ୍ମି ହେଉଥାଏ ଛଟପଟ ।

ଜ୍ଞାନୀ ପ୍ରତି ଯେ ସଂସାର ଗୋଷ୍ପଦ ସ୍ୱରୂପ
ଅଜ୍ଞାନୀ ପ୍ରତି ଅଟେ ତା ଅଗାଧୁ ଅମାପ ।
ସୁନ୍ଦରୀ ନାରୀ ସୌନ୍ଦର୍ଯ୍ୟେ ହୋଇ ବିମୋହିତ
ସଂସାରେ ସାନନ୍ଦେ କରେ ସେ କାଳାତିପାତ ।
ଥରେ ମାତ୍ର ଚିନ୍ତା କରି ନ ଥାନ୍ତି ସେମାନେ
ସଂସାର ବୃକ୍ଷ ଫଳର ସୁଆଦ କେସନେ ।
ଆପାତ ମଧୁର ସୁଖ ପରିଣାମେ ଦୁଃଖ
ଭୋଗ କରିବାକୁ ହେଉଥିଲେ ହକହକ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଅଜ୍ଞାନ ମାହାତ୍ମ୍ୟ ବର୍ଣ୍ଣନେ ନାମ ପଞ୍ଚମ ସର୍ଗଃ**



## ଷଷ୍ଠ ସର୍ଗଃ
## ଅଜ୍ଞାନ ମହାତ୍ମ୍ୟ ବର୍ଣ୍ଣନ -୨

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଯା କିଛି ଦେଖୁଛ ତୁମେ ଏହି ଜଗତର ।
କାଳ ବଶ ଏ ସମସ୍ତ ହୁଅଇ ଉଦ୍‌ଭୁତ
କୃମି କୀଟ ବୃକ୍ଷ ଆଦି ସକଳ ପଦାର୍ଥ ।
ଚେତନ ଓ ଅଚେତନ ଆଦିକରି ଯେତେ
ମନୁଷ୍ୟ, ପଶୁ, ପକ୍ଷ୍ୟାଦିମାନଙ୍କ ସହିତେ ।
କାଳର ଅଧୀନ ହୋଇ ସର୍ବେ ବର୍ତ୍ତମାନ
କାଳ ବଶେ ସର୍ବ କାଳ ଗର୍ଭେ ହେବେ ଲୀନ ।
ଆପାତ ମନୋହର ଏ ବିଶାଳ ଜଗତ
ଦିନେ ନା ଦିନେ ସେ ହେବ କାଳ ଗର୍ଭଗତ ।
ଏ ଜଗତେ ପ୍ରାଣୀଗଣ ଭାବନ୍ତି ଏସନ
କରମ ତାଙ୍କର ଖାଲି ଉଦର ପୋଷଣ ।
ଜଗତକୁ ଖାଲି ଭୋଗ୍ୟ ବସ୍ତୁ ସେ ମଣନ୍ତି
ଅସୀମ ଶକ୍ତି ରୂପିଣୀ ଯେଉଁ କାଳଶକ୍ତି ।
ଅନାଦି କାଳରୁ ତାଙ୍କ ଭୋଗ ସମ୍ପାଦନ୍ତି
ଏହି ଭାବନାରେ ସର୍ବେ ନିଶ୍ଚିନ୍ତ ହୁଅନ୍ତି ।
କିନ୍ତୁ ସେମାନେ ଏ କଥା ବୁଝି ନ ପାରନ୍ତି
ସେମାନଙ୍କୁ ମଧ୍ୟ ରାମ ଏହି କାଳ ଶକ୍ତି
ମହାକାଳଙ୍କର ଭୋଗ୍ୟ ରୂପେ ଅରପନ୍ତି
ବଳିଛାଗ ପରି ସର୍ବେ ତୃଣ ଚରୁଛନ୍ତି ।
କି ମାୟା ଜାଲରେ ଜୀବଗଣ ପଡ଼ିଛନ୍ତି
ଜଗତକୁ ନାରୀ ରୂପେ ଭୋଗ କରୁଛନ୍ତି ।
ଜଡ଼ତା ଅନ୍ଧାର ସେହି କାମିନୀର କେଶ
ଚନ୍ଦ୍ର ସୂର୍ଯ୍ୟ ଅଟନ୍ତି ତା ନୟନ ସଦୃଶ ।
ଆନନ୍ଦ ଐଶ୍ୱର୍ଯ୍ୟମୟ ଯେଉଁ ଚଇତନ୍ୟ
ଅନ୍ତରେ ଏହାର ରହିଛନ୍ତି ବିଦ୍ୟମାନ ।
ସେମାନେ ଅଟନ୍ତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର
ଏହି ଜଗତ ରମଣୀ ଆହେ ରଘୁବୀର ।
ବିବର୍ତ୍ତନ ରୂପ ଅଟେ ସେହି ଚିନ୍ମୟର
ଜନନୀ ରୂପେ ପାଳନ କରେ ଚରାଚର ।
ଏହି ଜନନୀଙ୍କୁ ଦେଖି କରି ଜ୍ଞାନୀଗଣ
ନିତ୍ୟ, ସ୍ଥିର, ସୂକ୍ଷ୍ମ ଯେଉଁ ଚିନ୍ମୟ ବ୍ରହ୍ମ
ସ୍ଥୁଳ ଓ ଚଞ୍ଚଳାକାରେ କରନ୍ତି ଦର୍ଶନ
ହାୟ କି ଜଳକା ଅଟେ ଅଜ୍ଞାନୀ ନୟନ ।
କି ଅପୂର୍ବ ସଉନ୍ଦର୍ଯ୍ୟ ସେହି ଜନନୀର
ଭାବୁକ ପାଇଁକି ତାହା ସମ୍ପଦ ଅତୁଳ ।
ତାରକା ଶ୍ରେଣୀ ଅଟନ୍ତି ଦର୍ଶନ ତାହାର
ସନ୍ଧ୍ୟାର ରକ୍ତିମ ଆଭା ତାହାର ଅଧର ।
ଚତୁର୍ଦ୍ଦିଗେ ପ୍ରସ୍ଫୁଟିତ କୁମୁଦ କମଳ
ନୟନ ହରନ୍ତି ବହୁ ଲତାର ଆକାର ।
ଇନ୍ଦ୍ର ଦେବଙ୍କର ଯେଉଁ ବୈଜୟନ୍ତ ପୁର
ଜନନୀଙ୍କର ଅଟଇ ବଦନ ମଣ୍ଡଳ ।
ମୁକ୍ତାମାଳା ପରି ଶୋହେ ସପତ ସାଗର
ମାତାଙ୍କର ଉତ୍ତରୀୟ ଆକାଶ ମଣ୍ଡଳ ।
ଜମ୍ବୁଦ୍ୱୀପ ଅଟେ ତାଙ୍କ ଯେ ନାଭି କମଳ
ଲୋମ ରାଜିପରି ଶୋହେ କାନନ ସକଳ ।
ସେହି ମାତା ମଧ୍ୟ କାଳ ଚକ୍ର ଆବର୍ତ୍ତନେ
ବୃଦ୍ଧା ହୋଇ କାଳ କବଳିତ କାଳକ୍ରମେ ।
ଜନମନ୍ତି, ନାଶଯାନ୍ତି, ପୁଣି ଜନମନ୍ତି
କାଳ ଅପାର ମହିମା କେ କହି ପାରନ୍ତି ?
ଏହି ଅସମୀ ବ୍ରହ୍ମାଣ୍ଡ କାଳ ସମୁଦ୍ରରେ
ଉପୁଜି ଲୋପ ପାଉଛି ବୁଦ୍‌ବୁଦ୍ ଆକାରେ ।
ସୃଷ୍ଟିକର୍ତ୍ତା ବ୍ରହ୍ମା ମଧ୍ୟ କ୍ଷଣକାଳ ରହି
କୁଆଡ଼େ ଉଭେଇ ଯା'ନ୍ତି କେହି ନ ଜାଣଇ ।
ମହା ମେଘେ ତଡ଼ିତ୍‌ଲତା ଚମକେ ଯେସନ
ମହାକାଳ ଅଙ୍ଗେ ସୃଷ୍ଟି ଚମକେ ତେସନ ।
ପୁଣି ସେହି ମହାକାଳ ଗର୍ଭେ ହୁଏ ଲୀନ
ବିଷ୍ଣୁ ରୁଦ୍ରଙ୍କର ମଧ୍ୟ ତହିଁ ଅବସ୍ଥାନ ।

ସେମାନଙ୍କ ଉନ୍ମେଷ ଓ ନିମେଷ ମଧ୍ୟରେ
କେତେ କଳ୍ପ ଖପି ଯାଏ କିଏ କଳିପାରେ ?
ଏ ସୃଷ୍ଟି କାରଣ ସେହି ବ୍ରହ୍ମଙ୍କ ମଧ୍ୟରେ
ସୃଷ୍ଟି ବିନାଶକ ବହୁ ରୁଦ୍ର ବାସ କରେ ।
ସର୍ବ ଶକ୍ତିଶାଳୀ ଏତାଦୃଶ ଦେବଗଣ
ବିରାଜନ୍ତି ଏହା ନ ବୁଝନ୍ତି ଜୀବଗଣ ।
ଯେଣୁ ସେମାନେ ମାୟାର ପୂର୍ଣ୍ଣ ବଶୀଭୂତ
ଏ ଘଟଣା ଜୀବଙ୍କର କଳ୍ପନା ଅତୀତ ।
ଅନନ୍ତ ଶକ୍ତି ସମ୍ପୂର୍ଣ୍ଣ ଜଗତ କଳ୍ପନା
ଅନ୍ୟ କିଛି ନୁହେଁ ମୂଢ଼ ବିଳାସ ଭାବନା ।
ସଂସାର ସମ୍ପଦ, ବାଲ୍ୟ, ଜରା ଯଉବନ
ସୁଖ ଦୁଃଖ ଜନ୍ମ ମୃତ୍ୟୁ ଆକାଂକ୍ଷା ଏ ମାନ,
ଜୀବଗଣ ଯହିଁ ସଦା ମୋହେ ନିମଗନ
ଅଜ୍ଞାନ ଅନ୍ଧକାରର ବିଭୂତି ଏମାନ ।
କହନ୍ତି ବଶିଷ୍ଠ ରାମ ଆଉ ମଧ୍ୟ ଶୁଣ
ଚୈତନ୍ୟ ବ୍ରହ୍ମଙ୍କ ଏକ ଅଂଶ ମଧ୍ୟେ ଜାଣ ।
ଅବିଦ୍ୟାମୟ ଏ ସୃଷ୍ଟି ଅଛି ବିଦ୍ୟମାନ
ତାର ବିବରଣ ଶୁଣ କରୁଛି ବର୍ଣ୍ଣନ ।
ସୁଖରୁ ଜାଣିବ ରାମ ଅବିଦ୍ୟା ଉଦୟେ
ମାନବ ସୁଖ ସମ୍ପଦ ଯେତେ ବୃଦ୍ଧି ହୁଏ ।
ତାହାର ବୃଦ୍ଧି ନିମିତ୍ତ ତେତେ ଯତ୍ନବାନ
ଅଜ୍ଞାନ-ଜନକ କର୍ମେ ପ୍ରବର୍ତ୍ତଇ ପୁଣ ।
ସେ ସବୁ କର୍ମୁ ଅବିଦ୍ୟା ହୁଏ ବୃଦ୍ଧିପ୍ରାପ୍ତ
ପୁଣି ଦୁଃଖରୁ ଅବିଦ୍ୟା ହୁଅଇ ସମ୍ଭୂତ ।
ଦାରିଦ୍ର୍ୟ ଦୁଃଖରୁ ବଢ଼େ ଧନର ବାସନା
ମୋହ ଗ୍ରସ୍ତ କରେ ତାକୁ ସେ ସକଳତୃଷ୍ଣା ।
ସେହି ତୃଷ୍ଣା ଓ ମୋହରୁ ଅବିଦ୍ୟାର ବୃଦ୍ଧି
ତେଣୁ ଅଶାନ୍ତିର ଧାରା ବହେ ରଘୁନିଧି ।
ଭାବ ତଥା ପ୍ରକାଶରୁ ସଂସାର ଉତ୍ପନ୍ନ
ଏହି ବୋଧ ଜ୍ଞାନକୁ ହିଁ କହନ୍ତି ଅଜ୍ଞାନ ।
ଅଜ୍ଞାନରୁ ଘଟେ ଏହି ସଂସାର ଉଦ୍ଭବ
ତେଣୁ ଅଜ୍ଞାନ, ଅବିଦ୍ୟା ଜାଣ ହେ ରାଘବ ।
ଜ୍ଞାନ ଉଦୟ ହୁଅନ୍ତେ, ସୃଷ୍ଟି ତତ୍ତ୍ୱ ଜ୍ଞାତ
ତେବେ ତାର ଅନାଦିତ୍ୱ ହୁଏ ପରିଜ୍ଞାତ ।
ଯେଉଁ ଜ୍ଞାନ ବଳେ ସୃଷ୍ଟି ସତ୍ତା ନୁହେଁ ଅସ୍ତ
ଅବିଦ୍ୟାକୁ ଦାନ କରେ ସେ ଜ୍ଞାନ ସନ୍ତତଃ ।
ଏହି ସଂସାରରେ ରାମ ଅଜ୍ଞାନୀ ଦୃଷ୍ଟିରେ
ଏହି ଅବିଦ୍ୟା ହିଁ ଆସେ ତା ଦୃଷ୍ଟି ଗୋଚରେ ।
ବ୍ରହ୍ମା, ବିଷ୍ଣୁ, ରୁଦ୍ର, ସୂର୍ଯ୍ୟ, ଅଗ୍ନି, ବାୟୁ, ଯମ
ଏ ଜଗତେ ବିଦ୍ୟମାନ ଏହି ଦେବଗଣ ।
ମହିମା ସମ୍ପର୍ଣ୍ଣ ଅବା ତୃଣବତ ତୁଚ୍ଛ
ଏହି ସଂସାରରେ ରାମ ଯା କିଛି ଦେଖୁଛ ।
ଅନ୍ତରେ ବାହାରେ ତୁମେ ଯାହା କିଛି ଦେଖ
ସେ ସବୁ ଖାଲି ଅବିଦ୍ୟା ଏହା ମନେ ରଖ ।
ଏହି ଅବିଦ୍ୟା ବିନାଶେ ସର୍ବ ଭ୍ରମ ଜ୍ଞାନ
ବିନଷ୍ଟ ହୋଇଣ ଥାଏ ହେ ରଘୁ ନନ୍ଦନ ।
ନିର୍ବିକାର ଚିଦାନନ୍ଦମୟ ଯେଉଁ ଆତ୍ମା
ଉପଲବ୍ଧ ହୋଇଥାଏ କେବଳ ତା ସତ୍ତା ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଅଜ୍ଞାନ ବର୍ଣ୍ଣନେ ନାମ ଷଷ୍ଠ ସର୍ଗଃ ।**



## ସପ୍ତମ ସର୍ଗଃ

## ଅବିଦ୍ୟା ଲତା ବିଳାସ

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ସୃଷ୍ଟିର ଆକୃତି ଯଥା ହୋଇଛି ବର୍ଣ୍ଣନ ।
ତା ସବୁ ତବ ଶ୍ରୀମୁଖୁ କରିଣ ଶ୍ରବଣ
ଅବଶ୍ୟ ତୃପତ ହେଲା ଆଜ ମୋର ପ୍ରାଣ ।
ଶୁଦ୍ଧ ସତ୍ତ୍ୱ ସ୍ୱରୂପ ଯେ ବ୍ରହ୍ମା ବିଷ୍ଣୁ ହର
ଏମାନେ ଯେ ଅବିଦ୍ୟାର ବିଳାସ ମାତର ।
ତୁମ୍ଭର ଏହି ବଚନ ଶୁଣି ତପୋଧନ
ଭ୍ରମରେ ପଡ଼ିଣ ଘାଣ୍ଟି ହେଉଛି ମୋ ମନ ।
କୃପା କରି ଏହି ଭ୍ରମ ମୋର ଦୂର କର
ଚିର କାଳ ଋଣୀ ରହିଥିବି ତପୀବର ।
ବଶିଷ୍ଠ ବୋଲନ୍ତି ରାମ ବ୍ରହ୍ମା ହରିହର
ସଚ୍ଚିଦାନନ୍ଦ ସ୍ୱରୂପ ଅଟେ ତାହାଙ୍କର ।
ଉପାଧିଯୁକ୍ତ ସେମାନେ ଯେ ଯାଏ ନୁହନ୍ତି
ଜଗତେ ଜଡ଼ିତ ଯେ ପର୍ଯ୍ୟନ୍ତ ନୋହିଥାନ୍ତି ।
ଅବିମିଶ୍ରିତ ନିର୍ମଳ ସତ୍ତା ଧରି କରି
ଉପାଧିଶୂନ୍ୟ ଭାବରେ ସଞ୍ଚରଣ କରି ।
ଅବିଦ୍ୟା ବିଳାସେ ତେତେବେଳ ପରିଯନ୍ତ
କଉଣସି ମତେ ହେଲେ ନ ଥାନ୍ତି ଜଡ଼ିତ ।
ତେତେବେଳେ ଯାଏ ସେହି ବ୍ରହ୍ମା ବିଷ୍ଣୁ ଶିବ
ଶାନ୍ତି ନିର୍ବିକାର ଭାବେ କରିଥାନ୍ତି ଠାବ ।

ଜଳରୁ ନାନା ଆବର୍ତ୍ତ ତରଙ୍ଗ ଯେସନ
ଜଳର ବିକାର ମାତ୍ର ଅଟନ୍ତି ସେମାନ ।
ତେସନ ଆନନ୍ଦମୟ ସ୍ୱରୂପ ମଧ୍ୟରୁ
ବିକାର ରୂପ ମୂର୍ତ୍ତିଏ ନିର୍ଗତ ତହିଁରୁ ।
ସେହି ଯେ ସଂସାରାତ୍ମକ ମୂର୍ତ୍ତୀ ମହିମାରୁ
ଜଗତ ଅସ୍ତିତ୍ୱ ସର୍ବେ ବୁଝନ୍ତି ତହିଁରୁ ।
ଉପାଧି ଜଡ଼ିତ ପୁଣି ନାମ ଗୁଣାତ୍ମକ
ସ୍ୱତନ୍ତ୍ର ସେ କାହା ସହ ନାହିଁ ତା ସମ୍ପର୍କ ।
ନିର୍ଗୁଣ ବ୍ରହ୍ମଙ୍କ ଏହି ଗୁଣାତ୍ମିକ ସତ୍ତା
ସର୍ବଭୂତେଶ୍ୱର ସତ୍ୟ ସଙ୍କଳ୍ପ ଅବସ୍ଥା ।
ସୂକ୍ଷ୍ମ, ମଧ୍ୟ, ସ୍ଥୂଳ ଏହି ତ୍ରିବିଧ ଭାବରେ
ରହି ବିକାର ଅବସ୍ଥା ରୂପମାନ ଧରେ ।
ସଂସାରର ଆଦି ଉପାଦାନ ଯେଉଁ ମନ
ସୂକ୍ଷ୍ମ କଳ୍ପନା ଅଟଇ ଜାଣ ହେ ଶ୍ରୀରାମ ।
ହିରଣ୍ୟଗର୍ଭ ଯାହାକି ସୃଷ୍ଟିର କୌଶଳ
ମଧ୍ୟ କଳ୍ପନା ତା ନାମ ଜାଣ ରଘୁବୀର ।
ଏ ଯେ ବିପୁଳ ଜଗତ ଆକାର ଶରୀର
ତାହାର ସ୍ଥୂଳ କଳ୍ପନା କଉଶଲ୍ୟା ବାଳ ।
ସୂକ୍ଷ୍ମ, ମଧ୍ୟ, ସ୍ଥୂଳ ଏହି ତ୍ରିଅବସ୍ଥା ମାନ
ସତ୍ତ୍ୱ, ରଜ, ତମ ବୋଲି ବିଦିତ ସେମାନ ।
ଏହାର ହିଁ ଅନ୍ୟ ନାମ ଅଟଇ ପ୍ରକୃତି
ଅବିଦ୍ୟା ବୋଲାଇ ଏହି ତ୍ରିଗୁଣା ପ୍ରକୃତି ।
ଏହି ଅବିଦ୍ୟାରୁ ଜାତ ସକଳ ଜଗତ
ଚେତନ ବା ଅଚେତନ ଆଦି କରି ଯେତ ।
ଏ ବିଶାଳ ଅବିଦ୍ୟାର ଅପର ପାରରେ
ଚିଦାନନ୍ଦ ପରଂପଦ ରାଜେ ସ୍ୱଚ୍ଛନ୍ଦରେ ।
ସତ୍ତ୍ୱ, ରଜ, ତମ, ଗୁଣମାତ୍ରା ଭେଦ ଧରି
ତିନି ବିଧ ଅଟନ୍ତି ସେମାନେ ଯେଣୁକରି ।
ଗୁଣମୟୀ ଏ ଅବିଦ୍ୟା ନଅଟି ଭାଗରେ
ବିଭକ୍ତ ହୋଇ ଅଛଇ ଆହେ ରଘୁବୀରେ ।
ତେଣୁକରି ଯାହାକିଛି ଦୃଷ୍ଟିର ଗୋଚର
ଅବିଦ୍ୟାକୁ ଆଶ୍ରାକରି ରହନ୍ତି ସକଳ ।
ଋଷି, ମୁନି, ସିଦ୍ଧ, ବିଦ୍ୟାଧର, ନାଗଗଣ
ସେ ଅବିଦ୍ୟାର ସାତ୍ତ୍ୱିକ ଅଂଶରୁ ଉତ୍ପନ୍ନ ।
ଏ ସାତ୍ତ୍ୱିକ ଅଂଶେ ନାଗ ବିଦ୍ୟାଧରଗଣ
ତମଃ ପ୍ରଧାନ ଅଟନ୍ତି ହେ ରଘୁନନ୍ଦନ ।
ଋଷି, ମୁନି, ସିଦ୍ଧଗଣ ରଜଃପ୍ରଧାନରେ
ହରି, ହର ଆଦି ସତ୍ତ୍ୱପ୍ରଧାନ ଅଂଶରେ ।
ଅବିଦ୍ୟା ଦେବୀଙ୍କୁ କରି ଅଛନ୍ତି ଆଶ୍ରୟ
ଅବିଦ୍ୟା କାହାକୁ ଛାଡ଼ି ନହିଁ ରଘୁରାୟ ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ଦେବଗଣ
ସୂକ୍ଷ୍ମ କଳ୍ପନାର ଅନ୍ତର୍ଭୁକ୍ତ ବୋଲି ଜାଣ ।
ତେଣୁ କରି ସେମାନଙ୍କୁ ଅବିଦ୍ୟା ବିଳାସ
ଅନ୍ତର୍ଭୁକ୍ତ କରାଯାଇ ଅଛି ରଘୁଈଶ ।
ଅବିଦ୍ୟା ବିଳାସ ମଧ୍ୟେ ହୋଇଲେ ହେଁ ଗଣ୍ୟ
ସେମାନେ ସକଳେ ରାମ ଅଟନ୍ତି ମହାନ୍ ।
ସଚ୍ଚିଦାନନ୍ଦ ସ୍ୱରୂପ ନିର୍ମଳ ବ୍ରହ୍ମରେ
ଯେଣୁ ସର୍ବଦା ସଂଯୁକ୍ତ ସେମାନେ ତହିଁରେ ।
ହେଲେହେଁ ସେମାନେ ସୂକ୍ଷ୍ମ ଭାବରେ କଳ୍ପିତ
ଚୈତନ୍ୟ ତାଙ୍କର ନିର୍ବିକାର ରଘୁନାଥ ।
ପ୍ରକୃତି ସାତ୍ତ୍ୱିକ ଅଂଶ ହେଲେ ହେଁ ସେମାନେ
ଏ ତତ୍ତ୍ୱକୁ ବୁଝିପାରୁଥାନ୍ତି ଯେଉଁମାନେ
ସଂସାର ଭାବ ତାହାଙ୍କୁ ନ ଛୁଅଇଁ କେଭେଁ
ଜୀବନ ମୁକତ ସେହି ନ ଜନ୍ମନ୍ତି ଭବେ ।
ଏହି ବ୍ରହ୍ମା, ବିଷ୍ଣୁ, ଶିବ ଦେବଙ୍କ ପ୍ରଧାନ
ମୁକ୍ତ ପୁରୁଷ ହେ ରାମ ଅଟନ୍ତି ସେମାନ ।
ସୃଷ୍ଟି ପ୍ରଳୟ ପର୍ଯ୍ୟନ୍ତ ରହନ୍ତି ସେମାନେ
ପ୍ରଳୟେ ଦେହ ତେଜିଣ ମିଳିବେ ପରମେ ।
ଯଦିଓ ଅବିଦ୍ୟା ଅଂଶ ସେମାନେ ଅଟନ୍ତି
ତଥାପି ଜ୍ଞାନ ଆଧାର ବୋଲି ସେ ବୋଲାନ୍ତି ।
ବୀଜରୁ ଯେପରି ଫଳ, ଫଳୁ ପୁଣି ବୀଜ
ଅପର ଫଳ କାରଣ ହୁଏ ତାହା ହେଜ ।
ତେସନ ଏମାନେ ଜ୍ଞାନ, ଅଜ୍ଞାନ ଆକାରେ
ଉଭୟ ଭାବେ ବିରାଜମାନ କାଳେ କାଳେ ।
ଜଳରୁ ତରଙ୍ଗ ଜନ୍ମି ତହିଁରେ ବିଲୀନ
ଜ୍ଞାନରୁ ଅଜ୍ଞାନ ଜନ୍ମି ଜ୍ଞାନେ ହୁଏ ଲୀନ ।
ଜଳୁ ତରଙ୍ଗ ଯେସନ ହୁଏ ଉତପନ୍ନ
ହରି ହରଙ୍କ ଶରୀର ହୁଅଇ ତେସନ ।
ଶରୀର ଧରିବା ଜାଣ ଜଳର ତରଙ୍ଗ
ଜଳେ ତରଙ୍ଗ ସଦୃଶ ବ୍ରହ୍ମେ ତାଙ୍କ ଅଙ୍ଗ ।
ହରି ହରଙ୍କରଠାରୁ ଆରମ୍ଭ କରିଣ
କୃମି କୀଟ ପରିଯନ୍ତେ ଯେତେ ପ୍ରାଣୀଗଣ ।

ନିଜକୁ ବ୍ରହ୍ମଙ୍କଠାରୁ ମଣନ୍ତି ପୃଥକ
ଦ୍ୱୈତ ଭାବ ତା କରିଣ ବୋଲି ମନେରଖ ।
ଏ ଦ୍ୱୈତ ଭାବନା ଯେବେ କରେ ପରିହାର
ଏକତ୍ୱର ଉପଲବ୍ଧି ଆସଇ ତାହାର ।
ଜ୍ଞାନ ଅଜ୍ଞାନ ମଧ୍ୟରେ ଯେ ପାର୍ଥକ୍ୟ ବୋଧ
ଏହି ଦ୍ୱୈତ ଭାବନାର ଫଳ ରାମଚନ୍ଦ୍ର ।
ପୃଥକ ଭାବନା ଯେଣୁ ଅଛି ବସ୍ତୁ ପାଇଁ
ଜଳ ତରଙ୍ଗ ପୃଥକ ବୋଲି ମନେ ହୋଇ ।
ବାସ୍ତବିକ ଜାଣ ରାମ ମୋର କହିବାରେ
କିଛି ଭେଦ ନାହିଁ ଜଳ ତରଙ୍ଗ ମଧ୍ୟରେ ।
ଜ୍ଞାନ ବା ଅଜ୍ଞାନ ବୋଲି ଭବେ କିଛି ନାହିଁ
ଜ୍ଞାନ ଅଜ୍ଞାନ ଛାଡ଼ିଲେ ଯା'କିଛି ରହଇ,
କେବଳ ସେହି ଅଛଇ ଅନ୍ୟ କିଛି ନାହିଁ
ତହାକୁ ବୁଝାଇବାକୁ ସଂଜ୍ଞା ଅଛି କାହିଁ ?
ଜ୍ଞାନ ନାହିଁ କି ଅଜ୍ଞାନ ନାହିଁ ଏ ସଂସାରେ
ଯାହା ଅଛି ତହିଁ ଲୀନ ହୁଅ ରଘୁବୀରେ ।
କି ରୂପ ହୋଇ ପାରଇ ତେବେ ସେ ବସ୍ତୁର
ଚୈତନ୍ୟ ସଂବିତ୍ ରୂପେ ଛନ୍ତି ଯେ ସଂସାର ।
ସେହି ଏକା ସେହି ବସ୍ତୁଜାଣ ହେ ଶ୍ରୀରାମ
ସେହି ରୂପ ତାହାଙ୍କର ଯେପରି ଚୈତନ୍ୟ ।
ତେଣୁ ବୁଝାଯାଏ ଜ୍ଞାନ ବ୍ୟତୀତ ଅଜ୍ଞାନ
ସମ୍ଭବ ନୁହଇ ତାହା ହେବାକୁ ଉତ୍ପନ୍ନ ।
ପୁଣି ଜ୍ଞାନର ନିକଟେ ଅଜ୍ଞାନର ସ୍ଥାନ
କେବେ ହେଁ ସମ୍ଭବ ନୁହେ ହେ ରଘୁନନ୍ଦନ ।
ସୂର୍ଯ୍ୟଙ୍କ ଅଭାବେ ଯଥା ଛାୟା ସ୍ଥିତି ନାହିଁ
ପୁଣି ସୂର୍ଯ୍ୟ ସମ୍ମୁଖେ ତା ତିଷ୍ଠି ନ ପାରଇ ।
ଆତପ ଓ ଛାୟା ପରି ଜ୍ଞାନ ଓ ଅଜ୍ଞାନ
ଅଜ୍ଞାନ ହୃଦ ମଧ୍ୟରୁ ଯେବେ ହୁଏ ଲୀନ ।
ଅଜ୍ଞାନ ବିଳାସ ଏହି ଦ୍ୱୈତ କଳପନା
ତେବେ ଦୂର ହୋଇଯାଏ ଆହେ ମହାମନା ।
ଦ୍ୱୈତ କଳ୍ପନା ଅଭାବେ ଜ୍ଞାନର ଅଭାବ
ଜ୍ଞାନ ଅଜ୍ଞାନ ଅଭାବେ ଯା କିଛି ରହିବ ।
ନାମଂବା ଉପାଧି କିଛି ନାହିଁ ତାହାଙ୍କର
ସକଳଙ୍କ ଲାଭ୍ୟ ସେହି ସବୁରି ଉପର ।
ଜ୍ଞାନବୋଲି ମନେ କରନାହିଁ ତାଙ୍କୁ ରାମ
ଅବିଦ୍ୟା ବିଳାସ ଜ୍ଞାନ ନାମଟି ହିଁ ଜାଣ ।

ଅବିଦ୍ୟାର ଐକାନ୍ତିକ ବିଲୟରେ ରାମ
ଅବଶ୍ୟମ୍ଭାବୀ ଜ୍ଞାନର ବିଲୟଟି ଜାଣ ।
ଏହି ଅବସ୍ଥାରେ ଯାହା ରହିଗଲା ରାମ
ଦେଇ ନ ପାରିବା ତାକୁ କଉଣସି ନାମ ।
ଅଥଚ ଏହି ବିପୁଳ ସଂସାର ମଧ୍ୟର
ତାଙ୍କ ବିନା ଅନ୍ୟ କେହି ନାହିଁ ରଘୁବୀରେ ।
ଯା କିଛି ଦେଖୁଛ, ପୁଣି ଯାହା ଜ୍ଞାନାତୀତ
ସେ ସମସ୍ତ ତାଙ୍କ ମଧ୍ୟେଛନ୍ତି ଅବସ୍ଥିତ ।
ବୀଜମଧ୍ୟେ ବଟବୃକ୍ଷ ଥାଏ ଲୁକ୍କାୟିତ
କିନ୍ତୁ ବୀଜ ମଧ୍ୟେ ତାହା ନୁହେଁ ଦୃଷ୍ଟିଗତ ।
ମାତ୍ର ପାଦପର ସେହି ନାସ୍ତିତ୍ୱ ମଧ୍ୟରେ
ଅସ୍ତିତ୍ୱର ପରିଜ୍ଞାନ ଯଥା ଉଇଁପାରେ,
ସେ ପରି ତା ମଧ୍ୟେ ସର୍ବାସ୍ତିତ୍ୱ ସମବତେ
ହୋଇ ରହିଅଛି ଜାଣ ଆହେ ରଘୁନାଥ ।
ଅଗ୍ନିରୁ ସ୍ଫୁଲିଙ୍ଗ କିମ୍ବା ତପନୁ କିରଣ
ନିର୍ଗତ ହେଉ ଅଛଇ ଯଥା ଅନୁକ୍ଷଣ ।
ସେହିପରି ତାଙ୍କଠାରୁ ଏହି ଯେ ସଂସାର
ନିର୍ଗତ ହୋଇ ପଡ଼ଇ ଦଶରଥ ବାଳ ।
ତେଣୁ ହେ ଶ୍ରୀରାମ ଯାହାକିଛି ଦେଖୁଅଛ
ତାଙ୍କ ଛଡ଼ା ଅନ୍ୟକିଛି ନୁହେଁ ରଘୁବଂଶ ।
ଯାହାକିଛି ଏ ଜଗତେ ପଡ଼େ ତୁମ ନେତ୍ର
ତା ବାହାରେ ବା ଭିତରେ ସେହି ବିରାଜିତ ।
ଘଟ ମଧ୍ୟେ ଥାଇ ଯଥା ଏହି ମହାକାଶ
ପରିଚିତ ହୋଇଥାଏ ନାମେ ଘଟାକାଶ ।
ସେହି ଘଟାକାଶ ଯେଣୁ ଅଟେ ମହାକାଶ
ଅବିନାଶୀ ରୂପେ ସଦା ତାର ପରକାଶ ।
ସେହିରୂପ ସେ ସଦ୍‌ବସ୍ତୁ ଜଗତ ଆକାରେ
ପରିଣତ ହୋଇଲେ ହେଁ ଆହେ ରଘୁବୀରେ ।
ସଦବସ୍ତୁ ହେତୁ ସେହୁ ଅଟନ୍ତି ଯେ ନିତ୍ୟ
ତାଙ୍କଠାରେ ବିଦ୍ୟମାନ ଜଗତ କର୍ତ୍ତୃତ୍ୱ ।
ସେ ଅଟନ୍ତି ସେହି ସ୍ଥିର ନିଷ୍କ୍ରିୟ ଓ ନିତ୍ୟ
ଜଗତର ହର୍ତ୍ତାକର୍ତ୍ତା ସେହି ଏକ ମାତ୍ର ।
ଏହି ଅଚେତନ ଦେହ ତାଙ୍କ ସତ୍ତାବଳେ
ସଚେତନ ରୂପ ଧରି ଖେଳେ ମହୀତଳେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ଅବିଦ୍ୟା ଲତା ବିଳାସ ବର୍ଣ୍ଣନେ ନାମ ସପ୍ତମ ସର୍ଗଃ**

❑

# ଅଷ୍ଟମ ସର୍ଗଃ
# ଅବିଦ୍ୟା ନିରାକରଣ

ବଶିଷ୍ଠ ବୋଲନ୍ତି ଶୁଣ ଆହେ ରଘୁନାଥ
ସ୍ଥାବର ଜଙ୍ଗମମୟ ଏହି ଯେ ଜଗତ ।
କିଛିମାତ୍ର ସତ୍ତା ତାର ନାହିଁ ବୋଲି ଜାଣ
ଖାଲି କଳ୍ପନା ବିଳାସ ହେ ରଘୁନନ୍ଦନ ।
ଅସ୍ତିତ୍ୱ ଅବା ନାସ୍ତିତ୍ୱ ଯାର କିଛି ନାହିଁ
ତାହାପାଇଁ ଏତେ ଚିନ୍ତା କିମ୍ପା ରଘୁସାଇଁ ।
ଏ ସଂସାରେ ଯାହାସହ ଯେପରି ସମ୍ବନ୍ଧ
ସ୍ଥାପନ କରିଅଛ ହେ ରଘୁକୁଳାନନ୍ଦ ।
ମାତ୍ର ସେ ସଂସାର କିମ୍ବା ସେହି ବ୍ୟକ୍ତିମାନ
ବୁଝିବାକୁ ଗଲେ କିଛି ନୁହନ୍ତି ସେମାନ ।
ସେହି ସମ୍ବନ୍ଧ ଜନିତ ଯେ ହୃଦୟ ବୃତ୍ତି
ଯାହା ଅଟେ ଜ୍ଞାନ ବୋଲି ତୁମ ଅନୁଭୂତି ।
କେବଳ ତା ଭ୍ରମ ମାତ୍ର ଜାଣହେ ଶ୍ରୀରାମ
ପ୍ରକୃତ ଜ୍ଞାନକୁ ବାଧାଦିଏ ସେହି ଭ୍ରମ ।
ରଜ୍ଜୁକୁ ଉରଗ ମଣି କି ଜାତି ତାହାର
ଜାଣିବାକୁ ଯାଇ ଶେଷେ ହୁଅନ୍ତି ନିଷ୍ଫଳ ।
ସେହିପରି ତୁମ ଏହି ସମ୍ବନ୍ଧ ସ୍ଥାପନ
ଜାଣିରଖ ରାମ ତାହା ଏହିପରି ଭ୍ରମ ।
ଜୀବଜନ୍ତୁ ରହିଛନ୍ତି ଏରୂପ ଅଜ୍ଞାନ
ଯେତେବେଳେ ଥାଏ ଆତ୍ମା ଏ ଭାବେ ଆଚ୍ଛନ୍ନ ।
ଅବିଦ୍ୟା ଅଟଇ ତାତ୍‌କାଳିକ ଚିତ୍ତ ନାମ
ଯେତେବେଳେ ସେ ଅବିଦ୍ୟା ହୁଏ ତିରୋଧାନ,
ସେତେବେଳେ ଆତ୍ମା ହେବ ସେ ଚିତ୍ତର ନାମ
ଭ୍ରମର ଅସ୍ତିତ୍ୱ ତହିଁ ନ ଥିବ ହେ ରାମ ।
ଭ୍ରମ ବଶେ ରଜ୍ଜୁଠାରେ ହୁଏ ସର୍ପଜ୍ଞାନ
ତେଣୁ ସଂସାର ଅଟଇ ସେହି ଚିତ୍ତନାମ ।
ସେହି ଚିତ୍ତ ବିନାଶରେ ସଂସାର ବିନାଶ
ସଂସାର ବିନାଶ ହେଲେ ତୁଟେ ସର୍ବକ୍ଳେଶ ।
ଘଟଥିଲେ ଘଟାକାଶ ଯେପରି ସମ୍ଭବ
ଭ୍ରାନ୍ତ ଚିତ୍ତ ଥିବାଯାଏ ସଂସାର ରହିବ ।
ବାସ୍ତବିକ ଆହେ ରାମ ଆତ୍ମା ନିର୍ବିକାର
ଭ୍ରାନ୍ତିମୟ ଚିତ୍ତଦେଖେ ଆତ୍ମାରେ ବିକାର ।
ଶ୍ରୀରାମ କହନ୍ତି ଶୁଣ ଆହେ ତପୋଧନ
ସ୍ଥାବର ଜଙ୍ଗମ ଭବ ଅଜ୍ଞାନରେ ପୂର୍ଣ୍ଣ ।
ତବ ସୁଦୟାରୁ ଲଭି ପାରିଲି ଏ ଜ୍ଞାନ
କିନ୍ତୁ ଏହି ବିଷୟଟି ଘାଣ୍ଟେ ମୋର ମନ ।
ଜ୍ଞାନର ପୂର୍ଣ୍ଣ ଅଭାବ ହେଲେ ସେ ଅଜ୍ଞାନ
ସ୍ଥାବର ମୂରତି ଧରି କଲେ ଅବସ୍ଥାନ ।
କିପରି ହୋଇବ ସେହି ଅଜ୍ଞାନର ରୂପ
ବୁଝି ନ ପାରଇ ତାହା ଆହେ ଜ୍ଞାନାଧିପ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଯଦ୍ୟପି ମନନ ଶକ୍ତି ଥାଏ ସ୍ଥାବରର ।
ମନନ ଶୂନ୍ୟ ସେ ରହିଥାଏ ସଦାକାଳେ
ତା ଚିତ୍ତ ଆସକ୍ତି ଥାଏ ବିମୂଢ଼ାବସ୍ଥାରେ ।
ତେଣୁ ମୁକ୍ତିଠାରୁ ବହୁଦୂରେ ସେ ରହନ୍ତି
କିନ୍ତୁ ତାଙ୍କଠାରେ ଥାଏ ମନନ ଶକତି ।
ଶ୍ରୀରାମ ପୁଚ୍ଛନ୍ତି ପୁଣି ଆହେ ତପୋଧନ
ଜ୍ଞାନ ଅଜ୍ଞାନ ଉଭୟ ଅବସ୍ଥା ତେଜିଣ,
ସତ୍ତାମାତ୍ର ଅବସ୍ଥାରେ ଯାଙ୍କ ଅବସ୍ଥାନ
ମୁକ୍ତିଲାଭ କରିଆଛି ସେହି ମହାଜନ ।
ସତ୍ତା ମାତ୍ର ଅବସ୍ଥାରେ ସ୍ଥାବରର ଚିତ୍ତ
ଥାଇଁ କି ପାଇଁ ନୋହିବ ମୁକ୍ତି ପରାପତ ?
କହନ୍ତି ବଶିଷ୍ଠ ଶୁଣ ହେ ରଘୁକୁମର
ଧରି ନେଉଛି ମୁଁ ତୁମେ ଏହା କହିପାର ।
ଅଜ୍ଞାନ ଜ୍ଞାନ ବିହୀନ ତଟସ୍ଥ ଅବସ୍ଥା
ସେ ଅବସ୍ଥା ମୁକ୍ତି ସତ୍ୟ ଆହେ ଧନୁ ହସ୍ତା ।
ଜ୍ଞାନ ଓ ବିଚାର ବଳେ ଯେବେ ସେ ମୁକତି
ସମ୍ୟକ ଦର୍ଶନ ଦ୍ୱାରା ହୁଏ ପରପତି ।
ମୁକ୍ତି ପଦବାଚ୍ୟ ତାହା ତେତେବେଳେ ଜାଣ
ତଟସ୍ଥ ଅବସ୍ଥା ଯାକି ଜ୍ଞାନାଜ୍ଞାନହୀନ ।
ସତ୍ତା ମାତ୍ର ଅବସ୍ଥାକୁ ହୋଇଲେ ହେଁ ପ୍ରାପ୍ତ
ଭ୍ରାନ୍ତି ଭିନ୍ନ ଅନ୍ୟ କିଛି ନୁହେଁ ରଘୁସୁତ ।
ସୁବିଚାରେ ବାସନାକୁ କଲେ ପରିତ୍ୟାଗ
ପ୍ରକୃତ ପରିତ୍ୟାଗ ତା ଜାଣ ମହାଭାଗ ।
ତହୁଁ ଯେ ସତ୍ତା ସାମାନ୍ୟବସ୍ଥା ଲଭେ ଚିତ୍ତ
କୈବଲ୍ୟ କହନ୍ତି ତାକୁ ଜ୍ଞାନୀଙ୍କ ଜଗତ ।
ଚିତ୍ତର ଏହି ଯେ ରାମ କୈବଲ୍ୟ ଅବସ୍ଥା
ଯେପରି ତା ଲାଭ ହୁଏ ଶୁଣ ସେହି ବାର୍ତ୍ତା ।
ସାଧୁ ସଙ୍ଗ, ସୁବିଚାର, ଶାସ୍ତ୍ରାନୁଶୀଳନ
ଅଧ୍ୟାତ୍ମ ଚିନ୍ତନ ଆଦି ନାନାନୁସନ୍ଧାନ ।

କୈବଲ୍ୟ ଲାଭରେ ଏହମାନେ ହିଁ ସୋପାନ
ସ୍ଥାବର ମାନେତ ଏହା ନ କରନ୍ତି ରାମ ।
ତାହାଙ୍କର ଯେଉଁ ସତ୍ତାମାତ୍ର ଅବସ୍ଥାନ
ସୁପ୍ତ, ବୋଧହୀନ, ଭ୍ରମାବଦ୍ଧ ଗତି ଶୂନ୍ୟ ।
ବୀଜସ୍ଥ ଅଙ୍କୁର ପରି ତାଙ୍କର ବାସନା
ଯେଣୁ ଲୁପ୍ତ ଭାବେ ଥାଏ ରାମ ମହାମନା ।
ମୁକ୍ତିର କାରଣ ତାହା ନୋହି ହେ ଶ୍ରୀରାମ
ପୁନଃ ପୁନଃ ଜନମର ହୁଅଇ କାରଣ ।
ଏହି ଯେ ବୃକ୍ଷ ଲତାଦି ଅଟନ୍ତି ସ୍ଥାବର
ପ୍ରତୀତ ହୁଏ ଚୈତନ୍ୟ ନ ଥିବା ତାଙ୍କର ।
କିନ୍ତୁ ସେମାନଙ୍କ ଥାଏ ଯେ ବାସନାମାନ
ଲୁପ୍ତ ଓ ନିଷ୍କ୍ରିୟ ଭାବେ ତାଙ୍କ ଅବସ୍ଥାନ ।
ମୁକ୍ତ ଅବସ୍ଥା ସଦୃଶ ହେଲେ ହେଁ ପ୍ରତୀତ
ଦୁଃଖମୟ ଜନ୍ମପ୍ରଦ ତାହା ରଘୁନାଥ ।
ଜଡ଼ ଧର୍ମୀ ଅଟନ୍ତି ଯେ ସ୍ଥାବର ସକଳ
ସ୍ୱାଭାବିକ ସୁପ୍ତାବସ୍ଥା ଥାଏ ତାହାଙ୍କର ।
ତଥାପି ସେମାନେ ପୁନଃ ପୁନଃ ଜନମନ୍ତି
ବାସନାରୁ ଫଳ ପୁଷ୍ପ ଧରି ଶୋଭା ପାନ୍ତି ।
ବାସନା ବିହୀନ ହେଲେ ସେହି ବୃକ୍ଷଗଣ
ଫଳ ପୁଷ୍ପ କରି ନ ପାରନ୍ତେ ସେ ଧାରଣ ।
ବୃକ୍ଷଙ୍କର ପୁନର୍ଜନ୍ମ ବୀଜ ଭାବମାନ
ଏହି ବାସନାରୁ ଜାଣ ହୁଅଇ ଉତ୍ପନ୍ନ ।
ଘଟର ଅସ୍ତିତ୍ୱ ଥାଏ ମୃତ୍ତିକା ମଧ୍ୟରେ
ମୃର୍ତ୍ତିକା ରୂପାନ୍ତେ ଘଟ ଜନ୍ମ ଲାଭ କରେ ।
ସେହିପରି ବୃକ୍ଷ ମଧ୍ୟେ ଥିବାରୁ ବାସନା
ପୁନଃ ପୁନଃ ଜରା ଜନ୍ମ ଘଟେ ତାଙ୍କ ସିନା ।
ସୁଷୁପ୍ତି ଅବସ୍ଥା ମାତ୍ରେ ମୁକ୍ତି ନ ବୋଲାଇ
ଯେ ସୁଷୁପ୍ତିରେ ବାସନା ବୀଜାକାରେ ଥାଇ
ଏକାନ୍ତ ପ୍ରତିବନ୍ଧକ ସିଦ୍ଧିର ସେ ଜାଣ
ସୁପ୍ତଭାବେ ବାସନାର ତହିଁ ଅବସ୍ଥାନ ।
ଦଗ୍ଧ ବୀଜ ପରି ଯହିଁ ବାସନା ରହଇ
ସିଦ୍ଧି ଦିଏ ସେ ସୁଷୁପ୍ତି ଜାଣ ରଘୁରାଇ ।
ବିଷ, ବହ୍ନି, ଶତ୍ରୁ, ବ୍ୟାଧି, ଋଣ ଓ ବାସନା
କ୍ଷୀଣ ମାତ୍ରେ ଥିଲେ ଦ୍ୟନ୍ତି ଅଶେଷ ଯନ୍ତ୍ରଣା ।
ବାସନାମାନଙ୍କୁ ଦଗ୍ଧ କରି ଜ୍ଞାନାଗ୍ନିରେ
ସତ୍ତା ସାମାନ୍ୟେ ଆରଢ଼ ଯେହୁ ହୋଇପାରେ ।

ଏ ଶରୀର ଥାଉ ଅବା ନ ଥାଉ ତାହାର
ପୁନର୍ବାର ଦୁଃଖ ଭାଗୀ ନୁହଇ ସେ ନର ।
ସ୍ଥାବର ମାନଙ୍କ ଚଇତନ୍ୟ କି ପ୍ରକାର
ଅଜ୍ଞାନଜ ବାସନା ଯେ କି ରୂପ ତାହାର,
ଉଠାଇ ପାର ହେ ରାମ ତୁମେ ଏହି ପ୍ରଶ୍ନ
ତାହା ମୁଁ କହୁଛି ଏବେ ଶୁଣ ଦେଇ ମନ ।
ବୃକ୍ଷମାନେ କ୍ରମେ କ୍ରମେ ବିକାଶ ଲଭିଣ
ନାନାଦି ଅବସ୍ଥା କରୁଥାନ୍ତି ଅତିକ୍ରମ ।
ଅନ୍ତରସ୍ଥ ରସ ଆକର୍ଷଣ ଶକ୍ତି ବଳେ
ଏହି ଯେ ଅବସ୍ଥାନ୍ତର ମାନ ଘଟିଚ୍ଛଲେ ।
ଜୀବର ଅଜ୍ଞାନାଛନ୍ନ ଯେ ଚିତ୍‌ଶକତି
ଅବିକଳ ଏହି କାର୍ଯ୍ୟ କରୁଥାଏ ନିତି ।
ଯେ ସବୁ ବାସନା ସେହୁ ପ୍ରସବ କରଇ
ତଦ୍ୱାରା ଅବସ୍ଥାନ୍ତର ଜୀବ ଲଭୁଥାଇ ।
ବୃକ୍ଷମାନଙ୍କର ମଧ୍ୟ ଅନ୍ତର ଦେଶରେ
ବାସନା-ମୟୀ ଚିତ୍‌ଶକ୍ତି ଅବସ୍ଥାନ କରେ ।
ଏକ ଅବସ୍ଥାରୁ ଅନ୍ୟ ଅବସ୍ଥାକୁ ରାମ
ସେମାନଙ୍କୁ ଚ୍ଛଳିନିଏ ସେହି ଶକ୍ତି ଜାଣ ।
ବସ୍ତୁମାନଙ୍କର ଯାକି ନିଜ ନିଜ ଧର୍ମ
ଚିତ୍ ଶକତି ଅଟଇ ତାହାର ହିଁ ନାମ ।
ସେ ଧର୍ମ ନଥିଲେ ତାର ନଥାଇ ଉପାଧି
ଉପାଧି ଶୂନ୍ୟତା ତାର ସାର ରଘୁନିଧି ।
ବସ୍ତୁର ଧରମ ଥିଲେ ଅଛି ତା ଉପାଧି
ଅସାର, ଅଜ୍ଞାନ ଜାଣ ତାହା ରଘୁନିଧି ।
ସେହି ଅଜ୍ଞାନହିଁ ଜାଣ ଅଟେ ଚିତ୍‌ଶକ୍ତି
ବସ୍ତୁର ବସ୍ତୁତ୍ୱ ଦିଏ ସେ ଚିତ୍‌ଶକତି ।
ଏ ସଂସାରେ ଅଛି ଯାର କିଛିହିଁ ଅସ୍ତିତ୍ୱ
ଧର୍ମରୂପେ ଚିତ୍‌ଶକ୍ତି ତହିଁ ଉପସ୍ଥିତ ।
ତେଣୁ ଏ ଚିତ୍ ଶକ୍ତିର ସ୍ଥିତି ଏ ଜଗତେ
କାହିଁ ହେଲେ ତା ଅଭାବ ନାହିଁ ରଘୁପତେ ।
ଅନନ୍ତ ରୂପମୟୀ ଏ ଏକ ଚିତ୍‌ଶକ୍ତି
ସକଳ ପଦାର୍ଥେ ସତ୍ତାରୂପେ ବିରାଜନ୍ତି ।
ଜଡ଼େ ଜାଡ୍ୟ ପୁଣି ସେହି ଉଲ୍ଲାସେ ଉଲ୍ଲାସ
କଠିନରେ କାଠିନ୍ୟତା ତାହାର ବିକାଶ ।
ତୀକ୍ଷ୍ଣରେ ତୀକ୍ଷ୍ଣତା ସେହି ଘଟରେ ଘଟତ୍ୱ
ଆଲୋକରେ ଉଜ୍ଜ୍ୱଳତା ପଟରେ ପଟତ୍ୱ ।

ଚିତ୍‌ଶକ୍ତି ସର୍ବମୟୀ ସର୍ବତ୍ର ବିରାଜେ
ତୁମେ ଏବେ ବୁଝିରଖ ଆହେ ରଘୁରାଜେ ।
ଏ ବିଶାଳ ବ୍ରହ୍ମାଣ୍ଡରେ ଯାହାକିଛି ଅଛି
ସକଳ ଚୈତନ୍ୟମୟ ଜାଣ ରଘୁବଂଶି ।
ସେଇ ଏକ ସର୍ବଶୂନ୍ୟ ଚିନ୍ମୟ ଆତ୍ମା
ତାହା ଭିନ୍ନ ଜଗତରେ ନାହିଁ ଅନ୍ୟସତ୍ତା ।
ସର୍ବସ୍ୱରୂପିଣୀ ଅଟେ ଯେଉଁ ଚିତ୍‌ଶକ୍ତି
ଯଦିଓ ଯଥାର୍ଥ ପରି ତାହାର ପ୍ରତୀତି ।
ବୁଝିବାକୁ ଗଲେ ତାହା ଅଟଇ ଅଳୀକ
ଯେଣୁ ଏ ସାରା ଜଗତ କଳପନାତ୍ମକ ।
ଚିତ୍‌ଶକ୍ତି ସ୍ୱରୂପିଣୀ ଏହି ଆତ୍ମଦୃଷ୍ଟି
ଉପଯୁକ୍ତ ଭାବେ ତହିଁ ତ ହେଲେ ପ୍ରତୀତି ।
ସଂସାର ଭ୍ରମକୁ କରିଥାଏ ଉତପନ୍ନ
ଉପଯୁକ୍ତ ଭାବେ କଲେ ତା ଅବଲମ୍ବନ,
ତେବେ ସଂସାର ଦୁଃଖର ଘଟେ ଅବସାନ
ଭବ ଦୁଃଖ ପ୍ରତିକାର ଏହା ହେ ଶ୍ରୀରାମ ।
ଏହି ଦୃଷ୍ଟିରେ ତାହାକୁ ନ କଲେ ଦର୍ଶନ
ବିଜ୍ଞଙ୍କ ମତେ ତା ଅସମ୍ୟକ୍ ଦରଶନ ।
ଆସମ୍ୟକ ଦରଶନ ଅବିଦ୍ୟା ସମାନ
ଜଗତ୍ ଦର୍ଶନ କାରଣ ଅବିଦ୍ୟାକୁ ଜାଣ ।
ଅବିଦ୍ୟା ଆକୃତି ଏହି ଜଗତ ସଂସାର
ତାହା ଯେ ଏକାନ୍ତ ଭ୍ରମ ଜାଣ ରଘୁବୀର ।
ଏହି ଭ୍ରମ ଯେତେବେଳେ ହୁଏ ଅନୁଭୂତ
ସଙ୍ଗେ ସଙ୍ଗେ ଅବିଦ୍ୟା ଯେ ହୁଏ ତୀରୋହିତ ।
କୌଣସି ବସ୍ତୁ ନୁହଇ ଏହି ଯେ ସଂସାର
ଏହି ଦୃଢ଼ ଜ୍ଞାନ ଯଦି ଜନମେ ମନର ।
ଆଲୋକ ନିକଟେ ଅନ୍ଧକାର ଯେଉଁପରି
କୁଆଡ଼େ ଉଭେଇଯାଏ ଅବିଦ୍ୟା ସେପରି ।
ଭ୍ରାନ୍ତିରୁ ଅବିଦ୍ୟା ବସ୍ତୁରୂପରେ ପ୍ରତୀତ
କୌଣସି ବସ୍ତୁ ସେ ନୁହେଁ ଏକଥା ପ୍ରକୃତ ।
ରକତ ମାଂସରେ ଗଢ଼ା ଶରୀର ମଧ୍ୟରେ
"ମୁଁ କିଏ" ଏକଥା ଭଲ କରି ନିରେଖିଲେ ।
ସେ ଅବିଦ୍ୟା ପଳାଇବ ନ ପାଇଣ ବାଟ
ତାହା ହେଲେ ଜୀବ ଆଉ ନୁହେଁ ଛଟପଟ ।
ବିଚାର ସକ୍ଷମ ଚିତ୍ତ ଏହି ଜଗତକୁ
ରୂପ ବିହୀନ ଜାଣିଣ ତେଜିବ ସେ ତାକୁ ।
ସେତେବେଳେ ଜଗତର ଯେ ବିଲୀନ ଭାବ
ଜ୍ଞାନୀଙ୍କ ମତରେ ତାହା ଅବିଦ୍ୟା ଅଭାବ ।
ଅବିଦ୍ୟାର କ୍ଷୟ, ଜଗତର ବିଲୀନତା
ହେ ରାମ ବୁଝିବ ତାହା ଅଟେ ଏକା କଥା ।
ସେହି ଏକ କଥା ସତ୍ୟ ସେହି ଜାଣ ବ୍ରହ୍ମ
ସବୁରି ଉପାଦେୟ ସେ ଜାଣ ରଘୁରାମ ।
ଏହି ସଂସାର ମଧ୍ୟରେ ଅବିଦ୍ୟା ଅସ୍ତିତ୍ୱ
ଏକବାରେ ନାହିଁ ଜାଣ ଆହେ ରଘୁନାଥ ।
ଯାହା କିଛି ତୁମେ ରାମ କରୁଛ ଦର୍ଶନ
ପୂର୍ଣ୍ଣବ୍ରହ୍ମ ବ୍ୟତୀତ ସେ ନୁହେଁ କିଛି ଆନ ।
ସତ ଅସତ କଳ୍ପନାମୟ ଏ ଜଗତ
ସେହି ବ୍ରହ୍ମ କରିଛନ୍ତି ତାକୁ ଆଚ୍ଛାଦିତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଅବିଦ୍ୟା ନିରାକରଣ ନାମ ଅଷ୍ଟମ ସର୍ଗଃ**



## ନବମ ସର୍ଗଃ

## ଜୀବନ ମୁକ୍ତ ନିଶ୍ଚୟ ଉପଦେଶ

ବଶିଷ୍ଠ କହନ୍ତି ଏବେ ଶୁଣ ରଘୁବୀର
ବାରମ୍ବାର ଯେବେ ଅନୁଶୀଳନ ନ କର ।
ଆତ୍ମଭାବର କେବେହେଁ ନୋହିବ ବିକାଶ
ଆତ୍ମବିକାଶ ଅଭାବେ ସର୍ବଦା ହତାଶ ।
ପୂର୍ବ ଜନ୍ମମାନଙ୍କର ସଞ୍ଚିତ ଅଜ୍ଞାନ
ଦୃଢ଼ଭାବେ ହୃଦେ କରିଥାଏ ଅବସ୍ଥାନ ।
ଅନ୍ତରେ ବାହାରେ ସରବଦା ସେ ଅଜ୍ଞାନ
ଅନୁଭୂତ ହେଉଥାଏ ହେ ରଘୁନନ୍ଦନ ।
ଅଜ୍ଞାନଜ ଏହିପରି ବହୁ ବାଧାମାନ
ଯେଣୁକରି ମନ ମଧ୍ୟେ କରେ ଅବସ୍ଥାନ,
ମାନବ ପକ୍ଷରେ ସେହି ଆତ୍ମଜ୍ଞାନ ଲାଭ
ଅତୀବ ଦୁର୍ଲ୍ଲଭ ବୋଲି ଜାଣିବ ରାଘବ ।
ତେଣୁ କରି ବାରମ୍ବାର ପୁଣି ନିରନ୍ତର
ଅନୁଶୀଳନ ନ କର ଯେବେ ରଘୁବୀର ।
ସମ୍ଭବପର ନୋହିବ କେଉଁ ଆତ୍ମଜ୍ଞାନ
ବୁଝିରଖ ଏହା ତୁମେ କୌଶଲ୍ୟାନନ୍ଦନ ।
ତେଣୁ ହେ ଶ୍ରୀରାମ ଆତ୍ମଜ୍ଞାନ ଲାଭ ପାଇଁ
ହୃଦୟ ବୃକ୍ଷେ ଯେବଣ ଅବିଦ୍ୟା ଲଟାଇ,

ବହୁକାଳରୁ ବର୍ଦ୍ଧିତ ଅବିଦ୍ୟା ଲତାକୁ
ଜ୍ଞାନ ଖଡ୍‌ଗରେ ଛେଦନ କରୁଥିବ ତାକୁ ।
ବାରମ୍ବାର ନିରନ୍ତର ଏ ଅଭ୍ୟାସ କଲେ
ଆତ୍ମଜ୍ଞାନ ଲାଭ କରିପାରେ ଜୀବ ଭଲେ ।
ହେଲେହେଁ ତା ନରପକ୍ଷେ ଅତୀବ ଦୁଃସାଧ
ପୁନଃ ପୁନଃ ଚେଷ୍ଟା କଲେ ନୁହଇ ଅସାଧ ।
ସକଳ ତତ୍ତ୍ୱ ବୁଝିଣ ଜନକ ରାଜନ
ସଂସାରେ ଯେବଣ ଭାବେ କଲେ ବିଚରଣ ।
ସେହିପରି ତୁମେ ଆତ୍ମବୋଧ ଅନୁସରି
ପରମ ସୁଖେ ବିହାର କର ଧନୁର୍ଦ୍ଧାରୀ ।
କିପରି ଦିନ କାଟନ୍ତି ଜନକ ରାଜନ
ତାହା ଏବେ ଶୁଣ ରାମ ହୋଇ ସାବଧାନ ।
ଜାଗତିକ କର୍ମରତ ରହିଲେ ହେଁ ଜାଣ
ଅଥବା ସେ ହୋଇଥାନ୍ତୁ ସମାଧି ମଗନ ।
ଜାଗ୍ରତ ଅବା ନିଦ୍ରିତ ଉଭୟାବସ୍ଥାରେ
ଆତ୍ମଜ୍ଞାନେ ରତଥାନ୍ତି ଅନ୍ତର ମଧ୍ୟରେ ।
ତେଣୁ ହୋଇ ପାରିଥିଲେ ସେହି ସତ୍ୟନିଷ୍ଠ
ବ୍ରହ୍ମଜ୍ଞମାନଙ୍କ ମଧ୍ୟେ ଥିଲେ ସେ ଗରିଷ୍ଠ ।
ସେହିପରି ଜାଗତିକ କର୍ମମାନ କର
ପ୍ରତିକ୍ଷଣେ ରାମ ଆତ୍ମତତ୍ତ୍ୱେ ଲୟଧର ।
ପୃଥିବୀରେ ଅବତାର ଘେନି କରି ହରି
ଏହିପରି ସର୍ବକର୍ମ ସମ୍ପାଦନ କରି ।
ପାର୍ଥିବ ଦୁଃଖ ତାହାଙ୍କୁ ତେଣୁ କରିରାମ
ପରଶ କରିବା ପାଇଁ ହୁଅନ୍ତି ଅକ୍ଷମ ।
ଦେବଗୁରୁ ବୃହସ୍ପତି ଭଗବାନ ଶିବ
ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ପୁଣି ସୂର୍ଯ୍ୟଦେବ ।
ଚନ୍ଦ୍ରମା, ବାୟୁ, ଅନଳ ଏହିପରି ଜାଣ
ଜଗତ କାର୍ଯ୍ୟ କରୁଣ ଥାନ୍ତି ସମ୍ପାଦନ ।
ମହର୍ଷି ପୁଲସ୍ତ୍ୟ ପୁଣି ଦେବର୍ଷି ନାରଦ
ପ୍ରଚେତା, ଅଙ୍ଗିରା, ଅତ୍ରୀ ତପି ବିଶାରଦ ।
ଭୃଗୁ, କ୍ରତୁ, ଶୁକଦେବ ଆଦିକରି ଯେତେ
ଜୀବନ୍ମୁକ୍ତ ବ୍ରହ୍ମର୍ଷି ବା ରାଜର୍ଷି ସମସ୍ତେ ।
ଏହି ଭାବେ ଜଗତରେ କରନ୍ତି ବିହାର
ଏହାଙ୍କ ଆଦର୍ଶ ଧରି ରାମ ତୁମେ ଚଳ ।
ଯେଉଁ ନିର୍ଦ୍ଧାରଣ ଘେନି ଏହି ଜ୍ଞାନୀଗଣ
ଶୋକାତୀତ ଭାବେ ରହିଛନ୍ତି ବିଦ୍ୟମାନ ।

ସେହି ଯେ ନିଶ୍ଚୟଜ୍ଞାନ ତାହାର ସ୍ୱରୂପ
ଅନୁଗ୍ରହ କରି କହ ତପୀ କୂଳାଧିପ ।
ବଶିଷ୍ଠ କହନ୍ତି ସେହି ମହାତମା ଗଣ
ଜଗତକୁ ଏହି ରୂପେ କରନ୍ତି ଦର୍ଶନ ।
ସେହି ଯେ ନିର୍ମଳ ବ୍ରହ୍ମ ଜଗତ ଆକାରେ
ବିରାଜମାନ କରୁଣ ଛନ୍ତି ସଦାକାଳେ ।
ଆଉ ମଧ୍ୟ ଅନୁଭବ ସେମାନେ କରନ୍ତି
ବ୍ରହ୍ମ ହିଁ ତାଙ୍କ ଚୈତନ୍ୟ ରୂପେ ବିରାଜନ୍ତି ।
ଚୈତନ୍ୟ ମଣ୍ଡିତ ତେଣୁ ତାଙ୍କର ସଂସାର
ତାହା ମଧ୍ୟ ବ୍ରହ୍ମ ବୋଲି ତାଙ୍କର ବିଚାର ।
ଯେବଣ ଭୂତଗଣଙ୍କୁ ଘେନି ଏ ସଂସାର
ସେହି ଭୂତଗଣ ବ୍ରହ୍ମ ତାଙ୍କର ବିଚାର ।
ଶତ୍ରୁ ଅବା ମିତ୍ର କିମ୍ବା ବନ୍ଧୁ ବା ବାନ୍ଧବ
ତାଙ୍କ ଦୃଷ୍ଟିରେ ଏ ସବୁ ବ୍ରହ୍ମ ହେ ରାଘବ ।
ଏହି ଯେ ଭୂତ ଭବିଷ୍ୟ ବର୍ତ୍ତମାନ କାଳ
ଏହା ମଧ୍ୟ ସେହି ବ୍ରହ୍ମ ତାହାଙ୍କ ମତର ।
କାଳ ତ୍ରୟ ରୂପେ ବ୍ରହ୍ମ ନିଜକୁ ପ୍ରକାଶି
ମହାନ ଭାବରେ ନିଜ ମଧ୍ୟେ ନିଜେ ଦିଶି ।
ଯେହେତୁ ବ୍ରହ୍ମ ଅଟନ୍ତି ସବୁ ହେ ଶ୍ରୀରାମ
ନିଜକୁ ନିଜେ ସେ କରୁ ଅଛନ୍ତି ଭୋଜନ ।
ନିଜେ ସେ ନିଜର ଶକ୍ତି କରିଣ ପ୍ରକାଶ
ଶତ ସହସ୍ର ବିବର୍ତ୍ତ କରିଣ ବିକାଶ ।
ନିଜେ ନିଜେ ହେଉଛନ୍ତି ସେ ପରିବର୍ତ୍ତିତ
ଜ୍ଞାନୀଗଣ ଏ ଦୃଷ୍ଟିରେ ଦେଖନ୍ତି ସମସ୍ତ ।
ତେଣୁକରି ରାଗ ଦ୍ୱେଷ ଇତ୍ୟାଦିଙ୍କ ସହ
କୌଣସି ସମ୍ପର୍କ ନ ରଖନ୍ତି ନିଃସନ୍ଦେହ ।
ଭାବନ୍ତି ବ୍ରହ୍ମ ବ୍ୟତୀତ ଯେଣୁ କିଛି ନାହିଁ
ବ୍ରହ୍ମର ଅନିଷ୍ଟକାରୀ କେ ରହି ପାରଇ ।
ଧରିନିଅ ଏହିପରି ଯଦି କେହି ଥାଇ
ସେତ ସେହି ବ୍ରହ୍ମ ତେଣୁ ଶତ୍ରୁ ଅବା କାହିଁ ।
କାଳ୍ପନିକ ରାଗ ଦ୍ୱେଷ ଆଦି ତେଣୁ କରି
ତିଳେ ହେଲେ ନ ଥାଇ ତ ମନରେ ତାଙ୍କରି ।
ତେଣୁ କରି ଯାହାକିଛି ହେଉଛି ସ୍ଫୁରିତ
ସେ ସକଳ ବ୍ରହ୍ମ ବୋଲି ଯେଣୁ ତାଙ୍କ ମତ,
ତେଣୁ ସେମାନଙ୍କ ଦୁଃଖ ସୁଖ ସମ୍ଭାବନା
କିପରି ରହି ପାରିବ ରାମ ମହାମନା ?

ଯେ ଜନ ସଂସାର ଭାବେ ଲଭଇ ସନ୍ତୋଷ
ପୁଣି ଅଭାବରେ ହୋଇଥାଇ ଅସନ୍ତୋଷ ।
ବ୍ରହ୍ମେ ବ୍ରହ୍ମର ସନ୍ତୋଷ ଅବା ଅସନ୍ତୋଷ
ତା ପାଇଁ ବ୍ରହ୍ମ ବ୍ୟତୀତ ନାହିଁ ଅନ୍ୟ ତୋଷ ।
ବ୍ରହ୍ମରେ ବ୍ରହ୍ମ ପ୍ରକାଶ ଯେଣୁ ଏ ସଂସାର
ସନ୍ତୋଷ ବା ଅସନ୍ତୋଷ ହେବ କି ପ୍ରକାର ?
ଉତ୍ପତ୍ତିଶୀଳ ଅଟନ୍ତି ଯେ ପରମବ୍ରହ୍ମ
ନିଜକୁ ନିଜ ମଧ୍ୟରୁ କରନ୍ତି ଉତ୍ପନ୍ନ ।
ପୁଣି ନିଜେ ନିଜ ମଧ୍ୟେ ହୁଅନ୍ତି ଏକୀଭୂତ
କେହି କାହାର ନୁହନ୍ତି ଜାଣ ଏହି ତତ୍ତ୍ୱ ।
ଏ ସ୍ଥଳେ କା'ଠାରେ ପ୍ରୀତି ଅଥବା ଅପ୍ରୀତି
ସମ୍ଭବ ହେବ କିପରି କହ ରଘୁପତି ?
ରଜ୍ଜୁରେ ସର୍ପ ଭ୍ରମର ନ୍ୟାୟ ପରି ରାମ
କାହାର ଅଭାବେ ଦୁଃଖ ହେବ ବା କେସନ ?
ନିଜକୁ ନିଜେ ସମ୍ଭୋଗ କରେ ଯେଣୁ ବ୍ରହ୍ମ
ବ୍ୟକ୍ତି ସୁଖ ଭୋଗ ରାମ ସମ୍ଭୋଗ କେସନ ?
ଜଳର ତରଙ୍ଗ ଯଥା ଜଳର ସ୍ପନ୍ଦନ
ଏ ସଂସାର ସେହିପରି ବ୍ରହ୍ମଙ୍କ ସ୍ପନ୍ଦନ ।
ତହିଁ ମଧ୍ୟେ ତୁମ ଆମ ଏ ସକଳ ଭାବ
କିପରି ହେ ରାମ ହୋଇ ପାରିବ ସମ୍ଭବ ?
ସୁବର୍ଣ୍ଣ ବଳୟାକାରେ ଯଥା ପରିଣତ
ଆତ୍ମାର ପ୍ରକୃତି ହୁଏ ସତ ବା ଅସତ ।
ଅଜ୍ଞ ପ୍ରତି ଏ ଜଗତ ଅଟେ ଦୁଃଖମୟ
ଜ୍ଞାନୀମାନଙ୍କ ନିମିତ୍ତ କିନ୍ତୁ ସୁଖମୟ ।
ସ୍ଫଟିକ କିରଣ ଯଥା ସ୍ୱତଃ ବିଚ୍ଛୁରିତ
ଆତ୍ମାରେ ଏପରି ଏକ ଶକ୍ତି ଉପସ୍ଥିତ,
ଯାହାକି ଆମ ଅନ୍ତରେ ଜଗତ ଆକାରେ
ପ୍ରକାଶିତ ହୋଇଥାଏ ଜାଣ ରଘୁବୀରେ ।
ସ୍ଫଟିକ କିରଣ ଯଥା ବୋଲାଏ ସ୍ଫଟିକ
ଜଗତ ଜନନୀ–ଶକ୍ତି ଆତ୍ମା ବୋଲି ଲେଖ ।
ଜଳକଣା ପୁଣି ଫେନ ତରଙ୍ଗ ବୁଦ୍‌ବୁଦ
ଜଳର ଆକୃତି ସବୁ ରଘୁକୁଳ ଚନ୍ଦ ।
ଆଉ ମଧ୍ୟ ଜଳ ମଧ୍ୟେ ତାଙ୍କ ଅବସ୍ଥିତି
ଶରୀର ମନ ଇନ୍ଦ୍ରିୟଙ୍କର ସେହି ଗତି ।
ଭୋଗ୍ୟ ବସ୍ତୁ ସମ୍ପଦ ଓ ବିପଦ ଇତ୍ୟାଦି
ହରଷ ବିଷାଦ ପୁଣି ଉପଭୋଗ୍ୟ ଆଦି,
ବ୍ରହ୍ମର ଆକୃତି ସର୍ବେ ବ୍ରହ୍ମେ ଅବସ୍ଥିତ
ଦ୍ୱୈତ ବୁଦ୍ଧି ଏ କ୍ଷେତ୍ରରେ ନୁହେଁ ଯୁକ୍ତିଯୁକ୍ତ ।
ଜ୍ଞାନୀଗଣ କରନ୍ତି ଯେ ଏମନ୍ତ ଦର୍ଶନ
ଅହଂକାର, ମନ, ବୁଦ୍ଧି ଇନ୍ଦ୍ରିୟ ଏମାନ ।
ସକଳେ ଅଟନ୍ତି ସେହି ଏକରୂପୀ ବ୍ରହ୍ମ
ମନନ ଶୀଳ ହୋଇ ସେ ହୋଇଛନ୍ତି ମନ ।
ନିଶ୍ଚୟାତ୍ମିକ ହୋଇଣ ହୁଅନ୍ତି ସେ ବୁଦ୍ଧି
କର୍ତ୍ତା ହୋଇ ଅହଂବୋଧ ଭାବେ ତାଙ୍କ ସିଦ୍ଧି ।
ଦର୍ଶନ ଶ୍ରବଣ ଆଦି କ୍ରିୟାମାନ କରି
ଇନ୍ଦ୍ରିୟ ରୂପରେ ଚକ୍ଷୁ କର୍ଣ୍ଣମାନ ଧରି ।
ନାନାତ୍ମକ ଭାବ ତାଙ୍କ ମଧ୍ୟେ କିଛି ନାହିଁ
ନାନାତ୍ମକ ସୁଖ ଦୁଃଖ ତେଣୁ ଭବେ କାହିଁ ?
ଗିରି ଗହ୍ୱରରେ ଉଚ୍ଚାରିତ ଯେଉଁ ଶବ୍ଦ
ପର୍ବତର ସ୍ତରେ ସ୍ତରେ ହୋଇଣ ନିନାଦ ।
ନାନାକାରେ ନାନାଦିଗେ ହୁଏ ଉଜ୍ଜ୍ୱଳିତ
ଏକ ଆତ୍ମା ନାନା ଭାବେ ହୁଏ ବିରାଜିତ ।
ପୁଣି ନାନା ବାକ୍ୟେ ଉଚ୍ଚାରିତ ହୋଇ କରି
ନିଜେ ନିଜ ମଧ୍ୟେ ନାନା ଆକାରେ ବିହରି ।
ଅଭ୍ୟାଗତକୁ ଦେଖିଣ ଜୀବ ଯେଉଁପରି
ଚିହ୍ନି ନ ପାରିଣ ତାକୁ ନ କରେ ଖାତିରି ।
ସେହିପରି ମାନବର ଜୀବ, ଜଗତ୍ ଭାବ
ତା ସମ୍ମୁଖେ ବ୍ରହ୍ମଧରେ ଅଭ୍ୟାଗତ ଭାବ ।
ଅଜ୍ଞାନ ଜୀବ ମଧ୍ୟରେ ଅଜଣା ଭାବରେ
ବ୍ରହ୍ମ ସଦା ସରବଦା ଅବସ୍ଥାନ କରେ ।
ଏପରିକି ସପନରେ ଯାହା ଅନୁଭୂତ
ଆତ୍ମୀୟ ସ୍ୱୀୟ ଦର୍ଶନ ତାହା ରଘୁନାଥ ।
ସ୍ୱର୍ଣ୍ଣକୁ ସୁବର୍ଣ୍ଣ ବୋଲି ଚିହ୍ନି ନ ପାରିଲେ
ଅବଜ୍ଞାତ ହୋଇ ତାହା ପଡ଼ିଥାଏ ହେଳେ ।
ସେହିପରି ଏହିସବୁ ଆକୃତି ମଧ୍ୟରେ
ସମାଗତ ଭାବେ ବ୍ରହ୍ମ ବିରାଜେ ଯହିଁରେ,
ସେ ବ୍ରହ୍ମଙ୍କୁ ବ୍ରହ୍ମ ବୋଲି ଚିହ୍ନି ନ ପାରିଲେ
ସେ ସବୁ ଯେ ଅବଜ୍ଞାତ ହୋଇଥାନ୍ତି ହେଳେ ।
ବିସ୍ମିତ ହେବାର ଅବକାଶ ଏଥି କାହିଁ
ଏହି କଥା ବୁଝି ରଖ ଆହେ ରଘୁସାଇଁ ।
ସେହି ପଦାର୍ଥମାନଙ୍କୁ ବ୍ରହ୍ମବିଦ୍‌ଗଣ
ବ୍ରହ୍ମ ବୋଲି ବୁଝି ପାରିଥାନ୍ତି ତାଙ୍କ ମନ ।

ବୁଝି ନ ପାରି ତାହାଙ୍କୁ ଅଜ୍ଞ ବ୍ୟକ୍ତିଗଣ
ମିଥ୍ୟା ଜ୍ଞାନରେ ଜଡ଼ିତ ହୋଇଥାନ୍ତି ଜାଣ ।
ସେମାନଙ୍କୁ ବ୍ରହ୍ମ ବୋଲି ଯେବେ ଭାବିପାର
କ୍ଷଣକରେ ବ୍ରହ୍ମ ପାଲଟନ୍ତି ସେ ସକଳ ।
ବାରମ୍ବାର ତୁମ୍ଭଙ୍କୁ ମୁଁ କହିଅଛି ରାମ
ବ୍ରହ୍ମ ଛଡ଼ା ଅନ୍ୟ କିଛି ନାହିଁ ମର ଧାମ ।
ଯେ କୌଣସି ବସ୍ତୁ କିମ୍ବା ଯା କିଛି ଶକତି
ସେ ସକଳ ବ୍ରହ୍ମ ବୋଲି ଜାଣ ରଘୁପତି ।
ଯିଏ ଯେଉଁ ଭାବେ ତାକୁ ଚିନ୍ତନ କରଇ
ସେହି ଭାବେ ନିଜକୁ ସେ ଦେଖା ଦେଇଥାଇ ।
ଅବଜ୍ଞାତ ରହିଥାନ୍ତି ସେହୁ ଯେତେ ଦିନ
ଅଜ୍ଞ ବ୍ୟକ୍ତିଙ୍କ ଅଜ୍ଞାନ ଥାଏ ସେତେ ଦିନ ।
ଯେଉଁ କାଳେ ସେ ମହାତ୍ମା ହୁଅନ୍ତି ବିଜ୍ଞାତ
ସେତେବେଳେ ସତ୍ୟ ଜ୍ଞାନ ହୁଅଇ ଉଦିତ ।
ସ୍ୱତଃ ସମୁଦିତ କେଭେଁ ନୁହେଁ ବ୍ରହ୍ମଜ୍ଞାନ
"ଏ ଜଗତ କିଛି ନୁହେଁ" ହେଲେ ଏହି ଜ୍ଞାନ,
ବ୍ରହ୍ମ ଭାବନା ହୃଦୟେ ଉଦେ ହୁଏ ଜାଣ
ତହିଁରୁ ବୈରାଗ୍ୟ ଭାବ ହୁଅନ୍ତେ ଜନମ,
ଆସକ୍ତି ବିହୀନ ଜୀବ ହୁଏ ତତକ୍ଷଣ
ଆସକ୍ତି ଅଟଇ ସର୍ବ ବନ୍ଧନ କାରଣ ।
"ମୁଁ ନୁହେଁ ଏ ଶରୀର" ଏହି ଭାବ ହେଲେ
ବ୍ରହ୍ମଭାବ ଉଦେ ହୁଏ ଜୀବ ହୃଦୟରେ ।
ଏହି ଭାବନାକୁ ଅବଲମ୍ବନ କରିଣ
ଏ ସଂସାରେ ଜୀବ ଅନାସକ୍ତ ହୁଏ ପୁଣ ।
କିସ ଅଟେ ମିଥ୍ୟା ପୁଣି କିସ ଅହଙ୍କାର
ଏସବୁ ସୁଜ୍ଞାନ ଉଦେ ହୁଏ ତା ହୃଦର ।
ସେହି ବ୍ରହ୍ମ ଭାବନାର ସୁଫଳ ଯା ପାଇ
"ମୁହିଁ ବ୍ରହ୍ମ" ଏହି ସତ୍ୟ ଜ୍ଞାନ ଜନମାଇ ।
ଅନିର୍ବଚନୀୟ ବସ୍ତୁ ଅଟନ୍ତି ଯେ ବ୍ରହ୍ମ
ଅନୁଭବ କରେ ତାଙ୍କୁ ହୃଦୟ ରାଜ୍ୟେଣ ।
ତେଣୁ ଆତ୍ମସ୍ୱରୂପରେ ହୁଏ ସେ ବିଲୀନ
ଆତ୍ମସ୍ୱରୂପ ବିଷୟ ମନଦେଇ ଶୁଣ ।
ପ୍ରାଥମିକ ବ୍ରହ୍ମ ଚିନ୍ତା ପରେ ହେ ଶ୍ରୀରାମ
ଅଦ୍ୱୈତ ଜ୍ଞାନଭୂମିରେ ପ୍ରବେଶ କାରଣ,
ଗୋଟି ଗୋଟି ରହିଛନ୍ତି କେତେ ଯେ ସୋପାନ
ହୃଦମଧ୍ୟେ ଚିନ୍ତା କର ହୋଇ ସାବଧାନ ।

ମହାମହିମା ସମ୍ପୂର୍ଣ୍ଣ ମହାତମା ଗଣ
ଅଦ୍ୱୈତ ଜ୍ଞାନ ଭୂମିରେ କରି ଅବସ୍ଥାନ ।
ସର୍ବସ୍ୱରୂପ ଅଥଚ ସର୍ବାତୀତ ହୋଇ
ବିହାର କରୁଅଛନ୍ତି ଭବ ମଧ୍ୟ ଦେଇ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଜୀବନମୁକ୍ତ ନିଶ୍ଚୟ ଉପଦେଶ**
**ବର୍ଣ୍ଣନେ ନାମ ନବମ ସର୍ଗଃ ।**



## ଦଶମ ସର୍ଗଃ
## ଜୀବନ ମୁକ୍ତ ସଂଶୟ ନିରୂପଣ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଜନାକାଦି ଜୀବନ୍ମୁକ୍ତ ଯେଉଁ ସିଦ୍ଧଗଣ ।
ଉଲ୍ଲିଖିତ ଭାବେ ହୋଇ ନିଶ୍ଚୟ ସମ୍ପୂର୍ଣ୍ଣ
ସମବୁଦ୍ଧି ଶାନ୍ତ ଚିତ୍ତ ସେମାନେ ହୋଇଣ ।
ସତ୍ୟସ୍ୱରୂପରେ ସୁଖେଛନ୍ତି ଅବସ୍ଥିତ
ସେମାନଙ୍କ ପଥ ଧରି ଚଳ ରଘୁନାଥ ।
"ତତ୍ତ୍ୱମସି" ଏହି ମହାବାକ୍ୟ ଅନ୍ତର୍ଗତ
"ତ୍ୱଂ" ନାମ ପଦାର୍ଥ ହୋଇଯିବାରୁ ଶୋଧିତ ।
ଅନ୍ତରେ ବାହାରେ ସେହିମାନଙ୍କର ଚିତ୍ତ
ସମଭାବାପନ୍ନ ପୁଣି ଆସକ୍ତି ରହିତ ।
ତେଣୁ ସେମାନେ ଜୀବନ ଅବା ମରଣରେ
ନିନ୍ଦା ଓ ପ୍ରଶଂସା ତେଜିଥାନ୍ତି ନିରନ୍ତରେ ।
ନମ୍ର ଓ ସରଳ ସେହି ଜୀବନ୍ମୁକ୍ତଗଣ
ସୁମେରୁ ସଦୃଶ କରିଛନ୍ତି ଅବସ୍ଥାନ ।
କେତେବେଳେ ସ୍ୱର୍ଗେ ଅବା ନନ୍ଦନ କାନନେ
କେତେବେଳେ ପୃଥିବୀରେ ନଗରେ, ଅରଣ୍ୟେ ।
ଅପରିହତ ଗତିରେ କରନ୍ତି ବିହାର
ଇଚ୍ଛା ଅନୁସାରେ ଗତିବିଧି ତାହାଙ୍କର ।
ଏପରି ଭାବରେ ଶତ୍ରୁ ବିହୀନ ହୋଇଣ
ରାଜତ୍ୱ କରୁ ସେ ଥାନ୍ତି ଧରାତଳେ ଜାଣ ।
ଶ୍ରୁତି ବିହିତ ଯଜ୍ଞାଦି କରିଣ ସମ୍ପୂର୍ଣ୍ଣ
ଚତୁଃବର୍ଗ ସାଧନରେ ହୁଅନ୍ତି ନିପୁଣ ।
ସାଂସାରିକ ନାନା କାର୍ଯ୍ୟ କଲେ ହେଁ ସମ୍ପୂର୍ଣ୍ଣ
ଅନାସକ୍ତ ଭାବେ ତହିଁ ଥାଏ ତାଙ୍କ ମନ ।
ଉପାଧି ବିହୀନ ପରଂପଦେ ତାଙ୍କ ଚିତ୍ତ
ଅନାୟାସେ ତହିଁ ସଦା ରହିଥାଏ ଯୁକ୍ତ ।

ବିପଦ ସମ୍ପଦ କଉଣସି ଅବସ୍ଥାରେ
* କୁଳାଚଳ ପରି ଡୁବି ନ ଯାନ୍ତି କାହିଁରେ ।
ଆହେ ରଘୁକୁଳ ଧୁରନ୍ଧର ରାମ ଶୁଣ
ପରମ ରାଜଲକ୍ଷ୍ମୀ କି ଜନକ ରାଜନ ।
ଲାଭ କରି ପାରି ସୁଦ୍ଧା ଜୀବନ ଦଶାରେ
କେବେହେଁ ତ ଉଲ୍ଲସିତ ହୋଇ ସେ ନଥିଲେ ।
ଯଦି କେବେ ଶୋକେ ଦୁଃଖେ ହୁଅନ୍ତି ପତିତ
କଦାପି ତ ଦେଖାଯାନ୍ତି ନାହିଁ ବିଚଳିତ ।
ଅନାସକ୍ତ ଭାବେ ରାଜକାର୍ଯ୍ୟ ସମ୍ପାଦନ୍ତି
ବିଷୟ ଭୋଗ ପାଇଁକି ନଥାଇ ଆସକ୍ତି ।
ଆକାଂକ୍ଷା ନଥାଇ ତାଙ୍କ ଇଷ୍ଟ ଲାଭ ପାଇଁ
ଅନିଷ୍ଟତ୍ୟାଗ ପାଇଁ କି ଭ୍ରୂକ୍ଷେପ ନଥାଇ ।
ଶତ୍ରୁର ପରାଜୟରେ ନୁହନ୍ତି ଗର୍ବିତ
ନିଜର ପରାଜୟରେ ନୁହନ୍ତି ଦୁଃଖିତ ।
ଏହିପରି ସର୍ବବିଧ କର୍ମ ସମ୍ପାଦନ୍ତି
ଅନ୍ତରେ ନିଷ୍କ୍ରିୟ ଥାଇ ଅଟଳ ରହନ୍ତି ।
ଜନକ ରାଜାଙ୍କ ପରି ତୁମେ ହେ ଶ୍ରୀରାମ
ତତ୍ତ୍ୱଦୃଷ୍ଟିକୁ କେବଳ ଆଶ୍ରୟ କରିଣ ।
ଶୁଦ୍ଧ ଚିନ୍ମାତ୍ର ଆତ୍ମାରେ କରି ଅବସ୍ଥାନ
ଲୋକୋଚିତ କାର୍ଯ୍ୟମାନ କର ଆଚରଣ ।
ଯେଉଁପରି ଉପଦେଶ ଦେଇଅଛି ମୁହିଁ
ଦମନ କର ଜଗତ ଭାବ ରଘୁରାଇ ।
ସ୍ଥିର ରହ ରାମ ଯଥା ସୁମେରୁ ପର୍ବତ
ଗମ୍ଭୀର ହୁଅ ହେ ରାମ ସାଗର ଯେମନ୍ତ ।
ବିରାଜମାନ ରହହେ ସମଜ୍ଞାନ ଧରି
ସମଭାବ ସର୍ବସିଦ୍ଧି ଗ୍ରବି କାଠି ପରି ।
ଏ ଜଗତ ଅଟେ ରାମ ଆଭାସ ଚୈତନ୍ୟ
ସତ୍ୟ ବୋଲି ନ ମଣିବ ତାକୁ କଦାଚନ ।
ଅସତ୍ୟ ବୋଲି ତାହାକୁ କେବେହେଁ ନମଣ
ସଦା ଏଥିପାଇଁ ରହିଥିବ ସାବଧାନ ।
ପରିହରି କ୍ଷୁଦ୍ର ଅହଂ ବୁଦ୍ଧି ତୁମେ ରାମ
ବ୍ରହ୍ମଭାବେ ସମାରୂଢ଼ ରହ ଅନୁକ୍ଷଣ ।
ସତ୍ୟପରି ଜଣାଯାଏ ଯେବଣ ସଂସାର
ଆସକ୍ତି ତେଜିଣ ସଦା ତାର କ୍ଷୟ କର ।

ବୋଲନ୍ତି ଶ୍ରୀରାମ ଶୁଣ ଆହେ ଭଗବନ୍
ସୂର୍ଯ୍ୟୋଦୟେ ପଦ୍ମ ହସି ଉଠଇ ଯେସନ,
ତବ ଅନୁଗ୍ରହେ ଏବେ ମୁହିଁ ସେହିପରି
ପ୍ରବୁଦ୍ଧ ହୋଇ ଉଠିଛି ଆହେ ତପସ୍ୱୀ ।
ଆପଣଙ୍କ ଉପଦେଶ ସଲିଳ ଧାରାରେ
ସର୍ବମଳ ରାଶି ମୋର ପ୍ରକ୍ଷାଳିତ ହେଲେ ।
ଏବେ ଆଉ କଉଣସି ଭ୍ରାନ୍ତି ମୋର ନାହିଁ
ସକଳ ସଂଶୟ ମୋର ଅଛି ଦୂର ହୋଇ
ଆଜିଠାରୁ ତବ ଉପଦେଶ ପାଳିବଇଁ
ଆତ୍ମଜ୍ଞାନ ଏବେ ଲାଭ କରି ମୁଁ ଅଛଇଁ ।
ଶୋକ ସାଗରରୁ ମୁହିଁ ହୋଇଛି ଉତ୍ତୀର୍ଣ୍ଣ
ଆତ୍ମାବନ୍ଧ ଭ୍ରମେ ନ ପଡ଼ିବ କଦାଚନ ।
ଯେପରି ଆଦେଶ ଏବେ ପାଇବଇଁ ମୁହିଁ
ଏକାନ୍ତ ଚିତ୍ତେ ମୁଁ ତାହା କରି ଥୋଇବଇଁ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଜୀବନମୁକ୍ତି ସଂଶୟ ନିରୂପଣ ବର୍ଣ୍ଣନେ**
**ନାମ ଦଶମ ସର୍ଗଃ**



## ଏକାଦଶ ସର୍ଗଃ

## ଜ୍ଞାନ ବିଚାର

କହନ୍ତି ଶ୍ରୀରାମ ଆହେ ଗୁରୁଦେବ ଶୁଣ
ସମୁଦିତ ହୋଇଅଛି ମୋର ତତ୍ତ୍ୱଜ୍ଞାନ ।
ବାସନା ଇତ୍ୟାଦି ମୋର ବିନାଶ ଲଭିଛି
ଜୀବନ ମୁକତ ଏବେ ହୋଇ ମୁଁ ପାରିଛି ।
ପ୍ରାଣର ସ୍ପନ୍ଦନ ଦେବ ନିରୁଦ୍ଧ କରିଣ
ଜୀବନ ମୁକତି ଜୀବ ଲଭିବ କେସନ ।
ସେହି ଉପଦେଶ ଏବେ ଦେଲେ ଗୁରୁଦେବ
କୃତାର୍ଥ ଲଭିବି ଚିରକାଳ ପଦେ ତବ ।
କହନ୍ତି ବଶିଷ୍ଠ ତାହା ଶୁଣ ହେ ରାଘବ
ଏ ସଂସାରୁ ପରିତ୍ରାଣ ଯେମନ୍ତ ମିଳିବ ।
ସେହି ଉପାୟର ନାମ ଯୋଗ ଅଟେ ଜାଣ
ସେହି ଉପାୟରେ ହୁଏ ଚିତ୍ତ ଉପସମ ।
ଦୁଇ ପ୍ରକାର ଉପାୟ ଅଛି ଏଥି ପାଇଁ
ପ୍ରଥମଟି ଆତ୍ମଜ୍ଞାନ ଜାଣ ରଘୁସାଇଁ ।

*କୁଳାଚଳ - ପର୍ବତ ବିଶେଷ

ପ୍ରାଣ ସ୍ପନ୍ଦନ ନିରୋଧ ଦ୍ୱିତୀୟ ଅଟଇ
ତାହାର ବର୍ଣ୍ଣନା ଏବେ ଶୁଣ ରଘୁରାଇ ।
ଶ୍ରୀରାମ ପୁଚ୍ଛନ୍ତି ଏବେ କହ ତପୋଧନ
ଏ ଦୁଇ ଉପାୟ ମଧ୍ୟେ କେଉଁଟି ଉତ୍ତମ ?
ଅଥଚ ସହଜସାଧ୍ୟ ହୋଇଥିବ ସେହି
ସବିଶେଷ କରି ତାହା କହ ତପୀସାଇଁ ।
ବଶିଷ୍ଠ କହନ୍ତି ଶୁଣ ଆହେ ରଘୁରାଏ
ଏହି ଦୁଇ ଉପାୟକୁ ଯୋଗ ବୋଲାଯାଏ ।
ଯେ ଉପାୟ ଅଟେ ପ୍ରାଣସ୍ପନ୍ଦନ ନିରୁଦ୍ଧ
ଯୋଗ ନାମରେ ତାହା ଯେ ଅଧିକ ପ୍ରସିଦ୍ଧ ।
ଏ ସଂସାରୁ ତରିବାକୁ ହେ ରଘୁନାୟକ
ଏ ଦୁହେଁ ସମାନ ସମ ଫଳପ୍ରଦାୟକ ।
କାହାପକ୍ଷେ ଜ୍ଞାନଯୋଗ ଅଟଇ କଠିନ
ଅନ୍ୟ ଯୋଗଟି କଠିନ କାହା ପକ୍ଷେ ଜାଣ ।
ମୋ ମତରେ ଜ୍ଞାନଯୋଗ ଅଟଇ ସହଜ
ଅଜ୍ଞାନ ସମ୍ପୂର୍ଣ୍ଣ ମିଥ୍ୟା ଆହେ ରଘୁରାଜ ।
ଜ୍ଞାନହିଁ ସର୍ବଦା ସତ୍ୟ ଅକାଟ୍ୟ ବଚନ
ଆତ୍ମଜ୍ଞାନ ଠାରୁ ଯୋଗ ଅତୀବ କଠିନ ।
ଦେଶ କାଳ ଆନୁକୂଲ୍ୟ ଯୋଗ ପାଇଁ ଲୋଡ଼ା
ଆସନ, ଧାରଣା ଆଦି ନୋହିପାରେ ଛଡ଼ା ।
ଜ୍ଞାନ ସହଜ କି ଅବା ଯୋଗଟି ସହଜ
ଏହା ଭାବିବା ଉଚିତ ନୁହେ ରଘୁରାଜ ।
ନିରୁତ୍ସାହୀ ଅଳସୁଆଙ୍କର ଏ ଚିନ୍ତନ
କିନ୍ତୁ ଯେ ଧୀର ଆବର ଅଟଇ ସକ୍ଷମ ।
ମୋ ମତରେ ତାହା ପକ୍ଷେ ଉଭୟେ ସହଜ
ଉଭୟେ ଶାସ୍ତ୍ର ସମ୍ମତ ପନ୍ଥା ଏହା ବୁଝ ।
ତହିଁରୁ ନିର୍ମଳ ଚିତ୍ତେ ଯେ ଜ୍ଞାନ ଉଦୟ
ତାହା ପୂର୍ବେ କହିଅଛି କୌଶଲ୍ୟା ତନୟ ।
ପ୍ରାଣ ସ୍ପନ୍ଦନ ନିରୋଧ ଯୋଗର ଉପାୟ
ବର୍ଣ୍ଣନ କରୁଛି ଏବେ ଶୁଣ ରଘୁରାୟ ।
ଏହି ଉପାୟ ଆଶ୍ରୟ କରି ରାଜସୁତ
ନିରତିଶୟ ଆନନ୍ଦ ଭୋଗିବ ନିୟତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଜ୍ଞାନ ବିଚାର ଉପଦେଶ ବର୍ଣ୍ଣନେ**
**ନାମ ଏକାଦଶ ସର୍ଗଃ ।**



## ଦ୍ୱାଦଶ ସର୍ଗଃ

## ଭୁଷଣ୍ଡ ବଶିଷ୍ଠ ମିଳନ

କହନ୍ତି ବଶିଷ୍ଠ ଧନୁର୍ଦ୍ଧର ବୀରବର
ଯେ ଆତ୍ମତତ୍ତ୍ୱ କହିଛି ମୁଁ ତୁମ୍ଭ ଆଗର ।
ତାର ଏକ ଅଂଶେ ମେରୁ ମରୀଚିକାପରି
ଜଗଦାକାରୀୟ ଏକ ସ୍ପନ୍ଦନ ବିଚରି ।
ବ୍ରହ୍ମା ସେହି ସ୍ପନ୍ଦନର କାରଣ ରୂପରେ
ପଞ୍ଚଭୂତ ସକଳଙ୍କୁ ସରଜନା କରେ ।
ମୁହିଁ ତାଙ୍କ ମାନସରୁ ଜନମ ଲଭିଣ
ସପ୍ତର୍ଷି ମଣ୍ଡଳ ମଧ୍ୟେ କରେ ଅବସ୍ଥାନ ।
ଥରେ ମୁହିଁ ଇନ୍ଦ୍ରଙ୍କର ସଭାରେ ବସିଣ
ଚିରଜୀବିମାନଙ୍କର ଉପାଖ୍ୟାନ ମାନ,
ନାରଦାଦି ଋଷିଙ୍କର କଥୋପକଥନ
ଶ୍ରବଣ ପାଇଁ ସୁବିଧା ପାଇଥିଲି ଜାଣ ।
ଶତାତପ ମୁନି ଯାହା କହିଥିଲେ ତହିଁ
ବର୍ଣ୍ଣନା କରୁଛି ତାହା ଶୁଣ ରଘୁସାଇଁ ।
ସୁମେରି ଗିରି ଇଶାନ ଶିଖର ଦେଶେଣ
ଏକଇ କଳପତରୁ କ୍ରୋଟର ମଧେଣ ।
ଭୂଷଣ୍ଡ ନାମକ କାକ ପକ୍ଷୀବାସ କରେ
ତା ସଦୃଶ ଦୀର୍ଘଜୀବୀ ନାହିଁ କେ ସଂସାରେ ।
ସେ ପକ୍ଷୀ ବିଶ୍ରାନ୍ତମନା ଆବର ତତ୍ତ୍ୱଜ୍ଞ
ତାକୁ ଦେଖିବାକୁ ମୋର ବଢ଼ିଲା ଉଦ୍‌ବେଗ ।
ଗଗନ ମାର୍ଗରେ ଯେବେ ଯାଉଥିଲି ମୁହିଁ
ସେ କଳ୍ପ ପାଦପ ମୋର ନେତ୍ରରେ ପଡ଼ଇ ।
କୁସୁମ ଅକୀର୍ଣ୍ଣ ସେହି ବୃକ୍ଷ କନ୍ଧ ଦେଶେ
ସୁଗନ୍ଧ ବାସନା ତହୁଁ ଚହଟିଣ ଆସେ ।
ବିଶାଳ କୋରଡ଼ ଏକ ତହିଁଥିଲା ରହି
ବହୁ କାକ ପକ୍ଷୀଙ୍କର ସଭା ଲାଗିଛଇ ।
ମଧ୍ୟଭାଗେ ଦୀର୍ଘ ବପୁ ସେ ଭୂଷଣ୍ଡ କାକ
ସୁଖ କି ସୁମୂର୍ତ୍ତି ଧରି ବସିଛି ନିଃଶଙ୍କ ।
ତାଙ୍କୁ ଦେଖି ଜାଣିଲି ତା ମନ ପରିପୂର୍ଣ୍ଣ
ନିରୁଦ୍ଧ କରିଛି ଯେଣୁ ସେ ପ୍ରାଣ ସ୍ପନ୍ଦନ ।
ଅନ୍ତଃ ଦୃଷ୍ଟି ସମ୍ପର୍ଣ୍ଣ ସେ ଥାଏ ସଦାବେଳେ
ସଦା ସୁଖୀ, ସମଦର୍ଶୀ ରହେ ସେ ଅନ୍ତରେ ।
ଆକାଶ ମଣ୍ଡଳୁ ଅବତରଣ କରିଣ
ସମ୍ମୁଖରେ ତହିଁ ଯେବେ ପହଞ୍ଚିଲି ଜାଣ ।

ଚମକି ଉଠିଲେ ତହୁଁ ସେ କାକ ମଣ୍ଡଳୀ
ମୋତେ ଦେଖିକରି ସର୍ବେ ହେଲେ କୁତୁହଳୀ ।
ମୋତେ ଦେଖିଲା ମାତ୍ରକେ ସେ କାକ ରାଜନ
ସମାଦର କରି ମୋତେ କଲେ ସମ୍ଭାଷଣ ।
ସଂକଳ୍ପ ବଳେ ଦୁଇଟି ହସ୍ତ ଉତପନ୍ନ
କରି ପୁଷ୍ପାଞ୍ଜଳି ମୋତେ କଲେ ସମର୍ପଣ ।
ତତ୍‌ପରେ ପଲ୍ଲବାସନ କରି ସେ ପ୍ରଦାନ
ମଧୁର ସ୍ୱରେ କହନ୍ତି ବଚନ ଏସନ ।
'ଆଜ୍ଞା' ବହୁକାଳ ପରେ ଦେଇ ଦରଶନ
ଅନୁଗୃହୀତ କଲେ ଏ ବିହଙ୍ଗମଗଣ ।
ମାନ୍ୟଗଣଙ୍କର ମାନ୍ୟ ଅଟନ୍ତି ଆପଣ
ମୋର ପୁଣ୍ୟବଳେ କାହୁଁ କଲେ ପଦାର୍ପଣ ।
ହେ ମୁନେ ଆପଣଙ୍କର ଶ୍ରୀପଦ ଦର୍ଶନ
ପାଇ ନିଜକୁ ମଣୁଛି କେଡ଼େ ଭାଗ୍ୟବାନ ।
ଆପଣଙ୍କୁ ଦେଖି ସବୁ ଜାଣି ମୁଁ ପାରିଛି
ଦେବସଭା ଆଲୋଚନା ସବୁ ମୁଁ ବୁଝିଛି ।
ଚିରଜୀବୀଙ୍କ ବିଷୟେ କଥୋପ କଥନ
ଯେତେବେଳେ ପଡ଼ିଥିଲା ଆହେ ତପୋଧନ ।
ତେତେବେଳୁ ମୁହିଁ ତୁମ ନୟନ ପଥରେ
ପଡ଼ିଛି ହେ ଦେବ କହେ ବିନୟ ଭାବରେ ।
ଯେହେତୁ ହେ ଦେବ ଏଥି କଲ ପଦାର୍ପଣ
ପବିତ୍ର କରିଛି ମୋତେ ଆହେ ମହୀୟାନ ।
ଆପଣଙ୍କ ଆଗମନ ଉଦ୍ଦେଶ୍ୟ ହେ ଦେବ
ଜାଣି ମୁଁ ପାରିଛି ଏଥି ପୂର୍ବରୁ ତା ସର୍ବ ।
ତଥାପି ପଚାରେ ଆଗମନର କାରଣ
ଆପଣଙ୍କ ବାକ୍ୟାମୃତ ଲୋଡ଼େ ମୋ ଶ୍ରବଣ ।
ମୁଁ କହିଲି ଏବେ ଶୁଣ ଆହେ ବିହଙ୍ଗମ
ଯଥାର୍ଥ ବଚନ କହି ଅଛନ୍ତି ଆପଣ ।
ଆପଣ ଯେ ଦୀର୍ଘଜୀବୀ ଏହି ନିମିତ୍ତରେ
ପହଞ୍ଚିଛି ଆସି ଆପଣଙ୍କ ନିକଟରେ ।
ଯେଣୁ ତତ୍ତ୍ୱଜ୍ଞାନ ଲଭିଅଛନ୍ତି ଆପଣ
ସୁଶୀତଳ କରିଛନ୍ତି ସ୍ୱଅନ୍ତଃକରଣ ।
ତେଣୁକରି କୁଶଳରେ ଅଛନ୍ତି ଆପଣ
ତୁମପରି କେ ନଥିବ ଅନ୍ୟ ଭାଗ୍ୟବାନ ।
ଆହେ ଭୂଷଣ୍ଡ ସ୍ୱରୂପୀ ଦେବ ଭଗବାନ
କେଉଁ ବଂଶରେ ଜନମ ଲଭିଛ ଆପଣ ?
କିପରି ଜ୍ଞାତବ୍ୟ ବସ୍ତୁ ପାରିଛନ୍ତି ଜାଣି
ତାହାସବୁ ମୋ ଆଗରେ କହନ୍ତୁ ବଖାଣି ।
ବର୍ତ୍ତମାନ ଆପଣଙ୍କ ବୟସ ବା କେତେ
ଅତୀତ ଘଟନା ଛନ୍ତି ଟିକି ସ୍ମୃତିପଥେ ।
ଆହେ ଦୀର୍ଘଦର୍ଶୀ ଏବେ କହନ୍ତୁ ନା ମୋତେ
କା' ଆଜ୍ଞାରେ ବାସ କରିଛନ୍ତି ଏହି କ୍ଷେତ୍ରେ ?
କହନ୍ତି ଭୂଷଣ୍ଡ ଶୁଣ ଆହେ ମୁନିବର
ସବୁ ମୁଁ କହୁଛି ତୁମ ପ୍ରଶ୍ନର ଉତ୍ତର ।
ଆପଣଙ୍କ ପରି ଯେତେ ମହାତମା ଗଣ
ଯାହା ଶୁଣିବାକୁ ଇଚ୍ଛା କରନ୍ତି ସେମାନ ।
ସେସବୁ ତାଙ୍କ ଆଗରେ କରନ୍ତେ କୀର୍ତ୍ତନ
ବିନାଶ ଲଭନ୍ତି ବକ୍ତା ଅମଙ୍ଗଳମାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଭୂଷଣ୍ଡ ବଶିଷ୍ଠ ମିଳନ ବର୍ଣ୍ଣନେ**
**ନାମ ଦ୍ୱାଦଶ ସର୍ଗଃ**



## ତ୍ରୟୋଦଶ ସର୍ଗଃ

## ଭୂଷଣ୍ଡ ସ୍ୱରୂପ ବର୍ଣ୍ଣନ

ବୋଲନ୍ତି ବଶିଷ୍ଠ ରାମ ଏହି ଭୂଷଣ୍ଡର
ବୁଦ୍ଧି ବିଚକ୍ଷଣତା ଯେ ଅତୀବ ପ୍ରଖର ।
ବର୍ଷାକାଳ ମେଘସମ ଦିଶନ୍ତି ଶ୍ୟାମଳ
ବଚନ ସ୍ନେହରେ ପୂର୍ଣ୍ଣ ପୁନଶ୍ଚ ଗମ୍ଭୀର ।
ସହାସ୍ୟ ବଦନେ ସଦା କରନ୍ତି ଆଳାପ
ଜଗତର ସବୁକଥା ଜାଣେ କାକ ନୃପ !
ସକଳ ଭୋଗକୁ ତୃଣ ପରି ସେ ମଣଇ
ଭୋଗଠାରୁ ତ୍ୟାଗ ଶ୍ରେଷ୍ଠ ଏ କଥା ବୁଝଇ ।
ତତ୍ତ୍ୱବିଚାର ବଳେ ସେ ଏହା ବୁଝିଛନ୍ତି
କାମନା ପଛେ ପ୍ରାଣୀଏ ଯେଣୁ ଧାଇଁଛନ୍ତି ।
ଜନ୍ମ ମୃତ୍ୟୁ ଭବ ଦଶା ତେଣୁ ସେ ଭୋଗନ୍ତି
ବାସନା ବିହୀନ ପ୍ରାଣୀ ସଂସାରୁ ତରନ୍ତି ।
ତାଙ୍କୁ ଦେଖି ମନେହୁଏ ଅଟନ୍ତି ସେ ଧୀର
ପର ଅପର ବ୍ରହ୍ମଙ୍କ ସାକ୍ଷାତ ତାଙ୍କର ।
ଶାନ୍ତ ବୁଦ୍ଧି, ସେହି ପୁଣି ଅନ୍ତଃକରଣରେ
ପରମ ଆନନ୍ଦ ରସ ଆସ୍ୱାଦନ କରେ ।

ଆତ୍ମତତ୍ତ୍ୱ, ମାୟାତତ୍ତ୍ୱ ଉଭୟ ତତ୍ତ୍ୱର
ବିଶାରଦ ଅଟେ ଜାଣ ସେହି ପକ୍ଷୀବର ।
ଆତ୍ମ ସାକ୍ଷାତ୍‌କାର ଗୋଟି ଲାଭ କରି ସେହି
ଅଭୟ ବ୍ରହ୍ମ ରୂପରେ ବିରାଜୁ ଅଛଇ ।
ହାସ୍ୟ ବଦନେ ଜିଜ୍ଞାସୁ ଗଣଙ୍କର ପ୍ରଶ୍ନ
ଉତ୍ତର ଦେବାକୁ ସେ ଉନ୍ମୁଖ ସର୍ବକ୍ଷଣ ।
ନିଜେ ସେହି ନିଜର ଯେ ସକଳ ବୃତ୍ତାନ୍ତ
ମୋ ଆଗରେ ନିମ୍ନମତେ କରିଥିଲେ ବ୍ୟକ୍ତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଭୂଷଣ୍ଡ ସ୍ୱରୂପ ବର୍ଣ୍ଣନେ**
**ନାମ ତ୍ରୟୋଦଶ ସର୍ଗଃ**



## ଚତୁର୍ଦ୍ଦଶ ସର୍ଗଃ

## ମାତୃ ମାହାତ୍ମ୍ୟ ଓ ଅସ୍ତାଚଳ ଲାଭ

ଗୌରୀ ଯାର ଅର୍ଦ୍ଧ ଅଙ୍ଗ ଗଙ୍ଗା ଜଟା ଜୁଟେ
ଦେବଗଣଙ୍କ ଆରାଧ ସେହି ଯେ ଧୂର୍ଜଟେ ।
ସମାଧି ମଗନ ରହିଥାନ୍ତି ଯେତେବେଳେ
ଏ ଜଗତ ସ୍ୱଚ୍ଛ ଭାବେ ଥାଏ ତେତେବେଳେ ।
ଯେତେବେଳେ ସମାଧିରୁ ହୁଅନ୍ତି ଉତ୍‌ଥିତ
କର ସ୍ପନ୍ଦନେ ଅସୁରେ ହୁଅନ୍ତି ନିପାତ ।
ଜୟା, ବିଜୟା, ଜୟନ୍ତୀ, ଅନୁସୂୟା, ରକ୍ତା
ସିଦ୍ଧା, ଉତ୍‌ପଳା ଆବର ସେ ଅପରାଜିତା,
ଏହି ଅଷ୍ଟ ମାତୃଗଣ ପ୍ରମଥ ସହିତ
ଶିବଙ୍କ ପରିବାରରେ ସର୍ବେ ଅନ୍ତର୍ଭୁକ୍ତ ।
ସେହି ମାତୃଗଣ ମଧ୍ୟେ ଅଳମ୍ବୁଷା ଟାଣ
ଚଣ୍ଡ ନାମକ ବାୟସ ତାହାର ବାହାନ ।
ଐଶ୍ୱର୍ଯ୍ୟ ଶାଳିନୀ ଏହି ମାତୃଗଣ ଦିନେ
ଆତ୍ମ ତତ୍ତ୍ୱ ଆଲୋଚନା କରନ୍ତି ଗଗନେ ।
ଉପାସନା ପାନୋତ୍ସବ ଆଦି ଚାଲିଥାଏ
ମଦ୍ୟ ପିଇ ବାହାନଙ୍କ ନୃତ୍ୟ ଲାଗିଯାଏ ।
ବ୍ରାହ୍ମଣୀଙ୍କ ରଥ ବାହୁଥିଲେ ଯେ ହଂସିନୀ
କାମ ଭୋଳେ ଚଣ୍ଡ ସହ ମାତନ୍ତି ସେକ୍ଷଣି ।
ସାତୋଟି ଯାକ ହଂସିନୀ ହେଲେ ଗର୍ଭବତୀ
ଉତ୍ସବାନ୍ତେ ବ୍ରାହ୍ମଣୀଙ୍କ ନିକଟେ ଚଳନ୍ତି ।
ସକଳ ବୃତ୍ତାନ୍ତ ତହିଁ କଲେ ନିବେଦନ
ରଥ ବହନୁ ବ୍ରାହ୍ମଣୀ କଲେକ ବାରଣ ।
ଆଦେଶ ମାନି ହଂସିନୀ ତହୁଁ ଚଳିଗଲେ
ବିଷ୍ଣୁଙ୍କ ନାଭିକମଳ ମୂଳେ ପହଞ୍ଚିଲେ ।
ବ୍ରହ୍ମାଙ୍କ କମଳ ବନେ କରି ବିଚରଣ
ଯଥା କାଳେ ପ୍ରସବ ସେ କଲେ ଡ଼ିମ୍ବମାନ ।
ପ୍ରତ୍ୟେକେ ତିନୋଟି କରି ଏକୋଇଶ ଡିମ୍ବ
ବିଷ୍ଣୁଙ୍କ ନାଭି ପଲ୍ଲବେ ଦେଲେ ତାଙ୍କୁ ଠାବ ।
ସେହି ଡିମ୍ବମାନଙ୍କରୁ ଏକୋଇଶି ଭାଇ
ଜନ୍ମଲାଭ କରିଥିଲୁ ଆମ୍ଭେମାନେ ତହିଁ ।
ଆମ୍ଭେମାନେ ସର୍ବେ ଅଟୁ ଚଣ୍ଡ କାକସୂତ
ବିଷ୍ଣୁଙ୍କର ନାଭି ପଦ୍ମଦଳେ ଆମ୍ଭେ ଜାତ ।
ସେହିଠାରେ ଜନ୍ମ ହୋଇ ସେଠାରେ ବଢ଼ିଲୁ
ମାତା ସହ ବ୍ରାହ୍ମଣୀଙ୍କ ବହୁ ସେବା କଲୁ ।
ଏହିପରି ସେବା କରି ବହୁ କାଳ ଗଲା
ଆରାଧନାରେ ବ୍ରାହ୍ମଣୀ କୃପା ଦୃଷ୍ଟି ଦେଲା ।
ଆମ୍ଭମାନଙ୍କର ମୁକ୍ତି ବିଧାନ କରନ୍ତେ
ପିତା ପାଶେ ଚଳିଗଲୁ ମାତାଙ୍କ ସହିତେ ।
ଆମ୍ଭଙ୍କୁ ଦେଖିଣ ପିତା ଆଲିଙ୍ଗନ କଲେ
ପିତୃ ସ୍ନେହରେ ଆମ୍ଭର ମନ ମୋହିନେଲେ ।
ତତପରେ ଆମ୍ଭେମାନେ ଏମନ୍ତ ଯେ କଲୁ
ଅଳଂଭୂଷା ମାତୃକାଙ୍କ ପୂଜା ଆରମ୍ଭିଲୁ ।
ଆମ୍ଭ ପୂଜା ପାଇଁ ମାତା ପ୍ରସନ୍ନ ହୋଇଲେ
ତାଙ୍କ ଦୟା ଦେଖି ପିତା ଆମ୍ଭଙ୍କୁ କହିଲେ ।
ଆରେ ପିଲାମାନେ ମୋତେ କହ ଯେ ଏମନ୍ତ
ବାସନା ସୂତ୍ରେ ନିର୍ମିତ ଏହି ଯେ ଜଗତ ।
ଛିନ୍ନ କରି ପାରିଛି କି ସେ ଜଗତ ଜାଲ
ଯଦି ନ ପାରିଛି ତାହା ଏବେ ମୋତେ ବୋଲ ।
ଭଗବତୀ ପାଶେ ମୁହିଁ ପ୍ରାର୍ଥନା କରିବି
ତୁମ୍ଭଙ୍କୁ ଜ୍ଞାନ ଦେବାକୁ ପାଦେ ପଡ଼ିଯିବି ।
ପିତାଙ୍କୁ ଆମ୍ଭେ କହିଲୁ ଶୁଣ ଆହେ ତାତ
ବ୍ରାହ୍ମଣୀ କୃପାରୁ ଆମ୍ଭେ ହୋଇଛୁ ମୁକତ ।
ଗୋଟିଏ ନିର୍ଜନ ସ୍ଥାନ ଆମ୍ଭର ପ୍ରାର୍ଥନା
ଯହିଁ ବସବାସ କରି କାଳ କାଟୁ କିନା ।
ପିତା ବୋଲନ୍ତି ଶୁଣରେ ମୋର ପୁତ୍ରଗଣ
ସୁମେରୁ ଗିରିର ଯେଉଁ ଅଇଶାନ୍ୟ କୋଣ ।
ତହିଁ ଥିବା ଏକ କଳ୍ପ ବୃକ୍ଷର ଶାଖାରେ
କୋରଡ଼ ଗୋଟିଏ କରିଥିଲି ମୁଁ ସେଠାରେ ।

ଅଳଂମ୍ବୂଷାଙ୍କ ସମାଧି ମଗନ କାଳରେ
ମୁହିଁ ଯାଇ ବାସ କରିଥାଏ ସେହିଠାରେ ।
ଆରେ ପିଲେ ! ତୁମ୍ଭେମାନେ ସେହିଠାକୁ ଯାଅ
ତହିଁ ବସବାସ କରି ଦିନ କାଟୁଥାଅ ।
ହେ ମୁନିଶ ! ପୂଜ୍ୟ ପାଦ ପିତାଙ୍କ ଆଦେଶେ
ସେଦିନୁ ବାସ କରିଛୁଁ ଆମ୍ଭେ ଏହି ଦେଶେ ।
ହେ ମହାତ୍ମା ଆମ୍ଭ ଜନ୍ମ ତତ୍ତ୍ୱଜ୍ଞାନ ଲାଭ
ବସବାସ ଆଦିକରି ଯାହାକିଛି ସର୍ବ ।
ଯଥାଯଥ ଭାବେ ମୁହିଁ କଲି ହିଁ ବର୍ଣ୍ଣନ
ଏବେ ମୋ ବୟସ କଥା କରିବି ବଖାଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଭୂଷଣ୍ଡ ଉପାଖ୍ୟାନେ ମାତୃମାହାତ୍ମ୍ୟ ଓ ଅସ୍ତାଚଳ ଲାଭ ବର୍ଣ୍ଣନେ ନାମ ଚତୁର୍ଦ୍ଦଶ ସର୍ଗଃ**



## ପଞ୍ଚଦଶ ସର୍ଗଃ

## ସନ୍ତ ମାହାତ୍ମ୍ୟ

ହେ ମୁନିଶ କୋଟି କଳ୍ପ ପୂର୍ବେ ମୁଁ ଜନମ
ଲାଭ କରି ଏହିଠାରେ ରହିଅଛି ଜାଣ ।
ମୋର ବୟାନରୁ ଏହା ନ ବୁଝ ହେ ମୁନି
ଏହି କଳ୍ପାରମ୍ଭେ ଏଥି ଅଛି ମୁଁ ଜନମି ।
ଏହି କଳ୍ପେ ଯାହା ଯାହା ଦେଖୁଛି ହେ ଦେବ
ଅବିକଳ ପୂର୍ବ କଳ୍ପେ ଘଟିଛି ତା ସର୍ବ ।
ଆଜି ଯେ ଆପଣଙ୍କର ଦର୍ଶନ ଲଭିଲି
ଏହା ମୋ ପୂର୍ବ ସଞ୍ଚିତ ପୁଣ୍ୟରୁ ବୁଝିଲି ।
ଆପଣଙ୍କ ପାଦ ପଡ଼ିବାରୁ ଆହେ ମୁନି
ପବିତ୍ର ହେଲା ଏ ତରୁ ଏ କୋରଡ଼ ପୁଣି ।
ମୋରପାଦ୍ୟ ଅର୍ଘ୍ୟ ଏବେ କରିବା ଗ୍ରହଣ
ପବିତ୍ର କରନ୍ତୁ ଆଜ ମୋର ଏ ଜୀବନ ।
ଯାହା ଶୁଣିବାର ଇଚ୍ଛା କରନ୍ତୁ ପ୍ରକାଶ
ସାଦରେ ଦେବି ମୁଁ ମୁନି ସେ ସବୁ ସନ୍ଦେଶ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ତାହାକୁ ମୁଁ ପୁଚ୍ଛା କଲି ଆହେ ଖଗେଶ୍ୱର ।
କାହିଁ ରହିଛନ୍ତି କାକ ତୁମ ଭାଇମାନେ
ଗୋଟିଏ ତ ଦେଖା ନ ପଡନ୍ତି ମୋ ନୟନେ ?
କହନ୍ତି ଭୂଷଣ୍ଡ ମୁନେ ଏହିଠାରେ ମୁହିଁ
କେତେ କଳ୍ପଯେ କାଟିଛି ଗଣା ପାରିନୋହି ।
ଦିନ ପରେ ଦିନମାନ ଗତ ହେଲା ପରି
କେତେଯୁଗ ଯେ କଟିଛି ସଂଖ୍ୟା ନୁହେ କଳି ।
ଏଥିମଧ୍ୟେ ଯେତେଥିଲେ ମୋ ଅନୁଜଗଣ
ପରମପଦ ଲଭିଲେ ସାରି ତାଙ୍କ ଦିନ ।
କହନ୍ତି ବଶିଷ୍ଠ ଏବେ ଶୁଣ ଚଣ୍ଡସୂତ
ପ୍ରଳୟ କାଳ ଯେବେଟି ହୁଏ ସମାଗତ ।
ବାତସ୍କନ୍ଧ ବୋଲି କରି ଯେ ପ୍ରଳୟ ଝଞ୍ଜା
ପ୍ରବାହିତ ହେଲେ ଥରି ଉଠେ ଅସ୍ଥିମଜ୍ଜା ।
କିଛି କି କଷ୍ଟ ତୁମ୍ଭର ହୁଏ ଖଗେଶ୍ୱର
କିପରି ସେ କାଳ କାଟ ତାହା ମୋତେ ବୋଲ ।
ପ୍ରଳୟ କାଳରେ ଖଗ ଏହି ଯେ ଜଗତ
ବିକ୍ଷୁବ୍‌ଧ ଭାବରେ ହେଉଥାଏ ପ୍ରକମ୍ପିତ ।
ଭାଙ୍ଗି ନ ପଡ଼ଇ କିମ୍ବା ଏହି କଳ୍ପତରୁ
ବୁଝାଇ କହିବା ମୋତେ ଆହେ ଖଗଗୁରୁ ।
କହନ୍ତି ଭୂଷଣ୍ଡ ଶୁଣ ଆହେ ବହୁଋଷି
ପକ୍ଷୀଙ୍କ ଦୁଃଖ କିପରି ପାରିବି ପ୍ରକାଶି ।
ତାଙ୍କ ଦୁଃଖ ପରି ଦୁଃଖ ଅନ୍ୟ ପ୍ରାଣୀଙ୍କର
ଜଗତରେ ଦେଖାଯାଏ ନାହିଁ ତପୀବର ।
ହେ ଦେବ ନିତ୍ୟ ଆତ୍ମାରେ ଥାଏ ମୁଁ ସନ୍ତୁଷ୍ଟ
ତେଣୁ ବିପଦେ ଆପଦେ ନାହିଁ ମୋର କଷ୍ଟ ।
ନ ଛୁଅଇଁ ସେହି ଦୁଃଖ ତିଳେ ହେଲେ ମୋତେ
ଦୁଃଖ ଦେଖି ଆଖିବୁଜି ରହେ ମୁଁ ତୁରିତେ ।
ଦୈହିକ ବା ପାରତ୍ରିକ କର୍ମ ସମ୍ପାଦନେ
ନବଳଇ ଇଚ୍ଛା ମୋର ତିଳେହେଲେ ମନେ ।
ଏ ଦେହ ଛାଡ଼ିବା ପାଇଁ ନାହିଁ ମୋର ଇଚ୍ଛା
ନୈଷ୍କର୍ମ୍ମ୍ୟ ଅବଲମ୍ବନେ ବଳେ ମୋର ବାଞ୍ଛା ।
ନିତ୍ୟ ବୁଦ୍ଧ, ପୂର୍ଣ୍ଣାନନ୍ଦ, ଆତ୍ମସ୍ୱରୂପରେ
ସଂସ୍ଥିତ ରହିଛି ମୁହିଁ ଥିବି ଭବିଷ୍ୟରେ ।
ଏହି କଳ୍ପ ପାଦପରେ ଅବସ୍ଥାନ କରି
ଆତ୍ମାଲୋକେ ସୂକ୍ଷ୍ମ କାଳ ଗତି ଦେଖିପାରି ।
ସନ୍ତୋଷରେ ଏଥି ମୋର କଟିଯାଏ କାଳ
ସୁଖ ଦୁଃଖରେ ସଦା ମୁଁ ରହଇ ଅଟଳ ।
ନ ଥିଲେ ହେଁ ଦିବା ରାତ୍ରି ଏକଳ୍ପ ଭବନେ
ପ୍ରାଣର ପ୍ରବାହ ବଳେ କାଳଗତି ଜାଣେ ।
ସଦା ସ୍ଥିର ଶାନ୍ତି ରହିଅଛି ମୋର ମନ
ଯା କିଛି ଆସିଲେ କଷ୍ଟ ନ ଜାଣେ ମୁଁ ଜାଣ ।

ମୋ ମତରେ ଏ ଜଗତ ମାୟାରୁ ନିର୍ମିତ
ସତ୍ୟ ବୋଲି କେଭେଁ ମୋତେ ନୁହଇ ପ୍ରତୀତ ।
ପ୍ରଳୟ ଆସନ୍ତେ ନ ଦିଅଇ ମୋତେ କଷ୍ଟ
ପର୍ବତ ପରି ଅଟଳ ରହେ ମୁଁ ତପୀଷ୍ଟ ।
ତେଣୁ ଜାଗତିକ ଦୁଖେ ଦୁଃଖ ମୋ ନ ଥାଇ
ଦୁଃଖ କି ଅଦ୍ଭୁତ ବସ୍ତୁ ମୁଁ ତା ନ ଜାଣଇ ।
ଭୂତଗଣଙ୍କୁ ଘେନିଣ ଭବ ନଦୀ ସ୍ରୋତ
କାଳ ସମୁଦ୍ରରେ ନେଇ କରେ ନିକ୍ଷେପିତ ।
ଏଥିରେ ମୋହର କିଛି ଯାଏ ଆସେ ନାହିଁ
ଯେଣୁ ସେହି ନଦୀ କୂଳେ ବାସ ମୁଁ କରଇ ।
ଏକ ରୂପେ ଥାଇ ମୁହିଁ ତ୍ୟାଗ ବା ଗ୍ରହଣ
କିଛି ନ କଲାରୁ ସୁଖେ କଟେ ମୋର ଦିନ ।
ବ୍ୟବହାରିକ କର୍ମରେ ବିଷୟ ସହିତ
ତହିଁରେ ହେଲେ ହେଁ ମୋର ଏ ମନ ସଂଯୁକ୍ତ ।
ଅନୁରକ୍ତ କେଭେଁ ନୁହେଁ ତାହାର ସହିତ
ବିଷୟ ତତ୍ତ୍ୱକୁ ଯେଣୁ ହୋଇଛି ମୁଁ ଜ୍ଞାତ ।
ସମୁଦ୍ର ମନ୍ଥନୁ ଯଥା ଅମୃତ ପ୍ରାପତ
ଆପଣ ଆସିବା ମୋତେ ଦିଏ ସେ ଅମୃତ ।
ତତ୍ତ୍ୱ ଜ୍ଞାନୀ ମାନଙ୍କର ସଙ୍ଗ, ଗୁଣମାତ୍ର
ଜୀବର ଆତ୍ମ କଲ୍ୟାଣ ହୁଅଇ ପ୍ରାପତ ।
ବିଷୟ ଭୋଗରେ ସାର କିଛି ମାତ୍ର ନାହିଁ
ସତସଙ୍ଗରୁ ହିଁ ସାର ବସ୍ତୁ ଲବ୍ଧ ହୋଇ ।
ତ୍ରିଲୋକ ରୂପ ପଦ୍ମର ଆପଣ କେବଳ
ଏକମାତ୍ର ହିଁ ଭ୍ରମର ଆହେ ମୁନିବର ।
ଯଦିଓ ପୂର୍ବରୁ ମୁହିଁ ପରମାତ୍ମ ତତ୍ତ୍ୱ
ସୌଭାଗ୍ୟ ବଶରୁ ହୋଇଅଛି ପରିଜ୍ଞାତ ।
ତଥାପି ମୁଁ ବୋଧ କରୁଅଛି ଯେ ଏମନ୍ତ
ତୁମ୍ଭଙ୍କୁ ଦେଖି ମୋ ସର୍ବ ପାପ ଭସ୍ମୀଭୂତ ।
ହେ ସାଧୋ ! ଆଜ ପାଇ ମୁଁ ତୁମ ଦରଶନ
ସଫଳ କାମ ହୋଇଲା ମୋହର ଜନମ ।
କହନ୍ତି ଭୂଷଣ୍ଡ ଶୁଣ ହେ ମୁନି ପୁଙ୍ଗବ
ପ୍ରଳୟ କାଳରେ ଝଞ୍ଜା ପବନ ବହିବ ।
ଏହି ଯେ କଳ୍ପ ପାଦପ ତେତେବେଳେ ମଧ
ଅଚଳ ଅଟଳ ରହେ ଜାଣ ଆହେ ସିଦ୍ଧ ।
ନାନା ଲୋକ ବାସୀ ସର୍ବ ଭୂତଙ୍କ ଅଗମ୍ୟ
ଅଟଇ ହେ ଦେବ ଜାଣ ଏ କଳପଦ୍ରୁମ ।
ତେଣୁ କରି ମୁହିଁ ଜାଣ ଏହି ପାଦ ପରେ
ବସବାସ କରିଅଛି ନିର୍ଭୟ ମନରେ ।
ଉପଦ୍ରବ, ଉତପାତ ଘଟିଲେ ଜଗତ
କେବେହେଲେ ଏହି ତରୁ ନୋହେ ବିକମ୍ପିତ ।
ଏହି ଯେ ଅବିନଶ୍ୱର କଳପ ପାଦପ
ଯେଣୁ ମୋର ବାସସ୍ଥାନ ହେ ତପୀ ଅଧୀପ ।
ବିପଦ ଆପଦ ମୋତେ କାହୁଁ ବା ପଡ଼ିବ
ନିଶ୍ଚିନ୍ତରେ ଥାଏ ମୁହିଁ ଜାଣ ଏହା ଧ୍ରୁବ ।
କୁ ସ୍ଥାନରେ ବସବାସ କରି ପ୍ରାଣୀଗଣ
ହୋଇଥାନ୍ତି ନାନା ବିପଦର ସମ୍ମୁଖୀନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ସନ୍ତୁ ମାହାତ୍ମ୍ୟ ବର୍ଣ୍ଣନେ**
**ନାମ ପଞ୍ଚଦଶ ସର୍ଗଃ**



## ଷୋଡ଼ଶ ସର୍ଗଃ

## ଚିର୍ ଜୀବିତ ବୃତ୍ତାନ୍ତ

କହନ୍ତି ବଶିଷ୍ଠ ଶୁଣ ଆହେ ମହାମତେ
ଉତ୍ପାତ ପ୍ରଳୟ ଝଞ୍ଜା ବହଇ ଯେମନ୍ତେ ।
ଏକାବେଳକେ ଦ୍ୱାଦଶ ସୂର୍ଯ୍ୟଙ୍କ ଉଦୟ
ସକଳେ କ୍ଲେଶ ଲଭିବେ ଏକଥା ନିଶ୍ଚୟ ।
କେବଣ କାରଣ ଘେନି ଆହେ ଖଗବର
ଅକ୍ଲିଷ୍ଟ ଭାବେ ଆପଣ ଥାନ୍ତି କି ପ୍ରକାର ।
କହନ୍ତି ଭୂଷଣ୍ଡ କାକ ଶୁଣ ତପୀବର
କି ଭାବେ ମୁଁ ଦେହ ଧରି ରହେ ସେ କାଳର ।
ପ୍ରଳୟରେ ଯେତେବେଳେ ଜୀବ ସମୂହର
ବିପର୍ଯ୍ୟସ୍ତ ହୋଇପଡ଼େ ଜଗତ୍ ବ୍ୟବହାର ।
ବିଶୃଙ୍ଖଳ ଭାବେ ସର୍ବେ ହୁଅନ୍ତି ବିଲୀନ
କାହାରି ସତ୍ତା ନ ରହେ ସର୍ବେ ଛିନ୍ନଭିନ୍ନ
ତେବେ ତେଜି କରି ଏହି କୋରଡ଼ ମୋହର
ଅବସ୍ଥାନ କରେ ଯାଇ ଗଗନ ମଣ୍ଡଳ ।
ଏକ ସମୟରେ ଯେବେ ଦ୍ୱାଦଶ ଆଦିତ୍ୟ
ଉଦିତ ହୋଇ ବର୍ଷନ୍ତି ପ୍ରଚଣ୍ଡ ଉତ୍ତାପ ।
ଜଳ ଶରୀରୀ ବରୁଣ ହୋଇ ତେତେବେଳେ
ଅବସ୍ଥାନ କରେ ମୁହିଁ ଏ ମହୀ ମଣ୍ଡଳେ ।
ପ୍ରଳୟର ଝଞ୍ଜା ବାତ ଯେବେ ଆସେ ବହି
ପର୍ବତ ପରି ନିଜକୁ ମୁହିଁ ଯେ ମଣଇ ।

ଅଚଳ ଅଟଳ ଭାବେ ସଂସ୍ଥିତ ମୁଁ ରହେ
ମୋତେ ଦୋହଲାଇବାକୁ ଶକ୍ତି କାର ଥାଏ ।
ସୁମେରୁ ଗିରି ଇତ୍ୟାଦି ହୋଇ ବିଗଳିତ
ଯେ କାଳେ ଏକାର୍ଣ୍ଣବରେ ହୁଏ ପରିଣତ ।
ଆପଣାକୁ ବାୟୁବୋଧ କରି ମୁହିଁ ମୁନି
ଆକାଶେ ବିଚରୁ ଥାଇ ନିଜ ଆତ୍ମା ଘେନି ।
ଯେବେ ଅବ୍ୟା କୃତାବସ୍ଥା ଘଟେ ବ୍ରହ୍ମାଣ୍ଡର
ନିର୍ବିକଳ୍ପ ସମାଧି ମୁଁ ଧରେ ତପୀବର ।
ନିର୍ମଳ ବ୍ରହ୍ମରେ ମୁହିଁ ରହଇ ସଂସ୍ଥିତ
ପଦ୍ମ ଯୋନି ବ୍ରହ୍ମା ଜନ୍ମ ଲଭିବା ପର୍ଯ୍ୟନ୍ତ ।
ପୁଣି ବ୍ରହ୍ମା ଯେତେବେଳେ ସର୍ଜ୍ଜନା କରନ୍ତି
ତେତେବେଳେ ବ୍ରହ୍ମାଣ୍ଡକୁ ଖସି ଆସେ ଯତି ।
ଏହି କୋରଡ଼ରେ ମୁହିଁ କରେ ଅବସ୍ଥାନ
ବୁଝିଲ କି ତପୀବର ମୋ ଅବସ୍ଥାମାନ ।
କହନ୍ତି ବଶିଷ୍ଠ ଶୁଣ ଆହେ ପକ୍ଷୀ ଇନ୍ଦ୍ର
ପ୍ରଳୟ କାଳରେ ପଡ଼େ ଯେସନ ବିପଦ ।
ଯେଉଁ ବୋଧ ଶକ୍ତି ବଳେ ଅକ୍ଷତ ଶରୀରେ
ଅବସ୍ଥାନ କରି ରହ ମହା ପ୍ରଳୟରେ ।
ଅପରାପର ଯୋଗୀଏ କିମ୍ପାଇଁ ସେପରି
ଅପାରଗ ହୋଇଥାନ୍ତି ଆହେ ତପଚାରୀ ।
ଭୁଷଣ୍ଡ ବୋଲନ୍ତି ଦେବ ତାହା ଏବେ ଶୁଣ
କର୍ତ୍ତାଙ୍କ ନିୟତି ପଥ ଅଛଇ ଯେସନ ।
ସେହି ପଥକୁ କରିଣ ମୁଁ ଅନୁସରଣ
ଏହି ସଂକଳ୍ପକୁ କରି ଅଛଇ ବରଣ ।
ଏହିପରି ଅବସ୍ଥାନ କଳ୍ପେ କଳ୍ପେ ମୋର
ଏହି ପର୍ବତରେ ଏହି କଳ୍ପତରୁ ବର ।
ଏହି ରୂପେ ଉଦଭୂତ ହୋଇ ଚାଲିଥିବ
ତଥିପରେ ମୋର ବାସସ୍ଥାନ ହେଉଥିବ ।
ନିୟତି ପଥକୁ କେହି ଲଘି ନ ପାରଇ
ମୋ ସଂକଳ୍ପରୁ ନିୟତି ଏସନ ଘଟାଇ ।
କହନ୍ତି ବଶିଷ୍ଠ ଶୁଣ ବିହଙ୍ଗ ରାଜନ
ଆପଣଙ୍କ ଆୟୁବଳ ଅତୀବ ଅସୀମ ।
ତେଣୁ କରି ଆପଣଙ୍କ ପରି ବହୁଦର୍ଶୀ
କେହି ନାହାନ୍ତି ନଥିବେ ବିହଙ୍ଗମ ଋଷି ।
ବହୁ ସୃଷ୍ଟିର ଉଦ୍ଭବ ବିଲୟ ଆପଣ
ଦେଖିତ ଅଛନ୍ତି ଆହେ ବିହଙ୍ଗ ମହାନ ।
ଯେଉଁସବୁ ସୃଷ୍ଟି ଦେଖିଅଛନ୍ତି ଆପଣ
କି ଆଶ୍ଚର୍ଯ୍ୟ ବସ୍ତୁ ସବୁ ଥିଲେ ତା ମଧ୍ୟେଣ ।
ମନେ ତୁମ ଅଛି କି' ତା' ହେ ମଙ୍ଗଳମୟ
ଥିଲେ ତା କହିବା ମୋତେ ସଦୟ ହୃଦୟ ।
କହନ୍ତି ଭୂଷଣ୍ଡ ମୁନେ ତାହା ଏବେ ଶୁଣ
ସୁମେରୁ ଗିରିବରର ଅଧୋଦେଶେ ଜାଣ ।
ଏକ ସୃଷ୍ଟିରେ ଏ ଧରା ଥିଲା ବୃକ୍ଷ ଶୂନ୍ୟ
ପର୍ବତ, ତୃଣମାନଙ୍କ ନ ଥିଲା ତ ଚିହ୍ନ ।
ଅନ୍ୟ ଏକ ସୃଷ୍ଟି କାଳେ ଏହି ଯେ ଧରଣୀ
ଏଗାର ସହସ୍ର ବର୍ଷ ପରିଯନ୍ତେ ପୁଣି ।
କେବଳ ଭସ୍ମରେ ଆଚ୍ଛାଦିତ ଥାଏ ରହି
ପଶୁ, ପକ୍ଷୀ, ଜୀବଜନ୍ତୁ ମିଳିବେ ବା କାହିଁ ।
ନଥିଲେ ଚନ୍ଦ୍ରମା କିମ୍ବା ନ ଥିଲେ ତପନ
ଦିବସ, ରଜନୀ ସବୁ ଥିଲେକ ସପନ ।
ଅନ୍ୟ ଏକ ସୃଷ୍ଟିରେ ମୁଁ ଯାହା ଦେଖିଥିଲି
ସୁମେରୁ ପର୍ବତ ଥିଲା ମଣି ରତ୍ନେ ପୁରି ।
ସେ ରତ୍ନ ଜ୍ୟୋତିରେ ଦେବ ଏହି ଯେ ଜଗତ
ଅର୍ଦ୍ଧେ ସମୁଜ୍ଜ୍ୱଳ ଅର୍ଦ୍ଧେ ତିମିର ଆବୃତ ।
ଲୋକାଲୋକ ପରବତ ପରି ହେ ତପୀସ
ଦୂରୁ ଦେଖାଯାଏ ସେହି ମନୋହର ଦୃଶ୍ୟ ।
ଅନ୍ୟ ଏକ ସୃଷ୍ଟି କାଳେ ଯାହା ମନେ ହୁଏ
ଦେବାସୁର ରଣ ଲାଗେ କଳନା ନ ଯାଏ ।
ଜନଶୂନ୍ୟ ନାରଖାର ଦିଶେ ଏ ଧରଣୀ
ଗଡୁଥାନ୍ତି ମୁଣ୍ଡମାଳ କି କରାଳ ଧ୍ୱନି ।
ପୁଣି ଏକ ସୃଷ୍ଟି କାଳେ ଏହି ଧରା ତଳ
କାହିଁ ଲୁଚିଗଲା ସବୁ ଦିଶେ ଖାଲି ଜଳ ।
ଅନ୍ୟ ଏକ ସୃଷ୍ଟି କାଳେ ଦୁଇ ଯୁଗ ଧରି
ଏ ସାରା ପୃଥିବୀ ଥାଏ ବନରାଜି ପୂରି ।
ପ୍ରାଣୀ ସରଜନା ହୋଇ ନଥାଏ ସେ କାଳେ
ନିରଶତାର ରାଜତ୍ୱ ଅବନୀ ମଣ୍ଡଳେ ।
ଥରେ ଦେଖିଥିଲି ଶୁଦ୍ଧଃ ତେଜ ପୁଞ୍ଜମୟ
ସୃଷ୍ଟି ବିରାଜୁଣ ଥାଏ ହେ ବ୍ରହ୍ମା ତନୟ ।
ସେ ସୃଷ୍ଟିରେ ସ୍ତ୍ରୀ ପୁରୁଷ ମିଳନ ବ୍ୟତୀତ
କେବଳ ସଂକଳ୍ପବଳେ ପ୍ରଜା ହୋନ୍ତି ଜାତ ।
ଅନ୍ୟାନ୍ୟ ସୃଷ୍ଟିରେ ଯାହା ଦେଖିଥିଲି ମୁହିଁ
ତା' ଏବେ ବର୍ଣ୍ଣନ କରୁଅଛି ତୁମ୍ଭ ତହିଁ ।

ମୃର୍ତ୍ତିକାଦି କିଛି ମାତ୍ର ନ ଥିଲା ସେକାଳେ
ଦେବତାମାନଙ୍କ ବାସ ଗଗନ ମଣ୍ଡଳେ ।
ହେ ବତ୍ସ ବଶିଷ୍ଠ ! ଏବେ ଶୁଣ ମୋ ବଚନ
ତୁମର ବୟସ ମୋହଠାରୁ ଅତି କମ୍ ।
ଏହି କଳପର ଯେତେ ଅତୀତ ଘଟଣା
ଯେଣୁ ତାହାସବୁ ଜାଣିଅଛି ମହାମନା ।
ପୁନରାବୃତି ତାହାର କରିବଇ ନାହିଁ
ବୃଥାରେ କାଳ କ୍ଷେପଣ କରିବି କିମ୍ପାଇଁ ।
ଯେ ହେତୁରୁ ଚିରଜୀବୀ ହୋଇଅଛି ମୁହିଁ
ପ୍ରତିକଳ୍ପେ ଯା ଦେଖିଛି କହିଟି ପାରଇ ।
ବର୍ତ୍ତମାନ କଳପରେ ଯେ ବିଷ୍ଣୁ ଅଛନ୍ତି
ଅତୀତ କଳ୍ପେ ସେ ବ୍ରହ୍ମାରୂପ ଧରିଥାନ୍ତି ।
ନିଜେ ମୁଁ ନିଜ ଆଖିରେ ଦେଖିଛି ଏସନ
ଏବେ ସୁଦ୍ଧା ସେ ସକଳ ନାଚେ ମୋ ନୟନ ।
ତା ପୂର୍ବ କଳ୍ପରେ ଦେବ ସେହି ବ୍ରହ୍ମା ଜାଣ
ରୁଦ୍ର ରୂପେ ଧରିଥିଲେ ଦେଖିଛି ନୟନ ।
ସେହି ରୁଦ୍ରଙ୍କୁ ମୁଁ ପୁଣି ତା ପୂର୍ବ କଳ୍ପରେ
ବିଷ୍ଣୁ ରୂପେ ଦେଖିଥିଲି ଏ ବେନି ନେତ୍ରରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଚିର ଜୀବିତ ବୃତ୍ତାନ୍ତ ବର୍ଣ୍ଣନେ**
**ନାମ ଷୋଡ଼ଶ ସର୍ଗଃ**



## ସପ୍ତଦଶ ସର୍ଗଃ
## ଚିର ଜୀବିତ୍ୱ ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ ଏହାପରେ ମୁହିଁ
ଭୁଷଣ୍ଡଙ୍କୁ ପୁନରପି ପ୍ରଶ୍ନ କରିଲଇଁ ।
ହେ ବିହଙ୍ଗ ରାଜ ଏବେ କହିବାକ ମୋତେ
ତୁମ୍ଭେ ମଧ୍ୟ ବାସକର ଏ ମର ଜଗତେ ।
ମୃତ୍ୟୁ କିମ୍ପା ଆପଣଙ୍କୁ ଗ୍ରାସ କରେ ନାହିଁ
ଅମର ମହୋଷଧି କି ଖାଇଛ ଗୋସାଇଁ ।
କହନ୍ତି ଭୂଷଣ୍ଡ ଶୁଣ ଆହେ ତପୀବର
ଦୋଷ ଜାଲରେ ଜଡ଼ିତ ହୃଦ ନୁହେଁ ଯାର ।
ବାସନା ସୂତ୍ରରେ ପୁଣି ନୁହେଁ ମୁଁ ଗ୍ରଥିତ
ମରଣ ମୋତେ କେବେହେଁ ନକରେ ଆକ୍ରାନ୍ତ ।
ଯେହୁ ନୁହେଁ କାମ ଆଦି ରିପୁ ବଶୀଭୂତ
ମୃତ୍ୟୁ ନ କରଇ ତାକୁ କେଉଁ କବଳିତ ।
ପରମ ପଦେ ବିଶ୍ରାମ ଲଭେ ଯାର ଚିତ୍ତ
ମୃତ୍ୟୁ ତାକୁ ଗ୍ରାସ ନ କରଇ କଦାଚିତ ।
ଶରୀର ରୂପକ ବନେ ପ୍ରବେଶ କରିଣ
ମର୍କଟ ପରି ଚଞ୍ଚଳ ନୁହେଁ ଯାର ମନ ।
ତାକୁ ମଧ୍ୟ ମୃତ୍ୟୁ ବଧ କରି ନପାରଇ
ମୃତ୍ୟୁଦେବ ତାକୁ ଦେଖି ସଦା ଡରୁଥାଇ ।
ସମାଧିମଗ୍ନ ହୋଇଛି ଯେଉଁ ବ୍ୟକ୍ତି ଚିତ୍ତ
ସଂସାର ମାୟାରେ ସେହି ନୁହେଁ ବିଚଳିତ ।
ସୁପ୍ତ ବା ଜାଗ୍ରତ ନୋହିଥାଇ ଯେଉଁ ବ୍ୟକ୍ତି
ଉଦୟ ବା ଅସ୍ତ କିମ୍ବା ସ୍ମୃତି ବା ବିସ୍ମୃତି ।
କେହି ତାର ମାନସକୁ ଛୁଇଁ ନ ପାରନ୍ତି
ସର୍ବଦା ମୁକତ ସେହୁ ସଦା ତାର ଶାନ୍ତି ।
କାମ କ୍ରୋଧାଦି ଜନିତ ଯେ ସକଳ ଭାବ
ହୃଦୟାକାଶକୁ ତାଙ୍କ ଆଚ୍ଛନ୍ନ କରିବ ।
ସମାଧି ମଗ୍ନ ବ୍ୟକ୍ତିଙ୍କୁ ସେ ସକଳ ଭାବ
ସ୍ପର୍ଶ କରି ନ ପାରନ୍ତି ହେ ମୁନି ପୁଙ୍ଗବ ।
ଆଦାନ, ପ୍ରଦାନ କିମ୍ବା ପ୍ରାର୍ଥନା ବା ତ୍ୟାଗ
ତା ପାଇଁ ନ ଥାଏ ଜାଣି ରଖ ମହାଭାଗ ।
ତଥାପି ସେ ରହିଥାଏ ସର୍ବ କର୍ମେ ରତ
କେଉଁଥିରେ ତାଙ୍କ ମନ ନ ଥାଇ ଆସକ୍ତ ।
ସଦା, ସର୍ବ ଅବସ୍ଥାରେ ଯାହାକି ମଧୁର
ପରମ ସୁଖ ସ୍ୱରୂପ ପୁଣି ହିତକର ।
ସେ ବ୍ରହ୍ମ ପ୍ରତି ମନକୁ କର ଅନୁରକ୍ତ
ମାନବ କର୍ତ୍ତବ୍ୟ ଏହା ଅଟେ ତପୋବନ୍ତ ।
ଅମୃତର ଅମୃତ ଯେ ବୁଦ୍ଧିର ଆଲୋକ
ଯାଠାରୁ ନାହିଁ କେ ଶ୍ରେଷ୍ଠ ଆନନ୍ଦଦାୟକ ।
ମନକୁ ସେ ଆତ୍ମତତ୍ତ୍ୱେ କରିବା ବିଲୀନ
ପରମ କର୍ତ୍ତବ୍ୟ ଅଟେ ଆହେ ତପୋଧନ ।
ସ୍ଥାୟୀ ମଙ୍ଗଳଦାୟକ ସ୍ୱର୍ଗ ମଧ୍ୟ ନାହିଁ
ମର୍ତ୍ତ୍ୟାଦି ଅନ୍ୟ ଲୋକରେ ଥିବ ଅବା କାହିଁ ?
ବିବେକ ସମ୍ପର୍ଣ୍ଣ ସାଧୁ ପୁରୁଷଙ୍କ ଚିତ୍ତ
ସୁଭାଗ୍ୟରୁ ବ୍ରହ୍ମଙ୍କୁ ଯେ ହୋଇଥାଏ ପ୍ରାପ୍ତ ।
ଯାହାଙ୍କୁ ପାଇଲେ ଚିର ବିଶ୍ରାମ ମିଳଇ
ସେହି ନିତ୍ୟ, ତାର ତୁଲେ ସର୍ବ ତୁଚ୍ଛ ହୋଇ ।
ରାଜ ଐଶ୍ୱର୍ଯ୍ୟକୁ ଯେହୁ ସୁଖକର ମଣେ
କେବଳ ତା ମୋହ, ଫଳ ବୁଝ ତପୋଧନେ ।

ପରମ ପଦ ଲଭିଛି ଯେ ବିବେକ ବଳେ
ଏହାକୁ ସେ ତୁଚ୍ଛ ଜ୍ଞାନ କରିଥାନ୍ତି ହେଳେ ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଚିର ଜୀବିତ୍ୱ ବର୍ଣ୍ଣନେ ନାମ ସପ୍ତଦଶ ସର୍ଗଃ**



## ଅଷ୍ଟାଦଶ ସର୍ଗଃ

## ଭୂଷଣ୍ଡ ଚିରଜୀବିତ ବର୍ଣ୍ଣନ

କହନ୍ତି ବଶିଷ୍ଠ ମୁନି ହେ ପକ୍ଷୀନାୟକ
ଅତ୍ୟନ୍ତ ଦୀର୍ଘାୟୁ, ତୁମେ ଅତି ସୁବିବେକ ।
ଜ୍ଞାନ-ବିଜ୍ଞାନ ସଂପନ୍ନ ପୁଣି ଯୋଗେଶ୍ୱର
ଆଶ୍ଚର୍ଯ୍ୟ ଘଟଣାମାନ ଦେଖିଛ ଅପାର ।
ଯାହାକିଛି ସ୍ମୃତିପଟେ ଅଛଇ ତୁମର
ଦୟା ପରବଶ ହୋଇ ପରକାଶ କର ।
କହନ୍ତି କାକ ଭୂଷଣ୍ଡ ଶୁଣ ମୁନିଶ୍ୱର
ଯା କିଛି ଦେଖିଛି ଏବେ ମନେ ପଡ଼େ ମୋର ।
କେବଳ ତୃଣ ପାଦପ ଥିଲେ ଧରାତଳ
କଉଣସି ଜୀବଧାରୀ ନ ଥିଲେ ତହିଁର ।
ଏଗାର ହଜାର ବର୍ଷକାଳ ଗଡ଼ିଗଲା
ସର୍ବସ୍ଥଳେ ଭସ୍ମରାଶି ମାତ୍ର ରହିଥିଲା ।
ପୁନର୍ବାର ଧରାତଳେ ଏମନ୍ତ ଘଟଇ
ବୃକ୍ଷ ତୃଣ ଆଦି ଯେତେ, ଜଳ ପାଲଟଇ ।
ପୁଣି ଏମନ୍ତ କଥାଏ ପଡ଼େ ସ୍ମୃତିପଥେ
ଚନ୍ଦ୍ର ସୂର୍ଯ୍ୟ ଆଦି କିଛି ନ ଥିଲେ ଜଗତେ ।
ଦିବସ ରଜନୀ ଗତି ଜଣା ନ ପଡ଼ଇ
ସୁମେରୁ ପର୍ବତ ରନ୍ ପ୍ରକାଶ ଦିଅଇ ।
ପୁଣି ଏକ କାଳପରେ ଏମନ୍ତ ଘଟିଲା
ଦେବ ଦାନବଙ୍କ ମଧ୍ୟେ ସମର ଲାଗିଲା ।
ବିଜୟ ଲଭିଣ ଦୈତ୍ୟ ଏମନ୍ତ ଯେ କଲେ
ନରପରି ଦେବତାଙ୍କୁ ହାଣି ପକାଇଲେ ।
ପୁଣି ଅନ୍ୟ ଏକ କଳ୍ପେ ଘଟିଲା ଏମନ୍ତ
ନର ବା ଦେବତା ନ ପଡ଼ନ୍ତି ନେତ୍ରପଥ ।
ଅନ୍ୟ ଏକ ସୃଷ୍ଟିରେ ଯେ ଏମନ୍ତ ଘଟିଲା
ମଦ ପିଇଣ ବ୍ରାହ୍ମଣ ଦିନ କାଟୁଥିଲା ।
ଶୁଦ୍ରମାନେ ବଡ଼ଲୋକ ହୋଇ ବସିଥାନ୍ତି
ସର୍ବସ୍ଥଳେ ବିପର୍ଯ୍ୟୟ-ଧର୍ମର ରାଜୁତି ।

କେଛ ଥିଲା, ଯେତେଛଳେ ପର୍ବତ ପାହାଡ଼
ନ ଦିଶଇ ଧରାତଳ ଥିଲା ସମତଳ ।
ଏକ ସୃଷ୍ଟି କାଳେ ଜାଣ ହିରଣ୍ୟ ରାକ୍ଷସ
ବେଦଚୋରି କରି ହେଲା ହରିହାତେ ନାଶ ।
କ୍ଷୀର ସମୁଦ୍ର ମନ୍ଥନ ପଡ଼େ ମୋର ମନ
ରାକ୍ଷସେ ହତାସ, ଦେବେ କଲେ ସୁଧାପାନ ।
ଏପରି ସୃଷ୍ଟିଏ ମଧ୍ୟ ଦେଖୁଅଛି ମୁହିଁ
ଯେକାଳେ କି ବିଷ୍ଣୁଙ୍କର ଗରୁଡ଼ ନ ଥାଇ ।
ବୁଢ଼ା ବଳଦ ନ ଥାଏ ସଦାଶିବଙ୍କର
ମରାଳ ବିହୁନେ ବ୍ରହ୍ମା ହେଲେ ହରବର ।
ଆଉ ମଧ୍ୟ ଏକସୃଷ୍ଟି ହୁଏ ଉତପନ୍ନ
ବ୍ରହ୍ମତତ୍ତ୍ୱବାଦୀମାନେ ଲଭିଲେ ଜନମ ।
ତୁମେ ବଶିଷ୍ଠ ଆବର ମୁନି ଭରଦ୍ୱାଜ
ପୁଲସ୍ତ୍ୟ, ନାରଦ, ଇନ୍ଦ୍ର ଦେଖାଇଲେ ତେଜ ।
ମରୀଚି, ଅତ୍ରୀ, ଅଙ୍ଗୀରା, ସନତ କୁମାର
ଉଦ୍ଦାଳକ, କ୍ରତୁ ଭାରଗବ ତପୀବର ।
ମେରୁ, ମନ୍ଦର, କୈଳାସ, ହିମାଳୟ ଗିରି
ସର୍ବେ ଜନମ ଲଭନ୍ତେ ବଢ଼େ ଧରା ଶିରୀ ।
ଗୌରୀ, ସରସ୍ୱତୀ, ଲକ୍ଷ୍ମୀ ପୁଣି ଗାୟତିରୀ
ଜନମ ଲଭନ୍ତେ ହର୍ଷ ମାନସ ସ୍ୱବୁରି ।
ହୟଗ୍ରୀବ, ହିରଣାକ୍ଷ, କାଳନେମୀ ବଳ
ହିରଣ୍ୟକଶିପୁ, ବଳି, ପ୍ରହ୍ଲାଦ, ଅସୁର ।
ଶିବି, ପୃଥୁକେଳି ନଳ, ମାନ୍ଧାତା ସଗର
ନାଭାଗ, ଦିଲ୍ଲୀପ ନହୁଶାଦି ନରବର ।
ବ୍ୟାସ, ଭାଗିରଥ, ବାଜ୍ଞାୟନ ପୁଣି ଶୁକ
ମତୀମଙ୍କୀ ଓ ଆତ୍ରେୟ ପୁଣି ବାଲମିକ ।
ଜନମ ଲଭିବା କଥା ଅଛି ମୋର ମନେ
ଜଳ ଜଳ ଦିଶିଯାଏ ଜାଣ ତପୋଧନେ ।
ଆହେ ମୁନି ତୁମେ ଅଟ ବ୍ରହ୍ମାଙ୍କ ନନ୍ଦନ
ତୁମ ଆଠ ଜନ୍ମ ଯାକ ଅଛି ମୋ ସ୍ମରଣ ।
କେତେବେଳେ ନେଇ ତୁମେ ଆକାଶୁ ଜନମ
କେବେ ଅବା ସଲିଳରୁ ତୁମ ଆଗମନ ।
କେତେବେଳେ ଅବା ତୁମେ ପବନରୁ ଜାତ
ପର୍ବତ, ଅନଳୁ ପୁଣି କେବେ ବା ସମ୍ଭୂତ ।
କୂର୍ମ ଅବତାର ଧରି ନିଜେ ଦେବ ହରି
ଜଳେ ବୁଡ଼ି ଯାଉଥିବା ଏହି ବସୁନ୍ଧରୀ ।

ଥରେ ନୁହେଁ ପାଞ୍ଚଥର ଆଣିଲେ ଉଦ୍ଧରି
ଏହି କଥା ମନେ ପଡ଼େ ଆହେ ତପଚାରୀ ।
ସାର ହୀନା ହୋଇଯାଏ ଯେବେ ଏ ଧରଣୀ
କ୍ଷୀର ସାଗର ମନ୍ଥିଲେ ମନ୍ଦରକୁ ଘେନି ।
ବେଳୁ ବେଳ ନିମ୍ନଗାମୀ ହୁଅନ୍ତେ ମନ୍ଦର
ଭାଳେଣି ପଡ଼ିଲା ଦେବ ଅସୁରାଦିଙ୍କର ।
ଏହା ଦେଖି କୂର୍ମ୍ମ ରୂପ ଧରି ଭଗବାନ
ମନ୍ଦର ଟେକନ୍ତେ ଚଳେ ସାଗର ମନ୍ଥନ ।
ଥରେ ନୁହେ ଦୁଆଦଶ ବାର ମୁଁ ଦେଖିଛି
ଲକ୍ଷ୍ମୀ, ସୁଧା, ଐରାବତ ସବୁ ବାହାରିଛି ।
ପୃଥିବୀକୁ ହିରଣାକ୍ଷ ତିନି ବାର କରି
ପାତାଳପୁରକୁ ଟାଣିନେଲା ତପଚାରୀ ।
ପର୍ଶୁରାମ ଅବତାର ହୋଇଲେ ଛ'ଥର
କ୍ଷତ୍ରିୟ ରକ୍ତେ ରଞ୍ଜିତ ହେଲା ଧରାତଳ ।
ଗୋଟା ଗୋଟା ହୋଇ ଶହେ କଳିଯୁଗ ଗଲା
ଶହେ ଥର ଗଉତମ ଜନମ ଲଭିଲା ।
ଶୁଦ୍ଧୋଦନ ରାଜାଙ୍କର ପୁତ୍ର ରୂପେ ଜନ୍ମି
ବୁଦ୍ଧ ଦଶା ପ୍ରାପ୍ତ ହୋଇଥିଲେ ଦେବ ସ୍ୱାମୀ ।
ବାଣାସୁର ପାଇଁ ହେଲା ହରିହର ରଣ
ଆଠ ଥର ଦେଖିଅଛି ଏ ମୋର ନୟନ ।
ପ୍ରତି ଦ୍ୱାପର ଶେଷରେ ଲେଖକ ଭେଦରେ
ପୁରାଣମାନ ରଚନା ହୁଏ ସୁବିଚାରେ ।
ଯୁଗେ ଯୁଗେ ବ୍ୟାସ ବାଲମିକ ଜନମନ୍ତି
ଭାରତ ରାମାୟଣକୁ ରଚନା କରନ୍ତି ।
ବଶିଷ୍ଠ, ବିଶ୍ୱାମିତ୍ରଙ୍କୁ ଯେଉଁ ଜ୍ଞାନ ଶାସ୍ତ୍ର
ଲକ୍ଷେ ଶୋଳକରେ ବ୍ରହ୍ମା ଯା କଲେ ବର୍ଣ୍ଣିତ ।
ପ୍ରଚଳିତ ରାମାୟଣଠାରୁ ଯାହା ଭିନ୍ନ
ସେହି ରାମାୟଣ ମଧ୍ୟ ଶୁଣିଛି ମୋ କାନ ।
ମନଯୋଗ ସହ ଏହି ଶାସ୍ତ୍ର ଯେ ପଢ଼ିବ
ଏହି ଉପଦେଶ ତା'ର ହୃଦେ ନାଚୁଥିବ ।
ଶ୍ରୀରାମଙ୍କ ବ୍ୟବହାର ସଦା କରଣୀୟ
ରାବଣ ବିଳାସମାନ ସଦା ବର୍ଜନୀୟ ।
ସେହି ଶାସ୍ତ୍ରର ଲେଖକ ମହର୍ଷି ବାଲ୍ମୀକ
ଏହୁ ଲେଖିବେ ବତିଶ ହଜାର ଶୋଳକ ।
ରାମ, ବଶିଷ୍ଠ ସମ୍ବାଦି ମହା ରାମାୟଣ
ଆବର ଯୋଗବାଶିଷ୍ଠେ ହେବ ତାର ନାମ ।

ଦିବ୍ୟ ଦୃଷ୍ଟିରେ ଏସବୁ ଦିଶୁଅଛି ମୋତେ
ସମୟରେ ଜାଣିବ ତା ଆହେ ମହାମତେ ।
ଏ ଶାସ୍ତ୍ରର ସମକକ୍ଷ ଅନ୍ୟ ଏକ ଶାସ୍ତ୍ର
ମହାଭାରତ ନାମରେ ଯାହା କି ବିଦିତ ।
ପ୍ରାକ୍ତନ ବ୍ୟାସ ମୁନି ଯେ ଏହାର ନିର୍ମାତା
ବାରମ୍ବାର ବିରଚିତ ହେବ ଏହି କଥା ।
ବାର ଥର ରାମାୟଣ ବାଲମିକ ମୁନି
ଲେଖି ଯାଇଛନ୍ତି ଜାଣ ସୁବିଜ୍ଞ ସୁଜ୍ଞାନୀ ।
ବ୍ୟାସଦେବ ଲେଖିଛନ୍ତି ଶ୍ରୀ ମହାଭାରତ
ଦୁଇ ବାର ଲେଖିଛନ୍ତି ଆହେ ତପୋବନ୍ତ ।
ଦି ସାତ ବାର ଅବତାର ନେଇଛନ୍ତି ସେହି
ଏହି କଥା ସବୁ ମୋର ମନେ ରହିଛଇ ।
ଦୈତ୍ୟ ବିନାଶ ନିମିତ୍ତ ଯୁଗେ ଯୁଗେ ହରି
ଅବତାର ନେଇଥାନ୍ତି ଜାଣ ତପଚାରୀ ।
ଏଗାର ହୋଇଛି ଜାଣ ରାମ ଅବତାର
ବସୁଦେବ ଘରେ ଜନ୍ମେ କୃଷ୍ଣ ଷୋଳ ଥର ।
ତିନି ବାର ହୋଇଅଛି ନୃସିଂହାବତାର
ଏସବୁ ଅଙ୍କିତ ଅଛି ମୋ ମନ ପଟଳ ।
ଏପରି ଅନେକ ସୃଷ୍ଟି ମୋ ମନେ ପଡୁଛି
ସେ ସକଳ ଭ୍ରମ ମାତ୍ର ନ ଉପୁଜେ କିଛି ।
ଆତ୍ମତତ୍ତ୍ୱ ଦୃଷ୍ଟିରୁ ମୁଁ ଯେବେ ଭାବୁଛଇଁ
ସକଳ ଭ୍ରମ ମାତ୍ରକ ଜାଣ ତପୀ ସାଇଁ ।
ସୃଷ୍ଟିର ପ୍ରକ୍ରିୟା ମଧ୍ୟେ ଏହିପରି ଜାଣ
କେତେ ସୃଷ୍ଟି ଉପୁଜୁଛି କେତେ ଯେ ବିଲୀନ ।
କେତେକ ଅର୍ଦ୍ଧ ସମାନ ଆବର ସମାନ
ବିପର୍ଯ୍ୟୟ ମଧ୍ୟ କେତେ ହୋଇଥାନ୍ତି ଜାଣ ।
କେଉଁ ସୃଷ୍ଟି ଧର୍ମ କର୍ମ ଏକଇ ପ୍ରକାର
କାହିଁ ମଧ୍ୟ ହୋଇଥାଏ ଭିନ୍ନ ରୂପ ତାର ।
କାହିଁ ପିତା ହୁଏ ପୁତ୍ର କାହିଁ ପୁତ୍ର ପିତା
କାହିଁ ଶତ୍ରୁ ମିତ୍ର ହୁଏ, କାହିଁ କନ୍ୟା ମାତା ।
କେବେ ଏହି କଳ୍ପବୃକ୍ଷେ ହୁଏ ମୋ ଆଶ୍ରମ
କେବେ ମନ୍ଦରାଚଳରେ ହୁଏ ମୋର ସ୍ଥାନ ।
କେବେ ହିମାଳୟେ ଯାଇ କରଇ ରହଣି
କେବେ ମଳୟ ପର୍ବତେ ଯାଇ ରହେ ପୁଣି ।
କେବେ ବନ ମଧ୍ୟେ ପୁଣି କେବେ ବୃକ୍ଷପରେ
ବାସ କରି ରହେ ମୁହିଁ ଜାଣ ତପୀବରେ ।

ଅଧୁନା ଏ କଳ୍ପ ବୃକ୍ଷେ ମୁହିଁ ରହୁଅଛି
ବହୁକାଳ ଗତହୋଇ ଏ ମଧ୍ୟେ ଯାଇଛି ।
ମୋର ପିତା ଚଣ୍ଡ ଯେବେ ବଞ୍ଚି ରହିଥିଲେ
ଏ ବୃକ୍ଷ ଶୋଭା ଯା'ଥିଲା ଅଛି ଅବିକଳେ ।
ସୃଷ୍ଟିର ବିନାଶ ମଧ୍ୟେ ମୋର୍ ଏ ଶରୀର
ଏହିପରି ରହିଥାଏ ଜାଣ ତପୀବର ।
ତେତେବେଳେ ବସେ ମୁହିଁ ଆସନ ଲଗାଇ
ବ୍ରହ୍ମସତ୍ତା ମଧ୍ୟେ ନିଜ ପୂର୍ଯ୍ୟଷ୍ଟକ ଥୋଇ ।
ତେଣୁ ଏ ଶରୀର ମୋତେ ପୂର୍ଣ୍ଣପରାପତ
ହୋଇଥାଏ ଜାଣିରଖ ଆହେ ତପୋବନ୍ତ ।
ହେ ମୁନିଶ ! ଏ ଜଗତ ସଂକଳପ ମାତ୍ର
ସଂକଳ୍ପ ସ୍ଫୁରିତ ହୋନ୍ତେ ଆପେ ପ୍ରତିଭାତ ।
ତେଣୁ ଜଗତ ନୁହଇ ସତ ବା ଅସତ
ଏ ଜଗତ ଜାଣ ଖାଲି ଅଟେ ଭ୍ରମ ମାତ୍ର ।
ବହୁତ ଆଶ୍ଚର୍ଯ୍ୟ କଥା ହୁଏ ସେହି ଭ୍ରମେ
କେଉଁ ପିତା ପୁତ୍ର ହୁଏ ପୁତ୍ର ପିତା ସ୍ଥାନେ ।
ମଇତ୍ର ଶତ୍ରୁ ପାଲଟେ ଶତ୍ରୁଟି ମଇତ୍ର
ନାରୀ କେବେ ନର ହୁଏ କେବେ ବିପରିତ ।
କେଉଁ କଳ୍ପେ ସତ୍ୟ ଯୁଗେ କଳି ଆଚରଣ
କଳିଯୁଗେ କେବେ ମଧ୍ୟ ସତ୍ୟ ଆଗମନ ।
ତ୍ରେତୟା, ଦ୍ୱାପରେ କେବେ ସତ୍ୟ ଆଚରଣ
କେବେ ସତ୍ୟ କଳି ମଧ୍ୟ କରେ ଆଗମନ ।
ଏପରି ଘଟଣାମାନ ମୋ ସ୍ମୃତିରେ ଅଛି
ଆଶ୍ଚର୍ଯ୍ୟ ନୋହିବ ପୁଣି ଆହେ ତପୀବସ୍ୱୀ ।
ମନେ ପଡ଼େ କେଉଁ ସତ୍ୟଯୁଗେ ବେଦବିଦ୍ୟା
ଲୋକ ଗୋଚରକୁ ଆସି ନ ଥିଲା ସେ ଧନ୍ଦା ।
ଠରାଠରି ସଙ୍କେତରେ କାମ ଚଳୁଥାଇ
ଲୋକ ଆଚରଣ ଅତି ଉଶୃଙ୍ଖଳ ହୋଇ ।
ନନ୍ଦରାଜ କେଉଁ ସତ୍ୟ ଯୁଗ ମଧ୍ୟେ ଜାଣ
ନିଜ ସହୋଦର ଦ୍ୱାରା ଦ୍ୟୁତେ ହତମାନ୍ୟ ।
ବିନା ଅପରାଧେ ନିଜ ଘରଣୀକୁ ସେହି
ବିତାଡ଼ିତ କରିଥିଲେ ଅର୍ଦ୍ଧବସ୍ତ୍ର ଦେଇ ।
ଏକ ସସ୍ର ଗଣ୍ଡା ଯୁଗ ଯେବେ ଗତ ହୋଇ
ଜଗତ ସଂହାର ଦେଖି ବ୍ରହ୍ମ ନିଦ୍ରା ଯାଇ ।
ପରମାତ୍ମଧ୍ୟାନେ ରତ ଯୋଗନିଦ୍ରାବଳେ
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ରାଜେ ସର୍ବସ୍ଥଳେ ।

ଏହିଁ କଥାମଧ୍ୟେ ମୋର ସ୍ମରଣ ଅଛଇ
ଚିତ୍ର-ବିଚିତ୍ରାଦି ବହୁକାର୍ଯ୍ୟ ଘଟିଯାଇ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଭୁଷୁଣ୍ଡି ଚିରଜୀବିତ ବର୍ଣ୍ଣନେ**
**ନାମ ଅଷ୍ଟାଦଶ ସର୍ଗଃ ।**



## ଊନବିଂଶ ସର୍ଗଃ

## ସଂକଳ୍ପ ନିରାକରଣ

କହନ୍ତି ଭୂଷଣ୍ଡ ସର୍ବବିଧ ଜ୍ଞାନ ମଧ୍ୟେ
ଅଦ୍ୱୈତ ଜ୍ଞାନ ହିଁ ସର୍ବ ଶ୍ରେଷ୍ଠ ତପୋନିଧେ ।
ତାହା ପୁଣି ହୋଇଥିବ ସର୍ବଭ୍ରାନ୍ତି ହୀନ
ନଥିବ ତହିଁରେ ଲେଶ ମାତ୍ର ଭ୍ରମଜ୍ଞାନ ।
କେବଳ ଆତ୍ମଭାବନା ଦ୍ୱାରା ଜୀବଗଣ
ସରବ ଦୁଃଖରୁ ପାଇଥାନ୍ତି ପରିତ୍ରାଣ ।
ଆତ୍ମଜ୍ଞାନ ଉଦୟେ ହିଁ ସଂସାରର ଭ୍ରାନ୍ତି
ଦୂରୀଭୂତ ହୋଇଥାନ୍ତି ଆହେ ବ୍ରହ୍ମପତି ।
ଯେ ଆତ୍ମଭାବନା ତତ୍ତ୍ୱ ମୁହିଁ କହିଲଇଁ
କଳ୍ପନା ଅତୀତ ତାହା ବୁଝ ତପୀସାଇଁ ।
ଏହି ଆତ୍ମଭାବନାର ବହୁ ସଖୀଛନ୍ତି
ଆତ୍ମଭାବନା ସଦୃଶ ସେମାନେ ଅଟନ୍ତି ।
ଅଥଚ ସହଜସାଧ୍ୟ ଅଟନ୍ତି ସେମାନେ
ପ୍ରେରଣା ଦେଇ ସେ ଥାନ୍ତି ସାଧକର ମନେ ।
ସେହି ଭାବନା ମଧରୁ ମାତ୍ର ଗୋଟିକରେ
ଅଭ୍ୟସ୍ତ ହୋଇଛି ମୁହିଁ ଜାଣ ତପୀବରେ ।
ପ୍ରାଣଭାବନା ଅଟଇ ସେ ଭାବନା ନାମ
ସର୍ବଦୁଃଖନିବାରିଣୀ ସେ ଭାବନା ଜାଣ ।
ସର୍ବସୌଭାଗ୍ୟ ଜନନୀ ଯେଣୁ ସେ ଭାବନା
ତେଣୁ ଏ ଦୀର୍ଘ ଜୀବନ ମୋର ମହାମନା ।
କହନ୍ତି ବଶିଷ୍ଠ ମୁନି ଏସବୁ ଭାବନା
ଯଦିଓ ମୁଁ ଜାଣିଥିଲି ରାମ ମହାମନା ।
ତଥାପି ମୁଁ ଭୂଷଣ୍ଡକୁ ପ୍ରଶ୍ନ କରିଥିଲି
ପ୍ରାଣଭାବନା ବିଷୟ କହ ମୋତେ ବୋଲି ।
ଭୁଷଣ୍ଡ କହିଲେ ମୁନୀ ଯେ ବେଦାନ୍ତ ଶାସ୍ତ୍ର
ସମ୍ୟକ୍ ଭାବେ ଆପଣଛନ୍ତି ପରିଜ୍ଞାତ ।
ଏବୁରି ସନ୍ଦେହ ଦୂର କରନ୍ତି ଆପଣ
ତଥାପି ଛାର କୁଆକୁ ପଚରନ୍ତି ପ୍ରଶ୍ନ ।

ବଡ଼ ଆଶ୍ଚର୍ଯ୍ୟ ଲାଗଇ ମୋତେ ଏହା ମୁନେ
ନ ଜାଣେ ମନଭାବନା କହିବି କେସନେ ।
ଯାହାହେଉ ଆପଣଙ୍କ ସହ ପୁନର୍ବାର
ଆଲୋଚନା କଲେ ବହୁ ଶିକ୍ଷା ହେବ ମୋର ।
ପ୍ରାଣ ସମାଧି ଲଭିଣ ଯେଉଁ ରୂପେ ମୁହିଁ
ସୁଦୀର୍ଘ ଜୀବନ ଲାଭ କରିପାରିଛଇଁ ।
କରୁଛି ବଖାଣ ତାହା ମନ ଦେଇ ଶୁଣ
ଠିକେ ଠିକେ କହୁଛି ମୋ ଅନୁଭୂତିମାନ ।
ଏହି ଶରୀର ରୂପକ ଗୃହରେ ମୋହର
ତିନିଗୋଟି ସ୍ତମ୍ଭ ଅଛି ନବଗୋଟି ଦ୍ୱାର ।
ଅହଙ୍କାର ଅଟଇ ଏ ଗୃହ ଅଧିପତି
ସ୍ୱଜନବର୍ଗଙ୍କ ସହ ଏ ଗୃହେ ରହନ୍ତି ।
ପୂର୍ଯ୍ୟଷ୍ଟକ ଅଟନ୍ତି ଯେ ତାଙ୍କ ପରିବାର
ପଞ୍ଚତନ୍ମାତ୍ରା ସ୍ୱଜନବରଗ ତାଙ୍କର ।
ଏହି ଘରେ ଥାଇ ଗୃହ ରକ୍ଷଣାବେକ୍ଷଣ
କରୁଥାନ୍ତି ସେହି ଅହଙ୍କାର ମହାଜନ ।
କେଶ ସମୂହ ଅଟନ୍ତି ଏ ଗୃହର ନଡ଼ା
କର୍ଣ୍ଣ ଗହ୍ୱର ଉଭୟ ଗୃହ ଚନ୍ଦ୍ରଶାଳା ।
ଗବାକ୍ଷ ଅଟନ୍ତି ଏଥି ନୟନ ଯୁଗଳ
ମୁଖ ଗହ୍ୱର ଅଟଇ ଗୃହ ସିଂହଦ୍ୱାର ।
ଦୁଇବାହୁ ଅଟନ୍ତି ଏ ଗୃହ ଦୁଇ ପାଖ
ଗୃହର ରକ୍ଷା ନିମିତ୍ତ ସେହିମାନେ ମୁଖ୍ୟ ।
ବଦନ ରୂପ ପ୍ରଧାନ ଦ୍ୱାର ମଧ୍ୟଦେଶେ
ବକୁଳ ପୁଷ୍ପ ସଦୃଶ ଦଶନ ବିକଶେ ।
ରୂପ ରସ ଆଦି ଯେହୁ ଗ୍ରହଣ କରନ୍ତି
ପଞ୍ଚ ଜ୍ଞାନେନ୍ଦ୍ରିୟ ଦ୍ୱାର ପାଳକ ଅଟନ୍ତି ।
ଆତ୍ମାର ଆଲୋକେ ଏହି ଗୃହ ଉଦ୍‌ଭାସିତ
ଆତ୍ମାର ଅଭାବେ ଗୃହ ଅନ୍ଧକାରାବୃତ ।
ଗୃହପତି ଯେତେବେଳେ ହୁଏ ଜାଗରିତ
ନେତ୍ରତାରା ବରଣ୍ଡାରେ ଯାଇ ଅବସ୍ଥିତ ।
ଅସ୍ଥିରୂପ କାଷ୍ଠ ଶିରା ରୂପକ ରଜ୍ଜୁରେ
ଦୃଢ଼ରେ ଏ ଗୃହ ବନ୍ଧାଥାଏ ମୁନିବରେ ।
ରକ୍ତ, ଜଳ, ମାଂସ, ମାଟି, ମେଦ-ଗୋମୟରେ
ସଂଲିପ୍ତ ଥାଏ ଏ ଗୃହ ଅତି ଯତନରେ ।
ହେ ମୁନି ନାୟକ ଏହି ଗୃହର ମଧ୍ୟରେ
ଦୁଇପାଖେ ଦୁଇଗୋଟି ଶ୍ରେଣୀ ଆକାରରେ ।

ଇଡ଼ା, ପିଙ୍ଗଳା ରହନ୍ତି ଅଦୃଶ୍ୟ ଭାବରେ
ଏହି ମର୍ମ ବୁଝୁଛଟି ଆହେ ତପୀବରେ ।
ତନ୍‌ମଧ୍ୟରେ ଦୁଇଗୋଟି ପଦ୍ମ ଅବସ୍ଥିତ
ଅଧ, ଉର୍ଦ୍ଧେ ସେମାନଙ୍କ ନାଡ଼ି ଯେ ବିସ୍ତୃତ ।
ଉଭୟଙ୍କ ଦଳମାନ ଛନ୍ତି ସମ୍ମିଳିତ
ବାୟୁ ଯିବା ଆସିବାକୁ ନାହିଁ ତହିଁ ପଥ ।
ନାଶାଗ୍ରରୁ ପଦଯାଏ ଶରୀର ଆକାଶେ
ଚନ୍ଦ୍ରମା-ଅପାନ ବାୟୁ ଅମୃତ ବରଷେ ।
ସେହି ବୃଷ୍ଟିଦ୍ୱାରା ଏହି ଦଳ ବିକଶିତ
ଏବେ ଶୁଣ ବାୟୁମାନଙ୍କର ଯେ କର୍ତ୍ତୃତ୍ୱ ।
ପ୍ରାଣ ଅପାନ ବାୟୁ ହେଲେ ସଞ୍ଚଳିତ
ଏହାର ଦଳ ସକଳ ହୁଏ ଉଚ୍ଛ୍ୱସିତ ।
ପ୍ରବଳ ବାୟୁ ଅରଣ୍ୟ ଲତା ପତ୍ରାଦିରେ
ବାଧାପାଇ ଯେହ୍ନେ ଅନ୍ୟଦିଗେ ଗତି କରେ ।
ପ୍ରାଣ ଓ ଅପାନ ବାୟୁଦ୍ୱୟ ସେହିପରି
ପଦ୍ମଦଳେ ପିଟିହୋଇ ଭିନ୍ନ ଗତିଧରି ।
ସମସ୍ତ ନାଡ଼ି ଛିଦ୍ରରେ ପ୍ରବେଶ କରନ୍ତି
ତଦ୍ଦ୍ୱାରା ସେ ନାଡ଼ିମାନ ବିବର୍ଦ୍ଧିତ ହୁନ୍ତି ।
ଏହି ବିବର୍ଦ୍ଧିତ ବାୟୁ ଶରୀର ମଧ୍ୟରେ
ବିଭିନ୍ନ ସ୍ଥାନ କଳ୍ପନା କରନ୍ତି ବେଗରେ ।
ପ୍ରାଣ, ଅପାନ, ସମାନ, ଉଦାନ ଯେ ବ୍ୟାନ
ପଞ୍ଚଧା ବିଭକ୍ତ ହୋଇ ଧରେ ପଞ୍ଚନାମ ।
ଊର୍ଦ୍ଧ୍ୱ ଓ ଅର୍ଦ୍ଧ ଦେଶସ୍ଥ ସକଳ ନାଡ଼ିରେ
ପ୍ରବେଶ କରିଣ ବହୁଥାଏ ନିରନ୍ତରେ ।
ଏକ ପ୍ରାଣ ଏହିପରି ପାଞ୍ଚ ପ୍ରକାରରେ
ବିଭକ୍ତ ହୋଇ ବିଭିନ୍ନ କାର୍ଯ୍ୟମାନ କରେ ।
ଚନ୍ଦ୍ରମାରୁ ଯେଉଁପରି କିରଣ ବର୍ଷିତ
ସର୍ବପ୍ରାଣ ଶକ୍ତି ହୃଦ କମଳୁ ନିସୃତ ।
ଦେହ ଅଧୋ ଊର୍ଦ୍ଧ୍ୱଭାଗ ମଧ୍ୟରେ ବିସ୍ତୃତ
ଜୀବନ କ୍ରିୟା ଏସନ ହୁଏ ସଞ୍ଚରିତ ।
ଏହି ପ୍ରାଣ ଶକ୍ତିମାନ ନାଡ଼ିଙ୍କ ମଧ୍ୟରେ
ଗମନା ଗମନ କ୍ରିୟା କରେ ସଦାବେଳେ ।
ହରଣ ପତନ ବିହରଣ ଉତ୍‌ପତନ
ଆଦି କରି କ୍ରିୟାମାନ ଚଳେ ଅନୁକ୍ଷଣେ ।
ହୃଦୟ କମଳସ୍ଥିତ ବାୟୁକୁ ପଣ୍ଡିତେ
ପ୍ରାଣ ଆଖ୍ୟା ଦେଇଥାନ୍ତି ଯୁକ୍ତିଯୁକ୍ତ ମତେ ।

ପରାଣ ବାୟୁର ଏକ ଅଂଶ ମୁନିବର
ଚକ୍ଷୁକୁ ସ୍ପନ୍ଦିତ କରୁଥାଏ ବାରମ୍ବାର ।
ଏକ ଅଂଶ ସ୍ପର୍ଶକ୍ରିୟା କରେ ସମ୍ପାଦନ
ଏକ ଅଂଶର ପ୍ରବାହ ନାସିକା ଦ୍ୱାରେଣ ।
ଏକ ଅଂଶଭୁକ୍ତ ଅନ୍ନ ପରିପାକ କରେ
ଅନ୍ୟ ଏକ ପ୍ରକାଶିତ ହୁଅଇ ବାକ୍ୟରେ ।
ଯାନ୍ତ୍ରିକ ଯନ୍ତ୍ରକୁ ଯଥା ଚଳାଇ ସ୍ୱେଚ୍ଛାରେ
ପ୍ରାଣବାୟୁ ଶରୀରକୁ ଚଳେ ସେ ପ୍ରକାରେ ।
ପ୍ରାଣ ଅପାନ ଦୁହିଁଙ୍କ ଅନୁବରତନ
ସଦା ମୁଁ ଆଚରୁଥାଏ ହେ ମୁନି ପ୍ରବୀଣ ।
ଶୀତ ଉଷ୍ଣ ଭାବ ଧରିଥାନ୍ତି ଏ ପବନ
ଆକାଶ ମାର୍ଗରେ କରୁଥାନ୍ତି ବିଚରଣ ।
ଏହି ଶରୀର ଯନ୍ତ୍ରକୁ କଲେହେଁ ବହନ
କେବେହେଲେ କ୍ଳାନ୍ତିବୋଧ ନ କରନ୍ତି ଜାଣ ।
ଏ ହୃଦୟ ଆକାଶର ଚନ୍ଦ୍ରମା ତପନ-
ସଦୃଶ ଏ ବାୟୁଦ୍ୱୟ ହେ ମୁନି ରତନ ।
କେହି କେହି କହିଥାନ୍ତି ହେ ମୁନି ରାଜନ
ବାୟୁ ଦୁଇଟି ଅଟନ୍ତି ଅଗ୍ନି ଆଉ ସୋମ ।
ଏ ବାୟୁଦ୍ୱୟ ଅଟନ୍ତି ମନରଥ ଚକ୍ର
ଅହଂକାର ନୃପତିଙ୍କ ସେମାନେ ଘୋଟକ ।
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ସକଳାବସ୍ଥାରେ
ବାୟୁଦ୍ୱୟ ପ୍ରବାହିତ ସମପ୍ରଭାବରେ ।
ଅବଚ୍ଛିନ୍ନ ଭାବେ ମୁହିଁ ସେମାନଙ୍କ ଗତି
ଅନୁସରଣ କରିଣ ଚଳେ ଆହେ ଯତି ।
ସୁଷୁପ୍ତ ଭାବରେ ଦିନ ମୋର କଟୁଥାଏ
ଯାବତ୍ ଜୀବନ ଏପରି କରିବି ନିଶ୍ଚୟେ ।
ଏଡ଼େ ସୂକ୍ଷ୍ମ ଅଟେ ସେହି ବାୟୁଙ୍କର ଗତି
ମୃଣାଳ ସୂତ୍ରର ସହସ୍ରାଂଶୁ କ୍ଷୀଣ ଅତି ।
ଗମନାଗମନ ତାଙ୍କ ହୃଦୟ ମଧ୍ୟରେ
ନିରନ୍ତର ଚଳିଥାଏ ଆହେ ମୁନିବରେ ।
ବହୁ ଶ୍ରୁତିବାକ୍ୟେ ବହୁ ଭାବରେ କୀର୍ତ୍ତିତ
ପ୍ରାଣ ଗତିର ଯେ ବ୍ୟକ୍ତି କରେ ଅନୁବର୍ତ୍ତ,
ମୃତ୍ୟୁ ବନ୍ଧନରୁ ସେହୁ ହୋଇଣ ମୁକତ
ସଂସାର ଜନମ ତାର ହୁଏ ନିବାରିତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ସଂକଳ୍ପ ନିରାକରଣ ବର୍ଣ୍ଣନେ**
**ନାମ ଊନବିଂଶ ସର୍ଗଃ ।**



## ବିଂଶ ସର୍ଗଃ
## ପ୍ରାଣ ସମାଧି

କହନ୍ତି ବଶିଷ୍ଠ ରାମ ଏହି କଥା ଶୁଣି
ସେହି ବାୟସରାଜଙ୍କୁ ପଚାରିଲି ପୁଣି ।
ପ୍ରାଣ ବାୟୁର ଯେ ଗତି ତାର' କେଉଁ ରୂପ
ବରନନ କରି କହ ହେ ଖଗ ଅଧିପ ।
କହନ୍ତି ଭୁଷଣ୍ଡ ଶୁଣ ହେ ମୁନି ରତନ
ପରାଣ ବାୟୁ ସର୍ବଦା ସ୍ପନ୍ଦ ଶକ୍ତିମାନ ।
ବାହାର ଭିତର ମଧ୍ୟେ ଏହି ଶରୀରର
ଊର୍ଦ୍ଧ୍ୱମୁଖେ ପ୍ରବାହିତ ସେହୁ ନିରନ୍ତର ।
ଅପାନ ବାୟୁ ହେ ଦେବ ଠିକ୍ ସେହିପରି
ଏ ଦେହର ବାହ୍ୟ ଅଭ୍ୟନ୍ତର ଦେଇ କରି,
ସର୍ବକ୍ଷଣ ଅଧୋମୁଖେ ହୁଏ ପ୍ରବାହିତ
ହେଜରଖ ମୁନି ! ବାୟୁ ପ୍ରବାହ ଚରିତ ।
ହୃତ୍‌ପଦ୍ମ ଗହ୍ୱରରୁ ଆହେ ବ୍ରହ୍ମାସୁତ
ଯେଉଁ ପ୍ରାଣବାୟୁ ବହିର୍ଦେଶକୁ ନିର୍ଗତ,
'ରେଚକ' ବୋଲି ତାହାକୁ କହିଥାନ୍ତି ଜ୍ଞାନୀ
ସାବଧାନ ହୋଇ ମନେରଖ ଆହେ ମୁନି ।
ମସ୍ତକରୁ ଦୁଆଦଶ ଆଙ୍ଗୁଳି ପର୍ଯ୍ୟନ୍ତ
ନିମ୍ନବର୍ତ୍ତୀ ସ୍ଥାନମାନ କରି କବଳିତ,
ପ୍ରାଣ ବାୟୁର ଅଟଇ ଯେ ଅନ୍ତଃ ପ୍ରବେଶ
'ପୂରକ' ତାହାର ନାମ ଶୁଣ ମୁନି ବଶ ।
ଏ ରୂପେ ଅପାନ ବାୟୁ ବାହାରରୁ ଯାଇ
ଅନ୍ତରକୁ ଯେତେବେଳେ ପ୍ରବେଶ କରଇ,
ନାଶାଗ୍ରରୁ ପ୍ରାଣବାୟୁ ମୁର୍ଦ୍ଧାଦେଶେ ଚଳେ
ମୁର୍ଦ୍ଧାରୁ ଯାଇଣ ପଶେ ହୃଦୟ କମଳେ ।
ଏହି ଯେ ପ୍ରାଣ, ଅପାନ ବାୟୁ ଗତିଦ୍ୱୟ
ପୂରକ ନାମ ବହନ୍ତି ହେ ବ୍ରହ୍ମା ତନୟ ।
ତତପରେ ଯାହା ହୁଏ ଶୁଣ ବ୍ରହ୍ମାସୁତ
ଅପାନ ବାୟୁ ହୁଅନ୍ତେ ସମଭାବ ପ୍ରାପ୍ତ,
ଯେ ପର୍ଯ୍ୟନ୍ତ ପ୍ରଣବାୟୁ ହୃଦୟ ମଧ୍ୟରେ
ସ୍ପନ୍ଦିତ ନୋହିଛି ଜାଣ ଆହେ ତପୀବରେ,
କୁମ୍ଭକ ଅବସ୍ଥା ରହେ ସେହି ପରିଯନ୍ତ
ଯୋଗୀ ଜନମାନଙ୍କର ଏହା ଅନୁଭୂତ ।

ଏହି ଭାବରେ ରେଚକ, ପୂରକ, କୁମ୍ଭକ
ତିନିବିଧ ପ୍ରାଣାୟାମ ହେ ମୁନି ତିଳକ ।
ଏଥିପାଇଁ ଯୋଗୀଗଣ ଯତ୍ନ ନ ଲୋଡ଼ନ୍ତି
ଆପେ ଆପେ ତାହା ଲାଭ ହୁଏ ବ୍ରହ୍ମଯତି ।
ନାସାଗ୍ରରୁ ଦୁଆଦଶ ଅଙ୍ଗୁଳି ମଧ୍ୟରେ
ଯେଉଁ ବାୟୁ ରହିଥାଏ ସମ୍ମୁଖ ଭାଗରେ,
ସେହି ପରିମିତ ସ୍ଥାନେ ତା' ବାହ୍ୟ ପୂରକ
ଇତ୍ୟାଦି ସମ୍ପନ୍ନ ହୁଏ ହେ ମୁନି ନାୟକ ।
ନାକ ଅଗରୁ ଋଖଣ୍ଡେ ବ୍ୟବଧାନ ମଧ୍ୟେ
ଅପାନ ବାୟୁ ଆକାଶେ ଥାଏ ଯେତେ ଊର୍ଦ୍ଧ୍ୱେ ।
ବାହ୍ୟ କୁମ୍ଭକ କହନ୍ତି ତାହାକୁ ସୁଜାଣ
'ବାହ୍ୟ ପୂରକ' ବିଷୟ ମନଦେଇ ଶୁଣ ।
ନାସାଗ୍ର ପର୍ଯ୍ୟନ୍ତ ବହିର୍ମୁଖୀ ବାୟୁ ଗତି
'ବାହ୍ୟପୂରକ' ତାହାକୁ ଯୋଗୀଏ କହନ୍ତି ।
ନାକ ଅଗରୁ ଉଦ୍ଭୂତ ବାୟୁର ଯେ ଗତି
ଦ୍ୱାଦଶାଙ୍ଗୁଳ ପର୍ଯ୍ୟନ୍ତ ଯାହାର ବିସ୍ତୃତି ।
ସେ ଗତିକୁ ମଧ୍ୟ ବାହ୍ୟପୂରକ କହନ୍ତି
ଯୋଗଜ୍ଞ ପଣ୍ଡିତମାନେ ସ୍ଥିର କରିଛନ୍ତି ।
ପ୍ରାଣବାୟୁ ବହିର୍ଦେଶେ ଥିବ ପ୍ରଶମିତ
ଯେ ଯାଏ ଅପାନବାୟୁ ନୋହିଛି ଉଦ୍‌ଗତ,
ସେ ପର୍ଯ୍ୟନ୍ତ ରହିଥାଏ ଯେ ସମ ଅବସ୍ଥା
ବାହ୍ୟ କୁମ୍ଭକ ତାହାର ନାମ ବ୍ରହ୍ମବେତ୍ତା ।
ସ୍ପନ୍ଦନବିହୀନ ଅନ୍ତର୍ମୁଖୀ ଯେ ଅପାନ
ବାହ୍ୟରେ ଚକ ବୋଲାଏ ହେ ମୁନି ପ୍ରବୀଣ ।
ଅନୁଭୂତ ହୁଏ ଯେବେ ଏ ବାହ୍ୟ ରେଚକ
ମୁକ୍ତିଲାଭ ସୁନିଶ୍ଚିତ ମୁନିଙ୍କ ତିଳକ ।
ନାସାଗ୍ରରୁ ଦୁଆଦଶ ଅଙ୍ଗୁଳି ପର୍ଯ୍ୟନ୍ତ
ବ୍ୟବଧାନ ମଧ୍ୟେ ଯେଉଁ ସୀମା ନିର୍ଦ୍ଧାରିତ ।
ତା ମଧ୍ୟରେ ଯେ ଅପାନ ବାୟୁ ସଞ୍ଚାଳିତ
ସେ ମଧ୍ୟ ବାହ୍ୟପୂରକ ଜାଣ ବ୍ରହ୍ମସୁତ ।
ଏ ବିଷୟେ ଯାହା ମୁହିଁ କଲଇଁ ପ୍ରକାଶ
ନିରନ୍ତର ତାହା ଯଦି କରିବ ଅଭ୍ୟାସ,
ମୁକତି ଲାଭହେ ମୁନି ! ହୋଇବ ଅବଶ୍ୟ
ସ୍ମରଣ ରଖିବ ଏହା ବ୍ରହ୍ମାଙ୍କର ଶିଷ୍ୟ ।
ଜାଗରଣେ, ସ୍ୱପ୍ନେ ଅବା ଶୟନେ ଗମନେ
ସେ ଚଞ୍ଚଳ ବାୟୁରୁଦ୍ଧ ରହେ ଅନୁକ୍ଷଣେ ।

ଜ୍ଞାନ ପୂର୍ବକ ଏସବୁ କଲେ ଅନୁଷ୍ଠାନ
ଅକର୍ତ୍ତା ରହେ ସେ କରିଲେ ହେଁ ସବୁକର୍ମ ।
ଏ ପ୍ରାଣ ଚିନ୍ତାରେ ଚିତ୍ତ ରହିଲେ ଆସକ୍ତ
କୈବଲ୍ୟ ଲାଭ ହେବାଟା ଅଟେ ସୁନିଶ୍ଚିତ ।
ପ୍ରାଣ ସଂଯମେ ଯେ ବ୍ୟକ୍ତି ହୋଇଥାଏ ରତ
କୌଣସି ବାହ୍ୟ ବିଷୟେ ନୁହେଁ ସେ ଆସକ୍ତ ।
ନିଷ୍ଠାର ସହ ଯେ ବ୍ୟକ୍ତି ପ୍ରାଣ ଚିନ୍ତାକରେ
ପ୍ରାପ୍ତବ୍ୟ ଫଳ ଲଭିଣ ଦୁଃଖରୁ ନିସ୍ତରେ ।
ହୃଦକମଳରୁ ଉଠି ଏ ପ୍ରାଣ ପବନ
ନାସାଯାଏ ଦୁଆଦଶ ଅଙ୍ଗୁଳ ପ୍ରମାଣ ।
ଏହି ବ୍ୟବଧାନ ମଧ୍ୟେ ଯେବେ ସେ ନିଶ୍ଚଳ
'ପ୍ରାଣ ଅଭ୍ୟୁଦୟ' ତାହା ଜାଣ ବ୍ରହ୍ମାବାଳ ।
ହୃଦପଦ୍ମର ଦ୍ୱାଦଶ ଅଙ୍ଗୁଳ ଦୂରରୁ
ଅପାନ ଆସି ତା ହୃଦପଦ୍ମେ ମିଶିବାରୁ,
ସେ ସମୟେ ଅପାନର ଯେ ନିଶ୍ଚଳ ଭାବ
'ଅପାନର ଅଭ୍ୟୁଦୟ' ତାହାହିଁ ଜାଣିବ ।
ପ୍ରାଣବାୟୁ ବାହାରକୁ ଋଖଣ୍ଡେ ଚଳନ୍ତେ
ଅପାନ ଅନ୍ତରଦେଶେ ପଶେ ସେହିମତେ ।
ଅଗ୍ନିଶିଖାପରି ପ୍ରାଣଉଠେ ବାହ୍ୟାକାଶେ
ଅପାନ ହୃଦପଦ୍ମକୁ ଜଳପରି ଖସେ ।
ଅଗ୍ନିସମ ପ୍ରାଣ ଆଣେ ତାପ ଅନ୍ତର୍ଦେଶେ
ବାହ୍ୟେ ଅପାନ ସ୍ନିଗ୍ଧତା ସୋମସମ ବର୍ଷେ ।
ସୂର୍ଯ୍ୟସମ ପ୍ରାଣବାୟୁ ହୃଦୟାକାଶକୁ
ସଦା ସର୍ବଦା ଉଷ୍ଣତା ବିତରେ ତାହାକୁ ।
ସେହି ପ୍ରାଣବାୟୁ ପୁଣି ମୁଖରୁ ବାହାରି
ବହିଆକାଶେ ଉଷ୍ଣତା ଦିଶଇ ସଞ୍ଚରି ।
ସେତିକିବେଳେ ଅପାନ ଚନ୍ଦ୍ରମାସଦୃଶ
ସୁଶୀତଳ କରେ ମୁଖ, ହୃଦୟ ଆକାଶ । ୮
ପ୍ରାଣ ସୂର୍ଯ୍ୟ ଯେଉଁଠାରେ ଅବସ୍ଥାନ କରି
ଚନ୍ଦ୍ରରୂପୀ ଅପାନର କଳା ନିଏ ହରି ।
ସେହି ବ୍ରହ୍ମପଦ ଲଭିପାରେ ଯେବେ ଜୀବ
କେତେବେଳେ ହେଲେ ଶୋକଗ୍ରସ୍ତ ସେ ନୋହିବ ।
ଅପାନ ଚନ୍ଦ୍ର ସେ ସ୍ଥାନେ ଅବସ୍ଥାନ କରି
ପ୍ରାଣସୂର୍ଯ୍ୟ ମଧ୍ୟେ ଥିବା କଳା ନିଏ ହରି ।
ସେହି ପରଂପଦ ମଧ୍ୟ ଲାଭ କଲେ ଜୀବ
କେବେହେଲେ ପୁନର୍ଜନ୍ମ ସେହୁ ନ ଲଭିବ ।

ବର୍ହିଆକାଶେ ଆବର ଅନ୍ତର ଆକାଶେ
ସେହି ପ୍ରାଣ ହିଁ ତପନ ଆକାରେ ପ୍ରକାଶେ ।
ପୁନଶ୍ଚ ଚନ୍ଦ୍ରମାକାରେ ହୁଏ ପ୍ରକାଶିତ
ସେହି ଏକ ପ୍ରାଣଚନ୍ଦ୍ର ସୂର୍ଯ୍ୟ ଭାବପ୍ରାପ୍ତ ।
ସୂର୍ଯ୍ୟ ସହିତ ଚନ୍ଦ୍ରଙ୍କୁ ନିଜ ହୃଦୟରେ
ଦର୍ଶନ କରିପାରେ ଯେ ଦ୍ରଷ୍ଟା ଯଥାର୍ଥରେ ।
ନ ହେଲେ ହେଁ ଦୂରୀଭୂତ ବାହ୍ୟ ଅନ୍ଧକାର
କିଛି ଯାଏ ଆସେ ନାହିଁ ଆହେ ମୁନିବର ।
ଦୂରକରି ପାରିଛି ଯେ ହୃଦ ଅନ୍ଧକାର
ବାସ୍ତବ ସିଦ୍ଧି ହିଁ ଲାଭ ହୋଇଛି ତାହାର ।
ବାହ୍ୟ ଅନ୍ଧକାର ହୋଇଯାନ୍ତେ ଦୂରୀଭୂତ
ଆଲୋକିତ ହୋଇଯାଏ ଏ ସାରା ଜଗତ ।
ଅପସରି ଯାଏ ଯାର ହୃଦ ଅନ୍ଧକାର
ଆଲୋକମୟ ହୁଅଇ ଶରୀର ତାହାର ।
ଉତ୍ତମ ରୂପେ ଜାଣେ ଯେ, ମୁକତି ତାହାର ।
ତେଣୁ ସେହି ପ୍ରାଣରୂପୀ ସୂର୍ଯ୍ୟଙ୍କ ଦର୍ଶନ
ଏକାନ୍ତ କର୍ତ୍ତବ୍ୟ ଅଟେ ବିଧାତାନନ୍ଦନ ।
ଅପାନ-ଚନ୍ଦ୍ରମା ଅସ୍ତ ଯେ ହୃଦ ବିବରେ
ପ୍ରାଣ-ସୂର୍ଯ୍ୟର ଉଦୟ ସେହି ବିବରରେ ।
ବାହାରକୁ ଫୁଟି ଉଠେ ଆଲୋକ ତାହାର
ଉଦ୍ଭାସିତ ହୋଇଉଠେ ଏ ସାରା ସଂସାର ।
ଅସ୍ତଯାନ୍ତେ ପ୍ରାଣବାୟୁ ବାହାରୁ ଅପାନ
ଅବିଳମ୍ବେ ମାଡ଼ିବସେ ଆସି ସେହି ସ୍ଥାନ ।
ସେ ଅବସ୍ଥା ନାମ 'ବାହ୍ୟ କୁମ୍ଭକ' ବୋଲାଇ
ଅନ୍ତଃକୁମ୍ଭକ ବର୍ଣ୍ଣନ ଶୁଣ ତପୀସାଇଁ ।
ଯେବେ ଅପାନର ଅସ୍ତପ୍ରାଣର ଉଦୟ
ସେ ଲଗ୍ନ 'ଅନ୍ତଃ କୁମ୍ଭକ' ବିଧାତା ତନୟ ।
ନାସା ରନ୍ଧ୍ରଦେଇ ଅପାନର ପରବେଶ
ପ୍ରାଣର ପୂର୍ଣ୍ଣତା ପାଇଁ ପୂରକ ପ୍ରବେଶ ।
ଏହି ଉଭୟ ପ୍ରବେଶ ଯେ କରେ ଦର୍ଶନ
ପୁନର୍ଜନ୍ମ ନ ଘଟଇ ତାର କେବେ ଜାଣ ।
ପ୍ରାଣ, ଅପାନ ଉଭୟେ ଯେ ଶାନ୍ତ ଆତ୍ମାରେ
ଲୀନ ହୋଇଛନ୍ତି ଜାଣ ବିଧାତା କୁମରେ ।

ସେପରି ଆତ୍ମାକୁ କରିପାରିଲେ ସାକ୍ଷାତ
ଶୋକାତୀତ ଅବସ୍ଥା ସେ ହୋଇବ ପ୍ରାପତ ।
ଅପାନ, ପ୍ରାଣକୁ ପୁଣି ପ୍ରାଣ, ଅପାନକୁ
ଉଦ୍ୟତ ହୁଅନ୍ତି ଯେବେ ଗ୍ରାସ କରିବାକୁ,
ସେ ଉଭୟ ଅବସ୍ଥାରେ ଦେଶ ଓ କାଳକୁ
ଅଖଣ୍ଡ ଚିନ୍ମାତ୍ର ରୂପେ ଚିନ୍ତିଲେ ତାହାଙ୍କୁ,
ଶୋକର ଅତୀତ ହୋଇପାରେ ଏହି ଜୀବ
ଦୁଃଖ ବା କ୍ଳେଶ ତାହାଙ୍କୁ କିଏ କାହୁଁ ଦେବ ।
ପ୍ରାଣ, ଅପାନକୁ ପୁଣି ଅପାନ, ପ୍ରାଣକୁ
ଗ୍ରାସ କରିବା ଦେଖିବ ଏକ ଯେ ଅନ୍ୟକୁ,
ଦେଶ କାଳର ବିଲୀନ ସେହି ଅବସ୍ଥାରେ
ନିଃସନ୍ଦେହ ଘଟିଥାଏ ବିଧାତା କୁମରେ ।
ପ୍ରାଣବାୟୁ ଯେତେବେଳେ ହୁଏ ଅସ୍ତମିତ
ଅପାନ ବାୟୁ ସେ କାଳେ ନୁହନ୍ତେ ଉଦିତ,
ଯୋଗୀମାନଙ୍କ ମତରେ ସେହି ଅବସ୍ଥାକୁ
ଅଯତ୍ନସିଦ୍ଧ ବାହ୍ୟ କୁମ୍ଭକ କହି ତାକୁ ।
ଅଯତ୍ନ ସିଦ୍ଧ ଅଟଇ ଯେ ଅନ୍ତଃ କୁମ୍ଭକ
ପରମ ପଦ ତା ଅଟେ ହେ ମୁନିନାୟକ ।
'ବିଶୁଦ୍ଧ ପରମ ଚିତ୍ତ' କେବଳ ହିଁ ତାହା
ଆତ୍ମାର ସ୍ୱରୂପ ସେହୁ ଆହେ ମୁନି ନାହା ।
ପୁଷ୍ପେ ସୁଗନ୍ଧ ସଦୃଶ ପ୍ରାଣ ମଧ୍ୟେ ଜାଣ
ଚିତ୍‌ସ୍ୱରୂପ ଯେ ଆତ୍ମା ତହିଁ ବିଦ୍ୟମାନ ।
ତାକୁ ଯେବେ ଲାଭ କରି ପାରିବ ଏ ଜୀବ
ଆଉ ଶୋକ ସାଗରେ ସେ କେବେ ନ ବୁଡ଼ିବ ।
ମୁହିଁ ଯେଉଁ ଚିଦାତ୍ମାର କରେ ଉପାସନା
* ପ୍ରାଣାପାନମୟ ମନ ଅଟନ୍ତି ସେ ସିନା ।
ଏହି ଉଭୟଙ୍କ ଅବସ୍ଥିତି କେହି ଜାଣ
'ପ୍ରାଣ ଲୟର ସମୀପ' ବିନା ନୁହେଁ ଅନ୍ୟ ।
ସେହି ଚିଦାତ୍ମା ଅପାନ ଲୟର ଦୂରସ୍ଥ
ଅଥଚ ସେ ଅଟେ ପ୍ରାଣ, ଅପାନ ମଧ୍ୟସ୍ଥ ।
ପ୍ରାଣର ପ୍ରାଣ ସେ ଅଟେ ଜୀବର ଜୀବନ
ବୁଦ୍ଧିଶକ୍ତିର ବୋଧତା ମନର ସେ ମନ ।
ଅହଂକାରର ସେ ଅଟେ ଅହଂବୋଧ ଜ୍ଞାନ
ସତ୍ୟ ସ୍ୱରୂପ ସେ ଅଟେ ଜ୍ଞାନ ନିରଞ୍ଜନ ।

*ପ୍ରାଣାପାନମୟ - ପ୍ରାଣମୟ ମନ ଓ ଅପାନମୟ ମନ

ଯେ ଅଟନ୍ତି ସର୍ବ ଯେହୁ ସରବ ଜନକ
ସେହି ନିତ୍ୟ ଚିଦାତ୍ମାଙ୍କ ମୁହିଁ ଉପାସକ ।
ଅପାନ ବାୟୁ ଯାହାଙ୍କ ମଧ୍ୟେ ଅନୁଦିତ
ଯାହାଙ୍କ ମଧ୍ୟରେ ଏହି ପ୍ରାଣ ଅସ୍ତଗତ ।
ନାସିକାଗ୍ର ଆକାଶରେ ଯେ ବିରାଜମାନ
ସେହି ଚିଦାତ୍ମର ମୁହିଁ କରଇ ପୂଜନ ।
ପ୍ରାଣ ଅପାନ ରଥରେ କରି ଆରୋହଣ
ପ୍ରାଣାପାନ ଶକ୍ତି ରୂପେ ଯେ ବିରାଜମାନ ।
ସର୍ବଶକ୍ତି ଶକ୍ତିରୂପେ ଯେ ବିରାଜମାନ ।
ସେହି ଚିଦାତ୍ମାଙ୍କ ମୁହିଁ କରେ ଉପାସନ ।
ଯେହୁ ହୃଦୟ ମଧ୍ୟରେ ପ୍ରାଣର କୁମ୍ଭକ
ବାହାରେ ଯେ ଅପାନର କୁମ୍ଭକ ପୂରକ ।
ପ୍ରାଣାପନ ଉଭୟଙ୍କ ଅଟନ୍ତି ଚାଳକ
ସେହି ଚିଦାତ୍ମାଙ୍କ ମୁହିଁ ଅଟେ ଉପାସକ ।
ପ୍ରାଣ ସ୍ପନ୍ଦନର ଯେହୁ ଅଟନ୍ତି କାରଣ
ଇନ୍ଦ୍ରିୟ ବଳେ ଯେ କରେ ବିଷୟ ଭୋଜନ ।
କୌଣସି ଦ୍ୱୈତ କଳଙ୍କ ନାହିଁ ଯାହାଙ୍କର
ପରମ ଜ୍ଞାନ ବୈଭବ ଅଟଇ ଯାହାର ।
ସେହି ଯେ ପରମ ଆତ୍ମା ଆହେ ମୁନିବର
ଉପାସନା କରେ ମୁହିଁ ତାଙ୍କ ଶ୍ରୀପୟର ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ପ୍ରାଣ ସମାଧି ବର୍ଣ୍ଣନେ ନାମ ବିଂଶ ସର୍ଗଃ**



## ଏକବିଂଶ ସର୍ଗଃ

## ଭୁଷଣ୍ଡ ଦୀର୍ଘଜୀବୀ

କହୁଛନ୍ତି ଭୁଷଣ୍ଡ ଯେ ବଶିଷ୍ଠଙ୍କୁ ଚାହିଁ
ଏ ରୂପ ପ୍ରାଣ ସମାଧି ବଳେ ଜାଣ ମୁହିଁ ।
ଆତ୍ମାରେ ଚିତ୍ତ ବିଶ୍ରାନ୍ତି କରିଅଛି ଲାଭ
ଯେ କୌଣସି ଜୀବ ପକ୍ଷେ ଏ ଅଟେ ଦୁର୍ଲ୍ଲଭ ।
ଯେଣୁ ଏ ଯୋଗ ଆଶ୍ରୟ କରିଅଛି ମୁହିଁ
ସୁମେରୁ ଚଳିଲେ ସୁଦ୍ଧା ମୁହିଁ ନ ଚଳଇ ।
ଯେ କୌଣସି ଅବସ୍ଥାରେ ଥିଲେହେଁ ମୁଁ ମୁନି
ଏ ସମାଧିରୁ ବିଚ୍ୟୁତ କେବେ ନୁହେଁ ପୁଣି ।
କରି ମୁଁ ଅନୁବର୍ତ୍ତନ ପ୍ରାଣ, ଅପାନର
ଲାଭ କରିଛି ଦର୍ଶନ ପରମାତ୍ମାଙ୍କର ।
ଅତୀତ ବା ଭବିଷ୍ୟତ ଚିନ୍ତା ମୋର ନାହିଁ
କେବଳ ବର୍ତ୍ତମାନରେ ଦୃଷ୍ଟି ମୋ ଅଛଇ ।
କୌଣସି ଫଳ ଲାଭରେ ବାସନା ମୋ ନାହିଁ
ଯଥାଗତ କରମ ମୁଁ ସାଧନ କରଇ ।
ଭାବାଭାବ, ଇଷ୍ଟାନିଷ୍ଟ ବୁଦ୍ଧି ତେଜି କରି
କେବଳ ଆତ୍ମାରେ ସ୍ଥିତ ଆହେ ତପଚାରୀ ।
ତେଣୁକରି ରୋଗହୀନ, ସୁଦୀର୍ଘ ଜୀବନ
ଯାପନ କରୁଛି ମୁହିଁ ଆହେ ମହାଜନ ।
ପ୍ରାଣ, ଅପାନ ମିଳନ ହୁଏ ଯେଉଁ କ୍ଷଣ
ଅନୁଭୂତ ହୋଇଥାନ୍ତି ବ୍ରହ୍ମ ସନାତନ ।
ସେହି ବ୍ରହ୍ମ ଆତ୍ମାମଧ୍ୟେ ରହି ମୁଁ ସନ୍ତୁଷ୍ଟ
ତେଣୁ ମୁହିଁ ଦୀର୍ଘଜୀବୀ, ନାହିଁ ମୋର କଷ୍ଟ ।
କାହାରି ସ୍ତୁତି ବା ନିନ୍ଦା ସ୍ୱପ୍ନେ ନ କରଇ
ତେଣୁ ଏହି ଶୁଭଦଶା ଭୋଗ ମୁଁ କରଇ ।
ଯାବତୀୟ ଦ୍ୱୈତ ବୁଦ୍ଧି ବିଷୟ ଆସକ୍ତି
ପରିତ୍ୟାଗ କରିଅଛି ଆହେ ବ୍ରହ୍ମପତି ।
ତେଣୁ ଏ ସୁଦଶା ଭୋଗ କରୁଅଛି ମୁହିଁ
ବ୍ରହ୍ମେ ସଂସ୍ଥିତ ଥିବାରୁ ଦୁଃଖ ନ ଜାଣଇ ।
ଆଜି କି ଘଟିଲା ପୁଣି କାଲିକି ଘଟିବ
ଏ ଚିନ୍ତା ନ ଘାରେ ମୋତେ ହେ ମୁନି ପୁଙ୍ଗବ ।
ଜରା, ମୃତ୍ୟୁ, ଦୁଃଖକୁ ମୁଁ ଭୟ ନ କରଇ
ସାମ୍ରାଜ୍ୟ ଲାଭରେ ତିଳକ ସୁଖ ମୋର ନାହିଁ ।
ତେଣୁ କରି ନିରାମୟ ଜୀବନ ମୋହର
ନିରୋଗ ଦୀର୍ଘଜୀବନ କଟୁଛି ଆବର ।
ସୁନିଶ୍ଚିତ ଭାବେ ଅବଗତ ଅଛି ମୁହିଁ
ସର୍ବ ପ୍ରକାଶକ ସର୍ବମୟ ମୁଁ ଅଟଇ ।
ଅନାଦି, ଅନନ୍ତ, ପୁଣି ଅବ୍ୟକ୍ତ, ଅଚ୍ୟୁତ
ସେହି ଚିତ୍ତରୂପୀ ମୁହିଁ କେଡ଼େ ଭାଗ୍ୟବନ୍ତ ।
କୌଣସି ସମୟେ ହେଲେ ଏ ଶରୀର ମୁହିଁ
ଏ ଧାରଣା କେଭେଁ ମୋର ମନେ ନ ଆସଇ ।
ଅନର୍ଥ ଓ ଅର୍ଥ ଏହି ଦୁଇଟି ଶବଦ
ଯଥା କାଳେ ମୋ ନିକଟେ ଦେଇଥାନ୍ତି ପଦ ।
କିନ୍ତୁ ଏ ଉଭୟଙ୍କୁ ମୁଁ ସମାନ ମଣଇ
ତେଣୁ ସୁଦୀର୍ଘ ଜୀବନ କାଟୁଅଛି ମୁହିଁ ।
ଅଭିମାନ ନ ରଖିଣ ସର୍ବ କର୍ମ କରେ
ତେଣୁ ସର୍ବଦା ମୋ ମନ ନିଷ୍କର୍ମେ ବିଚରେ ।

ଏହା ମୋର ନିରାମୟ ଜୀବନ ଲାଭର
ପ୍ରଧାନ କାରଣ ଅଟେ ଆହେ ତ୍ପୀବର ।
ଜ୍ଞାନ ଘେନି ଲେଶମାତ୍ର ଔଦ୍ଧତ୍ୟ ମୋ ନାହିଁ
ସକ୍ଷମ ହେଲେ ହେଁ ପରାଭବ ଦେବା ପାଇଁ ।
କେତେବେଳେ ତାହା ମୁହିଁ କରିତ ନ ଥାଇ
ପରାଭବ ପାଇ ଅପମାନ ନ ମଣଇ ।
ନିଃସ୍ୱ ହେଲେହେଁ ବିଷୟେ ଆକାଂକ୍ଷା ମୋ ନାହିଁ
ତେଣୁ ନିରାମୟ ଭାବେ ଦିନ ମୋ କଟଇ ।
ଏହି ଦେହ ସତ୍ତ୍ୱେ ମୁହିଁ ସରବ ଭୂତସ୍ଥ
ଚିଦାତ୍ମା ସ୍ୱରୂପ ଆତ୍ମା ମଧ୍ୟେ ବିରାଜିତ ।
ତେଣୁ ମୁଁ ସର୍ବ ଶରୀର ମଣେ ମୋ ଶରୀର
ସୁଖି ସୁଖେ, ଦୁଃଖି ଦୁଃଖେ ଚଳେ ମନ ମୋର ।
ସବୁରି ପ୍ରିୟ ମୁଁ ଅଟେ ସମସ୍ତଙ୍କ ବନ୍ଧୁ
ଯାହାଙ୍କୁ ଦେଖେ ମୁଁ ମଣେ ମୋ ମାନସ ଇନ୍ଦୁ ।
ମୁହିଁ ଏ ଜଗତ ପୁଣି ମୁହିଁ ଏହି ଦେଶ
କାଳର ନିୟନ୍ତା ମୁହିଁ ମୁହିଁ ଏ ଆକାଶ ।
ମୁହିଁ ଅଟେ କର୍ମ ପୁଣି ମୁହିଁ ଅଟେ ଭାଗ୍ୟ
ଏପରି ଦର୍ଶନ ମୋର ଆହାକି ସୁଯୋଗ ।
ଘଟ ପଟ, ଆଦି କରି ଆକାଶ କାନନ
ସର୍ବତ୍ର ଏହି ଚିତ୍ ହିଁ ପରିଦୃଶ୍ୟ ମାନ ।
ହେ ମୁନି ବରେଣ୍ୟ ! ଏବେ ଶୁଣ ମୋର ଗିର
ତ୍ରିଭୁବନ କମଳର ମୁହିଁ ସେ ଭ୍ରମର ।
ଚିରଜୀବୀ ବାୟସ ମୁଁ ଭୁଷଣ୍ଡ ମୋ ନାମ
କାଳ କାଳ ଧରି ଲୋକେ ରଟନ୍ତି ଏସନ ।
ବ୍ରହ୍ମ ମହୋଦଧି ମଧ୍ୟେ ତରଙ୍ଗ ସଦୃଶ
ଉଦ୍ଭୁତ ବିଲୀନ ହୁଏ ସର୍ବଦା ଏ ବିଶ୍ୱ ।
କାଳ କାଳ ଧରି ମୁହିଁ ଏହି ଯେ ପ୍ରକ୍ରିୟା
ଦେଖି ଆସୁଅଛି ମୁନେ ଘେନ ମୋ ସୁକ୍ରିୟା ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଭୁଷଣ୍ଡ ଦୀର୍ଘଜୀବୀ ବର୍ଣ୍ଣନେ**
**ନାମ ଏକବିଂଶ ସର୍ଗଃ**



## ଦ୍ୱାବିଂଶ ସର୍ଗଃ

## ଭୁଷଣ୍ଡ ଉପାଖ୍ୟାନ ସମାପ୍ତି

ବଶିଷ୍ଠଙ୍କୁ କହୁଛନ୍ତି ଭୁଷଣ୍ଡ ବାୟସ
ପାଳନ କଲଇଁ ଦେବ ତୁମ୍ଭର ଆଦେଶ ।
ଉତ୍ପତ୍ତି ସ୍ଥିତି ପ୍ରଭୃତି ମୋହର ବୃତ୍ତାନ୍ତ
ସକଳ କରିଲି ତୁମ୍ଭ ଆଗରେ ବ୍ୟକତ ।
ଯାହାକି ଧୃଷ୍ଟତା ମୋର ଏଥି ରହିଥିବ
ଉଦାର ଗୁଣେ ମାର୍ଜ୍ଜନା କରିବ ହେ ଦେବ ।
କହନ୍ତି ବଶିଷ୍ଠ ଶୁଣ ହେ ବାୟସବର
ଅତୀବ ବିସ୍ମୟକର ତୁମର ଖବର ।
ଦ୍ୱିତୀୟ ବ୍ରହ୍ମା ସଦୃଶ ତୁମେ ହେ ବାୟସ
ତୁମ ଦରଶନ ପାଏ ଯେ ଧନ୍ୟ ପୁରୁଷ ।
ଆତ୍ମକାହାଣୀ ତୁମର ଶୁଣିକରି କାକ
ବୁଦ୍ଧି ମୋ ପବିତ୍ର ହେଲା ବଢ଼େ ମୋ ବିବେକ ।
ନୟନ ସାର୍ଥକ ମୋର ତୁମ ଦରଶନେ
କିପରି ଗୁଣ ଗାଇବି ନ ଆସଇ ମନେ ।
ସାରା ଜଗତରେ ମୁହିଁ କରିଣ ଭ୍ରମଣ
ପ୍ରତ୍ୟକ୍ଷ ଦେବଐଶ୍ୱର୍ଯ୍ୟ ଦେଖିଲା ନୟନ ।
ଜ୍ଞାନୀଙ୍କ ଜ୍ଞାନ ସମ୍ପଦ ହରି ନେଲା ମନ
କାହିଁ ନ ଶୁଣିଲା କାନ ତୁମ ତତ୍ତ୍ୱଜ୍ଞାନ ।
କାହିଁ କାହିଁ ମହା ମହା ଜ୍ଞାନୀଙ୍କୁ ଦେଖିଲି
ତୁମପରି ତତ୍ତ୍ୱଜ୍ଞାନୀ କାହିଁ ନ ଦେଖିଲି ।
ତୁମ୍ଭଙ୍କୁ ଦେଖିଣ ମୁହିଁ କୃତାର୍ଥ ହୋଇଲି
ତୀର୍ଥ ଦରଶନ ଫଳ ଅବା ଲାଭକଲି ।
ମଙ୍ଗଳ ହେଉ ତୁମ୍ଭର ହେ କାକ ରାଜନ
ଆତ୍ମ ଗୁହାରେ ପ୍ରବେଶ କର ବର୍ତ୍ତମାନ ।
ସୁରପୁରେ ବର୍ତ୍ତମାନ ଚଳିବଇଁ ମୁହିଁ
ଆଉ ଏ ସୁଯୋଗ ମୋତେ ମିଳିବକି ଭାଇ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁରାଣ
ମୋର ଏ ବଚନ ଶୁଣି ସେ କାକ ରାଜନ ।
ପାଦ୍ୟ, ଅର୍ଘ୍ୟ, ପୁଷ୍ପ ଦେଇ ମୋର ପୂଜା କଲେ
ଦଣ୍ଡପରି ପାଦଧରି ପଡ଼ିଣ ରହିଲେ ।
ଧନ୍ୟବାଦ ଦେଇକରି କଲି ଯେ ଏମନ୍ତ
ଗଗନ ପଥେ ଯିବାକୁ ହେଲି ମୁଁ ଉଦ୍ୟତ ।
ନିଷେଧ କରିବା ସତ୍ତ୍ୱେ ଯୋଜନେକ ଯାଏ
ଅନୁଗମନ କରନ୍ତି ସେହି କାକରାଏ ।
ଅନୁଗମନରୁ କ୍ଷାନ୍ତ ରହିବା ନିମିତ୍ତ
କାକୁତି ମିନତି ମୁହିଁ କଲଇଁ ବହୁତ ।
ବଳପୂର୍ବକ ତାହାଙ୍କୁ କଲି ମୁଁ ନିବୃତ୍ତ
କ୍ଷଣକ ମଧ୍ୟେ ଆକାଶେ ହ୍ୱନ୍ତେ ମୁଁ ଗୁପତ,

ପ୍ରତି ନିବୃତ୍ତ ହୋଇଣ ସେ କାକ ରାଜନ
ଆତ୍ମଗୁହା ମଧ୍ୟେ ଯାଇ ରହିଲେ ମଉନ ।
ଭୁଷଣ୍ଡ କଥିତ କଥା ଭାବି ଭାବି କରି
ସପ୍ତର୍ଷି ମଣ୍ଡଳେ ଯାଇ ପ୍ରବେଶ ହୋଇଲି ।
ଦେବୀ ଅରୁନ୍ଧତୀ ତହୁଁ ଉପତ ହୋଇଣ
ପୁଷ୍ପାଞ୍ଜଳି ଦେଇ ପାଦେ କଲେ ଅର୍ଘ୍ୟ ଦାନ ।
ଭୁଷଣ୍ଡ ସହ ଯେ କାଳେ ମୋର ଦେଖା ହେଲା
ତେତେବେଳେ ରାମ ସତ୍ୟ ଯୁଗ ଚାଲିଥିଲା ।
ଏବେ ସେହି ସତ୍ୟଯୁଗ ଶେଷ ହୋଇଅଛି
ତ୍ରେତୟା ଯୁଗଟି ଜାଣ ଆରମ୍ଭ ହୋଇଛି ।
ତ୍ରେତୟା ଯୁଗର ମଧ୍ୟ ଭାଗେ ତୁମେ ରାମ
ଦଶରଥ ସୌଭାଗ୍ୟରୁ ହୋଇଛ ଜନମ ।
ସେହି ଭୁଷଣ୍ଡ ସହିତ ଏହି ତ୍ରେତା ଯୁଗେ
ଦେଖା ହୋଇଥିଲା ମୋର ଆଠ ବର୍ଷ ଆଗେ ।
ସତ୍ୟଯୁଗେ ଯେଉଁପରି ତାଙ୍କୁ ଦେଖିଥିଲି
ଏବେ ମଧ୍ୟ ଅବିକଳ ସେପରି ଦେଖିଲି ।
ସେହିପରି ସେ ଅଜର ଅମର ହୋଇଣ
ସେହି କଳ୍ପବୃକ୍ଷ ମଧ୍ୟେ ଏବେ ଛନ୍ତି ଜାଣ ।
ହେ ରାମ ଏ ଇତିହାସ ଯାହା ମୁଁ କହିଲି
ବହୁ ଉପାଦେୟ ତାହା ହେଜ ଭଲ କରି ।
ଉତ୍ତମ ରୂପେ ତାହାକୁ କଲେକ ଚିନ୍ତନ
ଦୂର ହୋଇଯିବ ତୁମ ସଂସାରର ଭ୍ରମ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଭୁଷଣ୍ଡ ଉପାଖ୍ୟାନ ସମାପନେ**
**ନାମ ଦ୍ୱାବିଂଶ ସର୍ଗଃ**



## ତ୍ରୟୋବିଂଶ ସର୍ଗଃ
## ପରମାର୍ଥ ଯୋଗ ଉପଦେଶ

ବଶିଷ୍ଠ ବୋଇଲେ ଶୁଣ ହେ ରାମ ଅନଘ
ଏ ଜ୍ଞାନ ବଳେ ଭୁଷଣ୍ଡ ନାଶିଛି ତା ଅଘ ।
ମୋହ ସଂକଟରୁ ସେହି ହୋଇଛି ମୁକତ
ସେହି ଅଭ୍ୟାସ ସଂକଟ ତାରଣର ବ୍ରତ ।
ପ୍ରାଣ ନିରୋଧ ଅଭ୍ୟାସ ଭୁଷଣ୍ଡ ଆଚରି
ଏ ସଂସାର ସାଗରକୁ ହୋଇଗଲେ ପାରି ।
ତୁମେ ମଧ୍ୟ ରାମ ସେହି ପଥ ଅନୁସରି
ଏହି ଯେ ଭବସାଗରୁ ହୋଇଯାଅ ପାରି ।
ଏବେ ତ ସବୁ ବିଷୟ ଶୁଣିଲ ହେ ରାମ
ଯାହା ତୁମ ଅଭିଳାଷ କର ଆଚରଣ ।
ଶ୍ରୀରାମ କହନ୍ତି ଶୁଣ ଆହେ ଭଗବାନ
ଭୁଷଣ୍ଡ କାକ ବିଷୟ ଯା କଲ ବର୍ଣ୍ଣନ ।
ଅତି ଆଶ୍ଚର୍ଯ୍ୟଜନକ ଅଟେ ଏ ଚରିତ
ଶୁଣିକରି ବୁଝିଛି ମୁଁ ଯାହା ପରମାର୍ଥ ।
ଅସ୍ଥି ମାଂସରେ ନିର୍ମିତ ଯେ ଶରୀର ଗୃହ
କାହୁଁ ତା ସୃଷ୍ଟି ଘଟିଲା ବିଚାରିଣ କହ ।
କିଏ ତା ନିର୍ମାଣ କଲା, କିପରି ତା ସ୍ଥିତି
ସବିଶେଷ କରି ମୋତେ କହ ବ୍ରହ୍ମପତି ।
ବଶିଷ୍ଠ କହିଲେ ରାମ ସେହି ଦେହ ଗୃହ
କେହି ତା ନିର୍ମାଣ କରି ନାହିଁ ଯା ନିଶ୍ଚୟ ।
କହିବାକୁ ଗଲେ ତାହା ନୁହଁଇ ନିର୍ମିତ
ନିର୍ମାଣ ଆଭାସ ତାହା ଏହାହିଁ ପ୍ରତୀତ ।
ଗଗନେ ଦୁଇଟି ଚନ୍ଦ୍ର ଦେଖାଗଲା ପରି
ସତ ଅସତ ଉଭୟାତ୍ମକ ତା ସେପରି ।
ଭ୍ରାନ୍ତମାନବ ପକ୍ଷରେ ଅଟଇ ତା ସତ
ମାତ୍ର ଜ୍ଞାନୀଙ୍କ ଦୃଷ୍ଟିରେ ତା ଅଟେ ଅସତ ।
ଅଜ୍ଞାନ ଥିବା ପର୍ଯ୍ୟନ୍ତ ଏହି ଦେହ ସତ
ଜ୍ଞାନର ଉଦୟ ହେଲେ ଏ ଦେହ ଅସତ ।
ସ୍ୱପ୍ନକାଳେ ସ୍ୱପ୍ନ ଦୃଷ୍ଟ ବସ୍ତୁ ସବୁ ସତ
କିନ୍ତୁ ଜାଗରଣେ ତାହା ଅଟଇ ଅସତ ।
ପ୍ରତୀତି ଗମ୍ୟ ହୁଅଇ ଯେବେ ଏ ଶରୀର
ତେତେବେଳେ ସତ୍ୟ ଏହା ଆହେ ରଘୁବୀର ।
କିନ୍ତୁ ଯେ କାଳେ ଆତ୍ମାର ମିଳେ ଦରଶନ
ସେତେବେଳେ ନ ଥିବାରୁ ଶରୀରର ଜ୍ଞାନ ।
ତେଣୁ ଏହା ମିଥ୍ୟା ବୋଲି ହୁଏ ପ୍ରମାଣିତ
ଏ ତତ୍ତ୍ୱ ଯଥାର୍ଥ ବୋଲି ବୁଝ ରଘୁନାଥ ।
'ମୋହର ଦେହ' ମନର ଏଇ ଯେ ଚିନ୍ତନ
ସେହି ଚିନ୍ତନର ନାମ ଦେହ ବୋଲି ଜାଣ ।
ତେଣୁକରି ଏହା ଅଟେ ଆଭାସ କେବଳ
ଏହାହିଁ ପ୍ରତୀତ ହୁଏ ଆହେ ରଘୁବାଳ ।
ତେଣୁ ଏହି ଦେହ ଭ୍ରାନ୍ତି ଛାଡ଼ହେ ଶ୍ରୀରାମ
ଅଥଳ ସାଗର ସମ ଭ୍ରାନ୍ତିକୁ ଜାଣିମ ।
ଏହି ଶରୀର କେବଳ ଭ୍ରାନ୍ତିର ବିଳାସ-
ନୁହେଁ ଜାଣିରଖ ଛନ୍ତି ବହୁ ଅନ୍ୟ ଦୃଶ୍ୟ ।

ସଂକଳ୍ପବଳରୁ କେତେ ଶରୀର ଯେ ଜାତ
ଅସଂଖ୍ୟ, ଅଗଣ୍ୟ ତାହା ବୁଝ ରଘୁନାଥ ।
ସଂକଳ୍ପ ରଚିତ ଦେହ ତୁମର ହେ ରାମ
ବହୁତ ଅଟନ୍ତି ତାହାସବୁ ଅଗଣନ ।
କେଉଁ ଶରୀରକୁ ତୁମେ ବୋଲିବ ନିଜର ?
ବୁଝି ବିଚାର ତା କହ ଆହେ ରଘୁବୀର ।
ସପନ ରାଇଜେ ଯଥା ସ୍ୱାପ୍ନିକ ଶରୀରେ
ଘୂରିଆଡ଼େ ଭ୍ରମୁଥାଅ ତୁମେ ରଘୁବୀରେ ।
କାହିଁ ସେ ଶରୀର ତୁମ କହ ହେ ଶ୍ରୀରାମ
ବୃଥା ଧନ୍ଦି ହେଉଅଛ କେବଣ କାରଣ ।
ଜାଗରଣ କାଳେ ତୁମେ ମାନସ ରାଇଜେ
ଯେଉଁ ମନୋନୟ ଦେହେ ବୁଲ ରଘୁରାଜେ ।
ସରଗ, ସୁମେରୁ ଗିରି ଇତ୍ୟାଦି ଭ୍ରମଣ
କରି ବୁଲୁଥାଅ ତୁମେ ଆହେ ରଘୁରାଣ ।
କାହିଁ ସେ ଦେହ ତୁମର ରଖିଛ ଲୁଚାଇ
ପାରିବକି ତା ଦେଖାଇ ଆହେ ରଘୁସାଇଁ ?
ସ୍ୱପନାବସ୍ଥାରେ ଦେଖିଥାଅ ଯେ ସପନ
ସେହି ସ୍ୱପ୍ନେ ଯେଉ ଦେହେ କର ହେ ଭ୍ରମଣ ।
ବର୍ତ୍ତମାନ ସେହି ଦେହ କେଉଁଠି ରଖିଛ
ଦେଖାଇ ପାରିବ କି ହେ ରଘୁକୁଳ ଉସ୍ଥ ?
ମନୋନୟ ରାଜ୍ୟ ମଧ୍ୟେ ଅନ୍ୟ ମନୋନୟ
ସେ ରାଜ୍ୟେ ଯେଉଁ ଶରୀରେ କୌଶଲ୍ୟାତନୟ,
ଭ୍ରମଣ କରୁଣ ଥାଅ ନିଶ୍ଚିନ୍ତ ଚିତ୍ତରେ
ଅଛିକି ସେହି ଶରୀର ଆହେ ରଘୁବୀରେ ?
ମାନସ ରାଇଜେ ତୁମେ ଯେ ସବୁ ଶରୀରେ
ନାନା ଜାଗତିକ କର୍ମ ପ୍ରଫୁଲ୍ଲ ଚିତ୍ତରେ,
କରି ଯାଉଥାଅ ତୁମେ ନିର୍ଭୀକ ମନରେ
ଏବେ ସେ ସର୍ବ ଶରୀର କାହିଁ ରଘୁବୀରେ ?
ଯେଉଁ ଦେହ ଧରି ତୁମେ ମନୋମୟୀ କାନ୍ତା
ସହ ବିହରଣ କରୁଥାଅ ଧନୁହସ୍ତା ।
ଦେଖି ପାରୁଛକି ତୁମ ସେହି କଳେବର
କାହିଁ ସେ ଦେହ ସେ କାନ୍ତା ହେ ରଘୁକୁମର ?
ସେ ସବୁ ଶରୀର ତୁମ ମନ କଳପିତ
ଏ ରକ୍ତ ମାଂସ ଶରୀର ମଧ ତଥାବତ ।
ଏ ରାଜ୍ୟ, ଏହି ସମ୍ପଦ, ଏହି କଳେବର
ଏ ସବୁ ଭ୍ରମ ସଂକଳ୍ପ-ବିଳାସ ମାତର ।

ଏହି ଯେ ସଂସାର ଜାଣ ହେ ରଘୁନନ୍ଦନ
ଏ ସକଳ ଅଟେ ଖାଲି ସୁଦୀର୍ଘ ସପନ ।
ଯେ ବେଳେ ବୁଝି ପାରିବ ପରମାର୍ଥ ତତ୍ତ୍ୱ
ମୋ ବାକ୍ୟ ସତ୍ୟତା ବୁଝିବ ହେ ରଘୁନାଥ ।
ବ୍ରହ୍ମାଙ୍କ ଜନମ ଯଥା ସଂକଳ୍ପରୁ ଜାତ
ସଂକଳ୍ପ ମନ ଏ ସୃଷ୍ଟି ସର୍ଜନେ ବ୍ୟାପୃତ ।
ପୂର୍ବେ ତୁମକୁ ବହୁତ ବାର ମୁଁ କହିଛି
ରକ୍ତ, ମାଂସ ଦେହ ଖାଲି ମନରୁ ଜନ୍ମିଛି ।
ବାସନା ପ୍ରାବଲ୍ୟେ ଧାରାବାହିକ ରୂପରେ
ଏ ଦେହ ଉତ୍ପନ୍ନ ଜାଣି ରଖ ରଘୁବୀରେ ।
ତନ୍ମଧ୍ୟେ ଯେରୂପ ଦେହେ ଯେ ଅଟେ ଅଭ୍ୟସ୍ତ
ସେହି ରୂପ ପ୍ରାୟ ଦେହ ପର ଜନ୍ମେ ପ୍ରାପ୍ତ ।
ସଂକଳ୍ପ ବଳେ ହିଁ ଜାତ ଏ ଦେହ, ଜଗତ
ପୌରୁଷ ବଳେ ତାହାକୁ କଲେ ଦୃଷ୍ଟିପାତ,
ଚିତ୍ ରୂପରେ କେବଳ ତାହା ପ୍ରତିପନ୍ନ
ମନେରଖ ଏହି ତତ୍ତ୍ୱ କୌଶଲ୍ୟା ନନ୍ଦନ ।
ପୁଣି ଅନ୍ୟ ରୂପ ଯେବେ ଭାବିବ ହେ ରାମ
କେବଳ ସେହି ରୂପ ହିଁ ହେବ ପ୍ରତିପନ୍ନ ।
ମୁହିଁ ଅଟେ ଦେହି ପୁଣି ଏହି ମୋ ସଂସାର
ଏ ରୂପ ଭାବନା ଦ୍ୱାରା ଆହେ ରଘୁବୀର,
ଦେହ ଓ ସଂସାର ପ୍ରତି ଜନମେ ମମତା
ନ ଛାଡ଼ଇ ଏ ଜୀବକୁ ଜନ୍ମ ମୃତ୍ୟୁ ଚିନ୍ତା ।
ଭାବନାକୁ ଯେ ଆକାରେ ସୁଦୃଢ଼ କରିବ
ସତ୍ୟ ରୂପେ ସେ ଆକୃତି ପ୍ରକାଶ ପାଇବ ।
ତେସନ ଭାବନା ବଳେ ଜାଣ ହେ ଶ୍ରୀରାମ
ଏ ସଂସାର ସତ୍ୟ ବୋଲି ପ୍ରତେ ହୁଏ ମନ ।
ଏକ ମୁହୂର୍ତ୍ତକୁ ଯଥା ସ୍ୱପ୍ନ ସମୟରେ
ଏକ ଦିନ ବୋଲି ମନେ ହୁଏ ରଘୁବୀରେ ।
ସ୍ୱଳ୍ପ କାଳ ସ୍ଥିତ ଏହି କଳ୍ପିତ ସଂସାର
ସୁଦୀର୍ଘ ଓ ନିତ୍ୟ ମନେ ହୁଏ ରଘୁବୀର ।
ସପନରେ ହସ୍ତୀ ଏବଂ ବ୍ୟାଘ୍ରଙ୍କୁ ଦେଖିଣ
କେବଳ କଳ୍ପନା ବୋଲି ଭାବେ ଯେବେ ମନ,
ଅତିଶୟ ଭୀରୁ ବ୍ୟକ୍ତି ଯଥା ନୁହେଁ ଭୀତ
ଜ୍ଞାନୀଜନ ଜଗତକୁ ମଣି କଳପିତ,
କେବେହେଲେ ଭୟ ନ ଆସଇ ତାର ଚିତ୍ତ
ଜ୍ଞାନୀ ଅଜ୍ଞାନୀ ପ୍ରଭେଦ ବୁଝ ରଘୁନାଥ ।

ଯେଣୁ କରି ଆତ୍ମା ଏହି ଭାବେ ପ୍ରକାଶିତ
ସଂସାରକୁ ଦେଖି କେହି କିମ୍ପା ହେବ ଭୀତ ?
ଯେବେ ଏହା ଦେଖି କେହି କରୁଥାଏ ଭୟ
ତା ମୋହ ଦୂର କରିବା କର୍ତ୍ତବ୍ୟ ନିଶ୍ଚୟ ।
ମୋହ ତାର ଯେବେ ହୋଇଥାଏ ଦୂରୀଭୂତ
ସଂସାର ଦର୍ଶନ ପାଇଁ ନୋହିବ ସେ ଭୀତ ।
ଆତ୍ମଶୁଦ୍ଧି ପାଇଁ ସମ୍ୟକ୍ ଜ୍ଞାନ ଆବଶ୍ୟକ
ଜ୍ଞାନ ଲାଭକୁ ବୁଝିବ ଜୀବନ ଆଲୋକ ।
ସେହି ସମ୍ୟକ୍ ଜ୍ଞାନ ଯେବେ ହୋଇପାରେ ଲାଭ
ବିଷ୍ଠା ବୋଲି ହୋଇ ଜୀବ ରହିକି ପାରିବ ।
ଚୈତନ୍ୟଙ୍କ ଆଭାସ ହିଁ ଏହି ଯେ ଜଗତ
ନୁହେଁ ସେ ସତ ଅଥବା ନୁହେଁ ସେ ଅସତ ।
ଏସନ ସଦୃଶ ଜ୍ଞାନ କରି ଅରଜନ
ଅନ୍ୟ ସକଳ କଳ୍ପନା କରିବ ବର୍ଜନ ।
ତାହା ହିଁ ସମ୍ୟକ୍‌ଜ୍ଞାନ ପଣ୍ଡିତଙ୍କ ମତ
ଏହି ତତ୍ତ୍ୱ ବୁଝିରଖ ଦଶରଥ ସୁତ ।
ଜ୍ଞାନ ବା ଅଜ୍ଞାନ ପୁଣି ଜୀବନ ମରଣ
ଅନ୍ୟ କିଛୁ ନୁହେଁ ତାହା ଚିଦାଭାସ ଭିନ୍ନ ।
ଏହି ଏକତ୍ୱ ବୋଧ ହିଁ ଅଟେ ସମ୍ୟକ୍ ଜ୍ଞାନ
ଏହି ତତ୍ତ୍ୱ ବୁଝିରଖ ଅଯୋଧ୍ୟାର ପ୍ରାଣ ।
ତୁମେ, ଆମେ, ଦିଗ, ଦେଶ ଇତ୍ୟାଦି ଶ୍ରୀରାମ
ଆତ୍ମାଠାରୁ ଲେଶ ମାତ୍ର ଅଟନ୍ତି ଅଭିନ୍ନ ।
ଆତ୍ମସ୍ୱରୂପ ଅଟନ୍ତି ଏ ସକଳ ଜାଣ
ଏହି ରୂପ ଦର୍ଶନ ହିଁ ସମ୍ୟକ୍ ଦର୍ଶନ ।
ଏହି ସମ୍ୟକ୍ ଦୃଷ୍ଟିରାମ ଉପଲବ୍ଧ ହେଲେ
ସତ୍‌ଚିତ୍ ଭାବ ବ୍ରହ୍ମେ ଲୀନ ହୁଏ ଭଲେ ।
ପରମ ଶାନ୍ତି ଲଭଇ ମନ ତେତେବେଳେ
ସେ ଶାନ୍ତି ଉପଭୋଗକୁ କିଏ ବର୍ଣ୍ଣିପାରେ ।
ସେତେବେଳେ କାହାନିନ୍ଦା, ସ୍ତୁତି ସେ ନ କରେ
ଇଷ୍ଟାନିଷ୍ଟେ ଦୁଃଖ, ସୁଖ ନ ଆସେ ମନରେ ।
ଶାନ୍ତିମୟ ହୋଇ ସେହୁ ସତ୍ୟ ସ୍ୱରୂପରେ
ସଂସ୍ଥିତ ରହିଣ ଥାଏ ଅଟଳ ଭାବରେ ।
ଅବଶ୍ୟ ବନ୍ଧୁବର୍ଗଙ୍କ ହୋଇବ ମରଣ
ଅବଶ୍ୟମ୍ଭାବୀ ଅଟଇ ଆପଣା ନିଧନ ।
ତେଣୁ ବନ୍ଧୁ ବା ଆପଣା ମରଣ ଆସନ୍ତେ
ବୃଥା ଦୁଃଖ କି କାରଣେ ଆହେ ରଘୁନାଥେ ?

ସବୁରି ପାଇଁକି ଅଛି ବିପଦ ଆପଦ
ସେଥିପାଇଁ ଶୋକ କିମ୍ପା ଆହେ ରାମଚନ୍ଦ୍ର ?
ସାଗର ତରଙ୍ଗ ସମ ଏହି ଯେ ଜଗତ
ଉଠୁଛି, ରହୁଛି ପୁଣି ହେଉଛି ବିଲୁପ୍ତ ।
ଶୋକର ବିଷୟ ତହିଁ ନାହିଁ କିଛି ରାମ
ଶୋକରେ କେବଳ ବୁଡ଼ି ରହନ୍ତି ଅଜ୍ଞାନ ।
ଯାହାକି ବାସ୍ତବ ବସ୍ତୁ ଅଟେ ହେ ଶ୍ରୀରାମ
ସର୍ବଦା ହିଁ ତାହା ଏକଭାବେ ବର୍ତ୍ତମାନ ।
ତେଣୁ ତୁମେ ବସ୍ତୁପ୍ରତି ଆସ୍ଥା ତ୍ୟାଗକର
କେବଳ ଆଭାସ ରୂପେ ଦରଶନ କର ।
ପରେ ଏହି ଆଭାସକୁ କରି ପରିହାର
ଚିଦାକାଶ ସ୍ୱରୂପରେ ଅବସ୍ଥାନ କର ।
ଏହି କ୍ଷୁଦ୍ର "ମୁହିଁ" ନୁହେଁ ଯେ ବାସ୍ତବ "ମୁହିଁ"
ସର୍ବମୟ ଚିତ୍‌ସ୍ୱରୂପ ମୁହିଁ ଯେ ଅଟଇ ।
ଏ ରୂପ ଭାବନା ଯେବେ ସଦା କରୁଥିବ
ଜଗତ ଅନର୍ଥ ଜାତ କରି ନ ପାରିବ ।
ଏବେ ମୁଁ କହୁଛି ଶୁଣ ହେ କଲ୍ୟାଣମୟ
ସଦା ଏସନ ଭାବନା ପରାୟଣ ହୁଅ ।
ରାଗ, ବିଦ୍ୱେଷର କ୍ଷୟ କର ହେ ସାଧନ
ତେବେ ସାର୍ଥକ ହୋଇବ ତୁମର ଜୀବନ ।
ରାଗଦ୍ୱେଷ ଆଦି କରି ଯେବେ କ୍ଷୟଯାଏ
ଇହଲୋକେ, ପରଲୋକେ ସୁଖଭୋଗ ହୁଏ ।
ରାଗ ଦ୍ୱେଷାଦିରେ କଳୁଷିତ ଯେଉଁ ବୁଦ୍ଧି
ତଦ୍ଧାରା ଯେ ଅଜ୍ଞ ସର୍ବ କରମ ସମ୍ପାଦି ।
ସେହି ଯେ କରମମାନ ତାକୁ ହେ ଶ୍ରୀରାମ
ବିରୁଦ୍ଧ ଫଳ ଦିଅନ୍ତି ଏହା ଚିରନ୍ତନ ।
ମନ ବିବରଯେ ଯା'ର ରାଗ ଦ୍ୱେଷ ସର୍ପ
ପ୍ରବେଶ କରି ନ ପାରେ ହେ ବିଶ୍ୱ ଅଧିପ,
କିଛିମାତ୍ର ଏ ଜଗତେ ଅପ୍ରାପ୍ତ ତା ପାଇଁ
ନାହିଁ ଜାଣିରଖ ଆହେ ରଘୁକୁଳ ସାଇଁ ।
ଶାସ୍ତ୍ରଜ୍ଞ, ଚତୁର, ବୁଦ୍ଧି ଓ ଧୃତି ସମ୍ପର୍ଣ୍ଣ
ହେଲେ ହେଁ, ରାଗ ଦ୍ୱେଷାଦି ଯୁକ୍ତ ଯେଉଁ ଜନ,
ସେ ସକଳ ବ୍ୟକ୍ତି ଅପଦାର୍ଥ ରୂପେ ଗଣ୍ୟ
ଧିକ ତାଙ୍କ ବୁଦ୍ଧି ଧିକ୍ ତାଙ୍କର ଜୀବନ ।
ଆସୁଥାଏ ଯାଉଥାଏ ବିଷୟ ସମ୍ପଦ
ଅର୍ଥ, ବନ୍ଧୁ ବାନ୍ଧବାଦି ଯେତେକ ସମ୍ବନ୍ଧ ।

ତେଣୁ ସେମାନେ ନଶ୍ୱର ଜାଣ ହେ ଶ୍ରୀରାମ
ବିଜ୍ଞଜନଙ୍କ ନ ଥାଏ ସେହି ଅବଗୁଣ ।
ଧନ, ଜନ, ଆତ୍ମୀୟାଦି ସକଳ ଅସତ୍ୟ
କେବଳ ଆତ୍ମା ଅଟଇ ଏକମାତ୍ର ସତ୍ୟ ।
ଆଉ ନିପତିତ ନୁହ ସଂସାର ଭ୍ରମରେ
ମୋର ଏହି ଉପଦେଶ ଘେନ ରଘୁବୀରେ ।
ସୂର୍ଯ୍ୟୋଦୟେ ପଦ୍ମ ଯଥା ହୁଏ ବିକଶିତ
ତଥା ହୁଅ ଜ୍ଞାନବନ୍ତ ଆହେ ରଘୁନାଥ ।
ବାରମ୍ବାର ତୁମକୁ ମୁଁ କରୁଛି ପ୍ରବୁଦ୍ଧ
ପ୍ରବୁଦ୍ଧ ହୁଅ ହେ ତୁମେ ରଘୁକୁଳ ସିଦ୍ଧ ।
ଘେନି ମୋ ଆଦେଶ ଆହେ କୌଶଲ୍ୟାନନ୍ଦନ
ନିରାମୟ ଆତ୍ମାଦିତ୍ୟ କର ଦରଶନ ।
ସୁଶୀତଳ ଜ୍ଞାନବାରି କରିଣ ସିଞ୍ଚନ
ଉଦ୍‌ବୁଦ୍ଧ କରେ ତୁମ୍ଭଙ୍କୁ ରଘୁକୁଳୋତ୍ତମ ।
ଉଦ୍‌ବୁଦ୍ଧ ହୋଇଣ କର ସତ୍ୟ ଦରଶନ
ପରିତ୍ୟାଗ କରିଦିଅ ମିଥ୍ୟା ଜଗଦ୍‌ଭ୍ରମ ।
ପରମ ସୁଜ୍ଞାନ ଲାଭକର ରଘୁବୀର
ସଫଳ ହେଉ ଆଦର୍ଶ ଜୀବନ ତୁମ୍ଭର ।
ଜନମ, ମରଣ, ଶୋକ, ଦୁଃଖ ଭ୍ରାନ୍ତି ଆଦି
ବାସ୍ତବିକ୍ କିଛି ନାହିଁ ତୁମ ରଘୁନିଧି ।
ସଂକଳ୍ପ ତ୍ୟାଗ କରିଣ ଆତ୍ମାରେ ସଂସ୍ଥିତ
ହୋଇକରି ବସି ଥାଅ ଆହେ ରଘୁନାଥ ।
ବ୍ରହ୍ମରେ ସଂସ୍ଥିତ ହୁଅ ତୁମେ ମହାତ୍ମନ
ଏ ଜଗତ ତୁମ କୀର୍ତ୍ତି କରୁ ହେ ଗାୟନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ପରମାର୍ଥ ଯୋଗ ଉପଦେଶ ବର୍ଣ୍ଣନେ**
**ନାମ ତ୍ରୟୋବିଂଶ ସର୍ଗଃ**



## ଚତୁର୍ବିଂଶ ସର୍ଗଃ

## ପରମାତ୍ମାମୟ ବର୍ଣ୍ଣନ

କହନ୍ତି ବାଲ୍ମୀକି ମୁନି ଏମନ୍ତ ବଚନ
ଏକାଗ୍ର ଚିତ୍ତ ହୋଇଣ ଶ୍ରୀ ରଘୁନନ୍ଦନ,
ଶୁଣି ଶୁଣି ଉପଦେଶ ପରମ ଆନନ୍ଦେ
ମଗନ ରହିଲେ ସେହି ରଘୁକୁଳାନନ୍ଦେ ।
ଅନ୍ୟ ଶ୍ରୋତୃବର୍ଗ ଆତ୍ମବୋଧରେ ଉଦ୍‌ବୁଦ୍ଧ
ଚିତ୍ର ପ୍ରତିମା ସଦୃଶ ସକଳେ ସ୍ତବଧ ।
ଆତ୍ମବିସ୍ମୃତିରେ ତାଙ୍କ ସ୍ଥିରତା ନିମିତ୍ତ
କିଛିକ୍ଷଣ ବଶିଷ୍ଠ ଯେ ରହନ୍ତି ବୀରତ ।
ସମସ୍ତଙ୍କୁ ପ୍ରତିବୁଦ୍ଧ ଥିବା ଦେଖିକରି
ବଶିଷ୍ଠ ମୁନି ରାମଙ୍କୁ କହନ୍ତି ଏପରି ।
ପ୍ରବୁଦ୍ଧ ହୋଇଛ ତୁମେ ଆତ୍ମଲାଭ କରି
ଆତ୍ମାକୁ ଆଶ୍ରା କରିଣ ରହ ରୂପଧାରୀ ।
ସଂସାର ଚକ୍ରେ ପୁନଶ୍ଚ ନ କର ଭ୍ରମଣ
ପୁନରାବର୍ତ୍ତନ ନୋହୁ ତୁମର ଜନମ ।
ସଂସାର ଚକ୍ରର କେନ୍ଦ୍ର ସଂକଳ୍ପ ଅଟଇ
ତାକୁ ରୁଦ୍ଧ କଲେ ଚକ୍ର ଅଟକିଣ ଯାଇ ।
ରାଗ ଦ୍ୱେଷ ବଳେ ଯଦି ସେହି ଚକ୍ର କେନ୍ଦ୍ର
ସଂକ୍ଷୁବଧ ହେଉଣ ଥାଏ ଆହେ ରାମଚନ୍ଦ୍ର ।
ସବଳେ ରୁଦ୍ଧ କଲେ ହେଁ କେନ୍ଦ୍ରକୁ ସେବେଳେ
କମିବା ତ ଦୂରକଥା ବ୍ୟଗ୍ର ଗତି କରେ ।
ଦୃଢ଼ ବୈରାଗ୍ୟ ପୌରୁଷ ଆଶ୍ରୟ କରିବ
ଜ୍ଞାନବଳେ ସେହି ଚିତ୍ତ କେନ୍ଦ୍ରକୁ ରୋଧିବ ।
ଜ୍ଞାନ ଓ ପୌରୁଷ ବଳେ ଆହେ ରଘୁନାଥ
ଜଗତର ସର୍ବକର୍ମ ହୁଏ ସମ୍ପାଦିତ ।
ବାସ୍ତବରେ ଏ ଜଗତ ଅଟଇ ଅସତ
ବ୍ରହ୍ମା ଅଜ୍ଞାନ ଭ୍ରମରୁ ବୋଧହୁଏ ସତ ।
ତେଣୁ ସଙ୍କଳ୍ପ ହିଁ ଦେହ, ଜଗତର ମୂଳ
ସେହି ସଙ୍କଳ୍ପକୁ ଯେବେ ତ୍ୟାଗ କରିପାର,
କେବେ ହେଁ ଏହି ଶରୀର ନୋହିବ ଉତ୍‌ପନ୍ନ
ଏହା ମନେ ରଖିଥିବ ହେ ରଘୁନନ୍ଦନ ।
ବିଜ୍ଞଜନ ପକ୍ଷେ ସୁଖ ଦୁଃଖର ବିଚାର
ଅକର୍ତ୍ତବ୍ୟ, ଯେଣୁ ତା ସଂକଳ୍ପ ରଘୁବୀର ।
ସଂକଳ୍ପ ନ ଥାଇ ଚିତ୍ରାଙ୍କିତ ମାନବର
ସଂକଳ୍ପ ତାହାର ଥାଇ ଯେ ଜୀବନ୍ତ ନର ।
ଚିତ୍ରାଙ୍କିତ ନରଠାରୁ ଜୀବନ୍ତ ମାନବ
ଅତୀବ ଜଘନ୍ୟ ବହୁ ଦୁଃଖ ସେ ଭୋଗିବ ।
ସଂକଳ୍ପ ସମ୍ଭୂତ ଦେହ ହେଲେ ହେଁ ବିନଷ୍ଟ
ଆତ୍ମା ବା ଚିତ୍ ଶକତି ନ ହୁଅଇ ନଷ୍ଟ ।
ଦେହ ବିନାଶେ କାହାରି କିଛି କ୍ଷତି ନୋହି
ଯେଣୁ ଆତ୍ମା ଅବିନାଶୀ ଆହେ ରଘୁରାଇ ।
ଗଗନରେ ସୂର୍ଯ୍ୟ ଦେବ କରି ଅବସ୍ଥାନ
ଯଥା ଦୈନିକ କରମ କରେ ସମ୍ପାଦନ ।

ତୁମେ ମଧ୍ୟ ଆତ୍ମାକାଶେ କରି ଅବସ୍ଥାନ
ରାଜକାର୍ଯ୍ୟମାନ ରାମ କର ସମ୍ପାଦନ ।
କେଉଁ ହେଲେ ଅହଙ୍କାର ବଶ ନୁହ ରାମ
ତାହା କଲେ ନର୍କବାସ ସୁନିଶ୍ଚିତ ଜାଣ ।
ଅହଙ୍କାର ତେଜିକରି ତୁମେ ହେ ଶ୍ରୀରାମ
ଆତ୍ମାକୁ ଆଶ୍ରୟ କରି ରହ ସର୍ବକ୍ଷଣ ।
ଅହଙ୍କାର ହେତୁ ନର୍କଗାମୀ ଯେଉଁ ନର
କୌଣସି ବନ୍ଧୁ ନ ଥାନ୍ତି ସେହି ମଦାନ୍ଧର ।
ଅହଙ୍କାର ଆଶ୍ରା କରି ଯେ କର୍ମ କରଇ
ସେ କର୍ମ ତାକୁ ମରଣ ମୁଖେ ଠେଲି ଦେଇ ।
ଅହଙ୍କାରୀ ଜନଙ୍କର କେତେ ଯେ ବିପଦ
ସଂଖ୍ୟା କରି ହୁଏ ନାହିଁ ଆହେ ରାମଚନ୍ଦ୍ର ।
ଶୋକ, ଦୁଃଖ, ମୋହ ଆଦି ଅହଙ୍କାର ଶକ୍ତି
ଆତ୍ମାର ନୁହଁଇ ତାହା ଆହେ ରଘୁପତି ।
ସର୍ବତ୍ର ବ୍ୟାପ୍ତ ହୋଇଣ ଆକାଶ ଯେସନ
କେଉଁଥିରେ ଲିପ୍ତ ନୋହିଥାଏ କଦାଚନ,
ହୋଇଲେ ହେଁ ଆତ୍ମା ସେହିପରି ସର୍ବଗତ
କେବେହେଲେ ଅହଙ୍କାର ନୁହେଁ ଅନୁଲିପ୍ତ ।
ପ୍ରାଣ ସୂତ୍ରରେ ଗ୍ରନ୍ଥିତ ଏ ଶରୀର ଯନ୍ତ୍ର
ଯା କିଛି କରଇ ତାହା ଅହଙ୍କାର କୃତ ।
ଆତ୍ମାର ସେ କର୍ମ ସହ ନ ଥାଇ ସମ୍ବନ୍ଧ
ଏହି ତତ୍ତ୍ୱ ଜାଣିରଖ ଆହେ ରାମଚନ୍ଦ୍ର ।
ଆତ୍ମା ଯେ ଅଟଇ ମନ-ସ୍ପନ୍ଦନ କାରଣ
ବୃକ୍ଷ ଉତ୍ପତ୍ତି କାରଣ ଆକାଶ ଯେସନ ।
ବୃକ୍ଷର ଉତ୍ପତ୍ତି ବିଷୟରେ ଆକାଶର
କୌଣସି କର୍ତ୍ତୃତ୍ୱ କେଉଁ ନ ଥାଇ ତାହାର ।
ଆକାଶର ଅବସ୍ଥାନ ହେତୁରୁ ହିଁ ଜାଣ
ବୃକ୍ଷମାନଙ୍କର ହୋଇଥାଏ ବିବର୍ଦ୍ଧନ ।
ଆତ୍ମା ଅଟେ ସେହିପରି କର୍ତ୍ତୃତ୍ୱ ବିହୀନ
ନିଜ ମହିମାରେ କରିଥାଏ ଅବସ୍ଥାନ ।
ଆକାଶ, ପୃଥିବୀ, ତଥା ଆଲୋକ ଅନ୍ଧାର
ସ୍ୱତନ୍ତ୍ର ଅଟନ୍ତି ଏହିମାନେ ଯେ ପ୍ରକାର,
ଆତ୍ମା ଓ ଚିତ୍ତ ଏମାନେ ସେହିପରି ଜାଣ
ସ୍ୱତନ୍ତ୍ର ଅଟନ୍ତି ଆହେ ରଘୁକୁଳ ରାଣ ।
ସ୍ପନ୍ଦନ ଶକ୍ତି ପ୍ରେରକ ଅଟେ ଆତ୍ମ ଶକ୍ତି
ଚିତ୍ତକୁ ଆବୃତ କରେ ସେ ଆତ୍ମଶକତି ।

ଆତ୍ମାକୁ ଚିତ୍ତ ମଣନ୍ତି ତେଣୁ ମୂର୍ଖ ଜନ
ଯେଣୁ ସେ ଚିତ୍ତକୁ କରିଅଛି ଆଚ୍ଛାଦନ,
ହୃଦୟ ମଧ୍ୟରେ ଥାଏ ଯେଉଁ ଅହଙ୍କାର
ସେହି ଅହଙ୍କାର ଅଟେ ଚିତ୍ତ ଅନ୍ଧକାର ।
ତୁମେ ତ ସର୍ବଜ୍ଞ ଆତ୍ମା ଅଟ ହେ ଶ୍ରୀରାମ
ନୁହଁ ତୁମେ ଅହଙ୍କାର ଚିତ୍ତ ଅବା ମନ ।
ତେଣୁ କେଉଁ କାରଣରୁ ସେହି ମନ ଘେନି
ମୋହଗ୍ରସ୍ତ ହେଉଅଛ ଆହେ ରଘୁମଣି ?
ମନ ଯକ୍ଷ ଦ୍ୱାରା ହୋଇଥାଏ ଯେ ଆକ୍ରାନ୍ତ
ଶାସ୍ତ୍ର ଗୁରୁ ଉପଦେଶ ବନ୍ଧୁ ମିତ୍ର ଯେତ,
ତ୍ରାଣ କରିବାକୁ ତାକୁ ନୁହନ୍ତି ସମର୍ଥ
ତେଣୁ ମନ-ମୋହ ଦୂର କର ରଘୁନାଥ ।
କିନ୍ତୁ ହେ ଶ୍ରୀରାମ ଯାର ମନ ଅଟେ ଶାନ୍ତ
ଶାସ୍ତ୍ର ଗୁରୁ ଉପଦେଶ ବନ୍ଧୁ ଏ ସମସ୍ତ,
ଅକ୍ଲେଶରେ ତାକୁ କରି ପାରନ୍ତି ଉଦ୍ଧାର
ତେଣୁ ଶାନ୍ତ ଚିତ୍ତେ ତୁମେ ଅବସ୍ଥାନ କର ।
ନିର୍ବୋଧ ବାଳକ ପରି ଜଗତ ଅରଣ୍ୟେ
ମୋହଗ୍ରସ୍ତ ହୋଇ ଆତ୍ମା ରହିଛି ଗୋପନେ ।
କେବଳ ଧଇର୍ଯ୍ୟ ପୁଣି ପୌରୁଷ ବଳରେ
ଆତ୍ମାର ଉଦ୍ଧାର ରାମ ସମ୍ଭବୀଣ ପରେ ।
ମୃଗ ଶିଶୁ ପରି ତୁମେ ନ ହୁଅ ଶ୍ରୀରାମ
ଅଜ୍ଞାନ କାରୀକୁ ଦାବ ଜ୍ଞାନ ସିଂହ ସମ ।
ବନ୍ଧୁ ବାନ୍ଧବ ସ୍ୱରୂପ-ପଙ୍କିଳ ଜଳରେ
ମଇଁଷି ସଦୃଶ ଶୋଇ ନରହ ତହିଁରେ ।
ଯଦିଚ ସେ ଥଣ୍ଡା ଲାଗେ କିୟତ୍ କାଳ ପାଇଁ
କର୍ଦ୍ଦମେ ଲିପ୍ତ ହେବାକୁ ପଡ଼େ ରଘୁସାଇଁ ।
ବିଷୟ ସଙ୍ଗକୁ ପରିହାର କର ରାମ
ସଦା ଆଚରୁଣ ଥାଅ ସାଧୁଙ୍କ ସଙ୍ଗମ ।
ସର୍ବ ଅନର୍ଥରୁ ଆତ୍ମଜ୍ଞାନ ରକ୍ଷା କରେ
ଏହା ବୁଝିଣ ନିର୍ଭର କର ଆତ୍ମାଠାରେ ।
ଆତ୍ମାରେ ଆତ୍ମା ବ୍ୟତୀତ ଅନ୍ୟ କିଛି ନାହିଁ
ସୁଖ ଦୁଃଖ ଦେହ ରହି ନପାରଇ ତହିଁ ।
ଆତ୍ମା ଥିବା ହେତୁ ଏହି ଅହଙ୍କାର ମନ
କ୍ରିୟାଶୀଳ ରହିଥାନ୍ତି ହେ ରଘୁନନ୍ଦନ ।
ସ୍ୱାଧୀନ ସତ୍ତା ତାଙ୍କର କିଛିମାତ୍ର ନାହିଁ
ଘଟର ଘଟତ୍ୱ ଯଥା ଘଟୁ ଭିନ୍ନ ନୋହି ।

ଅର୍ଦ୍ଧେନ୍ଦୁ ମୌଳି କୈଳାସ ଶିଖରେ ବସିଣ
ସଂସାର ଶାନ୍ତି ନିମିତ୍ତ କଲେ ଯା ବର୍ଣ୍ଣନ ।
ତାହା ଏବେ ତୁମ ଆଗେ କରୁଛି ବଖାଣ
ମନ କର୍ଣ୍ଣ ଦେଇ ତାହା କର ହେ ଶ୍ରବଣ ।
ଥରେ କୈଳାସ ପର୍ବତେ ଶିବ ପୂଜା ପାଇଁ
ଗଙ୍ଗାତୀରେ ଆଶ୍ରମ ମୁଁ ନିର୍ମାଣ କଲଇଁ ।
ପୂଜା ଅରଚନାମାନ କଲି ସବୁ ଶେଷ
ଦେଖେ ଚନ୍ଦ୍ରମା କି ଉଦେ ଆଶ୍ରମ ପ୍ରଦେଶ ।
ଯେତେବେଳେ ହେ ଶ୍ରୀରାମ ସେହି କୈଳାସରେ
ସମାଧି ମଗନ ହୋଇଥିଲି ତପସ୍ୟାରେ ।
ଏକ ଦିନ ରାତ୍ରି କାଳେ ଦୈବ ବଶେ ମୁହିଁ
ବାହାରକୁ ଚାହିଁଦ୍ୟନ୍ତେ ଏମନ୍ତ ଦିଶଇ ।
ଆଲୋକିତ ହୋଇଯାଏ ସେ କାନନ ଦେଶ
ତାହା ଦେଖି ମନ ମୋର ହୋଇଲା ଉଲ୍ଲାସ ।
ତାହାର କାରଣ କିସ ବୁଝିବାର ପାଇଁ
ବାହାରକୁ ଚାହିଁଦ୍ୟନ୍ତେ ଜ୍ଞାନ ନେତ୍ର ଫେଇ,
ଦେଖିଲି ଗଉରୀ ସହ ଶିବ ଭଗବାନ
ଉଭା ହୋଇଛନ୍ତି ସେହି ଆଶ୍ରମ ପ୍ରାଙ୍ଗଣ ।
ତାହାଙ୍କ ଦର୍ଶନ ମାତ୍ରେ ଅର୍ଘ୍ୟ ପାତ୍ର ଧରି
ପାଦ୍ୟ ଅର୍ଘ୍ୟ ଅରପଇଁ ଦୂରେ ଥାଇକରି ।
ପାଦପଦ୍ମେ ପୁଷ୍ପାଞ୍ଜଳି କରି ଅରପଣ
ବିନୟ ଭାବରେ କରେ ଚରଣ ବନ୍ଦନ ।
ସର୍ବ ଦୁଃଖହାରୀ ଦୃଷ୍ଟି ଦେଇ ସେ ମହାନ
କୃତାର୍ଥ କଲେ ଆଶୀଷ କରି ବରଷଣ ।
ତ୍ରିଲୋକ ସାକ୍ଷୀ ସେହି ଦେବଦେବ ହର
ଉପବିଷ୍ଟ ହେଲେ ଯାଇ ସେ ଶୃଙ୍ଗ ଉପର ।
ତାଙ୍କ ପାଦ ପାଶେ ମୁହିଁ ପ୍ରବେଶ ହୋଇଣ
ପୁନର୍ବାର ପାଦ୍ୟ ଅର୍ଘ୍ୟ କଲି ସମର୍ପଣ ।
ପାରିଜାତ ପୁଷ୍ପାଞ୍ଜଳି ଅରପଣ କରି
ଭଗବତୀ ଗୌରୀଙ୍କର ପୂଜା ଆରମ୍ଭିଲି ।
ମାତୃକାଦି ସଖିଗଣ ସଙ୍ଗେ ରହିଥାନ୍ତି
ମୋ ଦୟିନୀ ଅରଚନା ସରବେ ଘେନନ୍ତି ।
ଏହିପରି ଅରଚନା ଅରପଣ କରି
ହୃଦୟ ମଧ୍ୟରେ ବହୁ ଆନନ୍ଦ ଲଭିଲି ।
ସତୃଷ୍ଣ ନୟନେ ମୁହିଁ ରହିଥାଏ ଚାହିଁ
ଭଗବାନ ଚନ୍ଦ୍ର ମୌଳି ଯାଉଥାନ୍ତି କହି ।

ଚିତ୍ତ ବୃତ୍ତି ତୋର ବସ୍ତ ଅଛିକି ପ୍ରଶାନ୍ତ
ପରମ ପଦେ ବିଶ୍ରାମ ହୋଇଛ କି ପ୍ରାପ୍ତ ?
କଲ୍ୟାଣ କର୍ମାତୁ ବସ୍ତ ପାରିଛୁକି ହୋଇ
ମଙ୍ଗଳପ୍ରଦ ତୋହର ତପସ୍ୟା କି ହୋଇ ।
ଲବ୍ଧବ୍ୟ ବସ୍ତୁ ରେ ବସ୍ତ ! ପାଇଛୁ କି ତୁହି
ଯାହା ବଳେ କି ଅଭୟ ହୋଇପାରେ ଦେହୀ ?
ମହେଶଙ୍କ ଏ ମଧୁର ପ୍ରଶ୍ନମାନ ଶୁଣି
ବିନୀତ ଭାବେ ମୁଁ କହେ ଯୋଡ଼ିକରି ପାଣି ।
ଭବଦୀୟ ସ୍ମରଣ ଓ ମନନ ଭଜନ
ଅବିରତ ଯେଉଁମାନେ ଦେଇଥାନ୍ତି ମନ ।
ଭୟଭୀତି କିଛି ମାତ୍ର ନ ଥାଏ ତାଙ୍କର
ଅପ୍ରାପ୍ତ ସକଳବସ୍ତୁ ଲାଭ ତାହାଙ୍କର ।
ସୁସଞ୍ଚିତ ପୁଣ୍ୟଫଳ ଯାହାଙ୍କର ଥିବ
ସେହି କେବଳ ତୁମକୁ ସ୍ମରଣ କରିବ ।
ସେହି ଏକାଗ୍ର ଚିନ୍ତନ ଫଳେ ହେ ମହାନ
ବର୍ତ୍ତମାନ ପୁଣ୍ୟ କର୍ମମାନ ବିବର୍ଦ୍ଧନ ।
ଭାବି ପୁଣ୍ୟର ହେ ଦେବ ଅଟଇ ସେ ବୀଜ
ଭକତର ଧୈର୍ଯ୍ୟ ବଳେ ବଢ଼େ ତାର ତେଜ ।
ଭବଦୀୟ ସ୍ମରଣ ଯେ ଜ୍ଞାନ ଅମୃତର-
କୁମ୍ଭ ସଦୃଶ ଅଟଇ ଦେବ ଦେବ ହର ।
ମୁକ୍ତି ମନ୍ଦିରର ଅଟେ ସେହି ସିଂହଦ୍ୱାର
ଯହିଁ ପରବେଶ ହେଲେ ସଂସାର ପାଶୋର ।
ଆପଣଙ୍କର ସ୍ମରଣେ ଆହେ ଭୂତପତି
ସକଳ ଆପଦ ମୋର ଅପସରିଛନ୍ତି ।
ଆପଣଙ୍କ କୃପାରୁ ହେ ପାର୍ବତୀ ରମଣ
ଅଭାବ ମୋ କିଛି ନାହିଁ ହେ ଦେବ ଈଶାନ ।
ତଥାପି ଅଛଇ ମୋର ଏକଇ ସନ୍ଦେହ
ସନ୍ଦେହ ମୋଚନ ମୋର ହେଉ କୃପାମୟ ।
ଉଦ୍‌ବେଗ ବିହୀନ ସର୍ବ ପାପକ୍ଷୟକାରୀ
ଦେବାର୍ଚ୍ଚନା ବିଧି କହ ହେ ଇନ୍ଦୁ ମଉଳି ।
କହନ୍ତି ଯେ ମହେଶ୍ୱର ଆହେ ଦ୍ୱିଜବର
ଯେଉଁ ଦେବାର୍ଚ୍ଚନା କଥା ଆଜ ପୁଚ୍ଛା କଲ ।
ଜାଣିଛ କି ଦ୍ୱିଜ ତାର ସ୍ୱରୂପ କିପରି
ତେବେ ଯା ଅଭାବ ଥିବ ଦେବି ପୂର୍ଣ୍ଣ କରି ।
ନୁହେଁ ବ୍ରହ୍ମା; ନୁହେଁ ବିଷ୍ଣୁ ନୁହଁନ୍ତି ଈଶାନ
ଇନ୍ଦ୍ର; ଚନ୍ଦ୍ର, ସୂର୍ଯ୍ୟ କିମ୍ବା ଅନଳ, ପବନ ।

ନିରତିଶୟ ଆନନ୍ଦ ସ୍ୱରୂପ ଯେ ଚିତ
ନାହିଁ ତାର ଆଦି ପୁଣି ନାହିଁ ତାର ଅନ୍ତ ।
ଯେ ଅଟନ୍ତି ପରିଚ୍ଛିନ୍ନ ଆକୃତି ସଂପନ୍ନ
ବାସ୍ତବରେ ଦେବବାଚ୍ୟ ନୁହନ୍ତି ସେମାନ ।
ତେଣୁ ଯେ ଅଟେ ଅନାଦି, ଅରୂପ, ଅନନ୍ତ
ମଙ୍ଗଳ ରୂପକୁ ଧରି ଥାଇ ଯେଉଁ ଚିତ ।
ସେହି ସିନା ହେ ବଶିଷ୍ଠ ଦେବପଦ ଯୋଗ୍ୟ
ସାକାର ସ୍ୱରୂପ ଯାର ସେ ଅଟେ ଅଯୋଗ୍ୟ ।
ତାହାର ହିଁ ସର୍ବଜନେ କରନ୍ତି ପୂଜନ
ବାସ୍ତବରେ ସେହି ଏକମାତ୍ର ବିଦ୍ୟମାନ ।
ତାହାଙ୍କଠାରୁ ସକଳେ ହୁଅନ୍ତି ଉଦ୍ଭୂତ
ତାଙ୍କରି ସତ୍ତାରେ ଆତ୍ମାରୂପେ ବିରାଜିତ ।
ଏକମାତ୍ର ପୂଜନୀୟ ଅଟେ ସେ ସବୁରି
ଏ ସାରା ବିଶ୍ୱରେ ସଦା ରହିଛି ସେ ପୂରି ।
ଯେଉଁମାନେ ନ ଜାଣନ୍ତି ସେ ମଙ୍ଗଳତତ୍ତ୍ୱ
ତା ଲାଗି ବିଭିନ୍ନ ପୂଜା ଅଛି ନିର୍ଦ୍ଧାରିତ ।
ଯୋଜନ ଗମନ ପାଇଁ ଯେ ଅଟେ ଅକ୍ଷମ
ଉଚିତ ତା ପାଇଁ କ୍ରୋଶ ପ୍ରମାଣ ଗମନ ।
ରୁଦ୍ରାଦି ଦେବଗଣଙ୍କ ଅର୍ଚ୍ଚନା କରନ୍ତେ
ପରିମିତ ଫଳଲାଭ ହୁଏ ବ୍ରହ୍ମାସୁତେ ।
ପକ୍ଷାନ୍ତରେ ଆତ୍ମଦେବତାର ଉପାସନ
ଅନନ୍ତ ଫଳ ଦିଅଇ ଆହେ ବ୍ରହ୍ମାତ୍ମନ ।
ଏହି ଯେ ଅନନ୍ତ ଫଳ ତାର ପରିବର୍ତ୍ତେ
ପରିମିତ ଫଳାକାଂକ୍ଷା କରେ ଯେହୁ ଚିତ୍ତେ,
ପରିହରି ସେହି ବ୍ୟକ୍ତି ନନ୍ଦନକାନନ
କରଞ୍ଜ ବନେ ଭ୍ରମଣ କରେ ସେ ବରଣ ।
ମଙ୍ଗଳମୟ ଅଟେ ଯେ ଆତ୍ମା ଚିରନ୍ତନ
ତାଙ୍କରି ହିଁ ପୂଜା କରିଥାନ୍ତି ଜ୍ଞାନୀଗଣ ।
ସେ ଚିନ୍ମୟ ଆତ୍ମାଙ୍କର ପୂଜନ ନିମିତ୍ତ
ଯେଉଁ ପୁଷ୍ପମାନ ହୋଇଛନ୍ତି ନିର୍ଦ୍ଧାରିତ ।
ତାହା ମୁଁ କହୁଛି ଏବେ ଆହେ ମୁନି ଶୁଣ
ବୋଧ, ସମଜ୍ଞାନ, ଶାନ୍ତି ଅଟନ୍ତି ସେମାନ ।
ଏ ତ୍ରିବିଧ ପୁଷ୍ପ ଦ୍ୱାରା ଆତ୍ମ ଦେବତାର
ଯେ ଅର୍ଚ୍ଚନା ହୁଏ ଜାଣ ବ୍ରହ୍ମାଙ୍କ କୁମର ।
ବାସ୍ତବ ଅର୍ଚ୍ଚନା ତାହା ହୃଦଗତେ ଘେନ
ଚକ୍ଷୁକୁଟା ଅଟେ ସିନା ସାକାର ଅର୍ଚ୍ଚନ ।
ବାସ୍ତବ ଅର୍ଚ୍ଚନା ନୁହେଁ ସାକାର ଅର୍ଚ୍ଚନା
ସର୍ବୈଶ୍ୱର୍ଯ୍ୟ ଶାଳୀ ଅଟେ ଯେ ପରମ ଆତ୍ମା ।
ସେହି କେବଳ ମଙ୍ଗଳଦାୟକ ଦେବତା
ସେହି କେବଳ ସକଳ ଗତିମୁକ୍ତି ଦାତା ।
ସର୍ବକାରଣ, ପରମକାରଣ ଯେ ସେହି
ତାଙ୍କ ବିନୁ ଏ ଜଗତେ ଅନ୍ୟ କେହି ନାହିଁ ।
ଜ୍ଞାନୀମାନଙ୍କର ଯେହୁ ପୂଜାର ଦେବତା
ସେହି ଅଟନ୍ତି କେବଳ ସେ ଆତ୍ମଦେବତା ।
ଅବ୍ୟୟ ଚିଦାକାଶହିଁ ବ୍ରହ୍ମବୋଲି ଜାଣ
ପୂଜାର ଦେବତା ସେହି ଜାଣ ହେ ସୁଜାଣ ।
ତାଙ୍କ ବିନା ଅନ୍ୟ କେହି ନୁହେଁ ପୂଜନୀୟ
ତାର ପୂଜା ଶ୍ରେଷ୍ଠ ପୂଜା ହେ ବ୍ରହ୍ମା ତନୟ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ପରମାତ୍ମାମୟ ବର୍ଣ୍ଣନେ**
**ନାମ ଚତୁର୍ବିଂଶ ସର୍ଗଃ**



## ପଞ୍ଚବିଂଶ ସର୍ଗଃ

## ଜଗତ୍ ପରମାତ୍ମାରୂପ ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ, ତଦପରେ ମୁହିଁ
ଗଉରୀ ପତିଙ୍କୁ ଚାହିଁ ପୁଚ୍ଛା କରିଲଇଁ ।
ଚିଦାକାଶରୂପ ଆତ୍ମା ଯେଉଁ ପରକାରେ
ଅଭିବ୍ୟକ୍ତ ହୋଇଛନ୍ତି ଜୀବ ଜଗତରେ ।
ସବିଷଦ ଭାବେ ତାହା କହିବା ବୁଝାଇ
ଶୁଣିବାକୁ ସତୃଷ୍ଣରେ ଚାହିଁ ଅଛି ମୁହିଁ ।
କହୁଛନ୍ତି ତ୍ରିଲୋଚନ ଶୁଣ ହେ ବରିଷ୍ଠ
କଳ୍ପ ଅବସାନେ ଯେହୁ ରହେ ଅବଶିଷ୍ଟ ।
ଏକମାତ୍ର ସେହି ଯେ ଅସୀମ ଚିଦାକାଶ
ବର୍ତ୍ତମାନ ରହିଛନ୍ତି, ହେ ବ୍ରହ୍ମାଙ୍କ ଶିଷ୍ୟ ।
ତାଙ୍କ ତହିଁ ଜଗତ୍ ଜୀବଭାବ ଅସମ୍ଭବ
କିନ୍ତୁ ଜଗତର ହର୍ତ୍ତାକର୍ତ୍ତା ସେ ଜାଣିବ ।
ସୂର୍ଯ୍ୟର ପ୍ରକାଶ ଶକ୍ତି ସ୍ୱତସିଦ୍ଧ ଭାବେ
ଆପେ ଆପେ ଯଥା ବ୍ୟାପିଯାଏ ଚତୁର୍ଦ୍ଦିଗେ ।
ସେ ପ୍ରକାଶର ସ୍ପନ୍ଦନ ନାନା ରଙ୍ଗଧରି
ରକ୍ତନୀଳ ପୀତବର୍ଣ୍ଣ ଶୋଭାକୁ ବିସ୍ତରି ।
ସୂର୍ଯ୍ୟର ବାହାରେ ଏହା ଅନୁଭୂତ ହୁଏ
ସୂର୍ଯ୍ୟଙ୍କ ଭିତରେ ତାର ସତ୍ତା ହିଁ ନ ଥାଏ ।

ଅପାର ଅନନ୍ତ ଚିଦାକାଶର ବାହାରେ
ମାୟା ସମ୍ଭୁତ ବାସନା ସ୍ପନ୍ଦନ ପ୍ରସରେ ।
ସେହି ସ୍ପନ୍ଦନ ଜଗତ ରୂପକୁ ଧରଇ
ସ୍ୱପନ ନଗର ପରି ଜଗତ ଭାସଇ ।
ପରମାର୍ଥିକ ଦୃଷ୍ଟିରୁ ଆହେ ବ୍ରହ୍ମାସୁତ
ଜଗତର ସତ୍ତା ନାହିଁ ଏକଥା ନିଶ୍ଚିତ ।
କେବଳ ସେ ଚିଦାକାଶ ସ୍ୱରୂପ ଯେ ଆତ୍ମା
ତଦ୍‌ଭିନ୍ନ ତହିଁ ନାହିଁ ଅନ୍ୟ କିଛି ସତ୍ତା ।
ଦୃଶାକୃତି ଧରି ଚିତ୍ ନିଜକୁ ଦେଖଇ
କୁହାଯାଇ ନ ପାରିବ ଆହେ ତପିସାଇଁ ।
ଅପରିଣାମୀ ଆବର ଅଦ୍ୱୟ ସେ ଯେଣୁ
ଅନ୍ୟ ଆକାର ଧାରଣ ଅସମ୍ଭବ ତେଣୁ ।
ଯେଣୁ ସ୍ୱୀୟ ଏକାଂଶରେ ମାୟାସମାଛନ୍ନ
ମନେହୁଏ ଏ ଜଗତ ତାହାଠାରୁ ଭିନ୍ନ ।
ସ୍ୱପନ ନଗରୀ ପରି ଏହି ଯେ ଜଗତ
ଆଭାସମାନ ନେତ୍ରକୁ ଆହେ ବ୍ରହ୍ମାସୁତ ।
ବାସ୍ତବରେ ଏହା ସେହି ପରିଣାମ ହୀନ
ଅଦ୍ୱୟ, ଏ ଚିଦାକାଶ ବ୍ରହ୍ମାଙ୍କ ନନ୍ଦନ ।
ଏହି ଯେ ପର୍ବତମାଳା, ଏ ଜୀବ, ଜଗତ
ଏହି ଅବିନାଶୀଆତ୍ମା, ଏହି ପଞ୍ଚଭୂତ ।
ଏହି ସମସ୍ତ ଅଟନ୍ତି ସେହି ଚିଦାକାଶ
ଯହିଁ ଯେତେ ଖୋଜି ବୁଲ ସେହି ଚିଦାକାଶ ।
ତରୁ, ବୃକ୍ଷ, ପାଦକାଦି ଯାହାକି ଏ ମାନ
ବୃକ୍ଷର ବିଭିନ୍ନ ନାମ ଅଟନ୍ତି ସେ ମାନ ।
ଜଗତ ପରମାକାଶ ପୁଣି ବ୍ରହ୍ମାକାଶ
ଚିତି, ଆକାଶ, ଏମାନେ ସେହି ଚିଦାକାଶ ।
ଏକମାତ୍ର ବସ୍ତୁ କିନ୍ତୁ ମାୟା ପ୍ରଭାବରେ
ଦ୍ୱୈତ ଭାବେ ଅନୁଭୂତ ହୁଏ ଏ ସଂସାରେ ।
ତାକୁ ମଧ୍ୟ ତତ୍ତ୍ୱ ଦୃଷ୍ଟି ଦେଇଣ ଦେଖିଲେ
ଚିଦାକାଶ ସମ ତାହା ପଡ଼େ ନୟନରେ ।
ସ୍ୱପ୍ନକାଳେ ଚିଦାକାଶ ଜଗତ ଆକାରେ
ପରିଦୃଷ୍ଟ ହୋଇଥାଏ ଆହେ ତପୀବରେ ।
ଜାଗରଣ କାଳ ମଧ୍ୟ ଏପରି ସ୍ୱପନ
ତେଣୁ ଜାଗରଣ ସ୍ୱପ୍ନ ଅଟନ୍ତି ଅଭିନ୍ନ ।
ଚିଦାକାଶ ଭିନ୍ନ ଅନ୍ୟ ଚେତ୍ୟ ଦୃଶ୍ୟବସ୍ତୁ
ଯେଣୁ ସମ୍ଭବ ନୁହଇ ଆହେ ଧର୍ମ ସେତୁ,
ତେଣୁ କରି ଏ ସକଳ ଯେ ଦୃଶ୍ୟ ଜଗତ
ଚିନ୍‌ମାତ୍ର ନାମେ କେବଳ ହେବ ଅଭିହିତ ।
ବ୍ରହ୍ମାକାଶେ ସଂକଳପ ଉଦିତ ହୋଇଣ
ଜଗତ ଆକାର ଯେବେ କରଇ ଧାରଣ ।
ଦ୍ୱୈତ ବତ ତେତେବେଳେ ହୁଏ ପରିଦୃଷ୍ଟ
ଚିଦାକାଶେ ସ୍ୱପ୍ନପରି ମିଥ୍ୟା ତା ବଶିଷ୍ଠ ।
ସ୍ୱପ୍ନ ନଗରେ ବିଶୁଦ୍ଧ ଜ୍ଞାନର ବ୍ୟତୀତ
ଅନ୍ୟକିଛି ଯଥା ନୋହି ଥାଏ ପ୍ରତିଭାତ ।
ସେ ଚୈତନ୍ୟ ଛଡ଼ା ମଧ୍ୟ ଏହି ଜଗତରେ
ଅନ୍ୟକିଛି ନାହିଁ ଜାଣ ଆହେ ତପୀବରେ ।
ପରମାର୍ଥ ସତ୍ୟ ବୋଲି ଯେ ହେଲେ ନିର୍ଦ୍ଦିଷ୍ଟ
ତୁମେ ଆମେ ଜଗତ୍ ଆତ୍ମା ଇତ୍ୟାଦି ଯାବତ
ଏ ସର୍ବେ ଅଟନ୍ତି ଜାଣ ସେ ପୂଜ୍ୟ ଦେବତା
ତାଙ୍କର ଅର୍ଚ୍ଚନା ବିଧି ଜାଣ ଏହି କଥା ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଜଗତ୍ ପରମାତ୍ମା ରୂପ ବର୍ଣ୍ଣନେ**
**ନାମ ପଞ୍ଚବିଂଶ ସର୍ଗଃ**



## ଷଡ଼ବିଂଶ ସର୍ଗଃ
## ଚୈତନ୍ୟ ତତ୍ତ୍ୱ ବିଚାର

ଏହି ଭାବେ ଏ ସମଗ୍ର ବିଶ୍ୱ ବ୍ରହ୍ମାସୁତ
ସର୍ବବ୍ୟାପୀ ପରମାତ୍ମା ନାମରେ କଥିତ ।
ଏହି ଦେବତାର ପୂଜା କଲେ ମୁନିବର
ସକଳ ମଙ୍ଗଳ ଲାଭ ହୁଏ ପୂଜକର ।
ସେହି ପରମାତ୍ମା ମଧ୍ୟେ ସର୍ବେ ପ୍ରତିଷ୍ଠିତ
ତେଣୁ ତାଙ୍କୁ ପୂଜାକଲେ ସରବେ ପୂଜିତ ।
ଅନନ୍ତ ଅଖଣ୍ଡ ସୁଖ ଦିଏ ସେ ଅର୍ଚ୍ଚନ
ଅନ୍ୟ ବାହ୍ୟ ପୂଜାବିଧି ଲୋଡ଼ାନାହିଁ ଜାଣ ।
ତତ୍ତ୍ୱଜ୍ଞାନ ଲାଭକରି ନାହାନ୍ତି ଯେମାନେ
ଧୂପ ପୁଷ୍ପ ଆଦିକରି ଦେଇଣ ସେମାନେ,
ବାହ୍ୟପୂଜା ବିଧାନରେ ଦେବତା ପୂଜନ
କରିବାର ବିଧିଅଛି ବିଧାତା ନନ୍ଦନ ।
ଶମ, ଦମ, ତତ୍ତ୍ୱଜ୍ଞାନ ଅଭାବରେ ଜାଣ
ବାହ୍ୟ ପୂଜାବିଧି ହୋଇଥାଏ ପ୍ରୟୋଜନ ।
ତତ୍ତ୍ୱଜ୍ଞାନୀଙ୍କ ନିମିତ୍ତ ପୂଜାର ବିଧାନ
ବର୍ଣ୍ଣନ କରୁଅଛଇ ମନ ଦେଇ ଶୁଣ ।

ଯେଉଁ ଦେବତାଙ୍କ କଥା ଏବେ କହିଲଇଁ
ବ୍ରହ୍ମା ବିଷ୍ଣୁ ରୁଦ୍ରଙ୍କର ଆଦି ସେ ଅଟଇ ।
ସର୍ବ ପ୍ରକାର ସଂକଳ୍ପ ଅତୀତ ଯେ ସେହି
ଅଥଚ ସର୍ବ ସଙ୍କଳ୍ପ ଆଶ୍ରୟ ଅଟଇ ।
ସର୍ବାତୀତ ଅଟେ ସେହି ସର୍ବମୟ ଶିବ
ଦିକ୍‌କାଳ କେଭେ ତାକୁ ଛୁଇଁ ନ ପାରିବ ।
ଅଥଚ ସେ ଅଟେ ସର୍ବକର୍ମ ପ୍ରକାଶକ
ସର୍ବ ଅନ୍ତରେ ବିରାଜେ ଯେସନ ଦୀପକ ।
ତାଙ୍କଠାରୁ ସ୍ୱ ଅସ୍ତିତ୍ୱ ସର୍ବେ ଲଭିଛନ୍ତି
ସବୁରି ଅସ୍ତିତ୍ୱ ସେହୁ ହରଣ କରନ୍ତି ।
ଗୋଟିଏ ନାମ ତାଙ୍କର "ପରମାତ୍ମା" ଜାଣ
ଅପରଟି ଅଟେ "ଓଁ ତତ୍ ସତ୍" ପୁଣ ।
ସର୍ବସ୍ଥାନେ ସମ ସେହୁ ମହା ସତ୍ତାପରି
ମହାଚିତ୍, ପରମାର୍ଥ, ଅନ୍ୟନାମ ତାରି ।
ବୃକ୍ଷଲତା ମଧ୍ୟେ ରସ ଯଥା ଅବସ୍ଥିତ
ସେପରି ଏ ଚିତ୍‌ତତ୍ତ୍ୱ ସର୍ବଭୂତେ ସ୍ଥିତ ।
ସତ୍ତାସାମାନ୍ୟ ରୂପରେ ସେହି ବିରାଜିତ
ମହା ସତ୍ତାଭାବେ ମଧ୍ୟ ଥାନ୍ତି ଅନୁସ୍ୟୁତ ।
ତୁମେ ପୁଣି ତୁମ ପତ୍ନୀ ସତୀ ଅରୁନ୍ଧତୀ
ଆମ୍ଭେ ଏବଂ ଆମ୍ଭ ପତ୍ନୀ ଗୌରୀ ମହାସତୀ ।
ଶିବଗଣ ପୁଣି ଚିତ୍ ତତ୍ତ୍ୱ ଜ୍ଞାନୀ ପୁଣି
ଏ ଚିତ୍ ତତ୍ତ୍ୱକୁ ସେହି ଦେବତା ବୋଲିଣ,
ଅଭିହିତ କରିଥାନ୍ତି ନିଜର ଅନ୍ତରେ
ଅନୁଭବ କରୁଥାନ୍ତି ଶିରାପ୍ରଶିରାରେ ।
ଆକୃତି ସମ୍ପନ୍ନ ସର୍ବ ଦେବଙ୍କ ଅନ୍ତରେ
ଚିତ୍‌ତତ୍ତ୍ୱ ଛଡ଼ା ଅନ୍ୟ କି 'ସାର' ତହିଁରେ ।
ସଂସାରର ସାର ଅଟେ ସେହି ଚିତ୍‌ତତ୍ତ୍ୱ
ଆବର ସବୁରି ସାର ସର୍ବ ଦେବତତ୍ତ୍ୱ ।
ମୁଁ ରୂପ ଆକାରବାନ୍ ସେହି ଚିତ୍‌ତତ୍ତ୍ୱ
ସର୍ବକିଛି ତାର ତହୁଁ ହୋଇପାରେ ଜାତ ।
ଦୂରେ ନାହିଁ କି ଅଲଭ୍ୟ ନୁହେଁ ସେହି ତତ୍ତ୍ୱ
ସର୍ବକ୍ଷଣେ ଶରୀରରେ ରହିଛି ଜାଗ୍ରତ ।
ସର୍ବସ୍ଥଳେ ଏପରିକି ଗଗନ ମଧ୍ୟରେ
ବିରାଜମାନ ରହିଛି ବିଶ୍ୱ ବିଶ୍ୱାନ୍ତରେ ।
ଗମନ ଶୟନ ପୁଣି ନିଃଶ୍ୱାସ ପ୍ରଶ୍ୱାସ
ଭୋଜନ, ପାଳନ ଆଦି ଯେ କ୍ରିୟା ବିଶେଷ ।
ସେହି ଚିତ୍‌ତତ୍ତ୍ୱ କରେ ସକଳ କରମ
ସର୍ବ ଅଙ୍ଗ ପ୍ରତ୍ୟଙ୍ଗରେ କରେ ସମ୍ବେଦନ ।
ଏ ଶରୀର ପୁରୀ ଅଟେ ନାନା ଯନ୍ତ୍ରଶୀଳ
ତହିଁ ଆବଦ୍ଧ ଏହି ଯେ ଚିତ୍‌ତତ୍ତ୍ୱ ପ୍ରବର ।
ଏହି ପୁରୀ ମଧ୍ୟେ ବିରାଜିଣ ସେ ମହାନ
ସକଳ କ୍ରିୟା ପ୍ରକ୍ରିୟା କରେ ନିରୀକ୍ଷଣ ।
ଅନ୍ନମୟ, ପ୍ରାଣମୟ କୋଷ ସମନ୍ୱିତ
ବୁଦ୍ଧିରୂପ ଗୁହାମଧ୍ୟେ ହୋଇଛି ଶାୟୀତ ।
ଗୁହା ଅଧିପତି ରୂପେ ସେହି ଶରୀରରେ
ବିରାଜମାନ କରଇ ପ୍ରଭୁ ଆକାରରେ ।
ସର୍ବବ୍ୟାପୀ ନିର୍ଲେପ ସେ ସୂକ୍ଷ୍ମାଦପୀସୂକ୍ଷ୍ମ
ଚିନ୍ମୟ ସେ ସଦାନନ୍ଦମୟ ତା ଭୁବନ ।
ରସ ସଞ୍ଚାର କରିଣ ବସନ୍ତ ଯେସନ
ସଞ୍ଜୀବିତ କରି ରଖେ ବୃକ୍ଷ ଲତାମାନ ।
ଜଗତର ସିଦ୍ଧି ପାଇଁ ସେ ନିର୍ମଳ ଚିତ୍
ଜଗତରେ ସର୍ବ କର୍ମ କରେ ନିର୍ବାହିତ ।
ଚିତ୍‌ଶକ୍ତିର ସତ୍ତା ପ୍ରସବିନୀ ଶକ୍ତି ତହିଁ
ନିର୍ଗତ ହୋଇଣ ନାନା ପଦାର୍ଥ ଭିଆଇ ।
କେ ହେଲା ଚନ୍ଦ୍ରମା ପୁଣି କେ ହେଲା ତପନ
କେ ଆକାଶ କେହୁ ଚିତ୍ତ କେହୁ ଜୀବଗଣ ।
ଏହିପରି ନାନା ନାମେ ହୋଇ ପରିଚିତ
ଜଗତ କ୍ରିୟାକୁ କରୁଛନ୍ତି ସମ୍ପାଦିତ ।
ଇଚ୍ଛା ନ ଥିଲେ ହେଁ ମଧୁକାଳ ଯେଉଁପରି
ବୃକ୍ଷଲତାଙ୍କ ଅଙ୍କୁର ଉଦ୍‌ଗମନ କରି ।
ଇଚ୍ଛାବିହୀନ ହେଲେହେଁ ସେ ଆତ୍ମା ପରମ
ଜଗତ ଲକ୍ଷ୍ମୀକି କରୁଛନ୍ତି ବିବର୍ଦ୍ଧନ ।
ଜଗତ୍‌ରୂପ ସମୁଦ୍ରର ସ୍ୱରୂପ ଦର୍ଶନ
କଲେ ଦେଖିବ କେବଳ ଚିତ୍ ଜଳପୂର୍ଣ୍ଣ ।
ଏ ଦେହ କମଳ ବନେ ସେ ଚିତ୍‌ଭ୍ରମର
ସଂକଳ୍ପ-ମଧୁ ସଞ୍ଚୟ କରେ ନିରନ୍ତର ।
ଏହି ଚିତ୍ ସ୍ୱରୂପିଣୀ ପରମ ଈଶ୍ୱରୀ
ସେହି ସଂକଳ୍ପ ମଧୁକୁ ଆସ୍ୱାଦନା କରି ।
ଜଳେ ଜଳାବର୍ତ୍ତ ପରି ଏହି ଯେ ସଂସାର
ଚିତ୍‌ସତ୍ତାରେ ବିରାଜି ହୁଏ ଗତିଶୀଳ ।
ଚିତ୍ ପ୍ରଭାବରେ ଜାଣ ଏହି ଯେ ସଂସାର
ଚକ୍ରପରି ଘୁରୁଅଛି ବିଧାତା କୁମର ।

କର୍ତ୍ତା, ଭୋକ୍ତା, ଚିତ୍ତଭାବ ବନ୍ଧନ କାରଣ
ତାହାକୁ କହନ୍ତି ଭବ ଚକ୍ରର ପୂର୍ଣ୍ଣନ ।
ବିଷ୍ଣୁ ରୂପେ ଚିତ୍‌କରେ ଅସୁର ସଂହାର
ରୁଦ୍ର ରୂପେ ଗୌରୀ ମୁଖ ପଦ୍ମର ଭ୍ରମର ।
ଏହି ଚିତ୍ ହୋଇଥାଏ ଇନ୍ଦ୍ର ଦେବରାଜ
ଏହି ଚିତ୍ ହୁଏ ପୁଣି ଆକାଶରେ ସୂର୍ଯ୍ୟ ।
କେବେ ଅବା ଚନ୍ଦ୍ରରୂପେ କିରଣମାଳାରେ
ଚତୁର୍ଦ୍ଦିଗ ଉଦ୍‌ଭାସିତ କରେ ମୁନିବରେ ।
ନାନା ଆକୃତି ଧାରଣ କରିଣ ଏ ଚିତ
ସମୁଦ୍ର ସଲୀଳ ପରି ହୁଏ ଇତଃସ୍ତତଃ ।
ଉଠୁଥାଏ ପଡୁଥାଏ ସମୁଦ୍ରର ଢେଉ
ଲୀନ ହୋଇ ଯାଇଥାଏ ତା ସଲିଳେ ସେହୁ ।
ସେହିପରି ଚିତ୍ ନାନା ଆକୃତି ଧରିଣ
ନିଜେ ନିଜ ମଧ୍ୟେ ପୁଣି ହୋଇଯାଏ ଲୀନ ।
ସର୍ବ ପଦାର୍ଥମାନଙ୍କ ଆକୃତି ଧରିଣ
ଚନ୍ଦ୍ରରେ କଳଙ୍କ ପରି ଚିତ୍ ଦୃଶ୍ୟମାନ ।
ଗୃହ ମଧ୍ୟେ ଅନ୍ଧକାର ଗୁପତ ଯେସନ
ଚିତ୍‌ଛାୟାରେ ଜଡ଼ତ୍ୱ ନିହିତ ତେସନ ।
ଚିଦାଲୋକ ବିନା ଜିହ୍ୱା ରସ କି ଝରଇ ?
ଭୋଜନା ଲାଳସା କାହୁଁ ସମ୍ଭବିବ ତହିଁ ?
ପାଦପ ଶରୀରେ ଅଙ୍ଗ ପ୍ରତ୍ୟଙ୍ଗ ଶୋଭନ୍ତି
ଲତିକା ସ୍ୱରୂପ କେଶ ଶିରେ ଶୋଭା ପାନ୍ତି ।
ଅନ୍ତରେ ଚୈତନ୍ୟ ଯେବେ ନୁହଁଇ ସଂସ୍ଥିତ
କେଉଁ ଶୋଭା ନ ପାଇବ ଜାଣ ଏହି ଗାତ୍ର ।
ସ୍ଥାବର ଜଙ୍ଗମମୟ ଜଗତ ଆକୃତି
ଧାରଣ କରିଣ ଚିତ୍ ବର୍ଦ୍ଧିତ ହୁଅନ୍ତି ।
ଲୁଣ୍ଠନ, ଭୋଜନ ଆଦି ସର୍ବ କର୍ମମାନ
ଏହି ଚିତ୍ କରୁଥାଏ ସଦା ସମ୍ପାଦନ ।
ତେଣୁ ହେ ବଶିଷ୍ଠ ଜାଣ ଏକମାତ୍ର ଚିତ
ବିନୁ ରହି ପାରିବ କି କହ ଏ ଜଗତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ବଶିଷ୍ଠ ଶିବ ସମ୍ବାଦେ ଚୈତନ୍ୟ ତତ୍ତ୍ୱ ବିଚାର ବର୍ଣ୍ଣନେ ନାମ ଷଡ଼ବିଂଶ ସର୍ଗଃ**



## ସପ୍ତବିଂଶ ସର୍ଗଃ

## ମନ, ପ୍ରାଣ, ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଏହିପରି ଉପଦେଶ ଦେଲେ ତ୍ରିଲୋଚନ ।
ମୁଁ କହିଲି ଆହେ ଦେବ ସମଗ୍ର ଜଗତ
ଯଦି ବୁଝାଇଲ ତାହା ଏକମାତ୍ର ଚିତ ।
ତେବେ ଚିତ୍ ଆମ୍ଭଙ୍କର ଏହି ଯେ ଶରୀର
ମୃତ୍ୟୁକାଳେ କିମ୍ବା ଅଚେତନ ହୁଏ ବୋଲ ।
ପ୍ରଥମେ ତ ଏ ଶରୀର ଥାଏ ଚେତାବାନ
ପରେ ଚେତାଶୂନ୍ୟ ହୁଏ କହ କି କାରଣ ।
ଯେଣୁ କରି ଏହି ଚିତ୍ ଅଟେ ଅବିନାଶୀ
ଆବର ଅବିନେଶ୍ୱର ଆହେ ଦେବକାଶୀ,
ତାହା ପକ୍ଷେ ଜଡ଼ ହେବା ନୁହଁଇ ସମ୍ଭବ
ସଦା ସେ ଚେତନ ସଦା ଅବିନାଶ ହେବ ।
ବୋଲନ୍ତି ମହେଶ ଶୁଣ ଆହେ ବ୍ରହ୍ମା ସୁତ
ଏ ଦେହ ମଧ୍ୟେ ବିରାଜମାନ ଯେଉଁ ଚିତ ।
ତାହାର ଦ୍ୱିବିଧ ରୂପ ଜାଣ ବ୍ରହ୍ମ ଋଷି
ଏକ ରୂପ କ୍ରିୟାଶୀଳ ଆହେ ବ୍ରହ୍ମ ଶିଷି ।
ବ୍ୟଷ୍ଟି ଓ ସମଷ୍ଟି ଭାବେ ଅଟନ୍ତି ଉନ୍ମୁଖ
ବିଜ୍ଞାନମୟ କରତା, ଭୋକ୍ତା ହେଜ ରଖ ।
କୂଟସ୍ଥିତ ନିର୍ବିକଳ୍ପ ଚଇତନ୍ୟ ସେହି
ଅନ୍ୟ ରୂପ ତାହା ସ୍ୱଙ୍କର ଏମନ୍ତ ଅଟଇ ।
ଯେ ଅଟନ୍ତି କ୍ରିୟାଶୀଳ ସଂକଳ୍ପ ବଳରେ
ନିଜକୁ ସେ ଜୀବ ଭାବି ସେହି ରୂପ ଧରେ ।
ଯେଉଁପରି କ୍ରୋଧ ହେଲେ ଶାନ୍ତ ବ୍ୟକ୍ତି ମଧ
ଅନ୍ୟ ଆକୃତି ସ୍ୱରୂପ ଧରିବାକୁ ବାଧ ।
ବିକଳ୍ପ ଦ୍ୱାରା ଲାଞ୍ଛିତ ହୋଇକରି ଚିତ
ଅନ୍ୟ ଆକୃତି ଧରିଣ ହୁଏ ସେ ଉନ୍ମତ୍ତ ।
ବିକଳ୍ପ ବଶତଃ ସେହୁ ସ୍ୱରୂପ ତେଜିଣ
ଜଡ଼ଭାବ ବଳେ ସ୍ୱୀୟ କଳ୍ପନା ଘେନିଣ,
କିମ୍ଭୂତ କିମ୍ଭାକାର ସେ କରନ୍ତି ଧାରଣ
ଅଚିନ୍ତନୀୟ ଅଟଇ ସେ ରୂପ ବର୍ଣ୍ଣନ ।
ସେହି ଚିତ୍ ନିଜେ ଜୀବ ଭାବକୁ ଧରିଣ
ଶବ୍ଦ, ସ୍ପର୍ଶ, ଗନ୍ଧ ଆଦି କରେ ଆସ୍ୱାଦନ ।

ସମଷ୍ଟିପ୍ରାଣ ରୂପକୁ ତତପରେ ଧରେ
ଜଗତରେ କ୍ରିୟାଶୀଳ ହୋଇ ସେ ବିଚରେ ।
ପଞ୍ଚଭୂତେ ପରିଣତ ହୋଇ ଏହି ଚିତ
ଦେଶ ଓ କାଳ ରୂପକୁ ଧରେ ସେ ତ୍ୱରିତ ।
ଏହି ଚିତ ପ୍ରାଣ ରୂପ ହୁଏ ପ୍ରକାଶିତ
ବୁଦ୍ଧି, ମନ, ଅହଙ୍କାର, ଜୀବ ଆଦି ଯେତ ।
ନିଶ୍ଚୟ ବୃତ୍ତିରୁ ବୁଦ୍ଧି ହୁଅଇ ଜନମ
ଅହଂ ବୃତ୍ତିରୁ ଜନମ ଅହଙ୍କାର ଜାଣ ।
ସଂକଳ୍ପ ବିକଳ୍ପ ବୃତ୍ତି ମନକରେ ଜାତ
ଚିନ୍ତନରୁ ଜାଣିରଖ ଜନ୍ମ ନିଏ ଚିତ୍ତ ।
ଯେତେବେଳେ ଭାବନାର ବିପର୍ଯ୍ୟୟ ହୁଏ
ଚୈତନ୍ୟ ନିଜକୁ ଜୀବବୋଲି ଧରିନିଏ ।
"ମୁଁ ଅଟେ ଚଣ୍ଡାଳ" ଏହି ଭାବନା ବଳରେ
ବ୍ରାହ୍ମଣ ଯଥା ଚଣ୍ଡାଳ ପ୍ରକୃତି ଆଚରେ ।
ସେହିପରି ଚିତ୍ତ ମନ ଗତି ଅନୁସାରେ
ଜୀବଭାବ ଧରି ଜନ୍ମେ ଏହି ସଂସାରରେ ।
ଅନନ୍ତ ସଂକଳ୍ପ ସ୍ୱରୂପିଣୀ ଏହି ଚିତ୍
ଶରୀର, ଜୀବ, ଜଡ଼ତ୍ୱ କଳ୍ପନା କରନ୍ତି ।
ସ୍ଥୂଳ ଭାବକୁ ଗ୍ରହଣ କରିବା କାରଣ
ସଂସାର ମୋହେ ପତୀତ ହୁଏ ଅନୁକ୍ଷଣ ।
ତେତେବେଳେ ମାୟା, ମୋହ, ମନ ଆଉ ଚିତ୍ତ
ନାନା ନାମ ଧରି ଏହି ଚିତ୍ ପରିଚିତ ।
ତେଣୁ ସେ ଜଡ଼ଭାବକୁ କରିଣ ବରଣ
ସଂସାର ମଧ୍ୟରେ କରେ ଜନମ ଗ୍ରହଣ ।
ଅପରିଚ୍ଛିନ୍ନ ଯେ ଚିତ୍ ପରିଚ୍ଛିନ୍ନ ହୋଇ
ସଦା ସର୍ବଦା ତୃଷ୍ଣାରେ ପୀଡ଼ିତ ହୁଅଇ ।
କାମ, କ୍ରୋଧ, ରିପୁ ବଳେ ହୋଇ ଭୟଭୀତ
ଅଭାବରେ ପଡ଼ିକରି ହୁଏ ମୋହଗ୍ରସ୍ତ ।
ଦୁଃଖାନଳେ ଦଗ୍ଧ ପୁଣି ଶୋକରେ କାତର
"ଏହା ମୋ ସ୍ୱଭାବ" ଭ୍ରମ ଘାରେ ତା ଅନ୍ତର ।
ସେ ସମୟେ ଦେହ ତାର ଏକଇ ଭରସା
ଭାବି କରି ସବୁବେଳେ ଉଡ଼େ ତାର ହଂସା ।
ଜରାଜୀର୍ଣ୍ଣ ହସ୍ତୀସମ ମୋହ ପଙ୍କେ ପଡ଼ି
ଉଠିବାକୁ ଅସମର୍ଥ ହଂସା ଯାଏ ଉଡ଼ି ।
ଅସାର ଭବ ଦଶାରେ ପଡ଼ି ତେତେବେଳେ
ସନ୍ତାପରେ ସନ୍ତାପିତ ହୁଅଇ ବିକଳେ ।
ଶିଶୁ ଯଥା ସ୍ୱକଳ୍ପିତ ଭୂତପ୍ରେତ ଭୟେ
ଥରହର ହୋଇ ତାର ହୃଦ କାନ୍ଦୁଥାଏ ।
ଚିତ ମଧ୍ୟ ସେହି ରୂପେ ସ୍ୱ ସଂକଳ୍ପ ବଳେ
ଭୟଭୀତ ହୋଇ ନାନା ଦୁଃଖ ଭୋଗ କରେ ।
ତାପରେ ମନୁଷ୍ୟ କୁଳେ ଜନମ ଲଭିଣ
ଆକୃଷ୍ଟ ହୁଅଇ ଦେଖି ଧନ ପରିଜନ ।
ତନ୍ମୟ ହୋଇଣ ଯହୁଁ ମାତଇ ସେଥିରେ
ଅସମର୍ଥ ହୁଏ ସେହୁ ବିବେକ ଲାଭରେ ।
ତେଣୁ ଅଶେଷ ଅବସ୍ଥାରେ ଗଣ୍ଡୁଷ ଜଳରେ
ସଫରୀ ପରି ସେ ଛଟପଟ ହୋଇ ମରେ ।
ବାଲ୍ୟରେ ଅକ୍ଷମ, ଯଉବନେ କାମାତୁର
ବାର୍ଦ୍ଧକ୍ୟରେ ଚିନ୍ତା ପୁଣି ଦୁଃଖରେ ଆତୁର,
ପୁନଃ ପୁନଃ ମୃତ୍ୟୁ କବଳିତ ଏହି ତିନି
ହୋଇଥାନ୍ତି ଜାଣିରଖ ଆହେ ବ୍ରହ୍ମଜ୍ଞାନୀ ।
ପୂର୍ବ କର୍ମମାନଙ୍କର ଆବଦ୍ଧ ହୋଇଣ
ମୁକ୍ତି ଲାଭ କରି ନ ପାରନ୍ତି କଦାଚନ ।
ଆଉ ମଧ୍ୟ ଏହି ଚିତ୍ ନାରାୟଣ ରୂପେ
କ୍ଷୀର ସାଗରେ ଶାୟିତ ଥାନ୍ତି କଳ୍ପେ କଳ୍ପେ ।
ବ୍ରହ୍ମ ଲୋକେ ପଦ୍ମ ଯୋନି ରୂପେ ଧ୍ୟାନମଗ୍ନ
ଅର୍ଦ୍ଧେନ୍ଦୁ ଶେଖର ରୂପେ କୈଳାସେ ଭ୍ରମଣ ।
ଦେବପୁରେ ଦେବରାଜ ଇନ୍ଦ୍ର ସେ ଅଟନ୍ତି
ଦେବରାଜ୍ୟ ଭୋଗକରି ପୃଥିବୀ ପାଳନ୍ତି ।
ଏହି ଚିତ୍ ସୂର୍ଯ୍ୟ ରୂପେ ଦିବସ ରଚନ୍ତି
ମେଘ ରୂପେ ପ୍ରବାହିତ ସେହୁ ହେଉଥାନ୍ତି ।
ବର୍ଷ, ଯୁଗ, ମନ୍ୱନ୍ତର ରୂପେ ଧାଉଁଥାନ୍ତି
ଚିତ୍‌ର ହିଁ ସବୁ ଖେଳ ଜାଣ ରଘୁପତି ।
ଦିବସ, ରଜନୀ ରୂପେ ଏହି ଚିତ୍ ଜାଣ
ଆଲୋକ, ଅନ୍ଧାର ରୂପ କରନ୍ତି ଧାରଣ ।
ବୃକ୍ଷ, ବୀଜ, ରସାକାରେ ସେହି ଉଲ୍ଲସିତ
ନିଶ୍ଚଳ ପର୍ବତ ରୂପେ ସେହି ଅବସ୍ଥିତ ।
ଜଳପୂର୍ଣ୍ଣ ନଦୀ, ଆଉ ନାନାବିଧ ଫୁଲ
ସେ ଅଟନ୍ତି କାଷ୍ଠ, ଅଗ୍ନି ନାନା ପକ୍ୱଫଳ ।
କାହିଁ ସେ ଗଗନ ପୁଣି କାହିଁ ସେ ପର୍ବତ
କାହିଁ ନାନା ବର୍ଣ୍ଣ ରଙ୍ଗ ଯଥା ନୀଳ ପୀତ ।
କାହିଁ ସେ ମୃତ୍ତିକା ରୂପେ ରହେ ବିରାଜିତ
ଏହି ରୂପେ ତାଙ୍କ ରୂପ ଜଗତ ବିଦିତ ।

ସର୍ବ ଶକ୍ତିମୟୀ ଯେଣୁ ଅଟେ ଏହି ଚିତ୍
ସର୍ବ ସ୍ୱରୂପିଣୀ ରୂପେ ଛନ୍ତି ବିରାଜିତ ।
ଗଗନଠାରୁ ନିର୍ମଳ ବାସ୍ତବରେ ସେହି
ଏହିସବୁ ଆକୃତିରୁ ସ୍ୱତନ୍ତ୍ର ସେ ରହି ।
ଜଳେ ତରଙ୍ଗ ସଦୃଶ ଏହି ଚିତ ଜାଣ
ଯେତେବେଳେ ଯେଉଁ ରୂପେ ବିବର୍ତ୍ତିତ ପୁଣ,
ସେତେବେଳେ ତାହା ସେହି କରେ ଅନୁଭବ
ସର୍ବତ୍ରଗ ସର୍ବଶକ୍ତିମାନ ସେ ଜାଣିବ ।
ନାନା ଯୋନିରେ ଭ୍ରମଣ କରେ ଏହି ଚିତ୍
ଜଳାବର୍ତ୍ତେ ନିପତିତ ତୃଣଟି ଯେମନ୍ତ ।
ସଂସାର ଚକ୍ରରେ ସେହୁ ହୁଅଇ ଘୂର୍ଣ୍ଣିତ
ଅଚିନ୍ତ୍ୟ ଅଟଇ ସେହି ଚିତ୍‌ର ଚରିତ ।
ଯାହାର ବିଷୟ ମୁନେ କଲଇଁ ବର୍ଣ୍ଣନ
ତାହା ନାମ ଜୀବଶକ୍ତି କାଳ କାଳ ଜାଣ ।
ଜୀବ ରୂପ ଧରି ସ୍ୱାମୀହୀନ ନାରୀ ପରି
ଶୋକାକୁଳ ହୋଇ କାଟେ ଦିବସ ଶର୍ବରୀ ।
ବିବେଚନା କରି ଦେଖ ଆହେ ମୁନିବର
ଅବିଦ୍ୟାର ଯେ ଶକତି ଯେ ବଳ ତାହାର ।
ବ୍ରହ୍ମ ସ୍ୱରୂପିଣୀ ଚିତ୍ ଅବିଦ୍ୟା ପ୍ରଭାବେ
ଆତ୍ମ ବିସ୍ମୃତ ହୋଇଣ ଘାରି ହୁଏ ଭବେ ।
ଢେଣ୍ଡା ଯେପରି ଉପର ତଳ ହେଉଥାଏ
ଆଶାବଶ ଜୀବ ସେହି ଦଶା ଭୋଗୁଥାଏ ।
ଆକାଶୁ ପାତାଳ ତାର ଗମନା ଗମନ
ଅହରହ ଚାଲିଥାଏ ହେ ବ୍ରହ୍ମା ନନ୍ଦନ ।
ଯାକୁ ବଳି ବେଶି କଷ୍ଟ ଆଉକି ଅଛଇ
ତୁମେ ହିଁ ବିଚାରି ଦେଖ ଅରୁନ୍ଧତୀ ସାଇଁ ।
ପୁଣି କହନ୍ତି ମହେଶ ଶୁଣ ବ୍ରହ୍ମାସୁତ
"ମୁହିଁ ଦୁଃଖୀ" ଏହିପରି ଭାବେ ଯେବେଚିତ ।
ଅଜ୍ଞାନ ବଶରୁ ଜୀବ ଏ ମିଥ୍ୟା ଜଗତ
ଆବର ଜୀବ୍‌ଭାବକୁ କରେ ଅଙ୍ଗୀକୃତ ।
ଘୋର ବିପଦରେ ପଡ଼ି ଯଥା ମୂଢ଼ାନାରୀ
"ମୁଁ ମରିଛି" ଭାବି ଦେଇ କ୍ରନ୍ଦନ ସେ କରି ।
ନୋହିଥିଲେ ହେଁ ବିନଷ୍ଟ ଏହି ଯେଉଁ ଚିତ
ବିନାଶ ଲଭିଛି ମଣି ହୁଏ ସେ ଦୁଃଖିତ ।
ଚିତ୍‌ର ସଂସାର ଦଶା ଚିତ୍ତ ଯୋଗୁଁ ଜାଣ
କିନ୍ତୁ ସେହି ଚିତ୍ତ ଏକାବେଳେ ମିଥ୍ୟା ଘେନ ।

ଏକମାତ୍ର ଚିତ୍‌ଛଡ଼ା ଅନ୍ୟ କିଛି ନାହିଁ
ତେଣୁ ଚିତ୍ତର କୌଣସି ଅସ୍ତିତ୍ୱ ନ ଥାଇ ।
ଯେତେବେଳେ ଏ ଚିତ୍ତର ଅସ୍ତିତ୍ୱ ହିଁ ନାହିଁ
ଏ ଦୃଶ୍ୟ ଜଗତ ତେଣୁ ରହିବ ବା କାହିଁ ?
ଯେଉଁ ଚିତ୍ ଏ ଚିତ୍ତକୁ ଚେତ୍ୟ ଆକାରରେ
ବିବର୍ତ୍ତିତ କରିଥାଏ ଆହେ ମୁନିବରେ,
ଚିତ୍ତ କଳ୍ପିତ ଜଗତ କେଉଁେ ସେ ନୁହଇ
କେବଳ ବିଶୁଦ୍ଧ ଚିତ୍‌ରୂପେ ବିରାଜଇ ।
ରସ ନ ଥାଇ ଯେସନ ପାଷାଣ ମଧ୍ୟରେ
ଦୃଶ୍ୟ, ଦରଶନ, ଦ୍ରଷ୍ଟା ନ ଥାଇଁ ତହିଁରେ ।
ନ ଥାନ୍ତି କର୍ତ୍ତା କରମ, କରଣ ଯେ ତହିଁ
ପ୍ରମାତା, ପ୍ରମେୟ ପୁଣି ପ୍ରମାଣ ବି ନାହିଁ ।
ଚିତ୍ତ, ଚେତନ ଓ ଚୈତ୍ୟ ନ ଥାନ୍ତି ଏମାନ
ମମତ୍ୱ, ତାତ୍ତ୍ୱ, ତୁମତ୍ୱ ନାହିଁ ଯାଙ୍କ ଚିହ୍ନ ।
ସ୍ୱକୀୟ ବା ପରକୀୟ ଦେହତ୍ୱ ନ ଥାଇ
ବ୍ରହ୍ମାଙ୍କ ଚିତ୍ତ ଦୋଷରୁ ଚିତ୍ ଦୁଃଖୀ ନୋହି ।
ଚିତ୍ ଯେ ଭବ-ଅନର୍ଥ କରିଛି ଭିଆଣ
ତାସବୁ ଚିତ୍ତକଳ୍ପିତ ଅହଂଭାବ ଗୁଣ ।
ଏହି କଳ୍ପନାର ଯେବେ ବିନାଶ ଘଟଇ
ସେ ଭବ ଅନର୍ଥ ସବୁ ବିନଷ୍ଟ ହୁଅଇ ।
ପକ୍ଷାନ୍ତରେ ଏ ଭାବନା ନୋହିଲେ ନିବୃତ୍ତ
ନିଷ୍କୃତି ଲଭି ନ ପାରେ ଯେହୁ ତତ୍ତ୍ୱବିତ ।
ଯେଉଁ ଜନ ସଂସାରକୁ ଅସାର ଭାବିଣ
ଅକ୍ଲେଶରେ ମନୁ ତାକୁ ପୋଛିଦିଏ ପୁଣ,
ସେହି ଏକା ଏ ସଂସାରରୁ ପାଏ ପରିତ୍ରାଣ
ଅନ୍ୟପକ୍ଷେ ଅସମ୍ଭବ ଏହା ତପୋଧନ ।
ପୁରୁଷାକାର ବ୍ୟତୀତ ଏହି ଯେ ଭାବନା
କେହି ତେଜି ନ ପାରଇ ଆହେ ମହାମନା ।
ପଉରୁଷ ବଳେ ଯେବେ ତାକୁ ତେଜିପାର
ଏ ଦୁଃଖୀ ଚିତ୍ତର ତେବେ ବଢ଼ିଯିବ ବଳ ।
ଅଦ୍ୱୟ ନିର୍ବିକଳ୍ପ ରୂପ ସେ ଧରିବ
"ଚିତ୍ ହିଁ ଏକଇ ବସ୍ତୁ" ପ୍ରକାଶିତ ହେବ ।
ନିତ୍ୟୋଦିତ ନିରଞ୍ଜନ ଅଟେ ଏହି ଚିତ
କୌଣସି ବିକାରେ ସେହୁ ନ ଥାଏ ଜଡ଼ିତ ।
ଘଟ ପଟ ସୁରାସୁର ବାନର ଓ ଖର
ବୃକ୍ଷ, ଲତା, ଗୁଳ୍ମ ତୃଣ ଉରଗ, ସାଗର,

ସକଳ ଦରବ ପୁଣି ସରବ ଜୀବରେ
ସେହି ଚିତ୍ ବିରାଜିତ ଅଛି ସବୁଠାରେ ।
ସାକ୍ଷୀ ରୂପେ ସବୁଠାରେ ସେହୁ ବିଦ୍ୟମାନ
ଦେଖାନାହିଁ ତାଙ୍କ ମଧ୍ୟେ କୌଣସି ସ୍ପନ୍ଦନ ।
ସ୍ୱରୂପତଃ ଜଗତ୍ ପ୍ରକାଶକ ଯେଣୁ ସେହି
ଦେହ ଭାବନାରେ ଯେବେ ମଳିନ ହୁଅଇ,
ଜଡ଼ାତୀତ ହୋଇଲେ ହେଁ ଜଡ଼ ସେ ହୁଅଇ
ସର୍ବଗ ହେଲେ ହେଁ ପରିଚ୍ଛିନ୍ନ ହୋଇଯାଇ ।
ନିର୍ବିକଳ୍ପ ସ୍ୱରୂପରେ ଥାଇକରି ସେହି
ଲିଙ୍ଗ ଶରୀରରେ ପ୍ରତିବିମ୍ବିତ ହୁଅଇ ।
ନିଜକୁ ସେ ହସ୍ତପଦ ଆଦି ଆକାରରେ
ସୁବିସ୍ତୃତ କରିଦିଏ ଦିଗ ଦିଗାନ୍ତରେ ।
ଜାଗ୍ରତକାଳେ ଏ ଚିତ୍ ପୁରୁଷ ବାହାରେ
ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧାକାର ଧରେ ।
ପୁରୁଷ ଅନ୍ତରେ ସେହୁ ମନ ଆକାରରେ
ଜ୍ଞାନ, ଅଜ୍ଞାନ ଆକୃତିମାନଙ୍କୁ ସେ ଧରେ ।
ଦୁର୍ଜ୍ଜନ ସଂସର୍ଗେ ପଡ଼ି ସଜ୍ଜନ ଯେସନ
କ୍ରମେ ଦୁର୍ଜ୍ଜନ ଗୁଣକୁ କରେ ଆହରଣ,
ଶରୀର ସଂସର୍ଗେ ଆସି ଏ ନିର୍ମଳ ଚିତ
କ୍ରମେ କ୍ରମେ ସେହିପରି ହୁଏ କଳୁଷିତ ।
ପଙ୍କବୋଳା ସୁବର୍ଣ୍ଣକୁ କେହି ନ ଚିହ୍ନନ୍ତି
ମାଟି ଟେଳାପରି ତାକୁ ଉପେକ୍ଷୀଣ ଥାନ୍ତି ।
ମଳ ପରିଷ୍କୃତ ହେଲେ ସୁବର୍ଣ୍ଣ ବୋଲାଏ
ଚିତକୁ ତେସନ ମଣ ବ୍ରହ୍ମାଙ୍କ ତନୟେ ।
ତତ୍ତ୍ୱଜ୍ଞାନ ଲାଭ କରିପାରିଲେ ସେ ଚିତ
କଇବଲ୍ୟ ପଦ ତାକୁ ହୁଅଇ ପ୍ରାପତ ।
ଅଜ୍ଞାନକୁ ଅନୁଭବ କରି ଶୁଦ୍ଧ ଚିତ
ସଂସାର ଦଶାକୁ ହୋଇଥାଏ ସେ ପ୍ରାପତ ।
ସ୍ୱରୂପକୁ ଅନୁଭବ କରେ ଯେବେ ଚିତ
ସଂସାର ଭାବ ତାର ହୁଏ ଅସ୍ତମିତ ।
ଅବିନାଶୀ ଚିତ୍ ହେଲେ ଅହଂଭାବଯୁକ୍ତ
ଆପଣା ବିନାଶ ଭୟେ ହୋଇପଡ଼େ ଭୀତ ।
ବାୟୁଯୋଗେ ଫଳ ଯଥା ଗଛୁ ପଡ଼େ ଝଡ଼ି
ସୁନିର୍ମଳ ଚିତୁ ଜୀବଭାବ ଯାଏ ଉଡ଼ି ।
ରୂପ, ରସ ଆଦି କରି ଯେତେ ବାହ୍ୟଭାବ
ସେସବୁ ବିଶୁଦ୍ଧ ଚିତ୍ ବୋଲିଣ ଜାଣିବ ।

ଥରେ ମାତ୍ର ତାକୁ ଯେବେ ହେବ ଅବଗତ
ଅଜ୍ଞାନ ଜନିତ ଭେଦ ହେବ ଅସ୍ତମିତ ।
ସକଳ ଚିତ୍ତବୃତ୍ତିର ସାକ୍ଷୀ ଯେ ସଂବିତ
ତାହାହିଁ ଆତ୍ମଚୈତନ୍ୟ ହୁଅ ଅବଗତ ।
ସ୍ଫଟିକରେ ପ୍ରତିବିମ୍ବ ଫଳିତ ଯେସନ
ଜଗତ ଭାବକୁ ଧରେ ଏ ଚିତ ତେସନ ।
ଯଦିଓ ସେ କରେ ଜଗତ୍‌ଭାବକୁ ଧାରଣ
ଉଦିତ ବା ଅସ୍ତମିତ ନୁହେଁ କଦାଚନ ।
ପୁଣି ନୁହେଁ ସେ ସ୍ପନ୍ଦିତ ଅଥବା ବର୍ଦ୍ଧିତ
କେବେହେଲେ ଚିତ୍ ନୁହେଁ ଏଥିରେ ଜଡ଼ିତ ।
ସଙ୍କଳ୍ପ ବଶରେ ଧରିଲେ ହେଁ ଜୀବଭାବ
ନିଜେ ନିଜ ମଧ୍ୟେ ରହେ ତେଜି ଇଚ୍ଛାଭାବ ।
ଅହଙ୍କାର-ଜୀବରଥ, ଚିତ୍ ରଥ ଜୀବ
ଅହଙ୍କାର ରଥ ବୁଦ୍ଧି ଏକଥା ଜାଣିବ ।
ବୁଦ୍ଧି ରଥ ମନ, ପୁଣି ମନରଥ ପ୍ରାଣ
ପ୍ରାଣର ରଥ ଅଟନ୍ତି ଏ ଇନ୍ଦ୍ରିୟ ଗଣ ।
ଇନ୍ଦ୍ରିୟମାନଙ୍କ ରଥ ଅଟେ ଏ ଶରୀର
ଶରୀର ରଥ କର୍ମଇନ୍ଦ୍ରିୟ ସଂସାର ।
ଚିତ୍ ରଥାରୋହୀକି ଏ କରିଣ ବହନ
ସଦା ସରବଦା କରୁ ଅଛନ୍ତି ଭ୍ରମଣ ।
ଜରାମୃତ୍ୟୁ ମୟ ଏହି ଶରୀର ପିଞ୍ଜରେ
ଜୀବ ରୂପ ପକ୍ଷୀ ଯହିଁ ଦୋଳି ଖେଳ କରେ ।
ଇଶ୍ୱରଙ୍କ ମୟାମୟ ଐଶ୍ୱର୍ଯ୍ୟ ହିଁ ଜାଣ
ଜୀବପକ୍ଷୀ ଖେଳର ଏ ପରମ କାରଣ ।
ଯେହେତୁ ପ୍ରପଞ୍ଚ ସବ ପ୍ରତିଭାସ ବଶେ
ମିଥ୍ୟା ସ୍ୱପ୍ନ ପରି ଆତ୍ମା ତତ୍ତ୍ୱ ମଧ୍ୟେ ରସେ ।
ନିତାନ୍ତ ମିଥ୍ୟା ଏ ମରୀଚିକା ଜାଲ ପରି
ସେହି ପ୍ରପଞ୍ଚ ସ୍ୱରୂପ ଜାଣ ତପଚାରୀ ।
ପ୍ରାଣ-ରଥ ବୋଲି ଯାକୁ କଲଇଁ ବର୍ଣ୍ଣନ
କଳ୍ପନା ରଥ ତାହାକୁ ବୋଲି ଜ୍ଞାନୀଗଣ ।
ପ୍ରାଣବାୟୁ ଯେତେବେଳେ ହୁଏ ପ୍ରବାହିତ
ମାନସ କଳ୍ପନାମାନ ହୁଅନ୍ତି ଉଦିତ ।
ଆକାଶରେ ମନ ଯେବେ ହୁଅଇ ବିଲୀନ
ସ୍ପନ୍ଦିତ ହୁଅଇ ସେତେବେଳେ ଏହି ପ୍ରାଣ ।
ତେଜର ଅଭାବେ ଯଥା ରୂପର ଅଭାବ
ପ୍ରାଣ ସ୍ପନ୍ଦନ ଅଭାବେ ମନର ଅଭାବ ।

ପ୍ରାଣ ଦ୍ୱାରା ସଂଚାଳିତ ହୋଇ କରି ମନ
ଦେଶ ଦେଶାନ୍ତରେ ଯାଇଁ କରଇ ଭ୍ରମଣ ।
ପ୍ରାଣ ନିରୋଧନେ ମନ ହୋଇଥାଏ କ୍ଷୀଣ
ପ୍ରାଣ ମନଙ୍କର ଏହି ସମ୍ବନ୍ଧଟି ଜାଣ ।
ସେହିଠାରେ ତାପ ଥାଇ ଅଗ୍ନି ଯେଉଁଠାରେ
ଯହିଁ ପ୍ରାଣ ତହିଁ ମନ କାର୍ଯ୍ୟ ସବୁ କରେ ।
ଗଗନ ସଦୃଶ ଚିତ୍ ସବୁଠାରେ ଥାଏ
ପ୍ରାଣ ସ୍ପନ୍ଦନରେ ତାହା ଗତିଶୀଳ ହୁଏ ।
ତେତେବେଳେ ତାହା ହୋଇଥାଏ ଅନୁଭୂତ
ଜଡ଼ ମଧ୍ୟେ ସତ୍ତାମାତ୍ର ରୂପେ ଅବସ୍ଥିତ ।
ପ୍ରାଣ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଏହି ଚିତ୍ତ
ଜଡ଼ ଦେହ ମଧ୍ୟେ ହେଉଥାଏ ଅନୁଭୂତ ।
ଦେହେ ପ୍ରାଣ ଥିବାଯାଏ ଚିତ ଅନୁଭୂତ
ପ୍ରାଣ ଅଭାବରେ ତାହା ନୁହଇ ତେମନ୍ତ ।
ଦର୍ପଣରେ ପ୍ରତିବିମ୍ବ ଫଳିତ ଯେସନ
ପ୍ରସ୍ତରରେ ତାହା ନୋହିଥାଏ କଦାଚନ ।
ପରମାଚିତେ ସେପରି ସ୍ୱୀୟ ପୂର୍ଯ୍ୟଷ୍ଟକ
ପ୍ରତିବିମ୍ବିତ ହୁଅଇ ହେ ମୁନି ତିଳକ ।
ନିଜ କଳ୍ପନା ବଳରେ ଆଚାର୍ଯ୍ୟ ପ୍ରବର
ସେ ପୂର୍ଯ୍ୟଷ୍ଟକଙ୍କୁ ବର୍ଣ୍ଣିଛନ୍ତି ନାନାକାର ।
ସର୍ବ କାର୍ଯ୍ୟର କାରଣ ଏମନ୍ତ ଯେ ମନ
ପୂର୍ଯ୍ୟଷ୍ଟକ ଭାବେ ତୁମେ କର ତାକୁ ଜ୍ଞାନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଈଶ୍ୱର ଉପାଖ୍ୟାନେ ମନ ପ୍ରାଣ ଏକତ୍ୱ**
**ପ୍ରତିପାଦନ ନାମ ସପ୍ତବିଂଶ ସର୍ଗଃ**



## ଅଷ୍ଟବିଂଶ ସର୍ଗଃ

### ଈଶ୍ୱର ଉପାଖ୍ୟାନେ ଦେହପାତ ବିଚାର

କହନ୍ତି ମହେଶ ଶୁଣ ଆହେ ମୁନିବର
ଏପରି ଏକ ଶକତି ଅଛଇ ଚିତ୍‌ର ।
ଯାହା ବଳେ ନିଜ ବ୍ରହ୍ମ ସ୍ୱରୂପତା ଭୁଲି
ମନ ଆକାରକୁ ଧରିଥାଏ ତପଚାରୀ ।
ଏ ଚିତ୍‌ରୁ ତାହା ହୋଇଥିଲେ ହେଁ ଉଦ୍ଭୁତ
ଜଡ଼ ସଦୃଶ ସେ ହୋଇପଡ଼େ ବ୍ରହ୍ମାସୁତ ।
ସେ କାଳେ ଏ ବ୍ରହ୍ମ ଶକ୍ତି କରମ ପ୍ରବଣ
ହୋଇ ଇନ୍ଦ୍ରିୟ ସଂଯୋଗ ପାଏ ପ୍ରକାଶନ ।
ଦୃଶ୍ୟ, ଦରଶନ ଦ୍ରଷ୍ଟା ଆଦି ଆକାରରେ
ପ୍ରକାଶ ପାଇଣ ଥାଏ ଆହେ ମୁନିବରେ ।
ମାୟା ପ୍ରଭାବେ ସେ ଚିତ୍ ହୋଇ କଲୁଷିତ
କେବଳ ଗନ୍ଧର୍ବପୁର କରଇ ନିର୍ମିତ ।
ଏ ଜଗତ ଅଟେ ତାର ସେ ଗନ୍ଧର୍ବ ପୁର
କିନ୍ତୁ ସେ କିଛି ନ କରେ ଜାଣ ତପୀବର ।
ଚିତ୍ତ ଓ ବୁଦ୍ଧି ପ୍ରଭୃତି ଯଦି ନ ରହିବ
କାଠ ପରି ଅକର୍ମଣ୍ୟ ଶରୀର ପଡ଼ିବ ।
ଚିତ୍ତବୁଦ୍ଧି ଥିଲେ ହେବ କର୍ମ ପରାୟଣ
ସକଳ ଉନ୍ନତି ପଥ ଖୋଲିବ ତକ୍ଷଣ ।
ଚୁମ୍ବକ ନିକଟେ ଲୌହ ଯଥା କ୍ରିୟାଶୀଳ
ବ୍ରହ୍ମର ସାନ୍ନିଧ ବଶେ ଜୀବ କର୍ମଶୀଳ ।
ଏଥିରୁ ଏମନ୍ତ ଶିକ୍ଷା ବୁଝିବାକୁ ହେବ
ଏଜୀବ-ସକଳ ସେହି ଚିତ୍ ପ୍ରତିବିମ୍ବ ।
କିନ୍ତୁ ଚିତ୍ ବ୍ରହ୍ମଙ୍କର ପ୍ରତିବିମ୍ବ ହୋଇ
ନିଜର ଅସ୍ତିତ୍ୱ ନିଜେ ପାଶୋରି ପକାଇ,
ଜଡ଼ଭାବାପନ୍ନ ହୋଇ ରହିଥାଏ ପଡ଼ି
ତଥାପି ସେ କାର୍ଯ୍ୟକରେ ପ୍ରାଣେ ପ୍ରାଣଲଢ଼ି ।
ଉତ୍ତମ ବ୍ରାହ୍ମଣ ଯଥା କୁକର୍ମ କରିଣ
ପରିଶେଷେ ହୋଇଥାଏ ଶୂଦ୍ରଭାବାପନ୍ନ ।
ଅବିକଳ ସେ ଅବସ୍ଥା ଘଟେ ଏ ଚିତର
ସ୍ୱଧର୍ମ ଭୁଲିବା ହେତୁ ଏହି ଦଶା ତାର ।
ସେହି ପରମ ଚିତ ଯେ ସ୍ୱରୂପ ଭୁଲିଣ
ଚିତ୍ତ ସ୍ୱରୂପକୁ ଧରି ଲଭେ ସେ ଜନମ ।
ଏହି ଶରୀର ରଥକୁ ଚଳାଇବା ପାଇଁ
ଦୁଇଗୋଟି ଅଶ୍ୱ ସର୍ଜିଛନ୍ତି ବିଶ୍ୱସାଇଁ ।
ମହାବଳିଷ୍ଠ ଅଟନ୍ତି ସେହି ଅଶ୍ୱମାନ
ସେମାନଙ୍କ ନାମ ଅଟେ 'ମନ ଓ ପରାଣ' ।
ଜଡ଼-ଜୀବ ଭାବ ଧରି ଏହି ଚିତ୍ ଜାଣ
ମନରୂପକ ରଥରେ କରି ଆରୋହଣ ।
ପ୍ରାଣରୂପ ଅଶ୍ୱ ତାକୁ କରଇ ଚାଳନ
କିନ୍ତୁ ଚିତ୍ ନିଜରୂପ ନ ତେଜଇ ଜାଣ ।
ନାନାଦି ପଦାର୍ଥ ରୂପ ଧରେ ପ୍ରତିକ୍ଷଣ
ନିଷ୍କ୍ରିୟ ହେଲେ ହେଁ ଚିତ୍ କ୍ରିୟାଶୀଳ ଜାଣ ।

ତରଙ୍ଗ ଯଥା ଜଳରୁ ନୁହଇ ପୃଥକ
ଜଗତଠାରୁ ଏ ଚିତ୍ ତଥା ଅପୃଥକ ।
ମନ ଓ ତଦୀୟ ବୃତ୍ତିମାନଙ୍କ ମଧ୍ୟରେ
ଆତ୍ମଚଇତନ୍ୟ ପ୍ରତିଫଳିତ ତହିଁରେ ।
ସେହି ଆତ୍ମ ଚଇତନ୍ୟ ଅବଲମ୍ବନରେ
ଜୀବ ଓ ଜଗତ ସ୍ଫୁରୁଥାଏ କାଳେ କାଳେ ।
ପ୍ରଦୀପ ଗୃହକୁ ଆଲୋକିତ କଲାପରି
ଚିନ୍ମୟ ଆତ୍ମା ଶରୀରେ ଚେତନା ସଞ୍ଚାରି ।
ଚେତନା ଲଭି ଏ ଜୀବ ରହଇ ଜୀବିତ
ଜଗତ ସୌନ୍ଦର୍ଯ୍ୟ ହେଉଥାଏ ବିବର୍ଦ୍ଧିତ ।
ଯଥା ମେଘ ସୃଷ୍ଟିକରି ସୂର୍ଯ୍ୟ ଲୁଚେ ତହିଁ
ସେହିପରି ଏହି ଚିତ୍ ଏମନ୍ତ କରଇ ।
ଯାବତ ନିଖିଳ ବସ୍ତୁ କରିଣ ନିର୍ମାଣ
'ମୁଁ ନୁହେଁ ଚିତ୍' ଏମନ୍ତ କରଇ ଚିନ୍ତନ ।
ମଦ୍ୟପ ଯେସନ ନିଜ ଅଙ୍ଗ କଟିଗଲେ
ପୀଡ଼ା ବୁଝି ନ ପାରଇ କେଭେଁ ନିଶାଭୋଳେ ।
ଚିତ୍ ମଧ୍ୟ ସେହି ରୂପ ମୋହବଶ ହୋଇ
ଆତ୍ମଜ୍ଞାନ ଅନୁଭବେ ଅକ୍ଷମ ହୁଅଇ ।
ନିଶା ଛାଡ଼ିଗଲେ ହୁଏ ମଦ୍ୟପ ଯେସନ
ପୂର୍ବାବସ୍ଥା ତେଜିକରି ହୁଏ ସଂଜ୍ଞାବାନ୍ ।
ମୋହ ଅପସରି ଯାନ୍ତେ ଚିତ୍ ସେହିପରି
ସ୍ୱ ରୂପକୁ ଅନୁଭବ ଅକ୍ଲେଶରେ କରି ।
ଦେହତ୍ୟାଗ କରେ ଯେବେ ଜୀବ ଚଇତନ୍ୟ
ନିଷ୍ପ୍ରାଣ ହୁଅନ୍ତି ଅଙ୍ଗ ପ୍ରତ୍ୟଙ୍ଗାଦିମାନ ।
ଏହି ଅବସ୍ଥାରେ ହୃଦ କମଳ ମଧ୍ୟରେ
ନିଷ୍ପନ୍ଦଭାବେ ସଂବିତ୍ ଅବସ୍ଥାନ କରେ ।
ଯେତେବେଳେ ପ୍ରାଣବାୟୁ ହୁଅଇ ପ୍ରଶାନ୍ତ
କାରଣ ଆତ୍ମାରେ ଜୀବ ଯାଇ ରହେ ସ୍ଥିତ ।
ତେତେବେଳେ ମନ ମଧ୍ୟ ସେ କାରଣାତ୍ମାରେ
ବିଲୟ ପ୍ରାପତ ହୁଏ ବିଧାତା କୁମରେ ।
ପୁଣି ଯେତେବେଳେ ଦେହ ଧରିବା ନିମିତ୍ତ
ଉନ୍ମୁଖ ହୁଏ, ଅଙ୍କୁର ଉଦ୍‌ଗମ ଯେମନ୍ତ ।
ସ୍ୱରୂପର ସେ ଅଜ୍ଞାନ ମୋହ ପ୍ରଭାବରେ
ଚିତ୍ ସେହି ଚେତ୍ୟଙ୍କର ଦରଶନ କରେ ।
ସେ ଦୃଶ୍ୟ ଦରଶନରୁ ବାସନା ସକଳ
ଜନମ ଲାଭ କରନ୍ତି ବ୍ରହ୍ମାଙ୍କ କୁମର ।

ଏହି ବାସନା ପ୍ରଭାବେ ହୋଇଣ ଚଳିତ
ମିଥ୍ୟାଭାବମାନ ତାର ପଡ଼େ ସ୍ମୃତି ପଥ ।
ତହିଁରୁ ହୃଦ କମଳ ହୋଇ ପ୍ରସ୍ଫୁଟିତ
କ୍ରମେ କ୍ରମେ ପୂର୍ଯ୍ୟଷ୍ଟକ ହୁଅଇ ନିର୍ମିତ ।
ହୃଦୟନ୍ତ୍ରକୁ ନିଷ୍ପନ୍ଦ ଯଦି କରିପାର
ପୂର୍ଯ୍ୟଷ୍ଟକ ଧ୍ୱଂସ ହୋଇଯାଏ ତପୀବର ।
ଯେ ଯାଏ ଶରୀରେ ପୂର୍ଯ୍ୟଷ୍ଟକ ବିଦ୍ୟମାନ
ସଜୀବ ରହେ ଏ ଦେହ ସେ ପର୍ଯ୍ୟନ୍ତ ଜାଣ ।
ଯେତେବେଳେ ପୂର୍ଯ୍ୟଷ୍ଟକ ହୋଇଯାଏ ନଷ୍ଟ
ସଙ୍ଗେ ସଙ୍ଗେ ଏ ଶରୀର ହୁଅଇ ବିନଷ୍ଟ ।
ବାତ, ପିତ, କଫ, ରାଗ, ଦ୍ୱେଷ ପ୍ରତାପରେ
ଅଥବା ଅସ୍ତ୍ରାଦି ଘାତ ଅଙ୍ଗଚ୍ଛେଦନରେ,
ହୃଦ କମଳ ଯେ କାଳେ ହୁଏ କ୍ରିୟାହୀନ
ପୂର୍ଯ୍ୟଷ୍ଟକ ଧୀରେ ଧୀରେ ନଭେ ଯାଏ ଲୀନ ।
ନିଜର ସଂକଳ୍ପ ବଶେ ଜନମ ମରଣ
ଦୁଃଖ, ଲଭିଥାଏ ଜୀବ ହେ ବ୍ରହ୍ମାନନ୍ଦନ ।
ସଂକଳ୍ପ ବଳେ ହିଁ ହୃଦ ପଦ୍ମ ରୂପ ଯନ୍ତ୍ର
ନିରନ୍ତର କ୍ରିୟାଶୀଳ ହୁଏ ବ୍ରହ୍ମାସୁତ ।
ବାସନା ଯାର ନିର୍ମଳ ସେ ପୁରୁଷମାନେ
ଦୀର୍ଘଜୀବୀ ଜୀବନମୁକ୍ତ ହୁଅନ୍ତି ଜୀବନେ ।
ପୂର୍ଯ୍ୟଷ୍ଟକ ଯେତେବେଳେ ନଭେ ମିଶିଯାଏ
ତେତେବେଳେ ମନ ଆକାଶରେ ଲୀନ ହୁଏ ।
ଦୀର୍ଘକାଳ ଯାଏ ଯାର ଯେ ବାସନା ଥାଏ
ଯେଉଁଠାରେ ଥାଏ ଅବା ଯେ ରୂପରେ ରହେ,
ସେହିଠାରେ ସେହିରୂପ ଧରି ଜନମଇଁ
ସ୍ୱର୍ଗ ବା ନରକ ଭୋଗ ବାସନା କରଇ ।
ଗୃହସ୍ଥ ଗୃହ ଛାଡ଼ିଲେ ଗୃହ ପଡ଼େ ଶୂନ୍ୟ
ପ୍ରାଣ ଛାଡ଼ିଗଲେ ଦେହ ଶବ ହୁଏ ଜାଣ ।
ବ୍ରହ୍ମସ୍ୱରୂପିଣୀ ଚିତ ସର୍ବ ପ୍ରଥମରେ
ଚେତ୍ୟ ବା ଦୃଶ୍ୟ ଭାବକୁ ଗ୍ରହଣ ସେ କରେ ।
ଦୃଶ୍ୟଭାବରୁ ଜନମେ ଚଇତନ ଭାବ
ଚେତନରୁ ଜନ୍ମଲାଭ କରେ ଜୀବଭାବ ।
ଜୀବଭାବୁ ଜନ୍ମଲାଭ କରେ ଚିତ୍ତଭାବ
ଚିତ୍ତଭାବୁ ପୂର୍ଯ୍ୟଷ୍ଟକ ମୂର୍ତ୍ତୀ ଆବିର୍ଭାବ ।
ଆତିବାହିକ ଶରୀରର ତାପରେ ଧରଇ
ସେହି ଶରୀରରେ ଚିତ୍ତ ସହ ବିଳସଇ ।

ଭାବନା ପ୍ରଭାବେ ସେହୁ ସ୍ୱପ୍ନ ଭ୍ରମପରି
ସ୍ଥୂଳ ଶରୀରକୁ ସେହୁ ଦରଶନ କରି ।
ସ୍ଥୂଳ ଶରୀର ଭାବନା ହେଲେ ଦୃଢ଼ୀଭୂତ
ଅନୁରାଗ, ତତ୍ତ୍ୱବୁଦ୍ଧି ତହିଁ କରି ଯୁକ୍ତ,
ଆତିବାହିକ ଭାବକୁ ତହୁଁ ଭୁଲିଯାଏ
ସ୍ଥୂଳ ଶରୀର ଆଡ଼କୁ ଆକର୍ଷିତ ହୁଏ ।
ଏହିପରି ବୃହକାଳ ଭାବି ଭାବି କରି
ଅସତ୍ୟ ସ୍ଥୂଳ ଶରୀର ଶେଷେ ଥାଏ ଧରି ।
ସେ ଶରୀରେ ସତ୍ୟବୁଦ୍ଧି କରିଣ ସ୍ଥାପନ
ଯାହାକରେ ଏହି ଚିତ୍ ତାହା ଏବେ ଶୁଣ ।
ଅସତକୁ ସତ ପୁଣି ସତକୁ ଅସତ
ଅଦ୍ଭୁତ ଭାବେ କରୁଣ ଥାଏ ଏହି ଚିତ ।
ପୂର୍ଯ୍ୟଷ୍ଟକ ଅଭାବରେ ମନ ଯେତେବେଳେ
ଆକାଶରେ ଲୀନ ହୋଇଯାଏ ତେତେବେଳେ,
ଏ ଶରୀର କାଠପରି ଅଚେତନ ହୋଇ
ତଳେ ଗଡୁଥାଏ ଜନ୍ଦା ପିମ୍ପୁଡ଼ିଙ୍କ ପାଇଁ ।
ଶବ ମନେକରି ତାକୁ ନ ଛୁଅନ୍ତି କେହି
ତାହାପରେ ରାମନାମ ସତ୍ୟ ଡାକ ହୋଇ ।
ଯଥାକାଳେ ଉତପନ୍ନ ହୋଇ ବୃକ୍ଷେ ପତ୍ର
କାଳକ୍ରମେ ଶୀର୍ଣ୍ଣ ହୋଇ ତଳେ ନିପତୀତ ।
ନର ଦେହ ସେହିପରି ହୋଇ ଉତପନ୍ନ
ଯଥାକାଳେ ପାଏ ଯାଇ ଶ୍ମଶାନରେ ସ୍ଥାନ ।
ଶରୀର ବୁଦ୍‌ବୁଦ୍ ଶ୍ରେଣୀ ଚିତ୍ତ ସମୁଦ୍ରରେ
କେତେ ଉଠି, ଲୀନଯାଏ କିଏ ଗଣିପାରେ ।
ତତ୍ତ୍ୱଜ୍ଞ ପୁରୁଷ ତେଣୁ ଏହି ବୁଦ୍‌ବୁଦ୍‌ରେ
କୌଣସି ପ୍ରକାର ଆସ୍ଥା ପୋଷଣ ନ କରେ ।
ଯେ ବ୍ରହ୍ମ ଚୈତନ୍ୟ କଥା କଲଇଁ ବର୍ଣ୍ଣନ
ହେଲେ ହେଁ ସେ ସର୍ବବ୍ୟାପୀ, ନିତ୍ୟ, ଚିରନ୍ତନ ।
ଚିତ୍ତ ଦର୍ପଣରେ ହୁଏ ସେ ପ୍ରତିବିମ୍ବିତ
ଚିତ୍ତ ତା ଆଧାର ଜାଣ ଆହେ ବ୍ରହ୍ମା ସୁତ ।
ପରିପୂର୍ଣ୍ଣ ସୁ-ନିର୍ମଳ ଏ ଚିଦାକାଶରେ
ଜନ୍ମ, ମରଣ ରୂପରେ ଆହେ ତପୀବରେ ।
ଏହି ଆତ୍ମାର କଷଣ, ତୋଷଣ ନିମିତ୍ତ
ଜୀବ, ଜଗତ, କଳ୍ପନା ହୋଇଛି ସ୍ଫୁରିତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଈଶ୍ୱର ଉପାଖ୍ୟାନେ ଦେହପାତ ବିଚାର ବର୍ଣ୍ଣନେ ନାମ ଅଷ୍ଟବିଂଶ ସର୍ଗଃ**



## ଊନତ୍ରିଂଶ ସର୍ଗଃ

## ଦ୍ୱୈବ ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ହେ ଚନ୍ଦ୍ରଶେଖର
ଆତ୍ମ ତତ୍ତ୍ୱେ ଦ୍ୱୈତ ଭାବ ଆସେ କି ପ୍ରକାର ?
ଅପରିଚ୍ଛିନ୍ନ ଅଟେ ଯେ ଦିକ୍ କାଳ ଘେନି
କୌଣସି ପ୍ରକାରେ ଭେଦ କିଛି ଯେ ନ ଜାଣି,
ଦ୍ୱୈତଭାବ ତା ମଧ୍ୟରେ କାହୁଁ ସମ୍ଭବିଲା
ସବିଶେଷ କରି ମୋତେ କହ ଆହେ ଭୋଳା ।
କହନ୍ତି ଚନ୍ଦ୍ରଶେଖର ଶୁଣ ହେ ବ୍ରହ୍ମନ
ବ୍ୟବାହାରିକ ଦୃଷ୍ଟିରୁ ସର୍ବ ଶକ୍ତିମାନ,
ଅଟନ୍ତି ସେ ବ୍ରହ୍ମ ଯେହୁ ନିତ୍ୟ ଚିରନ୍ତନ
ପରମାର୍ଥ ଦୃଷ୍ଟିରୁ ସେ ଏକ, ସତ୍ ଜାଣ ।
ଏ ଦୁଇ ପ୍ରକାର ଯେଣୁ ଅଛଇ କଥନ
ତହିଁ ଦ୍ୱୈତ, ଏକତ୍ୱର ଆଉ କାହିଁ ପ୍ରଶ୍ନ ।
ଦ୍ୱୈତ, ଏକତ୍ୱ ଉଭୟେ ପରସ୍ପରାପେକ୍ଷୀ
"ଏକ"ର ଅଭାବେ "ଦୁଇ" ସମ୍ଭବିପାରେ କି ?
ତେଣୁ ଦ୍ୱୈତ ଭାବର ଯେ ନିଷେଧ ନିମିତ୍ତ
ଏକତ୍ୱ କଳ୍ପିତ ହୁଏ ଜାଣ ବ୍ରହ୍ମା ସୁତ ।
ଦ୍ୱୈତ ଭାବ ଯେଣୁ କରି ନୁହଇ ପ୍ରସିଦ୍ଧ
ତେଣୁ କରି ଏ ସିଦ୍ଧାନ୍ତ ଅଟଇ ଅସିଦ୍ଧ ।
ସେହି ଦ୍ୱୈତ ଭାବନାର ନିବାରଣ ପାଇଁ
ଏକତ୍ୱ କଳପନାର ପ୍ରୟୋଜନ କାହିଁ ?
ଦ୍ୱୈତ ଭାବକୁ ଅସିଦ୍ଧ କରିବା ନିମିତ୍ତ
ଚିତ୍ ସ୍ୱରୂପ ବ୍ରହ୍ମରେ ଏକତ୍ୱ କଳ୍ପିତ ।
ତେଣୁ ଜାଣିବ ତହିଁରେ ଉଭୟ ଅସତ
ଏକତ୍ୱ ଅସିଦ୍ଧ ହେଲେ ଅପର ତେମନ୍ତ ।
ଯଦି ଶିଷ୍ୟମାନଙ୍କର ଉପଦେଶ ପାଇଁ
ଦୁଇ ପରକାର ସତ୍ତା କଳ୍ପିତ ହୁଅଇ ।
ଗୋଟିକୁ ପରମାର୍ଥିକ ବୋଲିଣ କହିବ
ଅପରର ନାମ ବ୍ୟାବହାରିକ ରଖିବ ।
ତାହା କଲେ କଉଣସି ଦୋଷ ଘଟେ ନାହିଁ
ବୀଜରୁ ଶାଖା ପ୍ରଶାଖା ଯଥା ଦେଖାଯାଇ ।
ଏକଇ ବୀଜରୁ ବୃକ୍ଷ ଶାଖା ଓ ପଲ୍ଲବ
ପତ୍ର, ପୁଷ୍ପ ଫଳ ଆଦି ଯା କିଛି ଉଦ୍ଭବ ।
ତହିଁରେ କଳ୍ପିତ ହୁଏ ନାନାତ୍ୱ ଯେସନ
ବୀଜର ଆତ୍ମପ୍ରକାଶ କିନ୍ତୁ ସେହି ମାନ ।

କାର୍ଯ୍ୟ ଏବଂ କାରଣର ଯେ ଏକ ରୂପତା
ଏଥିଁ ପ୍ରମାଣିତ ହୁଏ ଆହେ ବ୍ରହ୍ମ ବେତ୍ତା ।
ଜଗତ ହିଁ "କାର୍ଯ୍ୟ", ପୁଣି ବ୍ରହ୍ମ ଯେ "ନିମିତ୍ତ"
ଉପାଦାନ ଯେ କାରଣ ବୁଝ ବ୍ରହ୍ମା ସୁତ ।
ତୁମ୍ଭ ପ୍ରଶ୍ନର ମୀମାଂସା ଏପରି ଭାବରେ
କରାଯାଇପାରେ ଜାଣ ବିଧାତା କୁମରେ ।
ବ୍ୟାବହାରିକ ସତ୍ତାକୁ କଲେ ଅସ୍ୱୀକାର
ଦ୍ୱୈତ ଭାବଟି ବିକଳ୍ପ ହେବ ବ୍ରହ୍ମଙ୍କର ।
କିଛିହିଁ ବିରୋଧ ଭାବ ନାହିଁ ଯେ ଏଥିରେ
ଚିତ୍ ସ୍ୱରୂପ ଯେ ବ୍ରହ୍ମ ବିକଳ୍ପ ବଳରେ ।
ସ୍ଫୁରିତ ହୁଅନ୍ତି ନିଜେ ଦୃଶ୍ୟ ସ୍ୱରୂପରେ
ଏ ଜଗତ୍ ବିସ୍ତରର ସାର ସେ ବିଶ୍ୱରେ ।
ତେଣୁ ଜଗତ ତାଠାରୁ ନୁହଇ ପୃଥକ
ଜଗତ୍ ଚିତ୍ ଏ ଦୁହେଁ ଅଟନ୍ତି ଯେ ଏକ ।
ନଜାଣିବା କାରଣରୁ ପଦାର୍ଥ ସ୍ୱରୂପ
ଅଜ୍ଞାନବଶ ଯେ ଭେଦ ଆସଇ ସମୀପ ।
ତତ୍ତ୍ୱ ସାକ୍ଷାତ୍କାର ମାତ୍ରେ ସେହି ଭେଦ ଜାଣ
ଦୂରୀଭୂତ ହୋଇଯାଏ ଏ କଥା ପ୍ରମାଣ ।
ଯେତେଦିନ ଅଜ୍ଞାନତା ଦୂର ନ ହୁଅଇ
ସହସ୍ର ଯୁକ୍ତିକଲେ ହେଁ ଭ୍ରାନ୍ତି ନ ତୁଟଇ ।
ପ୍ରତ୍ୟକ୍ଷ ସିଦ୍ଧ ଅଟଇ ଏହି ଯେ ଜଗତ
ଏହି ଭ୍ରାନ୍ତି ଅପସରି ଯିବ ବା କେମନ୍ତ ?
ତରଙ୍ଗ ଜଳରୁ ଯଥା ନୁହଇଁ ଅଭିନ୍ନ
ବ୍ରହ୍ମର ସର୍ବଶକ୍ତିତ୍ୱ ବ୍ରହ୍ମ ନୁହେ ଭିନ୍ନ ।
'ତୁମତ୍ୱ' 'ମମତ୍ୱ' ପୁଣି ଜଗତ୍ୱ ଏକତ୍ୱ
ଦ୍ୱିତ ଆଦି କରିଛନ୍ତି ଯେତେଗୋଟି ତତ୍ତ୍ୱ ।
ଚିତ୍ ରୂପରୁ ସେମାନେ ନୁହନ୍ତି ଅଭିନ୍ନ
ଜାଣିରଖ ଏହା ଆହେ ବିଧାତା ନନ୍ଦନ ।
ଦେଶକାଳ ରୂପେ ଦେଖାଯାଏ ଯେଉଁ ଭେଦ
ତାହା ମଧ୍ୟ ଚିତ୍ ଏହା ହୋଇଅଛି ସିଦ୍ଧ ।
ସ୍ୱତନ୍ତ୍ର ଦ୍ୱୈତ ଭାବନା ଚିତ୍‌ରୁ ଯେ ଭିନ୍ନ
ଏପରି ଆଶଙ୍କା ତୁମ ଅଟେ ଭ୍ରାନ୍ତି ପୂର୍ଣ୍ଣ ।
ଦେଶ, କାଳ, ସତ୍ତା, କର୍ମ, ନିୟତି ପ୍ରଭୃତି
ଚିଦାତ୍ମକ ଅଟନ୍ତି ଯେ ଏହିସବୁ ଶକ୍ତି ।
ଚିତ୍‌ର ସତ୍ତାରେ ଜାଣ ଏମାନଙ୍କ ସତ୍ତା
ନାନା ରୂପ ନାମେ ଚିତ୍ ଧରେ ଏହି ସତ୍ତା ।

ଏକଇ ଜଳ ଯେସନ ବୁଦ୍‌ବୁଦ୍ ତରଙ୍ଗ-
ଫେନ ରୂପେ ପ୍ରକାଶଇ ରୂପ ନାନା ରଙ୍ଗ ।
ବ୍ରହ୍ମ, ଚିତ୍, ଚିତ୍ତ, ଚେତ୍ୟ, ଅହଂ ସେହିପରି
ନାନାଦି ଆକାର, ନାନା ନାମ ଧରିକରି,
ଏକଇ ଚିତ୍ ତତ୍ତ୍ୱରୁ ହୁଅନ୍ତି ଉତ୍ପନ୍ନ
ବୁଝୁଛ ଟିକି ଏ ତତ୍ତ୍ୱ ବ୍ରହ୍ମାଙ୍କ ନନ୍ଦନ ?
ଚିତ୍ ବିଳାସ ରୂପକ ସମୁଦ୍ର ମଧ୍ୟରେ
ଯେ ତରଙ୍ଗ ଭାବ ଉଦେ ହୁଏ ନିରନ୍ତରେ !
ତାହାହିଁ ଦୃଶ୍ୟ ନାମରେ (ଚେତ୍ୟ) ଅଟେ ପରିଚିତ
ପରମାତ୍ମା ସେହି ଯେହୁ ଅହଂ ନାମେ ଖ୍ୟାତ ।
ନାମରୂପର ଅତୀତ ଯେବେ ସେ ହୁଅନ୍ତି
ଆବାଙ୍ମାନସ ଗୋଚର ବ୍ରହ୍ମ ସେ ବୋଲାନ୍ତି ।
ଏହି ଯେ ଜଗତ ହେଉଅଛି ଦୃଶ୍ୟମାନ
ସେହି ଚିନ୍ମୟୀ ଲତାର ଫଳ ପୁଷ୍ପ ଜାଣ ।
ତେଣୁକରି ନୁହେଁ ଏହା ଚିତ୍‌ରୁ ପୃଥକ
ଜଗତ ମଧ୍ୟ ଚିନ୍ମୟ ବୁଝେ ସୁବିବେକ ।
ତତ୍ତ୍ୱଜ୍ଞାନ ପାଇଁ ଯେବେ ହେ ବ୍ରହ୍ମା ତନୟ
ଜୀବ ଓ ଜଗତ ଘେନି ପ୍ରଶ୍ନ କରୁଥାଅ ।
ତେବେ ତାହା କହୁଅଛି ଶୁଣ ମନଦେଇ
ପରିତୃପ୍ତ ହେବ ତୁମେ ତତ୍ତ୍ୱଜ୍ଞାନ ପାଇ ।
ଅବିଦ୍ୟା ନେତ୍ରକୁ ଉନ୍ମୀଳିତ କଲେ ଚିତ
ସେତେବେଳେ ହୁଏ ଜୀବନାମେ ପରିଚିତ ।
ଆକାଶେ ଦ୍ୱିତୀୟ ଚନ୍ଦ୍ର ଦେଖିବା ସଦୃଶ
ମିଥ୍ୟା ଜୀବ, ଜଗତ୍‌ଭାବ ହୁଏ ତାର ଦୃଶ୍ୟ ।
'ମୁଁ ବ୍ରହ୍ମଠାରୁ ପୃଥକ୍' ଏମନ୍ତ ଯେ ଭାବେ
ବିକଳ୍ପମୟ ପାର୍ଥକ୍ୟ ଲବ୍ଧ ହୁଏ ତେବେ ।
ଯଦି ସେହୁ ସ୍ୱରୂପରେ ସଂସ୍ଥିତରେ ଥାଇ
ଉପାଧି ଯୋଗୁଁ କଳ୍ପଙ୍କ ଚେତନ ସେ ହୋଇ ।
ଏହି ରୂପେ କରେ ସେହି ଜଗତ ଦର୍ଶନ
ଦ୍ୱୈତ ଭାବର ଏହା ଯେ ଅଟଇ ଲକ୍ଷଣ ।
ଆତିବାହିକ ସମ୍ପନ୍ନ ଅଟେ ଯେଉଁ ଜୀବ
ସ୍ଥୂଳ ଦେହର ଭାବନା ଯେଣୁ କରୁଥିବ,
ଅନ୍ନସହ ପ୍ରାଣୀ ଦେହେ ପ୍ରବେଶ କରିଣ
ଶୁକ୍ରାକାରେ ପରିଣତ ହୁଏ ସେହି ଜନ ।
ମାତୃଗର୍ଭେ ପ୍ରବିଷ୍ଟ ଓ ପ୍ରସୂତ ସେ ହୋଇ
"ସପ୍ରାଣ ଜୀବ" ବୋଲି ତା ଅନୁଭବ ହୋଇ ।

ବାସ୍ତବରେ ଅନୁଭବ ସ୍ୱରୂପ ଯେ ବ୍ରହ୍ମ
ଅହଂଠାରୁ ସ୍ଥୂଳଦେହ ପର୍ଯ୍ୟନ୍ତ ସେ ଜାଣ,
ଅନୁଭବ କରି ତଦାକାର ସେ ଲଭନ୍ତି
ଇନ୍ଦ୍ରିୟ ବଳେ ପଦାର୍ଥ ବୋଧ ସେ କରନ୍ତି ।
ଯେ ବାସନାମାନ ତାଙ୍କ ମନେ ରହିଥାନ୍ତି
ତଦନୁରୂପ ଆକାର ଧାରଣ କରନ୍ତି ।
ଆତିବାହିକ ଶରୀର ମଧ୍ୟରେ ଯେ ଚିତ
ପୂର୍ବ ସଞ୍ଚିତ ବାସନା ପ୍ରାବଲ୍ୟ ବଶତ,
ସୂକ୍ଷ୍ମଭାବ ତେଜିକରି ସ୍ଥୂଳତ୍ୱ ଆଡ଼କୁ
ଗତିଶୀଳ ହେଉଥାଏ ଦେହ ଧରିବାକୁ ।
କଳ୍ପନା ପ୍ରଭାବେ ଯଥା ଲୋକସମ୍ମୁଖରେ
ବେତାଳ ଆସି ପହଞ୍ଚେ ଅଦ୍ଭୁତ ଭାବରେ ।
ଅଦ୍ୱୈତ ଚିତ୍ ତେସନ ଦ୍ୱୈତ କଳ୍ପନାରେ
ଦ୍ୱୈତ ଭାବ ପରକାଶ କରିଥାଏ ଖରେ ।
ଆତ୍ମାର ଦ୍ୱଇତ୍ୱ ଭାବ ଅଦ୍ୱୈତ ଚିନ୍ତାରେ
ନିବୃତ୍ତ ହୋଇ ପଡ଼ଇ ବିଧାତା କୁମରେ ।
ବହୁତ୍ୱର ସଂକଳ୍ପରେ ଏକ ଯେ ବହୁତ
ଏକତ୍ୱ ସଂକଳ୍ପେ ବହୁ ହୁଅଇ ଏକତ୍ୱ ।
ବିକାର ବର୍ଜ୍ଜିତ ସର୍ବତ୍ରଗ ଆତ୍ମାଠାରେ
ଦ୍ୱୈତଭାବ ହେ ବଶିଷ୍ଠ ନାହିଁ ଏକବାରେ ।
ସଂକଳ୍ପ ପ୍ରଭାବେ ମୁନି ଯାହାହୁଏ ସୃଷ୍ଟ
ସଂକଳ୍ପ ଅଭାବେ ତାହା ହୁଅଇ ବିନଷ୍ଟ ।
ଶ୍ରମ ସାପେକ୍ଷ ଅଟଇ ସଂକଳ୍ପ କରଣ
ସଂକଳ୍ପ ପରିତ୍ୟାଗରେ ଲୋଡ଼ା ନାହିଁ ଶ୍ରମ ।
ଯେଉଁ ସଂକଳ୍ପ ବଳରୁ ଦୁଃଖ ପହଞ୍ଚଇ
ସେ ସଂକଳ୍ପ ତେଜିବାକୁ କାର୍ପଣ୍ୟ କିପାଇଁ ।
ଚୈତନ୍ୟରୁ ସଂକଳପ ଯେ ଦିନ ପର୍ଯ୍ୟନ୍ତ
ଦୂରୀଭୂତ ନ ହୋଇଛି ଆହେ ବ୍ରହ୍ମାସୁତ ।
ଯଦିଚ ନନ୍ଦନ ବନେ ତୁମେ ବାସ କର
ପ୍ରକୃତ ସୁଖ ଭୋଗିବା ଅସମ୍ଭବପର ।
ବିବେକ ରୂପ ବାୟୁକୁ ଚାଳିତ କରିଣ
ସଂକଳ୍ପ ମେଘକୁ ବେଗେ କର ନିବାରଣ ।
ତାହାହେଲେ ଶରତ୍‌କାଳ ଆକାଶ ସଦୃଶ
ନିର୍ମଳ ହୋଇପାରିବ ଆହେ ବ୍ରହ୍ମାଶିଷ୍ୟ ।
ଚିନ୍ମୟ ଆତ୍ମା ତୁମର ସଂକଳ୍ପ ବାୟୁରେ
ଘୂର୍ଣ୍ଣିତ ହେଉଛି ସଦା ଭୌତିକ ନଭରେ ।

ଆତ୍ମବଳ ସାହାଯ୍ୟରେ ସେ ଆତ୍ମାକୁ ମୁନି
ଧରିବାକୁ ତତପର ହୁଅ ବେଳ ଜାଣି ।
ବାସ୍ତବ ସ୍ୱରୂପ ତାର କର ଦରଶନ
ଏ ଗୁଢ଼ ତତ୍ତ୍ୱକୁ ବୁଝ ବିଧାତା ନନ୍ଦନ ।
ଆତ୍ମା ଅଟେ ସର୍ବଶକ୍ତିମାନ ଆହେ ମୁନି
ଯେତେବେଳେ ଯାହାଇଚ୍ଛେ ସଂକଳ୍ପକୁ ଘେନି ।
ସେତେବେଳେ ତାହା ସେହି କରେ ଦରଶନ
ଅଚିନ୍ତନୀୟ ଅଟଇ ସଂକଳ୍ପର ଗୁଣ ।
କେବଳ ସଂକଳ୍ପରୁ ଏ ଜଗତ ଜନମ
ସଂପୂର୍ଣ୍ଣ ମିଥ୍ୟା ତାହାର ଅବସ୍ଥିତି ଜାଣ ।
ସଂକଳ୍ପର ଯେତେବେଳେ ହୋଇବ ଅଭାବ
ଜଗତର ଅବସ୍ଥାନ କାହୁଁ ସମ୍ଭବିବ ?
ତୃଷ୍ଣା ସ୍ୱରୂପିଣୀ ଅଟେ ଏହି ଯେ ଲତିକା
ବର୍ଦ୍ଧିତ ହୋଇ ରଚଇ ଭବ ବିଭୀଷିକା ।
ତାହାର ମୂଳ କାରଣ ଅଟେ ସଂକଳପ
ସଂକଳ୍ପ ତେଜିଲେ ହେବ ସେହି ମୂଳଲୋପ ।
"ସର୍ବଶକ୍ତିମାନ ଆତ୍ମା ମୁହିଁ" ଅଟେ ଜାଣ
ଆଜିଠାରୁ ହୁଅ ଏହି ଭାବପରାୟଣ ।
ଏହି ଭାବନାରେ ଯେବେ ସିଦ୍ଧିଲାଭ ହେବ
ବ୍ରହ୍ମ ସାରୁପ୍ୟ ଅବଶ୍ୟ ତୁମ୍ଭେ ହିଁ ଲଭିବ ।
ସତ୍ୟ ସ୍ୱରୂପ ଅଟନ୍ତି ଯେଉଁ ପରମାତ୍ମା
ସେହି ଏକା ଜାଣ ତୁମ ପୂଜାର ଦେବତା ।
ତୁମପାଇଁ ଅନ୍ୟ ପୂଜା ନୁହେଁ ଆବଶ୍ୟକ
ମୋ କଥା ବୁଝି ରଖିବ ହେ ମୁନିନାୟକ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଈଶ୍ୱର ଉପାଖ୍ୟାନେ ଦୈବ ପ୍ରତିପାଦନ ବର୍ଣ୍ଣନେ ନାମ ଊନତ୍ରିଂଶ ସର୍ଗଃ**



## ତ୍ରିଂଶ ସର୍ଗଃ
## ପରମେଶ୍ୱର ଉପଦେଶ

କହନ୍ତି ମହେଷ ଶୁଣ ବିଧାତା କୁମର
ବିଶ୍ୱରୂପ ଦେବତାର ପୂଜା ତୁମେ କର ।
ଏ ବିଶ୍ୱ ମିଥ୍ୟା ହେଲେହେଁ ଆହେ ମୁନିବର
ଦେବମୟ ସେ ଅଟଇ ଯେଣୁ ଆତ୍ମା ଘର ।

ତତ୍ତ୍ୱତଃ ଏଥିରେ ନାହିଁ ଏକତ୍ୱ ବହୁତ୍ୱ
ବ୍ୟବହାର ଘେନି ରହେ ବହୁତ୍ୱ ଏକତ୍ୱ ।
ଚିତ୍‌ମୋହ ସମ୍ଭୁଦ୍‌ଭୂତ ଯେ ଅନ୍ୟଥା ଭାବ
ତାହାର ନାମ ଜଗତ ସଂସାର ଜାଣିବ ।
ତତ୍ତ୍ୱ ଦୃଷ୍ଟିରେ ସେ କିନ୍ତୁ ଅଟେ ଅସଂସାରୀ
କଳଙ୍କ ବର୍ଜିତ ହେତୁ ଅଦ୍ୱୟର ପରି ।
ମୁହିଁ ଅଟେ ଏ ଶରୀର ଏହି ଯେ ଭାବନା
ଚିତ୍ତକୁ ସେ କଳଙ୍କିତ କରେ ମହାମନା ।
ଆବର ଆବଦ୍ଧ ରହେ ଚିତ ତାହା ଘେନି
ଭାବନା ନିବୃତ୍ତ ହେଲେ ମୁକ୍ତି ହୁଏ ପୁଣି ।
ବ୍ୟବହାର ଘେନି ତେଣୁ 'ନାମ' ରୂପ ତାର
ତତ୍ତ୍ୱତଃ ବିଶୁଦ୍ଧ, ଅଙ୍ଗ, ବିହୀନ ଶରୀର ।
ହାତ ନାହିଁ, ଗୋଡ଼ ନାହିଁ, ନାହିଁ ଆଖି, କାନ
ବଚନ ଶକତି ନାହିଁ, ଶିର କେଶ ହୀନ ।
ମନୋମୟ ଅବସ୍ଥାରୁ ହେଲେ ସେ ମୁକତ
ଶାନ୍ତି ସ୍ୱରୂପିଣୀ ସେହି ଚିତ୍ ନାମେ ଖ୍ୟାତ ।
'ତମ', ଜ୍ୟୋତି ଉଭୟରୁ ହେଲେ ସେ ମୁକତ
ନିର୍ମଳ ଭାବେ ବିରାଜେ ଗଗନ ଯେମନ୍ତ ।
ଜଗତ ଜୀବଗଣଙ୍କ ସାର ଅଂଶ ସେହି
କାଳକ୍ରମେ ସେହି ରୂପେ ସେହୁ ବିରାଜଇ ।
ତେତେବେଳେ ସେ ପରମ ଆକାଶରେ ରହି
ଅବିଚଳିତ ଭାବରେ ତହିଁ ବିରାଜଇ ।
ଆକାଶ ଓ କାଳ ଭାବ ପରିତ୍ୟାଗ କରି
ଦୃଶ୍ୟ ଦର୍ଶନ ଭାବରୁ ସମୁଳେ ନିସ୍ତରି ।
ତେଣୁ ସେ ନୁହେଁ ଜଡ଼ ବା ଚିତ୍ ତେତେବେଳେ
ଅନିର୍ବଚନୀୟ ହୋଇପଡ଼େ ସେତେବେଳେ ।
ପ୍ରକାଶରେ ପ୍ରକାଶ ସେ ଆନନ୍ଦେ ଆନନ୍ଦ
ବିଶ୍ୱର ଚକ୍ଷୁ ହୋଇ ସେ ସାକ୍ଷୀ ସଦାନନ୍ଦ ।
ଅନ୍ୟ ଏକ ଅବସ୍ଥା ମୁଁ ବର୍ଣ୍ଣୁଛି ଚିତ୍‌ର
ହେ ସୁବ୍ରତା ଶୁଣ ତାହା ଚିତ୍ତ କରି ସ୍ଥିର ।
ଅପରିଚ୍ଛିନ୍ନ ଅଟେ ଯେ ବ୍ରହ୍ମାକାର ବୃତ୍ତି
ବ୍ରହ୍ମ ସ୍ୱରୂପ ତା ତହିଁ ଲାଭ କରି ଚିତି,
ନାମ ଅଥବା ରୂପର ଅତୀତ ହୋଇଣ
କେବଳ ସ୍ୱରୂପେ ସ୍ଥିତ ସେହି ଚିତ୍ ଜାଣ ।
ନିଃବିର୍କାର ସ୍ଥିର ବରଂ ପୁରୁଷାର୍ଥ ରୂପେ
ପ୍ରକାଶ ପାଉ ସେ ଥାଏ ଏମନ୍ତ ସ୍ୱରୂପେ ।
ତୁରୀୟାତୀତ ଅବସ୍ଥା ତାହାକୁ କହନ୍ତି
ତମାତୀତ ଚିତ୍ ରୂପ ପରି ବିରାଜନ୍ତି ।
ଏହି ଯେ ଅଟେ ବଶିଷ୍ଠ ସୁଖ ଶେଷ ସୀମା
ମଙ୍ଗଳୁ ମଙ୍ଗଳମୟ ଏହାର ମହିମା ।
ଏହି ଯେ ଚିତ୍ ଅବସ୍ଥା କଲଇଁ ବର୍ଣ୍ଣିତ
ଜାଗ୍ରତ ସୁଷୁପ୍ତି ଯେ ସ୍ୱପ୍ନାବସ୍ଥାତୀତ ।
ସେହି ଅଟେ ସନାତନ ଦେବତା ପରମ
ତାହାଙ୍କ ମଧ୍ୟରେ ତୁମେ କର ଅବସ୍ଥାନ ।
ଏ ବିଶ୍ୱର ଅଟେ ଉପାଦାନ ଏହି ଚିତ୍
ଏହି ବୋଧଜ୍ଞାନ ଯେବେ ହୃଦେ ହେବ ଜାତ ।
ଏ ବିଶ୍ୱର ଚିନ୍‌ମୟୀତ୍ୱ ହେବ ଅନୁଭୂତ
ଏ ବିଶ୍ୱେ ଯାହା ଦେଖୁଛି ଅଟେ ସେହି ଚିତ ।
କାହାରି ହିଁ ଉପାଦାନ ନୁହଁଇ ଏ ଚିତ
ପରମାର୍ଥ ଜ୍ଞାନ ଏହା କରେ ସମର୍ଥିତ ।
ଏ ବିଶ୍ୱର ଜନମ ବା ବିନାଶ ହିଁ ନାହିଁ
ଏହିପରି ବୋଧ ହେବ ଆହେ ତପୀ ସାଇଁ ।
ତେତେବେଳେ ହୋଇଯିବ ସର୍ବ ଏକାକାର
ଶାନ୍ତ ଓ ଶୂନ୍ୟ ଗଗନ ଯେଉଁ ପରକାର ।
ଚିତ୍ ସେତେବେଳେ ହୋଇଯାଏ ସେ ଅଦ୍ୱୟ
ଅକ୍ଷୋଭ ବିକାର ହୀନ ଚଇତନ୍ୟମୟ ।
ନିତ୍ୟ ବର୍ତ୍ତମାନ କାଳ ଆକାଶ ପ୍ରଭୃତି
ଅନିତ୍ୟ ତାହା ନିକଟେ ହୋଇପଡ଼େ ଯତି ।
ଚିତ ବିଦ୍ୟମାନ ହେତୁ ମିଥ୍ୟା ହୁଏ ସତ୍ୟ
ଚିତ୍ ଅଭାବେ ହୁଅଇ ସତ ଯେ ଅସତ ।
ତେଣୁ ଶାନ୍ତ ଶିବମୟ ବ୍ରହ୍ମ ସେ ଅଟଇ
ପ୍ରଣବ ଚତୁର୍ଥ ମାତ୍ରାତ୍ମକ ଜାଣ ସେହି ।
ବିଶୁଦ୍ଧ ବ୍ରହ୍ମ ହିଁ ସେହି ଆହେ ବ୍ରହ୍ମ ଯତି
ସେହି ଏକା ସବୁଙ୍କର ଅଟେ ଶ୍ରେଷ୍ଠ ଗତି ।
କହନ୍ତି ବାଲ୍ମୀକି ମୁନି ଶୁଣ ଭରଦ୍ୱାଜ
ଏହିପରି ଉପଦେଶ ଦେଲେ ଭୂତରାଜ ।
ସ୍କନ୍ଦ, ନନ୍ଦୀ ସହିତରେ ମହର୍ଷି ବିଶିଷ୍ଠ
ତୁରୀୟ ବ୍ରହ୍ମରେ ଯାଇ ହୁଅନ୍ତି ପ୍ରବିଷ୍ଟ ।
ଚିତ୍ତ ତାଙ୍କ ଚିତ୍ ରୂପେ ହେଲା ପରିଣତ
ଇନ୍ଦ୍ରିୟଗଣ ତାଙ୍କର ରହିଲେ ନିଶ୍ଚେଷ୍ଟ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଈଶ୍ୱର ଉପାଖ୍ୟାନେ ପରମେଶ୍ୱର**
**ଉପଦେଶ ବର୍ଣ୍ଣନେ ନାମ**



## ଏକତ୍ରିଂଶ ସର୍ଗଃ
## ଦେବ ନିର୍ଣ୍ଣୟ

କହନ୍ତି ବଶିଷ୍ଠ ମୁନି ଦେବ ଦେବ ହର
କିଛିକାଳ ପରେ କଲେ ଏମନ୍ତ ବିଚାର ।
ମୋ ଶାନ୍ତି ବିଧାନ ପାଇଁ ଉମା ପ୍ରାଣଧନ
ଉନ୍ମୀଳିତ କରିଲେକ ନିଜର ନୟନ ।
ସୂର୍ଯ୍ୟ ଉଦୟେ ଦିବସ ପ୍ରକାଶ ଯେପରି
ନୟନ ତ୍ରୟ ତାଙ୍କର ଦିଶନ୍ତି ସେପରି ।
ସୂର୍ଯ୍ୟ, ଅଗ୍ନି, ଚନ୍ଦ୍ର ପରି ତ୍ରିନେତ୍ର ତାଙ୍କର
ପ୍ରବୋଧ ସମାଧି କରୁଥାନ୍ତି କି ପ୍ରଚୁର ।
ମୁନିଙ୍କୁ କହନ୍ତି ଦେବ ଉମା ଦେବୀକାନ୍ତ
ସ୍ୱବିଚାର ବଳେ ତୁମେ ଆହେ ବ୍ରହ୍ମାସୁତ ।
ପ୍ରତ୍ୟେକ ସ୍ୱରୂପ ସହ ହୁଅ ପରିଚିତ
ତେବେ ବୁଝିପାରିବ ହେ କିସ ଏ ଜଗତ ।
ପବନ ଦେବତା ସଦା ଧୂଳି ଉଡ଼ାଇଣ
ଆକାଶକୁ କରୁଥାଇ ମଳିନ ଯେସନ ।
ଅନର୍ଥ ପରମ୍ପରାର ବଶୀଭୂତ ହୋଇ
ଜଡ଼ିତ ନୁହ ତହିଁରେ ଆହେ ତପୀସାଇଁ ।
ଭ୍ରାନ୍ତିମୟ ସଂସାରରେ ସତ୍‌ଲୋକ ପାଇଁ
ଅନୁରାଗ ସହ ଗ୍ରାହ୍ୟ ବସ୍ତୁ କିଛି ନାହିଁ ।
ସକଳ ବିକଳ୍ପମାନ ଉପେକ୍ଷା କରିଣ
ଧୀରତ୍ୱ ଲାଭ କରିଛ ତୁମେ ଏହିକ୍ଷଣ ।
ସେହେତୁ ତୁମେ ଆତ୍ମାକୁ ଦରଶନ କର
ଏହା ବୋଲି ଉପଦେଶ ଦିଅନ୍ତି ଶଙ୍କର ।
ଦେହାତ୍ମା ବୁଦ୍ଧିକି ତେଜ୍ୟା କରିବାର ପନ୍ଥା
କହିବାକୁ ଆରମ୍ଭିଲେ ଗଣନାଥ ପିତା ।
ପ୍ରାଣବାୟୁ ସହାୟରେ ଏହି ଯେ ଶରୀର
ଯନ୍ତ୍ରପରି ଚଳୁଅଛି ବ୍ରହ୍ମାଙ୍କ କୁମର ।
ପ୍ରାଣବିନା ଜାଣ ଏହି ଶରୀର ମଧ୍ୟରେ
କୌଣସି କ୍ରିୟାଟି ମୁନି ଚଳିତ ନପାରେ ।
ଶରୀର ଚଳନ ଶକ୍ତି ପ୍ରାଣର ଉପରେ
ଜ୍ଞାନଶକ୍ତି ଫୁଟିଉଠେ ଚିତ୍ତ ପ୍ରଭାବରେ ।
ସେହି ଜ୍ଞାନଶକ୍ତି ଅଟେ ଯଥା ମୂର୍ତ୍ତିହୀନ
ପୁଣି ସୁନିର୍ମଳ ଅଟେ ଗଗନ ଯେସନ ।
ସକଳ ବସ୍ତୁ ଅସ୍ତିତ୍ୱ ସେହି ଜ୍ଞାନଶକ୍ତି
ଜ୍ଞାନ ଘେନି ବଢ଼ିଚାଲେ ଜଗତ ଉନ୍ନତି ।
ପ୍ରାଣ ଅଟଇ ସ୍ପନ୍ଦନ ଶକ୍ତିର କାରଣ
ପ୍ରାଣ ଆଶ୍ରୟ ଶରୀର ଏହି ତତ୍ତ୍ୱ ଜାଣ ।
ଶରୀର ବିନଷ୍ଟ ହେଲେ ଏ ପ୍ରାଣ ଶକତି
ବାୟୁ ରୂପେ ବିଦ୍ୟମାନ କରେ ଆହେ ଯତି ।
ଗଗନଠାରୁ ନିର୍ମଳ ଅଟଇ ଚିଦାତ୍ମା
କେଉଁଠେହେଁ ବିନଷ୍ଟ ନୁହେଁ ସେ ଆତ୍ମାର ସତ୍ତା ।
ତେଣୁ ଜନ୍ମ, ମୃତ୍ୟୁ ଭ୍ରମ ଏକବାରେ ମିଥ୍ୟା
ଭ୍ରମ ତୁଟିଗଲେ ଜଣାଯାଏ ସବୁକଥା ।
ସୁନିର୍ମଳ ଦର୍ପଣରେ ପ୍ରତିବିମ୍ବ ଯଥା
ପ୍ରାଣ, ମନୋମୟ ଦେହେ ଚିଦ୍‌ଆତ୍ମା ତଥା ।
ମଳିନ ଦର୍ପଣେ ଯଥା ନିକଟ ପଦାର୍ଥ
ଶତଚେଷ୍ଟା କଲେ ନୁହେଁ ସେ ପ୍ରତିଫଳିତ ।
ସେହିପରି ମନପ୍ରାଣ ବିହୀନ ଶରୀରେ
ଚିଦାତ୍ମା ପ୍ରତିବିମ୍ବିତ ନୁହଇଁ ତହିଁରେ ।
ହୋଇଲେ ହେଁ ସର୍ବତ୍ରଗ ଏହି ଚିତ୍ ଆତ୍ମା
ଚିତ୍ତରେ ପ୍ରତିଫଳିତ ହେଲେ ବ୍ରହ୍ମବେତ୍ତା ।
ଶରୀରକୁ ଚଳାଚଳ କରେ ଏବେ ସେହି
ଚିଦାତ୍ମାର ବଳ ମୁନି କିଛି କମ୍ ନୋହି ।
ବ୍ରହ୍ମାକାରେ ଆକାରିତ ସେ ଚିତ୍ତବୃତ୍ତିରେ
ଚିତ୍ ପ୍ରକାଶଇ ତତ୍ତ୍ୱଜ୍ଞାନ ସ୍ୱରୂପରେ ।
କଇବଲମୟ କେବଳାତ୍ମ ସ୍ୱରୂପରେ
ବିରାଜିତ ରହେ ଚିତ୍ ବିଧାତା କୁମରେ ।
ଏ ଚିତର ବ୍ୟକ୍ତରୂପ ସ୍ୱରୂପରୁ ଜାଣ
ସ୍ୱକୀୟ ଅସ୍ତିତ୍ୱ ଲଭିଥାନ୍ତି ସର୍ବଜନ ।
ସର୍ବ ଭୂତଙ୍କ ଅସ୍ତିତ୍ୱ ଏହି ଯେ ଚିତ୍‌ର
ବ୍ୟକ୍ତରୂପ ହିଁ ଦେବତା ବ୍ରହ୍ମାଙ୍କ କୁମର ।
ଏହି ଚିତ୍ ପରକାଶେ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର
ଆବର ଶିବ, ଅନଳ, ବାୟୁ, ସୂର୍ଯ୍ୟ ଚନ୍ଦ୍ର ।
ଏହି ଦେବତା ହିଁ ସର୍ବ ଚୈତନ୍ୟ ଆଧାର
ସର୍ବତ୍ରଗ, ଚେତନାତ୍ମା ବିଧାତା କୁମର ।
ଏ ଆତ୍ମା ଅଟଇ ଦେବ ଗଣଙ୍କ ଈଶ୍ୱର
ପ୍ରତିପାଳକ ସେ ଜାଣ ସର୍ବ ଦେବଙ୍କର ।
ଥରେ ବି ଦ୍ୟୋତିତ ହେଲେ ଏହି ମହାଚିତ
ଆଉ ଜୀବ ନୋହିପାରେ ମୋହ ବଶୀଭୂତ ।

ଯାହାଠାରେ ଏହି ମହାଚିତ୍ ଆବର୍ଭୂତ
ବ୍ରହ୍ମା, ବିଷ୍ଣୁ, ଶିବ ହୋଇପାରେ ସେ ମହତ ।
ଜଳକଣା ଉଠୁଥାଏ ସାଗରୁ ଯେମନ୍ତ
ତପ୍ତ ଲହ୍ଵରୁ ସ୍ଫୁଲିଙ୍ଗ ଯେସନ ବିକ୍ଷିପ୍ତ ।
ବ୍ରହ୍ମା, ବିଷ୍ଣୁ, ଶିବ ଆଦି ଯେତକ ମହତ୍
ଏ ମହା ଚିତ୍‌ରୁ ସର୍ବେ ତେସନ ନିସୃତ ।
ସେହି ପରମ ପଦରୁ ନିର୍ଗତ ହୋଇଣ
ବ୍ରହ୍ମାଦି ଜଗତ୍ ଜାଲ କଲେ ବିସ୍ତାରଣ ।
ଶାଖା, ପ୍ରଶାଖା ବିସ୍ତାରି ଜଗତ ବୃକ୍ଷର
ବିପୁଳ ଆକୃତି ଧରେ ଅବିଦ୍ୟା କେବଳ ।
ବେଦ, କ୍ରିୟାକାଣ୍ଡ, ଜୀବବର୍ଗ ଆଦିକରି
ଅବିଦ୍ୟା ଲତା ରହିଛି ସମସ୍ତଙ୍କୁ ଘେରି ।
ସମ୍ଭବପର ନୁହଁଇ ଅବିଦ୍ୟା ଇୟତ୍ତା
ଚିନ୍ମୟାତ୍ମା ବ୍ରହ୍ମା, ବିଷ୍ଣୁ, ଶିବଙ୍କର ପିତା ।
ଶିବ ହିଁ ଅଟନ୍ତି ସର୍ବ କାରଣ ସ୍ଵରୂପ
ବୁଝିଲେ ଅଟନ୍ତି ସବୁଙ୍କର ମାଆ, ବାପ ।
ଚିନ୍ମୟାତ୍ମା ଅଟେ ସର୍ବ ସତ୍ତା ଓ ଚେତନା
ଇନ୍ଦ୍ରିୟ, ପଦାର୍ଥ ମଧ୍ୟେ ରାଜେ ସେହିସିନା ।
ସର୍ବତ୍ର ପ୍ରକାଶ ରୂପେ ହୁଏ ସେ ଉଦିତ
ଅର୍ଚ୍ଚନା କରନ୍ତି ତାର ସର୍ବଜ୍ଞ ପଣ୍ଡିତ ।
ଚେତନାରୂପେ ସେ ସର୍ବ ଜୀବେ ବିରାଜିତ
କିଛି ଆବଶ୍ୟକ ନାହିଁ ତା ପୂଜା ନିମିତ୍ତ ।
(ନିଜ) ଚୈତନ୍ୟରୂପୀ ଚିଦାତ୍ମା ସର୍ବତ୍ର ସୁଲଭ
ତାଙ୍କ କୃପା ବାରି କାହିଁ ନୁହଁଇ ଦୁର୍ଲ୍ଲଭ ।
ସୁରଗଣର ଈଶ୍ଵର ଏଇ ଚିଦାତ୍ମାଙ୍କୁ
ସବୁରି ଆଦି ନମସ୍ୟ ବୁଝିବ ତାହାଙ୍କୁ ।
ସବୁରି ପୂଜ୍ୟ ସବୁରି ସ୍ତୋତବ୍ୟ ଅଟନ୍ତି
ସର୍ବ ପ୍ରାଣୀଙ୍କର ଶେଷ ସୀମା ସେ ବୋଲାନ୍ତି ।
ଜରା, ଶୋକ, ଭୟ ବିଧ୍ୱଂଶିନୀ ଯେଉଁ ଆତ୍ମା
ଯେବେ ଜୀବ ଜାଣିପାରେ ତାହାଙ୍କର ସତ୍ତା ।
ପୁନର୍ଜନମ ତାହାର ନ ଘଟଇ ଜାଣ
ବୁଝି ପାରୁଥିବ ଆହେ ବିଧାତା ନନ୍ଦନ ।
ସବୁରି ଚେତନା ରୂପେ ବିରାଜ ଲଭିଣ
କରୁଅଛି ଯେ ମହାତ୍ମା ଅଭୟ ପ୍ରଦାନ ।
ସେହି ଆଦି ଦେବଙ୍କର ପୂଜା ଉପାସନା
ଅକ୍ଲେଶରେ ସର୍ବେ କରି ପାରନ୍ତିଟି ସିନା ।
ତୁମେ ମଧ୍ୟ ସେ ଅଭୟ, ଅଜ ମୁନିବର
ମୋହଗ୍ରସ୍ତ ହୁଏ କିମ୍ପା ମାନସ ତୁମର ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଈଶ୍ୱର ଉପାଖ୍ୟାନେ ଦେବ ନିର୍ଣ୍ଣୟ ନାମ ବର୍ଣ୍ଣନେ ନାମ ଏକତ୍ରିଂଶ ସର୍ଗଃ ।**



## ଦ୍ଵାତ୍ରିଂଶ ସର୍ଗଃ
## ମହେଶ୍ଵର ବର୍ଣ୍ଣନ

କହନ୍ତି ମହେଶ ଶୁଣ ବ୍ରହ୍ମାଙ୍କ କୁମର
ଏବେ ପୁନର୍ଜନ୍ମ କଥା କରିବା ବିଚାର ।
ଏହି ଚିଦାତ୍ମାକୁ ଜାଣିପାରେ ଯେବେ ନର
ଆଉ କେବେ ପୁନର୍ଜନ୍ମ ନୁହଁଇ ତାହାର ।
ନିଜ ଅନୁଭୂତି ବଳେ ବ୍ରହ୍ମଜ୍ଞାନୀ ନର
ଚିଦାତ୍ମାକୁ ମଣିଥାନ୍ତି ଏମନ୍ତ ପ୍ରକାର ।
ସଂସାର ବ୍ୟାଧିର ଉପଶମକାରୀ ସେହି
ସବୁରି ପରମେଶ୍ଵର ତାହାକୁ ହିଁ କହି ।
ନିର୍ମଳ ଚିତ୍ତର ଜାଣ ସାର ଭୂତ ସେହି
ପୁଣି ସଂସାରର ସାରବସ୍ତୁ ସେ ବୋଲାଇ ।
ସକଳ କର୍ମର ଅଟେ ସେ ଉତ୍ତମ କର୍ମ
ସରବ ବୀଜର ବୀଜ ବୋଲି ତାକୁ ଜାଣ ।
ସର୍ବ କାରଣ କାରଣ ହେଲେ ହେଁ ଯେ ସେହି
କାହାର କାରଣ ନୁହେଁ ଜାଣ ମୁନି ସାଇଁ ।
ହେଲେ ହେଁ ସେ ସର୍ବବିଧ ଭାବନା ସ୍ଵରୂପ
ନିଜେ ସେ ଭାବନାତୀତ ଅଭବ ତା ରୂପ ।
ବୁଦ୍ଧି କି କରିଥାଏ ସେ ସର୍ବଦା ପ୍ରକାଶ
ଚେତନାତ୍ମକଙ୍କ ମଧ୍ୟେ ଚେତନା ବିକାଶ ।
ପ୍ରତିକ ରୂପେ ଥାଇ ସ୍ଵୀୟ ବୁଦ୍ଧି ପ୍ରଭାବରେ
ସକଳ ବାହ୍ୟବସ୍ତୁକୁ ପରକାଶ କରେ ।
ବାହ୍ୟବସ୍ତୁ, ତତ୍ତ୍ଵ ରୂପେ ହୁଏ ସେ ପ୍ରକାଶ
ଚିଦାତ୍ମା ଦ୍ଵିବିଧ ରୂପ ବୁଝ ବ୍ରହ୍ମା ଶିଷ୍ୟ ।
ସର୍ବ ଜ୍ୟୋତିଙ୍କର ଜ୍ୟୋତି, ହୋଇଲେ ହେଁ ସେହି
ଏକ ହୋଇ ମାୟା ବଳେ ବହୁ ରୂପ ନେଇ ।
ନିଜେ ଲୋକାତୀତ ରହି କାହାକୁ ନ ଦିଶେ
କେବେ କେବେ ଲୁଚକାଳି ଖେଳ କରି ବସେ ।
ବ୍ୟାବହାରିକ ସତ୍ୟ କି ପଞ୍ଚଭୂତ ତତ୍ତ୍ଵ
କି ଅବା ପ୍ରାତିଭାସିକ, ଅଟେ ଯେ ଅସତ୍ୟ ।

କୌଣସି ଥିରେ ସମ୍ପର୍କ ନ ଥାଇ ଏହାର
ସାକ୍ଷୀ ଚିନ୍ମାତ୍ର ଏ ଜାଣ ବ୍ରହ୍ମାଙ୍କ କୁମର ।
ଚିତ୍ତାକାରେ ବିକଶିତ ଏ ଚିତ୍ତ ମଧ୍ୟରେ
ମରୁଭୂମି ମଧ୍ୟେ ମରୀଚିକା ସଦୃଶରେ ।
ଅସଂଖ୍ୟ ଜଗତ ଏଥି ଫୁଟିଛି, ଫୁଟୁଛି
ଆବର ଫୁଟିବ ତାହା ମୋ ମନ ଡାକୁଛି ।
ସପ୍ରକାଶ ଏ ଚିଦାତ୍ମା ବିରାଜିତ ବୋଲି
ଏହି ଜଗତ ପ୍ରକ୍ରିୟା ନିୟମିତ ଚଳି ।
କିଛି ନୋହି ସୁଦ୍ଧା, ସବୁ ହେଲା ପରି ଦିଶେ
ଜଳକା ନେତ୍ରେ ଉଜ୍ଜ୍ୱଳ ଯେଉଁ ପରି ଦିଶେ ।
ଅଗ୍ନିର ଉତ୍ତାପ ଯଥା ଅଗ୍ନିରୁ ଅଭିନ୍ନ
ତେସନ ଜଗତ ଚିତ୍‌ଠାରୁ ନୁହେଁ ଭିନ୍ନ ।
ମହାମେରୁକୁ ଯଦିଚ ଆପଣା ଗର୍ଭରେ
ଧାରଣ କରି ସେ ରଖେ ପରାକ୍ରମ ବଳେ ।
ବୈଜ୍ଞାନିକ ଗଣ ତାକୁ ପରମାଣୁ କହି
ତଥାପି ସେ ଅନୁମାନ ଯଥେଷ୍ଟ ନୁହଁଇ ।
ମହା କଳ୍ପମାନେ ତହିଁ ଥିଲେ ହେଁ ନିହିତ
ନିମିଷ ରୂପେ ନିଜକୁ ଦିଏ ପରିଚିତ ।
କେଶାଗ୍ରରୁ ସୂକ୍ଷ୍ମତର ଯଦି ସେ ଅଟଇ
ତଥାପି ସର୍ବ ଜଗତ ବ୍ୟାପିଅଛି ସେହି ।
ନ କଲେ ହେଁ ସେହି ସଂସାରର ନିରିମାଣ
ତଥାପି ସଂସାରକର୍ତ୍ତା ଭାବେ ସେ ଆସୀନ ।
କଲେ ହେଁ ସକଳ କର୍ମ କିଛି ନ କରଇ
ବସ୍ତୁ ହୋଇଲେ ହେଁ ସେହୁ ଅବସ୍ତୁ ବୋଲାଇ ।
ଯଦିଚ କୌଣସି ବସ୍ତୁ ତାର ମଧ୍ୟେ ନାହିଁ
ତଥାପି ବସ୍ତୁ ସମ୍ପନ୍ନ ବୋଲି ତାକୁ କହି ।
ଅଶରୀରୀ ସେହି କିନ୍ତୁ ସକଳ ସଂସାର
ତାହାର ଶରୀର ଅଟେ ବ୍ରହ୍ମାଙ୍କ କୁମର ।
ଅର୍ଥହୀନ ବାକ୍ୟ ମଧ୍ୟ ତାହା ନିକଟରେ
ବେଦବାକ୍ୟ ପରି ସତ୍ୟ ପରକାଶ କରେ ।
ଏମନ୍ତ କୌଣସି ବସ୍ତୁ ନାହିଁ ଏ ଜଗତେ
ଯାହାକି ସତ୍ୟ ନୁହଇ ଏହାର ଥାଆନ୍ତେ ।
ନାହିଁ ତ ମୁନି ଏପରି କୌଣସି ପଦାର୍ଥ
ଯାହାକି ହୋଇ ନ ପାରେ ଏହି ନିତ୍ୟ ସତ୍ୟ ।
ଯାହାଠାରେ ସର୍ବ ଏବଂ ଯାହାଠାରୁ ସର୍ବ
ସର୍ବ ମଧ୍ୟେ ଯେହୁ ସ୍ଥିତ ଯେହୁ ଅଟେ ସର୍ବ ।
ସେହି ସର୍ବମୟ, ସର୍ବରୂପୀ ଦେବତାଙ୍କୁ
କୋଟି ନମସ୍କାର ମୋର ତା' ପାଦ ପଦ୍ମକୁ ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ମହେଶ୍ୱର ବର୍ଣ୍ଣନେ ନାମ ଦ୍ୱାତ୍ରିଂଶ ସର୍ଗଃ ।**



## ତ୍ରୟୋତ୍ରିଂଶ ସର୍ଗଃ
## ନିତିନୃତ୍ୟ ବର୍ଣ୍ଣନ

କହନ୍ତି ଶଙ୍କର ଶୁଣ ପଦ୍ମଯୋନି ସୂତ
ଶସ୍ୟ ମଧ୍ୟେ ଏହି ଚିତ୍ତ ଥାଇ ଅବସ୍ଥିତ ।
ମୃତ୍ତିକା, ଜଳ, ଆବର କାଳର କ୍ରମରେ
ଅଙ୍କୁର ଉଦ୍‌ଗମ ହୋଇ ତଣ୍ଡୁଳ ବାହାରେ ।
ଜଳେ ରସ କୁସୁମରେ ବାସନା ସଦୃଶ
ଏହି ଚିତ୍‌ଶକ୍ତି ସର୍ବ ବସ୍ତୁରେ ପ୍ରକାଶ ।
ପାଷାଣ ମଧ୍ୟରେ ଏହା ପ୍ରବେଶ କରିଣ
ବ୍ୟବହାର ପାଇଁ ତାକୁ ଦିଏ ସଂଜୀବନ ।
ସ୍ପର୍ଶେନ୍ଦ୍ରିୟକୁ ଏ ଚିତ୍ କରିଛି ନିର୍ମାଣ
ବାୟୁରୂପ ଧରି ତାକୁ ଦିଏ ସ୍ପର୍ଶଜ୍ଞାନ ।
ଏହି ଚିତ୍ ଆତ୍ମବୋଧ ସିଦ୍ଧିଲାଭ ପାଇଁ
ନିଜକୁ ସେ ସର୍ବମୟ ବୋଲିଣ ଭାବଇ ।
ସର୍ବଦୃଶ୍ୟ ଜଗତକୁ ମଣ୍ଡନ ଆକୃତି
ଦେଇଥାଏ ଜାଣ ମୁନି ଏହି ଚିତ୍‌ଶକ୍ତି ।
ଏହି ଚିତ୍‌ଶକ୍ତି ଅଟେ ନିୟତି ରୂପିଣୀ
ବ୍ୟବସ୍ଥାପିକା ସେ ମହାଶକ୍ତି ସ୍ୱରୂପିଣୀ ।
ପରମାକାଶ ନଗ୍ରର ପ୍ରୋକ୍ଷ ଆଳୟରେ
ସଂସାର ନାଟକ ଅଭିନୟ ଯେଉଁଠାରେ ।
ଏହି ଚିତ୍ ଥାଏ ତହିଁ ସାକ୍ଷୀ ସ୍ୱରୂପରେ
ଏହି ଅଭିନୟ ଦେଖୁଥାଏ ନିରନ୍ତରେ ।
ବଶିଷ୍ଠ କହନ୍ତି ଶୁଣ ଆହେ ଜଗନ୍ନାଥ
ଶିବରୂପୀ ଚିଦାତ୍ମାର ଶକତି କେମନ୍ତ ?
କି ରୂପେ ରହିଣ ଥାଏ ତହିଁ ଏ ଶକତି
ତାହାର କ୍ରିୟା ସମୂହ କେମନ୍ତ ଅଟନ୍ତି ।
ଚିଦାତ୍ମାଙ୍କ ସାକ୍ଷୀଭାବ କିପରି ଅଟଇ
ଦୟାକରି କହ ମୋତେ ହେ ଜଗତ ସାଇଁ ।
କହନ୍ତି ମହେଶ ଏବେ ଶୁଣ ଆହେ ସୌମ୍ୟ
ଚିନ୍ମାତ୍ର ଆତ୍ମ ଶକତି ଅଟଇ ଅଗଣ୍ୟ ।

ଅପ୍ରମେୟ ପରମାତ୍ମାଙ୍କର ଯେ ଶକତି
ତାସବୁ ଏମନ୍ତ ରୂପେ ପରିଦୃଷ୍ଟ ହୁଅନ୍ତି ।
ଇଚ୍ଛା, ଜ୍ଞାନ, କାଳ, କ୍ରିୟା ନିୟତି କର୍ତ୍ତୃତ୍ୱ
ଆବର ପ୍ରଶାନ୍ତାକାଶ ପୁଣି ଅକର୍ତ୍ତୃତ୍ୱ ।
କହନ୍ତି ବଶିଷ୍ଠ ଶୁଣ ଗିରିଜା ରମଣ
ଏ ସର୍ବ ଶକତି ତହୁଁ କେମନ୍ତ ଜନମ ?
ତାଙ୍କ ଭେଦ ବା ଅଭେଦ ଅଟଇ କିପରି
କହ ଦେବ ଦୟାମୟ ସବିସ୍ତାର କରି ।
କହନ୍ତି ମହେଶ ଶୁଣ ବ୍ରହ୍ମର୍ଷି ମଣ୍ଡନ
ଚିଦାତ୍ମାର ମାୟାକୃତ ଚିଦ ଭେଦ ମାନ ।
ସେହି ଭେଦମାନ ଜାଣ ଆହେ ବ୍ରହ୍ମାସୂତ
ଶକତି ନାମରେ ହୋଇଅଛନ୍ତି ବିଦିତ ।
ସାକ୍ଷିଭାବ, ଭୋକ୍ତୃଭାବ, ପୁଣି କର୍ତ୍ତାଭାବ
ଜ୍ଞାନଭାବ ଆଦି ଯେତେ ଭାବନା ସମ୍ଭବ ।
ସେ ଭାବନା ବଳେ ପୁଣି ସେହି ଯେ ଶକତି
ନାନାରୂପ ଧରି ରହେ ଆହେ ବ୍ରହ୍ମପତି ।
ତରଙ୍ଗ, ଆବର୍ତ୍ତ ବୁଦବୁଦି ଆକାରରେ
ଏକମାତ୍ର ଜଳ ଯଥା ନାନା ରୂପ ଧରେ ।
କାଳବଳେ ସର୍ବଶକ୍ତି ହୋଇଣ ଚଳିତ
କ୍ରିୟାଶୀଳ ହୋଇଥାନ୍ତି ଏ ବିଶ୍ୱ ଜଗତ ।
ଦୁଇ ପରାର୍ଦ୍ଧ କାଳର ଅନ୍ତଃପାତୀ ଭେଦ
କଳ୍ପ, କଳ୍ପ ଅବୟବ ଯେ ଆଦି ସମ୍ବାଦ ।
ସେହିକାଳ ପରିମିତ ଅଟେ ଯେଉଁ ଶକ୍ତି
ସେ ଶକ୍ତିର ନାମ ଜାଣ ଅଟଇ ନିୟତି ।
କାଳ, ଈଶ୍ୱରେଚ୍ଛା ଆଦି ବିଭିନ୍ନ ନାମରେ
ପୁଣି ସେ "ନିୟତି" ପରିଚିତ ଏ ବିଶ୍ୱରେ ।
ମହାରୁଦ୍ରଙ୍କର ସ୍ଥିତି ରହେ ଯେତେ କାଳ
"ଏହା ଏପରି ହୋଇବ" ଏ ନୀତି ସକଳ ।
"ନିୟତି ଶକ୍ତି" ନାମରେ ହୋଇଛି କଥିତ
ସବୁବେଳେ ସମସ୍ତଙ୍କୁ କରେ ନିୟନ୍ତ୍ରିତ ।
ତୃଣଠାରୁ ବ୍ରହ୍ମାଯାଏ ଏ ବିଶ୍ୱ ଭୁବନ
ତା କବଳୁ କେହି ନ ଲଭନ୍ତି ପରିତ୍ରାଣ ।
ତତ୍ତ୍ୱବୋଧ ପରିଶୁଦ୍ଧ ନ ହେଲା ପର୍ଯ୍ୟନ୍ତ
ଏ "ନିୟତି" ରହିଥାଏ ସଦା ନୃତ୍ୟରତ ।
ସେହି ନୃତ୍ୟ ବିଳାସର ସାକ୍ଷୀରୂପେ ରହି
ଏ ଚିତ୍ ଆତ୍ମା ସର୍ବଦା ସ୍ୱରୂପରେ ଥାଇ ।
ନିୟତି ନୃତ୍ୟରେ ଯେଣୁ ନ ଥାଇ ସମ୍ବନ୍ଧ
ଚିଦାତ୍ମା ନିଜ ସ୍ୱରୂପେ ରହଇ ଆବଦ୍ଧ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ନିତି ନୃତ୍ୟ ବର୍ଣ୍ଣନେ ନାମ ତ୍ରୟୋତ୍ରିଂଶ ସର୍ଗଃ**



## ଚତୁସ୍ତ୍ରିଂଶ ସର୍ଗଃ

## ଅନ୍ତଃ ବ୍ରହ୍ମ ପୂଜନ

ଅନୁଭୂତି ସ୍ୱରୂପ ଯେ ଚିନ୍ମୟ ଆତ୍ମା
ସାଧୁଜନ ପୂଜ୍ୟ ସର୍ବାଶ୍ରୟ ସେ ମହାତ୍ମା ।
ଏପରି କୌଣସି ପ୍ରାଣୀ ପଦାର୍ଥ ବା ସ୍ଥାନ
ନାହିଁ ନ ଥାଇ ଯେ ସ୍ଥାନେ ତାର ଅବସ୍ଥାନ ।
ହରିହର ବ୍ରହ୍ମା, ଇନ୍ଦ୍ର କୁବେର ପ୍ରଭୃତି
ନାନା ରୂପେ ନାନା ନାମେ ପୂଜା ସେ ଘେନନ୍ତି ।
ଏହି ଦେବତାଙ୍କ ବାହ୍ୟ ପୂଜା ବିଧିମାନ
ବର୍ଣ୍ଣନ କରୁଛି ଶୁଣ ବ୍ରହ୍ମାଙ୍କ ନନ୍ଦନ ।
ସ୍ନାନ, ଶୌଚ ଆଦି ବିଧିବଳେ ତପୀବର
ପବିତ୍ରୀକୃତ ହେଲେ ହେଁ ଏ ଗୃହ ଶରୀର ।
ପୂଜାକାଳେ କିନ୍ତୁ ତାକୁ ପରିତ୍ୟାଗ କରି
ଶରୀର ସାକ୍ଷୀରୂପେ ଯେ ଛନ୍ତି ଅନ୍ତଃପୁରୀ ।
ପବିତ୍ର ଜ୍ଞାନ ସ୍ୱରୂପ ସେହି ସେ ଦେବତା
ବିରାଜମାନ କରନ୍ତି ଆହେ ବ୍ରହ୍ମବେତ୍ତା ।
ତାହାଙ୍କୁ ମନରେ ଧରି କରିବ ପୂଜନ
ଜ୍ୟୋତ୍ୟାତ୍ମା ବୋଲି ନିଜକୁ କରି ସମଜ୍ଞାନ ।
ଏହିପରି ଧ୍ୟାନ ନାମ ଦେବତା ପୂଜନ
ବିଧି ରହିଅଛି ଆହେ ଅରୁନ୍ଧତୀ ପ୍ରାଣ ।
ସର୍ବାଧାର ସ୍ୱରୂପ ଏ ଜ୍ଞାନ ଦେବତାଙ୍କୁ
ଧ୍ୟାନଦ୍ୱାରା ଅରଚନ କରିବ ତାହାଙ୍କୁ ।
ଏହି ଦେବତାର ଯେଉଁ ଚିନ୍ମୟ ରୂପ
ସହସ୍ର ତପନାପେକ୍ଷା ଅଧିକ ତା ତାପ ।
ଯାବତୀୟ ଆଲୋକର ଆଲୋକ ଯେ ସେହି
ଏହି ଚିତ୍ ପ୍ରକାଶରୁ "ଅହଂ" ଜନମଇ ।
ତେଣୁ କରି ସେ ଅଟନ୍ତି ଅହଂଜ୍ଞାନ ସାର
ତାଙ୍କ ଆଶ୍ରୟ କର୍ତ୍ତବ୍ୟ ଅରୁନ୍ଧତୀ ବର ।
ଅସୀମ ପରମ ଆକାଶର ବିପୁଳତା
ଏହି ଦେବତାଙ୍କ ଗ୍ରୀବା ଆହେ ବ୍ରହ୍ମବେତ୍ତା ।

ଅଧଃସ୍ଥ ଅନନ୍ତାକାଶ ତା ପଦ କମଳ
ବିଶାଳ ଦିଗ ସକଳ ତା ବାହୁ ଯୁଗଳ ।
ଲୋକ ସକଳ ତାଙ୍କର ହସ୍ତେ ଥିବା ଅସ୍ତ୍ର
ବିପୁଳ ଶରୀର ତାଙ୍କ ପ୍ରକାଶ ହିଁ ମାତ୍ର ।
ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ର ଆଦି ଦେବଗଣ
ଘେରି ରହିଛନ୍ତି ତାଙ୍କ ଚିତ୍ତ ପାରୁଶେଣ ।
ଭୌତିକ ସୌନ୍ଦର୍ଯ୍ୟ ତାର କେଶ ଲୋମାବଳୀ
ସେ ଦେବତା ରୂପଧ୍ୟାନ କର ଏହିପରି ।
କର୍ମ ପ୍ରସବିନୀ ଇଚ୍ଛା ଯେ ଶକ୍ତି ସକଳ
ଏ ଦେବତା ନାଡ଼ୀ ବୋଲି ଜାଣ ବ୍ରହ୍ମବାଳ ।
ଚିତ୍ ସ୍ୱରୂପ ଅଟଇ ଏହି ଯେ ଦେବତା
ସାଧୁଜନ ପୂଜ୍ୟ, ସର୍ବାଶ୍ରୟ, ହର୍ତ୍ତାକର୍ତ୍ତା
ଘଟପଟ ଇତ୍ୟାଦିରୁ ଆରମ୍ଭ କରିଣ
ସରବ ବସ୍ତୁରେ ସେହି ଛନ୍ତି ବିଦ୍ୟମାନ ।
ହରି, ହର, ବ୍ରହ୍ମା ଆଦି ନାନା ମୂର୍ତ୍ତି ଧରି
ଏକମାତ୍ର ଏ ଦେବତା ଛନ୍ତି ତହିଁ ପୂରି ।
ଭୁଲିଯିବ ଯେବେ ତୁମେ ଭେଦଜ୍ଞାନ ଭାବ
ସତ୍ତା ମାତ୍ର ହିଁ ଏହାଙ୍କ ଶରୀର ଜାଣିବ ।
ଜଗତର ବିବର୍ତ୍ତନ ସଂପାଦନ, କାଳ
ଅଟନ୍ତି ଏହି ଦେବତାଙ୍କର ଦ୍ୱାରପାଳ ।
ଏହି ବିରାଟ ବ୍ରହ୍ମାଣ୍ଡ ଏକ ଅଂଶେ ତାର
ଅବସ୍ଥାନ କରିଅଛି ବ୍ରହ୍ମାଙ୍କ କୁମର ।
ସସ୍ର ନେତ୍ର, ସସ୍ର କର୍ଣ୍ଣ, ସସ୍ର ବାହୁଶିର
ଏହିରୂପ ମହାଦେବ ଧ୍ୟେୟ ସାଧୁଙ୍କର ।
ଦର୍ଶନ, ଶ୍ରବଣ, ଘ୍ରାଣ, ମନନ ଇତ୍ୟାଦି
ଆସ୍ୱାଦନ ଆଦିକରି ଛନ୍ତି ଯେତେ ବିଧି ।
ସର୍ବବ୍ୟାପିନୀ ଶକତି ଏମାନେ ତାଙ୍କର
ପରମ ଶିବମୟ ସେ ଅତୀତ ମନର ।
ପୁଣି ସେ ଅଟନ୍ତି ମୁନି ସରବ କରତା
ସବୁରି ବାଞ୍ଛା ପୂରଣ କରନ୍ତି ସେ ପିତା ।
ଏହି ସର୍ବମୟ ଦେବ ସବୁରି ଅନ୍ତରେ
ବିରାଜମାନ କରିଣଛନ୍ତି ନିରନ୍ତରେ ।
ଏହି ରୂପ ପ୍ରଥମରେ କରିବ ଚିନ୍ତନ
ତଦପରେ ଆଚରିବ ପୂଜା ବିଧିମାନ ।
ଏହି ଦେବ ଦେବଙ୍କର ଅରଚନା ପାଇଁ
ଧୂପ, ଦୀପ ନୈବେଦ୍ୟାଦି ପ୍ରୟୋଜନ ନାହିଁ ।
ସୁଶୀତଳ, ଅବିନାଶୀ ଆତ୍ମବୋଧ ମୃତ
ଇତ୍ୟାଦି ଉପଚାରରେ ଏ ପୂଜା ପ୍ରଶସ୍ତ ।
ବିଶୁଦ୍ଧ ଚିନ୍ମାତ୍ର ରୂପେ ରାଜେ ଯେ ଅନ୍ତରେ
ଗମନ, ଭୋଜନ ଆଦି ସର୍ବ ସମୟରେ ।
ଧ୍ୟାନାମୃତ ଦ୍ୱାରା ସେହି ପରମ ଶଙ୍କର
ପୂଜନ ବିଧେୟ ଜାଣ ଆହେ ମୁନିବର ।
ଏକାଗ୍ର ମନ ଧ୍ୟାନର ଯେବଣ ଉଦ୍ୟମ
ଏ ପୂଜାର ପାଦ୍ୟ, ଅର୍ଘ୍ୟ ସକଳ ବିଧାନ ।
ଧ୍ୟାନ ହିଁ ଏହି ପୂଜାର ସର୍ବୋପକରଣ
ଧ୍ୟାନ ବିନା ଆତ୍ମଦେବ ନଦ୍ୟନ୍ତି ଦର୍ଶନ ।
ଧ୍ୟାନ ବଳେ ମିଳେ ତାଙ୍କ ସ୍ୱରୂପ ଦର୍ଶନ
ଧ୍ୟାନ ବଳେ ମିଳେ ତାଙ୍କ ଅନୁଗ୍ରହ ଜାଣ ।
ଆତ୍ମ ଦେବତାଙ୍କ ଅଟେ ଏହି ଯେଉଁ ଧ୍ୟାନ
ପରମଯୋଗ ତା ଜାଣ ବିଧାତା ନନ୍ଦନ ।
ସର୍ବଶ୍ରେଷ୍ଠ କ୍ରିୟା ଅଟେ ଜାଣ ଏହି ବିଧି
ଏହାବଳେ ଧ୍ରୁବ, ପ୍ରହଲ୍ଲାଦ ପାନ୍ତି ସିଦ୍ଧି ।
କ୍ଷଣକ ପାଇଁକି ମଧ୍ୟ ଯେବଣ ମାନବ
ଏହି ପୂଜା ବିଧି ଯଦି ଆଚରି ପାରିବ ।
ମୋ ପରି ମୁକତ ହୋଇପାରିବ ସେ ଜନ
ସର୍ବାନ୍ତଃ କରଣେ ହେତୁ ରଖ ଏ ବିଧାନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଅନ୍ତଃବ୍ରହ୍ମ ପୂଜା ବର୍ଣ୍ଣନେ**
**ନାମ ଚର୍ତୁତ୍ରିଂଶ ସର୍ଗଃ**



## ପଞ୍ଚତ୍ରିଂଶ ସର୍ଗଃ

## ଦେବାର୍ଚ୍ଚନ ବିଧାନ

କହୁଛନ୍ତି ବଶିଷ୍ଠଙ୍କୁ ଉମାଦେବୀ ପ୍ରାଣ
ଅନ୍ତର ପୂଜା ଏକ୍ଷଣି କରହେ ଶ୍ରବଣ ।
ଶୟନେ, ସ୍ୱପ୍ନେ, ଗମନେ ପୁଣି ଅବସ୍ଥାନେ
ଅନ୍ତଃକରଣ ପୂଜନ ହୁଏ ଅନୁକ୍ଷଣେ ।
ଧ୍ୟାନ ହିଁ ପ୍ରଧାନ ଅଙ୍ଗ ଏ ପୂଜା ବିଧିର
ସବୁ ସମୟରେ ମୁନି ଏହା କରିପାର ।
ବ୍ୟବହାର ପରାୟଣ ଯେହ୍ନେ ଏ ଶରୀରେ
ହୋଇପାରେ ଜୀବ ସ୍ୱୟଂ ଶିବ ଏ ମହୀରେ ।
ବୋଧ ଲିଙ୍ଗ ବିରାଜନ୍ତି ହୃଦ ମଧ୍ୟେ ଜାଣ
ଶରୀର ରୂପ ଗଉରୀ ପଛରେ ବେଷ୍ଟନ ।

ଶାନ୍ତଭାବେ ଯେହୁ ତାଙ୍କ କରିବ ପୂଜନ
ଅବ୍ୟର୍ଥ ଫଳ ଯେ ସିଦ୍ଧି ମିଳେ ତତ୍‌କ୍ଷଣ ।
ପ୍ରାରବ୍ଧ କର୍ମବଶରୁ ଏହି ଦେବ ଜାଣ
ପ୍ରକାଶ ପାଇ ନ ଥାନ୍ତି ବିଶୁଦ୍ଧ ରୂପେଣ ।
ବିଶୁଦ୍ଧ ଆତ୍ମ ସ୍ୱରୂପ ଜଳ ଘେନିକରି
ସ୍ନାନ କରାଇବ ତାଙ୍କୁ ବିଧି ଅନୁସରି ।
ବୋଧ ରୂପ ଉପଚାରମାନ ଅରପିଣ
ଏ ବୋଧ ଲିଙ୍ଗ ଦେବଙ୍କୁ କରିବ ପୂଜନ ।
ପୂଜାକାଳେ ପୂଜକ ଯେ ଏମନ୍ତ କରିବ
କେବେ ସୂର୍ଯ୍ୟ କେବେ ଚନ୍ଦ୍ର ରୂପରେ ଧ୍ୟାୟିବ ।
ଆଉ ମଧ୍ୟ ଏହିପରି କରିବ ଚିନ୍ତନ
ଏହି ଆତ୍ମଦେବ ସର୍ବ ମଧ୍ୟେ ବିଦ୍ୟମାନ ।
ସଂବିତ ସ୍ୱରୂପ ଅଟେ ତାଙ୍କ ଅବସ୍ଥାନ
ଏହି ଜ୍ଞାନ ହିଁ ଜାଣିବ ପରମ ପୂଜନ ।
ଶବ୍ଦ ସ୍ପର୍ଶ ଆଦିକରି ଯେତେକ ବିଷୟ
ସ୍ୱୀୟ ଆନନ୍ଦ ରସରେ କରି ମାର୍ଜନୀୟ ।
ଏହିପରି ତାକୁ କରି ମାଧୁର୍ଯ୍ୟ ସମ୍ପନ୍ନ
ସନ୍ତୋଷରେ କରୁଛନ୍ତି ତାକୁ ଆସ୍ୱାଦନ ।
ମୁଖ ଓ ନାସିକା ରନ୍ଧ୍ରେ ପ୍ରାଣ ରୂପ ଧରି
ପ୍ରବାହିତ ହେଉଛନ୍ତି ଦିବସ ଶର୍ବରୀ ।
ପ୍ରାଣ ଓ ଅପାନ ଆଖ୍ୟାଧାରୀ ରଥ ପରେ
ହୃଦୟ ରୂପ ଅଶ୍ୱକୁ ଯୋଚିଣ ତହିଁରେ ।
ସେହି ରଥରେ ନିଶ୍ଚିନ୍ତ କରି ଆରୋହଣ
ସ୍ୱଚ୍ଛନ୍ଦରେ ସେହି ଦେବ କରନ୍ତି ଭ୍ରମଣ ।
ହୃଦୟ ଗହ୍ୱର ଅଟେ ତାଙ୍କ ବାସସ୍ଥାନ
ଜ୍ଞାନ, କର୍ତ୍ତା, ଭୋକ୍ତା, ସ୍ମର୍ତ୍ତା ରୂପେ ସେ ଆସୀନ ।
ସର୍ବଶରୀରେ ଚୈତନ୍ୟ କରନ୍ତି ସଞ୍ଚାର
ସର୍ବ ଶକ୍ତି-ଦାୟକ ସେ ପରମ ଈଶ୍ୱର ।
ବିଷୟ ଚିନ୍ତାରେ କିମ୍ବା ନିଶ୍ଚିନ୍ତତା କାଳେ
ପରିଲକ୍ଷିତ ହୁଅନ୍ତି ଉଭୟାବସ୍ଥାରେ ।
ଆଲୋକର ଆଲୋକ ସେ ପୁଣି ସର୍ବତ୍ରଗ
ଆଉ ମଧ୍ୟ ଶିବରୂପୀ ସେହି ମହାଭାଗ ।
ନିଷ୍କଳ ହେଲେ ହେଁ ସୁଦ୍ଧା ସେ କଳା ସଂପନ୍ନ
ଶରୀରସ୍ଥ ହୋଇ କରେ ଆକାଶ ଭ୍ରମଣ ।
ରଞ୍ଜନା ବିହୀନ ହୋଇ ରଞ୍ଜନା ସଂପନ୍ନ
ସର୍ବ ଶରୀର ବ୍ୟାପୀ ସେ ଜ୍ଞାନରୂପୀ ଜାଣ ।

ମନର ମନନ ସେହୁ ପ୍ରାଣର ପ୍ରାଣନ
ଅପାନବାୟୁର ଅଟେ ସେ ଅପନୟନ ।
ସେ ସକଳ ଶକ୍ତି ରୂପେ ହୁଅଇ ଉଦିତ
କଣ୍ଠ, ତାଲୁ, ଭ୍ରୂ, ନାସିକା ମଧ୍ୟେ ଯାତାୟାତ ।
ହୃଦ କମଳକୁ ମଧ୍ୟ ଗମନାଗମନ
ଶବ୍ଦ, ସ୍ପର୍ଶାଦିକୁ ମଧ୍ୟ କରନ୍ତି ସର୍ଜନ ।
ଏ ମନକୁ ସର୍ବସ୍ଥଳେ କରଇ ଚାଳନ
ଚେତତ୍ୱକୁ ହୃଦ ମଧ୍ୟେ କର ହେ ଧାରଣ ।
ନିର୍ବିକଳ୍ପ ହୋଇ ମଧ୍ୟ ବିକଳପ ଯୁକ୍ତ
ସର୍ବ ଅଙ୍ଗେ ବିଚରଣ କରନ୍ତି ସତତ ।
ନିଷ୍କଳଙ୍କ ହୋଇ କରେ ଶରୀର ଧାରଣ
ସର୍ବ ଶରୀରେ ଯଦିବା ତାଙ୍କ ଅବସ୍ଥାନ ।
ହୃଦ କମଳରେ କିନ୍ତୁ ସେ ବିରାଜମାନ
ଅନୁଭୂତି ରୂପେ ସେହୁ ପ୍ରତ୍ୟକ୍ଷ ପ୍ରମାଣ ।
ପ୍ରତ୍ୟେଗ୍ ଚଇତନ ରୂପେ ସେ ଭୋଗାଭିଳାଷୀ
ବିଳାସ ତାଙ୍କର ହେବା ଘଟ ଘଟ ବାସୀ ।
ବିଷୟ ଆକୃତି ପୁଣି କରି ସେ ଧାରଣ
କ୍ଷଣ ମଧ୍ୟେ ଦ୍ୱୈତ ଭାବ ପ୍ରାପ୍ତ ହୁଏ ଜାଣ ।
ପରେ ହସ୍ତପଦ ଆଦି ଅବୟବ ଘେନି
ଶରୀରୀ ରୂପରେ ପରିଚିତ ହୁଏ ପୁଣି ।
ମନର ନାନା ଶକତି ଏହି ଯେ ଆତ୍ମାରେ
ସବୁବେଳେ ଲାଗିଛନ୍ତି ସେ ଆତ୍ମା ସେବାରେ ।
ମନ ଅଟେ ଦ୍ୱାରପାଳ ଏହି ଯେ ଆତ୍ମାର
ଚିନ୍ତା ତାର ପ୍ରତିହାରୀ, ବୁଦ୍ଧି ଶକ୍ତି ତାର ।
କ୍ରିୟା ତା ରମଣୀ, ଜ୍ଞାନ ଅଙ୍ଗ ଅଳଙ୍କାର
କରମ ଇନ୍ଦ୍ରିୟମାନ ଅଟନ୍ତି ଦୁଆର ।
ଏ ଆତ୍ମା ଅଟେ ଅନନ୍ତ ଆବର ଅସୀମ
ଅଦ୍ୱୟ ରୂପେ ସବୁଙ୍କୁ କରୁଛି ପୂରଣ ।
ଆତ୍ମ ଦେବତାର ଏହି ପ୍ରତ୍ୟେକ ସ୍ୱଭାବ
ଦର୍ଶନ କଲେ ପୂଜକ ନଜାଣେ ଅଭାବ ।
ଜନ୍ମ, ମୃତ୍ୟୁ ବିହୀନ ସେ ହୋଇ ତେତେବେଳେ
ସନ୍ତୁଷ୍ଟ ବା ଅସନ୍ତୁଷ୍ଟ ନୁହେଁ କେତେବେଳେ ।
କ୍ଷୁଧିତ ବା ତୃପ୍ତ କିମ୍ବା ଆକାଂକ୍ଷା ବା ତ୍ୟାଗ
କିଛି କରିବା ପାଇଁ କି ନୁହଁଇ ସେ ବ୍ୟଗ୍ର ।
ଜୀବନ ମୁକତ ପରି ବିଚରଣ କରେ
ସର୍ବତ୍ର ସମ ଦର୍ଶନଶୀଳ ସ୍ୱଭାବରେ ।

ପ୍ରଶାନ୍ତ ଓ ସ୍ୱମଭାବାପନ୍ନ ସେ ହୋଇଣ
କ୍ରମଶଃ ପୂଜା ବିଧିରେ ହୁଅଇ ମଗନ ।
ଚିନ୍ମୟ ଆତ୍ମା ହିଁ ଜାଣ ତା ପୂଜ୍ୟ ଦେବତା
ତା ଭିନ୍ନ ନ ଜାଣେ ସେହୁ ଅନ୍ୟ ପୂଜାକଥା ।
ଯେ ଜାତିର ଯେଉଁ ଅଧିକାର ଅଛି ଶାସ୍ତ୍ରେ
ସେ ପଥ ସେ ଅନୁସରି ଥିବ ସାଧମତେ ।
ବିଭବ ସଂପନ୍ନ ଯେହୁ ଏମନ୍ତ କରିବ
ଭକ୍ଷ, ଭୋଜ୍ୟ, ପେୟ ଦେଇ ଆତ୍ମାକୁ ପୂଜିବ ।
ରମଣୀ ସମ୍ଭୋଗ କିମ୍ବା ଭୋଜନେ ଆସକ୍ତ
ଏପରି ଭାବରେ ରତ ଥିବ ଯାର ଚିତ୍ତ ।
ଯେ ମାର୍ଗଧରି ସେ ଆତ୍ମା ଦେବତା ପୂଜିବ
ଦୁଃଖାଗ୍ନିରେ ଯେହୁ ସଦା ଦହି ଦେଉଥିବ ।
ମୋହମଗ୍ନ, ଆଧିବ୍ୟାଧି ସଂପନ୍ନ ଯେ ଥିବ
ସେ ସବୁଙ୍କୁ ଉପଚାର ରୂପେ ସମର୍ପିବ ।
ନିଜ ଆୟତରେ ଯେଉଁ ବସ୍ତୁ ସବୁ ଥିବ
ତାହାକୁ ଅର୍ପଣ କରି ସନ୍ତୋଷ ରହିବ ।
ଦରିଦ୍ର ଦାରିଦ୍ର୍ୟ ଦେଇ ରାଜା ରାଜ୍ୟ ଦେଇ
ଆତ୍ମା ଦେବତା ପୂଜିବ କୁଣ୍ଠିତ ନ ହୋଇ ।
ନାନାଦି ପ୍ରକାର ଅଭିବ୍ୟକ୍ତ ଚେଷ୍ଟାମାନ
ଆତ୍ମ ଦେବତା ପୂଜାର ଫୁଲ ବୋଲି ଜାଣ ।
ସ୍ୱକୀୟ କର୍ମହିଁ ଆତ୍ମା ପୂଜାର ନୈବେଦ୍ୟ
ଏ ସଂସାରେ ନିପତିତ ଆତ୍ମା ହିଁ ନିବେଦ୍ୟ ।
ପୁତ୍ର କଳତ୍ର କୁଟୁମ୍ବ ବର୍ଗଙ୍କ ସହିତ
କଳହ ବିବାଦେ ଯେହୁ ଅହରହ ରତ ।
ରାଗ, ଦ୍ୱେଷ ଆଦି କରି ମନୋବୃତ୍ତିମାନ
ଉପଚାର କରି ସେହୁ କରିବ ପୂଜନ ।
ଏ ସକଳ ଉପଚାର ସତ୍ତ୍ୱେ ହେ ବଶିଷ୍ଠ
ସର୍ବମତେ ଯେଉଁ ଉପଚାରଟି ଗରିଷ୍ଠ ।
ସମଜ୍ଞାନ, ମିତ୍ରବୁଦ୍ଧି ଅଟଇ ଯେ ସେହି
ସଚେଷ୍ଟ ରହିବ ସେହି ଉପଚାର ପାଇଁ ।
ମିତ୍ରତା, କରୁଣା, କ୍ରୋଧ, ଉପେକ୍ଷା, ମୁଦିତା
ଏମାନଙ୍କୁ ତେଜ୍ୟା କରିପାରେ ଯେ ସୁଚେତା ।
ତାର ଶୁଦ୍ଧଭାବ ଅଟେ ଶ୍ରେଷ୍ଠ ଉପଚାର
ବୁଝିରଖ ଏହା ଆହେ ବ୍ରହ୍ମାଙ୍କ କୁମର ।
ଦୀର୍ଘକାଳ ଧରି ଚଳିଆସୁଛି ଯେ ଭୋଗ
ଅଥବା ଅକସ୍ମାତେ ଯା ଆସି ପହଞ୍ଚିବ ।
ସେଇ ଯଥା ପ୍ରାପ୍ତଭୋଗ କରି ନିବେଦନ
ଆତ୍ମା ଦେବତାର ପୂଜା କର ସମ୍ପାଦନ ।
ଭୋଗର ତ୍ୟାଗ ଅଥବା ଭୋଗେ ଅନୁରକ୍ତି
ସ୍ୱଭାବ ସିଦ୍ଧ ଭାବରେ ଯା'ଠାରେ ଯେ ସ୍ଥିତି ।
ତାହାକୁ ହିଁ କରିବ ସେ ଆତ୍ମାକୁ ଅର୍ପଣ
ସେଥିପ୍ରତି କୁଣ୍ଠା ନ କରିବ ଆଚରଣ ।
ଯାହା ହୋଇଛି ବିନଷ୍ଟ ତାକୁ ଉପେକ୍ଷିବ
ଯାହାହିଁ ସୁଲଭ ତାକୁ ସଂଗ୍ରହ କରିବ ।
ଏହିରୂପ ଅନାୟାସ ଲବ୍ଧ ଉପଚାର
ଆତ୍ମାର ପୂଜନ ପାଇଁ ଉତ୍କୃଷ୍ଟ ସମ୍ଭାର ।
ଇଷ୍ଟ ଅନିଷ୍ଟ ଇତ୍ୟାଦି ସବୁ ବିଷୟରେ
ଆତ୍ମା ପୂଜ ସମଭାବ ଅବଲମ୍ବନରେ ।
ବ୍ରହ୍ମମୟ ଅଟେ ଜାଣ ଏ ସାରା ଜଗତ
ସକଳ ମଙ୍ଗଳ ଏହା ଜ୍ଞାନରୁ ସମ୍ଭୂତ ।
ସମସ୍ତଙ୍କୁ ବ୍ରହ୍ମମୟ ବୋଲି ବିଚାରିଣ
ତେବେ ଯାଇ ଆତ୍ମଦେବ କରିବ ପୂଜନ ।
ଇଷ୍ଟାନିଷ୍ଟ ଉଭୟଙ୍କୁ କରିବ ତେଜନ
ଅଥବା ଆତ୍ମଜ୍ଞାନରେ କରିବ ଗ୍ରହଣ ।
ଏହି ବିଧି ଅନୁସରି ଆତ୍ମଦେବଙ୍କର
ପୂଜାକଲେ ଶ୍ରେଷ୍ଠ ପୂଜା ବିଧାତା କୁମର ।
ଆକାଂକ୍ଷା ଓ ତ୍ୟାଗ କରିଥିବ ବରଜନ
ଅକସ୍ମାତେ ଭୋଗ୍ୟବସ୍ତୁ ଆସିବ ଯେତ୍କଣେ ।
ବିଳମ୍ବ ନ କରି ତାହା କରିବ ଅର୍ପଣ
ଏକଥା ମନେ ରଖିବ ବ୍ରହ୍ମାଙ୍କ ନନ୍ଦନ ।
ହେୟ ବା ଉପାଦେୟରୁ ଜାତ ଯେ ଉଦ୍‌ବେଗ
ପରିହାର କରିବାକୁ କରିବ ଉଦ୍‌ଯୋଗ ।
ଦେଶ, କାଳ, କର୍ମବଶେ ଯାହା ଶୁଭାଶୁଭ
ଅବିକୃତ ଚିତ୍ତେ ତାହା ଅର୍ପଣ କରିବ ।
ଯେ ସବୁ ଉପକରଣ ଆତ୍ମା ପୂଜା ପାଇଁ
ଯେଉଁସବୁ ଉପଚାର କଥିତ ଅଛଇ ।
ନାନା ରସମୟ ଯୁକ୍ତ ହେଲେ ହେଁ ସେମାନ
ମଧୁର ରସ ମଣିଣ କରିବ ଅର୍ପଣ ।
ନାନା ରସ ମଧ୍ୟେ ରହେ ଯେ ସମତା ଭାବ
ତାହାହିଁ ମଧୁର ରସ ବୋଲିଣ ଜାଣିବ ।
ଅତୀନ୍ଦ୍ରିୟ ଅଟେ ଏହି ରସବୋଧ ଶକ୍ତି
ତଦୀୟ ବଳେ ଯା ଭାବ ଭାବନା କରନ୍ତି ।

ଅମୃତ ପାଲଟିଯାଏ ସେହୁ ତତକ୍ଷଣ
ମଧୁର ରସ ଭାବନା ମହା ମହୀୟାନ ।
ସମତା ଅମୃତ ଯହିଁ କରିବ ଲେପନ
ଅତିଶୟ ସୁମଧୁରୁ ହୁଏ ତା ତତ୍‌କ୍ଷଣ ।
ଚନ୍ଦ୍ରମାଠାରୁ ନିର୍ଗତ ସୁଧା ଧାରାପରି
ଅମୃତ ପାଲଟିଯାଏ ସେ ବସ୍ତୁରି ଶିରି ।
ବ୍ରହ୍ମ ଦୃଷ୍ଟି ଭାବେ ସମଭାବ ଅନୁସରି
ପ୍ରଶାନ୍ତ ଗଗନ ସମ ଅବସ୍ଥାନ କରି ।
ମନ ସହିତ ସକଳ ବିକାର ତେଜିଣ
ନିର୍ବିକାର ଭାବେ କରି ପାରିଲେ ଧାରଣ ।
ଆତ୍ମଦେବଙ୍କର ଶ୍ରେଷ୍ଠ ପୂଜା ଉପଚାର
ତାହାହିଁ ହୋଇବ ଜାଣ ଆହେ ମୁନିବର ।
ତତ୍ତ୍ୱଜ୍ଞାନ ବଳେ ପୂଜା କରେ ଯେଉଁ ଜନ
ପାଷାଣ ପ୍ରତିମା ହୁଏ ତା ପାଖେ ଚିତ୍‌ଘନ ।
ବାହ୍ୟକର୍ମେ ନିତ୍ୟ ବ୍ୟସ୍ତ ରହିଲେ ହେଁ ସେହି
ଅନ୍ତରେ ଗଗନ ସମ ନିର୍ମଳ ଯେ ରହି ।
କାମ କ୍ରୋଧ ଅହଂଜ୍ଞାନ ଆବର ଅଜ୍ଞାନ
ଦୂରୀଭୂତ ହୋଇଗଲେ ଜାଗେ ତତ୍ତ୍ୱଜ୍ଞାନ ।
ପୂର୍ଣ୍ଣତା ଚନ୍ଦ୍ରମା ତାର ରାଜେ ଅନ୍ତର୍ଦ୍ଦେଶେ
ସେହି ସୁଧାରସ ପିଇ ଆନନ୍ଦେ ବିଳସେ ।
ତୁମେ ମଧ ବ୍ରହ୍ମପଦେ କରି ଆରୋହଣ
ଶିବ ସ୍ୱରୂପ ଆତ୍ମାଙ୍କୁ କର ଦରଶନ ।
ସୁଖଦୁଃଖ ଆଦି ସର୍ବ ଉପଚାର ଦେଇ
ନିରନ୍ତର ତାଙ୍କ ପୂଜା କର ତପୀସାଇଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ମହେଶ୍ୱର ଉପାଖ୍ୟାନେ ଦେବାର୍ଚ୍ଚନା ବିଧାନ ବର୍ଣ୍ଣନେ ନାମ ପଞ୍ଚତ୍ରିଂଶ ସର୍ଗଃ**

❑

## ଷଡ଼ତ୍ରିଂଶ ସର୍ଗଃ
## ଦେବ ପୂଜା ବିଚାର

କହନ୍ତି ଇଶାନ ଏବେ ଶୁଣ ମୁନିବର
ପ୍ରତ୍ୟହ ଯେ କର୍ମ ଅନୁଷ୍ଠାନ ମାନଙ୍କର ।
ଅଥବା ଜାଣିଶୁଣି ତାକର ବରଜନ
ଚିଦାତ୍ମା ପୂଜା ବୋଲି ତା ହୋଇବ ଗ୍ରହଣ ।
ଏମନ୍ତ ପୂଜା ବିଧିରେ ସନ୍ତୋଷ ଲଭିଣ
ଆତ୍ମଦେବ ସାକ୍ଷାତ୍‌କାର କରାନ୍ତି ପ୍ରଦାନ ।
ମାୟା ବରଣ ଭେଦି ସେ ଏମନ୍ତ ପୂଜାରେ
ପାରମାର୍ଥିକ ଆନନ୍ଦ ପ୍ରକାଶନ୍ତି ହେଳେ ।
ରାଗ, ଦ୍ୱେଷ ଆଦି ସର୍ବ ଶବ୍ଦଙ୍କର ଅର୍ଥ
ଆତ୍ମାରେ ପୃଥକ ଭାବେ ନୁହେଁ ଅବସ୍ଥିତ ।
ଦୁଃଖିର ଦାରିଦ୍ର ଅବା ରାଜାର ରାଜତ୍ୱ
ଆପଣାର ବା ଅନ୍ୟର ହେଉ ସେ ସମସ୍ତ ।
ତହିଁରୁ ଦୁଃଖ ସୁଖ ଯେ ହୁଏ ଅନୁଭୂତ
ତାହାହିଁ ଆତ୍ମାର ପୂଜା ଜାଣ ବ୍ରହ୍ମାସୁତ ।
ଆତ୍ମା ଯେପରି, ଆକାଶ, ବାୟୁ ଆକାରରେ
ବିବର୍ତ୍ତିତ ହେଉଥାଏ ଆହେ ମୁନିବରେ ।
ସେପରି ଆତ୍ମା ଜାଗ୍ରତ ସ୍ୱପ୍ନ ଆକାରରେ
ବିବର୍ତ୍ତିତ ହେଉଥାଏ ଜାଣ ତପୀବର ।
ଶିବରୂପୀ ଆତ୍ମସତ୍ତା ମଧ୍ୟରେ ଜଗତ
ଆଭାସିତ ହେଉଅଛି ଜାଣ ବ୍ରହ୍ମାସୁତ ।
ସକଳ ଜଗତ୍ ପ୍ରପଞ୍ଚ ତେଣୁ ଏ ଆତ୍ମାରେ
ଅବସ୍ଥାନ କରିଥାନ୍ତି ବିଧାତା କୁମରେ ।
ଆଶ୍ଚର୍ଯ୍ୟ ବିଷୟ ଏହା ଜାଣ ମୁନିବର
ଆତ୍ମାହିଁ ଧରଇ ଘଟ ପଟର ଆକାର ।
ପୁଣି ଜୀବିକାରେ ସେହୁ ହୋଇ ବିବର୍ତ୍ତିତ
ନିଜର ସ୍ୱରୂପ ହୋଇଅଛନ୍ତି ବିସ୍ମୃତି ।
ଯେଣୁକରି ଆତ୍ମା ସର୍ବରୂପେ ପ୍ରକାଶିତ
ପୂଜ୍ୟ-ପୂଜା ପୂଜକାଦି ଆସିବେ କେମନ୍ତ ।
ତତ୍ତ୍ୱଜ୍ଞାନ ଉଦେ ହେଲେ ଏ ସକଳ ଭାବ
ମିଥ୍ୟା ବୋଲି ପ୍ରମାଣିତ ଅରୁନ୍ଧତି ଧବ ।
ଏ ଆତ୍ମାର ପରିଚ୍ଛିନ୍ନ ଭାବ ଘେନି କରି
ପୂଜ୍ୟ ପୂଜା ଆଦି ଭାବ ଜଗତ ଆଚରି ।
ଅପରିଚ୍ଛିନ୍ନ ଅଟନ୍ତି ଯେଣୁ ଭଗବାନ
ପରିଚ୍ଛିନ୍ନ ଭାବ ତହିଁ ରହିବ କେସନ ?
ଯେବଣ ଦେବତା ମୁନି ଅଟେ ପରିଚ୍ଛିନ୍ନ
ଅନୁପଯୁକ୍ତ ହେବାକୁ ସର୍ବଶକ୍ତିମାନ ।
ଚିଦ୍‌ରୂପେ ବିରାଜେ ଯେ ଏ ସାରା ବିଶ୍ୱରେ
ସାକାର ରୂପ ତାଙ୍କର ହେବ କି ପ୍ରକାରେ ?
ଯେବଣ ଜନକୁ ଜଣାଅଛି ଏହି ତତ୍ତ୍ୱ
ଉପଦେଶ ଦେବା ତାଙ୍କୁ ନୁହଇ ଯୁକତ ।
ଈଶ୍ୱରଙ୍କୁ ପରିଚ୍ଛିନ୍ନ ମଣନ୍ତି ଯେମାନେ
ଏହି ଉପଦେଶ ଯୋଗ୍ୟ ଅଟନ୍ତି ସେମାନେ ।

ପରିଚ୍ଛିନ୍ନ ଦୃଷ୍ଟି ତୁମେ ଶୀଘ୍ର ତେଜ୍ୟାକର
ତତ୍ତ୍ୱ ଦୃଷ୍ଟିକି ତୁମର ଉନ୍ମିଳିତ କର ।
ପ୍ରଶାନ୍ତ ନିର୍ମଳ ସମଭାବାପନ୍ନ ହୋଇ
ଆତ୍ମା ଦେବତାକୁ ରାଜାକର ତପୀସାଇଁ ।
ଶରୀରରୁ ଏ ଜୀବକୁ ସ୍ୱତନ୍ତ୍ର କରିଣ
ତତ୍ତ୍ୱ ବିଚାରରେ ତାକୁ କରିଛ ଶୋଧନ ।
ତେଣୁ ସାଧୁଙ୍କ ପ୍ରକୃତ ଗୁଣ ଯାହାଅଛି
ତୁମ୍ଭଠାରେ ତାହାସବୁ ଫୁଟିଣ ଦିଶୁଛି ।
ଜନ୍ମ, ମୃତ୍ୟୁ, ସୁଖ, ଦୁଃଖ ତୁମଠାରୁ ମୁନି
ଚିର ବିଦାୟ ଘେନିଣ ଛନ୍ତି ବ୍ରହ୍ମଜ୍ଞାନୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଈଶ୍ୱର ଉପାଖ୍ୟାନେ ଦେବପୂଜା ବିଚାର ନାମ ଷଡ଼ତ୍ରିଂଶ ସର୍ଗଃ**



## ସପ୍ତତ୍ରିଂଶ ସର୍ଗଃ

## ଜଗତ୍ ମିଥ୍ୟା ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ କଇଳାସ ପତି
ବ୍ରହ୍ମ ସହ ଯଦି କେହି ସଂଶ୍ଲିଷ୍ଟ ନୁହଁନ୍ତି,
ତେବେ କିମ୍ପାଇଁ ତାଙ୍କର ଏହିସବୁ ନାମ
ଶିବ, ଆତ୍ମା, ପରମାତ୍ମା ରହିଅଛି ପୁଣ ?
ହେ ତ୍ରଇଲୋକେଶ୍ୱର ସେ ଅଟନ୍ତି ସତ
ଅଥଚ କିଛି ନୁହଁନ୍ତି ଏହା ଯେ କେମନ୍ତ ?
ଏହିପରି ଭିନ୍ନ ଭିନ୍ନ ଭାବ ତାଙ୍କଠାର
କିମ୍ପା ଆରୋପିତ ହୁଏ କହ ଭୂତେଶ୍ୱର ।
କହନ୍ତି ମହେଶ ମୁନେ ଏହି ଜଗତରେ
ସେହି ମାତ୍ର ବିରାଜିତ ବିଶ୍ୱ ଚରାଚରେ ।
ତେଣୁ କରି ତାଙ୍କ ନାମ ଅନାଦି ଅନନ୍ତ
ଅନ୍ୟ ପ୍ରକାଶ ତା ପାଇଁ ନୁହେଁ ଉପଯୁକ୍ତ ।
ତେଣୁ ସ୍ୱୟଂ ଜ୍ୟୋତି ନାମେ ସେହୁ ପରିଚିତ
ଶୂନ୍ୟ ସେହୁ ଯେଣୁ ନୁହେଁ ଇନ୍ଦ୍ରିୟ ଆୟତ୍ତ ।
କହନ୍ତି ବଶିଷ୍ଠ ଶୁଣ ହେ ଦେବ ମହେଶ
ଯେ ନୁହେଁ ଧୀ ଶକ୍ତି ଯୁକ୍ତ-ଇନ୍ଦ୍ରିୟଙ୍କ ବଶ,
କେବଣ ଉପାୟ ବଳେ ତାହାଙ୍କୁ ଲଭିବ ?
ଯେ ବୁଦ୍ଧ ଅଗମ୍ୟ ତାଙ୍କୁ କିପରି ବୋଧିବ ?
କହନ୍ତି ମହେଶ ଶୁଣ ଆହେ ତପୀଈଶ
ବୁଦ୍ଧି ଇନ୍ଦ୍ରିୟ ତା ପାଇଁ ପ୍ରୟୋଜନ କିସ ?
ବ୍ରହ୍ମାକାରେ ଆକାରିତ ଯେଉଁ ବୁଦ୍ଧିବୃତ୍ତି
ଅବିଦ୍ୟା-ଆବରଣକୁ ସେ ଭେଦ କରନ୍ତି ।
ଯେବେ ଏହି ଆବରଣ ଭେଦ ହୋଇପାରେ
ସ୍ୱୟଂ ପ୍ରକାଶ ବ୍ରହ୍ମଙ୍କ ଦେଖା ମିଳିପାରେ ।
ସେହି ପ୍ରକାଶର ନାମ ବ୍ରହ୍ମ ସାକ୍ଷାତକାର
ଏହି ତତ୍ତ୍ୱ ବୁଝି ରଖ ବିଧାତା କୁମର ।
ସପ୍ରକାଶ ବ୍ରହ୍ମ ନିଜେ ଲଭିଲେ ପ୍ରକାଶ
ଇନ୍ଦ୍ରିୟ ପ୍ରଭୃତିଙ୍କର ଆବଶ୍ୟକ କିସ ?
ଭାଗ୍ୟକ୍ରମେ ବ୍ରହ୍ମାଙ୍କର ଚିତ୍ତବୃତ୍ତି ବଳେ
ଅବିଦ୍ୟା କ୍ଷୟ ପ୍ରାପତ ଯଦି ହୋଇପାରେ,
ଆତ୍ମା ଆପେ ଆପଣାକୁ କରେ ଦରଶନ
ଆତ୍ମାର ସ୍ୱଭାବ ଏହା ଜାଣ ତପୀରାଣ ।
ଆତ୍ମା ଆପେ ଆପଣାକୁ ନିଜ ଚେଷ୍ଟା ବଳେ
ବିଚାର କରି ନିଜକୁ ଦରଶନ କରେ ।
ଆତ୍ମ ରୂପେ ପ୍ରକାଶିତ ହୁଅଇ ସେ ଜାଣ
ବୁଦ୍ଧି, ଇନ୍ଦ୍ରିୟଙ୍କ ତହିଁ ନାହିଁ ପ୍ରୟୋଜନ ।
ଯେତେଦିନ ଅବିଦ୍ୟାର କାର୍ଯ୍ୟ ଚାଲିଥିବ
ଆତ୍ମା ଦରଶନ କେଉଁ ମିଳି ନ ପାରିବ ।
ଯାହାର ବିନାଶ ହେଲେ ଯେ ହୁଅଇ ଲବ୍ଧ
ତାହା ଥାଉଁ ଥାଉଁ କେହ୍ନେ ହେବ ସେ ଲବଧ ।
ଆତ୍ମାହିଁ କେବଳ ନିଜେ ନିଜକୁ ବୁଝନ୍ତି
ଏହା ଆତ୍ମାର ସ୍ୱଭାବ ଅରୁନ୍ଧତି ପତି ।
ଗୁରୁ ଉପଦେଶ ପୁଣି ଶାସ୍ତ୍ରର ବିଚାର
ଏହାଛଡ଼ା ଆତ୍ମଜ୍ଞାନ ନୁହଇଁ ଗୋଚର ।
ତେଣୁ ଗୁରୁ ଉପଦେଶ, ଶାସ୍ତ୍ରଜ୍ଞାନ ସହ
ଆତ୍ମଜ୍ଞାନର ସମ୍ବନ୍ଧ ଅଛଇ ନିଶ୍ଚୟ ।
ଗୁରୁ ଉପଦେଶ ପୁଣି ଶାସ୍ତ୍ରାର୍ଥର ସହ
ଶିଷ୍ୟ ଯେବେ ଦୀର୍ଘକାଳ ହୋଇବ ତନ୍ମୟ
ତେବେ ଯାଇ ଆତ୍ମଜ୍ଞାନ ହୋଇବ ଉଦୟ
ଜୀବନ ଆଦର୍ଶ ଏହା ବ୍ରହ୍ମାଙ୍କ ତନୟ ।
ଇନ୍ଦ୍ରିୟ ଓ ସୁଖ ଦୁଃଖ ହୋଇଯାନ୍ତେ କ୍ଷୀଣ
ଯାହା ଅବଶିଷ୍ଟ ରହେ ସେହି ଆତ୍ମା ଜାଣ ।
ସେହି ଅଟେ ଶିବ ପୁଣି ସେହି ଚିତ୍ ସତ୍
ଏହି ସକଳ ନାମରେ ହୁଏ ସେ କଥିତ ।
ଜଗତ୍ ତତ୍ତ୍ୱ ଅଟେ ଜାଣ ସେହି ଆତ୍ମା ତତ୍ତ୍ୱ
ଆବର ଶିବ ନାମକ ସେହୁ ନିଜ ତତ୍ତ୍ୱ ।

ସେହି ଏକା ଜାଣିରଖ ସୁଖରୂପୀ ବ୍ରହ୍ମ
ଏହା ସ୍ଥିର କରି ଚିନ୍ତା ତେଜ ତପୀରାଣ ।
ଏ ଦେବତା ପୂଜା କରି ତତ୍ତ୍ୱଜ୍ଞ ପୁରୁଷ
ପରମ ପଦ ପ୍ରାପତ ହୁଏ ସେ ଜ୍ଞାନୀଷ ।
କହନ୍ତି ବଶିଷ୍ଠ ଆତ୍ମ ତତ୍ତ୍ୱେ ଏ ଜଗତ
ନ ରହି ପାରିଲେ କେହ୍ନେ ହୁଏ ପରିଜ୍ଞାତ ।
ଅନୁଗ୍ରହ କରି ତାହା କହନ୍ତୁ ଆପଣ
ଯଦ୍ଦ୍ୱାରା ସର୍ବ ସନ୍ଦେହ ହୋଇବ ମୋଚନ ।
କହନ୍ତି ମହେଶ ତେବେ ଶୁଣ ତପୋଧନ
ବ୍ରହ୍ମହିଁ କେବଳ ଚିତ୍ ବୁଝେ ଜ୍ଞାନୀଜନ ।
ପ୍ରଥମେ ଏ ଚିତ୍ ଧରିଥାଏ ଦୃଶ୍ୟଭାବ (ଚେତ୍ୟ)
ପୁଣି ଏକରସ ଭାବେ ଯେବେ ସେ ରାଜିବ ।
ଏହି ଦୃଶ୍ୟଭାବ ଆଉ ତାର ନ ରହଇ
ଜ୍ଞେୟଭାବ ପୁଣି ଯେବେ ଗ୍ରହଣ କରଇ,
ଅହଂଭାବ ଆବିର୍ଭୂତ ହୁଏ ତେତେବେଳେ
ଅହଂଭାବୁ ଦେଶ, କାଳ ଜାତ ହୁଏ ହେଳେ ।
ଆକାଶ ସଦୃଶ ଏହି ସକଳ କଳ୍ପନା
ଅହଂଭାବ ସଖୀପରି ବୃଦ୍ଧି ପାଏ ସିନା ।
ଦେଶ, କାଳ ନେଇ ସେହି ଅହଂଭାବ ପୁଣି
ପ୍ରାଣରୂପରେ ସ୍ପନ୍ଦିତ ହୁଏ ତତକ୍ଷଣି ।
ଜୀବ ଓ ଜୀବନୀ ଶକ୍ତି ନାମେ ପରିଚିତ
ହୋଇଥାଏ ଏହା ଜାଣ ଅରୁନ୍ଧତୀ କାନ୍ତ ।
ତତ୍‌ପରେ ଏ ଜୀବଶକ୍ତି ଅହଂରୂପ ଧରେ
ନିଶ୍ଚୟାତ୍ମିକା ବୁଦ୍ଧିର ସ୍ୱଜ୍ଞତା ବଢ଼େ ।
ଶବ୍ଦ ଶକ୍ତି, ଜ୍ଞାନ ଶକ୍ତି, କର୍ମଶକ୍ତି ମାନ
ଜୀବଶକ୍ତିରେ ସେ କାଳେ ପରକାଶମାନ ।
ଏହି ସକଳଶକ୍ତିରେ ହୋଇ ଶକ୍ତିମାନ
ମନ ନାମେ ପରିଚିତ ହୁଏ ସେହୁଜାଣ ।
ଏହିମନ ପୁଣି ଜ୍ଞାନୀଗଣଙ୍କ ମତରେ
ଆତିବାହିକ ନାମରେ ବିଖ୍ୟାତ ସଂସାରେ ।
ଅନ୍ତଃରସ୍ଥ ବ୍ରହ୍ମଶକ୍ତି ମଧ୍ୟେ ଏହି ମନ
ବ୍ୟାପ୍ତ ହୋଇ ଜ୍ଞାତା ନାମ କରଇ ଧାରଣ ।
ସପ୍ରକାଶ ଆତ୍ମାଶକ୍ତି ପ୍ରକାଶ ବର୍ଲେଣ
ମନର ଏହି ଜ୍ଞାତୃତ୍ୱ ସିଦ୍ଧ ହୁଏ ଜାଣ ।
ନାନାଶକ୍ତି ଏ ମନରେ ସେ କାଳେ ଜନ୍ମନ୍ତି
ସେ ଶକ୍ତିଙ୍କ ନାମ ଶୁଣ ଅରୁନ୍ଧତୀ ପତି ।

ବାୟୁ ଓ ସ୍ପନ୍ଦନ ଶକ୍ତି, ସ୍ପର୍ଶ, ସ୍ପର୍ଶ ଶକ୍ତି
ତେଜ, ରୂପଶକ୍ତି ପୁଣି ଜଳ, ସ୍ୱାଦ ଶକ୍ତି ।
ଗନ୍ଧ, କ୍ଷିତିଶକ୍ତି ପୁଣି ଦେଶ, କାଳ ଶକ୍ତି
ମାନସରୁ ଜାତ ଜାଣ ଏ ସକଳ ଶକ୍ତି ।
ଉଦିତ ନ ହୋଇ ମଧ୍ୟ ଏ ସକଳ ଶକ୍ତି
ଉଦିତ ହେଲାପରି ସେ ପ୍ରତୀତ ହୁଅନ୍ତି ।
ଅଙ୍କୁରକୁ ବୀଜ ଯଥା ଅଭିନ୍ନ ଭାବରେ
ଧାରଣ କରିଣ ଥାଏ ଅତି ପ୍ରଚ୍ଛନ୍ନରେ ।
ନିରାକାର ଏ ସକଳ ଶକତିଙ୍କୁ ମନ
ନିଜମଧ୍ୟେ ଅଭିନ୍ନରେ କରଇ ଧାରଣ ।
ଏହିମାନଙ୍କ ସମଷ୍ଟି ଅଟେ "ପୂର୍ଯ୍ୟଷ୍ଟକ"
ଏହାହିଁ ଆତିବାହିକ ଦେହ ମନେରଖ ।
ବୋଧରୂପୀ ଅଟେ ଯେ ଅପରିଚ୍ଛିନ୍ନ ବ୍ରହ୍ମ
ଏହିସବୁ ବିଭାଗରେ ବିଭକ୍ତ ହୋଇଣ,
ପ୍ରକାଶ ପାଉଅଛନ୍ତି ବିଶ୍ୱ ଚରାଚରେ
ଏହା ଯେ ବୁଝି ପାରିଛି ମୁକ୍ତ ସେ ବିଶ୍ୱରେ ।
ବ୍ୟବହାରୀକ ଦୃଷ୍ଟିରେ ଏହା ଘଟୁଥାଇ
ତତ୍ତ୍ୱ ଦୃଷ୍ଟିରେ ଏସବୁ କିଛି ନ ଘଟଇ ।
ସାଗର ମଧ୍ୟରେ ଜଳ ନାନା ପ୍ରକାରରେ
ଯଥା ବିଳସିତ ହେଉଥାଏ ନିରନ୍ତରେ,
ସେହିପରି ବ୍ରହ୍ମ ମଧ୍ୟେ ଏଇ ପୂର୍ଯ୍ୟଷ୍ଟକ
ସତ୍ ଆକାରେ ପ୍ରକାଶେ ତପସ୍ୱୀ ନାୟକ ।
ତେଣୁ ବ୍ରହ୍ମଠାରୁ ଏହା ନୁହଁଇ ପୃଥକ
ଅଭିନ୍ନ ଅଟନ୍ତି ଜାଣ ବ୍ରହ୍ମ ପୂର୍ଯ୍ୟଷ୍ଟକ ।
ଯେବେ ମଣିବ ଜଗତ୍ ଆତ୍ମ ଚଇତନ୍ୟ
ତେବେ ସେ କରିବ ଆତ୍ମ ସ୍ୱରୂପ ଧାରଣ ।
ପୁଣି ସଂବିତମୟ ସେ ହୋଇ ବିକଶିବ
ତେତେବେଳେ ଦ୍ୱନ୍ଦଭାବ ତୀରୋହିତ ହେବ ।
ଯଦ୍ୟପି ଆତ୍ମାରୁ ଜଗତ ସ୍ୱତନ୍ତ୍ର ମଣିବ
ଅଚେତନ ଜଡ଼ରୂପେ ପଡ଼ି ସେ ରହିବ ।
ଦୃଶ୍ୟ ଜଗତ ସ୍ୱରୂପ ଜ୍ଞାନ ଯେବେ ହେବ
ଅସ୍ତିତ୍ୱ ହରାଇ ତାହା ମିଥ୍ୟା ବୋଲାଇବ ।
ବଶିଷ୍ଠ କହନ୍ତି ଶୁଣ ପାର୍ବତୀ ରମଣ
ଏ ମିଥ୍ୟା ଜଗତ ଦିଏ ଯେତେକ କଷଣ ।
ତହିଁରୁ ନିଷ୍କୃତ ପାଇଁ କିସ ପ୍ରତିକାର
କହିଣ ନାଶନ୍ତୁ ମୋର ଅନ୍ତର ଆତୁର ।

କହନ୍ତି ମହେଶ ଶୁଣ ଆହେ ତପୀରାଣ
କେବଳ ବାସନା ଅଟେ ଦୁଃଖର କାରଣ ।
ଯାହାର ଜଗତ ଅଛି ତାହାର ବାସନା
ଜନ୍ମଲଭି ଥାଏ ଜାଣ ଆହେ ମହାମନା ।
ଯାହାପାଇଁ ଜଗତର ସ୍ଥିତି ମାତ୍ର ନାହିଁ
ପ୍ରପଞ୍ଚ ମିଥ୍ୟାସ୍ୱରୂପ ତାକୁ ଜଣାଯାଇ ।
ସେହି ଅବସ୍ଥାରେ ଜାଣ କେବଣ ପୁରୁଷ
ବାସନା କରିବ ରଖି କେଉଁ ଅଭିଳାଷ ?
ବାସନା ନ ଥିଲେ ତାର ଉତ୍ପତ୍ତି ବା କାହିଁ
ମୋ କହିବା ବୁଝୁଛ କି ହେ ମୁନି ଗୋସାଇଁ ।
ମନ, ମନ ଧର୍ମ, ଅହଂପୂର୍ଣ୍ଣ ଏ ଜଗତ
ସମ୍ପୂର୍ଣ୍ଣ ରୂପେ ଯେ କାଳେ ହୁଏ ଅସ୍ତମିତ,
ତେତେବେଳେ ଏକମାତ୍ର ସଦ୍‌ବସ୍ତୁ ଯେ ବ୍ରହ୍ମ
ଉଦିତ ହୋଇପଡ଼ନ୍ତି ହେ ମୁନି ଉତ୍ତମ ।
ନାହିଁ ବାସନା ସେ ବ୍ରହ୍ମେ ନାହିଁ ତା କରତା
ବାସନୀୟ ବସ୍ତୁରେ ଯେ ନାହିଁ ତହିଁ ସତ୍ତା ।
ଅଛଇ କେବଳ ମାତ୍ର ସେହି କଇବଲ୍ୟ
ଏମନ୍ତ କେ ଅଛି ଭବେ କରିବ ତା ମୂଲ୍ୟ ?
ଯାହାର ଦୃଷ୍ଟି ପଥରେ ନାହିଁ ଏ ଜଗତ
କି ଅବା ଅଛି ତାହାର କୈବଲ୍ୟ ବ୍ୟତୀତ ?
ଅହଂଭାବ, ଏ ଜଗତ, ମରୀଚୀକା ଜଳ
ଏମାନଙ୍କୁ ସତ୍ୟ ବୋଲି ମଣେ ଯେଉଁ ନର ।
ଉପଦେଶ ନେବା ପାଇଁ ଅଟେ ସେ ଅଯୋଗ୍ୟ
ବିବେକୀମାନଙ୍କ ପାଇଁ ଉପଦେଶ ଯୋଗ୍ୟ ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଜଗତ ମିଥ୍ୟା ପ୍ରତିପାଦନେ**
**ନାମ ସପ୍ତତ୍ରିଂଶ ସର୍ଗଃ**



## ଅଷ୍ଟତ୍ରିଂଶ ସର୍ଗଃ

## ପରମାର୍ଥ ବିଚାର

କହନ୍ତି ବଶିଷ୍ଠ କହ ଆହେ ଭଗବାନ
ଯେଉଁ ଜୀବ କଥା ମୋତେ କହିଲେ ଆପଣ ।
ସୃଷ୍ଟି ଆଦ୍ୟକାଳେ ଦେବ ସେହି ଯେଉଁ ଜୀବ
କିପରି ଅବସ୍ଥା ତାର ସେକାଳେ ଘଟିବ ?
କହନ୍ତି ମହେଶ ତାହା ଶୁଣ ତପୀବର
ବ୍ରହ୍ମଠାରୁ ଧରେ ସେହୁ ସ୍ୱାପ୍ନିକ ଶରୀର ।
ସ୍ୱାପ୍ନିକ ମନୁଷ୍ୟ ପରି କର୍ମ ପରାୟଣ
ହୋଇ ବିଚରଣ କରେ ଏ ବିଶ୍ୱ ମଧ୍ୟେଣ ।
ମୁହିଁ ସେହି ସନାତନ ଅବ୍ୟକ୍ତ ପୁରୁଷ
ଏହି ଭାବେ ନିଜକୁ ସେ ନିଜେ ହୁଏ ଦୃଶ୍ୟ ।
ପୁରୁଷ ନାମେ ସେ ଜୀବ ତେତେବେଳେ ଖ୍ୟାତ
ଏହିପରି ଜୀବ ହୁଏ ପ୍ରଥମେ ଉଦ୍‌ଭୂତ ।
କେଉଁ ସୃଷ୍ଟିକାଳେ ହୋଇଥାଏ ସେହୁ ଦୂର
କେଉଁ ସୃଷ୍ଟିକାଳେ ଧରେ ବିଷ୍ଣୁ ଅବତାର ।
ସେ ବିଷ୍ଣୁ ନାଭି କମଲୁ ଅନ୍ୟ ଏକ ଜୀବ
ପିତାମହ ନାମଧରି ବିଖ୍ୟାତ ଏ ଭବ ।
ସେ ପ୍ରଥମ ଜୀବ ପୁଣି କେଉଁ ସୃଷ୍ଟିକାଳେ
ବ୍ରହ୍ମା ନାମରେ ବିଖ୍ୟାତ ହୋଇଥାଏ ହେଲେ ।
ସଂକଳ୍ପମୟ ଅଟଇ ସେହି ଯେ ପୁରୁଷ
ମନୋମୟ ମୂର୍ତ୍ତୀରେ ଯା କରେ ଅଭିଳାଷ ।
ସେହି ଅଭିଳାଷ ତାର ହୁଏ ଆବିର୍ଭୂତ
ସଂକଳ୍ପରୁ ଯାତ ଯେଣୁ ସେ ସବୁ ଅସତ ।
କେବଳ ଭ୍ରାନ୍ତିରୁ ତାହା ଦିଶେ ସତ୍ୟବତ
ଏହିପରି ଅହଂ (ଭାବ)ଜଗତ ଆକାରେ ବିସ୍ତୃତ ।
ଏହି ଭାବେ ଏ ଜଗତେ ଯେ ପ୍ରଥମେ ଜାତ
ନିଜସୃଷ୍ଟି ଦ୍ରଷ୍ଟାରୂପେ ହୁଏ ପରିଚିତ ।
କ୍ଷଣକ ମଧ୍ୟରେ ସେହୁ ଚିତ୍ ଆକାଶରେ
ପର୍ଯ୍ୟବସିତ ହୁଅନ୍ତି ଆହେ ମୁନିବରେ ।
ସ୍ୱରୂପ ବିସ୍ମୃତ ହୋଇ କ୍ଷଣକ ମଧ୍ୟରେ
ଜଗତ୍ ଭାବ ଗ୍ରହଣ ସେ କରିପାରେ, କରେ ।
ଯେଣୁ ପରମଆକାଶେ ଏହି ଯେ ଜଗତ
ଗଗନ ରୂପରେ ହୋଇଥାଏ ଅବସ୍ଥିତ ।
କିନ୍ତୁ ଆତ୍ମ ସାକ୍ଷାତ୍ କାର ହେଲେ ଉପସ୍ଥିତ
ସୃଷ୍ଟ-ଜଗତ୍‌ଭାବ ହୋଇଯାଏ ତିରୋହୀତ ।
ଫଳତଃ କେବଳ ଚିତ୍ ସଂକଳ୍ପ ଆକାରେ
ନିଜ ମଧ୍ୟେ ବିଶ୍ୱ ବୈଚିତ୍ର୍ୟକୁ ସେ ବିସ୍ତାରେ ।
ତେଣୁ ସ୍ୱପନ ନଗରୀ ପରି ଏ ଜଗତ
ଉତ୍‌ଥିତ ବିଲୀନ ହେଉଅଛି ଅବିରତ ।
ଦେଶ କାଳ ଘେନି ଯଥା କାଳ୍ପନିକ ଗିରି
ଅସ୍ତିତ୍ୱ ବିନା, ପ୍ରତୀତ ହୁଏ ଥିଲାପରି,
ଏ ମିଥ୍ୟା ଜଗତ ତଥା ଦେଶକାଳ ଘେନି
ନ ଥିଲେ ହେଁ ଥିଲାପରି ଜଣାଯାଏ ପୁଣି ।

ଆଦି ପୁରୁଷ ଯେ କର୍ମ କରେ ସମ୍ପାଦନ
ସଙ୍କଳ୍ପ ବଳେ କେବଳ କରେ ତା ପୂରଣ ।
ପରମ ତତ୍ତ୍ୱର ଯେବେ ହୁଅଇ ସାକ୍ଷାତ
ଏ ସଂସାର ଯେତେବେଳେ ହୋଇଯାଏ ଲୁପ୍ତ,
ଭେଦଜ୍ଞାନ ଯେତେବେଳେ ହୁଅଇ ବିଲୁପ୍ତ
ତେତେବେଳେ ବ୍ରାହ୍ମୀସ୍ଥିତି ହୋଇଥାଏ ପ୍ରାପ୍ତ ।
ପରମା ଚିତ୍‌ରୁ ଯଦି ନିମିଷେକ ପାଇଁ
ଦୁର୍ଭାଗ୍ୟ ବଶରୁ ଯେବେ ବିଚ୍ୟୁତି ଘଟଇ ।
ତେତେବେଳେ ନାନାଭାବେ ଘଟଇ ଅନର୍ଥ
ତାକୁ ସମ୍ଭାଳିବା ପାଇଁ କେ ନୁହେଁ ସମର୍ଥ ।
ଚିଦ୍‌ରୂପେ ବିରାଜମାନ କରିବାହିଁ ଜାଣ
ବ୍ରହ୍ମଭାବ ବୋଲି ତାହା ବିଦିତ ଭୁବନ ।
ତତ୍ତ୍ୱଜ୍ଞମାନଙ୍କ ଏହା ଅନୁଭବଗତ
ଏହି ବ୍ରହ୍ମଭାବ ନିଜ ଆତ୍ମାରେ ହିଁ ସ୍ଥିତ ।
କିନ୍ତୁ ସୃଷ୍ଟି ଦୃଢ଼ଭାବେ ହେଲେ ସୁବିସ୍ତୃତ
ଚିତ୍ ସ୍ୱରୂପତା ଆଉ ନୁହେଁ ପ୍ରକାଶିତ ।
ଦିକ୍, ଦେଶ, କାଳ, ଆଦି ସମସ୍ତ ଅସତ୍ୟ
ପରିଚ୍ଛିନ୍ନ ଭାବେ ରହି ଥାଆନ୍ତି ଜଡ଼ିତ ।
ଭୂତ ତନ୍ମାତ୍ର ସହିତ ତାଙ୍କ ସହଯୋଗ
ସର୍ଜ୍ଜନା କରଇ ଦେବ, ଦାନବ, ମାନବ ।
ବ୍ରହ୍ମସୂତ୍ରରେ ଗ୍ରନ୍ଥିତ ଏହି ବିଶ୍ୱଜାଲ
ପୁଷ୍ପମାଲ୍ୟ ପରିଶୋଭା ପାଏ କାଳ କାଳ ।
ନ ଥାଇ ସେ ବ୍ରହ୍ମ ଦୂରେ ଅବା ସମୀପରେ
ଊର୍ଦ୍ଧ୍ୱେ ଅବା ଅଧେଃ ସେହୁ ନ ଥାଇ କାହିଁରେ ।
ସେ ନୁହେଁ ତୁମ୍ଭର କିମ୍ବା ସେ ନୁହେଁ ଆମ୍ଭର
ଅଥବା ସେ ନ ହୁଅଇ ଅନ୍ୟ ବା କାହାର ।
ପୂର୍ବ ନାହିଁ, ପର ନାହିଁ, ନାହିଁ ବର୍ତ୍ତମାନ
ସତ ବା ଅସତ ତହିଁ କିଛି ନାହିଁ ଜାଣ ।
ସତ୍ୟ ଓ ଅସତ୍ୟ ମଧ୍ୟବର୍ତ୍ତୀ ନୁହେଁ ସେହି
ଅଚିନ୍ତ୍ୟ ଅବର୍ଣ୍ଣ୍ୟଭାବେ ସଦା ବିରାଜଇ ।
ଏ ମିଥ୍ୟା ବିକଳ୍ପ ଜାଲମାନଙ୍କ ପ୍ରମାତା
ସେହି ବ୍ରହ୍ମ ଚଇତନ୍ୟ ଆହେ ବ୍ରହ୍ମବେତ୍ତା ।
ପ୍ରମାତା ପ୍ରମାଣ ଇତ୍ୟାଦିର ସେ ଅତୀତ
ସବୁ କହିଲଇଁ ଯାହା ତୁମ୍ଭ ଜିଜ୍ଞାସିତ ।
କୁଶଳ ହେଉ ତୁମ୍ଭର ଆହେ ତପୀବର
ଏବେ ପ୍ରସ୍ଥାନ କରୁଛି ଆପଣା ମନ୍ଦିର ।
କହନ୍ତି ବଶିଷ୍ଠ ଶୁଣ କଉଶଲ୍ୟା ସୁତ
ଶୁଣକରି ଶିବଙ୍କର ପ୍ରସ୍ଥାନ ଉଦନ୍ତ
ତଦୀୟ ପାଦପଦ୍ମରେ ଦେଲି ପୁଷ୍ପାଞ୍ଜଳି
ସପରିବାରେ ତାଙ୍କର ପ୍ରସ୍ଥାନ ଦେଖିଲି ।
ତାଙ୍କ ଉପଦେଶମାନ ଚିନ୍ତାକରି କରି
ଆତ୍ମ ଦେବତା ପୂଜାରେ ନିଯୁକ୍ତ ରହିଲି ।
ସେ ପୂଜାରେ ଶାନ୍ତିଲାଭ କରିଲଇଁ ମୁହିଁ
ଜଡ଼ଦେବ ଉପାସନା ତେଣୁ ତେଜିଲଇଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଈଶ୍ୱର ଉପାଖ୍ୟାନେ ପରମାର୍ଥ ବିଚାର ବର୍ଣ୍ଣନେ ନାମ ଅଷ୍ଟତ୍ରିଂଶ ସର୍ଗଃ**



## ଊନଚାଳିଶ ସର୍ଗଃ
## ବିଶ୍ରାନ୍ତି ଆଗମନ

କହନ୍ତି ବଶିଷ୍ଠ ରାମ ଜଗତତ୍ତ୍ୱ ଘେନି
ଏହି ଉପଦେଶ ମୋତେ ମହେଶ ପ୍ରଦାନୀ ।
ସେହି ସବୁ ତତ୍ତ୍ୱମାନ ବୁଝିଅଛି ମୁହିଁ
ଆଶାକରେ ତୁମେ ମଧ୍ୟ ବୁଝିଛ ଗୋସାଇଁ ।
'ମହେଶୋକ୍ତ ପଦ୍ଧତିରେ' ଆତ୍ମ ଦେବାର୍ଚ୍ଚନ
କରି ଆସୁଅଛି ମୁହିଁ ହେ ରଘୁନନ୍ଦନ ।
ତେଣୁକରି ସ୍ୱଚ୍ଛଭାବେ ରହିଅଛି ମୁହିଁ
ତଥାପି ବ୍ୟାବହାରିକ କର୍ମ ସମ୍ପାଦଇ ।
କଉଣସି କ୍ଲେଶ ମୁହିଁ ସେଥିପାଇଁ ରାମ
ଲାଭ କରିନାହିଁ ଏହା ନିଶ୍ଚିତ ଜାଣିମ ।
ଉପସ୍ଥିତ କର୍ମ ଏବଂ ଆଚାରାଦିମାନ
ମୋ ଆତ୍ମଦେବ ପୂଜାର ପୁଷ୍ପାଦି ସେମାନ ।
ଏହିପରି ପୂଜାମୋର ସକଳ ସମୟେ
ଦିବସ ରଜନୀ ଅହରହ ଚାଲିଥାଏ ।
ଆହେ ରଘୁପତେ ତୁମେ ମଧ୍ୟେ ଏହିପରି
ଚିତ୍ତକୁ ଅସଙ୍ଗକର ସେ ପୂଜା ଆଚରି ।
ଶେଷରେ ଦେଖିବ ଆଉ ଦୁଃଖ ନାହିଁ ତୁମ୍ଭ
ଆତ୍ମଦେବ ପୂଜନର ଏ ଫଳ ଜାଣିମ ।
ବନ୍ଧୁ, ଧନ ନାଶେ ଯେବେ ଦୁଃଖ ପହଞ୍ଚିବ
ସେହି ଆତ୍ମ ଦେବଠାରେ ଶରଣ ପଶିବ ।
ସମ୍ପଦେ ବିପଦେ ଅବା ହରଷେ ଶୋକରେ
ଦୁଃଖେ ଭାଙ୍ଗି ନ ପଡ଼ିବ ଆହେ ରଘୁବୀରେ ।

ଏପରି ଆପଦ ଘଟିଥାଏ ସଦାକାଳେ
ଆତ୍ମଦେବ ଆଶ୍ରାକର ସୁବିଚାର ବଳେ ।
ସେ ଅପରିଚ୍ଛିନ୍ନ ଆତ୍ମା ତୁମେ ହେ ଶ୍ରୀରାମ
ଜଗତ ରୂପ ସଂସାର ଅବୟବ ତୁମ ।
ଅବୟବ ରୂପାନ୍ତରେ ହର୍ଷ ଶୋକ ତୁମ
କିମ୍ପାଇ ଘଟିବ ଆହେ ରଘୁକୁଳୋତ୍ତମ ।
ଯେଣୁ ଚିନ୍ମାତ୍ର ଅଟଇ ତୁମର ସ୍ୱରୂପ
ଜଗତ ତୁମଠୁଁ ଭିନ୍ନ ଘଟିବ କି ରୂପ ?
ତେଣୁ ତୁମଠାରେ ହେୟ ଉପାଦେୟ ବୁଦ୍ଧି
କିପରି ଘଟି ପାରିବ ଆହେ ରଘୁନିଧି ?
ତରଙ୍ଗ ହିଁ ଜଳ ପୁଣି ଜଗତହିଁ ଚିତ
ହର୍ଷ ଶୋକ ସମ୍ଭାବନା କାହିଁ ରଘୁସୁତ ?
ଆଜିଠାରୁ ଚିତ୍ ସହ ଏକରୂପ ହୋଇ
ତୁରୀୟ ଭୂମିରେ ପଦାର୍ପଣ କର ଯାଇଁ ।
ଆତ୍ମ ଦେବତାର ପୂଜା କରି କରି ରାମ
ସମୁଦ୍ର ସଦୃଶ ତୁମେ ହୋଇଯାଅ ପୂର୍ଣ୍ଣ ।
ଜଗତ ତତ୍ତ୍ୱ ଶ୍ରବଣ କରି ହେ ଶ୍ରୀରାମ
ପୂର୍ଣ୍ଣତା ଲାଭ କରିଛି ବୁଦ୍ଧି ତୁମ ଜାଣ ।
ଏବେ ମଧ୍ୟ ଯାହା କିଛି ଜ୍ଞାତବ୍ୟ ତୁମର
ଅମ୍ଳାନ ବଦନେ ତାହା କହ ରଘୁବୀର ।
ଶ୍ରୀରାମ କହନ୍ତି ଶୁଣ ଆହେ ଗୁରୁଦେବ
ପରିଜ୍ଞାତ ହୋଇଛି ମୁଁ ଯା କିଛି ଜ୍ଞାତବ୍ୟ ।
ସକଳ ସନ୍ଦେହ ମୋର ଏବେ ଦୂରୀଭୂତ
ରହିବି ମୁଁ ସଦା ତୁମଠାରେ କୃତକୃତ୍ୟ ।
କଉଣସି ଦ୍ୱୈତ ବୁଦ୍ଧି ନ ରହିଛି ମୋର
ଯା' କିଛି ଅଜ୍ଞାନ ଥିଲା ଏବେ ସବୁ ଦୂର ।
କାହାରିତ ନାହିଁ ଦେବ ଜନ୍ମ ବା ମରଣ
କଳଙ୍କ ରହି ନ ପାରେ ଆତ୍ମାଠାରେ ଜାଣ ।
ତେଣୁକରି ସର୍ବବସ୍ତୁ ଅଟେ ବ୍ରହ୍ମମୟ
ଏହା ବୁଝିପାରି ଉଦେ ମୋର ଅଭ୍ୟୁଦୟ ।
ଆଉ କୌଣସି ଆକାଂକ୍ଷା, ଜିଜ୍ଞାସା, ସଂଶୟ
ହୃଦୟ ମଧ୍ୟରେ ମୋର ନ ହୁଏ ଉଦୟ ।
ଚିତ୍ତ ମୋହର ହୋଇଛି ବିଶୁଦ୍ଧ, ନିର୍ମଳ
ଅଭ୍ୟୁଦୟର ସଙ୍କେତ ବୁଝେ ମନ ମୋର ।
ସୁମେରୁ ଗିରିର ଯଥା ଲୋଡ଼ା ନୁହେଁ ସ୍ୱର୍ଣ୍ଣ
ଉପଦେଶ ପାଇଁ ତଥା ମୋର ପ୍ରୟୋଜନ ।
ସତ ଓ ଅସତ କିମ୍ବା ଗ୍ରାହ୍ୟ ଅବା ତ୍ୟାଜ୍ୟ
ଆଉ ଏ ଭ୍ରମ ମୋ ନାହିଁ ତପସ୍ୱୀ ଆର୍ଯ୍ୟ ।
ସ୍ୱର୍ଗ ଅଭିଳାଷ ଦେବ ଏବେ ନାହିଁ ମୋର
ନରକ ପ୍ରତି ଅବଜ୍ଞା ନାହିଁ ତ ମୋହର ।
ମନ୍ଦର ପର୍ବତ ସମ ହୋଇଣ ନିଶ୍ଚଳ
ଆତ୍ମାରେ ବିରାଜମାନ ଏବେ ମୁନିବର ।
ତବ ସୁଦୟାରୁ ଦେବ ସଂସାର ସାଗରୁ
ପାର ପାଇଅଛି ମୁହିଁ ରଘୁକୁଳଗୁରୁ ।
ସମ୍ପଦ ଓ ବିପଦର ଶେଷ ସୀମା ମୁହିଁ
ଦେଖି ପାରିଅଛି ଜାଣ ଆହେ ତପୀସାଇଁ ।
ସାରବସ୍ତୁଙ୍କର ସାର ଯେ ପରମାନନ୍ଦ
ଲାଭ କରିପାରି ତାଙ୍କୁ ଅଛି ମୁଁ ଆନନ୍ଦ ।
ପୂର୍ଣ୍ଣତ୍ୱ ଲାଭ କରି ମୁଁ ଆହେ ଗୁରୁଦେବ
ସର୍ବୋତ୍ତମ ପଦେ କରିପାରି ଅଛି ଠାବ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ବିଶ୍ରାନ୍ତି ଆଗମନ ବର୍ଣ୍ଣନେ**
**ନାମ ଊନଚାଳିଶ ସର୍ଗଃ**



## ଚାଳିଶ ସର୍ଗଃ
## ଚିତ୍ ସତ୍ତା ସୂଚନା

କହନ୍ତି ବଶିଷ୍ଠ ପୁଣି ଶୁଣି ହେ ଶ୍ରୀରାମ
ଇନ୍ଦ୍ରିୟ ସହ ବିଷୟ ଯୁକ୍ତ ହେଲେ ଜାଣ,
କର୍ତ୍ତୃତ୍ୱ ବୁଦ୍ଧି ଓ ରାଗ, ଦ୍ୱେଷ ପରିହରି
ଯେଉଁ ସବୁ କର୍ମ କରାଯଏ ରୂପଧାରୀ,
କେବେହେଁ ନ ହୁଏ ତାହା ବନ୍ଧନ କାରଣ
ମୁକ୍ତ କଣ୍ଠେ କହିଛନ୍ତି ସକଳ ପ୍ରବୀଣ ।
କାମ୍ୟବସ୍ତୁ ଲାଭକରି ଜନ୍ମେ ଯେ ସନ୍ତୋଷ
କ୍ଷଣକାଳ ପରେ ନ ରହଇ ସେହି ତୋଷ ।
ସେ ରୂପ କ୍ଷଣିକ ସୁଖ ବିଜ୍ଞ ବ୍ୟକ୍ତିମାନେ
ଆକାଂକ୍ଷା କରନ୍ତି ନାହିଁ ରାମ କଦାଚନେ ।
ଅଜ୍ଞ ବ୍ୟକ୍ତି ହିଁ କେବଳ ସେ ଆକାଂକ୍ଷା କରେ
ଜନମ, ଜନମ ଦୁଃଖ ଲଭେ ସେ ସଂସାରେ ।
ଏହି ଯେଉଁ ବ୍ରହ୍ମପଦ ତୁମେ ଲଭିଅଛ
କାଳବଶ ନ ହୋଇ ତା କର ତୁମେ ତୁଚ୍ଛ ।
ଅହଂକାର କର୍ଦ୍ଦମରେ ନ ହୁଅ ଜଡ଼ିତ
ଏହି କଥା ମନେ ରଖିଥିବ ରଘୁନାଥ ।

ଜ୍ଞାନ ସୁମେରୁ ଶିଖରେ ବସିଛି ଯେ ଯାଇଁ
ଅହଂକାର-ପାତାଳେ ସେ ପଡ଼ିବ କିମ୍ପାଇ ?
ସଂସାର ରୂପ ବିକଳ୍ପ-ତୁମର ହେ ରାମ
କ୍ଷୀଣତା ଲଭିଛି ଏହା ସ୍ୱତଃସିଦ୍ଧ ଜାଣ ।
ଉନ୍ମୋଚିତ ଏବେ ତୁମ୍ଭ ଅବିଦ୍ୟାବରଣ
ସମତା ଓ ସତ୍ୟେ ପ୍ରତିଷ୍ଠିତ ଯେ ଆପଣ ।
ସ୍ୱରୂପରେ ପ୍ରତିଷ୍ଠିତ ହୋଇଛ ହେ ସୌମ୍ୟ
ସମୁଦ୍ରବତ୍ ଗାମ୍ଭୀର୍ଯ୍ୟ ତୁମ୍ଭଙ୍କୁ ଦେଖିଣ ।
ସମ୍ପୂର୍ଣ୍ଣ ରୂପେ ହୃଦୟଙ୍ଗମ ତା ମୋହର
ହୋଇ ପାରିଅଛ ଜାଣ ଆହେ ରଘୁବୀର ।
ଅସଙ୍ଗ ଆତ୍ମା ତୁମ୍ଭର ଏବେ ହେ ଶ୍ରୀରାମ
ଆଶା ନିରାଶ ମଧ୍ୟରେ ରହୁ ବିଦ୍ୟମାନ ।
ଭାବ ଓ ଅଭାବ ମଧ୍ୟେ ହେଉ ତାର ସ୍ଥିତି
ମନୋ-ବିହୀନ ରୂପେ ସେ ରହୁ ରଘୁପତି ।
ଅତ୍ମଜ୍ଞାନ ଅଭାବରେ ଅଟଇ ବନ୍ଧନ
ଆତ୍ମଜ୍ଞାନ ପ୍ରଭାବରେ କଟଇ ତା' ଜାଣ ।
ଏବେ ତୁମେ ରାମଚନ୍ଦ୍ର ଶୁଣ ମୋ ବଚନ
ଆତ୍ମବୋଧ ରାଜ୍ୟେ ତୁମେ କର ବିଚରଣ ।
ଭୋଗଜାତ ସୁଖେ ଯେବେ ଅଭିରୁଚି ନାହିଁ
ନିର୍ବିକାର ଚିତ୍ତେ ସୁଖ, ଦୁଃଖ ଯେ ଭୋଗଇ,
ବାସନା ହୀନତା ଜାଣ ତାହାଙ୍କୁ କହନ୍ତି
ଏହିକଥା ମନେରଖ ଆହେ ରଘୁପତି ।
ବାସନା ବିହୀନ ହୋଇ ତୁମେ ହେ ଶ୍ରୀରାମ
କରି ଯାଉଥାଅ ତୁମେ କର୍ତ୍ତବ୍ୟ କରମ ।
ଆସି ପହଞ୍ଚିବ ଯେବେ କୌଣସି ବିକ୍ଷୋଭ
ଗଗନ ସଦୃଶ ଅବିକ୍ଷୁବ୍ଧ ତୁମେ ହେବ ।
ଜ୍ଞାତା, ଜ୍ଞାନ, ଜ୍ଞେୟ ଏହି ତିନି ଯେ ପଦାର୍ଥ
ଏକବୋଲି ମଣୁଥିବ ଯେବେ ରଘୁନାଥ ।
ଆତ୍ମାମଧ୍ୟେ ଏହିଭାବ କଲେ ଅନୁଭବ
ଆଉ ଭବଦୁଃଖ ଭୋଗିବାକୁ ନ ପଡ଼ିବ ।
ମନର ଉତ୍‌ଥାନ କରେ ସଂସାର ଉତ୍‌ଥାନ
ମନର ବିଲୀନେ ଘଟେ ସଂସାର ବିଲୀନ ।
ବାସନା ତେଜନ ପୁଣି ପ୍ରାଣାୟାମ ବଳେ
ମନ-ଉତ୍‌ଥାନ ନିରୁଦ୍ଧ କର ରଘୁବୀରେ ।
ପ୍ରାଣର ସ୍ପନ୍ଦନ ଅଟେ ସଂସାର ଉତ୍‌ଥାନ
ସ୍ପନ୍ଦନ ରାହିତ୍ୟ ହେତୁ ସଂସାର ବିଲୀନ ।

ଅଭ୍ୟାସ, ସଂଯମ ବଳେ ତୁମେ ରଘୁବୀର
ସ୍ପନ୍ଦନ ବିହୀନକର ପ୍ରାଣକୁ ତୁମ୍ଭର ।
ଅଜ୍ଞାନରୁ ଜନମଇ ଦ୍ୱୈତଭାବ ଜ୍ଞାନ
ଅଜ୍ଞାନ ବିନାଶେ ହୋଇଯାଏ ତାହା ଲୀନ ।
ଗୁରୁଙ୍କର ଉପଦେଶ, ଶାସ୍ତ୍ରାନୁଶୀଳନ
ସଂଯମ ବଳେ ନିବାରି ଦିଅ ହେ ଅଜ୍ଞାନ ।
ତତ୍ତ୍ୱବୋଧ ଉଦୟରେ ବାସନା ବର୍ଜ୍ଜନ
ନିରୁଦ୍ଧ କରିପାରିଲେ ପ୍ରାଣର ସ୍ପନ୍ଦନ,
ଏହି ଚିତ୍ତ ହୋଇଯାଏ ସ୍ପନ୍ଦନ ବିହୀନ
ସେ ଅଚିତ୍ତ ହୁଏ ବ୍ରହ୍ମପଦରେ ବିଲୀନ ।
ବିଷୟ ଓ ଇନ୍ଦ୍ରିୟର ସଂଯୋଗରେ ରାମ
ଯେଉଁ ସୁଖମାନ ହେଉଥାଏ ଉତପନ୍ନ ।
ପ୍ରକୃତ ପକ୍ଷେ ତା ବ୍ରହ୍ମସୁଖ ବୋଲି ଜାଣ
ଏବେ ଶୁଣ ରାମ, ମନ ମରଣ କାରଣ ।
ସେ ସୁଖର ଜ୍ଞାନମୟ ଯେଉଁ ବ୍ରହ୍ମବୋଧ
ତାହାବଳେ ମନ-ନାଶ କରିବାକ ସାଧ ।
ମନର ଚିହ୍ନ ନ ରହେ ଯେତେବେଳେ ରାମ
ତାହାହିଁ ଅଟଇ ସିନା ସୁଖ ଅକୃତ୍ରିମ ।
ମନ ବିନାଶରେ ହୁଏ ଯେ ସୁଖ ଉଦୟ
ଅସୀମ ଅଟଇ ତାହା କୌଶଲ୍ୟା ତନୟ ।
ପ୍ରକାଶ ହୋଇ ନ ପାରେ ତାହା ବାକ୍ୟବଳେ
ବୁଦ୍ଧି କଳି ନ ପାରିବ ତାହା କେତେବେଳେ ।
ସମ୍ପୂର୍ଣ୍ଣ ରୂପେ, ଅକ୍ଷୟ ଜାଣ ସେହି ସୁଖ
କେବେ ହେଁ ତା ଠାରୁ ଜୀବ ନୁହଇ ବିମୁଖ ।
ଏ ସୁଖ ଉଦୟ ପାଇଁ ଯେ ମନ ବିନାଶ
ତତ୍ତ୍ୱଜ୍ଞାନୋଦୟେ ତାହା ଘଟେ ରଘୁଈଶ ।
ଭ୍ରମବଶରୁ ଏ ଚିତ୍ତ ହୁଅଇ ଉଦିତ
ଚିତ୍ତ ଉଦୟେ ସଂସାର ମୋହ ଘନିଭୂତ ।
ତତ୍ତ୍ୱଜ୍ଞ ମାନଙ୍କ ଚିତ୍ତ ଚିତ୍ତ ନୁହେଁ ଜାଣ
"ଚିତ୍ତତ୍ତ୍ୱ" ନାମ ଯେ ତାହା କଥିତ ଶ୍ରୀରାମ ।
ଭ୍ରାନ୍ତିର ଅଟଇ ଯେଉଁ ବୀଜିଭୂତ ଭାବ
ଚିତ୍ତର ଚିତ୍ତତ୍ତ୍ୱ ତାହା ଜାଣିବ ରାଘବ ।
ତତ୍ତ୍ୱବୋଧ ଉଦୟରେ ତାହାର ବିଲୟ
ତେଣୁ ଅଭାବ ନୁହଁନ୍ତି ସଦ୍‌ବସ୍ତୁ ନିଶ୍ଚୟ ।
ବିକଳ୍ପମୟ ସେ ଚିତ୍ତ ଅଟଇ ଅସତ
ଆତ୍ମବୋଧ ଉଦୟରେ ତାହା ତିରୋହିତ ।

ଏଇ ଜଗତ୍ ବିଳାସରେ ଏକମାତ୍ର ବ୍ରହ୍ମ
ପ୍ରକାଶିତ ହେଉଛନ୍ତି ନାନାଦି ରୂପେଣ ।
ତେଣୁ ବ୍ରହ୍ମ ଭିନ୍ନ ଅନ୍ୟ କିଛି ନାହିଁ ରାମ
ବ୍ରହ୍ମହିଁ ଅଟନ୍ତି ସର୍ବ କାରଣ କାରଣ ।

**ଇତିଶ୍ରୀ ଯୋଗାବାଶିଷ୍ଟେ ନିର୍ବାରଣ ପ୍ରକରଣେ**
**ଚିତ୍ତ ସତ୍ତାସୂଚନା ବର୍ଣ୍ଣନେ**
**ନାମ ଚାଳିଶ ସର୍ଗଃ**



## ଏକଚାଳିଶ ସର୍ଗଃ

## ବିଲ୍ଵ ଉପାଖ୍ୟାନ

ବଶିଷ୍ଠ କହନ୍ତି ଶୁଣ ହେ ରଘୁନନ୍ଦନ
ଅପୂର୍ବ ବୃତ୍ତାନ୍ତ ଏକ କରୁଛି ବର୍ଣ୍ଣନ ।
ଲକ୍ଷାଧିକ ଯୋଜନରୁ ଅତୀବ ବିଶାଳ
ଅକ୍ଷୟ, ଅମୃତ ସମ ଅଟେ ସେ ଅଚଳ
ମହାମେରୁ ପରି ଶୋଭାପାଏ କାଳ କାଳ ।
ପ୍ରଳୟ ବାୟୁରେ ମଧ୍ୟ ନୁହେଁ ବିଚଳିତ
ଏ ଫଳ ବୃତ୍ତାନ୍ତ ରାମ ଅତି ଚମତ୍କୃତ ।
ସକଳ ବ୍ରହ୍ମାଣ୍ଡ କରି ଏ ଫଳ ଆଶ୍ରୟ
ଯୁଗ ଯୁଗ ଧରିଛନ୍ତି କୌଶଲ୍ୟା ତନୟ ।
ନିକଟସ୍ଥ ହେଲେ ବୋଧ ହୁଅଇ ଏସନ
ଗୋଟିଏ ସୋରିଷ ପରି ତାର ଆୟତନ ।
ଅତୀନ୍ଦ୍ରିୟ ଅଟେ ଏହି ବିଲ୍ଵ ଫଳ ରସ
ପାଚିଲେ ହେଁ ଜରା ତାକୁ ନ କରଇ ଗ୍ରାସ ।
କେତେବେଳେ ଝଡ଼ି ସେହୁ ନ ପଡ଼ଇ ତଳେ
ବ୍ରହ୍ମା, ବିଷ୍ଣୁ ତା ଉତ୍ପତ୍ତି ନ ଜାଣନ୍ତି ତିଳେ ।
ଏହାର ବୃକ୍ଷ ଓ ଶାଖା ନ ଦିଶନ୍ତି ଡୋଳେ
ଘନ ପିଣ୍ଡସମ ତାହା ରହିଛି ନିଶ୍ଚଳେ ।
ନାହିଁ ତାର ମଜା, ଅଠା, ନାହିଁ ତାର ବୀଜ
ପଥର ପରି କଠିନ ଅଦ୍ଭୁତ ତା ତେଜ ।
ଗୋଟିଏ ତ ନାହିଁ ରନ୍ଧ୍ର ନିଦା ତା ଶରୀର
ଆନନ୍ଦ ରସ ତା ଦେହୁଁ ଝରେ ନିରନ୍ତର ।
ମାନବ ଠାରୁ ହିରଣ୍ୟ ଗର୍ଭର ପର୍ଯ୍ୟନ୍ତ
ସକଳ ଆନନ୍ଦ ତାର ମଜ୍ଜା ରଘୁନାଥ ।
ତାହାଛଡ଼ା ଆଉ ଯେତେ ଅବ୍ୟକ୍ତ ଆନନ୍ଦ
ଏହି ଶ୍ରୀଫଳର ମଜ୍ଜା ରଘୁକୁଳ ଚନ୍ଦ୍ର ।
ଏ ମଜ୍ଜାର ନାମ ଅଟେ ଆତ୍ମ ଚମତ୍କୃତି
ତାହା ଅଧ୍ୟାସରୁ ଭେଦ ବୁଦ୍ଧି ଉତପତି ।
ଏହି ଆତ୍ମ ଚମତ୍କୃତି ବିଦ୍ୟୁତ ସଦୃଶ
ଆତ୍ମ ପ୍ରକାଶର ରୂପ ଅଟେ ରଘୁଈଶ ।
ଅଣୁଠାରୁ ଅଣୁସେହୁ ମହାନୁ ମହାନ
ସେହି ଅଟେ ସନାତନ, ବିକାର ବିହୀନ ।
ତହାରି ପ୍ରଭାବେ ନର, ନାରୀ, ନପୁଂସକ
ଇତ୍ୟାଦି ଭେଦ ଜନମେ ହେ ରଘୁନାୟକ ।
ଆକାଶ କୁସୁମ ସମ ଜାଣ ହେ ରାଘବ
ଚିନ୍ମୟ ଆତ୍ମାରେ ଏହି ଭେଦ ଅସମ୍ଭବ ।
ତଥାପି ଏହି ସକଳ ଭେଦର ନିମିତ୍ତ
ଆତ୍ମ ଚୈତନ୍ୟ କାରଣ ଆହେ ରଘୁନାଥ ।
ବିଦ୍ୟୁତ ସଦୃଶ ଆତ୍ମପ୍ରକାଶ କେବଳ
ଏହି ଶ୍ରୀଫଳ ସ୍ଵରୂପ ଆହେ ରଘୁବୀର ।
ତେଣୁ ଏକମାତ୍ର ସତ ଅଟେ ଏହି ଫଳ
ଆବର ସେ ଫଳ ଅଦ୍ଵିତୀୟ ସର୍ବକାଳ ।
ଏ ଆତ୍ମପ୍ରକାଶ ଶକ୍ତି ଜାଣି ଅହଙ୍କାର
ସମଷ୍ଟି ବ୍ୟଷ୍ଟି ଆକାରେ ପ୍ରକାଶ ତାହାର ।
ଏହି ଅଭିମାନ ଧରି ବସେ ଚିରକାଳ
ତା ପାଇଁ ସତର୍କ ଥିବ କୌଶଲ୍ୟା ଦୁଲ୍ଲାଳ ।
ଏହି ମଜ୍ଜା ସ୍ଵରୂପରେ ଅବସ୍ଥିତ ଥାଇ
ନାନା ସଂବିତ ଶକ୍ତିରେ ପରିଣତ ହୋଇ,
ଏହା ହିଁ ସେହି ମଜ୍ଜାର ଚମତ୍କାର ଶକ୍ତି
ବିଶ୍ଵମୋହିନୀ ସେ ଶକ୍ତି ଆହେ ରଘୁପତି ।
ଅନନ୍ତ ଆକାଶ, କାଳ, ନିୟତି, ସଙ୍କଳ୍ପ
ହେୟ ଉପାଦେୟ ବୁଦ୍ଧି, ରାଗ, ଦ୍ଵେଷ, ତାପ,
ଊର୍ଦ୍ଧ୍ଵ, ଅଧଃ ଅହଂଭାବ ତ୍ଵଂ ଭାବ ପ୍ରଚଣ୍ଡ
ତଦ୍‌ଭାବ ଭୟ ସମ୍ପୂର୍ଣ୍ଣ ଏହି ଯେ ବ୍ରହ୍ମାଣ୍ଡ,
ଏହି ଶ୍ରୀଫଳରେ ସର୍ବେଛନ୍ତି ପ୍ରତିଷ୍ଠିତ
ଅତୀବ ବିସ୍ମୟକର ଏଫଳ ବୃତାନ୍ତ ।
ସୁଦୂର ନିକଟ ପୁଣି ସମ୍ମୁଖ, ପାଶ୍ଚ୍ୟାତ
ଭୂତ, ଭବିଷ୍ୟତ ବର୍ତ୍ତମାନ ଆଦି ଯେତ,
ସୁମେରୁ ଗିରି, ତତ୍ରସ୍ଥ ଦେବଗଣ ଯେତ
ସ୍ଵର୍ଗ, ନରକ, ତାରକାନିକର ସହିତ,
ଦିନ, ମାସ, ଋତୁ ଆଦି କାଳକଳା ଘେନି
ଆୟୁସହ, ଭୂତବୃନ୍ଦ, ଚନ୍ଦ୍ର, ସୂର୍ଯ୍ୟ, ବହ୍ନି,

ବିଦ୍ୟା, ଅବିଦ୍ୟା, ଆବର ଜନମ ମରଣ
ଶାସ୍ତ୍ର ଓ ଶାସ୍ତ୍ରୀୟ ଅର୍ଥ ଅଛି ଯେତେ ଜାଣ,
ଏ ବେଲ ଫଳ ମଜ୍ଜାରୁ ସକଳେ ପ୍ରକାଶ
ଧନ୍ୟ ସେହି ବେଲଫଳ ଧନ୍ୟ ତା ବିକାଶ ।
ଏହି ବିଲ୍ୱମଜ୍ଜା ରାମ ସ୍ୱଚ୍ଛ, ଶାନ୍ତ, ସୌମ୍ୟ
ସବୁରି କର୍ତ୍ତୃତ୍ୱ-ବୋଧ ଜନକ ସେ ଜାଣ ।
ତାକୁ କେହି ବାଧା ଦେଇ ନ ପାରେ ଜଗତେ
ଅଥଚ ଥାଏ ଅକର୍ତ୍ତା ଉଦାସୀନ ମତେ ।
ଅଦ୍ୱୈତ ସେ ଯେଣୁ ଧରିଥାଏ ଏକ ରୂପ
ନାନାବିଧ ବୋଧ ହୁଏ ଯେଣୁ ସର୍ବରୂପ ।
ସତ୍ୟରୂପୀ ମହାଚିତ୍-ଶକତି ଯେ ସେହି
ତାର ବିନୁ ଅନ୍ୟ କର୍ତ୍ତା ଦିଶେ ନାହିଁ କେହି ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ବିଲ୍ୱୋପାଖ୍ୟାନ ବର୍ଣ୍ଣନେ**
**ନାମ ଏକଚଳିଶ ସର୍ଗଃ**



## ବୟାଳିଶ ସର୍ଗଃ
## ଶିଳାକ ଉପଦେଶ

କହନ୍ତି ଶ୍ରୀରାମ ଆହେ ଗୁରୁଦେବ ଶୁଣ
ଆପଣ ଦେଲେ ଯେବଣ ଉପଦେଶମାନ ।
ତହିଁରୁ ବୁଝିଲି ଏହି ଶ୍ରୀଫଳ ଚରିତ
ଚିଦ୍ ଘନ-ବ୍ରହ୍ମ ତାହା ଅଟେ ବ୍ରହ୍ମାସୂତ ।
ଅହଂ, ତ୍ୱଂ ଆଦିକରି ସର୍ବ ଅହଂଭାବ
ଏ ବିଲ୍ୱ-ମଜ୍ଜା ଆକୃତି ଅଟନ୍ତି ସେ ସର୍ବ ।
ଏକତ୍ୱ ବା ଦ୍ୱୈତ୍ୱ ଭେଦ ତହିଁ କିଛି ନାହିଁ
ବେଲର ଶ୍ରୀଫଳ ନାମ ସାର୍ଥକ ଅଟଇ ।
କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ଶ୍ରୀଫଳର ମଜ୍ଜା ଅଟେ ଯେମନ୍ତ ପ୍ରକାର ।
ଜଗତକୁ ବୁଝ ରାମ କୁଷ୍ମାଣ୍ଡ ସଦୃଶ
ମେରୁ ପର୍ବତ ଅଟଇ ତାର ମଜ୍ଜା ଦେଶ ।
ଚିତକୁ ବୁଝିବ ଯଦି ଶ୍ରୀଫଳ ସଦୃଶ
ସକଳ ବ୍ରହ୍ମାଣ୍ଡ ରାମ ତାର ମଜ୍ଜାଦେଶ ।
ଚିତ୍ ରୂପ ଶ୍ରୀଫଳର ମଜ୍ଜାକୁ ହେ ରାମ
ଜନ୍ମଧ୍ୱସ୍ତ ଘନୀଭୂତ ରସକୁ ନମଣ ।
ବେଲ ଖୋଳ ଯଥା ତାର ମଜ୍ଜାର ଆଧାର
ଜଗତ୍ ବେଲ, ମଜ୍ଜାର ଆଧାର ରଘୁବୀର ।

ଅନ୍ୟକିଛି ବସ୍ତୁ ଯଦି ହୋଇ ସେ ଥାଆନ୍ତା
ସେ ରସର ପରିଣାମ ସେ ମଜ୍ଜା ହୁଅନ୍ତା ।
ସୃଷ୍ଟି ଆଧାର ପାଇଁକି ଆହେ ରଘୁବୀର
ସମ୍ଭାବନା ନାହିଁ ଜାଣ ଅପର ବସ୍ତୁର ।
ତେଣୁକରି ସର୍ବତ୍ରଗ ଏହି ଚିଦାତ୍ମାର
ଅଥବା ତାହାର ଏକ ଅଂଶ ବିଶେଷର,
ପରିଣାମ କିଛି ନୋହି ପାରେ ହେ ଶ୍ରୀରାମ
କୌଣସି ଆକୃତି ତାର ନାହିଁ ଯେଣୁ ଯାଣ ।
ତେବେ ଯାହା କିଛି ଦେଖି ପାରଛ ଶ୍ରୀରାମ
ତାହା ସବୁ ଚିତ୍ ଶ୍ରୀଫଳର ବିବର୍ତ୍ତନ ।
ତେବେ ହେ ଚନ୍ଦ୍ରବଦନ ମନ ଦେଇ ଶୁଣ
ଏ ସମ୍ବନ୍ଧେ ଯେଉଁ ଗଳ୍ପ ଅଛଇ ବର୍ଣ୍ଣନ ।
ଏପରି ଗୋଟିଏ ମହା ଶିଳା ରହିଅଛି
ଯାହାର ସ୍ପରଶ ସୁଖଜନକ ଲାଗୁଛି ।
କିନ୍ତୁ ତାହା ଅଟେ ରାମ ପ୍ରକାଶ ସ୍ୱଭାବ୍
ସୁବିସ୍ତୃତ, ସାରବାନ, ଘନ ଓ ଅକ୍ଷୋଭ ।
ସରୋବରେ କମଳର ବିକାଶ ଯେପରି
ସେ ଶିଳାରେ ସଂଖ୍ୟାତୀତ ପଦ୍ମ ସେହିପରି ।
ପରସ୍ପର ସମ୍ମିଳିତ ସେହି ପୁଷ୍ପମାନ,
କେତେ ପ୍ରସ୍ଫୁଟିତ କେତେ କଳିକା ସମାନ ।
କେତେ ଥାନ୍ତି ଊର୍ଦ୍ଧ୍ୱମୁଖୀ କେତେ ଅଧୋମୁଖୀ
ବକ୍ରଭାବେ ଅବସ୍ଥିତ କେତେ ରହିଥାନ୍ତି ।
ପରସ୍ପର ସମ୍ମିଳିତ ସେମାନଙ୍କ ମୂଳ
ମୂଳଭାଗ ସମ୍ମିଳିତ ମଧ୍ୟ ରଘୁବୀର ।
କେ ଅଟେ ମୂଳ ବିହୀନ ଊର୍ଦ୍ଧ୍ୱେ କାରମୂଳ
ଅଧୋଭାଗେ କାର ମୂଳ ଆହେ ରଘୁବୀର ।
ସସ୍ତ୍ର ସସ୍ତ୍ର ଶଙ୍ଖ ଚକ୍ର ଥାନ୍ତି ତାଙ୍କ ପାଶେ
ଏହାଶୁଣି ରାମଚନ୍ଦ୍ର କହନ୍ତି ହରଷେ ।
ଯାହା କହିଗଲ ଦେବ ସେ ସବୁ ଯଥାର୍ଥ
ସେପରି ଶିଳା ଗୋଟିଏ ଦେଖିଛି ମୋ ନେତ୍ର ।
ଶ୍ରୀହରି ନିବାସସ୍ଥାନ ଶାଳଗ୍ରାମ ମାନ
ସେହି ଶିଳାରୁ ହେ ଦେବ ହୁଅନ୍ତି ଉତ୍ପନ୍ନ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁନାଥ
ଯାହା କହିଗଲ ତୁମେ ସେ ସବୁ ଯଥାର୍ଥ ।
ଯେଉଁ ମହାଶିଳା କଥା ଏବେ ମୁଁ କହୁଛି
ସେ ଏକ ମହାର୍ଘ ବସ୍ତୁ ଜାଣ ରଘୁପତି ।

ତା ଜଠରେ ସବୁ ଅଛି, କିନ୍ତୁ କିଛି ନାହିଁ
"ଚିତ୍ ଶିଳା" ତାର ନାମ ଆହେ ରଘୁସାଇଁ
ତାହାର ଗର୍ଭରେ ଏ ଶୀଳାର ଅବସ୍ଥାନ
ଏକ ରସ ଏକାତ୍ମକ କୁଟସ୍ଥ ଓ ଘନ ।
ଯଦିଚ ଟିକିଏ ସୁଦ୍ଧା ରନ୍ଧ୍ର ନାହିଁ ତହିଁ
ତଥାପି ସମଗ୍ର ବିଶ୍ୱ ମଧ୍ୟେ ବିରାଜଇ ।
ଗଗନ, ପନ, ପୁଣି ଦିଗ ଓ ବିଦିଗ
ପୃଥିବୀ, ସମୁଦ୍ର, ନଦ, ନଦୀ, ଗିରି, ସ୍ୱର୍ଗ ।
ଏହି ଅବକାଶ ଶୂନ୍ୟ ଶୀଳାରେ ଶ୍ରୀରାମ
ସକଳ ଜଗତ ରହିଅଛି ବିଦ୍ୟମାନ ।
ଅଜ୍ଞ ଦୃଷ୍ଟିକି ପୃଥିବୀ ଦିଶଇ ପୃଥକ
ପୃଥକ ନୁହେଁ ସେ ଜାଣ ହେ ରଘୁନାୟକ ।
ସେ ନୁହେଁ ବିଶୁଦ୍ଧ ଚିତ୍ତ ନାହିଁ ତାର ରୂପ
ଏହି ଚିତ୍ ଶୀଳାର ସେ ମାୟାମୟ ରୂପ ।
ପ୍ରତିମା ଖୋଦିତ ହୋଇ ଯଥା ପ୍ରସ୍ତରରେ
ସତ ପରି ଜଣାଯାଏ ଆହେ ରଘୁବୀରେ ।
ସେହିପରି ଏହି ଚିତ୍ ଶୀଳାର ମଧ୍ୟରେ
ସତ ସ୍ୱରୂପ ଜଗତ ରହିଛି ତହିଁରେ ।
ସତ କହିବାକୁ ଗଲେ ଜାଣ ହେ ଶ୍ରୀରାମ
ଏ ସମସ୍ତ ପିଣ୍ଡିଭୂତ ସେହି ଚିତ୍ ଜାଣ ।
ଅନନ୍ତ ବ୍ରହ୍ମାଣ୍ଡମାନ ସେହି ଚିତ୍ ମଧ୍ୟେ
ବର୍ତ୍ତମାନ ରହିଅଛି ଆହେ ରଘୁନିଧେ ।
ବୀଜ ଏବଂ ପତ୍ର, ପୁଷ୍ପ ସୁଶୋଭିତ ବୃକ୍ଷ
ବୀଜ ଅଟଇ କାରଣ କାର୍ଯ୍ୟ ଅଟେ ବୃକ୍ଷ ।
ତାଙ୍କର ଏକତ୍ୱ ଭାବ ଦ୍ୱୈତଭାବ ଯୁକ୍ତ
ସେହି ଦ୍ୱୈତଭାବ ପୁଣି ଏକଭାବ ଯୁକ୍ତ ।
ଏକର ଅଭାବେ ଯେଣୁ ଅନ୍ୟର ଅଭାବ
ଏକ, ଦୁଇଙ୍କ ମଧ୍ୟରେ ରହିଛି ଏ ଭାବ ।
ଚିତ୍ ଶୀଳାର ଏହି ଯେ ଚିତ୍ ଘନଭାବ
ଜଗତ୍ ରୂପେ ବିବର୍ତ୍ତିତ ହୋଇଣ ରାଘବ ।
ଜଗତ କାରଣ ରୂପେ ସେହୁ ବିଦ୍ୟମାନ
ଚିତ୍ କେବେ ଜଡ଼ ହୋଇ ନ ପାରେ ଶ୍ରୀରାମ ।
ଚିତ୍ତର ଜଡ଼ କଳ୍ପନା ମଧ୍ୟରୁ ଶ୍ରୀରାମ
ଏହି ଜଗତ ଯେ ହୋଇଅଛି ଉତ୍ପନ୍ନ ।
ଶୀଳା ଉପରେ ଅଙ୍କିତ ଯେଉଁ ରେଖାମାନ
ସଂଖ୍ୟା ବହୁ କିନ୍ତୁ ପୃଥକ୍ ଭାବରେ ଅଙ୍କନ ।
ତେସନ ଏ ଚିତ୍ଘନ ମହାଶିଳା ପରେ
ବହୁ ବିଭିନ୍ନ ଜଗତ ପଡ଼ନ୍ତି ନେତ୍ରରେ ।
କିନ୍ତୁ ଏ ଶିଳାରୁ ସେହୁ ନ ହୁଅନ୍ତି ଭିନ୍ନ
ପୁଣି ସେମାନଙ୍କ ସଂଖ୍ୟା ବହୁ ନୁହେଁ ଜାଣ ।
ଶିଳାରେ ଅଙ୍କିତ ଯେଉଁ କମଳ ପ୍ରଭୃତି
ଶିଳ୍ପୀ ସଂକଳ୍ପ ଆକୃତି ସଦୃଶ ଦିଶନ୍ତି ।
ତାହାସବୁ ଚିରସ୍ଥାୟୀ ବୋଲି ମନେ ହୁଏ
ସଂସାର ତେସନ ଚରିସ୍ଥାୟୀ ଜଣାଯାଏ ।
ଶିଳା ଉପରେ ଅଙ୍କିତ ଯେଉଁ ରେଖାମାନ
ପ୍ରସ୍ତରମୟ ସଦୃଶ ଦିଶନ୍ତି ସେମାନ ।
ଯେଣୁ ସେମାନେ ଶିଳାରୁ ଭିନ୍ନ ନ ଦିଶନ୍ତି
ଜୀବ ଭବ ଶିବ ଚିତ୍ରୁ ଅଭିନ୍ନ ନୁହନ୍ତି ।
ପର୍ବତ ଶିଖର ମାନ ପର୍ବତୁ ଅଭିନ୍ନ
ବ୍ରହ୍ମ ମଧ୍ୟ ଜଗତଠୁଁ ନ ଅଟନ୍ତି ଭିନ୍ନ ।
ଭିନ୍ନ ଭିନ୍ନ ଶିଳ୍ପୀମାନେ ଏକ ଶିଳାପରେ
ବିଭିନ୍ନ ମୂର୍ତ୍ତି ଆଙ୍କନ୍ତି ସ୍ୱ କଳ୍ପନା ବଳେ ।
କିନ୍ତୁ ଅବ୍ୟାହତ ରହେ ଶିଳାର ଏକତ୍ୱ
ନାନାଦି କଳ୍ପନା ସତ୍ତ୍ୱେ ବ୍ରହ୍ମ ବିରାଜିତ ।
ଯେବଣ ଆକୃତି ଧରି ଯହିଁ କଳପିତ
ସେଠାରେ ସେହି ଆକାରେ ସେହି ବିରାଜିତ ।
ବାସ୍ତବିକ୍ ତାଙ୍କଠାରେ ନାହିଁ କିଛି ଭେଦ
ଭ୍ରମବଶେ ବହୁ ବ୍ରହ୍ମ କହନ୍ତି ନିର୍ବୋଧ ।
ତେଣୁ ଜାଣ ବ୍ରହ୍ମମୟ ଏ ସାରା ଜଗତ
ଯାହା ଦେଖାଯାଏ ସବୁ ବ୍ରହ୍ମ ବିବେଚିତ ।
ତେଣୁ ଏହି ଜାଗତିକ ମହାଭ୍ରାନ୍ତି ରାମ
ଶିଳାମଧ୍ୟେ ପଦ୍ମାଦିର ସନ୍ନିବେଶ ସମ ।
କେବଳ ବାସନାମୟ ସବୁ ହେ ରାଘବ
ମରୀଚିକା ଜଳ ପଛେ ଧାଇଁଛି ମାନବ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଶିଳାକ ଉପଦେଶ ବର୍ଣ୍ଣନେ**
**ନାମ ବୟାଳିଶ ସର୍ଗଃ**



## ତେୟାଳିଶ ସର୍ଗଃ

## ସତ୍ତା ଉପଦେଶ

କହନ୍ତି ବଶିଷ୍ଠ ମୁନି ଶୁଣି ରଘୁବୀର
ଅଚେତନ ଫଳସହ ତୁଳନା ଚିତ୍ତର ।

କେବଳ ଧୃଷ୍ଟତାବଶ କରିଛି ରାଘବ
କରୀ, ମକ୍ଷିକା ତୁଳନା କେବେ କି ସମ୍ଭବ ?
ଅଚେତନ ଫଳ ସମ ଚିତ୍ ଯେତେବେଳେ
ବ୍ରହ୍ମ ଦର୍ଶନେ ବିମୁଖ ହୁଏ ରଘୁବୀରେ ।
ତେତେବେଳେ ଯାଇ ସୃଷ୍ଟି ହୁଏ ପରକାଶ
ସନ୍ଧ୍ୟା ଆଗମନେ ଯଥା ହେନାର ସୁବାସ ।
ଦିନ, ମାସ, ବର୍ଷ, ଯୁଗ ଆଦି ଯେ ସପନ
ଏ ଚିତତ୍ତ୍ୱ କରି ଆସୁଥାଏ ଦରଶନ ।
ତା ମଧ୍ୟେ ନିଜ ସତ୍ତାକୁ କଲେ ନିଯୋଜିତ
ଯାହା ହୁଏ, ତାର ନାମ ସୃଷ୍ଟି, ରଘୁନାଥ ।
ସ୍ୱଗତ ଭେଦ ନୁହଇ ଏକା କଦାଚନ
ଚିତତ୍ତ୍ୱ, ସୃଷ୍ଟି ଉଭୟେ ଏକ ବୋଲି ଜାଣ ।
ଦେଶ ଓ କାଳ ସ୍ୱରୂପ ଯାହା ଦେଖାଯାଏ
ତାହା ମଧ୍ୟ ସେହି ଚିନ୍ମୟଙ୍କୁ ବୋଲାଯାଏ ।
ତେଣୁକରି ତହିଁରେ ଯେ ଭେଦ, କଳପନା
ଉଚିତ ନୁହଁଇ ଆହେ ରାମ ମହାମନା ।
ଶବ୍ଦ, ଶବ୍ଦାର୍ଥ, ବାସନା, ସଂକଳ୍ପ, ବିକଳ୍ପ
ସେ ଚିନ୍ମୟ, ଯେଣୁ ଏଥି ଜ୍ଞାତାର ସ୍ୱରୂପ ।
କୁହାଯାଇ ନ ପାରିବ ଏହାଙ୍କୁ ଅସତ
ତେଣୁ ସେହିମାନେ ସତ୍ୟ ମଧ୍ୟରେ ଗଣିତ ।
ଫଳ ମଧ୍ୟରେ ଯଦ୍ୟପି ଏକ ବସ୍ତୁ ଥାଏ
ମଞ୍ଜା, ରସ, ବୀଜ, ନାମ ତାହା ଧରିଥାଏ ।
ସେହିପରି ଏ ଚିତତ୍ତ୍ୱ ହୋଇଲେ ହେଁ ଏକ
ଏକର ବୈଚିତ୍ର୍ୟ ନାନାଭାବେ ରାଜେ ଦେଖ ।
ବହୁ ନ ହେଲେ ହେଁ ବହୁ ବୋଲାନ୍ତି ସେମାନ
ବିକାର ନ ହୋଇ ମଧ୍ୟ ବିକାର ସମ୍ପର୍ଣ୍ଣ ।
ସୂର୍ଯ୍ୟଙ୍କ ଉଦୟ, ଅସ୍ତ ଦିବା ରାତ୍ରି କରେ
ଜଗତ, ପ୍ରକାଶ, ଅପ୍ରକାଶ ଚିତ୍‌କରେ ।
ଯାହାଅଛି, ଯାହାନାହିଁ, ଯାହାକି ଅତୀତ
ଭବିଷ୍ୟତ, ବର୍ତ୍ତମାନ, ନାମେ ଯା ବିଦିତ ।
ସେମାନେ ବି ସେହି ଚିତ୍ ଶିଳାରେ ଖୋଦିତ
ପୁତଳିକା ସମ ମାତ୍ର ଆହେ ରଘୁନାଥ ।
ସେ ଚକ୍ର, କମଳ ଚିତ୍ରମାନ ସେ ଶିଳାରୁ
ପୋଛି ପକାଇବ ଯେବେ ଆହେ ଧର୍ମ ମେରୁ ।
ଶବ୍ଦାର୍ଥ ବ୍ୟତୀତ ତାହା ନ ହୁଅନ୍ତି ଆନ
ବସ୍ତୁର ଅସ୍ତିତ୍ୱ ନ ରହଇ କଦାଚନ ।

ଚିତତ୍ତ୍ୱରୁ ଜଗତ୍ ଯେବେ ହୋଇପାରେ ଭିନ୍ନ
ଜଗତ ଅସ୍ତିତ୍ୱ ଆଉ ସମ୍ଭବ କେସନ ?
ତେଣୁକରି ବ୍ରହ୍ମରୂପେ ଯାହା ଦୃଶ୍ୟ ହୁଏ
ତାହାସବୁ ଚିତ୍ ଛଡ଼ା ଅନ୍ୟ କିଛି ନୁହେଁ ।
ଅଜ୍ଞ ବ୍ୟକ୍ତି ମରୀଚିକା ଜଳ ଦେଖି ଧାଇଁ
ସୂର୍ଯ୍ୟରଶ୍ମି ମଣି ତାକୁ ବିଜ୍ଞ ନିବର୍ତ୍ତଇ
ତୁମେ ମଧ୍ୟ ସେହିପରି ଆତ୍ମାକୁ ହେ ରାମ
ସଦସତ୍‌ମୟ ଦେଖୁଅଛ ଅନୁକ୍ଷଣ ।
କିନ୍ତୁ ତୁମେ ସେହି ଚିତ୍ ସ୍ୱରୂପ ହେ ରାମ
ଚିତ୍‌ଠାରୁ ଲେଶ୍ ମାତ୍ର ନୁହଁ ହେ ଅଭିନ୍ନ ।
ଶିଳାଙ୍କିତ ଶଙ୍ଖ, ପଦ୍ମ ଯଥା ଶିଳାମୟ
ଚିତ୍ ଶିଳା ସ୍ଥିତ ଜଗତ ତଥା ଚିନ୍‌ମୟ ।
ଏ ଜଗତ ଚିତ୍ ଶିଳାର ଗର୍ଭଗତ ବୋଲି
ମନେ ହେଜ କରୁଥିବ ଆହେ ଧନୁର୍ଦ୍ଧାରୀ ।
ନିର୍ମଳ ଓ ନିରଞ୍ଜନ ସେହି ଚିତ୍ ବ୍ରହ୍ମ
ଜଗତକୁ କରୁଛନ୍ତି ସଦା ପ୍ରକାଶନ ।
ମାର୍ତ୍ତଣ୍ଡ ରୂପେ ବର୍ଷନ୍ତି ପ୍ରଚଣ୍ଡ କିରଣ
ଚନ୍ଦ୍ରମା ରୂପେ କୌମୁଦୀ କରନ୍ତି ପ୍ରଦାନ ।
ବ୍ରହ୍ମରୂପୀ ଏ ଜଗତ ବାସନା ଜନିତ
କେବଳ ସେ ଅଟେ ରାମ ଅସତ୍ୟ ଅନିତ୍ୟ ।
ବ୍ରହ୍ମାତ୍ମକ ରୂପେ ପୁଣି ସେ ଅଟଇ ନିତ୍ୟ
ତାଙ୍କ ବିନା ଅନ୍ୟ କିଛି ନାହିଁ ଏ ଜଗତ ।
ଶିଳାଙ୍କିତ ପଦ ପଦ୍ମ ଭାବରେ ନଶ୍ୱର
କିନ୍ତୁ ସେ ଅବିନଶ୍ୱର ହେଲେ ଶିଳାକାର ।
ବ୍ରହ୍ମଙ୍କ ମଧ୍ୟରେ ଯଥା ବ୍ରହ୍ମତ୍ୱ ନିହିତ
ତେସନ ଜଗତ ମଧ୍ୟ ତହିଁ ରହେ ସ୍ଥିତ ।
ସୃଷ୍ଟିକାଳରେ କାରଣ, କାରଣ ରୂପରେ
ଅବିକୃତ ଭାବେ ଥାଇ କାର୍ଯ୍ୟରୂପ ଧରେ ।
ପ୍ରଳୟ କାଳରେ କାର୍ଯ୍ୟ କାରଣ ରୂପରେ
ପରିଣତ ହୋଇଥାଏ ଆହେ ରଘୁବୀରେ ।
ମୟୂରୀ ଡିମ୍ବ ମଧ୍ୟରେ ଥାଏ ଯେଉଁ ରସ
ତହିଁରୁ ଯଥା ମୟୁରୀ ଲଭଇ ବିକାଶ ।
ଶିର, ପୁଚ୍ଛ, ପକ୍ଷ ଆଦି ପ୍ରଚ୍ଛନ୍ନରେ ଥାନ୍ତି
ତଥା ଏହି ଜଗତର ଚିତ ମଧ୍ୟେ ସ୍ଥିତି ।
ପ୍ରଳୟ କାଳରେ ସେହୁ ରହେ ଚିତତ୍ତ୍ୱରେ
ପ୍ରଳୟାନ୍ତେ ପ୍ରକାଶଇ ଜଗତ ଆକାରେ ।

ଡିମ୍ବସ୍ଥ ରସର ଥାଏ ଏକଇ ଆକୃତି
ମୟୁର ରୂପରେ ଧରିଥାଏ ନାନା କୃତି ।
ସେହିପରି ଏ ବ୍ରହ୍ମକୁ ବୁଝ ହେ ଶ୍ରୀରାମ
ଏକରୁ ବିଭିନ୍ନାକାର କରନ୍ତି ଧାରଣ ।
ତେଣୁ ଚିତତ୍ତ୍ୱରେ ରାମ ଏହି ଯେ ଜଗତ
ଓତପ୍ରୋତଭାବେ ରହିଅଛି ସେ ଜଡ଼ିତ ।

ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ
ସତ୍ତା ଉପଦେଶ ବର୍ଣ୍ଣନେ
ନାମ ତେୟାଳିଶ ସର୍ଗଃ



## ଚଉରାଳିଶ ସର୍ଗଃ

## ବ୍ରହ୍ମ ଏକତା ପ୍ରତିପାଦନ

କହନ୍ତି ବଶିଷ୍ଠ ଡିମ୍ବରସ ମଧ୍ୟେ ରାମ
ଅପ୍ରକାଶ ଭାବେ କେକୀ କରେ ଅବସ୍ଥାନ ।
ସେହିପରି ଏହି ଶୁଦ୍ଧ ଚିଦଣ୍ଡ ମଧ୍ୟରେ
ଅହଂଭାବ ଯେ ଆକାଶ ଅବସ୍ଥାନ କରେ ।
ଅନ୍ତର୍ବହି ଜପତାଦି, ଦିଗ, ଦିଗାଞ୍ଚଳ
ଅନୁନ୍ମେଷିତ ଭାବରେ ନିହିତ ତହିଁର ।
ବାସ୍ତବରେ ଯାହାଠାରୁ କିଛି ନ ଜନ୍ମଇ
ଅବିଦ୍ୟା ପ୍ରଭାବେ ତାଠୁଁ ଜଗତ ଜନ୍ମଇଁ ।
ସେହି ଚିଦ୍ ଘନାନନ୍ଦ ଶରୀର ମଧ୍ୟରେ
ପ୍ରାଣ ଆକୃତି ଧରିଣ ବିଭିନ୍ନ ରୂପରେ ।
ଭୋଗ, ପୁଣି ଭୋଗ୍ୟବସ୍ତୁ ନାନା ଚିତ୍ତ ବୃତ୍ତି
ବୈଷୟିକ ସୁଖେ ସଦା ମୋଦେ ବିଳସନ୍ତି ।
ଏହି ଆନନ୍ଦ ତାଙ୍କର ବିଷୟ ଆନନ୍ଦ
ନିରତିଶୟ ଆନନ୍ଦ ସେହି ଚିଦାନନ୍ଦ ।
ଚିଦ୍‌ଘନ ସ୍ୱରୂପରେ ସେହି ବିଦ୍ୟମାନ
ତୁମେ ସେହି ପରଂବ୍ରହ୍ମ ଆହେ ରଘୁରାଣ ।
ତୁରୀୟ ଭୂମିରେ କରେ ଯେ ବିରାଜମାନ
ମୁନି, ସିଦ୍ଧ, ତତ୍ତ୍ୱଜ୍ଞାନୀ ଆଦି ଦେବଗଣ ।
ସେ ଭୂମାନନ୍ଦର ଅନୁଭବ ଅଧିକାରୀ
ସେମାନଙ୍କୁ କୁହାଯାଏ ଆହେ ରୂପଧାରୀ ।
ଦୃଶ୍ୟ ଦର୍ଶନେ ପ୍ରାଣର ହୁଏ ଯେ ସ୍ପନ୍ଦନ
ଚିତ୍ତ ବିକ୍ଷିପ୍ତ ହେବାରୁ ଯାର ନିବନ୍ଧନ ।
ସେମାନଙ୍କ ପାଇଁ ଏହି ଆନନ୍ଦାନୁଭବ
ସମ୍ଭବ ନୁହଁଇ କେବେ ହେ ରଘୁ ପୁଙ୍ଗବ ।
ଯେବଣ ମହାତ୍ମାମାନେ ଷଷ୍ଠ ଓ ସପ୍ତମ
ଜ୍ଞାନଭୂମିରେ କରିଣ ଛନ୍ତି ପଦାର୍ପଣ ।
ବାହ୍ୟବସ୍ତୁରେ ଯେମାନେ ରହନ୍ତି ନିର୍ଲିପ୍ତ
ଯେବଣ ଯୋଗୀ ହୋଇଣ ଥାନ୍ତି ସମାଧିସ୍ଥ ।
ଏ ଭୂମାନନ୍ଦେ ହୁଅଇ ତାଙ୍କ ଅବସ୍ଥାନ
ଏ ସୁଯୋଗ ମିଳେ ଯାʼଙ୍କୁ ସେହି ଏକା ଧନ୍ୟ ।
ପରମେଶ୍ୱର ଯେସନ ଅନ୍ତର ମଧ୍ୟରେ
ସ୍ୱରୂପାନନ୍ଦେ ମଗନ ଥାନ୍ତି ନିରନ୍ତରେ ।
ଏହି ମାୟାମୟ ଜଗତକୁ ହେ ଶ୍ରୀରାମ
ସେ ମଧ କରୁଣ ଥାନ୍ତି ସୁପରିଚାଳନ ।
ଷଷ୍ଠ, ସପ୍ତମ ଭୂମିରେ ଆରୁଢ଼ ଯେ ମାନ
ଭୂମାନନ୍ଦ ଭୋଗୁଥାନ୍ତି ଅନ୍ତର ମଧ୍ୟେଣ ।
ବାହ୍ୟ ଜଗତରେ ମଧ ସେ ମହାତ୍ମା ଗଣ
ହୋଇଥାନ୍ତି ସଦା ବ୍ୟବହାର ପରାୟଣ ।
ଯଦିଚ ବାହ୍ୟ ବିଷୟେ କରନ୍ତି ବିହାର
ତହିଁରୁ ସ୍ୱରୂପାନନ୍ଦ ଉଦୟ ତାଙ୍କର ।
ତେଣୁ ତାଙ୍କ ବ୍ୟବହାର ଅଟେ ମୋଦକର
ଏ ଭୁବନ ତାଙ୍କ ପାଇଁ ଆନନ୍ଦ ଘର ।
ତେଣୁ ବିକ୍ଷେପ ବିହୀନ ଏ ମହାତ୍ମା ଗଣ
ପରମାତ୍ମା ଅନୁଭବ ତାଙ୍କ ହୃଦୟେଣ ।
କୌଣସି ଉପାଧି ନାହିଁ ପରମାତ୍ମାଙ୍କର
ସକଳ ଉପାଧି ପରେ ସ୍ଥାନ ତାହାଙ୍କର ।
କେବେତ ନୁହନ୍ତି ସେହି ନୟନ ଗୋଚର
ବିଷୟୀଭୂତ ନୁହନ୍ତି ସେ ଉପଦେଶର ।
ନିକଟେ ନ ଥାନ୍ତି କିମ୍ବା ଦୂରେ ସେ ନ ଥାନ୍ତି
ଅନୁଭବ ରାଇଜରେ ସଦା ବିହରନ୍ତି ।
କେବଳ ସେ ଅନୁଭବ ଗମ୍ୟ ବିଶୁଦ୍ଧାତ୍ମା
ଯୋଗୀ, ଋଷି, ଖୋଜି ବୁଲୁଥାନ୍ତି ତାଙ୍କ ସତ୍ତା ।
ନାହିଁ ଚିତ୍ତ, ପ୍ରାଣେନ୍ଦ୍ରିୟ, ନାହିଁ ତା ବାସନା
ନୁହେଁ ସେ ସ୍ପନ୍ଦନମୟ ରାମ ମହାମନା ।
ନୁହେଁ ଜୀବ ବା ସଂବିତ୍ ନୁହେଁ ସେ ଜଗତ
କିଛି ନୁହେଁ ସର୍ବ ମଧ୍ୟେ ଥାଏ ଅବସ୍ଥିତ ।
ନୁହେଁ ଶୂନ୍ୟ, ବା ଅଶୂନ୍ୟ ଅବା ଶୂନ୍ୟାଶୂନ୍ୟ
ଦେଶ ବା କାଳର କେବେଁ ନୁହେଁ ସେ ଅଧିନ ।
ଦେଶ, କାଳ ଆଦି ଦ୍ୱାରା ତାହାର ନିର୍ଣ୍ଣୟ
କରାଯାଇ ନ ପାରଇ କୌଶଲ୍ୟା ତନୟ ।

ପକ୍ଷାନ୍ତରେ ସେହି ନିଜେ ଦେଶକାଳ ହୋଇ
ତାଙ୍କ ଦ୍ୱାରା ପରିଚ୍ଛିନ୍ନ ହୋଇଥାନ୍ତି ସେହି ।
ଅବ୍ୟାକୃତ ହେତୁ ନୁହେଁ ସେହି ଚିଦ୍ ବ୍ରହ୍ମ
ପ୍ରକୃତ ପ୍ରଳୟ ମଧ୍ୟ ନୁହେଁ ସେହିଜାଣ ।
ସୃଷ୍ଟି କାଳେ କେବେହେଲେ କାହାଦ୍ୱାରା ସେହି
ବିକାରଗ୍ରସ୍ତ ନୁହନ୍ତି ଆହେ ରଘୁସାଇଁ ।
ତେଣୁ ସେ ନୁହନ୍ତି ସବିକାର, ନିର୍ବିକାର
ସବୁ ବିକାର ଉପରେ ସ୍ଥାନ ତାହାଙ୍କର ।
ଅସଂଖ୍ୟ ଶରୀର ଘଟ ଏହିପରି ରାମ
ଜନମ, ବିନାଶ ଲଭୁଛନ୍ତି ଅନୁକ୍ଷଣ ।
ତା ମଧ୍ୟସ୍ଥ ଆତ୍ମା ଗଗନରେ କେଉଁଠାରେ
ତାର ଚିହ୍ନମାତ୍ର ଦେଖା ନ ଯାଏ ତହିଁରେ ।
ଶରୀର ବିକାର ଦେଖି ଚିତ ଗଗନରେ
ବ୍ରହ୍ମ ବିକାର କଳ୍ପନା ହେବ କି ପ୍ରକାରେ ?
ତାହା ବୋଲି ଶରୀରାଦି ଆତ୍ମାଠାରୁ ଭିନ୍ନ
କହି ନ ଦେବ, ଯେଣୁ ତା ଆତ୍ମା ବିବର୍ତ୍ତନ ।
ବିକୃତ ହୁଅନ୍ତେ ଭ୍ରମବଶ ବୋଧଜ୍ଞାନ
ଏ ଶରୀର ଆତ୍ମାଠାରୁ ବୋଧହୁଏ ଭିନ୍ନ ।
ଆତ୍ମାମୟ ଅଟେ ଏହି ଜଗତ ସଂସାର
ନିର୍ମଳ ବୁଦ୍ଧିରେ ବୁଝିଛନ୍ତି ଜ୍ଞାନୀବର ।
ତେଣୁ ରାମ ତୁମେ ରାଜ୍ୟ ପ୍ରଜାପାଳନରେ
ନିଜକୁ ନିଯୁକ୍ତ ରଖ କର୍ତ୍ତବ୍ୟ ଦୃଷ୍ଟିରେ ।
ତେବେ ମଧ୍ୟ ନିର୍ବିକାର ଆତ୍ମାକୁ ହେ ରାମ
ଦର୍ଶନ କରି ନିର୍ମଳ ଭାବେ କାଟ ଦିନ ।
ସ୍ଥାବର ଜଙ୍ଗମପୂର୍ଣ୍ଣ ଏହି ଯେ ଜଗତ
ସେ ନିର୍ମଳ ନିରୂପାଧି ବ୍ରହ୍ମ ହିଁ ସମସ୍ତ ।
ଆଦି ଅନ୍ତ ବିହୀନ ସେ ନିତ୍ୟ ନିର୍ବିକାର
ଶାନ୍ତ ଓ ସମ ଇତ୍ୟାଦି ଗୁଣର ଆକର ।
କାଳ, କର୍ମ, କାରଣ ଓ କର୍ତ୍ତା, ସୃଷ୍ଟି ସ୍ଥିତି
ଲୟ, ନିଦାନ, ସ୍ମରଣ, ବ୍ରହ୍ମହିଁ ଅଟନ୍ତି ।
ହୃଦୟଙ୍ଗମ କରିଛ ଯେଣୁ ଏହା ରାମ
କାହିଁ ଏ ସଂସାର ଚକ୍ରେ ତୁମର ଭ୍ରମଣ ?

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ବ୍ରହ୍ମ ଏକତା ପ୍ରତିପାଦନ ବର୍ଣ୍ଣନେ**
**ନାମ ଚଉରାଳିଶ ସର୍ଗଃ ।**



## ପଇଁଚାଳିଶ ସର୍ଗଃ
## ସ୍ମୃତି ବିଚାର ଯୋଗ

କହନ୍ତି ଶ୍ରୀରାମ ଶୁଣ ଆହେ ଭଗବାନ
କାଳ, ଦେଶ ଆଦି ଦ୍ୱାରା ଯେ ଅପରିଚ୍ଛିନ୍ନ ।
ସେ ବ୍ରହ୍ମର ଯେଣୁକରି ବିକାରାଦି ନାହିଁ
ଭାବା ଭାବମୟ ଭବ କେହ୍ନେ ଜନମଇ ?
ବଶିଷ୍ଠ କହନ୍ତି ଶୁଣ ହେ ରଘୁନନ୍ଦନ
ଦୁଗ୍ଧରୁ ଦଧିର ହୋଇଥାଏ ଉତପନ୍ନ ।
ସେହି ଦଧି ପୁଣି ଦୁଗ୍ଧ ହୋଇ ନ ପାରଇ
ତେଣୁ ଏ ଦଧି ଦୁଗ୍ଧର ବିକାର ଅଟଇ ।
ବୃଦ୍ଧ କି ବାଳକ ହୋଇପାରେ ହେ ଶ୍ରୀରାମ
ବାଲ୍ୟାବସ୍ଥା ବିତି ଗଲେ ନ ଫେରଇ ପୁଣ
ବ୍ରହ୍ମରୁ ଯେଉଁ ଜଗତ ହୁଏ ଆବିର୍ଭୂତ ।
ବ୍ରହ୍ମହିଁ ଅଟନ୍ତି ତାର ଆଦି, ମଧ୍ୟ ଅନ୍ତ ।
ଦୁଗ୍ଧ ଦଧି ସମ ତହିଁ କୌଣସି ବିକାର
ବ୍ରହ୍ମଠାରେ ନାହିଁ ଜାଣ ଆହେ ରଘୁବୀର ।
ଆଦି, ମଧ୍ୟ, ଅନ୍ତେ ଯେହୁ ଏକଇ ପ୍ରକାର
ସମ୍ଭବି ନ ପାରେ ତହିଁ ଯେଣୁ ଏ ବିକାର ।
ତେଣୁ କହନ୍ତି ଜଗତ ବ୍ରହ୍ମର ବିବର୍ତ୍ତ
ବ୍ରହ୍ମ ଛଡ଼ା ଅନ୍ୟ କିଛି ନୁହେଁ ରଘୁନାଥ ।
ଯେଣୁ ବ୍ରହ୍ମେ ଜ୍ଞାନଜ୍ଞେୟ ଆଦି କିଛି ନାହିଁ
କେବଳ ସେ ବ୍ରହ୍ମ ଶବ୍ଦ ବାଚ୍ୟ ରଘୁରାଇ ।
ଚିନ୍ମୟ ଆତ୍ମା ସଦୃଶ କାହାରି ସହିତ
କୌଣସି ସଂସ୍ପର୍ଶ ନାହିଁ ତାର ରଘୁନାଥ ।
ଆଦିରେ ନାହିଁ ବିକାର, ନ ଥାଇ ଅନ୍ତରେ
ତେଣୁ ତାକୁ ନିର୍ବିକାର ବୋଲନ୍ତି ସକଳେ ।
ମଧ୍ୟେ ରହେ ଯେ ବିକାର ଅସଂସ୍ପୃଷ୍ଟ ଭାବ
ସମସ୍ତଙ୍କ ଜ୍ଞାନଗମ୍ୟ ନୁହେଁ ତା ରାଘବ ।
ମଧ୍ୟେ ଯେ ବିକାର ମଳ ହୁଅଇ ପ୍ରତୀତ
ଅଜ୍ଞାନ ହେତୁରୁ ତାହା ଘଟେ ରଘୁନାଥ ।
କିନ୍ତୁ, ଆତ୍ମା ସମଭାବେ ସର୍ବଦା ସର୍ବତ୍ର
ବିରାଜମାନ କରଇ ଆହେ ରଘୁନାଥ ।
ବିକାର ହିଁ ଘଟିଥାଏ କେବଳ ଆତ୍ମାରେ
ବିକୃତ ନୁହଁଇ ଆତ୍ମତତ୍ତ୍ୱ ତା ଫଳରେ ।

କେବଳ ସେ ଆତ୍ମତତ୍ତ୍ୱ ଅଟଇ ଯେ ନିତ୍ୟ
ଆବର ଅରୂପ, ଏକ ସେହି ଆତ୍ମତତ୍ତ୍ୱ,
ତେଣୁ ଈଶ୍ୱର ବୋଲାଇ ହେ ରଘୁନାୟକ
ଏହିକଥା ଜ୍ଞାନ କରିଥାନ୍ତି ସୁବିବେକ ।
ଶ୍ରୀରାମ କହନ୍ତି ଆହେ ବ୍ରହ୍ମାଙ୍କ କୁମର
ସମ୍ବିତ୍ ବ୍ରହ୍ମରେ ଅବିଦ୍ୟା ଉଦେ କି ପ୍ରକାର ।
କହନ୍ତି ବଶିଷ୍ଠ ଶୁଣ ଏବେ ରଘୁବୀର
ତାକୁ ମଧ ବ୍ରହ୍ମ ବୋଲି କର ହେ ବିଚାର ।
ବସ୍ତୁତଃ ଅବିଦ୍ୟା ବୋଲି ନାହିଁ କିଛି ଜାଣ
ଏହା ହିଁ ସ୍ଥିର ସିଦ୍ଧାନ୍ତ ହେ ରଘୁନନ୍ଦନ ।
ତେବେ ଯେଉଁ ଅବିଦ୍ୟାର ଅଛଇ ବର୍ଣ୍ଣନ
ବ୍ରହ୍ମକୁ ବୁଝାଇବାରେ ଅସ୍ତ୍ର ତାହା ଜାଣ ।
ଅଗ୍ନି, ବାୟୁ, ସ୍ୱର୍ଗ, ଦିଗ, ପୃଥିବୀ, ଆକାଶ
ନାହିଁ ତାର ଆଦି, ଅନ୍ତ ଆହେ ରଘୁଈଶ ।
ତୁମେ, ଆମେ ଏ ସମସ୍ତ ବ୍ରହ୍ମ ରଘୁଈଶ
ଅବିଦ୍ୟା ତାହାକୁ ତିଳେ ନ କରଇ ସ୍ପର୍ଶ ।
ଅବିଦ୍ୟା କେବଳ ଭ୍ରମାତ୍ମକ ବୋଲି ଜାଣ
ନାମତଃ ବର୍ତ୍ତମାନ ସେ ନାହିଁ ତାର ଚିହ୍ନ ।
ଯାହାର ଅସ୍ତିତ୍ୱ ମିଥ୍ୟା ଆହେ ରଘୁବୀର
ଉଦୟ ତାହାର ଅବା ହେବ କି ପ୍ରକାର ?
ଉପଶମ ପ୍ରକରଣେ ଆହେ ଗୁରୁଦେବ
ଅବିଦ୍ୟା ବିଷୟେ ମୋତେ କହିଛ ଯା ସର୍ବ ।
ସ୍ୱରୂପ ତାହାର ଏବେ କରନ୍ତୁ ବର୍ଣ୍ଣନ
ସେଦିନୁ ସଦା ଅଥୟ ହେଉଛି ମୋ ମନ ।
କହନ୍ତି ବଶିଷ୍ଠ ରାମ ତୁମେ ସେତେବେଳେ
ବୁଡ଼ି ରହିଥିଲ ବାବୁ ଅଜ୍ଞାନ ତିମିରେ ।
ଏ ଅବିଦ୍ୟା, ଏହା ଜୀବ, କଳ୍ପନା କରିଣ
ଆତ୍ମତତ୍ତ୍ୱ ବୁଝିବାକୁ କହିଥିଲି ରାମ ।
ପ୍ରବୁଦ୍ଧ ହୋଇ ନ ଥାଏ ଯେଉଁ ଯାଏ ମନ
ଶାସ୍ତ୍ରୋକ୍ତ ଅବିଦ୍ୟା ଉପଦେଶ ବିନା ରାମ,
ଅନ୍ୟ କୌଣସି ଉପାୟେ ତେତେଦିନ ଯାଏ
ଜ୍ଞାନ ଉଦୟ ନୋହିବ ଆହେ ରଘୁରାଏ ।
ମାତ୍ର ଯୁକ୍ତି ଛଳେ ସେହି ଅବିଦ୍ୟାକୁ ରାମ
ଜ୍ଞାନ ପାଇଁ କରାଯାଏ ତା ଅନୁସରଣ ।
କାଳେ, ତାହାକୁ ଆତ୍ମାର ସହିତ ସଂଯୁକ୍ତ
କରିବା ପାଇଁ କ୍ଷମତା ଜନ୍ମେ ରଘୁନାଥ ।

ଏ ସର୍ବଜଗତ ଅଟେ ଖାଲି ବ୍ରହ୍ମମୟ
ଅଜ୍ଞଙ୍କୁ ଏ ଉପଦେଶ ଯଦି ତୁମେ ଦିଅ ।
ବନ୍ଧୁ ଭାବି ସ୍ଥାଣୁ ପାଶେ ଦୁଃଖ କଲାପରି
ଉଭୟ ସମାନ ହେବେ ଆହେ ରୂପଧାରୀ ।
ଯୁକ୍ତିବଳେ ଅଜ୍ଞ ବ୍ୟକ୍ତ ବୋଧ ଜନମଇ
ବିଜ୍ଞ ବ୍ୟକ୍ତି ପାଇଁ ତତ୍ତ୍ୱ ଜ୍ଞାନ ଲୋଡ଼ା ହୋଇ ।
ଏତେକାଳ ତୁମେ ଜାଣ ଥିଲ ଜ୍ଞାନ ହୀନ
ଏବେ ପ୍ରବୁଦ୍ଧ ହୋଇଛ କୌଶଲ୍ୟା ନନ୍ଦନ ।
ଅତଏବ ଯେଉଁ ଉପଦେଶ ତୁମ ପାଇଁ
ଆବଶ୍ୟକ, ତାହା ଏବେ କହୁଛି ବୁଝାଇ ।
ମନ, କର୍ଣ୍ଣ ଦେଇ ତାହା ଶୁଣ ହେ ଶ୍ରୀରାମ
ବୋଧଜ୍ଞାନ ଜନମିଲେ ହେବ ପୂର୍ଣ୍ଣକାମ ।
ହେ ରାମ ! ଏହି ଜଗତ ଯେଣୁ ଅଟେ ବ୍ରହ୍ମ
ସେ ବ୍ରହ୍ମର ଅନ୍ତର୍ଗତ ତୁମେ ହେ ଶ୍ରୀରାମ ।
ଏହି ବ୍ରହ୍ମ ବୋଧ ଜ୍ଞାନେ ଉଦ୍‌ବୁଦ୍ଧ ହୋଇଣ
ଇଚ୍ଛା ଅନୁସାରେ କର୍ମ କର ସମ୍ପାଦନ ।
ତାହାଦ୍ୱାରା ତୁମ ବ୍ରହ୍ମତ୍ୱର କିଛି କ୍ଷତି
ହେବ ନାହିଁ ଜାଣିରଖ ଆହେ ରଘୁପତି ।
ଏହି ଜଗତ ଭ୍ରାନ୍ତିର ଅନ୍ତର୍ଦେଶେ ଜାଣ
ଜ୍ୟୋତିର୍ମୟ "ଅହଂ ବ୍ରହ୍ମ" ଛନ୍ତି ବିଦ୍ୟମାନ ।
ଯେ ସକଳ କର୍ମ କରୁଅଛ ହେ ଶ୍ରୀରାମ
ସେହି "ଅହଂ ବ୍ରହ୍ମ" ତହିଁ ଲିପ୍ତ ନୁହେଁ ଜାଣ ।
ଗମନ, ଶୟନ, ଆଦି ସର୍ବ ସମୟରେ
ଅନୁଭବ କରୁଥିବ ଏମନ୍ତ ଭାବରେ ।
"ମୁହିଁ ସେହି ଜ୍ୟୋତିର୍ମୟ ଚଇତନ୍ୟ ବ୍ରହ୍ମ"
ଅନ୍ୟ କିଛି ନୁହେଁ ମୁହିଁ ବିନା ସେ ଚୈତନ୍ୟ ।
ମମତା ବିହୀନ, ପ୍ରାଜ୍ଞ, ଅହଂକାର ଶୂନ୍ୟ ।
ଯଦି ହୋଇଥାଅ ଆହେ କୌଶଲ୍ୟା ନନ୍ଦନ ।
ସେହି ଶାନ୍ତ ଚିତ୍ ବ୍ରହ୍ମ ଏବେ ତୁମେ ଲଭ
ଜୀବନ ସାର୍ଥକ କର ହେ ରଘୁ ପୁଙ୍ଗବ ।
ସେହି ଏକାନ୍ତ, ବିଶୁଦ୍ଧ ଅନାଦି ନିଧନ
ଶ୍ରୁତି କଥିତ ପରମପଦ ଯେଉଁ ବ୍ରହ୍ମ ।
ତୁମେ ସେହି ବୋଲି ନିଜେ କର ଅନୁଭବ
ରଘୁକୁଳର ସୁଖ୍ୟାତି ଗାଉ ସଦା ଭବ ।
ଶତ ଶତ ଘଟମାନ ଆହେ ରଘୁବୀରେ
ନିମତ ହୁଅନ୍ତି ଯଥା ଏକ ମୃତ୍ତିକାରେ ।

ସେପରି, ଆତ୍ମା ପ୍ରକୃତି, ବିଦ୍ୟା ଓ ଜଗତ
ନାମରେ, ଯା କିଛି ହୋଇଥାଏ ପରିଚିତ,
ସେହିସବୁ ପଦାର୍ଥରେ ସେହି ଏକ ବ୍ରହ୍ମ
ବିଦ୍ୟମାନ ରହିଛନ୍ତି କୌଶଲ୍ୟା ନନ୍ଦନ ।
ଆତ୍ମା ଓ ପ୍ରକୃତି କେବେ ଭିନ୍ନ ନ ହୁଅନ୍ତି
ବାସ୍ତବରେ ଯେହୁ ଆତ୍ମା ସେ ଅଟେ ପ୍ରକୃତି ।
ସଲିଳା ବର୍ତ୍ତର, କ୍ରିୟାଶୀଳତାର ସମ
ଯେବଣ କ୍ରିୟାଶୀଳତା ଆତ୍ମାର ହେ ରାମ ।
ତାହାର ନାମ ପ୍ରକୃତି ଏହାହିଁ ସିଦ୍ଧାନ୍ତ
ଏହି ସତ୍ୟ ବିନା ନାହିଁ ଅନ୍ୟ କିଛି ସତ୍ୟ ।
ବାୟୁ ଓ ପ୍ରବାହ ଯଥା ନାମ ମାତ୍ରେ ଭିନ୍ନ
ବାସ୍ତବରେ ସେହି ଦୁହେଁ ଅଟନ୍ତି ଅଭିନ୍ନ ।
ସେ ପରି ଆତ୍ମା, ପ୍ରକୃତି ନାମ ମାତ୍ରେ ଭିନ୍ନ
ବାସ୍ତବରେ ସେହି ଦୁହେଁ ଏକ ବୋଲି ଜାଣ ।
ଅଜ୍ଞାନ ବଶତ ଜାଣ ହେ ରଘୁନନ୍ଦନ
ଆତ୍ମା ଓ ପ୍ରକୃତିମଧ୍ୟେ ଜନ୍ମେ ଭେଦଜ୍ଞାନ ।
ଜ୍ଞାନୋଦୟେ ଏହି ଭେଦ ଅସ୍ତଯାଏ ଜାଣ
ଜ୍ଞାନର ପ୍ରଭାବ କିଛି ନୁହଇ ନିଉନ ।
ଚିତ୍ ଭୂମିରେ ବୁଣିଲେ କଳପନାବୀଜ
ଚିନ୍ତା ଅଙ୍କୁର ଜନମେ ଧରି ନବ ତେଜ ।
ଏ ଭବ ମହାଅରଣ୍ୟ ତହିଁର ମଧ୍ୟରୁ
କ୍ରମଶ ବିସ୍ତାର ଲଭେ ଆହେ ଧର୍ମମେରୁ ।
ଯଦି କେହି ନିଜ ଆତ୍ମ ଜ୍ଞାନାଗ୍ନି ବଳରେ
ଏହି ବୀଜକୁ ଦଗଧ କରିଦେଇପାରେ ।
ତହିଁରୁ ଅଙ୍କୁରୋଦ୍‌ଗମ ସମ୍ଭାବନା ରାମ
କସ୍ମିନ କାଳେ ନ ହୁଅଇ ହେଜରଖ ମନ ।
ଯେଣୁ ତୁମେ ଆତ୍ମଜ୍ଞାନ ଲଭିଛ ଶ୍ରୀରାମ
ମାନସପଟରୁ ପୋଛିଦିଅ ଦ୍ୱୈତଜ୍ଞାନ ।
ଆତ୍ମାର ଏକତ୍ୱ ଭାବେ ଅଧିରୁଢ଼ ହୋଇ
ଅଭୟ ସମ୍ପଦ ଲାଭ କର ରଘୁସାଇଁ ।
ଆତ୍ମାହିଁ କେବଳ ଅଛି ଜାଣିରଖ ରାମ
ଏହି ଉପଦେଶ ସର୍ବସାର ବୋଲିଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ସ୍ଥିତି ବିଚାର ଯୋଗ ବର୍ଣ୍ଣନେ**
**ନାମ ପଇଁଚାଳିଶ ସର୍ଗଃ**



## ଛୟାଳିଶ ସର୍ଗଃ
## ସଂବେଦନ ବିଚାର

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ତବ ଦତ୍ତ ବ୍ରହ୍ମଜ୍ଞାନାମୃତେ ହେଲି ପୂର୍ଣ୍ଣ ।
ହେ ଗୁରୋ ! ପୁନଶ୍ଚ ଯେଉଁ ପ୍ରଶ୍ନ ମୁଁ କରୁଛି
ବ୍ରହ୍ମର ବିଳାସ ତାହା ବୁଝି ମୁଁ ପାରୁଛି ।
ତଦ୍ଦ୍ୱାରା ମୋହର ଏବଂ ଅନ୍ୟ ଲୋକଙ୍କର
ବ୍ରହ୍ମଜ୍ଞାନ ଦୃଢ଼ୀଭୂତ ହେବ ତପୀବର ।
ହେ ଦେବ ଆପଣ ମୋର ପିତୃତୁଲ୍ୟ ଜାଣ ।
ମୁଁ ମଧ୍ୟ ଆପଣଙ୍କର ପୁତ୍ରସରିସମ ।
ଅସନ୍ତୁଷ୍ଟ ନୁହେଁ ତୁମେ ମୋର ପ୍ରଶ୍ନ ଶୁଣି
ଶିଷ୍ୟର ସର୍ବ ସଂଶୟ ଗୁରୁସିନା ହାଣି ।
ମୃତ ବ୍ୟକ୍ତିଙ୍କ ନୟନ କର୍ଣ୍ଣାଦି ଇନ୍ଦ୍ରିୟ
ବର୍ତ୍ତମାନ ଦେଖାଯାଏ ଜୀବନ୍ତ ପରାୟ ।
ବିଷୟ ଗ୍ରହଣ ପାଇଁ କିମ୍ବା ସେ ଅକ୍ଷମ
ସନ୍ଦେହ ମୋଚନ ମୋର କର ତପୋଧନ ।
କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଇନ୍ଦ୍ରିୟ ଯୋଗେ ବିଷୟ ଯେ କରେ ଦର୍ଶନ ।
ଚଇତନ୍ୟ ଭିନ୍ନ ସେହୁ ଅନ୍ୟକିଛି ନୁହେଁ
ହୃଦକମଳେ ଚୈତନ୍ୟ ଦୀପପରି ଶୋହେ ।
ନିର୍ମଳ ଚୈତନ୍ୟ ପୂର୍ବ ବାସନାନୁସରି
ନିଜକୁ କଳ୍ପନାକରେ ପୂର୍ଯ୍ୟଷ୍ଟକ ପରି ।
ସେହି ଅଟନ୍ତି ପ୍ରକୃତି, କୌଶଲ୍ୟା ତନୟ
ସେହି ପ୍ରକୃତିରୁ ଜନ୍ମ ବିଷୟ, ଇନ୍ଦ୍ରିୟ ।
ପୂର୍ଯ୍ୟଷ୍ଟକ ସମ୍ବଳିତ୍ ଏ ଚୈତନ୍ୟ ଜୀବ
ଶରୀରକୁ ଛାଡ଼ିଗଲେ ଦେହ ହୁଏ ଶବ ।
ତେଣୁକରି ରାମ ! ଏହି ଇନ୍ଦ୍ରିୟାଦି ଗଣ
ବିଷୟ ଗ୍ରହଣ ପାଇଁ ନୁହନ୍ତି ସକ୍ଷମ ।
କହନ୍ତି ଶ୍ରୀରାମ ଗୁରୁଦେବ ତେବେ ଶୁଣ
ପୂର୍ଯ୍ୟଷ୍ଟକ ଘେନି କିଛି କହନ୍ତୁ ଆପଣ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁରାଜ
ଅନାଦି ନିଧନ ବ୍ରହ୍ମ, ଜଗତର ବୀଜ ।
ଅପଞ୍ଚୀକୃତ ଆକାଶ ଆଦି ସୂକ୍ଷ୍ମଭୂତ
ପ୍ରଥମେ ତାର ସର୍ଜନା ଆହେ ରଘୁନାଥ ।
ତା ତହୁଁ ଲିଙ୍ଗଶରୀର ହୁଅଇ ଜନମ
ଆବର ଯେ ପଞ୍ଚୀକୃତ, ପଞ୍ଚଭୂତ ଜାଣ ।

ଏମାନଙ୍କୁ ନେଇ ଏହି ସୃଷ୍ଟିକୁ ସର୍ଜ୍ଜିଣ
ତତପରେ ଜୀବରୂପ କରନ୍ତି ଧାରଣ ।
ବାସନା ବଳରେ ସେହି ଜୀବ ପୃଷ୍ଟହୋଇ
ବାହ୍ୟାଭ୍ୟନ୍ତର କ୍ରିୟାରେ ସ୍ପନ୍ଦିତ ହୁଅଇ ।
ସେ ସ୍ପନ୍ଦନ ଫଳେ ସେହୁ କରଇ ଧାରଣ
ନାନା ଅଭିମାନ ପୁଣି ନାନା ନାମ ମାନ ।
ଅହଂଭାବନାର ବଳେ ହୁଏ ଅହଂକାର
ମନନ ଧର୍ମ ହେତୁରୁ ଜନମ ମନର ।
ନିଶ୍ଚୟତା ବୋଧ କରି ବୁଦ୍ଧି ରୂପ ଧରେ
ଇନ୍ଦ୍ରିୟ ହୁଏ ସେ ଦୃଶ୍ୟ ଦର୍ଶନ ଇଚ୍ଛାରେ ।
ଏହି ଭାବ ହେତୁ ପୂର୍ଯ୍ୟଷ୍ଟକ ସେ ବୋଲାଏ
ଜଗତ ସର୍ଜ୍ଜନା ତାହା ଦ୍ୱାରା ହୋଇଥାଏ ।
ଯେ ସମ୍ବିତ୍ ଜ୍ଞାନ ଆଉ କର୍ମେନ୍ଦ୍ରିୟ ବଳେ
ଜ୍ଞାତା, କର୍ତ୍ତା ବଳେ ତାର ଫଳ ଭୋଗ କରେ ।
ନିର୍ଲିପ୍ତ ଭାବରେ ଥାଇ ସବୁ ପ୍ରକାଶଇ
ତେଣୁ କରି ସାଖି ଆଖ୍ୟା ସେହୁ ଧରିଥାଇ ।
ଜଡ଼ ଅଂଶର ପ୍ରାଧାନ୍ୟ ହୁଏ ଯେତେବେଳେ
ପୂର୍ଯ୍ୟଷ୍ଟକ ନାମ ଧରେ ସେହୁ ସେତେବେଳେ ।
କାଳକ୍ରମେ ସ୍ୱଭାବର ଅନୁବର୍ତ୍ତୀ ହୋଇ
ନାନା ବାସନାରୁ ନାନା ଆକୃତି ଧରଇ ।
ଜଳ ପାଇ ବୀଜ ଯଥା ବୃକ୍ଷରୂପ ଧରି
ଏ ସମଷ୍ଟି, ବ୍ୟଷ୍ଟି ଜୀବ ମଧ୍ୟ ସେହିପରି ।
ବାସନା ଜଳ ସିଞ୍ଚନେ ହୋଇଣ ବର୍ଦ୍ଧିତ
ଜଗତ ରୂପରେ ସେହୁ ହୁଏ ଅଭିବ୍ୟକ୍ତ ।
ନୁହେଁ ମୁହିଁ ଚିଦ୍‌ଆତ୍ମା, ମୁହିଁ ଏ ଶରୀର
ମିଥ୍ୟା ଜ୍ଞାନ ହେତୁ ଏହି ବୁଦ୍ଧିର ସଞ୍ଚାର ।
ବିଶୁଦ୍ଧ ଜାତ ବଶତ ତହୁଁ କେହି କେହି
ପ୍ରଥମେ ଜନ୍ମେ ସେ ମଧ୍ୟ ଯାନ୍ତି ମୁକ୍ତିପାଇ ।
ପୁଣି କେହି କେହି ବହୁ ଜନ୍ମ ଭୋଗ କରି
ଆତ୍ମଜ୍ଞାନ ଲାଭ ଭବୁ ହୋଇଯାନ୍ତି ପାରି ।
ହେ ରାମ ! ପୂର୍ଯ୍ୟଷ୍ଟକରୁ ଏହି ପରକାରେ
ଜୀବଗଣଙ୍କର ସୃଷ୍ଟି ହୋଇଛି ବିଶ୍ୱରେ ।
ପୂର୍ଯ୍ୟଷ୍ଟକେ ଚଇତନ୍ୟ ହୁଅନ୍ତେ ଫଳିତ
ପରିଚ୍ଛିନ୍ନଭାବ ତାକୁ ହୁଏ ପରାପତ ।
ଇନ୍ଦ୍ରିୟ ଜଡ଼ିତ ମନ ଦେହ ରୂପ ଧରେ
ଜୀବ ଚୈତନ୍ୟ ଇନ୍ଦ୍ରିୟମାନଙ୍କ ବଳରେ,

ସୁଖ ଦୁଃଖ ଆଦି ସବୁ କରେ ଅନୁଭବ
ବାହ୍ୟ ଜଗତ ବିଷୟ କାହୁଁ ସେ ଜାଣିବ ।
ବାହ୍ୟବସ୍ତୁ ଉପଲବ୍ଧି ସମୟ ଆସିଲେ
ଚକ୍ଷ୍ୱାଦି ସ୍ଥୁଳ ଇନ୍ଦ୍ରିୟମାନଙ୍କ ଯୋଗରେ ।
ଜୀବ ଚଇତନ୍ୟ ସେହି ବାହ୍ୟ ପଦାର୍ଥରେ
ପତିତ ହୋଇଣ ତଦାକାର ରୂପ ଧରେ ।
ଆଉ ମଧ୍ୟ ତାହାକୁ ସେ କରେ ଅନୁଭବ
ଏହି ଗୁଢ଼ତତ୍ତ୍ୱ କଥା ବୁଝହେ ରାଘବ !
ଜୀବ ଚଇତନ୍ୟଯୁକ୍ତ ଦେହୀମାନଙ୍କର
ବାହ୍ୟ ପଦାର୍ଥ ସହିତ ସମ୍ବନ୍ଧ ତାଙ୍କର ।
ଇନ୍ଦ୍ରିୟ ବଳରେ ତାଙ୍କ ବିଷୟାନୁଭବ
ତହିଁର କାରଣ ହୋଇଥାଏ ହେ ରାଘବ ।
ମୃତବ୍ୟକ୍ତିମାନଙ୍କର ତାହା ନ ଘଟଇ
ଜୀବ ଚଇତନ୍ୟ ଯେଣୁ ତାଙ୍କର ନ ଥାଇ ।
ନେତ୍ରପଥେ ବାହ୍ୟବସ୍ତୁ ଅନ୍ତକରଣରେ
ପ୍ରତିବିମ୍ବିତ ହୁଅଇ ଜାଣ ରଘୁବୀରେ ।
ସେହି ପ୍ରତିବିମ୍ବ ଜୀବ ଚୈତନ୍ୟ ସହିତ
ମିଳିତ ହୁଅନ୍ତେ, ହୁଏ ବିଷୟାନୁଭୂତ ।
ଏହି ପଦ୍ଧତିରେ ଜାଣ ଇନ୍ଦ୍ରିୟଜ ଜ୍ଞାନ
ଲାଭ ହୋଇଥାଏ ଆହେ କୌଶଲ୍ୟାନନ୍ଦନ ।
ମଣି, ଜଳ, ଦରପଣ, ଆବର ମନରେ
ପ୍ରତିବିମ୍ବ ନିପତିତ ହୋଇଲେ ତହିଁରେ ।
ଦୃଷ୍ଟିଗୋଚର ହୁଅଇ ସେହି ପ୍ରତିବିମ୍ବ
ଏହାର କାରଣ ଦେବ ବୁଝାଇ କହିବ ।
କହନ୍ତି ବଶିଷ୍ଠ ମନ ଦର୍ପଣ ଆଦିରେ
ଜଡ଼ବସ୍ତୁ ପ୍ରତିବିମ୍ବ ପଡ଼େ ଯେ ନେତ୍ରରେ ।
ଚିନ୍ମୟ ଆତ୍ମାର ତାହା ଭ୍ରାନ୍ତି ବୋଲି ଜାଣ
ସନ୍ଦେହ ମୋଚନ ତବ ଦେଲା କି ଶ୍ରୀରାମ ?
ପ୍ରତିବିମ୍ବ ହିଁ କେବଳ ନୁହେଁ ଭ୍ରାନ୍ତି ଜାଣ
ଏ ଦୃଶ୍ୟମାନ ଜଗତ ମଧ୍ୟ ଭ୍ରାନ୍ତିପୂର୍ଣ୍ଣ ।
ଆସ୍ଥା ନ ରଖି କେବେହେଁ ଜଗତେ ଶ୍ରୀରାମ
ଅନୁସରି ଚଳ ସର୍ବ ଉପଦେଶ ମମ ।
ଜଳେ ତରଙ୍ଗ ସଦୃଶ ବିଶ୍ୱ ପ୍ରପଞ୍ଚକୁ
ଅସତ୍ୟ ବୋଲି ଜାଣିବ ହେ ରାମ ତାହାକୁ ।
ସେହି ଚଇତନ୍ୟ ରୂପୀ ପୁଣ ହେ ଶ୍ରୀରାମ
ସବୁବେଳେ ରହିଛନ୍ତି ବିଦ୍ୟମାନ ଜାଣ ।

ସେହି ଚୈତନ୍ୟ ସାଗରେ ଦେଶ, କ୍ରିୟାକାଳ
କିଛିମାତ୍ର ନାହିଁ ଆହେ କୌଶଲ୍ୟା ଦୁଲାଳ ।
ଦେଶ କାଳ ଦ୍ୱାରା ଆତ୍ମା ନୁହେଁ ପରିଛିନ୍ନ
(ତେଣୁ) ଚିତ୍ତେ ଅନାସକ୍ତ ଭାବ କର ହେ ପୋଷଣ ।
ସୁଖ ଓ ଦୁଃଖକୁ ରାମ ଅଳୀକ ବୁଝିଣ
ଚିତ୍ତଶାନ୍ତି ଲାଭ କର ହେ ରଘୁନନ୍ଦନ ।
ତୁମ୍ଭେ ନିଜେ ଭବମାୟା ବ୍ୟାଧିମୁକ୍ତ ହୋଇ
ଆନନ୍ଦଲାଭ ସମତା ଆଶ୍ରୟରେ ରହି ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ସଂବେଦନ ବିଚାର ବର୍ଣ୍ଣନେ**
**ନାମ ଛୟାଳିଶ ସର୍ଗଃ**



## ଷଡଚତ୍ୱାଳିଶ ସର୍ଗଃ

## ଇନ୍ଦ୍ରିୟ ଉପଲବ୍‌ଧି ବିଚାର

ବଶିଷ୍ଠ ବୋଇଲେ ରାମ ସୃଷ୍ଟି ପୂର୍ବକାଳ
ଅନାଦି ବ୍ରହ୍ମ ରୂପରେ ତୁମେ ଯେବେ ଥିଲ ।
ତାଙ୍କପରି ସେତେବେଳେ ହେ ରଘୁ କୁମର
ନେତ୍ର କର୍ଣ୍ଣ ଆଦି କିଛି ନ ଥିଲା ତୁମର ।
ବ୍ରହ୍ମାଙ୍କ ସମଷ୍ଟି ପୂର୍ଯ୍ୟଷ୍ଟକ ଯେତେବେଳେ
ଆବିର୍ଭୂତ ହେଲା ରାମ ସୃଷ୍ଟି ସମୟରେ ।
ଯେସନ ସମ୍ବିତ ତାଙ୍କ ହେଲା ପ୍ରକାଶିତ
ତୁମ୍ଭ ଓ ଅନ୍ୟମାନଙ୍କ ଦଶା ତଦ୍‌ବତ ।
ବ୍ୟଷ୍ଟି ରୂପେ ପ୍ରକାଶିତ ହୋଇଥିଲ ଜାଣ
ଏହି କଥା ମନେରଖ ଅଯୋଧ୍ୟାର ପ୍ରାଣ ।
ଗର୍ଭବାସକାଳେ ଶିଶୁ ଇନ୍ଦ୍ରିୟାଦି ମାନ
ଯେପରି ଭାବରେ ହୋଇଥାଏ ଉତପନ୍ନ ।
ଭୂମିଷ୍ଠ ହେବାର ପରେ ଜାଣ ସେହିପରି
ଅବିକଳ ସେହି ରୂପ ରହିଥାଏ ଧରି ।
ସେହି ଅବସ୍ଥାରେ ଶିଶୁ ନିଜର ଅନ୍ତରେ
ପୂର୍ବ ବାସନାନୁରୂପ ବସ୍ତୁ ଭୋଗ କରେ ।
ବ୍ରହ୍ମାର ସମଷ୍ଟି ମନେ ସଂବିତ ଯେପରି
ଇନ୍ଦ୍ରିୟ, ଇନ୍ଦ୍ରିୟାର୍ଥ ବିଷୟ ସୁମରି ।
ବ୍ୟଷ୍ଟିଭାବେ ତୁମ୍ଭ ମନେ ତଦ୍ରୂପ ସମ୍ବିତ
ଇନ୍ଦ୍ରିୟ, ଇନ୍ଦ୍ରିୟା ଅର୍ଥେ ହୋଇଛି ଉଦ୍ଭୁତ ।
ସୃଷ୍ଟିର ଆରମ୍ଭେ ଯେଉଁ ବିଶୁଦ୍ଧ ସମ୍ବିତ
ଆବିର୍ଭୂତ ହୋଇଥିଲା ଆହେ ରଘୁନାଥ ।
ସମଷ୍ଟି ଓ ବ୍ୟଷ୍ଟି ଏହି ଦୁଇ ଅବସ୍ଥାରେ
ଅବସ୍ଥାନ କରୁଥିଲେ ଏକଇ ରୂପରେ ।
ତଦପରେ ଅହଂଭାବାପନ୍ନ ହୋଇ ସେହି
ବହୁ ଜୀବ ରୂପେ ବହୁ ପୂର୍ଯ୍ୟଷ୍ଟକ ହୋଇ ।
ଏହା ସତ୍ତ୍ୱେ ସେ ସମ୍ବିତ ରହିଛି ବିଶୁଦ୍ଧ
ମଉଳିକ ଭାବ ତାର ରହିଅଛି ଶୁଦ୍ଧ ।
ନିର୍ମଳ ଓ ନିରଞ୍ଜନ ଯେଣୁ ସେ ଅଟଇ
ଦ୍ୱୈତ ଅସ୍ତିତ୍ୱ ତହିଁରେ ରହି ନ ପାରଇ ।
ତେଣୁ ମନେରଖ ରାମ ସଂବିତ ହିଁ ସତ୍ୟ
ମନ ଅହଂକାର ଆଦି ସକଳ ଅସତ୍ୟ ।
ଯେହେତୁ ସେମାନେ ସ୍ଥୁଳ, ଆହେ ରଘୁମଣି
ପରିଛିନ୍ନ ହୋଇଛନ୍ତି ଦେଶ କାଳ ଘେନି ।
ନୁହେଁ ମନ, ନୁହେଁ ଜୀବ, ନୁହେଁ ପୂର୍ଯ୍ୟଷ୍ଟକ
ବିଦ୍ୟାର ବିଳାସ ସେହି ସଂବିତ୍ ପ୍ରତୀକ ।
ପରାତ୍ମାଭାବେ ସେହୁ ହେଲେ ବିବେଚିତ
ବିଦ୍ୟା ବିଳାସ ତହିଁରେ ନୁହଁଇ ଲକ୍ଷିତ ।
ପ୍ରାଜ୍ଞ ଯାଙ୍କୁ ଅସ୍ତି ରୂପେ କରେ ଅନୁଭବ
ସେ ଅଟନ୍ତି ସେହି ବସ୍ତୁ ଜାଣ ହେ ରାଘବ ।
ମନନ ଶକ୍ତି ସମ୍ପର୍ଣ୍ଣ ଅଟେ ଯେ ଚେତନ
ଜୀବ ବ୍ରହ୍ମଠାରୁ ସେହୁ ହୋଇଛି ଉତ୍ପନ୍ନ ।
ଏତାଦୃଶ କଳପନା ହୋଇଲେ ହେଁ ଭ୍ରମ
ଉପଦେଶ ପାଇଁ ତାହା କୁହାଯାଏ ରାମ ।
ଅବିଦ୍ୟା ବେମାରୀ ଯେବେ ହୁଏ ଉପସ୍ଥିତ
ଉପଦେଶ ଦ୍ୱାରା ତାହା ହୁଏ ବିଦୂରୀତ ।
ବିଚାର ବଳେ ସ୍ୱରୂପ ଜ୍ଞାନ ଉଦେ ହୁଏ
ସେହି ଜ୍ଞାନ ସର୍ବ ବସ୍ତୁମୟ ହୋଇଯାଏ ।
ସେ ସ୍ୱରୂପ ଜ୍ଞାନ ବଳେ ତୁମେ ସେହିପରି
ଏହି ସକଳ ଜଗତ ଆଚ୍ଛାଦନ କରି ।
ଜୀବନ ମୁକତଭାବେ ରହ ବିରାଜିତ
କେଡ଼େ ଭାଗ୍ୟବନ୍ତ ସେହୁ ଯେ ଜୀବନ ମୁକ୍ତ ।
କେବେହେଁ ନ ଭାବ ରାମ ଏହି ଜ୍ଞାନ ନେଇ
ପ୍ରତ୍ୟକ୍ଷ, ଜଗତ ଅସ୍ୱୀକାର ମୁଁ କରଇ ।
ମରୁ ମରୀଚିକା ସମ ଏ ଜଗତ ଜାଣ
ଅଜ୍ଞାନ ବଶତଃ ଆସେ ଏହି ଭ୍ରମ ଜ୍ଞାନ ।
ଅଜ୍ଞାନ ପ୍ରସୂତ ଅଟେ ଯାହାର ଅସ୍ତିତ୍ୱ
ଜ୍ଞାନୋଦୟେ ହୋଇଯାଏ ତାହା ଅସ୍ତମିତ ।

ଜୀବ, ପୂର୍ଯ୍ୟଷ୍ଟକ ଆଦି ଯେ ସକଳ ଭ୍ରମ
ଅବିଦ୍ୟା ହେତୁରୁ ତାହା ଘଟିଥାଏ ରାମ ।
ସତ୍ୟ ସ୍ୱରୂପ ଆତ୍ମାର ସାନ୍ନିଧ ବଶତଃ
ସତ୍ୟ ପରି ତାହା ହୋଇଥାଏ ପ୍ରତିଭାତ ।
ସେହି ସତ୍ୟ ଆତ୍ମା ଯେବେ ହେବ ସମୁଦିତ
କିପରି ବା ଏ ସମସ୍ତ ହେବେ ପ୍ରତିଭାତ ?
ତୁମ ଜ୍ଞାନ ବୃଦ୍ଧି ପାଇଁ ଅବିଦ୍ୟା ବିଷୟ
ଯା କହୁଛି ଶୁଣ ରାମ ମନ କରି ଥୟ ।
ବାହ୍ୟ ବସ୍ତୁ ଦରଶନେ ଚିତତ୍ତ୍ୱ ଯେ କାଳେ
ଆଗ୍ରହ ଦେଖାଇଥାଏ ଆହେ ରଘୁବୀରେ ।
କଳାକଳଙ୍କେ ଆବୃତ ହୋଇଣ ସେ କାଳେ
ପୂର୍ଯ୍ୟଷ୍ଟକ ହୋଇକରି ଜୀବଭାବ ଧରେ ।
ଯେ ବସ୍ତୁକୁ ଯେ ଭାବରେ ଭାବେ ସେତେବେଳେ
ସେ ବସ୍ତୁ ପ୍ରକାଶଲଭେ ସେହି ପରକାରେ ।
ଭୂତ ପ୍ରେତ କଥାଶୁଣି ଶିଶୁ ରାତ୍ରିକାଳେ
ତାହା ସବୁ ସତ୍ୟମଣି ଯଥା ଭୟକରେ ।
ସେହିପରି ପଞ୍ଚନେତ୍ର କଳପନା କରି
ଜୀବ ଚୈତନ୍ୟ ସେ ବସ୍ତୁ ଦରଶନ କରି ।
ଏହି ପଞ୍ଚତନ୍ମାତ୍ରାରୁ ପଞ୍ଚଭୂତ ଜାତ
ଏ ସବୁ କଳ୍ପନା ମାତ୍ର ଆହେ ରଘୁନାଥ ।
ଶାଖା ପ୍ରଶାଖା ଶୋଭିତ ବୃକ୍ଷ ଯେଉଁପରି
ଅଙ୍କୁରଠାରୁ ପୃଥକ ପ୍ରତୀତ ଯେପରି ।
ତନ୍ମାତ୍ରାରୁ ଜନ୍ମି ଏହି ପଞ୍ଚଭୂତ ମାନ -
ତନ୍ମାତ୍ରାରୁ ଭିନ୍ନମନେ ହୁଅନ୍ତି ସେମାନ ।
ବାସ୍ତବରେ ଏହି ଦ୍ୱୟ ଅଟନ୍ତି ଯେ ଏକ
ଏହାମନେ ରଖିଥିବ ହେ ରଘୁନାୟକ ।
ଏହିପରି ଜୀବ ତାର ଅନ୍ତର ମଧ୍ୟରେ
ପ୍ରାଣ ମନ ଇନ୍ଦ୍ରିୟଙ୍କୁ ସତ୍ୟ ମନେ କରେ ।
ପୁଣି ମୃତ୍ତିକା ଅନିଳ ଆଦି ଯା ବାହାରେ
ସତ୍ୟମଣି ସେ ସମସ୍ତ ବାସନାକୁ ଧରେ ।
ଚନ୍ଦ୍ରର କୌମୁଦି ଯଥା ଚନ୍ଦ୍ରର ପ୍ରକାଶ
ସକଳ ବିଶୟାନନ୍ଦ ବିଷୟ ସଦୃଶ ।
ମୃତ୍ତିକା ଯେସନ ଧରେ କୁମ୍ଭର ଆକାର
ସ୍ୱଭାବ ଓ ଶାସ୍ତ୍ରବିଧି ଦୁହିଁଙ୍କ ମଧ୍ୟର ।
ଦୁଇରୁ ଗୋଟିକୁ ଅନୁସରଣ କରିଣ
ଫଳରୂପେ ବିବର୍ତ୍ତିତ ହେଉଥାଏ ଜାଣ ।
ଆତ୍ମାର ଏ ରୂପ ବିବର୍ତ୍ତନ କହିଲଇଁ
କୌଣସି ପରିବର୍ତ୍ତନ ମୋର ନ ହୁଅଇ ।
ଦେଶ, କାଳଦ୍ୱାରା ଯାହାହୁଏ ପରିଛିନ୍ନ
କେବଳ ତାହାର ହୁଏ ପରିବରତନ ।
କିନ୍ତୁ ଆତ୍ମାର ଯେହେତୁ କିଛି ନ ଘଟଇ
କି ରୂପେ ପରିବର୍ତ୍ତନ ତାର ସମ୍ଭବଇ ।
ପରିବର୍ତ୍ତନ କେବଳ ବିଭୁ ଇଚ୍ଛାଧୀନ
ତା'ର ବ୍ୟତିକ୍ରମ ପାଇଁ କେ ହୋଇବ କ୍ଷମ ?
ବ୍ରହ୍ମନିଜେ ନିଜମଧ୍ୟେ ବସ୍ତୁ ସ୍ୱରୂପରେ
ପ୍ରକାଶଲଭୁ ଅଛନ୍ତି ଜାଣ ରଘୁବୀରେ ।
ପ୍ରତିବିମ୍ବିତ ହୁଅନ୍ତି ଜୀବ ରୂପଧରି
ତାଙ୍କ ଇଚ୍ଛାହିଁ କେବଳ ହୁଏ କାର୍ଯ୍ୟକାରୀ ।
ଅଦ୍ୱୟ ଓ ଅଶରୀର ହୋଇଲେ ହେଁ ସେହି
ଭେଦ କଳପନା କରି ଦ୍ୱୈତ ଆଚରଇ ।
ସୃଷ୍ଟିକାଳେ ଯେ ବସ୍ତୁର ଯେପରି ସ୍ୱଭାବ
ନିର୍ଦ୍ଧାରିତ ହୋଇଅଛି ହେ ରଘୁ ପୁଙ୍ଗବ ।
ହେଲେହେଁ ଅସତ୍ୟ ବୋଲି ତାହା ପ୍ରମାଣିତ
ଆତ୍ମାର ସତ୍ୟତା ହେତୁ ତାହା ହୁଏ ସତ ।
ସୁନା ଅଳଙ୍କାରେ ଯଥା ସୁବର୍ଣ୍ଣହିଁ ସତ୍ୟ
ଅଳଙ୍କାର ମିଥ୍ୟା ଅଟେ ଆହେ ରଘୁନାଥ ।
ସେହିପରି ଆତ୍ମା ମଧ୍ୟେ ଜୀବ ମନ ଆଦି
ଅଳିକ ଅଟନ୍ତି ଜାଣ ଆହେ ରଘୁନିଧି ।
ଆତ୍ମତତ୍ତ୍ୱ ହିଁ କେବଳ ସତ୍ୟବୋଲି ଜାଣ
ସର୍ବବ୍ୟାପୀ ଚିତ୍‌ତତ୍ତ୍ୱ ଜାଣ ହେ ଶ୍ରୀରାମ ।
ତେଣୁକରି ଜୀବ, ମନ, ସକଳ ବସ୍ତୁରେ
ସେହି ଏକା ବିରାଜିତ ଛନ୍ତି ରଘୁବୀରେ ।
ଚିତ୍ ତତ୍ତ୍ୱର ଜଡ଼ ଦେହ ଚିତ୍ତ କିମ୍ବା ମନ
ସଦୃଢ଼ ଧାରଣା ବଳେ ଏହି ଦେହ ରାମ ।
ଯେତେବେଳେ ହୁଏ ଦେବ ନର ଭାବାପନ୍ନ
ଆବର ସ୍ଥାବର ଭାବ ହୁଅଇ ସମ୍ପନ୍ନ ।
ତେତେବେଳେ ସେହି ମୂର୍ତ୍ତି କରନ୍ତି ଧାରଣ
ମନର ଦୃଢ଼ତା ବଳେ ସବୁ ହୁଏ ଜାଣ ।
ବାସନା ଉଦୟେ ଯେବେ ଏହି ଚିତ୍ ତତ୍ତ୍ୱ
ଭାବନା କରେ ଅନ୍ତରେ ନାନାଦି ବୈଚିତ୍ର୍ୟ ।
ସେତେବେଳେ ନାନାକାରେ ପ୍ରକାଶ ଲଭଇ
ବାସନା କାଉଁରି କାଠି କିସ ନ କରଇ ।

ଜୀବର ଜନ୍ମ ମରଣ ତେଣୁ ହେ ଶ୍ରୀରାମ
ସକଳ ଅସତ୍ୟ ଏହା ହେତୁକରି ଘେନ ।
ସପନେ ଯେସନ ନାନା ରୂପର ଧାରଣ
ଜୀବଙ୍କ ଆକାର ଧରେ ପରିବରତନ ।
ସ୍ୱ ସ୍ୱ ପ୍ରତିଭାସବଳେ ଘଟିଥାଏ ତାହା
ଅନ୍ୟଥା ନୁହଇଁ କେଭେଁ ଆହେ ରଘୁନାହା ।
ବାଲ୍ୟ ଯଉବନ ଆଦି ଯେ ପରିବର୍ତ୍ତନ
କାଳକୃତ ତାହା ସବୁ ଅଯୋଧ୍ୟାପରାଣ ।
କିନ୍ତୁ ଦେହାନ୍ତର ପରେ ହୁଏ ଯେ ଉତ୍ପତି
ବାସନାବଶତ ତାହା ଘଟେ ରଘୁପତି ।
ଉପଦେଶ ବଳେ କିମ୍ବା ବାକ୍ୟ ପ୍ରଭାବରେ
ଯେଉଁ ବ୍ରହ୍ମ ସାକ୍ଷାତ୍କାର ଘଟେ ରଘୁବୀରେ ।
ବାସନା ଜନିତ ନୁହେଁ ସେହି ବ୍ରହ୍ମଭାବ
ଯେଣୁ, ତୁରୀୟ ଜ୍ଞାନରେ ଦର୍ଶନ ମିଳିବ ।
ତେଣୁ ସେହି ଭୂମି ସ୍ୱପ୍ନ, ବାସନା ଅତୀତ
ତୁରୀୟ ଜ୍ଞାନ ହେ ରାମ ଅତି ଚମତ୍କୃତ ।
ସେ ଅଟନ୍ତି ସେହି ନିତ୍ୟ, ଶୁଦ୍ଧ ଚଇତନ୍ୟ
ସେ ପୁଣି ଜୀବ ରୂପକୁ କରନ୍ତି ଧାରଣ ।
ସ୍ୱପନରେ ନାନା ବସ୍ତୁ କରନ୍ତି ଦର୍ଶନ
ଚିନ୍ତନ ବଳେ ବାସନା ଦୃଢ଼ ତାଙ୍କ ଜାଣ ।
ପୁରୁଷକାରବଳରେ ସେହି ଯେ ବାସନା
ବିଜିତ ହୋଇଣ ଥାଏ ରାମ ମହାମନା ।
ଗତ କୁକର୍ମ ଉତ୍ତମ କର୍ମ ସାଧନରେ
ସୁକର୍ମରେ ପରିଣତ ହୁଏ ରଘୁବୀରେ ।
ତେଣୁ ଜୀବ କଳେବର ବାସନାର ଫଳ
ବାସନା ଜୀବକୁ କରୁଥାଏ କଳବଳ ।
ଯେତେକାଳ ଏ ଜୀବର ନୋହିଛି ମୁକତି
ତାବତ ବିରାମ ନୋହେ ଦେହ ଉତପତ୍ତି ।
ପଞ୍ଚତନମାତ୍ରା, ମନ, ବୁଦ୍ଧି, ଅହଂକାର
ୟାଙ୍କୁ ଘେନି ଯେଉଁ ଆତିବାହିକ ଶରୀର ।
ଏହି ଶରୀରର ନାମ ଅଟେ ପୂର୍ଯ୍ୟଷ୍ଟକ
ରକ୍ତ, ମାଂସ, ବିହୀନ ସେ ହେ ରଘୁନାୟକ ।
ମନ, ବୁଦ୍ଧି ଆଦି ଘେନି ଯେଉଁ ପୂର୍ଯ୍ୟଷ୍ଟକ
ସେ ଅଟେ ଶୂନ୍ୟ ଶରୀର, ସ୍ଥୂଳରୁ ପୃଥକ ।
ମନ ଯେତେବେଳେ ଶରୀରାଦି ପ୍ରପଞ୍ଚରେ
ଆକାର ଧାରଣ କରେ ଆହେ ରଘୁବୀରେ ।

ବୈରାଗ୍ୟ ଅଭ୍ୟାସ ବଳେ ମନ ରଜୋଭାବ
ବିନଷ୍ଟ କରିପାରିଲେ ହେ ରଘୁପୁଙ୍ଗବ ।
ସାଧନ ସମ୍ପଦ ଲାଭ ସେତେବେଳେ ହୁଏ
ଜୀବନର ଲକ୍ଷ୍ୟପାଇଁ ସକ୍ଷମ କରାଏ ।
ଜ୍ଞାନ ଉଦୟ ହୁଅନ୍ତେ ମନର କଳ୍ପିତ
ପ୍ରପଞ୍ଚ ସକଳ ହୋଇଥାନ୍ତି ସ୍ୱପ୍ନବତ ।
ଏହି ପ୍ରପଞ୍ଚର ମୂଳକାରଣ ବୁଝିଲେ
କାର୍ଯ୍ୟ, କାରଣ ବନ୍ଧନ ନ ରହଇ ଭଲେ ।
ଏ ବନ୍ଧନ ଅଭାବରେ ସୁପ୍ତି ଅବସ୍ଥାର
ଅଭାବ ଘଟଇ ଜାଣ ଆହେ ରଘୁବୀର ।
ଏହି ରୂପେ ଫିଟିଯାଏ ମୁକତିର ବାଟ
ତେଣୁ ଅପସରିଯାଏ ଜୀବନ ସଙ୍କଟ ।
ସୁପ୍ତି ଅବସ୍ଥା ଦେହାଦି ପ୍ରପଞ୍ଚକୁ ରାମ
ବାସନା ଆକାର ତାକୁ ଦେଇ କରି ଜାଣ,
ନିଜମଧ୍ୟେ ଲୁକ୍‌କାୟିତ କରି ରଖିଥାଏ
ସ୍ୱପ୍ନାବସ୍ଥା କିନ୍ତୁ ତାକୁ ପ୍ରକାଶ କରାଏ ।
ଯେ ପର୍ଯ୍ୟନ୍ତ ମୁକ୍ତି ଲାଭ ହୋଇ ପାରିନାହିଁ
ଏହି ଦୁଇ ଅବସ୍ଥାର ସମ୍ମୁଖୀନ ହୋଇ,
ସେ ପର୍ଯ୍ୟନ୍ତ ଏହି ଆତିବାହିକ ଶରୀର
ବିଚରଣ କରେ ଧରି ନାନା କଳେବର ।
କେବେ ସୁପ୍ତ ଅବସ୍ଥାରେ, କେବେ ସ୍ୱପନରେ
ଏ ଆତିବାହିକ ଦେହ ଅବସ୍ଥାନ କରେ ।
ଯେତେବେଳେ ସୁପ୍ତି ଅବସ୍ଥାରେ ରହିଥାଏ
କୌଣସି ରୂପ ପ୍ରକାଶ ତାହାର ନ ଥାଏ ।
ଜୀବ ସୁସୁପ୍ତି ଅବସ୍ଥା ଜଡ଼ତାରେ ପୂର୍ଣ୍ଣ
ସ୍ୱପ୍ନ ଅବସ୍ଥା ସଂସାରମୟ ବୋଲି ଜାଣ ।
ଜାଗରଣ ଅବସ୍ଥାକୁ କହନ୍ତି ତୁରୀୟ
ପ୍ରବୁଦ୍ଧ ଅବସ୍ଥା ମୁକ୍ତି ହେ ରଘୁ ତନୟ ।
ମୁକତି ଅଟଇ ଦୁଇ ପ୍ରକାର ଶ୍ରୀରାମ
ଜୀବନ ମୁକତି, ଦେହ ମୁକ୍ତି ବୋଲି ଜାଣ ।
ତୁରୀୟାବସ୍ଥା ଜୀବନ ମୁକତି ବୋଲାଏ
ତା'ର ବଳେ ତୁର୍ଯ୍ୟାତୀତ ପଦଲାଭ ହୁଏ ।
ଚିନ୍ମାତ୍ର ବ୍ରହ୍ମ ସ୍ୱରୂପ ଲଭେ ତେବେ ଜୀବ
ମାନବ ଜୀବନ ଲକ୍ଷ୍ୟ ସେ ପଦ ଦୁର୍ଲ୍ଲଭ ।
ପୁରୁଷକାର ବଳରେ ବୋଧସିଦ୍ଧି ଲାଭ
ଏହି ଆଦର୍ଶ ରଖିବ ହେ ରଘୁପୁଙ୍ଗବ ।

ତା ବଳେ ତତ୍ତ୍ୱଜ୍ଞାନର ହୁଅଇ ଉଦୟ
ପରମାତ୍ମା ଜ୍ଞାନେ ହୃଦ ହୁଏ ତନମୟ ।
ପରମାର୍ଥିକ ଦୃଷ୍ଟିରୁ ବୁଝ ହେ ଶ୍ରୀରାମ
ଆତ୍ମା ମଧ୍ୟେ ଜୀବ କରିଥାଏ ଅବସ୍ଥାନ ।
ଅଜ୍ଞାନରୁ ତା ଉଦୟ ପାଷାଣ ସଦୃଶ
କଠିନ, ହୁଅଇ ଯେବେ ଆହେ ରଘୁଈଶ,
ତେତେବେଳେ ତାର ଭୟ ହୁଏ ଉପସ୍ଥିତ
ସେ ଭୟ ସ୍ୱପ୍ନଜନିତ ଭ୍ରମ ରଘୁନାଥ ।
ଯେ ହେତୁ ହୃଦ ମଧ୍ୟରେ ଚିତ୍ କଳା ବ୍ୟତୀତ
ଅନ୍ୟ କିଛି ନାହିଁ ଜାଣ ଆହେ ରଘୁନାଥ ।
ତାହାକୁ ସେ ଅନ୍ୟ ରୂପେ କରି ଦରଶନ
ନିରର୍ଥକ ଶୋକଗ୍ରସ୍ତ ହୋଇଥାଏ ଜାଣ ।
ସର୍ବଭାବେ ପରିଦୃଷ୍ଟ ଏହି ଯେ ଜଗତ
କେବଳ ମାୟା ପ୍ରକାଶ ଦଶରଥ ସୁତ ।
ଜୀବଗଣ, ଜନ୍ମମୃତ୍ୟୁ, ଏ ମାୟା ସଂସାର
ସବୁ ମିଥ୍ୟା ଭ୍ରମ ଜାଣ କୌଶଲ୍ୟା କୁମର ।
ବାସନା ବନ୍ଧନ ଜାଣ ସଂସାର ବନ୍ଧନ
ବାସନାର କ୍ଷୟେ ହୁଏ ତାର ବିନାଶନ ।
ବାସନା ମୋହ ଯେ କାଳେ ହୁଅଇ ଗଭୀର
ସ୍ଥାବର ଭାବକୁ ଜୀବ ଲଭେ ତତକାଳ ।
ବାସନା ମଧ୍ୟାବସ୍ଥାରେ ଜାଣ ହେ ଶ୍ରୀରାମ
ପଶୁ, ପକ୍ଷାଦି ତୀର୍ଯ୍ୟକ ଯୋନିରେ ଜନମ ।
ବାସନା ସ୍ୱଚ୍ଛତାକାଳେ ମନୁଷ୍ୟ ଯୋନିରେ
ଜନମ ଲଭଇ ଜୀବ, କର୍ମ ଅନୁସାରେ ।
ସୁପ୍ତି ଭଙ୍ଗ ପରେ ଆସିଯାଏ ଅହଂଭାବ
ମୁହିଁ ଏହି ରୂପ ପରିମିତ ଆଦିସର୍ବ ।
ଏ ଭାବେ ପରିଚ୍ଛିନ୍ନତା ଉପସ୍ଥିତ ହୋଇ
ବାହ୍ୟବସ୍ତୁରୁ ନିଜକୁ ପୃଥକ କରଇ ।
ସେ କାଳେ ଇନ୍ଦ୍ରିୟସହ ଯୁକ୍ତହୋଇ ମନ
ଏହି ମନ ମଧ୍ୟଦେଇ ଜୀବ ଚଇତନ୍ୟ,
ବହିର୍ଗତ ହୋଇ ବାହ୍ୟବସ୍ତୁର ଉପରେ
ନିପତିତ ହୋଇଗଲେ ଆହେ ରଘୁବୀରେ ।
"ମୁଁ ଏହା ଜାଣିଛି" ଏହି ବାସନାର ଜ୍ଞାନ
ଜନ୍ମ ଲଭିଥାଏ ଜାଣ ହେ ରଘୁନନ୍ଦନ ।
ସେହି ଜ୍ଞାନ ତେତେବେଳେ ନାନାଦି ବସ୍ତୁରେ
ପ୍ରକାଶ ପାଇଣ ଥାଏ, କୌଶଲ୍ୟା କୁମରେ ।
ଏ ଭାବେ ହୃଦୟସ୍ଥିତ ଆତ୍ମ ଚଇତନ୍ୟ
ଅନାତ୍ମ ବସ୍ତୁର ସହ ମିଳିତ ହୋଇଣ,
ବାସନା ଆକାରେ ସେହୁ ଲଭନ୍ତି ପ୍ରକାଶ
ଯୋନି ଜନ୍ମଲଭି ଜୀବ ହୁଅଇ ହତାଶ ।
ବାସନା ଜନିତ ଯେଉଁ ଆଧାତ୍ମ ଧୀ ଶକ୍ତି
କେବଳ ଭ୍ରମ ବିକାଶ ଆହେ ରଘୁପତି ।
ଶରୀରସ୍ଥ ଆତ୍ମା କିଛି ନ କରେ ଗ୍ରହଣ
ଆଉ ମଧ କିଛି ସେହୁ ନ କରେ ବର୍ଜନ ।
ଚିତ୍ ସ୍ୱରୂପ ଏହି ଆତ୍ମା ବାହାରେ ଅନ୍ତରେ
ପରକାଶ ପାଉଥାନ୍ତି କୌଶଲ୍ୟା କୁମରେ ।
କେବଳ ଚିତ୍ ପ୍ରକାଶ ଏ ସର୍ବ ଜଗତ
ଜାଣିରଖ ଏହି ତତ୍ତ୍ୱ ଆହେ ରଘୁନାଥ ।
କିଛି ଭେଦ ଦୃଷ୍ଟି ଏଥି ନାହିଁ ପ୍ରୟୋଜନ
ଏହାହିଁ ଅକାଟ୍ୟ ସତ୍ୟ ହେ ରଘୁନନ୍ଦନ ।
ତତ୍ତ୍ୱ ଦୃଷ୍ଟିବଳେ ଏହା ହୁଏ ପରିଜ୍ଞାତ
ଆମେ, ସର୍ବେ ସେହି ଚିଦାତ୍ମାରେ ବିରାଜିତ ।
ତତ୍ତ୍ୱ ଦୃଷ୍ଟିରେ ସାଗର ତରଙ୍ଗ ମଧ୍ୟରେ
ଜଳଛଡ଼ା ଅନ୍ୟ କିଛି ନ ଥାଏ ତହିଁରେ ।
ଏ ଜଗତେ ବାସନାଦି ଭେଦ କିଛି ନାହିଁ
କେବଳ ସେ ନିରାମୟ ପଦଜାଣ ଏହି ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**"ଇନ୍ଦ୍ରିୟ ଅର୍ଥ ଉପଲବ୍ଧି ବର୍ଣ୍ଣନେ**
**ନାମ ଷଡଚାଳିଶ ସର୍ଗଃ**



## ଅଠଚାଳିଶ ସର୍ଗଃ

## ନର ନାରାୟଣ ଅବତାର ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ ଶୁଣ ମୋ ବଚନ
ଏହି ଆଶଙ୍କା ଉପୁଜିପାରେ ତୁମ ମନ ।
ଯେହେତୁ ବାହ୍ୟ ଜଗତ ସବୁରି ଦୃଷ୍ଟିରେ
ଏକ ବୋଲି ବିବେଚିତ ହୁଏ ସର୍ବକାଳେ ।
କିନ୍ତୁ ବ୍ୟକ୍ତି ବିଶେଷରେ ସପନ-ଜଗତ
ପୃଥକ ପୃଥକ ବୋଲି ହୁଏ ବିବେଚିତ ।
ବାହ୍ୟ ଜଗତ ଦର୍ଶନ ସ୍ୱପ୍ନାବସ୍ଥା ବୋଲି
ଗୃହୀତ ହୋଇପାରିବ ତେବେ କେଉଁପରି ?
ସୃଷ୍ଟି ଆଦି କାଳେ ରାମ ସମଷ୍ଟି ଜୀବର
ଯାହା ପ୍ରକାଶ ପାଇଛି ସପନ-ଆକାର ।

ସେହି ସ୍ୱପ୍ନ ଜାଣ ଆମ ଜାଗ୍ରତ ଅବସ୍ଥା
ଅଥବା ଆମ ସଂସାର ଆହେ ଧନୁ ହସ୍ତା ।
ସତ ନୁହେଁ ଏ ଧାରଣା କି ଅବା ଅସତ
ତାହାର କାରଣ ଏକ ଶୁଣ ରଘୁନାଥ ।
ବ୍ୟଷ୍ଟି-ଜୀବର ସ୍ୱପନ ଅଟଇ ଯେମନ୍ତ
ସମଷ୍ଟି-ଜୀବ ସ୍ୱପନ ନୁହଇ ତେମନ୍ତ ।
ତେଣୁକରି ଆମ୍ଭମାନଙ୍କର ଜାଗରଣ
ସମଷ୍ଟି-ଜୀବ-ଜାଗ୍ରତ ସ୍ୱପ୍ନରୁ ଜନମ ।
ତେଣୁକରି ସ୍ୱପ୍ନରୁ ତା ନୁହଁଇ ପୃଥକ
ବିଚାର କରି ବୁଝିବ ହେ ରଘୁନାୟକ ।
ସ୍ୱପନରେ ଯାହା ଦେଖାଯାଏ ନୟନରେ
ବାସ୍ତବ ଯେପରି ତାହା ନୁହେଁ ରଘୁବୀରେ,
ଜଗତ ବୋଲିଣ ଯାହା ହୁଅଇ କଥିତ
ବାସ୍ତବ ନୁହଁଇ ଯେଣୁ ଅଟେ ସେ ଅସତ ।
ତାହାହିଁ ସ୍ୱପନ-ଜାଣ ସମଷ୍ଟି ଜୀବର
ସପନ କି ସତ ହୋଇପାରେ ରଘୁବୀର ?
ଯାହା ଯାହା ଦେଖୁ ଆମେ ସପନ ରାଜ୍ୟରେ
କେବଳ ତା ଦେଖାଯାଏ ମାନସ ନେତ୍ରରେ ।
ମାତ୍ର ବାହାର ଜଗତେ କାହାର ଅସ୍ତିତ୍ୱ
ଦେଖିବାକୁ ନ ମିଳଇ ଆହେ ରଘୁନାଥ ।
ସମଷ୍ଟି ଜୀବର ସ୍ୱପ୍ନ ତା ମନ ରାଜ୍ୟରେ
ପ୍ରଥମେ ସେପରି ରହିଥିଲା ରଘୁବୀରେ ।
ସ୍ୱପ୍ନ କାଳେ ସ୍ୱପ୍ନ ଦୃଷ୍ଟ ବସ୍ତୁକୁ ଯେପରି
ବିଶ୍ୱାସ ନ ଆସେ ମନେ ମିଥ୍ୟା କିଛି ବୋଲି,
ତେସନ ସମଷ୍ଟି ଜୀବ ସ୍ୱପ୍ନକୁ ତାହାର
ମିଥ୍ୟା ବୋଲି ମଣିବାକୁ କରେ ଅସ୍ୱୀକାର ।
ଚୈତନ୍ୟ ଭାବ ଯେ ଘେନି ଆହେ ରଘୁବୀର
ପ୍ରକାଶ ହୋଇ ନ ପାରେ ଅତୀବ ସତ୍ୱର ।
ସମଷ୍ଟି ଜୀବର ରାମ ଯା ଅଟେ ସ୍ୱପନ
ଦୀର୍ଘକାଳ ଯାଏ ତେଣୁ ରହିଥାଏ ଜାଣ ।
ବ୍ୟଷ୍ଟି ସମଷ୍ଟି ଜୀବର ସପନ ମଧ୍ୟରେ
କାଳର ଦୀର୍ଘତା ମାତ୍ର ପାର୍ଥକ୍ୟ ତହିଁରେ ।
ସ୍ୱପନ ପରେ ସ୍ୱପନ ଆମେ ଦେଖିଥାଉଁ
ଆତ୍ମା ସତ୍ୟ ହେତୁ ତାକୁ ସତ୍ୟ ମଣୁଥାଉଁ ।
ସମଷ୍ଟି ଜୀବ ସେପରି ଚିଦ୍‌ଘନ ବ୍ରହ୍ମର
ସତ୍ୟତା ହେତୁ, ଅସତ୍ୟ ସ୍ୱପ୍ନକୁ ତାହାର,
କ୍ରମାଗତ ସତ୍ୟ ରୂପେ କରେ ଦରଶନ
ଏହା ତାର ସ୍ୱପ୍ନ ପରେ ସ୍ୱପ୍ନ ଦରଶନ ।
ଯେ ବସ୍ତୁ ଯାହା ନୁହଇ ତାକୁ ସେହିପରି
ଦର୍ଶନ କରିବା ତାର ସ୍ୱପ୍ନ ଦେଖା ପରି ।
ସମଷ୍ଟି ଜୀବର ରାମ ଏହି କଳ୍ପନାରେ
ବ୍ୟଷ୍ଟି ଜୀବ ଯେ ସତ୍ୟତା ଆରୋପଣ କରେ ।
ସେ ହେତୁ ସମଷ୍ଟି ଜୀବ ନିତ୍ୟ ସର୍ବତ୍ରଗ
ସତ୍ୟ ଓ ଅନନ୍ତ ସବୁଥିରେ ସେ ପାରଗ ।
ବ୍ୟଷ୍ଟି ଜୀବର ଭାବନା ତାର ଅନ୍ତରସ୍ଥ
ପରମାତ୍ମାଙ୍କ ସହିତ ଥିବାରୁ ସଂପୃକ୍ତ ।
ସତ୍ୟ ବୋଲି ହୋଇଥାଏ ତାହା ବିବେଚିତ
ବ୍ୟଷ୍ଟି, ସମଷ୍ଟି, ସମ୍ପର୍କ ବୁଝ ରଘୁନାଥ ।
ହେ ରାମ ! ପୁଣ୍ଡରୀକାକ୍ଷ ଯେଉଁ ଉପଦେଶ
ଅର୍ଜ୍ଜୁନକୁ ଦେବେ ତାହା ଶୁଣ ସବିଶେଷ ।
ଯେଉଁ ଉପଦେଶ ବଳେ ପାଣ୍ଡବ ଅର୍ଜ୍ଜୁନ
ଜୀବନ ମୁକତ ହୋଇପାରିବେ ତା ଶୁଣ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
କହିବା ହୁଅନ୍ତୁ କେବେ ଜନ୍ମିବେ ଅର୍ଜ୍ଜୁନ ।
ଶ୍ରୀକୃଷ୍ଣ ତାହାଙ୍କୁ ଦେବେ କି କି ଉପଦେଶ
ମୋ ଆଗରେ କହ ମୁନି କରି ସବିଶେଷ ।
କହନ୍ତି ବଶିଷ୍ଠ ଏବେ ରାମଚନ୍ଦ୍ର ଶୁଣ
ମହାକାଶରେ ଆକାଶ ଯଥା ବିଦ୍ୟମାନ !
ତଦ୍ରୂପ ତବାତ୍ମା ଏକ ମହାନ୍ ଆତ୍ମାର
ଆଶ୍ରୟ କରି ରହିଛି ଆହେ ରଘୁବୀର ।
ନାହିଁ ଆଦି ନାହିଁ ଅନ୍ତ ସେ ମହାନାତ୍ମାର
ନିଜ ମହିମାରେ ନିଜେ କରେ ସେ ନିର୍ଭର ।
ସ୍ୱର୍ଣ୍ଣର ଉପରିଭାଗେ କାରୁକାର୍ଯ୍ୟ ପରି
ସେ ମହା ଆତ୍ମାରେ ଭବ ରହିଛି ସେପରି ।
ତନ୍ମଧ୍ୟରେ ସୂର୍ଯ୍ୟ, ଚନ୍ଦ୍ର ଯମ ଆଦି କରି
ବିରାଜନ୍ତି ଲୋକପାଳ ପଦବୀକୁ ଧରି ।
ପ୍ରତି ଚାରିଯୁଗ ଯେବେ ଗତ ହେଉଥାଇ
"ଜୀବହିଂସା" ପାପମାନ କ୍ଷୟ ହେବା ପାଇଁ ।
ଯମରାଜା ତପସ୍ୟାରେ ନିମଗ୍ନ ହୋଇଣ
ପ୍ରାଣୀହିଂସା ନକରନ୍ତି ସେହୁ କଦାଚନ ।
ବର୍ଷାକାଳେ ମଶାଙ୍କ ପ୍ରାଦୁର୍ଭାବ ପରି
ପ୍ରାଣୀ ସଂଖ୍ୟା ବୃଦ୍ଧିପାଏ ଧରାଯାଏ ଥରି ।

ଦସ୍ୟୁ ନିପୀଡ଼ିତ ହୋଇ ରମଣୀ ଯେପରି
ପତିର ଶରଣ ପଶେ ହଂସାଯାଏ ଉଡ଼ି ।
ଜୀବ ଭାର ବହନରେ କ୍ଳାନ୍ତ ହୋଇ କରି
ଧରା ହା, ହା କାର କରି ଡାକେ ହରିହରି ।
ବର୍ତ୍ତମାନ ସୂର୍ଯ୍ୟପୁତ୍ର ସେହି ଯମ ପଦେ
ଅଧିଷ୍ଠିତ ହୋଇଛନ୍ତି ଆହେ ରଘୁନୀଧେ ।
ଏଣିକି ସେ ତପସ୍ୟାରେ ରହିବେ ନିରତ
ତେଣୁ ପ୍ରାଣୀ ହିଂସାରୁ ସେ ରହିବେ ବିରତ ।
ଭଗବାନ ହରି ତାଙ୍କ କାର୍ଯ୍ୟଭାର ନେବେ
ପୃଥିବୀର ଭାରା ଭାର ହରଣ କରିବେ ।
ଦେବତାମାନଙ୍କ ଅଂଶ ଗ୍ରହଣ କରିଣ
ନରନାରାୟଣ ରୂପେ ହେବେ ଅବତୀର୍ଣ୍ଣ ।
ବସୁଦେବ ପୁତ୍ର ରୂପେ ହେବେ ଏକ ମୂର୍ତ୍ତି
ପଣ୍ଡୁପୁତ୍ର ରୂପେ ହେବେ ଦ୍ୱିତୀୟ ମୁରତି ।
ସ୍ୱଜନ ବିନାଶ ପାଇଁ କୁରୁକ୍ଷେତ୍ର ଯୁଦ୍ଧେ
ଅର୍ଜ୍ଜୁନଙ୍କୁ ଅନିଚ୍ଛୁକ ଦେଖି ଯୁଦ୍ଧ ମଧ୍ୟେ ।
ତାଙ୍କ ମୋହ ଭଗ୍ନ ପାଇଁ ଶ୍ରୀକୃଷ୍ଣ ଯେମନ୍ତ
ଉପଦେଶ ଦେବେ ଏବେ ଶୁଣ ସେ ବୃତ୍ତାନ୍ତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଅର୍ଜ୍ଜୁନ ଉପାଖ୍ୟାନେ ନର ନାରାୟଣ ଅବତାର ବର୍ଣ୍ଣନେ ନାମ ଅଠଚାଳିଶ ସର୍ଗଃ**



## ଅଣଚାଶ ସର୍ଗଃ

## ଅର୍ଜ୍ଜୁନଙ୍କୁ ଉପଦେଶ

କହଲେ ଶ୍ରୀକୃଷ୍ଣ ଶୁଣରେ, ବାବୁ ଅର୍ଜ୍ଜୁନ
ଜରା, ମୃତ୍ୟୁ ଆଦି କରି ଯେ ବିକାର ମାନ ।
ଯେଣୁ ସେ ଷଡ଼ ବିକାର ନଥାଇ ତୋହର
ତୁ ସେହି ଶାଶ୍ୱତ ଆତ୍ମା ପାଣ୍ଡବ ସୁନ୍ଦର ।
ଅନ୍ୟଙ୍କୁ ହତ୍ୟା କରିବୁ ଏହି ଅଭିମାନ
କିମ୍ପାଇ ମନରେ ତୋର କିରଛୁ ପୋଷଣ ।
ଯାହାର ଅନ୍ତର ଦେଶେ ନାହିଁ ଅହଂକାର
ସିଦ୍ଧି ଅସିଦ୍ଧିକୁ ଯେହୁ ନ କରେ ଖାତର ।
ସିଦ୍ଧି ଲାଭ କଲେ ସୁଦ୍ଧା ହରସ ନଥାଇ
ଅସିଦ୍ଧିରେ ଦୁଃଖ ତାପ ତାକୁ ନ ଲାଗଇ ।
ଯଦି ସେ ସବୁ ପ୍ରାଣୀଙ୍କୁ କରଇ ନିହତ
ବାସ୍ତବରେ ସେ କେବେ ହେଁ ନ କରଇ ହତ ।
ଅନ୍ୟ କେହି ଯେବେ ତାକୁ କରଇ ନିହତ
ନିହତ ନୁହଇ ସେହୁ କେଉଁ ପଣ୍ଡୁସୁତ ।
"ମୁଁ କରୁଛି" ଏହି ରୂପ ଭ୍ରାନ୍ତିମୟ ଜ୍ଞାନ
ଅନ୍ତରରୁ ତେଜ୍ୟାକର ପଣ୍ଡୁଙ୍କ ନନ୍ଦନ ।
ମୁହିଁ ହନ୍ତା ଏହି ଭ୍ରମ ଅଜ୍ଞାନ ତୋହର
ଅନ୍ତରେ ଦୃଢ଼ ହୋଇଲେ ରେ କିରୀଟି ବୀର ।
ହତ୍ୟା ଦୋଷ ପାପେ ପରଲୋକ ହରାଇବୁ
ଇହଲୋକେ ଜ୍ଞାତି ହତ୍ୟା ଦୋଷ ମୁଣ୍ଡାଇବୁ ।
ତେଣୁ ଅଜ୍ଞାନ ଦୋଷରୁ ହୋଇ ହତଜ୍ଞାନ
ଦୁଇକୂଳ ହରାଇବୁ ରେ ବାବୁ ଅର୍ଜ୍ଜୁନ ।
ଅହଂକାର ବଶ ହୋଇ ଯେ ହୁଏ ବିମୁଢ଼
ଦେହ ଅଭିମାନ ଘେନି ରହିଥାଏ ଦୃଢ଼ ।
ନିଜକୁ ସେ ସବୁ କାର୍ଯ୍ୟ କର୍ତ୍ତା ମନେକରେ
ତେଣୁ ଖାଲେ ପଡ଼ି ସଢ଼ୁଥାଏ କାଳେ କାଳେ ।
ବିଚାର ବଳରେ କିନ୍ତୁ ହୁଅଇ ପ୍ରତୀତ
ଇନ୍ଦ୍ରିୟେ କରନ୍ତି ସ୍ୱ ସ୍ୱ କର୍ମ ସମ୍ପାଦିତ ।
ବାସ୍ତବରେ ସେ ସବୁର କର୍ତ୍ତା ନୁହେଁ ମୁହିଁ
ଇନ୍ଦ୍ରିୟମାନେ ସେ ସବୁ କରିଥାନ୍ତି ଭାଇ ।
ଇନ୍ଦ୍ରିୟଙ୍କ କୃତକାର୍ଯ୍ୟେ ଆହେ ଅରଜୁନ
ଆତ୍ମ ଅଭିମାନ ସିନା ଅକର୍ତ୍ତବ୍ୟ ଜାଣ ।
ଅନ୍ତଃକରଣ ହିଁ କରେ ସଂକଳ୍ପାଦି କର୍ମ
ଆତ୍ମା ତହିଁରେ ଲିପତ ନ ରହଇ ଜାଣ ।
କି ବହିରିନ୍ଦ୍ରିୟ କିବା ଅନ୍ତର ଇନ୍ଦ୍ରିୟ
କାହିଁ କିଛି ନ କରୁଛ ଆହେ ଧନଞ୍ଜୟ ।
ଆଉ ମଧ ବିବେଚନା କର ହେ ଭାରତ
ବହୁଲୋକ ହୋଇଥାନ୍ତି ଯହିଁ ସମବେତ ।
ବହୁଲୋକ ମିଳି କରିଥାନ୍ତି ଯେଉଁ କର୍ମ
ଜଣେ ଯଦି କର୍ତ୍ତା ବୋଲି କରେ ଅଭିମାନ ।
ଏହି ଅଭିମାନ ପଣ୍ଡିତଙ୍କୁ ନ ରୁଚଇ
ଏକମାତ୍ର କର୍ତ୍ତା ବୋଲି ଯେଣୁ ସେ କହଇ ।
ଆତ୍ମ ଶୁଦ୍ଧି ଲାଭ ପାଇଁ ଯୋଗୀଜନ ଗଣ
ଅସଙ୍ଗ ହୋଇଣ କରିଯାନ୍ତି କର୍ମମାନ ।
ଅହଂକାର ରୂପ ବିଷ କରି ସୁଦ୍ଧା ପାନ
ଯେଉଁ ବ୍ୟକ୍ତି ନ ପଡ଼ଇ ମରଣ ଗ୍ରାସେଣ ।

ଜାଗତିକ, ଶାସ୍ତ୍ରୋଚିତ ସର୍ବକର୍ମମାନ
କରିବା, ବା ନ କରିବା ତା ପକ୍ଷେ ସମାନ ।
ଭୋଗକଲେ ହେଁ ସେ ସବୁ କର୍ମଫଳମାନ
"ଫଳଭୋକ୍ତା" ବୋଲି ନିଜେ ନ କରଇ ଜ୍ଞାନ ।
ବିଷୟାନୁରାଗ ପାର୍ଥ ସେ ପୁରୁଷଙ୍କର
କଦାପି ନ ଥାଏ ଜାଣ ହେ ପଣ୍ଡୁକୁମର ।
ନିରହଙ୍କାର, ମମତା ଶୂନ୍ୟ କ୍ଷମାଶୀଳ
ସୁଖେ ଦୁଃଖେ ସମଦର୍ଶୀ ଯେଉଁ ସାଧୁ ନର ।
କର୍ତ୍ତବ୍ୟ କରମମାନ କରିଲେ ହେଁ ସେହି
କୌଣସି ମତେ ଲିପତ ତହିଁ ସେ ନୁହଁଇ ।
କ୍ଷତ୍ରିୟ ଜାତି ତୁମର ହେ ପଣ୍ଡୁନନ୍ଦନ
ତେଣୁ ଯୁଦ୍ଧ ଅଟେ ତୁମ କର୍ତ୍ତବ୍ୟ କରମ ।
ତାହାପ୍ରତି ପରାଙ୍ମୁଖ ହେବାଟା ତୁମର
ଉଚିତ ନୁହଁଇ ଆହେ କୁନ୍ତୀଙ୍କ କୁମର ।
ଯୁଦ୍ଧରେ ମିତ୍ର ଅଥବା ବନ୍ଧୁଜନଙ୍କର
ବଧ ସାଧନ ପାଇଁ କି ବାଧ ହେଲେ ନର ।
କ୍ଷତ୍ରୀୟ ପକ୍ଷରେ ତାହା ନୁହେଁ ଅକର୍ତ୍ତବ୍ୟ
ଯଥାର୍ଥ ମର୍ମ ବୁଝିବ ହେ ପାଞ୍ଚାଳି ଧବ ।
ଯେହେତୁ କ୍ଷତ୍ରୀୟ ଗଣ ସେହି କର୍ମ କରି
ତାଙ୍କ ଚିତ୍ତ ଶୁଦ୍ଧି ହୋଇଥାଏ ଯେଣୁ କରି ।
ଧର୍ମ, ଯଶ, ରାଜ୍ୟ ଆଦି ଲାଭ କରିଥାନ୍ତି
ଅକ୍ଷୟ ଯଶ ଲଭିଣ ସରଗେ ବସନ୍ତି ।
ହେଲେ ହେଁ ଧର୍ମ ବିରୋଧ ଗୁରୁବନ୍ଧୁ ହତ୍ୟା
ତୁମ ପକ୍ଷେ ଘୃଣ୍ୟ ନୁହେଁ ହେ ଗାଣ୍ଡିବ ହସ୍ତା ।
ଏ ସିଦ୍ଧାନ୍ତ ସିଦ୍ଧ କରି ମନ ମଧ୍ୟେ ତବ
ଶତ୍ରୁବଧ କରିଯାଅ ତୃତୀୟ ପାଣ୍ଡବ ।
"ସ୍ୱଧର୍ମ ପାଳନ" ଅଟେ ସବୁରି କର୍ତ୍ତବ୍ୟ
ପାଳନ କରନ୍ତି ତାହା ଜ୍ଞାନୀଜନ ସର୍ବ ।
ସ୍ୱଧର୍ମ ପାଳନ ପାଇଁ ମୂର୍ଖମାନେ ମଧ୍ୟ
ପରାଙ୍ମୁଖ ନ ହୁଅନ୍ତି କେଭେଁ ଆହେ ସିଦ୍ଧ ।
ସବୁରି ପକ୍ଷେ ଯେଣୁ ତା ଅଟେ ଶ୍ରେୟସ୍କର
ସିଦ୍ଧି ଅସିଦ୍ଧିରେ ସମଜ୍ଞାନ ଧରି ଚଳ ।
ଅସଙ୍ଗ ଭାବେ କରମେ ହୁଅ ହେ ପ୍ରବୃତ୍ତ
ଫଳ ପ୍ରତି ଆକାଂକ୍ଷା ନ ରଖି ପଣ୍ଡୁସୁତ ।
ଉପସ୍ଥିତ କର୍ମମାନ କଲେ ସଂପାଦନ
ତହିଁ କେଭେ ବଦ୍ଧ ନ ହୋଇବ ହେ ଅର୍ଜ୍ଜୁନ ।

ଆପଣାକୁ ବ୍ରହ୍ମମୟ ମଣି ହେ ଅର୍ଜ୍ଜୁନ
ବ୍ରହ୍ମମୟ କରିବାକୁ ଏ ଯୁଦ୍ଧକୁ ଜାଣ ।
ଯତ୍ନବାନ୍ ହୁଅ ଆହେ ବୀରବର ପାର୍ଥ
ତେବେ ତୁମର ଜୀବନ ହୋଇବ ଯଥାର୍ଥ ।
ଯଦି ତୁମେ ଏ ସକଳ କର୍ମକୁ ତୁମର
ବ୍ରହ୍ମେ ଅରପିଣ ବ୍ରହ୍ମମୟ କରିପାର ।
ତେବେ ଯାଇ ତୁମେ ବ୍ରହ୍ମ ସାରୂପ୍ୟ ଲଭିବ
ମୋର କଥା ହେଜ ରଖ ହେ ପାଣ୍ଡବ ଗର୍ବ ।
ଜାଣି ନ ପାରୁଛ ଯେବେ ନିର୍ଗୁଣ ବ୍ରହ୍ମକୁ
ଅରୂପ କର୍ମ ସକଳ ସଗୁଣ ବ୍ରହ୍ମକୁ ।
ସର୍ବ ଜୀବେ ଆତ୍ମା ରୂପେ ବିରାଜିତ ହରି
ଏହା ଜାଣି ନିରାମୟ ହୁଅ ସର୍ବସ୍ଥଳୀ ।
ବିଭୁ ପଦେ ସର୍ବ କର୍ମ କରି ସମର୍ପଣ
ସର୍ବତ୍ର ସମଦରଶୀ ହୁଅ ହେ ଅର୍ଜ୍ଜୁନ ।
କର୍ମ ବନ୍ଧନ ତୁମର ନ ଘଟିବ ପୁଣି
ତେବେ ମୁକତି ଲଭିବ ହେ ଗାଣ୍ଡିବପାଣୀ ।
କହଲେ ଅର୍ଜ୍ଜୁନ ଆହେ ଚକ୍ରଧର ଶୁଣ
ଅସଙ୍ଗ, ଜ୍ଞାନ ଓ ଯୋଗ, ବ୍ରହ୍ମେ କର୍ମାପଣ ।
ଈଶ୍ୱରଙ୍କଠାରେ ପୁଣି ଆତ୍ମସମର୍ପଣ
କଳା କି ଧଳା ଏ ସବୁ ନ ଜାଣେ ମୋ ମନ ।
ଦୟାକରି କହ ମୋତେ ଆହେ ଲକ୍ଷ୍ମୀ ସାଇଁ
କୃତ କୃତ୍ୟ ରହିବି ମୁଁ ଚିରକାଳ ପାଇଁ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ପାର୍ଥକୁ କୃଷ୍ଣ କହିବେ ଏମନ୍ତ ପ୍ରକାର ।
ସଂକଳ୍ପ ପୁଣି ବାସନା ହୋଇଯାନ୍ତେ କ୍ଷୀଣ
ପ୍ରତ୍ୟେଗାତ୍ମା ରୂପେ ଯାର ମିଳେ ଦରଶନ ।
ସେହି ଏକା ଜାଣ "ବ୍ରହ୍ମ" ପାଣ୍ଡବ ଅର୍ଜ୍ଜୁନ
ଅଥୟ ହେଉ ତୁ କିମ୍ବା ତତ୍ତ୍ୱ ନ ବୁଝିଣ ।
ଦୂରୀଭୂତ ହୁଏ ଯେବେ ଜୀବର ଅଜ୍ଞାନ
ଚିତ୍ତର ଏକ ନିଷ୍ଠତା ବ୍ରହ୍ମରେ ଯା' ଜାଣ ।
ତାହାକୁ କହନ୍ତି 'ଜ୍ଞାନ' ହେ ବୀର ଅର୍ଜ୍ଜୁନ
ବ୍ରହ୍ମ ଶବ୍ଦ ଉପଲବ୍ଧ ଯୋଗ ବୋଲେ ଜାଣ ।
ଅଭିମାନ, ତଜ୍ଜନିତ ବିଷୟ ସକଳ
ଯେବେ ତେଜିପାର ତୁମେ ମନରୁ ତୁମର ।
"ସକଳ ହିଁ ବ୍ରହ୍ମମୟ" ଏହି ଜ୍ଞାନ ହେଲେ
"ବ୍ରହ୍ମେ କର୍ମ ଅରପଣ" ହୋଇଥାଏ ଭଲେ ।

ବ୍ରହ୍ମ ଅଟେ ଶାନ୍ତ, ବ୍ରହ୍ମ ଅନ୍ତବର୍ହିହୀନ
ବ୍ରହ୍ମ ନିର୍ମଳ, ଅନ୍ତର, ଦୃଶ୍ୟାତିତ ପୁଣ ।
ଅଥଚ ସେ ଦୃଶ୍ୟମୟ ଜାଣ ହେ ଅର୍ଜ୍ଜୁନ
ବ୍ରହ୍ମକୁ ବ୍ରହ୍ମ ଜାଣିବ ହେ ପଣ୍ଡୁ ନନ୍ଦନ ।
ଏହି ଯେ ଜଗତ୍ ବୈଚିତ୍ର୍ୟ ଏହା କିଛି ନୁହେଁ
ସବୁ ଆକୃତିରେ ବ୍ରହ୍ମ ଏକା ରାଜୁ ଥାଏ ।
ଏହା ବୁଝି ଦ୍ୱୈତଜ୍ଞାନ ହେଲେ ବିଦୁରିତ
"ବ୍ରହ୍ମେ କର୍ମାପଣ" ବୋଲି ହୁଅଇ କଥିତ ।
ଜୀବର ଅଜ୍ଞତା ହେତୁ ବ୍ରହ୍ମେ ଦ୍ୱୈତ ବୁଦ୍ଧି
ଉତପନ୍ନ ହୋଇଥାଏ ପାଣ୍ଡବ ସୁବୁଦ୍ଧି ।
ଭିନ୍ନ ଭିନ୍ନ ନାମ ଜାଣ ସେ ଦ୍ୱୈତ ବୁଦ୍ଧିର
କାରଣ ଅଟଇ ଆହେ ପଣ୍ଡୁଙ୍କ କୁମର ।
ଦ୍ୱୈତ ବୁଦ୍ଧିକୁ ସେହେତୁ ନାମ ମାତ୍ର ଜାଣି
ପରିହାର କରିଥାନ୍ତି ସୁଜାଣ ଅଗ୍ରଣୀ ।
ବୋଧ ସ୍ୱରୂପ ଅଟନ୍ତି ସେହି ବ୍ରହ୍ମଜାଣ
ଜଗତ୍ ବ୍ୟାପୀ ବୋଲି ସେହି ଜାଣ ହେ ଅର୍ଜ୍ଜୁନ ।
ଜଗତ୍ ଯେ ବ୍ରହ୍ମ, ଏଥି କୌଣସି ସନ୍ଦେହ
କରିବ ନାହିଁଟି ଜାଣ ଆହେ ଧନଞ୍ଜୟ ।
ମୁଁ ଅଟେ ଜଗତ୍, ମୁହିଁ ଏ ଦିଗ ସକଳ
ମୁହିଁ କର୍ମ, ମୁହିଁ ପୁଣି ସ୍ୱକର୍ମ ଆଧାର ।
ଦ୍ୱୈତ ଓ ଅଦ୍ୱୈତ ଭାବ କେବଳ ଯେ ମୁହିଁ
କାଳ ମଧ୍ୟ ମୁହିଁ ଜାଣ ହେ ସୁଭଦ୍ରା ସାଇଁ ।
ଦ୍ୱୈତ ଅଦ୍ୱୈଇତ ଭାବ ନିୟମ ଅଧୀନ
ଏହି ଜଗତ୍ ପ୍ରପଞ୍ଚ ମୁହିଁ ସିନା ଜାଣ ।
ତେଣୁ ହେ ଅର୍ଜ୍ଜୁନ ତୁମ ଆତ୍ମା ଓ ମନକୁ
କୁଣ୍ଠିତ ନୁହଁ ଅର୍ପଣ ମୋତେ କରିବାକୁ ।
ମୋର ଗୁଣମାନ କରି କୀର୍ତ୍ତନ, ଶ୍ରବଣ
ମୋହଠାରେ ଭକ୍ତି ଲଭ ଆହେ ଅରଜୁନ ।
ସବୁବେଳେ କରୁଥାଅ ମୋତେ ନମସ୍କାର
କର୍ମ, ଜ୍ଞାନ ଯଜ୍ଞବଳେ ମୋ ଯଜନ କର ।
ଏହି ଭାବେ ସର୍ବଥା 'ମୋ' ପରାୟଣ ହୋଇ
ସର୍ବାତ୍ମା ସ୍ୱରୂପ ମୋତେ ଲଭିବୁ ଯେ ତୁହି ।
ଅର୍ଜ୍ଜୁନ କହିବେ ତେବେ ଶୁଣ ଦେବବର
ପର, ଅପର ଦ୍ୱିବିଧ ଯେ ରୂପ ତୁମ୍ଭର
ତାହା କି ପ୍ରକାର ମୋତେ କହ ଦୟାକରି ?
ସିଦ୍ଧି ଲାଭ ପାଇଁ କାହାକୁ ମୁଁ ଆଶ୍ରା କରି ?

କହିବେ ଶ୍ରୀ ଭଗବାନ ଅର୍ଜ୍ଜୁନଙ୍କୁ ଚାହିଁ
"ସାଧାରଣ" ଓ "ପରମ" ମୋର ରୂପ ଦୁଇ ।
ହସ୍ତପଦ ଆଦିକରି ଆକୃତି ସଂପନ୍ନ
ଶଙ୍ଖ, ଚକ୍ର, ଗଦା, ପଦ୍ମ ମୋ ଚାରି ଭୁଜେଣ ।
ଧରିଥିବି ଏ ମୁରତି ମୋର "ସାଧାରଣ"
ମନେରଖ ଥିବ ଏହା ପାଣ୍ଡବ ଅର୍ଜ୍ଜୁନ ।
ଅନାଦି, ଅନନ୍ତ, ଅଦ୍ୱୟ, ଯେ ନିରାମୟ
ଜ୍ଞାନୀଙ୍କ ମତେ "ପରମ ଆତ୍ମା" ଧନଞ୍ଜୟ ।
'ବ୍ରହ୍ମ' 'ଆତ୍ମା' ବୋଲି କରିଥାନ୍ତି ଅଭିହିତ
ତାହା ମୋ 'ପରମ ରୂପ' ଆହେ ପଣ୍ଡୁସୁତ ।
ଯେତେଦିନ ଆତ୍ମଜ୍ଞାନ ଲଭି ନ ପାରିଛ
ମୋର ଏହି 'ସାଧାରଣ ରୂପ' ପୂଜ ବତ୍ସ ।
ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରିଥିବି ହସ୍ତେ
ଶ୍ରୀବତ୍ସ ଲାଞ୍ଛନ ଚିହ୍ନଥିବ ହୃଦଗତେ ।
ଏହି ରୂପ ପୂଜାବଳେ ଯେବେ ତୁମ ଚିତ୍ତ
ବିଶୁଦ୍ଧ ହୋଇ ପଡ଼ିବ ଆହେ ପଣ୍ଡୁସୁତ ।
ମୋର "ପରମ ରୂପକୁ" କରିବ ପୂଜନ
ଅନାଦି, ଅନନ୍ତ ରୂପ ଯାହା ଚିରନ୍ତନ ।
ଅନୁଭବ କରିପାରେ ମୋ ଏ ରୂପ ଯେହୁ
ସଂସାରେ ଜନ୍ମଗ୍ରହଣ ନ କରଇ ସେହୁ ।
ଯେବେ ତୁମେ ମନେ କରହେ ଶତ୍ରୁମର୍ଦ୍ଦନ
ବିଶୁଦ୍ଧ ହୋଇ ଯାଇଛି ଅନ୍ତର୍ଦ୍ଦେଶ ତୁମ ।
ତେବେ ମୋ ଏହି 'ଅଖଣ୍ଡ ଏକରସ ରୂପ'
ଆଶ୍ରୟ କରି ଚଳହେ ଜ୍ଞାନୀଙ୍କ ଅଧୀପ ।
ଏ ଦିକ୍ ସକଳ ପୁଣି ସମଗ୍ର ଜଗତ
ମୁହିଁ ତା କେବଳ ଅଟେ ଆହେ ପଣ୍ଡୁସୁତ ।
ଏହି ଯେ ସକଳ କଥା ତୁମ୍ଭଙ୍କୁ କହୁଛି
ଆତ୍ମତତ୍ତ୍ୱ ଉପଦେଶ କେବଳ ଦେଉଛି ।
ଆଶ୍ରାକରି ତୁମେ ମୋର ଏହି ଉପଦେଶ
ଉଦ୍‌ବୁଦ୍ଧ ହୋଇ ଚିହ୍ନିଛ ଯେହୁ ପରମେଶ ।
ସର୍ବସଂକଳ୍ପ ତୁମର ହୋଇଛି ବର୍ଜିତ
ତେଣୁ ସତ୍ୟ ଏକାତ୍ମାରେ ହୁଅ ବିରାଜିତ ।
ଆତ୍ମାଠାରେ ତୁମ୍ଭେ ହୋଇକରି ଯୋଗଯୁକ୍ତ
ଆତ୍ମାକୁ ସର୍ବଭୂତରେ ଦେଖ ଅବସ୍ଥିତ ।
ସର୍ବଭୂତକୁ ଆତ୍ମାରେ ଦେଖ ବିରାଜିତ
ପଦେ ପଦେ ଅନୁଭବ କର ଏହି ତତ୍ତ୍ୱ ।

ଯେ ବ୍ୟକ୍ତି ଦେଖେ ଆତ୍ମାକୁ ସର୍ବ ଭୂତେ ସ୍ଥିତ
ପୁଣି ସର୍ବଭୂତ ଆତ୍ମା ମଧ୍ୟେ ବିରାଜିତ ।
ଆଉ ବୁଝିପାରୁଥାଏ ଆତ୍ମାର ଏକତ୍ୱ
ପୁନର୍ଜନ୍ମ ନ ଲଭି ସେ ହୁଅଇ ମୁକତ ।
ସର୍ବଭୂତେ ଦେଖେ ଯେବେ ଆତ୍ମା ପ୍ରତିଷ୍ଠିତ
ସର୍ବଶବ୍ଦ ଆତ୍ମା ବୋଲି ବୁଝେ ହୃଦଗତ ।
'କେବଳ ଚିଦାତ୍ମାକାଶ ଅଟେ ଭୂମାନନ୍ଦ'
ଏହାକୁ ବୁଝିପାରଇ ଯେଉଁ ମହାସିଦ୍ଧ ।
ଅଚିରେ ସେ ଜୀବ ଲଭିପାରେ କଇବଲ୍ୟ
କୈବଲ୍ୟ ହେତୁ ଜୀବନ ଲଭଇ ସାଫଲ୍ୟ ।
ଯେ ଅଟେ ସର୍ବଜୀବଙ୍କ ଅନ୍ତର ଆଲୋକ
ଅନୁଭବ ବିନା ବୁଝିନୁହେଁ ଯେ ଆଲୋକ ।
ମୁହିଁ ଅଟେ ସେହି ଆତ୍ମା ଆହେ ଅରଜୁନ
ମୁହିଁ ସିନା ସେ ପରମ ବ୍ରହ୍ମ ସନାତନ ।
ଦୁଗଧ, ଜଳ, ଲୁଣ ମଧ୍ୟେ ଜାଣହେ ଭାରତ
ରସରୂପେ ଯାହା ରହିଥାଏ ବିରାଜିତ ।
ଅନୁଭବ ରୂପେ ପ୍ରତି ପ୍ରାଣୀଙ୍କ ମଧ୍ୟରେ
ବିରାଜିତ ହେଉଥାଏ ସେହୁ ଚରାଚରେ ।
ଅନୁଭବ୍ୟ ବିଷୟରୁ ଯେ ହୁଏ ନିର୍ମୁକ୍ତ
ସର୍ବବ୍ୟାପୀ ଆତ୍ମା ସେହୁ ଶୁଣ କୁନ୍ତିସୁତ ।
ଦୁଗ୍ଧ ମଧ୍ୟେ ଘୃତ ଯଥା ଲୁକ୍‌କାୟିତ ଥାଏ
ସର୍ବବସ୍ତୁ ସର୍ବାନ୍ତରେ ତଥା ମୁହିଁ ରହେ ।
ଘଟ ବାହାରେ, ଭିତରେ ଆକାଶ ଯେସନ
ସବୁଠାରେ ସମଭାବେ କରେ ଅବସ୍ଥାନ ।
ତଦ୍ରୂପ ସର୍ବଜଗତ ସକଳ ପ୍ରାଣୀର
ଅନ୍ତରେ ପୁଣି ବାହାରେ ମୁହିଁ ନିରନ୍ତର ।
ନିର୍ଲେପ ଆତ୍ମା ରୂପରେ ଅଛି ବିରାଜିତ
ଏହି ତତ୍ତ୍ୱ ବୁଝିରଖ ଆହେ ପଣ୍ଡୁସୁତ ।
ଆବ୍ରହ୍ମ ତୃଣ ସକଳ ସବୁରି ଅନ୍ତରେ
ବିରାଜିତ ଯେହୁ ସତ୍ତା ସାମାନ୍ୟ ରୂପରେ ।
ସେହି ଯେ ଅଟନ୍ତି ପାର୍ଥ ସେହି ଅଜଆତ୍ମା
ସେହି ସବୁ ହର୍ତ୍ତା କର୍ତ୍ତା ହେ ଗାଣ୍ଡିବ ହସ୍ତା ।
ତୁମେ, ଆମେ, ଏ ଜଗତ ଏହା ମଧ୍ୟ ଦେଇ
ଯେ ସର୍ବତ୍ର ପ୍ରକାଶଇ ବ୍ରହ୍ମ ଜାଣ ସେହି ।
ବ୍ରହ୍ମ ବୋଲି ମଣ ପାର୍ଥ ଏସର୍ବ ଜଗତ
ଏ ସର୍ବ ସୁଖ ଦୁଃଖରେ ଆତ୍ମା ନିର୍ଲିପିତ ।

ସାଗର ତରଙ୍ଗ ଯଥା ସାଗରେ ବିଲିପ୍ତ
ଆମେ ତୁମେ ଯେତେ ଚିତ୍ତ ଅଭିମାନୁଁ ଜାତ ।
ଆତ୍ମାରୁ ଉତ୍‌ଥିତ ହୋଇ ପୁଣି ସେ ଆତ୍ମାରେ
ଲୟ ପ୍ରାପ୍ତ ହୋଇଥାନ୍ତି ହେ ପଣ୍ଡୁକୁମରେ ।
ତରଙ୍ଗର ଜଳଭାବ ଯେସନ ଯଥାର୍ଥ
ପଦାର୍ଥର ଆତ୍ମଭାବ ତେସନ ମୁକତ ।
ଯେ ବ୍ୟକ୍ତି ଆତ୍ମାକୁ ଦେଖେ ସରବଭୂତରେ
ପୁଣି ସର୍ବଭୂତଙ୍କୁ ଯେ ଦେଖଇ ଆତ୍ମାରେ ।
କର୍ମମୟ ଭୂତ ମଧ୍ୟେ ଆତ୍ମାକୁ ଯେ ବ୍ୟକ୍ତି
ଅକର୍ତ୍ତା, ନିଶ୍ଚଳରୂପେ ଦେଖୁଥାଏ ନିତି ।
ଅଳଙ୍କାର ମଧ୍ୟେ ଯଥା ସୁନା ରହିଥାଇ
ଆତ୍ମା ସେହିପରି ସର୍ବଭୂତେ ବିରାଜଇ ।
ପଦାର୍ଥ ବା ଜୀବ ତୁମେ ଯାହା କିଛି ଦେଖ
ସେ ସକଳ ଜାଣ ସେହି ବ୍ରହ୍ମ ବିଶ୍ୱ ମୁଖ ।
ତେଣୁ ସ୍ୱଜନ, ବାନ୍ଧବ, ଗୁରୁଜନଙ୍କର
ଅସ୍ତିତ୍ୱ ବା କାହିଁ ଆହେ ଅରଜୁନ ବୀର ।
ଯେଣୁ ବୁଝିଲ ସକଳ ଅଟେ ବ୍ରହ୍ମମୟ
ବୃଥାରେ ତୁମକୁ କିମ୍ପାଗ୍ରାସ କରେ ମୋହ ।
ସାଧୁଗଣ ଆତ୍ମତତ୍ତ୍ୱ କରିଣ ଶ୍ରବଣ
ନିର୍ଭୟ ହୁଅନ୍ତି ଅଭୟବ୍ରହ୍ମଙ୍କୁ ଲଭିଣ ।
ସୁଖ ଦୁଃଖ, ଶୀତ, ଉଷ୍ଣ, ଅବସାଦ ମୋହ
ଦ୍ୱନ୍ଦ୍ୱଭାବ କିଛି ତାଙ୍କ ନ ରହେ ନିଶ୍ଚୟ ।
ଆତ୍ମଜ୍ଞାନେ ପୂର୍ଣ୍ଣ ହୋଇ ସେହି ବ୍ୟକ୍ତିଗଣ
ଶାଶ୍ୱତ ପଦକୁ ପ୍ରାପ୍ତ ହୋଇଥାନ୍ତି ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଅର୍ଜ୍ଜୁନ ଉପାଖ୍ୟାନେ ଅର୍ଜ୍ଜୁନ ଉପଦେଶ ବର୍ଣ୍ଣନେ ନାମ ଅଣଚାଶ ସର୍ଗଃ**



## ପଚାଶ ସର୍ଗଃ

## ଆତ୍ମଜ୍ଞାନ ଉପଦେଶ

କହିବେ ଶ୍ରୀକୃଷ୍ଣ ଶୁଣ ଆହେ ଅରଜୁନ
ଆଗ୍ରହରେ ମୋ ବଚନ କରିଛ ଶ୍ରବଣ ।
ଆନନ୍ଦିତ ହୋଇଅଛ ତା ଅର୍ଥ ବୁଝିଣ
ତୁମର ମଙ୍ଗଳପାଇଁ ଯା କହୁଛି ଶୁଣ ।

ବିଷୟ ଓ ଇନ୍ଦ୍ରିୟର ସଂଯୋଗ ବଶତଃ
ଶୀତ, ଉଷ୍ଣ ଆଦି କରି ହୁଏ ଅନୁଭୂତ ।
ତହିଁରୁ ସୁଖଦୁଃଖାଦି ହୁଏ ଉତପନ୍ନ
ଅନିତ୍ୟ ଅଟନ୍ତି ଏହି ସୁଖଦୁଃଖମାନ ।
ତାହାର ଅବଶ୍ୟମ୍ଭାବୀ ବିନାଶ ହେଜିଣ
ତୁଚ୍ଛମଣି ତାଙ୍କୁ ତେଜି ଦିଅହେ ଅର୍ଜ୍ଜୁନ ।
ପୂର୍ଣ୍ଣାନନ୍ଦ ଆତ୍ମାଠାରୁ ଏହି ସୁଖଦୁଃଖ
ପୃଥକ୍ ନୁହନ୍ତି ଶୁଣ ହେ ବୀର ତିଳକ ।
ଏହିପରି ଅନୁଭବ ଯେବେ କରିପାର
ସୁଖଦୁଃଖ ଅନୁଭୂତ ନୋହିବ ତୁମର ।
ଧନପୁତ୍ରାଦି ସଂପନ୍ନେ ବଢ଼େ ଯେଉଁ ଗର୍ବ
ତାର ଅଭାବରେ ଯେବେ ସେହି ଗର୍ବ ଖର୍ବ,
ଏଥିରେ କୌଣସି ମତେ ସାରବତ୍ତା ନାହିଁ
ବୃଥାରେ ଘାରିହେବାରେ କିଛି ଅର୍ଥ ନାହିଁ ।
କ୍ଷୟ, ଉଦୟ ରହିତ ଆତ୍ମାର ମଧ୍ୟରେ
ସୁଖ ଦୁଃଖର ଉଦୟ ହେବ କି ପ୍ରକାରେ ?
ଏହିରୂପ ସୁଖ ଦୁଃଖ ଭ୍ରମରୁ ଜନମ
ଆତ୍ମାରୁ ଅଭିନ୍ନ ରୂପେ କରିଲେ ଚିନ୍ତନ,
ସେହି ସବୁ ସୁଖ ଦୁଃଖ ଜଣାଯାଏ ନାହିଁ
ବୃଥାରେ ମନରେ ତୁମେ ଆଣୁଛ କିମ୍ପାଇଁ ।
ଯେହେତୁରୁ ଏହି ଆତ୍ମା ଅଟେ ସର୍ବମୟ
ଏହି ସୁଖଦୁଃଖ ସେହିପରି ସର୍ବମୟ ।
ଏଥିରେ ବା କି ସନ୍ଦେହ ଆହେ ଧନଞ୍ଜୟ
କଳ୍ପନା ବସ୍ତୁ ପାଇଁ କି କିମ୍ପାହେ ଅଥୟ ?
ଯାହା କି ଅଟଇ ମିଥ୍ୟା ତାହାର ଅସ୍ତିତ୍ୱ
କେଭେ ହେଁ ରହି ନ ପାରେ ବୀରବର ପାର୍ଥ ।
ଯାହା ଅଟେ ସତ୍ୟ ତାହା ସବୁବେଳେ ଥାଇ
ସତ୍ୟର ଅଭାବ କେବେ ଘଟି ନ ପାରଇ ।
ସୁଖ ଦୁଃଖର ଅସ୍ତିତ୍ୱ ଯେଣୁ କିଛି ନାହିଁ
ଏକମାତ୍ର ପରମାତ୍ମା ତେଣୁ ବିରାଜଇ ।
ଆତ୍ମା ଅଛି, ଜଗତ ନାହିଁ ଏପରି ଯେ ବୁଦ୍ଧି
ପରିହାର କରିଦିଅ ତୁମେ ହେ ସୁବୁଦ୍ଧି ।
ଯେଉଁ ମନ ସଂଯୋଜକ ଜଗତ ଆତ୍ମାର
ସେ ମନକୁ ପାର୍ଥ ତୁମେ ଦୂରୀଭୂତ କର ।
ତାହା ହେଲେ ସେହି ଚିଦାତ୍ମାରେ ହେ ଅର୍ଜ୍ଜୁନ
ପ୍ରତିଷ୍ଠିତ ହେବ ଏହି ବାଣୀ ମୋର ଘେନ ।
ଯେଉଁ ଆତ୍ମା ଏ ଶରୀର ମଧ୍ୟେ ବିଦ୍ୟମାନ
ନୁହେଁ କେଉଁ ସୁଖେ ସୁଖୀ ଦୁଃଖରେ ବିଷଣ୍ଣ ।
ଯେଣୁ କରି ଏ "ଆନନ୍ଦ, ନିରାନନ୍ଦ ଭାବ"
ଆତ୍ମା ସେ "ଦୃଶ୍ୟ"ର ସାକ୍ଷୀ ତୃତୀୟ ପାଣ୍ଡବ,
ସତ୍ୟ ନିତ୍ୟ ରୂପେ ଆତ୍ମା ରହେ ଶରୀରରେ
ଚିତ୍ତ, ସୁଖ, ଦୁଃଖ ଭୋକ୍ତା ହୁଏ ସଦାକାଳେ ।
ଏହି ଚିତ୍ତ 'କଳେବର'" ଜାଣ ହେ ଅର୍ଜ୍ଜୁନ
ଏହା ବିନାଶେ ଆତ୍ମାର କ୍ଷତି ନାହିଁ ଜାଣ ।
ଆତ୍ମାସହ ଯା'ର କିଛି ନ ଥାଏ ସମ୍ପର୍କ
ସେ ଶରୀର, ତଜ୍ଜନିତ ଯେତେ ସୁଖ ଦୁଃଖ,
କେବଳ ଅଜ୍ଞାନ ବଶେ ହୁଏ ଅନୁଭୂତ
ବାସ୍ତବରେ ତାହା କିଛି ନୁହେଁ ଜାଣ ପାର୍ଥ ।
ନ ଜାଣି ରଜ୍ଜୁରେ ଯଥା ହୁଏ ସର୍ପଜ୍ଞାନ
ଜାଣି ପାରିଲେ ଭୟର ହୁଏ ଅବସାନ ।
ସେହିପରି ସେ ଆତ୍ମାକୁ ଜାଣି ନ ପାରିଣ
ଦେହ, ସୁଖ, ଦୁଃଖାଦିର ଆବିର୍ଭାବ ଜାଣ ।
ଆତ୍ମାକୁ ଜାଣିଲେ ସେହି ଅସୁବିଧାମାନ
ଆଉ ନ ରହନ୍ତି ଜାଣ ପାଣ୍ଡବ ଅର୍ଜ୍ଜୁନ ।
"ଏ ଜଗତ ସାକ୍ଷାତ୍ ବ୍ରହ୍ମ" ଏହି ଦରଶନ
"ପରମ ସତ୍ୟ ବୋଧ" ତା ଜାଣ ହେ ଅର୍ଜ୍ଜୁନ ।
ଯା କିଛି ଉଦ୍‌ଭୂତ କିମ୍ବା ବିନଷ୍ଟ ଏଥିରେ
ଦେଖିପାରୁ ଅଛ ତୁମେ ଆହେ ବୀରବରେ,
ଏହି ବ୍ରହ୍ମ ସମୁଦ୍ରର ତରଙ୍ଗ ସେ ଜାଣ
ଆଜି ତୁମର ଜନ୍ମିଛି ଏହି ବୋଧଜ୍ଞାନ ।
ବର୍ତ୍ତମାନ ବ୍ରହ୍ମାବର୍ତ୍ତେ ବିରାଜିତ ରହ
ବ୍ରହ୍ମସାରୁପ୍ୟ ଲଭିଛ ହେ ପଣ୍ଡୁ ତନୟ ।
ଦେଶ, କାଳ, କର୍ମ ତୁମେ ଆମେ ଆଦି ଯେତେ
ସମ୍ମୁଖରେ ଥିବା ସୈନ୍ୟ ସାମନ୍ତ ସମସ୍ତେ,
ଏ ସକଳ ମହାର୍ଣ୍ଣବ ତରଙ୍ଗ ସଦୃଶ
ଫୁଟି ଉଠୁଛନ୍ତି ଜାଣ ବୀରଗଣଈଶ ।
ବ୍ରହ୍ମରେ ଭାବ ଅଭାବ ବିକଳପ ନାହିଁ
ଶୋକ, ଭୟ, ସୁଖ ଦୁଃଖ, ଦ୍ୱୈତ୍ୟଭାବ ଭାଇ ।
ମିଥ୍ୟା ମଣି ସେ ସବୁକୁ କର ପରିହାର
ତାହା ଦ୍ୱାରା ବ୍ରହ୍ମମୟ ହୁଅ ବୀରବର ।
ତୁମ ସମ୍ମୁଖରେ ଅଛି ଯେ ସୈନ୍ୟ ସାଗର
ସେମାନଙ୍କ ମଧ୍ୟେ ଉଠେ ଯେ ତରଙ୍ଗମାଳ ।

ମହାଅର୍ଣ୍ଣବରେ ତାକୁ କରିଣ ବିଲୀନ
ବ୍ରହ୍ମମୟ କର ଆହେ ପାଣ୍ଡବ ଅର୍ଜୁନ ।
ସୁଖଦୁଃଖ, ଲାଭ କ୍ଷତି, ଜୟ ପରାଜୟ
ଲକ୍ଷ୍ୟ ନ କରିଣ କିଛି ହେ ପଣ୍ଡୁତନୟ,
ବ୍ରହ୍ମ ସାରୁପ୍ୟକୁ ଲାଭ କରହେ କିରୀଟି
ଯେଣୁ ତୁମେ ସେ ସାକ୍ଷାତ୍ ବ୍ରହ୍ମ ସମୁଦ୍ରଟି ।
ଦାନ, ହୋମ, ଭୋଜନାଦି ଯେ ସକଳ କର୍ମ
କରିଛ, କରୁଛ, କରିବ ହେ ଅରଜୁନ,
"ସେ ସକଳ ବ୍ରହ୍ମ" ଏହା ଅବଗତ ହୋଇ
ସ୍ଥୈର୍ଯ୍ୟ ଅବଲମ୍ବି ରହ ହେ ପଣ୍ଡୁତନୟୀ ।
ଯାହାର ଚିତ୍ତ ଯେ ରୂପ ଆକୃତି ଧରଇ
ତାହା ସେ ଲାଭ କରଇ ହେ ସୁଭଦ୍ରା ସାଇଁ ।
ସତ୍ୟ ସ୍ୱରୂପ ବ୍ରହ୍ମକୁ ଲଭିବା ନିମିତ୍ତ
ବ୍ରହ୍ମମୟ କର ତୁମ ଚିତ୍ତ ପଣ୍ଡୁସୁତ ।
ଯେବଣ ମହାପୁରୁଷ ଅଟେ ବ୍ରହ୍ମବିତ୍
ଯେଉଁ କର୍ମ ତା ପାଶରେ ହୁଏ ଉପସ୍ଥିତ,
ସେ କର୍ମକୁ ବ୍ରହ୍ମମଣି କରେ ସେ ସମ୍ପନ୍ନ
ଫଳ ପ୍ରତି ଦୃଷ୍ଟିପାତ ନ କରଇ ଜାଣ ।
କର୍ମେ ଅକର୍ମ, ଅକର୍ମେ କର୍ମ ଦରଶନ
ଯେଉଁ ବ୍ୟକ୍ତି କରିପାରେ ସେହୁ ବୁଦ୍ଧିମାନ ।
ସେହି ବ୍ୟକ୍ତି ବ୍ରହ୍ମେଯୁକ୍ତ ହୋଇକରି ଜାଣ
ପ୍ରକୃତ କରମମାନ କରେ ଅନୁଷ୍ଠାନ ।
ତେଣୁ ଫଳାକାଙ୍‌କ୍ଷା କରି କର୍ମ ନ କରିବ
ଉପସ୍ଥିତ କର୍ମ ପରିତ୍ୟାଗି ନ କରିବ ।
ସିଦ୍ଧି, ଅସିଦ୍ଧିକୁ ତୁମେ ସମଜ୍ଞାନ କରି
ଅସଙ୍ଗ ଭାବରେ ରହି, ଯାଅ କର୍ମସାରି ।
ଯେହୁ କର୍ମଫଳେ ଦୃଷ୍ଟିପାତ ନ କରିଣ
ନିତ୍ୟ ତୃପ୍ତ, ନିରାଶ୍ରୟ ଭାବେ କରେ କର୍ମ,
କରମ କରି ସେ ସୁଦ୍ଧା କର୍ମ ନ କରଇ
ଅସଙ୍ଗଭାବ ଆଦର୍ଶ ଜାଣ ବୀର ତୁହି ।
ଆସକ୍ତି ରହେ ଯଦ୍ୟପି କର୍ମ କରଣରେ
କର୍ମ ନ କରି ମଧ୍ୟ ସେ ଜଡ଼ିତ ତହିଁରେ ।
ତତ୍ତ୍ୱଜ୍ଞାନ ଭାବ, ତର୍ଜନିତ ମୂର୍ଖପଣ
ଆସକ୍ତି ପ୍ରାଧାନ୍ୟ ଦିଏ ହେ କୁନ୍ତୀ ନନ୍ଦନ ।
ତେଣୁ ତତ୍ତ୍ୱଜ୍ଞାନ ବଳେ ମୂର୍ଖତା ବର୍ଜନ
ସର୍ବଥା ହିଁ କରଣୀୟ ପାଣ୍ଡବ ଅର୍ଜୁନ ।

ଯେ ବିଜ୍ଞ କରଇ ତତ୍ତ୍ୱଜ୍ଞାନାବଲମ୍ବନ
ଅନାସକ୍ତ ଓ ମହାତ୍ମା ହୋଇ ସେ ମହାନ,
ସମସ୍ତ କର୍ମ ନିର୍ବାହ କରିଲେ ହେଁ ସେହି
କର୍ତ୍ତୃତ୍ୱ ବୁଦ୍ଧିରେ କେବେ ଜଡ଼ିତ ନୁହଇ ।
ତେଣୁ ସେ କର୍ମ କଲେ ହେଁ କର୍ମ ନ କରଇ
ବିଦେହ କୈବଲ୍ୟ ତାହାଦ୍ୱାରା ସେ ଲଭଇ ।
କର୍ତ୍ତୃତ୍ୱ ବୁଦ୍ଧି ନ ଥାଏ ହୃଦୟେ ଯାହାର
ବାସନା କେବେ ହେଁ ହୁଏ ନାହିଁ ତା ଅନ୍ତର ।
ଅଭେଦ ଜ୍ଞାନ ଉଦୟ ବାସନା ନ ଥିଲେ
"ଅନନ୍ତ ବ୍ରହ୍ମେ ମିଳିତ" ହୁଏ ଜୀବ ହେଲେ ।
ଏ ଭାବେ ବ୍ରହ୍ମସାରୂପ୍ୟ ଲଭହେ ଅର୍ଜୁନ
ବୁଝି ରଖ ମୋ ବଚନ ସାରତତ୍ତ୍ୱମାନ ।
ଦ୍ୱୈତଭାବ ତେଜିଯେହୁ ପରମାତ୍ମା ଲଭେ
ନିଷିଦ୍ଧ କର୍ମର ଫଳ ନ ଭୋଗେ ସେ କେଭେଁ ।
କାମନା ଓ ସଂକଳପ ଶୂନ୍ୟ ଯେହୁ ହୋଇ
କର୍ମ ଅନୁଷ୍ଠାନ ମାନ ଯେ ଜନ କରଇ,
ଜ୍ଞାନାଗ୍ନିରେ ସର୍ବ କର୍ମ ତାର ଭସ୍ମୀଭୂତ
ସାଧୁମାନେ ଏ ବ୍ୟକ୍ତିକୁ ମଣନ୍ତି ପଣ୍ଡିତ ।
ଶାନ୍ତ, ସ୍ୱସ୍ଥ, ସୌମ୍ୟ, ସମଦର୍ଶୀ ଯେଉଁଜନ
ପୁଣି ଯେ ସର୍ବ ବିଷୟେ ଅଟେ ସ୍ପୃହାହୀନ,
କର୍ମ ଅନୁଷ୍ଠାନ ମାନ କରିଲେ ହେଁ ସେହି
'ନିଷ୍କର୍ମ୍ୟ ସମ୍ପନ୍ନ' ତାଙ୍କୁ ବୁଝ ବୀର ତୁହି ।
ତୁମେ ମଧ୍ୟ ସୁଖ-ଦୁଃଖ ଦ୍ୱନ୍ଦ୍ୱ ତ୍ୟାଗକରି
ଧୈର୍ଯ୍ୟ ସହ ସତ୍ତ୍ୱଗୁଣମାନ ନିଅ ବରି ।
"ଅଲବ୍ଧରେ ଲାଭ, ଲବ୍ଧଦ୍ରବ୍ୟ ସଂରକ୍ଷଣ"
ପ୍ରବୃତ୍ତି ତେଜିଣ କର ବ୍ରହ୍ମେ ଅବସ୍ଥାନ ।
ଉପସ୍ଥିତ କର୍ମମାତ୍ରେ ଅପ୍ରମତ୍ତ ଚିତ୍ତେ
ସଂପାଦନ କରି ଚଳ ଆହେ ପଣ୍ଡୁସୁତେ ।
ବହିରିନ୍ଦ୍ରିୟ ସଂଜତ କରିଣ ଯେ ଜନ
ମନେ ମନେ କରୁଥାଏ ବିଷୟ ଚିନ୍ତନ,
'ମିଥ୍ୟାଚାରୀ' ତାକୁ କହିଥାନ୍ତି ସୁଧୀଗଣ
ବ୍ରହ୍ମଠାରୁ ଦୂରେ ରହିଥାଏ ସେହିଜନ ।
ବିଷୟ ବୁଦ୍ଧିରୁ ଯେହୁ ମନ, ଇନ୍ଦ୍ରିୟକୁ
ନିବୃତ୍ତ କରି ସଂଜତ ରଖେ ଆପଣାକୁ,
ଫଳାକାଙ୍‌କ୍ଷା ତେଜି କର୍ମ ଇନ୍ଦ୍ରିୟ ବଳରେ
ଯେହୁ କରଇ ସେ ଗଣ୍ୟ ଶ୍ରେଷ୍ଠ ପୁରୁଷରେ ।

ପର୍ବତୁ ନିର୍ଗତ ହୋଇ ଯଥା ନଦୀମାନ
ସାଗର ଗର୍ଭରେ ଯାଇ ହୁଅନ୍ତି ବିଲୀନ;
କାମନାମାନଙ୍କୁ ଯେହୁ ଆତ୍ମ ସମୁଦ୍ରରେ
ବିଲୀନ କରି ପାରଇ ସତର୍କ ଭାବରେ,
ସେହି ଜନ ହିଁ କେବଳ ଶାନ୍ତିଲାଭ କରେ
କାମନା କେଭେ ହେଁ ଶାନ୍ତି ଦେଇ ତ ନ ପାରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାରଣ ପ୍ରକରଣେ ଅର୍ଜ୍ଜୁନ ଉପାଖ୍ୟାନେ ଆତ୍ମଜ୍ଞାନ ଉପଦେଶ ବର୍ଣ୍ଣନେ ନାମ ପଚାଶ ସର୍ଗଃ**



## ଏକାବନ ସର୍ଗଃ

## ଜୀବତତ୍ତ୍ୱ ନିର୍ଣ୍ଣୟ

ବୋଲିବେ ଶ୍ରୀକୃଷ୍ଣ ଶୁଣ ହେ ଗାଣ୍ଡିବଧାରୀ
ବିଷୟ ତ୍ୟାଗ ତୁମକୁ ପଡ଼ିବ କିପରି ।
ବିଷୟ-ଭୋଗ ଲିପ୍‌ସାତ ନ ଥାଇ ତୁମ୍ଭର
ଅନୁରାଗ ତାହା ପ୍ରତି କିଛି ନାହିଁ ତୋର ।
ଲାଭ ଓ କ୍ଷତିରେ ସମଜ୍ଞାନ ଥାଏ ତୋର
ଯଥାପ୍ରାପ୍ତ ବିଷୟାନୁସରଣେ ତୋହର,
କୌଣସି ଅନିଷ୍ଟ ତୋର ନ ହେବ ଅର୍ଜ୍ଜୁନ
ବିଷୟ ବିଳାସୀ ଯେଣୁ ନୁହେଁ ତୋର ମନ ।
ଏହି ଶରୀରରେ ଆତ୍ମ-ବୁଦ୍ଧି ତ୍ୟାଗ କରି
ସତ୍ୟ ସ୍ୱରୂପ ଆତ୍ମାକୁ ବର ଧନୁର୍ଦ୍ଧାରୀ ।
ଶରୀର ବିନାଶେ କିଛି କ୍ଷତି ହୁଏ ନାହିଁ
ଆତ୍ମାର ବିନାଶେ ସର୍ବ ବିନାଶ ଘଟଇ ।
କିନ୍ତୁ ଯେଉଁ ଆତ୍ମା ଅଟେ ନିତ୍ୟ ବର୍ତ୍ତମାନ
ବିନାଶ ତାହାର କେଭେ ନୁହଇ ଅର୍ଜ୍ଜୁନ ।
ଆତ୍ମା ନୁହେଁ ଚିତ୍ତ ଜାଣ ଆହେ ବୀରବର
ପରିଗ୍ରହ ଭାବ କିଛି ନାହିଁ ଯେ ତାହାର ।
ଦୈହିକ ଧର୍ମ ତାହାର କିଛି ମାତ୍ର ନାହିଁ
ସବୁ କରି ସୁଦ୍ଧା ସେହୁ କିଛି ନ କରଇ ।
ଆସକ୍ତିକୁ ଜାଣିରଖ ପାଣ୍ଡବ ଅର୍ଜ୍ଜୁନ
କର୍ତ୍ତୃତ୍ୱ କାରଣ ବୋଲି କହନ୍ତି ସୁଜ୍ଞାନ ।
ଆସକ୍ତି କେବଳ ଅଟେ କର୍ତ୍ତୃତ୍ୱ କାରଣ
ପଣ୍ଡିତମାନଙ୍କ ମତ ଏହି ରେ, ଅର୍ଜ୍ଜୁନ ।
ଆସକ୍ତି ଥିଲେ କର୍ତ୍ତୃତ୍ୱ ବୋଧ ଜନମଇ
କର୍ମ ନ କରି ଆସକ୍ତ କର୍ତ୍ତାଭାବ ନେଇ,
ମାନସିକ ଅଜ୍ଞାନତା ପୁଣି ଯେ କାରଣ
ସର୍ବଚେଷ୍ଟା ବଳେ ତାକୁ ତେଜରେ ଅର୍ଜ୍ଜୁନ ।
ନାହିଁ, ଆଦି ନାହିଁ ଅନ୍ତ ଏହି ଯେ ଆତ୍ମାର
ସେହି ଆତ୍ମା ଅଟେ ପାର୍ଥ ଅଜର ଅମର ।
ଯେ ମୁଢ଼ବ୍ୟକ୍ତି ଆତ୍ମାର ବିନାଶ ଚିନ୍ତଇ
ଦୁଃଖ ଭୋଗିବାକୁ ପଡ଼େ ତାହାକୁ ସେ ପାଇଁ ।
କିନ୍ତୁ ଆତ୍ମାବିତ୍ ଅଟେ ଯେବଣ ସୁଜନ
ଆତ୍ମାର ବିନାଶ କେଭେ ନ ଆସେ ତା ମନ ।
ଯେଣୁ ସେ ଆତ୍ମାକୁ ଆତ୍ମା ବୋଲିଣ ଜାଣନ୍ତି
ଅନାତ୍ମ ଶରୀରକୁ ସେ ଆତ୍ମା ନ ମଣନ୍ତି ।
ଅର୍ଜ୍ଜୁନ କହିବେ ତେବେ ଶୁଣ ହେ ମାନଦ
ଆତ୍ମାର ବିନାଶ ନାହିଁ ଏହା ଯେବେ ସିଦ୍ଧ ।
ମୁଢ଼ ଜନର ଶରୀର ନଷ୍ଟ ହେଲେ ମଧ୍ଯ
ତାର ପ୍ରିୟତମ ଆତ୍ମା ହୁଅଇ କି ବଧ ?
ଶ୍ରୀକୃଷ୍ଣ କହିବେ ତେବେ ଶୁଣ ହେ ମହାନ
ତାହା ମୁଁ କହେ ତୁମ୍ଭଙ୍କୁ ମନଦେଇ ଶୁଣ ।
ବାସ୍ତବରେ ଜଗତର କେଉଁ ନୁହେଁ ନାଶ
କୌଣସି ମତେ ତାହାର ନୁହଇ ବିନାଶ ।
ଏକମାତ୍ର ଅମରାତ୍ମା ବିଶ୍ୱେ ଅଛି ଯେଣୁ
କିଏ କାହାକୁ କିପରି ନାଶିବ ହେ ତେଣୁ ?
"ଏହି ମୋର ପୁତ୍ର ମଲା" ଲଭିଲି ଅଭିଷ୍ଟ
ମୋହ ଛଡ଼ା ଅନ୍ୟ କିଛି ଏ ନୁହେଁ କିରୀଟ ।
ଯେହେତୁ ଯା ମିଥ୍ୟା ତାର ଅସ୍ତିତ୍ୱ ନ ଥାଇ
ଯାହା ସତ୍ୟ, ଅଭାବ ତା କେଉଁ ନ ଘଟଇ ।
ତତ୍ତ୍ୱବିତ୍‌ଗଣଙ୍କର ଏହାହିଁ ନିର୍ଣ୍ଣୟ
ଜାଣିରଖ ଏହି ତତ୍ତ୍ୱ ଆରେ ଧନଞ୍ଜୟ ।
ସମଗ୍ର ଜଗତ ବ୍ୟାପି ଯେ ବିରାଜିଛନ୍ତି
ସେହି ଅଟେ ସତ୍ୟ ଆତ୍ମା ଜ୍ଞାନୀଏ କହନ୍ତି ।
ଅବୟବ ହୀନ ସେହୁ ପୁଣି ସେ ଅବ୍ୟୟ
କେ ତାକୁ ନାଶି ପାରିବ ଆରେ ଧନଞ୍ଜୟ ।
ସର୍ବଦା ଏକଇ ରୂପ ଥାଏ ସେ ଆତ୍ମାର
ଆତ୍ମା ଅବିନାଶୀ ଯେଣୁ ନାଶ ନାହିଁ ତାର ।
ମନ ଇନ୍ଦ୍ରିୟ ଆଦିଙ୍କ ଅଗୋଚର ସେହି
ଅପରିଚ୍ଛିନ୍ନ ଭାବରେ ସଦା ବିରାଜଇ ।
ଆତ୍ମା ଯେ ଶରୀର ଏହା ଅଟେ ଭ୍ରାନ୍ତଜ୍ଞାନ
ଜ୍ଞାନୋଦୟେ ନରହଇ ତାର ବର୍ଣ୍ଣ ଚିହ୍ନ ।

ଆତ୍ମାର ଶରୀର ବୋଲି ଯା ହୁଏ ପ୍ରତୀତ
ତାର ମଧ୍ୟ ଧ୍ୱଂସ ଅଛି ଜାଣ ଆହେ ପାର୍ଥ ।
ସେ ଶରୀର ଧ୍ୱଂସହୋଇ ଗଲେ ହେଁ ଅର୍ଜ୍ଜୁନ
ଆତ୍ମାର ତହିଁରେ କିଛି କ୍ଷତି ନାହିଁ ଜାଣ ।
ବନ୍ଧୁ ସ୍ୱଜନବର୍ଗଙ୍କ ଦେହ ବିନାଶରେ
ତାଙ୍କର ନାଶ ଆଶଙ୍କା ନଆଣି ମନରେ ।
ଯୁଦ୍ଧରେ ପ୍ରବୃତ୍ତ ହୁଅ ଆହେ ବୀରବର
ରଖ କ୍ଷତ୍ରିୟ ଆଦର୍ଶ କୁନ୍ତିଙ୍କ କୁମର ।
ଅର୍ଜ୍ଜୁନ କହିବେ ତେବେ ଆହେ ଭଗବାନ
ପ୍ରାଣୀମାନେ ନିୟତିର କିମ୍ପାଇଁ ଅଧୀନ ?
"ମୁହିଁ ମରିଗଲି" ବୋଲି ଏହିପରି ଜ୍ଞାନ
କିମ୍ପାଇଁ ଜାତ ହୁଅଇ ଆହେ ଭଗବାନ ?
ଏହାଛଡ଼ା ସ୍ୱର୍ଗ କିମ୍ବା ନରକ ରାଜ୍ୟରେ
କି କାରଣୁ ସୁଖ ଦୁଃଖ ପ୍ରାଣୀ ଭୋଗ କରେ ।
କୃଷ୍ଣ କହିବେ କ୍ଷୀତ୍ୟାଦି ପଞ୍ଚ ତନ୍ମାତ୍ରରେ
ଗଠିତ ଏ ଦେହ, ମନ ବୁଦ୍ଧି ସହିତରେ ।
ସ୍ଥୁଳ ସୂକ୍ଷ୍ମରୂପେ ଯାହା ବିରାଜୁ ଅଛଇ
ତହିଁ ଯେବେ ଆତ୍ମା ଆତ୍ମାବୁଦ୍ଧି ନିବେଶଇ ।
ତେତେବେଳେ ତାର ନାମ ଆତ୍ମାଜୀବଭାବ
ଶରୀରେ ରହଇ ଆତ୍ମା ଧରି ଏହି ଭାବ ।
ରଜ୍ଜୁବଦ୍ଧ ପଶୁ ଯଥା ସ୍ଥାନୁସ୍ଥାନାନ୍ତରେ
ନିଆ, ଅଣା ହେଉଥାଏ ଦରକାର ବେଳେ ।
ବାସନା ରଜ୍ଜୁରେ ବଦ୍ଧ ହୋଇ ଏହି ଜୀବ
ଦେହୁଯାଇଁ ଅନ୍ୟ ଦେହେ କରୁଥାଏ ଠାବ ।
ପିଞ୍ଜରା ମଧ୍ୟରେ ପକ୍ଷୀ ରହଇ ଯେସନ
ଶରୀର ମଧ୍ୟରେ ଜୀବ ରହଇ ତେସନ ।
ସେ ଦେହ ଛାଡ଼ିଣ ପୁଣି ମନୋମୟ ଦେହେ
ବିଚରଣକରି ପଶେ ଅନ୍ୟସ୍ଥୁଳ ଦେହେ ।
ସ୍ଥୁଳ ସୂକ୍ଷ୍ମ ଦେହଦ୍ୱୟ ଏହି ଯେ ଜୀବର
ବାସନାରୁ ଉତପନ୍ନ ହେ ପଣ୍ଡୁ କୁମର ।
ଲିଙ୍ଗ ଶରୀର ସହିତ ଏ ଦୁଇ ଶରୀର
ବାସନା ବିନାଶେ କ୍ଷୟ ହେଲେ ତାହାଙ୍କର,
ଆତ୍ମ ସ୍ୱରୂପ ଲଭଇ ଜୀବ ସେତେବେଳ
ସଂସାର ଚକ୍ରରୁ ମୁକ୍ତି ପାଏ ଚିରକାଳ ।
ଐନ୍ଦ୍ରିଜାଲିକ ଯେପରି ମାୟା ପ୍ରଭାବରେ
ଉଡ଼ିଯାଇ ଆକାଶରେ ବିଚରଣ କରେ ।
ସେହିପରି ଜୀବ ତାର ଲିଙ୍ଗ ଶରୀରରେ
ପରମାତ୍ମା ପ୍ରତିବିମ୍ବ ଧରିଣ ତହିଁରେ,
ଭ୍ରମବଶେ ନାନା ଯୋନି କରଇ ଭ୍ରମଣ
ବୁଝିରଖ ଏହି ତତ୍ତ୍ୱ ବୀର ଅରଜୁନ ।
ଏ ଶରୀର ଛାଡ଼ି ଜୀବ ଯେବେ ଚଳିଯାଏ
କାଷ୍ଠପରି ସଜ୍ଞାହୀନ ହୋଇ ପଡ଼ିରହେ ।
ଚିଦାକାଶେ, ଭୂତାକାଶେ ଯହିଁଯାଏ ଜୀବ
ବାସନାନୁସାରେ ଦୃଶ୍ୟମାନ ସେ ଦେଖିବ ।
ପରିତ୍ୟକ୍ତ ଶରୀରକୁ ସେହୁ ତେତେବେଳେ
ମିଥ୍ୟା ବୋଲି ମଣିଥାଏ ଆହେ ପଣ୍ଡୁବୀରେ ।
ତୁମେ ମଧ୍ୟ ସେହିପରି ସକଳ ଦେହର
ସତ୍ତାହୀନତା ଦର୍ଶନ କର ବୀରବର ।
ଦେହର ସତ୍ତା, ଅସତ୍ତା ସୁଷୁପ୍ତି କାଳରେ
ଯେପରି ଦେଖା ନ ଯାଏ ହେ ପଣ୍ଡୁ କୁମରେ ।
ତମେ ମଧ୍ୟ ତଦ୍ରୂପ ଏ ଶରୀର ମଧ୍ୟରେ
କିଛିହିଁ ନ ଦେଖ ନିଜ ବିଚାର ବଳରେ ।
ବାସନାନୁସରି ସୃଷ୍ଟି ପ୍ରଥମ କାଳରେ
ବ୍ରହ୍ମା ଏସବୁ ଭାବନା କଲେ ବୀରବରେ ।
ତାଙ୍କର ସେହି ଭାବନାମୟ ସଂକଳ୍ପରେ
ଅଶ୍ୱ ପ୍ରଭୃତି ସକଳ ପ୍ରାଣୀ ଜନମିଲେ ।
ଜୀବର ନର୍କ ସ୍ୱରଗ ଭ୍ରାନ୍ତିର କାରଣ
କି ଅଛଇ କହ ତାହା ଆହେ ଭଗବାନ ।
ଶ୍ରୀକୃଷ୍ଣ କହିବେ ଶୁଣ ଆହେ ଅରଜୁନ
ଯେ ବାସନା ପ୍ରଭୁ-ଇଚ୍ଛାକର୍ମର କାରଣ ।
ସେହି ବାସନା ହିଁ ଜାଣ ସୁଦୃଢ଼ ହୋଇଣ
ଏ ସଂସାର ଭ୍ରମ କରିଅଛି ଯେ ନିର୍ମାଣ ।
ଶ୍ରେୟକାମୀ ପୁରୁଷର ଏହାହିଁ କର୍ତ୍ତବ୍ୟ
କି-ଭାବରେ ଏ ବାସନା କ୍ଷୟପ୍ରାପ୍ତ-ହେବ ।
ଅର୍ଜ୍ଜୁନ କହିବେ ଶୁଣ ହେ ଦେବ ଦେବେଶ
କି ରୂପେ ବାସନା ଜନ୍ମ ତା କରିଣ-କିସ ?
କିପରି ସେ ବାସନାର ଘଟିବ ବିନାଶ
ଦୟାପରବଶ ହୋଇ କରତା ପ୍ରକାଶ ।
ଶ୍ରୀକୃଷ୍ଣ କହିବେ ତାହା ଶୁଣ ମନଦେଇ
ଅଜ୍ଞାନ ହେତୁରୁ ଜୀବ ମୋହବଶ ହୋଇ ।
ଅନାତ୍ମରେ ଯେଉଁ ଆତ୍ମବୁଦ୍ଧି ଜନମଇ
ବାସନାର ମୂଳ ତାହା ପାର୍ଥ ଜାଣ ତୁହି ।

ଆତ୍ମଜ୍ଞାନ ଯେବେ ହୋଇଥାଏ ସମୁଦିତ
ସେ ବାସନା ନାଶଯାଏ ମୂଳର ସହିତ ।
ଆତ୍ମା ଯେ କିପରି ବସ୍ତୁ ଜାଣିଛ କୌନ୍ତେୟ
ସତ୍ୟ ବସ୍ତୁ କିସ ତାହା ବୁଝିଛ ନିଶ୍ଚୟ ।
ଏଣୁ ମୁଁ ଏହା କରିଛି ଏସବୁ ମୋହର
ଏ ରୂପ ବାସନା ପାର୍ଥ ପରିତ୍ୟାଗ କର ।
ଅର୍ଜ୍ଜୁନ ବୋଲିବେ ଶୁଣ ହେ ଦେବ ଦେବେଶ
ବାସନା କ୍ଷୟେ ଜୀବର ବିନାଶ ଅବଶ୍ୟ ।
ବାସନା ହେତୁ ଜୀବର ହୋଇଛି ପ୍ରକାଶ
ବାସନା ବିନା ଜୀବର ଅସ୍ତିତ୍ୱ ବିନାଶ ।
ଜୀବର ଯଦି ବିନାଶ ହୁଏ ଅରଜୁନ
ପରଂ ପୁରୁଷାର୍ଥ ଭୋକ୍ତା କିଏ ହେବ ଜାଣ ?
ତତ୍ତ୍ୱଜ୍ଞାନ ଜନିତ ଯେ ବାସନାର କ୍ଷୟ
ଏହି ଜୀବ ପକ୍ଷେ ତାହା ନୋହେଁ ପାର୍ଥନୀୟ ।
ଅର୍ଜ୍ଜୁନ କହିବେ ଶୁଣ ଆହେ ଦେବ ଦେବ
ପ୍ରଂବ୍ରହ୍ମଠାରୁ ସଂସରଣ ଶୀଳ ଜୀବ,
ଯଦି ଭିନ୍ନ ହୋଇଥାନ୍ତା ଆହେ ଦୟାମୟ
ତେବେ ତୁମ କଥା ହୋଇଥାନ୍ତା ଦୋଷାବହ ।
କଳ୍ପନାତୀତ ଅଟଇ ଯେଉଁ ପରଂବ୍ରହ୍ମ
ସେହି ବ୍ରହ୍ମ ସଂକଳ୍ପରୁ ଜୀବର ଜନମ ।
ବ୍ରହ୍ମର ଏହି ସଂକଳ୍ପେ ତାହାର ଯେ ଅଂଶ
ଦୁର୍ଭାଗ୍ୟରୁ ଅବିଦ୍ୟାର ହୋଇଥାଏ ଗ୍ରାସ ।
ସ୍ୱରୂପ ଜ୍ଞାନରେ ସେହୁ ହୁଅଇ ଅକ୍ଷମ
ବାସନାଗ୍ରସ୍ତ ଜୀବ ସେ ବୋଲିଣ ଜାଣିମ ।
ବ୍ରହ୍ମଅଂଶ ସେହି ଜୀବ ବାସନା କ୍ଷୟରେ
ସ୍ୱରୂପ ଜ୍ଞାନକୁ ପ୍ରାପ୍ତ ହୁଏ ଯେତେବେଳେ,
ଜାଣି ପାରଇ ନିଜକୁ ବ୍ରହ୍ମବୋଲି କରି
ତେବେ ମୁକ୍ତିହୋଇ ବ୍ରହ୍ମେ ଲୀନ ହୋଇପାରି ।
ବାସନାକୁ ଯେବେ ପାର୍ଥ କରିପାର ଧ୍ୱଂସ
ବ୍ରହ୍ମ ସାରୂପ୍ୟ, ଏ ଜନ୍ମେ ଲଭିବ ଅବଶ୍ୟ ।
ତେଣୁ ଏ ବିଷୟେ କିଛି ସଂଶୟ ନକର
ତତ୍ତ୍ୱ ବୁଝି ଯୁଦ୍ଧେ ପାର୍ଥ ହୁଅ ଅଗ୍ରସର ।
ବାସନା ବିନାଶ ହୋଇ ନାହିଁ ଯେ ବ୍ୟକ୍ତିର
ସର୍ବଜ୍ଞ, ସର୍ବଧର୍ମବିତ୍ ହେଲେ ହେଁ ସେ ନର ।
ତାହାକୁ ପିଞ୍ଜର ସ୍ଥିତ ବିହଙ୍ଗ ସଦୃଶ
ବଦ୍ଧ ବୋଲିଣ ଜାଣିବ ଆହେ ପଣ୍ଡୁଶିଷ୍ୟ ।
ବାସନା ଗ୍ରସ୍ତ ରହିବା ବ୍ରହ୍ମ 'ଜୀବଭାବ'
ବାସନା କ୍ଷୟହିଁ ଜୀବ ବ୍ରହ୍ମପଦ ଲାଭ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଅର୍ଜ୍ଜୁନ ଉପାଖ୍ୟାନେ ଜୀବତତ୍ତ୍ୱ ବର୍ଣ୍ଣନେ ନାମ ଏକାବନ ସର୍ଗଃ**



## ବାଉନ ସର୍ଗଃ

## ଚିତ୍ ବର୍ଣ୍ଣନ

ପୁଣି ଶ୍ରୀକୃଷ୍ଣ କହିବେ ଶୁଣ ହେ ଅର୍ଜ୍ଜୁନ
ଜୀବନ ମୁକତ ହୁଅ ବାସନା ତେଜିଣ ।
ଅନ୍ତରେ ପରମ ଶାନ୍ତି ଲାଭକରି ବୀର
ନିରର୍ଥକ ବନ୍ଧୁନାଶ ଦୁଃଖ ତ୍ୟାଗ କର ।
ନିଜ ହୃଦୟ ରାଜ୍ୟକୁ ଗଗନ ସଦୃଶ
ସୁ ନିର୍ମଳ କରିଦିଅ ଆହେ ପାଞ୍ଚାଳୀଶ ।
ଜରା ଓ ମୃତ୍ୟୁ ଜନିତ ଭୟ ଦୂରକର
ଇହ ଜୀବନ ସାର୍ଥକ ହୋଇବ ତୁମର ।
ଇଷ୍ଟାନିଷ୍ଟ ସଂକଳପ ସବୁ ତେଜ୍ୟା କରି
ବୈରାଗ୍ୟ ଆଶ୍ରୟ ଘେନ ହେ ଗାଣ୍ଡିବଧାରୀ ।
ଯେ ସକଳ କର୍ମମାନ କରିବା ବିଧେୟ
ବାଧିବ ନାହିଁ ତା ତତ୍ତ୍ୱଜ୍ଞାନକୁ କୌନ୍ତେୟ ।
ସେ କର୍ମ କରଣେ ଜୀବନ୍ମୁକ୍ତ ବ୍ୟକ୍ତିମାନେ
ପରାଙ୍ମୁଖ ନ ହୁଅନ୍ତି ପାର୍ଥ କଦାଚନେ ।
ଏହା କରତବ୍ୟ ପୁଣି ତାହା ଅକର୍ତ୍ତବ୍ୟ
ଏହା ମୂଢ଼ ବ୍ୟକ୍ତିମତ ଦ୍ରଉପଦୀ ଧବ ।
ଜ୍ଞାନୀବ୍ୟକ୍ତି ନକରଇ ଏହି ଭିନ୍ନା ଭିନ୍ନ
ସର୍ବ କର୍ମେ ସମଭାବ ତା ଅବଲମ୍ବନ ।
ଚିତ୍ତଶାନ୍ତି ଲଭିଅଛି ଯେବଣ ମାନବ
ସୁପ୍ତି ମଗ୍ନ ବ୍ୟକ୍ତିପରି ତୃତୀୟ ପାଣ୍ଡବ,
ଅନ୍ତରେ ସଂକଳ୍ପ ଶୂନ୍ୟ ହୋଇକରି ସେହି
ଉପସ୍ଥିତ କର୍ମମାନ ସମ୍ପନ୍ନ କରଇ ।
ଜ୍ୟୋତିର୍ମୟ ଆତ୍ମା ରୂପେ ହୋଇ ବିରାଜିତ
ନୁହେଁ କି ଦୁର୍ଲ୍ଲଭ ଏହା ବୀରବର ପାର୍ଥ ?
ବିଷୟ ଭୋଗ ତେଜିଣ ଇନ୍ଦ୍ରିୟାଦି ଯାର
ହୃଦୟସ୍ଥ ବ୍ରହ୍ମ ମଧ୍ୟେ ଆହେ ବୀରବର,

ମନ ସହ ଦୃଢ଼ଭାବେ ରହନ୍ତି ସଂଲଗ୍ନ
ସେହିବ୍ୟକ୍ତି ଜୀବନ୍ମୁକ୍ତ ଆହେ ଅରଜୁନ ।
ଚିତ୍ତ ଚିତ୍ରକର ଏହି ଜଗତକୁ ବୀର
ଚିତ୍ରିତ କରିଛି କେଡ଼େ କଉଶଳେ ତାର ।
ଏହି ଚିତ୍ରର ଫଳକ ଅଟଇ ଆକାଶ
ଆହା କି ବିଚିତ୍ର ମାୟା ଏହାର ବିକାଶ ।
ଏ ଶୂନ୍ୟ ଫଳକେ ଏହି ଅସାର ଜଗତ
ମିଥ୍ୟା ହେଲେ ମଧ୍ୟ ସତ୍ୟରୂପେ ପ୍ରତିଭାତ ।
ଶୂନ୍ୟାଦପି ଶୂନ୍ୟଅଟେ ଏ ଜଗତ ଚିତ୍ର
ସ୍ୱାପ୍ନିକ ଜଗତ ସମ ଅଟେ ତା ବିଚିତ୍ର ।
କ୍ଷଣମାତ୍ରେ ଜନ୍ମି ଭ୍ରମବଶେ ପ୍ରତିଭାତ
ଅନ୍ୟକିଛି ନୁହେଁ ମନ ରାଇଜ ବ୍ୟତୀତ ।
ତେଣୁ ଏକବାରେ ଏହା ନୁହଁଇ ଯେ ସତ୍ୟ
ସମ୍ମୁଖେ ଯାହା ଦେଖୁଛ ବୀରବର ପାର୍ଥ ।
ଚିତ୍ତ-ଚିତ୍ରକର ଦ୍ୱାରା ଏହା ଯେ ଅଙ୍କିତ
ପୁତ୍ତଳିକା ମାତ୍ର ଜାଣ ଆହେ ପଣ୍ଡୁସୁତ ।
ଯେ ହେତୁ ଅସ୍ତିତ୍ୱ ହୀନ ଅଟେ ଏ ଜଗତ
ତେଣୁ ତୁ, ସୈନ୍ୟ ସାଗର ସରବେ ଅସତ ।
ତେଣୁ କେ କାହାକୁ ବଧ କରିବ ଅର୍ଜୁନ
ଶୂନ୍ୟରେ ଭାସି ବ୍ୟଥିତ ହୋଇବ ତୋ ମନ ।
ଏହାଜାଣି ବଧ୍ୟ, ବଧ, ବଧକର୍ତ୍ତା ଭ୍ରମ
ସେ ଭ୍ରମଜନିତ ଶୋକ, ମୋହ, ମାୟା ମାନ,
ପରିତ୍ୟାଗ କରି ବୀର ଏ ବ୍ରହ୍ମ ଗଗନେ
ନିରଞ୍ଜନ ରୂପେ ବସ ସେହି ଶୂନ୍ୟ ଧାମେ ।
ଚିଦାକାଶ କେଭେ ବଧ ନ କରେ କାହାକୁ,
ପ୍ରାତିଭାସିକ ଯେ ହତ୍ୟା ପ୍ରବୃତ୍ତି ତାହାକୁ ।
'ବ୍ରହ୍ମାକାଶମୟ' ବୋଲି ଜାଣିବ ଅର୍ଜୁନ
ବୃଥାରେ ତା ପାଇଁ କିମ୍ପା ହୁଅ ହେ ଉଦବିଗ୍ନ ?
ଚିତ୍ତରୁ ଯଥା ଜଗତ ହୁଏ ଜାତ, ଅସ୍ତ
ଜନ୍ମ ମୃତ୍ୟୁକୁ ବୁଝିବ କ୍ଷଣ ପ୍ରକାଶିତ ।
କିଛିକାଳ ପୂର୍ବେ ତୁମେ ମୋହାଚ୍ଛନ୍ନ ହୋଇ
ମନେ, ହନ୍ତା, ହତ କଥା ଚିନ୍ତୁଥିଲ ରହି ।
ମୋର ଉପଦେଶ ବଳେ ତୋର ସେ କଳ୍ପନା
ବିନଷ୍ଟ ହୋଇଛି ଜାଣ ପାର୍ଥ ମହାମନା ।
ମନୋମୟ ରାଜ୍ୟ ଯଥା କଳପଇମନ
କ୍ଷଣକାଳ କଳ୍ପସମ ମଣେ ସେ ତେସନ ।
ତେଣୁକରି ମନ କଳପିତ ଏ ଜଗତ
ଅନାଦି, ଅନନ୍ତ, ବୋଲି ହୁଏ ଅନୁଭୂତ ।
ମନ ଯେ ସତ୍ୟକୁ କରି ପାରଇ ଅସତ୍ୟ
ଆଶ୍ଚର୍ଯ୍ୟ ନୁହଁଇ ତାହା ବୀରବର ପାର୍ଥ ।
ଅସ୍ତିତ୍ୱ ବିହୀନ ଏହି ଜଗତ ମଧ୍ୟରେ
ମନ ଯେ ସତ୍ୟକୁ ଉତପନ୍ନ କରିପାରେ ।
ଅତୀବ ଆଶ୍ଚର୍ଯ୍ୟକର ଅଟେ ଏ ବିଷୟ
ବୁଝୁଛ କି ଏହି ମର୍ମ ବୀର ଧନଞ୍ଜୟ ।
ମନର ପ୍ରଭାବେ ଏହି ଭ୍ରାନ୍ତି ଜନମଇ
ଆତ୍ମାର ଅଧ୍ୟାସ ହେତୁ ଜାଣ ପାର୍ଥ ତୁହି ।
ଏମନ୍ତ କେ ଜନ ନାହିଁ ଏ ସାରା ଜଗତ
ତୁଚ୍ଛ ବୋଲି କହିବାକୁ ହେବ ଯେ ସମର୍ଥ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଅର୍ଜୁନ ଉପାଖ୍ୟାନେ ଚିତ୍ତ ବର୍ଣ୍ଣନେ**
**ନାମ ବାଉନ ସର୍ଗଃ**



## ତେପନ ସର୍ଗଃ
## ଅର୍ଜୁନ ବିଶ୍ରାନ୍ତି ଉପାଖ୍ୟାନ

ଭଗବାନ କହିବେକ ଶୁଣ ବୀର ପାର୍ଥ
ଜଗତକୁ ବାନ୍ଧିଛନ୍ତି ବାସନା ସମସ୍ତ ।
ଚିଦାକାଶ ଏହି ବାସନାରୁ ଜନ୍ମ ଜାଣ
ମୁକତ ହୋଇ ନ ପାରେ ପାର୍ଥ କଦାଚନ ।
କିଞ୍ଚିତ ମାତ୍ର ବାସନା ଚିଦାକାଶେ ଥିଲେ
ବିପୁଳ ସଂସାର ତହୁଁ ଜାତ ହୁଏ ହେଲେ ।
ସମ୍ପୂର୍ଣ୍ଣ ବାସନାଶୂନ୍ୟ ଚିତ୍ତକୁ କରିବ
ନାନା ଅନର୍ଥର ମୂଳ ବାସନା ଜାଣିବ ।
ଅଭ୍ୟାସ ବଳେ ବାସନା ବୃଦ୍ଧି ପାଇଥାଏ
ଆତ୍ମଜ୍ଞାନ ବହ୍ନି ଦ୍ୱାରା ଯଦି ଦଗଧ ହୁଏ,
ତେବେ ତା ତହୁଁ ଅଙ୍କୁର ନୁହଇ ଉତ୍ପନ୍ନ
ବାସନା ବୀଜଟି ଯେଣୁ ହୁଅଇ ଦହନ ।
ନିର୍ମଳ ଅନ୍ତଃକରଣ ସୁଖ ଦୁଃଖ ଘେନି
ଆଉ ଦଗଧ ନୁହଇ ଶୁଣ ବୀରମଣି ।
ହେ ଅର୍ଜୁନ ଶୁଣି ମୋର ଏହି ଗୀତାବାଣୀ
ମୋହ, ବାସନା ମନରୁ ଛେଦ ଏହିକ୍ଷଣି ।

ବନ୍ଧୁ ସ୍ୱଜନ ବର୍ଗଙ୍କ ବଧ ଚିନ୍ତା ତେଜି
ଶାନ୍ତ ଚିତ୍ତ ନିର୍ବୃତ୍ତିରେ ରହ ବାବୁ ମଜି ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଅର୍ଜୁନ ଉପାଖ୍ୟାନେ ଅର୍ଜୁନ ବିଶ୍ରାନ୍ତି ବର୍ଣ୍ଣନେ ନାମ ତେପନ ସର୍ଗଃ**



## ଚଉବନ ସର୍ଗଃ
## ଅର୍ଜୁନ କୃତାର୍ଥ

ଅର୍ଜୁନ କହିବେ ତେବେ ଶୁଣ ହେ ଅଚ୍ୟୁତ
ତବ ପ୍ରସାଦରୁ ମୋର ମୋହ ଅପଗତ ।
ଏବେ ମୋର ଆତ୍ମସ୍ମୃତି ଫେରି ମୁଁ ପାଇଛି
ସକଳ ସନ୍ଦେହରୁ ମୁଁ ମୁକତି ଲଭିଛି ।
ଆପଣ ଏକ୍ଷଣି ମୋତେ ଯାହାକି କହିବେ
ତାହା ହିଁ କରିବି ମୁହିଁ ଜାଣ ବାସୁଦେବେ ।
ଶ୍ରୀକୃଷ୍ଣ କହିବେ ଶୁଣ ଆହେ ଅରଜୁନ
ଚିତ୍ତ ତୁମ ଶାନ୍ତ ଯେବେ ଲଭି ତତ୍ତ୍ୱ ଜ୍ଞାନ ।
ସେ ଚିତ୍ତର ବାସନାଦି ହୋଇଯିବେ ଦୂର
ସତ୍ତ୍ୱସ୍ୱରୂପ ଲଭିବ ସେ ଚିତ୍ତ ତୁମର ।
ଏ ଚିତ୍ତର ସେହି ସତ୍ତ୍ୱ ସ୍ୱରୂପାବସ୍ଥାରେ
ପ୍ରତ୍ୟେକ୍ ଚେତନତା ଉପଲବ୍ଧ ବୀରବରେ ।
ଊର୍ଦ୍ଧ୍ୱାକାଶେ ଉଡୁଥିବା ପକ୍ଷୀକୁ ଯେପରି
ଭୂତଳସ୍ଥ ଜନ କେହି ଦେଖିଣ ନ ପାରି ।
ସେହିପରି ଜାଣ ପାର୍ଥ ଅଜ୍ଞ ବ୍ୟକ୍ତିଗଣ
ଅସମର୍ଥ ଲଭିବାକୁ ପ୍ରତ୍ୟଗ୍ ଦରଶନ ।
ଏହି ପଦ ଅଟେ ପାର୍ଥ ଇନ୍ଦ୍ରିୟ ଅତୀତ
ମହାଭୂତ ଆଦିଙ୍କୁ ସେ କରେ ପ୍ରକାଶିତ ।
ସେ ପଦ ଅଟଇ ଶୁଷ୍କ ସଂକଳ୍ପ ବର୍ଜିତ
ଅଦୃଶ୍ୟ ଯେ ପରିଶୁଦ୍ଧ ଚିତ୍ତର ବ୍ୟତୀତ,
ବ୍ରହ୍ମ ବୋଧ ଉଦୟରେ ଏ ବିଶ୍ୱ ବିପୁଳ
ଯେତେବେଳେ ଲୀନ ହୋଇଯାଏ ବୀରବର,
ସାମାନ୍ୟ ବାସନା ତେତେବେଳେ ହେ ଅର୍ଜୁନ
ଆଉ କି କରିପାରିବ ଚିନ୍ତ ତୋର ମନ ?
ଆଗ୍ନେୟଗିରିରେ ଯଥା ହିମର ଅସ୍ତିତ୍ୱ
ସମ୍ଭବ ନୁହଇ ଜାଣ ଆରେ ବାବୁ ପାର୍ଥ ।
ବ୍ରହ୍ମଜ୍ଞାନ ଉଦୟରେ ଅବିଦ୍ୟା ସେପରି
ରହି ନ ପାରଇ ଜାଣ ହେ ଗାଣ୍ଡିବଧାରୀ ।
ଏହି ଶୁଷ୍କ ବ୍ରହ୍ମତତ୍ତ୍ୱ ଯେ ଯାଏରେ ପାର୍ଥ
ଏ ମୂଢ଼ ଜନମାନଙ୍କୁ ନୋହିଛି ବିଦିତ ।
ତେତେ ଦିନ ଅବିଦ୍ୟା ଯେ ନାନା ଆକାରରେ
ନିଜ ଖେଳ ଖେଳୁଥାଏ ସାରା ଜଗତରେ ।
ଏ ବିପୁଳ ବିଶ୍ୱ ପାର୍ଥ ! ଯାର ଅନ୍ତର୍ଗତ
ସେ ଆତ୍ମାରେ ଦ୍ରଷ୍ଟା, ଦୃଶ୍ୟ ହୁନ୍ତି ଲୟ ପ୍ରାପ୍ତ ।
ଖାଲି ନିର୍ମଳତା ତେବେ ରହେ ବିରାଜିତ
ତା ସହ କାହାକୁ କରି ନୁହେଁ ଉପମିତ ।
ହୃଦ ମଧ୍ୟେ ସେହି ପୂର୍ଣ୍ଣ ଆତ୍ମା ଦରଶନ
କରିଣ ଅଭୟ ଲଭ ପାଣ୍ଡବ ଅର୍ଜୁନ ।
'ମୁହିଁ ସେ ପୂର୍ଣ୍ଣାତ୍ମା' ଏହି ବୋଧ ଜ୍ଞାନ ଘେନି
ସଂସାର ବନ୍ଧନୁ ମୁକ୍ତ ହୁଅ ହେ ଫାଲ୍‌ଗୁନି ।
କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ଅର୍ଜୁନଙ୍କୁ ଭଗବାନ କହିଣ ଏ ଗୀର୍ ।
ଉପବେଶନ କରିବେ ତାହାର ସମୀପେ
ଅରଜୁନ ଶ୍ରୀକୃଷ୍ଣଙ୍କୁ କହିବେ ଏ ରୂପେ ।
ସୂର୍ଯ୍ୟ ଉଦୟରେ ଯଥା ପଦ୍ମ ବିକଶିତ
ଆପଣଙ୍କ ଉପଦେଶେ ମୋ ବୁଦ୍ଧି ତେମନ୍ତ ।
ତା ଫଳରେ ମୋ ଅନ୍ତରେ ଯେତେ ମୋହ ଶୋକ
ସବୁ ଦୂରୀଭୂତ ଏବେ ଜାଣ ପଦ୍ମମୁଖ ।
ଏହା ବୋଲି ଅରଜୁନ ଗାଣ୍ଡିବକୁ ଘେନି
ଯୁଦ୍ଧ ପାଇଁ ସଜ ହୋଇବେକ ଫାଲ୍‌ଗୁନି ।
ଅର୍ଜୁନଙ୍କ ଶରାଘାତେ ହସ୍ତି ଅଶ୍ୱ ଆଦି
ସଇନ ସକଳ, ରଥ, ସାରଥି ଇତ୍ୟାଦି,
ରକ୍ତ ବୋଳା ଦେହ ଧରି ହେବେ ଧାବମାନ
ରକତ ସୁଅ ବହିବ ନଦୀର ସମାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଅର୍ଜୁନ ଉପାଖ୍ୟାନେ ଅର୍ଜୁନ କୃତାର୍ଥ ବର୍ଣ୍ଣନେ ନାମ ଚଉବନ ସର୍ଗଃ**



## ପଞ୍ଚାବନ ସର୍ଗଃ
## ପ୍ରତ୍ୟଗାତ୍ମା ବୋଧ ବର୍ଣ୍ଣନ

ବଶିଷ୍ଠ କହନ୍ତି ଶୁଣ ଏବେ ରଘୁବୀର
ଅର୍ଜୁନଙ୍କ ଜ୍ଞାନ ଦୃଷ୍ଟି ହେବ ଯେ ପ୍ରକାର ।

ସେହିପରି ଜ୍ଞାନଦୃଷ୍ଟି ବଳେ ଆହେ ରାମ
ବ୍ରହ୍ମାର୍ପଣ ସନ୍ନ୍ୟାସର ଯେ ଅଛି ବିଧାନ ।
ସେହି ପଥ ଅନୁସରି ତୁମ୍ଭେ ହେ ଶ୍ରୀରାମ
ବ୍ରହ୍ମାତ୍ମା ରୂପରେ ସଦା ରହ ବିଦ୍ୟମାନ ।
ଯେହୁ ସର୍ବାଧାର, ଯାଠୁଁ ସରବେ ଉତ୍ପନ୍ନ
ଯା ଶରୀରେ ସର୍ବେ ଲୀନ ପ୍ରଳୟ କାଳେଣ ।
ପରମାତ୍ମା ସେହୁ ବୋଲି ଜାଣ ହେ ରାଘବ
ପ୍ରପଞ୍ଚର ଦୂର ଦୂରାନ୍ତରେ ତାଙ୍କ ଠାବ ।
ଯେଣୁ ପ୍ରପଞ୍ଚ ଅଟଇ ତାଙ୍କ ଅନ୍ତର୍ଗତ
ତାହା ଘେନି ଜାଣ ସେ ଅଟନ୍ତି ସମୀପସ୍ଥ ।
ତେଣୁ ସେ ଦୂରେ, ସମୀପେ, ସରବ ସ୍ଥାନରେ
ସମଭାବେ ବିରାଜିତ ଜାଣ ରଘୁବୀରେ ।
ଗଗନ ସମ ବ୍ୟାପକ ହେଲେହେଁ ବିଶ୍ୱରେ
ପୂର୍ଣ୍ଣରୂପେ ବିରାଜିତ ସକଳ ବସ୍ତୁରେ ।
ତେଣୁ ସେହି ଏକ ଆତ୍ମା ସକଳ ଭୂତରେ
ତାଙ୍କ ଛଡ଼ା ଅନ୍ୟ କିଛି ନାହିଁ ଚରାଚରେ ।
କ୍ଷୁଦ୍ରତ୍ୱ ଅବଲମ୍ବନ କରି ହେ ଶ୍ରୀରାମ
ସେ ବିଶାଳ ଆତ୍ମା ମଧ୍ୟେ କର ଅବସ୍ଥାନ ।
ତା ଅସ୍ତିତ୍ୱ ହେତୁ ଯେଣୁ ତୁମର ଅସ୍ତିତ୍ୱ
ଯାହା କିଛି ହୁଅ ତୁମ୍ଭେ କ୍ଷୁଦ୍ର ବା ବୃହତ,
ସର୍ବଭାବେ ତାଙ୍କ ତହିଁ ତୁମ ଅବସ୍ଥାନ
ତୁମେ ସେହି ଆତ୍ମା ବୋଲି ବୁଝ ହେ ଶ୍ରୀରାମ ।
ସର୍ବଦା ପ୍ରଫୁଲ୍ଲ ଚିତ୍ତେ ରହ ବିଦ୍ୟମାନ
ବିବେକୀଙ୍କ ଅନୁଭବ ଯାହା ଅଟେ ଶୁଣ ।
ଆତ୍ମାର ଦ୍ୱିବିଧ ରୂପ କରନ୍ତି ଦର୍ଶନ
ବିଷୟୀଭୂତ, ସଂବିତ ସ୍ୱରୂପ ତା ଜାଣ ।
ଚିତ୍ତ ଓ ଚିତ୍ତ ବୃତ୍ତିରେ ଯା ପ୍ରତିବିମ୍ବିତ
ବିଷୟୀଭୂତ ଆତ୍ମାହିଁ ତହିଁ ଅନୁଭୂତ ।
ସାକ୍ଷୀ ଚୈତନ୍ୟ ଅଥବା ଉଦାସନୀ ଦ୍ରଷ୍ଟା
"ସଂବିତ ସ୍ୱରୂପ ଆତ୍ମା" ରୂପେ ତା ପ୍ରତିଷ୍ଠା ।
"ଅନୁଭବ ଗମ୍ୟ ଚିଦାଭାସ" ଯା ପ୍ରଥମ
"ସାକ୍ଷି ଚୈତନ୍ୟ" ଦ୍ୱିତୀୟ ଯା କଲି ବର୍ଣ୍ଣନ ।
ପରମ ପଦ ବୋଲିଣ ଏ ଦୁହିଙ୍କୁ ରାମ
ହୃଦମଧ୍ୟେ ସଦା କରିଥିବଟି ଧାରଣ ।
ସେହି ଗୁରୁ, ସେହି ଆତ୍ମା, ସେହି ଶିବ ଶାନ୍ତ
ବିଦ୍ୟା, ପରାସ୍ଥିତି ସେହୁ ମହତ୍ତ୍ୱ ମହତ୍ତ୍ୱ ।

ଅନୁଭବ ସ୍ୱରୂପରେ ଏହି ଶରୀରରେ
ଆତ୍ମା ନାମେ ପରିଚିତ ସେହି ଏ ବିଶ୍ୱରେ ।
ତାଙ୍କରି ସ୍ଥିତି ହେତୁରୁ ନିଖିଳ ଜଗତ
ସକଳ ଆତ୍ମା ଯାହାକି ଯହିଁ ବିରାଜିତ,
ସତ୍ୟ ସ୍ୱରୂପେ ହେ ରାମ ହୁଏ ଅନୁଭୂତ
ଏ ବିଶ୍ୱ ଗୃହରେ ସେହୁ ପ୍ରଦୀପ ଜ୍ୱଳନ୍ତ ।
ଜଗତ ବୃକ୍ଷର ରସ ଅଟନ୍ତି ଯେ ସେହି
ପ୍ରପଞ୍ଚରୂପ ପ୍ରାଣୀଙ୍କ ପାଳକ ଅଟଇ ।
ସେହି ସେ ପରମତତ୍ତ୍ୱ ଜାଣ ହେ ଶ୍ରୀରାମ
ପଦାର୍ଥ ମାନଙ୍କ ସେହି ବିଭିନ୍ନ ଧରମ ।
ସେହି ତ ସତର ସତ୍ତା, ଅସତ ଅସତ୍ତ
ତାତ୍ତ୍ୱିକ ଦୃଷ୍ଟିରୁ ସେହି ବୋଧ ସ୍ୱରୂପତ ।
ତେଣୁ ସେ ନିଜସ୍ୱରୂପ ଆତ୍ମାର ବ୍ୟତୀତ
ଅନ୍ୟ କଉଣସିଠାରେ ନୁହେ ପ୍ରତିଭାତ ।
କେବଳ ଆତ୍ମାସ୍ୱରୂପେ ଯେଣୁ ସେ ଲବଧ
ତାହାକୁ ବୁଝ ହେ ରାମ ସେ ପରମପଦ ।
ଅବିଚାର ହେତୁ ଯେ ସକଳ ଜଗତ୍‌ଭାବ
ମନ ମୁଗ୍ଧକର ହୁଏ ହେ ରଘୁପୁଙ୍ଗବ,
ବିଚାର ବଳେ ହୁଅଇ ଏମନ୍ତ ପ୍ରତୀତ
ସେ ସବୁର ନାହିଁ ରାମ କୌଣସି ଅସ୍ତିତ୍ୱ ।
ଏହି ଭ୍ରମାତ୍ମକ ଅହଂକାର ଘେନି ରାମ
କେବଣ ବସ୍ତୁରେ ଆସ୍ଥା କରିବ ସ୍ଥାପନ ?
ଭ୍ରମ ବୁଦ୍ଧି ବଳେ ସେହି ଅଦ୍ୱୟ ଆତ୍ମାକୁ
କିପରି ଲଭି ପାରିବ କହ ତା ଆତ୍ମଙ୍କୁ ।
ବୁଦ୍ଧି, ପରିଚ୍ଛିନ୍ନ, ସଂକଳପ, ଆଦି ଯୁକ୍ତ
ଯେଉଁ ଅହଂଭାବ ଅଟେ ସୀମିତ ଏମନ୍ତ
ବ୍ରହ୍ମ ବୋଲି ଯଦି ସେହୁ ହୁଅଇ ନିର୍ଣ୍ଣିତ
ବ୍ରହ୍ମାକାଶେ କିପରି ବା ହେବ ଉପ୍ନନୀତ ।
ଏହି ବ୍ରହ୍ମାକାଶ ଯାର ଅନ୍ତରେ ଉଦିତ
ଶାସ୍ତ୍ର ଲୋକମତ କର୍ମେ ନୋହିଲେ ହେଁ ରତ ।
ଏହି ଆକାଶରୁ କେବେଁ ନୁହେଁ ସେ ବିଚ୍ୟୁତ
ସୁବିଚାର ବଳେ ସେହୁ ରହେ ତହିଁ ସ୍ଥିତ ।
ସମ ବ୍ରହ୍ମେ ଅବସ୍ଥିତ ହୋଇ ଯାର ମନ
କ୍ଷୟ ବା ଉଦୟ ତାର ନୁହେ କଦାଚନ ।
ସେହି ମହାପୁରୁଷଙ୍କ ଅନ୍ତର ରାଜ୍ୟରେ
ଏ ଆକାଶ ଅନୁକ୍ଷଣ ରାଜେ ରଘୁବୀରେ ।

ଚିତ୍ତେ ଗଗନ ସଦୃଶ ଶୂନ୍ୟତା ଉଦୟେ
ବ୍ରହ୍ମାନୁଭବ ସହଜ ସାଧ୍ୟ ହୋଇଥାଏ ।
ବ୍ରହ୍ମଭାବନା କରି ଯେ ଅଦ୍ୱୈତ ପଦରେ
ସମାରୁଢ଼ ରହିଥାଏ ଆହେ ରଘୁବୀରେ ।
ଯଥେଚ୍ଛାଚାରର ସମ୍ପନ୍ନ ହୋଇଲେ ହେଁ ସେହି
ତାର ଭାବନାରେ କିଛି ବିଘ୍ନ ନ ଘଟଇ ।
ନର ପ୍ରତିବିମ୍ବ ଦରପଣେ ପଡ଼ିଥାଏ
ମନୁଷ୍ୟର ଅନୁରୂପ ଦେଖା ଯାଉଥାଏ ।
ମାନ, ଅପମାନ, ହର୍ଷ, ବିଷାଦ ଇତ୍ୟାଦି
ନ ଥାଏ ତାହାର ଯଥା ଆହେ ରଘୁନିଧି ।
ତଥା କର୍ମପରାୟଣ ଥାଇ ଯେ ମାନବ
ଛୁଏଁ ନାହିଁ ତାକୁ ଏହି ବିକାର ସରବ ।
ମୁକ୍ତିଲାଭ ପାଇଁ ଉପଯୁକ୍ତ ସେହି ଜାଣ
ଏହି ବାଣୀ ସ୍ୱତ-ସିଦ୍ଧ ରଘୁକୁଳ ରାଣ ।
ନାନାଦି ଅଙ୍ଗଚାଳନା ଜୀବର ହେ ରାମ
ପ୍ରତିବିମ୍ବିତ ହୁଅଇ ଦରପଣେ ଜାଣ ।
ଅପରିବର୍ତ୍ତୀତ ରହେ ଦର୍ପଣ ଯେସନ
ତେସନ ଚିତ୍ ଦର୍ପଣେ ଜଗତ୍ କ୍ରିୟାମାନ ।
ପ୍ରତିବିମ୍ବିତ ହେଲେ ହେଁ ଆହେ ରଘୁରାଣ,
ଚିଦ୍ ଦରପଣ ରହେ ବିକାର ବିହୀନ ।
ଏକତ୍ୱ ବୋଲି କିଛି ଏ ଜଗତରେ ନାହିଁ
ବହୁତ୍ୱର ପ୍ରଶ୍ନ ଅବା ଉଠିବ କିମ୍ପାଇଁ ।
ଶିଷ୍ୟ, ଶିଷ୍ୟକର୍ମ, ଗୁରୁ, ଗୁରୁଶାସ୍ତ୍ର ବ୍ୟାଖ୍ୟା
ତୁମ ପ୍ରତି ମୋ ଆଦେଶ, ଉପଦେଶ, ଶିକ୍ଷା ।
ଏହି ସକଳ ଚିନ୍ମୟ ଜାଣ ରଘୁନାଥ
ଆତ୍ମା ନିଜେ, ନିଜ ମଧ୍ୟେ ହୁଏ ବିବର୍ତ୍ତିତ ।
ଚିତ୍ ତତ୍ତ୍ୱର ଏହି ବିବର୍ତ୍ତନର ଯେ ନାମ
ଅନ୍ୟ କିଛି ନୁହେଁ ତାହା 'ସଂସାର' ଜାଣିମ ।
ଏହି ଚିତ୍ସ୍ୱରୂପରେ ଯେ ସ୍ପନ୍ଦନ ଭାବ
ବୋଦୋକ୍ତ ପରମପଦ ତାହାହିଁ ଜାଣିବ ।
ଶାନ୍ତିଭାବ ଧରିଲେ ଏ ଚିତ୍ତର ସ୍ପନ୍ଦନ
ସଂସାରର ଉପଶମ ଘଟେ ଆହେ ରାମ ।
ସେହି ମହାଚିତ୍ତେ ଯଦି ତୁମର ଏ ଚିତ୍ତ
ଏକୀଭୂତ ହୋଇଯାଏ ଆହେ ରଘୁନାଥ ।

ଜୀବ ଓ ଜଗତ ଆଦି ସର୍ବ ଖଣ୍ଡଭାବ
ବିନଷ୍ଟ ହୋଇଣ ଯିବ ହେ ରଘୁପୁଙ୍ଗବ ।
ସେ ଖଣ୍ଡଭାବ ଲୟ ହିଁ ଶ୍ରେଷ୍ଠ ପୁରୁଷାର୍ଥ
ବାସନା ବିଲୟ ବୋଲି ପୁଣି ସେ ବିଖ୍ୟାତ ।
ମିଥ୍ୟା ସତ୍ତାହୀନ ଏହି ଯେ ଜଡ଼ ଜଗତ
ସଂବିତ୍ ସ୍ପନ୍ଦନରୁ ସେ ହେଲେ ହେଁ ଉଦ୍ଭୁତ ।
ତାହାର ସ୍ୱରୂପ ଅଟେ ସ୍ପନ୍ଦନ ହୀନତା
ପଣ୍ଡିତମାନଙ୍କ ମତେ ଏହା ସାରକଥା ।
ଅନାତ୍ମ ଜଗତେ ଯେତେକାଳ ସତ୍ୟବୁଦ୍ଧି
ଆରୋପିତ କରୁଥିବ ଆହେ ରଘୁନିଧି,
ତେତେକାଳ ପରିଯନ୍ତ ଏହି ସଂସାରର
ନିବୃତ୍ତି ହୋଇ ନ ପାରେ ଆହେ ରଘୁବୀର ।
ଏ ଅନାତ୍ମ ଜଗତକୁ ଅସତ୍ୟ ଭାବିଲେ
ଜଗତ ପ୍ରତୀତି ଆଉ ନ ଆସଇ ଭଲେ ।
ଜୀବନ ମୁକତ ପାଇଁ ଏହି ଯେ ସଂସାର
ନିତାନ୍ତ ଅସାର ଅଟେ ଆହେ ରଘୁବୀର ।
ଚିନ୍ମାତ୍ର ସ୍ପନ୍ଦନ ଅଟେ ଯେଣୁ ଏ ସଂସାର
ସେ ଚିନ୍ମାତ୍ର ଚିତ୍ ରୂପେ ସମାପ୍ତି ତାହାର,
ନ ହୋଇବ ବୋଲି ରାମ କହିବ କିପରି
ଯେଣୁ ଚିତ୍ ସ୍ପନ୍ଦନରୁ ସଂସାର ସଞ୍ଚରି ।
ଚିତ୍ ଓ ସଂସାର କେଭେଁ ନୁହନ୍ତି ପୃଥକ
ତାଙ୍କୁ ପୃଥକ ବୋଲିବା ଅଟେ ଅବିବେକ ।
ଚିତ୍ ସ୍ପନ୍ଦନର ନାମ ଅଟଇ ଏ ଚିତ୍ତ
ଚିର ଅଜ୍ଞାନ ସଂସାର-ଭାବେ ପରିଣତ ।
ଜ୍ଞାନୋଦୟେ ତାହା ଶୁଦ୍ଧଚିତ୍ତେ ପରିଣତ
ପୁଣି ହୋଇଯାଏ ଜାଣିରଖ ରଘୁନାଥ ।
ଆତ୍ମବୋଧ ଉଦୟରେ ଭୋଗର ବାସନା
ବିଲୀନ ହୋଇଯାଏ ହେ ରାମ ମହାମନା ।
ବାସନା କ୍ଷୟରେ ଜୀବନ୍ମୁକ୍ତର ଲକ୍ଷଣ
ପରକାଶ ପାଇଥାଏ ହେ ରଘୁନନ୍ଦନ ।
ଭୋଗ ଅପେକ୍ଷା ଆତ୍ମାକୁ ଅତି ପ୍ରିୟତମ
ମଣିଥାନ୍ତି ଆହେ ରାମ ଜୀବନ୍ମୁକ୍ତଗଣ ।
ତେଣୁ ସର୍ବୋତ୍ତମ ଆତ୍ମଭୋଗ ତେଜିକରି
ନିକୃଷ୍ଟ ବିଷୟ ଭୋଗେ ମଜ୍ଜିବେ କିପରି ?
ଜୀବନ ମୁକ୍ତର ଅନ୍ୟ ପ୍ରଧାନ ଲକ୍ଷଣ
ଭୋଗ ସ୍ପୃହା ପରିତ୍ୟାଗ କରିବା ହିଁ ଜାଣ ।

ଆତ୍ମ ଚୈତନ୍ୟ ହିଁ ଜାଣ ଆହେ ରଘୁନାଥ
ଭୋକ୍ତା, ଭୋଗ୍ୟ, ଭୋଗ ଆଦିରୂପେ ପ୍ରକାଶିତ ।
ଏପରି ଦର୍ଶନ, ଅବା ସୁଦୃଢ଼ ଅଭ୍ୟାସ
ହୃଦମଧ୍ୟେ ବଦ୍ଧମୂଳ ହେଲେ ରଘୁଈଶ,
ଜୀବନ୍ମୁକ୍ତର ଲକ୍ଷଣ ବୋଲି ତାହା ରାମ
ଏହା କହି ଯାଉଛନ୍ତି ସର୍ବଜ୍ଞାନୀ ଜନ ।
ଶରୀର ଧାରଣ ପାଇଁ ଯାହା ଆବଶ୍ୟକ
ସେହି ଭୋଗ ବରିନିଏ ଯେଉଁ ସୁବିବେକ ।
ଉପଭୋଗ କରି ସ୍ପୃହା ନ କରେ ସେ ଜାଣ
ନିର୍ଲିପ୍ତ ଭାବରେ ଯେଣୁକରେ ସେ ଗ୍ରହଣ ।
'ମୁଁ' ଭୋଗ କରୁ ଅଛଇ' ଏହି ଭ୍ରମଜ୍ଞାନ
ଯେଣୁ ଏ କ୍ଷେତ୍ରରେ ହୋଇଅଛି ଉତପନ୍ନ ।
ଏପରି ଆଶଙ୍କା ଜନ୍ମିପାରେ ରଘୁନାଥ
ସର୍ବାତ୍ମଭାବ ଏଥିରେ ହୋଇବ ଖଣ୍ଡିତ ।
ଜୀବନମୁକ୍ତ ଲକ୍ଷଣ ହେବ ତା କିପରି ?
ଯୁକ୍ତି ଯୁକ୍ତ ଅଟେ ଏହି ଆଶଙ୍କା ତୁମରି ।
କୃତ୍ରିମ ସର୍ବାତ୍ମ ବୁଦ୍ଧି ଏହିପରି ରାମ
ଜୀବନ ମୁକ୍ତର ହୋଇ ପାରଇ ସାଧନ ।
ଯଦିଓ କୃତ୍ରିମ ହୁଏ ସର୍ବାତ୍ମ ଭାବନା
କ୍ଷୁଦ୍ରାତ୍ମ ବୁଦ୍ଧିକୁ ନଷ୍ଟ କରି ଦିଏ ସିନା ।
ସେହିଯୋଗୁ କ୍ରମେ କ୍ରମେ ଅକୃତ୍ରିମ ହୋଇ
ତତ୍ତ୍ୱବୋଧର ସହଜ ପଥ ନିର୍ଦ୍ଦେଶଇ ।
କୃତ୍ରିମ ସର୍ବାତ୍ମ-ଭାବ ଯା' ଥିଲା ପ୍ରଥମେ
ତାହାହିଁ ଅକୃତ୍ରିମତା ଲଭେ କାଳକ୍ରମେ ।
ତାହାବଳେ ସିଦ୍ଧିଲାଭ ହୁଅଇ ସୁଗମ
ଜୀବନ ମୁକତି ପାଇଁ ଅନୁକୂଳ ଜାଣ ।
ଯେତେକାଳ ଚିତ୍ ଥିବ ଅଜ୍ଞାନ ଆଚ୍ଛନ୍ନ
ବିଷୟାକାରେ ସ୍ପନ୍ଦିତ ହେଉଥିବ ଜାଣ ।
ତେଣୁକରି ଘଟେ ତାର ଭ୍ରମ ଦରଶନ
ଜ୍ଞାନୋଦୟେ ସେହି ଭ୍ରମ ଲଭେ ତୀରୋଧାନ ।
ସ୍ପନ୍ଦନ ବିହୀନ ହେଲେ ପ୍ରାଣର ଯେ ରୂପ
ସତ୍ ବା ଅସତ ନୁହେଁ ରଘୁକୁଳାଧିପ ।
ସତ୍, ଅସତର ମଧ୍ୟବର୍ତ୍ତୀ ନୁହେଁ ତାହା
ନାହିଁ ରୂପ ନାହିଁ ରେଖ ଅରୂପତା କାୟା ।
ତାହାହିଁ ଚିତ୍‌ତତ୍ତ୍ୱର ମୋକ୍ଷ ପରଂପଦ
ତାହା ଜାଣ ଏ ଆତ୍ମାର ପରମ ସମ୍ପଦ ।

ଚିତ୍‌ବ୍ରହ୍ମେ ଚିତ୍ତ ଯେବେ ହୁଏ ଏକୀଭୂତ
ମୁକ୍ତି ବା ବନ୍ଧନେ ଚିତ୍ ସ୍ପନ୍ଦ-ଅସମର୍ଥ ।
କେବଳ ଆତ୍ମସ୍ୱରୂପେ ରହେ ବିଦ୍ୟମାନ
ଖଣ୍ଡ ଯେ ଅଖଣ୍ଡକୁ ସେ ବୁଝିବ କେସନ ?
ଚିତ୍ ସ୍ୱରୂପେ ଚିତ୍ତର ଉଥାନ ବିଳୟ
କିଛି ହିଁ ଯଦି ନ ଘଟେ ହେ ରଘୁତନୟ ।
ବନ୍ଧନ ଅବା ମୁକ୍ତିର ପ୍ରସଙ୍ଗ କିପରି
ଉଥାପନ କରିହେବ ଆହେ ଧନୁର୍ଦ୍ଧାରୀ ?
"ମୋର ମୁକ୍ତି ହେଉ" ଏହି ଇଚ୍ଛା ଅନ୍ତରର
ପୂର୍ଣ୍ଣତା ନଷ୍ଟ କରଇ ହେ ରଘୁ କୁମର ।
ମୁକ୍ତି ପାଇଁକି ଅନିଚ୍ଛା ପୁଣି ହେ ଶ୍ରୀରାମ
ହୋଇଥାଏ ଜାଣ ତାହା ବନ୍ଧନ ବାରଣ ।
ତେଣୁକରି ଯେଉଁ ବ୍ରହ୍ମ ଅଟେ ଅସମ୍ବିତ
ଜଡ଼ତ୍ୱ ଗନ୍ଧ ଯା ମଧ୍ୟେ ନାହିଁ ବିନ୍ଦୁମାତ୍ର,
ତାହାହିଁ ପରମପଦ ଜାଣ ରଘୁନାଥ ।
ଅପ୍ରକାଶ୍ୟ ଅବ୍ୟକ୍ତ ସେ କଳପନାତୀତ ।
ମହାଚିତ୍ ସ୍ୱରୂପରେ ସଂକଳପ ରୂପେ
ଯେଉଁ ସ୍ୱରୂପ ସ୍ପନ୍ଦନ ଉଠେ ଆପେ ଆପେ,
ବନ୍ଧନ ଅବା ମୁକ୍ତିର କାରଣ ତା ମଧ୍ୟେ
ନିହିତ ରହିଣ ଥାଏ ଆହେ ରଘୁନିଧେ ।
କିନ୍ତୁ ଅହଂଭାବ ଯେବେ ହୁଅଇ ନିରସ୍ତ
କିଏ କାହାକୁ କିରବ ବନ୍ଧନ ବା ମୁକ୍ତ ?
"ଏହା ମୋ ସଂକଳ୍ପ" "ଏହା ମୋ ସଂକଳ୍ପ" ନୋହି
ସଂକଳ୍ପରେ ଏହି ଭେଦ ଯେବେ ନ ରହଇ,
ତେତେବେଳେ ସେ ସଂକଳ୍ପ ହେଲେହେଁ ଉଦିତ
କ୍ରିୟା ସାଧନାରେ ସେହୁ ହୁଏ ଅସମର୍ଥ ।
ଫଳରେ ବିନାଶ ପ୍ରାପ୍ତ ଲଭୟ ନିଶ୍ଚିତ
ସଂକଳ୍ପ ତ୍ୟାଗ ଉପାୟ ଏହା ରଘୁନାଥ ।
ସ୍ପନ୍ଦନହୀନ ସଂକଳ୍ପ ଏହାକୁ କହନ୍ତି
ଅସଂକଳ୍ପ ବୋଲି ମଧ୍ୟ କେହି କହିଥାନ୍ତି ।
ଏ ରୂପ ସ୍ପନ୍ଦନ କ୍ଷୟ ସାଧନେ ସମର୍ଥ
ହୋଇଯାଏ ଯେତେବେଳେ ସେହି ଚିତ୍‌ତତ୍ତ୍ୱ,
ଚିଦ୍‌ଘନ ରୂପେ ସେହୁ ଥାଏ ବିରାଜିତ
ଏହିକଥା ମନେରଖ ଆହେ ରଘୁନାଥ ।
ଏପରି ସ୍ପନ୍ଦନମୟ ଅଟେ ଏ ସଂସାର
ସ୍ପନ୍ଦନ କ୍ଷୟରେ କାହିଁ ସଂସାର ଅସାର ?

ଚିତ୍‌ସ୍ପନ୍ଦନ ଚିତର ତେଜ ପରକାଶ
ଏହା ଯେବେ ବୁଝିପାର ହେ ରଘୁବିଳାସ,
ଚିତ୍ ବ୍ୟତୀତ ଯେ ଅନ୍ୟ କାହାରି ଅସ୍ତିତ୍ୱ
ପ୍ରତିଭାତ ନ ହୁଅଇ ଆହେ ରଘୁନାଥ ।
ଏହାଦ୍ୱାରା ପୁଣି ଏହି ସଂସାର ନିବୃତ୍ତି
ଘଟିଥାଏ ଜାଣିରଖ ଆହେ ରଘୁପତି ।
ଜୀବନ୍ମୁକ୍ତ ତତ୍ତ୍ୱଜ୍ଞାନୀ ଏହି ଜଗତକୁ
ସ୍ୱପ୍ନସମ ଅବାସ୍ତବ ମଣଇ ତାହାକୁ ।
ଜଗତ ଦର୍ଶନ ରୂପ ଯେଉଁ ଦୀର୍ଘସ୍ୱପ୍ନ
ଅଥବା ଶୟନ କାଳେ ଯେଉଁ କ୍ଷୁଦ୍ରସ୍ୱପ୍ନ,
କେହି ସୁଦ୍ଧା ତାକୁ ନ କରଇ ଅଭିଭୂତ
ଜୀବନ-ମୁକ୍ତ ଜନଙ୍କର ଏହାହିଁ କୃତିତ୍ୱ ।
ଆତ୍ମପ୍ରକାଶର ଏକରୂପ ଏ ସପନ
ଯେଣୁ ସେମାନେ ଜାଣନ୍ତି ଭଲକରି ରାମ ।
ଆନନ୍ଦମୟ ଆତ୍ମାର ଉପଲବ୍ଧି ଯହିଁ
ନିଖିଳ କଳ୍ପନା ଅବସାନ ଯାର ତହିଁ ।
ଜଗଦ୍ଦର୍ଶନ ନିରସ୍ତ ହୁଏ ଯାହାଠାରେ
ସେ ପ୍ରତ୍ୟାଗାତ୍ମା ରୂପକୁ ଚିହ୍ନ ରଘୁବୀରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ପ୍ରତ୍ୟାଗାତ୍ମା ବୋଧ ବର୍ଣ୍ଣନେ**
**ନାମ ପଞ୍ଚାବନ ସର୍ଗଃ**



## ଛପନ ସର୍ଗଃ
## ବିଭୂତି ଯୋଗ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ଆହେ ରାମଚନ୍ଦ୍ର
ଚିତ୍‌ଘନ ପରମତତ୍ତ୍ୱ ସେ ପରମ ପଦ,
ବ୍ରହ୍ମା ବିଷ୍ଣୁ ସଦାଶିବ ନିଷ୍ଠାବାନ ହୋଇ
ବର୍ତ୍ତମାନ ରହିଛନ୍ତି ଜାଣ ତାଙ୍କ ତହିଁ ।
ତତ୍ତ୍ୱଜ୍ଞଙ୍କରୁ ଆରମ୍ଭିଣ ହରିହର ଯାଏ
ଯା କିଛି ଐଶ୍ୱର୍ଯ୍ୟ ତାଙ୍କ ତହିଁ ଦେଖାଯାଏ ।
ଚିଦ୍‌ଘନ ବ୍ରହ୍ମଙ୍କର ତାହାହିଁ ଐଶ୍ୱର୍ଯ୍ୟ
ଭଲରୂପେ ଜାଣିରଖ ହେ ରଘୁ ତନୁଜ ।
ସଂସାର ଭୋଗରେ ଯଥା ନରପତି ଗଣ
ପରମ ଆନନ୍ଦେ ହୋଇ ଥାଆନ୍ତି ମଗନ ।
ବ୍ରହ୍ମୈଶ୍ୱର୍ଯ୍ୟ ଲାଭ କରି ମହାତମାଗଣ
ବେଦୋକ୍ତ ପରମାନନ୍ଦେ ରହନ୍ତି ମଗନ ।

ପୁଣ୍ୟାତ୍ମାମାନେ ସେ ପରଂପଦ ଅନୁଧ୍ୟାୟୀ
ଆନନ୍ଦ ଲାଭ କରନ୍ତି ସ୍ୱର୍ଗ ରାଜ୍ୟେ ଯାଇଁ ।
ଥରେ ମାତ୍ର ବ୍ରହ୍ମବସ୍ତୁ ହେଲେ ଉପଲବ୍ଧି
ମରଣ ଜନିତ ଦୁଃଖ ନୁହଇ ଲବ୍ଧ ।
ସାଧାରଣ ଲୋକ ମଧ୍ୟ କ୍ଷଣକାଳ ପାଇଁ
ସତ୍ତାସାମାନ୍ୟ ରୂପକୁ ଯେବେ ମନେ ଧ୍ୟାଇ,
ବିମୁକ୍ତମନା ତାହାଙ୍କୁ କହନ୍ତି ଜଗତେ
ମୁନିପଦବାଚ୍ୟ ମଧ୍ୟ ହୁଅଇ ମରତେ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ଗୁରୁଦେବ
ବିଲୟ ଲଭେ ଯାଠାରେ ସର୍ବ ଦ୍ୱୈତଭାବ ।
ସେହି ନିର୍ବିଶେଷ ଚିନ୍ମାତ୍ରକୁ କି ଆପଣ
ସତ୍ତାସାମାନ୍ୟ ବୋଲିଣ କରନ୍ତି ବର୍ଣ୍ଣନ ?
କି ଅବା ସର୍ବସ୍ୱରୂପ ପରମ ବ୍ରହ୍ମଙ୍କୁ
ସତ୍ତାସାମାନ୍ୟ ବୋଲିଣ କହିଲେ ତାହାଙ୍କୁ ?
ଦୟାକରି ତାହା ମୋତେ କହନ୍ତୁ ଆପଣ
ଏ ମନ ସଂଶୟ ଦୂର କର ହେ ମହାନ ।
ବଶିଷ୍ଠ ବୋଲନ୍ତି ରାମ ଯା କହୁଛି ଶୁଣ
ସକଳ ପ୍ରାଣୀଙ୍କ ଦେହେ ହୋଇ ଅଧିଷ୍ଠାନ,
ପାନ, ଭୋଜନ, ଗମନ ଆଦି ଯେ କରନ୍ତି
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଭାବରେ ଯା ସ୍ଥିତି,
ପ୍ରଳୟେ ସର୍ବ ପ୍ରାଣୀଙ୍କୁ କରେ ଯେ ଗ୍ରସିତ
ତୁରୀୟରେ ସ୍ୱରୂପରେ ଯେହୁ ବିରାଜିତ,
ସତ୍ତାସାମାନ୍ୟ ଆକାରେ ସେହି ହେ ଶ୍ରୀରାମ
ସକଳ ବସ୍ତୁରେ ରହିଛନ୍ତି ବିଦ୍ୟମାନ ।
ଶବ୍ଦ, ସ୍ପର୍ଶ, ରୂପ, ରସ ଗନ୍ଧ ଆଦିକରି
ସକଳ ବିଷୟେ ଯେହୁ ରହିଛନ୍ତି ପୂରି ।
ସେହିମାନଙ୍କ ଗ୍ରାହକ ଇନ୍ଦ୍ରିୟ ରୂପରେ
ସେହି କେବଳ ପ୍ରକାଶେ ଜାଣ ରଘୁବୀର ।
ମନରେ ସେ ମନ, ପୁଣି ବୁଦ୍ଧିରେ ସେ ବୁଦ୍ଧି
ଚିତ୍ତ ମଧ୍ୟେ ଚିତ୍ତ ରୂପେ ତାହାର ପ୍ରସିଦ୍ଧି ।
ବୃକ୍ଷେ ବୃକ୍ଷଭାବେ ପୁଣି ଘଟେ ଘଟାକାରେ
ପଟେ ପଟଭାବେ ସେହୁ ବିରାଜେ ବିଶ୍ୱରେ ।
ସ୍ଥାବରେ ସ୍ଥାବରଭାବେ ସେହୁ ବିରାଜଇ
ପ୍ରସ୍ତରେ ପ୍ରସ୍ତରଭାବ ସେହୁ ଧରିଥାଇ ।
ଜଙ୍ଗମେ ଜଙ୍ଗମ ପୁଣି ଚେତନେ ଚେତନ
ଭାବମାନ ଧରି ସେହୁ କରେ ଅବସ୍ଥାନ ।

ଦେବଗଣଙ୍କ ଦେବତ୍ୱ, ନରର ନରତ୍ୱ
ତୀର୍ଯ୍ୟକର ତୀର୍ଯକତ୍ୱ, ପଶୁର ପଶୁତ୍ୱ,
କୃମି କୀଟାଦିର ସେହୁ କୃମିକୀଟାଦିତ୍ୱ
ସର୍ବରୂପେ ସର୍ବକାଳେ ସେହୁ ବିରାଜିତ ।
କାଳମଧ୍ୟେ କାଳଭାବେ ତାଙ୍କରି ପ୍ରକାଶ
ଋତୁ ମଧ୍ୟେ ଋତୁଭାବେ ତାଙ୍କରି ବିକାଶ ।
ସୃଷ୍ଟିକାଳେ ସୃଷ୍ଟିସେହୁ ସ୍ଥିତିକାଳେ ସ୍ଥିତି
ଲୟକାଳେ ଧ୍ୱଂସ ରୂପେ ସେହୁ ବିରାଜନ୍ତି ।
ବାଲ୍ୟକାଳେ ବାଳକ ସେ ଯୌବନେ ଯୁବକ
ଜରାର ଜରାତ୍ୱ ବାର୍ଦ୍ଧକ୍ୟରେ ବୃଦ୍ଧଲୋକ ।
ମରଣ କାଳରେ ମୃତ୍ୟୁ ରୂପେ ତା ବିକାଶ
ଏ ଭାବେ ଦେଖାଏ ସେହୁ ଆତ୍ମ ପରକାଶ ।
ଏପରି ତ ବସ୍ତୁ ନାହିଁ ଯହିଁ ସେ ନ ଥାଇ
କୌଣସି ବସ୍ତୁ ତା ତହୁଁ ପୃଥକ ନୁହଇ ।
ତରଙ୍ଗ ସହ ଜଳର ଯଥା ନାହିଁ ଭେଦ
ଜଳହିଁ ଢେଉର ସତ୍ତାସାମାନ୍ୟ ଯେ ପଦ ।
ଜଳପରି ସେହୁ ସତ୍ତାସାମାନ୍ୟ ରୂପରେ
ବିରାଜମାନ କରନ୍ତି ବିଶ୍ୱ ଚରାଚରେ ।
ସେହି ପରମଈଶ୍ୱର ସର୍ବବସ୍ତୁ ଜାଣ
କୌଣସି ବସ୍ତୁ ତା ତାହୁଁ ନୁହଁଇଟି ଭିନ୍ନ ।
ଯେ ସବୁ ବୈଚିତ୍ର୍ୟ ତୁମେ କରୁଛ ଦର୍ଶନ
ସେ ସବୁ ଅଳୀକ ଅଟେ ଜାଣ ହେ ଶ୍ରୀରାମ ।
ସେ ସତ୍ୟ ସ୍ୱରୂପ ବ୍ରହ୍ମ ନିଜ ମଧ୍ୟେ ନିଜେ
ଏ ସବୁ କଳ୍ପନା କରିଛନ୍ତି ରଘୁରାଜେ ।
ନିରଞ୍ଜନ ବ୍ରହ୍ମର ଯେ ଅହଂଭାବ ରାମ
ଏହି ଜଗତ ତାହାର କଳ୍ପନା ଜାଣିମ ।
ଏ ଜଗତ ପରିବ୍ୟାପ୍ତ କରିଛନ୍ତି ସେହି
ତାଙ୍କ ବିନା ଅନ୍ୟ କିଛି ଏ ଜଗତେ ନାହିଁ ।
ଯାହା କିଛି ଦରଶନ କରୁଛ ହେ ରାମ
ସେ ସବୁ ସେ ଅହଂଭାବ ଅଇଶ୍ୱର୍ଯ୍ୟ ଜାଣ ।
ତାଙ୍କ ଛଡ଼ା ଅନ୍ୟକାର ନଥାଇ ଅସ୍ତିତ୍ୱ
ତେଣୁ ନିଜ ମହିମାରେ ନିଜେ ରହ ସ୍ଥିତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ବିଭୂତି ଯୋଗ ଉପଦେଶ ବର୍ଣ୍ଣନେ**
**ନାମ ଛପନ ସର୍ଗଃ ।**



## ସତାବନ ସର୍ଗଃ

## ଜଗତ ସ୍ୱପ୍ନ କଥନ

କହନ୍ତି ଶ୍ରୀରାମ ଶୁଣ ଆହେ ବ୍ରହ୍ମପତି
ଜଗତ ଅଟେ ବ୍ରହ୍ମର କଳ୍ପନା ବିଭୂତି ।
ତେଣୁ କରି ଏ ଜଗତ ଅଟଇ ଅସତ
ବ୍ରହ୍ମା କିପାଁଇ କହନ୍ତି ଏହା ସ୍ୱପ୍ନବତ ?
ଆମ୍ଭଙ୍କୁ କିମ୍ବା ଜଗତ ଦୃଢ଼ ସତ୍ୟବତ
ବୋଧହୁଏ କହ ତାହା 'ଆହେ ତପୋବନ୍ତ' ।
ଜଗତ ଅନୁବର୍ତ୍ତନ ଦୀର୍ଘକାଳ ପାଇଁ
ଆମ୍ଭଙ୍କୁ ସେ ସତ୍ୟବତ ପ୍ରତୀତ ହୁଅଇ ।
ସୁଦୀର୍ଘ ଅଟଇ ଯେଣୁ ବ୍ରହ୍ମାଙ୍କ ଜୀବନ
ଜଗତ ସତ୍ୟ ନୋହିବ ତାଙ୍କୁ କି କାରଣ ?
ତାହାର କାରଣ କହ ସବିଶେଷ କରି
କୃତ୍ୟ କୃତ୍ୟ ହେବି ମୁହିଁ କାଳକାଳ ଧରି ।
ମୁନି କହନ୍ତି ଜଗତ ଅନୁବରତନ
ଦୀର୍ଘକାଳ ଲାଗିଥିବା ସଂସ୍କାର କାରଣ ।
ଦୃଢ ଏବଂ ସତ୍ୟ ବୋଲି ତାହା ଯେ ପ୍ରତୀତ
ହେଜକର ରଘୁବୀର ଏକଥା ଯଥାର୍ଥ ।
ସେହି ଅଭିମତ ଯେହୁ ନ କରେ ଗ୍ରହଣ
ତା ପ୍ରତୀତି ଏଥି ନ ଆସଇ କଦାଚନ ।
ପୂର୍ବକାଳେ ବ୍ରହ୍ମା ଯେବେ ତପସ୍ୟାରେ ଥିଲେ
ତତ୍ତ୍ୱଜ୍ଞାନ ବୋଧ ତାଙ୍କୁ ନୋହିଥିଲା ଭଲେ ।
ତେଣୁ ମଣୁଥିଲେ ଦୃଢ଼ ସତ୍ୟ ଏ ଜଗତ
ତତ୍ତ୍ୱ ଜ୍ଞାନ ହେତୁ ସେହୁ ନବୁଝେ ତେମନ୍ତ ।
ଅଜ୍ଞାନ ରାଜତ୍ୱ ଯେତେ କାଳ ଚାଲିଥାଏ
ଏ ଜଗତ ସତ୍ୟ ବୋଲି ପ୍ରତିଭାତ ହୁଏ ।
ପୁନଶ୍ଚ ସୁଜ୍ଞାନ ଯେବେ ହୁଅଇ ଉଦିତ
ସେ ଭାବ ଯାଇ ଜଗତ ହୁଏ ମିଥ୍ୟାବତ ।
ତେଣୁ ଜଗତ୍ ପ୍ରପଞ୍ଚର ଯେଉଁ ପ୍ରତିଭାସ
ବ୍ରହ୍ମାଙ୍କର ତତ୍ତ୍ୱଜ୍ଞାନେ ହୋଇଣ ବିନାଶ ।
ସପନ ସଦୃଶ ତାହା ହୋଇଛି ନଶ୍ୱର
ଅଜ୍ଞାନୀଙ୍କ ହୃଦେ ଯେଣୁ ଥାଏ ଅହଂକାର ।
ଦୃଢ଼ ଏବଂ ସତ୍ୟ ରୂପେ ତାହାଙ୍କ ମନରେ
ଜାରି ରହିଥାଏ ରାମ ଏହା କାଳେ କାଳେ ।
ନିଜର କଳ୍ପିତ ପ୍ରପଞ୍ଚର ନଶ୍ୱରତା
ବୁଝିବାକୁ କ୍ଷମ ନୁହେଁ ବ୍ରହ୍ମା, ବିଶ୍ୱ ପିତା ।

ପ୍ରେରକ ଅଦୃଷ୍ଟ ଜାଣ ତାହାର କାରଣ
ଅଦୃଷ୍ଟ ଉପରେ କାହା ହାତ ନାହିଁ ଜାଣ ।
ନିଦ୍ରିତ ଯଥା ସପନ ଭୋଗରେ ଆସକ୍ତ
ହୋଇଣ ବୁଝି ନ ପାରେ ସ୍ୱପ୍ନ ନଶ୍ୱରତ୍ୱ ।
ସମଷ୍ଟି ସ୍ୱପ୍ନ ସ୍ୱରୂପ ଜଗତ୍ ପ୍ରପଞ୍ଚରେ
ବ୍ରହ୍ମାଙ୍କର ନଶ୍ୱରତ୍ୱ ଜ୍ଞାନ ଆଣିବାରେ,
ଏହି ପ୍ରେରକ ଅଦୃଷ୍ଟ ଦାୟୀ ସେହିପରି
ପଦେ ପଦେ ବାଧା ଦେଇଥାଏ ରୂପଧାରୀ ।
ସପନେ, ଜଗତ, ଜୀବାକାର ପ୍ରତିଭାସ
ଚଳେ ଅନନ୍ତ ପ୍ରବାହ ଆକାର ସଦୃଶ ।
ସେହିପରି ବିଧାତାଙ୍କ ସ୍ୱପ୍ନ ପ୍ରତିଭାସ
ଜୀବ ଜଗତ ଆକାରେ ଚଳେ ଅହର୍ନିଶ ।
ଅନାଦି କାଳରୁ ଏହା ହୁଏ ପ୍ରବାହିତ
ଯେଣୁ ତାର ଅନ୍ତ ନାହିଁ ତେଣୁ ସେ ଅନନ୍ତ ।
ଯେସନ ବୀଜରୁ ବୃକ୍ଷ ପୁଣି ବୃକ୍ଷୁ ଫଳ
ସେ ଫଳରୁ ପୁଣି ବୀଜ, ବୀଜୁ, ବୃକ୍ଷ, ଫଳ ।
ପୁଣି ଫଳୁ ବୀଜ ଏ ପ୍ରକାରେ ଯେ ପ୍ରବାହ
ଅହରହ ଚାଲିଅଛି ନ ହୋଇଣ ଥୟ ।
ତେସନ ଏ ସ୍ୱପ୍ନ ପୁରୁଷରୁ ରଘୁସୁତ
ଆଦ୍ୟନ୍ତ ବିହୀନ ସ୍ୱପ୍ନ ପୁରୁଷରୁ ସ୍ରୋତ ।
ଅହରହ ଚାଲିଅଛି ନାହିଁ ତାର ଅନ୍ତ
ଗାଉଥିଲେ ନ ସରିବ ତାହାର ବୃତ୍ତାନ୍ତ ।
ଏ ସ୍ୱପ୍ନର ଦ୍ରଷ୍ଟା ଯେହୁ ଦୃଶ୍ୟ ମଧ୍ୟ ସେହି
ଏ ଦୁହିଙ୍କ ମଧ୍ୟେ କିଛି ପାର୍ଥକ୍ୟ ନ ଥାଇ ।
ନିଜେ ଯେ ନୁହଇ ସତ୍ୟ ସେ ଯାହା ରଚିବ
କିପରି ତା ସତ୍ୟ ହୋଇ ପାରିବ ରାଘବ ?
ତେଣୁ ଜନ୍ମାନ୍ତର ସ୍ୱର୍ଗ ନର୍କ ଭୋଗ ଆଦି
ସାଧନ କ୍ଷମ ହେଲେହେଁ ଆହେ ରଘୁନିଧି ।
ପାରମାର୍ଥିକ ଦୃଷ୍ଟିରୁ ଏହାର କୌଣସି
ବାସ୍ତବତା ନାହିଁ ଜାଣ ଦଶରଥ ଶିଷି ।
ତାହାକୁ ସତ୍ୟ ମଣିବା ନୁହଁଇ ଉଚିତ
ଏହି କଥା ମନେରଖ କଉଶଲ୍ୟା ସୁତ ।
ସ୍ୱପ୍ନମୟ ପୁରୁଷର କୃତ ଏ ଜଗତେ
ବିଶ୍ୱାସ ତହିଁ ନ ରଖ ରାମ କଦାଚିତେ ।
ଦ୍ରବଣ ଗୁଣ ହେତୁରୁ ଜଳର ମଧ୍ୟରେ
ଆବର୍ତ୍ତ ତରଙ୍ଗମାନ ଉଠେ ରଘୁବୀରେ ।
ସେ ରୂପେ ଚିତ୍ ତତ୍ତ୍ୱର ଅସ୍ତିତ୍ୱ ବଶତଃ
ପ୍ରକାଶ ପାଇଣ ଥାଏ ଏ ଦୃଶ୍ୟ ଜଗତ ।
ସେହି ଚିତ୍ ତତ୍ତ୍ୱ ଯେବେ ହୁଏ ପରିଜ୍ଞାତ
ଏ ସୃଷ୍ଟି ମିଥ୍ୟା ବୋଲିଣ ହୁଏ ପ୍ରମାଣିତ ।
ସ୍ୱପ୍ନ ସଦୃଶ ଏ ସୃଷ୍ଟି ଯେହେତୁ ଅସତ
ସୃଷ୍ଟିକାରୀ ପ୍ରଜାପତି ପଦ ନୁହେଁ ସତ ।
ଅଜ୍ଞାନର ଅଘଟନ ଘଟନକାରିଣୀ
ଏକ ଶକ୍ତି ଅଛି ଜାଣ ଆହେ ରଘୁମଣି ।
ସେହି ଶକ୍ତି ପ୍ରଭାବରେ ଜାଣ ରଘୁମଣି
ନାନାଦି ବିଚିତ୍ର ବସ୍ତୁ ଦେଖାଯାଏ ପୁଣି ।
ବ୍ରହ୍ମ ଦୃଷ୍ଟିରୁ କିଛିତ ନୁହଁଇ ଅସତ
ଜଗତ ଦୃଷ୍ଟିରୁ କିଛି ମାତ୍ର ନାହିଁ ସତ୍ୟ ।
ଏ ସ୍ୱପ୍ନ ସୃଷ୍ଟିରେ ତେଣୁ ଯା ସମ୍ଭବପର
ପ୍ରତ୍ୟକ୍ଷେ ପଡ଼ଇ ତାହା ସବୁରି ନେତ୍ରର ।
ସ୍ୱପ୍ନରେ ବିଶ୍ୱାସ ହେଲେ ସପନେ ଯା ଦେଖ
ସ୍ଥିର ବୋଲି ମନେହୁଏ ଅଯୋଧ୍ୟା ନାୟକ ।
ଏ ଜଗତେ ସ୍ୱପ୍ନେ ଯା'ର ହୁଅଇ ବିଶ୍ୱାସ
ଜଗତକୁ ସ୍ଥିରମଣି ଲଭେ ସେ ଆଶ୍ୱାସ ।
ପ୍ରାଣୀମାନେ ଭ୍ରମ ପରେ ଭ୍ରମରେ ଆଚ୍ଛନ୍ନ
ଅଭିଭୂତ ଦେଖି ସ୍ୱପ୍ନ ପରେ ସ୍ୱପ୍ନମାନ ।
ସ୍ୱାପ୍ନିକ ବସ୍ତୁକୁ ସ୍ଥିର ବୋଲି ମନେ କରି
ତାହାର ଆଶ୍ରିତ ଥାନ୍ତି ଦିବସ, ଶର୍ବରୀ ।
ମୃଗ ଯଥା ତୃଣାବର୍ତ୍ତ ଗର୍ତ୍ତେ ନିପତୀତ
ବିଷୟାରେ ଆଚ୍ଛାଦିତ ଏ ଜୀବ ଜଗତ,
ତଥା ସଂସାର ଗର୍ତ୍ତରେ ହୁନ୍ତି ନିପତୀତ
ବହୁ କଷ୍ଟସାଧ ତହୁଁ ହେବାକୁ ମୁକତ ।
ମୁଗ୍ଧ ମୃଗ, ଅଜ୍ଞଜନ ଏକ-ଧର୍ମାକ୍ରାନ୍ତ
ମାୟାର ଖେଳ ହେ ରାମ କେଡ଼େ ଚମକୃତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଜଗତ ସ୍ୱପ୍ନ କଥନ ବର୍ଣ୍ଣନେ**
**ନାମ ସତାବନ ସର୍ଗଃ**



## ଅଠାବନ ସର୍ଗଃ

## ଭିକ୍ଷୁ ସଂସାର

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଏ ବିଷୟେ ଶୁଣ ଏକ ଗଳ୍ପ ପୁରାତନ ।

ଶମ, ଦମ, ଗୁଣାନ୍ୱିତ ଭିକ୍ଷୁ ସନ୍ନାସିଏ
ପରିବ୍ରାଜକ ଭାବରେ ଧରା ବୁଲୁଥାଏ ।
ସମାଧି ଅଭ୍ୟାସ ପାଇଁ ହୋଇଣ ସେ ରତ
ଆଶ୍ରମୋଚିତ କରମେ ନିୟତ ନିଯୁକ୍ତ ।
ଅଭ୍ୟାସ ବଳେ ତା ଚିତ୍ତ ହୁଅନ୍ତେ ବିଶୁଦ୍ଧ
ଧ୍ୟେୟ ବସ୍ତୁ ଲଭିବାରେ ହୋଇଲେ ସେ ସିଦ୍ଧ ।
ଏହି ଅବସ୍ଥାରେ ବସି ଧ୍ୟାନ କରୁଥାନ୍ତି
ଜୀବଟ ନାମେ ପୁରୁଷ ମନରେ ଚିନ୍ତନ୍ତି ।
ଅଚିରେ ସାରୂପ୍ୟ ଲାଭ ହୁଅଇ ତାଙ୍କର
ଜୀବଟ ପାଲଟି ଗଲେ ସେହି ତପୀବର ।
ପରିବ୍ରାଜକ କଳ୍ପିତ ସ୍ୱାପ୍ନିକ ଜୀବଟ
ସ୍ୱପ୍ନପୁରୀଏ ରଚିଲେ ଅତି ଚମତ୍କୃତ ।
ସ୍ୱଚ୍ଛନ୍ଦରେ ତହିଁ ସେହୁ କରନ୍ତି ବିହାର
ମଦ୍ୟପାନେ ବିହ୍ୱଳିତ ମାନସ ତାଙ୍କର ।
କ୍ରମେ କ୍ରମେ ନିଦ୍ରାଗସ୍ତ ହୋଇ ସେ ପଡ଼ନ୍ତି
ସ୍ୱପନେ ନିଜକୁ ବେଦ ପାଠକ ଦେଖନ୍ତି ।
ଧାରଣ କରି ଅଛନ୍ତି ଦ୍ୱିଜବର ବେଶ
ବେଦଉକ୍ତ ମନ୍ତ୍ରମାନ କରନ୍ତି ଅଭ୍ୟାସ ।
ଦେବପୂଜା କରୁ କରୁ ପରିଶ୍ରାନ୍ତ ହୋଇ
ଶୟନ କରନ୍ତେ ସ୍ୱପ୍ନ ରାଇଜେ ଭ୍ରମଇ ।
ସାମନ୍ତ ନୃପତି ରୂପ ଧରିଛନ୍ତି ସେହି
ଏହିପରି ସ୍ୱପ୍ନମାନ ଦୃଶ୍ୟ ହେଉଥାଇ ।
ରାଜ ଚକ୍ରବର୍ତ୍ତୀ ହୋଇ ସିଂହାସନେ ବସି
ପାତ୍ର, ସାମନ୍ତମାନଙ୍କୁ କହନ୍ତି ସନ୍ନ୍ୟାସୀ ।
ଦିନେ ସେହି ଚକ୍ରବର୍ତ୍ତୀ ପ୍ରଦୋଷ କାଳରେ
ଏମନ୍ତ ଅଦ୍ଭୁତ ସ୍ୱପ୍ନ ଗୋଟିଏ ଦେଖିଲେ ।
ସୁର ରମଣୀ ସଦୃଶ ମହିଷୀ ତାଙ୍କର
ଦେହକୁ ଲାଗି ରହିଛି ନିଦ୍ରାରେ ବିହ୍ୱଳ ।
ରତି ଶ୍ରମେ କ୍ଳାନ୍ତ ହୋଇ ହେଲେ ସେ ନିଦ୍ରିତ
ନିଦ୍ରାରେ ଦେଖନ୍ତି ପୁଣି ସ୍ୱପନ ଅଦ୍ଭୁତ ।
ମୃଗୀ ନୟନେ ଆସକ୍ତି ଥିବାରୁ ତାଙ୍କର
ମୃଗୀ ରୂପ ଧରିଅଛି ତାଙ୍କ କଳେବର ।
ସେ ମୃଗୀର ଇଚ୍ଛା ଥାଏ ଲତା ଭୋଜନରେ
ନିଦ୍ରାମଗ୍ନ ହୋଇ ମୃଗୀ ଲତା ରୂପ ଧରେ ।
ଯାହା ଦେଖେ, ଶୁଣେ ଚିତ୍ତ ସ୍ମରଇ ତେମନ୍ତ
ଚିତ୍ତର ଧର୍ମ ହିଁ ଏହା ଜାଣ ରଘୁନାଥ ।

ସ୍ମୃତିରୁ ତଦ୍ରୂପ ସ୍ୱପ୍ନ ହୁଏ ଦରଶନ
ଏ ନିୟମ ବ୍ୟତିକ୍ରମ ନୁହେଁ କଦାଚନ ।
ଆସକ୍ତି ତା ଥିଲା ଯେଣୁ ଲତା ଭୋଜନରେ
ଲତା ରୂପ ଧରିନିଏ ମୃଗୀ କ୍ଷଣକରେ ।
ସେ ଲତାରେ ଥିଲା ଯେଉଁ ସାକ୍ଷୀ ଚଇତନ୍ୟ
ଲତାଠାରୁ ଭ୍ରମରକୁ ମଣିବାରୁ ଭିନ୍ନ ।
ସ୍ୱପ୍ନନ୍ମୁଖି ବୁଦ୍ଧି ବଳେ ଜଡ଼ ସୁଷୁପ୍ତିରେ
ଭ୍ରମର ସଂସ୍କାର ଜାଗିଉଠେ ତା ଅନ୍ତରେ ।
ଶେଷେ ନିଜକୁ ଦେଖେ ସେ ଭ୍ରମର ରୂପରେ
ଚିତ୍ତ ଧର୍ମ ଏ ସକଳ କର୍ମ କରି ଚଳେ ।
ଦିନେ ସେ ଭ୍ରମର ପଦ୍ମ ଉପରେ ବସିଣ
ଆନନ୍ଦେ ବିହ୍ୱଳ ହୋଇ କରେ ମଧୁପାନ ।
ଏମନ୍ତ ସମୟେ ଏକ ମତ୍ତ ହସ୍ତୀ ଆସି
ପଦ୍ମକୁ ମୁଦିତ କରି ଦିଏ ତାକୁ ଗ୍ରାସୀ ।
ହସ୍ତୀ ମୁଖେ ଥାଇ ଅଳି ହରାଏ ପରାଣ
ମୃତ୍ୟୁ କାଳେ ହସ୍ତୀ ଚିନ୍ତା କରେ ଅନୁକ୍ଷଣ ।
କ୍ଷଣ ମଧ୍ୟେ ହସ୍ତୀ ରୂପ ସେହୁ ଧରି ନିଏ
ଶତ୍ରୁ ସୈନ୍ୟ ମାରି ହସ୍ତୀ ରାଜା ପ୍ରିୟ ହୁଏ ।
ରାତ୍ରକାଳ ଯୁଦ୍ଧେ ଶତ୍ରୁ ଖଡ଼୍‌ଗେ ହୁଏ ହତ
ଯାର ଗଣ୍ଡସ୍ଥଳେ ହୁଏ ଭ୍ରମରଙ୍କ ମେଣ୍ଟ
ମୃତ୍ୟୁକାଳେ ତାର ସେହି ଭ୍ରମର ସଂସ୍କାର
ଉଦ୍‌ବୁଦ୍ଧ ହୁଅନ୍ତେ ଧରେ ଭ୍ରମର ଆକାର ।
ସେ ଭ୍ରମର ଦିନେ ହସ୍ତୀ ଖୋଜେ ତଳେ ପଡ଼ି
ଚକଟି ଋକଟି ହୋଇ ମିଶିଯାଏ ଧୂଳି ।
ମୃତ୍ୟୁ କାଳେ ଯେଣେ ଏକ ହଂସ ସେ ଦେଖିଲା
ତାର ଚିତ୍ତ ହଂସ ରୂପ ଧରିଣ ବୁଲିଲା ।
ହଂସ ଯୋନିରେ ଜନ୍ମିଲା ପଞ୍ଚାଅଶିବାର
ହଂସ ଜଳେ ମଧ୍ୟେ ଥାଇ ବୁଲେ ସଦାବେଳ ।
ସଙ୍ଗମାନଙ୍କଠୁଁ ପୁଣି ବ୍ରହ୍ମହଂସ କଥା
ତାର ରୂପଗୁଣ ଆଦି ସକଳ ବାରତା ।
"ମୁହିଁ ହେବି ବ୍ରହ୍ମହଂସ" ଏହି ଯେ ବାସନା
ମନମଧ୍ୟେ ଘନୀଭୂତ ହୁଏ ତାର ସିନା ।
ଯଥାକାଳେ ଦେହନାଶ ହୁଅନ୍ତେ ତାହାର
ଘନ ବାସନାର ବଳେ ସେ ପକ୍ଷୀ ପ୍ରବର ।
ବ୍ରହ୍ମାଙ୍କ ବାହନ ହଂସ ରୂପ ସେ ଧରିଣ
ବ୍ରହ୍ମଲୋକେ ବିଚରଇ ଆହ୍ଲାଦିତ ମନ ।

ବ୍ରହ୍ମ ଉପଦିଷ୍ଟ ତତ୍ତ୍ୱଜ୍ଞାନ ଲାଭକରେ
ଜୀବନ ମୁକତ ଭାବେ ସର୍ବଦା ବିଚରେ ।
ଏହିପରି ହଂସରୂପୀ ସେ ପରିବ୍ରାଜକ
ଜୀବ ଦଶାରେ ମୁକତି ଲଭେ ସୁବିବେକ ।
ପୂର୍ବ ଭିକ୍ଷୁ ରୂପ ଧରି ସେ ପରିବ୍ରାଜକ
ଜୀବନ ମୁକତ ହେଲା ଧରି ହଂସରୂପ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଜୀବଟ ଉପାଖ୍ୟାନେ ଭିକ୍ଷୁ ସଂସାର**
**ବର୍ଣ୍ଣନେ ନାମ ଅଠାବନ ସର୍ଗଃ**



## ଅଣଷଠି ସର୍ଗଃ
## ସ୍ୱପ୍ନଗତ ରୁଦ୍ରୈକ୍ୟ କଥନ

କହନ୍ତି ବଶିଷ୍ଠ ସେହି ହଂସ ଏକଦିନେ
ବ୍ରହ୍ମାଙ୍କ ସହିତ ଚଳେ ରୁଦ୍ରଙ୍କ ସଦନେ ।
ରୁଦ୍ରଙ୍କୁ ଦେଖି 'ମୁଁ ରୁଦ୍ର' ବୋଲି ବିଚାରିଲା
ସଙ୍ଗେ ସଙ୍ଗେ ରୁଦ୍ରମୟ ଶରୀର ଧରିଲା ।
ରୁଦ୍ରଲୋକୋଚିତ ଆଚରଣ ଲଭିକରି
ରୁଦ୍ରଲୋକେ ବିଚରଇ ସେ ଭିକ୍ଷୁ ଶରୀରୀ ।
ହଂସର ଏହି ସାରୂପ୍ୟ ମୁକ୍ତିରେ ହେ ରାମ
ନ ପାଏ ରୁଦ୍ରଜଗତ ସଂହାରିଣୀ ଧର୍ମ ।
ସାରୂପ୍ୟ ମୁକତି ହଂସ ଶରୀରେ ଲଭିଲା
ରୁଦ୍ର ଜଗତ୍ ସଂହାରିଣୀ ଧର୍ମ ନପାଇଲା ।
ଜ୍ଞାନ ଓ ଐଶ୍ୱର୍ଯ୍ୟାଦିରେ ରୁଦ୍ରଙ୍କ ସାଦୃଶ୍ୟ
ଲାଭ କରି ପାରିଥିଲା ସେ ସାଧକ ହଂସ ।
ଜ୍ଞାନବଳେ ପୂର୍ବଜନ୍ମମାନଙ୍କ ବିଷୟ
ଜାଣି ପାରିଥିଲା ସେହି ଧରି ହଂସ ଦେହ ।
ମନେ ମନେ ବିଚାରଇ ସେ ହଂସ ଏମନ୍ତ
ଆହା ମାୟା ଦେବୀଙ୍କର କି ଶକ୍ତି ଅଦ୍ଭୁତ ।
ବାସ୍ତବରେ ଏହି ମାୟା ଅଟଇ ଅସତ୍ୟ
ମରୁ ମରୀଚିକା ସମ ଏହା ସତ୍ୟବତ ।
ବର୍ତ୍ତମାନ ବୁଝିପାରୁ ଅଛି ମୁଁ ଏମନ୍ତ
ପ୍ରଥମରେ ଥିଲି ମୁହିଁ ଚିତ୍‌ରୂପବତ ।
ପରେ ଏହି ମାୟାବଳେ ବହୁ ହେବି ବୋଲି
ଇଚ୍ଛାକରି ଏହି ଚିତ୍ତ ଆକୃତି ଧରିଲି ।
ଏହି ଚିତ୍ତଧରି ସୃଷ୍ଟି ସଂକଳ୍ପ କରିଲି
ବର୍ତ୍ତମାନ ଏହି ତତ୍ତ୍ୱ ବୁଝି ମୁଁ ପାରିଲି ।
ସେହି ସଂକଳପ ପ୍ରଭାବରୁ ଜାଣ ମୁହିଁ
ଚିତ୍‌ରୂପେ ସର୍ବଜ୍ଞ ମୁଁ ହୋଇପାରିଛଇଁ ।
ପୁଣି ଜଡ଼ଭାବ ଧରି ଗଗନ ପବନ
ଇତ୍ୟାଦି ରୂପକୁ କରି ଅଛଇ ଧାରଣ ।
ସମଷ୍ଟି, ବ୍ୟଷ୍ଟି, ସୂକ୍ଷ୍ମ ଓ ସ୍ଥୁଳ ଶରୀରରେ
ଚିଦାଭାସ ରୂପେ ମୁହିଁ ପରବେଶ କରେ ।
ସୂକ୍ଷ୍ମ ତନ୍ମାତ୍ରା ଓ ସ୍ଥୁଳ ଭୂତମାନ ଧରି
ଯେଉଁ ଦେହଗଣ ତହିଁ ମଧ୍ୟେ ମୁଁ ପଶିଲି ।
ବହୁକାଳ ଜନ୍ମପରେ ଜନ୍ମମାନ ନେଲି
ଶେଷେ ସମାଧି ସମ୍ପର୍ଣ୍ଣ ଭିକ୍ଷୁରୂପ ହେଲି ।
ବାସନା ହେତୁ ସେ ଭିକ୍ଷୁ ଜୀବଟ ହୋଇଛି
ନାନାଦି ଯୋନିରେ ସେହୁ ଭ୍ରମଣ କରିଛି ।
ବ୍ରାହ୍ମଣମାନଙ୍କୁ ଭକ୍ତି ଯେଣୁ କରୁଥିଲା
ନିଜକୁ ବ୍ରାହ୍ମଣ ରୂପେ ପ୍ରଥମେ ଦେଖିଲା ।
ସାମନ୍ତ ରାଜା ବିଷୟ ଭାବୁଥିଲା ବୋଲି
ସେ ପାଇଁ ସାମନ୍ତ ରାଜା ରୂପଥିଲା ଧରି ।
ସାମ୍ରାଜ୍ୟ ଲାଭପାଇଁ କି ଧର୍ମ ଆଚରିଣ
ରାଜ ଚକ୍ରବର୍ତ୍ତୀ ସେହୁ ହୋଇଥିଲା ପୁଣ ।
କାମବୃତ୍ତି ଯେଣୁ ତାର ପ୍ରାବଲ୍ୟ ଲଭିଲା
ସୁନ୍ଦରୀ ରମଣୀ ରୂପେ ଜନମ ହୋଇଲା ।
ହରିଣୀ ନୟନେ ଯେଣୁ ଆକୃଷ୍ଟ ହୋଇଲା
ସେ ରମଣୀ ମୃଗୀ ଜନ୍ମ ଶେଷକୁ ଲଭିଲା ।
ଲତା ଭୋଜନେ ଲାଳସା ଥିଲା ତାର ଯେଣୁ
ଲତା ଜନମ ଲଭଇ ସେ ହରିଣୀ ତେଣୁ ।
ଭ୍ରମର ଭାବନା ବଶେ ସେହି ଲତା ପୁଣି
ଭ୍ରମର ଜନ୍ମ ଲଭଇ ଆହେ ରଘୁମଣି ।
ପଦ୍ମଫୁଲେ ବସି ମଧୁପାନ କଲାବେଳେ
ଦଳି ହୋଇଯାଏ ସେହୁ ହସ୍ତୀପଦ ତଳେ ।
ହସ୍ତୀ ଭାବନାରୁ ଧରେ ମାତଙ୍ଗ ଆକାର
ମାତଙ୍ଗ ପୁଣି ଧରଇ ଭ୍ରମର ଶରୀର ।
ସେ ଭ୍ରମର ହଂସ ରୂପ ଧରି ଜନମଇ
ସେହି ଭିକ୍ଷୁ ମୁହିଁ ନାନାକାରେ ଜନ୍ମନେଇ ।
ଏବେ ମୁହିଁ ଏହି ରୁଦ୍ର ରୂପ ଧରିଅଛି
ଅସଂଖ୍ୟ ଜନମମାନ ମୋ ମନେ ନାଚୁଛି ।

ଏହି ଜନ୍ମ ପରମ୍ପରା ହେଲେହେଁ ଅସତ୍ୟ
ଭ୍ରମୁଥିଲି ମୁହିଁ ତାଙ୍କୁ ମଣି ସତ୍ୟବତ ।
ଚିତ୍ ପରଂପଦରୁ ମୁଁ ବିଚ୍ୟୁତ ହୋଇଣ
କେତେ କାଳ ଗତ ହେଲା ନ ଜାଣେ ମୋ ମନ ।
ଏହି ଭିକ୍ଷୁ ଜନମରେ ଶ୍ରବଣ ମନନ
ଅଭ୍ୟାସ ମାନ କରିଣ ଥିଲେହେଁ ପାଳନ ।
ଯଥାଯଥ ଭାବେ ଯେଣୁ ନ କଲି ସାଧନ
ଭୋଗିବାକୁ ହେଲା ନାନା ଯୋନିରେ ଭ୍ରମଣ ।
ଶେଷେ ବ୍ରହ୍ମା ହଂସ ରୂପେ ନିଏ ମୁଁ ଜନମ
ବର୍ତ୍ତମାନ ରୁଦ୍ରଲୋକେ କରେ ଅବସ୍ଥାନ ।
ସେ ପୂର୍ବ ଅଭ୍ୟାସେ ମୋର ଏବେ ତତ୍ତ୍ୱଜ୍ଞାନ
ଦୃଢ଼ ଅଭ୍ୟାସ ବିଫଳ ନୁହେଁ କଦାଚନ ।
ଶତ ଶତ ଜନ୍ମମାନ ବିତିଗଲେ ମଧ୍ୟ
ବଳବାନ ରହେ ସେହୁ ହୋଇ ମୂଳବଦ୍ଧ ।
ଏହି ରୂପ ଭାବି ସେହି ରୁଦ୍ରରୂପୀ ହଂସ
ସୁଷୁପ୍ତ ଭିକ୍ଷୁ ପଡ଼ିଣ ଥିଲା ଯେଉଁ ଦେଶ,
ଫେରିଯାଇ ତାହାକୁ ସେ କରେ ଜାଗରିତ
ତାର ଚିତ୍ତେ ନିଜଜ୍ଞାନ କରେ ସଂଚରିତ ।
ତତପରେ ସେହି ଭିକ୍ଷୁ ଚେତନା ପାଇଣ
ବୁଝିଗଲା ନିଜ ଭ୍ରମ ପରମ୍ପରା ମାନ ।
ରୁଦ୍ରହଂସ, ଭିକ୍ଷୁ ଦୁହେଁ ତହୁଁ ଚଳିଗଲେ
ଚିଦାକାଶ ମଧ୍ୟେ ଯାଇଁ ପ୍ରବେଶ ହୋଇଲେ ।
ବ୍ରହ୍ମାଣ୍ଡ ଡେଇଁ ପଶନ୍ତି ଅନ୍ୟ ବ୍ରହ୍ମାଣ୍ଡରେ
ପ୍ରବେଶ କରନ୍ତି ସେ ବ୍ରହ୍ମାଣ୍ଡ ଭୂଲୋକରେ ।
ଶବ ସଦୃଶ ଜୀବଟ ପଡ଼ିଥିଲା ତହିଁ
ତତ୍ତ୍ୱଜ୍ଞାନ ତା ହୃଦରେ ସଂଚରନ୍ତି ନେଇ ।
ଯଦ୍ୟପି ଅନ୍ତରେ ହୋଇଥାନ୍ତି ଏକମୂର୍ତ୍ତି
ବାହାରକୁ ଦେଖାଯାନ୍ତି ତିନୋଟି ମୂରତି ।
ହଂସ, ଭିକ୍ଷୁ ଓ ଜୀବଟ, ରୂପମାନ ଧରି
ଏକ ଆତ୍ମାରୂପେ ଥାନ୍ତି ସେ ତିନି ଶରୀରୀ ।
ପରେ ସେହି ତିନିମୂର୍ତ୍ତି ଏମନ୍ତ କରନ୍ତି
ଆତିବାହିକ ଶରୀରେ ଜଗତେ ଭ୍ରମନ୍ତି ।
ଜୀବଟର ଚିତ୍ତ ପରିଣାମ ଯେ ବ୍ରାହ୍ମଣ
ସାମନ୍ତ ରାଜା ଯେ ଦ୍ୱିଜ ଚିତ୍ତ ପରିଣାମ ।
ତା ଚିତ୍ତୁ ଉଦ୍‌ଭୂତ ଚକ୍ରବର୍ତ୍ତୀ ଯେ ରାଜନ
ସ୍ୱତନ୍ତ୍ରରେ ତାଙ୍କ ହୃଦେ ପ୍ରବେଶ କରିଣ ।

ତତ୍ତ୍ୱଜ୍ଞାନ ଦେଇ ତାଙ୍କୁ ପ୍ରବୁଦ୍ଧ କରିଣ
ମୃତ ଯେ ଥିଲେ ତାହାଙ୍କୁ ଦେଲେ ଜୀବଦାନ ।
ଏ ରୂପେ ସମସ୍ତେ ରୁଦ୍ରସାରୂପ୍ୟ ଲଭିଣ
ବାହାରେ ଯଦି ଦିଶନ୍ତି ସର୍ବେ ଭିନ୍ନ ଭିନ୍ନ ।
କିନ୍ତୁ ଅନ୍ତରେ ଏକଇ ରୁଦ୍ରରୂପ ଧରି
ବିରାଜମାନ କରନ୍ତି ସେହି ତପଚାରୀ ।
ପରମଈଶ୍ୱର ଠିକ୍ ଏହି ପରକାରେ
ସଂସାର ସର୍ଜନା କରିଛନ୍ତି ଯତନରେ ।
ଅନ୍ତରେ ସଂବିତ୍‌ରୂପେ ଏକା ବିରାଜନ୍ତି
ବାହାରକୁ କିନ୍ତୁ ନାନା ଆକାର ଧରନ୍ତି ।
ଏହିପରି ଶତ ଶତ ରୁଦ୍ରଛନ୍ତି ରାମ
ଏ ଜଗତେ ରୁଦ୍ରସଂଖ୍ୟା ଏକାଦଶ ଜାଣ ।
ଏହି ଭିକ୍ଷୁପରି ସର୍ବ ଜୀବମାନଙ୍କର
ଉଦ୍‌ଭୂତ ହୋଇଥାଏ ଯେବଣ ସଂସାର,
ଅପ୍ରବୁଦ୍ଧ ଜୀବ ସେ ସକଳ ସଂସାରର
ଐକ୍ୟଦର୍ଶନ କରି ନ ପାରେ ରଘୁବୀର ।
ତତ୍ତ୍ୱଜ୍ଞ ପୁରୁଷ କିନ୍ତୁ ସର୍ବଜୀବଙ୍କର
ଏକରୂପତା ଦର୍ଶନ କରେ ଧନୁର୍ଦ୍ଧର ।
ଅପ୍ରବୁଦ୍ଧ ଜୀବ କିନ୍ତୁ ସକଳ ବସ୍ତୁର
ସ୍ଥୁଳ ଅଂଶକୁ କେବଳ ଦେଖଇ ନେତ୍ରର ।
ସେତିକିରେ ଆତ୍ମତୃପ୍ତି ଲଭେ ସେହିଜନ
ଅପରିପକ୍ୱତା ଜାଣ ଏଥିର କାରଣ ।
ସେହି ସ୍ଥୁଳଦୃଷ୍ଟି ହୋଇଯାନ୍ତେ ତିରୋଧାନ
ସକଳର ଏକରୂପ ଅନୁଭୂତ ଜାଣ ।
ଚୈତନ୍ୟ ଶକ୍ତି ବଳରେ ପ୍ରବୁଦ୍ଧ ଯେ ଜନ
ପରସ୍ପରରେ ଏକତ୍ୱ କରେ ଦରଶନ ।
ଜଳରୁ ତରଙ୍ଗ ଯଥା ନୁହଁଇ ଅଭିନ୍ନ
ତାଙ୍କର ଏକତ୍ୱ ତଥା ନ ହୁଅଇ ଧ୍ୟାନ ।
ନାନାଦି ଜୀବଗଣ ଯେ ନେତ୍ରରେ ପଡ଼ନ୍ତି
ବାସ୍ତବରେ ସେହିମାନେ ଅନିତ୍ୟ ଅଟନ୍ତି ।
ମାତ୍ର ବ୍ରହ୍ମଙ୍କର ସର୍ବବ୍ୟାପିତା ଯେନିଣ
ସତ୍ୟ ବୋଲି ପ୍ରତୀତ ସେ ହୁଅନ୍ତି ଶ୍ରୀରାମ ।
ସର୍ବଜୀବ ସାରବସ୍ତୁ ବ୍ରହ୍ମଙ୍କ ସହିତ
ଯେତେବେଳେ ଜୀବ ଲାଭ କରିବ ଏକତ୍ୱ,
ପରସ୍ପର ମଧ୍ୟେ ଜୀବଗଣ ତେତେବେଳେ
ମିଳିତ ହୋଇପାରିବେ ଆହେ ରଘୁବାଳେ ।

ସେହି ମିଳନ ହିଁ ହେବ ପ୍ରକୃତ ମିଳନ
ତେବେ ଯାଇଁ ସର୍ବ ଭେଦଭାବ ହେବ ଶୂନ୍ୟ ।
ଖାତ ଖୋଳି ମୃତ୍ତିକାକୁ ଅଲଗା କରିବ
ଅବିଳମ୍ବରେ ଆକାଶ ତହିଁ ପ୍ରକାଶିବ ।
ତତ୍ତ୍ୱ ଦୃଷ୍ଟି ବଳେ ଦୃଶ୍ୟ ହୋଇଯାନ୍ତେ ଯଶ
ସର୍ବ୍ୟବାପୀ ବ୍ରହ୍ମ ହୋଇପଡ଼ନ୍ତି ପ୍ରକାଶ ।
ବିଶ୍ୱମଧ୍ୟେ ପଞ୍ଚଭୂତ ଦେଖୁଛ ଯେପରି
ସେମାନଙ୍କ ମୂଳେ ବ୍ରହ୍ମଛନ୍ତି ସେହିପରି ।
ଏହି ଜ୍ଞାନ ଅନୁଭବ କରୁଥାଅ ରାମ
ମିଥ୍ୟା ଜ୍ଞାନ ଛଡ଼ା ତାହା ନୁହେଁ କିଛି ଅନ୍ୟ ।
ଗଗନ ସଦୃଶ ବ୍ରହ୍ମ ନିତ୍ୟ ସୁନିର୍ମଳ
କଳଙ୍କ ବିହୀନ ସଦା ତାହା ପରିମଳ ।
ମିଥ୍ୟାଜ୍ଞାନ ହିଁ ବନ୍ଧନ ଜାଣ ହେ ଶ୍ରୀରାମ
ତହିଁରୁ ନିବୃତ୍ତି ମାତ୍ର ମୁକ୍ତି ବୋଲି ଜାଣ ।
ଜନ୍ମ, ମୃତ୍ୟୁ, ବିବର୍ଦ୍ଧନ ଆଦି ଯେତେ ଜ୍ଞାନ
ମିଥ୍ୟା ଜ୍ଞାନରୁ ତାଙ୍କର ହୁଏ ପ୍ରକାଶନ ।
ଯଥାର୍ଥ ଜ୍ଞାନରେ ଯେତେବେଳେ ମିଥ୍ୟାଜ୍ଞାନ
ଦୂରୀଭୂତ ହୋଇଯାଏ ହେ ରଘୁନନ୍ଦନ ।
ଜନ୍ମମୃତ୍ୟୁ ବନ୍ଧନାଦି ସକଳ ବିକାର
ଦୂରୀଭୂତ ହୋଇଯାଏ ଜାଣ ରଘୁବୀର ।
ଦର୍ଶନ ନ କଲେ ଯାହା ହୋଇଯାଏ ନାଶ
କିଛି କି ଯତନ ଲୋଡ଼ା ପାଇଁ ତା ବିନାଶ ?
ନୀରବ ରହିଲେ ଯାହା ହୋଇପାରେ ଲାଭ
କରତଳଗତ ତାହା ଅତୀବ ସୁଲଭ ।
ଜ୍ଞାନ ହିଁ ଯାର ସ୍ୱରୂପ ଅଟେ ହେ ଶ୍ରୀରାମ
ଜ୍ଞାନ ଅଭାବରେ ଦେଖାଦେବେ ସେ କେସନ ?
ସ୍ପନ୍ଦନ ହେତୁ ଜଳହିଁ ତରଙ୍ଗ ଯେସନ
ବ୍ରହ୍ମର ସ୍ପନ୍ଦନ ହେତୁ ଜଗତ ତେସନ ।
ଜଳ ତରଙ୍ଗ ମଧ୍ୟରେ ଅଛଇ ଯେ ଭେଦ
ବ୍ରହ୍ମ ଜଗତ ମଧ୍ୟରେ ତେସନ ପ୍ରଭେଦ ।
ଜଳ, ତରଙ୍ଗ ଗୋଟିଏ ଜିନିଷ ଯେସନ
ବ୍ରହ୍ମ, ଜଗତ ନୁହନ୍ତି ଦୁଇଟି ତେସନ ।
ଅଜ୍ଞାନ ହେତୁ କେବଳ ପ୍ରଭେଦ ଏ ବେନି
ବାସ୍ତବରେ ଏକବସ୍ତୁ ସେହୁ ରଘୁମଣି ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଜୀବଟ ଉପାଖ୍ୟାନେ ସ୍ୱପ୍ନ ଶତ-ରୁଦ୍ରୀୟ କଥନେ ନାମ ଅଣଷଠି ସର୍ଗଃ**



## ଷାଠିଏ ସର୍ଗଃ

## ଗଣତ୍ୱ ପ୍ରାପ୍ତି

ଶ୍ରୀରାମ କହନ୍ତି ଏବେ ଆହେ ମୁନିଶ୍ୱର
ବ୍ରାହ୍ମଣ, ଜୀବଟ, ଭିକ୍ଷୁ, ସ୍ୱପନ ଶରୀର ।
କିସ ପରିଣାମ ହେଲା ସେହି ଶରୀରର
ଅମୂଳଚୂଳ କରି ତା କହ ତପୀବର ।
କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ସେମାନଙ୍କୁ ଏହିପରି କହନ୍ତି ଈଶ୍ୱର ।
ତୁମ୍ଭେମାନେ ଏବେ ନିଜ ନିଜ ସ୍ଥାନେ ଚଳ
ପରିବାର ସୁଖ ଭୋଗକର କିଛି କାଳ ।
ସଂସାର ଭୋଗ ବିଳାସ ଚରିତାର୍ଥ କରି
ପରିଶେଷେ ଆସି ପହଞ୍ଚିବ ଶିବପୁରୀ ।
ତେତେବେଳେ ତୁମ୍ଭେମାନେ ହେବ ଶିବଗଣ
ତହିଁ ଅପେକ୍ଷାରେ ରହିଥିବ କିଛିଦିନ ।
ପ୍ରଳୟ କାଳରେ ଯାଇଁ ପରମ ପଦରେ
ସର୍ବେ ଲୀନ ହୋଇଯିବ ହେଜରଖ ଭଲେ ।
ଏହାକହି ସଦାଶିବ ଅର୍ନ୍ତଧାନ ହେଲେ
ଜୀବଟାଦି ନିଜ ନିଜ ଆଶ୍ରମେ ମିଳିଲେ ।
ପୁତ୍ର କଳତ୍ର ସହିତ ଭୋଗନ୍ତି ସଂସାର
ଯଥାକାଳେ ଭୋଗଶେଷେ ତେଜିଣ ଶରୀର,
ରୁଦ୍ରଗଣଙ୍କ ସହିତ ମିଳିବେକ ଯାଇଁ
ରୁଦ୍ରଗଣ ବୋଲାଇବେ ସେ ସକଳେ ତହିଁ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ତପୋବନ୍ତ
ସଂକଳ୍ପକ ବସ୍ତୁମାତ୍ରେ ଯେ ହେତୁ ଅସତ୍ୟ ।
ଭିକ୍ଷୁର ସଂକଳ୍ପୁ ଜାତ ଯେଣୁ ଜୀବଟାଦି
କିପରି ଯେ ସତ୍ୟ ହେଲେ କହ ତପୋନିଧି ?
କହନ୍ତି ବଶିଷ୍ଠ ତାହା ଶୁଣ ହେ ଶ୍ରୀରାମ
ଚିତ୍ତର ଅଧ୍ୟସ୍ତ ଅଂଶ ରହିଛି ହେ ଜାଣ ।
ତାହାର ଯେ ସାଂକଳ୍ପିକ ସତ୍ୟତା ରାଘବ
ଉଭିହୀନ ଅଟେବୋଲି ନିଶ୍ଚୟ ଜାଣିବ ।
ଯେ ହେତୁରୁ ବ୍ରହ୍ମଙ୍କର ସର୍ବାତ୍ମତା ଥାଇ
ତେଣୁ ତାଙ୍କର ଅସ୍ତିତ୍ୱ ଅନୁଭୂତ ହୋଇ ।
ସର୍ବ ଆତ୍ମମୟ ଏହି ବ୍ରହ୍ମର ଅସ୍ତିତ୍ୱ
ହେତୁରୁ ତାର ଅସ୍ତିତ୍ୱ ଆହେ ରଘୁନାଥ ।

ସେ କାରଣୁ ପୁରୁଷର କରମ ଦକ୍ଷତା
ଦେଖା ଯାଇଥାଏ ଆହେ ହେ ବିଶ୍ୱ ନିୟନ୍ତା ।
ମନ ସଂକଳ୍ପରେ ଅବା ସପନ କାଳରେ
ଯାହା ଯାହା ଦୃଶ୍ୟ ହୋଇଥାଏ ରଘୁବୀରେ ।
ବ୍ରହ୍ମହିଁ କେବଳ ସେ ସବୁର ଆତ୍ମା ଜାଣ
ସିଦ୍ଧ ହୁଏ ତେଣୁ ତାଙ୍କ ଦେଶାନ୍ତ ଗମନ ।
ମନ ଇନ୍ଦ୍ରିୟମାନଙ୍କ ସାମର୍ଥ୍ୟ ବଳରେ
ଗମନା ଗମନ ଘଟେ ଦେଶ ଦେଶାନ୍ତରେ ।
ଚିତ୍ତର ଅସ୍ତିତ୍ୱ ବିନା ସେହି ସାମରଥ
କିପରି ସମ୍ଭବିପାରେ ଆହେ ରଘୁନାଥ ?
ଚିତ୍ ଉଦ୍‌ଭୂତ ବାସନା ଅଜ୍ଞାନାବସ୍ଥାରେ
ଅଭିବ୍ୟକ୍ତ ହୋଇଥାଏ ଯେ ଯେ ଆକାରରେ ।
ସର୍ବାତ୍ମମୟ ହେତୁରୁ ଚିତ୍‌ରୂପ ବ୍ରହ୍ମ
ସେହି ସେହି ଆକାରରେ ଦୃଶ୍ୟ ହୁଏ ଜାଣ ।
ସ୍ୱପ୍ନ ଓ ସଂକଳ୍ପ ଏକ ସମୟରେ ରାମ
ଯେଉଁ ଅବସ୍ଥାରେ ପରିଦୃଷ୍ଟ ହୁଏ ଶୁଣ ।
ଯୁଗପତ ଭାବେ ସ୍ୱପ୍ନ, ସଂକଳପ, ରାମ
ଅଭ୍ୟାସ ଯୋଗ ବ୍ୟତୀତ ନୁହଁଇ ଦର୍ଶନ ।
ଯୋଗସିଦ୍ଧମାନେ ସର୍ବବସ୍ତୁ ସର୍ବଠାରେ
ଦର୍ଶନ କରିପାରନ୍ତି ଆହ ରଘୁବୀରେ ।
ଏକାଗ୍ରତା ଅଭାବରେ ସଂକଳ୍ପରେ ସିଦ୍ଧି
ହୋଇ ନ ପାରଇ ଜାଣ ଆହେ ରଘୁନିଧି ।
ସଂକଳ୍ପ ବିଷୟ ସହ ଅନ୍ୟ ବିଷୟର
କାମନା କରିବ ଯଦି ଆହେ ରଘୁବୀର ।
ଉଭୟ ଦିଗରୁ ତାର ହାନି ଘଟେ ଜାଣ
ଏକତ୍ରତାର ଅଭାବ ତହିଁର କାରଣ ।
ଏକନିଷ୍ଠ ହୋଇପାର ଯେବଣ ସୁଜନ
ତାହାର ହିଁ ସିଦ୍ଧିଲାଭ ଘଟିଥାଏ ଜାଣ ।
ସଂକଳପ ପରାୟଣ ଅଟେ ଯେଉଁ ଜନ
ସଂକଳ୍ପିତ ବିଷୟରେ ପାଏ ସେହୁ ଜ୍ଞାନ ।
ଦୃଶ୍ୟ ବିଷୟ ଯେ କରେ ଅନୁବରତନ
ଦୃଶ୍ୟ ବିଷୟରେ ତାର ଜନ୍ମିଥାଏ ଜ୍ଞାନ ।
ଦୃଶ୍ୟ ବିଷୟେ ଆସକ୍ତିମାନ ଯେଉଁ ବ୍ୟକ୍ତି
ସଂକଳ୍ପ ବିଷୟେ ଯଦି ଆଶା ପୋଷିଥାନ୍ତି,
ଏକନିଷ୍ଠତା ଅଭାବ ଯୋଗରୁ ସେ ଜନ
ଉଭୟ ଦିଗରେ ପରାଜିତ ହୁଏ ଜାଣ ।

ପରିବ୍ରାଜକ ସେ ଭିକ୍ଷୁ ଥିଲେ ଏକନିଷ୍ଠ
ତେଣୁ ଲାଭ କରିପାରି ଥିଲେ ସେ ରୁଦ୍ରତ୍ୱ ।
ରୁଦ୍ରଙ୍କ ପରି ସର୍ବଜ୍ଞ ସର୍ବ ଶକ୍ତିବାନ
ହୋଇ ପାରିଥିଲେ ସେହି ବିବେକୀ ଶ୍ରୀରାମ ।
ହୋଇଲେ ହେଁ ଜୀବଟାଦି ସଂକଳ୍ପ ସମ୍ଭୂତ
ଯେଣୁ ବାସ କରୁଥିଲେ ବିଭିନ୍ନ ଜଗତ ।
ଉଦିତ ହୋଇଥିବାରୁ ହୃଦେ ରୁଦ୍ରଜ୍ଞାନ
ପରିସ୍ପର ଭେଟ ପାଇଁ ଥିଲେ ସେ ଅକ୍ଷମ ।
ରୁଦ୍ର ଇଚ୍ଛାବଳେ ଜୀବ ଭେଦଜ୍ଞାନ ଯୁକ୍ତ
ରୁଦ୍ର ଆଶୀର୍ବାଦେ ହୁଏ ଭେଦଜ୍ଞାନ ମୁକ୍ତ ।
ରୁଦ୍ରତ୍ୱ ଲଭିଣ ସେହୁ ରୁଦ୍ରଙ୍କ ସଦୃଶ
ବ୍ରହ୍ମରୂପ ଧରିପାରେ ହେ ରଘୁ ବିଳାସ ।
ଏ ସଂସାରେ ସିଦ୍ଧିଲାଭ କରିବାର ପାଇଁ
ଏକନିଷ୍ଠତା ହିଁ ସେତୁ ଜାଣ ରଘୁସାଇଁ ।
ଏ ଭିକ୍ଷୁର ମନୋମୟୀ ସରଜନାମାନ
ତହିଁର ଆଦର୍ଶ ଜାଣ କୌଶଲ୍ୟା ନନ୍ଦନ ।
ଏକତ୍ୱ, ବହୁତ୍ୱ, ପୁଣି ନରତ୍ୱ, ଦେବତ୍ୱ
ଧ୍ୟାନ ଧାରଣାର ବଳେ ଜୀବ ଏ ସମସ୍ତ,
ଦେଶକାଳ ଅନୁସାରେ କରିପାରେ ଲାଭ
ଏକନିଷ୍ଠତା ପ୍ରଭାବ ବୁଝ ହେ ରାଘବ ।
ପରମାର୍ଥ ଦୃଷ୍ଟିରୁ ହିଁ ଜୀବ ଅଟେ ବ୍ରହ୍ମ
ତେଣୁକରି ସେ ଅନନ୍ତ, ସର୍ବ ଶକ୍ତିମାନ ।
ପୁଣି ଯେତେବେଳେ ଏକ ଏକ ଦେହ ଧରି
ପରିଚ୍ଛିନ୍ନ ଭାବକୁ ସେ ନିଅଇ ଆବୋରି ।
କ୍ଷୁଦ୍ରତ୍ୱ ଲଭିବା ଶକ୍ତି ତାର ତେତେବେଳେ
ପ୍ରକାଶ ପାଇଣ ଥାଏ କୌଶଲ୍ୟା କୁମରେ ।
ସ୍ୱଭାବ, ଶକତି ବଳେ ଏହି ଜୀବ ଜାଣ
କ୍ରମେ କ୍ରମେ ଧରୁଥାନ୍ତି ଏ ଅବସ୍ଥା ମାନ ।
ସ୍ୱର୍ଗ, ନରକାଦି ଭୋଗ ଯାହାକରେ ଜୀବ
ତା କର୍ମଶକ୍ତିର ଏହା ପ୍ରଭାବ ଜାଣିବ ।
ଏ ବିଷୟେ ଈଶ୍ୱରଙ୍କ ଇଚ୍ଛା ତ ନ ଥାଇ
ଅନିଚ୍ଛାର ପ୍ରଶ୍ନ ମଧ୍ୟ ତହିଁ ନ ଉଠଇ ।
ଯାହା ଇଚ୍ଛା କରୁଥାନ୍ତି ଏହି ଜୀବଗଣ
ଭଗବାନ ସେ କାମନା କରନ୍ତି ପୂରଣ ।
ଅପ୍ରାର୍ଥିତ ବସ୍ତୁ କିଛି ନ ଦିଅନ୍ତି ସେହି
ଇଚ୍ଛାମୟ ଯେଣୁ ତାଙ୍କ ସ୍ୱନାମ ଅଟଇ ।

ଧ୍ୟାନ ଧାରଣା ପ୍ରଭାବେ ଜୀବ ଏ ସଂସାରେ
ଏକ ଅବା ବହୁ ରୂପ ଧାରଣ ସେ କରେ ।
ଇଚ୍ଛା ଅନୁରୂପ ସ୍ଥାନେ କରେ ଅବସ୍ଥାନ
ଇଚ୍ଛାମୟ ତାର ଇଚ୍ଛା କରନ୍ତି ପୂରଣ ।
ପ୍ରାଣୀ ହୀତ ପାଇଁ ଧ୍ୟାନ ଧାରଣା ବଳରେ
ଯୋଗୀଗଣ ଦେହ କଳପନ୍ତି ଏ ସଂସାରେ ।
ରାଜା କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଘରେ ବସିକରି
ଯୋଗବଳେ ରାଜ୍ୟଦସ୍ୟୁ ତସ୍କରଙ୍କୁ ମିଳି,
ବିଧିମତେ ସେମାନଙ୍କୁ କରନ୍ତି ଆୟତ୍ତ
ଯୋଗର ଅଦ୍ଭୂତ ଶକ୍ତି ବୁଝ ରଘୁନାଥ ।
କ୍ଷୀର ସମୁଦ୍ରରେ ବିଜେ ରହି ଭଗବାନ
ଧରାତଳେ ପୁଣି ଲାଭ କରନ୍ତି ଜନମ ।
ସ୍ୱର୍ଗେ ଅବସ୍ଥିତ ଥାଇ ମହାଯୋଗୀଗଣ
ମର୍ତ୍ତ୍ୟଧାମେ ପୂଜାର୍ଚ୍ଚନା କରନ୍ତି ଗ୍ରହଣ ।
ଇନ୍ଦ୍ର ସ୍ୱର୍ଗେ ସିଂହାସନେ ବସି ରହିଥାନ୍ତି
ପୃଥିବୀରେ ଯଜ୍ଞାର୍ଚ୍ଚନ ଗ୍ରହଣ କରନ୍ତି ।
ଭିକ୍ଷୁର ସଂକଳ୍ପ ବଳେ ଜୀବଟ, ବ୍ରାହ୍ମଣ
ଶିବଙ୍କ ଆଦେଶ ଶିରେ କରିଣ ଧାରଣ ।
ଆପଣା ସଂକଳ୍ପମୟ ପୂରକୁ ଫେରନ୍ତି
ସାଂସାରିକ ସୁଖ ଉପଭୋଗ କରୁଥାନ୍ତି ।
ଚରିତାର୍ଥ କରିସାରି ଉପଭୋଗ ମାନ
ପୁଣି ରୁଦ୍ରଲୋକକୁ ସେ କରିବେ ଗମନ ।
ମୃତ୍ୟୁନାଶକ, ଅମୃତପୂର୍ଣ୍ଣ ଚନ୍ଦ୍ରକଳା
ଶିରେ ଧାରଣ କରିବେ ଯଥା ଧରେ ଭୋଳା ।
ଶିବଙ୍କ ସଦୃଶ ତହିଁ ହେବେ ବିରାଜିତ
ବୁଝିପାରୁଥିବ ରାମ ଯୋଗ କରାମତ ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଗଣତ୍ୱ ପ୍ରାପ୍ତି ବର୍ଣ୍ଣନେ ନାମ ଷାଠିଏ ସର୍ଗଃ**



## ଏକଷଠି ସର୍ଗଃ
## ବିଦ୍ୟୋତ୍ତର ବିସ୍ମୟ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ସେହି ଭିକ୍ଷୁର ବୃତ୍ତାନ୍ତ କରିଣ ବର୍ଣ୍ଣନ ।
ସମସ୍ତ ଜୀବଙ୍କ ତତ୍ତ୍ୱ କହିଲଇଁ ମୁହିଁ
ପ୍ରସନ୍ନଭାବେ ତା ସବୁ-ରହିଅଛି ତହିଁ ।
ଖାଲି ସେ ଭିକ୍ଷୁ ନୁହଇ, ସର୍ବ ପ୍ରାଣୀଗଣ
ବ୍ରହ୍ମଙ୍କଠାରୁ ସକଳେ ହୁଅନ୍ତି ଉତପନ୍ନ ।
ଉଚ୍ଚ ଗିରିଶୃଙ୍ଗ ଯଥା ପାଷାଣ ଖସିଣ
ଅଧୋଭାଗେ ନିପତିତ ହୋଇଥାଏ ଜାଣ ।
ଜୀବ ମଧ୍ୟ ସେହିପରି ବ୍ରହ୍ମରୁ ଖସିଣ
ମୋହମୟ ସଂସାରରେ ହୋଇଥାଏ ମଗ୍ନ ।
ଅଟେ ଯେ ସଂସାର ଦୀର୍ଘ ସ୍ୱପ୍ନ ଦରଶନ
ତହିଁ ରହି ସଢ଼ୁଥାଏ ଜୀବ ଅନୁକ୍ଷଣ ।
ଦର୍ଶନ ପରେ ଦର୍ଶନ କରି ସ୍ୱପ୍ନମାନ-
ମାୟାଗ୍ରସ୍ତ ଜୀବ ମଧ୍ୟେ କେବେ କେଉଁ ଜନ ।
ନିଜେ ନିଜେ ବୁଝିପାରେ ଜନ୍ମ ଦୁଃଖମାନ
ଏକବାରେ ମିଥ୍ୟା, ଖାଲି ସପନ ସମାନ ।
ନାମରୂପେ ଜୀବର ଯେ ଆତ୍ମ ଅଭିମାନ
ପ୍ରକୃତ ବନ୍ଧନ ଅଟେ ତାହା ହେ ଶ୍ରୀରାମ ।
ନାମ ରୂପର ଅତୀତ ଯେଉଁ ଆତ୍ମଜ୍ଞାନ
ତାହାହିଁ ମୁକତି ଅଟେ ହେ ରଘୁନନ୍ଦନ ।
ଶ୍ରୀରାମ କହନ୍ତି ଶୁଣ ଆହେ ଗୁରୁଦେବ
ଜଗତ ସ୍ଥିତି ବିଷୟେ ଉପଦେଶ ଦବ,
ତାହା ଯେ ଯଥାର୍ଥ ଦେବ, ପାରିଛି ମୁଁ ବୁଝି
କେବେ କି ଋଣ ତୁମର ପାରିବି ମୁଁ ସୁଝି ?
ଯେ ଭୀକ୍ଷୁ, ଜୀବଟ କଥା କଲେକ ବର୍ଣ୍ଣନା
ବାସ୍ତବିକ ତାହା ଅବା କପୋଳ କଳ୍ପନା
କହନ୍ତି ବଶିଷ୍ଠ ମୁନି ଶୁଣ ଏବେ ରାମ
ଯଦିଓ କଳ୍ପନା କରି କରିଛି ବର୍ଣ୍ଣନ !
ତଥାପି ଯୋଗ ଦୃଷ୍ଟିରେ କରିଣ ଦର୍ଶନ
ବଖାଣ କରିଛି ତାହା କୌଶଲ୍ୟା ନନ୍ଦନ ।
ତେଣୁକରି ତାହାସବୁ ନୋହିପାରେ ମିଥ୍ୟା
ଅର୍ଦ୍ଧରାତ୍ର ସମାଧିରେ ଚାର ଯଥାର୍ଥତା,
ଦର୍ଶନ କରି ମୁଁ କାଲି କରିବି ବର୍ଣ୍ଣନ
ଆଜିତ ହେଲାଣି ଆସି ଦିନ ଅବସାନ ।
ସଭା ମଉଳିଲା ସର୍ବେ ଗଲେ ନିଜପୁର
ବଶିଷ୍ଠଙ୍କ ଶ୍ରୀଚରଣେ କରି ନମସ୍କାର ।
ପ୍ରଭାତ ହୁଅନ୍ତେ ସର୍ବେ ସଭାକୁ ମଣନ୍ତି
ଯଥାଯୋଗ୍ୟ ମାନ୍ୟ ସକଳଙ୍କୁ ଅରପନ୍ତି ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ବିଦ୍ୟୋତ୍ତର ବିସ୍ମୟ ବର୍ଣ୍ଣନେ**
**ନାମ ଏକଷଠି ସର୍ଗଃ**



# ବାଷଠି ସର୍ଗଃ

## ଭିକ୍ଷୁ ସଂସ୍କୃତି କଥନ

ବିଶ୍ୱାମିତ୍ର ମୁନି ସହ ବଶିଷ୍ଠ ମହର୍ଷୀ
ସଭା ଅଳଂକୃତ କଲେ ଶୁଭ ଲଗ୍ନେ ଆସି ।
ସକଳ ଜନତା ତହୁଁ ନିସ୍ତବ୍ଧ ହୋଇଣ
ସୌମ୍ୟଭାବେ ସ୍ୱ ସ୍ୱ ସ୍ଥାନ କଲେକ ପୂରଣ ।
ବଶିଷ୍ଠ ମୁନି ପ୍ରଶ୍ନକୁ ଅପେକ୍ଷା ନ କରି
ଶ୍ରୀରାମଚନ୍ଦ୍ରଙ୍କୁ କହିଯାନ୍ତି ପୂର୍ବପରି ।
ଗତ ରଜନୀରେ ମୁହିଁ ସମାଧି ଯୋଗେଣ
ସେହି ଭିକ୍ଷୁକର କରିଥିଲି ଅନ୍ୱେଷଣ ।
ବାଲ୍ମୀକ ନାମକ ଜନପଦର ଉତ୍ତରେ
ନିଜ ନାମେ ଜନପଦ ଅଛଇ ସେଠାରେ ।
ସେହି ଜନପଦେ ଏକ କୁଟୀର ମଧ୍ୟରେ
ଦୀର୍ଘ-ଦୃଶ ମୁନି ବସିଛନ୍ତି ସମାଧିରେ ।
ଏକୋଇଶ ଦିନ କାଳ ଏହି ଅବସ୍ଥାରେ
ଦେଖୁ ଦେଖୁ ବିତିଗଲା ଆହେ ରଘୁବୀରେ ।
ମୋହର ଇପ୍‌ସିତ ସେହି ଭିକ୍ଷୁକ କି ନୁହେଁ
ଜାଣି ନ ପାରିଣ ମୁହିଁ ହୋଇଲି ଅଥୟେ
ସମଗ୍ର ପୃଥିବୀ ତହୁଁ କଲି ଅନ୍ୱେଷଣ
ଉଦ୍ଦିଷ୍ଟ ଭିକ୍ଷୁଙ୍କର ମୁଁ ନ ପାଇଲି ଚିହ୍ନ ।
ଅନ୍ୟାନ୍ୟ ଜଗତମାନ ଭ୍ରମଣ କରିଣ
ଏକ ଜଗତରେ ତାଙ୍କ ପାଇଲି ଦର୍ଶନ ।
ଚିଦାକାଶେ ବିଦ୍ୟମାନ ଥିଲା ସେ ଜଗତ
ତହିଁ ମଧ୍ୟେ ଦେଖିଲଇଁ ବୃତ୍ତାନ୍ତ ଏମନ୍ତ ।
ଅନ୍ୟ ଦୁଇଜଣ ଭିକ୍ଷୁ ଥାଆନ୍ତି ସେଠାରେ
ଅବିକଳ ସେହି ଭିକ୍ଷୁବରଙ୍କ ରୂପରେ ।
ସେଠା ବ୍ରହ୍ମାଙ୍କ ନିର୍ମିତ ସେହି ଜଗତରେ
ଭୁବନ ବିନ୍ୟାସ ଅଛି ଯଥା ଏହିଠାରେ ।
ମୁନି ଓ ବ୍ରାହ୍ମଣ ମାନ ଏହି ଜଗତରେ
ଆଗର ସମ୍ପନ୍ନ ଥାନ୍ତି ଯେଉଁ ପରକାରେ ।
ସେହିଭାବେ ରହିବେ ସେ ଭବିଷ୍ୟ ସୃଷ୍ଟିରେ
ଥିଲେ ମଧ୍ୟ ଅତୀତରେ ସେହି ପରକାରେ ।
ଭବିଷ୍ୟ ସୃଷ୍ଟିରେ ମଧ୍ୟ ନାରଦାଦି ମୁନି
ପ୍ରବେଶ ହୋଇବେ ନିଜ ନିଜ କାର୍ଯ୍ୟ ଘେନି ।
ସେହିପରି ଭିକ୍ଷୁ ମଧ୍ୟ ଥିବେ ସେତେବେଳେ
ତାହାଙ୍କ ଜ୍ଞାନ, ଚରିତ୍ର ଥିବ ଏ ପ୍ରକାରେ ।
ସାଗରେ ତରଙ୍ଗ ପରି ଏହି ସୃଷ୍ଟିମାନ
ଉଦୟ ଅସ୍ତ ଲଭୁଣ ଥାନ୍ତି ପ୍ରତିକ୍ଷଣ ।
କେତେକ ସୃଷ୍ଟି ଦିଶନ୍ତି ଏକଇ ପ୍ରକାର
ଅର୍ଦ୍ଧ ସାଦୃଶ୍ୟ ଅଛଇ କେତେକ ସୃଷ୍ଟିର ।
ସାମାନ୍ୟ ସାଦୃଶ୍ୟଯୁକ୍ତ କେତେକ ଅଟନ୍ତି
ଏକବାରେ ବିସଦୃଶ କାହାର ଆକୃତି ।
ମହାପୁରୁଷମାନଙ୍କୁ ମୋହଗ୍ରସ୍ତ କରି
ମୋହିନୀ ମାୟା ଏସନ ରହିଛି ବିସ୍ତାରୀ ।
ନୀରବୟବ କାଳର ଯାହା ଏକ କ୍ଷଣ
ତାହାବଳେ କଉଣସି ଶାରୀରିକ କର୍ମ ।
ସମ୍ପାଦିତ ହେବା ଜାଣ ଅଟେ ଅସମ୍ଭବ
ମାନସିକ ଚେଷ୍ଟା ଅବା କିଏ କଳପିବ ?
କେବଳ ଭ୍ରାନ୍ତି ହିଁ ତହିଁ କରଇ ରାଜତ୍ୱ
ତା ଉଦାହରଣ ଜାଣ ଭିକ୍ଷୁର ଚରିତ୍ର ।
କାହିଁ ସେହି ଏକୋଇଶ ଦିବସ ରଜନୀ
ଅନନ୍ତ କାଳ ପ୍ରବାହ କାହିଁ ରଘୁମଣି ।
କି ଆଶ୍ଚର୍ଯ୍ୟଜନକ ଏ ମାନସର ଗତି
ମାନବ ଚିନ୍ତା ଅତୀତ, ଦେବେ ନ ଜାଣନ୍ତି ।
ନେତ୍ର ପଥେ ପ୍ରକାଶିତ ହୁଏ ଯେ ଜଗତ
ବ୍ରହ୍ମର ପ୍ରତିଭାମାତ୍ର ତାହା ରଘୁନାଥ ।
ଏକମାତ୍ର ଅଗ୍ନି ସ୍ଫୁଲିଙ୍ଗରୁ ଯେଉଁପରି
ପ୍ରକାଣ୍ଡ ଅଗ୍ନି ପଟଳ ଜନ୍ମେ ରୂପଧାରୀ ।
ଚିନ୍ମୟ ବ୍ରହ୍ମରୁ ଜାଣ ଏ ବିଶ୍ୱ ସଂସାର
ଉତ୍ପନ୍ନ ହୋଇଅଛଇ ହେ ରଘୁକୁମର ।
ଭିକ୍ଷୁର ଚିତ୍ତେ ଜଗତ ଆଭାସ ଯେସନ
ପ୍ରତ୍ୟେକ ଚିତ୍ତେ ଜଗତ ଭାସଇ ତେସନ ।
ସ୍ୱର୍ଗ ଆଦି ବୈଚିତ୍ର୍ୟର ପ୍ରତିଭାସ ମାନ
ସେହି ମାୟାର ଭିଆଣ ଜାଣ ରଘୁନାନ୍ଦ ।
ବାସ୍ତବରେ ଏ ସବୁର ଅସ୍ତିତ୍ୱ ତ ନାହିଁ
ବ୍ୟବହାର ପାଇଁ ଏହା ମିଥ୍ୟା ପାରେ ନୋହି ।
ସର୍ବବ୍ୟାପୀ ଆତ୍ମା ସେହି ସେହି ଆକାରରେ
ପ୍ରତିଭାସିତ ହୁଅଇ ଯେଣ ରଘୁବୀରେ ।
ତତ୍ତ୍ୱ ବୋଧୋଦୟେ ସେହି ଭ୍ରାନ୍ତିମୟ ବୁଦ୍ଧି
କ୍ଷଣେ ରହି ନ ପାରଇ ଜାଣ ରଘୁନିଧି ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଜୀବଟ ଉପାଖ୍ୟାନେ ଭିକ୍ଷୁ ସଂସ୍କୃତି କଥନେ ନାମ ବାଷଠି ସର୍ଗଃ**



## ତେଷଠି ସର୍ଗଃ

## ବ୍ରହ୍ମ ଏକତ୍ୱ ପ୍ରତିପାଦନ

କହେ ଦଶରଥ ରାଜା ଆହେ ମୁନିବର
ଆମର ମନ୍ତ୍ରିମଣ୍ଡଳ ଚଳନ୍ତୁ ସତ୍ୱର ।
ସମାଧିଗମନ ସେହି ଭିକ୍ଷୁଙ୍କୁ ଯାଇଣ
କୁଟୀର ମଧ୍ୟରୁ ତାଙ୍କୁ ଆଣନ୍ତୁ ବହନ ।
ବଶିଷ୍ଠ କହିଲେ ରାଜା ସେ ଭିକ୍ଷୁ ଶରୀରେ
ପ୍ରାଣ ବିଦ୍ୟମାନ ନାହିଁ ହେ ଶାସକ ବରେ ।
ପ୍ରାଣାଭାବେ ଶୁଷ୍କହୋଇ ପଡ଼ିଛି ଶରୀର
ବିବର୍ଣ୍ଣ ଦିଶୁଛି ତାର ସାରା କଳେବର ।
ମୁକ୍ତି ପାଇ ବ୍ରହ୍ମାଙ୍କର ହଂସ ରୂପେ ଯାଇ
ବ୍ରହ୍ମଲୋକେ ଅବସ୍ଥାନ କରି ସେ ଅଛଇ ।
ପ୍ରାଣହୀନ ଶରୀରକୁ କେଉଁ ଉପାୟେ
ସଂଜ୍ଞାବାନ୍ କରିହେବ କହିବାକ ରାୟେ ?
ଜାଣ ଗୁଣମୟୀ ମାୟା ଅତି ଦୁନିର୍ବାର
ବ୍ରହ୍ମବୋଧ ଉଦେ ହେଲେ ନାଶହେବ ତାର ।
ନିଶ୍ଚିତରେ ଏ ମାୟାର ଅସ୍ତିତ୍ୱ ହିଁ ନାହିଁ
ତଥାପି ଏ ଜଗତକୁ ସେହି ନିର୍ମାଣଇ ।
ଯଥା ଅଳଙ୍କାର ସୁବର୍ଣ୍ଣର ରୂପାନ୍ତର
ମାୟାଧରେ ଅନ୍ୟରୂପ ବ୍ରହ୍ମ ଆଭାସର ।
ବାକ୍ୟବଳେ ଯେଉଁ ମାୟା ହୁଅଇ ଉଦିତ
ପୁଣି ବାକ୍ୟ ମାତ୍ରେ ଯେହୁ ହୁଅଇ ବିଦିତ ।
ବିଚାର ଦୃଷ୍ଟିରୁ ଯେବେ କରିବ ଦର୍ଶନ
ସେହି ମାୟା ମିଥ୍ୟାରୂପେ ହୋଇ ପ୍ରତିପନ୍ନ,
ପୁଣି ଯାଇ ପରମାତ୍ମା ମଧ୍ୟେ ହୁଏ ଲୀନ
ମାୟାର ଗତି ବୁଝିବା ଅତୀବ କଠିନ ।
ପରମାତ୍ମା ମଧ୍ୟ ଆପଣାକୁ ଭୁଲିଯାଇ
ନିଜେ ପୁଣି ଜୀବଭାବ ଗ୍ରହଣ କରଇ ।
ଦୃଶ୍ୟ, ଦରଶନ ରୂପ ସୁଦୀର୍ଘ ସ୍ୱପନ
ସ୍ୱପ୍ନ ସ୍ୱପ୍ନାନ୍ତରମାନ କରେ ସେ ଦର୍ଶନ ।
ବିବେକ ଉଦୟେ ସ୍ୱୀୟ ପରିଚୟ ପାଇ
ଚିନ୍ମାତ୍ର ଆତ୍ମାରେ ଅବସ୍ଥାନ କରେ ଯାଇ ।
ଏ ସାରା ସୃଷ୍ଟିକି ଆତ୍ମାମୟ ସେ ଦେଖଇ
ଆତ୍ମାବିନା ତାକୁ ଅନ୍ୟ କିଛି ନ ଦିଶଇ ।
ଯାହାର ପ୍ରତିଭାସରେ ଯେ ହୁଏ ଉତ୍ପନ୍ନ
ବୋଧୋଦୟେ ତା ସ୍ୱରୂପ ପ୍ରାପ୍ତ ହୁଏ ପୁଣ ।
ଆତ୍ମା ପ୍ରତିଭାସ ଯେଣୁ ଅଟଇ ଏ ଜୀବ
ଜ୍ଞାନୋଦୟେ ଆତ୍ମାରେ ହିଁ ସ୍ଥିତି ସେ ଲଭିବ ।
କେବଳ ଭ୍ରାନ୍ତି ବଶରୁ ଏହି ଯେ ସଂସାର
ପ୍ରକାଶ ପାଉ ଅଛଇ ଜାଣ ରଘୁବୀର ।
ଢେଉ ପରେ ଢେଉ ଜଳେ ଉଠେ ଯେଉଁପରି
ସ୍ୱପ୍ନ ପରେ ସ୍ୱପ୍ନ ଭିକ୍ଷୁ ଦେଖିଲା ସେପରି ।
ଏହି ସଂସାରକୁ ତୁମେ ସେହିପରି ମଣ
ସଂସାର ସବୁରି ସ୍ୱପ୍ନ ଅଯୋଧ୍ୟା ରାଜନ ।
ସମଷ୍ଟିରୂପ ବ୍ରହ୍ମାରୁ ଏ ସର୍ଜନା ଜାଣ
ମନଗଢ଼ା ଦୀର୍ଘସ୍ୱପ୍ନ ମାତ୍ର ହେ ରାଜନ ।
ବ୍ୟଷ୍ଟିଜୀବ ମନୋମୟୀ ସୃଷ୍ଟି ହେ ନରେଶ
ସ୍ୱପ୍ନ ଛଡ଼ା ତାହା ଆଉ ହୋଇପାରେ କିସ ?
ସେ ମନୋମୟୀ ସୃଷ୍ଟିକି ଏହି ଜୀବଜାଣ
ମନ ମଳିହେତୁ, ବସ୍ତୁପରି କରେ ଜ୍ଞାନ ।
ମନ ସ୍ୱଚ୍ଛ ରହିବାରୁ ଆହେ ଦଶରଥ
ବ୍ରହ୍ମା ଏ ସୃଷ୍ଟିକି ଦେଖେ ଯଥା ସ୍ୱପ୍ନବତ ।
ଯେତେବେଳେ ଜୀବମନ ସ୍ୱଚ୍ଛ ହୋଇଯିବ
ଏ ଜଗତ ସ୍ୱପ୍ନବତ ପ୍ରତିଭାତ ହେବ ।
ତେଣୁ ତହିଁରେ କୌଣସି ଆସ୍ଥା ନ ରହିବ
ବ୍ରହ୍ମମୟ ଏ ସକଳ ସୃଷ୍ଟିକି ଦେଖିବ ।
ଜୀବ ଓ ତାର ପ୍ରପଞ୍ଚ ଯେଉଁ ପରକାରେ
ଉତ୍ତମ, ମଧ୍ୟମ, ଅବା ଅଧମ ଆକାରେ ।
ଯେଉଁ ପରକାରେ ଅବା ହେଉ ସେ ସ୍ଫୁରିତ
କେବଳ ହିଁ ସ୍ୱପ୍ନପରି ମିଥ୍ୟା ସେ ସମସ୍ତ ।
ସ୍ୱରୂପ ଜ୍ଞାନରୁ ହୋଇ କରି ସେ ବିଚ୍ୟୁତ
ଜନ୍ମ, ମୃତ୍ୟୁ, ଜରା ଦୁଃଖ ଭୋଗେ ସେ ସତତ ।
ପରମାତ୍ମା ଚିତ୍‌ଶକ୍ତି କଳପଇ ପ୍ରାଣ
ପ୍ରାଣର ଅଧୀନ ବଶୁ ସ୍ପନ୍ଦିତ ହୋଇଣ ।
ଜୀବ କରିଥାଏ ଦେହ ଆକାର ଧାରଣ
ଜୀବର ଜନ୍ମ ବୃତ୍ତାନ୍ତ ଏହା ହେ ରାଜନ ।
ଚିତ୍ତ ଉପାଧି ସକାଶୁ ପ୍ରତ୍ୟଗାତ୍ମା କେଉଁ
ବ୍ରହ୍ମରୁ ଅଲଗାହୋଇ ନ ପାରଇ ଲବେ ।
ତଥା ପରମାତ୍ମା କେବେହେଲେ ହେ ରାଜନ
ପ୍ରତ୍ୟାଗାତ୍ମାଠାରୁ ହୋଇ ନ ପଡ଼େ ବିଚ୍ଛିନ୍ନ ।
ଦରପଣେ ମୁଖ ପ୍ରତିବିମ୍ବ ପଡ଼ିଥାଇ
ଅଥଚ ସେ ମୁଖେ କେଉଁ ବିନଷ୍ଟ ନୁହଇ ।

ପ୍ରତିବିମ୍ବ ମୁଖ ମଧ୍ୟେ ନ ଥାଇ ତଫାତ
ସେପରି ଏ ପ୍ରତ୍ୟାଗାତ୍ମା ଦେହପ୍ରାଣ ଯେତ,
ଉପାଧିସମ୍ପନ୍ନ ସେହୁ ହୋଇପଡ଼େ ଯଦି
ଅପୃଥକ ପରମାତ୍ମାଠାରୁ ରଘୁନିଧି,
ମୁଖ; ମୁଖ ପ୍ରତିବିମ୍ବ ଯଥା ଅପୃଥକ
ବ୍ରହ୍ମ, ପ୍ରତ୍ୟଗା ତଥା ନୁହନ୍ତି ପୃଥକ ।
ଏହିପରି ଭାବେ ଯେବେ ଦେଖିବ ଏକତ୍ୱ
ମହାକାଶେ, ଏଖଣ୍ଡିତ ଆକାଶ ଯେମନ୍ତ ।
ପରମାତ୍ମା ଅଂଶରୂପେ ପତ୍ୟଗ-ଆତ୍ମାରେ
ପରମାତ୍ମା ହିଁ ବିରାଜମାନ ଜଣାପଡ଼େ ।
ପରମାର୍ଥିକ ଦୃଷ୍ଟିରେ ଐକ୍ୟ ଅନୈକ୍ୟର
କଉଣସି ପ୍ରଶ୍ନ ନାହିଁ ଜାଣ ଅଧିଶ୍ୱର ।
ମୁଖରୁ ଦର୍ପଣ ଯେଣୁ ପୃଥକ ଅଟଇ
ପ୍ରତିବିମ୍ବେ ପୃଥକତା ସ୍ୱାଭାବିକ ହୋଇ ।
କିନ୍ତୁ ଆତ୍ମାର ସ୍ୱରୂପ ଯେ ଅଭୟ ବ୍ରହ୍ମ
ମୂର୍ତ୍ତ ଓ ଅମୂର୍ତ୍ତରୂପେ ଭବେ ବିଦ୍ୟମାନ ।
ତେଣୁ ଏ ଧାରଣା ହେବା ନୁହଇ ଉଚିତ
ସଂଗତ ନୁହେଁ କି ଏହା ଆହେ ଦଶରଥ ?
ତଥାପି ଅଭୟ ବ୍ରହ୍ମେ ଜୀବର ଯେ ଭୟ
ଉଦୟ ହେଉଛି ଏହା ଆଶ୍ଚର୍ଯ୍ୟ ନିଶ୍ଚୟ ।
ବୁଦ୍ଧିର ଚଞ୍ଚଲ୍ୟ ହେତୁ ଭିନ୍ନତାର ଜନ୍ମ
ବୁଦ୍ଧି ନିଶ୍ଚଳ ହୁଅନ୍ତେ ତାହା ହୁଏ ଲୀନ ।
ନିଶ୍ଚଳ ହୁଅନ୍ତେ ବୁଦ୍ଧି ସମାଧି ଯୋଗେଣ
ଭେଦବୁଦ୍ଧି ବୁଦ୍ଧି ମଧ୍ୟେ ହୁଅଇ ବିଲୀନ ।
ସେ ନିଶ୍ଚଳ ବୁଦ୍ଧି ଯେବେ ବ୍ରହ୍ମାକାର ଧରେ
ଲୟପ୍ରାପ୍ତ ତାର ହୁଏ ତେବେ ସେ ବ୍ରହ୍ମରେ ।
ଚିତ୍‌ବ୍ରହ୍ମରେ ଯେଉଁ ଚିତ୍‌ସ୍ପନ୍ଦନ ଜନ୍ମଇ
କଳ୍ପନା ମାତ୍ର ତା, ବାସ୍ତବତା ତହିଁ ନାହିଁ ।
ନିଶ୍ଚଳ ବୁଦ୍ଧି ବ୍ରହ୍ମରେ ଲୀନ ହେବା ଜାଣ
ଏହାହିଁ କାରଣ ଅଟେ ଅଯୋଧ୍ୟାରାଜନ ।
ବୋଧଜ୍ଞାନ ଉଦେ ହେଲେ ଦୁର୍ଭେଦ୍ୟ ଜଗତ
କିପରି ବିଲୀନ ହେବ ଆହେ ଦଶରଥ ?
ଏପରି ପ୍ରଶ୍ନ ଉଠିବା ଅତି ଅବାନ୍ତର
ବୁଝିରଖ ଏହି ତତ୍ତ୍ୱ ଅଯୋଧ୍ୟା ଈଶ୍ୱର ।
ବସ୍ତୁ ନୁହେଁ ଏ ଜଗତ କେବଳ କଳ୍ପନା
ସମ୍ପୂର୍ଣ୍ଣ ଅବାନ୍ତର ସେ ଚିତ୍ ସ୍ପନ୍ଦନ ସିନା ।

ତେଣୁ ଏ ଜଗତେ ନାହିଁ ଏକତ୍ୱ ବହୁତ
ଚିନ୍ମାତ୍ର ବ୍ରହ୍ମ କେବଳ ଛନ୍ତି ବିରାଜିତ ।
ବିଚାରବଳେ ଶାସ୍ତ୍ରାର୍ଥ ମାନିଣ ଚଳିଲେ
ଏକମାତ୍ର ବ୍ରହ୍ମ ଉପଲବ୍ଧ ହୁଏ ଭଲେ ।
ପ୍ରପଞ୍ଚ ବୋଲିଣ କିଛି ତେବେ ନ ରହଇ
ଆତ୍ମଜ୍ଞାନ ଲାଭ ହେଲେ ପ୍ରପଞ୍ଚ ବା କାହିଁ ?
ଭେଦଜ୍ଞାନରୁ ହିଁ ଭେଦ ଦୃଷ୍ଟିରୁ ଜନମ
ତାହାହିଁ ଜାଣ ରାଜନ ପ୍ରକୃତି ଲକ୍ଷଣ ।
ଅଦ୍ୱୈତ ଜ୍ଞାନ ଯେବେ କି ହୁଅଇ ଉଦୟ
ବ୍ରହ୍ମ ଉପଲବ୍ଧ ହେବା ଅଟଇ ନିଶ୍ଚୟ ।
ଅଜ୍ଞାନର ବଶୀଭୂତ ହୋଇ ତୁମେ ରାମ
'ବହୁତ୍ୱ' ଦର୍ଶନ କରୁଅଛ ଏହାଜାଣ ।
ଅଜ୍ଞାନ ଜାତ "ବହୁତ୍ୱ" ଯଦି ନ ଦେଖିବ
ଜ୍ଞାନ-ଆତ୍ମାରୂପେ ତୁମେ ସଦା ବିରାଜିବ ।
ଜ୍ଞାନ ସ୍ୱରୂପ ଆତ୍ମାହିଁ ହେ ରଘୁନନ୍ଦନ
ପରମ ଅର୍ଥ, ପରମ ପଦ ବୋଲି ଜାଣ ।
ତବ, ମମ, ସମସ୍ତଙ୍କ ଜ୍ଞାନ-ଆତ୍ମା ମଧ୍ୟେ
ପରମ ନିଃଶଙ୍କ ଭାବ ରାଜେ ରଘୁନିଧେ ।
ସେହି ନିଃଶଙ୍କ ଭାବରେ ହୁଅନ୍ତେ ଜନମ
ସ୍ୱପ୍ନ, ଜାଗରଣ, ପୁଣି ମୁକତି ବନ୍ଧନ,
ଆବର ଅନ୍ୟାନ୍ୟ ଯେତେ ଭାବନା ଆସଙ୍ଗ
କିଛିହିଁ ଠାକି ନପାରେ ଆହେ ରଘୁରାଇ ।
ସଂକଳ୍ପରୁ ଚିତ୍ତ, ପ୍ରାଣ, ସ୍ପନ୍ଦନ ଜନମ
ଜ୍ଞାନୋଦୟେ ସେ ସଂକଳ୍ପ ହୁଅନ୍ତେ ବିଲୀନ,
ସ୍ପନ୍ଦନହୀନ ହୁଅନ୍ତି ଚିତ୍ତ ଓ ପରାଣ
ଜ୍ଞାନ ହିଁ କାଉଁରୀକାଠି ଜାଣ ହେ ଶ୍ରୀରାମ ।
ବ୍ରହ୍ମ ଦର୍ଶନ ନୋହିଲେ, ବହୁତ୍ୱର ଭାବ
ଉଦିତ ହୁଅଇ ଜାଣ ହେ ରଘୁପୁଙ୍ଗବ ।
ପୁଣି ମିଳିଯାନ୍ତେ ସେହି ବ୍ରହ୍ମ ଦରଶନ
ବହୁତ୍ୱ ଭାବ ସକଳ ବ୍ରହ୍ମେ ହୁଏ ଲୀନ ।
ବ୍ରହ୍ମ ରୂପକ ଚନ୍ଦ୍ରରେ ସଂକଳ୍ପ କଳଙ୍କ
ବ୍ରହ୍ମର କଳଙ୍କ ନୁହେଁ ହେ ରଘୁନାୟକ ।
ଚିଦ୍‌ଘନ ବ୍ରହ୍ମର ତା ଘନିଭୂତ ଦେହ
ବ୍ରହ୍ମ ଦର୍ଶନ ଏହି ଯେ ଜ୍ଞାନ, ନିଃସନ୍ଦେହ ।
ସେହି ଚିଦ୍‌ଘନ ବ୍ରହ୍ମେ ରହ ବିରାଜିତ
ତୁମ ସଂକଳ୍ପ ତା, ସହଦେବ ଏକୀଭୂତ ।

ସେହି ତୁମ ଆତ୍ମାରୂପେ ହେବେ ପ୍ରକାଶିତ
ଭବଭୟ ତବ ହୋଇଯିବ ଦୂରୀଭୂତ ।
ବ୍ରହ୍ମସାରୂପ୍ୟ ଯଦି ହେ ଲାଭ କରିପାର
ସଂକଳ୍ପ ରୂପ କଳଙ୍କ ହୋଇଯିବ ଦୂର ।
ଚିତ୍‌ସ୍ୱରୂପ ଚନ୍ଦ୍ରର ମଣ୍ଡଳ ରୂପରେ
ଶୋଭା ପାଉଥିବ ତୁମେ ଏ ମହୀ ମଣ୍ଡଳେ ।
ଭାବ ବା ଅଭାବ କିଛି ନ ରହିବ ତୁମ
ଯାହା ଛୁଇଁବ ହେବ ତା ଅମୃତର ସମ ।
ଆନନ୍ଦାର୍ଣ୍ଣବ ସ୍ୱରୂପେ ରହି ବିରାଜିତ
ଶାନ୍ତିମୟ ସତ୍ତା ରୂପେ ହେବ ସୁଶୋଭିତ ।
ସଂକଳ୍ପ ବିକଳ୍ପ ଆଦି ଯେତେ ଚିତ୍ତଭ୍ରମ
ସ୍ପନ୍ଦନ ଓ ଅସ୍ପନ୍ଦନ ସମ୍ଭବ ଯେମାନ
ସେ ସର୍ବ ଅଟନ୍ତି ଏହି ଚିତ୍ତଗତ ଭ୍ରମ
ସାକ୍ଷୀରୂପେ ଦେଖୁଥାଅ ହେ ରଘୁନନ୍ଦନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ବ୍ରହ୍ମ ଏକତ୍ୱ ପ୍ରତିପାଦନ ବର୍ଣ୍ଣନେ**
**ନାମ ତେଷଠି ସର୍ଗଃ**



## ଚଉଷଠି ସର୍ଗଃ

## ମହା ମୌନ ଯତ୍ନ ଉପଦେଶ

ବଶିଷ୍ଠ କହନ୍ତି ଏବେ ଶୁଣ ରଘୁବୀର
ମନ ସ୍ୱାଭାବିକ ବୃତ୍ତି ପରିତ୍ୟାଗ କର ।
କଳପନା ମାନ ସବୁ କରି ଦେଇ ଦୂର
ସୁଷୁପ୍ତିରେ ମଧ ମୌନ ରହି ନିରନ୍ତର,
ନିଶ୍ଚଳ ଭାବରେ ପରଂପଦେ ରହ ସ୍ଥିର
ନିଶ୍ଚଳ ଭାବ ହିଁ ସର୍ବ ସିଦ୍ଧିଙ୍କର ମୂଳ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ବାକ୍ୟରେ ମଉନ ହେବା ଜାଣିଛି ମୁଁ ଜାଣ ।
ଇନ୍ଦ୍ରିୟ ବିଷୟ ଘେନି ମଉନ୍ର ରହିବା
କାଷ୍ଠ ପରି ମଉନରେ ତୁନି ପଡ଼ିଥିବା ।
ଏ ସବୁ ବିଷୟମାନ ଜଣାଅଛି ମୋତେ
ସୁଷୁପ୍ତିରେ ମୌନ ହେବା ନ ଜାଣେ କେମନ୍ତେ ।
କହନ୍ତି ବଶିଷ୍ଠ ତାହା କହୁଅଛି ଶୁଣ
ଦୁଇ ପ୍ରକାରେ ମୁନିଏ ରହନ୍ତି ମଉନ ।
"କାଷ୍ଠମୌନୀ" ତା ମଧ୍ୟରୁ ଅଟଇ ପ୍ରଥମ
"ଜୀବନମୁକ୍ତ ସମ୍ପନ୍ନ ମୌନୀ ଅଟେ ଅନ୍ୟ ।

ଆତ୍ମଜ୍ଞାନ ବିହୀନ ଅଟନ୍ତି ଯେଉଁମାନେ
ଆସକ୍ତ ରହନ୍ତି ଚାନ୍ଦ୍ରାୟଣାଦି ବିଧାନେ ।
ହଠଯୋଗ ବଳେ କରି ଇନ୍ଦ୍ରିୟ ଦମନ
ମୌନବ୍ରତ କରିଥାନ୍ତି, କାଷ୍ଠମୌନୀଗଣ ।
ଆତ୍ମଜ୍ଞାନ ସମ୍ପନ୍ନ ଅଟନ୍ତି ଯେଉଁମାନ
ସାଧାରଣ କର୍ମମାନ କଲେ ହେଁ ସମ୍ପନ୍ନ,
ଅନ୍ତର ଥାଏ ପରମ ଆନନ୍ଦରେ ପୂର୍ଣ୍ଣ
ସେହିମାନେ ହିଁ ଜୀବନ ମୁକତ ମଉନ ।
ଉଭୟଙ୍କ ଚିତ୍ତଗତ ସୁନିଶ୍ଚିନ୍ତ ଭାବ
ମଉନ ବ୍ରତ ବୋଲିଣ ତାହାକୁ ଜାଣିବ ।
ମଉନକୁ ମୌନ ତତ୍ତ୍ୱବିତ୍ ମାନେ ଜାଣ
ଚାରି ପ୍ରକାର ନାମରେ କରନ୍ତି ବର୍ଣ୍ଣନ ।
ବାଙ୍‌ମୌନ, ଅକ୍ଷମୌନ, ପୁଣି କାଷ୍ଠମୌନ
ସୁଷୁପ୍ତ ମୌନ ଏମାନ ଚାରିନାମ ଜାଣ ।
ବାକ୍ୟର ସଂଯମ ବାଙ୍ ମଉନ ବୋଲାଇ
ଅକ୍ଷମୌନ ବିବରଣ ଶୁଣ ମନ ଦେଇ ।
ବଳାତ୍କାରେ ଇନ୍ଦ୍ରିୟଙ୍କୁ କରିଲେ ନିଗ୍ରହ
ଅକ୍ଷମୌନ ତାକୁ କହି କୌଶଲ୍ୟା ତନୟ ।
ସରବ ପ୍ରକାର ଚେଷ୍ଟା-ଶୂନ୍ୟ ତାକୁ ଜାଣ
କାଷ୍ଠମୌନ ବୋଲି କହିଥାନ୍ତି ମୁନିଗଣ ।
ମନ ମଧ୍ୟେ ଯେଉଁ ବାକ୍ୟ ହୁଅଇ ଉଦିତ
ତାହାକୁ ଯେବେ କି କରିପାରିବ ସଂଯତ ।
"ମନ ମୌନ ନାମେ" ଏହା ପଞ୍ଚମ ମଉନ
ସୁଷୁପ୍ତି, ମୂର୍ଚ୍ଛାରେ ମାତ୍ର ତା ନିରୁଦ୍ଧ ଜାଣ ।
ଜାଗ୍ରତ ବା ସ୍ୱପ୍ନ କାଳେ ଯେଣୁ ନ ଘଟଇ
"କାଷ୍ଠ ମୌନ" ଅନ୍ତର୍ଗତ ତେଣୁ ସେ ଅଟଇ ।
କେବଳ ଜୀବନମୁକ୍ତ ଅଟନ୍ତି ଯେମାନେ
ଆତ୍ମତତ୍ତ୍ୱ ଅନୁଭବ ସମୟେ ସେମାନେ,
ସୁଷୁପ୍ତ ମୌନତା କରି ଥାଆନ୍ତି ଆଶ୍ରୟ
କାଷ୍ଠ ତପୀ କଥା ଶୁଣ ମନେ କରି ଥୟ ।
ପ୍ରଥମୋକ୍ତ ଦୁଇବିଧ ମୌନ ଭାବମାନ
କାଷ୍ଠ ତପସ୍ୱୀଙ୍କଠାରେ ଦେଖାଯାଏ ଜାଣ ।
ସୁଷୁପ୍ତ ମଉନ ଭାବ ଜୀବନ୍ମୁକ୍ତଠାରେ
ପରିଦୃଷ୍ଟ ହୁଏ, ମାତ୍ର ନୁହେଁ ଅନ୍ୟଠାରେ ।
ପ୍ରଥମ ତିନି ପ୍ରକାର ମଉନରେ ଜାଣ
ମୌନଭାବ ସିଦ୍ଧ ହୋଇଥିଲେ ହେଁ ଶ୍ରୀରାମ,

ମଳିଯୁକ୍ତ ମନର ସେ ଦୃଢ଼ ଭାବ ଜାଣ
ମୁକ୍ତି ଲାଭ ତାର ତହୁଁ ନ ଘଟଇ ରାମ ।
ପରନ୍ତୁ ତାହା କେବଳ ବନ୍ଧନ ସାଧନ
ଏ ବିଷୟେ ନିଃସନ୍ଦେହ ରହ ରଘୁନାନ ।
ବଳପୂର୍ବକ ଇନ୍ଦ୍ରିୟ ନିଗ୍ରହ କରିଣ
ଅନ୍ତରରୁ ଅହଂଭାବ କରଇ ତେଜନ ।
ବାହ୍ୟ ପ୍ରପଞ୍ଚ ସମ୍ପର୍କ ପରିତ୍ୟାଗ କରି
ଅଜ୍ଞାନାଚ୍ଛନ୍ନ ଆତ୍ମାକୁ ଦେଖିଣ ନ ପାରି,
ସାକ୍ଷୀ ଜ୍ୟୋତିରେ ହିଁ ଦୃଷ୍ଟି ନିବଦ୍ଧ କରିଣ
କାଷ୍ଠମୌନୀ ଏହି ରୂପେ କରେ ଅବସ୍ଥାନ ।
ଅସ୍ତହୁଏ ଯୋଗଧ୍ୟାନ ଯେଉଁ ମୁହୂର୍ତ୍ତରେ
ଏ ତିନି ମଉନ ଚିତ୍ତ ଚାଞ୍ଚଲ୍ୟ ଆଚରେ ।
କିନ୍ତୁ ଆତ୍ମଜ୍ଞାନ ଲାଭ ହୋଇଛି ଯାହାର
କେଭେଁ ଆଶ୍ରୟ ନ କରେ ଏ ତିନି ପ୍ରକାର ।
ନିକୃଷ୍ଟ ପନ୍ଥା ଏ ବୋଲି ଯେଣୁ ସେ ଭାବଇ
ଏ ତିନି ପ୍ରକାର ମୌନ ହେଳା କରିଥାଇ ।
କିନ୍ତୁ ଜୀବନ ମୁକତ ଅଟେ ଯେଉଁ ଜନ
ଯା ପାଇଁ ଘଟି ନ ପାରେ ଏ ପୁନଃ ଜନମ,
ସୁଷୁପ୍ତ ମୌନାବସ୍ଥା ହିଁ ତାଙ୍କ ଅନୁଭବ
ଅନ୍ୟ ପକ୍ଷେ ତାହାନୁହେଁ କଦାପି ସମ୍ଭବ ।
ତତ୍ତ୍ୱଦରଶନେ ଯେବେ ହୁଏ ସିଦ୍ଧିଲାଭ
ଅନାୟାସେ ଏ ଅବସ୍ଥା ଲଭିପାରେ ଜୀବ ।
ସୁଷୁପ୍ତ ମୌନ ଯେ କାଳେ ହୁଏ ଆବିର୍ଭୂତ
ପ୍ରାଣସଂଯମ ସାଧନ ବୃଥା ବିବେଚିତ ।
ବହୁତ୍ୱ, କଳ୍ପନା-ଭ୍ରମ ବୋଲି ଅନୁଭୂତ
ହୋଇଥାଏ ସେହି କାଳେ ଆହେ ରଘୁସୁତ ।
ମନର ପ୍ରଭୁତ୍ୱ କିମ୍ବା କର୍ତ୍ତୃତ୍ୱାଭିମାନ
ନ ରହେ କେବେ ହେଁ ଜାଣ କୌଶଲ୍ୟା ନନ୍ଦନ ।
ଧ୍ୟାନ ଅବା ଧ୍ୟାନଚ୍ୟୁତ ଭାବର ଅଭାବ
ସର୍ବସମୟେ ବିଭାଗଶୂନ୍ୟ ହୋଇଥିବ ।
ଅପରିଚ୍ଛିନ୍ନ ଭାବରେ ଥିବ ଅନୁକ୍ଷଣ
ପୁଣି ଆତ୍ମରୂପମୟ, ଆଦି-ଅନ୍ତହୀନ,
ଅଭ୍ୟାସ ନିରପେକ୍ଷ ଯେ ହୋଇଥିବ ପୁଣ
ତାହାକୁ ହିଁ କହି ରାମ ସୁଷୁପ୍ତ ମଉନ ।
ବହୁତ୍ୱ ଜ୍ଞାନର ଆତ୍ମା ଅଟେ ଯେହୁ ରାମ
ସେ ଶିବ ସ୍ୱରୂପେ ପୂର୍ଣ୍ଣଭାବେ ଯାର ସ୍ଥାନ

ତାହାହିଁ ସୁଷୁପ୍ତମୌନ ଦଶରଥ ନାନ
ବ୍ରହ୍ମଜ୍ଞାନୀ ଅଟେ ସେହି ଯେ କରେ ଏ ଧ୍ୟାନ ।
ଜୀବନ୍ମୁକ୍ତ ଅବସ୍ଥାରେ ଜାଣହେ ରାଘବ
ନାନାଜ୍ଞାନାଶ୍ରୟ ଶୂନ୍ୟ ଶାନ୍ତିମୟ ଭାବ ।
ସତ ବା ଅସତ ଯହିଁ ନୁହଇ ସ୍ଫୁରିତ
କେବଳ ବ୍ରହ୍ମହିଁ ସଦାହୁଏ ଅନୁଭୂତ,
ସର୍ବୋତ୍ତମ ସୁଷୁପ୍ତ ମଉନ ଅଟେ ତାହା
ଭଲକରି ବୁଝିରଖ ଏହା ରଘୁନାହା ।
ଚିତ୍ତବୃତ୍ତ୍ୟା ଭାବେ ଚିତ୍ତ କ୍ରିୟାହୀନ ହେଲେ
ଆବର୍ତ୍ତହୀନ ସଂବିତ୍ ଜାଗିଲେ ଅନ୍ତରେ,
ଆସି ପହଞ୍ଚଇ ତହିଁ ଯେବଣ ସମତା
ତାହାହିଁ ସୁଷୁପ୍ତ ମୌନ ରାମ ବିଶ୍ୱକର୍ତ୍ତା ।
ମୁଁ ନାହିଁ, ଜଗତନାହିଁ କଳ୍ପନା ବା ମନ
ଏହିଭାବେ ରହେ ଯେହୁ ସର୍ବାସ୍ତିତ୍ୱ ଶୂନ୍ୟ,
ତହିଁ ଜୀବନମୁକତ ସଂବିତ ସ୍ୱରୂପର
ପ୍ରତିଭାସ ହୀନ ଭାବେ ସ୍ଥିତି ଥାଇ ଯାର,
ଅବିଚ୍ଛିନ୍ନ ସୁଷୁପ୍ତ ମଉନ ଜାଣ ସେହି
ଏହି କଥା ମନେରଖ ଆହେ ରଘୁରାଇ ।
ସର୍ବତ୍ର ବିରାଜମାନ ମୁଁ କରି ଅଛଇଁ
ସତ୍ତାସାମାନ୍ୟ ବ୍ୟତୀତ ଆଉ କିଛି ନୋହି ।
ମୁହିଁ ସେ ଶବ୍ଦାର୍ଥରୂପ ମଙ୍ଗଳ ଭବନ
ସୁଷୁପ୍ତ ମଉନ ଅଟଇ ଏତାଦୃଶ ଜ୍ଞାନ ।
ସୁଷୁପ୍ତ ମୌନ ଅବସ୍ଥା ଶୁଣ ହେ ଶ୍ରୀରାମ
ପ୍ରମାହୀନ ଜ୍ଞାନକୁ ସେ ଗ୍ରାସ କରେ ଜାଣ ।
ନିଜ ପରଜ୍ଞାନ ଭେଦ ନ ଥାଇ ତାହାର
ଏ ଘେନି ସୁଷୁପ୍ତ ମୌନ ଅନନ୍ତ ଅପାର ।
ଏହି ମଉନରୁ ଅନ୍ୟ ମଉନ ବିସ୍ତାର
ହୋଇଅଛି ଜାଣିରଖ ଓଡ଼ଗାଁ ସୁନ୍ଦର ।
ଏହି ଅବସ୍ଥାରେ ଜାଣ ଅବିଦ୍ୟା ବିନାଶ
ପୂର୍ଣ୍ଣରୂପେ ଘଟିଥାଏ ହେ ରଘୁବିଳାସ ।
ତେଣୁ ଏହା ସର୍ବଶ୍ରେଷ୍ଠ ତୁରୀୟାବସ୍ଥାନ
ତୁର୍ଯ୍ୟାତୀତ ଯାକୁ କହିଥାନ୍ତି ଜ୍ଞାନୀଜନ ।
ବ୍ରହ୍ମବୋଧେ ଉଦ୍‌ବୁଦ୍ଧ ହୋଇ ହେ ଶ୍ରୀରାମ
ସାଧୁ ହୋଇ ପାରିଅଛ ଘେନ ତୁମ ମନ ।
ଏହି ଅବସ୍ଥାରେ ତୁମେ ରହିହେ ଶ୍ରୀରାମ
ସଂସାର କରମ ମାନ କର ଅନୁଧ୍ୟାନ ।

ଅଥବା ସମାଧି ମଗ୍ନ ରହ ସଦାକାଳେ
ତୁରୀୟ ଅବସ୍ଥା ତୁମ ନ ଟଳିବ ହେଲେ
ସଦେହ ହୋଇ ବିଦେହ ରୂପେ ତୁମ ସ୍ଥିତି
ହୋଇଅଛି ଜାଣିରଖ ଆହେ ରଘୁପତି ।
ପରିତ୍ୟାଗ କରି ଯେହୁ ସ୍ଥୁଳ, ସୂକ୍ଷ୍ମ, ମୂର୍ତ୍ତି
ଗଗନ ସଦୃଶ ଶୂନ୍ୟସମ ବିରାଜନ୍ତି,
ଏହି ରୂପ ସ୍ଥିତି ହୋଇଥାଏ ତାହାଙ୍କର
ଯେଉଁ ସ୍ଥିତି ଲାଭ କରିଅଛ ରଘୁବୀର ।
ଜୀବନ ମୁକ୍ତ ଭାବେ ଚିତ୍ ଆକାଶରେ
ନିଷ୍ପାପର ହୋଇ ରହ ଆହେ ରଘୁବୀରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ମହାମୌନ ଯତ୍ନ ଉପଦେଶ ବର୍ଣ୍ଣନେ**
**ନାମ ଚଉଷଠି ସର୍ଗଃ**



## ପଞ୍ଚଷଠି ସର୍ଗଃ

## ପ୍ରାଣ ମନ ସଂଯୋଗ ବିଚାର

କହନ୍ତି ଶ୍ରୀରାମ ଶୁଣ ଆହେ ତପୀବର
ଯେଉଁ ଶତ ରୁଦ୍ରକଥା ବରନନ କଲ ।
କି ରୂପେ ସେମାନେ ସମ୍ଭବିଲେ ଏ ସୃଷ୍ଟିରେ
ସବିଶେଷ କରି କହ ମୋତେ ତପୀବରେ ।
ଶିବଗଣଙ୍କ ମଧ୍ୟରେ ସେମାନେ କି ଗଣ୍ୟ
ଅଥବା ଶିବଗଣରୁ ଅଟନ୍ତି ସେ ଭିନ୍ନ ?
କହନ୍ତି ବଶିଷ୍ଠ ଶୁଣ ରାମ ମନଦେଇ
ପୂର୍ବୋକ୍ତ ଭିକ୍ଷୁ ବିଷୟେ ଯା କିଛି ଅଛଇ ।
ଜୀବଟ ଆକାରେ ଯେଉଁ ଶତଗୋଟି ସ୍ୱପ୍ନ
ଦରଶନ କରିଥିଲା ଯେ ଭିକ୍ଷୁକ ରତ୍ନ
ସ୍ୱାପ୍ନିକ ଶତସଂଖ୍ୟକ ସେ ପୁରୁଷ ଗଣ
ରୁଦ୍ର ହଂସଠାରୁ ଜ୍ଞାନ କରିଣ ଅର୍ଜ୍ଜନ,
ରୁଦ୍ରଗଣ ରୂପେ ସେହୁ ହୋଇଲେ ବିଦିତ
ରୁଦ୍ରଅଂଶ ଯେଣୁ, ରୁଦ୍ର ପାରିଷଦ ଗତ ।
ରୁଦ୍ରଙ୍କ ସେବାରେ ସର୍ବେ ଲଭନ୍ତି ସନ୍ତୋଷ
ଐଶ୍ୱର୍ଯ୍ୟ ଭୋଗେ ସେମାନେ ରୁଦ୍ରଙ୍କ ସଦୃଶ ।
ପ୍ରଭୁ ଭୃତ୍ୟଭାବ ସମୀଚୀନ ନୁହେଁ ବୋଲି
ସେମାନଙ୍କୁ ରୁଦ୍ରତୁଲ୍ୟ ତେଣୁ ଜ୍ଞାନ କଲି ।
ରୁଦ୍ରତ୍ୱ ପାଇଣ ପୁଣି ରୁଦ୍ରଗଣେ ଗଣ୍ୟ
ତହିଁର କାରଣ ଏବେ ମନଦେଇ ଶୁଣ ।
ରୁଦ୍ରସମ ଶକ୍ତିଲାଭ କରିଥିଲେ ସେହୁ
ଏଥିରେ ସନ୍ଦେହ ନାହିଁ ଆହେ ମହାବାହୁ ।
* ଈଶ୍ୱରକୋଟ ରୁଦ୍ରର ଅନ୍ତର୍ଭୁକ୍ତ ଯେଣୁ
ରୁଦ୍ରଗଣ ରୂପେ ଗଣ୍ୟ ହୋଇଲେ ସେ ତେଣୁ ।
ଏହାଛଡ଼ା ସେମାନଙ୍କ ଅଇଶ୍ୱର୍ଯ୍ୟ, ଭୋଗ
ଈଶ୍ୱରକୋଟ ଅଧୀନ ଯେଣୁ ହେ ରାଘବ,
ରୁଦ୍ରଗଣଙ୍କ ମଧ୍ୟରେ ହୁଅନ୍ତି ସେ ଗଣ୍ୟ
ଏବେ ତୁମର ସନ୍ଦେହ ହୋଇବ ମୋଚନ ।
ଶ୍ରୀରାମ କହନ୍ତି ଶୁଣ ଆହେ ତପୋଧନ
ଭିକ୍ଷୁ, ଜୀବଟ କିପରି ପାନ୍ତି ରୁଦ୍ରଜ୍ଞାନ ।
ରୁଦ୍ରହଂସ ଯେଉଁପରି କଲେକ ପ୍ରଦାନ
ସବିଶେଷ କରି ମତେ କହ ତପୋଧନ ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ସତ୍ୟ ସଂକଳ୍ପ ଅଟଇ ଯେଉଁ ବିଜ୍ଞଜନ,
ଆବରଣ ହୀନ ହୋଇଥାଏ ଯାର ଜ୍ଞାନ
କଳ୍ପନାନୁସାରେ ଫଳ ଲାଭ ହୁଏ ଜାଣ ।
ସର୍ବବ୍ୟାପୀ ଯେଣୁ ସେହି ସର୍ବଆତ୍ମା ଶିବ
ଯେତେବେଳେ, ଯେଉଁପରି, ଯାହା ସେ ଭାବିବ,
ତାଙ୍କର ସର୍ବବ୍ୟାପୀତ୍ୱ ଶକ୍ତିକୁ ଘେନିଣ
ସକଳ କଳ୍ପନାମାନ ସିଦ୍ଧ ହୁଏ ଜାଣ ।
କହନ୍ତି ଶ୍ରୀରାମ ଏବେ କହ ତପୀବର
ରୁଦ୍ର ଯଦି ସର୍ବଶକ୍ତି ସମ୍ପନ୍ନ ଈଶ୍ୱର ।
କି ଘେନି ଶ୍ମଶାନବାସୀ ହୋଇଲେ ଈଶାନ
ଭସ୍ମବିଭୂଷିତ ଅଙ୍ଗ କିମ୍ପାଇ ସେ ଜାଣ ।
ଦିଗମ୍ବର ହୋଇ ପୁଣି ଗଉରୀ ସହିତ
ବିହାର କରନ୍ତି କହ କିମ୍ପା, ଭୂତନାଥ ?
କେବଣ କାରଣୁ ବିଷ୍ଣୁ ନର ଅବତାର
ଧାରଣ କରନ୍ତି କହ ଆହେ ତପୀବର ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଯେମାନେ ଅଟନ୍ତି ଜୀବନ୍ମୁକ୍ତ ମହେଶ୍ୱର,
କଉଣସି କର୍ମ ରାମ ସେମାନଙ୍କ ପାଇଁ
ମଙ୍ଗଳ ଅମଙ୍ଗଳର କାରଣ ନ ହୋଇ ।-

*ଈଶ୍ୱର କୋଟ - କୋଟ-ଦୁର୍ଗ

ସକଳ ସୁଖଦାୟକ ତାହାଙ୍କର ପାଇଁ
ମଙ୍ଗଳ ବା ଅମଙ୍ଗଳ କିଛି ତାଙ୍କ ନାହିଁ ।
ମଙ୍ଗଳ ବା ଅମଙ୍ଗଳ, କର୍ମ ଓ ନିୟମ
କେବଳ ଅଜ୍ଞ ପାଇଁକି ପ୍ରଯୁଜ୍ୟ ଏମାନ ।
ଅଜ୍ଞଜୀବ ରାଗ, ଦ୍ୱେଷ ଲାଭ ଘେନିକରି
ଖଣ୍ଡିତ ଚିତ୍ତରେ ରହେ ସଂସାର ଆବୋରି ।
ଜନ୍ମ, ମୃତ୍ୟୁ, ନର୍କ, ଦୁଃଖ ଭୋଗ ଆଦି ଯେତେ
ତାହା ସଂସାରୁ ଉତ୍ପନ୍ନ ହୁଅନ୍ତି ନିଶ୍ଚିତେ ।
ଯେମାନେ ଅଟନ୍ତି ପ୍ରାଜ୍ଞ, ଜୀବନମୁକତ
ଇଷ୍ଟ ଅନିଷ୍ଟରେ କେଭେଁ ନୁହନ୍ତି ଆସକ୍ତ ।
ଇନ୍ଦ୍ରିୟ ବିଜୟୀ ସେହି ସକଳ ପୁରୁଷ
ଯେଣୁ ନୁହନ୍ତି ସେମାନେ ବାସନାର ବସ ।
ଅନାସକ୍ତ ଭାବେ ଉପସ୍ଥିତ କର୍ମମାନ
ସମ୍ପାଦନ କରିଥାନ୍ତି ସେହି ଜ୍ଞାନୀଜନ ।
କର୍ମ ସମ୍ପାଦନେ ତାଙ୍କ ସଂକଳ୍ପ ନ ଥାଇ
କର୍ମ ସନ୍ନ୍ୟାସେ ତାଙ୍କର ଅଭିଳାଷ ନାହିଁ ।
ବ୍ରହ୍ମା, ବିଷ୍ଣୁ, ଶିବଙ୍କର ଜାଣ ହେ ଶ୍ରୀରାମ
ମନୁଷ୍ୟ ସଦୃଶ ଯେଉଁ ଜନମ-କରମ ।
ଏହିରୂପେ ତାହା ସବୁ ଘଟେ ରଘୁବୀର
ସୃଷ୍ଟିର ନିୟମ ଏହାଜାଣ ସର୍ବକାଳ ।
ନିନ୍ଦ୍ୟ, ଅନିନ୍ଦ୍ୟ, ଆବର ହେୟ ଉପାଦେୟ
ଆତ୍ମୀୟ ଓ ପରଆଦି ଯାହା ଏ ଜାତୀୟ,
ତାଙ୍କଠାରେ ନ ଲାଗଇ ଏହିସବୁ ଭେଦ
କୌଣସି କର୍ମରେ ସେହୁ ନୁହନ୍ତି ଆବଦ୍ଧ ।
ସୃଷ୍ଟିରୁ ଆଦ୍ୟରୁ ଅଗ୍ନି ଦାହିକା ଶକତି
ଅବ୍ୟାହତ ରହିଅଛି ଯଥା ରଘୁପତି ।
ହରି, ହର, ବ୍ରହ୍ମା ମଧ୍ୟ ସେହିପରି ଜାଣ
ଚରିତ୍ର, ବେଶ, କ୍ରିୟାର ନିୟମ ଅଧୀନ ।
ଚରିତ୍ର ଓ ଆଚରଣ ଅଜ୍ଞାନୀ ଜନର
ନିୟମ ଅଧୀନ ନୁହେଁ ଜାଣ ରଘୁବୀର ।
ଜୀବଙ୍କର ଚତୁର୍ବିଧ ମଉନ ବ୍ୟତୀତ
ବିଦେହ ମୁକତ ମୌନ ଯା ଅଛି କଥିତ ।
କହି ନ ଥିଲି ତୁମ୍ଭଙ୍କୁ ଆହେ ରଘୁନାଥ
ଏବେ ତାହା କହୁଅଛି ଶୁଣ ଦେଇ ଚିତ୍ତ ।
ଆକାଶଠାରୁ ନିର୍ମଳ ଯେଉଁ ଆତ୍ମାକାଶ
ତାହା ଲଭିଲେ ମୁକତି ମିଳଇ ଅବଶ୍ୟ ।
ବିବେକ ସମ୍ପନ୍ନ ହୋଇ ରାଜଯୋଗ ଧରି
ପ୍ରବୁଦ୍ଧ ହୋଇ ଅଛଇ ଯେଉଁ ତପଚାରୀ,
ସାଂଖ୍ୟଯୋଗୀ ବୋଲି ସେହୁ ଅଟଇ ବିଦିତ
ଏବେ ଶୁଣ ଯୋଗ ଯୋଗୀମାନଙ୍କ ବୃତ୍ତାନ୍ତ ।
ପ୍ରାଣ ସ୍ପନ୍ଦନ ନିରୁଦ୍ଧ କରି ଯେଉଁ ଜନ
ବ୍ରହ୍ମ ପଦରେ କରିଣଛନ୍ତି ଅବସ୍ଥାନ,
ଯୋଗ ଯୋଗୀ ଆଖ୍ୟା ତାଙ୍କୁ ପଣ୍ଡିତେ ଦିଅନ୍ତି
ତତ୍ତ୍ୱଦର୍ଶୀ, ଏ ଉଭୟେ, ଶାନ୍ତିପଦ ପାନ୍ତି ।
ସାଂଖ୍ୟ, ଯୋଗ, ଉଭୟକୁ ଏକ ଯେ ମଣନ୍ତି
ଏହି ଶାନ୍ତି ପଦେ ତାହାଙ୍କର ଅବସ୍ଥିତି ।
ପ୍ରାଣ, ମନ, ବୃତ୍ତି, ଲୁପ୍ତ ହୋଇଛି ଯହିଁରେ
ବାସନା, ରୂପ, ବନ୍ଧନ ନାହିଁ ଯେଉଁଠାରେ,
ତାହାହିଁ ପରମ ପଦ ବୋଲିଣ ଜାଣିବ
ଏହି କଥା ମନେ ରଖିଥିବ ହେ ରାଘବ ।
ବାସନା କେବଳ 'ଚିତ୍ତ' ଜାଣ ହେ ଶ୍ରୀରାମ
ବାସନା ଜଡ଼ିତ ମନ ସଂସାର କାରଣ ।
ସାଂଖ୍ୟ କିମ୍ବା ଯୋଗଜ୍ଞାନ ପ୍ରଭାବେ ସେ ମନ
ବିଲୟରେ, ସଂସାରର ହୋଇଯାଏ ଲୀନ ।
ଆତ୍ମ ଦରଶନେ ହୁଏ ମନର ବିନାଶ
ଆତ୍ମ ଦରଶନ ବିନା ମନର ବିକାଶ ।
ସ୍ୱପ୍ନ ପରି ନିଜ ଜନ୍ମ, ମୃତ୍ୟୁ ଦରଶନ
ସେହି ମନ ହିଁ କରଇ, ହେ ରଘୁନନ୍ଦନ ।
ବାସ୍ତବରେ ତାହାସବୁ ଯେପରି ଅଳୀକ
ମନ ସେପରି ଅଳୀକ ହେ ରଘୁ ନାୟକ ।
ଆତ୍ମତତ୍ତ୍ୱ ଅଦର୍ଶନେ ତାହାର ଉଦ୍ଭବ
ଆତ୍ମତତ୍ତ୍ୱ ଦର୍ଶନେ ତା ବିନାଶ ଜାଣିବ ।
ଏ ମିଥ୍ୟାମନରୁ ଯେଉଁ ସଂସାର ଜନମ
ଜ୍ଞାନୋଦୟେ ହୋଇଥାଏ ତାହାର ମରଣ ।
ମୁହିଁ, ମୋର, ଆଉପୁଣି ମୁକ୍ତି ବା ବନ୍ଧନ
ଏ ସମସ୍ତଭାବ ତେବେ ହୋଇଯାଏ ଲୀନ ।
ଆତ୍ମଦର୍ଶନେ ପ୍ରଯତ୍ନ ପ୍ରାଣରର ବିଲୟ
ମନର ନିଗ୍ରହ, ବଳେ ମୁକତି ନିଶ୍ଚୟ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ଗୁରୁଦେବ ।
ପ୍ରାଣର ବିଲୟେ ଯଦି ମୁକ୍ତି ଲାଭ ହେବ ।
ତେବେ ତ ଯେ ମଲା ସେହୁ ପାଇଲା ମୁକତି
ଏ ବିଷୟେ ମୋ ସନ୍ଦେହ ଫେଡ଼ ମହାଯତି ।

ବଶିଷ୍ଠ କହନ୍ତି ଶୁଣ ଆହେ ରଘୁବୀର
ବିଲୟ ନୋହିଛି ଯେ ପର୍ଯ୍ୟନ୍ତ ଏ ମନର ।
ତିନି ଉପାୟ ମଧ୍ୟରୁ କଉଣସିଟିରେ
ମୁକ୍ତି ହୋଇ ନ ପାରଇ ଜାଣ ରଘୁବୀରେ ।
ତେଣୁକରି ଏହି ତିନି ଉପାୟ ବଳରେ
ମନ ବିନାଶ ସାଧନ କର ରଘୁବୀରେ ।
ମରଣରେ ପ୍ରାଣ, ମନ, ନୁହନ୍ତି ବିନାଶ
ମୃତ୍ୟୁ ଏକ ମୂର୍ଚ୍ଛା ବୋଲି ଜାଣ ରଘୁଈଷ ।
ତେବେବେଳେ ପ୍ରାଣ, ମନ ବାସନା ଆକାରେ
ରହିଥାନ୍ତି ଜାଣିରଖ କୌଶଲ୍ୟା କୁମରେ ।
ମୂର୍ଚ୍ଛା ଭଗ୍ନ ହୋଇଗଲେ ମନର ପ୍ରକାଶ
ପୁନରାୟ ହୋଇଥାଏ ହେ ରଘୁବିଳାସ ।
ପ୍ରାଣ ଯେତେବେଳେ ଦେହ ଛାଡ଼ି ଚଳିଯାଏ
ବାସନା ବିକଳେ ଅନ୍ୟ ଦେହ ଖୋଜୁଥାଏ ।
କାମକର୍ମ ଅନୁରୂପ ଶରୀର ଆକୃତି
ପାଇବା ପାଇଁକି ବ୍ୟଗ୍ର ହେଉଥାଏ ନିତି ।
ସେହିଦେହ ପ୍ରାପ୍ତି ପାଇଁ ବହିଁ ଆକାଶରେ
ଉପଯୁକ୍ତ ଭୂତମାତ୍ରା ସଂଗ୍ରହ ସେ କରେ ।
ଏହିପରି ସୂକ୍ଷ୍ମଦେହ କରେ ସେ ଧାରଣ
ସେତେବେଳେ ଥାଏ ମଧ୍ୟ ସେ ବାସନା ମଗ୍ନ ।
ଏ ବାସନାମୟ ମନ, ପ୍ରାଣକୁ ଘେନିଣ
ଭୂତମାତ୍ରାରେ ତାହାର ହୁଅଇ ମିଳନ ।
ଅପର ଜୀବର ମନ, ପ୍ରାଣର ସହିତ
ମିଳିତ ହୋଇ ନ ପାରେ ସେହୁ କଦାଚିତ ।
ଭାବିଦେହେ ଆଶା ରଖିଥାଏ ଯେଣୁ ପ୍ରାଣ
ପୂର୍ବଦେହ ତାର କରିଥାଏ ସେ ବର୍ଜ୍ଜନ ।
ସେହି ଭାବ ଦେହଧରି ହୁଏ ସେ ଜନମ
ମୃତ୍ୟୁରେ ବିନଷ୍ଟ ନୁହେଁ ପ୍ରାଣ ଆଉ ମନ ।
ଜଳପୂର୍ଣ୍ଣ କୁମ୍ଭ ଯଥା ସାଗର ଭିତରେ
ଅଦୃଶ୍ୟ ଭାବରେ ରହିଥାଏ ରଘୁବୀରେ ।
କୁମ୍ଭର ଯେସନ ନୋହିଥାଏଟି ବିନାଶ
ତେସନ ବିନାଶ ନୁହେଁ ପ୍ରାଣର ଅବଶ୍ୟ ।
ଆଲୋକକୁ ତେଜି ସୂର୍ଯ୍ୟ ରହିକି ପାରଇ ?
ମନଛାଡ଼ି ପ୍ରାଣ କେଉଁଭେଁ ରହି ନ ପାରଇ ।
ଜ୍ଞାନ ବିନା ମନ କେବେ ନୁହଇ ବିନାଶ
ବାସନା ସହିତ ମନଜ୍ଞାନେ ଯାଏ ନାଶ ।
ଜ୍ଞାନ ଉଦୟରେ ପ୍ରାଣ, ମନର ସ୍ପନ୍ଦନ
ଦୂରୀଭୂତ ହୋଇ ଶାନ୍ତି ଆବିର୍ଭାବ ଜାଣ ।
ଜ୍ଞାନବଳେ ପଦାର୍ଥର ଅସ୍ତିତ୍ୱ ବିଲୁପ୍ତ
ପଦାର୍ଥ ବିଲୟେ ଦ୍ୱୈତଜ୍ଞାନ ଦୂରୀଭୂତ ।
ଦ୍ୱୈତଜ୍ଞାନ ନ ରହିଲେ ବାସନା ନ ରହି
ବାସନା ନ ଥିଲେ ପ୍ରାଣ, ମନ ନାଶ ଯାଇ ।
ଏହି କାରଣରୁ ରାମ ଜ୍ଞାନ ଉଦୟରେ
ବାସନା ବିନାଶ ହୋଇଥାଏ ନିଶ୍ଚିତରେ ।
ସେତେବେଳେ ଶାନ୍ତମନ ଦେହଆଦି ଭାବ
କେଭେହେଲେ କରି ନ ପାରଇ ଅନୁଭବ ।
ବାସନାର ନାମାନ୍ତର ଅଟେ ଏହି ମନ
ବାସନା ବିହୀନ ମନ ପରଂପଦ ଜାଣ ।
ବିବେକର ପରିଣାମ ଏହି ପରିଯନ୍ତ
ଏହା ମନେରଖ ଆହେ କଉଶଲ୍ୟା ସୁତ ।
ପଙ୍ଖା ନ ବୁଲିଲେ ଯଥା ବାୟୁ ହୁଏ ଶାନ୍ତ
ମନଶାନ୍ତ, ହେଲେ ପ୍ରାଣ ସ୍ପନ୍ଦନ ନିବୃତ୍ତ ।
ସ୍ୱାଭାବିକ ମରଣଟି ଯେବେ ଘଟିଥାଇ
ପ୍ରାଣର ନିର୍ଗତ କ୍ରମ ଏସନ ଘଟଇ ।
ଅସ୍ୱାଭାବିକ ମରଣେ ଏମନ୍ତ ଘଟିବ
ବହିରାକାଶ ବାୟୁରେ ପ୍ରାଣ ଠାବନେବ ।
ସେତେବେଳେ ଯେଉଁ ବସ୍ତୁ ଯେ ଭାବରେ ଥିବ
ସେହି ଭାବ ଘେନି ସେହୁ ତାକୁ ଦେଖିଥିବ ।
କେତେବେଳେ ହେଲେ ଜାଣ ଆହେ ରଘୁନାଥ
ଜୀବର ପ୍ରାଣ ଓ ଚିତ୍ତ ନୁହନ୍ତି ବିଯୁକ୍ତ
କୁସୁମେ ଗନ୍ଧ ଆବର ତିଳେ ତୈଳପରି
ପ୍ରାଣ, ଚିତ୍ତ ଏକସଙ୍ଗେ ଅବସ୍ଥାନ କରି ।
ପ୍ରାଣର ସ୍ପନ୍ଦନକୁ ହିଁ ମନବୋଲି ଜାଣ
ମନର ସ୍ପନ୍ଦନ ଜାଣ ଅଟଇ ପରାଣ ।
ରଥ ଓ ସାରଥି ପରି ଏହି ଦୁଇଜଣ
ଏକ, ସଙ୍ଗେ କରୁଥାନ୍ତି ଗମନାଗମନ ।
ଅଗ୍ନି ଓ ତା' ତାପ ସମ ପ୍ରାଣ ଆଉମନ
ଆଧାର ଆଧେୟ ରୂପେ ରହିଥାନ୍ତି ଜାଣ ।
ଏକର ଅଭାବେ ହୁଏ ଅନ୍ୟର ଅଭାବ
ସେହି ଅଭାବରୁ ହୁଏ ମୁକତିର ଲାଭ ।
ତତ୍ତ୍ୱଜ୍ଞାନ ଅଭ୍ୟାସରେ ମନଦ୍ୱୈତ ଭାବ
ଯେତେବେଳେ ଦୂରୀଭୂତ ହେବ ହେ ରାଘବ ।

ସେତେବେଳେ ମନଯାଇଁ ହୋଇଯିବ ଶାନ୍ତ
ମନ ଶାନ୍ତ ହେଲେ ହେବ ସେ ମନ ନିବୃତ୍ତ ।
ଯେଣୁ କରି ପ୍ରାଣ ସହ ମନ ଏକୀଭୂତ
ମନର ନିବୃତ୍ତି ହେଲେ ପ୍ରାଣ ଯେ ବିଲୁପ୍ତ ।
ବିଚାର ବଳେ ମନକୁ ଆହେ ରଘୁନାଥ
ଆତ୍ମମୟ କରିବାକୁ ହୁଅ ହେ ଚେଷ୍ଟିତ ।
ମନ ଯଦି ଆତ୍ମାମଧ୍ୟେ ହୁଅଇ ବିଲୀନ
ଆତ୍ମା ହିଁ କେବଳ ଅବଶିଷ୍ଟ ରହେ ଜାଣ ।
ଖାଦ୍ୟ ଅଭାବରେ ଯଥା ଦେହହୁଏ କ୍ଷୀଣ
ପ୍ରତ୍ୟାହାର ବଳେ ସେହିପରି ଯୋଗୀଜନ ।
ନିର୍ବିକଳ୍ପ ସମାଧିରେ ହୋଇଣ ମଗନ
ପ୍ରାଣ ଓ ମନକୁ କରିପାରିଥାନ୍ତି ଲୀନ ।
ମନ, ପ୍ରାଣ ଯେବେ ହୋଇ ଯାଆନ୍ତି ବିଲୀନ
ଅବଶିଷ୍ଟ ରହିଯାଏ ସେହି ଆତ୍ମାଜାଣ ।
ତତ୍ତ୍ୱଜ୍ଞାନର ଅଭ୍ୟାସ ବ୍ୟତୀତ ଶ୍ରୀରାମ
ପରଂପଦ ପାଇଁ ନାହିଁ ଅନ୍ୟ ପନ୍ଥା ଜାଣ ।
ତେଣୁ ଧ୍ୟାନ ଧାରଣାରେ ସାହାଯ୍ୟ ବଳରେ
ତତ୍ତ୍ୱଜ୍ଞାନର ଅଭ୍ୟାସ ଲୋଡ଼ା ସବୁକାଳେ ।
ଚିତ୍ତର ନାମ ଅବିଦ୍ୟା ଜାଣ ରଘୁବୀର
ସେ ଚିତ୍ତକୁ ବ୍ରହ୍ମାକାରେ ପରିଣତ କରେ ।
ବିଚାର ବଳେ ତାହାର ବିଲୟ ସାଧନ
ଯଥା ଶୀଘ୍ର କରିଦିଅ ହେ ରଘୁନନ୍ଦନ ।
ଅବଶିଷ୍ଟ ରହେ ଯାହା ଚିତ୍ତହେଲେ କ୍ଷୀଣ
ଏ ଚିତ୍ତର ଅଧିଷ୍ଠାନ ଆତ୍ମାସେହୁ ଜାଣ
ଆତ୍ମା କେଭେଁ ଶୂନ୍ୟ ହୋଇ ନ ପାରେ ଶ୍ରୀରାମ ।
ଯଦି ସେହି ଆତ୍ମା ରାମ ! ହୋଇଥାନ୍ତା ଶୂନ୍ୟ
ପରଂ ପୁରୁଷାର୍ଥ ରୂପେ ସେହି ଆତ୍ମାପୁଣ ।
କିପରି କୀର୍ତ୍ତିତହନ୍ତା ହେ ରଘୁନନ୍ଦନ
ପରମପଦ ଆତ୍ମାରେ କ୍ଷଣକାଳ ପାଇଁ
ବିଶ୍ରାମ କରି ପାରିଲେ ଏହି ଚିତ୍ତ ତହିଁ ।
ବ୍ରହ୍ମ ଆକାରରେ ହୋଇଯାଏ ପରିଣତ
ତହୁଁ ବିଚ୍ୟୁତ ହେବାକୁ ନ ବଳେ ତା ଚିତ୍ତ ।
ସାଂଖ୍ୟ ଯୋଗଜ୍ଞାନେ ଯଦି ତୁମ ଚିତ୍ତରାମ
ବିଶ୍ରାନ୍ତ ହୋଇପାରନ୍ତା ଅଚଳ ଭାବେଣ ।
ମୁହୂର୍ତ୍ତ ମାତ୍ରକ ପାଇଁ ଆତ୍ମାକୁ ଲଭନ୍ତା
ପୁନର୍ବାର ଚିତ୍ତରୂପେ ସ୍ଫୁରିତ ନୁହନ୍ତା ।
ଅବିଦ୍ୟା ଶୂନ୍ୟ ଚିତ୍ତର ନାମ ଅଟେ ସତ୍ତ୍ୱ
ସଂସାର ବୀଜକୁ ସେହୁ କରେ ଦଗ୍ଧୀଭୂତ ।
ଅଙ୍କୁରଜନନୀ ରୂପ ଶକ୍ତିକୁ ତାହାର
ଧ୍ୱଂସ କରିଦିଏ ଜାଣ ଆହେ ରଘୁବୀର ।
ଥରେ ମାତ୍ର ଏହି ସତ୍ତ୍ୱ ହୁଅନ୍ତେ ଉଦିତ
ବ୍ରହ୍ମସ୍ୱରୂପରୁ ଜୀବ କେଭେଁ ନୁହେଁ ଚ୍ୟୁତ ।
ସେପରି ସତ୍ତ୍ୱସମ୍ପର୍ଣ୍ଣ ପୁରୁଷ କ୍ୱଚିତ
ଦେଖାଯାଇଥାନ୍ତି ଜାଣ ଆହେ ରଘୁନାଥ ।
ଯେବଣ ପୁରୁଷ ହୋଇପାରିଛି ସେପରି
ଅବିଦ୍ୟା, ବାସନା ଜାଲ ଛିଣ୍ଡିଛି ତାହାରି ।
ସ୍ପର୍ଶମଣି ପରଶରେ ତାମ୍ର ହୁଏ ସ୍ୱର୍ଣ୍ଣ
ଆଉ ତାମ୍ର ଗୁଣ ତାର ନ ଫେରେ ଯେସନ ।
ବାସନା ବୀଜ ଦଗଧ ହୋଇ ସେହିପରି
ଥରେ ମନର ମନନ ଶକ୍ତି ଗଲେ ଚାଲି ।
ପୁନର୍ବାର ମନ ଆଉ ସଂସାର ଦର୍ଶନ
କରିବା ପାଇଁ ସୁବିଧା ନୁହେଁ କଦାଚନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ପ୍ରାଣମନ ସଂଯୋଗ ବିଚାର ବର୍ଣ୍ଣନେ ନାମ ପଞ୍ଚଷଠି ସର୍ଗଃ**



## ଛଷଠି ସର୍ଗଃ

## ବେତାଳ ପ୍ରଶ୍ନ

ବୋଲନ୍ତି ବଶିଷ୍ଠ ରାମ ବିଚାର ବଳରେ
ଜ୍ଞାନସୂର୍ଯ୍ୟ ଉଦେ ହୋଇ ଯାଆନ୍ତେ ଅନ୍ତରେ
ଚିତ୍ତ, ଜୀବ ଭେଦଭାବ ନ ରହଇ କିଛି
ଉଭୟେ ଶାନ୍ତି ଲଭନ୍ତି ତେଣୁ ରଘୁବଂଶୀ ।
କାର୍ଯ୍ୟ ଓ କାରଣାତ୍ମିକା ଅବିଦ୍ୟାର ରାମ
ଉପଶମ ହୋଇଗଲେ ଧରେ ମୁକ୍ତି ନାମ ।
ତୁମେ, ମୁହିଁ, ମନ ପୁଣି ଅହଂକାର ଭାବ
ଏ ସମସ୍ତ ଭ୍ରମପୂର୍ଣ୍ଣ ଜାଣହେ ରାଘବ ।
କ୍ଷଣ ମାତ୍ରକ ବିଚାର ବଳରେ ହେ ରାମ
ଏମାନଙ୍କର ଅସ୍ତିତ୍ୱ ହୁଏ ଅବସାନ ।
ସଂସାର ରୂପ ସ୍ୱାପ୍ନିକ ଭ୍ରମ ବିଷୟରେ
ପୂର୍ବେ ଏକ ବେତାଳ ଯେ ପ୍ରଶ୍ନ କରିଥିଲେ ।
ମନେ ପଡ଼ିଯାଏ ତାହା କହୁଅଛି ଶୁଣ
ଶୁଣିଲେ ତୁମର ଚିତ୍ତ ହେବ ସୁପ୍ରସନ୍ନ ।

ପୂର୍ବକାଳେ ବିନ୍ଧ୍ୟାରଣ୍ୟେ ଏକଇ ବେତାଳ
ବାସ କରୁଥିଲା ତହିଁ ଧରି ବହୁକାଳ ।
ବିଶାଳ ବପୁ ତାହାର, ଅତି ବଳବନ୍ତ
ଇଚ୍ଛାକଲେ ଚୂର୍ଣ୍ଣ କରିପାରେ ପରବତ ।
ସାଧୁଜନ ପ୍ରତି ହିଂସା କେବେ ନ କରଇ
ଦୁଷ୍ଟଜନମାନଙ୍କୁ ସେ ସମୂଳେ ନାଶଇ ।
କିରାତ ରାଜ ସହିତ ଥିଲା ତାର ଚୁକ୍ତି
ବଧଦଣ୍ଡ ଆଜ୍ଞା ଯେଉଁ ଦୋଷୀଙ୍କୁ ପ୍ରାପତି ।
ବଳି ସ୍ୱରୂପେ ତାଙ୍କୁ ସେ କରିବ ଭକ୍ଷଣ
ରାଜା ସହିତ ଶତୃତା ନ କରିବ ପୁଣ ।
ବଧଦଣ୍ଡ ଯେଉଁ ଦୋଷୀମାନେ ପାଇଥାନ୍ତି
ବେତାଳ ପାଶକୁ ରାଜା ତାଙ୍କୁ ପେଶିଦ୍ୟନ୍ତି ।
ତାଙ୍କୁ ଖାଇ ବେତାଳ ଯେ ସୁଖେ ଦିନ ନିଏ
ଭୋଜନ ପାଇଁ କି ତାର ଭାବନା ନ ଥାଏ ।
କାଳକ୍ରମେ ସେ ରାଜ୍ୟରେ ବଧଦଣ୍ଡ ଦୋଷୀ
ଦୁର୍ଲଭ ହୁଅନ୍ତେ ସେହୁ ଚିନ୍ତାକରେ ବସି ।
ଅନ୍ୟ ଏକ ରାଜ୍ୟେ ଯାଇଁ ହୋଇଲା ପ୍ରବେଶ
ନିଶା ଭ୍ରମଣେ ସେ ରାଜା ବୁଲେ ଗ୍ରାମଦେଶ ।
ଦସ୍ୟୁ ତସ୍କରମାନଙ୍କ ଅନୁସନ୍ଧାନରେ
ରାଜା ଭ୍ରମଣ କରନ୍ତି ଘୋର ନିଶାକାଳେ ।
ଦୈବବଶେ ରାଜା ପାଶେ ବେତାଳ ପ୍ରବେଶ
ଘୋର ଗର୍ଜନ କରିଣ ଜନମାଏ ତ୍ରାସ ।
ରାଜାଙ୍କୁ ଦେଖି ବୋଲଇ ଭାଗ୍ୟମୋର ଭଲ
ଖାଦ୍ୟପାଇଁ ଆଉ କିମ୍ପା ହେବି କଲବଲ ।
ତୁମ୍ଭଙ୍କୁ ଆଜ ମୁଁ ରାଜା କରିବି ଭକ୍ଷଣ
ପୂର୍ବରୁ ରହିଛି ଏହା ବିଧିର ଲିଖନ ।
ରାଜା କହନ୍ତି ବେତାଳ ଅନ୍ୟାୟରେ ଯେବେ
ମୋତେ ବଧ କରି ତୁହି ଖାଇଯିବୁ ତେବେ ।
ସହସ୍ର ଖଣ୍ଡ ହୋଇବ ତୋହର ମସ୍ତକ
କ୍ଷ୍ୟାନ୍ତ ହୁଅ ବେତାଳ ତୁ ନୁହଁ ଅବିବେକ ।
କହଇ ବେତାଳ ରାଜା ଅନ୍ୟାୟ ଭାବରେ
ଭକ୍ଷଣ କରିବି ନାହିଁ ତୋତେ କେତେବେଳେ ।
ଯେଣୁକରି ଏ ଦେଶର ରାଜା ଅଟୁ ତୁହି
ସବୁରି ଆଶା ପୂରଣ ତୋ କର୍ତ୍ତବ୍ୟ ହୋଇ ।
ଏହି ମୋର ଆଶା, ରାଜା ମୋ ପ୍ରଶ୍ନ ଉତ୍ତର
ଯଥାର୍ଥ ଭାବରେ ଦେବୁ ଆହେ ନରବର ।
କେଉଁ ସୂର୍ଯ୍ୟରଶ୍ମି ପରମାଣୁ ଏ ବ୍ରହ୍ମାଣ୍ଡ
ଯଥାର୍ଥ ଉତ୍ତର ଦିଅ ନୋହିଁ ଲଣ୍ଡ ଭଣ୍ଡ ।
ମହା ଗଗନର ରେଣୁ କେବଣ ବାୟୁରେ
ପ୍ରବାହିତ ହୁଏ କହ ଆହେ ନରବରେ ?
ସ୍ୱପ୍ନପରେ ସ୍ୱପ୍ନମାନ ଦେଖି ଦେଖି କରି
ପୂର୍ବସ୍ୱପ୍ନର ସତ୍ୟତା ଦେଇଣ ପାଶୋରି ।
କେବଣ ପୁରୁଷ ସତ୍ୟସ୍ୱରୂପ ଆତ୍ମାକୁ
ତେଜ୍ୟା କରି ମଧ ତେଜ୍ୟା ନ କରେ ତାହାକୁ ।
ଅନ୍ତରରେ ଆଉ ମଧ ଅନ୍ତର-ଅନ୍ତରେ
କହ କିଏ ସେ ବିରାଜମାନ ତହିଁ କରେ ?
କେବଣ ଅଣୁରୁ ପରମାଣୁ ହେ ରାଜନ
ଏହି ଅନନ୍ତ ବ୍ରହ୍ମାଣ୍ଡ କହ ତା ପ୍ରମାଣ ?
ମହାଶଇଳ ରୂପରେ ଯେହୁ ବର୍ତ୍ତମାନ
ତା ମଜ୍ଜାର ସାରବସ୍ତୁ କହ ହେ ରାଜନ ?
ମୋହର ଏ ଛଅଗୋଟି ପ୍ରଶ୍ନର ଉତ୍ତର
ଦେବାକୁ ଅକ୍ଷମ ଯେବେ ହେବ ନରବର ।
ପ୍ରଜାଗଣ ସହ ତେବେ ତୁମକୁ ରାଜନ
ଏହିକ୍ଷଣି ଆନନ୍ଦରେ କରିବି ଭୋଜନ ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ବେତାଳ ପ୍ରଶ୍ନ ବର୍ଣ୍ଣନେ ନାମ ଛଷଠି ସର୍ଗଃ**



## ଷତଷଠି ସର୍ଗଃ

## ବେତାଳ ପ୍ରଶ୍ନ ଭେଦ

ବେତାଳର ପ୍ରଶ୍ନମାନ ଶୁଣିଣ ରାଜନ
ଉତ୍ତର ଦିଅନ୍ତି ହାସ୍ୟ ପ୍ରକାଶ କରିଣ ।
ଯେଉଁ ବ୍ରହ୍ମାଣ୍ଡ ଫଳକୁ ଆଶ୍ରୟ କରିଣ
ଆମ୍ଭେ ସର୍ବଜୀବମାନ ଅଛୁ ବିଦ୍ୟମାନ ।
ଜଳ ଆଦି ଦଶ ସ୍ତର ଆବରଣେ ସେହି
ଆବୃତ ହୋଇ ରହିଛି ନିଶାଚର ସାଇଁ ।
ଏହିପରି ସସ୍ର ସଂଖ୍ୟା ଫଳଧରି କରି
ବିଶାଳ ଶାଖାଏ ଅଛି ଦିଗନ୍ତ ବିସ୍ତାରି ।
ଅନନ୍ତ ବ୍ରହ୍ମାଣ୍ଡ-ଉପାଦାନ ପଞ୍ଚକୃତ
ମହାଭୂତ ଏହି ଶାଖା ଜାଣରେ ଦୁର୍ବୃତ୍ତ ।
ଏହିପରି ସସ୍ରସଂଖ୍ୟା ଶାଖା ବିମଣ୍ଡିତ
ମହାବୃକ୍ଷ ଏକ ରହିଅଛି ବିରାଜିତ ।

ପଞ୍ଚୀକୃତ ଉପାଦାନ ଯେ ଗନ୍ଧ ତନ୍ମାତ୍ର
ମହାବୃକ୍ଷ ବୋଲି ତାକୁ ଜାଣ ଆରେ ଭୂତ ।
ଏହି ମହାବୃକ୍ଷ ପରି ସସ୍ର ବୃକ୍ଷ ପୂର୍ଣ୍ଣ
ମହା ଅରଣ୍ୟ ବେତାଳ ଅଛି ବିଦ୍ୟମାନ ।
ସେହି ମହା ଅରଣ୍ୟର ବିବରଣ ଶୁଣ
ରସାଦି ଅନ୍ୟ ତନ୍ମାତ୍ରା ବୋଲି ତାକୁ ଜାଣ ।
ମହା ପର୍ବତେକ ଅଛି ଜାଣରେ ବେତାଳ
ସସ୍ର ସସ୍ର ମହାରଣ୍ୟ ତାର ମଧ୍ୟ ସ୍ଥଳ ।
ଯେ ହିରଣ୍ୟଗର୍ଭ ତନ୍ମାତ୍ରାଙ୍କ ଉପାଦାନ
ଏ ମହାପର୍ବତ ଜାଣ ତାହାର ହିଁ ମନ ।
ସେହିପରି ସସ୍ର ସସ୍ର ପର୍ବତ ଶୋଭିତ
ମହାଦେଶ ଏକ ରହିଅଛି ବିରାଜିତ ।
ଅତୀତ ଓ ଭବିଷ୍ୟତ ଭୂତ ତନମାତ୍ର
ସେହି ମହାଦେଶ ବୋଲି ଜାଣ ଆରେ ଭୂତ ।
ଏହିପରି ସସ୍ରାଧିକ ମହାଦେଶ ଘେନି
ଦ୍ୱୀପ ଏକ ବିରାଜଇ ଆରେ ଭୂତମଣି ।
ଅତୀତ, ଭବିଷ୍ୟ, ଭୂତ ତନ୍ମାତ୍ର ସକଳ
ବିରାଜନ୍ତି ଯେଉଁ କଳ୍ପକାଳ ଗର୍ଭସ୍ଥଳ ।
ଏହି ଦ୍ୱୀପ ସେହି କଳ୍ପକାଳ ବୋଲି ଜାଣ
ବୁଝୁଛ କି ମୋ କହିବା ବେତାଳ ରାଜନ ?
ସସ୍ର ସସ୍ର ସଂଖ୍ୟାପୂର୍ଣ୍ଣ ମହାଦ୍ୱୀପମାନ
ଧରି ବିରାଜିତ ଏକ ମହାପୀଠ ଜାଣ ।
ବ୍ରହ୍ମା, ବିଷ୍ଣୁ, ରୁଦ୍ରଙ୍କର ଯେଉଁ ଆୟୁକାଳ
ସେହି ମହାପୀଠ ଅଟେ ଜାଣରେ ବେତାଳ ।
ସେପରି ସହସ୍ରାଧିକ ପୀଠମାନ ଧରି
ମହାଭୁବନେକ ଅଛି ଦିଗନ୍ତ ବିସ୍ତାରୀ ?
'ମାୟାଶବଳ' ଏ ବ୍ରହ୍ମ ଜାଣରେ ବେତାଳ
ମହାଭୁବନ ନାମରେ ଅଛି କାଳ କାଳ ।
ହଜାର ହଜାର ମହାଭୁବନ ସମ୍ପନ୍ନ
ଅଣ୍ଡ ଏକ ବିରାଜଇ ଅତୀବ ମହାନ ।
ଅଘଟନ ଘଟନକାରିଣୀ ମାୟାଶକ୍ତି
ଏହା ମହାଅଣ୍ଡ ବୋଲି ଜାଣ ଭୂତପତି,
ସେହି ମହାଅଣ୍ଡ ମଧ୍ୟେ ଅଛି ବିରାଜିତ
ନିସ୍ତରଙ୍ଗ ସମୁଦ୍ରେକ ଜାଣରେ ଦୁର୍ବୃତ୍ତ ।
ମହାଶକ୍ତିର ଅବ୍ୟକ୍ତ ଭାବ ଏ ସାଗର
ତରଙ୍ଗ ବିହୀନ ହୋଇ ରାଜେ କାଳକାଳ ।

ସେହିପରି ଲକ୍ଷ ଲକ୍ଷ ସାଗରଙ୍କୁ ଘେନି
ମହାସାଗରେକ ଅଛି ଜାଣ ଭୂତମଣି ।
ଆତ୍ମବିଳାସ ସମ୍ପର୍ଣ୍ଣ ସେ ମହାସାଗର
ଅବ୍ୟକ୍ତ ଆତ୍ମା ତା ନାମ ଜାଣ ଭୂତବର ।
ସସ୍ରାଧିକ ମହା ମହା ସାଗର ସେପରି
ନିହିତ ରହିଅଛନ୍ତି ଯା ଉଦରସ୍ଥଳି ।
ସାରା ବିଶ୍ୱବ୍ୟାପୀ ଅଟେ ସେ ମହାପୁରୁଷ
ବ୍ୟକ୍ତ ଆତ୍ମା ବିଷ୍ଣୁ ସେହି ଜାଣ ଭୂତଈଶ ।
ସେହିପରି ଲକ୍ଷ ଲକ୍ଷ ପୁରୁଷ ମହାନ
ଯା ବକ୍ଷରେ ମାଳାପରି ଛନ୍ତି ବିଦ୍ୟମାନ ।
ସେପରି ଏକ ପରମ ପୁରୁଷ ଅଛଇ
ରୁଦ୍ର ନାମ ତାର ଜାଣ ଆରେ ଭୂତସାଇଁ ।
ସସ୍ରାଧିକ ଏହିପରି ପରମପୁରୁଷ
ଛନ୍ତି ଯେଉଁ ସୂର୍ଯ୍ୟମଣ୍ଡଳର ଚାରିଦିଶ ।
ଏକ ମହାସୂର୍ଯ୍ୟ ଏହିପରି ଛନ୍ତି ରହି
ଚିଦାଦିତ୍ୟ ନାମ ତାଙ୍କ ଆରେ ଭୂତସାଇଁ ।
ଏହି ଯେ ବ୍ରହ୍ମାଣ୍ଡ ରହେ ପରିଦୃଶ୍ୟମାନ
ସେ ମହାସୂର୍ଯ୍ୟ ରଶ୍ମିର ପରମାଣୁ ଜାଣ ।
ଚିତ୍‌ସ୍ୱରୂପ ଆତ୍ମା ଅଟେ ସେହି ମହାସୂର୍ଯ୍ୟ
ତୋ ପ୍ରଥମ ପ୍ରଶ୍ନୋତ୍ତର, ଏବେ ଧର ଧୈର୍ଯ୍ୟ ।
ସୂର୍ଯ୍ୟ କିରଣରେ ଯଥା ଜଗତ ସୌନ୍ଦର୍ଯ୍ୟ
ପରକାଶ ପାଇଥାଏ ରେ ବେତାଳ ରାଜ ।
ବିଜ୍ଞାନମୟ ପରମସୂର୍ଯ୍ୟ କିରଣରୁ
ଜଗତ୍‌ରୂପ ଦିବସ ଶ୍ରୀ ଉଦୟ ତହିଁରୁ ।
କହନ୍ତି ରାଜ ଶୁଣ ଆହେ ଭୂତେଶ୍ୱର
ଏବେ ଶୁଣ ତୋ ଦ୍ୱିତୀୟ ପ୍ରଶ୍ନର ଉତ୍ତର ।
ଚିତ୍ ସମନ୍ୱିତ ମାୟା ଆକାଶର ସତ୍ତା
ମହାକାଳ ରୂପେ ଯେହ୍ନୁ ବିରାଜେ ସର୍ବଥା ।
ସୂତ୍ରାତ୍ମାରୂପ ଆକାଶ ସତ୍ତା ଯେହ୍ନୁ ଜାଣ
ଚିନ୍ମୟ ସତ୍ତା, ଚିଦାଭାସ-ସତ୍ତାମାନ ।
ସୂକ୍ଷ୍ମରୂପ ଧରି କରି ଏହି ସବୁ ସତ୍ତା
ରଜଃସ୍ୱରୂପ ଅଟନ୍ତି ଆହେ ଭୂତନେତା ।
ପରମାତ୍ମାରୂପୀ ମହାବାୟୁର ସ୍ରୋତରେ
ସେହି ରଜ ରେଣୁ ପ୍ରବାହିତ ନିରନ୍ତରେ ।
ସେହି ପରମାତ୍ମା ଯେଣୁ ସକଳ ସତ୍ତାରେ
ଅନୁସ୍ୟୂତ ରହିଛନ୍ତି ଆହେ ଭୂତବରେ ।

ମହାକାଳାଦି ଆଧେୟ ଭାବ ତାଙ୍କ ତହିଁ
କିମ୍ବା ଆରୋପିତ ହେବ କହ ଭୂତ ସାଇଁ ?
ଅବାନ୍ତର ଅଟେ ଜାଣ ଏ ପ୍ରଶ୍ନ ତୋହର
ଯେଣୁ ସେ ଅଟନ୍ତି ନିଜେ ନିଜର ଆଧାର ।
କଳ୍ପନା ବଳରେ ନିଜେ ନିଜକୁ କଳ୍ପନ୍ତି
କୁସୁମେ ଗନ୍ଧ ସଦୃଶ ବିରାଜୁ ଅଛନ୍ତି ।
ଏ ଜଗତରୂପ ସ୍ୱପ୍ନ ଦେଖିବାର ବେଳେ
ସ୍ୱପ୍ନପରେ ସ୍ୱପ୍ନମାନ ଦରଶନ କଲେ ।
ବ୍ରହ୍ମରେ ବିକାର କେଉଁ ନ ଘଟଇ ଜାଣ
ଅସଙ୍ଗ ସେ, ଜ୍ୟୋତିରୂପେ ରହେ ବିଦ୍ୟମାନ ।
ତୋର ତୃତୀୟ ପ୍ରଶ୍ନର ଉତ୍ତର ଯେ ଏହି
ବୁଝିରଖରେ ବେତାଳ ସାବଧାନ ହୋଇ ।
ଦେଖ ଏହି ଜଗତର ଅନ୍ତରେ ଅନ୍ତରେ
ବ୍ରହ୍ମ ହିଁ କେବଳ ବିବର୍ତ୍ତିତ ନିରନ୍ତରେ ।
ତାହାର ଅନ୍ତରେ ପୁଣି ତାହାର ଅନ୍ତରେ
ଚିତ୍‌ରୂପ ଅଣୁ ସଦା ଅବସ୍ଥାନ କରେ ।
ସୂକ୍ଷ୍ମାଦପି ସୂକ୍ଷ୍ମ ସେହି ପରମାତ୍ମା ଜାଣ
ଅଣୁ ନାମେ ପରିଚିତ ବେତାଳ ରାଜନ ।
ଯେଣୁ ସେ ଅନନ୍ତ ତେଣୁ ସର୍ବ ମୂଳାଧାର
ଏହା ହେଲା ତୋ ଚତୁର୍ଥ ପ୍ରଶ୍ନର ଉତ୍ତର ।
ଅନନ୍ତ ପରମ ଆତ୍ମା ପରମାଣୁ ରୂପ
ଏହି ବ୍ରହ୍ମାଣ୍ଡ ସକଳ ଜାଣ ଭୂତାଧିପ ।
ପଞ୍ଚମ ପ୍ରଶ୍ନ ଉତ୍ତର ପାଇଲୁ ବେତାଳ
ଏବେ ଶୁଣ ଷଷ୍ଠ ପ୍ରଶ୍ନୋତ୍ତର କି ପ୍ରକାର ।
ଇନ୍ଦ୍ରିୟ ଗୋଚରାତୀତ ପରମାତ୍ମା ଜାଣ
'ପରମାଣୁ' ବୋଲି କହିଛନ୍ତି ଜ୍ଞାନୀଜନ ।
ସର୍ବବ୍ୟାପୀ ହେତୁ ସେହୁ ସେ ମହାପର୍ବତ
ମୂର୍ତ୍ତ ଅମୂର୍ତ୍ତ ଇତ୍ୟାଦି ସକଳ ପଦାର୍ଥ ।
ବ୍ରହ୍ମଙ୍କର ଅବୟବ ଜାଣ ସେ ସମସ୍ତ
ତଥାପି ସେ ଅବୟବ ହୀନ ଭୂତନାଥ ।
ହୃଦୟ ଆକାଶେ ଛନ୍ତି ଯେ ତିନିଜଗତ
ବିଜ୍ଞାନ ଦୃଷ୍ଟିରେ ଯାହା ମଜ୍ଜା ପରିଜ୍ଞାତ ।
ଏହି ଜଗତ ବ୍ରହ୍ମହିଁ ବିଜ୍ଞାନ ସ୍ୱରୂପ
ଆତ୍ମାର ମଜ୍ଜା ଅଟଇ ଆହେ ଭୂତାଧିପ ।

ଷଷ୍ଠ ପ୍ରଶ୍ନର ଉତ୍ତର ପାଇଲୁ ତ ତୁହି
ନିଜ ଗର୍ବ ପରିତ୍ୟାଗ କର ଭୂତ ସାଇଁ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ବେତାଳ ପ୍ରଶ୍ନ ଭେଦ ବର୍ଣ୍ଣନେ**
**ନାମ ଷଟଷଠି ସର୍ଗଃ**



## ଅଠଷଠି ସର୍ଗଃ

## ବେତାଳ ଉପାଖ୍ୟାନ ସମାପ୍ତ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ରାଜାଙ୍କ ଉତ୍ତର ଶୁଣି ସେ ବେତାଳ ବର ।
ମନେ ମନେ ବିଚାର ସେ କରଇ ଏସନ
ଏ ରାଜା ଅଟଇ ନିଶ୍ଚେ ତତ୍ତ୍ୱଜ୍ଞାନ ପୂର୍ଣ୍ଣ ।
ଭୋକ ଶୋଷ ଭୁଲି, ଶାନ୍ତ ଚିତ୍ତ ସେ ହୋଇଣ
ସମାଧିସ୍ଥ ଭାବେ ସେହୁ କରେ ଅବସ୍ଥାନ ।
ଆହେ ରାମ ରାଜା କହିଥିଲେ କି ଯେସନ
ଚିଦାଣୁରେ ଏହି ଜଗତର ଅବସ୍ଥାନ ।
ତୁମେ ମଧ୍ୟ ସେହିକଥା ଘେନାକର ମନ
ତେବେ ବ୍ରହ୍ମ ସ୍ୱରୂପର ହେବ ତୁମ ଜ୍ଞାନ ।
ଏ ଚିଦାଣୁ ଅନ୍ତର୍ଗତ ଏ ବିଶ୍ୱ ମହାନ
ବିଚାର ଓ ଜ୍ଞାନ ବଳେ ହୋଇପାରେ ଲୀନ ।
ଏକମାତ୍ର ପରଂପଦ ଅବଶିଷ୍ଟ ରହେ
ଯେତେବେଳେ ଏହି ବିଶ୍ୱ ଲୀନ ହୋଇଯାଏ ।
ବିଷୟାରୁ ପ୍ରତ୍ୟାହୃତ କରି ତୁମ ମନ
ନିର୍ଲିପ୍ତ ଭାବେ କରମ କର ସମ୍ପାଦନ ।
ମନକୁ ମନଦ୍ୱାରାହିଁ କର ସୁନିର୍ମଳ
ସେହି ଏକ ତତ୍ତ୍ୱେ ମନ-ବୃତ୍ତିକୁ ତୁମ୍ଭର ।
ବିଲୀନ କରିଣ ଦିଅ ହେ ରଘୁକୁମର
ତେବେ ତୁମ ମନ ଯାଇଁ ହୋଇବ ଅମର ।
ତାହାବଳେ ସବୁଠାରେ ବ୍ରହ୍ମଙ୍କୁ ଦେଖିବ
ଆବର ସମଦରଶୀ ହୋଇଣ ପାରିବ ।
ସ୍ଥିରବୁଦ୍ଧି, ମୋହମୁକ୍ତ ହୋଇଣ ଏସନ
କରୁଥାଅ ନିଜ କର୍ମମାନ ସମ୍ପାଦନ ।
ତେବେ ଯାଇଁ ମହାରାଜା ଭାଗୀରଥ ପରି
ଅସାଧ କର୍ମ ସାଧିତ ହେବ ହେ ତୁମରି ।

ସଗର, ଦିଲୀପ, ଅଂଶୁମାନ ରାଜାମାନେ
ଯେଉଁ କର୍ମ କରି ପାରି ନଥିଲେ ଜୀବନେ ।
ଗଙ୍ଗାଙ୍କୁ ପୃଥ୍ୱୀକି ଆଣି ରାଜା ଭାଗୀରଥ
ପ୍ରମାଣ କରିଣ ଥିଲେ ନିଜର ସାମର୍ଥ୍ୟ ।
ଶାନ୍ତ ମନା ହୋଇଥିବ ଯେବଣ ପୁରୁଷ
ପରିତୃପ୍ତି ଲଭିଥିବ ଯା ଅନ୍ତର ଦେଶ ।
ଅନ୍ତର ଆତ୍ମାରେ ଯେହୁ ସଦା ବିଦ୍ୟମାନ
ଅତି ଦୁଷ୍କର କରମ କରେ ସମ୍ପାଦନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ବେତାଳ ଉପାଖ୍ୟାନ ସମାପ୍ତି ବର୍ଣ୍ଣନେ**
**ନାମ ଅଠଷଠି ସର୍ଗଃ**



## ଅଣସ୍ତରୀ ସର୍ଗଃ

## ଭଗୀରଥ ଉପଦେଶ

କହନ୍ତି ଶ୍ରୀରାମ ତେବେ ଆହେ ଗୁରୁଦେବ
ଭଗୀରଥଙ୍କ କରଣୀ ମୋ ଆଗେ କହିବ ।
ଯେଉଁପରି ସ୍ୱର୍ଗରୁ ସେ ଗଙ୍ଗାକୁ ଆଣିଲେ
ପିତୃ-ପିତା ମହାଦିଙ୍କୁ ନରକୁ ତାରିଲେ ।
କହନ୍ତି ବଶିଷ୍ଠ ରାମ କୋଶଳ ଦେଶରେ
ଭଗୀରଥ ନାମେ ଥିଲେ ଏକ ନରବରେ ।
ଜଗତ ରୂପକ ଯେଉଁ ଯଜ୍ଞ ଉପବୀତ
ତାହାର ତୃତୀୟ ଗୁଣ ଯେଉଁ ଗଙ୍ଗାମାତ ।
ସ୍ୱର୍ଗଧାମୁ ଏ ମର୍ତ୍ତ୍ୟକୁ ଆଣିଥିଲେ ସେହି
ନିଜ ଭକ୍ତି ନିଷ୍ଠାବଳ ଜଗତେ ଦେଖାଇ ।
ତ୍ରିଗୁଣାତ୍ମକ ଅଟଇ ଯେ ଯଜ୍ଞୋପବୀତ
ବ୍ରାହ୍ମଣମାନଙ୍କୁ କରିଥାଏ ଯେ ପବିତ୍ର ।
ସରଗେ ପାତାଳେ ଦୁଇଗୋଟି ଧାର ହୋଇ
ଦୁଇଗୁଣମୟୀ ଥିଲେ ସେହି ଗଙ୍ଗାମାଇ ।
ରାଜା ଭାଗୀରଥ ତାଙ୍କୁ ମର୍ତ୍ତ୍ୟକୁ ଆଣିଲେ
ତ୍ରିଧାରା ବାହୀ, ତ୍ରିଗୁଣମୟୀ ତାଙ୍କୁ କଲେ ।
ସଗରପୁତ୍ର ପାତାଳେ ବ୍ରହ୍ମଶାପ ଫଳେ
ଦଗଧ ହୋଇଣ କଲବଲ ହେଉଥିଲେ ।
ଗଙ୍ଗାଙ୍କୁ ସରଗୁ ଆଣି ସେହି ଭଗୀରଥ
ଖୋଲି ଦେଇଥିଲେ ତାଙ୍କ ବ୍ରହ୍ମ ଲୋକପଥ ।
ବ୍ରହ୍ମା, ଶଙ୍କର, ଆବର ଜହ୍ନୁ ମୁନିଙ୍କର
ସେବା କରି ତାଙ୍କୁ ତୋଷିଥିଲେ ନୃପବର ।
ଏହି ଦୁଷ୍କର କରମ ସେହି ତପଫଳେ
କରି ପାରିଥିଲେ ଭଗୀରଥ ନୃପବରେ ।
ତୁମ ପରି ସେ ନୃପର ଯଉବନ କାଳେ
ବିଚାର ବୁଦ୍ଧି ଉଦିତ ହୁଏ ରଘୁବୀରେ ।
ନିଜଗୁରୁ ତ୍ରିତଳଙ୍କୁ ଯାଇଁ ପଚାରିଲେ
କି ଉପାୟେ ଜରା, ମୃତ୍ୟୁ, ମୋହ ଏ ସଂସାରେ ।
ଉପଶମ ହୋଇପାରେ କହ ମୁନିବର
ଶୁଣିବାକୁ ଅତି ବ୍ୟଗ୍ର ଜାଣ ମନ ମୋର ।
ବୋଲନ୍ତି ତ୍ରିତଳ ମୁନି ଶୁଣ ହେ ରାଜନ
ପ୍ରତ୍ୟକ୍ ତତ୍ତ୍ୱଜ୍ଞାନ ଲାଭକରେ ଯେବେଁ ଜନ ।
ତେବେ ତାର ସବୁ ଦୁଃଖ ହୋଇଯାଏ ନାଶ
ଫିଟିଯାଏ ତେବେ ତାର ସଂସାରର ପାଶ ।
ସମତା ଲଭନ୍ତି ତାର ସକଳ କରମ
ସକଳ ସଂଶୟ ତାର ବିଦୂରୀତ ଜାଣ ।
ସୁ ବିଶୁଦ୍ଧ ଜ୍ଞାନମୟ ଆତ୍ମାହିଁ କେବଳ
ଏକମାତ୍ର ଜ୍ଞେୟ ବସ୍ତୁ ଜାଣ ରଘୁବାଳ ।
ସେ ଅଟନ୍ତି ନିତ୍ୟ ପୁଣି ସେହୁ ସର୍ବବ୍ୟାପୀ
ଉତ୍ପତ୍ତି ବିନାଶ ତାଙ୍କ ନ ଥାଇ କଦାପି ।
"କହୁଛନ୍ତି ଭଗୀରଥ ଆହେ ମୁନିବର
ଏକମାତ୍ର ଚିଦ୍ଆତ୍ମା ଅଛନ୍ତି କେବଳ ।
ତୁମ ପୂର୍ବ ଉପଦେଶ ମାନଙ୍କରୁ ମୁହିଁ
ଶରୀରାଦି ଆତ୍ମା ନୁହେଁ ଜାଣି ମୁଁ ଅଛଇ ।
ସତ ଅସତ ଦୁହିଙ୍କୁ ଜାଣିବା ନିମିତ୍ତ
ଯେ ଅନୁଶୀଳନ ମାନ-କଲି ତପୋବନ୍ତ ।
ତେଣୁ ସତ୍ ସ୍ୱରୂପରେ କେବେହେଲେ ମୁହିଁ
ଅବସ୍ଥାନ କରିପାରୁ ନାହିଁ ତପୀସାଇଁ ।
ଯେ ଉପାୟେ ଆତ୍ମବୋଧ ହୋଇବ ମୋହର
ସେ ଉପାୟ କରିଦିଅ ଆହେ ମୁନିବର ।"
କହନ୍ତି ତ୍ରିତଳ ଭଗୀରଥ ଏବେ ଶୁଣ
ହୃଦୟରୁ ଦୂରହେଲେ ସର୍ବ ଅଭିମାନ ।
ଜ୍ଞେୟ ଆତ୍ମାକୁ ହେ ରାଜା ଯେବେ ଜାଣିପାର
ତହିଁରେ ନିଷ୍ଠା ଉଦୟ ହୋଇବ ତୁମର ।
ଆତ୍ମନିଷ୍ଠ ହେଲେ ଜୀବ ପୂର୍ଣ୍ଣତ୍ୱ ଲଭଇ
ପୂର୍ଣ୍ଣତ୍ୱ ପ୍ରାପ୍ତିରେ ଜନ୍ମ ମୃତ୍ୟୁ ଆଉ କାହିଁ ?
ଅନାସକ୍ତି, ନିର୍ମ୍ମମତ୍ୱ, ସହିତ ରାଜନ
ଇଷ୍ଟ ନିଷ୍ଟେ ସମଜ୍ଞାନ ଓ ଆତ୍ମଚିନ୍ତନ ।

ଶ୍ରବଣ ମନନ ଆଦି ଯେ ସବୁ ଅଭ୍ୟାସ
ପରମ ଆତ୍ମ ତତ୍ତ୍ୱର ଦର୍ଶନ ନରେଶ,
ଏହି ସମସ୍ତଙ୍କ ନାମ ଜ୍ଞାନ ବୋଲି ଜାଣ
ଏହାଛଡ଼ା ଅନ୍ୟସବୁ ଅଟଇ ଅଜ୍ଞାନ ।
ଅହଂଭାବ ହୋଇଯାଏ ଯେବେ ଉପଶମ
ସଂସାର ବ୍ୟାଧି ଔଷଧି ଜ୍ଞାନ ଲାଭ ଜାଣ ।
"କହୁଛନ୍ତି ଭଗୀରଥ ଆହେ ମହାଭାଗ
ଦୀର୍ଘକାଳୁ ଅହଂଭାବ ଦେହେ କରେଠାବ ।
କେବଣ ଉପାୟେ ତାହା ହୋଇବ ବର୍ଜିତ
ଦୟାକରି ମୋତେ ତାହା କହ ତପୋବନ୍ତ ?
କହନ୍ତି ତ୍ରିତଳ ଏବେ ଶୁଣ ହେ ରାଜନ
ବିଷୟ ଭୋଗ ଆକାଙ୍‌କ୍ଷା ଥିବ ଯେତେ ଦିନ
ଅହଂଭାବ ଜନମିଣ ସୁଦୃଢ଼ ହୋଇବ
ପୁରୁଷକାର ବଳେ ତା ଦୂରୀଭୂତ ହେବ ।
"ରାଜ୍ୟ ଯେବେ ନାହିଁ ମୋର ଗୌରବ ବା କାହିଁ
ସବୁରି ପ୍ରାର୍ଥନା ପୂର୍ଣ୍ଣ କରୁ ମୁଁ ଥିଲାଇଁ ।
ଅନ୍ୟଠାରେ ପ୍ରାର୍ଥନା ମୁଁ କରିବି କିପରି
ଶତୃଙ୍କର ଉପହାସ ସହି କି ମୁଁ ପାରି ?
କୁଖାଦ୍ୟ ଖାଇ ଜୀବନ ଧରିବି କିପରି
ଏ ଭାବନାରେ ହତାଶ ବସେ ମୋତେ ମାଡ଼ି ।
ଯେ ଯାଏ ଏ ସବୁ ଚିନ୍ତା ନୁହେଁ ପରିତ୍ୟକ୍ତ
ଯେ ଯାଏ ସର୍ବସ୍ୱ ହୋଇପାରି ନାହିଁ ତ୍ୟକ୍ତ,
ତେତେକାଳ ପରିଯନ୍ତେ ଅହଂକାର ନୃତ୍ୟ
ନିବୃତ୍ତ ହୋଇବ ନାହିଁ ଏହା ଧ୍ରୁବ ସତ୍ୟ ।
ତୁମେ ଯଦି ଏ ସମସ୍ତ କରିଦେଇ ତ୍ୟକ୍ତ
ନିଶ୍ଚଳଭାବରେ ରହିପାର ଅବସ୍ଥିତ ।
ତେବେ ତୁମ ଅହଂଭାବ ହୋଇବ ବିଲୁପ୍ତ
ପରମ ପଦରେ ଯାଇଁ ହେବ ଉପନୀତ ।
ସ୍ୱାରୂପ୍ୟ ତାର ଲଭିବ ଆହେ ନରନାଥ
ତେବେ ଆଉ କିସ ଚିନ୍ତା କହ ଭଗୀରଥ ?
ରାଜ୍ୟ, ଦେହ ଅଭିମାନ ଦୂରକରି ତୁମ୍ଭେ
ଶତୃଦ୍ୱାରେ ଭିକ୍ଷାମାଗି ପାରିବଟି ଯେବେ,
ଜ୍ଞାତବ୍ୟ, ପ୍ରାପ୍ତବ୍ୟ ମୋର ଆଉ କିଛି ନାହିଁ
ଏହି ଜ୍ଞାନେ ସମାସୀନ ଯେବେ ପାଇ ହୋଇ,
ତେବେ ଉତ୍ତମ ପଦରେ ଆରୂଢ଼ ହୋଇଣ
ବ୍ରହ୍ମପଦ ଲାଭ କରି ପାରିବ ରାଜନ ।

ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ
ଭଗୀରଥି ଉପଦେଶ ବର୍ଣ୍ଣନେ
ନାମ ଅଣସ୍ତରୀ ସର୍ଗଃ



## ସତୁରୀ ସର୍ଗଃ
## ଭଗୀରଥ ନିର୍ବାଣ

କହନ୍ତି ବଶିଷ୍ଠ ଶୁଣ ଦଶରଥ ସୁତ
ଗୁରୁଙ୍କର ଉପଦେଶ ଶୁଣି ଭଗୀରଥି ।
ସେ ଆଦେଶ ପାଳିବାକୁ ସଙ୍କଳପ କଲେ
ସବୁ ତ୍ୟାଗ କରିବାକୁ ଇଚ୍ଛୁକ ହୋଇଲେ ।
ଅଗ୍ନିଷ୍ଟୋମ ଯଜ୍ଞ ପାଇଁ ସର୍ବ ଆୟୋଜନ
ବିଧିମାନ ଯୋଗାଡ଼ନ୍ତି ଭଗୀରଥ ଜାଣ ।
ଯଜ୍ଞ ଶେଷକରି ରାଜା ବ୍ରାହ୍ମଣମାନଙ୍କୁ
ବନ୍ଧୁବାନ୍ଧବ ଇତ୍ୟାଦି ସ୍ୱଜନବର୍ଗଙ୍କୁ,
ସ୍ୱର୍ଣ୍ଣଦାନ, ଭୂମିଦାନ, ଗୋଦାନ, ଦେଇଣ
ସର୍ବସ୍ୱ ପ୍ରଦାନ କରି ଜୀବନ ଧରିଣ,
ନିଃସ୍ୱ ହୋଇ ଧରାପୃଷ୍ଠେ କରନ୍ତି ଗମନ
ଶତ୍ରୁ ରାଜାଙ୍କ ସ୍ୱରାଜ୍ୟେ କଲେକ ପ୍ରସ୍ଥାନ ।
ସେହି ରାଜା ଆସି ତାଙ୍କ ଗୃହ, ନଗ୍ର, ରାଜ୍ୟ
ମାଡ଼ିବସି ବଢ଼ାଇଲେ ଆପଣା ସାମ୍ରାଜ୍ୟ ।
କୌପୀନବନ୍ତ ହୋଇଣ ଗୃହରାଜ୍ୟ ତେଜି
ବିଚରଣ କରୁଥାନ୍ତି ହରିନାମ ଭଜି ।
ଯେପରି ତାହାଙ୍କୁ କେହି ଚିହ୍ନି ନ ପାରନ୍ତି
ସେଥିପାଇଁ ରାଜା ଏକ ବନସ୍ତେ ରହନ୍ତି ।
ଅଳ୍ପକାଳ ପରେ ସର୍ବବାସନା ତାଙ୍କର
ଦୂରୀଭୂତ ହୋଇଗଲା ଆହେ ରଘୁବୀର ।
ବାସନା ବିହୀନ ଚିତ୍ତ ଯେଣୁ ତାଙ୍କ ହେଲା
ପରମଶାନ୍ତି ମନରେ ଉଦିତ ହୋଇଲା ।
ଆତ୍ମାରେ ବିଶ୍ରାମ ଏବେ କରନ୍ତି ରାଜନ
ଧନ୍ୟ ଭାଗୀରଥ ଧନ୍ୟ ତାଙ୍କ ତ୍ୟାଗ ଜାଣ ।
ଏହି ଅବସ୍ଥାରେ ଧରା କରନ୍ତି ଭ୍ରମଣ
ଶତ୍ରୁ ଅଧିକୃତ ନିଜ ଭବନେ ରାଜନ ।
ଦୈବବଶେ ତହିଁ ଉପସ୍ଥିତ ହୋଇଯାନ୍ତେ
ପୁରବାସୀଙ୍କର ଦ୍ୱାରେ ଭିକ୍ଷା ସେ ମାଗନ୍ତେ,

ପୁରବାସୀ, ମନ୍ତ୍ରୀଗଣ ତାଙ୍କୁ ଚିହ୍ନିପାରି
ମହାସମାରୋହେ ପୂଜା ଅଭ୍ୟର୍ଥନା କରି ।
ଶତ୍ରୁ-ନୃପତି ଆସିଣ କରେ ନିବେଦନ
ଆପଣାର ରାଜ୍ୟ ଏବେ କରନ୍ତୁ ଗ୍ରହଣ ।
ଆହାର୍ଯ୍ୟ ଅନ୍ନ ବ୍ୟତୀତ, ଆଉ କିଛି ରାଜା
ଗ୍ରହଣ ନ କରି ସବୁ କରି ହେଲେ ତେଜ୍ୟା ।
ତ୍ରିତଳ ମୁନିଙ୍କ ପାଶେ ଗମନ ସେ କଲେ
ଶିଷ୍ୟଭାବେ ତାଙ୍କ ଶ୍ରୀପଦରେ ପ୍ରଣମିଲେ ।
ଗୁରୁ, ଶିଷ୍ୟ ଦୁଇଜଣ ସାଙ୍ଗ ହୋଇକରି
କିଛିକାଳ କଟାଇଲେ ବେନି ତପଚାରୀ ।
କଥୋପକଥନ ଚଲେ ଗୁରୁଶିଷ୍ୟଙ୍କର
କିସ ପ୍ରୟୋଜନ ଧରି ଏ ମର ଶରୀର ।
ଏହି ଶରୀରକୁ ଯେବେ ଦେବା ତେଜ୍ୟା କରି
ଲାଭ ନୋହିଲେ ହେଁ କ୍ଷତି ନୋହିବ ଆମରି ।
କର୍ମାନୁସାରେ ଏ ଦେହ ହୋଇଛି ନିର୍ମିତ
ପ୍ରାରବ୍ଧ କରମ ଭୋଗ ହେବା ସୁନିଶ୍ଚିତ ।
ପ୍ରାରବ୍ଧ କର୍ମ ଯେ ଯାଏ ନୋହିଅଛି ଶେଷ
ଶରୀର ଧାରଣ କାର୍ଯ୍ୟ ଘଟିବ ଅବଶ୍ୟ ।
ସେଥିରେ ମଧ୍ୟ ଆମର କିଛି ନାହିଁ କ୍ଷତି
ଏହା ଭାବି ମୁନିଦ୍ୱୟ ନୀରବ ରହନ୍ତି ।
ପୁଣି ସେହି ମୁନିଦ୍ୱୟ କର୍ମ ଅନୁସରି
ସୁଖେ ଦୁଃଖେ ସମଭାବ ନ୍ୟନ୍ତି ସେହୁ ବରି ।
ସମ ବ୍ରହ୍ମଙ୍କର ଏକରସ ଆସ୍ୱାଦନ
କରି ଶାନ୍ତି ଲଭିଥିଲେ ଯେ ମୁନିରତନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଭଗୀରଥ ନିର୍ବାଣ ବର୍ଣ୍ଣନେ ନାମ ସତୁରୀ ସର୍ଗଃ**



## ଏକସ୍ତରୀ ସର୍ଗଃ

## ଗଙ୍ଗା ଅବତରଣ

କହନ୍ତି ବଶିଷ୍ଠ ଶୁଣ ଦଶରଥ ସୁତ
ଏହିପରି ଭ୍ରମ ଭ୍ରମି ରାଜା ଭଗୀରଥ ।
ଏକ ଦିନେ ଅନ୍ୟ ଏକ ରାଜ୍ୟରେ ଯାଇଣ
ପରବେଶ ହେଲେ ସେହି ଭକତ ରାଜନ ।
ସନ୍ତାନହୀନ ହୋଇଣ ସେ ରାଜ୍ୟ ରାଜନ
ଯେଣୁ ଦେହ ତ୍ୟାଗ କରିଥିଲେ ଆହେ ରାମ,
ରାଜ୍ୟ ପାଳନରେ ବ୍ୟତିକ୍ରମ ଦେଖିକରି
ଉଦ୍‌ବିଗ୍ନ ଚିତ୍ତ ହୋଇଣ ତା ପ୍ରଜା ମଣ୍ଡଳୀ ।
ଅନ୍ୟ ଏକ ରାଜା ଅନ୍ୱେଷଣ କରୁଥିଲେ
ଏମନ୍ତ ସମୟେ ଭଗୀରଥଙ୍କୁ ଭେଟିଲେ ।
ମୁନିବେଶଧାରୀ ଭଗୀରଥଙ୍କୁ ଦେଖିଣ
ରାଜୋଚିତ ଗୁଣମାନ କରି ନିରୀକ୍ଷଣ ।
ରାଜସିଂହାସନେ ତାଙ୍କୁ କଲେ ଅଭିଷିକ୍ତ
ପ୍ରଜାଗଣ ସର୍ବେହେଲେ ତାଙ୍କ ଅନୁରକ୍ତ ।
ଭଗୀରଥଙ୍କର ଶତ୍ରୁରାଜାଙ୍କ ମରଣ
କିଛିକାଳ ପରେ ତାହା ଘଟିଯାଏ ଜାଣ ।
ଅଯୋଧ୍ୟାର ପୂର୍ବତନ ମନ୍ତ୍ରୀ, ପୁରୋହିତ
ପ୍ରଜାଗଣ, ସର୍ବପାତ୍ର, ସାମନ୍ତ ସହିତ ।
ତାଙ୍କ ମହାରାଜା ଅନ୍ୟ ସାମ୍ରାଜ୍ୟରେ ଯାଇ
ରାଜା ହୋଇଛନ୍ତି ବୋଲି ଅବଗତ ହୋଇ,
ଭଗୀରଥଙ୍କ ନିକଟେ ହୋଇଣ ପ୍ରବେଶ
ପ୍ରାର୍ଥନା କରି କହନ୍ତି ଶୁଣ ହେ ନରେଶ !
ଆପଣ ତ ଆମ୍ଭମାନଙ୍କର ରାଜା ଥିଲେ
ଯେଉଁ ରାଜାଙ୍କୁ ଆପଣ ରାଜ୍ୟ ପ୍ରଦାନିଲେ ।
କାଳବଶେ ସେହି ରାଜା ଲଭିଲେ ମରଣ
ରାଜାହୀନ ପ୍ରଜା ଆମେ ଜାଣ ହେ ରାଜନ ।
ତେଣୁକରି ଆମ୍ଭପ୍ରତି ପ୍ରସନ୍ନ ହୋଇଣ
ଆମ୍ଭମାନଙ୍କୁ ଆଜିଠୁଁ କର ହେ ପାଳନ ।
ଅନାସକ୍ତ, ସମଦୃଷ୍ଟି ସମ୍ପର୍ଣ୍ଣ ରାଜନ
ଅନୁସରଣ କରିଣ ଉପସ୍ଥିତ କର୍ମ,
ମହାରାଜା ଭଗୀରଥ ପ୍ରଜାଗଣଙ୍କର
ପ୍ରାର୍ଥନା ଶୁଣିଣ ନେଲେ ତାଙ୍କ ରାଜ୍ୟଭାର ।
ଭଗୀରଥଙ୍କର ପିତୃପିତାମହଗଣ
ଅଶ୍ୱମେଧ ଯଜ୍ଞ-ଅଶ୍ୱ ଖୋଜିବା କାରଣ ।
ପୃଥିବୀ ଖନନ କରି ପାତାଳେ ଗମନ
କପିଳଙ୍କ କୋପାନଳେ ସର୍ବେ ଦଗ୍ଧ ଜାଣ ।
ଗଙ୍ଗାସ୍ରୋତ ତେତେବେଳେ ନ ବହେ ମହୀରେ
ପତିତ ପାବିନୀ ଗଙ୍ଗାଥିଲେ ସ୍ୱର୍ଗପୁରେ ।
ଯେଉଁଦିନ ଭଗୀରଥ ଶୁଣନ୍ତି ଏମନ୍ତ
ପୃଥିବୀରେ ନ ବହିଲେ ଗଙ୍ଗାଙ୍କର ସ୍ରୋତ,
ତାହାଙ୍କର ପିତୃଗଣ ନୋହିବେ ମୁକତ
ନରକରେ ଘାଣ୍ଟି ହେଉଥିବେ ଅବିରତ,

ସେହିଦିନ ଜାଣ ସେହି ଭଗୀରଥ ନୃପ
ଗଙ୍ଗାକୁ ଆଣିବାପାଇଁ କଲେ ସଂକଳପ ।
ମନ୍ତ୍ରୀଗଣଙ୍କର ହସ୍ତେ ରାଜ୍ୟଭାର ଦେଇ
ତପସ୍ୟାର୍ଥ ବନେ ଯାନ୍ତି ସେହି ନରସାଇଁ ।
ବହୁକାଳ କଟିଯାଏ ତପସ୍ୟା ଆଚରି
ବ୍ରହ୍ମାଙ୍କୁ ସନ୍ତୋଷ କଲେ ପାଦ ପୂଜା କରି ।
ତହୁଁ ମହେଶଙ୍କ ପାଦେ ପଡ଼ନ୍ତି ରାଜନ
ତପସ୍ୟାରେ କଟିଯାଏ ଯୁଗ ଯୁଗ ମାନ ।
ମହେଶ ସନ୍ତୁଷ୍ଟ ହୋଇ ବରଦାନ କଲେ
ଗଙ୍ଗାଧାର ପୃଥିବୀକୁ ଗଢ଼େ ଧୀରେ ଧୀରେ ।
ଜହ୍ନୁ ମୁନି ତହିଁ ବ୍ରହ୍ମ ସମାଧିରେ ଥିଲେ
ଗଙ୍ଗାଜଳ ପରଶନ୍ତେ ଚଳୁକରି ଦେଲେ ।
ଜହ୍ନୁମୁନିଙ୍କୁ ସନ୍ତୁଷ୍ଟ କରି ଭଗୀରଥ
ଧରାତଳେ ବୁହାଇଲେ ଜାହ୍ନବୀଙ୍କ ସ୍ରୋତ ।
ତେଣୁ ସୁରଧୁନି ଗଙ୍ଗା ଭାଗୀରଥୀ ନାମେ
ପରିଚିତ ହୋଇଛନ୍ତି ଏହି ଧରାଧାମେ ।
ସଗର ପୁତ୍ରମାନଙ୍କୁ ଉଦ୍ଧାର କରିଣ
ଭଗୀରଥ ଯଶୋରାଶି ଏ ଧରା ତଳେଣ,
ପ୍ରଚାର କରୁଅଛନ୍ତି ଯୁଗ ଯୁଗ ଧରି
ଭଗୀରଥ ଯଶ କିଏ ବାକ୍ୟେ ବର୍ଣ୍ଣିପାରି ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଗଙ୍ଗା ଅବତରଣ ବର୍ଣ୍ଣନେ**
**ନାମ ଏକସ୍ତରୀ ସର୍ଗଃ**



## ବାସ୍ତରୀ ସର୍ଗଃ
## ଶିଖିଧ୍ୱଜ ବିଳାସ

ବଶିଷ୍ଠ କହିଲେ ରାମ ଭଗୀରଥ ପରି
ଆତ୍ମାରେ ନିଶ୍ଚଳ ଦୃଷ୍ଟି ସୁସ୍ଥାପନ କରି,
ସମଜ୍ଞାନର ଆଶ୍ରୟ ନେଇଣ ଶ୍ରୀରାମ
ଉପସ୍ଥିତ କର୍ମ କରୁଥାଅ ସଂପାଦନ ।
ବୈଭବ ତେଜିଣ ମନ ପକ୍ଷୀକୁ ତୁମର
ହୃଦୟେ ନିରୁଦ୍ଧ, ଶାନ୍ତ କରି ରଘୁବୀର,
ଶିଖିଧ୍ୱଜ ମହାରାଜା ସଦୃଶ ଶ୍ରୀରାମ
ଆତ୍ମାରେ ନିଶ୍ଚଳ ଭାବେ ରହ ବିଦ୍ୟମାନ ।
ଶ୍ରୀରାମ କହନ୍ତି ଶୁଣ ଆହେ ଗୁରୁଦେବ
ରାଜା ଶିଖିଧ୍ୱଜ କିଏ ସେ କଥା କହିବ ।
କେଉଁ କାର୍ଯ୍ୟ କରି ଲଭିଲେ ସେ ପରଂପଦ
କହି, ଜ୍ଞାନ ଚକ୍ଷୁ ଫେଡ଼ିକର ମୋତେ ବୋଧ ।

କହନ୍ତି ବଶିଷ୍ଠ ରାମ ବିଗତ କଳ୍ପରେ
ଶିଖିଧ୍ୱଜ ନରପତି ଜନ୍ମ ଲଭିଥିଲେ ।
ସପତ୍ନୀକ ହୋଇ ରାଜା କରେ ରାଜପଣ
ସେ କଳ୍ପ ଦ୍ୱାପରଯୁଗ କଥା ଏହାଜାଣ ।
ଏହି କଳ୍ପରେ ସେମାନେ ହୋଇବେ ଜନମ
ବିବାହ ସୂତ୍ରରେ ପୁଣି ହୋଇବେ ବନ୍ଧନ ।
ଶ୍ରୀରାମ କହନ୍ତି ଶୁଣ ଆହେ ମୁନିବର
ବିଗତ କାଳରେ ଯାହାଘଟେ ଯେ ପ୍ରକାର ।
ଏହି କଳପରେ ପୁଣି ଆଗାମୀ କଳ୍ପରେ
ସେ ସବୁ ହେ ସେହିପରି ହେବ ଅବିକଳେ ।
ତାହାର କାରଣ ମୁନି କହନ୍ତୁ ବୁଝାଇ
ଯେସନେ ସନ୍ଦେହ ମୋର ଯାଏ ଦୂରହୋଇ ।
ବଶିଷ୍ଠ କହନ୍ତି ଜଗତର ସୃଷ୍ଟିପାଇଁ
ପଦ୍ମଯୋନି ବ୍ରହ୍ମା ଯେଉଁ ସଂକଳ୍ପ ଧରଇ
ତାହାର ଅମୋଘ ପ୍ରଭାବରୁ ଜାଣ ରାମ
ଏହିପରି ଘଟିବାହିଁ ଅଟଇ ପ୍ରମାଣ ।
ଯେପରି ଆମ୍ବଗଛରେ ବହୁ ଆମ୍ବ ଫଳେ
ବର୍ଷକୁ ବର୍ଷ ଯେପରି ଫଳୁଥାଏ ହେଲେ ।
ଭବିଷ୍ୟତ ସୃଷ୍ଟିକାଳେ ମଧ୍ୟ ସେହିପରି
ଅବିକଳ ଗଛ ଫଳୁଥାଏ ପୂର୍ବପରି ।
ଶିଖିଧ୍ୱଜଙ୍କ ସଂସାର ମଧ୍ୟ ସେହିପରି
ଚଳୁଥିଲା ଆହେ ରାମ ସେ ନିୟମ ଧରି ।
ପୂର୍ବେ ଅଷ୍ଟମ ମନୁଙ୍କ ରାଜତ୍ୱ କାଳରେ
ଦ୍ୱାପର ଯୁଗରେ, ଉଜ୍ଜୟିନୀ ନଗରରେ ।
ଶିଖିଧ୍ୱଜ ନାମେ ଏକ ବିଭବ ସମ୍ପନ୍ନ
ରାଜା ରାଜତ୍ୱ କରନ୍ତି ହେ ରଘୁନନ୍ଦନ ।
ଶମ, ଦମ, କ୍ଷମା ପୁଣ ଉଦାରତା ଗୁଣ
ଧୀରତା ଇତ୍ୟାଦି ଗୁଣେ ଥିଲେ ସେହୁ ପୂର୍ଣ୍ଣ ।
ପୁଣି ସେହୁଥିଲେ ସତସଙ୍ଗ ପରାୟଣ
ସଦାଚାରୀ, ଯଜ୍ଞଶାଳୀ, ବେଦନିଷ୍ଠ, ମୌନ
ଚୁଡ଼ାଲା ନାମ୍ନୀ ଅଟନ୍ତି ମହିଷୀ ତାଙ୍କର
ସକଳ ବିଷୟେ ଅନୁରୂପ ରାଜାଙ୍କର ।
କ୍ରମଶଃ ଯୌବନକାଳ ହୋଇଯାନ୍ତେ ଗତ
ଏକଦିନେ ସେମାନେ ଯେ ଭାବନ୍ତି ଏମନ୍ତ ।
କେବଣ ସେ ବସ୍ତୁ, ଯାହାଅଛି ଏ ସଂସାରେ
ଯା ଲଭିଣ ଜୀବ ଜନ୍ମ ମରଣରୁ ତରେ ।

ଏସନ ଭାବି ସେମାନେ ସ୍ଥିରକଲେ ମନ
ଭବ ବ୍ୟାଧି ନିବାରକ ଯା ଆଧାତ୍ମ୍ୟଜ୍ଞାନ ।
ଆତ୍ମଜ୍ଞାନ ଲାଭ ଜାଣ ଏକଇ କାରଣ
ସଂସାର ଦୁଃଖ ଯହିଁରେ ଚିର ନିବାରଣ ।
ଏହି କଥା ସ୍ଥିର କରି ସେ ରାଜ ଦମ୍ପତି
ଆତ୍ମଜ୍ଞାନ ଅନୁଧାନେ ହୋଇଗଲେ ବ୍ରତୀ ।
ଆତ୍ମତତ୍ତ୍ୱ ବିଶାରଦ ବ୍ୟକ୍ତିଙ୍କ ପାଶରେ
ଶାସ୍ତ୍ରାର୍ଥ ଶ୍ରବଣ କରି ଦିନ କଟାଇଲେ ।
ଆତ୍ମତତ୍ତ୍ୱ ବିଚାରରେ ନିରନ୍ତର ରତ
ଭାବନ୍ତି ସଂସାର ମୋହ କାହୁଁ ହେଲା ଜାତ ।
ଏହି ଶରୀର କେବଳ ଜଡ଼ବସ୍ତୁ ସିନା
"ମୁଁ ନୁହେଁ ଏହି ଶରୀର" ଏ ତାଙ୍କ ଭାବନା ।
ଶରୀରର ଅବୟବ କର୍ମେନ୍ଦ୍ରିୟ ମାନ
ସେମାନେ ସମସ୍ତେ ଜଡ଼ ଏକଥା ପ୍ରମାଣ ।
ମନ, ବୁଦ୍ଧି ଆଦିକରି ସମସ୍ତେ ତ ଜଡ଼
ତାଙ୍କୁ ଯେହୁ ନ ଚିହ୍ନଇ ସେହି ସିନା ମୂଢ଼ ।
ଯଦିଚ ମନ, ବୁଦ୍ଧିକୁ ସେହି ଅହଙ୍କାର
ପରିଚାଳିତ କରୁଣ ଥାଏ ନିରନ୍ତର ।
ତଥାପି ସେ ମୃତ ଦେହ ପରି ଅଚେତନ
ସାରହୀନ ବସ୍ତୁ ସେହୁ ଅଶାନ୍ତି କାରଣ ।
ପ୍ରାଣଠାରୁ ଅବିଚ୍ଛିନ୍ନ ଏହି ଜୀବ ଜାଣ
ଚିଦାଭାସ ଯୋଗୁଁ ଅଟେ ଅଧସ୍ତ ସମାନ ।
ସ୍ୱୟଂ ଯେ ଅଧସ୍ତ ବସ୍ତୁ କେତେବେଳେ ହେଲେ
ଚେତନ ହୋଇ ନ ପାରେ ଜାଣ ରଘୁବୀରେ ।
ଜୀବ ମଧ୍ୟ ତାହା ଘେନି ଅଟେ ଅଚେତନ
କେବଳ ଜୀବକୁ ଜାଣେ ବିଶ୍ୱ ଚଇତନ୍ୟ ।
ଚିତ୍‌ସ୍ୱରୂପ ଆତ୍ମାର ପ୍ରଭାବରୁ ଜାଣ
ଜୀବ ଜୀବିତ ରହଇ ହେ ରଘୁନନ୍ଦନ ।
ମିଥ୍ୟା ବିଷୟେ ତଦାତ୍ମ୍ୟଭାବ ଲାଭକରି
ସେ ଚିଦାତ୍ମା ପ୍ରତିଭାତ ହୁଏ ଜଡ଼ପରି ।
ଜଳ ଯୋଗେ ଅଗ୍ନି ଯଥା ତେଜେ ନିଜରୂପ
ଉପାଧିଯୋଗେ ଚିଦାତ୍ମା ହରାଏ ସ୍ୱରୂପ ।
ଚିଦାତ୍ମା ଦୃଶ୍ୟ ବିଷୟେ ଉନ୍ମୁଖ ହୋଇଣ
ଜଡ଼ାକୃତି ଧରିଥାଏ ଏକଥା ପ୍ରମାଣ ।
ନିଜକୁ ବିଷୟ ମଧ୍ୟେ ପରିବ୍ୟାପ୍ତ କରି
ଅବିଦ୍ୟା ଆବରଣକୁ ଧ୍ୱଂସ କରିପାରି ।

ତେତେବେଳେ ସେ ଚିଦାତ୍ମା ନିଜ ସ୍ୱରୂପରେ
ପ୍ରତିଷ୍ଠିତ ହୋଇ ରହିପାରେ ଅବାଧରେ ।
ଏହିପରି ଭାବୁ ଭାବୁ ଚୁଡ଼ାଳାର ଜାଣ
ଆତ୍ମତତ୍ତ୍ୱ ବିଷୟରେ ଜନ୍ମେ ବୋଧଜ୍ଞାନ ।
ସେତେବେଳେ ଏମନ୍ତ ସେ ଭାବନା କରଇ
ଆହା କି ସୌଭାଗ୍ୟ ମୋର ଆଜ ଉଦେହୋଇ ।
ଏକମାତ୍ର ଜ୍ଞେୟ ବସ୍ତୁ ଅଟଇ ଯେ ଆତ୍ମା
ବହୁକାଳପରେ ଆଜି ପାଇଲି ତା ପତ୍ତା ।
ଥରେ ମାତ୍ର ଏ ଆତ୍ମାକୁ ଯେ ଜନ ଜାଣିବ
ପରୁଷାର୍ଥରୁ କେବେ ହେଁ ଚ୍ୟୁତ ସେ ନୋହିବ ।
ମନବୁଦ୍ଧି ଇନ୍ଦ୍ରିୟାଦି ଯା ସବୁ ଅଛନ୍ତି
ଆତ୍ମଚିଦ୍ ବିଳାସକୁ ଖଣ୍ଡିତ କରନ୍ତି ।
ଏ ସଂସାରେ ସବୁ ମିଥ୍ୟା ଏବେ ମୁଁ ବୁଝୁଛି
ମହାଚିତ୍ତ-ମହାସତ୍ତା ଛଡ଼ା ନାହିଁ କିଛି ।
ଏ ମହାଚିତ୍ ଅଟଇ ନିଷ୍କଳଙ୍କ ଶୁଦ୍ଧ
ଅହଙ୍କାର ଚିହ୍ନମାତ୍ର ନାହିଁ ତାର ମଧ ।
ବିଶୁଦ୍ଧ ସଂବେଦନ ହିଁ ତାହାର ଆକୃତି
ଭୂବନାନନ୍ଦ ପରମ ଶିବଙ୍କ ମୂରତି ।
ଭୂମାନନ୍ଦରୁ କେବେହେଁ ନୁହେଁ ସେ ବିଚ୍ୟୁତ
ତେଣୁକରି ତାଁହାଙ୍କର ନାମଟି ଅଚ୍ୟୁତ ।
ଅଜ୍ଞାନର ମୂଳ ଯେଉଁ ଅବିଦ୍ୟାବରଣ
ତାହା ଏହାଠାରୁ ଅଟେ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ।
ତେଣୁକରି ଏହି ମହାଚିତ୍ ନିତ୍ୟୋଦିତ
ଏହି "ମହାଚିତ୍ ବ୍ରହ୍ମ" ରଟଇ ବେଦାନ୍ତ ।
ପରମାତ୍ମାରୂପେ ସେହୁ ହୁଅନ୍ତି କୀର୍ତ୍ତିତ
ଜ୍ଞାନ, ଜ୍ଞାତା, ଜ୍ଞେୟରୂପେ ସେହି ଯେ ବିଦିତ ।
ମହାଚିତ୍‌ଠାରୁ ଏହି ଯେ ତ୍ରିପୁଟୀ ଭାବ
ପୃଥକ ବସ୍ତୁ ନୁହଇ ଏହି ବାଣୀ ଧ୍ରୁବ ।
ସାକ୍ଷୀ ସ୍ୱରୂପେ ବିରାଜି ଏହି ମହାଚିତ
ତ୍ରିପୁଟକୁ ଚଇତନ୍ୟ କରଇ ପ୍ରଦତ୍ତ ।
ସେ ଚୈତନ୍ୟ ନ ଲଭିଲେ ଏ ତ୍ରିପୁଟୀ ଭାବ
ପରିସ୍ଫୁଟ ହେବା ଜାଣ ଅତି ଅସମ୍ଭବ ।
ଚିତ୍‌ରୂପ ଆତ୍ମା ମନବୁଦ୍ଧି ଆକାରରେ
ବିବର୍ତ୍ତିତ ହେଲେ ଏହି ବିଶ୍ୱ ତହୁଁ ସ୍ଫୁରେ ।
ଜଳରୁ ତରଙ୍ଗ ଯଥା ଲଭଇ ଜନମ
ଆତ୍ମା ସ୍ଫୁରଣରୁ ତଥା ଏ ବିଶ୍ୱ ଭୂବନ ।

ଜଗତ ବୋଲିଣ ଯାହା ପ୍ରସିଦ୍ଧ ଅଛଇ
ଏ ମହାଚିତର ରୂପାନ୍ତର ଜାଣ ସେହି ।
ଚିଦାତ୍ମାର ବିବର୍ତ୍ତନ ରୂପ ମହାଶକ୍ତି
ତାହାହିଁ ମାୟା, ନ ଜାଣେ ଏହା ମୂଢ଼ମତି ।
ଅଧିଷ୍ଠାନ-ଚୈତନ୍ୟର ସତ୍ତାରୁ ହିଁ ଜାଣ
ଅପୃଥକ ଅଟେ ସେହି ମାୟାଶକ୍ତି ପୁଣ ।
ସୁବର୍ଣ୍ଣ ଅଳଙ୍କାରର ଅଳଙ୍କାର ଭାବ
ବିନଷ୍ଟ ହୁଅନ୍ତେ ତାହା ଧରେ ସ୍ୱର୍ଣ୍ଣଭାବ ।
ତେସନ ଏ ଜଗତର ବିଲୟ ହୋଇଲେ
ମହାଚିତ ହିଁ ପ୍ରକାଶ ପାଇଥାଏ ଭଲେ ।
ଯେ ହେତୁରୁ ଏହି ମହାଚିତ ହିଁ କେବଳ
ନିଜକୁ ବୁଝଇ ଏହି ଜଗତ ଆକାର ।
ମନହିଁ କେବଳ ଯଥା ସ୍ୱପ୍ନ ସମୟରେ
ଜଳ, ତରଙ୍ଗ ସ୍ୱରୂପ ନାନାରୂପ ଧରେ
ଏହି ମହାଚିତୁ ଜନ୍ମେ ଯେ ସମଷ୍ଟି ମନ
ତନ୍ମଧ୍ୟରୁ ଏ ଜଗତ ହୁଅଇ ଉତ୍ପନ୍ନ ।
ସ୍ୱପ୍ନରେ କଳ୍ପିତ ସେହି ମାନସ ସାଗର
ଏହି ଚିଦାତ୍ମା ହିଁ ଅଟେ ତାର ରୂପାନ୍ତର ।
ଆତ୍ମାଛଡ଼ା ତାହାମଧ୍ୟେ ଅନ୍ୟ କିଛି ନାହିଁ
ମହାଚିତ ହିଁ ଜଗତ ଆକାର ଧରଇ ।
ତହିଁ ମଧ୍ୟେ ତାହା ବିନା ଅନ୍ୟ କିଛି ନାହିଁ
ଅହଂକାର ହିଁ କେବଳ ଏ ଖେଳ ଖେଳଇ ।
ଏହି ଅହଂଭାବ ଯେଣୁ ସର୍ବବ୍ୟାପୀ ହୋଇ
ଅନହଂ ରୂପେ ଯା କିଛି ପ୍ରତୀତ ହୁଅଇ,
ତାହା ମଧ୍ୟେ ଅଟେ ଏହି ଚିନ୍‌ମାତ୍ରା ଜାଣ
ଜନ୍ମ ମୃତ୍ୟୁ ତାର ତେଣୁ ନାହିଁ କଦାଚନ ।
ଅପରିଚ୍ଛିନ୍ନ ଅଟଇ ଯେଉଁ ଚିନ୍‌ମାତ୍ରା
ମହାକାଶ ରୂପେ ସର୍ବବ୍ୟାପୀ ଯାର ସତ୍ତା ।
ଅସମ୍ଭବ ଅଟେ ଜାଣ ତାହାର ବିନାଶ
ସୌଭାଗ୍ୟରୁ ମୋର ଭ୍ରମ ଯାଇଅଛି ନାଶ ।
ତାର ତହିଁ ଆଜ ମୁହିଁ ଲଭିଛି ନିର୍ବାଣ
ଆତ୍ମାକାଶେ ଦୃଶ୍ୟ ବୋଲି କିଛି ନାହିଁ ଜାଣ ।
ଅତୀବ ନିର୍ମଳ ସେହୁ ଅବାଧ ଅଚ୍ୟୁତ
ଅଜ, ଅକାରଣ ପୁଣି କାଳର ଅତୀତ ।
ସମସ୍ତ ହିଁ ଯେଣୁ ଅଟେ ଏହି ଆତ୍ମାକାଶ
ପ୍ରାଣୀକର୍ମ, କର୍ମଫଳ ଆଦିରେ ବିଶ୍ୱାସ,
ଆବର ସେହି ସବୁର ସାଧନର ଚେଷ୍ଟା
ଯାହା କିଛି କରାଯାଏ ସେ ସମସ୍ତ ବୃଥା ।
ଆତ୍ମାକାଶ ବିନୁ ତାହା ଅନ୍ୟ କିଛି ନୋହି
ସୁରା, ସର, ନର ଆତ୍ମା ଆକାଶ ବୋଲାଇ ।
କେବେହେଲେ ତେଣୁ ସେହି ନୁହଇ କୃତ୍ରିମ
ମାଟି କୁଣ୍ଡେଇ ଯେସନ ମାଟିର ସମାନ ।
ଦ୍ରଷ୍ଟା, ଦରଶନ, ଦୃଶ୍ୟମୟ ଏ ଜଗତ
ଅନ୍ୟ କିଛି ନୁହେଁ ତାହା ଚିନ୍ମାତ୍ର ବ୍ୟତୀତ ।
ଏକତ୍ୱ, ବହୁତ୍ୱ, ଅହଂ, ଅନହଂ ଏମାନ
କାହୁଁ ବା ସମ୍ଭବି ପାରେ ଏସନ ଯେ ଭ୍ରମ ?
ସ୍ୱକୀୟ ପରମାର୍ଥିକ-ରୂପ ପାଇ ମୁହିଁ
ଶାନ୍ତି ମୁଁ ଲଭିପାରିଛି ଏହା ମୁଁ ବୁଝଇ ।
ମୁକ୍ତି ସୁଖରେ ସନ୍ତୋଷ ଆସିଛି ମୋହର
ଭବବ୍ୟାଧି ସବୁ ମୋର ହୋଇଅଛି ଦୂର ।
ଶିଖିଧ୍ୱଜ ରାଜାଙ୍କର ମହିଷୀ ଚୁଡ଼ାଲା
ଏହିପରି ପରମାତ୍ମା ତତ୍ତ୍ୱ ଲାଭ କଲା ।
ଶରଦାକାଶ ସ୍ୱରୂପ ସୁନିର୍ମଳ ହୋଇ
ଶାନ୍ତ ଭାବରେ ବିରାଜମାନ ହେଲେ ସେହି ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଚୁଡ଼ାଲା ଉପାଖ୍ୟାନେ ଶିଖିଧ୍ୱଜ ବିଳାସ ବର୍ଣ୍ଣନେ ନାମ ବାସ୍ତରୀ ସର୍ଗଃ**



## ତେସ୍ତରୀ ସର୍ଗଃ
## ଚୁଡାଲା ପ୍ରବୋଧ

ଏ ଭାବେ ଚୁଡ଼ାଲା ଆତ୍ମଚିନ୍ତନ କରିଣ
ଆତ୍ମା ରାମଙ୍କୁ ପ୍ରାପତ ହୋଇଥିଲେ ଜାଣ ।
ରାଗ, ଦ୍ୱେଷ, ସୁଖଦୁଃଖ ଆଦି ଦ୍ୱନ୍ଦ୍ୱଭାବ
କ୍ରମେ ଅପସରି ଗଲେ ତାଙ୍କ ମନୁଁ ସର୍ବ ।
ପରମାତ୍ମା ପ୍ରାପ୍ତିରେ ତା ଅନ୍ତରାତ୍ମା ପୂର୍ଣ୍ଣ
ସକଳ ସନ୍ଦେହ ଜାଲ ହୋଇଗଲା ଛିନ୍ନ ।
ଭବ ସମୁଦ୍ରକୁ ସେହୁ କରି ଅତିକ୍ରମ
ଚେଷ୍ଟା ଶୂନ୍ୟ ଭାବେ ସଦା କଲେ ଅବସ୍ଥାନ ।
ଅନନ୍ତର ଶିଖିଧ୍ୱଜ ରାଜା ଏକଦିନ
ଧର୍ମପତ୍ନୀଙ୍କ ଅପୂର୍ବ ଶୋଭାନିରୀକ୍ଷଣ ।

ବିସ୍ମିତ ହୋଇ ତାହାଙ୍କୁ କହନ୍ତି ରାଜନ
ଏସନ ସୌନ୍ଦର୍ଯ୍ୟ ତବ ହୋଇଲା କେସନ ?
ଚନ୍ଦ୍ରୋଦୟେ ଧରାଧାମ ଶୋଭଇ ଯେସନ
ପୂର୍ଣ୍ଣଯୌବନ ଲଭିଣ ତୁମେ ଶୋଭାମାନ ।
ଅମୃତ କି ତୁମେ ରାଣୀ ! କରିଅଛ ପାନ
ପରମ ସାମ୍ରାଜ୍ୟ ଲାଭ ହୋଇଛି କି ତୁମ ?
ରସାୟନ ଯୋଗେ ଅବା କଲ ମନ୍ତ୍ର ସିଦ୍ଧି
ଯୋଗ ପ୍ରଭାବୁ କି ଅବା ଅମରତ୍ୱ ଲଭି ?
ହେ ପଦ୍ମଲୋଚନେ ମୋତେ କହିବ ଫିଟାଇ
କି କାରଣୁ ତୋର ତହିଁ ଜ୍ୟୋତି ବିକଶଇ ।
କହନ୍ତି ଚୂଡ଼ାଳା ତାହା ଶୁଣ ନରବରେ
ଅଜ୍ଞଜନ ଯେ ଦେହରେ ଆତ୍ମବୁଦ୍ଧି ଧରେ ।
ସେ ଦେହାତ୍ମବୁଦ୍ଧି ତ୍ୟାଗ କରିଦେଇ ମୁହିଁ
ତତ୍ତ୍ୱଜ୍ଞାନେ ବ୍ରହ୍ମଙ୍କୁ ହିଁ ଆତ୍ମା ଜାଣିଲଇଁ ।
ତେଣୁ ଏ ରୂପଶ୍ରୀ ମୋର ହୋଇଛି ଉଦିତ
ମନ୍ତ୍ର ରସାୟନାଦିର ନାହିଁ ସେ କର୍ତ୍ତୃତ୍ୱ ।
ଅସତ୍ୟ ବସ୍ତୁ ସକଳ ତ୍ୟାଗ କରି ମୁହିଁ
ଯାହା ସତ୍ୟ ବସ୍ତୁ ତାହା ଲାଭ କରିଛଇଁ ।
ସେ କାରଣୁ ମୁହିଁ ଏହିପରି ଶ୍ରୀ ସମ୍ପନ୍ନ
ହୋଇ ପାରିଅଛି ବୋଲି ଜାଣ ହେ ରାଜନ ।
ହୃଦୟ ଗଗନେ ବ୍ରହ୍ମ ଦରଶନ କରି
ଅନ୍ୟ ସମସ୍ତ ସମ୍ଭୋଗ ଅଛି ମୁଁ ପାଶୋରି ।
ମୋ ଶରୀର ଏହି ଗୃହେ ରହିଲେ ହେଁ ମିତ
ପରିପୂର୍ଣ୍ଣ ଆତ୍ମାରେ ମୁଁ ବିରାଜେ ସର୍ବତ୍ର ।
ଏହି ସମଗ୍ର ବିଶ୍ୱର ପ୍ରଭୁ ଅଟେ ମୁହିଁ
ତଥାପି ମୋର କୌଣସି ରୂପରେଖ ନାହିଁ ।
ଏହିପରି ଆତ୍ମବୋଧେ ହୋଇ ଉପନୀତ
ପରମ ସନ୍ତୋଷ ମୋର ହୋଇଛି ପ୍ରାପତ ।
ମୁଁ ଆଉ ନୁହେଁ ସେ ମୁହିଁ ଜାଣ ହେ ରାଜନ
ଅଥଚ ମୁଁ ସବୁ ଏହା ଭଲକରି ଜାଣ ।
ଏହିପରି ଆତ୍ମଜ୍ଞାନେ ହୋଇ ପ୍ରତିଷ୍ଠିତ
ଏତାଦୃଶ ରୂପଶ୍ରୀ ମୁଁ ହୋଇଛି ପ୍ରାପତ ।
ସୁଖ, ଦୁଃଖ ଯାହାକିଛି ହେଲେ ଉପସ୍ଥିତ
ସମଭାବେ ରହେ, ସଦା ସନ୍ତୋଷ ମୋ ଚିତ୍ତ ।
ଇନ୍ଦ୍ରିୟ ଯୋଗୁଁ ଯା ସବୁ କରଇ ଦର୍ଶନ
ସେହିସବୁ ଦୃଶ୍ୟାବଳି ଅତି ଅକିଞ୍ଚନ ।
ଏହାଜାଣି ପାରି ମୁହିଁ ଏ ଗଗନଠାରୁ
ଅଧିକ ନିର୍ମଳ ହୋଇ ପାରିଛି ହେ ଗୁରୁ ।
ଏହିସବୁ କାରଣରୁ ଆହେ ପ୍ରାଣନାଥ
ଏହି ରୂପଶ୍ରୀ ମୋ ହୋଇଅଛି ଅଭ୍ୟୁଦିତ ।
ବଶିଷ୍ଠ କହନ୍ତି ଶୁଣ ଆହେ ରଘୁବୀର
ଚୂଡ଼ାଳା ମହିଷୀ ଯେବେ ଭାଷିଲେ ଏ ଗୀର ।
ଆତ୍ମାବୋଧେ ସମାସୀନା ଥିଲେ ସେ ସେକାଳେ
କିନ୍ତୁ ଶିଖିଧ୍ୱଜ ତାହାବୁଝି ନ ପାରିଲେ ।
ହାସ୍ୟ କରି ମହିଷୀଙ୍କୁ ବୋଲନ୍ତି ଏସନ
ଏପରି ପ୍ରଳାପ କରୁଅଛ କି କାରଣ ।
ଏଥିପାଇଁ ତୁମ ଦୋଷ ନ ଧରୁଛି ମୁହିଁ
ତୁମ୍ଭ ବୁଦ୍ଧି ପରିପକ୍ୱ ଏବେ ସୁଦ୍ଧା ନୋହି ।
ଯେଉଁ ବାକ୍ୟବଳେ ସବୁ ବିଷୟର ଅର୍ଥ
ଅନ୍ୟମାନେ ବୁଝିବାକୁ ହୁଅନ୍ତି ସମର୍ଥ ।
ସେପରି ବାକ୍‌ପଟୁତା ତୁମ୍ଭ ଯେଣୁ ନାହିଁ
ଏତେକ ପ୍ରଳାପେ ମୁହିଁ ଆଶ୍ଚର୍ଯ୍ୟ ନୁହଇ ।
ଦେଖ, ଆକୃତି ସମ୍ପନ୍ନ ବସ୍ତୁପାଏ ଶୋଭା
ଆକୃତି ହୀନ, ଶୂନ୍ୟ କି ହୁଏ ମନ ଲୋଭା ?
ନାହିଁ ମୋ ଶରୀର, ମୁହିଁ ଅନ୍ୟରୂପେ ରହି
କିଛି ନୁହେଁ ପୁଣି ମୁହିଁ ସର୍ବରୂପ ହୋଇ ।
ଏପରି ପ୍ରଳାପ କରି ବସିବ ଯେ ଜନ
ସେଥିରେ କିପରି ଶୋଭା ହୋଇବ ବର୍ଦ୍ଧନ ?
ଯାହାକିଛି ଦୃଶ୍ୟ ବସ୍ତୁ ଅଛି ଏ ସଂସାରେ
ସେମାନଙ୍କୁ ଦେଖୁନାହିଁ ଯେହୁ କଦାକାଳେ ।
ଆବର ଅଦୃଶ୍ୟ ବସ୍ତୁ ଯା କିଛି ଅଛଇ
ତାହାକୁ ହିଁ ଦରଶନ କରୁଥାଇ ସେହି ।
ଏପରି ବାକ୍ୟକୁ ରାଣୀ ପ୍ରଳାପ ବ୍ୟତୀତ
ଅନ୍ୟ କେଉଁ ଭାଷାରେ ତା ହୋଇବ ବ୍ୟକତ ?
ହେ ସୁନ୍ଦରି ! ଏଥିପାଇଁ କହୁଅଛି ମୁହିଁ
ମୁଗଧ ସ୍ୱଭାବସମ୍ପନ୍ନା ହୋଇଅଛୁ ତୁହି ।
ଏହା କହି ଶିଖିଧ୍ୱଜ ଅଟ୍ଟହାସ କରି
ସ୍ନାନପାଇଁ ଅନ୍ତଃପୁରୁ ଆସନ୍ତି ବାହାରି ।
ମନକ୍ଷୁନ୍ନ କରି ତହୁଁ ଚୂଡ଼ାଳା ମହିଷୀ
ଏପରି ଭାବନା କରିଲେକ ତହିଁ ବସି ।
ଯେଣୁ ଆତ୍ମାକୁ ଚିହ୍ନିବା ପାଇଁକି ଅକ୍ଷମ
ମୋ ଉକ୍ତିର ମର୍ମ ନ ବୁଝନ୍ତି ଏ ରାଜନ ।

ରାଜ ମହିଷୀ ଚୁଡ଼ାଲା ଏହାପରେ ରାମ
ଆକାଶଚାରୀ ହେବାକୁ ବଳାଇଲେ ମନ ।
ଖେଚରତ୍ୱ ସିଦ୍ଧିପାଇଁ ଅନୁକୂଳ ଯୋଗ
ସାଧନେ ପ୍ରବୃତ୍ତ ହେଲେ ତେଜି ସବୁ ଭୋଗ ।
ଅଣିମା ଲଘିମା ଆଦି ଅଇଶ୍ୱର୍ଯ୍ୟ ମାନ
ସୁଦୃଢ଼ ଅଭ୍ୟାସ ବଳେ ଲଭିଲେ ସେ ଜାଣ ।
କେତେବେଳେ ଆକାଶରେ କରେ ବିଚରଣ
କେବେ ସାଗର ଗର୍ଭେ ସେ ରହନ୍ତି ବୁଡ଼ିଣ ।
କେତେବେଳେ ସେହୁ ପୁଣି ଅଦୃଶ୍ୟ ଭାବରେ
ବିଚରଣ କରୁଥାଏ ଏହି ଧରାତଳେ ।
ଯଦିଚ ଏପରି ସେହୁ ସର୍ବତ୍ର ବୁଲନ୍ତି
ତିଳେ ହେଲେ ସ୍ୱାମୀ ପାଶୁ ଅଲଗା ନ ଥାନ୍ତି ।
ଐଶ୍ୱର୍ଯ୍ୟ ବଳରେ ସେହୁ ସକଳ ପ୍ରାଣୀର
ଭାଷା ବୁଝିପାରୁଥିଲେ ସେହି ନାରୀବର ।
ସୁରାସୁର, ନାଗ, ବିଦ୍ୟାଧର, ସିଦ୍ଧଗଣ
ଅପ୍‌ସରାଗଣଙ୍କ ସହ କଥୋପକଥନ ।
କରି ପାରୁଥିଲେ ସେହୁ ଭ୍ରମଣ କାଳରେ
ସିଦ୍ଧଯୋଗୀଙ୍କ ଅସାଧ୍ୟ କିବା ମହୀତଳେ ।
ବହୁବାର ଆତ୍ମଜ୍ଞାନ ଉପଦେଶମାନ
ଶିଖିଧ୍ୱଜ ରାଜାଙ୍କୁ ସେ କରନ୍ତି ପ୍ରଦାନ ।
ତଥାପି ସେ ରାଜା ତହୁଁ କିଛି ନ ବୁଝନ୍ତି
ତାଙ୍କର ରାଣୀ ପାଗଳ ହୋଇଛି ଭାବନ୍ତି ।
ବାଲ୍ୟ ଚପଳତା ହେତୁ ଏସବୁ ଘଟଇ
ରାଜାମନେ ଏ ଧାରଣା ଅଟଳ ରହଇ ।
ଶ୍ରୀରାମ ପୁଚ୍ଛନ୍ତି ଦେବ ଚୁଡ଼ାଳାର ସମ
ସିଦ୍ଧ ଯୋଗିନୀର ଏହି ଉପଦେଶମାନ,
ଶିଖିଧ୍ୱଜ ରାଜନଙ୍କୁ ନ କରେ ଉଦ୍‌ବୁଧ
ଅନ୍ୟମାନେ ତେବେ କାହୁଁ ହେବେ ବା ପ୍ରବୁଦ୍ଧ ?
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଜ୍ଞାନ ପାଇଁ ଗୁରୁ ଉପଦେଶ ଲୋଡ଼ା ଜାଣ ।
ଶାସ୍ତ୍ରର ନିର୍ଦ୍ଦେଶ ଏହା ହୋଇଲେ ହେଁ ରାମ
ଅନଧିକାରୀ ତା ପାଇଁ ନୁହଇ ଭାଜନ ।
ଗୁରୁଠାରୁ ଜ୍ଞାନ ଲାଭ କରିବା ସାମର୍ଥ୍ୟ
ଅନଧିକାରୀର ନାହିଁ ଜାଣ ରଘୁନାଥ ।
ବଳାତ୍କାରେ ତାଙ୍କ ଜ୍ଞାନ ଦୃଷ୍ଟି ଉନ୍ମୋଚନ
କରି କି ପାରିବେ ରାମ କେହି ଗୁରୁଜନ ?
ସାଧନ ଚତୁଷ୍ଟୟ ଯା ହୋଇଅଛି ସିଦ୍ଧ
ଜ୍ଞାନ ଲାଭ ପାଇଁ ଯୋଗ୍ୟ ତା ବୁଦ୍ଧି ବିଶୁଦ୍ଧ ।
ନିଷ୍କାମ କରମ, ଶାସ୍ତ୍ରଜ୍ଞାନ ହେ ଶ୍ରୀରାମ
ଆବର ପୂଣ୍ୟଶାଳିତା ଆଦି ଗୁଣମାନ,
ଆତ୍ମଜ୍ଞାନ ଲାଭ ପାଇଁ ସର୍ବେ ଅସମର୍ଥ
ବିଶୁଦ୍ଧ ବୁଦ୍ଧି ହିଁ ତାହାପାଇଁ ଯେ ସମର୍ଥ ।
ସର୍ପ ଛଡ଼ା ଅନ୍ୟକେହି ସର୍ପର ଚରଣ
ଜାଣି ନ ପାରନ୍ତି ଯଥା ଆହେ ରଘୁରାଣ ।
ଆତ୍ମାଛଡ଼ା ଅନ୍ୟ କେହି ଏ ଆତ୍ମାକୁ ପୁଣ
ଜାଣିବାକୁ କେବେହେଲେ ନୁହଁନ୍ତି ସକ୍ଷମ ।
ଆତ୍ମଜ୍ଞାନ ଲାଭପାଇଁ ଆହେ ଗୁରୁଦେବ
ଏହି ନିୟମ ହିଁ ଯଦି ଆବଶ୍ୟକ ହେବ ?
ତାହାହେଲେ ଗୁରୁ ଉପଦେଶ ତା କାରଣ
କିପରି କୁହାଯିବ ଯା ନ ବୁଝେ ମୋ ମନ ।
ବଶିଷ୍ଠ ବୋଲନ୍ତି ରାମ ତାହା ଏବେ ଶୁଣ
ବିନ୍ଧ୍ୟାଚଳ ଦେଶେ ଥାଏ ବଣିକ କୃପଣ ।
ତୃଣ ଆଚ୍ଛାଦିତ ସ୍ଥାନେ ତାର ରଘୁଈଶ
ଏକ କପର୍ଦ୍ଦକ ପଡ଼ି ହୁଅଇ ଅଦୃଶ୍ୟ ।
ତିନିଦିନ ପର୍ଯ୍ୟନ୍ତ ସେ ବଣିକ କୃପଣ
ତାର ଅନୁସନ୍ଧାନରେ ମାତି ରହେ ଜାଣ ।
ଖୋଜୁ ଖୋଜୁ ପାଇଲା ସେ ରତ୍ନ ଚିନ୍ତାମଣି
ତା ଦାରିଦ୍ର୍ୟ ହଟିଯାଏ ତେଣୁ ରଘୁମଣି ।
ନିଷ୍ଠାସହ ପାଳି ଗୁରୁ ଉପଦେଶମାନ
ପରୋକ୍ଷ ଜ୍ଞାନ ପାଇଁ କି କଲେ ଅନ୍ୱେଷଣ ।
ଅପରୋକ୍ଷ ଆତ୍ମଜ୍ଞାନ ହୁଏ ଉପଲବ୍ଧ
ନିଷ୍ଠା ଅଭ୍ୟାସର ଫଳ ଏ ରଘୁ-ସମ୍ପଦ ।
କିନ୍ତୁ ଗୁରୁ ଉପଦେଶ ବିନୁ ଆତ୍ମଜ୍ଞାନ
ଉଦିତ ନୁହଇ କେଭେଁ କୌଶଲ୍ୟାନନ୍ଦନ ।
କପର୍ଦ୍ଦକ ଅନ୍ୱେଷଣ ନ କରି କେ ଜନ
ଚିନ୍ତାମଣି ଲଭିବାକୁ ହେବ ବା ଭାଜନ ?
ଆସକ୍ତି ବଶରୁ ଯଦି ବଣିକ କୃପଣ
କପର୍ଦ୍ଦକ ପାଇଁ କରି ନ ଥାନ୍ତା ସନ୍ଧାନ ।
କେବେହେଲେ ତାର ରତ୍ନ ଚିନ୍ତାମଣି ପ୍ରାପ୍ତି
ହୋଇ ପାରି କି ଥାଆନ୍ତା କହ ରଘୁପତି ?

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଚୁଡ଼ାଲା ଉପାଖ୍ୟାନେ ଚୁଡ଼ାଲା ପ୍ରବୋଧ**
**ବର୍ଣ୍ଣନେ ନାମ ତେସ୍ତରୀ ସର୍ଗଃ**

❑

## ଚଉସ୍ତରୀ ସର୍ଗଃ
## ଶିଖିଧ୍ୱଜ ବନଗମନ

ବଶିଷ୍ଠ ବୋଲନ୍ତି ରାମ କିଛି କାଳ ପରେ
ଶିଖିଧ୍ୱଜ ରାଜା ପୁତ୍ର-ବିୟୋଗ ଭୋଗିଲେ ।
ଶୋକଭରେ ମୋହାଚ୍ଛନ୍ନ ହୋଇ ସେ ରାଜନ
ଶାନ୍ତିଲାଭ ପାଇଁ ଆଚରନ୍ତି ଦେବାର୍ଚ୍ଚନ ।
ଗୋ, ସୁବର୍ଣ୍ଣ, ଭୂମିଦାନ ବ୍ରାହ୍ମଣଙ୍କୁ ଦେଲେ
ମନଶୁଦ୍ଧି ପାଇଁ ଚାନ୍ଦ୍ରାୟଣ ଆଚରିଲେ ।
ତୀର୍ଥ ପର୍ଯ୍ୟଟନେ, ଦେବ ଆଳୟ ଗମନ
କରିବା ପାଇଁ ଭ୍ରମଣ କରନ୍ତି ରାଜନ ।
କେଉଁଥିରେ ହେଲେ ଶାନ୍ତି ନ ପାଇ ରାଜନ
ଦିନେ ଚୁଡ଼ାଳାଙ୍କୁ ସେହୁ କହନ୍ତି ଏସନ ।
ରାଜ୍ୟ, ବଇଭବ ଭୋଗ ବହୁକାଳ ମୁହିଁ
ଭୋଗ କରିଅଛି ତାହା ଜାଣିଛ ତ ସହୀ ।
ଏବେ ଇଚ୍ଛା କରେ ବନେ କରିବି ଗମନ
ବନବାସୀ କି ନ କାଟେ ଦୁଃଖ ସୁଖମାନ ।
ବନବାସ ପାଇଁ ତେଣୁ ମୋର ଅଭିଳାଷ
ଏଥିରେ ଅନିଚ୍ଛା ତୁମେ ନ କର ପ୍ରକାଶ ।
ହେ ରାଜନ ଶୁଣ ଏବେ ମୋହର ବକ୍ତବ୍ୟ
ଜରାଗ୍ରସ୍ତ ହେଲେ ବନ ଗମନ କର୍ତ୍ତବ୍ୟ ।
ତବ ସଦୃଶ ଜନଙ୍କ ଅରଣ୍ୟ ଗମନ
ଉଚିତ ନୁହଇ କେତେବେଳେ ହେ ରାଜନ ।
ତେଣୁ ଆହେ ମହାରାଜ ! ତବ ପ୍ରସ୍ତାବରେ
ଅଭିଳାଷ ନ ଆସଇ ଯେତେ ଚିନ୍ତା କଲେ ।
ବନବାସ ପାଇଁ ରାଜା ଯେତେ ବୁଝାଇଲେ
ଚୁଡ଼ାଳା ତହିଁରେ ସନମତ ନ ହୋଇଲେ ।
ଚୁଡ଼ାଳାଙ୍କ ଅନିଚ୍ଛାକୁ ନ କରି ଭ୍ରୂକ୍ଷେପ
ବନ ଗମନେ ଉଦ୍ୟତ ହୋଇଲେ ସେ ନୃପ ।
ପତି ଅନୁରାଗା ଯେଣୁ ଚୁଡ଼ାଳା ମହିଷୀ
ତାଙ୍କ ସହ ଯିବାପାଇଁ ଜଣାଇଲେ ଆସି ।
ଏକ ଶଯ୍ୟାରେ ଶାୟିତ ଥିବାବେଳେ ଦିନେ
ରାତ୍ରକାଳେ ରାଜା ଏହା ବିଚାରନ୍ତି ମନେ ।
"ଦସ୍ୟୁମାନଙ୍କୁ ଦମନ କରିବାର ପାଇଁ
ନଗର ଭ୍ରମଣେ ଆଜ ମୁହିଁ ଚଳିବଇଁ ।
ଏହା ଭାବି ରାଜା ତେଜି ଆପଣା ନିବାସ
ଗଭୀର ଅରଣ୍ୟ ମଧ୍ୟେ ହୋଇଲେ ପ୍ରବେଶ ।
ମନ୍ଦର ପର୍ବତ ପ୍ରାନ୍ତେ କରନ୍ତି ନିର୍ମାଣ
ବସବାସ ପାଇଁ ପର୍ଣ୍ଣ କୁଟୀରେକ ପୁଣ ।
ସନ୍ଧ୍ୟା ଦେବାର୍ଚ୍ଚନା ବନ୍ଦନାଦି କର୍ମମାନ
କରିବାକୁ ଲାଗିଲେ ସେ ମହାରାଜା ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଶିଖିଧ୍ୱଜ ବନଗମନ ବର୍ଣ୍ଣନେ ନାମ ଚଉସ୍ତରୀ ସର୍ଗଃ ।**



## ପଞ୍ଚସ୍ତରୀ ସର୍ଗଃ
## ଚୁଡ଼ାଳା ଛଦ୍ମବେଶ

ନିଦରୁ ଉଠି ଚୁଡ଼ାଳା ନ ଦେଖି ରାଜନ
ଜାଣିଲେ ସେ କରିଛନ୍ତି ବନକୁ ଗମନ ।
ବାତାୟନ ପଥଦେଇ ଗଗନ ମାର୍ଗରେ
ରାଜାଙ୍କୁ ଭେଟିବା ପାଇଁ ରାଣୀ ଚଳିଗଲେ ।
ରାଜାଙ୍କର ବାସସ୍ଥାନ ଅଦୂରେ ରହିଣ
ସ୍ୱାମୀଙ୍କର ଭବିଷ୍ୟତ କରନ୍ତି ଚିନ୍ତନ ।
ରାଜାଙ୍କର ଭବିତବ୍ୟ ବିଷୟ ସକଳ
ପ୍ରତ୍ୟକ୍ଷ କରନ୍ତି ଧ୍ୟାନ କରି କିଛି କାଳ ।
ଜଡ଼ିତ ନ ହେବାପାଇଁ ସେ ସବୁ କର୍ମରେ
ରାଜାଙ୍କୁ ନ ଭେଟି ପୁଣି ଶୂନ୍ୟ ମାର୍ଗେ ଗଲେ
ଅନ୍ତଃପୁରେ ପୁଣି ଯାଇ ପ୍ରବେଶ ହୋଇଲେ
ଶଯ୍ୟାଶାୟୀ ହୋଇ ରାତ୍ରି କଟାଇଣ ଦେଲେ ।
ପରଦିନ ପ୍ରାତଃକାଳେ ଉଠି ମହାଦେଈ
ମନ୍ତ୍ରୀ ପାରିଷଦଗଣେ କହନ୍ତି ଡକାଇ ।
କାର୍ଯ୍ୟବଶେ ରାଜା ଯାଇଛନ୍ତି ଦେଶାନ୍ତରେ
ରାଜ୍ୟ ଚଳାଇବି ତାଙ୍କ ଅନୁପସ୍ଥିତିରେ ।
ଏତେ ବୋଲି ସର୍ବଦୃଷ୍ଟି ସମ୍ପନ୍ନ ହୋଇଣ
ରାଜକାର୍ଯ୍ୟ ସମ୍ପାଦନ୍ତି ମହିଷୀ ପ୍ରବୀଣ ।
ଏହିପରି ଅଷ୍ଟାଦଶ ବର୍ଷ ବିତିଗଲା
ବନମଧ୍ୟେ ଶିଖିଧ୍ୱଜ ଜରାକ୍ରାନ୍ତ ହେଲା ।
ସକଳ ବାସନା ତାଙ୍କ ହୁଏ ପରିପାକ
ଚୁଡ଼ାଳା ଦେଖେ ରାଜାର ଏ ଅବସ୍ଥାପାକ ।
ମନ୍ଦର ଗିରିର ସେହି କାନନ ପ୍ରଦେଶେ
ପତିଙ୍କ ପାଶେ ଚଳଇ ନଭପଥ ଦେଶେ ।
"ଏହି ମୋର ଧର୍ମପତ୍ନୀ ଚୁଡ଼ାଳା ବାଳିକା"
କାଳେ ରାଜା ଭାବିନେବେ ଏହା କରି ଶଙ୍କା ।

ଯେପରି ସେ ରାଜା ହେୟ ନ କରେ ତା ବୋଲ
ଏଥିପାଇଁ ଧରେ ଦ୍ୱିଜ ବାଳକ ଶରୀର ।
ରାଜାଙ୍କ ସମ୍ମୁଖେ ଯାଇ ହୁଏ ଉପସ୍ଥିତ
ରାଜା ତାଙ୍କୁ ଦେଖିକରି ହେଲେ ଆଚମ୍ବିତ ।
ମୂର୍ତ୍ତିମାନ ତପସ୍ୟା କି ପାଶେ ଉଭା ହୋଇ
ଆସିଅଛି ତାଙ୍କ ମନ ରଞ୍ଜିବାର ପାଇଁ ।
ବିପ୍ରବାଳକ ବୋଇଲ ହେ ରାଜର୍ଷି ଶୁଣ
ତୁମକୁ ମୋହର ଶତ ନମସ୍କାର ଜାଣ ।
ଶିଖିଧ୍ୱଜ କହୁଛନ୍ତି ହେ ଦେବ କୁମାର
କେଉଁଠାରୁ ଆଗମନ ହୋଇଛି ତୁମର ?
ଆପଣଙ୍କୁ ଦେଖି ମୁହିଁ ବଡ଼ ଆନନ୍ଦିତ
ବାକ୍ୟ ନାହିଁ ତାହା କରିବାକୁ ମୁଁ ବ୍ୟକତ ।
ଏହି ପାଦ୍ୟ, ଅର୍ଘ୍ୟ, ମାଲ୍ୟ କରିଣ ଗ୍ରହଣ
କୃତାର୍ଥ କରନ୍ତୁ ମୋତେ ତପସ୍ୱୀ ପ୍ରଧାନ ।
ବିପ୍ରକୁମାର ରୂପିଣୀ ଚୁଡ଼ାଳା କହଇ
ବହୁସ୍ଥାନ ଭ୍ରମି ଭ୍ରମି ଆସିଅଛି ମୁହିଁ ।
ଯେପରି ଅର୍ଚ୍ଚନା ମୋର କରିଲେ ଆପଣ
କାହିଁ ନ ପାଇଛି ଏହା ସତ୍ୟବୋଲି ମଣ ।
ହେ ସାଧୋ ! ଫଳ ଆକାଂକ୍ଷା ତେଜି ଦେଇକରି
କେବଳ କି ମୁକ୍ତି ପାଇଁ ତପସ୍ୟା ଆଚରି ?
ରାଜ୍ୟ ତେଜି ଯେଉଁ ବ୍ରତ ଧରିଛ ଆପଣ
ଅସିଧାର ମଣି ତାକୁ ହୁଅ ସାବଧାନ ।
ପାଳନ କର କି ନାହିଁ କହ ତପଚାରୀ ?
ଯେପରି ତପସ୍ୟା ତୁମ ନ ଯାଏ ଭୁଷୁଡ଼ି ।
କହୁଛନ୍ତି ଶିଖିଧ୍ୱଜ ଆହେ ଭଗବନ !
ଆପଣଙ୍କ ଅଲୌକିକ ଶୋଭା ଦରଶନ ।
ପାଇ ମୁଁ ବୁଝିପାରିଛି ଆପଣ ଦେବତା
ଜାଣି ପାରିଛ ତ ଦେବ ମୋ ସକଳ କଥା ।
ସେଥିରେ ବା କି ଆଶ୍ଚର୍ଯ୍ୟ ଅଛି ହେ ଗୋସାଇଁ
କିନ୍ତୁ ମୁଁ ନିଜକୁ ଭାଗ୍ୟବାନ ମଣୁଛଇଁ ।
କାହାର ପୁଅ ଆପଣ କହ ଚନ୍ଦ୍ରାନନ
ଆଉ ମଧ୍ୟ କହ ମୋତେ ଆପଣଙ୍କ ନାମ ।
କି ଉଦ୍ଦେଶ୍ୟେ ଆପଣଙ୍କ ଶୁଭ ଆଗମନ
ଦୟାକରି ତାହାସବୁ କରନ୍ତୁ ବଖାଣ ।
କହଇ ଦ୍ୱିଜବାଳକ ଶୁଣ ହେ ରାଜନ
ଏକଦିନ ଚଳିଯାଇ ବ୍ରହ୍ମାଙ୍କ ନନ୍ଦନ ।
ସୁମେରୁ ଗିରିର ଏକ ଗୁହାର ମଧ୍ୟେଣ
ତହିଁଯାଇ ହେଲେ ମୁନି ସମାଧି ମଗନ ।
କିଛି କାଳପରେ ତାଙ୍କ ସମାଧି ଭଗନ
ଚଉଦିଗେ ଚାହିଁ ମୁନି ଦେଖଇ ଏସନ ।
ତିଳୋତ୍ତମା, ରମ୍ଭା ଆଦି ଅପସରାଗଣ
ଜଳକ୍ରୀଡ଼ା କରୁଛନ୍ତି ନଦୀର ମଧ୍ୟେଣ ।
ସେହି ଅପସରାଙ୍କର ସୌନ୍ଦର୍ଯ୍ୟେ ମୋହିତ
ହୋଇକରି ମୁନିଙ୍କର ହୁଏ ବୀର୍ଯ୍ୟଚ୍ୟୁତ ।
କହୁଛନ୍ତି ଶିଖିଧ୍ୱଜ ଶୁଣ ଦ୍ୱିଜସୁତ
ସେହି ନାରଦ ମହର୍ଷି ଜୀବନ ମୁକତ ।
ଅନ୍ତରେ, ବାହାରେ ସେହି ଆକାଶ ସଦୃଶ
ସୁନିର୍ମଳ ଅଟନ୍ତି ସେ ଜାଣ ଦ୍ୱିଜଶିଷ୍ୟ ।
ତଥାପି ସେ କାମବଶ ହେଲେ ଧୈର୍ଯ୍ୟଚ୍ୟୁତ
ବଡ଼ ଆଶ୍ଚର୍ଯ୍ୟ ଏକଥା ଆହେ ଦ୍ୱିଜସୁତ ।
କହନ୍ତି ଦ୍ୱିଜବାଳକ ଆହେ ରାଜପତି
ସକଳ ପ୍ରାଣୀଙ୍କ ମଧ୍ୟେ ମାୟାର ବସତି ।
ଦେବତାମାନେ ମଧ୍ୟ ସେ ମାୟାର ଅଧୀନ
ଦ୍ୱୈତଭାବ ଜନମାଏ ସବୁରି ହୃଦେଣ ।
ଯେ ପର୍ଯ୍ୟନ୍ତ ନୋହିଛି ଏ ଦେହର ବିନାଶ
ତେତେକାଳଯାଏ ମଧ୍ୟ ତତ୍ତ୍ୱଜ୍ଞ ପୁରୁଷ,
ବେଳେ ବେଳେ ହୋଇଥାଏ ଦ୍ୱୈତ ଭାବାଧୀନ
ଅଜ୍ଞାନ ଜନଙ୍କ ପରି କରେ ଆଚରଣ ।
ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ ହେ ରାଜନ
ମାୟାକୁ ଜିତିବା ରାଜା କଠିନୁ କଠିନ ।
ଅଜ୍ଞ ଓ ବିଜ୍ଞଙ୍କ ମଧ୍ୟେ ଏହାହିଁ ପ୍ରଭେଦ
ଆସକ୍ତି ବଶରୁ ଅଜ୍ଞ ବିଷୟେ ଆବଦ୍ଧ ।
ତତ୍ତ୍ୱଜ୍ଞ ପୁରୁଷ ତହିଁ ନ ହୁଏ ମଗନ
କିନ୍ତୁ ବେଳେ ବେଳେ ଗୋଡ଼ ଖସିଥାଏ ଜାଣ
ଦେବର୍ଷି ନାରଦ କାଳକ୍ଷେପ ନ କରିଣ
ବିବେକ ବଳେ ଚିତ୍ତକୁ ସ୍ୱବଶ କରିଣ ।
ପାର୍ଶ୍ୱସ୍ଥ ଏକ କୁମ୍ଭରେ ସେ ରେତକୁ ନେଇ
ନିର୍ବିଘ୍ନରେ ରକ୍ଷାକଲେ ନାରଦ ଗୋସାଇଁ ।
ଯଥାକାଳେ ସେ କୁମ୍ଭରୁ ପୁତ୍ର ଜନମିଣ
ଶୁକ୍ଳପକ୍ଷ ଚନ୍ଦ୍ରପରି ହୁଏ ବିବର୍ଦ୍ଧନ ।
ଯଥା ସମୟେ ନାରଦ ତା ସଂସ୍କାର କଲେ
ସକଳ ଶାସ୍ତ୍ରର ଶିକ୍ଷା ତାଙ୍କୁ ପ୍ରଦାନିଲେ ।

କିଛିଦିନ ପରେ ସେହି ନାରଦ ମହର୍ଷି
ପୁତ୍ର ସହ ବ୍ରହ୍ମାଙ୍କର ପାଶେ ହେଲେ ଆସି ।
ପାଦବନ୍ଦନ କରିଣ କରନ୍ତି ଅର୍ଚ୍ଚନ
ପୁତ୍ର ମଧ୍ୟ ବ୍ରହ୍ମାପାଦ କରଇ ପୂଜନ ।
ସୁପ୍ରସନ୍ନ ହୋଇ ବ୍ରହ୍ମା ଆଶୀର୍ବାଦ ଦେଲେ
ତତ୍ତ୍ୱଜ୍ଞାନ ଦେଇ ତାଙ୍କୁ ସର୍ବଜ୍ଞ କରିଲେ ।
ମୁହିଁ ସେହି ମହାଋଷି ନାରଦଙ୍କ ସୁତ
କୁମ୍ଭନାମରେ ମୁହିଁ ଯେ ସଂସାରେ ବିଦିତ ।
କୁମ୍ଭରୁ ଜନମ ଯେଣୁ କୁମ୍ଭ ନାମ ମୋର
ଆତ୍ମପରିଚୟ ଜାଣ ଏହି ତ ମୋହର ।
ଆକାଶ ମାର୍ଗରେ ଆଜ ଭ୍ରମି ଭ୍ରମି ମୁହିଁ
ଆପଣଙ୍କୁ ଦେଖି ଏହିଠାକୁ ଆସିଲଇଁ ।
କହନ୍ତି ବାଲ୍ମିକୀ ମୁନି, ବଶିଷ୍ଠ ଏମନ୍ତ
କହୁଁ କହୁଁ, ସୂର୍ଯ୍ୟଦେବ ହେଲେ ଅସ୍ତମିତ ।
ସାୟଂକୃତ୍ୟ ସଂପାଦନ କରିବାର ପାଇଁ
ସଭାସଦ ଗଣ ନିଜ ନିଜ ପୁରେ ଯାଇ ।
ପରଦିବସରେ ସୂର୍ଯ୍ୟ ଉଠନ୍ତେ ଆକାଶ
ସଭା ମଣ୍ଡନ କରନ୍ତି ସକଳ ସଦସ୍ୟ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଚୁଡ଼ାଳା ଛଦ୍ମବେଶ ବର୍ଣ୍ଣନେ**
**ନାମ ପଞ୍ଚସ୍ତରୀ ସର୍ଗଃ**



## ଛଅସ୍ତରୀ ସର୍ଗଃ

## ଶିଖିଧ୍ୱଜଙ୍କୁ ଜ୍ଞାନ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଏ ବଚନ ଶୁଣି ସେହି ଦ୍ୱିଜ ବାଳକର ।
ରାଜା ଶିଖିଧ୍ୱଜ ପୁଣି କହନ୍ତି ବଚନ
ମୋର ପୂର୍ବ ସୁସଞ୍ଚିତ ଯେତେ ପୁଣ୍ୟଧନ ।
ତାହାବଳେ ଆପଣଙ୍କ ଶୁଭଆଗମନ
ହୋଇଅଛି, ନିଜକୁ ମୁଁ ମଣେ ଭାଗ୍ୟବାନ ।
ଆପଣଙ୍କ ବାକ୍ୟ ସୁଧା ଧାରା ପାନ କରି
ନିଜକୁ ପରମ ଧନ୍ୟ ମଣେ ବ୍ରହ୍ମଚାରୀ ।
ରାଜାଙ୍କର ଏ ବୟାନ ଚାଲୁଥିଲାବେଳେ
ବିପ୍ରପୁତ୍ର ବାଧାଦେଇ ଏମନ୍ତ କହିଲେ ।
ଏହିସବୁ କଥା ରାଜା ଏବେ ବନ୍ଦ କର
ମୁଁ ଯାହା ପଚାରୁଅଛି ଦିଅ ତା ଉତ୍ତର ।

ଆପଣ କିଏ ହେ ସାଧୋ ଏହି ବନସ୍ତରେ
କେତେଦିନ ହେଲା ବାସ କଲ ଏହିଠାରେ ।
କେବଣ କାରଣ ହେତୁ ଏଥିଅଛ ରହି ।
ତାହାସବୁ ମୋ ଆଗରେ କହ ହେ ବୁଝାଇ
କହନ୍ତି ରାଜନ ମୋର ନାମ ଶିଖିଧ୍ୱଜ
ସଂସାର ଭୟରେ ତେଜ୍ୟାକରି ମୋର ରାଜ୍ୟ ।
ଏହି ବନମଧ୍ୟେ ଏବେ ବାସ କରୁଛଇଁ
କଠୋର ତପସ୍ୟା ସତ୍ତ୍ୱେ କିଛି ଲାଭନାହିଁ ।
ପୂର୍ବେ ମୋ ରାଜ୍ୟରେ ଅବସ୍ଥାନ କଲାବେଳେ
ସତସଙ୍ଗ ଲାଭ ମୋର ହୁଏ ସଦାକାଳେ ।
ଏବେ ମୁଁ ତହିଁରୁ ଦ୍ୱିଜ ହୋଇଛି ବଞ୍ଚିତ
ତପସ୍ୟାର କିଛି ଫଳ ନୋହିଛି ପ୍ରାପତ ।
କହନ୍ତି ବିପ୍ରକୁମାର ଦୀନକର ମୁହିଁ
ପିତାମହ ପାଶେ ଯାଇ ପ୍ରଶ୍ନ ପୁଚ୍ଛିଲଇଁ ।
ଜ୍ଞାନ ଓ କର୍ମର ମଧ୍ୟେ କେଉଁଟିହେ ଦେବ
ଉତ୍ତମ ଅଟଇ ମୋତେ ବୁଝାଇ କହିବ ।
କହିଥିଲେ ପିତାମହ ଶୁଣ ଆରେ ବାବୁ
ଜ୍ଞାନ ହିଁ ଉତ୍ତମ ଏହା ମନେ ରଖିଥିବୁ ।
ଯେହେତୁ ଜ୍ଞାନ ପ୍ରଭାବେ କୈବଲ୍ୟ ପ୍ରାପତ
କର୍ମର ପ୍ରଭାବେ ମାତ୍ର ସ୍ୱର୍ଗସୁଖ ପ୍ରାପ୍ତ ।
ଜ୍ଞାନ ସାଧନରେ ଯେଉଁ ଜନ ଅସମର୍ଥ
କର୍ମର ବ୍ୟବସ୍ଥା ଜାଣ ତାହାଙ୍କ ନିମିତ୍ତ ।
ବାସନ ମୟ ଅଟନ୍ତି ଅଜ୍ଞ ବ୍ୟକ୍ତିଗଣ
ତେଣୁ ଲଭନ୍ତି ବାସନା କର୍ମଫଳ ମାନ ।
କିଛି ବାସନା ନ ଥାଏ ଜ୍ଞାନୀ ଜନଙ୍କର
ଲଭି ନ ପାରନ୍ତି ତେଣୁ କିଛି କର୍ମଫଳ ।
ଜଳସେଚନ ଅଭାବେ ଶୁଷ୍କ ଯଥା ଲତା
ବାସନା ବିହୁନେ କର୍ମ ଲଭେ ନିଷ୍ଫଳତା ।
ଭୂତ ଅଛି ବୋଲି ଯେହ୍ନୁ ମନେ କରିଥାଇ
ସେହି ଏକା ଭୂତ ଦେଖେ ଅନ୍ୟ ନ ଦେଖଇ ।
ଦୁଃଖ କଳ୍ପନା ମୂଳକ ବାସନା ଯାହାର
ସେହି ଅଜ୍ଞ ଭୋଗେ ଦୁଃଖ ଅନ୍ୟେ ଅଗୋଚର ।
ଜ୍ଞାନୀବ୍ୟକ୍ତି ଯେଉଁ କର୍ମମାନ କରିଥାଇ
ସେହି କର୍ମ ଶୁଭାଶୁଭ ଫଳ ଦିଏ ନାହିଁ ।
ଅଜ୍ଞ ଅବସ୍ଥାରେ ଜାଣ ସକଳ ବାସନା
ଅହଂକାର ରୂପେ ଦେଖା ଦେଇଥାଏ ସିନା ।

ଜ୍ଞାନୀ ବ୍ୟକ୍ତିଠାରେ ତାର ଅସ୍ତିତ୍ୱ ନ ଥାଇ
ମନ ମଧ୍ୟେ ଏ ବଚନ ରଖିଥିବୁ ତୁହି ।
ମରୁଭୂମି ମଧ୍ୟେ ଜଳାଶୟ ଯେଉଁପରି
ମୂର୍ଖତାରୁ ଏ ବାସନା ଜନ୍ମଲାଭ କରି ।
ସକଳ ବସ୍ତୁହିଁ ବ୍ରହ୍ମ ଏ ଭାବନା ବଳେ
ମୂର୍ଖତା ଯାହାର ଦୂର ହୋଇଥାଏ ହେଲେ ।
ଆଉତ ବାସନା ତାର କେଭେଁ ନ ଜନ୍ମଇଁ
ଏହି କଥା ମନେ ରଖିଥିବୁ ବାବୁ ତୁହି ।
ତେଣୁକରି ବାସନାକୁ ଯେବେ ତେଜିପାରେ
ଜନ୍ମ, ମୃତ୍ୟୁ ଭୋଗିବାକୁ ଜୀବକୁ ନ ପଡ଼େ ।
ଅବ୍ୟୟ ପଦକୁ ସେହୁ ତେଣୁ ଲଭିପାରେ
ପରମ ଶାନ୍ତି ତାହାକୁ ମିଳେ କାଳେ କାଳେ ।
ବାସନା ଯୁକ୍ତ ମନକୁ ଜ୍ଞେୟ ବୋଲି କହି
ବାସନା ବିହୀନ ମନଜ୍ଞାନ ଯେ ବୋଲାଇ ।
ସେ ଜ୍ଞାନ ସ୍ୱରୂପ ଯେବେ ହୋଇବ ଏ ଜୀବ
ଜନ୍ମ ମୃତ୍ୟୁର ଅଧୀନ କେଭେଁ ସେ ନୋହିବ ।
ଜ୍ଞାନ ସର୍ବୋତ୍ତମ ବୋଲି ପିତାମହ ମୋତେ
ପୂର୍ବେ କହିଥିଲେ ଏହା ହେଜ ରଖ ଚିତ୍ତେ ।
ଦଣ୍ଡ, କମଣ୍ଡଳୁ ପୁଣି ଆସନର ପାଇଁ
ଆସକ୍ତି ରଖିଚ କିମ୍ବା କହ ତପୀସାଇଁ ?
କିଏ ତୁମେ, କହ ପୁଣି କେଉଁଠୁ ଉଦ୍ଭୁତ
କେଉଁଠି ବିଲୀନ ହେବ ହେଜ ଏହି ତଥ୍ୟ ।
କି ପ୍ରକାରେ ଘଟିଥାଏ ବନ୍ଧନ, ମୁକତି
ଜ୍ଞାନୀଠାରୁ ଏହି ତତ୍ତ୍ୱ ବୁଝ ନରପତି ।
ସମଦୃଷ୍ଟି ସୁସମ୍ପର୍ଣ୍ଣ, ସାଧୁ ସହବାସ
ସାଧୁ ସେବାକରି ଚଳୁଥିଲେ ହେ ନରେଶ ।
ସାଧୁ ସହ ପ୍ରଶ୍ନୋତ୍ତର ଦ୍ୱାରା ଯେଉଁ ଜ୍ଞାନ
ମୁକ୍ତି ପ୍ରଦାୟକ ତାହା ଜାଣହେ ରାଜନ ।
ତପଶ୍ୱୈର୍ଯ୍ୟ ରୂପ ବହିର୍ମୁଖୀ ଚେଷ୍ଟା ତେଜି
ସାଧୁସତସଙ୍ଗ ସହ ସଦାରହ ମଜି ।
ତେବେଯାଇଁ ଜ୍ଞାନଲାଭ ହୋଇବ ତୁମର
ଜ୍ଞାନ ଲାଭରୁ ଫିଟିବ ମୁକତିର ଦ୍ୱାର ।
ବ୍ରାହ୍ମଣ କୁମାରଠାରୁ ଶୁଣି ଏ ବଚନ
ସାଶ୍ରୁ ନୟନରେ ରାଜା କହନ୍ତି ଏସନ
ଆହେ ଦେବବାଳ ! ବହୁକାଳ ପରେ ମୁହିଁ
ଆପଣଙ୍କ ଉପଦେଶ ଜ୍ଞାନ ଲଭିଲଇଁ ।
ମୂର୍ଖତା ବଶତଃ ଏତେ ଦିନ ଯାଏ ମୁହିଁ
ସାଧୁସଙ୍ଗ ତେଜି ଘୋର ବନସ୍ତେ ଅଛଇଁ ।
ଆପଣଙ୍କ ବାକ୍ୟ ଶୁଣି ଜ୍ଞାନଉଦେ ମୋର
କଲୁଷ ମୁକତ ହେଲି ସୌଭାଗ୍ୟ ବଶର ।
ଆପଣ ଅଟନ୍ତି ପିତା, ବନ୍ଧୁ, ଗୁରୁ ମୋର
ଶିଷ୍ୟଭାବେ ପାଦେ ତବ ପ୍ରଣତି ମୋହର ।
ଆହେ ବିଜ୍ଞବର ଏବେ ମୋତେ କୃପାକର
ଯେଉଁ ଜ୍ଞାନ ବଳେ ଶୋକଗ୍ରସ୍ତ ନୁହେଁ ନର ।
ଯାହା ପ୍ରାପ୍ତ ହୋଇ ମୁକ୍ତି ଲଭିବଇଁ ମୁହିଁ
ଆପଣଙ୍କ ମତେ ଯାହା ଭଲ ମୋର ପାଇଁ,
ସେହି ବ୍ରହ୍ମଜ୍ଞାନ ଦିଅ ମୋତେ ବ୍ରହ୍ମଚାରୀ
ଆତ୍ମଉତ୍ସର୍ଗ ମୁଁ କଲି ଶ୍ରୀପଦେ ତୁମ୍ଭରି ।
କହନ୍ତି ଦ୍ୱିଜ ବାଳକ ଶୁଣହେ ରାଜନ
ମୋ କଥା ଯେବେ ହୁଅଇ ବିଶ୍ୱାସ ଭାଜନ ।
ଯାହା ମୁଁ କହୁଛି ତାହା ଶୁଣ ମନଦେଇ
ନୋହିଲେ କହିବା ପାଇଁ ଇଚ୍ଛା ମୋର ନାହିଁ ।
କହୁଛନ୍ତି ଶିଖିଧ୍ୱଜ ଶୁଣ ଦ୍ୱିଜ ସୁତ
ଭଲମନ୍ଦ ଭାବିବାରେ ନୁହେଁ ମୋର ମତ ।
ବେଦବାକ୍ୟ ସମ ମୁହିଁ ମଣିବି ତା ସତ୍ୟ
ଆଶାକରେ ଲଭିବଇଁ ମୁକତିର ପଥ ।
ମୋର ବାକ୍ୟରେ ବିଶ୍ୱାସ କର ହେ ରାଜନ
ଶ୍ରଦ୍ଧାସହ ମୋର ବାକ୍ୟ କର ହେ ଶ୍ରବଣ ।
ତଦ୍ଦ୍ୱାରା ଉଦିତ ହେବ ତୁମ୍ଭ ହୃଦେ ଜ୍ଞାନ
ଲଭିକରି ଏହିପରି ଉପଦେଶ ମାନ ।
ମୁକ୍ତିଲାଭ କରି ପାରିଥାନ୍ତି ଜୀବଗଣ
ବିପ୍ରବାଳକ କହନ୍ତି ଏସନ ବଚନ ।

ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଶିଖିଧ୍ୱଜ ଜ୍ଞାନ ଉପଦେଶ ବର୍ଣ୍ଣନେ
ନାମ ଛଅସ୍ତରୀ ସର୍ଗଃ ।



## ସତସ୍ତରୀ ସର୍ଗଃ

## ମୂର୍ଖତା ବର୍ଣ୍ଣନ

କହନ୍ତି ବିପ୍ରବାଳକ ଶୁଣହେ ରାଜନ
ଚିନ୍ତାମଣି ପାଇଁ ଜଣେ କରଇ ସାଧନ ।
ବହୁକାଳ ଧରି ଚେଷ୍ଟାକରି ସେହିଜନ
ଅବଶେଷେ ପ୍ରାପ୍ତହେଲା ସେ ମଣି ରତନ ।

ବିଶ୍ୱାସ ନ ଆସେ ଯେଣୁ ମଣି ରତନରେ
ଚିନ୍ତାମଣି ଅନ୍ତର୍ହିତ ହୁଏ ତତକାଳେ ।
ପୁଣି ମଣି ସାଧନାରେ ହୁଅନ୍ତେ ପ୍ରବୃତ୍ତ
କାଚମଣି ଏକ ତାକୁ ହୁଏ ପରାପତ ।
ସେ କାଚମଣିକୁ ଚିନ୍ତାମଣି ଜ୍ଞାନ କରି
ଆଦର ସହିତ ତାର ଅରଚନା କରି ।
ତେଣୁ ଏହିପରି ମନେ ଭାବେ ସେ ରାଜନ
ଏହି ଚିନ୍ତାମଣି ମୋତେ ହେବ ବହୁଧନ ।
ଅନ୍ୟାନ୍ୟ ବୈଭବ୍ୟେ ମୋର କିସ ପ୍ରୟୋଜନ ?
ସବୁଛାଡ଼ି ମୂର୍ଖ ଚଳିଯାଏ ଘୋର ବନ
ଏହି କାଚମଣି ପୂଜି ସେହି ବନସ୍ତରେ
କିଛିମାତ୍ର ନ ପାଇଣ ହତାଶ ମନରେ ।
ବିଷମ ଦୁଃଖରେ ପଡ଼େ ସେହି ମୂର୍ଖଜନ
କାଚ କି ହୋଇପାରିବ ଚିନ୍ତାମଣି ସମ ?
ଅନ୍ୟ ଏକ ଗଳ୍ପ ଶୁଣ ଆହେ ତପୀବର
ଯାହା ଘଟିଥିଲା ବିନ୍ଧ୍ୟ ଅଟବୀ ମଧ୍ୟର ।
ଏକମତ୍ତ ମାତଙ୍ଗର ଥିଲା ତହିଁ ବାସ
ଏକଦା ସେ ହସ୍ତୀ ପଡ଼େ ମାହୁନ୍ତର ଫାଶ ।
କିଛିକାଳ ପରେ ସେହୁ ଶିକୁଳୀ ଛିଣ୍ଡାଇ
ଗହନ ବନଦେଶକୁ ଯାଏ ସେ ପଳାଇ ।
ମାହୁନ୍ତ ତାହାକୁ ବହୁଦୂରରୁ ଦେଖିଣ
ତାଳଗଛ ଗୋଟିକରେ କରେ ଆରୋହଣ ।
ହସ୍ତୀକୁ ଲକ୍ଷ୍ୟ କରିଣ ସେହି ହସ୍ତୀପକ
ତାଳଗଛୁଁ ଡେଇଁ ପଡ଼ି ଧରନ୍ତେ ତା ବେକ ।
ଦୁର୍ଭାଗ୍ୟ ବଶରୁ ତହିଁ ବସି ନ ପାରିଣ
ତଳେ ପଡ଼ି ହତାଶରେ ରହେଁ ଏଣେତେଣ ।
ଦୟାକରି ହସ୍ତୀ ତାକୁ ବିନାଶ ନ କରି
ଘୋରବନେ ପଶିଯାଏ କ୍ଷୀପ୍ର ଗତି କରି ।
ହତାଶ ନୋହିଁ ମାହୁନ୍ତ କରେ ଅନ୍ୱେଷଣ
ପୁଣି ହସ୍ତୀ ଠାବପାଏ ସେ ବନ ମଧ୍ୟେଣ ।
ଅନ୍ୟଲୋକମାନଙ୍କର ସହାୟତା ଘେନି
ଗର୍ତ୍ତଖୋଳି, ତୃଣାଦିରେ ଆଚ୍ଛାଦେ ତା ପୁଣି ।
ବୁଲୁ ବୁଲୁ ସେହି ହାତୀ କିଛିଦିନ ପରେ
ଦଇବାତ୍ ପଡ଼ିଯାଏ ସେ ଗାତ ମଧ୍ୟରେ ।
ସେହି ହସ୍ତୀପକ ଯାଇଁ ତାହାକୁ ଧରିଲା
ଶୃଙ୍ଖଳାବଦ୍ଧ କରିଣ ତାହାକୁ ରଖିଲା ।
ମାହୁନ୍ତକୁ ଯଦି ହସ୍ତୀ ମାରିଦେଇଥାନ୍ତା
ଶୃଙ୍ଖଳାବଦ୍ଧ ହେବା କି ତା ଭାଗେ ଘଟନ୍ତା ?
ମୂର୍ଖତା ହେତୁରୁ ଜାଣ ସେହି କରିବର
ସିକୁଳିରେ ବନ୍ଧାହୋଇ ଭୋଗେ ଦୁଃଖ ଘୋର ।
ତେଣୁ ମୂର୍ଖତା ସର୍ବତ୍ର ଦୁଃଖର କାରଣ
ଏହିକଥା ମନେ ରଖିଥିବ ହେ ରାଜନ ।
ମୂର୍ଖତା ତେଜିଣ ତୁମେ ଆହେ ନରନାଥ
ଆତ୍ମାରୁ ଉଦ୍‌ଭୂତ ଜାଣି ଏହି ଯେ ଜଗତ
ଆତ୍ମାମୟ ବୋଲି ତାକୁ ହୁଅ ଅବଗତ ।
ଆତ୍ମଶୁଦ୍ଧି ଲଭି ଶେଷେ ହୋଇବ ମୁକତ

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ମୂର୍ଖତା ବର୍ଣ୍ଣନେ ନାମ ସତସ୍ତରୀ ସର୍ଗଃ**



## ଅଠସ୍ତରୀ ସର୍ଗଃ
## ଶିଖିଧ୍ୱଜ ବୈରାଗ୍ୟ

କହନ୍ତି ବିପ୍ରକୁମାର ଶୁଣ ମହୀପତେ
ଯେ ଚିନ୍ତାମଣି ସାଧକ ବିଷୟ ମୁଁ ତୋତେ ।
କହିଲି ସେ, ତୁମ୍ଭଛଡ଼ା ନୁହେଁ କେହିଆନ
ତୁମେ ଯେ ସର୍ବସ୍ୱ ତ୍ୟାଗ କରିଛ ରାଜନ
ସେ ତ୍ୟାଗକୁ ଚିନ୍ତାମଣି ବୋଲି ମୁଁ ମଣଇ
ମୋ କଥାର ମର୍ମ ଏବେ ବୁଝ ନରସାଇଁ ।
ବିଶୁଦ୍ଧ ବୁଦ୍ଧି ତୁମର ନ ଥିଲାଟି ଯେଣୁ
ସେ ଚିନ୍ତାମଣିରୁ ଲାଭ ନ ପାଇଲ ତେଣୁ ।
ଉପେକ୍ଷା କରିଛ ଯେଣୁ ସେହି ଚିନ୍ତାମଣି
ଐଶ୍ୱର୍ଯ୍ୟ ଲାଭ ନୋହିଲା ତବ ନୃପମଣି ।
ଅହଂକାର ଅଭିମାନ ହେତୁ ହିଁ ଆପଣ
ସେ ଅବିଦ୍ୟାରୂପ କାଚମଣିକୁ ରାଜନ
ଚିନ୍ତାମଣି ଜ୍ଞାନ କରି ବନବାସୀ ହେଲ ।
ତହୁଁ କିଛି ନ ପାଇଣ ଦୁଃଖରେ ପଡ଼ିଲ
ଏହି ଅହଂଭାବନା ହିଁ ଅଟେ ସେହିମନ
ତା ନାଶେ ଜଗତ ଧରେ ବ୍ରହ୍ମରୂପ ଜାଣ ।
ଅହଂ ଅଭିମାନ ଏବେମଧ୍ୟ ତୁମଠାରେ
ପୂର୍ଣ୍ଣଭାବେ ରହିଅଛି ଜାଣ ନୃପବରେ ।

ସର୍ବସ୍ୱ ତ୍ୟାଗରୁ ମିଳେ ଯେ ପରମାନନ୍ଦ
ପାଇପାରି ନାହିଁ ଯେଣୁ ରହିଛି ଅବୋଧ ।
ଅନିର୍ବଚନୀୟ ଅଟେ ସେ ପରମାନନ୍ଦ
ବହୁତ କଷ୍ଟରେ ତାହା ହୁଅଇ ଲବଧ ।
ତୁମ ଅହଂଭାବ ଯେବେ ଆହୁରି ବଢ଼ିବ
ପୁଣି ରାଜ୍ୟ ଅଭିଳାଷୀ ତୁମେ ଯେ ହୋଇବ ।
ଚିନ୍ତା ଆଧିପତ୍ୟ ଯାର ରାଜେ ହୃଦୟରେ
ତ୍ୟାଗବଳେ ସିଦ୍ଧିଲାଭ ନ ହୁଅଇ ତାରେ ।
ଯେଉଁ ବୃକ୍ଷ ବାୟୁଯୋଗେ ସର୍ବଦା ସ୍ପନ୍ଦିତ
ସ୍ଥିରତ୍ୱ ଲାଭ କରିବ କହ ସେ କେମନ୍ତ ?
ଚିନ୍ତାକୁଳ ଚିତ୍ତ ଏହି ଜଗତ ଆକାରେ
ପ୍ରକାଶ ପାଉଣ ଥାଏ ଜାଣ ନୃପବରେ ।
ଚିନ୍ତାକୁଳ ଚିତ୍ତ ଯେତେ କାଳ ରହିଥିବ
ସେଯାଏ ତ୍ୟାଗ ସୁସିଦ୍ଧ କଦାପି ନୋହିବ ।
ନିଶ୍ଚିନ୍ତତା ଜାଣ ଅଟେ ତ୍ୟାଗ ଶ୍ରେଷ୍ଠଫଳ
ସେ କାରଣୁ ଏତେ ଖ୍ୟାତି ରହିଛି ତ୍ୟାଗର ।
ଚିନ୍ତାଶୂନ୍ୟ ହୋଇ ଯେଣୁ ତ୍ୟାଗର ସ୍ୱାଗତ
କରିବା ପାଇଁ ଅକ୍ଷମ ହୁଅ ରାଜସୁତ ।
ଜାଣିରଖ ତୁମ ତ୍ୟାଗ ନିଶ୍ଚିନ୍ତତା ସହ
ବିଦାୟ ଘେନିଛି ଆହେ ଶିଖିଧ୍ୱଜ ରାୟ ।
ବିନାସତ୍କାରରେ କେହି ରହିବା ଆଗ୍ରହ
ଦେଖାଇ ନ ଥାଏ ଆହେ ନୃପତି ତନୟ ।
ତେଣୁକରି କହୁଅଛି ହେ କମଳନେତ୍ର
ତ୍ୟାଗ-ଚିନ୍ତାମଣି ତୁମ ହେଲା ଅନ୍ତର୍ହିତ ।
ତପସ୍ୟା ରୂପକ କାଚମଣି ଦରଶନ
କରୁଅଛ ଏବେ ତୁମ ଆହେ ନରରାଣ ।
ଏହି ତପସ୍ୟା ତୁମକୁ ଜାଣହେ ରାଜନ
କେବଳ ହିଁ ଦୁଃଖ-ଫଳ କରିବ ପ୍ରଦାନ ।
କାଚ, ଚିନ୍ତାମଣି ଏହି ଦୁଇଟି ଦୃଷ୍ଟାନ୍ତ
ଥୋଇଲଇଁ ତୁମଆଗେ ଆହେ ନର ନାଥ ।
ଯାହାକୁ ପସନ୍ଦ କଲ ତାହାକୁ ବରଣ
କରି ଚଳୁଥାଅ ଆହେ ନୃପ କୁଳରାଣ ।
କହନ୍ତି ବିପ୍ରକୁମାର ଶୁଣ ହେ ରାଜନ
ବିନ୍ଧ୍ୟାରାଣୀ ହସ୍ତୀ କଥା ଯା କଲି ବଖାଣ ।
ସେହି ହସ୍ତୀ ତୁମ୍ଭେ ଅଟ ଆହେ ନରାଧିପ
ବିବେକ ବୈରାଗ୍ୟ ହସ୍ତୀ ଦନ୍ତର ସ୍ୱରୂପ ।

ଏହି ଯେ ମାହୁନ୍ତ ତାଙ୍କୁ କଲା ଆକ୍ରମଣ
ସେ ଅଟେ ତୁମ ଅଜ୍ଞାନ ଆହେ ନରରାଣ ।
ଅଜ୍ଞାନ ଯେଣୁ ତୁମକୁ କଲା ଆକ୍ରମଣ
ତେଣୁ ଦୁଃଖ ଭୋଗ କରୁଅଛ ନରରାଣ ।
ହସ୍ତୀପକ ହସ୍ତୀଠାରୁ ହେଲେ ହେଁ ଦୁର୍ବଳ
ଶିକୁଳିରେ ବାନ୍ଧେ ତାକୁ ଦେଖାଇ କୌଶଳ ।
ଯଦି ତୁମେ ଶକ୍ତିଶାଳୀ ହେ ଶାସନକର୍ତ୍ତା
ତୁମ ଅପେକ୍ଷା ତୁମର ଅଜ୍ଞାନ ମୂର୍ଖତା,
ହୀନ ବଳ ହୋଇ ମଧ୍ୟ ତୁମକୁ ରାଜନ
ଦୁଃଖର ଶେଷ ସୀମାକୁ ତଡ଼ି ନେଲା ଜାଣ ।
ଭୟରେ ତୁମକୁ ତାହା କରୁଛି ଆକୁଳ
କେତେକାଳ ଏହିପରି ହେବ ହେ ବ୍ୟାକୁଳ ?
ଯେଉଁ ଶୃଙ୍ଖଳରେ ହସ୍ତୀ ଥିଲାକ ବନ୍ଧନ
ତୁମର ଆଶା ସମୂହ ସେ ଶୃଙ୍ଖଳ ଜାଣ ।
ରାଜ୍ୟ ତେଜି କରିଅଛ ଯେଉଁ ବନବାସ
ହସ୍ତୀର ଶୃଙ୍ଖଳ ଭଙ୍ଗ ଜାଣ ହେ ନରେଶ ।
ହସ୍ତୀର ପୃଷ୍ଠକୁ ହସ୍ତୀପକର ପତନ
କହୁଅଛି ତାର ଅର୍ଥ ଏବେ ରାଜାଶୁଣ ।
ରାଜ୍ୟତ୍ୟାଗ କଲାବେଳେ ତୁମର ଅଜ୍ଞାନ
କିଞ୍ଚିତ ନିବୃତ୍ତ ଥିଲା ଘେନ ଏହା ମନ ।
ପୁନର୍ବାର ହସ୍ତୀପକ କୌଶଳ କରିଣ
ହସ୍ତୀକୁ ଆବଦ୍ଧ କଲା, ତାର ଅର୍ଥ ଶୁଣ ।
ତତ୍ତ୍ୱଜ୍ଞ ପୁରୁଷ ଯେଣୁ ନୁହ ହେ ରାଜନ
ପୁଣି ବିବର୍ଦ୍ଧିତ ହେଲା ତୁମରି ଅଜ୍ଞାନ ।
ତପସ୍ୟା ରୂପକ ଗର୍ତ୍ତ କରିଣ ନିର୍ମାଣ
ପକାଇ ଦେଇ ତୁମକୁ ତନ୍ମଧ୍ୟେ ରାଜନ ।
ଶୃଙ୍ଖଳିତ କରିଦେଲା ତୁମ୍ଭକୁ ଯେ ସେହି
ତେଣୁକରି ବନବାସେ ଆସିଅଛ ରହି ।
ରାଜ୍ୟତ୍ୟାଗ କଲାବେଳେ ତୁମେ ହେ ରାଜନ
କିୟତ ପରିମାଣରେ ସେହି ଯେ ଅଜ୍ଞାନ ।
ସେ କାଳେ ନିବୃତ୍ତ ହେଲା କିଞ୍ଚିତ୍ ମାତର
ଯଦି ପୂର୍ଣ୍ଣଭାବେ ନାଶ କରିଥାନ୍ତ ତାର ।
ତେବେ ପୁନର୍ବାର ବିବର୍ଦ୍ଧିତ ହୋଇ କରି
କିଛି ହାନି କରିପାରି ନ ଥାନ୍ତା ତୁମରି ।
ତୁମେ ଅଟ ସେହି ହସ୍ତୀ ଆହେ ଦଣ୍ଡଧାରୀ
ତୁମରି ମୂର୍ଖତା ଜାଣ ତୁମରି ଅରି ।

ତୁମରି ଆଶା ତୁମର ହୋଇଲା ଶୃଙ୍ଖଳ
ଗର୍ତ୍ତଟି ବନ୍ଧନସ୍ଥାନ ହେଲା ମହୀପାଳ ।
ଏହି ଧରାତଳ ନାମ ଅଟେ ବିନ୍ଧ୍ୟାରଣ୍ୟ
ଏ ସବୁ ବୁଝି ଯା' ଇଚ୍ଛା କରହେ ରାଜନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଶିଖିଧ୍ୱଜ ବୈରାଗ୍ୟ ବର୍ଣ୍ଣନେ**
**ନାମ ଅଠସ୍ତରୀ ସର୍ଗଃ**



## ଅଣାଅଶି ସର୍ଗଃ
## ଚିତ୍ତତ୍ୟାଗ ବର୍ଣ୍ଣନ

କୁମ୍ଭଋଷି କହୁଛନ୍ତି ଶୁଣ ହେ ରାଜନ
ଚୂଡ଼ାଳାର ଉପଦେଶ ଅଗ୍ରାହ୍ୟ କରିଣ ।
ନିଜବୁଦ୍ଧି ବଳେ ରାଜ୍ୟ କଲ ଯେ ତେଜନ
କିମ୍ବା ସେ ତ୍ୟାଗକୁ ନ ରଖିଲ ଯେ ଅକ୍ଷୁଣ୍ଣ ?
କହୁଛନ୍ତି ଶିଖିଧ୍ୱଜ ଶୁଣ ତପୀବସ୍ଥୀ
ରାଜ୍ୟ, ଧନ, ଗୃହ କଳତ୍ରାଦି ମୁଁ ତେଜିଛି
ତଥାପି ମୋହର ତ୍ୟାଗ ସୁସିଦ୍ଧ ନୋହିଛି ।
କିପରି କହୁଛ ଏହା ହେ ନାରଦ ବସ୍ଥୀ ?
କୁମ୍ଭ ବୋଇଲେ ହେ ରାଜା ରାଜ୍ୟ, ଗୃହ, ଧନ
କଳତ୍ର, ଇତ୍ୟାଦି କିଛି ନୁହେଁ ତୁମ ଜାଣ ।
ତେଣୁ ହେ ରାଜନ ଯାହା ନୁହଇ ତୁମ୍ଭର
ତାକୁ ତେଜିବାରେ ତୁମ କିସ ଅଧିକାର ?
ସେ ତ୍ୟାଗରେ ତ୍ୟାଗସିଦ୍ଧ ହେବ କେଉଁ ପରି ।
ମନଫୁଲାଇ ବସିଛ କିମ୍ବା ଦଣ୍ଡଧାରୀ ?
ତୁମ୍ଭ ହୃଦୟରେ ଯେଉଁ ବିଷୟାନୁରାଗ
ବର୍ତ୍ତମାନ ରହିଅଛି ଆହେ ମହାଭାଗ,
ତାହାହିଁ ତୁମ୍ଭ ସର୍ବସ୍ୱ ବୁଝିହେ ରାଜନ
ବୃଥା ଆସ୍ପର୍ଦ୍ଧାରେ ଆଉ କିସ ପ୍ରୟୋଜନ ?
ଆପଣା ମନର ସେହି ବିଷୟାନୁରାଗ
ଯଦି ତ୍ୟାଗ କରିପାରେ ଆହେ ମହାଭାଗ,
ତେବେ 'ତ୍ୟାଗ' ସିଦ୍ଧିଲାଭ ହୋଇବ ତୁମର
ଶୋକାତୀତ ପଦପ୍ରାପ୍ତ ହେବ ତାର ଫଳ ।
କହନ୍ତି ବଶିଷ୍ଠ ଏବେ ଶୁଣ ରାମଚନ୍ଦ୍ର
କୁମ୍ଭ କଥା ଶୁଣି ଶିଖିଧ୍ୱଜ ସେ ନରେନ୍ଦ୍ର ।
ବୃକ୍ଷ ପରିପୂର୍ଣ୍ଣ ସେହି ଘନ ବନଭୂମି
ଆଶ୍ରମ ଓ ତନ୍ମଧସ୍ଥ ଦ୍ରବ୍ୟସବୁ ଆଣି ।
ଦଣ୍ଡ, କମଣ୍ଡଳୁ ପୁଣି, ଅଜିନ ପ୍ରଭୃତି
କିଛି ମୋର ନୁହେ ବୋଲି ନିଶ୍ଚୟ କରନ୍ତି ।
ସକଳ ପଦାର୍ଥମାନ ସ୍ତୂପୀକୃତ କରି
ଅଗ୍ନି ସଂଯୋଗ କରିଣ ଦେଲେ ତାକୁ ଜାଳି ।
ତତପରେ ଅକ୍ଷମାଳା, ମୃଗଚର୍ମ ଧରି
କମଣ୍ଡଳୁ, ଆସନାଦି ଏକ ଏକ କରି ।
ଏହାସବୁ ଅନଳରେ ସ୍ୱାହା କରିଦେଲେ
କୁଟୀରଟି ଜାଳିବାକୁ ମଧ ନ ଭୁଲିଲେ ।
ଜଳି ଉଠଇ ଅନଳ ନଭେ ଉଠେ ଶିଖା
ରାଜାର ସର୍ବସ୍ୱ ଧ୍ୱଂସ ରହେ ରାଜା ଏକା ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଚିତ୍ତ ତ୍ୟାଗ ବର୍ଣ୍ଣନେ**
**ନାମ ଅଣାଅଶୀ ସର୍ଗଃ ।**



## ଅଶୀ ସର୍ଗଃ
## ଶିଖିଧ୍ୱଜ ବୋଧନ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁରାଜ
ସକଳ ମମତା କାଟି ରାଜା ଶିଖିଧ୍ୱଜ ।
ସନ୍ତୁଷ୍ଟ ଚିତ୍ତ ହୋଇ ସେ ଉଲଙ୍ଗ ଶରୀରେ
କହିବାକୁ ଲାଗିଲେ ସେ ଏମନ୍ତ ପ୍ରକାରେ ।
"ହେ ଦେବ ତନୟ ସର୍ବ ବସ୍ତୁପ୍ରତି ମୁହିଁ
ସକଳ ମାୟା ମମତା ଏବେ ତେଜିଲଇଁ ।
ଏଣୁ ସର୍ବତ୍ୟାଗୀ ମୁହିଁ ହୋଇଛି ସଂସାରେ
ଶୁଦ୍ଧ, ପ୍ରବୁଦ୍ଧ କେବଳ ସ୍ୱରୂପ ମୁଁ ଧରେ ।
ଅକ୍ଳେଶରେ ବୋଧଜ୍ଞାନ ଜନ୍ମେ ମୋ ହୃଦରେ
ସାର ବୋଲି କିଛି ନାହିଁ କଳ୍ପନା ବସ୍ତୁରେ ।
ବନ୍ଧନ କାରଣ ଏହି ଯେଉଁ ବସ୍ତୁମାନ
ଏ ସବୁକୁ ତ୍ୟାଗ କଲେ ସୁଖୀ ହୁଏ ଜନ ।
ଯା କିଛି ଥିଲା ମୋହର ସର୍ବତେଜ୍ୟା କଲି
ଏ ସଂସାରେ ଜୟଯୁକ୍ତ ଏବେ ମୁଁ ହୋଇଲି ।
ହେ ଦେବ ତନୟ କହ ମୋହ ପାଇଁ ଏବେ
କି ବସ୍ତୁ ବାକି ଅଛଇ ତେଜିବି ବା ତେବେ" ?
ହେ ରାଜନ ତ୍ୟାଗ ଭାବ ଦେଖାଇବା ପାଇଁ
ନିରର୍ଥକ ଅଭିନୟ ଦେଖାଅ କିମ୍ପାଇଁ ?
ଏବେ ମଧ ତେଜି ନାହିଁ ସର୍ବସ୍ୱ ତୁମ୍ଭର
ବାସନାମାନ ଜାଗ୍ରତ ଅଛନ୍ତି ଅନ୍ତର ।

ସେ ବାସନାମାନ ରାଜା ଯେବେ ତେଜିପାର
ଶୋକାତୀତ ପଦ ପ୍ରାପ୍ତ ହୋଇବ ତୁମର ।
କହୁଛନ୍ତି ଶିଖିଧ୍ୱଜ ଶୁଣ ଦେବସୁତ
ଏହି ରକ୍ତମାଂସମୟ ଶରୀର ବ୍ୟତୀତ ।
କିଛି ଅବଶିଷ୍ଟ ମୋର ନାହିଁ ଏ ସଂସାରେ
ଏ ତୁମ୍ଭ ମନ୍ତବ୍ୟ ସତ୍ୟ ହେବ କି ପ୍ରକାରେ ?
ବର୍ତ୍ତମାନ ଏ ଶରୀର ତେଜି ମୁଁ ଦେବଇଁ
ତେବେ ଅବା ସର୍ବତ୍ୟାଗୀ ବୋଲାଇବି ମୁହିଁ ।
ଏତେ ବୋଲି ସ୍ୱଶରୀର ତେଜିବାରୁ ପାଇଁ
ଉଦ୍ୟତ ହୁଅନ୍ତି ଶିଖିଧ୍ୱଜ ନରସାଇଁ ।
କହନ୍ତି ଦ୍ୱିଜକୁମାର ଶୁଣ ମହିପାଳ
ଏ ଦେହଦ୍ୱାରା ଅନିଷ୍ଟ ନ ହେବ ତୁମ୍ଭର ।
ତେଣୁ ଶରୀର ତ୍ୟାଗରେ କିଛି ପ୍ରୟୋଜନ
ନାହିଁ ବୋଲି ଜାଣିରଖ ଆହେ ନରରାଣ ।
ଏ ଶରୀର ତୁମ୍ଭ ଆତ୍ମା ମଧ୍ୟେ ଅବସ୍ଥାନ
କରିଅଛି ବୋଲି ହେଜରଖ ତୁମ୍ଭ ମନ ।
ଶରୀର ମଧ୍ୟରେ ଯେହୁ ଦୁଃଖ ଉପୁଜାଇ
ତାହାର ବିନାଶ ତୁମ୍ଭ କର୍ତ୍ତବ୍ୟ ଅଟଇ ।
ଯଦିଓ ଶରୀର ତୁମେ ତେଜିବ ରାଜନ
ସର୍ବସ୍ୱ ତ୍ୟାଗ ତୁମର ନୋହି କଦାଚନ ।
ଯେହେତୁ ଉତ୍ପନ୍ନତାର ହେବ ପୁନରାୟ
ଜନ୍ମ ଜନ୍ମାନ୍ତରେ ଦୁଃଖ ଭୋଗିବ ନିଶ୍ଚୟ ।
ଶରୀର ମଧ୍ୟେ ରହିଛି ଯେ ଅନିଷ୍ଟକାରୀ
ତାହାର ନିପାତ ଯେବେ ତୁମ୍ଭେ ପାର କରି ।
ତେବେ ଯାଇ ତ୍ୟାଗ ସିଦ୍ଧି ହୋଇବ ତୁମର
ଆଉ ମଧ୍ୟ ଦେହ ତ୍ୟାଗ ଘଟିବ ମୁକର ।
ସେ ଅନିଷ୍ଟକାରୀ ଜାଣ ତୁମର ଯେ ଚିତ୍ତ
ଆହେ ରାଜା ମନେରଖ ଏହା ଧ୍ରୁବ ସତ୍ୟ ।
ଭ୍ରମ ସମାକୁଳ ଚିତ୍ତ, ଜୀବ, ପ୍ରାଣ ନାମେ
ପରିଚିତ ହୋଇଥାଏ ଏହି ଧରାଧାମେ ।
ଚିତ୍ତ ହିଁ ଜଗତ, ରାଜା ଚିତ୍ତ ହିଁ ଶରୀର
ବୀଜ ସ୍ୱରୂପ ଏ ଚିତ୍ତ ରାଜ୍ୟ, ଗୃହାଦିର ।
ତେଣୁ ଯେ ଜୀବସ୍ୱରୂପ ସକଳ ବସ୍ତୁର
ସେହି ଚିତ୍ତକୁ ଯଦ୍ୟପି ତ୍ୟାଗ କରିପାର ।
ସର୍ବସ୍ୱ ତ୍ୟାଗ କରିଲ ବୋଲିବ ସଂସାର
ଧର୍ମଧ୍ୱଜା ଉଡୁଥିବ ତୁମ ଚିରକାଳ ।

ଚିତ୍ତର ତ୍ୟାଗରେ ଯଦି ସର୍ବତ୍ୟାଗ ହୁଏ
ବିନା ଚିତ୍ତ ତ୍ୟାଗେ ଯଦି କିଛି ତ୍ୟାଗ ନୋହେ,
ଚିତ୍ତକୁ ତ୍ୟାଗ କରିବା ସର୍ବାଦୌ ଉଚିତ
ଏବେ ବୁଝ ରାଜା ଚିତ୍ତ ତ୍ୟାଗର ମହତ୍ୱ ।
ଯାହାର ଚିତ୍ତ ଅଛଇ ତାହାର ରାଜନ
ଧର୍ମାଧର୍ମ, ସ୍ୱର୍ଗନର୍କ, ରାଜ୍ୟ ଓ ଅରଣ୍ୟ,
ଦୁଃଖ ସୁଖ ଆଦିକରି ସବୁଭୋଗ ହୁଏ
ଚିତ୍ତଥିବା ଯାଏ ଭବଦୁଃଖ ଚାଲିଥାଏ ।
ଚିତ୍ତ ଯାର ନାହିଁ ଜାଣ ଆହେ ଶିଖିଧ୍ୱଜ
ପରମ ସୁଖ ଭୋଗଇ ସେ ରାଜାଧିରାଜ ।
କ୍ଷୁଦ୍ରବୀଜ ଯଥା ହୁଏ ବୃକ୍ଷ ସୁବିଶାଳ
ସୂକ୍ଷ୍ମଚିତ୍ତ ଧରିଥାଏ ଜଗତ ଆକାର ।
ଶରୀର ଆକାର ମଧ୍ୟ ଧରିକରି ସେହି
ନାନାଦି ଅଦ୍ଭୁତ କାର୍ଯ୍ୟ ଜଗତେ ଦେଖାଇ ।
ଚିତ୍ତଦ୍ୱାରା ଚଳୁଅଛି ତୁମ ଏ ଶରୀର
ଗମନା ଗମନ ଆଦି ଯାହା ତୁମେ କର ।
କାର୍ଯ୍ୟଭେଦେ ଚିତ୍ତ ଧରିଥାଏ ନାନା ନାମ
ଅହଂକାର, ମହତ୍ ଓ ଜୀବ, ମନ, ପ୍ରାଣ ।
ଚିତ୍ତକୁ ଯଦ୍ୟପି ପରିତ୍ୟାଗ କରିପାର
ଉପଲବ୍ଧ ହୁଏ ସତ୍ୟ ସ୍ୱରୂପ ଆତ୍ମାର ।
ଦ୍ୱୈତ ପ୍ରପଞ୍ଚର ହୋଇଯାଏ ଅବସାନ
ଅଦ୍ୱୈତ ରାଜ୍ୟରେ ଆତ୍ମାକରେ ବିଚରଣ ।
ଦ୍ୱୈତଜ୍ଞାନ ବିଲୀନରେ ଐକ୍ୟର ଉଦୟ
ସେହି ଐକ୍ୟ ଅଟେ ରାଜା ପରଂ ଶାନ୍ତିମୟ ।
ତ୍ୟାଗ ବିଷୟ ବିଚାର କରିଣ ରାଜନ
ତଦପରେ ତ୍ୟାଗକର ଦେଇମନ ଧ୍ୟାନ ।
ପରିଶେଷେ ଅହଂକାର ପରିତ୍ୟାଗ କର
ଜୀବନ ମୁକତ ହୁଅ ଆହେ ଅଧୀଶ୍ୱର ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଶିଖିଧ୍ୱଜ ବୋଧନେ ନାମ ଅଶୀ ସର୍ଗଃ ।**



## ଏକାଅଶୀ ସର୍ଗଃ

## ଶିଖିଧ୍ୱଜ ଆତ୍ମ ବିଚାର

କହନ୍ତି ବଶିଷ୍ଠ ରାମ କୁମ୍ଭ ଯେତେବେଳେ
ଏହି ଉପଦେଶମାନ ଦେଲେ ମହିପାଳେ ।

ରାଜା ଶିଖିଧ୍ୱଜ ତେତେବେଳେ ରଘୁବୀର
ଚିତ୍ତତ୍ୟାଗ ପାଇଁ ଚେଷ୍ଟା କରି ବାରମ୍ବାର ।
ବୋଇଲେ ହେ ଦେବ ମୁହିଁ ଚିତ୍ତତ୍ୟାଗ ପାଇଁ
ବାରମ୍ବାର ଚେଷ୍ଟାକରି କୃତକାର୍ଯ୍ୟ ନୋହି ।
ଚିତ୍ତସ୍ୱରୂପ କିପରି ତାହା ମୋତେ କହ
ପରେ ତାକୁ ତେଜିବାର ଉପାୟ ବତାଅ ।
କୁମ୍ଭ ବୋଲନ୍ତି ହେ ରାଜା ବାସନାହିଁ ଜାଣ
ଚିତ୍ତର ସ୍ୱରୂପ ଅଟେ, ଏ କଥା ପ୍ରମାଣ ।
ଅତି ସହଜରେ ତାହା ହୁଏ ପରିତ୍ୟକ୍ତ
ଅଜ୍ଞ ବ୍ୟକ୍ତି ପକ୍ଷେ ତାହା ଅଟେ ଅତି ଶକ୍ତ ।
ଏ ଚିତ୍ତର ମୂଳ ଯଦି ହେବ ଉତ୍ପାଟନ
କଷ୍ଟକର ନୁହେଁ ରାଜା ଭବ ବିନାଶନ ।
ଚିତ୍ତକୁ ତ୍ୟାଗ କରିବା ଅପେକ୍ଷା ରାଜନ
ତାର ବିନାଶ ସିଦ୍ଧିର ଉତ୍କୃଷ୍ଟ କାରଣ,
ଅହଂକାର ଅଟେ ରାଜା ଏ ଚିତ୍ତର ମଞ୍ଜି
ସେ ମଞ୍ଜିରୁ ଜାଣ ଚିତ୍ତ ଅଙ୍କୁର ଉପୁଜି ।
କ୍ରମେ କ୍ରମେ ତାହା ଶାଖା ପ୍ରଶାଖା ମେଲାଇ
ଫଳ ସମ୍ପର୍ଣ୍ଣ ବୃକ୍ଷରେ ପରିଣତ ହୋଇ ।
ଅହଂକାର ଅବା ଆତ୍ମସ୍ୱରୂପ ଅଜ୍ଞାନ
ତା ମଧ୍ୟରୁ ଏହି ଚିତ୍ତ ହୁଅଇ ଜନମ ।
ତେଣୁ କରି ଏହି ଚିତ୍ତ ଅଟଇ ଅଜ୍ଞାନ
ଚିତ୍ତର ବିନାଶ ତେଣୁ ଅଜ୍ଞାନ ନାଶନ ।
ପରମାତ୍ମାଙ୍କର ମାୟାମୟ ଏ ସଂସାରେ
ଯେ ଅନୁଭବ ପ୍ରକାଶ "ମୁହିଁ" ଆକାରରେ ।
ଚିତ୍ତର ଅଙ୍କୁର ବୋଲି ତାହାକୁ ହିଁ ଜାଣ
ସେ ଅଙ୍କୁର ସୃଷ୍ଟି କରେ ବିଭିଷିକାମାନ ।
ଅନୁଭବର ଆକାର ନାହିଁ ତ ରାଜନ
ବୁଦ୍ଧି ନାମେ ପରିଚିତ ପରେ ହୁଏ ଜାଣ ।
ସଂକଳ୍ପ ରୂପରେ ବୁଦ୍ଧି ସ୍ଥୁଳଭାବ ନେଲେ
ତାର ନାମ ଚିତ୍ତ ଅବା ମନ ମହିପାଳେ ।
ସେହି ମନ ଜାଣ ପରେ ଜୀବ ନାମ ଧରେ
ମନ ମଧ୍ୟରୁ ଏ ଦେହ ଜନ୍ମଲାଭ କରେ ।
ମନର ସ୍ପନ୍ଦନ ନାମ ଅଟଇ ବାସନା
ଇନ୍ଦ୍ରିୟ ଗଣ ମନରୁ ଜନମନ୍ତି ସିନା ।
ଭାବ ଓ ଅଭାବମୟ ଯେ ଭୋଗ ସମୂହ
ମନର ବିଳାଶ ଜାଣ ଆହେ ମହାଶୟ ।

ଏହି ମନ ବା ଚିତ୍ତର ବିନାଶ ନ ପାଇଁ
ଯତ୍ନବାନ ହେଉଥାଅ ଆହେ ନରସାଇଁ ।
ଚିତ୍ତର ଯେଉଁ ସକଳ ବାସନା ଉଦିତ
ବିଚାର ଓ ଜ୍ଞାନବଳେ କର ପରିତ୍ୟକ୍ତ ।
ତତପରେ ମୌନଭାବ ଆଚରଣ କରି
ଭାବୁଥାଅ ଏକମାତ୍ର ଆତ୍ମା ଅଛି ବୋଲି ।
ସେ ଆତ୍ମା ବ୍ୟତୀତ, ଯାହା କିଛି ଦୃଶ୍ୟ ହୁଏ
ସେ ସକଳ ଅବାସ୍ତବ ଜାଣ ନରରାଏ ।
ଏହିପରି ଭାବି ଭାବି ଉପସ୍ଥିତ କର୍ମ
ଯଦି କରିପାର ରାଜା ତାହା ସଂପାଦନ,
ତେବେ ତୁମେ ଏ ଚିତ୍ତର ସମ୍ପୂର୍ଣ୍ଣେ ବିନାଶ
କରିପାରିବ ନିଶ୍ଚୟ ଆହେ ନରଇଶ ।
ରାଜା ବୋଲନ୍ତି ହେ ମୁନି କେଉଁ ଅଗ୍ନିବଳେ
ଚିତ୍ତବୀଜ ଦଗ୍‌ଧ ହୁଏ କହି ମୋତେ ଭଲେ ।
କୁମ୍ଭ ବୋଲନ୍ତି ହେ ରାଜା ତାହା ଏବେ ଶୁଣ
କିପରି ହେଲି ମୁଁ ଏହି ଆକୃତି ସମ୍ପର୍ଣ୍ଣ ।
ବାସ୍ତବରେ "ମୁହିଁ କିଏ" ଏ ଆତ୍ମ ବିଚାର-
ଅଗ୍ନିଦ୍ୱାରା ଦଗ୍‌ଧ ହୁଏ, ବୀଜ ଏ ଚିତ୍ତର ।
ଶିଖିଧ୍ୱଜ ବୋଲେ ଶୁଣ ଆହେ ମୁନିବର
ବହୁକାଳ କରିଛି ମୁଁ ଏ ଆତ୍ମ ବିଚାର ।
ଅହଂତ୍ୱ ରୂପ ମଳକୁ ନିଷ୍କାସନ କରି
ଏକ ରସ-ସାକ୍ଷୀ ଚୈତନ୍ୟକୁ ବ୍ରହ୍ମଚାରୀ,
ଅନ୍ତରେ ତାହାକୁ ଯେଣୁ ଚିନ୍ତି ମୁଁ ନ ପାରି
ଚିରକାଳ ଦୁଃଖ ଭୋଗ ହେଉଛି ମୋହରି ।
ଆତ୍ମବିଚାର ଯଦ୍ୟପି କରୁଛ ରାଜନ
ଏବେ କହ ତୁମେ କିଏ ସ୍ଥିର କରି ମନ ।
'ମୁଁ ସେ ସୁନିର୍ମଳ ଆତ୍ମା' କହେ ସେ ରାଜନ
ମଳଲିପ୍ତ ରହିଛି ମୁଁ ଯେବଣ କାରଣ ।
ସେ ପରମପଦ ମୋତେ ନୁହଁଇ ବିଦିତ
ମୋ ଅହଂଭାବ ସେ ମଳଜାଣ ଦ୍ୱିଜସୁତ ।
ବାରମ୍ବାର ଯେତେ ଚେଷ୍ଟା କରୁଅଛି ମୁହିଁ
ତେଜି ନ ପାଇ ତାକୁ ହେ ଦ୍ୱିଜ ତନୟୀ ।
ଆତ୍ମାକୁ ଯେଣୁ ମୁଁ ଦୃଶ୍ୟ ରୂପରେ ଚିନ୍ତଇ
ଶରୀରାଦି ଦୃଶ୍ୟବସ୍ତୁ ମତେ ଦେଖାଯାଇ ।
ତାହାହିଁ କେବଳ ମୋର ଦୁଃଖର କାରଣ
କି ଉପାୟେ ତାହାଯିବ କହନ୍ତୁ ଆପଣ ।

ଶରୀରାଦି ଆଧ୍ୟାତ୍ମିକ ବସ୍ତୁ ଯେ ସକଳ
ମୋ ମତରେ ତାହା ଦୃଶ୍ୟ ଚୈତନ୍ୟର ମୂଳ ।
ଶରୀର ଥିବାରୁ ଅହଂଭାବର ଉଦୟ
ଅହଂଭାବ ହେତୁ ଚିତ୍ତବୀଜ ନୁହେଁ ଲୟ ।
ଆବର ଏ ଶରୀରକୁ ମିଥ୍ୟା ବୋଲି ମୁହିଁ
କେବେହେଲେ ମନମଧ୍ୟେ ଭାବି ନ ପାରଇ ।
ଏ ଶରୀର ମିଥ୍ୟାଜ୍ଞାନ ହୋଇବ ଯେପରି
ସେହିପରି ଉପଦେଶ ଦିଅ ବ୍ରହ୍ମଚାରୀ ।
ଶରୀରାଦି ଦୃଶ୍ୟବସ୍ତୁ ଏକବାରେ ନାହିଁ
କୁମ୍ଭସୁତ ଏହି ମତବ୍ୟକ୍ତ କଲେ ତହିଁ ।
କହନ୍ତି ରାଜନ ଏବେ ଶୁଣ ଦ୍ୱିଜବର
ପ୍ରତ୍ୟକ୍ଷରେ ଉପଲବ୍ଧି ହୁଅଇ ଯାହାର ।
ଅପଳାପ କିପରି ବା ହୋଇବ ତାହାର
ଦୟାକରି ମୋ ସଂଶୟ ଫେଡ଼ ଦ୍ୱିଜବର ।
କୁମ୍ଭସୁତ କହୁଛନ୍ତି ଶୁଣହେ ରାଜନ
ଯେଉଁ କାର୍ଯ୍ୟର ନ ଥାଇ କୌଣସି କାରଣ ।
ସେହିପରି କାର୍ଯ୍ୟ ଅବା ତିଷ୍ଠିବ କେମନ୍ତ
ସେ କାର୍ଯ୍ୟ ଦର୍ଶନ-ଭ୍ରମ ଅଟଇ ନିଶ୍ଚିତ ।
କାରଣ ବ୍ୟତୀତ ଯେଉଁ କାର୍ଯ୍ୟ ଦେଖାଯାଏ
ଦ୍ରଷ୍ଟାର ଭ୍ରମ ବଶରୁ ତାହା ହୋଇଥାଏ ।
ଦେହ ରୂପ କାର୍ଯ୍ୟ ଅଟେ କାରଣ ବିହୀନ
ଏ ଶରୀର ନାହିଁ ତେଣୁ ଘେନ ତୁମ ମନ ।
ରାଜା ବୋଲେ ଆହେ ମୁନି କହ ମୋ ଆଗର
ପିତା କି ନୁହେଁ କାରଣ ଏହି ଶରୀରର ?
କୁମ୍ଭମୁନି କହୁଛନ୍ତି ଶୁଣହେ ରାଜନ
ପିତାମଧ୍ୟ ଅସତ୍ ବସ୍ତୁ ଭଲକରି ଜାଣ ।
ଅସତରୁ ଯାହାକିଛି ହୁଅଇ ଉତ୍ପନ୍ନ
ଅସତ ମଧ୍ୟରେ ତାହା ହେବ ନିଶ୍ଚେ ଗଣ୍ୟ ।
ପିତା, ପୁତ୍ର, ପିତାମହ ଆଦିକରି ଯେତେ
ପରମାତ୍ମାଠାରୁ ଭିନ୍ନ ନୁହଁନ୍ତି ସମସ୍ତେ ।
ଚିନ୍ମୟ ବ୍ରହ୍ମଠାରୁ ସେ ସବୁ ପୃଥକ
ଏ ସବୁ ବିଶ୍ୱାସ ରାଜା ଅଟେ ଭ୍ରମାତ୍ମକ ।
ଏକମାତ୍ର ଚିନ୍ମୟ ଆତ୍ମା ବିରାଜିତ
ତାଙ୍କ ତହିଁ ଚିଦାକାରେ ଜଗତ୍ ପ୍ରକାଶିତ ।

ବିଚାର ବଳରେ ଜାଣିପାରିଲେ ଏ ତତ୍ତ୍ୱ
ବ୍ରହ୍ମବିନୁ ଅନ୍ୟକାର ନ ରହେ ଅସ୍ତିତ୍ୱ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଶିଖିଧ୍ୱଜ ଆତ୍ମବିଚାର ବର୍ଣ୍ଣନେ**
**ନାମ ଏକାଅଶୀ ସର୍ଗଃ**



## ବୟାଅଶୀ ସର୍ଗଃ

## ଅଜ୍ଞାନ ଧ୍ୱଂସ

ରାଜା ଶିଖିଧ୍ୱଜ କହୁଛନ୍ତି ଏବେ ଶୁଣ
ଏ ନିଖିଳ ବିଶ୍ୱ ଯେବେ ହୁଏ ଭ୍ରାନ୍ତିପୂର୍ଣ୍ଣ ।
କାର୍ଯ୍ୟକାରିତା ତାହାର କିପରି ଘଟିଲା
ଦୁଃଖର କାରଣ ପୁଣି କିମ୍ପାଇ ସେ ହେଲା ?
କୁମ୍ଭମୁନି କହୁଛନ୍ତି ରାଜା ଏବେ ଶୁଣ
ଅତ୍ୟଧିକ ଶୀତପଡ଼େ ଯେ କାଳରେ ଜାଣ ।
ତରଳ ଜଳ ସେ କାଳେ ହୁଏ ଶିଳାହିମ
ସତ୍ୟ ଭାବନା ବଶତଃ ଏ ଜଗତ ଭ୍ରମ,
ବାସ୍ତବ ଜଗତ ବୋଲି ହୁଅଇ ପ୍ରତୀତ
ତେଣୁ ସୁଖ ଦୁଃଖ ହେତୁ ଅଟେ ଏ ଜଗତ ।
ଅଜ୍ଞାନ ଯେ କାଳେ ହୋଇଯାଏ ଦୂରୀଭୂତ
କ୍ରମଶ ବିଲୀନ ହୁଏ ଜଗତ ଅସ୍ତିତ୍ୱ ।
ଯେଉଁଯାଏ ଅଜ୍ଞାନର ହୋଇନାହିଁ ଅସ୍ତ
ଅଦୃଶ୍ୟ ନୁହଇ କେଭେଁ ଏହି ଯେ ଜଗତ ।
ବୁଦ୍ଧିର ବହିର୍ବୃତ୍ତିକୁ କରନ୍ତେ ନିରସ୍ତ
ଅଜ୍ଞାନ ବିନଷ୍ଟ ହୁଏ ଜାଣ ଏହି ତତ୍ତ୍ୱ ।
ଅଜ୍ଞାନ ବିନାଶି ପରଂପଦେ ଉପନୀତ
ହୋଇଗଲେ ବହିର୍ଦୃଷ୍ଟି ହୁଅଇ ନିବୃତ୍ତ ।
ତୁମ୍ଭେ ଯଦି ଏହିରୂପେ ଜାଣ ହେ ରାଜନ
କରିଦେଇପାର ଅଜ୍ଞାନର ବିନାଶନ,
ସ୍ୱରୂପେ ବିରାଜମାନ କରିବ ଯେ ତୁମେ
ଆଉ କେବେ ନ ପଡ଼ିବ ସଂସାରର ଭ୍ରମେ ।
ଏ ଦେହାଦି ଜଗତକୁ ମରୀଚିକା ସମ
ମିଥ୍ୟାବୋଲି ଜ୍ଞାନକରି ରୁହ ହେ ରାଜନ ।
"ଅଜ, ଅବ୍ୟକ୍ତ, ଅଚ୍ୟୁତ ଅଟଇ ଯେ ବ୍ରହ୍ମ
କିମ୍ପାଇଁ ନୋହିବେ ପଦ୍ମଯୋନିଙ୍କ କାରଣ ?"
କୁମ୍ଭମୁନି ବୋଲୁଛନ୍ତି ଶୁଣ ହେ ରାଜନ
ପୂର୍ବବର୍ତ୍ତୀ ଯେ ଅବସ୍ଥା ହେତୁ ତାହାଜାଣ ।

ପରବର୍ତ୍ତୀ ଅବସ୍ଥାର ଅଟଇ କାରଣ
ଏହି ନୀତି କାର୍ଯ୍ୟ କରେ ସଦା ହେ ରାଜନ ।
ପୂର୍ବତ୍ୱ ପରତ୍ୱ ନାହିଁ ବ୍ରହ୍ମଠାରେ ଯେଣୁ
ହେତୁ କାର୍ଯ୍ୟ କାରଣରେ ଅସଂପୃକ୍ତ ତେଣୁ ।
କର୍ତ୍ତା, କର୍ମ, କାରଣାଦି କଉଣସି ଭାବ
ବ୍ରହ୍ମଙ୍କଠାରେ ରହିବା ନୁହଇ ସମ୍ଭବ ।
ନାହିଁ ତାର ଉପାଦାନ ନାହିଁ ତା ନିମିତ୍ତ
ଅନିର୍ବଚନୀୟ ସେହୁ ବିଚାର ଅତୀତ ।
କାରଣ ନ ଥିବା ହେତୁ ଏହି ଯେ ଜଗତ
କାର୍ଯ୍ୟ ହୋଇ ନ ପାରଇ ଜାଣ କଦାଚିତ ।
ତେଣୁ ଏହି ଜଗତକୁ ବ୍ରହ୍ମ ବୋଲି ମଣ
ଯେଣୁ ତା ଅଟଇ କାର୍ଯ୍ୟ କାରଣ ବିହୀନ ।
ଜଗତର ଯେଣୁ ନାହିଁ ବାସ୍ତବ ଅସ୍ତିତ୍ୱ
କର୍ତ୍ତା ଅବା ଭୋକ୍ତା ତୁମେ ହୋଇବ କେମନ୍ତ ?
ତୁମେ ସେହି ଶିବରୂପୀ, ଅଜ, ବ୍ରହ୍ମ ଜାଣ
ତୁମେ ସେହି ସନାତନ ପରଂବ୍ରହ୍ମ ପୁଣ ।
କହୁଛନ୍ତି ଶିଖିଧ୍ୱଜ ଆହେ ଭଗବାନ
ଯୁକ୍ତି ଯୁକ୍ତ ଉପଦେଶ ଯା ଦେଲେ ଆପଣ ।
ମୁହିଁ ତାହା ବୁଝିଲଇଁ ଭଲରୂପେ ଜାଣ
ଚିନ୍ମୟାତ୍ମା ବିନା ଅନ୍ୟ ଦୃଶ୍ୟ ନାହିଁ ପୁଣ ।
ମୁହିଁ ସେହି ଚିତ୍‌ରୂପୀ ଆତ୍ମାବୋଲି ପୁଣ
ନିଜକୁ ନିଜେ ଦେଉଛି ଯଥାଯୋଗ୍ୟ ମାନ୍ୟ ।
ବହୁକାଳ ପରେ କର୍ମମୟ ଏ ଜଗତ
କି ଆଶ୍ଚର୍ଯ୍ୟ ! ମୋ ଦୃଷ୍ଟିରୁ ହୁଏ ବହିର୍ଭୂତ ।
ତଦ୍ୱାରା ମୁଁ ବ୍ରହ୍ମ ସାକ୍ଷାତକାର ଲଭିଲଇଁ
ପ୍ରଶାନ୍ତ ଓ ପରିପୂର୍ଣ୍ଣ ହୋଇଲଇଁ ମୁହିଁ ।
ଗମନାଦି କ୍ରିୟାହୀନ ହୋଇ କରି ଏବେ
ଉଦିତ ବା ଅସ୍ତମିତ ନ ହୁଅଇ କେବେ ।
ଏକଭାବେ ମୁହିଁ ରହିଅଛି ବର୍ତ୍ତମାନ
ଯେ ରୂପେ ଥିଲେ ସେ ରୂପେ ରହନ୍ତୁ ଆପଣ ।
ବିଶୁଦ୍ଧ ଓ ସୁଖମୟ ଆତ୍ମାରୂପେ ମୁହିଁ
ଅଛି ପୁଣି ସଦା ସେହିରୂପେ ରହିବଇଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଶିଖିଧ୍ୱଜ ଉପାଖ୍ୟାନେ ଅଜ୍ଞାନ ଧ୍ୱଂସ ବର୍ଣ୍ଣନେ ନାମ ବୟାଅଶୀ ସର୍ଗଃ ।**



## ତେୟାଅଶୀ ସର୍ଗଃ
## ଶିଖିଧ୍ୱଜ୍ ସମାଧି

କହନ୍ତି ବଶିଷ୍ଠ ଏହିପରି ସେ ରାଜନ
ନିଶ୍ଚଳ ଭାବେ ଆତ୍ମାରେ ବିଶ୍ରାମ ଲଭିଣ ।
ନିର୍ବାତ, ନିସ୍ପନ୍ଦ ପ୍ରଦୀପର ଶିଖାପରି
ଅଟଳ ଭାବେ ରହେ ସେ ରାଜ ତପଚାରୀ ।
ଏହିପରି ବହୁକାଳ ହୋଇଯାଏ ଗତ
ଶିଖିଧ୍ୱଜ ସମାଧିରୁ ହୁଅନ୍ତି ବ୍ୟୁଥିତ ।
ତାଙ୍କର ଜ୍ଞାନକୁ କରିବାକୁ ଦୃଢ଼ୀଭୂତ
ନାନା ଉପଦେଶ ପୁଣି ଦେଲେ କୁମ୍ଭସୁତ ।
ସେ ସକଳ ଉପଦେଶ ପାଇଣ ରାଜନ
ନିର୍ବିକଳ୍ପ ସମାଧିରେ ହୋଇଲେ ମଗନ ।
କୁମ୍ଭମୁନି ଯେତେବେଳେ ହେଲେ ଅନ୍ତର୍ହିତ
ଚୂଡ଼ାଲା ଅନ୍ତପୁରରେ ହେଲେ ଉପସ୍ଥିତ ।
ପୂର୍ବରପି ରାଜକାର୍ଯ୍ୟ କଲେ ନିର୍ବାହିତ
ଏହିପରି କିଛିଦିନ ହୋଇଯାଏ ଗତ ।
ପୁନର୍ବାର ସେ ଚୁଡ଼ାଲା କୁମ୍ଭରୂପ ଧରି
ରାଜାଙ୍କ ପାଶେ ପ୍ରବେଶ ହେଲେ ସେ ସୁନ୍ଦରୀ ।
ଦେଖନ୍ତି ସେ ଶିଖିଧ୍ୱଜ ସମାଧି ଗମନ
ସେହିଦିନୁ ସେ ସମାଧି ନୋହିଛି ଭଗନ ।
ରାଜାଙ୍କ ସମାଧି ଭଗ୍ନ କରିବାର ପାଇଁ
ବହୁବାହ୍ୟ ଚେଷ୍ଟାମାନ ରାଣୀ ଆଚରଇ ।
ସର୍ବଚେଷ୍ଟା ସତ୍ତ୍ୱେ ନୁହେ ସମାଧି ଭଗନ
ସୂକ୍ଷ୍ମ ଦେହେ ପଶେ ରାଣୀ ସ୍ୱାମୀ ଶରୀରେଣ ।
ତା ନିସ୍ପନ୍ଦ ଚୈତନ୍ୟକୁ କରିଣ ସ୍ପନ୍ଦିତ
ନିଜ ଶରୀରକୁ ପୁଣି ହେଲେ ପ୍ରତ୍ୟାଗତ ।
ସେତେବେଳେ ରାଜା ସତ୍ତ୍ୱ ସମ୍ପଦ ଲଭିଣ
ସମାଧିରୁ ଉଠି ପାଏ କୁମ୍ଭଦରଶନ ।
ପାଦପଦ୍ମେ ପୁଷ୍ପାଞ୍ଜଳି କରିଣ ପ୍ରଦାନ
ପ୍ରଣିପାତି କରି କହେ ଏମନ୍ତ ବଚନ ।
କେଡ଼େ ସୌଭାଗ୍ୟ ମୋହର ଆଜ ଦ୍ୱିଜବର
ଯାହାବଳେ ପାଇଲି ମୁଁ ଦର୍ଶନ ତୁମ୍ଭର ।
ଆପଣ ମୋତେ ପବିତ୍ର କରିବା ନିମିତ୍ତ
ପୁନରାୟ ଏହି ସ୍ଥାନେ ହେଲେ ଉପସ୍ଥିତ ।
କହୁଛନ୍ତି କୁମ୍ଭଋଷି ଆହେ ଆନନ୍ଦିତ
ତୁମ୍ଭପରି ମୋର ସଖା, ଆତ୍ମୀୟ ସୁହୃତ,

ବନ୍ଧୁ ଅବା ଶିଷ୍ୟମୋର ଆଉ କେହି ନାହିଁ
ତୁମେ ମୋର ସବୁସିନା ଆହେ ନରସାଇଁ ।
ତେଣୁକରି ସ୍ୱର୍ଗବାସ ତେଜି କରି ମୁହିଁ
ତୁମ୍ଭ ନିକଟରେ ଉପସ୍ଥିତ ହୋଇଛଇଁ ।
ପରମ ପଦେ ବିଶ୍ରାମ କରିଛ କି ନାହିଁ
ତାହା ମୋତେ ଏବେ ରାଜା କହନ୍ତୁ ବୁଝାଇ ।
ଭେଦ ଜ୍ଞାନ ସମୁତ୍ପନ୍ନ ଅଟେ ଯେଉଁ ଦୁଃଖ
ତହିଁ ପାଇଁ ତୁମେ କେଉଁ ନୁହଁ ତ ବିମୁଖ ?
ବିଷୟ ଭୋଗ ତୁମ୍ଭଙ୍କୁ ନିରସ ଅସାର
ଜଣାଯାଏ କିବା ନାହିଁ କହ ନରବର ?
କହେ ରାଜା ଶିଖିଧ୍ୱଜ ଶୁଣ ଭଗବନ
ଦୃଶ୍ୟାତୀତ ଆତ୍ମାକୁ ମୁଁ କରିଛି ଦର୍ଶନ ।
ସଂସାରକୁ ଅତିକ୍ରମ କରି ମୁଁ ପାରିଛି
ଏ ସବୁ ହେ ଦେବ ତୁମ କୃପାରୁ ଘଟିଛି ।
ଯାହାକି ପ୍ରାପ୍ତବ୍ୟ, ତାହା ପାଇ ମୁଁ ପାରିଛି
ପୂର୍ଣ୍ଣ ପରିତୃପ୍ତି ଦେବ ଲାଭ କରିଅଛି ।
ଭେଦ ଜ୍ଞାନ ବୋଲି କିଛି ମୋତେ ଜଣାନାହିଁ
ପର ଆପଣାକୁ ସମଭାବେ ମୁଁ ଦେଖଇ ।
ନିଜକୁ ମୁଁ ସର୍ବଦେହେ କରେ ଦରଶନ
କୌଣସି ସଂକଳ୍ପ ମୋର ନାହିଁ ମନେଜାଣ ।
ଆକାଶ ପରି ନିର୍ମଳ ଭାବ ବହି ମୁହିଁ
ସର୍ବସ୍ଥାନେ ଅବସ୍ଥାନ କରୁ ମୁଁ ଅଛଇ ।
**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଶିଖିଧ୍ୱଜ ସମାଧି ବର୍ଣ୍ଣନେ**
**ନାମ ତେୟାଅଶୀ ସର୍ଗଃ ।**



## ଚଉରାଅଶୀ ସର୍ଗଃ
## ମାୟାଶକ୍ତି ଆଗମନ

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଶିଖିଧ୍ୱଜ କୁମ୍ଭମୁନି ସେ ବନ ମଧ୍ୟେଣ ।
ଅଧ୍ୟାତ୍ମ୍ୟ ପ୍ରସଙ୍ଗ ଘେନି କେତେକ ଦିବସ
ଅତିବାହିତ କରିଲେ ସେ ବେନି ତପୀଶ ।
ନାନା ପରବତ ପୁଣି ନଦୀ ସରୋବର
କାନନ ମଧ୍ୟେ ବୁଲନ୍ତି ବେନି ତପୀବର ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
କୁମ୍ଭଶରୀର ଧାରିଣୀ ଚୂଡ଼ାଲା ଖବିର ।
ସ୍ୱାମୀ ସଂମ୍ଭୋଗ ସୁଖରେ ହୋଇଣ ଇଚ୍ଛୁକ
କୁମ୍ଭ ଶରୀର ଧରଇ ଦିବାଭାଗଯାକ ।
ରାତ୍ରିକାଳ ପହଞ୍ଚନ୍ତେ ଦୁର୍ବାସାମୁନିଙ୍କ
ଅଭିଶାପ କଥା ହେଜି ସେ ନାରୀତିଳକ ।
"କହୁଥାଏ ଦୁର୍ବାସାଙ୍କ ଅଭିଶାପ ବଳେ
ସ୍ତିରୀ ରୂପହୁଏ ମୁହିଁ ସଦାରାତି କାଳେ ।
ଏହିପରି କହି ସ୍ତୀରୀ ରୂପଧରି କରି
ସ୍ୱାମୀ ସହିତ ବିହରେ ସେ ସାରାଶର୍ବରୀ ।"
କିଛି ଦିନପରେ ଦୁହେଁ ପରିଣୟ ସୂତ୍ରେ
ଆବଦ୍ଧ ରହିଲେ ବିଧି ନିର୍ବନ୍ଧ ଯେମନ୍ତେ ।
ଦୁଇପ୍ରାଣୀ ରାତ୍ରି କାଳେ ସ୍ୱାମୀ, ସ୍ତୀରୀ ରୂପେ
ଦିବସରେ ପୁଣି ବିପ୍ର, ସୁହୃଦ ସ୍ୱରୂପେ ।
ଅବସ୍ଥାନ କରୁଥାନ୍ତି ଚିତ୍ତ ବିନୋଦନେ
ଚୂଡ଼ାଲାଙ୍କ ମନ କଥା କେ କହୁ ବଚନେ ।
ଚୂଡ଼ାଲା ଯେ ମନେ ମନେ ଏମନ୍ତ ଭାବଇ
ରାଜାର ବିଷୟାଶକ୍ତି ବୁଝିବାର ପାଇଁ ।
ମାୟାଶକ୍ତି ବଳେ ସେହୁ ଏମନ୍ତ ଯେ କଲା
ସ୍ୱର୍ଗରୁ ଇନ୍ଦ୍ର ଦେବଙ୍କୁ ସେ ଟାଣି ଆଣିଲା ।
ଗନ୍ଧର୍ବ ଅପ୍ସରାଗଣ ରହିଛନ୍ତି ସଙ୍ଗେ
ଇନ୍ଦ୍ରଦେବ ଉଭା ହେଲେ ବନ ମଧ୍ୟଭାଗେ ।
ପରିବାର ସହ ଦେବ ରାଜଙ୍କୁ ଦେଖିଣ
ରାଜା ଶିଖିଧ୍ୱଜ ତାଙ୍କୁ କରିଲେ ଅର୍ଚ୍ଚନ ।
"କି ଭାଗ୍ୟ ଆଜି ମୋହର ହେ ଦେବ ରାଜନ
କି କାରଣେ କହ ତବ ଏଥି ଆଗମନ ?"
କହୁଛନ୍ତି ଦେବରାଜ ଶୁଣ ହେ ରାଜନ
ତବଗୁଣେ ସମାକୃଷ୍ଟ ହୋଇକରି ଜାଣ ।
ଏହି ସ୍ଥାନେ କରିଅଛି ମୁହିଁ ଆଗମନ
ମୋର ସହ ଦେବଲୋକେ କରନ୍ତୁ ଗମନ ।
ନାନା ସ୍ୱର୍ଗ ସୁଖ ଭୋଗ କରିବେ ଆପଣ
ଏ ଘୋର ବନସ୍ତେ କିମ୍ପା ସହୁଛ ରାଜନ ?
କହୁଛନ୍ତି ଶିଖିଧ୍ୱଜ ଦେବରାଜ ଶୁଣ
ସ୍ୱର୍ଗ ସୁଖ ଭୋଗୁଛି ମୁଁ ରହି ଏହି ସ୍ଥାନ ।
ମୋର ବୁଦ୍ଧିବଳେ ମୁହିଁ ବୁଝୁଛି ଏସନ
ସର୍ବସ୍ଥାନ ସ୍ୱର୍ଗ ମୋର ହେ ଦେବ ରାଜନ ।
ତେଣୁ ଦେବ ଏହି ସ୍ଥାନ ତେଜିକରି ମୁହିଁ
ଆଉ କେଣେ ଯିବାପାଇଁ ମନ ନ ବଳଇ ।

ଶୁଣିକରି ରାଜାଙ୍କର ଏସନ ବଚନ
ଇନ୍ଦ୍ର କହେ ଆହେ କୁମ୍ଭ, ରାଜା ଏବେ ଶୁଣ ।
"ତୁମ୍ଭର ମଙ୍ଗଳ ହେଉ" ଏହା କହି କରି
ପରିବାର ସହ ଇନ୍ଦ୍ର ଗଲେ ସ୍ୱର୍ଗପୁରୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ମାୟାଶକ୍ତି ଆଗମନ ବର୍ଣ୍ଣନେ**
**ନାମ ଚଉରାଅଶୀ ସର୍ଗଃ ।**



## ପଞ୍ଚାଅଶୀ ସର୍ଗଃ

## ମାୟା ପଞ୍ଜର

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ମାୟା ଆଗମନ ଦେବରାଜ ଇନ୍ଦ୍ରଙ୍କର,
ଉପସଂହୃତ କରିଣ ଚୁଡ଼ାଲା ଚିନ୍ତଇ
ସୌଭାଗ୍ୟରୁ ରାଜାମନ ବିଷୟାରେ ନାହିଁ ।
ରାଜାଙ୍କ ସମଦର୍ଶନ ପରୀକ୍ଷା ନିମିତ୍ତ
ଚୁଡ଼ାଲା ଏହା ଭାବିଣ ହୁଅଇ ଉଦ୍ୟତ ।
ପ୍ରତିଦିନ ସାୟଂକାଳେ କୁମ୍ଭରୂପ ଛାଡ଼ି
ମଦନିକା ଅପସରା ରୂପ ସେହି ଧରି ।
ଦିନେ ନିଶାକାଳେ ସେହୁ ଏମନ୍ତ ଯେ କଲା
ରାଜାଙ୍କ ସହଧର୍ମିଣୀ ରୂପ ସେ ଧଇଲା ।
ସଂକଳ୍ପବଳେ ପୁରୁଷ ଏକ ସୃଷ୍ଟି କରି
ତାହା ସଙ୍ଗେ କୁଞ୍ଜ ମଧ୍ୟେ ନିଦ୍ରାଗତ ନାରୀ ।
ଏଣେ ରାଜା ଶିଖିଧ୍ୱଜ ଜପ ଶେଷ କରି
ଅନ୍ୱେଷଣ କରେ ମଦନିକା ଅପସରି ।
ସେ କୁଞ୍ଜ ମଧ୍ୟେ ଆସିଣ ଦେଖନ୍ତି ଏସନ
ଚୁଡ଼ାଲା ରହିଛି ଅନ୍ୟ ପୁରୁଷ ସଙ୍ଗେଣ ।
କୌଣସି ବିକାର ନ ଜନ୍ମଇ ରାଜା ଚିତ୍ତେ
କିନ୍ତୁ ସେ ମନକୁ ମନ ଭାବଇ ଏମନ୍ତେ ।
ଆହା କି ସୁଖରେ ଏହିମାନେ ନିଦ୍ରାଗତ
ଆଉ କିଛି କାଳ ଶୋଇଥାନ୍ତୁ ଏହି ମତ ।
ରାଜାଙ୍କୁ ଦେଖିଣ ଭୟଭୀତ ହୋଇକରି
ମୁଖରୁ ବଚନ ତାଙ୍କ ନ ପାରେ ବାହାରି ।
କହନ୍ତି ରାଜନ ଭୟ ନାହିଁ, 'ସୁଖେ ଶୁଅ'
ନିଦ୍ରାଶେଷେ କୁଞ୍ଜ ମଧ୍ୟେ ବିଚରୁଣ ଥାଅ ।
କଉଣସି ବାଧା ମୋହଠାରୁ ନ ପାଇବ
ବିଘ୍ନ କଥା ବା କେ କିମ୍ବା ସପନେ ଭାବିବ ।
ଏହା କହି ରାଜା ତହୁଁ କଲେକ ପ୍ରସ୍ଥାନ
ପାହାଡ଼ର ତଳେ ଯାଇ ସମାଧି ମଗନ ।
ଉପସଂହାର କରିଣ ମାୟାକୁ ଚୁଡ଼ାଲା
ମନ୍ଥର ଗତିରେ କୁଞ୍ଜ ମଧ୍ୟୁ ବାହାରିଲା ।
ସମ୍ଭୋଗ ଚିହ୍ନ ଅଙ୍କିତ ମଦନିକା ରୂପେ
ଉପସ୍ଥିତ ହୁଏ ଯାଇ ରାଜାଙ୍କ ସମୀପେ ।
ରାଜାଙ୍କୁ ଦେଖନ୍ତି ସମାଧିସ୍ଥ ଅବସ୍ଥାରେ
ନିଶଙ୍କ ଭାବେ ରାଜନ ବସେ ଶିଳା ତଳେ ।
କିଛିକାଳ ପରେ ରାଜା ସମାଧି ତେଜିଣ
ମଦନୀକାକୁ ସମ୍ମୁଖେ ଦେଖନ୍ତି ରାଜନ ।
ମଧୁର ବାକ୍ୟେ ସମ୍ବୋଧି କହନ୍ତି ଏସନ
ଏତେ ଶୀଘ୍ର ସୁଖ ତେଜି ଆସ କି କାରଣ ?
ଜୀବମାତ୍ରେ ସୁଖ ଭୋଗ ଅଭିଳାଷ କରେ
ତୁମେ ତାହା ପରିତ୍ୟାଗ କଲ କି ପ୍ରକାରେ ?
ଦୁର୍ବସାଙ୍କ ଅଭିଶପ୍ତ ରମଣୀ ଶରୀରେ
ଇଚ୍ଛା ଅନୁରୂପ କାର୍ଯ୍ୟ କରିପାର ଭଲେ ।
ତାହା ଦେଖି ମୋର ଚିତ୍ତ କେଭେ ଗୋ ସୁନ୍ଦରୀ
ଉଦ୍‌ବିଗ୍ନ ନୋହିବ ଜାଣ କହେ ଟାଣ କରି ।
ମୋ ପାଇଁ ଯେ କୁମ୍ଭ ଥିଲ ଏବେ ସେହି କୁମ୍ଭ
ଅବିକଳ ଉଭା ଅଛ ଧନ୍ୟ ମୋର ଦମ୍ଭ ।
ମୁଁ ଯେପରି ବିତରାଗ ପୁଣି ସମଦର୍ଶୀ
କୁମ୍ଭ ମଧ ସେହିପରି ବୁଝ ଘରୁ ହାସୀ ।
ମଦନିକା ବୋଲେ ନାଥ ଶୁଣ ମୋ ଗୁହାରି
ବିବେକ ବିହୀନ ମୁହିଁ ଅଭାଗିନୀ ନାରୀ ।
ଦୁଷ୍କାର୍ଯ୍ୟ କରିଛି ମୁହିଁ ମୋହବଶ ହୋଇ
ମାର୍ଜନା କରିବା ହେଉ ଦୟାଭାବ ବହି ।
କହୁଛନ୍ତି ଶିଖିଧ୍ୱଜ ଶୁଣ ଗୋ ସୁନ୍ଦରୀ
ଗଗନ ମଣ୍ଡଳେ ବୃକ୍ଷ ନ ଜନ୍ମେ ଯେପରି ।
ତେସନ ମୋର ମନରେ କ୍ରୋଧ ନ ଜନ୍ମଇ
ମୋ ମନ ଅବସ୍ଥା ବୁଝ ଆଗୋ ବାଳା ତୁହି ।
ସାଧୁଗଣ ଏ କର୍ମକୁ କରନ୍ତି ନିନ୍ଦନ
ତେଣୁ ତୁମକୁ ଆଉ ମୁଁ ନ କରେ ଗ୍ରହଣ ।
ବନ୍ଧୁ ରୂପେ ମୋର ସହ କର ଅବସ୍ଥାନ
ପାଶୋରି ଦିଅଗୋ ସବୁ ପୂର୍ବକଥା ମାନ ।
ଏହାକହି ପୂର୍ବପରି ଶିଖିଧ୍ୱଜ ରାଣ
ସମଭାବ ଅବଲମ୍ବୀ କଲେ ଅବସ୍ଥାନ ।

ରାଜାଙ୍କର ରାଗ ଦ୍ୱେଷ ଭୋଗାଦି ବାସନା
ଅଭାବ ଦେଖିଣ ସେ ଚୂଡ଼ାଲା ମହାମନା ।
ସୁ-ସୁଦୃଢ଼ ସମଜ୍ଞାନ କରି ଦରଶନ
ସନ୍ତୁଷ୍ଟ ଚିତ୍ତରେ ସେହୁ ଭାବଇ ଏସନ ।
ବର୍ତ୍ତମାନ କୁମ୍ଭ ରୂପ ତେଜିବଇଁ ମୁହିଁ
ଚୂଡ଼ାଲା ରୂପେ ରାଜାଙ୍କୁ ଦେଖା କରିବଇଁ ।
ଏସନ ନିଷ୍ପତ୍ତି କରି ସେ ରାଣୀ ଚୂଡ଼ାଲା
ପଲକ ମାତ୍ରକେ ଛଦ୍ମ ରୂପ ତେଜି ଦେଲା ।
ଆତ୍ମପ୍ରକାଶ କରଇ ଚୂଡ଼ାଲା ରୂପରେ
ସେ କାଳେ ରାଜା ଦେଖନ୍ତି ନିଜ ନୟନରେ ।
ପ୍ରିୟତମା ଚୂଡ଼ାଲା ହିଁ ତାଙ୍କ ସମ୍ମୁଖରେ
ମୁକ ପରି ଉଭାଛନ୍ତି ନତ ମସ୍ତକରେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ମାୟାପଞ୍ଜର ବର୍ଣ୍ଣନେ**
**ନାମ ପଞ୍ଚାଅଶୀ ସର୍ଗଃ ।**



## ଛୟାଅଶୀ ସର୍ଗଃ

## ଶିଖିଧ୍ୱଜ ଚୂଡ଼ାଲା ଉପାଖ୍ୟାନ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁରାଜ
ସମ୍ମୁଖରେ ଚୂଡ଼ାଲାକୁ ଦେଖି ଶିଖିଧ୍ୱଜ ।
ଅତୀବ ବିସ୍ମୟାପନ୍ନ ହୋଇଣ ରାଜନ
ପଚାରନ୍ତି ତୁମ୍ଭେ କିଏ କାହୁଁ ଆଗମନ ?
ତୁମକୁ ଦେଖିଣ ଆସେ ଏମନ୍ତ ମୋ ମନ
ତୁମେ କି ସେହି ମୋ ପତ୍ନୀ ଗୋ ନାରୀ ରତନ ?
କେବଣ କାରଣେ କୁହ ତୁମ ଆଗମନ ?
କେବେଠାରୁ ଆସିଲଣି କହ ତା ଫେଡ଼ିଣ ।
କହନ୍ତି ଚୂଡ଼ାଲା ଶୁଣ ହେ ଆର୍ଯ୍ୟ ନନ୍ଦନ
ଯଥାର୍ଥ ଅଟଇ ଆପଣଙ୍କ ଅନୁମାନ ।
ମୁହିଁ ତୁମ ଧର୍ମପତ୍ନୀ ନାମ ଯେ ଚୂଡ଼ାଲା
ଏତେକାଳ ପରେ ଆଜି ମୋର ଭେଟ ହେଲା ।
ଯଥାର୍ଥ ଶରୀର ଧରି ଆଜି ପ୍ରାଣନାଥ
ତୁମର ସମ୍ମୁଖେ ହୋଇଲଇଁ ଉପସ୍ଥିତ ।
ଆପଣଙ୍କର ପ୍ରବୋଧ ସମ୍ପାଦନ ପାଇଁ
କୁମ୍ଭ ନାମକ ଶରୀର ଧରି ମୁଁ ଥିଲଇଁ ।
କୁମ୍ଭ, ମଦନିକା, ଇନ୍ଦ୍ର ତାଙ୍କ ପାରିଷଦ
ଯେତେ ଯେତେ ଛଦ୍ମ ବେଶ ଧରିଥିଲି ଭଦ୍ର,
ତୁମ୍ଭରି ଜ୍ଞାନ ଉଦୟ ନିମିତ୍ତ ରାଜନ
ଏହିସବୁ ମାୟା କରିଥିଲି ପ୍ରଦର୍ଶନ ।
ତତ୍ତ୍ୱଜ୍ଞ ହୋଇ ଅଛନ୍ତି ଏକ୍ଷଣି ଆପଣ
ତେଣୁ ସବୁ ମାୟା ଦେହ ତେଜ ମୁଁ ଦେଇଣ ।
ନିଜ ଶରୀରରେ ଆଜି ଆପଣଙ୍କ ପାଶ
ଉଭା ରହିଅଛି ଜାଣ ଆହେ ନର ଈଶ ।
ଇଚ୍ଛାକଲେ ଧ୍ୟାନ ବଳେ ହେ ମହାରାଜନ
ଲଭିଣ ପାରନ୍ତି ତାର ପ୍ରତ୍ୟକ୍ଷ ଦର୍ଶନ ।
ଧର୍ମପତ୍ନୀ ଚୂଡ଼ାଲାର ଏ ବଚନ ଶୁଣି
ଶିଖିଧ୍ୱଜ ଧ୍ୟାନମଗ୍ନ ହେଲେ ତତକ୍ଷଣି ।
ରାଜ୍ୟ ତ୍ୟାଗଠାରୁ ଜ୍ଞାନ ଲାଭ ପର୍ଯ୍ୟନ୍ତ
ସବୁ ନାଚିଯାଏ ରାଜାଙ୍କର ଜ୍ଞାନନେତ୍ର ।
ଚକ୍ଷୁ ଫେଡ଼ି ପୁଣିକରି ହସ୍ତ ପ୍ରସାରଣ
ମହାଦେଇଙ୍କୁ ସାଦରେ କଲେ ଆଲିଙ୍ଗନ ।
ସେହି ଆଲିଙ୍ଗନ କାଳେ ଉଭୟ ହୃଦୟେ
ଯେ ସବୁ ଭାବନାମାନ ହୁଅନ୍ତି ଉଦୟେ ।
ଶେଷନାଗ ମଧ୍ୟ ତାଙ୍କ ସହସ୍ର ବଦନେ
ତିଳେ ମାତ୍ର ବର୍ଣ୍ଣି ନ ପାରିବେ କଦାଚନେ ।
ବହୁକ୍ଷଣ ପରେ ରାଜା କହନ୍ତି ଏସନ
ସ୍ୱାମୀପାଇଁ ନ କରିଛ କେତେ ବା କଷଣ ?
ଯେଉଁ ଜ୍ଞାନବଳେ ଏହି ଦୁସ୍ତର ସଂସାରୁ
ଉଦ୍ଧାର କରିଛ ମୋତେ ଆଗୋ ନାରୀଗୁରୁ,
କାହିଁ ବା ତୁଳନା ତାର କେ କଳିପାରିବ
ବ୍ରହ୍ମା, ଶଙ୍କର ଆଦିଙ୍କୁ ଗୋଚର ନ ଥିବ ।
ମୂର୍ତ୍ତୀମତୀ ଦୟା, ଲକ୍ଷ୍ମୀ ତୁମେ ଗୋ ସୁନ୍ଦରୀ
ମୂର୍ତ୍ତୀମତୀ ହୋଇ କ୍ଷମା ବିଜେ କି ଏ ପୁରି ?
ବ୍ରହ୍ମାଣୀ, ଇନ୍ଦ୍ରାଣୀ, ଅରୁନ୍ଧତୀ, ସରସ୍ୱତୀ
ପାର୍ବତୀଙ୍କୁ, ଆଦିକରି ଯେତେ ଛନ୍ତି ସତୀ,
ଏ ସବୁଙ୍କୁ ଟପିଗଲ ତୁମେ ଗୋ ସୁନ୍ଦରୀ
ସିନ୍ଦୂର ଟୋପା ତୁମେ ଗୋ ଯେତେ କୁଳସ୍ତିରୀ ।
କୁଳସ୍ତିରୀମାନଙ୍କର ଏହା ଯେ ଧରମ
ମୋହସାଗରୁ ସ୍ୱାମୀଙ୍କୁ କରିଥାନ୍ତି ତ୍ରାଣ ।
ଗୁରୁ ଉପଦେଶ, ସତ୍ସଙ୍ଗ, ସତ୍ଶାସ୍ତ୍ର
ମନ୍ତ୍ରମନ୍ତ୍ରାଣି ଇତ୍ୟାଦି ଯେତେକ ପଦାର୍ଥ,
ଯାହା କରି ନ ପାରନ୍ତି ପତିବ୍ରତାନାରୀ
ସ୍ୱାମୀଙ୍କୁ ସେ ଅନାୟାସେ ପରିତ୍ରାଣ କରି ।

ଭର୍ତ୍ତାର ସଖା, ସୁହୃଦ, ଭ୍ରାତା, ଗୁରୁ, ମିତ୍ର
ବନ୍ଧୁ, ଭୃତ୍ୟ, ଧନ, ସୁଖ, ଗୃହ, ଦାସ, ଶାସ୍ତ୍ର ।
କୁଳ ରମଣୀ ଗଣ ହିଁ ଅଟନ୍ତି ଏମନ୍ତ
ସେ କୁଳରମଣୀ ପୂଜ୍ୟ ଏ ତିନି ଜଗତ ।
ତୁମ ପ୍ରସାଦରୁ ମୋର ଆତ୍ମପଦ ଲାଭ
ହେଲା ଯା ଅଟେ ଦୁର୍ଲ୍ଲଭ ଭାଗ୍ୟକୁ ସୁଲ୍ଲଭ ।
ଚୁଡ଼ାଲା ବୋଲନ୍ତି ଦେବ ତୁମେ ଯେତେବେଳେ
ଆବଦ୍ଧ ହୋଇଣ ଥିଲ ଏ ସଂସାର ଜାଲେ ।
ମର୍ମ୍ମନ୍ତୁଦ ଯନ୍ତ୍ରଣା ମୁଁ ଭୋଗୁଥିଲି ଜାଣ
କିପରି ପାଇବ ଏ ସଙ୍କଟୁ ପରିତ୍ରାଣ ।
ରାଜ୍ୟ ତେଜି ଦେଇ ତୁମେ ଆହେ ନୃପବର
ଅଜ୍ଞାନକୁ ହିଁ ସାଥିରେ ଘେନି ଚଳିଥିଲ ।
ତେଣୁକରି ନିଚସ୍ଥାନେ ହୋଇଲ ପତିତ
ତେଣୁକରି ହେଉଥିଲି ମୁହିଁ ବ୍ୟାକୁଳିତ ।
ଗଙ୍ଗାଜଳ ତେଜିକରି ଯେସନ ଅଜ୍ଞାନ
କାଦୁଅ ଜଳକୁ କରିଥାଏ ସେ ବରଣ,
ତେସନ ଆତ୍ମପଦକୁ ତେଜି ନରବର
ତପସ୍ୟାକୁ କରି ନେଇଥିଲ ଅଙ୍ଗୀକାର ।
କାଦୁଅରେ ଘାଣ୍ଟିହେବା ତୁମକୁ ଦେଖିଣ
ତୁମ ପରିତ୍ରାଣ ପାଇଁ ସହିଲି କଷଣ ।
ତେଣୁକରି ଆପଣଙ୍କ ଜ୍ଞାନ ହେ ରାଜନ
ଆପଣଙ୍କୁ ସିନା କରିଅଛି ମୁଁ ପ୍ରଦାନ ।
ଏଡ଼େ ଅନର୍ଗଳ ଭାବେ ମୋହର ପ୍ରଶଂସା
କିମ୍ପା ଗାଇ ହେଉଅଛ ଆହେ ମହାଯଶା ?
ହୋଇପାରିଛ ତ ତୁମେ ପୂର୍ଣ୍ଣ ଆପ୍ତକାମ ।
ମୋର ଯା କର୍ତ୍ତବ୍ୟ କରିଛି ମୁଁ ସମ୍ପାଦନ
ଶିଖିଧ୍ୱଜ କହନ୍ତି ଗୋ ପତିବ୍ରତେ ଶୁଣ !
ତୁମ ସଦୃଶ ଏବେ ମୁଁ ଲଭିଛି ନିର୍ବାଣ ।
ଅଥବା ଯାହା ମୁଁ ଥିଲି ରହିଛି ସେପରି
ଅନ୍ୟ କିଛି ହୋଇନାହିଁ ଆଗୋ ସତୀଶ୍ୱରୀ ।
ଆଗୋ ବିଶାଳାକ୍ଷି ! ତୁମ ଅନୁଗ୍ରହ ଘେନି
ସଂସାରରୁ ପରିତ୍ରାଣ ପାଇଛି ମାନିନୀ ।
ତେଣୁ ତୁମେ ମୋର ଗୁରୁ ଆଗୋ ପତିବ୍ରତେ
ଘେନ ମୋର ନମସ୍କାର ଦୟାକରି ମୋତେ ।
କହନ୍ତି ଚୁଡ଼ାଲା ଶୁଣ ଆହେ ପ୍ରାଣନାଥ
କିସ ତୁମ ଅଭିଳାଷ କରିବା ବ୍ୟକତ ।

ଶିଖିଧ୍ୱଜ କହୁଛନ୍ତି ଶୁଣ ଆଗୋ ତନୀ
ଇଚ୍ଛା ଯେ କିପରି ବସ୍ତୁ କିଛି ମୁଁ ନ ଜାଣି ।
ଅନିଚ୍ଛା ବା କି ଜିନିଷ ଭୁଲି ମୁଁ ଯାଇଛି
କେବଳ ଯାହା କରିଛି ସେତିକି ଜାଣିଛି ।
ଆଗୋ ପ୍ରିୟେ ଏହିସ୍ଥଳେ ଯାହାଇଚ୍ଛା ତୁମ
ତାହାମୋର ଅଙ୍ଗୀକାର ଏ କଥା ଜାଣିମ ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ସ୍ୱାମୀକୁ ଘେନି ଚୁଡ଼ାଲା ରାଜ୍ୟକୁ ଗମନ ।
ରାଜ ଭବନେ ପ୍ରବେଶ କରିଣ ସେ ରାଣୀ
ପାତ୍ର, ମନ୍ତ୍ରୀ ସାମନ୍ତକୁ ଡକାଇ ସେ ଆଣି ।
ଶୁଭଦିନେ ଶୁଭଲଗ୍ନେ ସ୍ୱାମୀଙ୍କୁ ତାଙ୍କର
ରାଜପଦେ ଅଭିଷିକ୍ତ କଲେ ନାରୀବର ।
ଅଭିଷେକ ଉପଲକ୍ଷ୍ୟେ ସେହି ନଗରରେ
ଆଉ ମଧ୍ୟ ସେହି ରାଜବାଟୀର ମଧ୍ୟରେ,
ସପ୍ତଦିନ ପରିଯନ୍ତ ଉତ୍ସବ ଶେଷରେ
ଶିଖିଧ୍ୱଜ ରାଜା ରାଜ୍ୟ କାର୍ଯ୍ୟ ଚଳାଇଲେ ।
ଦଶସହସ୍ର ବର୍ଷଯାଏ ସେ ରାଜ ଦମ୍ପତି
ନିର୍ବିଘ୍ନରେ ରାଜକାର୍ଯ୍ୟ ଚଳାଇଲେ ନିତି ।
ସତ୍ତାସାମାନ୍ୟ ଭାବରେ ଦୁହେଁ ଅବସ୍ଥିତ
ରାଗଦ୍ୱେଷ ନ ରଖନ୍ତି କାହାରି ସହିତ ।
ଯେ କୌଣସି ମତେ ଆତ୍ମପଦେ ରହି ସ୍ଥିତ
ରାଜ୍ୟକାର୍ଯ୍ୟ ଚଳାନ୍ତି ସେ ଆବଶ୍ୟକ ମତ ।
ପ୍ରାରବ୍ଧ କ୍ଷୟ ହୁଅନ୍ତେ ସେ ରାଜ ଦମ୍ପତି
ବ୍ରହ୍ମଲୋକରେ ଯାଇଣ କଲେ ଅବସ୍ଥିତି ।
ଶିଖିରାଜନ ସଦୃଶ ହେ ରଘୁନନ୍ଦନ
ଅନୁବରତନ କର ଉପସ୍ଥିତ କର୍ମ
ବିଗତ ଶୋକ ହୋଇଣ କର ଅବସ୍ଥାନ
ରାଗଦ୍ୱେଷ ଶୋକ ଆଦି କର ବରଜନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଶିଖିଧ୍ୱଜ ଚୁଡ଼ାଲା ଉପାଖ୍ୟାନ ବର୍ଣ୍ଣନେ**
**ନାମ ଛୟାଅଶୀ ସର୍ଗଃ ।**



## ସତାଅଶୀ ସର୍ଗଃ

## ବୃହସ୍ପତି ବୋଧନ

କହନ୍ତି 'ବଶିଷ୍ଠ ଶୁଣ ଆଉର କଥାଏ '
ବୃହସ୍ପତି ପୁତ୍ର କଚ ଆଖ୍ୟାନ ଯା' ହୁଏ ।

ଶିଖିଧ୍ୱଜ ରାଜାପରି ସେ କଚ ରାଜନ
ଆକସ୍ମିକ ଭାବେ ଲଭିଥିଲେ ତତ୍ତ୍ୱଜ୍ଞାନ ।
ଆହେ ରାମ ! ତୁମେ ମଧ୍ୟ ସେହିପରି ହୁଅ
ଅକ୍ଷୟ କୀରତି ଧାରା ଧରା ତଳେ ବାହ ।
ଶ୍ରୀରାମ କହନ୍ତି ଶୁଣ ଆହେ ତପୀସିଦ୍ଧ
ଯେପରି କଚ ରାଜନ ହୋଇଲେ ପ୍ରବୁଦ୍ଧ ।
ସେହି କଥା ମୋର ଆଗେ କହିବା ବୁଝାଇ
କୃତ୍ୟ କୃତ୍ୟ ହେବି ଦେବ କାଳ କାଳ ମୁହିଁ ।
କହନ୍ତି ବଶିଷ୍ଠ ରାମ ତାହା ଏବେ ଶୁଣ
ଶିଖିଧ୍ୱଜ ପଥ ଅନୁସରି କଚ ରାଣ ।
ତତ୍ତ୍ୱଜ୍ଞାନ ଲଭିବାରେ କୃତକାର୍ଯ୍ୟ ହୋଇ
ଧନ୍ୟ ଧନ୍ୟ ହୋଇଥିଲେ ସେ ରାଜ ତନୟି ।
ଶଇଶବ ପରେ କଚ ବିବିଧ ଶାସ୍ତ୍ରରେ
ପାରଦର୍ଶୀ ହୋଇଥିଲେ ଜାଣ ରଘୁବୀରେ ।
ସଂସାରରୁ କିପରି ବା ହୋଇବେ ଉତ୍ତୀର୍ଣ୍ଣ
ପିତୃଦେବଙ୍କୁ ପୁଚ୍ଛନ୍ତି ସେ କଚ ରାଜନ ।
ଏ ସଂସାର ପିଞ୍ଜରାରୁ କିପରି ମୁକତ
ହୋଇପାରିବି ହେ ପିତା କହ ମୋ ଅଗ୍ରତ ?
କହିଥିଲେ ବୃହସ୍ପତି ଆରେ ବତ୍ସ ଶୁଣ
ସର୍ବସ୍ୱ ତ୍ୟାଗ କରିଲେ ସଂସାରୁ ଉତ୍ତୀର୍ଣ୍ଣ ।
ପିତାଙ୍କଠାରୁ ଏପରି ଉପଦେଶ ପାଇ
ସମସ୍ତ ତେଜିଣ କଚ ବନେ ଚଳିଯାଇ ।
କେତେ ବର୍ଷ ପରେ କଚ ଚଳେ ଅନ୍ୟ ବନ
ଦଇବାତ୍ ପିତାଙ୍କର ପାଏ ଦରଶନ ।
ପିତାଙ୍କୁ ସମ୍ବୋଧି ସେହୁ କହନ୍ତି ବଚନ
ସର୍ବସ୍ୱ ତେଜିଲି ଆଠ ବର୍ଷ ହେଲା ଜାଣ ।
ଏ ପର୍ଯ୍ୟନ୍ତ ମଧ୍ୟ ମୁହିଁ ଆତ୍ମାରେ ବିଶ୍ରାମ
କରିପାରି ନାହିଁ ଆହେ ପିତୃଦେବ ଶୁଣ ।
ପୁତ୍ରଠାରୁ ଶୁଣି ଏହି କାତର ବଚନ
'ସର୍ବ ତ୍ୟାଗ କର' କହି ଗଲେ ସ୍ୱର୍ଗଧାମ ।
ଦଣ୍ଡ, କମଣ୍ଡଳୁ, ବଳକଳ ପରିଧେୟ
ସବୁ ତ୍ୟାଗ କରି ବୃହସ୍ପତିଙ୍କ ତନୟ ।
ଗିରି ଗୁହା ମଧ୍ୟେ ଯାଇ ପ୍ରବେଶ କରିଣ
ବାସ କରି ରହିଲେକ ସେ କଚ ରାଜନ ।
କିଛିକାଳ ପରେ ଯାଇଁ ପିତାଙ୍କୁ ଭେଟିଲେ
କର ପତ୍ର ଯୋଡ଼ି ତାଙ୍କୁ ଏମନ୍ତ କହିଲେ ।
ଦଣ୍ଡ କମଣ୍ଡଳୁ ଆଦି ସକଳ ତେଜିଲି
ତଥାପି ବିଶ୍ରାନ୍ତ ମୁହିଁ ହୋଇ ନ ପାରିଲି ।
ବୃହସ୍ପତି କହିଲେ ହେ ବତ୍ସ ! ଏବେ ଶୁଣ
ସର୍ବସ୍ୱ ତ୍ୟାଗର ଜାଣ ଏହି ଯେ ମରମ ।
ସର୍ବସ୍ୱ ତେଜନ ଅଟେ ଚିତ୍ତର ତେଜନ
ଚିତ୍ତ ତ୍ୟାଗ ଖୋଲିଦିଏ ମୁକ୍ତ ପଥ ଜାଣ ।
ସର୍ବମୟ ସେ ଚିତ୍ତକୁ ଯଦି ତେଜି ପାର
ଅଚିରେ ଯଥାର୍ଥ ତ୍ୟାଗୀ ତେବେ ହୋଇପାର ।
ଏହା ଶୁଣି କଚ କରେ ଚିତ୍ତ ଅନ୍ୱେଷଣ
ଖୋଜି ଖୋଜି କାହିଁ ତାର ନ ପାଏ ସନ୍ଧାନ ।
ପୁନର୍ବାର ପିତା ପାଶେ ମିଳିଲେକ ଯାଇଁ
ପ୍ରଣିପାତ କରି ତାଙ୍କୁ ଏମନ୍ତ ପୁଚ୍ଛଇ ।
ଭୋ ପିତଃ ! ଆଦେଶ ଦେଲ ଚିତ୍ତ ତ୍ୟାଗ ପାଇଁ
ସେ ଚିତ୍ତର ପତ୍ତା ମୋତେ କାହିଁ ନ ମିଳଇ ।
ସେ ଚିତ୍ତ ରୂପ କିପରି କହନ୍ତୁ ଆପଣ
ଯାହାବଳେ ମନ ମୋର ଶାନ୍ତ ହେବ ଜାଣ ।
ବୃହସ୍ପତି କହୁଛନ୍ତତି ଆରେ ପୁତ୍ର ଶୁଣ
ଅହଂକାର ହିଁ ଚିତ୍ତର ଅନ୍ୟ ନାମ ଜାଣ ।
ଆମ ମଧ୍ୟେ ଯେଉଁ 'ମୁହିଁ' ଅଛି ଆରେ ପୁତ୍ର ।
ସେହି 'ମୁହିଁ' ଜାଣ 'ଚିତ୍ତ' ଏ କଥା ନିଶ୍ଚିତ ।
କଚ ବୋଲେ ଆହେ ପିତା ମୋରେ ଦୟା ବହ
ଅହଂକାର କି ରୂପରେ ଚିତ୍ତ ହେଲା କହ ।
କହୁଛନ୍ତି ବୃହସ୍ପତି ଶୁଣରେ ନନ୍ଦନ
ଅଜ୍ଞାନ ବା ଆତ୍ମଜ୍ଞାନ ଅଭାବରେ ଜାଣ,
ଅହଂକାର ହୋଇଥାଏ ତହିଁରୁ ଉତ୍ପନ୍ନ
ତାହା ଅଟେ ଜାଣ ପୁତ୍ର ଭ୍ରାନ୍ତିମୟ ଜ୍ଞାନ ।
କେବଳ ହିଁ କଳପନା ପ୍ରଭାବରୁ ଜାଣ
ସତ୍ୟ ପରି ବୋଧ ହୁଏ ରଖ ଏହା ମନ ।
ରଜ୍ଜୁରେ ଯେପରି ସର୍ପଭ୍ରମ ହୋଇଥାଏ
ସେହିପରି ଆତ୍ମା ମଧ୍ୟେ ଏହି ଭ୍ରମ ରହେ ।
ପରିଚ୍ଛେଦ ଶୂନ୍ୟ, ନିତ୍ୟୋଦିତ, ସୁନିର୍ମଳ
ବିଶାଳ ଚୈତନ୍ୟ ରୂପ ଆତ୍ମା ତୁରେ ବାଳ ।
ଜଗତ ସାର ଆନନ୍ଦମୟ ଚଇତନ୍ୟ
ତୋହର ସ୍ୱରୂପ ଜାଣି ରଖରେ ନନ୍ଦନ ।
ତେଣୁ ତୋର ଅହଂଭାବ ହେଜରେ ନନ୍ଦନ
କିପରି ବା ସତ୍ୟ ହେବ ଏବେ କର ଧ୍ୟାନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ବୃହସ୍ପତି ବୋଧନ ବର୍ଣ୍ଣନେ**
**ନାମ ସନ୍ତାଅଶୀ ସର୍ଗଃ**

❑

# ଅଠାଅଶୀ ସର୍ଗଃ

## ମିଥ୍ୟା ପୁରୁଷାକାଶ

କହନ୍ତି ବଶିଷ୍ଠ ଏବେ ଶୁଣ ରଘୁ ବତ୍ସ
ପିତାଠାରୁ ଉପଦେଶ ପାଇ କରି କଚ ।
ମୋହ ଗ୍ରନ୍ଥି ଛେଦି ଦେଇ ନିର୍ମମ ଭାବରେ
ଅହଂକାର ଛାଡ଼ି ଜୀବନ୍ମୁକ୍ତ ହୋଇଥିଲେ ।
ତୁମେ ମଧ୍ୟ ସେହିପରି ହୁଅ ରଘୁବୀର
ଅହଂଭାବ ମିଥ୍ୟା ଜାଣି ତାକୁ ତେଜ୍ୟା କର ।
ସେହି ମିଥ୍ୟା ଅହଂଭାବ ଯେବେ ତେଜିପାର
ତେବେ ଜନମ ମରଣ ହେବ ବା କାହାର ?
ଆକାଶରେ ବୀଜ ବୁଣି କେହି ତାର ଫଳ
ପାଇକି ପାରନ୍ତି କହ କୌଶଲ୍ୟା କୁମର ?
ସଂକଳ୍ପ ଶୂନ୍ୟ ଚୈତନ୍ୟ ଅଟ ତୁମେ ରାମ
ଅହଂଭାବରୁ ଚୈତନ୍ୟ ସ୍ୱରୂପୁ ବିଚ୍ଛିନ୍ନ ।
ସ୍ୱରୂପ ଅଜ୍ଞତା ଘେନି ଏ ମାୟା ଜଗତ
ଅହଂଭାବ ହେତୁ ହେଉଅଛି ପ୍ରତିଭାତ ।
ସେହି ଯେ ସ୍ୱରୂପ ଜ୍ଞାନ ହୁଅନ୍ତେ ଉଦିତ
ବ୍ରହ୍ମରୂପେ ଦେଖାଯିବ ସକଳ ଜଗତ ।
ସର୍ବତ୍ୟାଗ କରି ତୁମେ ଚୈତନ୍ୟ ରୂପରେ
ପ୍ରକାଶ ପାଉଣ ଥାଅ ଆହେ ରଘୁବରେ ।
ମିଥ୍ୟା ପୁରୁଷ ସଦୃଶ ତୁମେ ହେ ଶ୍ରୀରାମ
ଆଉ ନିରର୍ଥକ ଦୁଃଖ ନ ଭୋଗ ହେ ପୁଣ ।
ଶ୍ରୀରାମ କହନ୍ତି ତେବେ ଆହେ ତପୋଧନ
ଯେ ମିଥ୍ୟା ପୁରୁଷ କଥା କହିଲ ଆପଣ ।
ସେ ମିଥ୍ୟା ପୁରୁଷ କିଏ ତାହା ମୋତେ କହ
ସକଳ ସନ୍ଦେହ ମୋର ଦୂର କରିଦିଅ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଏପରି ପୁରୁଷ ଏକ ଅଛି ଏ ବିଶ୍ୱର ।
ଯେ ପୁରୁଷ ଆକାଶରୁ ହୋଇଣ ଉଦ୍ଭୁତ
ସେହି ଆକାଶରେ ପୁଣି ହୁଏ ଅବସ୍ଥିତ ।
ମରୁଦେଶେ ମରୀଚିକା ବାସ୍ତବ ଯେପରି
ସେ ପୁରୁଷ ଅବସ୍ଥାନ ଜାଣ ସେହିପରି ।
ସେହି ଆକାଶରେ ପୁଣି ହୋଇ ସେ ବର୍ଦ୍ଧିତ
ମନେ ମନେ ଭାବିହେଲା ସେହି ଯେ ଏମନ୍ତ ।
"ମୋର ପ୍ରାଣପ୍ରିୟ ବସ୍ତୁ ଏହି ଯେ ଆକାଶ
ଏହାର ରକ୍ଷଣ ମୁହିଁ କରିବି ଅବଶ୍ୟ ।"
ଆକାଶ ରକ୍ଷାପାଇଁ କି ଆକାଶ ମଧ୍ୟରେ
ଘରଟିଏ ତୋଳି ସେହୁ ରହିଲା ତହିଁରେ ।
ଘରସ୍ଥ ଆକାଶ ନଷ୍ଟ ନୋହିବ ଯେପରି
ଚିନ୍ତିତ ହୋଇ ରହେ ସେ ଦିବସ ଶର୍ବରୀ ।
କିଛିକାଳ ପରେ ଜାଣ ସେ ଗୃହ ତାହାର
ବିନାଶ ପ୍ରାପ୍ତ ଲଭିଲା ଆହେ ରଘୁବୀର ।
ଗୃହ ମଧ୍ୟସ୍ଥ ଆକାଶ ନିମିତ୍ତ ହେ ରାମ
ଶୋକଗ୍ରସ୍ତ ହୋଇ ଧୈର୍ଯ୍ୟ ହରାଇଲା ଜାଣ ।
କିୟତ୍କାଳ ପାଇଁ ଶୋକଗ୍ରସ୍ତ ସେ ହୋଇଣ
ସେହି ଆକାଶର ରକ୍ଷା କରିବା କାରଣ ।
କୂଅଟିଏ ଖୋଳିଦିଏ ସେହି ଆକାଶରେ
ସେ କୂପ ଭୁଷୁଡ଼ି ପଡ଼େ କାଳର ବଶରେ ।
କୂପ ମଧ୍ୟସ୍ଥ ଆକାଶ ପାଇଁ ଶୋକାକୁଳ
ହେବାରୁ ସେ ସବୁବେଳେ ହୁଏ କଲବଲ ।
କଳସ ଗୋଟିଏ ତହୁଁ ନିର୍ମାଣ ସେ କଲା
କଳସ ମଧ୍ୟସ୍ଥ ନଭେ ସ୍ୱଚ୍ଛନ୍ଦେ ରହିଲା ।
ଯଥାକାଳେ ସେ କଳସ ହୁଅଇ ଭଗନ
ତେଣୁ ସେ ପୁରୁଷ ଶୋକସାଗରେ ମଗନ ।
ଏହିରୂପେ ହତଭାଗ୍ୟ ସେ ମିଥ୍ୟା ପୁରୁଷ
ସୁରକ୍ଷିତ କରିବାକୁ ତାହାର ଆକାଶ ।
କେତେ ଯେ ଗୃହ କଳସ ଆଦି ନିର୍ମାଣଇ
ଗଣୁଥିଲେ ନ ସରିବ, ଇୟତ୍ତା ନଥାଇ ।
ଗହ୍ୱର ମଧ୍ୟସ୍ଥ ଆକାଶର ରକ୍ଷା ଅର୍ଥେ
କେବେ ସେ ମିଥ୍ୟା ପୁରୁଷ ନୋହିଲା ସମର୍ଥ ।
ଶୋକ ଦୁଃଖ ଭୋଗ କରୁଅଛି ସେ ନିୟତ
ମିଥ୍ୟା ପୁରୁଷକୁ ଜାଣୁଛ ତ ରଘୁନାଥ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ମିଥ୍ୟା ପୁରୁଷାକାଶ ବର୍ଣ୍ଣନେ**
**ନାମ ଅଠାଅଶୀ ସର୍ଗଃ ।**



# ଅଣାନବେ ସର୍ଗଃ

## ମିଥ୍ୟା ପୁରୁଷ ଉପାଖ୍ୟାନ

କହନ୍ତି ବଶିଷ୍ଠ ଏବେ ଶୁଣହେ ଶ୍ରୀରାମ
ଯେ ମିଥ୍ୟା ପୁରୁଷ କଥା କଲଇଁ ବର୍ଣ୍ଣନ ।
ଶୂନ୍ୟାକାଶେ ଉଦ୍ଭୂତ ଯେଉଁ ଅହଂକାର
ମିଥ୍ୟା ପୁରୁଷ ବୋଲିଣ ନାମ ଅଟେ ତାର ।

ଜଗତର ଅବସ୍ଥାନ ଯେଉଁ ଆକାଶରେ
ଅସତ ସେହି ଆକାଶ କୌଶଲ୍ୟା କୁମରେ ।
ସେହି ଆକାଶରୁ ଅହଂକାର ଉଦଭୂତ
ସେହି ଆକାଶରେ ସେହୁ ହୋଇଣ ବର୍ଦ୍ଧିତ,
ଇଷ୍ଟାନିଷ୍ଟ ନାନା କଳପନା ସେହୁକରେ
ଏହି ଅହଂକାର ଆତ୍ମା ନୁହେଁ ରଘୁବୀରେ ।
ତଥାପି ସେ ଆତ୍ମରକ୍ଷା କରିବା ନିମିତ୍ତ
ନାନାଦି ଶରୀର ଧରିଥାଏ ରଘୁନାଥ ।
ସେ ସବୁ ଶରୀର ଯେବେ ବିନାଶ ଘଟଇ
ଶୋକାକୁଳ ହୋଇ ସେହୁ ଝୁରିମରୁ ଥାଇ ।
ଏହି ଅହଂକାର ଜାଣ ସେ ମିଥ୍ୟା ପୁରୁଷ
ଅନନ୍ତ ସ୍ୱଭାବ ତାର ଆହେ ରଘୁଈଶ ।
ଗୃହ, କୂପ, କଳସାଦି ଶରୀର ଧରିଣ
ସେହି ଆକାଶରେ ରହି ଭାବେ ତାର ମନ ।
"ଦେଖ ଏବେ ଆତ୍ମରକ୍ଷା କରିଲଇଁ ମୁହିଁ"
କିନ୍ତୁ ବାସ୍ତବରେ ସେହୁ କିଛି ନ କରଇ ।
ଚିତ୍ତ, ମନ, ବୁଦ୍ଧି, ଜୀବ, ମାୟା ଓ ପ୍ରକୃତି
ସଂକଳ୍ପ, କାଳ ଓ କଳା ନାମେ ରଘୁପତି ।
ଏହି ଅହଂକାର ଜାଣ ଲଭଇ ପ୍ରସିଦ୍ଧି
ମନେ ରଖ ଏହିକଥା ଆହେ ରଘୁନିଧି ।
ଶୂନ୍ୟରେ ଆତ୍ମଭାବନା କରି ଏ ପୁରୁଷ
ଘଟାକାଶ ରକ୍ଷାପାଇଁ ଭୋଗେ ଯେଉଁ କ୍ଳେଶ ।
ତେସନ ଦୁଃଖରେ ତୁମେ କେଭେଁ ହେ ଶ୍ରୀରାମ
ନିପତିତ ହେବନାହିଁ, ଏହାରଖ ମନ ।
ଶିବରୂପୀ, ଶାନ୍ତିମୟ ବିଶୁଦ୍ଧ ଆତ୍ମାକୁ
କିଏ ସେ ରକ୍ଷା କରିବ କହହେ ତାହାକୁ ?
ତେଣୁ ଶରୀର-ଗୃହର ବିନାଶ ଘଟିଲେ
ଆତ୍ମାର ବିନାଶ ବୋଲି ଜୀବ ଚିନ୍ତାକଲେ,
ଏକବାରେ ବୃଥା ତାହା ଚକ୍ଷୁକୁଟାପରି
ଯେହୁ ଘାରି ହେବ ତାକୁ କିଏ ରକ୍ଷାକରି ?
ଘଟର ବିନାଶ ହେଲେ ଘଟସ୍ଥ ଆକାଶ
କ୍ଷତି ଗ୍ରସ୍ତ ନ ହୁଅଇ ଯଥା ରଘୁଈଶ,
ସେହିପରି ଦେହ ବିନାଶରେ ରଘୁବୀର ।
ଆତ୍ମାର ବିନାଶ ନୋହେ ଏହା ନିରାଧାର ।
ଆତ୍ମସତ୍ତା ଆପେ ଆପେ ରହିଥାଏ ସ୍ଥିର
ଜନ୍ମ, ମୃତ୍ୟୁ, ପୂର୍ଯ୍ୟଷ୍ଟକେ ଭାସେ କାଳ କାଳ ।

ସୂକ୍ଷ୍ମାଦପି ସୂକ୍ଷ୍ମ ଆତ୍ମା ସ୍ଥୁଳାଦପିସ୍ଥୁଳ
ତାକୁ ହାତେ ଧରିବାକୁ କାଉ ଅଛି ବଳ ?
ଅନୁଭବ ବିନା ଆତ୍ମା ଅନ୍ୟ ନୁହେଁ କିଛି
ତାହାର ବିନାଶ ରାମ କେବେ ନ ଘଟିଛି ।
ତେଣୁ ଏହି ମିଥ୍ୟା ଅହଂଭାବ ତ୍ୟାଗକରି
ଚିନ୍ମାତ୍ର ରୂପେ ବିରାଜ ଆହେ ରୂପଧାରୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ମିଥ୍ୟା ପୁରୁଷ ଉପାଖ୍ୟାନ ବର୍ଣ୍ଣନେ**
**ନାମ ଅଣାନବେ ସର୍ଗଃ ।**



## ନବେ ସର୍ଗଃ

## ପରମାର୍ଥ ଯୋଗ ଉପଦେଶ

ଶ୍ରୀରାମ କହନ୍ତି ଶୁଣ ଆହେ ଗୁରୁଦେବ
ବିଲୀନ ହୁଅଇ ଯେତେବେଳେ ଅହଂଭାବ ।
କିମ୍ବା ବିଲୀନ ହେବାକୁ ଆରମ୍ଭ କରଇ
ମନର ବାସନା କ୍ଷୟ ହୋଇଲା କି ନାହିଁ ।
ବୁଝିବା ଉପାୟ ଥିଲେ କହ ତପୀବର
ଭାବି ଭାବି ମନ ମୋର ହେଉଛି ଅସ୍ଥିର ।
କହନ୍ତି ବଶିଷ୍ଠ ଏବେ ଶୁଣ ନରନାଥ
ଅହଂକାର ମୟ ଚିତ୍ତହୁଅନ୍ତେ ଗଳିତ ।
ବଦନ ମଣ୍ଡଳେ ରାମ ଯୋଗୀମାନଙ୍କର
ମୁଦିତା, କାରୁଣ୍ୟ ଶିରୀ ଫୁଟେ ଅବିରଳ ।
ପଦ୍ମପତ୍ରେ ଜଳଲିପ୍ତ ନ ହୁଏ ଯେପରି
ଲୋଭ, ମୋହ ଯୋଗୀଚିତ୍ତ ନ ଛୁଏଁ ସେପରି ।
କାମନା, ବାସନା, କ୍ରୋଧ ମୋହ ଆଦି ଯେତେ
ଛାଡ଼ି ପଳାନ୍ତି ତାହାଙ୍କୁ ପଡ଼ିଗଲେ ନେତ୍ରେ ।
ନୁହନ୍ତି ଇନ୍ଦ୍ରିୟମାନେ ବାହ୍ୟେ ଉଲ୍ଲସିତ ।
ଅନ୍ତରେ କୌଣସି କ୍ଳେଶ ନୁହେଁ ଅନୁଭୂତ ।
ସମଜ୍ଞାନ ଉଦେହୋଇ ସର୍ବ ବିଷୟରେ
ଚିତ୍ତକୁ ତାଙ୍କର ରାମ ସୁଶୋଭିତ କରେ ।
ଦେବତାମାନେ ତାହାଙ୍କୁ ପ୍ରଶଂସା କରନ୍ତି
ତାଙ୍କୁ ଦେଖି ସର୍ବଜନେ ମହାନ୍ ମଣନ୍ତି ।
କି ବୈଭବ, କି ଦାରିଦ୍ର୍ୟ, କାହିଁରେ ସେମାନେ
ଆନନ୍ଦିତ ବା ଦୁଃଖିତ ନ ହୁଅନ୍ତି ମନେ ।
ସଂସାରୁ ମୁକତି ପାଇଁ ଯାହାର ବାସନା
ବିଚାର, ବିବେକ ବଳେ ବୁଝିବ ସେ ସିନା ।

ମୁହିଁ ବା କିଏ ସେ, ପୁଣି ଜଗତ ବା କିସ ?
ବିଷୟ ଭୋଗର ପରିଣାମ ବା କିଦୃଶ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ମିଥ୍ୟା ପୁରୁଷ ଉପାଖ୍ୟାନ ବର୍ଣ୍ଣନେ ନାମ ନବେ ସର୍ଗଃ ।**



## ଏକାନବେ ସର୍ଗଃ

## ଇକ୍ଷ୍ୱାକୁ ପ୍ରତ୍ୟକ୍ଷ ଉପଦେଶ (୧)

କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ତୁମର ପୂର୍ବ ପୁରୁଷ ଇକ୍ଷ୍ୱାକୁ ରାଜନ ।
କିପରି ଜୀବନମୁକ୍ତ ହୋଇଥିଲେ ସେହି
ସେହିକଥା କହୁଅଛି ଶୁଣ ମନଦେଇ ।
ଦିନେ ନିର୍ଜ୍ଜନ ସ୍ଥାନରେ ସେ ରାଜା ବସିଣ
ସଂସାର ସ୍ଥିତି ବିଷୟେ କରନ୍ତି ଚିନ୍ତନ ।
ଯେତେ ଚିନ୍ତା କରି ମଧ୍ୟ କୌଣସି ସିଦ୍ଧାନ୍ତେ
ଉପନୀତ ହୋଇ ନ ପାରିଲେ ନର ପତେ ।
ଏକଦିନ ମନୁରାଜା ଏମନ୍ତ ଯେ କଲେ
ବ୍ରହ୍ମଲୋକୁ ଆସି ରାଜସଭାରେ ମିଳିଲେ ।
ଇକ୍ଷାକୁ ତାହାଙ୍କୁ ବିଧିମତେ ପୂଜା କଲେ
ଜଗତ ବିଷୟେ ନାନା ପ୍ରଶ୍ନ ପଚାରିଲେ ।
କେଉଁଠୁ ଆସିଲା ଏହି ଜଗତ ସଂସାର
'ଏହା କି ବସ୍ତୁ' କିଏ ବା ସୃଷ୍ଟିକର୍ତ୍ତା ଯାର ?
କିପରି ମୁଁ ଏ ସଂସାରୁ ମୁକ୍ତି ଲଭିବଇ
ବୁଝାଇ କହିବା ହେଉ ଆହେ ନରସାଇଁ ।
ମନୁ କହନ୍ତି ହେ ରାଜା ବହୁକାଳପରେ
ବିବେକ ଉଦୟ ହୁଏ ତୁମ୍ଭ ହୃଦୟରେ ।
ତେଣୁକରି ଏହିପରି ଯେ ଉତ୍ତମ ପ୍ରଶ୍ନ
ଉଠାଇଲ ଆଜି ଆହେ ଇକ୍ଷ୍ୱାକୁ ରାଜନ ।
ଏହାର ଉତ୍ତରମାନ ଭଲ କରି ଶୁଣ
ଶୁଣିକରି ସୁବିଚାର କର ତୁମ ମନ ।
ସଂସାର ସଙ୍କଟୁ ତେବେ ମୁକତି ଲଭିବ
ଜନ୍ମ ମୃତ୍ୟୁ ଦୁଃଖ ଶୋକ ବାଧା ନ ଲାଗିବ ।
ଜଗତ ସଂସାର ବୋଲି ଯା' କିଛି ବୁଝୁଛ
ବସ୍ତୁତଃ ତା କିଛି ନୁହେଁ ସବୁ ଖାଲି ମିଛ ।
ମରୁ ମରୀଚିକା ଯଥା ଦିଏ ଜଳଭ୍ରମ
ଏ ଜଗତ ସେହିପରି ଭ୍ରମ ମାତ୍ର ଜାଣ ।

ଏହି ଯେ ଜଗତ ତୁମେ ଦେଖୁଛ ରାଜନ
ତୁମ ଆତ୍ମ ଦର୍ପଣର ପ୍ରତିବିମ୍ବ ଜାଣ ।
ଏହି ଆତ୍ମା କେଭେଁ ନୁହେଁ ଜଗତ କାରଣ
ଏହି କଥା ହେଜ ରଖ ଇକ୍ଷ୍ୱାକୁ ରାଜନ ।
ଚିତ୍‌ସ୍ୱରୂପ ଆତ୍ମାର ଯେଉଁ ଚିଦାଭାସ
ପ୍ରଥମେ ବ୍ରହ୍ମାଣ୍ଡାକାରେ ହୁଏ ତା' ପ୍ରକାଶ ।
ପରେ ତାର କେତେକାଂଶ ଭୂତ ଭାବଧରେ
ଏ ଜଗତ ଉତପନ୍ନ ଏହି ପରକାରେ ।
ସକଳ ବୃକ୍ଷରେ ଯଥା ରସ ଅଟେ ଏକ
ସର୍ବ ପଦାର୍ଥରେ ଏକ ଚିନ୍‌ମାତ୍ର ବ୍ୟାପକ ।
କିନ୍ତୁ ସେହି ପରମାତ୍ମା ନିର୍ବିକାର ଭାବେ
ବିରାଜିତ ରହିଛନ୍ତି ଜାଣ ସର୍ବଠାବେ ।
ଏକଭାବ, ବହୁଭାବ, ମୁକ୍ତି ବା ବନ୍ଧନ
କିଛିମାତ୍ର, ପରମାତ୍ମାଠାରେ ନାହିଁ ଜାଣ ।
ସର୍ବଜ୍ଞାନର ସାର ସେ ଚୈତନ୍ୟ ସ୍ୱରୂପ,
ନିଜ ସ୍ୱଭାବରେ ସ୍ଥିତ ଆହେ ନରାଧିପ ।
ଏକମାତ୍ର ଜଳ ନାନା ଆକାର ଧରଇ
ତରଙ୍ଗ ବୁଦ୍‌ବୁଦ୍ ଆଦି ରୂପେ ପ୍ରକାଶଇ ।
ସେହିପରି ଏକମାତ୍ର ଚିତହିଁ ରାଜନ
ଜଗତ ସଂସାର ରୂପେ ହୁଏ ପ୍ରକାଶନ ।
ତାଙ୍କ ଛଡ଼ା ଅନ୍ୟ କିଛି ନାହିଁ ଏ ଜଗତେ
କେବଳ ସେ ବ୍ରହ୍ମ ଅଛି ଜାଣ ନରପତେ ।
ତେଣୁ ବନ୍ଧନ, ମୁକତି, ସଂକଳପ ତେଜି
ପରଂବ୍ରହ୍ମ ମଧ୍ୟେ ତୁମେ ରହ ସଦାମଜ୍ଜି ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଇକ୍ଷ୍ୱାକୁ ପ୍ରତ୍ୟକ୍ଷ ଉପଦେଶ ବର୍ଣ୍ଣନେ ନାମ ଏକାନବେ ସର୍ଗଃ ।**



## ବୟାନବେ ସର୍ଗଃ

## ଇକ୍ଷ୍ୱାକୁ ପ୍ରତ୍ୟକ୍ଷ ଉପଦେଶ (୨)

ଇକ୍ଷ୍ୱାକୁ ରାଜାଙ୍କୁ ମନୁ କହନ୍ତି ଏମନ୍ତ
ମନ ଦେଇ ଶୁଣ ଏବେ ଯାହା ଜ୍ଞାନ ତତ୍ତ୍ୱ ।
ଏ ବିଶୁଦ୍ଧ ଚୈତନ୍ୟର ଏକଇ ଅଂଶରେ
ଅବିଦ୍ୟା ପ୍ରତିବିମ୍ବିତ ହୁଏ ଯେତେବେଳେ ।
ସଂକଳପମୟ ହୁଏ କମ୍ପନ ବଳରେ
ଜଳେ ତରଙ୍ଗ ସଦୃଶ ଜୀବ ଭାବଧରେ ।

ତାର ପ୍ରତିବିମ୍ବ ଅଟେ ମନର ଧରମ
ଆତ୍ମା ଧର୍ମ ନୁହେଁ ସେହୁ ଭଲ କରି ଜାଣ ।
ମନୁ ବୋଲନ୍ତି ହେ ରାଜା ବିଶୁଦ୍ଧ ଚୈତନ୍ୟ
ଏକମାତ୍ର ଅଂଶେ ହେଲେ ଅବିଦ୍ୟା କମ୍ପନ ।
ମଙ୍ଗଳଦାୟକ ଯେତେବେଳେ ସେ ହୁଅଇ
ପ୍ରତିବିମ୍ବିତ ଚୈତନ୍ୟ ଜୀବ ଭାବ ନେଇ ।
ଯେଉଁ ସୁଖ ଦୁଃଖ ମୋହ ଅଛଇ ଜୀବର
ଚିତ୍‌ଫଳିତ ଚିତ୍ତର ଧର୍ମ ସେ ମାତର ।
ଆତ୍ମା ସହିତ ତାହାର ନାହିଁ ସମ୍ପରକ
ଏହି କଥା ବୁଝିରଖ ଇକ୍ଷ୍ୱାକୁ ନାୟକ ।
ବିଶୁଦ୍ଧ ନ ହୁଏ ଯେବେ ସେ ବୁଦ୍ଧି ବା ମନ
ଆତ୍ମା ନୋହିପାରେ ଅନୁଭୂତ କଦାଚନ ।
ଅହଂକାର, ମନୋବୃତ୍ତି ହେଲେ ତିରୋହିତ
ମନ, ବୁଦ୍ଧି ହୋଇ ଯାଇଥାଏ ସଂଶୋଧିତ ।
ଆତ୍ମବୁଦ୍ଧି ବିଷୟର ମମତା ତେଜିଣ
ଆତ୍ମବୋଧେ ରାଜା ତୁମେ କର ଅବସ୍ଥାନ ।
ମୁହିଁ ମୋର ଦେହ, ପୁଣି ବିଷୟ ଇତ୍ୟାଦି
ସଂସାର ବନ୍ଧନ ହେତୁ ଏହି ରୂପ ବୁଦ୍ଧି ।
ତେଣୁ କରି ତାହା ତୁମେ କର ପରିତ୍ୟାଗ
ଶାନ୍ତି ପଥେ ଅଗ୍ରସର ହେବ ମହାଭାଗ ।
"ମୁହିଁ ଜାଣ ଅଟେ ସେହି ଚିନ୍‌ମାତ୍ର ଆତ୍ମା"
ହୃଦ ମଧ୍ୟେ ଜନ୍ମେ ଯଦି ଏହି ଜ୍ଞାନ ସତ୍ତା ।
ସଂସାର ବନ୍ଧନ ରାଜା ତେବେ ଯାଏ କଟି
ଦୁଃଖ, କ୍ଳେଶ, ଯନ୍ତ୍ରଣାରୁ ଜୀବ ପାଏ ଛୁଟି ।
ମୁକ୍ତି ପାଇବାର ଇଚ୍ଛା ଯଦି ତୁମ ଅଛି
ଏହି କଥା ଚିନ୍ତୁଥାଅ ଆହେ ରାଜ ବସି ।
କାହିଁ ଆତ୍ମା, କାହିଁ ଆତ୍ମା ବୋଲି ଜୀବଗଣ
ନିରନ୍ତର କାନ୍ଦି କାନ୍ଦି ଧାଇଁଥାନ୍ତି ଜାଣ ।
"କିନ୍ତୁ ସେମାନେ ଯେ ଆତ୍ମା" ମୋହବଶ ହୋଇ
ଜାଣି ନ ପାରନ୍ତି ଏହା ଆରେ ନର ସାଇଁ ।
ଅଜରାମର ଆତ୍ମାକୁ ଜାଣି ନ ପାରିଣ
ଦେହ ବିନାଶେ ଆତ୍ମାର ବିନାଶ ଭାବିଣ,
ଦୁଃଖଭୋଗ କରୁଥାଏ ସେହୁ ନିରନ୍ତର
ତେଣୁ ଏ ଆତ୍ମାକୁ ଚିହ୍ନିବାକୁ ଚେଷ୍ଟା କର ।
ସଂକଳ୍ପ ହେତୁରୁ ଜାଣ ଆତ୍ମା ନାନାକାରେ
ଆକାରିତ ହୋଇଥାଏ ଏ ମର ସଂସାରେ ।
ତେଣୁକରି ଆହେ ବସ ସଂକଳପ ତେଜି
ରାଜକାର୍ଯ୍ୟ ସଂପାଦନ କର ତହିଁ ମଜି ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ରାଜା ଇକ୍ଷ୍ୱାକୁ ପ୍ରତ୍ୟକ୍ଷ ଉପଦେଶ**
**ବର୍ଣ୍ଣନେ ନାମ ବୟାନବେ ସର୍ଗଃ ।**



## ତେୟାନବେ ସର୍ଗଃ

## ଜ୍ଞାନ ଲକ୍ଷଣ ବିଚାର

ବଶିଷ୍ଠ କହନ୍ତି ରାମ ମନୁ ପ୍ରଜାପତି
ଇକ୍ଷ୍ୱାକଙ୍କୁ ଏହି ଉପଦେଶ ପ୍ରଦାନନ୍ତି ।
ସେହି ଉପଦେଶ ମାନି ଇକ୍ଷ୍ୱାକୁ ରାଜନ
ଏ ସଂସାର ବନ୍ଧନରୁ ମୁକ୍ତ ହେଲେ ଜାଣ ।
ସଂସାର ବିଷୟେ ତୁମ ରହିଲେ ଆସକ୍ତି
ତହିଁରେ ଆବଦ୍ଧ ହେବ ଆହେ ରଘୁପତି ।
ବିନା ଆସକ୍ତିରେ ହେବ ମୁକତି ପ୍ରାପତ
ଆସକ୍ତି ତେଜ ତୃଣରୁ ସ୍ୱର୍ଗ ପରିଯନ୍ତ ।
ତେବେ ତୁମେ ଅକର୍ତ୍ତା ବା ଅଭୋକ୍ତା ହୋଇଣ,
ମୁକତି ଲଭିପାରିବ ଜାଣ ହେ ଶ୍ରୀରାମ ।
କେବେହେଲେ ସାଧୁଗଣ ଅତୀତ ବିଷୟେ
ଭାବନା କରନ୍ତି ନାହିଁ ହେ ରଘୁ ତନୟେ ।
ଭବିଷ୍ୟତ ପାଇଁ ଚିନ୍ତା ନ ଥାଇ ତାଙ୍କର
ଅନାସକ୍ତ ରହି କର୍ମ କରନ୍ତି ନିଜର ।
ଭୋଗ, ତୃଷ୍ଣା ଆଦି କରି ଯେତେକ ଭାବନା ।
ମନେହିଁ ନିହିତ ଥାଏ ତାହା ସବୁ ସିନା ।
ସେହି ମଳିନ ମନକୁ ଆହେ ଧନୁର୍ଦ୍ଧର
ବିଶୁଦ୍ଧ ମନ ବଳରେ ତାକୁ ନାଶ କର ।
ଜୀବର ତ୍ରିବିଧ ରୂପ ଅଛଇ ଶ୍ରୀରାମ
ସ୍ଥୂଳ, ସୂକ୍ଷ୍ମ ଓ ପରମ ଏହି ତିନି ଜାଣ ।
ତନ୍ମଧ୍ୟରୁ ସ୍ଥୂଳ, ସୂକ୍ଷ୍ମ ଦୁଇକୁ ତେଜିଣ
ପରମ ରୂପକୁ ଘେନ ହେ ରଘୁନନ୍ଦନ ।
ଅନାଦି, ଅନନ୍ତ, ଚିନ୍‌ମାତ୍ର ଯେଉଁ ଆତ୍ମା
ଜୀବର ପରମ ରୂପ ଜାଣ ହେ ମହାତ୍ମା ।
ସେ ପରମ ରୂପେ ତୁମେ ହୁଅ ପ୍ରତିଷ୍ଠିତ
ପ୍ରଥମ ଦୁଇ ରୂପକୁ ତେଜି ରଘୁନାଥ ।
ସକଳ ବସ୍ତୁ ଅଟନ୍ତି ଜାଣ ଭ୍ରାନ୍ତିମୟ
ଅଧ୍ୟାତ୍ମ ତତ୍ତ୍ୱଜ୍ଞଙ୍କର ମତ ରଘୁରାୟ ।

ଅବିଦ୍ୟା ବା ମାୟା ବୋଲି କିଛି ନାହିଁ ଜାଣ
ଏକମାତ୍ର ବ୍ରହ୍ମ ସବୁଠାରେ ବିଦ୍ୟମାନ ।
ସର୍ବବ୍ୟାପୀ, ସର୍ବରୂପୀ ସର୍ବଶକ୍ତିମାନ
ସେ ପରମ ଆତ୍ମା ଜାଣ ହେ ରଘୁନନ୍ଦନ ।
ନାନା ଲୋକେ ତାଙ୍କୁ ନାନା ନାମ ଦେଇଥାନ୍ତି
ଛାଡ଼ ସେହି ନାନାମତ ଆହେ ରଘୁପତି ।
କ୍ଷୀଣଚିତ୍ତ ହୋଇ ତୁମେ ପ୍ରଶାନ୍ତ ବୁଦ୍ଧିରେ
ମନନହୀନ ହୋଇଣ ବିରାଜ ଆତ୍ମାରେ ।
ଚରମ ଦୁଃଖ ରହିବ ଚିତ୍ତ ଥିବା ଯାଏ
ଚିତ୍ତ ବିନାଶେ ପରମ ସୁଖ ଲାଭ ହୁଏ ।
ଭାବନା ତେଜିଣ ତୁମେ ଚିତ୍ତକ୍ଷୟ କର
ଚିଦାତ୍ମା ରୂପେ ସର୍ବଦା ରାଜ ରଘୁବୀର ।
ଏହି ଭାବେ ତୁମେ ଯେବେ ନିଜେ ଚେଷ୍ଟା କର
ସଂସାର ସାଗରୁ ତେବେ ହୋଇଯିବ ପାର ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଜ୍ଞାନ ଲକ୍ଷଣ ବିଚାର ବର୍ଣ୍ଣନେ**
**ନାମ ତେୟାନବେ ସର୍ଗଃ ।**



## ଚୌରାନବେ ସର୍ଗଃ
## ସପ୍ତଭୂମି ବର୍ଣ୍ଣନ

ଶ୍ରୀରାମ କହନ୍ତି ଶୁଣ ବିଧାତା ନନ୍ଦନ
ସପ୍ତଜ୍ଞାନ ଭୂମିତତ୍ତ୍ୱ କରନ୍ତୁ ବର୍ଣ୍ଣନ୍ ।
ବଶିଷ୍ଠ ବୋଲନ୍ତି ତାହା ଶୁଣ ରାମଚନ୍ଦ୍ର
ପ୍ରବୃତ୍ତି ନିବୃତ୍ତି ଭେଦେ ପୁରୁଷ ଦ୍ୱିବିଧ ।
ସ୍ୱର୍ଗ ସୁଖ ଅଭିଳାଷୀ ବ୍ୟକ୍ତିମାନେ ରାମ
ପ୍ରବୃତ୍ତି ମାର୍ଗକୁ ଆଶ୍ରା କରିଥାନ୍ତି ଜାଣ ।
ମୁକ୍ତିପାଇଁ ଆକାଙ୍କ୍ଷିତ ନୁହନ୍ତି ଯେ ଜନ
ଭୋଗମୟ ସଂସାରରେ ଆସକ୍ତ ସେ ଜନ ।
ତେଣୁ ନିତ୍ୟ ନୈମିତିକ କାମ୍ୟ କର୍ମମାନ
ପ୍ରବୃତ୍ତି ମାର୍ଗୀଙ୍କ ଏହା ଅଟଇ ଲକ୍ଷଣ ।
ମୁମୁକ୍ଷୁଗଣ ନିବୃତ୍ତି ମାର୍ଗ ଆଚରନ୍ତି
ବିବେକ ହେତୁ ସଂସାର ଅନିତ୍ୟ ମଣନ୍ତି ।
ବହୁ ଜନ୍ମ ଜନ୍ମାନ୍ତର ସାଧନାର ବଳେ
ବିବେକ ଉଦୟ ହୋଇଥାଏ ତାଙ୍କଠାରେ ।
ସଂସାର ଅସାର ଦୁଃଖମୟ ବୁଝିପାରି
ନିତ୍ୟ ସୁଖେ ଅନ୍ୱେଷଣେ ସେହୁ ଚେଷ୍ଟା କରି ।
ନିବୃତ୍ତି ମାର୍ଗୀ ତାହାକୁ କହନ୍ତି ହେ ରାମ
ଯେଉଁ ମାର୍ଗେ ତୁଟିଯାଏ ସବୁ ଜଗତ୍ ଭ୍ରମ ।
ନିବୃତ୍ତି ମାର୍ଗ ବଳରେ ଚିତ୍ତଶୁଦ୍ଧି ପାଇ
ନିଷ୍କାମ କରମମାନ ସଦା ଆଚରଇ ।
ସାଧୁଜନଙ୍କର ସେବା ପରାୟଣ ହୋଇ
ଏହି ଭାବେ ଯାର ଦିନମାନ କଟୁଥାଇ ।
ଜ୍ଞାନ ଭୂମିର ପ୍ରଥମ ଗୋପନଟି ଏହି
ଏହି କଥା ବୁଝିରଖ ଆହେ ରଘୁରାଇ ।
ଦ୍ୱିତୀୟ ଜ୍ଞାନ ଭୂମି କି ବିଚାରଣା କହି
ସେ ଭୂମିର ବିବରଣ ଶୁଣ ମୁଁ କହଇ ।
ଶ୍ରୁତି ସ୍ମୃତି ଆଦି କରି ଯେଉଁ ଶାସ୍ତ୍ରଜ୍ଞାନ
ଗୁରୁସେବା ଗୁରୁଙ୍କର ଆଦେଶ ପାଳନ,
ଆବର ଧ୍ୟାନ ଧାରଣା ଯୋଗାଙ୍ଗ ସାଧନ
ଦ୍ୱିତୀୟ ଜ୍ଞାନ ଭୂମିର ଏହି ନିଦର୍ଶନ ।
ଅସଙ୍ଗ ନାମ ଅଟଇ ତୃତୀୟ ଭୂମିର
ମାନି ଚଳନ୍ତି ଯେ ଏହି ତପସ୍ୱୀ ଆଚାର ।
ସଂସାର ଦୋଷ ଦର୍ଶନେ ବୈରାଗ୍ୟ ଗ୍ରହଣ
ଆବର ଆଧ୍ୟାତ୍ମଜ୍ଞାନ ଆଲୋଚନା ମାନ ।
ଅସଙ୍ଗତା ସୁଖଭୋଗ କରି ଯୋଗୀଗଣ
ଏ ଭୂମିରେ କରୁଥାନ୍ତି କାଳାତି ପାତନ ।
ଏହି ଭୂମି ତ୍ରିତ୍ରୟର ଅଭ୍ୟାସର ଫଳେ
ଜ୍ଞାନ ଉଦୟେ, ଅଜ୍ଞାନ କ୍ଷୀଣ ଭାବ ଧରେ ।
ଚତୁର୍ଥ ଭୂମିରେ ଯୋଗୀ ଅଦ୍ୱୈତ ଜ୍ଞାନରେ
କ୍ରମେ ପ୍ରତିଷ୍ଠିତ ହୁଏ ସାଧନା ଫଳରେ ।
ଏ ଜଗତ ସ୍ୱପ୍ନବତ କରଇ ଦର୍ଶନ
ସକଳ ଦ୍ୱୈତ ଭାବର ହୁଏ ଅବସାନ ।
ଚିନ୍ମାତ୍ର ସ୍ୱରୂପ ଲାଭ ପଞ୍ଚମ ଭୂମିରେ
ଯୋଗୀଗଣଙ୍କର ସିଦ୍ଧ ହୁଏ ରଘୁବୀରେ ।
ଦୂରୀଭୂତ ହୁଏ ତାର ସର୍ବଭେଦ ଜ୍ଞାନ
ଅଦ୍ୱୈତ ସ୍ୱରୂପେ ସ୍ଥିତି ଲାଭ କରେ ପୁଣ ।
ଅଭ୍ୟାସ ବଳରେ ରାମ ଏହି ସୋପାନରେ
ବାସନା କ୍ଷୟ ସାଧନା କରାଯାଇପାରେ ।
ଷଷ୍ଠ ସୋପାନରେ ଯୋଗୀ ଆରୁଢ଼ ହୋଇଲେ ।
ନିଜକୁ ସତ ଅସତ ଊର୍ଦ୍ଧ୍ୱରେ ବିଚାରେ ।
ଜୀବନ ମୁକତି ଲାଭକରେ ସେ ଭୂମିରେ
ବିଦେହ ମୁକତ ହୁଏ ସପ୍ତମ ଭୂମିରେ ।

ଏ ଭୂମି ବର୍ଣ୍ଣନା ଅଟେ ବାକ୍ୟର ଅତୀତ
ଯେଉଁ ଯୋଗୀ ଏ ଭୂମିରେ ହୁଏ ଉପନୀତ ।
କିଏ କହେ ଶିବ ତାଙ୍କୁ କିଏ କହେ ବ୍ରହ୍ମ
ପୁରୁଷ ପ୍ରକୃତି ଏକ ଭାବେ ଅବସ୍ଥାନ ।
ବାକ୍ୟ ଦ୍ୱାରା ଏ ଭୂମିର ଅନୁଭୂତ ଜ୍ଞାନ
ହୃଦୟଙ୍ଗମ ହୋଇବା ଅସମ୍ଭବ ଜାଣ ।
ଅନୁଭବ ଦ୍ୱାରା ତାକୁ ସେହି ବୁଝିପାରେ
ସମ୍ଭବ ନୁହଇ ତାହା କହିବା ବାକ୍ୟରେ ।
ସପ୍ତବିଧ ଜ୍ଞାନଭୂମି କଲି ଯା ବର୍ଣ୍ଣନ
ଅଭ୍ୟାସରେଯେବେ କରିପାର ଆରୋହଣ ।
ଦୁଃଖ ଭୋଗରୁ ନିବୃତ୍ତି ଲଭିପାର ଜାଣ
ମନେ ରଖ ଏହା ଆହେ କୌଶଲ୍ୟାନନ୍ଦନ ।
ଯେତେଦିନ ରହିଥିବ ସେହି ଭେଦଜ୍ଞାନ
ସଂସାର ବ୍ୟାଧି କେବେ ହେଁ ନୋହିବ ମୋଚନ ।
ମନ ଉପଶମ ହେଲେ ମିଳଇ ମୁକତି
ସମସ୍ତ ଅଧ୍ୟାତ୍ମ ଶାସ୍ତ୍ର ଏହା ହିଁ ରଟନ୍ତି ।
ମନ ନିରିମଳ ହେଲେ ଆହେ ଚାପଧାରୀ
ଏହି ଉପଶମ ହୋଇଥାଏ କାର୍ଯ୍ୟକାରୀ ।
ତେଜି ଦେଇ କରି ବାହ୍ୟ ବସ୍ତୁର ଭାବନା
ଦୂର କରିବାକୁ ପଡ଼େ ମନର ବାସନା ।
ଯାହାର ମନ ସର୍ବଦା ବାସନା ଜଡ଼ିତ
ତାହାର ଦୈନ୍ୟ କେବେହେଁ ନୁହେଁ ଦୂରୀଭୂତ ।
ନିର୍ବାକ ଭାବେ ରହିଣ ସଂକଳ୍ପ ତେଜିଲେ
ପରମ ପଦକୁ ଜୀବ ଲାଭ କରେ ଭଲେ ।
ସେ ପରମପଦ ଯାର ହୋଇଛି ପ୍ରାପତ
ସାମ୍ରାଜ୍ୟ ଲାଭ ତା ପାଇଁ ତୁଚ୍ଛ ତୃଣବତ୍ ।
ସଂକଳ୍ପ ତେଜିବା ପାଇଁ ଦୈହିକ ପ୍ରକ୍ରିୟା
ତେଜିବାକୁ ପଡ଼େ ନାହିଁ ଆହେ ରଘୁନାହା ।
ପଥ ଗମନରେ ପଦ ଚାଳନା ପାଇଁ କି
ଭାବିବାକୁ ପଡ଼େନାହିଁ ପଥିକ ଭାଇକି ।
ସକଳ ଦୈହିକ କର୍ମ ଜାଣ ଆହେ ରାମ
ବିନା ସଂକଳ୍ପରେ କରିହୁଏ ସଂପାଦନ ।
ମନର ସଂକଳ୍ପ ରାମ ଅଟଇ ବନ୍ଧନ
ମନର ସଂକଳ୍ପ ତ୍ୟାଗ ମୁକ୍ତି ବୋଲିଜାଣ ।
ସକଳ ବସ୍ତୁରେ ବ୍ରହ୍ମ ରହିଛନ୍ତି ପୁରି
ଏହାଭାବି ଶାନ୍ତ ଭାବେ ରହ ଚାପଧାରୀ ।

ସକଳ ଭେଦଭାବନା ହୋଇଲେ ବିସ୍ମୃତ
ଜୀବ ବ୍ରହ୍ମ ଐକ୍ୟ ଯୋଗ ନାମରେ ବିଖ୍ୟାତ ।
ସେହି ଯୋଗ ଅବଲମ୍ବି ତୁମେ ହେ ଶ୍ରୀରାମ
କର୍ମ ପରାୟଣ ହୋଇ ରହ ଅନୁକ୍ଷଣ ।
ଯେତେବେଳେ ସମାଧିରେ ହେବ ଅବସ୍ଥିତ
କର୍ମ କରିବାକୁ ନ ପଡ଼ିବ ରଘୁନାଥ ।
ବ୍ରହ୍ମଚିନ୍ତନ ହିଁ ରାମ ସରବସ୍ୱ ତ୍ୟାଗ
ଏହିକଥା ସଦା ଥାଉ ତୁମ ନେତ୍ର ଆଗ ।
ନିରନ୍ତର ଅନ୍ତରରେ ବ୍ରହ୍ମ ଚିନ୍ତାକରି
କର୍ମ କରି ଯାଉଥାଅ ଆହେ ଚାପଧାରୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ସପ୍ତଭୂମି ବର୍ଣ୍ଣନେ**
**ନାମ ଚୌରାନବେ ସର୍ଗଃ ।**



## ପଞ୍ଚାନବେ ସର୍ଗଃ

## ଭରଦ୍ୱାଜ ଅନୁଶାସନ

ଏହା କହି ବାଲମୀକ ତୃଷ୍ଣୀ ଭାବ ଧରେ
ତହୁଁ ଭରଦ୍ୱାଜ ମୁନି ପ୍ରଶ୍ନ ପଚାରିଲେ ।
ମହାମୁନି ବଶିଷ୍ଠଙ୍କ ଉପଦେଶ ଶୁଣି
ଆଉ କିଛି ପୁଚ୍ଛିଲେକ ବୀର ରଘୁମଣି ।
କହନ୍ତି ବାଲମୀକ ଏବେ ଭରଦ୍ୱାଜ ଶୁଣ
ବଶିଷ୍ଠଙ୍କ ଉପଦେଶ କରିଣ ଶ୍ରବଣ ।
ଆତ୍ମତତ୍ତ୍ୱ ଆବିର୍ଭାବ ହେତୁରୁ ଶ୍ରୀରାମ
ଚିଦ୍‌ଘନ ରୂପେ କରିଥିଲେ ଅବସ୍ଥାନ ।
ପରମ ଶିବ ପଦକୁ ଲଭିଣ ଶ୍ରୀରାମ
ତୁଣ୍ଡକୁ ତାଙ୍କର ଆଉ ନ ଆସେ ବଚନ ।
କହୁଛନ୍ତି ଭରଦ୍ୱାଜ ଶୁଣ ତପୋଧନ
ପରମ ପଦତ ପ୍ରାପ୍ତ ହେଲେ ରଘୁରାଣ ।
କେଉଁପରି ଏ ସଂସାର ସାଗରୁ ଯେ ମୁହିଁ
ପରିତ୍ରାଣ ପାଇବଇଁ କହ ତପୀସାଇଁ ?
ବାଲ୍ମୀକ କହନ୍ତି ଶୁଣ ଆହେ ତପଚାରୀ
ରାମ ବଶିଷ୍ଠ ସମ୍ବାଦ ଆଦ୍ୟ ପ୍ରାନ୍ତ କରି ।
ବିଚାର କରୁଣ ଥାଅ ଆହେ ତପୋଧନ
ଆଉ ମଧ୍ୟ ମୋର ଉପଦେଶ ବାଣୀମାନ ।
ଅବିଦ୍ୟା ବିଳାସ ପୂର୍ଣ୍ଣ ଏହି ଯେ ଜଗତ
ମିଥ୍ୟା ବୋଲି କହିଥାନ୍ତି ସକଳ ପଣ୍ଡିତ ।

ଅବିବେକୀ ମୂର୍ଖଜନ ଯାକୁ ତପୋଧନ
ସତ୍ୟ ବୋଲି କହିଥାନ୍ତି ତତ୍ତ୍ୱ ନ ବୁଝିଣ ।
ବାସ୍ତବରେ ସଂବିତ୍ ଛଡ଼ା ଅନ୍ୟ କିଛି ନାହିଁ
ଅବିଦ୍ୟା ପ୍ରପଞ୍ଚେ ମୁଗଧ ନ ହୁଅ ଗୋସାଇଁ ।
ମୂଳ, ମଧ୍ୟ, ଅଗ୍ର, ଯାର ସବୁ ଶୂନ୍ୟମୟ
ପ୍ରବୁଦ୍ଧ ଜନ ତହିଁରେ ନୁହନ୍ତି ତନ୍ମୟ ।
ଅବିଦ୍ୟା ଅନ୍ଧାରେ ସେହୁ ନୁହନ୍ତି ଅଥୟ
ଗଭୀର ଜ୍ଞାନ ସାଗରେ ରହିଥାନ୍ତି ଥୟ ।
ଅସତ ହେଲେ ହେଁ ଏହି ପ୍ରପଞ୍ଚ ଜଗତ
ଅନାଦି ବାସନା ଯୋଗୁଁ ଦିଶେ ସତ୍ୟବତ ।
ଚୈତନ୍ୟ ରୂପି ଅମୃତ ଲତାକୁ ତେଜିଣ
ବାସନା ବିଷ ଲତାରେ ନ ହୁଅ ଆଚ୍ଛନ୍ନ ।
ପୀୟୁଷଧାରା ବାହିନୀ ଚୈତନ୍ୟ ନଦୀରେ
ଆତ୍ମା ନିମଗ୍ନ ନୋହିଛି ଯେ ଯାଏ ତହିଁରେ ।
ଅତୀବ ଦୁସ୍ତର ହେବ ତୁମ୍ଭଙ୍କୁ ସଂସାର
ମନର ଅଥୟେ କାହିଁ ବ୍ରହ୍ମର ବିଚାର ?
ଅବିଦ୍ୟା ସମ୍ଭୁତ ବସ୍ତୁ ବୁଦ୍‌ବୁଦ୍ ଆକାରେ
ଉତ୍‌ଥିତ ହୋଇଣ ପୁଣି କ୍ଷଣକ ମଧ୍ୟରେ,
ଜ୍ଞାନ ସମୁଦ୍ର ମଧ୍ୟରେ ହୁଅନ୍ତି ବିଲୀନ
ଚୈତନ୍ୟ ସାଗରେ ବୁଡ଼ିରହ ଅନୁକ୍ଷଣ ।
କୈବଲ୍ୟ ସ୍ୱରୂପ ସେହି ଚିତ୍ ସାଗରରେ
ଅମୃତମୟ ତରଙ୍ଗ ଉଠଇ ତହିଁରେ ।
ସଦା ସର୍ବଦା ପ୍ରଶାନ୍ତ ସେହି ଯେ ତରଙ୍ଗ
ସେ ଅମୃତ ତରଙ୍ଗ ନ ତେଜ ମହାଭାଗ ।
ଦ୍ୱୈତ ଜ୍ଞାନ ରୂପ ଏହି ଲବଣ ସାଗରେ
ବିକ୍ଷିପ୍ତ ଓ ବିତାଡ଼ିତ ହେବ କି ଆଶାରେ ?
ଜଗତ ହିଁ ଆତ୍ମା ଏହି ଜ୍ଞାନୀଙ୍କର ମତ
ବିବେକ ବଳେ ବରଣ କର ସେହି ସତ୍ୟ ।
ପ୍ରାରବ୍ଧ-କର୍ମ ତୁମର ସରି ନାହିଁ ଯେଣୁ
ପୁନଃ ପୁନଃ ଉପଦେଶ ନ ରୁଚଇ ତେଣୁ ।
ତେଣୁ ହେ ତପସ୍ୱୀ ପାପ କ୍ଷୟର ନିମିତ୍ତ
ଜଗଦ୍‌ଗୁରୁ ଧ୍ୟାନେ ତୁମେ ସଦା ରହ ରତ ।
ତାହାଙ୍କର ପ୍ରସନ୍ନରେ ତୁମ୍ଭର ଏ ଚିତ୍ତ
ପୂର୍ଣ୍ଣଭାବେ ହୋଇଯିବ ଯେବେ ବିଶୋଧିତ ।
ତେତେବେଳେ ତୁମେ ଜାଣ ସମାଧି ଯୋଗରେ
ପ୍ରତ୍ୟଗ ଆତ୍ମା ଦର୍ଶନ ପାଇବ ଅଚିରେ ।

ଈଶ୍ୱରଙ୍କ ଅନୁଗ୍ରହ ବିନା ତପୀବର
ସିଦ୍ଧିଦେଇ ନ ପାରଇ କେଉଁେ ପୁରୁଷକାର ।
ବିଭୁ ଅନୁଗ୍ରହ ପୁଣି ଆହେ ତପୋଧନ
ସଦାକାଳେ ରହିଥାଏ ଉପାସନାଧୀନ ।
ପ୍ରାକ୍ତନ ବିରୁଦ୍ଧ କର୍ମ ଯେଉଁ ଯାଏ ଥିବ
କାହିଁରେ କିଛି ନୋହିବ ଜାଣ ଏହା ଧ୍ରୁବ ।
ସେହି କାରଣରୁ ଜାଣ ସର୍ବଶାସ୍ତ୍ରମାନ
ପ୍ରାକ୍ତନ କର୍ମକୁ ଦେଇ ଅଛନ୍ତି ପ୍ରାଧାନ୍ୟ ।
ଈଶ୍ୱରରାଧନା ସହ ଶମ, ଦମ, ମାନ
ଅଭ୍ୟାସ କରିଣ କର କର୍ତ୍ତବ୍ୟ ସାଧନ ।
ଏହି ଅଭ୍ୟାସ ବଳରେ ପ୍ରାକ୍ତନ କରମ
କ୍ଷୟ ହୋଇଯାଏ ଜାଣ ଆହେ ତପୋଧନ ।
ତେବେ ସହଜ ସୁଗମ ହେବ ତତ୍ତ୍ୱଜ୍ଞାନ
ନିଷ୍ଠା, ଆଗ୍ରହ ତହିଁକି ଶ୍ରେଷ୍ଠ ଅସ୍ତ୍ର ଜାଣ ।
ହୃଦୟଙ୍ଗମ କରିଣ ଗୁରୁ ଉପଦେଶ
ଅଧ୍ୟାତ୍ମ ଶାସ୍ତ୍ରକୁ ଯେବେ କରିବ ଅଭ୍ୟାସ ।
ସକଳ ବିଷୟ ହେବ ତୁମ୍ଭ ଅବଗତ
ଅଭ୍ୟାସ ହିଁ ସିଦ୍ଧିପଥ ଏହା ବେଦମତ ।
ଦୃଢ଼ତା ସହିତ ମୁନି ମନକୁ ତୁମର
ଅଭ୍ୟାସ ପଥରେ ସଦା ନିୟନ୍ତ୍ରିତ କର ।

**ଇତିଶ୍ରୀ ଯୋଗ ବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଭରଦ୍ୱାଜ ଅନୁଶାସନ ବର୍ଣ୍ଣନେ**
**ନାମ ପଞ୍ଚାନବେ ସର୍ଗଃ ।**



## ଛୟାନବେ ସର୍ଗଃ

## ରାମ ବ୍ୟୁଥାନ

କହୁଛନ୍ତି ଭରଦ୍ୱାଜ ଆହେ ତପୋଧନ
ଶ୍ରୀରାମ ତ ଆତ୍ମବୋଧେ ଥିଲେ ନିମଗନ ।
କିପରି ବଶିଷ୍ଠ ଟାଣି ଆଣି ତାଙ୍କ ମନ
ବାହ୍ୟ ବ୍ୟାପାରରେ ପୁଣି କଲେ ନିୟୋଜନ ।
ବୁଝିବାକୁ ତାହା ମୁହିଁ ଅଟଇ ଅକ୍ଷମ
ମୋ ସଂଶୟ ଫେଡ଼ିଦିଅ ଆହେ ତପୋଧନ ।
କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ଶ୍ରୀରାମ ରହନ୍ତେ ଆତ୍ମତତ୍ତ୍ୱେ ନିମଗନ ।
ବିଶ୍ୱାମିତ୍ର ବଶିଷ୍ଠଙ୍କୁ ବୋଲନ୍ତି ଏସନ
ହେ ବ୍ରହ୍ମା ନନ୍ଦନ ତୁମେ ଯଥାର୍ଥ ମହାନ ।

ଆମେ ସର୍ବେ ଆଜ ଆପଣଙ୍କ ଗୁରୁଭାବ
ଦର୍ଶନ ଲଭିବା ପାଇଁ ପାଇଛୁଁ ସୁଯୋଗ ।
ଯଥାର୍ଥରେ ସେହି ଏକା ଗୁରୁ ବୋଲି ଜାଣ
ଉପଦେଶ, ଦରଶନ ସ୍ପରଶ ବଳେଣ,
ଶିଷ୍ୟଙ୍କୁ ଶିବତ୍ୱ ପଦ ଦେଇପାରେ ଯେହୁ
ତା' ଗୁଣ ବର୍ଣ୍ଣନ କରିପାରିବ ବା କେହୁ ।
ଉପଯୁକ୍ତ ଶିଷ୍ୟ ତୁମ ଅଟନ୍ତି ଶ୍ରୀରାମ
ମଣିକାଞ୍ଚନ ସଂଯୋଗ ଘଟିଅଛି ଜାଣ ।
ଉପଯୁକ୍ତ ଗୁରୁଶିଷ୍ୟ ମିଳନ ଫଳରେ
ଅପୂର୍ବ ଜ୍ଞାନରେ ଶିଷ୍ୟ ଧନ୍ୟ ହୋଇପାରେ ।
କୃପା ପରବଶ ହୋଇ ଏବେ ଶ୍ରୀରାମଙ୍କୁ
ସ୍ୱରୂପାବସ୍ଥାରୁ ଚ୍ୟୁତ କରନ୍ତୁ ତାହାଙ୍କୁ ।
ଯେ ଉଦ୍ଦେଶ୍ୟ ରଖି ଆସି ପହଞ୍ଚିଛି ମୁହିଁ
ତୁମ୍ଭଙ୍କୁ ଏସବୁ ଦେବ ! ଅଜଣା ତ ନୋହି ।
ମୋ କାର୍ଯ୍ୟ ବ୍ୟତୀତ ପୁଣି ଅନ୍ୟ ଦେବ କାର୍ଯ୍ୟ
ଯା ସବୁ କରିବେ ରାମ ଜାଣିଛ ତ ଆର୍ଯ୍ୟ ।
ସେହିସବୁ ଦେବକାର୍ଯ୍ୟ ସମାଧାନ ପାଇଁ
ରାମଙ୍କୁ ଉଦ୍‌ବୁଦ୍ଧ କର ଆହେ ତପୀସାଇଁ ।
ବିଶ୍ୱାମିତ୍ରଙ୍କର ଏହି ବଚନ ଶୁଣିଣ
ବଶିଷ୍ଠ ମୁନି ରାମଙ୍କୁ କହନ୍ତି ଏସନ ।
ଆତ୍ମାରେ ତନ୍ମୟ ହୋଇ ରହିବା ସମୟ
ଏକ୍ଷଣି ଉଚିତ ନୁହେଁ ହେ ରଘୁ ତନୟ ।
ଲଉକିକ କର୍ମମାନ ସମ୍ପାଦନ କରି
ତ୍ରୈଲୋକ୍ୟ ଆନନ୍ଦ ବୃଦ୍ଧି କରି ଧନୁର୍ଦ୍ଧାରୀ ।
ରାଜ୍ୟାଦି ବିଷୟ ଭୋଗ ପୁଣି ଦେବ କାର୍ଯ୍ୟ
ସୁସମ୍ପନ୍ନ କର ଯାଇଁ ତୁମେ ଆହେ ଆର୍ଯ୍ୟ ।
ତା'ପରେ ହୋଇବ ତୁମେ ସମାଧି ମଗନ
ଏଥିରେ ବିଳମ୍ବ ନୋହୁ ହେ ରଘୁନନ୍ଦନ ।
ଗୁରୁଦେବ ବଶିଷ୍ଠଙ୍କ ଶୁଣି ଏ ବଚନ
ଯେଣୁ ଉତ୍ତର ନ ଦ୍ୟନ୍ତି ଶ୍ରୀ ରଘୁନନ୍ଦନ ।
ସୁଷୁମ୍ନା ନାଡ଼ୀ ମଧ୍ୟରେ ମନ୍ଥର ଗତିରେ
ଗୁରୁ ପରବେଶ ହେଲେ ରାମ ହୃଦୟରେ ।
'ପ୍ରକ୍ରିୟା' ବଳରେ ତାଙ୍କୁ କରନ୍ତି ଜାଗ୍ରତ
ସେତେବେଳେ ଶ୍ରୀରାମଙ୍କ ଚକ୍ଷୁ ଉନ୍ମୀଳିତ ।
ଗୁରୁସହ ଅନ୍ୟ ମୁନିଗଣଙ୍କୁ ଦେଖିଣ
ଆଦେଶ ପ୍ରତୀକ୍ଷା କରି ରହନ୍ତି ଶ୍ରୀରାମ ।
କୃତାର୍ଥ ହୋଇଣ ଥିଲେ ଯେଣୁ ରଘୁବୀର
ପ୍ରଶ୍ନ କରିବା ପ୍ରବୃତ୍ତି ନ ଥିଲା ତାଙ୍କର ।
ବଶିଷ୍ଠ ତାହାଙ୍କୁ ଯେଣୁ କହନ୍ତି ଏମନ୍ତ
ଲଉକିକ ବ୍ୟବହାର କରିବା ଉଚିତ ।
ପ୍ରତ୍ୟୁତ୍ତର ଆରମ୍ଭନ୍ତି ତେଣୁ ରଘୁନାଥ
ସଭାସଦଗଣ ଦେଖି ହୁଅନ୍ତି ଉଷତ ।
ଆହେ ପ୍ରଭୋ ! ଭବଦୀୟ କୃପା ପ୍ରଭାବରୁ
କର୍ତ୍ତବ୍ୟାକର୍ତ୍ତବ୍ୟ କିଛି ନ ଜାଣଇ ଗୁରୁ ।
ତଥାପି ଆପଣ ଯାହା କରିବେ ଆଦେଶ
ସମ୍ପାଦନ କରିବଇଁ ତାହା ମୁଁ ଅବଶ୍ୟ ।
ଗୁରୁବାକ୍ୟ ହିଁ ଅଲଂଘ୍ୟ ଶାସ୍ତ୍ର ଏହା କହେ
ଏହାକହି ଧରନ୍ତି ସେ ଗୁରୁପାଦ ଦ୍ୱୟେ ।
ସଭାସଦଙ୍କୁ ସମ୍ବୋଧି କହନ୍ତି ଶ୍ରୀରାମ
ଅବଗତ ହୁଅନ୍ତୁ ଯେ ସରବେ ଆପଣ ।
ତତ୍ତ୍ୱଜ୍ଞ ଗୁରୁଙ୍କଠାରୁ ଆତ୍ମବୋଧ ଜ୍ଞାନ
ଲାଭଠାରୁ ଆଉକିଛି ବଡ଼ନାହିଁ ଜାଣ ।
ତହୁଁ ସଭାସଦଗଣ କହନ୍ତି ଏସନ
ବିଶ୍ୱାସ କରୁ ତ ସର୍ବେ ତୁମର ବଚନ ।
ଏବେ ତୁମ ଦରଶନ ପାଇକରି ରାମ
ଆମର ବିଶ୍ୱାସ ବଢ଼ିଯାଏ ବହୁଗୁଣ ।
ଘେନ ଆମ ନମସ୍କାର ହେ ରଘୁନନ୍ଦନ
ଗୁରୁ ଅନୁମତି ହେଲେ କରିବୁ ପ୍ରସ୍ଥାନ ।
ରାମଙ୍କ ପ୍ରଶଂସା ଗାଇ ଗାଇ ଏହିପରି
ସଭାସଦ୍‌ଗଣ ନିଜ ଗୃହେ ଗଲେ ଚଳି ।
କହନ୍ତି ବାଲ୍ମୀକ ମୁନି ଶୁଣ ଭରଦ୍ୱାଜ
ରାମଙ୍କ ଆତ୍ମବିଶ୍ରାନ୍ତି ଶୁଣିଲ ତ ଆଜ ।
ମୋର କଲ୍ୟାଣରୁ ତୁମ୍ଭେ ଲାଭ ଆତ୍ମଜ୍ଞାନ
ସୁଖୀ ହୋଇ ରହିଥାଅ ଯେ ଯାଏ ଜୀବନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ରାମବ୍ୟୁଥାନ ବର୍ଣ୍ଣନେ**
**ନାମ ଛୟାନବେ ସର୍ଗଃ ।**



**ନିର୍ବାଣ ପ୍ରକରଣ ପୂର୍ବଭାଗ ସମାପ୍ତି ।**

ମୁଦ୍ରକ : ସ୍ୱର୍ଣ୍ଣପ୍ରଭା ପ୍ରିଣ୍ଟର୍ସ, କଟକ-୨

ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

ବା

# ବଶିଷ୍ଠ-ମହାରାମାୟଣ

ନିର୍ବାଣ ପ୍ରକରଣ

ଉତ୍ତର ଭାଗ

(ଭାବାନୁବାଦ)

ଶ୍ରୀ ମର୍ଦ୍ଦରାଜ ରାୟ

# ସୂଚୀପତ୍ର

## ନିର୍ବାଣ ପ୍ରକରଣ

### ଉତ୍ତର ଭାଗ

ଆଦିକବି ବାଲ୍ମୀକି ମହର୍ଷିଙ୍କ ରଚିତ

# ଯୋଗବାଶିଷ୍ଠ ରାମାୟଣ

## ବା

# ବଶିଷ୍ଠ-ମହାରାମାୟଣ

## ନିର୍ବାଣ ପ୍ରକରଣ

### ଉତ୍ତର ଭାଗ

### ପ୍ରଥମ ସର୍ଗଃ

### ଇଚ୍ଛା ଚିକିତ୍ସା

କହୁଛନ୍ତି ବଶିଷ୍ଠଙ୍କୁ ଶ୍ରୀରାମ ଏସନ
ଦେହପ୍ରତି ଅହଂଭାବ କରନ୍ତେ ବର୍ଜନ,
ପୁଣି ଦୈହିକ କରମ କଲେ ବରଜନ
ରହି କି ପାରିବ ଦେହ, ଆହେ ତପୋଧନ ?
ତେଣୁ ଜିଇଁ ଥାଉଁ ଥାଉଁ କଳପନା ତ୍ୟାଗ
କିପରି ହୋଇ ପାରିବ କହ ମହାଭାଗ ?
କହନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ଜୀବ ଦଶାରେ କଳ୍ପନା ତେଜିବା ଉଚିତ ।
ଜୀବନ ବିହୀନ ଜନ କଳ୍ପନା ତେଜିବ
ନୁହଇକି ବିଡ଼ମ୍ବନା ହେ ରଘୁ ପୁଙ୍ଗବ ?
ଅହଂଭାବ ହିଁ କେବଳ ବୋଲାଏ 'କଳ୍ପନା'
ତହିଁରେ ଅପରିଚ୍ଛିନ୍ନ ବ୍ରହ୍ମର ଭାବନା ।
ଯେବେ କରାଯାଇ ପାରେ, ଜାଣ ରଘୁବୀର
ତାହାହିଁ 'ସଙ୍କଳ୍ପ ତ୍ୟାଗ'; ବୁଝିବ ସଂସାର ।
ଦେହ ସହ ବାହ୍ୟବସ୍ତୁ ଅନୁଭବ ମାନ
କଳ୍ପନା ବୋଲିଣ ଜାଣ ଆହେ ରଘୁରାଣ ।
'ସେହି କଳ୍ପନା ସବୁଙ୍କୁ ଆକାଶ ସଦୃଶ
ବ୍ରହ୍ମ ବୋଲି ମଣି ତେଜି ଦିଅ ରଘୁଈଶ ।
ସ୍ମୃତି ଓ ସଙ୍କଳ୍ପ ମଧ ବୋଲାନ୍ତି କଳ୍ପନା
ତାଙ୍କୁ ସେହି ରୂପେ ତେଜି ଦେବ ମହାମନା ।
ଅତୀତ ଓ ଭବିଷ୍ୟତ ଚିନ୍ତାକୁ ଶ୍ରୀରାମ
'ସ୍ମରଣ' ଆଖ୍ୟା ଦେଇଣ ଥାନ୍ତି ଜ୍ଞାନୀଜନ ।
ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଚିନ୍ତା
ଛାଡ଼ି ଦେଇ ନିଶ୍ଚଳରେ ରହ ଶୁଦ୍ଧ ଚେତା ।
କୁମ୍ଭାର-ଚକ ଯେସନ ସଙ୍କଳ୍ପ ନ କରି
ଅବିରତ ଘୁରୁଥାଏ ଆହେ ଋପଧାରୀ ।

ସଙ୍କଳ୍ପବିହୀନ ହୋଇ ତୁମେ ସେହିପରି
ପ୍ରାରବ୍ଧ ବଶତଃ ସର୍ବ କର୍ମ ଯାଅ କରି ।
ଚିତ୍ତ ବୋଲି କିଛି ଆଉ ନାହିଁ ଯେ ତୁମ୍ଭର
କେବଳ ଚିତ୍ତ-ସଂସ୍କାର ଅଛି ରଘୁବୀର ।
ସେହି ସଂସ୍କାରଶକ୍ତିର ପ୍ରଭାବରୁ ଜାଣ
ଆସିଣ ପହଞ୍ଚି ଯିବ ଯେଉଁ କର୍ମମାନ,
ନିର୍ଲିପ୍ତ ଭାବରେ ତାକୁ କରିବ ସମ୍ପର୍ଣ୍ଣ
ନିଲିପ୍ତ ଭାବ ସର୍ବଦା ଅଟଇ ବରେଣ୍ୟ ।
କର୍ମ କଲାବେଳେ କର୍ତ୍ତାଭାବ ବରଜିବ
କେବଳ ବ୍ରହ୍ମଙ୍କଠାରେ ତାହା ଅରପିବ ।
ସକଳ ବିଷୟ-ରସ ତେଜି ଦେଇ ରାମ
ଆତ୍ମ-ରସେ ଇନ୍ଦ୍ରିୟଙ୍କୁ କର ରସବାନ ।
ବିଷୟ ରସରେ କଲେ ତାଙ୍କୁ ବଳବାନ
କୌଣସି କର୍ମ ନ କରି ମଧ୍ୟ, ହେ ଶ୍ରୀରାମ
ସଂସାର ଦୁଃଖରୁ ନ ପାଇବ ପରିତ୍ରାଣ
ନିର୍ଲିପ୍ତ-ହୋଇ ବି ମୂଢ଼ ଭୋଗିବ କଷଣ ।
ଅନନ୍ତ, ଶିବସ୍ୱରୂପ, ସର୍ବମୟ ଆତ୍ମା
ବିନୁ ଆନ ଏ ଜଗତେ ନାହିଁ କା'ର ସତ୍ତା ।
ବିରାଜମାନ ରହିଲେ ଆତ୍ମଜ୍ଞାନେ ରାମ
କରିବାକୁ ନ ପଡ଼ିବ ଆଉ କିଛି କାମ ।
ବ୍ରହ୍ମକୁ କର୍ମରୂପରେ ସଦା ଦେଖୁଥିବ
କର୍ମକୁ ବ୍ରହ୍ମରୂପରେ ପୁଣି ମଣୁଥିବ ।
ଏସନ ଜ୍ଞାନ ହୃଦୟେ ଧରି ରଘୁବୀର
ସ୍ୱୀୟ ଚିତ୍ ସ୍ୱରୂପରେ ଅବସ୍ଥାନ କର ।
ତୁମ ହୃଦୟରେ ଜାଣ ହେ ରଘୁ ପୁଙ୍ଗବ
ଯେପରି ସଙ୍କଳ୍ପ ଇଚ୍ଛା ଆଉ ନ ଉଇଁବ !
'ମୁହିଁ' ନାହିଁ କି 'ମୋହର' ବୋଲି କିଛି ନାହିଁ
ଏହି ଜ୍ଞାନେ ପ୍ରତିଷ୍ଠିତ ନ ହେଲେ ଗୋସାଇଁ,
କେହି ହେଲେ ଏ ସଂସାର କ୍ଲେଶରୁ ମୁକତି
ପାଇ ନ ପାରିବେ ଜାଣି ରଖ ରଘୁପତି ।
ଜଗତ୍ ରୂପରେ ଯା କିଛି ଦେଖା ଯାଉଅଛି
ସ୍ୱର୍ଣ୍ଣରେ ବଳୟ-ଭାବ ସମ, ରଘୁବଂଶୀ,
ଶିବସ୍ୱରୂପ ଯେ ଆତ୍ମା ତାଙ୍କଠାରୁ ଜାଣ
ଏହାର କିଛି ପାର୍ଥକ୍ୟ ନାହିଁ ରଘୁରାଣ ।
ଆତ୍ମାଠାରୁ ଭିନ୍ନ ଯେବେ ନ ମଣ ଜଗତ
ଜଗତ ନ ରହି, ସେହୁ ଦିଶେ ବ୍ରହ୍ମବତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଇଚ୍ଛା ଚିକିତ୍ସା-ଯୋଗ ବର୍ଣ୍ଣନେ ନାମ ପ୍ରଥମ ସର୍ଗଃ ।**



## ଦ୍ୱିତୀୟ ସର୍ଗଃ

## କର୍ମବୀଜ ଦାହ

ବୋଲନ୍ତି ଶ୍ରୀରାମ ଦେବ ! 'ମୁହିଁ' ଆଉ 'ମୋର'
ଏପରି ଅଜ୍ଞାନ ଦୂର ହୋଇଛି ଯାହାର,
କର୍ମାଭ୍ୟାସ, କର୍ମତ୍ୟାଗ ତା ପାଇଁ ଏ ଦୁଇ
ସମାନ ଅଟଇ ମୋର ମତ ଜାଣ ଏହି ।
କହନ୍ତି ବଶିଷ୍ଠ ତେବେ ଶୁଣ ରଘୁପତି
କହି ପାରିବ କି କର୍ମ କାହାକୁ କହନ୍ତି ?
କିପରି ବିସ୍ତାର ତା'ର, ମୂଳ ତା କିପରି
ସେ ମୂଳର ଉତ୍ପାଟନ ହୁଏ କେଉଁପରି ?
ଶ୍ରୀରାମ କହନ୍ତି ଦେବ ! ଏହି ଯେ ଶରୀର
କର୍ମ-ରୂପ ବୃକ୍ଷବୋଲି ଧରେ ମୁଁ ଅନ୍ତର ।
ସଂସାରରୂପ ଅରଣ୍ୟେ ସେ ବୃକ୍ଷର ଜନ୍ମ
ହସ୍ତ ପଦାଦି ଅଟନ୍ତି ତାର ଶାଖା ମାନ ।
ସଞ୍ଚିତ କର୍ମହିଁ ବୀଜ ଅଟେ ସେ ବୃକ୍ଷର
ସୁଖ, ଦୁଃଖ ଦୁଇ ତାର ଅଟନ୍ତି ଯେ ଫଳ ।
କାଳ-ବାନର ତାହାକୁ କରଇ ବିଧ୍ୱସ୍ତ
ପୁତ୍ର, କଳତ୍ରାଦି-ଲତା ତହିଁ ବିଜଡ଼ିତ ।
ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ସେ ବୃକ୍ଷର ମୂଳ
ଏ ମାନଙ୍କ ମୂଳ, "ମନ", ତପସ୍ୱୀ ପ୍ରବର ।
ଦୃଶ୍ୟ ମୁଖି-ଚିଦ୍ ଆତ୍ମ ରୂପୀ-ଏହି ଜୀବ
ସେ ମନର ମୂଳ ମତେ ଜଣା ଗୁରୁଦେବ ।
ସେ ଜୀବର ମୂଳ ପୁଣି ଅଟନ୍ତି ଯେ ବ୍ରହ୍ମ
"ଦୃଶ୍ୟୋନ୍ମୁଖୀ-ଚିତ୍" ସର୍ବ କର୍ମ-ବୀଜ ପୁଣ ।
ଯେତେକାଳ ପରିଯନ୍ତେ ଏହି ବୀଜ ଥିବ
ପୁନଃ ପୁନଃ ଉତ୍ପତ୍ତି ତା ଚାଲୁ ରହିଥିବ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁରାଣ
ଦୃଶ୍ୟୋନ୍ମୁଖୀ ଚିତ୍ରୂପ ସୂକ୍ଷ୍ମ ଯେଉଁ କର୍ମ,
କିପରି ଭାବରେ ତାହା ହେବ ପରିତ୍ୟକ୍ତ
ବୁଝାଇ କହୁଛି ଏବେ ଶୁଣ ରଘୁନାଥ ।

ଯେଉଁଠାରେ ଯାହା ଅନୁଭବ କରେ ଚିତ
ମିଥ୍ୟା ହେଲେହେଁ ତା, ସତ୍ୟରୂପେ ପ୍ରତିଭାତ ।
ଏପରି ବିକାଶ ପ୍ରାପ୍ତ ହୋଇ ଏହି ଚିତ
ଚିତ୍ତ, ଇଚ୍ଛା, ବାସନାଦି ନାମେ ହୁଏ ଖ୍ୟାତ ।
ଯେତେକାଳ ରହିଥିବା ଦେହୀର ଏ ଦେହ
ଚିତ୍ତ ରହିଥିବ ତହିଁ ଏ କଥା ନିଶ୍ଚୟ
ଚିତ୍ତ ଥିଲେ ପ୍ରାଣ ରହିଥିବ ଏହାସତ୍ୟ
ଜୀବଥାଉ କର୍ମତ୍ୟାଗ ହେବ ବା କେମନ୍ତ ?
"ମୁହିଁ ନିଷ୍କ୍ରିୟ, ଅସଙ୍ଗ, କୂଟସ୍ଥ ଚୈତନ୍ୟ"
ଏ ଭାବନାରେ ବିଷୟ-ତ୍ୟାଗ କଲେ ଜାଣ,
ଆତ୍ମ ସ୍ୱରୂପରେ ପର୍ଯ୍ୟବସିତ ହୋଇବ
ତେବେ ଯାଇଁ ତାହା କର୍ମ ତ୍ୟାଗ ବୋଲାଇବ ।
ଅନ୍ୟ କୌଣସି ଉପାୟେ ସେ କର୍ମର ତ୍ୟାଗ
ସମ୍ଭବ ହୋଇ ନ ପାରେ ହେ ରଘୁ ପୁଙ୍ଗବ ।
ତେଣୁ ଏ ଚିତ୍‌ର ଯେଉଁ ଦୃଶ୍ୟୋନ୍ମୁଖୀ ଭାବ
ପରିତ୍ୟକ୍ତ ହୋଇଗଲେ ଯାହା ରହିଯିବ,
ଅନୁଭାବାତ୍ମକ କର୍ମ କେବଳ ତା ଜାଣ
ତା ନୁହଇ ଚିତ୍, ସେହି ଏକା ଶାନ୍ତ ବ୍ରହ୍ମ ।
ତେଣୁ କରି ଯେଉଁଯାଏ ଦେହ ବର୍ତ୍ତମାନ
କର୍ମତ୍ୟାଗ ଅସମ୍ଭବ ହେ ରଘୁନନ୍ଦନ ।
ଚିଦାଭାସଶୂନ୍ୟ ଯେହୁ ଅଟଇ ହେ ରାମ
ଯାହାଠାରେ ନାହିଁ କଉଣସି ଭେଦ ଜ୍ଞାନ,
ସେହି ଅନନ୍ତ ଆକାଶ ମାତ୍ର ବିଦ୍ୟମାନ
ବ୍ରହ୍ମଜ୍ଞାନୀ, ପରଂପଦ ତାଙ୍କୁ କହି ଜାଣ ।
**ଇତିଶ୍ରୀ ଯୋଗବାଶିଷ୍ଠେ, ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ କର୍ମବୀଜ ଦାହ ଉପଦେଶ ବର୍ଣ୍ଣନେ ନାମ ଦ୍ୱିତୀୟ ସର୍ଗଃ ।**



## ତୃତୀୟ ସର୍ଗଃ
## ଅହଙ୍କାର୍-ନାଶ, ବିଚାର୍

ବୋଲନ୍ତି ବଶିଷ୍ଠ ପୁଣି ମନଦେଇ ଶୁଣ
ଉଦିତ ହୁଅନ୍ତେ ଆତ୍ମତତ୍ତ୍ୱ, ବୋଧଜ୍ଞାନ,
ଅହଂକାର ଆଦି ଜଡ଼ ପଦାର୍ଥ ସକଳ
କ୍ଷୟ ପାଇଯାନ୍ତି ଜାଣ ଆହେ ରଘୁବୀର ।
ଯେଉଁ କର୍ମତ୍ୟାଗ ଆସି ହୁଏ ଉପସ୍ଥିତ
ତାହାହିଁ ପ୍ରକୃତ କର୍ମ-ତ୍ୟାଗ ରଘୁନାଥ ।
ସାଧାରଣ କର୍ମତ୍ୟାଗ, ତ୍ୟାଗ ନୁହେଁ ଜାଣ
ଆତ୍ମାକୁ ହିଁ ତ୍ୟାଗ, ମୁକ୍ତି ସ୍ୱରୂପ ଜାଣିମ ।
ଶରୀରରେ ଆତ୍ମବୁଦ୍ଧି, ଦ୍ରବ୍ୟେ ଭୋଗ୍ୟ ବୁଦ୍ଧି
ଏ ସକଳେ ଉନ୍ମୂଳିତ ହୋଇଯାନ୍ତି ଯଦି
ନିତ୍ୟ-ଚୈତନ୍ୟ ସ୍ୱରୂପେ ଯା' ରହେ ଶେଷରେ
ପରମ ନିର୍ବାଣ ସେହୁ ବୁଝ ରଘୁବୀରେ ।
ଅହଙ୍କାର ଆଉ ମଧ୍ୟ ନିରଅହଙ୍କାର
ଉଭୟ ହିଁ ବୁଦ୍ଧି, ତେଣୁ ଭ୍ରମ ରଘୁବୀର ।
ଆକାଶ ସମ ନିର୍ମଳ ଆତ୍ମଚଇତନ୍ୟ
ଏ ଭ୍ରମର ସମ୍ଭାବନା ତହିଁ କାହିଁ ରାମ ?
ଉଇଁ ଆସିଲା ମାତ୍ରକେ ଅହଙ୍କାର ବୁଦ୍ଧି
ନିରହଂ ବୁଦ୍ଧି ଉଦିତ ହୋଇ ପଡ଼େ ଯଦି
କୌଣସି କାରଣ ତହିଁ ନ ଥାଏ ଶୋକର
ଦୁଃଖ କାରଣ ହୋଇବ ତାହା କି ପ୍ରକାର ?
ତେଣୁ କରି ଅହଂବୁଦ୍ଧି ହୁଅନ୍ତେ ଉଦିତ
ଆକାଶ-କୁସୁମ ସମ ମଣ ତା ଅସତ୍ୟ
ଏ ବୁଦ୍ଧି ବଳେ କୌଣସି କାର୍ଯ୍ୟରେ ହେ ରାମ
ବିଚଳିତ ହେବ ନାହିଁ ତୁମେ କଦାଚନ ।
ଯେବଣ କାରଣୁ ସେହି ବୁଦ୍ଧି ଅଟେ ମିଛ
ତେଣୁ ତା' କାର୍ଯ୍ୟ ସକଳ ମିଛ ରଘୁବତ୍ସ ।
ଉତ୍ତମ ପଦ ପାଇଁକି କେବେହେଁ ଶ୍ରୀରାମ
ଉପଯୁକ୍ତ ନୁହେ ସେହି ବୁଦ୍ଧି କଦାଚନ ।
ଯେ ବିଷୟ ତୁମ ପାଶେ ଆସି ପହଞ୍ଚିବ
ଅସଙ୍ଗ ଏ ଆତ୍ମା ତହିଁ ବୋଲି ବିଚାରିବ
ତେଣୁ ତହିଁରେ ହେ ରାମ ! ରହିବ ନିର୍ଲିପ୍ତ
ସର୍ବ କାର୍ଯ୍ୟ ସିଦ୍ଧ ହେବ ନ ହୋଇଲେ ଲିପ୍ତ ।
ଏସନ ଯୁକତି ପୁଣି ବିଚାର ବଳରେ
ଅହଂ ବୁଦ୍ଧି ବୃତ୍ତି-ହୀନ ହେଲେ ରଘୁବୀରେ,
ଯେଉଁ ଆତ୍ମା ଅଟେ ସୁଖ ଚୈତନ୍ୟ ସ୍ୱରୂପ
ଉପଲବ୍ଧ ହୁଏ ତାହା ରଘୁକୁଳ ଦୀପ ।
ସେତେବେଳେ ମୋହଗ୍ରସ୍ତ ହେବା ପାଇଁ ରାମ
ରହି ନ ପାରଇ ଆଉ କୌଣସି କାରଣ ।
ଅଜ୍ଞାନ ନଥିଲେ ଜାଣ ଦୃଶ୍ୟ ପଦାର୍ଥର
ଅସ୍ତିତ୍ୱ ନ ଥାଇ, ଏହି କଥା ନିରାଧାର ।

ତେଣୁ ଦୃଶ୍ୟ, ଦରଶନ, ସ୍ମରଣ ତେଜିଲେ
ସମୂଳେ ସେ ଅଜ୍ଞାନର ନାଶ ହୋଇ ପାରେ ।
ଅହଙ୍କାର ଆଶ୍ରୟରେ ହୃଦୟ ମଧ୍ୟରେ
ଭାବର ଉଦୟ ହୋଇଥାଏ ରଘୁବୀରେ ।
ସେ ଅହଙ୍କାରକୁ ରାମ ! ତୁମେ ତେଜି କରି
ଭାବନା ସକଳ ଦିଅ ଅନ୍ତରୁ ନିକାଳି ।
ଉଦୟ ବା ଅସ୍ତ ନାହିଁ ସେ ପରମଙ୍କର
ତାଠୁଁ ଭିନ୍ନ ପୁଣି କିଛି ନାହିଁ ଏ ସଂସାର ।
ତେଣୁ ଭାବର ଅସ୍ତିତ୍ୱ ରହିବ କିପରି
ଅଭାବର ସ୍ଥାନ ଅବା କାହିଁ ରହିପାରି ?
ଅନ୍ୟ କିଛି ଦୃଶ୍ୟ ନୁହେ ତତ୍ତ୍ୱଜ୍ଞାନଠାରେ
ଯାହା ଅଛି ତାହା ଦୃଶ୍ୟ ହୁଏ ଯଥାର୍ଥରେ ।
ସୂର୍ଯ୍ୟ ମଧ୍ୟେ ରାତ୍ରି ଯଥା ରହି ନ ପାରଇ
ନିର୍ବାଣ ବୋଲିଣ କିଛି ତଥା ବ୍ରହ୍ମେ ନାହିଁ ।
ଜଗତ-ଦର୍ଶନ ରୂପ ମିଥ୍ୟା ବନ୍ଧନରୁ
ଯେଉଁ ମୁକ୍ତି ଲାଭ ହୁଏ ଜାଣ ଧର୍ମ ମେରୁ ।
ନିର୍ବାଣ କିପରି ତାହା ବୋଲାଇବ ରାମ ?
ମୋ ମନକୁ ପ୍ରତେ ନ ଆସଇ କଦାଚନ ।
ଅହଙ୍କାର ଜଗତର ଅଙ୍କୁର ସଦୃଶ
ଜଗତ ଉତ୍ପତ୍ତି କାହିଁ ହେଲେ ତା ବିନାଶ ?
ବାଷ୍ପ ଯଥା ଦରପଣେ ଆଣେ ମଳିନତା
ଆତ୍ମା-ମଳିରୂପେ ପ୍ରତିଭାତ ଅହଂ ତଥା ।
ସେହି ଅହଙ୍କାର ଯଦି ଦୂର ହୋଇ ପାରେ
ଆତ୍ମା-ପ୍ରସନ୍ନତା ଦୃଷ୍ଟ ନିର୍ମଳ ଭାବରେ ।
ଜଗତର ମୂଳ ଅଟେ ଯେଉଁ ଅହଂଭାବ
ବାସନା ଅଭାବେ ଯେବେ ସେ ଦୂର ହୋଇବ,
ଆମେ, ତୁମେ, ଏ ଜଗତ କିଛି ନ ରହିବ
ଏ କଥା ସତ୍ୟ କି ନୁହେଁ ହେଜ ହେ ରାଘବ ।
ପ୍ରଥମେ ଏ ବ୍ୟଷ୍ଟି ଅହଙ୍କାର ତେଜି କରି
ସମଷ୍ଟି ଅହଂଭାବକୁ ନିଅ ତୁମେ ବରି ।
ନିଖିଳ ଜଗତ ଅଟେ ସେହି ପରଂବ୍ରହ୍ମ
ଏହିପରି ଭାବନାକୁ ମନରେ ଧରିଣ,
ପ୍ରପଞ୍ଚ ବିହୀନ ଶାନ୍ତ ବ୍ରହ୍ମଙ୍କ ସଦୃଶ
ବିରାଜମାନ କର ହେ ଅଯୋଧ୍ୟା ବିଳାସ ।

ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଅହଙ୍କାର ନାଶ ବିଚାର ବର୍ଣ୍ଣନେ ନାମ ତୃତୀୟ ସର୍ଗଃ ।



## ଚତୁର୍ଥ ସର୍ଗଃ

## ଜଗତ-ବୃକ୍ଷ ବୀଜ ବର୍ଣ୍ଣନ

କହନ୍ତି ବଶିଷ୍ଠ ଏବେ ଶୁଣ ଚାପଧାରୀ
ମନ, ଇନ୍ଦ୍ରିୟ, ସ୍ୱଭାବ ମାନ ଜୟ କରି,
ବିବେକ ଆଶ୍ରୟ କରେ ଯେବଣ ପୁରୁଷ
ସତ୍ୱର ସିଦ୍ଧି ପ୍ରାପତ ହେବ ତା ଅବଶ୍ୟ ।
ଯେ ବ୍ୟକ୍ତି ତା କରିବାକୁ ହୁଅଇ ଅକ୍ଷମ
ସିଦ୍ଧିଲାଭ ତା ପକ୍ଷରେ ସପନ ସମାନ ।
ଶୁଦ୍ଧ ଅନ୍ତ କରଣରେ ଉପଦେଶ ମାନ
କାର୍ଯ୍ୟକାରୀ ହୋଇଥାଏ ହେ ରଘୁନନ୍ଦନ ।
ଯେତେବେଳେ ବହିର୍ମୁଖୀ ହୋଇଥାଏ ମନ
ଅନ୍ତରରେ ନ ପଶନ୍ତି ଉପଦେଶ ମାନ ।
କାଳେ, ଥରେ ଭୂଷଣ୍ଡଙ୍କୁ ପୁଚ୍ଛାକରେ ମୁହିଁ
ଆତ୍ମଜ୍ଞାନ ହୀନ, ପୁଣି ଦୀର୍ଘଜୀବୀ ହୋଇ,
ଏପରି କାହାକୁ ଦେଖିଛକି ପକ୍ଷୀବର ?
ଦୟାକରି ତାହା ବ୍ୟକ୍ତ କର ମୋ ଆଗର ।
କହନ୍ତି ଭୂଷଣ୍ଡ ତେବେ ଶୁଣ ତପୀବର
ପୂର୍ବ କାଳେ ଲୋକାଲୋକ ପର୍ବତ ଉପର
ଏକ ବିଦ୍ୟାଧର ଥିଲେ, ଗୁଣେ ସଦାଚାରୀ
ସୁ ବିବେକୀ ନ ଥିଲେ ସେ ବୁଝ ହେତୁ କରି ।
କେବଳ ତପସ୍ୟାବଳେ ଚାରିକଳ୍ପ ଯାଏ
ଜୀବିତ ରହିଥିଲେ ସେ ଆହେ ମୁନିରାୟେ ।
ତପସ୍ୟା ବଳରେ ଆତ୍ମଜ୍ଞାନ ଲାଭ ପାଇଁ
ଅସମର୍ଥ ହୋଇ ମୋତେ ପୁଚ୍ଛାକଲେ ସେହି ।
"ହେ ଭୂଷଣ୍ଡ ପକ୍ଷୀବର ଶୁଣ ମୋର ଗିର
ତ୍ରିବିଧ ତାପ ମୁଁ ଦଗଧ ହୁଏ ନିରନ୍ତର ।
ମୋହର ଚିତ୍ତ ସର୍ବଦା ବାସନା ବିକ୍ଷୁବ୍ଧ
ସବୁବେଳେ କର୍ମଜାଲେ ଅଛି ମୁଁ ଆବଦ୍ଧ ।
ବଶୀଭୂତ ନୁହନ୍ତି ମୋ ଇନ୍ଦ୍ରିୟ ଓ ମନ
ଏହି ଅବସ୍ଥାରୁ ମୋତେ କର ପରିତ୍ରାଣ ।"

ମୁଁ କହିଲି ତେବେ ଶୁଣ ଆହେ ବିଦ୍ୟାଧର
ଭବଗର୍ତ୍ତୁ ବର୍ତ୍ତିବାକୁ ଯେବେ ଇଚ୍ଛାକର ।
ତହିଁରେ ହେବ ତୁମର ପରମ ମଙ୍ଗଳ
କାମନା ପୂରଣ ହେଉ ତବ ବିଦ୍ୟାଧର ।
ବର୍ତ୍ତମାନ ଯାହା ମୁହିଁ କହିବି ତୁମ୍ଭଙ୍କୁ
ବିଶ୍ୱାସରେ ଅଙ୍ଗୀକାର କରିବ ତାହାକୁ ।
ସାବଧାନ ! ଯୁକ୍ତି ତର୍କ କିଛି ନ କରିବ
କଲେ ଅବଶ୍ୟ ତାହାର ଫଳକୁ ଭୋଗିବ ।
ବହୁ ତର୍କ ବିତର୍କରେ ଏହି ସିଦ୍ଧାନ୍ତରେ
ଉପନୀତ ହୋଇଛି ମୁଁ ଆହେ ବିଦ୍ୟାଧରେ ।
ଯେ ସବୁ ଭାବ ଉଦୟ ହୁଏ ତୋ ଅନ୍ତରେ
ତାହାସବୁ ଆତ୍ମା ନୁହେଁ ଜାଣ ନିଶ୍ଚିତରେ ।
ଆତ୍ମା ସମ୍ବନ୍ଧେ ଅଛି ଯେ ଧାରଣା ତୁମର
ମନୁ ପୋଛି ଦିଅ ସବୁ ଆହେ ବିଦ୍ୟାଧର ।
ଧାରଣା କର ମୋ ଉପଦିଷ୍ଟ ଆତ୍ମଜ୍ଞାନ
ତହୁଁ ଲବ୍ଧ ହେବ ତୁମ ମଙ୍ଗଳ, ପରମ ।
ଆମେ, ତୁମେ, ଏ ଜଗତ କିଛି ନୁହେଁ ବୋଲି
ଯଦି ଏ ଧାରଣା ଜନ୍ମେ ମନରେ ତୁମରି,
ତହିଁରେ ତୁମ ପ୍ରାପ୍ତବ୍ୟ ସମସ୍ତ ହିଁ ଥିବ
ଦୁଃଖ ବଦଳରେ ସୁଖ ତହୁଁ ମିଳିଯିବ ।
ଅଜ୍ଞାନରୁ ଏ ଜଗତ ହୋଇଛି ଉତ୍ପନ୍ନ
ଅଥବା ଜଗତ ମଧ୍ୟୁ ଉତ୍ପନ୍ନ ଅଜ୍ଞାନ
ସ୍ଥିର କରି ପାରି ନାହିଁ ଆଜ ଯାଏ ମୁହିଁ
ଯେଣୁ ଅଜ୍ଞାନ, ଜଗତ, ଏକବସ୍ତୁ ହୋଇ ।
ଭ୍ରାନ୍ତିବଶ ଏ ଜଗତ ଜଣାଯାଏ ସତ୍ୟ
ବାସ୍ତବରେ ସତ୍ୟନୁହେଁ, ନିରାଟ ଅସତ୍ୟ ।
ମରୀଚିକାଠାରେ ଜଳଭ୍ରମ ଯେଉଁ ପରି
ବ୍ରହ୍ମଙ୍କୁ ଏ ଜୀବଗଣ ନ ଜାଣନ୍ତି ବୋଲି
ବ୍ରହ୍ମରେ ଜଗତଭ୍ରମ ହୋଇଥାଏ ଦୃଷ୍ଟ
ଏ ଜଗତ ସତ୍ୟବୋଲି ହୁଅଇ ପ୍ରତୀତ ।
ଯାହା ଭ୍ରମ, ତାହା କେଉଁ ବସ୍ତୁ ନୋହିପାରେ
ରଜ୍ଜୁରେ ସର୍ପର ଜ୍ଞାନ ଭ୍ରମ ଯେ ପ୍ରକାରେ ।
ଅତଏବ ସତ୍ୟପରି ହେଲେ ହେଁ ପ୍ରତୀତ
ଏ ଜଗତ କେତେ ବେଳେ ନୋହିପାରେ ସତ୍ୟ ।
ତେବେ କହ ଏ ଜଗତ ଅଟେ ଅବା କିସ
ସୁବିଚାର ବଳେ ଜଣାଯିବ ଏ ରହସ୍ୟ ।
ମରୀଚିକା-ଜଳଭ୍ରମ ଯଥା ନୁହେ ଜଳ
ମରୀଚିକା ମରୀଚିକା ରହେ ଚିରକାଳ ।
ବ୍ରହ୍ମେ ଯେଣୁ ତୁମେ, -ଆମେ, -ଏଜଗତ, -ଭ୍ରମ
ହେଉଅଛି ସଦାକାଳେ ବିଦ୍ୟାଧର ଜାଣ ।
ତେଣୁ ତୁମେ, ଆମେ ପୁଣି ଏହି ଯେ ଜଗତ
ଏ ସର୍ବେ କେବଳ ବ୍ରହ୍ମ ଏହା ଧ୍ରୁବ ସତ୍ୟ ।
ଅହଂଭାବ ହିଁ ଜଗତ-ବୀଜ ବୋଲି ଜାଣ
ସେ ବୀଜରୁ ଏ ବିଶାଳ ଜଗତ୍-ବୃକ୍ଷ ଜନ୍ମ ।
ଏହି ଅହଂଭାବ ରୂପ ଯେ ଜଗତ-ବୀଜ
ଅତୀବ ସୂକ୍ଷ୍ମ ଅଟଇ ଏହା ମନେ ହେଜ ।
ଏ ବୀଜକୁ ଜ୍ଞାନାନଳେ କରିଦେଲେ ଦଗ୍ଧ
ଅଜ୍ଞାନ ମୟ ଜଗତ ନ ହୁଏ ପ୍ରସିଦ୍ଧ ।
ଯେ ଯାଏ ତୁମର ଅହଂଭାବ ବିଦ୍ୟାଧର
ଦୂରୀଭୂତ ନ ହୋଇଛି ଜାଣ ନିରାଧାର
ସଂସାର-ବୀଜ ତୁମର ସେଦିନ ପର୍ଯ୍ୟନ୍ତ
ବିଦ୍ୟମାନ ରହିଥିବ ଏହା ସୁନିଶ୍ଚିତ ।
ଅହଂଭାବ ଗଲେ, ତୁମେ ଆମେ ଏ ଜଗତ
କିଛି ମାତ୍ର ନ ରହିବ ଜାଣ ଏହି ତତ୍ତ୍ୱ ।
ଯାହାକିଛି ବାକି ରହିଯିବ ତତପର
ପରମ ଜ୍ଞାନ ସ୍ୱରୂପ, ସେ ଆତ୍ମା-ତୁମର ।
ଗୁରୁ ଉପଦେଶ ଯେହୁ ହୃଦୟରେ ଧରି
ଶ୍ରଦ୍ଧା, ଯତ୍ନ ସହିତରେ କରେ ତତପରି
ତାହାକୁ ହିଁ ତତ୍ତ୍ୱଜ୍ଞାନ ହୁଏ ପରାପତ
ମୁକ୍ତିପଥ ଆରୋହଣେ ହୁଏ ସେ ସମର୍ଥ ।
ଏ ଜଗତ ସଂସାରକୁ ଇନ୍ଦ୍ରଜାଲ ସମ
ଜ୍ଞାନକରି ରହ ଆହେ ଗନ୍ଧର୍ବ ଉତ୍ତମ ।
ଏକମାତ୍ର ଚିତ୍‌ପ୍ରକାଶ ବୋଲି ତାକୁ ମଣ
ଏ ଧାରଣା ସିଦ୍ଧ ହେଲେ ଦୁଃଖମୁକ୍ତି ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଜଗତ-ବୃକ୍ଷ ବୀଜ ବର୍ଣ୍ଣନେ ନାମ ଚତୁର୍ଥ ସର୍ଗଃ ।**

❑

## ପଞ୍ଚମ ସର୍ଗଃ
## ଚିତ୍-ଚମତ୍କାରୀତା

ଭୂଷଣ୍ଡ ବୋଲନ୍ତି ପୁଣି ଶୁଣ ବିଦ୍ୟାଧର
ବ୍ରହ୍ମରୁ ପ୍ରକାଶ ଯେଣୁ ଏହି ଜଗତର
ଅଚେତନ ସଦୃଶ ତା ହେଲେ ହେଁ ପ୍ରତୀତ
ଚେତନ ବୋଲିଣ ତାକୁ ଧରିବା ଉଚିତ ।
ଜଳେ ନିପତିତ ଅଗ୍ନି-ପ୍ରତିବିମ୍ବ ଯଥା
ଜଳରୁ ପୃଥକ ଯେହ୍ନେ ନୁହଇ ସର୍ବଥା,
ଚୈତନ୍ୟଠାରୁ ସେପରି ଏହି ଯେ ଜଗତ
ଅଭିନ୍ନ ଅଟଇ ଜାଣିରଖ ଏହି ସତ୍ୟ ।
ଏକମାତ୍ର ଶାନ୍ତ ଆତ୍ମା ଯେଣୁ ବିରାଜିତ
ତା'ଠାରୁ ପୃଥକ ତୁମେ ନୁହଁ କଦାଚିତ ।
ତୁମେ ତ କେବଳ ଅଟ ଜ୍ଞାନର ଆଧାର
ନିଜେ ନିଜମଧ୍ୟେ ଶାନ୍ତ ରହ ବିଦ୍ୟାଧର ।
ଯହିଁ ବ୍ରହ୍ମ, ତହିଁ ବିଶ୍ୱ ଏହା ଜାଣି ଗଲେ
ନିଃସନ୍ଦେହେ ଅର୍ଦ୍ଧମୁକ୍ତ ହୋଇଯିବ ହେଲେ ।
ହେଲେହେଁ ପରମପର୍ଦ ଅହଂଭାବାତୀତ
ତାହା ମଧ୍ୟ ହୋଇ ପାରି ଥାଏ ପରାପତ ।
ଯଥାର୍ଥ ରୂପରେ ତାଙ୍କୁ ହେଲେ ପରିଜ୍ଞାତ
ଅନ୍ତର୍ହିତ ହୋଇଯାଏ ଏ ଦୃଶ୍ୟ ଜଗତ ।
ଜଗତ ଓ ବ୍ରହ୍ମ ମଧ୍ୟେ ଭେଦ ଓ ଅଭେଦ
ଶବ୍ଦଗତ ମାତ୍ର, ତାହା ନୁହେଁ ବସ୍ତୁଭେଦ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବିଦ୍ୟାଧର ଉପାଖ୍ୟାନେ ଚିତ୍-ଚମତ୍କାରୀତା ବର୍ଣ୍ଣନେ ନାମ ପଞ୍ଚମ ସର୍ଗଃ ।**

❑

## ଷଷ୍ଠ ସର୍ଗଃ
## ସର୍ଗ-ଉପସର୍ଗ ଉପଦେଶ

ରମଣୀର ସ୍ତନସ୍ପର୍ଶ ଅବା ଅସ୍ତ୍ରାଘାତ
ଉଭୟ ସ୍ଥଳରେ ନିର୍ବିକାର ଯାର ଚିତ୍ତ,
ସେହି ଏକା ପରଂପଦେ ଅଛି ପ୍ରତିଷ୍ଠିତ
ଭୂଷଣ୍ଡର ମତ ଏହା ବିଦ୍ୟାଧର ସୁତ ।
ଏପରି ଅବସ୍ଥା ଲଭି ନୋହିଛି ଯେ ଯାଏ
ଜ୍ଞାନଭ୍ୟାସ ଆଚରଣ ଉଦିତ ସେ ଯାଏ ।
ଆତ୍ମାକୁ ଜାଣି ପାରିଛି ଯେ ବଣ ସୁଜନ
କୌଣସି ଦୁଃଖ ତାହାକୁ ନ ଲଗାଇ ଜାଣ ।
ସ୍ୱରୂପକୁ ପରିତ୍ୟାଗ ନ କରିଣ ବ୍ରହ୍ମ
ଜୀବଭାବ ଧରିଥାଏ ବିଦ୍ୟାଧରଜାଣ ।
ତେଣୁକରି ବ୍ରହ୍ମମୟ ଏ ସାରା ସଂସାର
ବ୍ରହ୍ମେ ଅବସ୍ଥିତ ହୋଇଲେ ହେଁ ବିଦ୍ୟାଧର
ବ୍ରହ୍ମଠାରୁ ଭିନ୍ନରୂପେ ହୁଏ ପ୍ରତିଭାତ
ବ୍ରହ୍ମଙ୍କ କରଣୀ ବୁଝ ବିଦ୍ୟାଧର ସୁତ ।
ବ୍ରହ୍ମଭାବେ ଜୀବ, ହୋଇଯାନ୍ତେ ପରିଣତ
ଜନ୍ମ ମରଣ ତାହାର ହୋଇଯାଏ ଅସ୍ତ ।
ଜୀବଭାବ ଥିବାଯାଏ, ଜନ୍ମ ମୃତ୍ୟୁ ତାର
ସଙ୍ଗେ ସଙ୍ଗେ ଥାନ୍ତି ଯଥା ଚିର ସହଚର ।
ଅହଂଭାବେ, ମମତ୍ୱରେ, ନୁହେ ଯେ ଆକୃଷ୍ଟ
ନ ଜାଣଇ, ଭବାର୍ଣ୍ଣବ ପାରି ହେବା କଷ୍ଟ ।
କିନ୍ତୁ ଦୈବ ମୁଖାପେକ୍ଷୀ ଯେବେ ସେ ହୋଇବ
ଭବାର୍ଣ୍ଣବ ପାର ତାହା ପାଇଁ ଅସମ୍ଭବ ।
ଯେ ବ୍ରହ୍ମରେ ସର୍ବ ସୁଖ, ଶାନ୍ତି ବିଦ୍ୟମାନ
ଉପେକ୍ଷା କରିବ ତାକୁ କେବଣ କାରଣ ?
ବ୍ରହ୍ମଦୃଷ୍ଟିରେ ଜଗତ କଲେ ଦରଶନ
ନିର୍ମଳ ଆତ୍ମା ତୁମର ନୋହିବ ମଳିନ ।
ଅହଙ୍କାର, ମନ, ବୁଦ୍ଧି, ଏ ମାନ ସମସ୍ତ
କରି ନ ପାରିବେ କେଉଁ ତାଙ୍କୁ କଳଙ୍କତ ।
ଘଟ, ପଟ ଇତ୍ୟାଦିଙ୍କୁ ଦେଖ ଯେଉଁପରି
ଏ ଦେହକୁ ସେତେବେଳେ ଦେଖିବ ସେପରି ।
ଅହଂଭାବ ଓ ମମତ୍ୱ ବୁଦ୍ଧି ଯେବେ ରହି
କେବେ ହେଲେ ସେହିରୂପ ଦେଖାଯିବ ନାହିଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ସର୍ଗ-ଉପସର୍ଗ ଉପଦେଶ ବର୍ଣ୍ଣନେ ନାମ ଷଷ୍ଠ ସର୍ଗଃ ।**

❑

## ସପ୍ତମ ସର୍ଗଃ
## ଅବିଦ୍ୟା ବିନାଶ ଉପଦେଶ

"ଭୂଷଣ୍ଡ ବୋଲନ୍ତି ଶୁଣ ଆହେ ବିଦ୍ୟାଧର
ଅହଙ୍କାର ମନ ବୁଦ୍ଧି ଏ ଆଦି ସକଳ,
ଅବିଦ୍ୟା, ତଥା ଅଜ୍ଞାନ ବୋଲି ତାଙ୍କୁ ମଣ
ପ୍ରଯତ୍ନ ସହ ଅଜ୍ଞାନ କର ବିନାଶନ ।

ପଣ୍ଡିତ ମାନଙ୍କ ସହ କଥୋପକଥନ
ଦାଶକରେ ଅଜ୍ଞାନର କିଛି ଅଂଶ ଜାଣ ।
ଶାସ୍ତ୍ରାର୍ଥ ବିଚାର୍ ବଳେ କିଛି ଅଂଶ ପୁଣ
ନଷ୍ଟ ହୋଇ ଯାଇଥାଏ ବିଦ୍ୟାଧର ଜାଣ ।
ଆତ୍ମ ସାକ୍ଷାତ୍କାର ବଳେ ଅବଶିଷ୍ଟ ଅଂଶ
ବିନଷ୍ଟ ଲଭଇ, ଏଥି ନାହିଁ ଭ୍ରମ ଲେଶ ।
ଏହିପରି ଅବିଦ୍ୟାର ବିନାଶ ଘଟିଲେ
ଯାହାକିଛି ଅବଶିଷ୍ଟ ରହେ, ବିଦ୍ୟାଧରେ !
ନାମ, ରୂପ, ହୀନ ସତ୍ୟସ୍ୱରୂପ ବୋଲିଣ
ବର୍ଣ୍ଣନ କରି ଥାଆନ୍ତି ତାକୁ ଜ୍ଞାନୀଜନ ।”
ଶ୍ରୀରାମ ବୋଲନ୍ତି ଏବେ ଗୁରୁଦେବ ଶୁଣ
ସାଧୁଜନ ସଙ୍ଗେ କରି କଥୋପକଥନ,
ପୁଣି ଶାସ୍ତ୍ରାର୍ଥ ବିଚାର ବଳେ ମୁନିଈଶ
ଆଂଶିକ ଭାବେ ଅବିଦ୍ୟା ଯେଉଁପରି ନାଶ
ଅବଶିଷ୍ଟାଂଶ ଯେପରି ବ୍ରହ୍ମ ସାକ୍ଷାତ୍କାରେ
ବିନଷ୍ଟ ହୁଏ ତା କହ ପ୍ରାଞ୍ଜଳ ଭାବରେ ।
କହନ୍ତି ବଶିଷ୍ଠ ରାମ ! ଶୁଣ ଦେଇମନ
ସଂସାର ପ୍ରତି ବୈରାଗ୍ୟ କରିବ ପ୍ରଥମ ।
ସଂସାର ସ୍ୱରୂପ ଘେନି ଆତ୍ମଜ୍ଞାନୀ ସହ
ବିଚାର କରିବ ଆହେ କୌଶଲ୍ୟା ତନୟ ।
ସେହି ସାଧୁସଙ୍ଗ ବଳେ ଅବିଦ୍ୟା ଅର୍ଦ୍ଧାଂଶ
କ୍ଷୟ ପାଇଯାଏ ଜାଣ ଅଯୋଧ୍ୟା ବିଳାସ ।
ଶାସ୍ତ୍ରାର୍ଥ ବିଚାର ବଳେ ଏକ ଚତୁର୍ଥାଂଶ
କ୍ଷୟ ହୋଇଯାଏ ପୁଣି ରଘୁକୁଳ ଈଶ ।
ଅବଶିଷ୍ଟ ଚତୁର୍ଥାଂଶ ନିଜ ପ୍ରଯତ୍ନରେ
ବିନଷ୍ଟ ହୋଇଣ ଥାଏ ଆହେ ରଘୁବୀରେ ।
ବିଷୟ ଭୋଗରେ ପରାଙ୍ମୁଖ ଯେ ମନୁଷ୍ୟ
ମୁକ୍ତି ପାଇଁକି ଯେବେ ତା' ଜନ୍ମେ ଅଭିଳାଷ
ତେତେବେଳେ ସେହୁ ସ୍ୱୀୟ ପୌରୁଷ ବଳରେ
ଅବିଦ୍ୟା ଅବଶିଷ୍ଟାଂଶ ନାଶ କରିପାରେ ।
ଏହିପରି ସାଧୁସଙ୍ଗ, ଶାସ୍ତ୍ରାର୍ଥ ବିଚାର
ତାର ସହ ପୁଣି ସ୍ୱୀୟ ପଉରୁଷ ବଳ,
ଏହି ତ୍ରିବିଧ ଉପାୟେ ଅବିଦ୍ୟାର କ୍ଷୟ
ହୋଇ ପାରିଥାଏ ଜାଣ ହେ ରଘୁତନୟ ।
ଏକ ବେଳେ ଜୁଟିଥିଲେ ତ୍ରିବିଧ ଉପାୟ
ପୂର୍ଣ୍ଣଭାବେ ହୋଇଯାଏ ଅବିଦ୍ୟାର କ୍ଷୟ ।
ଅବିଦ୍ୟା ବିନାଶେ ଯାହା ରହେ ଅବଶେଷ
ତାହାହିଁ ଆତ୍ମା ବୋଲାଏ ରଘୁକୁଳ ଈଶ ।
ସେହି ଆତ୍ମାକୁ ଚିହ୍ନିଣ ତୁମେ ହେ ଶ୍ରୀରାମ
ଶୋକାତୀତ ଭାବେ ସଦା କର ଅବସ୍ଥାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ବିଦ୍ୟାଧର ଉପାଖ୍ୟାନେ**
**ଅବିଦ୍ୟା ବିନାଶ ବର୍ଣ୍ଣନେ**
**ନାମ ସପ୍ତମ ସର୍ଗଃ ।**



## ଅଷ୍ଟମ ସର୍ଗଃ

## ସଙ୍କଳ୍ପ-ଅସଙ୍କଳ୍ପ

କହନ୍ତି ଭୂଷଣ୍ଡ ଏହି ବିପୁଳ ଜଗତ
ଜାଣିବ ମନର ତାହା ସଂକଳପ ମାତ୍ର ।
ନିଜ ସ୍ୱପ୍ନ ଯଥା, ତୁମେ ନିଜେ ଦେଖିପାର
ମାତ୍ର ଅନ୍ୟ ଦେଖି ନପାରଇ ବିଦ୍ୟାଧର ।
ସେହିପରି ଏ ଜଗତ ଯହିଁ ଉଦଭୂତ
ସେହି ବ୍ୟକ୍ତି ଦ୍ୱାରା ତାହା ହୁଏ ଅନୁଭୂତ ।
ଇନ୍ଦ୍ର ସହ ଅସୁରଙ୍କ ଯେଉଁ ଯୁଦ୍ଧ ହେଲା
ବହୁକାଳ ପରେ ଇନ୍ଦ୍ର ପରାସ୍ତ ହୋଇଲା ।
ଯୁଦ୍ଧ ତେଜି ଦେବରାଜ କରେ ପଳାୟନ
ଅସୁରଗଣ କରନ୍ତି ପଶ୍ଚାତ ଧାବନ ।
ନାନା ସ୍ଥାନେ ପଳାୟନ କରି ଦେବରାଜ
ନିସ୍କୃତି ନ ପାଇ କାହିଁ ହରାଇଲେ ଧୈର୍ଯ୍ୟ ।
ସୂର୍ଯ୍ୟ କିରଣର ଏକ ଅଣୁର ମଧ୍ୟରେ
ନିଜର ଦେହକୁ ଉପସଂହୃତ କରିଲେ ।
ସଂବିତ ଆକାରେ ତହିଁ ପ୍ରବେଶ କରିଣ
ବିଶ୍ରାମ କଲେକ ଯାଇଁ ସେ ଦେବ ରାଜନ ।
ଇନ୍ଦ୍ରଙ୍କୁ ଦେଖି ନପାରି ସେ ଅସୁରଗଣ
ଯୁଦ୍ଧରୁ ନିବୃତ୍ତ ହେଲେ ସକଳ ସଇନ ।
ତହୁଁ ଇନ୍ଦ୍ର ଯୁଦ୍ଧ କଥା ମନୁ ପାଶୋରିଣ
ସ୍ୱର୍ଗ-ରାଜ୍ୟ ନିର୍ମାଣନ୍ତି କଳ୍ପନା ବଳେଣ ।
ସେହି ଅଣୁମଧ୍ୟେ ଥାଇ ସେ ଦେବ ରାଜନ
ଉପଭୋଗ କରୁଥାନ୍ତି ସ୍ୱର୍ଗୈଶ୍ୱର୍ଯ୍ୟ ମାନ ।
କାଳକ୍ରମେ କୁନ୍ଦ ନାମେ ବଳିଷ୍ଠ ତନୟ
ଜନମ ଲାଭ କରଇ ସେହି ଇନ୍ଦ୍ର ଗୃହ ।

ଏହିପରି ବହୁକାଳ ଐଶ୍ୱର୍ଯ୍ୟ ଭୋଗିଣ
ଆୟୁ ଶେଷେ ପରଂପଦ ଇନ୍ଦ୍ର ହେଲେ ଲୀନ ।
ତ୍ରଇଲୋକ୍ୟ-ରାଜେଶ୍ୱର ହୋଇ ସେହି କୁନ୍ଦ
ପୁତ୍ର ଲାଭକରି ମନେ ହୁଅନ୍ତି ଆନନ୍ଦ ।
ଆୟୁଶେଷେ ପରମାତ୍ମା ମଧ୍ୟେ ହେଲେ ଲୀନ
ତାଙ୍କ ପୁତ୍ର କରେ ତହୁଁ ତ୍ରିଲୋକ ପାଳନ ।
ପୁତ୍ର-ପୌତ୍ରାଦି କ୍ରମରେ ସହସ୍ର ପୁରୁଷ
ଇନ୍ଦ୍ର-କଳ୍ପିତ ରାଜ୍ୟରେ କଟାନ୍ତି ଆୟୁଷ ।
ଏବେ ମଧ୍ୟ ସେହି ରାଜ୍ୟେ ତାଙ୍କ ବଂଶଧର
ରାଜତ୍ୱ କରୁଅଛନ୍ତି ଆହେ ବିଦ୍ୟାଧର ।
ସୂର୍ଯ୍ୟ କିରଣରେ ସ୍ଥିତ ସେହି ଅଣୁଜାଣ
ବହୁକାଳ ହେଲା ତାହା ହୋଇଛି ବିଲୀନ ।
ମାତ୍ର ତନ୍ମଧ୍ୟସ୍ଥ ଇନ୍ଦ୍ର-କଳ୍ପନା ରାଇଜ
ଅବିକଳ ବିରାଜୁଛି ବିଦ୍ୟାଧର ରାଜ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବିଦ୍ୟାଧର ଉପାଖ୍ୟାନ ସଙ୍କଳ୍ପ- ଅସଂଙ୍କଳ୍ପ ପ୍ରତିପାଦନେ ନାମ ଅଷ୍ଟମ ସର୍ଗଃ ।**



## ନବମ ସର୍ଗଃ

## ତ୍ରସରେଣୁ ଜଗତ

କହନ୍ତି ଭୂଷଣ୍ଡ ପୁଣି ବିଦ୍ୟାଧର ଶୁଣ
ଅଣୁସ୍ଥ, ଇନ୍ଦ୍ର କଳ୍ପିତ ସେ ରାଜ୍ୟ ମଧ୍ୟେଣ,
ଇନ୍ଦ୍ର ବଂଶଧର ଏକ ଦେବ ଅଧିପତି
ଜନ୍ମଲାଭ କରି ତହିଁ କରନ୍ତି ରାଜୁତି ।
ଦେବଗୁରୁ ବୃହସ୍ପତି ଉପଦେଶ ବଳେ
ଆତ୍ମ ସାକ୍ଷାତ୍‌କାର ସେହୁ ଲଭିଥିଲେ ହେଲେ ।
ସେ ଦେବରାଜ ଏକଦା ଭାବିଲେ ଏସନ
ସମାଧିରେ ବ୍ରହ୍ମତତ୍ତ୍ୱ କରିବେ ଦର୍ଶନ ।
ଏହି ଅଭିଳାଷ ରଖି ନିର୍ଜନ ସ୍ଥାନରେ
ସମାଧି ଯୋଗରେ ବ୍ରହ୍ମ ଦରଶନ କଲେ ।
ଦେଖନ୍ତି ସେ ସର୍ବମୟ ବ୍ରହ୍ମ ସନାତନ
ସର୍ବତ୍ର ସର୍ବବସ୍ତୁରେ ଛନ୍ତି ବିଦ୍ୟମାନ ।
ସର୍ବଦିଗ ଅଭିମୁଖୀ ହୋଇ ସେ ଅଛନ୍ତି
ସବୁଠାରେ ସବୁକଥା ଶ୍ରବଣ କରନ୍ତି ।
ସବୁ ସ୍ଥାନେ ତାଙ୍କ ହସ୍ତ ପଦ ବିସ୍ତାରିତ
ସବୁଠାରେ ତାଙ୍କ ଚକ୍ଷୁ, ଶିର ବିରାଜିତ ।
ସବୁଠାରେ ତାଙ୍କ ମୁଖ ରହିଛି ଉନ୍ମୁକ୍ତ
ସର୍ବତ୍ର ହିଁ ଶ୍ରୁତିରୂପେ ସେହୁ ବିରାଜିତ ।
ସମସ୍ତ ବିଶ୍ୱକୁ ଆଚ୍ଛାଦନ କରିଛନ୍ତି
ବାମନ ରୂପରେ କିବା ତହିଁ ବିରାଜନ୍ତି ।
ଇନ୍ଦ୍ରିୟହୀନ ସେ କିନ୍ତୁ ସର୍ବେନ୍ଦ୍ରିୟ ଗୁଣ
ସକ୍ରିୟଭାବେ ରହନ୍ତି ତାଙ୍କଠାରେ ଜାଣ ।
କାହିଁରେ ଲିପ୍ତ ନହୋଇ ସେହୁ ରହିଛନ୍ତି
ସବୁରି ଆଧେୟ ରୂପେ ପୁଣି ବିରାଜନ୍ତି ।
ନିର୍ଗୁଣ ହେଲେହେଁ ସର୍ବ ଗୁଣ ଭୋକ୍ତା ସେହି
ଗତିଶୀଳ ରୂପେ ସର୍ବାନ୍ତରେ ବିରାଜଇ ।
ସବୁରି ବାହାରେ ସ୍ଥିରଭାବେ ଅବସ୍ଥିତ
ସୂକ୍ଷ୍ମ ଯେଣୁ, କାହାରିକୁ ନୁହନ୍ତି ସେ ଜ୍ଞାତ ।
ସବୁରି ନିକଟେ ପୁଣି ସବୁଠୁଁ ଦୂରରେ
ବିଦ୍ୟମାନ ରହିଛନ୍ତି ସେହୁ ନିରନ୍ତରେ ।
ଚନ୍ଦ୍ର, ସୂର୍ଯ୍ୟ, ନଦ, ନଦୀ, ପୃଥିବୀ, ପର୍ବତ
ସମୁଦ୍ର, ଆକାଶ, ସବୁଠାରେ ବିରାଜିତ ।
ଏପରିକି ଏ ବିଶାଳ ଜଗତ ରୂପରେ
ପ୍ରକାଶମାନ ଅଛନ୍ତି ସେହୁ ନିରନ୍ତରେ ।
ଏପରି କୌଣସି ବସ୍ତୁ ନାହିଁ ଏ ବିଶ୍ୱରେ
ତାହାଙ୍କର ଅବସ୍ଥିତି ନଥାଇ ଯହିଁରେ ।
ଅଥଚ ଅଟନ୍ତି ସେହୁ ସକଳ ଅତୀତ
ସମାଧିରେ ଏହା ତାଙ୍କ ହୁଅଇ ପ୍ରତୀତ ।
ଏପରି ଦର୍ଶନ କରି କରି ଦେବରାଜ
ବ୍ରହ୍ମ-ସାରୂପ୍ୟ ଲଭିଣ ବଢ଼େ ତାଙ୍କ ତେଜ ।
ସେତେବେଳେ ଏହିପରି କରନ୍ତି ଚିନ୍ତନ
"ସକଳ ସର୍ଜନା ତାଙ୍କଠାରୁ ଉତପନ୍ନ ।"
କିଛିକାଳ ଏହିପରି ବ୍ରହ୍ମ ଦରଶନ
କଲାପରେ ପୁଣି ଉଦେ ଅହଂ ତାଙ୍କ ମନ ।
ପୁଣି ଇନ୍ଦ୍ର ଭାବ ପ୍ରାପ୍ତ ହୋଇ କରିସେହି
ତ୍ରିଲୋକ ଶାସନ କରେ କ୍ଷୁର୍ଣ୍ଣ-ମନା ନୋହି ।
ଇନ୍ଦ୍ର ବଂଶୋଦ୍ଭବ ଦେବ ରାଜାଙ୍କର କଥା
ଯାହା ବର୍ଣ୍ଣନ କଲଇଁ ଗନ୍ଧର୍ବ ସୁଚେତା ।
ଏହି ଆକାଶ ମଧ୍ୟରେ ସେହିପରି ଜାଣ
ଶତ ଶତ ଇନ୍ଦ୍ରଙ୍କର ଉତ୍‌ଥାନ ପତନ ।

ହୋଇଥିଲା, ହେଉଅଛି ଆହେ ବିଦ୍ୟାଧର
ମାୟାର ଏ ଖେଳ ଲାଗି ଅଛି ନିରନ୍ତର ।
ଆତ୍ମ ସାକ୍ଷାତ୍‌କାର ବଳେ ସେ ମାୟାର ଖେଳ
ଅବସାନ ହେବା ନୁହେ ବିସ୍ମୟ ବ୍ୟାପାର ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଉତ୍ତର ଖଣ୍ଡେ ତ୍ରସରେଣୁ ଜଗତ୍-ବର୍ଣ୍ଣନେ
ନାମ ନବମ ସର୍ଗଃ ।**



## ଦଶମ ସର୍ଗଃ

## ସର୍ବ ସଙ୍କଳ୍ପ ପ୍ରତିପାଦନ

କହନ୍ତି ଭୂଷଣ୍ଡ ଶୁଣ ବିଦ୍ୟାଧର ସୁତ
'ମୁହିଁ' 'ତୁହି' ଭାବ ହେବା ମାତ୍ରକେ ଉଦିତ
ସଙ୍ଗେ ସଙ୍ଗେ ଏ ଜଗତ ହୁଅଇ ଉଦ୍‌ଭୂତ
ତେଣୁ ଅଣୁ ମଧ୍ୟେ ହେଲା ଇନ୍ଦ୍ରର ଜଗତ ।
ଅହଂଭାବେ ଅଭିମାନୀ ଆତ୍ମାହିଁ କେବଳ
ମୂଳ କାରଣ ଅଟଇ ଜଗତ-ଭ୍ରାନ୍ତିର ।
ସେହି ଅହଙ୍କାର ଜାଣ ଅଟେ ଏ ଜଗତ
ଅହଙ୍କାରରୁ ପୃଥକ କେଉଁ ନୁହେ ସେତ
ଜଳ ଓ ଦ୍ରବତ୍ୟ ଯଥା ଏକଇ ପଦାର୍ଥ
ଅହଙ୍କାର, ଜଗତ-ଭାବେ ଅଟଇ ତେମନ୍ତ ।
ତତ୍ତ୍ୱଜ୍ଞାନ ବଳେ ଯେହେତୁ ନିଜ ଅହଙ୍କାର
ବିଦୂରୀତ କରିପାରେ ଆହେ ବିଦ୍ୟାଧର ।
ଏ ଜଗତ ମଳିନତା ତାହାପରେ ଜାଣ
ପ୍ରକ୍ଷାଳନ କରିବାକୁ ହୁଏ ସେ ସକ୍ଷମ ।
ତେଣୁ "ତୁହି" "ମୁହିଁ" ବୋଲି କିଛି ନାହିଁ ଜାଣ
ଏ ଜଗତେ ଏକମାତ୍ର ବ୍ରହ୍ମ ବିଦ୍ୟମାନ ।
ଅହଙ୍କାର ବୋଲି ତହିଁ କିଛିମାତ୍ର ନାହିଁ
ସଙ୍କଳ୍ପ ବୋଲିଣ ମଧ୍ୟ କିଛି ହିଁ ନଥାଇ ।
ଯେଣୁ ଏହି ଅହଙ୍କାର କେଉଁ ନୁହେ ସତ୍ୟ
ତେଣୁ ତୁମ ମନ, ବୁଦ୍ଧି, ଏ ସବୁ ଅସତ ।
ଏହି ସକଳ ଅତୀତ ଯେ ପ୍ରଶାନ୍ତ ଆତ୍ମା
ତହିଁ ତୁମେ ଅବସ୍ଥାନ କର ହେ ମହାତ୍ମା ।
ଏପରି ସମ୍ୟକ୍ ଜ୍ଞାନୁଁ ବିଚ୍ୟୁତ ହୋଇଣ
ଭ୍ରାନ୍ତି-ଗହ୍ୱରେ ନ ପଡ଼ ତୁମେ କଦାଚନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଉତ୍ତର ଖଣ୍ଡେ ବିଦ୍ୟାଧର ଉପାଖ୍ୟାନେ
ସର୍ବ ସଙ୍କଳ୍ପ ବିକଳ୍ପ ପ୍ରତିପାଦନେ ବର୍ଣ୍ଣନେ
ନାମ ଦଶମ ସର୍ଗଃ ।**



## ଏକାଦଶ ସର୍ଗଃ

## ଅହଂଭାବ ନାଶ-ବିଦ୍ୟାଧର ନିର୍ବାଣ

ଭୂଷଣ୍ଡଙ୍କଠାରୁ ଏହି ଜ୍ଞାନ ବାଣୀ ଶୁଣି
ବାହ୍ୟଜ୍ଞାନ ହରାନ୍ତି ସେ ବିଦ୍ୟାଧର ମଣି ।
ସଙ୍ଗେ ସଙ୍ଗେ ସମାଧିରେ ହୋଇଲେ ମଗନ
ନିଶ୍ଚଳ ହୋଇଲେ ତାଙ୍କ ଅବୟବ ମାନ ।
ଭୂଷଣ୍ଡ ସକଳ ଚେଷ୍ଟା ବିଫଳ ଲଭିଲା
ବିଦ୍ୟାଧର ବାହ୍ୟଜ୍ଞାନ କେଭେ ନ ଫେରିଲା ।
କହନ୍ତି ବଶିଷ୍ଠ ରାମ ! ତେଣୁ ମୁଁ କହଇ
ଚିତ୍ତ ବିଶୁଦ୍ଧିରେ, ଉପଦେଶ ଫଳ ଦେଇ ।
ତା ନୋହିଲେ ଜାଣ ସର୍ବ ଉପଦେଶ ମାନ
ବୃଥା ହୁଏ, ଫଳ ନ ଫଳଇ କଦାଚନ ।
ଅହଂଭାବନା, ମମତ୍ୱ ବୋଧ ତେଣୁ କରି
ସକଳ ଦୁଃଖର ମୂଳ ଅଟେ ଋପଧାରୀ ।
ଅହଂଭାବ ଯେବେ ହୋଇଯାଏ ବରଜନ
କାମନା, ବାସନା, ଇଚ୍ଛା ପାନ୍ତି ଉପଶମ ।
ପ୍ରସ୍ତର, ସୁବର୍ଣ୍ଣଠାରେ ଆସେ ସମଜ୍ଞାନ
ଆବର ସଂସାର-ବ୍ୟାଧି ହୁଅଇ ବିଲୀନ ।
ସଂସାର ଜନିତ ଦୁଃଖ ଆଉ ତାହାପାଇଁ
ନ ରହଇ ଜାଣିରଖ ଆହେ ରଘୁସାଇଁ ।
ମୂର୍ଖଲୋକେ ହିଁ କେବଳ କହନ୍ତି ରାଘବ
ମୃତ୍ୟୁ ପରେ ମନ, ବୁଦ୍ଧି, ଅହଙ୍କାର ଭାବ
ସମୂଳେ ବିନାଶପ୍ରାପ୍ତ ହୋଇଥାନ୍ତି ସର୍ବେ
ବାସ୍ତବରେ ତାହା ତହିଁ ନ ଘଟଇ କେଭେଁ ।
ପ୍ରକାଣ୍ଡ ପାଦପ କ୍ଷୁଦ୍ରବୀଜ ମଧ୍ୟେ ଯଥା
ଅଦୃଶ୍ୟ ଭାବରେ ରହିଥାଏ ମହାମଥା ।
ପ୍ରାଣ ମଧ୍ୟେ ଚିତ୍ତ, ଚିତ୍ତ ମଧ୍ୟେ ଏ ଜଗତ
ଅଦୃଶ୍ୟ ଭାବରେ ତଥା ଥାଏ ରଘୁନାଥ ।
ଆକାଶସ୍ଥ ମହାପ୍ରାଣ ସହ ଏହି ପ୍ରାଣ
ମିଳିତ ହୋଇଣ ଏକ ହୋଇଯାଏ ଜାଣ ।

ନଭସ୍ଥିତ ମହାପ୍ରାଣ ବଳରେ ଚଳିତ
ଏହି କ୍ଷୁଦ୍ର ପ୍ରାଣ ମଧ୍ୟେ ସଙ୍କଳ୍ପ ଜଗତ ।
ଅବସ୍ଥାନ କରିଛନ୍ତି ଜାଣ ରଘୁନାଥ
ଏହି ସୃଷ୍ଟିର ରହସ୍ୟ ଅତୀବ ବିଚିତ୍ର ।
ହେ ରାମ ! ଜ୍ଞାନ ଦୃଷ୍ଟିରେ ଦେଖୁଅଛି ମୁହିଁ
ସଙ୍କଳ୍ପଜ ବିଶ୍ୱ ଚରିଆଡ଼େ ପୁରିଛୁଇଁ ।
ତୁମେ ଯଦି ଜ୍ଞାନ ନେତ୍ରେ ଦର୍ଶନ କରିବ
ମୁଁ ଯାହା ଦେଖୁଛି ତୁମେ ତାହାହିଁ ଦେଖିବ ।
ଏହି ସଙ୍କଳ୍ପ-ଜଗତ ମାନଙ୍କ ମଧ୍ୟରେ
ମେରୁ, ମନ୍ଦରାଦି ବିରାଜନ୍ତି ରଘୁବୀରେ ।
ତିଳ ମଧ୍ୟେ ତୈଳପରି ମୃତ-ଜୀବ ପ୍ରାଣ
ପ୍ରାଣ ମଧ୍ୟେ ମନ, ବୁଦ୍ଧି, ଅହଙ୍କାର ମାନ,
ତନ୍ମଧ୍ୟରେ ଏହି ସବୁ ସଙ୍କଳ୍ପ ଜଗତ
ବିଚିତ୍ର ଭାବରେ ରହିଛନ୍ତି ବିରାଜିତ ।
ମହାପ୍ରାଣ ବଳେ ଯଥା କ୍ଷୁଦ୍ର ପ୍ରାଣମାନ
ଚତୁର୍ଦ୍ଦିଗେ ଚଳୁଛନ୍ତି ଆହେ ରଘୁନାନ,
କ୍ଷୁଦ୍ର ପ୍ରାଣ ଅଙ୍ଗୀଭୂତ ଯେ ଜଗତମାନ
କ୍ଷୁଦ୍ର ପ୍ରାଣ ବଳେ ହୁଏ ତାଙ୍କର ଚଳନ ।
ସଙ୍କଳ୍ପମୟ ଅଟଇ ଏ ସବୁ ଜଗତ
ସ୍ୱାପ୍ନିକ ପଦାର୍ଥ ପରି ଏ ସବୁ ଅସତ ।
କେବଳ ଜ୍ଞାନ ଦୃଷ୍ଟିରେ ଏହି ଅନୁଭୂତି
ହୋଇଥାଏ ସଦା ଜାଣ ଆହେ ରଘୁପତି ।
ସତ୍ୟବତ ଦେଖାଯାଏ ତା ବାହ୍ୟ ଦୃଷ୍ଟିରେ
ଉପଭୋଗ୍ୟ ଯୋଗ୍ୟ ହୋଇଥାଏ ରଘୁବୀରେ ।
ଆକାଶରୁ ସୂକ୍ଷ୍ମ ଏହି ସକଳ ଜଗତ
ବର୍ତ୍ତମାନ ରହିଅଛି ସର୍ବଦା, ସର୍ବତ୍ର ।
କଳ୍ପନା ସମ୍ଭୂତ ଯେଣୁ ଅଟେ ଏ ଜଗତ
ସତ୍ତାହୀନ ତେଣୁ ତାହା, ଏହାହିଁ ଯଥାର୍ଥ ।
ଏହାଙ୍କ ପରିଚଳନା ବ୍ୟାପାର ଅଳୀକ
ଆକାଶ ସଦୃଶ୍ୟ ଶୂନ୍ୟ ହେ ରଘୁନାୟକ ।
ମୃତ ବ୍ୟକ୍ତିର ଜଗତ ଯେପରି ରାଘବ
ମନର ମନନ ବୋଲି, ଅଟେ ଅବାସ୍ତବ,
ତୁମେ ଯେ ଜଗତ ଦେଖ ତା ମଧ୍ୟ ସେପରି
ମିଥ୍ୟା ବୋଲି ଜାଣିରଖ ଆହେ ଚାପଧାରୀ ।
ଜଗଦାକାରେ କେବଳ ଭ୍ରାନ୍ତିର ଉଦୟ
ତତ୍ତ୍ୱ ଦୃଷ୍ଟିବଳେ ସେ ଉଦୟ ଶୂନ୍ୟମୟ ।

ସେତେବେଳେ ଜାଣ ଆହେ କୌଶଲ୍ୟା ତନୟେ
ଭ୍ରାନ୍ତି ହିଁ ବ୍ରହ୍ମରୂପରେ ପରିଚିତ ହୁଏ ।
ଅଜ୍ଞାନାବସ୍ଥାରେ ଜୀବ ଥାଏ ଯେତେବେଳେ
ଇହ, ପର, ଧର୍ମା, ଧର୍ମ ଭାବନା ସେ କରେ ।
ହେୟ, ଉପାଦେୟ ଜ୍ଞାନ ଅଜ୍ଞାନ ବଶରେ
ଉତ୍ପନ୍ନ ହୋଇଣ ଥାଏ ତାହୃଦ ମଧ୍ୟରେ ।
ପ୍ରାରବ୍ଧ କ୍ଷୟ ପର୍ଯ୍ୟନ୍ତ ବିଜ୍ଞଙ୍କର ମଧ୍ୟ
କିଛି ହେଲେ ଏ ମୂଢ଼ତା ରହିବାକୁ ବାଧ୍ୟ ।
ତେଣୁ ସର୍ବଜ୍ଞ ହେଲେହେଁ ନିଜେ ପ୍ରଜାପତି
ଅନ୍ତର ମଧ୍ୟେ ଜଗତ ଦର୍ଶନ କରନ୍ତି ।
ସେ ଅଟେ ଶୁଦ୍ଧ ଚୈତନ୍ୟ ରୂପ ଆତ୍ମାକାଶ
ଅଜ, ଅନନ୍ତ, ଅବ୍ୟୟ ସେ ମହାପୁରୁଷ ।
ଏକାଂଶରେ ସ୍ୱୀୟ ମାୟାଶକ୍ତି ଦ୍ୱାରା ସେହି
ଯେବଣ କାରଣୁ ଅବଚ୍ଛିନ୍ନ ହେଉଥାଉ,
ତାର ଅବୟବ ରୂପେ ଜଗତ ପ୍ରକାଶ
ସଦା ହେଉଥାଏ ଜାଣ ରଘୁକୁଳ ଈଶ ।
ହେ ରାମ ! ଏହି ଜଗତ ଯେପରି ଅଳୀକ
ଦେଶ, କାଳ, କ୍ରିୟା, ମୁଁ ତ୍ୱ' ସବୁ ଭ୍ରମାତ୍ମକ ।
ବସ୍ତୁତଃ ଏହି ସକଳ ଆତ୍ମାର ବ୍ୟତୀତ
ଅନ୍ୟ କିଛି ନୁହେଁ ଜାଣ ଆହେ ରଘୁନାଥ ।
'ଆତ୍ମସ୍ୱରୂପ'- 'ମୁଁ' ଭାବ ଆବର ଜଗତ
ଦୁହିଙ୍କ ମଧ୍ୟେ ଭିନ୍ନତା ନାହିଁ ରଘୁନାଥ ।
ଯେଣୁ ମନ ଅଚେତନ ବସ୍ତୁ ହେ ରାଘବ୍
ସଙ୍କଳ୍ପ କ୍ଷମତା ତେଣୁ କାହୁଁ ତା ଆସିବ ?
ମନ ମଧ୍ୟେ ତେଣୁ କରି ଆତ୍ମାନୁପ୍ରବେଶ
ଯେବେ ଘଟି ଯାଇପାରେ ରଘୁକୁଳ ଈଶ,
ସଙ୍କଳ୍ପ ଶକ୍ତି ମନର ହୁଅଇ ଉଦିତ
ଏହି କଥା ମନେ ରଖ ଆହେ ରଘୁନାଥ ।
କିନ୍ତୁ ଅନ୍ତରରେ ଜ୍ଞାନ ହୁଅନ୍ତେ ଉଦିତ
ସଙ୍କଳ୍ପ ବିକଳ୍ପ ମନୁଁ ନୁହଇ ସ୍ଫୁରିତ ।
ଅବିଦ୍ୟା ବଳରେ ଆତ୍ମା ଆତ୍ମହରା ହୋଇ
ସଂସାର ବନ୍ଧନେ ବଦ୍ଧ ହୋଇଲେ ହେଁ ସେହି
ନିତ୍ୟମୁକ୍ତ ସେହି ଆତ୍ମା ଏହା ସ୍ୱତଃସିଦ୍ଧ
ଆବର ନିରାଧାର ତା ରଘୁକୁଳ ଚନ୍ଦ୍ର ।
ଅବିଦ୍ୟା ଆତିବାହିକ ଶରୀର ସହିତ
ବିନଷ୍ଟ ହୋଇଲେ ଜାଣ ଆହେ ରଘୁନାଥ ।

ଏ ସଂସାର ବନ୍ଧନରୁ ହୋଇ ସେ ମୁକତ
ପରିଶେଷେ ଲାଭ କରି ପାରଇ ଶିବତ୍ୱ ।
ତେଣୁ କଳ୍ପନା ବଳେ ଏ ଜଗତ ଅସ୍ତିତ୍ୱ
ଜଗତ୍ ଆତ୍ମାଠାରୁ ଭିନ୍ନ ନୁହେଁ କଦାଚିତ ।
ଯେଣୁ କରି ବ୍ରହ୍ମ ଅଟେ ସର୍ବ ଶକ୍ତିମାନ
ଏ ସବୁ ଜଗତ୍ ପ୍ରକାଶ ପାନ୍ତି ଅନୁକ୍ଷଣ
ମନେ ହୁଏ ସେ ଜଗତ ସୁଦୃଢ଼, ବାସ୍ତବ
କ୍ଷଣଭଙ୍ଗୁର ମାତ୍ରକ ସେମାନ ରାଘବ ।
ନଦୀମାନଙ୍କର ଜଳ ନଦୀମାନଙ୍କରେ
ନଦୀରୂପେ ବହିଲେହେଁ ପୃଥକ ଭାବରେ,
ସାଗରରେ ମିଶି ଯଥା ସାଗର ସହିତ
ଏକାକାର ହୋଇଯାନ୍ତି ଆହେ ରଘୁନାଥ ।
ଏ ଜଗତ ବ୍ରହ୍ମସହ ସେହିପରି ଜାଣ
ଅହରହ ମିଳିଯାଏ ହେ ରଘୁନନ୍ଦନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ବିଦ୍ୟାଧର ନିର୍ବାଣ**
**ଓ ଅହଂଭାବ ନାଶ ବର୍ଣ୍ଣନେ**
**ନାମ ଏକାଦଶ ସର୍ଗଃ ।**



## ଦ୍ୱାଦଶ ସର୍ଗଃ
## ବିରାଟ-ଆତ୍ମାବର୍ଣ୍ଣନ

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିବର
ବ୍ରହ୍ମ କିପରି ଧରନ୍ତି ଜୀବର ଆକାର ?
ତାଙ୍କ ପରମାତ୍ମାଭାବ, ବାହ୍ୟ ବ୍ୟବହାର
ଏ ବିଷୟେ ଉପଦେଶ ଦେବା ମୁନିବର ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଅନନ୍ତ ଚିଦାକାଶ ହିଁ ସ୍ୱରୂପ ଯାହାର,
ଅବସ୍ଥା ଭେଦେ ସେ ବ୍ରହ୍ମ ଜୀବ ନାମ ଧରେ
ପଶୁ, ପକ୍ଷୀ, କୀଟ, ପତଙ୍ଗାଦି ସ୍ୱରୂପରେ ।
ସ୍ୱୀୟ ଅନୁଭବ ଶକ୍ତି ବଳେ ସେହୁ ପୁଣ
ପ୍ରକାଶମାନ ହୁଅନ୍ତି ଜାଣ ହେ ଶ୍ରୀରାମ ।
ଯାହା କିଛି ତୁମେ ଦେଖୁଅଛ ହେ ରାଘବ
ବ୍ରହ୍ମ ନିଜ ମଧ୍ୟେ ବୋଧ କରି ସେହି ଭାବ
ସେହି ବସ୍ତୁ ଆକାରରେ ନିଜେ ପ୍ରକାଶିତ
ହୋଇ ଅଛନ୍ତି ଜାଣିବ ହେ କୌଶଲ୍ୟା ସୁତ ।
ସେହି ଜୀବରୂପୀ ବ୍ରହ୍ମ ଯେବେ ଯା ଭାବନ୍ତି
କ୍ଷଣ ମାତ୍ରେ ସେହି ବସ୍ତୁରୂପେ ପ୍ରକାଶନ୍ତି ।
ନିଜ ଅନୁଭବ ଦ୍ୱାରା ଜୀବର ସ୍ୱରୂପ
ନିର୍ଣ୍ଣିତ ହୁଅଇ ତେଣୁ ରଘୁକୁଳ ଦୀପ ।
ବାୟୁ ବିଦ୍ୟମାନ ଥାଇ, ପ୍ରବାହ ବ୍ୟତୀତ
ଜଣାଯାଏ ନାହିଁ ଯଥା ତାହାର ଅସ୍ତିତ୍ୱ
ସେହିପରି ସୁଷୁପ୍ତି ଓ ମୁକ୍ତି ଅବସ୍ଥାରେ
ଅନୁଭବ ଜ୍ଞାନ ନ ଥିବାରୁ ବସ୍ତୁଠାରେ
ଜୀବର ଜୀବଭାବଟି ହୁଅଇ ବିଲୀନ
ତେଣୁ ବ୍ରହ୍ମତ୍ୱ ଲଭିଣ ଥାଏ ଜୀବ ପୁଣ ।
ସେହୁ ପୁଣି ଅହଂଜ୍ଞାନେ ଉଦ୍‌ବୁଦ୍ଧ ହୋଇଣ
ଦେଶ, କାଳ, କ୍ରିୟା, ଦ୍ରବ୍ୟରୂପେ ହେ ଶ୍ରୀରାମ,
ଆବର ଏହାଙ୍କ ଶକ୍ତିରୂପେ ପୁଣି ସେହି
ନିଜକୁ ପ୍ରକାଶ କରିଥାନ୍ତି ରଘୁସାଇଁ ।
ଏ ସବୁ ଆକାରେ ବାସ୍ତବରେ ଜାଣ ରାମ
ପ୍ରକାଶ ପାଇ ନଥିଲେ ମଧ୍ୟ, ସେହି ବ୍ରହ୍ମ
ନିଜଠାରେ ଏ ସବୁଙ୍କୁ କରିଣ ଈକ୍ଷଣ
ସ୍ୱ ସମଷ୍ଟି ଚିତ୍ତଭାବ କରନ୍ତି ଦର୍ଶନ ।
ଏକ ହେଲେ ମଧ୍ୟ ବହୁ ଆକାରେ ପ୍ରକାଶ
ସେ ସମଷ୍ଟି ଚିତ୍ତଭାବ ପାଏ ରଘୁଈଶ ।
ପରେ ଏ ଜୀବ୍ ନିଜକୁ ବିରାଟାତ୍ମା ମଣି
ନିଜକୁ ସମଷ୍ଟି-ମନ, ଜ୍ଞାନ ପରେ ପୁଣି ।
ଇନ୍ଦ୍ରିୟ, ଇନ୍ଦ୍ରିୟଦ୍ୱାର ବୋଲି ସେହି ମନ
ପୁଣି ନିଜକୁ କଳ୍ପନା କରେ ହେ ଶ୍ରୀରାମ,
ଏହିରୂପେ ସେହି ଜୀବ ବିରାଟ ପୁରୁଷ
ଭାବରେ, ବିରାଜମାନ ହୁଏ ରଘୁଈଶ ।
ସ୍ଥୁଳ ସମଷ୍ଟିରୂପକ ଏ ବିରାଟ ଆତ୍ମା
ପରମେଶ୍ୱର ନାମରେ ଖ୍ୟାତ ହେ ମହାତ୍ମା ।
ପଞ୍ଚଭୂତମାୟାକାର ନ ହେଲେହେଁ ସେହି
ପଞ୍ଚଭୂତମୟ ରୂପେ ଅନୁଭୂତ ହୋଇ ।
କ୍ଷଣରୁ ଆରମ୍ଭି କଳ୍ପ ପର୍ଯ୍ୟନ୍ତ ଯେ କାଳ
ତାହାରି ସଂକଳ୍ପ ବଳେ ସୃଷ୍ଟ ରଘୁବାଳ ।
ଯେବେ ଯାହା ଇଚ୍ଛାକରେ ସେହି ଆକାରରେ
ପ୍ରକାଶିତ ହୋଇ ପୁଣି ଲୟଭାବ ଧରେ ।
ମନୋମୟ ଏ ବିରାଟ ପୁରୁଷ ହିଁ ବୀର
ସର୍ବ କାରଣ ସ୍ୱରୂପ, ଈଶ୍ୱର ଶରୀର ।

ତାକୁ ହିଁ ଆତିବାହିକ-ଶରୀର ବୋଲିଣ
ନାମୀତ କରିଅଛନ୍ତି ଜ୍ଞାନୀଜନ ମାନ ।
ଅନନ୍ତ, ଆକାଶରୂପ ସେ ସମଷ୍ଟିମନ
ସବୁ ଜୀବଙ୍କର ପୂର୍ଯ୍ୟଷ୍ଟକ ବୋଲି ଜାଣ ।
ସ୍ଥୁଳ, ସୂକ୍ଷ୍ମ, ଅବ୍ୟକ୍ତଙ୍କ ଭିତରେ ବାହାରେ
ଯା' କିଛି ରହିଛି ତାହା ବ୍ରହ୍ମ ରଘୁବୀରେ ।
ଜ୍ଞାନେନ୍ଦ୍ରିୟ, ପ୍ରାଣ, ମନ, ଅହଙ୍କାର ମାନ
ତାହାର ବିଶେଷ ଅଙ୍ଗ ଜାଣ ହେ ଶ୍ରୀରାମ ।
ଭାବ ଅଭାବ ମୟ ଏ ସମସ୍ତ ଭୂବନ
ତାହାର ପ୍ରତ୍ୟଙ୍ଗ ରୂପେ ଛନ୍ତି ବିଦ୍ୟମାନ,
ଶବ୍ଦ, ଶବ୍ଦଅର୍ଥମାନ କରି କଳପନ
ବେଦ ଚତୁଷ୍ଟୟ କରିଛନ୍ତି ପ୍ରକାଶନ ।
ଯେ ସବୁ ନିୟମ ତହିଁ କଲେକ ସ୍ଥାପନ
ଏବେ ମଧ୍ୟ ଅବ୍ୟାହତ ଅଛନ୍ତି ସେମାନ ।
ଭବିଷ୍ୟରେ ମଧ୍ୟ ସେହି ସବୁ ଯେ ନିୟମ
ଚଳୁ ରହିଥିବ ଏହା ଜାଣ ହେ ଶ୍ରୀରାମ ।
ସେ ବିରାଟ ପୁରୁଷର ଶିର ଊର୍ଦ୍ଧ୍ୱାକାଶ
ଧରିତ୍ରୀ ତା ପାଦତଳ ଜାଣ ରଘୁଈଶ ।
ଅନ୍ତରୀକ୍ଷ ତା ଉଦର, ବ୍ରହ୍ମାଣ୍ଡ ଶରୀର
ଅନ୍ୟାନ୍ୟ ଲୋକ ସକଳ ପାର୍ଶ୍ୱ ଦେଶ ତାର ।
ନଦୀମାନ ଶିରାତାର, ଜଳ ତା ରକତ
ମାଂସପେଶୀ ତାର ଏହି ସକଳ ପର୍ବତ ।
ପିତ୍ତ ତାର ବାଡ଼ବାଗ୍ନି, ସୂର୍ଯ୍ୟ ତା ନୟନ
ବ୍ରହ୍ମ ତାର ଆତ୍ମା ପୁଣି ଚନ୍ଦ୍ରମା ତା ମନ ।
ମନୋମୟ ଅଟେ ଯେଉଁ ଚନ୍ଦ୍ରମା ମଣ୍ଡଳ
ଦେହର, କର୍ମର, ବୀଜ ତାହା ରଘୁବାଳ ।
ମନରୁ ସକଳ ବସ୍ତୁ ହୁଅନ୍ତି ଉଦ୍‌ଭୂତ
ବିରାଟ ପୁରୁଷ ସେହି ମନରୁହିଁ ଜାତ
ପ୍ରଜାପତି ରୂପେ ସେହି ବିରାଟ ଚିନ୍ମାତ୍ମା
ଚନ୍ଦ୍ର ମଣ୍ଡଳରେ ଶୋଭା ପାନ୍ତି ହେ ମହାତ୍ମା ।
ତହିଁ ସେ ଅମୃତକଳା ଆସ୍ୱାଦନ କରି
ବିରାଜମାନ ଅଛନ୍ତି ଆହେ ଚାପଧାରୀ ।
ସେହି ଚନ୍ଦ୍ରମଣ୍ଡଳରୁ ସୁଧାଧାରା ଝରି
ବନସ୍ପତି ଜଗତରେ ପ୍ରାଣ ଦିଏ ଭରି ।
ରୋଗରୂପ-ବିଷ-ତାପ ନିବାରଣ ପାଇଁ
ଅମୃତ-ସମ ଔଷଧି ତହିଁରୁ ଝରଇ ।
ପୁଣି ତାହା ଅନ୍ନରୂପେ ହୋଇ ଉତପନ୍ନ
ଜୀବ-ଜଗତର ସୃଷ୍ଟି କରଇ ବିଧାନ ।
ଜୀବନରୂପରେ ପୁଣି ସେହି ଅନ୍ନ ଜାଣ
ନାନା ଜାତି ଜୀବ ଦେହ କରଇ ସର୍ଜନ ।
ବ୍ରହ୍ମଠାରୁ ସେ ବିରାଟ ପୃଥକ ନୁହନ୍ତି
ସର୍ବଦା, ସର୍ବତ୍ର ଏକ ରୂପେ ବିରାଜନ୍ତି ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉତ୍ତର ଖଣ୍ଡେ ନିର୍ବାଣ ପ୍ରକରଣେ ବିରାଟ-ଆତ୍ମା ବର୍ଣ୍ଣନେ ନାମ ଦ୍ୱାଦଶ ସର୍ଗଃ ।**



## ତ୍ରୟୋଦଶ ସର୍ଗଃ

## ଜ୍ଞାନ ବିଚାର

କହନ୍ତି ବଶିଷ୍ଠ ଶୁଣ ରଘୁକୁଳ ଶ୍ରେଷ୍ଠ
ଯେ' ରୂପ କଳ୍ପନା କରେ ସେ ଜୀବ ବିରାଟ
ବ୍ରହ୍ମାକାଶ ସେ ଆକାର କରଇ ଧାରଣ
ଜଗତ ତାର ସଙ୍କଳ୍ପ ଜାଣ-ରଘୁରାଣ ।
ସୃଷ୍ଟିର ପ୍ରାରମ୍ଭ କାଳେ ବ୍ରହ୍ମ ଏହିପରି
ଗତ, ଅତୀତ ବାସନା ମାନ ଅନୁସରି
ବିରାଟ ଆତ୍ମାରୂପରେ ପାଇଣ ପ୍ରକାଶ
ସମ୍ଭୋଗ କରନ୍ତି ଏ ଜଗତ ରଘୁଈଶ ।
ଯେଣୁ ଏ ବିରାଟ ଆତ୍ମା ସବୁରି କାରଣ
କାରଣର ଅନୁରୂପ କାର୍ଯ୍ୟ ଯେଣୁ ପୁଣ,
ଜଗତ କଳ୍ପନା ପାଇଁ ତେଣୁ ବ୍ୟଷ୍ଟିଜୀବ
ଜଗତ୍ କଳ୍ପନା-ସକ୍ଷମ କି ପାଇଁ ନୋହିବ ?
ସମଷ୍ଟି ଓ ବ୍ୟଷ୍ଟି-ଜୀବ ଉଭୟେ ଶ୍ରୀରାମ
ଜଗତ ରଚନା କ୍ଷେତ୍ରେ ସାଦୃଶ୍ୟ ସମ୍ପନ୍ନ ।
କ୍ଷୁଦ୍ରଜୀବରୁ ଈଶ୍ୱର ଯାଏ ରଘୁବୀର
ଜଗତ ଭ୍ରମ ରହିଛି ସବୁରି ଅନ୍ତର ।
ବିରାଟ ଆତ୍ମାରେ ଏହି ଜଗତ ସଂସାର
ଯେପରି ଭାବେ ରହିଛି ଆହେ ରଘୁବୀର,
ଅତି କ୍ଷୁଦ୍ର ବ୍ୟଷ୍ଟି ଜୀବ ମଧ୍ୟରେ ତାଦୃଶ
ଜଗତ ବିରାଜମାନ କରେ ରଘୁଶିଷ୍ୟ ।
କିନ୍ତୁ ସୁଜ୍ଞାନ ଦୃଷ୍ଟିରେ ଏହି ଯେ ଜଗତ
ସ୍ଥୁଳ ବା ସୂକ୍ଷ୍ମ ଭାବରେ ନୁହେ ଅନୁଭୂତ ।

ଭ୍ରାନ୍ତିବଶେ ଯେଉଁଠାରେ ଯେପରି ପ୍ରକାଶେ
ସେପରି ସେଠାରେ ଅନୁଭୂତ ହୁଅଇ ସେ ।
ଯେଉଁ ମନ-କଳ୍ପନାରୁ ଜଗତ ଉତ୍ପତ୍ତି
ସେ ମନ ଚନ୍ଦ୍ରରୁ ଜାତ ଜାଣ ରଘୁପତି ।
ସେ ଚନ୍ଦ୍ରରୁ ପୁଣି ସେହି ମନର ଜନମ
ବ୍ୟଷ୍ଟି ଜୀବ, ସେ ସମଷ୍ଟି ଜୀବରୁ ଉତ୍ପନ୍ନ ।
ଅବା କେହି କାହାଠାରୁ ଜନମ ନୁହନ୍ତି
ଉଭୟେ ହିଁ ଏକବସ୍ତୁ ବିବେଚିତ ହୁନ୍ତି ।
ଅବିଦ୍ୟାବଳେ ସେ ଚିନ୍ମୟ ବ୍ରହ୍ମ ରାମ
ନିଜକୁ ଜାଣିବା ପାଇଁ ହୋଇଣ ଅକ୍ଷମ,
ପ୍ରାଣ, ଇନ୍ଦ୍ରିୟାଦି ଯୋଗେ ଦୃଶ୍ୟ ଦରଶନ
କରୁଥାଏ ସେହୁ ଜାଣ ହେ ରଘୁନନ୍ଦନ ।
ସେ ଅଜ୍ଞାନ, ଅହଂଭାବ-ଗ୍ରନ୍ଥିର ଛେଦନ
ଜ୍ଞାନୀଙ୍କ ନିକଟେ ତାହା ଧରେ ମୁକ୍ତି ନାମ ।
ଅଜ୍ଞାନଜ ଅହଂଭାବ ତେଣୁ ତେଜି ରାମ
ସେ ଚୈତନ୍ୟ-ଘନରୂପେ ହୁଅ ବିଦ୍ୟମାନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଜ୍ଞାନ ବିଚାର ବର୍ଣ୍ଣନେ**
**ନାମ ତ୍ରୟୋଦଶ ସର୍ଗଃ ।**



## ଚତୁର୍ଦ୍ଦଶ ସର୍ଗଃ

## ଜ୍ଞାନବନ୍ଧୁ

ବଶିଷ୍ଠ ବୋଲନ୍ତି ଏବେ ଶୁଣ ହେ ଶ୍ରୀରାମ
ଜ୍ଞାନବାନ ହେବାପାଇଁ ହୁଅ ଯତ୍ନବାନ ।
ମନେରଖ ଜ୍ଞାନ-ବନ୍ଧୁ ନ ହୋଇବ କେଭେଁ
ବହୁ ଯାତନା ଭୋଗନ୍ତି ଜ୍ଞାନବନ୍ଧୁ ଭବେ ।
ମୋ ମତେ ଅଜ୍ଞାନ ବରଂ ଶ୍ରେୟସ୍କର ରାମ
ଜ୍ଞାନବନ୍ଧୁ ହେବା ଅଣହିତ କର ଜାଣ ।
ଶ୍ରୀରାମ କହନ୍ତି ତେବେ ଆହେ ମୁନିବର
ଜ୍ଞାନବନ୍ଧୁ ବୋଲି ଗଣ୍ୟ କିଏ ଏ ସଂସାର ?
କହନ୍ତି ବଶିଷ୍ଠ ଯେଉଁ ବ୍ୟକ୍ତି ଅନ୍ତରରେ
ନିବିଡ଼ ଆସକ୍ତି ରଖି ସଂସାର ସୁଖରେ ।
ବାହାରେ ବଖାଣୁ ଥାଏ ଶାସ୍ତ୍ରଚର୍ଚ୍ଚା ଜ୍ଞାନ
ନ କରିଣ ଶାସ୍ତ୍ରୋଚିତ କର୍ମ ଅନୁଷ୍ଠାନ ।
ଜ୍ଞାନବନ୍ଧୁ କହିଥାନ୍ତି ତାଙ୍କୁ ଜ୍ଞାନୀଗଣ
ତୁମ ପ୍ରଶ୍ନର ଉତ୍ତର ଏହା ରଘୁରାଣ ।
ଲୋକ ସମାଜରେ ଶାସ୍ତ୍ର ବ୍ୟାଖ୍ୟା ସେ କରନ୍ତି
ଖାଦ୍ୟ, ବସ୍ତ୍ରାଦି ଲାଭରେ ଥାଏ ତାଙ୍କ ମତି ।
ସେ ପ୍ରାପ୍ତକୁ ଶାସ୍ତ୍ରବ୍ୟାଖ୍ୟା ଫଳ ଯେ ମଣନ୍ତି
ନଟପରି ଶାସ୍ତ୍ର ଅଭିନୟ ଆଚରନ୍ତି ।
ଜ୍ଞାନବନ୍ଧୁ ଆଖ୍ୟାଧାରୀ ସେହିମାନେ ଜାଣ
ବିରାଡ଼ି ବୈଷ୍ଣବ ଜ୍ଞାନବନ୍ଧୁ ଯେ ସମାନ ।
ବେଦ ବିହିତ ନିୟମ ମାନି ଯେଉଁ ଜନ
କରନ୍ତି ଅଗ୍ନିହୋତ୍ରାଦି ଅନୁଷ୍ଠାନ ମାନ ।
ଏକବିଧ ଜ୍ଞାନବନ୍ଧୁ ଅଟନ୍ତି ସେମାନ
ପ୍ରଥମ ଜ୍ଞାନବନ୍ଧୁଠୁଁ ଶ୍ରେଷ୍ଠ ସେହି ଜାଣ ।
ଏହିପରି କର୍ମ ଅନୁଷ୍ଠାନ ବଳେ ଜାଣ
ଚିତ୍ତଶୁଦ୍ଧି ହୋଇଥାଏ ହେ ରଘୁନନ୍ଦନ ।
ପରେ ତତ୍ତ୍ୱଜ୍ଞାନ ଅଧିକାରୀ ହୁଏ ଯେଣୁ
ଶ୍ରେଷ୍ଠ ଜ୍ଞାନବନ୍ଧୁ ଆଖ୍ୟା ମିଳେ ତାକୁ ତେଣୁ ।
ଆତ୍ମଜ୍ଞାନ ହିଁ ଯଥାର୍ଥ ଜ୍ଞାନ ରଘୁନାଥ
ତା ବଳେ ଅଖଣ୍ଡ ବ୍ରହ୍ମାନନ୍ଦ ଅନୁଭୂତ ।
ଅନ୍ୟାନ୍ୟ ଜ୍ଞାନକୁ ରାମ ! ଜ୍ଞାନାଭାସ କହି
ଯେଣୁ ତାଙ୍କ ଦ୍ୱାରା ବ୍ରହ୍ମାନନ୍ଦ ଲାଭ ନୋହି ।
ଆତ୍ମଜ୍ଞାନ ପାଇଁ ଯେହୁ ଆକୃଷ୍ଟ ନୋହିଣ
ଅନ୍ୟଜ୍ଞାନରେ ଆଦର ଥାଏ ଦେଖାଇଣ ।
ତଦନୁକୂଳ କର୍ମେ ସେ ହୁଅଇ ପ୍ରବୃତ୍ତ
ନିକୃଷ୍ଟ ଜ୍ଞାନବନ୍ଧୁ ସେ, କହନ୍ତି ପଣ୍ଡିତ ।
ଭେଦଜ୍ଞାନ ଦୂରୀଭୂତ ନୋହିଛି ଯେ ଯାଏ
ବ୍ରହ୍ମସାରୂପ୍ୟ ଲବଧ ନ ହେବ ସେ ଯାଏ ।
ମୁମୁକ୍ଷୁ ବ୍ୟକ୍ତି ସେ ଯାଏ ସନ୍ତୁଷ୍ଟ ନୋହିବ
ତାଙ୍କପରି ଜ୍ଞାନବନ୍ଧୁ ନ ହୁଅ ରାଘବ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଜ୍ଞାନବନ୍ଧୁ, ବର୍ଣ୍ଣନେ**
**ନାମ ଚତୁର୍ଦ୍ଦଶ ସର୍ଗଃ ।**



## ପଞ୍ଚଦଶ ସର୍ଗଃ

## ମଙ୍କି ଉପାଖ୍ୟାନ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁରାଣ
ଆତ୍ମତତ୍ତ୍ୱ ବଳେ ହୃଦେ ଶାନ୍ତିକୁ ଲଭିଣ,

ଶାନ୍ତ ହୋଇପାରି ଅଛି ଯେଉଁ ଭଗବାନ
ଯଥାର୍ଥ ଜ୍ଞାନୀ ତାହାକୁ କହନ୍ତି ସୁଜାଣ ।
ଯାହା ଲାଭ ହେଲେ ଜନ୍ମ, ମରଣ ବନ୍ଧନ
ଛିନ୍ନ ହୋଇଯାଇପାରେ ତା' ବାସ୍ତବ ଜ୍ଞାନ ।
ଏହାଛଡ଼ା ଜାଣ ଅନ୍ୟ ଯେ ସକଳ ଜ୍ଞାନ
ଅନ୍ନ, ବସ୍ତ୍ର ପାଇଁ ଲୋଡ଼ାଥିବା ଶିଳ୍ପ-ଜ୍ଞାନ ।
ଶିଳ୍ପଜ୍ଞାନ ସମ ସେହି ଜ୍ଞାନମାନ ଜାଣ
ବାସ୍ତବ ଜ୍ଞାନ ମଧ୍ୟରେ ନ ହୁଅନ୍ତି ଗଣ୍ୟ
ପୂର୍ବକାଳେ ମଙ୍କି ନାମେ ଥିଲା ଦ୍ୱିଜବର
ବିଶୁଦ୍ଧବ୍ରତ ସେ ଅଟେ ଆହେ ରଘୁବୀର ।
ମୋଠୁଁ ଉପଦେଶ ମାନ ପାଇ ସେ ବ୍ରାହ୍ମଣ
ମୋକ୍ଷଲାଭ ଯେଉଁପରି କରିଥିଲା ଜାଣ
ତାହାସବୁ ଏବେ ମୁହିଁ କରୁଛି ବୟାନ
ମନ, କର୍ଣ୍ଣ ଦେଇ ଶୁଣ ହେ ରଘୁନନ୍ଦନ ।
ପୂର୍ବେ ଏକ ସମୟରେ ଆହେ ରଘୁବୀର
ନିମନ୍ତ୍ରଣ ପାଇ ତୁମ ପିତାମହଙ୍କର
ସପ୍ତର୍ଷି ମଣ୍ଡଳୁ ଆସୁଥିଲି ମୁହିଁ ଯେବେ
ଏକ ମରୁଭୂମି ପାଶେ ପହଞ୍ଚିଇଁ ତେବେ ।
ତହିଁ ଜଣେ ପଥିକର କାତର ବଚନ
ପ୍ରବେଶ କରିଣ ଥିଲା ମୋହର ଶ୍ରବଣ ।
ସେ କାତର ଧ୍ୱନି ପ୍ରତି ଆକୃଷ୍ଟ ହୋଇଲି
ମଧୁର ବଚନେ ତାକୁ ଏମନ୍ତ କହିଲି ।
କଲ୍ୟାଣ ଗୁଣ ସମ୍ପର୍ଣ୍ଣ ଦିଶୁଛ ଭୋ ମିତ୍ର !
କିନ୍ତୁ ତ କିଛି ନ ଜାଣ କିପରି ସେ ପଥ ।
ମୋ ସହ ତୁମ ସାକ୍ଷାତ ମଙ୍ଗଳ ଜନକ
ହେଉ ମୋର ଆଶୀର୍ବାଦ ଘେନ ହେ ପଥିକ ।
ମୋହର ଏହି ବଚନ ଶୁଣି ହେ ଶ୍ରୀରାମ
ଆଶ୍ୱସ୍ତ ହୋଇ ପଥିକ କହଇ ଏସନ ।
"ଆତ୍ମତତ୍ତ୍ୱବିତ୍ ବୋଲି ମଣେ ଆପଣଙ୍କୁ
ଅତୀତ ଭବିଷ୍ୟ ସବୁ ଗୋଚର ତୁମ୍ଭଙ୍କୁ ।
ଆପଣ କିଏ ସେ ତାହା ଦୟାକରି ମୋତେ
କହନ୍ତୁ ମୋହର ମନ ରଞ୍ଜିବା ନିମନ୍ତେ ।
ଚିତ୍ତ ମୋହଗ୍ରସ୍ତ ହେତୁ ଏ ସଂସାର ଦୁଃଖ
ତେଜି ନ ପାରିଣ ମୁହିଁ ହୋଇଛି ବିମୁଖ ।
କୃପା ପରବଶ ହୋଇ ଜ୍ଞାନ ଦାନ କରି
ସକଳ ଦୁଃଖ ମୋହର ଦିଅନ୍ତୁ ନିବାରି ।

"ମୁଁ କହିଲି ଆହେ ଭଦ୍ର ! ମୁଁ ବଶିଷ୍ଠ ମୁନି
ମନିଷୀଙ୍କ ପଥେ ହୋଇଅଛି ଅନୁଗାମୀ ।
ତୁମ ସହ ଆଳାପରୁ ପାରିଛି ମୁଁ ଜାଣି
ଉପଦେଶ ଯୋଗ୍ୟ ତୁମେ ପୁଣି ମୁକ୍ତିକାମୀ" ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ମଙ୍କି ଉପାଖ୍ୟାନ ବର୍ଣ୍ଣନେ ନାମ ପଞ୍ଚଦଶ ସର୍ଗଃ ।**



## ଷୋଳଶ ସର୍ଗଃ
## ମଙ୍କି ବୈରାଗ୍ୟ

କହନ୍ତି ବଶିଷ୍ଠ ମୋର ଏ ବଚନ ଶୁଣି
ପ୍ରଣିପାତ କରି ଦ୍ୱିଜ କହନ୍ତି ଏ ବାଣୀ ।
"ହେ ମହାନ ବହୁ ଦେଶ ଗ୍ରାମ ମୁଁ ବୁଲିଲି
କେଉଁଠି ସାଧୁ ପୁରୁଷ ଭେଟ ନ ପାଇଲି ।
ଆପଣଙ୍କ କୃପାରୁ ମୁଁ ଆଜ ହେ ମହାନ
ଆପଣାଙ୍କୁ ବିଚାରୁଛି ମହା ଭାଗ୍ୟବାନ ।
ଅତିଶୟ କାତର ମୁଁ ସଂସାର ଦୁଃଖରେ
ଶାନ୍ତିପ୍ରଦ ଉପଦେଶ ଦିଅ ମୋତେ ବାରେ ।"
ବଶିଷ୍ଠ କହନ୍ତି ବିପ୍ରବର ତେବେ ଶୁଣ
ସଂସାର ଦୁଃଖର ଯେଉଁ ଚାରୋଟି କାରଣ ।
ଇନ୍ଦ୍ରିୟ ବଶରୁ ବିଷୟର ଉପଭୋଗ
ଅତୀତ ବିଷୟ ଘେନି ଯେ ନାନା ଉଦ୍‌ବେଗ
ବାରମ୍ବାର ସେ ଅତୀତ ଭାବନାର ଫଳେ
ଚିତ୍ତମଧ୍ୟେ ତଦାକାର ବାସନା ଉଚ୍ଛୁଳେ ।
ମୃତ୍ୟୁ କାଳେ ସେହି ଭାବୀ ଦେହର କଳ୍ପନା
ସେହି ବାସନା ହେତୁରୁ ହୁଏ ମହାମନା
ହେଲେହେଁ ଏ ଚାରି ବସ୍ତୁ ମିଥ୍ୟା ମଧ୍ୟେ ଗଣ୍ୟ
ସଂସାର ଦୁଃଖର ମୂଳ କାରଣ ସେମାନ ।
ବିଷୟର ଉପଭୋଗ, ବିଷୟ ଭାବନା
ଏ ଦୁଇ ସର୍ବ ଦୋଷର ଖଣି ମହାମନା ।
ଯାଙ୍କ ମଧ୍ୟେ ପ୍ରଥମଟି ବଡ଼ ଦୋଷାକର
ତା ପ୍ରତି ବିଶେଷ ଧ୍ୟାନ ଲୋଡ଼ା ବିପ୍ରବର ।
ବିଷୟ-ଜ୍ଞାନ ମଧ୍ୟରେ ସଙ୍କଟ ସକଳ
ଅଦୃଶ୍ୟଭାବେ ନିହିତ ଥାଏ ଦ୍ୱିଜବାଳ ।

ବାସନାଯୁକ୍ତ ହୋଇଣ ଭ୍ରମେ ଯେ ସଂସାରେ
ଅତୀତ ଘଟନାମାନ ପ୍ରତ୍ୟକ୍ଷ ଭାବରେ
ସତେ କି ତା ଆଗେ ଆସି କରୁଥାନ୍ତି ନୃତ୍ୟ
ନଗଉଥାନ୍ତି ତାହାକୁ କରି ଅସ୍ତବ୍ୟସ୍ତ ।
ମାତ୍ର ଯେ ଜନ ବିବେକ ବଳେ ବଳୀୟାନ
କ୍ରମେ କ୍ଷୟପ୍ରାପ୍ତ ହୁଏ ତା ବାସନା ମାନ
ସଂସାର ଭ୍ରାନ୍ତି ତାହାର ହୁଏ ଦୂରୀଭୂତ
ତେଣୁ ସେ ହୁଏ ମହାନ, ଧନ୍ୟ ତା ମହତ୍ୱ ।
ବସନ୍ତ କାଳେ ଯେସନ ମୃତ୍ତିକାର ରସ
ବୃକ୍ଷଲତା ରୂପଧରି ଅରଣ୍ୟେ ପ୍ରକାଶ,
ବାସନା ରସ ତେସନ ଜୀବର ଅନ୍ତରେ
ପ୍ରକାଶ ପାଉଣ ଥାଏ ସଂସାର ରୂପରେ ।
ଏକମାତ୍ର ବ୍ରହ୍ମ-ଚଇତନ୍ୟ ବିନୁ ଆନ
କିଛି ନାହିଁ ଜାଣ ଏହି ଜଗତ ମଧ୍ୟେଣ ।
ବିଷୟ ସଂବେଦନରୁ ସେ ଚିନ୍ମୟ ବ୍ରହ୍ମ
ସମ୍ପୂର୍ଣ୍ଣରୂପେ ପୃଥକ ହେ ଦ୍ୱିଜ ନନ୍ଦନ,
ଏହିପରି ଯେ ଧାରଣା, ତାହାର ଯେ ନାମ
'ଅବିଦ୍ୟା-ସମ୍ଭୂତ-ଭ୍ରମ' ଜାଣ ହେ ବ୍ରାହ୍ମଣ ।
ସେହି ଭ୍ରମହିଁ ସଂସାର ଆକାରେ ପ୍ରକାଶ
ଏ ଜଗତ ତେଣୁ ଅଟେ ଅବିଦ୍ୟା ବିଳାସ ।
ଯେ ହେତୁ ଏହି ସଂସାର ଅବିଦ୍ୟାରୁ ଜନ୍ମ
ଜ୍ଞାନର ଉଦୟେ ହୁଏ ତେଣୁ ତା ମରଣ ।
ନଦୀଜଳ ସମୁଦ୍ରରେ ହୁଅନ୍ତେ ପତିତ
ସମୁଦ୍ର ଜଳ ସହିତ ହୁଏ ଏକୀଭୂତ
ଜ୍ଞାନବଳେ ତଥା ଦୃଶ୍ୟ ହୁଅନ୍ତେ ବିଲୀନ
ଜ୍ଞାନମୟ ଆତ୍ମାରୂପେ ସର୍ବେ ଦୃଶ୍ୟମାନ ।
କୌଣସି ପଦାର୍ଥ ତେବେ ଆତ୍ମାରୁ ପୃଥକ-
ବୋଲି ଦୃଶ୍ୟ ନ ହୁଅଇ ଜାଣହେ ପଥିକ ।
ବୋଧ ପରିଜ୍ଞାତ ସବୁ ପଦାର୍ଥମାନଙ୍କୁ
ବୋଧସ୍ୱରୂପ ମଣନ୍ତି ସୁଧି ସେମାନଙ୍କୁ ।
ଆଲୋକର ବିପରୀତ ଅନ୍ଧକାର ପରି
ବସ୍ତୁମାନ ଯେବେ ହୋଇଥାନ୍ତେ ଜଡ଼ସରି,
ବୋଧ ବିପରୀତ ଅଟେ ଯେ ଜଡ଼ ପଦାର୍ଥ
ଜ୍ଞାନମୟ ଆତ୍ମାକୁ ସେ ହୁଅନ୍ତା କି ଜ୍ଞାତ ?
ଜଡ଼ ବୋଲି ଯାକୁ ତେବେଁ କରୁଛ ଧାରଣା
ଜଡ଼ ନୁହେଁ ତାହା, ଖାଲି ଭ୍ରମ ଖେଳସିନା ।

ବାସ୍ତବରେ ତାହା ସେହି ବୋଧମୟ ଆତ୍ମା
ଦ୍ରଷ୍ଟା ଦୃଶ୍ୟ, ଦରଶନ ପ୍ରତ୍ୟେକେ ବୋଧାତ୍ମା ।
ସେହି ବୋଧମୟ ଆତ୍ମା ନିଜକୁ ଗୋସାଇଁ
ଏ ତିନି ଭାବେ ବିଭକ୍ତ କରି ବିରାଜଇ ।
ଜଳର ସହିତ ଯଥା ଜଳ ଏକୀଭୂତ
ସଜାତୀୟ ବସ୍ତୁ ସହ ସ୍ୱଜାତୀ ତେମନ୍ତ
ସେହିପରି ଏକୀଭୂତ ହୋଇଥାଏ ଜାଣ
ଆତ୍ମା, ଜଗତ ଉଭୟେ ଅଟନ୍ତି ଅଭିନ୍ନ ।
ତୁମ ଜ୍ଞାନଗମ୍ୟ ଏହି ଜଗତ ସହିତ
ବୋଧସ୍ୱରୂପ ଆତ୍ମାର ନ ଥାଇ ତଫାତ ।
ନ ଥାନ୍ତା ଯଦି ବସ୍ତୁର ବୋଧ ସ୍ୱରୂପତା
ଶଶଶୃଙ୍ଗ ପରି ତାହା ଅଳୀକ ହୁଅନ୍ତା ।
ବୋଧରୂପ ହୋଇଲେହେଁ ଦୃଶ୍ୟ ବସ୍ତୁମାନ
ବୋଧରୂପୀ ଆତ୍ମାଠାରୁ ଜଣାଯାନ୍ତି ଭିନ୍ନ ।
ପ୍ରକୃଷ୍ଟ ଜ୍ଞାନୋଦୟେ ଏ ଭ୍ରାନ୍ତିମୟ ଜ୍ଞାନ
ଦୂରୀଭୂତ ହୋଇଯାନ୍ତେ ତେବେ ହେ ବ୍ରାହ୍ମଣ
ଆତ୍ମାର ଏକତ୍ୱ ହୋଇଥାଏ ଅନୁଭୂତ
ଚିନ୍ମୟ ଆତ୍ମାସ୍ୱରୂପ, ଦିଶେ ଏ ସମସ୍ତ ।
ଯେଣୁ ଏ ସକଳ ବସ୍ତୁ ଚିନ୍ମୟ ବ୍ରହ୍ମ
ତୁମେ, ଆମେ, ଏ ସମସ୍ତ ବ୍ରହ୍ମ ସନାତନ ।
ଅହଂଭାବୀୟ ପୃଥକ ସତ୍ତାବୋଧ ତୁମ
ବ୍ରହ୍ମଙ୍କଠାରୁ ତୁମକୁ କରିଅଛି ଭିନ୍ନ ।
ସେହି ଅହଂଭାବ ଭବ-ବନ୍ଧନ କାରଣ
ଅହଂଭାବ ତ୍ୟାଗ କଲେ ମୁକ୍ତ ହେବ ଜାଣ ।
ମୁହିଁ, ମୋହର ଏହି ଯେ ଭ୍ରମଜ୍ଞାନ ମାନ
ସଂସାର ବନ୍ଧନ-ହେତୁ ଜାଣ ହେ ବ୍ରାହ୍ମଣ ।
ସବୁ ଯେଣୁ ବ୍ରହ୍ମ, ତେଣୁ ମୁହିଁ ବା ମୋହର
ଏ ସବୁ ଭାବନା ରହି ପାରେ କି ସଂସାର ?
ଯଥାର୍ଥ ଜ୍ଞାନ ହିଁ ମୁକ୍ତି କରଇ ପ୍ରଦାନ
ଅଯଥାର୍ଥ ଜ୍ଞାନ ହୁଏ ବନ୍ଧନ କାରଣ ।
ତରଙ୍ଗ ସକଳ ଜଳ ମାତ୍ର ଯେଉଁ ପରି
ବ୍ରହ୍ମ ଚୈତନ୍ୟ ମାତର ଜଗତ ସେପରି ।
ସରବ ବସ୍ତୁ, ସକଳ ଜୀବର ସ୍ୱରୂପ
ସେହି ବ୍ରହ୍ମ ଚଇତନ୍ୟ ଜାଣ ବିପ୍ରଭୂପ !
ବ୍ରହ୍ମବୋଧ ପଥେ ଆସେ ଯେଉଁ ବାଧାମାନ
ତବ ମନର କଳ୍ପନା ସେମାନେ ବ୍ରାହ୍ମଣ ।

ମନ ବିନାଶରେ ସେ ସକଳ ବାଧାମାନ
ଦୂରୀଭୂତ ହୋଇଯିବେ ଦ୍ୱିଜବର ଜାଣ ।
ଆଶଙ୍କା ନ କର ତୁମେ କେବେହେଁ ବ୍ରାହ୍ମଣ
ମନ ବିନାଶେ ଘଟିବ ଇନ୍ଦ୍ରିୟ ମରଣ ।
ମନ ବିନାଶେ ପ୍ରକାଶ ଯେଉଁ ଆତ୍ମଜ୍ଞାନ
ନାମ, ରୂପ ଛଡ଼ା ତହିଁ ସବୁ ଅଛି ଜାଣ ।
ସେ ଆତ୍ମବୋଧେ ସଂସ୍ଥିତି ଅଭ୍ୟାସ ତ ନାହିଁ
ସ୍ୱପ୍ନପରି ତେଣୁ ତାହା ମଣୁଛ ଗୋସାଇଁ ।
ଜାଣିରଖ ଏହା ଏବେ ଆହେ ବିପ୍ରବର
ସେହି ଆତ୍ମବୋଧ ଅଟେ ସାର ଏ ସବୁର ।
ତେଣୁ ମନ, ଅହଙ୍କାର, ମମତ୍ୱ ତେଜିଣ
ଶାନ୍ତ ଭାବେ ଅବସ୍ଥାନ କର ଦ୍ୱିଜରାଣ ।
କଳପନାମୟ ମନ ପୁଣି ଅହଙ୍କାର
ଏମାନଙ୍କ ଅସ୍ତିତ୍ୱରୁ ଜଗତ ସଂଚର ।
ଏହି ଦୁଇଟିର ଯେବେ ବିଲୋପ ଘଟଇ
ଶାନ୍ତିପୂର୍ଣ୍ଣ ବ୍ରହ୍ମସ୍ଥିତି ଜୀବ ପାଇ ଯାଇ ।
ମୋର ଉପଦେଶେ ବିପ୍ର ପ୍ରବୃଦ୍ଧ ହୋଇଣ
ସାପ କାତି ତ୍ୟାଗ କରେ ଯେବଣ ରୂପେଣ
ସକଳ ବିଷୟ ପରିତ୍ୟାଗ କରି ବିପ୍ର
ବାସନାଶୂନ୍ୟ ହୃଦୟେ ଆଚରିଣ ତପ,
ଶତବର୍ଷ ପରିଯନ୍ତ କର୍ତ୍ତବ୍ୟ କର୍ମରେ
ଅନୁଷ୍ଠାନ ଆଚରିଲେ ନିଷ୍ଠା ସହକାରେ ।
ପରେ ଏକ ଜନଶୂନ୍ୟ ପର୍ବତରେ ଯାଇଁ
ସମାଧି ମଗନ ଅଛି ଆଜଯାଏ ତହିଁ ।
କଷ୍ଟେ ମଷ୍ଟେ କେହି ତାଙ୍କୁ ପ୍ରବୁଦ୍ଧ କରନ୍ତେ
କ୍ଷଣକାଳ ପ୍ରବୁଦ୍ଧ ସେ ହୁଏ ଅକସ୍ମାତେ
ପୁନଶ୍ଚ ପାଷାଣ ପରି ସମାଧି ଯୋଗରେ
ଅବସ୍ଥାନ କରି ରହେ ବିପ୍ର ନିଶ୍ଚିନ୍ତରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ମଙ୍କି ବୈରାଗ୍ୟ ବର୍ଣ୍ଣନେ ନାମ ଷୋଡ଼ଶ ସର୍ଗଃ ।**



## ସପ୍ତଦଶ ସର୍ଗଃ

## ବ୍ରହ୍ମଙ୍କ ସତ୍ୟତା ପ୍ରତିପ୍ରଦାନ

କହନ୍ତି ବଶିଷ୍ଠ ରାମ ମନସ୍ପନ୍ଦନରେ
ଜଡ଼ ପଦାର୍ଥ ଉତ୍ପନ୍ନ ହୁଏ ନିରନ୍ତରେ ।
ସ୍ପନ୍ଦନଶୂନ୍ୟ ଯେ କାଳେ ହୋଇଯାଏ ମନ
ସେ ଜଡ଼ ପଦାର୍ଥ ସବୁ ଆତ୍ମାରେ ବିଲୀନ ।
ଆଦି ଅନ୍ତହୀନ ଏହି ଆକାଶ ଶ୍ରୀରାମ
ଏକ ପରମାତ୍ମା ଦ୍ୱାରା ଯେଣୁ ପରିପୂର୍ଣ୍ଣ
ତେଣୁ ଏ ଭ୍ରମଶରୀର, ମନର ବିନାଶେ
ଆଶଙ୍କା କାରଣ କାହିଁ ହେ ରଘୁ ବିଳାସେ ?
ଦେହ ମନ ଉଭୟରେ ଅହଂଭାବ ବୁଦ୍ଧି
ତେଣୁ କେଭେଁ ନ ରଖିବ ଆହେ ରଘୁନିଧି ।
ଯେ କାରଣୁ ଏହିରୂପ ଅହଂବୁଦ୍ଧି ବଳେ
ପୁନଃ ପୁନଃ ଜନ୍ମ ମୃତ୍ୟୁ ଆସେ ସଦାକାଳେ ।
ତେଣୁ ସେ ଅସୀମ ସୁଖ ଐଶ୍ୱର୍ଯ୍ୟର ପାଇଁ
ପରମପଦରେ ଚିତ୍ତ ରଖ ରଘୁସାଇଁ ।
ଦ୍ରଷ୍ଟା, ଦୃଶ୍ୟ, ଦରଶନ ଇତ୍ୟାଦି ଏମାନ
ଚିତ୍ ସ୍ୱରୂପ ବ୍ରହ୍ମର ବିଭୂତି ହିଁ ଜାଣ ।
ଲୋକମତରେ ଯା' କିଛି ଜଡ଼ ପଦାରଥ
ସେ ସମସ୍ତ ବ୍ରହ୍ମଠାରୁ ନୁହନ୍ତି ସ୍ୱତନ୍ତ୍ର ।
ପରମ ଶାନ୍ତି-ଆଗରେ ସେ ଚିନ୍ମୟ ଆତ୍ମା
ସଦା ସମଭାବାପନ୍ନ ଜାଣ ହେ ମହାତ୍ମା ।
କେବେହେଲେ ରାମ ସେହୁ ନ ହୁଅନ୍ତି କ୍ଷୁବ୍‌ଧ
ନିଶ୍ଚଳ ଆତ୍ମା ସର୍ବଦା ରହଇ ଅକ୍ଷୁବ୍‌ଧ ।
ନଉକା ଗମନ କାଳେ ନୌକାରୋହୀ ବ୍ୟକ୍ତି
ତଟସ୍ଥ ବୃକ୍ଷ ଆଦିଙ୍କୁ ସଚଳ ଦେଖନ୍ତି ।
ଚିତ୍ତଭ୍ରମ ହେତୁ ତଥା ନିଶ୍ଚଳ ଆତ୍ମାରେ
ଦେହାଦି ସଚଳ ଭାବ ଜାଗେ ତା ମଧ୍ୟରେ ।
ବସ୍ତୁତଃ ଆତ୍ମା ବ୍ୟତୀତ, ଏ ଜଗତ, ଦେହ
କାହାରିତ ସ୍ଥିତି ନାହିଁ ଜାଣ ରଘୁରାୟ ।
ଏପରିକି ଜୀବଗଣ ଯେଉଁ ଭ୍ରାନ୍ତି ବଳେ
ପରିଭ୍ରମଣ କରନ୍ତି ସଦା ଏ ସଂସାରେ,
ସେହି ଭ୍ରାନ୍ତି ମଧ୍ୟ କେବେ ହେଲେ ହେ ଶ୍ରୀରାମ
ଆତ୍ମାଠାରୁ ଅତିରିକ୍ତ ନୁହେଁ ଏହା ଜାଣ ।
ବ୍ରହ୍ମର ସତ୍ୟତା କାହିଁ ? ଏ ଜଗତ ସତ୍ୟ
ତୁମର ଏ ପୂର୍ବ ଭ୍ରମ ଏବେ ଦୂରୀଭୂତ ।
ତୁମ ସଂସାର ବନ୍ଧନ ପାଇଁ ତେଣୁ ରାମ
କୌଣସି କାରଣ ଏବେ ନ ରହିଲା ଜାଣ ।
ଚିତ୍ତର ଆକୃତି ଅଟେ ଏହି ଯେ ଜଗତ
ବିଚ୍ଚର ବଳେ ନରହେ ତାହାର ଅସ୍ତିତ୍ୱ ।

ଏବେ ତୁମେ ଅହଙ୍କାର-ଶୂନ୍ୟ ହୋଇ ବୀର
ସମ୍ପଦାପଦ, ଉନ୍ନତି ଅବନତି ଖେଳ,
ହରଷ, ବିଷାଦ ମାନ ତେଜି ସର୍ବକାଳେ
ସମଭାବେ ଅବସ୍ଥାନ କର ରଘୁବୀରେ ।
ମୋର ଉପଦେଶ ଭୂଲି, ଅହଙ୍କାରେ ମଗ୍ନ
କେବେ ହେଲେ ନ ହୋଇବ ହେ ରଘୁନନ୍ଦନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବ୍ରହ୍ମଙ୍କ ସତ୍ୟତା ପ୍ରତିପାଦନ ବର୍ଣ୍ଣନେ ନାମ ସପ୍ତଦଶ ସର୍ଗଃ ।**



## ଅଷ୍ଟାଦଶ ସର୍ଗଃ

## ବୀଜାଙ୍କୁର୍ ତତ୍ତ୍ୱ

ଅନୁନୟ କରି ରାମ ବୋଲନ୍ତି ହେ ଦେବ
ଭାଗ୍ୟ ସହିତ ସଂପୃକ୍ତ ବୀଜାଙ୍କୁର ଭାବ,
ପୁରୁଷ ଆବର ତାର କର୍ମ ସମ୍ବନ୍ଧରେ
ଯଥାର୍ଥ ତତ୍ତ୍ୱ ବୁଝାଇ କୁହ ପୁଣି ଥରେ ।
ବଶିଷ୍ଠ ବୋଲନ୍ତି ତେବେ ଶୁଣ ହେ ଶ୍ରୀରାମ
ପୁରୁଷ, ପୁରୁଷ ଭାଗ୍ୟ, ପୁରୁଷ କରମ,
ଏ ବିଷୟେ ଯାହା କିଛି ହୋଇଅଛି ଜ୍ଞାତ
ସେ ସର୍ବେ ଚିନ୍ମୟ ଆତ୍ମା ସ୍ପନ୍ଦନରୁ ଜାତ ।
ଚେତନା ସ୍ପନ୍ଦନ ବିନା, ପୁରୁଷ, ତା କର୍ମ
କିଛି ହେଲେ ରାମ ନୋହିପାରେ ଉତପନ୍ନ ।
ଚିତ୍ ସ୍ପନ୍ଦନରୁ ଜାଣ ଜଗତ ଉଦ୍ଭବ
ବାସନା ତାର କାରଣ, ଜାଣ ହେ ରାଘବ ।
ବାସନା ବିହୀନ ଯେବେ ହୋଇପାରେ ଜନ
ସଂସାର ନିବୃତ୍ତି ତାର ଆସି ଯାଏ ଜାଣ ।
ଏକଇ ବସ୍ତୁ ଅଟନ୍ତି ଯଥା ଶୈତ୍ୟ, ହିମ
ତଥା କର୍ମ ହିଁ ପୁରୁଷ, ପୁରୁଷ ହିଁ କର୍ମ ।
ଭାଗ୍ୟ, କରମ, ପୁରୁଷ ଏ ମାନ ସମସ୍ତ
ଚିତ୍ ସ୍ପନ୍ଦନ-ରସର ପରିଣତି ମାତ୍ର ।
ଏହି ବ୍ରହ୍ମ ଚଇତନ୍ୟ ହୋଇଣ ସ୍ପନ୍ଦିତ
ଜଗତର ବୀଜ ନାମେ ହୁଅଇ କଥିତ ।
ଏହି ବୀଜ ମଧ୍ୟୁ ଜାଣ ଜଗତ ଅଙ୍କୁର
ସେତେବେଳେ ଅଙ୍କୁରିତ ହୁଏ ରଘୁବୀର ।
ନିବୃତ୍ତ ହେଲେ ସ୍ପନ୍ଦନ, ବୀଜ ବା ଅଙ୍କୁର
କେହି ହେଲେ ରହି ନ ପାରନ୍ତି ରଘୁବୀର ।
ଚିତ୍ସ୍ପନ୍ଦନ ଯେପରି ଜଗତର ବୀଜ
ଶରୀରାଦି ଅଙ୍କୁରର ବୀଜ ସେହୁ ହେଜ ।
ଅଗ୍ନି ଓ ଅଗ୍ନିର ତାପ ଅଭେଦ ଯେମନ୍ତ
ବୀଜ ଓ ଅଙ୍କୁର ମଧ୍ୟେ ସମ୍ପର୍କ ତେମନ୍ତ ।
ବୃକ୍ଷ, ଲତା ମାନଙ୍କର ମଧ୍ୟ ଗତ ରସ
ଫଳ, ପୁଷ୍ପାକାରେ ଯେହ୍ନେ ଲଭଇ ପ୍ରକାଶ,
ପ୍ରାଣିଗଣ ଶୁକ୍ର ମଧ୍ୟଗତ ସ୍ଥିତ ରସ
ଜୀବ ସ୍ୱରୂପ ଧରିଣ ସର୍ବତ୍ର ପ୍ରକାଶ ।
ସମଭାବେ ସବୁଠାରେ ବିଦ୍ୟମାନ ଚିତ
ଉନ୍ମୁଖ ନୋହିବ ଯେବେ ଆହେ ରଘୁନାଥ,
ଅନ୍ୟ କେହି ଏ ସଂସାର ପ୍ରାଣୀ ସମନ୍ୱିତ
ଜଗତ ନିର୍ମାଣେ ହୋଇ ପାରେକି ସମର୍ଥ ?
ଜ୍ଞାନ ସ୍ୱରୂପ ବ୍ରହ୍ମଙ୍କ ସ୍ପନ୍ଦନ ହିଁ ରାମ
ସର୍ବାଖିଳ ଜଗତର ଆଦି ବୀଜ ଜାଣ ।
ତେଣୁକରି ବୀଜାଙ୍କୁର, ପୁରୁଷ, ତା କର୍ମ
ଆବର ପୁରୁଷ ଭାଗ୍ୟ, ଏ ସକଳ ଜାଣ
ଅଟନ୍ତି ଏକଇ ବସ୍ତୁ, ଏମାନ ଶ୍ରୀରାମ
ଲେଶ ମାତ୍ର ଭେଦ ତହିଁ ନ ଥାଇଟି ଜାଣ ।
ବ୍ରହ୍ମ ଚୈତନ୍ୟର ମଧ୍ୟେ ଯେ ବାସନା-ରସ
ଶରୀର-ଅଙ୍କୁର ତହୁଁ ଜାତ ରଘୁଇଶ ।
ତେଣୁ ତାକୁ ଅସଙ୍ଗତା-ରୂପକ ଅଗ୍ନିରେ
ଦଗ୍ଧ କରିବାକୁ ହେବ ଜାଣ ରଘୁବୀରେ ।
ଶୁଭ, ଅଶୁଭ କର୍ମରେ ଯେଉଁ ଅନାସକ୍ତି
"ଅସଙ୍ଗତା" ତାର ନାମ ଜାଣ ରଘୁପତି ।
ବୀଜ, ଅଙ୍କୁର, ପୁରୁଷ, କରମ ଇତ୍ୟାଦି
ବସ୍ତୁତଃ କିଛି ନୁହନ୍ତି ଆହେ ରଘୁନିଧି,
ଏକମାତ୍ର ବ୍ରହ୍ମ ଏହି ସମସ୍ତ ଆକାରେ
ନଟପରି ଅଭିନୟ କରେ ସଦାକାଳେ ।
ତେଣୁ ତୁମେ ଏ ସମସ୍ତ ଚିନ୍ତା ତେଜି ରାମ
ବ୍ରହ୍ମସ୍ୱରୂପେ ବିହାର କର ଅନୁକ୍ଷଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବୀଜାଙ୍କୁର ତତ୍ତ୍ୱ ବର୍ଣ୍ଣନେ ନାମ ଅଷ୍ଟାଦଶ ସର୍ଗଃ ।**



## ଊନବିଂଶ ସର୍ଗଃ
## ଭାବନା ପ୍ରତିପାଦନ

କହନ୍ତି ବଶିଷ୍ଠ ରାମ ବୀତରାଗ ହୁଅ
ବାସନାହୀନ ହୋଇଣ ଜୀବନ କଟାଅ ।
ଅନ୍ତର୍ଦୃଷ୍ଟିର ଆଶ୍ରୟେ ସର୍ବ କର୍ମମାନ
ଚିତ୍ ପ୍ରକାଶ ରୂପ ମଣି କର ଦରଶନ ।
ହେ ସାଧୋ ! ଯଦ୍ୟପି ତୁମେ ଏପରି କରିବ
ଶରୀରେ ବଜ୍ର ପଡ଼ନ୍ତେ, ବ୍ୟର୍ଥ ହୋଇଯିବ ।
ସଙ୍କଳ୍ପ ଶୂନ୍ୟ ହୋଇଣ ଯେବଣ ପୁରୁଷ
ଗଗନୋପମ ଆତ୍ମାରେ ମଜ୍ଜେ ରଘୁଈଶ,
ତାହାଙ୍କୁ କହନ୍ତି ଆତ୍ମାରାମ ମହେଶ୍ୱର
ଅସ୍ତ୍ରାଘାତେ ଛିନ୍ନ ନୋହି ଶରୀର ତାଙ୍କର ।
ଅଗ୍ନି ତାହାକୁ ଦଗଧ କରି ନ ପାରଇ
ଜଳ, ବାୟୁ ଦ୍ୱାରା ଆର୍ଦ୍ର ଅବା ଶୁଷ୍କ ନୋହି ।
ତେଣୁ ଅଜର, ଅମର ଆତ୍ମାକୁ ତୁମର
ସ୍ତମ୍ଭସମ ଦୃଢ଼ ଭାବେ ଆଲିଙ୍ଗନ କର ।
ଅନ୍ତରେ ଯେ ଜନ ଦ୍ୱୈତଜ୍ଞାନ ଶୂନ୍ୟ ହୋଇ
ଯଥାପ୍ରାପ୍ତ ଲୋକାଚାର କର୍ମ ଆଚରଇ
ଆଉ କୌଣସି ବାସନା ଚିତ୍ତରେ ତାଙ୍କର
ଜନମି ନ ପାରେ ଜାଣ ଆହେ ରଘୁବୀର ।
ବହୁତ୍ୱ ବୋଲିଣ କିଛି ଏ ଜଗତେ ନାହିଁ
ଆବର ଏକତ୍ୱ ବୋଲି କିଛି ନ ଦିଶଇ ।
ଏହିପରି ଜ୍ଞାନେ ତୁମେ ହୋଇ ସମାସୀନ
ନିର୍ମଳ ଅନ୍ତର ଧରି ରୁହ ରଘୁରାଣ ।
ପୁଣି କହନ୍ତି ବଶିଷ୍ଠ ଶୁଣ ହେ ଶ୍ରୀରାମ
ଅହଙ୍କାର ହିଁ ଅବିଦ୍ୟା ଏବେ ତାକୁ ଜାଣ ।
ମୁକ୍ତିର ପ୍ରତିବନ୍ଧକ ଅଟେ ସେ ଅବିଦ୍ୟା
ମୁକତି ପଥରେ ସଦା ଦେଉଥାଏ ବାଧା ।
ଅହଂଜ୍ଞାନ ଆଶ୍ରୟରେ ଥାଇ ଯେଉଁ ଜନ
ମୁକତି ଲଭିବା ପାଇଁ ହୁଏ ଯତ୍ନବାନ ।
ତାହାର ସେହି ଚେଷ୍ଟାକୁ ଉନ୍ନତ ବ୍ୟକ୍ତିର
ଚେଷ୍ଟା ବୋଲି କୁହାଯାଇ ଥାଏ ରଘୁବୀର ।
ଯେ ତତ୍ତ୍ୱଜ୍ଞ ପୁରୁଷ, ତା' ଅହଂଭାବ ନାହିଁ
ମମତ୍ୱ ବୋଧ ଆବର କିଛି ଯେ ନ ଥାଇ ।
ଏ ଦ୍ୱିବିଧ ମଳ ତ୍ୟାଗ କରି ସେହିମାନେ
ନିର୍ବାଣ ପଦେ ଆରୂଢ଼ ଥାନ୍ତି ତତ୍ତ୍ୱ ଜ୍ଞାନେ ।
ସଂସାରର ଘାତ ପ୍ରତିଘାତ ସହ୍ୟ କରି
ବାହାରକୁ କ୍ଷୁବ୍ଧ ଭାବ ପରକାଶ କରି,
ଅନ୍ତରେ ଅକ୍ଷୁବ୍ଧ ହେତୁ ସର୍ବଦା ପ୍ରସନ୍ନ
ଦିନ କଟାଇ ଦିଅନ୍ତି ଯେଉଁ ସୁଧିଜନ,
ତାହାଙ୍କୁ ମୁକ୍ତ ପୁରୁଷ ବୋଲନ୍ତି ପଣ୍ଡିତେ
ନୁହେଁ କି ନିରାଟ ସତ୍ୟ ଏହା ରଘୁନାଥେ ?
ମେଘମାଳା ନାନାରୂପ ଧରେ ଆକାଶରେ
ହସ୍ତୀ, ଅଶ୍ୱ ଆଦିକରି ନାନାଦି ରୂପରେ ।
କିନ୍ତୁ ତାହା ମେଘବିନା ଅନ୍ୟ ନୁହେଁ କିଛି
ସେପରି ଏକ ବ୍ରହ୍ମରେ ନାନା ଦୃଶ୍ୟ ଅଛି ।
ତେବେ ଆହେ ସମାଗତ ସଭାସଦ ଗଣ
ହୃଦୟଙ୍ଗମ କରିଛ ଯେବେ ମୋ ବଚନ ।
ତେବେ ଆଉ ତୁମ୍ଭେମାନେ ସଂସାର ଦୁଃଖରେ
ବିଷାଦଗ୍ରସ୍ତ ନୋହିବ, ନିଶ୍ଚିତ ଭାବରେ ।
ଜଗତକୁ ଭ୍ରାନ୍ତିମୟ ବୋଲି ଭାବି ମନ
ବ୍ରହ୍ମ ଏକ ମାତ୍ର ସତ୍ୟ ବସ୍ତୁ କରି ଜ୍ଞାନ ।
ପରମ ଉତ୍କର୍ଷ ପ୍ରାପ୍ତ ହୁଅ ସଭାଜନ
ମୋର ଉପଦେଶ ବାଣୀ ଘେନା କରମନ ।
ଜଗତ ଉତ୍ପତ୍ତି, ସ୍ଥିତି ଆବର ବିଲୟ
ଯେପରି ତହିଁରୁ ସୁଖ ଦୁଃଖର ଉଦୟ,
ସେ ବିଷୟମାନ ସବୁ ମନରେ ବିଚାରି
ସମ୍ପୂର୍ଣ୍ଣ ମିଥ୍ୟା ବୋଲିଣ ତାଙ୍କୁ ଜ୍ଞାନକରି,
ଆପଣା ଶାନ୍ତ ଆତ୍ମାରେ ରହ ବିଦ୍ୟମାନ
ତେବେ ମୁକ୍ତିଦ୍ୱାର ଖୋଲା ତୁମ ପାଇଁ ଜାଣ ।
ଶାନ୍ତ ହୋଇଅଛି ଜାଣ ଯେଉଁ ଜନ ଚିତ୍ତ
ଅନ୍ୟ କିଛି ନ ଜାଣେ ସେ ଏ ଆତ୍ମା ବ୍ୟତୀତ ।
ଜୀବନ୍ମୁକ୍ତ କରନ୍ତି ଯେ ଜଗତ୍ ଦରଶନ
ଜଡ଼ତ୍ୱର ନାହିଁ ତହିଁ ଲେଶମାତ୍ର ସ୍ଥାନ ।
ତାଙ୍କ ଅହଂଭାବ ଆଉ ଜଗତ ଦର୍ଶନ
ଉଭୟ ହିଁ ଜ୍ଞାନମୟ ପରଂପଦ ଜାଣ ।
ମୁହିଁ ତଥା ଅନ୍ୟସବୁ ବ୍ରହ୍ମରୁ ଅଭିନ୍ନ
ଏହା ମନେ ରଖି ଲଭ ଅଭୟ ଶ୍ରୀରାମ ।
ନ ଜାଣିବା ପଣେ ଅଜ୍ଞ ଅମୃତକୁ ଜାଣ
ଅନାଦର କରିଥାଏ ହେ ରଘୁନନ୍ଦନ ।

ବିଜ୍ଞଜନ ନିକଟେ ତା କିନ୍ତୁ ସମାଦୃତ
ହୋଇଥାଏ ଯେଉଁପରି ଆହେ ରଘୁନାଥ,
ସେହିପରି ଜାଣ ରାମ ମୋ ସକଳ ଉକ୍ତି
ଉପେକ୍ଷିତ ହୋଇଲେ ହେଁ ଅନ୍ୟଜନ କତି,
ଅଭିଜ୍ଞଙ୍କୁ ଯୁକ୍ତି ଯୁକ୍ତ ବୋଲି ହେବ ବୋଧ
ଗ୍ରହଣ କରିବେ ତାକୁ ସତ୍ୟବୋଲି ବୁଧ ।
ଦେହଠାରୁ ଆରମ୍ଭିଣ ଚିତ୍ତ ପରଯନ୍ତ
ସକଳ ଜଡ଼ ପଦାର୍ଥ ଜାଣ ରଘୁନାଥ ।
ବିଚାର ବଳରେ ଏହା ହୁଅନ୍ତେ ନିର୍ଣ୍ଣିତ
ସର୍ବ ଅହଂଭାବ ହୋଇଯାଏ ଅସ୍ତମିତ ।
'ମୁହିଁ' ବ୍ରହ୍ମବିନା ଆଉ ଅନ୍ୟକିଛି ନୁହେ
ପରେ ଏହି ସତ୍ୟଜ୍ଞାନ ଉଦେ ହୋଇଥାଏ ।
ବିଚାର ବଳେ ଯା' ଭେଦଜ୍ଞାନ ଦୂରୀଭୂତ
ସେହି ଏକା ଜାଣ ରାମ ହୁଅଇ ମୁକତ ।
ସେ ମୁକ୍ତି ବଳରେ ପୁଣି ତାର ଅହଂଭାବ
ବିନାଶ ପ୍ରାପ୍ତ ଲଭଇ ଜାଣ ହେ ରାଘବ ।
ବିନଷ୍ଟ ନୁହନ୍ତି କିନ୍ତୁ ଅନ୍ୟଭାବ ମାନ
ତେଣୁ କିମ୍ପାଇ ସୋଚନା ଆହେ ରଘୁରାଣ ?
ଅତଏବ ଶୁଣ ଆହେ ଅଜ୍ଞଜନ ଗଣ
ତତ୍ତ୍ୱବଳେ ତେଜିଦିଅ ତୁମ ଭ୍ରାନ୍ତି ଜ୍ଞାନ ।
ବ୍ରହ୍ମରୂପୀ ସ୍ୱ ଆତ୍ମାରେ ଶରଣ ଆପନ୍ନ
ହୋଇ ଚଳୁଥାଅ ସଦା ଆହେ ଅଜ୍ଞଜନ ।
ବାସନାଶୂନ୍ୟ ମନର ଯେଉଁ ବ୍ରହ୍ମଭାବ
ତାହାର ନାମ ମୁକତି ଏହା ଜାଣିଥିବ ।
ତତ୍ତ୍ୱଜ୍ଞାନ ବିନୁ ପୁଣି ସେହି ଯେ ମୁକତି
ଜାଣିରଖ କେବେହେଲେ ନୁହଇ ପ୍ରାପତି ।
ଜ୍ଞାନମୟ ଆତ୍ମା ମଧ୍ୟେ ଥରେ ମାତ୍ର ଜାଣ
ଉଦୟ ହୋଇଣ ଯାନ୍ତେ ଏ ଜଗତ-ଭ୍ରମ
"ଏ ଜଗତ ମିଥ୍ୟା କିନ୍ତୁ ସତ୍ୟ ଏହି ବ୍ରହ୍ମ"
ଏ ଭାବନା କେବେହେଲେ ନ ଆସିବ ମନ ।
ଅନନ୍ତକାଳ ପର୍ଯ୍ୟନ୍ତ ତେଣୁ ସଭାଜନ
ସୁନିଶ୍ଚିତ ହୋଇଯାଏ ସଂସାର ବନ୍ଧନ ।
ଜଗତ ଓ ଅହଙ୍କାର ମିଥ୍ୟା ବୁଝ ଗଲେ
ଚୈତନ୍ୟଯୁକ୍ତ ଏ ଜୀବ ହୋଇଯାଏ ହେଲେ ।
ସେତେବେଳେ ମୁକ୍ତିଲାଭ ହୁଅଇ ଜୀବର
ସଭାସଦଗଣ ଘେନା କରନ୍ତୁ ମୋ ଗୀର ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଭାବନା ପ୍ରତିପାଦନ ବର୍ଣ୍ଣନେ ନାମ ଊନବିଂଶ ସର୍ଗଃ ।**



## ବିଂଶ ସର୍ଗଃ
## ନିର୍ବାଣ ସ୍ଥିତି ବର୍ଣ୍ଣନ

ବଶିଷ୍ଠ ବୋଲନ୍ତି ରାମ ସତ୍ୟ ବା ଅସତ୍ୟ
ଯାହା କି ଅନ୍ତରେ ହୋଇଥାଏ ଅନୁଭୂତ ।
ଚିଦାଭାସ-ମୟ ଆତ୍ମା ମଧ୍ୟେ ହେ ଶ୍ରୀରାମ
ତାହାର ହିଁ ଅନୁଭୂତି ଘଟିଥାଏ ଜାଣ ।
ସେହି ଅନୁଭୂତି ମାନ ବାହ୍ୟ ଜଗତରେ
ପ୍ରକାଶ ପାଇଣ ଥାଏ ବିଷୟ ଆକାରେ ।
ସ୍ୱପ୍ନକାଳେ ହିଁ ଶ୍ରୀରାମ ! ଏହାର ଦୃଷ୍ଟାନ୍ତ
ଉପଲବ୍ଧି କରାଯାଇ ପାରେ ରଘୁନାଥ ।
ଏଣୁ କରି ଜାଣ ରାମ ସକଳ ପଦାର୍ଥ
ଚିତ୍ ସ୍ୱରୂପ ଅଟନ୍ତି ବୁଝ ଏହି ତତ୍ତ୍ୱ ।
ତତ୍ତ୍ୱ ଜ୍ଞାନୋଦୟେ ଅହଂଭାବ ଓ ଜଗତ
ବିନଷ୍ଟ ହେଲେହେଁ କିଛି ନ ଘଟେ ଅନିଷ୍ଟ ।
ଯାହା କି ପ୍ରକୃତ ମିଥ୍ୟା, ତାର ବିନାଶରେ
କାହାର ବିନାଶ ଅବା ହେବ ରଘୁବୀରେ ?
ପ୍ରଳୟ କାଳରେ ଯେଣୁ ଏହି ଯେ ଜଗତ
ରହିବ ନାହିଁ କଦାପି ଆହେ ରଘୁନାଥ
ବ୍ରହ୍ମଜ୍ଞାନ ପ୍ରଭାବରେ ଏବେ କି କାରଣେ
ତାର ବିଲୟ ସାଧନ ଲୋଡା ରଘୁନାନେ ?
ଏପରି ପ୍ରଶ୍ନର ଯାହା ଯଥାର୍ଥ ଉତ୍ତର
ଶୁଣ ଏବେ ଦେଉଅଛି ଆହେ ରଘୁବୀର ।
ପ୍ରଳୟକାଳେ ଜଗତ ବିଲୁପ୍ତ ହୋଇଣ
ଉଦିତ ହୁଅଇ ପୁନର୍ବାର ରଘୁରାଣ ।
ମାତ୍ର ବ୍ରହ୍ମଜ୍ଞାନ ବଳେ ଚିରକାଳ ପାଇଁ
ଜଗତ ବିଲୁପ୍ତ ହୋଇଯାଏ ରଘୁସାଇଁ ।
ସଙ୍କଳ୍ପମୂଳକ ଅଟେ ଏହି ଯେ ଜଗତ
କିନ୍ତୁ ସେ ସଙ୍କଳ୍ପ ଅଟେ ବାସନା ସମ୍ଭୂତ ।
ବ୍ରହ୍ମଜ୍ଞାନ ବଳେ ଯେବେ ଆହେ ରଘୁବୀରେ
ଏ ଜଗତ ନାଶ ନୋହିପାରେ ସମୂଳରେ,

ପୁନର୍ବାର ପ୍ରାଦୁର୍ଭୂତ ସେହୁ ହୋଇଥାଏ
ବାସନା ହିଁ ଯାର ମୂଳକାରଣ ବୋଲାଏ ।
ଅଜ୍ଞଜନ ହିଁ ବାସନା ସିଞ୍ଚନ୍ତି ଜଗତେ
ସେ ବାସନା କିନ୍ତୁ ନ ପଡ଼ଇ କାହା ନେତ୍ରେ ।
ଅଦୃଶ୍ୟ ହେଲେହେଁ ସେହି ବାସନା ହେ ରାମ
ତହିଁରୁ କିନ୍ତୁ ସଂସାର ହୁଅଇ ଉତ୍ପନ୍ନ ।
ଜ୍ଞାନାଭାବେ ଯେ ସଂସ୍କାର ହୁଏ ଉତପନ୍ନ
ଜ୍ଞାନୋଦୟେ ରହି ନ ପାରେ ତା କଦାଚନ ।
ଦେହ, ମନ, ବୁଦ୍ଧି, ଅହଙ୍କାରଆଦି ଯେତେ
ଭୂତସମୂହ ବିକାରୁ ଉତ୍ପନ୍ନ ସମସ୍ତେ ।
ସେମାନଙ୍କୁ ତେଜି ଦେଇ ଚିନ୍ମାତ୍ର ରୂପରେ
ଯେବଣ ସଂସ୍ଥିତି, ତାହା 'ମୁକ୍ତି' ରଘୁବୀରେ ।
ଆତ୍ମ ଚଇତନ୍ୟ ଲିଙ୍ଗ-ଶରୀର ସହିତ
ମିଳିତ ହେଲେ ବାସନା ହୁଏ ପ୍ରକାଶିତ ।
ତେଣୁ ମୁକ୍ତି ଉଦୟରେ ପୁନଶ୍ଚ ବାସନା
କିପରି ଜନମ ନେବ ରାମ ମହାମନା ?
"ଏ ସାରା ଜଗତ ଅଟେ କେବଳ ହଁ ବ୍ରହ୍ମ"
ଏହିଜ୍ଞାନ ଯେତେବେଳେ ହୁଅଇ ଜନମ
ଉପାଧି ଓ ଚିଦାଭାସ ଏ ଉଭୟେ ଜାଣ
ବିନଷ୍ଟ ହୋଇଣ ଯାନ୍ତି ଜାଣି ରଖ ରାମ ।
ଉପାଧି ଓ ଚିଦାଭାସ ହୁଅନ୍ତେ ବିନାଶ
ଶିବରୂପୀ ବ୍ରହ୍ମଙ୍କର ହୁଏ ପରକାଶ ।
ଶିବସ୍ୱରୂପେ ଯା' ଚିତ୍ତ ଲଭିଛି ବିଶ୍ରାନ୍ତି
କେବେହେଁ ତାହାଙ୍କୁ ରାମ ଦ୍ୱେଷ ନ ଗ୍ରାସନ୍ତି ।
ବାହାରେ କାହିଁ ନ ଥାଏ ଏ ଜଗତ-ଭ୍ରମ
ସ୍ୱୀୟ ଆତ୍ମା ମଧ୍ୟେ ତାହା କରେ ଅବସ୍ଥାନ ।
ଆତ୍ମାର ବାହ୍ୟାକାରୀୟ ଭାବନାର ବଳେ
ବାହ୍ୟ ବସ୍ତୁର ପ୍ରତୀତି ହୁଏ ରଘୁବୀରେ ।
ସ୍ୱୀୟ ଆତ୍ମତ୍ୱ ଭାବନା ଯଦି ସେ କରଇ
ତେବେ ଆତ୍ମାରୂପେ ପରକାଶ ଲଭିଥାଇ ।
ଏ ସଂସାର ପୁଣି ମୁକ୍ତି ଜାଣ ରଘୁବୀର
ଆତ୍ମାର ଭାବନା ବଳେ ଜନମ ତାଙ୍କର ।
ଅନ୍ତରେ ଯେ ସ୍ୱପ୍ନାକାର ଭ୍ରାନ୍ତିର ଉଦୟ
ଆତ୍ମାର ତା ବାହ୍ୟଭାବ ହେ ରଘୁତନୟ ।
ଆତ୍ମଭାବନା ବଳେ ତା ହେଲେ ଦୂରୀଭୂତ
ସବୁଦ୍ରଷ୍ଟା, ଦୃଶ୍ୟ ଭାବ ହୁଏ ଅନ୍ତର୍ହିତ ।

ଭାବନାଶୂନ୍ୟ ଆତ୍ମାର ଯେ ପ୍ରଶାନ୍ତ ରୂପ
ସେହି ଏକା ବ୍ରହ୍ମଜାଣ, ଜ୍ଞାନର ସ୍ୱରୂପ ।
ଯେତେବେଳେ ସେହି ସ୍ୱପ୍ନ ହୁଏ ପ୍ରଶମିତ
ଆତ୍ମାର ବିଶୁଦ୍ଧ ରୂପ ହୁଏ ଉଦ୍ଭାସିତ ।
ବାକ୍ୟର ଅତୀତ ତାହା ଜାଣ ରଘୁନାଥ
ମୁକ୍ତ ପୁରୁଷମାନଙ୍କୁ ତାହା ଅନୁଭୂତ ।
ଉପଦେଶ ଦ୍ୱାରା ତାହା ନ ହୁଏ ବୁଝାଇ
ଅନୁଭବରେ ତା ସ୍ୱାଦ ଅନୁଭୂତ ହୋଇ ।
ଅହଂବୋଧ ତେଜି ଆତ୍ମବୋଧେ ଅବସ୍ଥାନ
କରିବା ହିଁ ସମସ୍ତଙ୍କ କରତବ୍ୟ ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ନିର୍ବାଣ ସ୍ଥିତି ବର୍ଣ୍ଣନେ**
**ନାମ ବିଂଶ ସର୍ଗଃ ।**



## ଏକବିଂଶ ସର୍ଗଃ
## ଶାନ୍ତି ସ୍ଥିତି ଉପଦେଶ

କହନ୍ତି ବଶିଷ୍ଠ ଶୁଣ ରାମ ରଘୁବୀର
ଚିଦାତ୍ମା ନିଜକୁ ଯେବେ କରଇ ବିସ୍ତାର ।
ଅହଂଭାବ ଓ ଜଗତ ହୁଏ ପ୍ରକାଶିତ
ଏହି ଦ୍ୱିବିଧ ଭ୍ରମର ଉତ୍ପତ୍ତି ଏମନ୍ତ ।
ଆତ୍ମସ୍ୱରୂପତା ଜ୍ଞାନ ଯେବେ ରହେ ତହିଁ
ଆଉ କିଛି ଦୁଃଖ ତେବେ ନ ପାରଇ ଦେଇ ।
ମୁଁହି ଆଉ ଏ ଜଗତ ବ୍ରହ୍ମଠାରୁ ଭିନ୍ନ
ଏହି ରୂପ ଜ୍ଞାନ ନାନା ଅନର୍ଥ କାରଣ ।
ନେତ୍ର ମେଲାଇଲେ ଯଥାରୂପ ଦରଶନ
କୁଟସ୍ଥ ଚୈତନ୍ୟ ଗତିଶୀଳ ହେଲେ ରାମ
ଏ ଦୃଶ୍ୟ ଜଗତ ଜାଣ ହୁଅଇ ଉତ୍ପନ୍ନ
ନିଷ୍କଳ ସ୍ଥିର ଚୈତନ୍ୟ ଅଟେ ଗତି ହୀନ ।
ସ୍ଥିର ଚୈତନ୍ୟର ଦୃଶ୍ୟ ଅଭିମୁଖୀ ଗତି
ଅସତ୍ୟ ଏ ଚିନ୍ତା ସଦାକାଳେ ରଘୁପତି ।
ତେଣୁ ତାର ଏ ଜଗତ; ଅହଂଭାବ ଗତି
ନିଃସଂଶୟେ ଅସତ ତା ଜାଣ ରଘୁପତି ।
କଳ୍ପନା ବଳେ ବାଳକ ଦେଖଇ ଯେପରି
ବେତାଳ, ପିଶାଚ, ଭୂତ, ପ୍ରେତ, ନିଶାଚରୀ ।

ତଥା ଗତିଶୀଳ ଚିତ୍ ଅବିଦ୍ୟା ବଶତଃ
ଜଗତ କଳ୍ପନା କରେ ଜାଣ ରଘୁନାଥ ।
ଯଥାର୍ଥ ଜ୍ଞାନ ଉଦୟେ ସେ କଳ୍ପନା ତାର
ଦୂରୀଭୂତ ହୋଇଯାଏ ଜାଣ ରଘୁବୀର ।
'ମୁଁ' ଆକାରେ ସେ ଚିତ୍‌ର ଯେ ଗତିଶୀଳତା
ତାହାର ହିଁ ନାମ 'ଅହଂ' ଜାଣ ଶୁଦ୍ଧ ଚେତା ।
ବିଷମ ସଂସାର ଦୁଃଖ ଭୋଗପାଇଁ ରାମ
ଏହି ଅହଂଭାବ ଅଟେ ପ୍ରକୃଷ୍ଟ କାରଣ ।
ସେହି ଅହଂଭାବ ହୋଇଗଲେ ଦୂରୀଭୂତ
ମୁକ୍ତିରୂପ ପରଂସୁଖ ହୋଇଥାଏ ପ୍ରାପ୍ତ ।
ସଂସାର ବନ୍ଧନ ପୁଣି ସଂସାରରୁ ମୁକ୍ତି
ଦୁହେଁ ଆତ୍ମାର ଅଧୀନ ଜାଣ ରଘୁପତି ।
"ବ୍ରହ୍ମ ଭିନ୍ନ ଅନ୍ୟ କିଛି ନୁହଁଇ ତ ମୁହିଁ"
ଏପରି ନିଶ୍ଚିତ ଜ୍ଞାନ ମୁକ୍ତିଯୋଗ ଦେଇ ।
ବାୟୁରେ ପ୍ରବାହ-ଧର୍ମ ନିହୀତ ଯେସନ
ବ୍ରହ୍ମରେ ଜୀବ, ଜଗତ, ପ୍ରକାଶ ତେସନ ।
ଜଗତର ସ୍ୱରୂପକୁ କରନ୍ତେ ବିଚାର
ଜୀବ-ଜଗତ୍‌ରୂପ ଭ୍ରମ ହୋଇଯିବ ଦୂର ।
"ମୁହିଁ" ବୋଲି କିଛି ବସ୍ତୁ କାହିଁ ତ ନ ଥାଇ
କେବଳ ଦେଦୀପ୍ୟମାନ ଆତ୍ମା ବିରାଜଇ ।
ଏହିପରି ଜ୍ଞାନ ଯେବେ ହୁଏ ଦୃଢ଼ୀଭୂତ
ନିର୍ବାଣ ନାମରେ ତାହା ହୁଅଇ ବିଦିତ ।
ଜୀବ ମୂଢ଼ତା ରହିବା ଏହି ବିଷୟରେ
କୌଣସି କାରଣ ନାହିଁ ହେଜ ରଘୁବୀରେ ।
ସାଧୁସଙ୍ଗ ପୁଣି ନିଜ ବିଚାର ବଳରେ
ଅତିଶୀଘ୍ର ଅବଗତ ଏହା ରଘୁବୀରେ ।
ତତ୍ତ୍ୱଜ୍ଞ ପୁରୁଷଙ୍କର ପରିଚର୍ଯ୍ୟା ବଳେ
ଅହଂଭାବ ମଧ କ୍ଷୟ ହୁଏ ରଘୁବୀରେ ।
ସୂର୍ଯ୍ୟସମ, ତତ୍ତ୍ୱଜ୍ଞାନୀ ତତ୍ତ୍ୱ ଲୋକ ବଳେ
ଜଗତକୁ ଉଭାସିତ କରେ ଅବହେଳେ ।
ସେ ଆଲୋକେ ଅହଂ-ଅନ୍ଧକାର ଦୂରୀଭୂତ
ବସ୍ତୁ-ତତ୍ତ୍ୱ ଅତିଶୀଘ୍ର ହୁଏ ପ୍ରକାଶିତ ।
ସେହେତୁ ମୁମୁକ୍ଷୁ ଜନ ଏମନ୍ତ କରିବ
ସୂର୍ଯ୍ୟରୂପୀ ତତ୍ତ୍ୱଜ୍ଞାନୀ ମାନଙ୍କୁ ପୂଜିବ ।
କିନ୍ତୁ ବହୁ ଜ୍ଞାନୀ ସଙ୍ଗ ଏକ ସମୟରେ
କରିବା ଉଚିତ ନୁହେଁ ଜାଣ ରଘୁବୀରେ ।
ନାନା ଜ୍ଞାନୀଙ୍କର ନାନାବିଧ ଉପଦେଶ
ସ୍ୱଳ୍ପ ଜ୍ଞାନୀଙ୍କର ବୁଦ୍ଧି କରିପାରେ ଭ୍ରଂଶ ।
ତାହାବଳେ ସୁଫଳର ପରିବର୍ତ୍ତେ ରାମ
କୁଫଳ ଫଳି ଯେ ପାରେ ଏକଥା ଜାଣିମ ।
ମୁଁ ଯେଉଁ ଉପାୟ କଥା କହିଲଇଁ ରାମ
ତାହା ମୋର ଅନୁଭବ-ସିଦ୍ଧ ବୋଲି ଜାଣ ।
ଯେଣୁ ସମଗ୍ର ବ୍ରହ୍ମାଣ୍ଡ ନିରାମୟ ବ୍ରହ୍ମେ
ଅବସ୍ଥାନ କରିଅଛି ଜାଣ ବୀର ତୁମେ
ବିଚାର ବଳରେ ଅହଂଭାବ ତ୍ୟାଗ କରି
ସେ ବ୍ରହ୍ମରେ ଅବସ୍ଥାନ କର ରୂପଧାରୀ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ଶାନ୍ତିସ୍ଥିତି ପ୍ରକରଣ ବର୍ଣ୍ଣନେ**
**ନାମ ଏକବିଂଶ ସର୍ଗଃ ।**



## ଦ୍ୱାବିଂଶ ସର୍ଗଃ
## ପରମାର୍ଥ ଯୋଗ ବର୍ଣ୍ଣନ

ପୁରୁଷକାର ଆବର ସତସଙ୍ଗ ବଳେ
ଯେ ଜନ ବିଜ୍ଞତା ଲାଭ କରିଣ ନ ପାରେ
ଅନ୍ୟ କୌଣସି ଉପାୟ ନାହିଁ ତାହାପାଇଁ
ଏହି କଥା ମନେ ରଖ ଆହେ ରଘୁସାଇଁ ।
ବିଷୟ ତ୍ୟାଗେ ହିଁ ହୁଏ କଳ୍ପନା ନିବୃତ୍ତି
ମହାତତ୍ତ୍ୱ ଏହା ଜାଣିରଖ ରଘୁପତି ।
ବାକ୍ୟେ ଅବା ମନେ ଯେହୁ ଶବ୍ଦାର୍ଥ ଭାବନା
ନ କରଇ ଜାଣ ଆହେ ରାମ ମହାମନା,
କେବଳ ତାହାରି ରାମ କଳପନା ତ୍ୟାଗ
ସୁଦୃଢ଼ ହୋଇଣ ଥାଏ ଆହେ ମହାଭାଗ ।
ଅବିଦ୍ୟାରୂପକ ଅହଂ ହେଲେ ପରିତ୍ୟକ୍ତ
ଯେଉଁ ନିଶ୍ଚଳତା ଆସି ହୁଏ ଉପସ୍ଥିତ,
ତାହାକୁ ହିଁ ମୁକ୍ତି ବୋଲି କହେ ଜ୍ଞାନୀଜନ
ତାହାହିଁ ଯଥାର୍ଥ ଉକ୍ତି ହେ ରଘୁନନ୍ଦନ ।
ସକଳ ପ୍ରାଣୀଙ୍କୁ ବ୍ରହ୍ମ ଚଇତନ୍ୟ ବୋଲି
ଅବଗତ ହୋଇଛନ୍ତି ପଣ୍ଡିତ ମଣ୍ଡଳୀ ।
ସେହି ଚଇତନ୍ୟଙ୍କର ବିସ୍ମୃତି ମଧରେ
ଯେଣୁ ଏ ଜଗତ ଉତପନ୍ନ ରଘୁବୀରେ,

ଏକଗୋଟି ପରମାଣୁ ମଧ୍ୟେ ଜାଣ ରାମ
ସହସ୍ର ଜଗତ କରିଛନ୍ତି ଅବସ୍ଥାନ ।
ବାହାରେ ରୂପ ରସାଦି ଯେ ପଦାର୍ଥମାନ
ଅନ୍ତରେ ଯା ଅହଙ୍କାର ବୁଦ୍ଧି ଆଉ ମନ,
ସେହି ଚଇତନ୍ୟଙ୍କର ପ୍ରସରଣ ବଳେ
ଉତ୍ପନ୍ନ ହୋଇଅଛନ୍ତି ସର୍ବେ ରଘୁବୀରେ ।
କେବଳ ଚିଦାକାଶେ ହିଁ ସକଳ ପଦାର୍ଥ
ପରିଦୃଷ୍ଟ ହୁଏ ଯେଣୁ, ମିଥ୍ୟା ଏ ଜଗତ ।
ସେ ମିଥ୍ୟା ବିଦ୍ୱରେ ରାମ ଯେ ଆତ୍ମା ନିମଗ୍ନ
ପୌରୁଷବଳେ ତାହାର ମୁକ୍ତି ହୁଏ ଜାଣ ।
ନୋହିଲେ ନାନା ବିପଦ ଆପଦାଦିମାନ
ଆସି ଆକ୍ରମଣ କରିଥାନ୍ତି ରଘୁରାଣ ।
ଚୈତନ୍ୟର ହିଁ ବିକୃତ ରୂପ, ଅହଙ୍କାର
ସ୍ମରଣ ରଖିବ ସଦା ଏହା ରଘୁବୀର ।
ବାସ୍ତବରେ ଅନ୍ତରରେ ଅଥବା ବାହାରେ
ଏ ଜଗତ ବିଦ୍ୟମାନ ନୁହେଁ କେଉଁଠାରେ ।
ଚୈତନ୍ୟର ଯେଉଁ ଉନ୍ମୀଳନ ନିମୀଳନ
ଉଦୟ ବିଳୟ ତାହା ଜଗତର ଜାଣ ।
ତେଣୁ ଜାଣ ସେ ଚିନ୍ମୟ ବ୍ରହ୍ମର ବ୍ୟତୀତ
ଅନ୍ୟ କିଛି ମାତ୍ର ନାହିଁ ଆହେ ରଘୁନାଥ ।
ସେ ବ୍ରହ୍ମଭାବରେ ଯେହୁ କରେ ଅବସ୍ଥାନ
ବିଷୟ ପାଇଁ କି ଯା ଚେତନା ଗତି ଶୂନ୍ୟ ।
ସେହି ଏକା ମୁନି ପଦବାଚ୍ୟ ହେ ଶ୍ରୀରାମ
ଧନ୍ୟ ତାଙ୍କ ଜନ୍ମଦାତା, ଧନ୍ୟ ସେ ଜୀବନ ।
ସଙ୍କଳ୍ପ ନିବୃତ୍ତ ହେଲେ ସଙ୍କଳ୍ପ-ନଗର
ରହି ନ ପାରଇ ଯଥା ଆହେ ରଘୁବୀର ।
ସେହିପରି ଅହଂଭାବ ହେଲେ ତିରୋହିତ
ଜଗତ ଭାବ ବ୍ରହ୍ମରେ ନୁହଇ ପ୍ରତୀତ ।
ପଦାର୍ଥ ବୋଲିଣ ଯାହା ହୁଏ ଅନୁଭୂତ
ମହା ଚିତ୍‌ର-ସ୍ପନ୍ଦନ ତାହା ରଘୁନାଥ ।
ବାୟୁ, ବାୟୁର-ପ୍ରବାହ ଅଭିନ୍ନ ଯେପରି
ସ୍ପନ୍ଦନାତ୍ମକ ଜଗତ, ବ୍ରହ୍ମ ସେହିପରି ।
ଆଦ୍ୟନ୍ତହୀନ ପରମ କଲ୍ୟାଣ ଗଗନେ
ବିହରୀଣ ତା ସାରୂପ୍ୟ ଲଭ ରଘୁନାନେ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ପରମାର୍ଥ ଯୋଗ ବର୍ଣ୍ଣନେ**
**ନାମ ଦ୍ୱାବିଂଶ ସର୍ଗଃ ।**



## ତ୍ରୟୋବିଂଶ ସର୍ଗଃ
## ପରମବ୍ରହ୍ମ ସ୍ୱରୂପ ବର୍ଣ୍ଣନ

ଉପସ୍ଥିତ ସୁଖ ଦୁଃଖେ ଯେହୁ ଅଭିଭୂତ
ସେହି ବ୍ୟକ୍ତି ହିଁ ବିନାଶ ପାଏ ରଘୁନାଥ ।
କିନ୍ତୁ ଯେଉଁ ଜନ ତହିଁ ନୁହେ ଅଭିଭୂତ
ତାହାର ବିନାଶ କେଭେ ନାହିଁ ରଘୁନାଥ ।
କେବଳ ବାସନା ସୁଖ ଦୁଃଖର କାରଣ
ବାସନାରୁ ସବୁ ସୁଖ ଦୁଃଖ ପାଏ ଜନ୍ମ ।
ଯାହାର ବାସନା, ଇଚ୍ଛା ଅଛି ରଘୁନାଥ
ସୁଖ ଦୁଃଖ ଭୋଗ ତାହା ପାଇଁ ସୁନିଶ୍ଚିତ ।
ସୁଖ ଦୁଃଖରୁ ନିଷ୍କୃତ ଲଭିବା ନିମିତ୍ତ
ସର୍ବାଦୌ ସେ ଉଭୟଙ୍କୁ ତେଜିବା ଉଚିତ ।
ବ୍ରହ୍ମଗଗନରେ ଅହଙ୍କାର ବା ଜଗତ
କିଛି ହିଁ ନ ଥାଇ ଯେଣୁ ଆହେ ରଘୁନାଥ ।
ସେ ଆକାଶ ପତି ବ୍ରହ୍ମ ଶବ୍ଦର ପ୍ରୟୋଗ
ଅସମୀଚୀନ ଅଟଇ ଆହେ ମହାଭାଗ ।
ସର୍ବମୟ ଅଟେ ଯେଣୁ ସେ ଶାନ୍ତ ଆକାଶ
ଅନ୍ୟ କର୍ତ୍ତା, ଭୋକ୍ତା ତହିଁ କାହିଁ ରଘୁଈଶ ?
ନିଜର ଜ୍ଞାନ ମଧ୍ୟରେ ଯାହା ଅବସ୍ଥିତ
ତାହାହିଁ କେବଳ ହୋଇଥାଏ ଅନୁଭୂତ ।
ଆବର ଆତ୍ମସ୍ୱରୂପ ଯେଣୁ ସେହି ଜ୍ଞାନ
ଅହଂଭାବ, ଜଗତ୍ ଜ୍ଞାନ ତହିଁରୁ ଅଭିନ୍ନ ।
ତରଙ୍ଗ ରୂପରେ ଯଥା ଜଳର ପ୍ରକାଶ
ଅବୟବ-ହୀନ ନିଜ ଜ୍ଞାନ ରଘୁଈଶ ।
ଅବୟବ ଯୁକ୍ତ ଏହି ଜଗତ ରୂପରେ
ପରକାଶ ପାଇଥାଏ ଆହେ ରଘୁବୀରେ ।
ଏକ ଆତ୍ମାହିଁ ଭ୍ରାନ୍ତିର ବଳେ ହେ ରାଘବ
ନାନା ଆକାରେ ପ୍ରକାଶମାନ ଏହି ଭବ ।
ତତ୍ତ୍ୱ ଦୃଷ୍ଟି ବଳେ ନାନା ଆକାର ଜଗତ
ମିଥ୍ୟା ବୋଲି ପ୍ରତିଭାତ ହୁଏ ରଘୁନାଥ ।
କିନ୍ତୁ ଆତ୍ମା ସତ୍ୟ ଅଟେ, ଏହା ସୁନିଶ୍ଚିତ
ତତ୍ତ୍ୱ ଜ୍ଞାନରୁ ଉଦିତ ହୋଇଛି ଏ ତତ୍ତ୍ୱ ।
ଚିତ୍ ସ୍ୱରୂପ କୁରାଳଚକ୍ର, ଅଭ୍ୟନ୍ତରେ
ଅଜସ୍ର ମୃତ୍‌ପାତ୍ର ରୂପ ଜଗତ ବିସ୍ତାରେ ।

ଯାହା ଭାବେ ତାହା ତହୁଁ ହୁଏ ଆବିର୍ଭୂତ
ଅରୂପ ହେଲେହେଁ ତାର ଶକ୍ତି ଯେ ଏମନ୍ତ ।
ଅନ୍ତରେ ସେ ଯାହା ଭାବେ ତାହା ରୂପ ଧରି
ପରକାଶ ପାଇଥାଏ ଏହି ବିଶ୍ୱପୁରୀ ।
ଏ ଜଗତ ନୁହେ ସତ ଅଥବା ଅସତ
ଚିନ୍ମୟାତ୍ମା ଯାହାଭାବେ, ତାହା ହୁଏ ସତ ।
ତାହାର ବିନାଇଚ୍ଛାରେ କିଛି ନୋହି ଜାତ
କରଣୀ ତାହାର ରାମ ସର୍ବଦା ଅଦ୍ଭୁତ ।
ଆତ୍ମା ସ୍ୱୟଂ ଯେଣୁ ବୋଧସ୍ୱରୂପ ଅଟଇ
ତାର ବୋଧବଳେ ଯେଣୁ ସବୁ ଘଟୁଥାଇ,
ତେଣୁ "ଏହା ଅଚେତନ", "ତାହା ଯେ ଚେତନ"
ଏପରି ନିର୍ଣ୍ଣୟ କହ ସଙ୍ଗତ କେସନ ?
ବାସ୍ତବରେ ସତ୍ତାହୀନ ଯେଉଁ ଅହଙ୍କାର
ତା ବଶରେ ଚଳୁଛନ୍ତି ଜୀବ ଚରାଚର ।
କି ଅବା ଆଶ୍ଚର୍ଯ୍ୟ ଅଛି ଏହାଠାରୁ ବଳି
ବିଚାର ବଳରେ ବୁଝ ଆହେ ରୂପଧାରୀ ।
ଯଦି ଆମେ ଓ ଜଗତ ଏକମାତ୍ର ବ୍ରହ୍ମ
କେ' ହେବ ବିନାଶ, ପୁଣି କେ ହେବ ଉତ୍ପନ୍ନ ?
ହର୍ଷର କାରଣ ତେଣୁ ନାହିଁ ଏ ସଂସାର
ଦୁଃଖର କାରଣ ଅବା ହେବ କି ପ୍ରକାର ?
ଯେଣୁ କରି ବ୍ରହ୍ମ ଅଟେ ସର୍ବ ଶକ୍ତିମାନ
ତା ଭାବନା ବଳେ ତେଣୁ ଜଗତ୍ ପ୍ରକାଶନ ।
ଜଗତ ଭାବନା ଯଦି ନ କରନ୍ତି ସେହୁ
ସେହି କ୍ଷଣୁ ଏ ଜଗତ ନ ରହିବ ଆଉ ।
ତେଣୁ ମୁଁ କହୁଛି ଶୁଣ କୌଶଲ୍ୟା କୁମର
ଜଗତ-ଭାବନା ତୁମେ ମଧ୍ୟ ତ୍ୟାଗ କର ।
ନିରାଧାର, ନିରାକାର ସୁନିର୍ମଳ ବ୍ରହ୍ମ
ଯାହା ଯେତେବେଳେ ଅନୁଭବ କରେ ରାମ ।
ସେହି ବ୍ରହ୍ମଠାରୁ ଅନ୍ୟ କିଛି ନୁହେଁ ତାହା
ଏହି କଥା ମନେ ରଖିଥିବ ରଘୁନାହା ।
ତେଣୁ ଏ ଜଗତ ନୁହେ ବ୍ରହ୍ମଠାରୁ ଭିନ୍ନ
ତାଦୃଶ ଏ ଜୀବ ମଧ୍ୟ ତା ଠାରୁ ଅଭିନ୍ନ ।
ତୁମେ, ଆମେ, କ୍ଷିତି, ଜଳ, ଆକାଶ ଇତ୍ୟାଦି
ଏ ସବୁ ରୂପ ସେ ବ୍ରହ୍ମ ଧରେ ରଘୁନିଧି ।
ସର୍ବପ୍ରକାର ବୈଶିଷ୍ଟ୍ୟ-ବୋଧ ତେଜି କରି
ନିଜକୁ ଚିନ୍ମାତ୍ର ବ୍ରହ୍ମ ମଣ ରୂପଧାରୀ ।
ବ୍ରହ୍ମରୁ ସ୍ୱୀୟ ପାର୍ଥକ୍ୟ ଜ୍ଞାନ ଯେ ବନ୍ଧନ
ଦୁହିଙ୍କ ଏକତ୍ୱ-ବୋଧ ମୁକ୍ତି ବୋଲି ଜାଣ ।
ଅନୁସରି ଜ୍ଞାନୀ ଜନ ପନ୍ଥା ହେ ଶ୍ରୀରାମ
ଚିନ୍ମାତ୍ର ରୂପରେ ତୁମେ କର ଅବସ୍ଥାନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ପରଂବ୍ରହ୍ମ ସ୍ୱରୂପ ବର୍ଣ୍ଣନେ ନାମ ତ୍ରୟୋବିଂଶ ସର୍ଗଃ ।**



## ଚତୁର୍ବିଂଶ ସର୍ଗଃ

## ଇଚ୍ଛା ନିଷେଧ

କହନ୍ତି ବଶିଷ୍ଠ ମୁନି ରାମଚନ୍ଦ୍ର ଶୁଣ
କର୍ମ ପରାୟଣ ରହିଲେ ହେଁ ସର୍ବକ୍ଷଣ ।
ଆତ୍ମନିଷ୍ଠାରୁ ବିଚ୍ୟୁତ ଯଦି ନ ହୋଇବ
ସେ ଆତ୍ମବୋଧ ରୂପିଣୀ ବିଦ୍ୟା ତେବେ ତବ,
ସୁମେରୁ ପର୍ବତ ପରି ରହିବ ଅଚଳ
ହେ ରାଘବ ଏହି କଥା ମନେ ରଖି ଚଳ ।
ଅବିଦ୍ୟା ସ୍ୱଭାବ ଏହା ଜାଣ ହେ ରାଘବ
ତାହାକୁ ଯଦ୍ୟପି ତୁମେ ପରିଜ୍ଞାତ ହେବ ।
କ୍ଷଣେ ତିଷ୍ଠି ନ ପାରିଣ ଯିବ ସେ ପଳାଇ
ପରମା ବିଦ୍ୟା ତା ପଛେ ଆସିବ ଯେ ଧାଇଁ ।
ଅନୁଭୂତ ବିଷୟ ଆବର ଅନୁଭୂତି
ଅବିଦ୍ୟା ପ୍ରଭାକୁ ଏହାଙ୍କର ଉତପତ୍ତି ।
ଆତ୍ମବିଦ୍ୟାସମପନ୍ନ ଅଟେ ଯେଉଁ ଜନ
ଅନାତ୍ମବସ୍ତୁକୁ ସେହୁ କିପରି ହେ ରାମ,
ସକ୍ଷମ ହୋଇବ କରିବାକୁ ଅନୁଭବ
ଏହା ବୁଝିବାକୁ ମୁହିଁ ଅକ୍ଷମ ଜାଣିବ ।
କୌଣସି ଅନାତ୍ମ ବସ୍ତୁ ଯେଣୁ ହେ ଶ୍ରୀରାମ
ଅନୁଭବ କରି ନ ପାରଇ କଦାଚନ,
ପରମ ଶାନ୍ତି ଉଦୟ ହୋଇ ତା ଅନ୍ତରେ
ସଂସାର କଷଣ ଦୂର କରିଥାଏ ହେଳେ ।
ବ୍ରହ୍ମ, ଜଗତ ଏ ଦୁଇ ଏକଇ ପଦାର୍ଥ
ବ୍ରହ୍ମରୁ ଭିନ୍ନ ଜଗତ, ଅବିଦ୍ୟା ବଶତଃ ।
ସେ ଅବିଦ୍ୟା ପରିଣାମ ଜାଣ ହେ ଶ୍ରୀରାମ
ରାଗ, ଦ୍ୱେଷ, ନରକାଦି ସବୁ ଦୁଃଖମାନ ।

ସମଗ୍ର ଜଗତ ମୂଳ ଏହି ଯେ ଆକାଶ
ଜ୍ଞେୟ ପଦାର୍ଥର ସାର ତହିଁରୁ ବିକାଶ ।
ସମାଧି ସମୟେ ଏହି ଉକ୍ତିର ସତ୍ୟତା
ଉପଲବ୍ଧି ହୋଇଥାଏ ଆହେ ଧନୁହସ୍ତା ।
ତେଣୁ ଏହି ଜଗତକୁ ଅଜ୍ଞ ବ୍ୟକ୍ତି ଗଣ
ବୃଥାରେ ବସ୍ତୁ ଆକାରେ କରନ୍ତି ଦର୍ଶନ ।
ରୂପ, ରସ ଇତ୍ୟାଦିର ଅଟେ ଯେହୁ ସାର
ସେହି ବ୍ରହ୍ମ ଉପଲବ୍ଧି ହୁଏ ଯେବେ ବୀର ।
ଜଗତ୍ ଭାବ ଆରୋପଣ ତନ୍ମଧ୍ୟେ କିମ୍ପାଇଁ
ପ୍ରଯୁଜ୍ୟ ହେବ ତା ମୁହିଁ ବୁଝି ନ ପାରଇ ।
ଯେଉଁ ଜନ କରୁଥାଏ ଜଗତ ଦର୍ଶନ
ତାର ସେ ଦର୍ଶନ ଶକ୍ତି ଜଗତ୍‌ଭ୍ରାନ୍ତି ଜାଣ ।
ଜଗତ ନ ଦେଖି ଯଦି ସେ ଦର୍ଶନ ଶକ୍ତି
ଚିନ୍ମୟ ଆତ୍ମାକୁ ଦେଖେ ଆହେ ରଘୁପତି ।
ଭ୍ରାନ୍ତିଶୂନ୍ୟ ସତ୍ୟ ଦୃଷ୍ଟି ନାମରେ ବିଦିତ
ସେ ଦର୍ଶନ ତାର ଜାଣି ରଖ ରଘୁନାଥ,
ଚିଦାକାଶମୟ ବ୍ରହ୍ମ ସ୍ୱରୂପରେ କେଭେଁ
ଆକାଶତ୍ୱର ଅନ୍ୟଥା ନ ଘଟଇ ଲବେ ।
ତୁମେ, ଆମେ, ଅନ୍ୟମାନେ, ସେହି ଚିଦାକାଶ
ଯା'ଙ୍କ ଭିତରେ ବିକାର ଘଟିବ କିଦୃଶ ?
ତହିଁ କିଛି ବିକାର ତ ନ ଦେଖଇ ମୁହିଁ
ପାଷାଣେ ଅରଣ୍ୟ ସମ ସେ ଭ୍ରାନ୍ତି ବା କାହିଁ ?
ସେହି ଚିଦାକାଶୁଁ ମୋର ଏ ବାକ୍ୟ ସକଳ
ଉଦ୍ଭୂତ ହେଉ ଅଛଇ ଜାଣ ରଘୁବାଳ ।
ଚିଦାକାଶମୟ ସ୍ୱୟଂ ସେହି ଆତ୍ମା ଜାଣ
ତୁମଠାରେ ମଧ୍ୟ ରହିଛନ୍ତି ବିଦ୍ୟମାନ ।
ଇଚ୍ଛା, ବାସନା ବିହୀନ ହୋଇଣ ଯେ ବ୍ୟକ୍ତି
ଚିନ୍ମୟାତ୍ମାରେ ପାଷାଣ ପରି ଯାର ସ୍ଥିତି ।
ତାହାହିଁ ପରମପଦ ପଣ୍ଡିତଙ୍କ ମତ
ତୁମପରି ତତ୍ତ୍ୱଜ୍ଞାନୀ ବୁଝିବ ଏ ତତ୍ତ୍ୱ ।
ତତ୍ତ୍ୱଜ୍ଞ ଜନ ଜୀବନ ବାହାରେ ଭିତରେ
ସର୍ବଦା ଆକାଶମୟ ରହେ ରଘୁବୀରେ ।
ଆତ୍ମରସ ଭିନ୍ନ ଅନ୍ୟ ରସ ବା ବାସନା
ସେ ଜୀବନେ ପରିଦୃଷ୍ଟ ନୁହେ ମହାମନା ।
ନିଖିଳ ବିଶ୍ୱକୁ ତେଣୁ କରି ସେହି ଜନ
ରସହୀନ, ଶୂନ୍ୟମୟ ସଦା ମଣେ ରାମ ।

ଯା' ଅନ୍ତରେ ଦୃଶ୍ୟାଦୃଶ୍ୟ କୌଣସି ପଦାର୍ଥ
ପ୍ରୀତି ଉପୁଜାଏ ନାହିଁ ଆହେ ରଘୁନାଥ ।
ପରମ ଶାନ୍ତି ଲଭେ ସେ ବାହାରେ ଭିତରେ
ସଂସାର ସାଗରୁ ପରିତ୍ରାଣ ପାଇପାରେ ।
ଅହଂଭାବ, ମମତାକୁ କରି ବିସର୍ଜନ
ତୁମ ହୃଦୟକୁ କର ବାସନା ବିହୀନ ।
ପ୍ରାରବ୍ଧ କ୍ଷୟ ନୋହିଛି ରାମ ଯେ ପର୍ଯ୍ୟନ୍ତ
ପରିମିତ ବାକ୍ୟ ବୋଲୁଥିବ ସେ ପର୍ଯ୍ୟନ୍ତ ।
କରୁଥିବ ପରିମିତ ରସ ଆସ୍ୱାଦନ
ସଦା ଦେଖୁଥିବ ପରିମିତ ଦୃଶ୍ୟମାନ ।
ପରିମିତ ଗନ୍ଧ ପୁଣି ପରିମିତ ସ୍ପର୍ଶ
ଆସ୍ୱାଦନ କରୁଥିବ ରଘୁବଂଶ ଈଶ ।
ଇନ୍ଦ୍ରିୟ, ବିଷୟ ଭୋଗ ତୁଚ୍ଛ କରିଦେଇ
ବିଷୟ-ବ୍ୟାଧି ଚିକିତ୍ସା ନ କଲେ ଗୋସାଇଁ ।
ତିଳେ ହେଲେ ସୁଦ୍ଧା ଶାନ୍ତି କେଭେଁ ନ ମିଳିବ
ଅଶାନ୍ତି ସାଗରେ ସଦା ବୁଡ଼ି ମରୁଥିବ ।
ବିଷୟ-ଭୋଗେ ଆସକ୍ତି ଯେଉଁ ପୁରୁଷର
ଦିନୁ ଦିନ ବଢ଼ି ଚାଲୁଥାଏ ରଘୁବୀର ।
ନିଜ ଶରୀର ମଧ୍ୟରେ ସେହି ଯେ ପୁରୁଷ
ତୃଣ ରାଶି ମାତ୍ର ସଞ୍ଚୁ ଥାଏ ରଘୁଈଶ ।
କାଳବଳେ ତୃଣରାଶି ପ୍ରଜ୍ୱଳିତ ହୋଇ
ସେ ପୁରୁଷ ଚିତ୍ତ ସଦା ଦଗ୍ଧ କରୁଥାଇ ।
ବେଦଜ୍ଞମାନଙ୍କ ମତେ ଇଚ୍ଛା ବରଜନ
ଶାନ୍ତି ପାଇଁ ସର୍ବଶ୍ରେଷ୍ଠ ପନ୍ଥାହିଁ ଶ୍ରୀରାମ ।
ଯେ ହେତୁ ଇଚ୍ଛାହିଁ ଚିତ୍ତ ହୋଇଲା ପ୍ରମାଣ
ଚିତ୍ତରୂପୀ-ଇଚ୍ଛା ଉପଶମ, ମୁକ୍ତି ଜାଣ ।
ଯେଉଁ ପରିମାଣ ଇଚ୍ଛା ଜୀବର ହୃଦରେ
ଜନମ ଲଭିଣ ଥାଏ ଆହେ ରଘୁବୀରେ,
ସେହି ପରିମାଣ ଦୁଃଖବୀଜ ତା ଅନ୍ତରେ
ଅଙ୍କୁରିତ ହୋଇଥାଏ ଜାଣ ରଘୁବୀରେ ।
ବିବେକ ବଳେ ସେ ଇଚ୍ଛା ଯେତେ କ୍ଷୟ ହୁଏ
ସମ ପରିମାଣ ଦୁଃଖ ଉପଶମ ପାଏ ।
ନିଜ ଚେଷ୍ଟାରୂପ ଅଉଷଧି ପ୍ରୟୋଗରେ
ଇଚ୍ଛା ରୂପ-ବ୍ୟାଧି ଚିକିତ୍ସିତ ନ ହୋଇଲେ,
ଅନ୍ୟ କେଉଁ ଔଷଧିରେ ତାହାର ଚିକିତ୍ସା,
ହୋଇପାରେ ବୋଲି ମୋର ନ ଆସେ ଭରସା ।

ନିଃଶେଷ ରୂପେ ଇଚ୍ଛାକୁ ନାଶି ନ ପାରିଲେ
ଅଳ୍ପ ଅଳ୍ପ କରି କ୍ରମେ ବିନାଶିବ ହେଳେ ।
ଥରେ ମାତ୍ର ସତପଥେ କଲେ ବିଚରଣ
କ୍ରମେ ଶୁଭଫଳ ତହୁଁ ହୋଇବ ଉତ୍ପନ୍ନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଇଚ୍ଛା ବିନାଶ ବର୍ଣ୍ଣନେ**
**ନାମ ଚତୁର୍ବିଂଶ ସର୍ଗ ! ।**



## ପଞ୍ଚବିଂଶ ସର୍ଗଃ
## ଜଗତ୍‌ଭାବ ବର୍ଣ୍ଣନ

ଆତ୍ମା ଅତିରିକ୍ତ ଯେବେ କୌଣସି ପଦାର୍ଥ
ରହିଛି ବୋଲିଣ ଭାବ ଆହେ ରଘୁନାଥ ।
ତାର ପ୍ରାପ୍ତି ପାଇଁ ଇଚ୍ଛା ହୋଇଲେ ତୁମର
ତା ବିରୁଦ୍ଧେ କିଛି ଯୁକ୍ତି ନାହିଁ ଯେ ମୋହର ।
କିନ୍ତୁ ସେହିପରି ଯେଣୁ କିଛି ନାହିଁ ଭବ
ଆତ୍ମାମୟ ସର୍ବବସ୍ତୁ ଯେ ଘେନି ରାଘବ ।
ଇଚ୍ଛା କରିବାରେ ତୁମ କିସ ପ୍ରୟୋଜନ
ତେଣୁ ସେ ଇଚ୍ଛାକୁ ମୂଳୁ କର ନିବାରଣ ।
ଆକାଶରୂପୀ ଏକହିଁ ବ୍ରହ୍ମ ଯେଣୁ ରାମ
ଜ୍ଞେୟ, ଜ୍ଞାନ, ଜ୍ଞାତା, ଜଗତ୍‌ରୂପେ ବିଦ୍ୟମାନ
ସେହି ବ୍ରହ୍ମ ଭିନ୍ନ ଅନ୍ୟ କିଛି ପ୍ରାପ୍ତି ପାଇଁ
ତୁମ ଇଚ୍ଛା ବଳଇ କି କହ ରଘୁସାଇଁ ?
ଗ୍ରାହ୍ୟ, ଗ୍ରାହକ, ଗ୍ରହଣ ଏ ତିନି ରୂପେଣ
ଦେଦୀପ୍ୟମାନ ରହିଛି ତୁମ ଆତ୍ମା ଜାଣ ।
ତେଣୁ ଅଜ୍ଞଜନ ପରି ତୁମର ହେ ରାମ
ଅଲବ୍ଧ କିଛିହିଁ ନାହିଁ ଭଲରୂପେ ଜାଣ ।
ତତ୍ତ୍ୱଜ୍ଞାନ ଉଦୟରେ ମିଥ୍ୟା-ଅହଙ୍କାର
ଆତ୍ମାରେ ବିଲୀନ ହୁଏ ଦଶରଥ ବାଳ ।
ଅହଂଭାବ ବିଲୋପରେ ଗ୍ରାହ୍ୟ, ଗ୍ରାହକାଦି
କିଛି ରହି ନ ପାରନ୍ତି ଜାଣ ରଘୁନିଧି ।
ତାହାକୁ ପଣ୍ଡିତ ଗଣ ନିର୍ବାଣ କହନ୍ତି
ନିର୍ବାଣ ଦେଇଣ ଥାଏ ସେ ପରମ ଶାନ୍ତି ।
ଜନ୍ମ ମରଣାଦି ଦୁଃଖ ବିହୀନ ନିର୍ବାଣ
ଜ୍ଞାନୀଜନ ଅନୁଭବ କରିଥାନ୍ତି ଜାଣ ।
ଦୃଶ୍ୟାଦି ପଦାର୍ଥ ଯେଣୁ ମିଥ୍ୟା, ଭ୍ରାନ୍ତିପୂର୍ଣ୍ଣ
ଯେଣୁ କେବଳ ଦୁଃଖ ହିଁ ତହୁଁ ଉତପନ୍ନ,
ତାହାଙ୍କ ଭାବନା ତେଣୁ ପରିତ୍ୟାଗ କରି
ନିର୍ବାଣ ପଦେ ଆରୋହ ଆହେ ଧନୁର୍ଦ୍ଧାରୀ ।
ଶିବମୟ ଅଟେ ଏ ନିଖିଳ ବିଶ୍ୱ ରାମ
ଚିନ୍ମାତ୍ର ବ୍ୟତୀତ ତାହା ନୁହେଁ କିଛି ଆନ ।
ଇଚ୍ଛାର ଉଦୟ ତହିଁ ହୋଇବ କିପରି ?
ଅସମ୍ଭବ କି ସମ୍ଭବ କେବେ ହୋଇପାରି ?
ଶ୍ରୀରାମ କହନ୍ତି ତେବେ ଆହେ ମୁନିବର
ତୁମର ବଚନ ଯଦି ସତ୍ୟ ନିରାଧାର,
ଇଚ୍ଛା ଉଦୟରେ ତେବେ କିସ ହାନୀ ଥାଇ ?
ଯେହେତୁ ଇଚ୍ଛା ବି ବ୍ରହ୍ମ ଅଛ ତୁମେ କହି ।
ବଶିଷ୍ଠ କହନ୍ତି ଶୁଣ ହେ ରଘୁନନ୍ଦନ
ନିରାଟ ସତ୍ୟ ତା ଯାହା କହିଲ ଆପଣ ।
କିନ୍ତୁ ବୁଝିରଖ ତୁମେ ଆହେ ରଘୁବୀର
ଇଚ୍ଛାକୁ ବ୍ରହ୍ମ ମଣଇ, ତତ୍ତ୍ୱଜ୍ଞ କେବଳ ।
ଅତତ୍ତ୍ୱଜ୍ଞ ପକ୍ଷେ ଇଚ୍ଛା ଅନିଷ୍ଟ ଜନକ
ଏଥିରେ ସନ୍ଦେହ ନାହିଁ ହେ ରଘୁନାୟକ ।
ତାହାଙ୍କ ପାଇଁ କେବଳ ଇଚ୍ଛାର ନିଷେଧ
କରାଯାଇଅଛି ଜାଣ ରଘୁକୁଳ ଚନ୍ଦ୍ର ।
ତତ୍ତ୍ୱଜ୍ଞାନ ଉଦୟରେ ଇଚ୍ଛା ସ୍ୱୟଂ ଲୁପ୍ତ
ଦୃଶ୍ୟରେ ଆସକ୍ତି ଅବା ଦ୍ୱେଷ ପାଏ ଅସ୍ତ ।
ତଥାପି ଅନ୍ୟଲୋକର ଉପକାର ପାଇଁ
ତତ୍ତ୍ୱଜ୍ଞାନୀ ଯେବେ ଇଚ୍ଛା ପ୍ରକାଶ କରଇ,
ତେବେ ସେ ଇଚ୍ଛାକୁ ସେହୁ ଜାଣ ରଘୁରାଣ
ବ୍ରହ୍ମରୂପରେ କ୍ରରୁଣ ଥାଏ ଦରଶନ ।
ଭୋଗ ବିଷୟରେ ତତ୍ତ୍ୱଜ୍ଞାନୀ ମାନଙ୍କର
କୌଣସି ଇଚ୍ଛା ଜନମ ନ ହୁଏ ଅନ୍ତର ।
ପୂର୍ବ ଅଭ୍ୟାସ ଅଥବା ପ୍ରାରବ୍ଧ ଜନିତ
ଯେବେ ବା କୌଣସି ଇଚ୍ଛା ଜନ୍ମେ ତାଙ୍କ ଚିତ୍ତ,
ଚିରସ୍ଥାୟୀ ନୋହି ତାହା ରହେ କ୍ଷଣସ୍ଥାୟୀ
ତତ୍ତ୍ୱଜ୍ଞ ମନରେ କିଛି କାମନା ନ ଥାଇ ।
ବିଧି ବା ନିଷେଧ ଏହି ଦୁଇରୁ ଅତୀତ
ତତ୍ତ୍ୱଜ୍ଞାନୀ ଜନ ଅଟେ ଆହେ ରଘୁନାଥ ।
"ଏହି ବିଶାଳ ଜଗତ ଖାଲି ଶିବମୟ"
ଏପରି ଜ୍ଞାନ ଉଦୟ ହୁଏ ଯା ହୃଦୟ,

ପଥର ପରି ଅଟଳ ସେହି ବିଶ୍ୱାସରେ
ଯେଉଁ ଜନ ରହିପାରେ ଆହେ ରଘୁବୀରେ,
ବାସ୍ତବ ଜ୍ଞାନୀ ବୋଲିଣ ତାହାଙ୍କୁ ଜାଣିବ
ଏ ବିଷୟେ ଭିନ୍ନ ମତ କେଭେଁ ନ ପୋଷିବ ।
ପରମ କଲ୍ୟାଣ ମୟ ଅଟେ ସେ ପୁରୁଷ
ବିଶ୍ୱବ୍ୟାପୀ ପୁଣି ବିଶ୍ୱାତୀତ, ଜ୍ଞାନାକାଶ
ଏ ନଶ୍ୱର ଅହଂଭାବ ତାଠାରେ ନ ଥାଇ
ଥିଲେ ତାହା ଭ୍ରାନ୍ତିମୟ ନିଃସନ୍ଦେହ ଏହି ।
ବାସ୍ତବରେ ଅହଂଭାବ ହେଲେହେଁ ଅସତ୍ୟ
ଭ୍ରାନ୍ତିବଶ ସତ୍ୟପରି ହୁଅଇ ପ୍ରତୀତ ।
ବିଷୟ ଜ୍ଞାନ ନ ଥାଇ ତତ୍ତ୍ୱଜ୍ଞ ଜନର
ଇଚ୍ଛା, ଅନିଚ୍ଛା, ସମାନ ହେଲେହେଁ ତା'ଠାର,
ମୋ ମତରେ ଅନିଚ୍ଛା ହିଁ ଇଚ୍ଛାଠାରୁ ଜାଣ
ଶ୍ରେୟସ୍କର କିନ୍ତୁ ଏହି କ୍ଷେତ୍ରେ ହେ ଶ୍ରୀରାମ ।
ଚିଦାକାଶରୂପୀ ଆତ୍ମା ମଧ୍ୟେ ଅହଂଭାବ
ବିନାକାରଣେ ଉତ୍ପନ୍ନ ହୁଅଇ ରାଘବ ।
ଦୃଶ୍ୟବସ୍ତୁରେ ଆତ୍ମାର ଯେ ଉନ୍ମୁଖୀ ଭାବ
ତାହାହିଁ ଚିତ୍ତ, ସଂସାର, ଇଚ୍ଛା, ହେ ରାଘବ ।
ସେ ଦୃଶ୍ୟପାଇଁ ତାହାର ଯେ ବିମୁଖୀ ଭାବ
ମୁକ୍ତି ନାମରେ ବିଦିତ ତାହାହିଁ ଜାଣିବ ।
ଏହି ତତ୍ତ୍ୱ ମନେ ରଖି କୌଶଲ୍ୟା କୁମର
ସକଳ ବିଷୟ-ଅନୁରାଗ ତ୍ୟାଗ କର ।
ଆତ୍ମା ଛଡ଼ା ଅନ୍ୟ ବସ୍ତୁ ଯେଣୁ କିଛି ନାହିଁ
ଇଚ୍ଛା, ଅନିଚ୍ଛାରେ କ୍ଷତି ହୋଇବ କିମ୍ପାଇଁ ?
ଚିଦାକାଶ ଯେଣୁ ତତ୍ତ୍ୱ ସ୍ୱରୂପ ଅଟଇ
କୌଣସି କଳ୍ପନା ତହିଁ ରହି ନ ପାରଇ ।
ଭ୍ରାନ୍ତିଜ୍ଞାନର ପ୍ରାବଲ୍ୟ ରହିଛି ଯା' ଠାରେ
ତାର ଦୁଃଖ ନିବାରଣ ପାଇଁ ଏ ସଂସାରେ,
ବିଧି-ନିର୍ଦ୍ଦିଷ୍ଟ କୌଣସି ଉପାୟ ହିଁ ଜାଣ
ତାର ପକ୍ଷେ ଫଳପ୍ରଦ ନୁହେ କଦାଚନ ।
ହୃଦୟର ଭ୍ରମଜ୍ଞାନ ଦୂର କରିବା ହିଁ
ସର୍ବାଗ୍ରେ ତାର କର୍ତ୍ତବ୍ୟ ଜାଣ ରଘୁସାଇଁ ।
ନିଜ ହୃଦୟରେ ତେଣୁ ସକଳ ବସ୍ତୁରେ
ବ୍ରହ୍ମସତ୍ତା ଅନୁଭବ, ଶ୍ରେୟ ମୋ ମତରେ ।
ଯେ କାରଣୁ ଚିଦାକାଶ ନିଜେ ନିଜଠାରେ
ଏହି ଜଗତ ଦର୍ଶନ କରେ ରଘୁବୀରେ,

ତେଣୁ ପୃଥିବ୍ୟାଦି ସର୍ବ ବସ୍ତୁ ରଘୁରାଣ
ଚିଦାକାଶମୟ ନିଃସନ୍ଦେହ, ଏହା ଜାଣ ।
ଚିତ୍ ସାଗରରେ ଯେଉଁ ଜଗତ-ତରଙ୍ଗ
ଉତ୍‌ଥିତ ହେଉଅଛଇ ଆହେ ମହାଭାଗ,
ଚିତ୍ ଛଡ଼ା ଅନ୍ୟ ଦୃଶ୍ୟ ପଦାର୍ଥ ସବୁର
ସେହି ତରଙ୍ଗେ ଉଦୟ ହେବ କି ପ୍ରକାର ?
ଦୃଶ୍ୟ ପଦାର୍ଥର ଯେଣୁ ଏକାନ୍ତ ଅଭାବ
ଏ ଜଗତ ମିଥ୍ୟା ସ୍ଥିର ହେଲା ହେ ରାଘବ ।
ମହାକାଶେ ସିଦ୍ଧଗଣ ସଙ୍କଳ୍ପ-ସମ୍ଭୂତ
ଅସଂଖ୍ୟ ଗ୍ରାମ୍, ନଗର, ଯଥା ଅବସ୍ଥିତ,
ବ୍ରହ୍ମମଧ୍ୟେ ଶତ ଶତ ସହସ୍ର ଜଗତ
ସେହିପରି ପ୍ରକାଶିତ ଆହେ ରଘୁନାଥ ।
ଏ ସମସ୍ତ ମଧ୍ୟେ କିଛି ପଦାର୍ଥ ବୋଲିଣ
ନାହିଁ ବୋଲି ଜାଣିରଖ ଆହେ ରଘୁରାଣ ।
ସେ ସମସ୍ତ ଚିଦାକାଶ ଜାଣ ହେ ରାଘବ
ଚିଦାକାଶେ ଅନ୍ୟ କା'ର ସ୍ଥିତି ଅସମ୍ଭବ ।
ଯଥା ସିଦ୍ଧ ଯୋଗୀଗଣ ଯୋଗ ପ୍ରଭାବରେ
ଗମନ କରୁଣ ଥାନ୍ତି ଲୋକ ଲୋକାନ୍ତରେ,
ସେହିପରି ଏହି ସର୍ବାକାଶମୟ-ଲୋକ
ପରିଦୃଷ୍ଟ ହୋଇଥାନ୍ତି ହେ ରଘୁନାୟକ ।
ଚିଦାକାଶମୟ ସେହି ଆତ୍ମାର ହେ ରାମ
ଜଗତ ଦର୍ଶନ ଏକ ଆମୋଦ ଉଦ୍ୟମ ।
ତାଙ୍କ ତହିଁ ଏ ଜଗତ ଅବା ପ୍ରାଣୀଗଣ
ନ ହୁଅନ୍ତି ଉତପନ୍ନ କିବା ବିନାଶନ ।
ସ୍ଫଟିକ ମଣିରେ ରେଖା ଦେଖାଗଲାପରି
ଏ ସକଳ ମିଥ୍ୟା, ପରିଦୃଷ୍ଟ ସେହିପରି ।
ଆକାଶମୟ ଏ ସବୁ ଜଗତ ହେ ବୀର
ସଦା ସମ୍ମିଳିତ ରହିଲେ ହେଁ ପରସ୍ପର,
ମନେ ହୁଏ ସତେ ଯେହ୍ନେ ପୃଥକ ଭାବରେ
ଅବସ୍ଥା ନ କରିଛନ୍ତି ଆହେ ରଘୁବୀରେ ।
ଯେଣୁ ସଙ୍କଳ୍ପ ସମ୍ଭୂତ ଅଟେ ଏ ଜଗତ
ତେଣୁ ତା ଆକାଶମୟ ଜାଣ ରଘୁନାଥ ।
ଯାହାକୁ ଯେଉଁ ପ୍ରକାର ହୁଏ ଅନୁଭୂତ
ତା ନିକଟେ ତାହା ସେହି ଭାବରେ ପ୍ରତୀତ ।
ସଙ୍କଳ୍ପ କ୍ଷୟ ହୋଇଛି ଯେଉଁ ଯୋଗୀଙ୍କର
ଜଗତ ଯଥାର୍ଥ ଭାବେ ସୂକ୍ଷ୍ମ ତା ଆଗର ।

ଚିତ୍‌ସ୍ୱରୂପ ବ୍ରହ୍ମଙ୍କ ଯେ ପ୍ରକାଶ ଶକ୍ତି
ଶ୍ରୋତୃଗଣ ! ତୁମ ହୃଦେ ତାର ଅବସ୍ଥିତି ।
ସେହି ଶକ୍ତି ତୁମ ମାନଙ୍କର ନିକଟରେ
ପ୍ରକାଶ ପାଉଅଛଇ ଜଗତ ଆକାରେ
ଜଳେ ଦ୍ରବଭାବ ସମ ଆହେ ସୁଧିଗଣ
ବ୍ରହ୍ମ, ଜଗତ ମଧ୍ୟରେ ଭେଦ ନାହିଁ ଜାଣ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଜଗତଭାବ ବର୍ଣ୍ଣନେ**
**ନାମ ପଞ୍ଚବିଂଶ ସର୍ଗଃ ।**



## ଷଷ୍ଠବିଂଶ ସର୍ଗଃ
## ନିର୍ବାଣ ଯୋଗ

କହନ୍ତି ବଶିଷ୍ଠ ଶୁଣ ସଭାସଦ ଗଣ
ଜଗତ ବିଷୟେ ଅଛି ଯାହା ନିର୍ଦ୍ଧାରଣ ।
ବ୍ରହ୍ମଙ୍କ କଳ୍ପିତ ଅଟେ ଯେ ବହିର୍ଜଗତ
ଆବର ପ୍ରାଣୀଙ୍କ ଚିତ୍ତ-ନିର୍ମିତ ଜଗତ,
ଜ୍ଞାନୀଙ୍କ ମତରେ ଏହି ଉଭୟ ଜଗତ
ଏକ ବୋଲିକରି ହୋଇଅଛି ସ୍ଥିରୀକୃତ
କାନ୍ଥରେ ଖୋଦିତ ପୁତ୍ତଳିକା ଯେଉଁପରି
କାନ୍ଥରୁ ପୃଥକ ନୁହେ ହେ ଭଦ୍ରମଣ୍ଡଳି
କିନ୍ତୁ ସେ ପୃଥକରୂପେ ହୁଅଇ ପ୍ରତୀତ
ସେହିପରି ଅପୃଥକ ଆତ୍ମା ଓ ଜଗତ ।
ଜ୍ଞାନସ୍ୱରୂପ ଆତ୍ମାରୁ ଜଗତ ଅଭିନ୍ନ
ଭ୍ରାନ୍ତିବଶେ ଜଣାଯାଏ ସତେ ଅବା ଭିନ୍ନ ।
ସତ୍ୟ ସନାତନ ବ୍ରହ୍ମ ଯେଣୁ ସର୍ବମୟ
ତେଣୁ ଯା ଦେଖୁଛୁ ଆମେ ସବୁ ବ୍ରହ୍ମମୟ ।
ସେହି ଯେଣୁ ସର୍ବମୟ ହୋଇ ରହିଛନ୍ତି
ଜଣାଉ ଅଛି ମୁଁ ତାଙ୍କୁ ଅନ୍ତର ଭକତି ।
ଦୃଶ୍ୟ ବସ୍ତୁ ଦ୍ରଷ୍ଟାସହ ହେଲେ ଏକୀଭୂତ
ତେତେବେଳେ ତାହା ହୋଇଥାଏ ଅନୁଭୂତ ।
ଚିନ୍ମୟ ନୁହନ୍ତା ଯଦି ଏ ବସ୍ତୁ ସକଳ
ସମ୍ଭବ ହୁଅନ୍ତା କାହୁଁ ଦୁହିଙ୍କର ମେଳ ।
ଚିତ, ଜଡ଼ ଯଦି ହୁଅନ୍ତେ ବିପରୀତ ଧର୍ମୀ
ଏକୀଭୂତ କେବେ ନୋହି ଥାନ୍ତେ ରଘୁମଣି ।
ଜଳେ ଜଳ ମିଶି ଯଥା ହୁଏ ଏକୀଭୂତ
ଦ୍ରଷ୍ଟାସହ ଦୃଶ୍ୟ ମିଶି ଲଭଇ ଏକତ୍ୱ !
ତେଣୁକରି ତାହା ହୋଇଥାଏ ଅନୁଭୂତ
ମୋ ବଚନ ଶ୍ରୋତୃବର୍ଗ ଏବେ ବୁଝିଲତ ?
ଅବା ପାଖେ ପାଖେସ୍ଥିତ ଦୁଇ କାଠ ପରି
କିଏ କାହାକୁ ନଜାଣି ରହନ୍ତି ଯେପରି ।
ତେଣୁ ଆକାଶରେ ଦୃଷ୍ଟ ନଗର ଯେପରି
କାଳ୍ପନିକ ମାତ୍ର ତାହା ହେ ସୁଧିମଣ୍ଡଳୀ ।
ତଥା ଜଗତ ଆକାରେ ଯାହା ପ୍ରତିଭାତ
ଅନ୍ୟ କିଛି ନୁହେଁ ତାହା ଆକାଶ ବ୍ୟତୀତ ।
ବ୍ରହ୍ମଙ୍କ ବ୍ୟତୀତ ତାହା ନୁହେ କିଛି ଆନ
ବୁଝି ରଖିଥିବ ଏହା ଆହେ ଶ୍ରୋତୃଗଣ ।
ଅନ୍ୟ ବୋଲି ଯାହା କିଛି ହୁଅଇ ପ୍ରତୀତ
ଜାଣିରଖ ତାହାସବୁ କଳ୍ପନା ସମ୍ଭୂତ ।
ଅହଂଭାବ ତେଜି ଯେହୁ ଚିନ୍ମୟ ସହିତ
ପୂର୍ଣ୍ଣଭାବେ ହୋଇପାରିଛନ୍ତି ଏକୀଭୂତ,
ବ୍ରହ୍ମାନନ୍ଦମୟ ସେହି ଜ୍ଞାନୀଙ୍କ ନିକଟ
ଅଣିମାଦି ଅଷ୍ଟସିଦ୍ଧି ଅଟନ୍ତି କିଙ୍କୃତ ।
ଯାହାଠାରେ ଦ୍ୱୈତ ଜ୍ଞାନ ନୁହଇ ଉଦିତ
ବୈଭବ, ଦାରିଦ୍ର୍ୟ ଯହିଁ ଲଭଇ ସମତ୍ୱ ।
ସେ ମହାପୁରୁଷଙ୍କର ମହିମା ବର୍ଣ୍ଣନ
କରିବାକୁ ସମର୍ଥ କେ ହେବ ସଭାଜନ ?
ବିଘ୍ନର ଅଭାବେ ଅହଂଭାବଟି ବର୍ଦ୍ଧିତ
ବିଘ୍ନର ବଳେ ନ ରହେ ତାହାର ଅସ୍ତିତ୍ୱ ।
ପଦାର୍ଥ ଦର୍ଶନେ ମନ ହୁଅନ୍ତେ ନିବୃତ୍ତ
ଆତ୍ମ-ଦରଶନ ସିଦ୍ଧି ହେବ ରଘୁନାଥ ।
ଅହଂଭାବ, ଇଚ୍ଛା, ମନନାଦି ତେଜି କରି
ନିର୍ବାଣରେ ଅବସ୍ଥାନ କର ମୁନି-ପରି ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ନିର୍ବାଣ ଯୋଗ ବର୍ଣ୍ଣନେ**
**ନାମ ଷଷ୍ଠବିଂଶ ସର୍ଗଃ ।**



## ସପ୍ତବିଂଶ ସର୍ଗଃ
## ବଶିଷ୍ଠଗୀତା ଉପଦେଶ

କହନ୍ତି ବଶିଷ୍ଠ ରାମ ! ଭ୍ରାନ୍ତ ପୁରୁଷର
ଅହଂଭାବ ମଳିନତା ଜନମେ ଅନ୍ତର ।

ତତ୍ତ୍ୱଜ୍ଞ ନିକଟେ ସେହି ମଳିନତା ଜାଣ
ବିନାଯତ୍ନେ ଦୂରୀଭୂତ ହୋଇଯାଏ ରାମ ।
ଚିତ୍ତରୂପ ଆବରଣ ଯାହାର ନିକଟ
ଚିରକାଳ ପାଇଁ ହୋଇ ଯାଇଅଛି ନଷ୍ଟ,
ବ୍ରହ୍ମାନନ୍ଦରୂପେ ସଦା ସେ ବିଜ୍ଞ ପୁରୁଷ
ବିରାଜିତ ରହିଥାଏ ଜାଣ ରଘୁଈଶ ।
ସନ୍ଦେହ, ସଂସାର ଯାର ହୋଇଅଛି ଦୂର
ସର୍ବବିଧ ଆବରଣ ବିନଷ୍ଟ ଯାହାର
ବ୍ରହ୍ମଜ୍ୟୋତି ଲାଭ କରିଅଛି ଯେଉଁ ଜନ
ଆତ୍ମା ବୋଲି ସର୍ବେ ତାକୁ କରିଥାନ୍ତି ଜ୍ଞାନ ।
ଶାନ୍ତ ନିଃସଙ୍କଳ୍ପ ସେହି ଜ୍ଞାନୀ ବ୍ୟକ୍ତି ଜାଣ
ବ୍ରହ୍ମଲୋକେ ପ୍ରବାହିତ ବାୟୁର ସମାନ,
ସ୍ପର୍ଶମାତ୍ରେ ସେହୁ କରେ ସବୁଙ୍କୁ ପବିତ୍ର
ଶାନ୍ତ, ନିଃସଙ୍କଳ୍ପ ଜ୍ଞାନୀ ଗୁଣ ଯେ ଏମନ୍ତ ।
ମିଥ୍ୟା ହେଲେ ହେଁ ଜଗତ ତାହାକୁ ସମସ୍ତେ
ପ୍ରତ୍ୟକ୍ଷ କରୁଅଛନ୍ତି ଆହେ ମହାମତେ ।
ଭ୍ରାନ୍ତିଜ୍ଞାନର ସ୍ୱଭାବ ଅଟଇ ତା ଜାଣ
ଏଥିରେ ସନ୍ଦେହ ନାହିଁ ସଭାସଦ ଗଣ ।
ବାସ୍ତବରେ ଏହି ମିଥ୍ୟା-ସଂସାର ମଧ୍ୟରେ
ବ୍ରହ୍ମ ବିନା ଅନ୍ୟକିଛି ନାହିଁ ନିଶ୍ଚିତରେ ।
ଜଗତ, ବ୍ରହ୍ମ ନୁହନ୍ତା ଯଦି ରଘୁବୀର
ତାର ଅନୁଭବ ହେଉଥାନ୍ତା କି ପ୍ରକାର ?
ଆମେ, ତୁମେ, ଅନ୍ୟସବୁ କେଉଁ ପରକାରେ
ଅନୁଭବ କରୁଥାନ୍ତେ କେବଣ ରୂପରେ ?
ବିଶ୍ରାନ୍ତି ଲଭିପାରିଲେ ଆତ୍ମ ସ୍ୱରୂପରେ
ଅହଂତ୍ୱ, ଜଗତ, ସୁଖ, ଦୁଃଖ ସବୁ ସରେ ।
କେବଳ ଚିନ୍ମୟ ଆତ୍ମା ତଥା ସେହି ବ୍ରହ୍ମ
ପ୍ରକାଶମାନ ରହନ୍ତି ଜାଣ ହେ ଶ୍ରୀରାମ ।
କେବଳ ବ୍ରହ୍ମେ ସଂସ୍ଥିତ ଅଟେ ଯାର ଚିତ୍ତ
ଜଗତ୍‌ଭ୍ରମ ତିଷ୍ଠି ନ ପାରଇ ତା ନିକଟ ।
ଜଗତ-ଭ୍ରାନ୍ତି ବିରାଜେ ଅନ୍ତରେ ଯାହାର
ବ୍ରହ୍ମ-ନିର୍ବାଣ ପ୍ରାପତି ନୁହଇ ତାହାର ।
ନିର୍ବାଣ-ପଦ ଆରୁଢ଼ ହୋଇଛି ଯେ ଜନ
ଜଗତ ଦର୍ଶନ ତାର ନୁହେ କଦାଚନ ।
ତତ୍ତ୍ୱଜ୍ଞାନ ଉଦୟରେ ଭ୍ରାନ୍ତି ଅସ୍ତ ଯାଇ
ତେଣୁ ତାହା ମିଥ୍ୟା ବୋଲି ବିବେଚିତ ହୋଇ ।
ବ୍ରହ୍ମର ସ୍ୱଭାବ ବୋଲି ଯେବେ ଏ ଜଗତ
ପରିଜ୍ଞାତ ହୋଇଯାଏ ଆହେ ରଘୁନାଥ ।
ତେବେଟି ପରମଶାନ୍ତି ହୋଇବ ପ୍ରାପତ
ନୋହିଲେ ସଂସାର ଦୁଃଖ ଘାରିବ ସତତ ।
ଏହି କଥା ମନ ମଧ୍ୟେ କରିଣ ବିଚାର
ସକଳେ ସ୍ୱୀୟ କର୍ତ୍ତବ୍ୟ କରୁଥିବ ସ୍ଥିର ।
ବାଦକ ଯେପରି ବାଦ୍ୟ ବଜାଉଣ ଥାଏ
ତୁମ ଆମ ମଧ୍ୟେ ସେହିପରି ରଘୁରାଏ ।
ସେ ଚିନ୍ମୟ ବ୍ରହ୍ମ କରୁଥାନ୍ତି ଉଚ୍ଚାରଣ
ଅହଂଭାବାପନ୍ନ ନାନା ଶବ୍ଦ ଅର୍ଥ ମାନ ।
"ମୁହିଁ ଯେ ବଶିଷ୍ଠ ରୂପେ ଦିଏ ଉପଦେଶ
ଏହି ଜ୍ଞାନ ଭ୍ରାନ୍ତି ପୂର୍ଣ୍ଣ ଜାଣ ରଘୁଈଶ ।
"ମୋହର ବଶିଷ୍ଠ ଜ୍ଞାନ, ମୋର ଉପଦେଶ"
ବ୍ରହ୍ମର ବିବର୍ତ୍ତ ମାତ୍ର ଆହେ ରଘୁଶିଷ୍ୟ ।
ଏହିପରି ଜ୍ଞାନ ଜାଣ ଅଟେ ସତ୍ୟ ଜ୍ଞାନ
ସ୍ୱଳ୍ପ ମାତ୍ର ଭ୍ରାନ୍ତି ତହିଁ ନ ରହିଟି ଜାଣ ।
ପ୍ରାଣୀଙ୍କ ସଂସାରଭାବ ପୁଣି ମୁକ୍ତି ଚେଷ୍ଟା
ବ୍ରହ୍ମର ବିବର୍ତ୍ତ ମାତ୍ର ଜାଣ ଧନୁହସ୍ତା ।
ମୋହବଶେ ଭିନ୍ନ ଭିନ୍ନ ବୋଧହୁଏ ତାହା
ପାଶୋରି ନ ଦେବ ଏହା ଆହେ ରଘୁନାହା ।
ମୁକ୍ତ ହେଲାକ୍ଷଣି ଆତ୍ମା ବ୍ରହ୍ମପଦ ପାଏ
ତା ପାଇଁ ଅଜ୍ଞାନ ନାଶ ଏକଇ ଉପାୟେ ।
ଯାଗ, ଯଜ୍ଞ, ବନ୍ଧୁ, ବଇଭବ ଆଦିକରି
ମୁକ୍ତି ପଥରେ ସାହାଯ୍ୟ କେ ଦେଇ ନ ପାରି ।
ଜାଗରଣେ ଯଥା ମିଥ୍ୟା ହୁଅଇ ସ୍ୱପନ
ଜଗଦର୍ଶନ ବିବେକୀ ପକ୍ଷରେ ତେସନ ।
ସେପରି ପୁରୁଷ ପାଇଁ ଏକମାତ୍ର ବ୍ରହ୍ମ
ଅବଶିଷ୍ଟ ରହିଥାଏ ହେ ରଘୁନନ୍ଦନ ।
ଉଦିତ ହୁଅନ୍ତେ ରାମ ଏ ବ୍ରହ୍ମ-ତପନ
ଭୋଗ-ଅନ୍ଧକାର ଡରେ କରେ ପଳାୟନ ।
କୌଣସି ଅସତବସ୍ତୁ ନୁହେ ଅନୁଭୂତ
ବୁଦ୍ଧିରୁ ଆରମ୍ଭ କରି ଇନ୍ଦ୍ରିୟ ପର୍ଯ୍ୟନ୍ତ
ସ୍ଥୂଳ ଦେହାଦିର ସହବାସ ତେଜି ଦେଇ
ବ୍ରହ୍ମ ଭାବରେ ପ୍ରଦୀପ୍ତ ହୋଇ ରହିଥାଇ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ବଶିଷ୍ଠ ଗୀତା ବର୍ଣ୍ଣନେ**
**ନାମ ସପ୍ତବିଂଶ ସର୍ଗଃ ।**



## ଅଷ୍ଟବିଂଶ ସର୍ଗଃ

## ବଶିଷ୍ଠ ଗୀତା-ସଂସାର୍ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ସଭାସଦ୍ ଗଣ
ବାହ୍ୟାନ୍ତର ବସ୍ତୁଙ୍କର ଉଦ୍ଭବ ଯେସନ ।
ଏହି ମନ, ବୁଦ୍ଧି ଆଉ ଭାବନା, ଇନ୍ଦ୍ରିୟ
ସେମାନଙ୍କ ଜନ୍ମ ଦାତା ଜାଣ ହେ ନିଶ୍ଚୟ ।
ତିରୋଧାନ ଘଟାଇଣ ଏ ଆତ୍ମ ସତ୍ତାର
ପ୍ରକାଶ ହୁଅନ୍ତି ଯେବେ ଶରୀର ମଧ୍ୟର
ତତ୍‌କାଳେ ଏ ଜଗତ-ଭ୍ରାନ୍ତି ଲଭଇ ବିକାଶ
ବାହ୍ୟାନ୍ତରେ ସର୍ବ ବସ୍ତୁ ହୁଅନ୍ତି ପ୍ରକାଶ ।
ଯେତେବେଳେ ପୁଣି କ୍ଷୁଦ୍ରଭାବ ସେ ତେଜନ୍ତି
ସ୍ୱ ସ୍ୱଭାବେ ଅବସ୍ଥାନ ପୁଣି ସେ କରନ୍ତି ।
ସୁଷୁପ୍ତରେ ସ୍ୱପ୍ନ ଯଥା ହୁଅଇ ବିଲୟ
ଜଗତ ଅଦୃଶ୍ୟ ହୁଏ ତଥା ରଘୁରାୟ ।
ବିଷୟ ଭୋଗ ହେ ରାମ ! ଜାଣ ଏକ ରୋଗ
ବନ୍ଧନ କାରଣ ହୋଇଥାନ୍ତି ବନ୍ଧୁବର୍ଗ ।
ସର୍ବ ଅନର୍ଥ କାରଣ ଅଟଇ ଯେ ଅର୍ଥ
ଏହା ବୁଝି ବ୍ରହ୍ମେ ସଦା ହୁଅ ହେ ସଂସ୍ଥିତ ।
ଆତ୍ମାର ସ୍ୱଭାବ ରୂପ ବିଶୁଦ୍ଧି-ଚୈତନ୍ୟ
ଅସ୍ୱାଭାବିକ ରୂପ ତା ଜଗତହିଁ ଜାଣ ।
ସେହି ସ୍ୱାଭାବିକ ରୂପ ଆଶ୍ରୟ କରିଣ
ପରମ ଆକାଶରୂପେ ବିରାଜ ଶ୍ରୀରାମ ।
ନିଜକୁ ବ୍ରହ୍ମସ୍ୱରୂପେ ଚିହ୍ନିଛି ଯେ ଜନ
ତାହାର ନୁହଇ କେଉଁ ଜଗତ ଦର୍ଶନ ।
ଯେତେବେଳେ ପରିଦୃଷ୍ଟ ହୁଏ ଏ ଜଗତ
ନିଜେ ସେ ଯେ ବ୍ରହ୍ମ ଏହା ନୁହେ ଅନୁଭୂତ ।
ଜୀବନମୁକତି ଲାଭ କରିଛି ଯେ ଜନ
ଜଗତ, ବ୍ରହ୍ମ, ଦୁହିଙ୍କୁ ବୁଝେ ଆତ୍ମାସମ ।
ପରିଦୃଶ୍ୟାମନ ବସ୍ତୁ ସକଳେ ହିଁ ମାୟା
ଆତ୍ମାମଧ୍ୟେ କେଉଁ ରହି ନ ପାରେ ତା ଛାୟା ।
ଅଥଚ ଏମାନେ ଏକ ଅଦଭୂତ ଭ୍ରମ
ଭ୍ରମରୁ ଜନମ ଜାଣ ବସ୍ତୁ ଦୃଶ୍ୟମାନ

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ବଶିଷ୍ଠ ଗୀତା ବର୍ଣ୍ଣନେ**
**ନାମ ଅଷ୍ଟବିଂଶ ସର୍ଗଃ ।**



## ଊନତ୍ରିଂଶ ସର୍ଗଃ

## ଜଗତ ଉପଶମ ଯୋଗ

ତୁମେ ଆମେ ଆଦିକରି ଯେତେ ଅନ୍ୟଜନ
ଆତ୍ମାର ଅସ୍ୱାଭାବିକ୍ ମୁରତି ଏମାନ ।
ସେମାନଙ୍କୁ ନିର୍ବାପିତ କରି ଦେଇ ରାମ
ସ୍ୱାଭାବିକ ମୂର୍ତ୍ତି ତାଙ୍କ କର ଦରଶନ ।
ପ୍ରବୁଦ୍ଧ ହୋଇ ପାରିଛି ଯେ ପୁରୁଷ ଚିତ୍ତ
ସେହି ଏମାନଙ୍କୁ କରିପାରେ ନିର୍ବାପିତ ।
ପ୍ରବୋଧ ଅବସ୍ଥା ଜାଣ ଯହିଁ ପରକାଶେ
ବିଷୟ-ବୈରାଗ୍ୟ ରାମ ସେହିଠାରେ ଆସେ ।
ବିଷୟ-ବୈରାଗ୍ୟ ହୁଏ ଯେଉଁଠାରେ ଜନ୍ମ
ଆତ୍ମାର ଅସ୍ୱାଭାବିକ ମୂର୍ତ୍ତି ପାଏ ଲୀନ ।
ଦ୍ୱୈତଭାବ ତେଜି ଆତ୍ମାସ୍ୱରୂପ ଭଜିଣ
ଶାନ୍ତଭାବେ ତେଣୁ ରାମ କର ଅବସ୍ଥାନ ।
କେଉଁ କରନାହିଁ ରାମ ସ୍ୱପ୍ନ ଦରଶନ
ଜାଗ୍ରତ ରହ ବିଷୟ ଆସକ୍ତି ତେଜିଣ ।
ସୁଷୁପ୍ତ ପୁରୁଷ ସମ ଯେଉଁ ଅବସ୍ଥାନ
ତାହାହିଁ ଆତ୍ମାସ୍ୱଭାବ ଜାଣ ରଘୁରାଣ ।
ଆତ୍ମାର ବନ୍ଧନ-ମୁକ୍ତି ତାହାକୁ ହିଁ ବୋଲି
ସେହି ମୁକ୍ତି ଲାଭ କର ତୁମେ ଉପଧାରୀ ।
ପ୍ରଶାନ୍ତ ଓ ଘନ ଚିଦାକାଶରୂପେ ରାମ
ପ୍ରତିଭାତ ହେଉଥାଅ ତୁମେ ଅନୁକ୍ଷଣ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଜଗତ ଉପଶମ ଯୋଗ**
**ବର୍ଣ୍ଣନେ ନାମ ଊନତ୍ରିଂଶ ସର୍ଗଃ ।**



## ତ୍ରିଂଶ ସର୍ଗଃ

## ନିର୍ବାଣ ମୁକ୍ତି ଉପଦେଶ

ପ୍ରଥମେ ଯେ ଚିତ୍ତଭାବ କୂଟସ୍ଥ-ଆତ୍ମାରେ
ଉଦିତ ହୋଇଣ ଥାଏ ଜାଣ ରଘୁବୀରେ ।
ଚିନ୍ମୟ ଆତ୍ମାରୁ ତାହା ନୁହଇ ପୃଥକ
ନାମ ଉପାଧିରେ ଯେଣୁ ନଥାଏ ସମ୍ପର୍କ ।
ଯେଣୁ ନାମ ଉପାଧିରେ ନଥାଇ ଜଡ଼ିତ
ବ୍ରହ୍ମସମ ମଳହୀନ ରହେ ସେହି ଚିତ୍ତ ।

ସେହି ଚିତ୍ତରୁ ଉତ୍ପନ୍ନ ଯେବଣ ଜଗତ
ଏହି ଚିତ୍ତରୁ ତା କେଉଁ ନୁହଇ ସ୍ୱତନ୍ତ୍ର ।
ସେହି ଚିତ୍ତର ଅସ୍ତିତ୍ୱ ଥିବ ଯେତେ କାଳ
ସେ ଜଗତ ତିଷ୍ଠି ରହିଥିବ ତେତେ କାଳ ।
ଯେବେ ଚିତ୍ତ ବ୍ରହ୍ମାକାରେ ହୁଏ ଆକାରିତ
ଜଗତ ବ୍ରହ୍ମରେ ତେବେ ହୁଅଇ ବିଲୁପ୍ତ ।
ବାୟୁର ପ୍ରବାହ ସମ ଆହେ ରଘୁରାଣ
ଆତ୍ମାରହିଁ ବିବର୍ତ୍ତନ ଏ ଜଗତ ଜାଣ ।
ଚିତ୍‌ସ୍ୱରୂପ ଯେ ଆତ୍ମା ଏହି ଜଗତକୁ
ଆତ୍ମାରୂପେ ହିଁ ଦର୍ଶନ କରି ବସେ ତାକୁ ।
ତେଣୁ କରି ଆତ୍ମଦୃଷ୍ଟି ବଳେ ହେ ଶ୍ରୀରାମ
ଜଗତରେ ଭେଦ ଦୃଷ୍ଟି ନ ଆସଇ ଜାଣ ।
ଅନନ୍ତ, ଅନାଦି, ଏକ, ମହାଚଇତନ୍ୟ
ତା ଭିନ୍ନ, ଅନ୍ୟ କାହାର ସତ୍ତା ନାହିଁ ରାମ ।
କେହୁ ତାକୁ କହେ ବ୍ରହ୍ମ, କେହୁ କହେ ଶିବ
ପରମାତ୍ମା ବୋଲି ତାକୁ କେ' କହେ ରାଘବ ।
ସ୍ୱରୂପରେ ରହି ପୁଣି ସେହି ଚଇତନ୍ୟ
ଜ୍ଞେୟ-ଭାବଟି ଗ୍ରହଣ କରେ ହେ ଶ୍ରୀରାମ ।
ସେହି ମହାଚୈତନ୍ୟର ପ୍ରକାଶ ରୂପରେ
ଏ ଜଗତ ଅବସ୍ଥାନ କରେ ତା ମଧ୍ୟରେ ।
ଚିନ୍ମୟ ପରମାକାଶ, ଜଗତ ମଧ୍ୟରେ
ଯେ ଭେଦ ତା ନାମମାତ୍ର, ନୁହେଁ ବାସ୍ତବରେ ।
ଏକମାତ୍ର ସଦ୍‌ବସ୍ତୁ ଯେଣୁ ସେ ଚୈତନ୍ୟ
ଦ୍ୱୈତ ଭାବ ସମ୍ଭାବନା ନାହିଁ ତହିଁ ଜାଣ ।
ଜଗତ ସଦୃଶ ସେହୁ ହୁଏ ପ୍ରତିଭାତ
ଜଗତ ନାମରେ କିଛି ନାହିଁ ତା ବ୍ୟତୀତ ।
ଗଗନ, ତାର ନୀଳିମା ଅଭିନ୍ନ ଯେମନ୍ତ
ବ୍ରହ୍ମଠାରୁ ଭିନ୍ନ ନୁହେଁ ଜଗତ ତେମନ୍ତ ।
ଏତାଦୃଶ ଜଗତକୁ ଜଡ଼ ଆକାରରେ
ଦର୍ଶନ କରିବା ଖାଲି ଭ୍ରାନ୍ତି ରଘୁବୀରେ ।
ସମାଧିରେ ଯେଣୁ ସେହି ଭ୍ରାନ୍ତି ଦୂରୀଭୂତ
ସ୍ୱ ସ୍ୱଭାବେ ବ୍ରହ୍ମ ତେଣୁ ତହିଁ ପ୍ରକାଶିତ ।
ସୁବିବେକ-ଉପଚାର ଦେଇ ତୁମେ ରାମ
ଆତ୍ମଦେବତାଙ୍କ ପୂଜା କର ସମାପନ ।
ବିବେକ ଉପଚାରରେ ପୂଜିତ ହୋଇଣ
ଆନନ୍ଦରୂପ ବର ସେ କରନ୍ତି ପ୍ରଦାନ ।

ହେ ରାମ ! ତୁମର ଆତ୍ମା ତୁମର ଈଶ୍ୱର
ପରମେଶ୍ୱର କେ' ହେବ ତା ବିନା ତୁମ୍ଭର ?
ସତ୍‌ସଙ୍ଗ, ଶମତା ପୁଣି ସୁବିବେକ ଫୁଲ
ଦେଇ ଯେବେ ପୂଜାକର ଆତ୍ମାଦେବତାର
ଦୁର୍ଲଭ ପଦାର୍ଥ ଅଟେ ଯେଉଁ ମୁକ୍ତି ଫଳ
ତତକ୍ଷଣେ ପ୍ରଦାନନ୍ତି ସେହି ଆଦିମୂଳ ।
ବସ୍ତୁର ଯଥାର୍ଥ ଭାବ ହେଲେ ପରିଜ୍ଞାତ
ଆତ୍ମ ଦେବତା ପୂଜନ ହୁଅଇ ସାଧିତ ।
ସେ ପୂଜାର ସର୍ବୋତ୍ତମ ଫଳ ସେ ଦିଅନ୍ତି
ସେ ଫଳ ଅଟଇ ଜାଣ ସଦା ଅସରନ୍ତି ।
ଯେତେ ସତ୍‌କର୍ମ ସାଧନ କରୁଥାଉ ଜନ
ସେ ଯେବେ ହୋଇ ନ ଥାଏ ବିବେକ ସମ୍ପର୍ଣ୍ଣ
ତପସ୍ୟା, ଦେବ ଅର୍ଚ୍ଚନା, ତୀର୍ଥସେବା ଦାନ
ଆବର ଅନ୍ୟାନ୍ୟ ଯେତେ ଶୁଭ ଅନୁଷ୍ଠାନ ।
କେବେହେଲେ ଉପଯୁକ୍ତ ଫଳକୁ ପ୍ରଦାନ
କରି ନ ପାରନ୍ତି ଜାଣ ହେ ରଘୁନନ୍ଦନ ।
ବିବେକୀ ପୁରୁଷମାନେ ସତ୍‌କର୍ମ ଫଳ
ଲାଭ କରି ପାରିଥାନ୍ତି ଦଶରଥ ବାଳ ।
ଯାଗ, ଯଜ୍ଞ ଆଦିକରି ସର୍ବ କର୍ମମାନ
ନିଷ୍କାମ ଭାବରେ ଯେବେ କର ସମ୍ପାଦନ ।
ଚିତ୍ତ ନିର୍ମଳତା ତାହା ଯୋଗୁଁ ଘଟିଥାଇ
ବିବେକ-ପୁରୁଷ ତେଣୁ ସୁପ୍ରସନ୍ନ ହୋଇ ।
ସେ ବିବେକ ପୁରୁଷକୁ ପୁଣି ହେ ଶ୍ରୀରାମ
ଶାନ୍ତିରୂପକ ଅମୃତ କରାଇଣ ପାନ
ବିବର୍ଦ୍ଧିତ କରି ଯେବେ ପାରିବ ତାହାଙ୍କୁ
ସଦ୍ୟ ମୁକ୍ତି ଫଳ ତେବେ ମିଳେ ପୂଜକଙ୍କୁ ।
ବିଷୟ ଲୋଭରେ ସେହି ବିବେକ-ପୁରୁଷ
ନ ହେବ ଶୀର୍ଣ୍ଣ ଯେପରି, ରଖ ଏ ଉଦ୍ଦେଶ୍ୟ ।
ପରମାର୍ଥ ଭାବନାରେ ଦୈହିକ ସତ୍ତାରେ
ଅନାସ୍ଥାବାନ ହୋଇଣ ଆହେ ରଘୁବୀରେ
ଏକମାତ୍ର ଆତ୍ମାଠାରେ ଆସ୍ଥାକୁ ସ୍ଥାପିବ
ତେବେ ତାର ଉପଯୁକ୍ତ ଅର୍ଚ୍ଚନ ହୋଇବ ।
ଯେଉଁ ଉପଦେଶ ଏବେ ଦେଲି ହେ ଶ୍ରୀରାମ
ଗଳ୍ପ ପରି ତାହା ଯେବେ କରିବ ଶ୍ରବଣ
ଚଇତନ୍ୟ ରୂପ ଜଳ ଆଉ ନ ଦେଖିବ
ଜଗତ ମରୀଚିକାହିଁ କେବଳ ଦେଖିବ ।

ନିବିଷ୍ଟ ଚିତ୍ତରେ ମୋର ଉପଦେଶ ଶୁଣି
ଆତ୍ମଦେବଙ୍କୁ ପୂଜନ କର ରଘୁମଣି ।
ତେବେ ନିର୍ବାଣ ଲଭିବା ହେବ ସୁନିଶ୍ଚିତ
ତୁମେ ଯେଣୁ ନିଜେ ସେହି ଅନାଦି ଅନନ୍ତ ।
ସେହି ରୂପକୁ ଧାରଣ କରିବାହିଁ ଜାଣ
ନିର୍ବାଣ ମୁକ୍ତି ତୁମର ହେ ରଘୁନନ୍ଦନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ନିର୍ବାଣ ମୁକ୍ତି ବର୍ଣ୍ଣନେ ନାମ ତ୍ରିଂଶ ସର୍ଗଃ ।**



## ଏକତ୍ରିଂଶ ସର୍ଗଃ

## ବ୍ରହ୍ମ ଏକତ୍ୱ ପ୍ରତିପାଦନ

ବୋଲନ୍ତି ବଶିଷ୍ଠ ବ୍ରହ୍ମଜ୍ଞାନର ଉଦୟେ
ଅହଙ୍କାର ଜଗତାଦି ମିଥ୍ୟା ଜଣାଯାଏ ।
ମୂଢ଼ଜନ ମାନେ ମୋହବଶ ହୋଇକରି
ଭୋକ୍ତା ଜୀବକୁ ହିଁ ଆତ୍ମା ବୋଲି ମନେ କରି ।
ଭୋକ୍ତା ଆତ୍ମା ନୁହେଁ, ବ୍ରହ୍ମ ସର୍ବ ଆତ୍ମା ହୁଏ
ଜ୍ଞାନୋଦୟେ ଏହି ତତ୍ତ୍ୱ ଦେଖାଦେଇ ଥାଏ ।
ଯେତେବେଳେ ଭୋଗ ନ ହୁଅଇ ପ୍ରୀତିକର
ଜାଣିବ ଅଜ୍ଞାନ-ଜ୍ୱର ହୋଇଅଛି ଦୂର ।
ଶୀତଳତା ଆସିଯାଏ ଅନ୍ତଃ କରଣରେ
ଅହଂଭାବ ତିରୋହୀତ ନିର୍ବାଣ ଭୂମିରେ ।
ତେଣୁ ତୁମେ ନାମ, ରୂପ, ପରିତ୍ୟାଗ କରି
ନିର୍ବାଣ ପାଇଁ କି ଚିନ୍ତା କର ରୂପଧାରୀ ।
ଭ୍ରମବଶେ ଅହଙ୍କାର ହୁଏ ଉତପନ୍ନ
ଯେତେବେଳେ ଏହା ବୁଝିପାରେ ଜ୍ଞାନୀଜନ
ଚିତ୍‌ରୂପ ଆତ୍ମାମଧ୍ୟେ ଚିତ୍ ତେତେବେଳେ
ପର୍ଯ୍ୟବସିତ ହୁଅଇ ଜାଣ ରଘୁବୀରେ ।
କଳପନା, ଇଚ୍ଛା ଆଦି ପରିତ୍ୟାଗ କର
ଶାନ୍ତ ଚିତ୍‌ସ୍ୱରୂପରେ ଅବସ୍ଥାନ କର ।
ଏକତ୍ୱ, ବହୁତ୍ୱ ପ୍ରତି ଦୃଷ୍ଟି ନ ଦେଇଣ
ଚିଦାକାଶ ସ୍ୱରୂପରେ ରୁହ ଆସ୍ଥାବାନ ।
ପରମ ଚିନ୍ମୟ-ରସ ଭୋଗ ରଘୁବୀର
ନିର୍ବାଣ-ନନ୍ଦନ ବନେ ନିଃଶଙ୍କେ ବିହର ।
ନର ଦେହଧାରୀ ଯେତେ ହେ ଉଦ୍ଭ୍ରାନ୍ତ ମୃଗ
ମିଥ୍ୟା ଆଶା ହୃଦୟରୁ କର ପରିତ୍ୟାଗ ।
ସଂସାର ମରୁଭୂମିର ମରୀଚିକା ଜାଲେ
ଆକୃଷ୍ଟ ହୋଇ ନ ପଡ଼ି ମୃତ୍ୟୁଦେବ ପାଲେ ।
ସୁଖ ଯାହା ମଣ ତାହା ବାସ୍ତବରେ ଦୁଃଖ
ତାହା ପ୍ରତି ସଦାକାଳେ ହୁଅ ହେ ବିମୁଖ ।
ସୁଖସ୍ୱରୂପ ଆତ୍ମର ଅନୁସନ୍ଧାନରେ
ପ୍ରବୃତ୍ତ ହୋଇଣ ରହ ତୁମେ ହେ ସକଳେ ।
ଅହଂ ମମତ୍ୱାଦି ଭାବ ରୂପ ଯେତେ ଭ୍ରାନ୍ତି
ତହିଁରୁ ନିବୃତ୍ତି ହେବା, ଜାଣିବ ମୁକତି ।
ପ୍ରାଣୀର ସ୍ୱରୂପ-ସତ୍ତା ବିନା ସେହି ମୁକ୍ତି
ଅନ୍ୟ କିଛି ନୁହଇଁଟି ଜାଣ ହେ ସୁମତି ।
ନିଜର ଯଥାର୍ଥ-ରୂପ ଦରଶନ ଯୋଗ
ଉପେକ୍ଷା କରିବ କିମ୍ପା ଆହେ ଶ୍ରୋତୃବର୍ଗ ।
ପାପ, ତାପ, ଦୁଃଖ, ଦୈନ୍ୟ, ସେ ରୂପ ସତ୍ତାରେ
ଲେଶମାତ୍ର ନ ମିଳଇ ହେ ଜନସାଗରେ ।
ପରମ ଆନନ୍ଦେ ସଦା ତାହା ପରିପୂର୍ଣ୍ଣ
ସେ ପରମାନନ୍ଦେ ଯେହୁ ରହନ୍ତି ନମଗ୍ନ,
ତାହାପାଇଁ ଏ ଜଗତ ଜାଣ ସଭାଜନ
ଅଦୃଶ୍ୟ ହୋଇଣ ଯାଏ ହେଜରଖ ମନ ।
ଯୋଗୀଜନ ମାନେ ରହି ସମାଧି ମଗନ
ସେ ପରମାନନ୍ଦ କରୁଥାନ୍ତି ଆସ୍ୱାଦନ ।
ତେଣୁ ଅହଂ, ମମତ୍ୱାଦି କର ପରିହାର
ସମାଧିରେ ସେ ପରମାନନ୍ଦ ଭୋଗ କର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବ୍ରହ୍ମ ଏକତ୍ୱ ପ୍ରତିପାଦନ ବର୍ଣ୍ଣନେ ନାମ ଏକତ୍ରିଂଶ ସର୍ଗଃ ।**



## ଦ୍ୱାତ୍ରିଂଶ ସର୍ଗଃ

## ସମାଧି-ବୃକ୍ଷ ବର୍ଣ୍ଣନ

କହନ୍ତି ଶ୍ରୀରାମ ଶୁଣ ଆହେ ତପଚାରୀ
ସମାଧି ରୂପକ ବୃକ୍ଷ ଜନମି ଯେପରି
ଚିତ୍ତରୂପକ ମୃଗକୁ କରି ଛାୟାଦାନ
ତା ଶ୍ରମ ଅପନୋଦନ କରେ ତପୋଧନ ।

କିପରି ଘଟଇ ତାହା ସବିଶେଷ କରି
ଦୟା କରି କହ ମୋତେ ଆହେ ଜ୍ଞାନ ଗିରି ।
ବଶିଷ୍ଠ ବୋଲନ୍ତି ରାମ ସଂସାର ବନରେ
ନାନା କ୍ଲେଶ ଭୋଗୀ ଅବା ପୂର୍ବ ପୁଣ୍ୟଫଳେ ।
ଯେ ବୈରାଗ୍ୟ ଉପସ୍ଥିତ ହୋଇ ଥାଏ ହେଲେ
ତାହା ହିଁ ସମାଧି-ବୃକ୍ଷ-ବୀଜ ରଘୁବାଳେ ।
ଶୁଭ-କର୍ମଫଳ - ହଳେ ହୋଇଣ କର୍ଷିତ
ଆବର ସୁକୃତରୂପ ଜଳଦ୍ଵାରା ସିକ୍ତ ।
ଏ ବୃକ୍ଷର କ୍ଷେତ୍ର ଅଟେ ଯେ ନିର୍ମଳ ଚିତ୍ତ
ତହିଁରେ ସମାଧି-ବୀଜ ବପନ ଉଚିତ ।
ଅଧ୍ୟାତ୍ମ ଶାସ୍ତ୍ରଲୋଚନ ସାଧୁସଙ୍ଗ-ଜଳ
ସଞ୍ଚଳ କଲେ ସେ ବୀଜୁଁ ଉପୁଜେ ଅଙ୍କୁର ।
ତାର ସୁରକ୍ଷଣ ପାଇଁ ମୁଦିତା, ସନ୍ତୋଷ
ନିଯୁକ୍ତ ହେବା ଉଚିତ ହେ ରଘୁବିଳାସ ।
ପ୍ରାଣାୟାମ-ଛାଞ୍ଚୁଣୀରେ ସେ କ୍ଷେତ୍ରକୁ ଜାଣ
ଓଳେଇ ପୋଳେଇ ପୁଣି କରିବ ସମାନ ।
ବିବେକ ରୂପ ଆତପ ବଳେ ସେ କ୍ଷେତ୍ରର
ଅନ୍ଧକାର ଦୂର କରିବାକ ରଘୁବୀର ।
ଏହିପରି ସେ ଅଙ୍କୁର ହେଲେ ବିବର୍ଦ୍ଧନ
କ୍ରମଶଃ ଶାଖାପ୍ରଶାଖା ବିସ୍ତାର କରିଣ,
ସୁଦୃଢ଼ ସମାଧି-ବୃକ୍ଷ ରୂପେ ପରିଣତ
ହୋଇଥାଏ ଜାଣିରଖ ଆହେ ରଘୁନାଥ ।
ଆତ୍ମତତ୍ତ୍ୱ ଗତ ଯେଉଁ ପରିସ୍ଫୁଟ ଭାବ
ତନ୍ମଧ୍ୟସ୍ଥ ସତ୍ୟବୋଧ, ଉଦାରତା ଭାବ ।
ନିର୍ବିକଳ୍ପତା, କରୁଣା, ଶାନ୍ତି, କୀର୍ତ୍ତି, ମୈତ୍ରୀ
ଏ ସମାଧି-ତରୁ ଶାଖା ଆହେ ରଘୁପତି ।
ଶମାଦି ଗୁଣ ସକଳ ତାର ପତ୍ରାବଳି
ଯଶ ତାର ସୁଗନ୍ଧି କୁସୁମ ଧନୁର୍ଦ୍ଧାରୀ ।
ଏପରି ସମାଧି-ବୃକ୍ଷ ହୋଇଲେ ବର୍ଦ୍ଧିତ
ସାଧକଙ୍କୁ ଦାନ କରେ ଫଳ-ଜ୍ଞାନବତ ।
ବର୍ଷାକାଳୀନ ଜଳଦ ସମ ଏହି ଗଛ
ସକଳ ଦିଗ ଶୀତଳ କରେ ରଘୁବତ୍ସ ।
ସଂସାର-ମରୁରେ ଭ୍ରମୁଥିବା ଚିତ୍ତ-ମୃଗ
ତା ଛାୟାରେ ନିଶ୍ଚିନ୍ତରେ କରେ ସୁଖଭୋଗ ।
ସମାଧି-ପାଦାପାଶ୍ରୟେ ଏ ଚିତ୍ତ-ହରିଣ
ଯେଉଁ ସୁଖଶାନ୍ତି ମାନ କରେ ଆସ୍ୱାଦନ,
ସୁରମ୍ୟ ପ୍ରାସାଦ ମଧ୍ୟେ କରି ଅବସ୍ଥାନ
ନାନାଦି ଭୋଗ ବିଳାସେ କଲେ ହେଁ ଶୟନ ।
ସେ ସୁଖ ଆସ୍ୱାଦନର ଅଣୁମାତ୍ର ଜାଣ
ଲବ୍ଧ ହୋଇ ନ ପାରଇ ହେ ରଘୁନନ୍ଦନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ସମାଧି-ବୃକ୍ଷ ବର୍ଣ୍ଣନେ**
**ନାମ ଦ୍ୱାତ୍ରିଂଶ ସର୍ଗଃ ।**



## ତ୍ରୟୋତ୍ରିଂଶ ସର୍ଗଃ
## ଚିତ୍ତ ମୃଗ ତତ୍ତ୍ୱବିଚାର

ମନେରଖ ଥରେ ମାତ୍ର ଯଦି ଚିତ୍ତ-ମୃଗ
ସମାଧି-ତରୁ ଛାୟାକୁ କରିପାରେ ଭୋଗ,
ସେ ଛାୟାକୁ ଛାଡ଼ି ଅନ୍ୟ କୌଣସି ସ୍ଥାନକୁ
କେବେହେଲେ ଇଚ୍ଛା ନ କରିବ ଯେ ଯିବାକୁ ।
ସମାଧି-ବୃକ୍ଷଟି ଯେତେ ବେଳେ ଧୀରେ ଧୀରେ
ପରମାର୍ଥିକ-ଫଳକୁ ପ୍ରସବ ସେ କରେ,
ମାନବ ଆକୃତି ଧରି ସେ ଚିତ୍ତ-ହରଣ
ସେହି ବୃକ୍ଷ ଉପରକୁ କରେ ଆରୋହଣ ।
ସେ ଫଳ ମାନଙ୍କୁ ସୁଖେ କରି ଆସ୍ୱାଦନ
ପରମ ଆନନ୍ଦେ ମଗ୍ନ ହୋଇଯାଏ ଜାଣ ।
ସେ ଫଳମାନଙ୍କୁ ସେହୁ କରନ୍ତେ ଭୋଜନ
ସାପ କାତି ଛାଡ଼ିଦିଏ ଯେବଣ ରୂପେଣ,
ବାସନା ସକଳ ପୂର୍ବ ସଂସ୍କାର ସହିତ
ସବୁ ପରିତ୍ୟାଗ କରି ଦିଏ ରଘୁନାଥ ।
ତାପରେ ତାହାର ତୃଷ୍ଣା ହେଲେ କ୍ଷୟପ୍ରାପ୍ତ
ସେହି ଜନ ଆଉ କେଭେଁ ନ ହୁଏ ସନ୍ତପ୍ତ ।
ଚନ୍ଦ୍ରସମ ସୁଶୀତଳ ଅନ୍ତଃ କରଣରେ
ଅବସ୍ଥାନ କରି ରହେ ନିଶ୍ଚିନ୍ତ ଭାବରେ ।
ସମାଧିବୃକ୍ଷର ଉର୍ଦ୍ଧ୍ୱ ଶାଖାମାନଙ୍କରେ
କ୍ରମେ ସେହୁ ଅନାୟାସେ ଆରୋହଣ କରେ ।
ସମ୍ରାଟ ସ୍ୱରୂପ ସେହୁ ତହିଁ ଶୋଭାପାଇ
ପରମ ପଦକୁ ପୁଣି ଆସ୍ପର୍ଦ୍ଧା କରଇ ।
ପରମ ପଦରେ ତହୁଁ ହୋଇଣ ପ୍ରବିଷ୍ଟ
ଜୀବିତାବସ୍ଥାରେ ମଧ୍ୟ ରହେ ଶବ ବତ ।

ନିଦ୍ରିତ ବ୍ୟକ୍ତିକୁ ଯଥା କଲେ ଜାଗରୀତ
ଅସନ୍ତୁଷ୍ଟ ହୁଏ ସେହୁ ଜାଣ ରଘୁନାଥ ।
ସମାଧି ଭଗନ କଲେ ସେହି ପୁରୁଷର
ସେପରି ବିରକ୍ତି ବୋଧ ହୁଅଇ ତାହାର ।
ଇନ୍ଧନ ହୀନ ଅନଳ ସ୍ୱତଃ ନିର୍ବାପିତ
ଅହଂ ବିନାଶରେ ଯୋଗୀ ନିର୍ବାଣ ପ୍ରାପତ ।
ଏହି ଯେ ନିର୍ବାଣ କଥା କଲଇଁ ବର୍ଣ୍ଣନ
ଅନ୍ୟକିଛି ବସ୍ତୁ ତାହା ନୁହେଁ ରଘୁନାନ ।
ସଙ୍କଳ୍ପ ତେଜିଣ ନିଜ ମଧ୍ୟେ ହିଁ ନିଜର
ସମ୍ୟକ ସଂସ୍ଥିତି ତାହା ଜାଣ ରଘୁବୀର ।
ନିଜ ମଧ୍ୟେ ହୁଏ ଯେଉଁ ନିଜର ସଂସ୍ଥିତି
ଧ୍ୟାନ ବା ଭାବନା ତାହା ନୁହେଁ ରଘୁପତି ।
ତେଣୁ ସମାଧି ଶବ୍ଦର ଅର୍ଥ ହେ ରାଘବ
ଧ୍ୟାନ, ଭାବନା ବା ଚିନ୍ତା ବୋଲି ନ ମଣିବ ।
ଦୃଶ୍ୟପ୍ରପଞ୍ଚକୁ ନିଜ ମଧ୍ୟରେ ଶ୍ରୀରାମ
ସାକ୍ଷୀଚୈତନ୍ୟ ରୂପରେ କରିଲେ ସ୍ଥାପନ ।
ତାହାର ନାମ ସମାଧି ହୁଏ ରଘୁନାଥ
ସମାଧି ଶବ୍ଦର ଭାବ ବୁଝିବେ ଏମନ୍ତ ।
ସ୍ୱରୂପ ଅନୁସନ୍ଧାନ ଯେବେ ହେବ ଧ୍ୟାନ
ତତ୍ତ୍ୱଜ୍ଞାନୀର ତା ସ୍ୱତଃ ହୋଇଥାଏ ଜାଣ ।
ଧ୍ୟାନଚ୍ୟୁତ ଘଟିଥାଏ ବାସନା ବଶତ
ବାସନା ବିହୀନ ଜନ ସଦା ରହେ ସ୍ୱସ୍ଥ ।
ସୁଦୃଢ଼ ହୋଇ ଅଛଇ ଯା'ର ତତ୍ତ୍ୱଜ୍ଞାନ
ସର୍ବଦା ତନ୍ମୟ ଯେଣୁ ରହେ ସେହି ଜନ ।
ଜଗତର ସତ୍ତା କିମ୍ବା ଅସତ୍ତା ମଧ୍ୟରେ
କୌଣସି ପାର୍ଥକ୍ୟ ନ ଆସଇ ତା ମନରେ ।
ସପ୍ତମ ଜ୍ଞାନ ଭୂମିରେ ଉପନୀତ ଜନ
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଅବସ୍ଥାରେ ଜାଣ ।
କୌଣସି ଭେଦ ଯେସନ ନ କରେ ଦର୍ଶନ
ସେହିପରି ଯୋଗୀଙ୍କର ଅବସ୍ଥା ହେ ରାମ ।
ଜଗତର ସତ୍ତା ଅବା ଅସତ୍ତା ମଧ୍ୟରେ
କୌଣସି ପ୍ରଭେଦ ନ ଦେଖନ୍ତି ରଘୁବୀରେ ।
ଚିତ୍ତମୃଗ ନରରୂପେ ସମାଧି ତରୁରେ
ଆରୋହଣ କରିବା ଯା କହିଲି ଏଠାରେ ।
ଯେ ଚିତ୍ତ ବିନାଶ କଥା କହିଛି ମୁଁ ତହିଁ
ସେହି ଚିତ୍ତ ହିଁ ବାସନା ବୁଝ ରଘୁସାଇଁ ।

ବାସନାବଦ୍ଧ ଯେ ଆତ୍ମା ସମାଧି ତରୁରେ
ଆରୋହଣ କରି ଜାଣ ଆହେ ରଘୁବୀରେ ।
ବାସନା ବିନାଶ କରି ହେଲା ସେ ମୁକତ
ଏହାହିଁ ତାତ୍ପର୍ଯ୍ୟ ମୋ କଥାର ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଚିତ୍ତମୃଗ ତତ୍ତ୍ୱ ବିଚାର ବର୍ଣ୍ଣନେ ନାମ ୩୩ଶ ସର୍ଗଃ ।**



## ୩୪ଶ ସର୍ଗଃ
## ସ୍ୱଭାବ ସତ୍ତା

ପରମାର୍ଥ-ଫଳ ରସ ଆସ୍ୱାଦନ କରି
ଚିତ୍ତ ଧରେ ପରମାର୍ଥ ରୂପ ଚାପଧାରୀ ।
ତେତେବେଳେ ମୃଗଭାବ ଲଭେ ତା ନିର୍ବାଣ
ଅଖଣ୍ଡ ପରମାର୍ଥି ହିଁ ପରମାଶେ ଜାଣ ।
ଯେତେଦିନ ଏହି ଚିତ୍ତ ପରମ ପଦରେ
ବିଶ୍ରାନ୍ତି ଲାଭ ନ କରେ ଜାଣ ରଘୁବୀରେ,
ବିଷୟ ଅନୁସନ୍ଧାନ କରୁଥାଏ ବୋଲି
କେବେହେଁ ସେ ଧ୍ୟାନନିଷ୍ଠ ରହିଣ ନ ପାରି ।
ସ୍ୱରୂପ ପ୍ରାପ୍ତ ହୋଇଲେ କାହିଁ ସେହି ଚିତ୍ତ
ଅନ୍ତର୍ହିତ ହୋଇଯାଏ ରହେ ଅବିଦିତ ।
ସେ କାଳେ ଯୋଗୀ କେବଳ ସମାଧିସ୍ଥ ଥାଇ
ପର୍ବତ ସମାନ ଦୃଢ଼ ନିଶ୍ଚଳ ରହଇ ।
ଏପରି ରମଣଶୀଳ ହେବାରୁ ଆତ୍ମାରେ
ଅନ୍ୟସବୁ ଭୋଗ ଲିପ୍ସା ହଜେ ତା ଅନ୍ତରେ ।
ପ୍ରଶାନ୍ତ ଲଭନ୍ତି ତାର ଇନ୍ଦ୍ରିୟ ସକଳ
ବିନା ଚେଷ୍ଟାରେ ସମାଧି ଲାଭ ହୁଏ ତାର ।
ସମାଧିସ୍ଥ ହେବା ତାର ହୁଏ ସ୍ୱାଭାବିକ
ଏଥିରେ ଆଶ୍ଚର୍ଯ୍ୟ ନୁହ ହେ ରଘୁନାୟକ ।
ତତ୍ତ୍ୱଜ୍ଞାନ ପ୍ରଭାବରୁ ବିଷୟ ନିମିତ୍ତ
ଯେଉଁ ପରମ ବୈରାଗ୍ୟ ହୁଏ ଉପସ୍ଥିତ ।
ତାହାର ନାମ ସମାଧି ଜାଣ ହେ ଶ୍ରୀରାମ
ତୀବ୍ର ବିଷୟ ବୈରାଗ୍ୟ ଧରେ ଧ୍ୟାନ ନାମ ।
ବ୍ରହ୍ମ ସାକ୍ଷାତ କାର ବଳେ ଯେ ଜ୍ଞାନ ଉଦୟ
ସେ ବଳେ ହିଁ ଘଟିଥାଏ ଅବିଦ୍ୟା ବିଳୟ ।

ବାସନା ଉଚ୍ଛେଦ ରାମ ! ହୁଅନ୍ତେ ସାଧନ
ଧ୍ୟାନ-ସ୍ୱରୂପ ହୁଅଇ ସେ ନିର୍ମଳ ଜ୍ଞାନ ।
ଯାବତୀୟ ଦୁଃଖ ନାଶ କରି ସେହି ଜ୍ଞାନ
ଆନନ୍ଦମୟ ନିର୍ବାଣରୂପ ଧରେ ଜାଣ ।
ଭୋଗରେ ବୈରାଗ୍ୟ ଯେବେ ହୁଅଇ ଜନମ
ଧ୍ୟାନ ତେତେବେଳେ ନ ହୁଅଇ ପ୍ରୟୋଜନ ।
ଆବର ଭୋଗେ ବିତୃଷ୍ଣା ନୋହିଲେ ଶ୍ରୀରାମ
ଧ୍ୟାନ ଆଚରଣେ କିଛି ଫଳ ନାହିଁ ଜାଣ ।
ଦୃଶ୍ୟ ବସ୍ତୁରେ ସମ୍ପୂର୍ଣ୍ଣ ନିର୍ଲିପ୍ତ ରହିଲେ
ନିର୍ବିକଳ୍ପ ସମାଧିଟି ଲବ୍ଧ ହୋଇପାରେ ।
ସ୍ୱ ଭାବରେ ପ୍ରତିଷ୍ଠିତ ହୋଇ ନ ପାରିଣ
ଭୋଗ ପ୍ରତି ଲୋଭାସକ୍ତ ହୋଇଥାନ୍ତି ଜନ ।
ସ୍ୱ ଭାବରେ ପ୍ରତିଷ୍ଠିତ ହୋଇଛି ଯେ ଜନ
ଭୋଗରେ ତାହାର ଆଉ କେଉଁ ପ୍ରୟୋଜନ ?
ଶାସ୍ତ୍ରାନୁଶୀଳନ ପୁଣି ଜପ, ତପ ଆଦି
ସମାଧି ପୂର୍ବେ ଓ ପରେ କରିବାହିଁ ବିଧି ।
ଶାନ୍ତ ଶମଗୁଣାପନ୍ନ ହେଲେ ଏହିପରି
ନିର୍ବାଣ ପଦ ପ୍ରାପତ ହୁଏ ରଘୁଧାରୀ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ସ୍ୱଭାବ ସତ୍ତା ବର୍ଣ୍ଣନେ ନାମ ଚତୁସ୍ତ୍ରିଂଶ ସର୍ଗଃ ।**

❑

## ପଞ୍ଚତ୍ରିଂଶ ସର୍ଗଃ
## ମୁମୁକ୍ଷୁ-ପ୍ରଥମ ଉପକ୍ରମ

କହନ୍ତି ବଶିଷ୍ଠ ଆତ୍ମବୋଧର ବ୍ୟତୀତ
ଅନ୍ୟ କେଉଁ ବସ୍ତୁ-ବୋଧ ନାହିଁ ରଘୁନାଥ ।
ଏହି ଅନୁଭବରୂପ ଯେ ପରମପଦ
ନିଜ ଅନ୍ତରେ ହିଁ ଅବସ୍ଥିତ ସେ ସମ୍ପଦ ।
ସ୍ୱକୀୟ ସଂବିତ ମାତ୍ରେ କରେ ଯେ ବିଶ୍ରାମ
ବିଷୟ ଭାବ ବିହୀନ, ନିର୍ମନ ସେ ଜନ ।
ଆତ୍ମରତି ରତ ସେହି ସାଧୁଜନ ମାନ
ନିର୍ବିଷୟ ପଦେ ରହି ହୁଅନ୍ତି ନିର୍ମନ ।
ମଉନ ଭାବ ଆଚରି ତେଣୁ ସାଧୁ ଜନ
ସ୍ୱ ସ୍ୱଭାବେ ସଦା ରହିଥାନ୍ତି ବିଦ୍ୟମାନ ।

ସର୍ବାର୍ଥ ସମ୍ପୂର୍ଣ୍ଣ ମନ ହୁଏ ଅର୍ଥହୀନ
ମହତ ହୋଇଣ ରହେ ଅଣୁ ପରିମାଣ ।
ପୂର୍ଣ୍ଣହୋଇ ସୁଦ୍ଧା ଶୂନ୍ୟରୂପେ ଅବସ୍ଥାନ
ମନ ପଦବାଚ୍ୟ ତେଣୁ ନୁହେଁ ତାଙ୍କ ମନ ।
ଏକତ୍ୱ, ବହୁତ୍ୱ, ଦିଗ, କାଳ ଆଦି କରି
ଜ୍ଞାନରୂପେ ତାଙ୍କଠାରେ ରହିଲେହେଁ ପୁରି ।
ତାଙ୍କ ସ୍ୱରୂପରେ ନୋହିଥାନ୍ତି ଅବସ୍ଥିତ
ଜ୍ଞାନ ଯୋଗୀ ପକ୍ଷେ ଏହା ନୁହଇ ବିଚିତ୍ର ।
ଶୁଦ୍ଧ ସତ୍ତ୍ୱରୂପେ ତେଣୁ ପ୍ରଦୀପ ସମାନ
ଦୂର କରନ୍ତି ସବୁରି ଅନ୍ଧାର-ଅଜ୍ଞାନ ।
ଭୟ, ଦ୍ୱେଷ, ରାଗ, ରୋଷ ଆଦି କରି ଯେତେ
ତାଙ୍କ ପ୍ରଭାବେ ବିନାଶ ଲଭନ୍ତି ସମସ୍ତେ ।
ସ୍ପର୍ଶ କରି ନ ପାରଇ ଯାକୁ ରଜୋଗୁଣେ
ଏକାନ୍ତ ଅଭାବ ଯହିଁ ତମ-ଗୁଣମାନ
ଆବର ସତ୍ତ୍ୱ ଗୁଣର ଅତୀତ ଯେ ଜନ
ତ୍ରିଗୁଣ ଅତୀତ ସେହୁ ବ୍ରହ୍ମର ସମାନ ।
ସେ ନର-ମାର୍ତ୍ତଣ୍ଡ ସମସ୍ତଙ୍କ ପୂଜ୍ୟ ରାମ
ଅତି ବିରଳ ସେ ଅଟେ ଏହି ବିଶ୍ୱଧାମ ।
ଅଚିତ୍ତ ହୋଇ ଯାଇଛି ଚିତ୍ତ ଯାହାଙ୍କର
ସର୍ବ ଭେଦ ଭାବ ଦୂର ହୋଇଛି ଯାହାର ।
ତାଙ୍କ ଗୁଣ ବର୍ଣ୍ଣିବାକୁ ଭାଷା ଅବା କାହିଁ
ଅବର୍ଣ୍ଣନୀୟ ସେମାନେ ଜାଣ ରଘୁରାଇ ।
ପରମଙ୍କୁ ଭକ୍ତିସହ କଲେ ଆରାଧନା
ସାଧକ ପ୍ରତି ହୁଅନ୍ତି ସେ ପ୍ରସନ୍ନ ମନା ।
ନିର୍ବାଣ ମୁକ୍ତି ତାହାକୁ କରନ୍ତି ପ୍ରଦାନ
ଅଭେଦ ଭାବର ଶକ୍ତି ବୁଝ ରଘୁରାଣ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ମୁନିବର
ସେ ପରମେଶ୍ୱର କିଏ, କହ ମୋ ଆଗର ।
ତାଙ୍କ ପ୍ରସନ୍ନତା କେହ୍ନେ ହୋଇଥାଏ ଲାଭ
ଦୟାକରି ଗୁରୁଦେବ ସେସବୁ କହିବ ।
ବଶିଷ୍ଠ କହନ୍ତି ତେବେ ହେ ସୁବୁଦ୍ଧେ ! ଶୁଣ
ଅଛନ୍ତି ପରମେଶ୍ୱର ତବ ସନ୍ନିଧାନ ।
ଅନାୟାସେ ସେହୁ ହୋଇ ଥାଆନ୍ତି ପ୍ରସନ୍ନ
ସାଧାନାତୀତ ତା ନୁହଇଟି ରଘୁରାଣ ।
ଜ୍ଞାନସ୍ୱରୂପ ମହାନ ଆତ୍ମାହିଁ ତୁମ୍ଭର
ଅନାଦି ପୁରୁଷ ସେହି ପରମ ଈଶ୍ୱର ।

ତାଙ୍କ ତହୁଁ ସର୍ବେ ହୋଇଛନ୍ତି ଉତପନ୍ନ
ସମସ୍ତଙ୍କ ଅବସ୍ଥିତି ତାଙ୍କ ମଧ୍ୟେ ପୁଣ ।
ସର୍ବରୂପେ ସର୍ବସ୍ଥାନେ ସେହି ବିଦ୍ୟମାନ
ତାଙ୍କ ବିନା ଅନ୍ୟ କାର ସତ୍ତାନାହିଁ ଜାଣ ।
ସେ ବିଭୁ ପରମାତ୍ମାଙ୍କୁ ମୋର ନମସ୍କାର
କାରଣ ପୁରୁଷ ଯେହ୍ନୁ ନିଖିଳ ବିଶ୍ୱର ।
ସ୍ଥାବର, ଜଙ୍ଗମ ରୂପଧାରୀ ପ୍ରାଣୀଗଣେ
ତାଙ୍କ ପୂଜା କରୁଛନ୍ତି ଜ୍ଞାନେ ବା ଅଜ୍ଞାନେ ।
ଜନ୍ମ ଜନ୍ମାନ୍ତରେ ସେହୁ ହୁଅନ୍ତେ ପୂଜିତ
ଭକତଙ୍କୁ ତତ୍ତ୍ୱଜ୍ଞାନ ପ୍ରଦାନ ନିମିତ୍ତ,
ପବିତ୍ର-ମହତ ଦୂତ କରନ୍ତି ପ୍ରେରଣ
"ବିବେକ ପୁରୁଷ" ଯାର ନାମ ରଘୁରାଣ ।
ଅବତରୀ ଆସି ସେହୁ ଏମର ଜଗତେ
ଚନ୍ଦ୍ରସମ ଶୋଭା ପାନ୍ତି ଜୀବ ହୃଦଗତେ ।
ବୁଝାଇ ସୁଝାଇ ବାରଂବାର ସେ ଜୀବଙ୍କୁ
ଭବ ସାଗରୁ ଉଦ୍ଧାର କରନ୍ତି ତାହାଙ୍କୁ ।
"ଜ୍ଞାନାତ୍ମା" ଏହି ବିବେକ ପୁରୁଷଙ୍କୁ ରାମ
"ଅନ୍ତରାତ୍ମା" ନାମ କରିଅଛନ୍ତି ପ୍ରଦାନ ।
ତାଙ୍କର ହିଁ ନାମାନ୍ତର "ପରମ ଈଶ୍ୱର"
ବେଦୋକ୍ତ ନାମ ତାଙ୍କର ଅଟଇ "ଓଁ କାର"
ଦେବ, ଦାନବ, ମାନବ ଆଦି ଜୀବଗଣ
ଯଜ୍ଞ, ଦାନ, ଜପ, ତପ କରି ଆଚରଣ,
ତାଙ୍କ ପ୍ରସନ୍ନତା କରୁଛନ୍ତି ସମ୍ପାଦନ
ସବୁ ଦେବା, ସବୁ ନେବା ଜାଣ ତା ବିଧାନ ।
ଚିନ୍ମୟ ଆତ୍ମାହିଁ ଜାଣ ପରମ ଈଶ୍ୱର ।
ସବୁ ଦେଖେ, ଶୁଣେ, ସବୁଠାରୁ ଗତିତାର ।
ବିଶ୍ୱବ୍ୟାପୀ ସେ ପରମ ଈଶ୍ୱର ହେ ରାମ
ହସ୍ତ, ପଦ, ଚକ୍ଷୁ କର୍ଣ୍ଣ କରି ବିସ୍ତାରିଣ
ସବୁ ବେଳେ ସର୍ବ ଦିଗେ ଏକ ସମୟରେ
ସର୍ବ କର୍ମରେ ନିଯୁକ୍ତ ରହିଛନ୍ତି ହେଳେ ।
ଦୂତରୂପୀ ଅନ୍ତରାତ୍ମା ଉଦ୍‌ବୋଧନ ବଳେ
ଜୀବ-ମନ-ପିଶାଚଙ୍କୁ ଧ୍ୱଂସ କରିହେଳେ
ଅନିର୍ବଚନୀୟ ସେହି ଆତ୍ମାଙ୍କୁ ତାହାର
ପ୍ରାପତ କରାଇ ଦିଏ ଜାଣ ରଘୁବୀର ।
ଦୁସ୍ତର ଅଟଇ ଜାଣ ଏ ଭବସାଗର
ବାସନା ତରଙ୍ଗେ ଉଦ୍‌ବେଳିତ ନିରନ୍ତର ।
ପ୍ରବଳ ମନ-ପବନେ ହୋଇ ଆଲୋଡ଼ିତ
ମୃତ୍ୟୁ ଆବର୍ତ୍ତରେ ହୋଇଥାଏ ବିଘୂର୍ଣ୍ଣିତ ।
ଜଡ଼ତ୍ୱ-ରୂପ ଅପାର ଜଳ ତା ଆଧାର
ବିବେକ ନଉକା ବଳେ ସେଥୁଁ ହୁଅ ପାର ।
ଆରାଧନାରେ ସେ ଦେବ ହୋଇଣ ପ୍ରସନ୍ନ
ଜୀବପାଶେ ବିବେକଙ୍କୁ କରନ୍ତି ପ୍ରେରଣ ।
ସାଧୁସଙ୍ଗ ମେଳେ ତତ୍ତ୍ୱ ବୋଧ ଉପୁଜାଇ
ପରମପଦ ପ୍ରାପତି ଜୀବଙ୍କୁ କରାଇ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ମୁମୁକ୍ଷୁ ପ୍ରଥମ ଉପକ୍ରମ ବର୍ଣ୍ଣନେ ନାମ ପଞ୍ଚତ୍ରିଂଶ ସର୍ଗଃ ।**



## ଷଷ୍ଠତ୍ରିଂଶ ସର୍ଗଃ
## ବିବେକ ମହାତ୍ମ୍ୟ

କହନ୍ତି ବଶିଷ୍ଠ ପୁଣି ଶୁଣ ରଘୁରାଣ
ବିବେକଙ୍କୁ ପରିତୃପ୍ତ କରନ୍ତି ଯେଜନ,
ଚତୁର୍ଦ୍ଦଶ ଭୂବନର ସମ୍ପଦ ସକଳ
ପ୍ରଲୁବ୍ଧ କରି ନପାରେ ତାଙ୍କୁ ରଘୁବୀର ।
କେବଳ ଚିତ୍ତର ଭ୍ରମ ଅଟେ ଏ ସଂସାର
ଏସନ ବିଶ୍ୱାସ ଜନ୍ମି ଅଛି ଯା ଅନ୍ତର,
ବାହ୍ୟାନ୍ତର ଇନ୍ଦ୍ରିୟଙ୍କ ମୂଳ ଯେ ଅଜ୍ଞାନ
ଦୂରୀଭୂତ ହୋଇଯାଏ ଆହେ ରଘୁନାନ ।
ଏ ଜଗତ ଭ୍ରମ ବୋଲି ଯେବେ ବୁଝ ରାମ
ବାସନା ସକଳ ହୋଇଯିବେ ଅନ୍ତର୍ଦ୍ଧାନ ।
ବାସନା ନ ଥିଲେ ଏକମାତ୍ର ଚିଦାକାଶ
କେଭେଁ ତ୍ୟାଗ କରି ନ ପାରଇ ରଘୁଶିଷ୍ୟ ।
ସେ ଆକାଶେ ବିରାଜିତ ରହିଣ ପୁରୁଷ
ବହୁରୂପୀ ଜଗତଙ୍କୁ ମଣେ ଚିଦାଭାସ ।
ତେଣୁ ଜଗତ ଉପତ୍ତି ବିନାଶ ଆଦିର
କିଛି ହେଲେ ଦୃଶ୍ୟ ତାର ନୁହେ ରଘୁବୀର ।
ସାଧାରଣ ଜୀବଜ୍ଞାନ ନାନା ବିଷୟରେ
ଯେହେତୁ ଧାବିତ ହୁଏ ସର୍ବ ସମୟରେ,

ତେଣୁ ଚଞ୍ଚଳ ରହଇ ତାହାର ସେ ଜ୍ଞାନ
ଅଚଞ୍ଚଳ ଜ୍ଞାନ ପଛେ କଲେ ସେ ଧାବନ,
କେବଳ ଦୁଃଖ ହିଁ ପ୍ରାପ୍ତ ହୁଅଇ ତାହାର
ଅଭ୍ୟାସ ଯୋଗେ ଅସ୍ଥିର ଜ୍ଞାନ ହୁଏ ସ୍ଥିର ।
ଆତିବାହିକ ଶରୀର ଅଭ୍ୟାସ ବଳରେ
ଆଧିଭୌତିକତା ପ୍ରାପ୍ତ ହୁଏ ଯେ ପ୍ରକାରେ,
ପୁଣି ଜ୍ଞାନାଭ୍ୟାସ ବଳେ ସେ ସ୍ଥୂଳ ଶରୀର
ଆତିବାହିକ ଶରୀର ଧରେ ଯେ ପ୍ରକାର,
ସେହିପରି ବ୍ରହ୍ମଜ୍ଞାନ ଅଭ୍ୟାସ ବଳରେ
ବ୍ରହ୍ମସାରୂପ୍ୟର ଉପଲବ୍ଧି ହୋଇପାରେ ।
ଅଭ୍ୟାସ ଯୋଗ ଆଚରି ତୁମେ ହେ ଶ୍ରୀରାମ
ସେହି ବ୍ରହ୍ମସ୍ୱରୂପରେ କର ଅବସ୍ଥାନ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବିବେକ ମାହାତ୍ମ୍ୟ ବର୍ଣ୍ଣନେ ନାମ ଷଷ୍ଠତ୍ରିଂଶ-ସର୍ଗଃ ।**



## ସପ୍ତତ୍ରିଂଶ ସର୍ଗଃ
## ସର୍ବସତ୍ତା ଉପଦେଶ

ଶ୍ରୀରାମ ବୋଲନ୍ତି ଶୁଣ ଆହେ ତପଚାରୀ
ମନ, ବୁଦ୍ଧି ଇତ୍ୟାଦିଙ୍କୁ ସଚେତନ କରି,
କିଏ ସେ ବା ଏ ଦେହକୁ କରିଛି ଗଠନ
ବୁଝାଇ କହିବା ମୋତେ ଆହେ ତପୋଧନ ।
ଅନୁରାଗାଦି ବନ୍ଧନେ ଜୀବକୁ ଆବଦ୍ଧ
କିଏ ବା କରିଅଛନ୍ତି କୁହ ପୁଣି ସିଦ୍ଧ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁନାଥ
ଏ ଦେହକୁ କେହି କରି ନାହାନ୍ତି ନିର୍ମିତ ।
ଜୀବଗଣଙ୍କୁ କେହିତ କରିନାହିଁ ବନ୍ଧ
ନିଜ କର୍ମ ବଳେ ଜୀବ ହୁଅଇ ଆବଦ୍ଧ ।
ଏକଇ ଜଳ ଯେସନ ତରଙ୍ଗ ପ୍ରଭୃତି
ଆକାର ଧରିଣ ଥାଏ ଆହେ ରଘୁପତି,
ସେହିପରି ଏକମାତ୍ର ବୋଧରୂପ ଆତ୍ମା
ନାନା ଆକାରରେ ଦେଖା ଯାଆନ୍ତି ମହାତ୍ମା ।
ବାହ୍ୟବସ୍ତୁ ବୋଲି ଜାଣ ଅନ୍ୟ କିଛି ନାହିଁ
ସେ ବୋଧାତ୍ମା ଏହିପରି ପ୍ରକାଶ ଲଭଇ ।
ସେ ବୋଧାତ୍ମା ମଧ୍ୟେ ପୁଣି ଏହି ଯେ ସଂସାର
ବୋଧରୂପେ ଅବସ୍ଥାନ କରେ ରଘୁବୀର ।
ବାହ୍ୟ, ଅନ୍ତର ଏହି ଯେ ଉଭୟ ଜଗତ
ସେ ବୋଧ ଆତ୍ମାରେ ହୋଇଛନ୍ତି କଳପିତ ।
ବ୍ରହ୍ମଲୋକ ଆଦି କରି ଯେ ଲୋକ ସକଳ
ଦୂରେଛନ୍ତି ବୋଲି ଯେଉଁ ଧାରଣା ତୁମ୍ଭର,
ବାସନା ବଳରୁ ତାହା ହୁଅଇ ପ୍ରତୀତ
ଏଥିରେ ସନ୍ଦେହ କିଛି ନାହିଁ ରଘୁନାଥ ।
ବାସନା କ୍ଷୟ ଲଭିଲେ ଏ ସକଳ ଲୋକ
ଆତ୍ମା ମଧ୍ୟେ ବିରାଜନ୍ତି ହେ ରଘୁନାୟକ ।
ଅହଂତ୍ୱ ଗର୍ଭରେ ଯେଉଁମାନେ ନିପତିତ
ଦେଖି ନ ପାରନ୍ତି ସେହୁ ଆତ୍ମସ୍ଥ ଜଗତ ।
ଯେ ଅନନ୍ତ ଭୂତ ଗ୍ରାମ ଛନ୍ତି ଏ ଜଗତେ
ନିଜ ଅବୟବ ସେହୁ ତତ୍ତ୍ୱଜ୍ଞାନୀ ଚିତ୍ତେ
ନାନା ଅଳଙ୍କାରେ ଯଥା ସୁନା ହିଁ ଆଧାର
ନିର୍ମଳ ବ୍ରହ୍ମ ତେସନ ଆଧାର ବିଶ୍ୱର ।
ଅଗ୍ନିରେ ଆହୁତ ଘୃତ ଅଗ୍ନିର ସହିତ
ଏକରୂପ ଧରିଥାଏ ଆହେ ରଘୁନାଥ ।
ଏ ସଂସାର ମଧ୍ୟ ଜ୍ଞାନୋଦୟେ ସେହିପରି
ବୋଧାତ୍ମାସହ-ଏକତ୍ୱ ଲଭେ ରୂପଧାରୀ ।
ଶିଖା ଅଭାବେ ପ୍ରଦୀପ ଅଗ୍ନି ଯଥାଲୁପ୍ତ
ଅନୁରାଗ ଅଭାବରେ ବାସନା ବିଲୁପ୍ତ ।
ଯଥାର୍ଥ ବୋଧ ଉଦୟ ବାସନା ବିଲୟେ
ସଂସାର ଆକାଶ ସମ ପ୍ରତିଭାତ ହୁଏ ।
ଅଜ୍ଞାନୀ ଦୃଷ୍ଟିରେ ମାଟି, ଜଳ ମୂର୍ତ୍ତିମାନ
ଜ୍ଞାନୀଙ୍କ ଦୃଷ୍ଟିରେ ଜାଣ ତାହା ସବୁ ଶୂନ୍ୟ ।
ଶରୀର, ପୁଣି ତାହାର ଆଧାର ଜଗତ
ଜଗତାଧାର ଆକାଶ ଜାଣ ରଘୁନାଥ,
ଅଜ୍ଞାନ ହିଁ ଏ ସବୁର ମୂଳ ଉପାଦାନ
ଅଜ୍ଞାନରୁ ହିଁ ସକଳ ଅନର୍ଥ ଜନମ ।
ତିରୋହିତ ହୋଇଗଲେ ରାମ ସେ ଅଜ୍ଞାନ
ଦୃଶ୍ୟ ବସ୍ତୁ ସବୁ ରହିଲେ ହେଁ ବିଦ୍ୟମାନ ।
ମିଥ୍ୟା ବୋଲି ସ୍ୱତଃ ପ୍ରମାଣିତ ହୋଇଯାନ୍ତି
ଜ୍ଞାନୀଜନ ହିଁ କେବଳ ବୁଝନ୍ତି ଏ ଭ୍ରାନ୍ତି ।
ଜ୍ଞାନୀଜନ ସେତେବେଳେ ସ୍ୱରୂପରେ ରହି
ଅବାଧ ଆତ୍ମାନନ୍ଦରେ ପରିତୃପ୍ତ ହୋଇ ।

ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ
ଉତ୍ତର ଖଣ୍ଡେ ସର୍ବସତ୍ତା ଉପଦେଶ ବର୍ଣ୍ଣନେ
ନାମ ୩୭ଶ ସର୍ଗଃ ।



## ୩୮ଶ ସର୍ଗଃ

## ଆତ୍ମ ବୋଧନ

କହନ୍ତି ଶ୍ରୀରାମ ମୁନି ବୋଧାତ୍ମା ଯେପରି
ଦେଖାଯାନ୍ତି ଏ ଜଗତ ଆକାରକୁ ଧରି
ସେ ସବୁ ବିଷୟ ମୋତେ ବୁଝାଇ କହିବ
ସକଳ ସଂଶୟ ମୋର ଦୂର କରିଦେବ ।
କହନ୍ତି ବଶିଷ୍ଠ ରାମ, ଅଜ୍ଞାନୀ କେବଳ
ଜଗତ ଦର୍ଶନ କରି ହୋଇଥାଏ ଭୋଳ ।
ବିଜ୍ଞ ଅଜ୍ଞାନୀର ସେହି ଜଗତକୁ ଦେଖି
ଶାସ୍ତ୍ର ପ୍ରସିଦ୍ଧ ପରମ-ବସ୍ତୁ ବୋଲି ଲେଖି ।
ଯଦି ବା ଏହି ଜଗତ ଅଟେ ଦୃଶ୍ୟମାନ
ତାକୁ ଭୋଗ୍ୟ ମଣିବାଟା ଶାସ୍ତ୍ରରେ ବାରଣ ।
ତେଣୁ ଅନୁସରି ସେହି ଶାସ୍ତ୍ର ଉକ୍ତିମାନ
ଯାହା ମୁଁ ତୁମକୁ କହୁଅଛି ହେ ଶ୍ରୀରାମ,
ଶାସ୍ତ୍ର ପ୍ରତି ଶ୍ରଦ୍ଧାରଖି ବିଶୁଦ୍ଧ ଚିତ୍ତରେ
ତାହା ସବୁ ଶୁଣ ମନ, କର୍ଣ୍ଣ ଦେଇ ଥରେ ।
ବିଶାଳ ପ୍ରସ୍ତର ସ୍ତମ୍ଭେ ସର୍ବତ୍ର ଯେସନ
ଭାବି ପୁତ୍ତଳିକା ରହଥାନ୍ତି ରଘୁନାନ,
ଖୋଦିତ ନ ହେଲେ ଯଥା ସେ ଦେଖା ନ ଯାନ୍ତି
ଖୋଦିତ ହେବା ମାତ୍ରକେ ପ୍ରକାଶ ଲଭନ୍ତି ।
ସେହିପରି ବୋଧାତ୍ମାରେ ସର୍ବଦା, ସର୍ବତ୍ର
ଜଗତ୍‌ଭାବ ପୂରି ରହିଅଛି ରଘୁନାଥ ।
ଧ୍ୟାନ କରନ୍ତେ ତାହାଙ୍କୁ ଦିଅନ୍ତି ଦର୍ଶନ
ଧ୍ୟାନ ବିନା ନ ହୁଅନ୍ତି ପରିଦୃଶ୍ୟମାନ ।
ଅବୋଧ ବ୍ୟକ୍ତିହିଁ ଅଜ୍ଞ ନାମରେ ବିଦିତ
ହୋଇଛନ୍ତି ଜାଣିରଖ ତୁମେ ରଘୁନାଥ ।
ଅବୋଧାବସ୍ଥାରେ ସେହି ଅଜ୍ଞମାନେ ଜାଣ
ବୋଧାତ୍ମାରେ କରନ୍ତି ସେ ଜଗତ ଦର୍ଶନ ।
ପ୍ରବୁଦ୍ଧାବସ୍ଥାରେ ପୁଣି ସେହିମାନେ ଜାଣ
ସ୍ୱକୀୟ ବୋଧଆତ୍ମାର ମଧ୍ୟେ ହିଁ ଶ୍ରୀରାମ,
ବୋଧ ଛଡ଼ା, ନ ଲଭନ୍ତି ଜଗତ୍ ଦରଶନ
ସ୍ୱପନ ସମ ତାଙ୍କର ସେହି ଦରଶନ ।
ତେଣୁ ବୋଧ-ଆତ୍ମା ହୋଇଲେ ହେଁ ସର୍ବରୂପୀ
ସରବ ସ୍ୱରୂପ କେଭେଁ ନୁହନ୍ତି କଦାପି ।
ବୋଧାତ୍ମାକୁ ଯୋଗୀଗଣ ସର୍ବ ଭାବହୀନ-
ଭାବରେ ସର୍ବଦା କରୁଥିଲେ ହେଁ ଦର୍ଶନ,
ପୁଣି ତାଙ୍କୁ ସର୍ବଭାବାନ୍ୱିତ ରୂପେ ଜାଣ
ଦେଖି ପାରନ୍ତି, ଦେଖନ୍ତି, ହେ ରଘୁନନ୍ଦନ ।
ସର୍ବସ୍ୱରୂପ ବୋଧାତ୍ମା ଜଗତ୍‌ଭାବେ ପୂର୍ଣ୍ଣ
ଅଥଚ ସେ ପୁଣି ଜଗତ୍‌ଭାବର ବିହୀନ ।
ଯେତେକାଳ ପରିଯନ୍ତେ ତୁମ୍ଭର ସମାଧି
ପରିପକ୍ୱ ନ ହୋଇଛି ଆହେ ରଘୁନିଧି ।
ସେ ପର୍ଯ୍ୟନ୍ତ ସ୍ୱେଚ୍ଛାକ୍ରମେ ବୋଧାତ୍ମାକୁ ତବ
ସର୍ବଭାବ ସମନ୍ୱିତ ବୋଲି ନ ଦେଖିବ ।
ଯେ କାରଣୁ ଆତ୍ମଗତ ସନ୍ଦେହ ତୁମ୍ଭର
ହୃଦୟ ମଧ୍ୟରେ ରହିଅଛି ରଘୁବୀର,
ଆତ୍ମାକୁ ତଦ୍ରୂପ ଦରଶନର ନିମିତ୍ତ
ପ୍ରତିବନ୍ଧକ ହୋଇବ ତାହା ରଘୁନାଥ ।
ଯେହେତୁ ବୋଧାତ୍ମା ମଧ୍ୟେ ଏହି ଯେ ଜଗତ
କେବେହେଁ ନ ଥାଇ ଜାଣ ଆହେ ରଘୁନାଥ ।
ତେଣୁକରି ଏ ଜଗତ ଇତ୍ୟାଦି ହେ ରାମ
କେଭେଁ ହୋଇ ନ ପାରନ୍ତି ଦ୍ୱୈତଭାବାପନ୍ନ ।
ଦେଶ, କାଳ, କ୍ରିୟା, ଜାତି, ଗୁଣର ସ୍ୱରୂପ
ଜାଣିବାକୁ ଯେଉଁ ଶକ୍ତି ଲୋଡ଼ା ହେ ନିଷ୍ପାପ,
ସେହି ଶକ୍ତି ବୋଧାତ୍ମାରେ ଥିଲେ ହେଁ ଶ୍ରୀରାମ
ନ ଥିଲା ପରି ନିଷ୍କ୍ରିୟ ଅଟନ୍ତି ସେମାନ ।
ତରଙ୍ଗ ସଙ୍କୁଳ ନଦୀ ଚିତ୍ରକାର ଯଥା
ଚିତ୍ରିତ କରିଣ ଥାଏ ଆହେ ଶୁଦ୍ଧଚେତ୍ତା,
କଳ୍ପନା ବିଳାସୀ ଜନ ବ୍ରହ୍ମରେ ସେପରି
ଜଗତ କଳ୍ପନା କରିଥାଏ ରୂପଧାରୀ ।
ମୃତ୍ତିକା ପିଣ୍ଡରେ ଯଥା ଘଟ ଅବସ୍ଥାନ
ବ୍ରହ୍ମ ମଧ୍ୟରେ ସେପରି ଜଗତ୍ ବର୍ତ୍ତମାନ ।
ତ୍ରିଭୁବନ-ରୂପୀ ଏହି ପୁତ୍ତଳିକା ମାନ
ବ୍ରହ୍ମରୂପୀ କାଷ୍ଠେ ରହିଁଛନ୍ତି ଅନୁତ୍କୀର୍ଣ୍ଣ ।
ଉପଯୁକ୍ତ ଅଧିକାର ସମ୍ପନ୍ନ ଯେ ଜନ
ତା, ଆତ୍ମା ସମୁଦ୍ରେ ସୃଷ୍ଟି-ତରଙ୍ଗ-ସମାନ ।

ଅଜର, ଅମର ସେହି ଆତ୍ମତତ୍ତ୍ୱ ଜାଣ
ହୋଇଲେ ହେଁ ସର୍ବଭାବ ବିକାର ବିହୀନ
ଶ୍ରୁତି ତାକୁ ରାମ ! ସର୍ବ ସ୍ୱରୂପ ବୋଲିଣ
ଅବଲୀଳା କ୍ରମେ କରିଅଛଇ କୀର୍ତ୍ତନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଆତ୍ମବୋଧନ ବର୍ଣ୍ଣନେ**
**ନାମ ୩୮ଶ ସର୍ଗଃ ।**



## ୩୯ଶ ସର୍ଗଃ
## ସର୍ବପ୍ରଶାନ୍ତି

ବଶିଷ୍ଠ ବୋଲନ୍ତି ଶୁଣ ହେ ରଘୁନନ୍ଦନ
କେବଳ ହିଁ ଚିଦାକାଶ ବ୍ରହ୍ମ ବିଦ୍ୟମାନ ।
ତହୁଁ ଜନମେ ଜଗତ ଭାବର ଅଧ୍ୟାସ
ଜଗତ ଅଟେ କେବଳ ବ୍ରହ୍ମର ବିଳାସ ।
ପ୍ରଳୟରେ ବ୍ରହ୍ମା, ବିଷ୍ଣୁ, ଶିବ ଯେବେ ଲୀନ
ନାମ-ରୂପାତ୍ମକ ବିଶ୍ୱ ହୁଏ ତିରୋଧାନ,
ସେକାଳେ ଯେ ଶୁଦ୍ଧ ସତ୍ତ୍ୱ ଆତ୍ମା ଅବଶିଷ୍ଟ
ତହିଁ ସର୍ବ ପଦାର୍ଥର ଭାବ ଏକତ୍ରିତ ।
ସୃଷ୍ଟି କରଣରେ ଯେଉଁ ମାୟା ଆବଶ୍ୟକ
ତହିଁ ତାହା ନାହିଁ ଜାଣ ହେ ରଘୁନାୟକ ।
ଶୁଦ୍ଧ ସତ୍ତ୍ୱ ସହ ଆତ୍ମା ପ୍ରଳୟ କାଳରେ
ଏକମାତ୍ର ଅବଶିଷ୍ଟ ରହେ ରଘୁବୀରେ ।
ଚିଦ ବପୁ ଯେତେବେଳେ କରେ ସେ ଧାରଣ
"ସେହି ସତ୍‌ଭାବ ତାର ହୋଇଯାଏ ଲୀନ,"
ଏପରି ଧାରଣା ଯଥା ନୁହଇ ସଙ୍ଗତ
ଅସ୍ତିତ୍ୱେ ଜଡ଼ିତ ସେହୁ ତଥା ଅସଙ୍ଗତ ।
"ସେ ଅଛନ୍ତି" ଏହିଭାବେ ଅସ୍ତିତ୍ୱ ବିଷୟେ
ତାଙ୍କୁ ଜଡ଼ିତ କରିବା ସମିଚୀନ ନୁହେ ।
ନିବିଷୟତା ହିଁ ଯେଣୁ ତାହାଙ୍କର ରୂପ
ଅରୂପକୁ କିଏ ଅବା ଦେଖିପାରେ ରୂପ ?
ବାସନା ବିହୀନ ଯୋଗୀ ସମାଧିସ୍ଥ ହୋଇ
ଯାହାକୁ ହିଁ ସେହୁ ଅନୁଭବ କରୁଥାଇ,
ସେ ମହାନ-ଆତ୍ମା ସେହୁ ଜାଣ ରଘୁବୀର
ଅନନ୍ତ, ଅଚିନ୍ତ୍ୟ, ପୁଣି ଅତୀତ ବାକ୍ୟର ।
ସୁଖ ଦୁଃଖେ ଅଚଞ୍ଚଳ ପୁଣି ଅସଂପୃକ୍ତ
ଜ୍ଞାନୀ ଜନଙ୍କର ଶାନ୍ତିପୂର୍ଣ୍ଣ ଯେଉଁ ଚିତ୍ତ,
ତାହାହିଁ ସେହି ପଦର ସ୍ୱରୂପଟି ଜାଣ
ତୃଣ, ଲତା, ବୃକ୍ଷ, ଗୁଳ୍ମ ଉଦ୍ଭବରେ ପୁଣ,
ଯେଉଁ ସତ୍ତା ସଦା ରହିଥାଏ ବିଦ୍ୟମାନ
ସେହି ପଦର ସ୍ୱରୂପ ମଧ୍ୟ ତାହା ଜାଣ ।
ସକଳ ବସ୍ତୁଙ୍କ ଭାବ ଅଟନ୍ତି ଯେ ସେହି
ସକଳ ଚିନ୍ତାଧାରାର ଆଧାର ଅଟଇ ।
ଜଗତ ଆକାରେ ଯାହା ହୁଏ ପ୍ରକାଶିତ
ସେ ସକଳ ମିଥ୍ୟା ବୋଲି ଜାଣ ରଘୁନାଥ ।
ବସ୍ତୁତଃ ସେ ସବୁ ଜାଣ ସେ ଆତ୍ମା ମହାନ
ଚିଦାକାଶ ହିଁ ଜଗତରୂପେ ବିଦ୍ୟମାନ ।
ବ୍ରହ୍ମଠାରୁ ଜଗତର ରହେ ଯେ ଭିନ୍ନତା
ଜଗତର ଦୃଶ୍ୟଭାବ ଦେଖାଯାଏ ଯଥା,
ନିତାନ୍ତ ଭ୍ରମହିଁ ତାହା ଜାଣ ହେ ଶ୍ରୀରାମ
ତେଣୁ ଶ୍ରୁତି କହେ ବ୍ରହ୍ମ ଅଟନ୍ତି ଯେ ପୂର୍ଣ୍ଣ ।
ବ୍ରହ୍ମପଦ ବାଚ୍ୟ ଯାହା ସକଳ ହିଁ ପୂର୍ଣ୍ଣ
ବିକଶିତ ହୋଇଅଛି ପୂର୍ଣ୍ଣରୁ ସେ ପୂର୍ଣ୍ଣ ।
ପୂର୍ଣ୍ଣ ହିଁ ପୂର୍ଣ୍ଣ ମଧ୍ୟରେ ଅଛି ବିଦ୍ୟମାନ
ପୂର୍ଣ୍ଣ ବ୍ରହ୍ମ ପୂର୍ଣ୍ଣରୂପେ ଉଦିତ ହୋଇଣ,
ପୂର୍ଣ୍ଣ ବ୍ରହ୍ମରୂପେ ସଦା ପରିଦୃଷ୍ଟ ଜାଣ
ପୂର୍ଣ୍ଣକୁ ପୂର୍ଣ୍ଣ କିପରି କରିବ ଅପୂର୍ଣ୍ଣ ।
କ୍ଷୟ, ଉଦୟ ରହିତ ସେହି ଚିଦାକାଶ
ସତ, ଅସତ, ସର୍ବତ୍ର ସମ ତା ବିକାଶ ।
ସବୁରି ସେ ଆଦି ପୁଣି ସବୁରି ନିର୍ବାଣ
ତାହାଛଡ଼ା ବସ୍ତୁ ବୋଲି କିଛି ନାହିଁ ଜାଣ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ସର୍ବ ପ୍ରଶାନ୍ତି ବର୍ଣ୍ଣନେ**
**ନାମ ୩୯ଶ ସର୍ଗଃ ।**



## ୪୦ଶ ସର୍ଗଃ
## ଅଦ୍ୱୈତ ପ୍ରତିପାଦନ

ଶ୍ରୀରାମ କହନ୍ତ ଶୁଣ ଆହେ ମୁନି ମୁଖ୍ୟ
କ୍ଷୁଦ୍ରବୀଜ ମଧ୍ୟେ ଯଥା ଭବିଷ୍ୟତ ବୃକ୍ଷ,
କ୍ଷୁଦ୍ର ପରମାଣୁ ମଧ୍ୟେ ତଥା ଏ ଜଗତ
ରହି ନ ପାରିବ କାହିଁ ଆହେ ତପୋବନ୍ତ ?

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ଯହିଁ ବୀଜ, ତହିଁ ଭାବୀବୃକ୍ଷ ସୁନିଶ୍ଚିତ ।
ଉପଯୁକ୍ତ କ୍ଷେତ୍ର, ଜଳ ଇତ୍ୟାଦି ବ୍ୟତୀତ
ବୀଜ, ବୃକ୍ଷରୂପେ ନ ହୁଅଇ ବୃଦ୍ଧି ପ୍ରାପ୍ତ ।
ପ୍ରଳୟ କାଳରେ ସବୁ ଧ୍ୱଂସ ଯେଣୁ ହୋଇ
ଜଗତ୍‌କାରଣ ସାକାର-ବୀଜ ଲୋପ ପାଇ ।
ପରମାଣୁରୁ କିପରି ଜଗତ ଉତ୍ପତ୍ତି
ସମ୍ଭବି ପାରିବ ତେଣୁ କହ ରଘୁପତି ?
କ୍ଷେତ୍ର, କାଳ, ଜଳ ପରି ଯେତେ ସହକାରୀ-
କାରଣ ତାଙ୍କର କିଏ ହେବ ରଘୁଶିରୀ ?
ଯେଣୁ ବ୍ରହ୍ମ ନିରାକାର, ତେଣୁ ହେ ରାଘବ
ଜଗତ କାରଣ ତାଙ୍କୁ କହିତ ନ ହେବ ।
ଆବର ତାହାର ମଧ୍ୟେ ସେ ପରମାଣୁର
ସମ୍ପର୍କ ଭାବନା ଅସମ୍ଭବ ରଘୁବୀର ।
ତେଣୁ କରି ସେ ନୁହନ୍ତି ଜଗତ କାରଣ
ଜଗତ-ବୀଜ ଅଭାବ ତାଙ୍କ ମଧ୍ୟେ ଜାଣ ।
ତେଣୁ ଏ ଜଗତ ସତ୍ତା ହୁଅଇ ଅସିଦ୍ଧ
ବ୍ରହ୍ମହିଁ ଜଗତ ରୂପେ ହୁଅନ୍ତି ପ୍ରସିଦ୍ଧ ।
ତେଣୁ ଜାଣ କିଛି ହେଲେ ନ ହୋଇ ଉତ୍ପନ୍ନ
କାହାର ବିନାଶ ପୁଣି ନାହିଁ କଦାଚନ ।
ସଂବିତମୟ ଆକାଶ ବ୍ୟତୀତ ହେ ରାମ
ଏ ଜଗତ ଅନ୍ୟ କିଛି ନୁହେଁ ବୋଲି ଜାଣ ।
ଦୃଶ୍ୟ, ଅହଂଭାବ ଆଦି ସବୁ ତେଜି ଦେଇ
ଚିଦାକାଶ ରୂପେ ସ୍ଥିତ ରହ ରଘୁସାଇଁ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଅଦ୍ୱୈତ ପ୍ରତିପାଦନ**
**ବର୍ଣ୍ଣନେ ନାମ ୪୦ଶ ସର୍ଗଃ ।**



## ୪୧ଶ ସର୍ଗଃ

## ବ୍ରହ୍ମ-ଜଗତ ଅଭେଦ

କହନ୍ତି ବଶିଷ୍ଠ ପୁଣି ଶୁଣ ରଘୁନାଥ
ଏ ଜଗତର ବ୍ରହ୍ମତ୍ୱ ହେଲା ସ୍ଥିରୀକୃତ ।
ତେଣୁକରି ଏହି ଚରାଚର ଯେ ଜଗତ
କେବେହେଁ ଉତ୍ପନ୍ନ ହୋଇ ନାହିଁ ଏହା ସତ୍ୟ ।
ବିଶେଷତଃ ନିରାକାର ଅଟଇ ଯେ ଆତ୍ମା
ସାକାର ବୃକ୍ଷର ବୀଜ ସମ ତାର ସତ୍ତା
ହୋଇ ନ ପାରଇ କେଉଁ ଜଗତ କାରଣ
ମନେରଖ ରଘୁବୀର ଏହି ନିର୍ଦ୍ଧାରଣ ।
କଳ୍ପନା ସମ୍ଭୂତ ଏହି ଜଗତକୁ ରାମ
ଚିତ୍ ସ୍ୱଭାବ ସମ୍ପର୍ଣ୍ଣ ଜାଣି ଜ୍ଞାନୀଗଣ
ଆତ୍ମସ୍ଥ ରହି ସର୍ବଦା କରନ୍ତି ବିଶ୍ରାମ
ତାଙ୍କୁ ଛୁଇଁ ନ ପାରଇ ଏ ଜଗତ-ଭ୍ରମ ।
ଯିଏ ଯେପରି ଭାବରେ କରଇ ଭାବନା
ତଦ ଅନୁରୂପ ଫଳ ପାଏ ସେହୁ ସିନା ।
ଦୃଶ୍ୟ ଜଗତ ଭାବନା କରେ ଯେ ଅଜ୍ଞାନ
ତାର ଅନୁବର୍ତ୍ତୀ ସେହୁ ହୋଇପଡ଼େ ଜାଣ ।
ଜଗତ ଯେ ସ୍ୱପ୍ନସମ ହୁଏ ଅନୁଭୂତ
ଅଜ୍ଞାନୀ ତା ବୁଝି ନ ପାରଇ ରଘୁନାଥ ।
ଚୈତନ୍ୟ ନୁହଇ ଯାହା ତାହା କେଉଁ ପରି
ଚିତ୍‌କ୍ରିୟାର ରୂପକୁ ପାରିବଟି ଧରି ?
ତତ୍ତ୍ୱଜ୍ଞାନୀ ତେଣୁ ଚିତ୍ ସ୍ୱାରୂପ୍ୟ ଲଭିଣ
ସଂସାର ବେଭାରେ ଶାନ୍ତଭାବ ଆଚରିଣ
ଚିତ୍ ବିଳାସକୁ ଏହି ଜଗତ ରୂପରେ
ଦରଶନ କରୁଥାଏ ଆହେ ରଘୁବୀରେ ।
ଅତି ନିର୍ମଳ ପରମାକାଶେ ହେ ଶ୍ରୀରାମ
ବନ୍ଧନ ବା ମୁକ୍ତି ବୋଲି କିଛି ନାହିଁ ଜାଣ ।
ଚିଦାକାଶ ସ୍ପନ୍ଦନହିଁ ଏହି ଜଗତର
ସ୍ୱରୂପ ଅଟଇ ଯେଣୁ ଆହେ ରଘୁବୀର ।
ତେଣୁ କେଉଁ ଭୂତମୟ ନୁହେ ଏ ଜଗତ
ଆକାଶ, ଦେଶ, କାଳାଦି ସମସ୍ତ ଅସତ ।
ଛାୟା ସ୍ୱରୂପେ ଏମାନେ ଛନ୍ତି ଅବସ୍ଥିତ
ଏପରି ଭାବନା ହୋଇଲେ ହେଁ ଅନୁଭୂତ ।
ପରମାର୍ଥିକ ଦୃଷ୍ଟିରେ ଚିଦ୍‌ଘନ ମାତ୍ର
ପ୍ରଦୀପ୍ତ ହେଉଅଛନ୍ତି ବୁଝ ରଘୁନାଥେ ।
ଶୂନ୍ୟ ନୋହିଣ ଏମାନେ ଅଟନ୍ତି ଯେ ଶୂନ୍ୟ
ସାକାର ହେଲେହେଁ ପୁଣି ଆକାର ବିହୀନ ।
ଅସତ ହେଲେହେଁ ରହିଥାନ୍ତି ଦୀପ୍ତିମାନ
ଚିତ୍‌ସ୍ୱରୂପ ସକଳେ ଜାଣ ରଘୁନାନ ।
ଚିଦାକାଶର ମଳିନ ଆକାରଟି ଜାଣ
ଜଗତ ନାମେ ଆଖ୍ୟାତ ହୋଇଛି ହେ ରାମ ।

ନିର୍ମଳ, ସ୍ୱଚ୍ଛ ଆକାର ସେ ଚିଦାକାଶର
ନିର୍ବାଣ ନାମେ ପ୍ରସିଦ୍ଧ ହୋଇଛି ସଂସାର ।
ଆକାଶ ଶୂନ୍ୟତା ସମ ସେ ନିର୍ମଳ ରୂପ
ସର୍ବତ୍ର ବିସ୍ତୃତ ଅଛି ରଘୁକୁଳ ଦୀପ ।
ତେଣୁ ସେହି ଚିଦାକାଶ ଆହେ ରଘୁରାଣ
ଏ ଜଗତ ଠାରୁ ସଦା ଅଟଇ ଅଭିନ୍ନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବ୍ରହ୍ମ ଜଗତ ଅଭିନ୍ନତା ପ୍ରତିପାଦନେ ନାମ ୪୧ଶ ସର୍ଗଃ ।**



## ୪୨ଶ ସର୍ଗଃ

## ଆକାଶ କୁଟୀରେ ବଶିଷ୍ଠ ସମାଧି

ଗଗନର ସ୍ୱଚ୍ଛତାକୁ ଶୂନ୍ୟତା ଯେପରି
ନଷ୍ଟ କରି ନ ପାରଇ ଆହେ ଋପଧାରୀ ।
ଦୃଶ୍ୟ ଶ୍ରୀ ସେପରି ଚିଦାକାଶ ନିର୍ମଳତା
ଆବୃତ କରି ନପାରେ ଆହେ ଧନୁହସ୍ତା ।
ଚିତ୍‌ଶକ୍ତିରେ ସୃଷ୍ଟିକ୍ରିୟା ଥିଲେହେଁ ନିହିତ
ଚିତ୍ ଯେଣୁ ଚିନ୍‌ମୟ ଅଟେ ରଘୁନାଥ ।
ଅଚିତ୍‌ଭାବର କଉଣସି ସମ୍ଭାବନା
ତା ତହିଁ ରହି ନ ପାରେ ଆହେ ମହାମନା ।
ଏ ସମ୍ବନ୍ଧେ ପୂର୍ବେ ମୁହିଁ ଯାହା ଦେଖିଅଛି
ସେ ପାଷାଣ ବୃତ୍ତାନ୍ତ ମୁଁ ତୁମକୁ କହୁଛି ।
ଏକ ସମୟରେ ଜାଣ ଏମନ୍ତ ଘଟିଲା
ପୂର୍ଣ୍ଣରୂପେ ରହିବାକୁ ଇଚ୍ଛା ମୋର ହେଲା ।
ମିଥ୍ୟା ଜାତ ଏହି ଜାଗତିକ ବ୍ୟବହାର
ପରିତ୍ୟାଗ କରିବାକୁ ଅଭିଳାଷ ମୋର ।
ଏକ ଦେବାଳୟେ ଯାଇଁ ପ୍ରବେଶ ହୋଇଣ
ତନ୍ମୟଭାବ ତହିଁ ମୁଁ କରେ ଅବସ୍ଥାନ ।
ମନେ ମନେ ଏମନ୍ତ ମୁଁ ବସି ଭାବୁ ଥାଇଁ
ଅସାର ସଂସାର ଏବେ ଶୀଘ୍ର ତେଜିବଇଁ ।
ଆପାତ ମଧୁର ଏ ଜଗତ ବ୍ୟବହାର
ଅତିଶୟ ଦୁଃଖପ୍ରଦ ପରିଣାମ ଯାର ।
ଜଗତରୂପ ଦର୍ଶନେ ଦୁଇବିଧ ଫଳ
ଶୁଭ ବା ଅଶୁଭ ଜାତ ହୁଏ ରଘୁବାଳ ।
ସେ ଫଳ ଭୋଗରେ ଖେଦ ଆବର ଉଦ୍‌ବେଗ
ବର୍ଦ୍ଧିତ ହୁଏ ଆତ୍ମାର ଆହେ ମହାଭାଗ ।
ତେବେ କିମ୍ପାଇଁ ତାହା ମୁଁ କରୁଛି ଦର୍ଶନ ?
ଏ ସଂସାର ଚିଦାକାଶେ କରେ ଅବସ୍ଥାନ ।
ନିର୍ଜନ ସ୍ଥାନରେ କରିବଇଁ ଅବସ୍ଥାନ
ସମାଧି ଯୋଗ ପରମପଦେ ହେବି ଲୀନ ।
ଯହିଁ ଗଲେ ଭଉତିକ ସଂସ୍ପର୍ଶ ଜନିତ
ଦୁଃଖ କେବେହେଲେ ହେବ ନାହିଁ ଅନୁଭୂତ ।
ସେହିପରି ସ୍ଥାନ ମୁହିଁ ଧରାତଳେ କାହିଁ
ଖୋଜି ଖୋଜି ଥକିଗଲି ପାଇଲଇଁ ନାହିଁ ।
ଏହିପରି ଭାବି ଭାବି ପରିଶେଷେ ମୁହିଁ
ସୁନିର୍ମଳ ଆକାଶକୁ ପ୍ରସ୍ଥାନ କଲଇଁ ।
ତହିଁ ମଧ ଦେଖେ ଦେବ, ଗନ୍ଧର୍ବ, ଅମର
ଚିତ୍ତ ବିକ୍ଷେପ କାରକ ଜଗତ ତାଙ୍କର ।
ଆକାଶର ସବୁସ୍ଥଳେ ରହିଛି ବିସ୍ତୃତ
ନିରାଶରେ ତହୁଁ ପୁଣି ଫେରିଲି ତ୍ୱରୀତ ।
ସର୍ବପ୍ରାଣୀଙ୍କ ଅଗମ୍ୟ ନିର୍ଜନ ସ୍ଥାନରେ
ନିର୍ମାଣ କଲଇଁ ତହିଁ ସଙ୍କଳ୍ପ କୁଟୀରେ ।
ନିର୍ବିକଳ୍ପ ସମାଧିରେ ଶତବର୍ଷ ରହି
ସମାଧି ଭଗନ ପରେ ତହୁଁ ଉଠିବଇଁ ।
ଏହିପରି ଭାବି ମୁହିଁ ନିର୍ମଳ ମନରେ
ନିର୍ବିକଳ୍ପ ସମାଧିରେ ରହେ ନିଶ୍ଚିନ୍ତରେ ।
ସେହି ଶତବର୍ଷ କାଳ ନିମେଷ ପରାଏ
କେଣେ ବିତିଗଲା ତାହା ଜଣାତ ନ ଯାଏ ।
ମୋର ବୁଦ୍ଧି, ମନ, ପ୍ରାଣ, ଇନ୍ଦ୍ରିୟ ସକଳ
ନବୀନ ଉତ୍ସାହ ଧରି ଫୁଟିଲେ ସତ୍ୱର ।
ଇଚ୍ଛାରୂପିଣୀ ପିଶାଚୀ ହୋଇ ଆଗଭର
ଅହଂକାର ପିଶାଚକୁ ଘେନି ସଙ୍ଗତର ।
ପରସ୍ପର ଆଲିଙ୍ଗନେ ହୋଇଣ ଜଡ଼ିତ
ମୋତେ ସ୍ପର୍ଶ କରିବାକୁ ହୋଇଲେ ଉଦ୍ୟତ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଆକାଶ କୁଟୀରେ ବଶିଷ୍ଠ ସମାଧି ବର୍ଣ୍ଣନେ ନାମ ୪୨ଶ ସର୍ଗଃ ।**



## ୪୩ଶ ସର୍ଗଃ

## ବିଦିତଦେବ ଅହଙ୍କାର୍

ଶ୍ରୀରାମ କହନ୍ତି ଶୁଣ ଆହେ ମୁନିବର
ଜ୍ଞାନସାର ନିର୍ବାଣକୁ କରିଣ ହାସଲ
କିପରି ଜନମ ହେଲା ଅହଙ୍କାର ପୁଣ
ବୁଝାଇ କହିବା ହେଉ ହେ ତପୀମଣ୍ଡନ ।
କହନ୍ତି ବଶିଷ୍ଠ ତାହା ଶୁଣ ରଘୁବୀର
ଜ୍ଞାନୀ ବା ଅଜ୍ଞାନୀ ଯାହା ହୋଉଥାଉ ନର
ଅହଙ୍କାର ବିନା ରାମ କାହାରି ଶରୀର
ରହି ନ ପାରଇ ଜାଣ ଏ ମର୍ତ୍ତ୍ୟ ଧାମର ।
ଅହଙ୍କାରଟି ଅଧାର, ଆଧେୟ ଶରୀର
ଆଧାର ବିନା ଆଧେୟ ରହେ କି ପ୍ରକାର ?
ଅଜ୍ଞାନ ବଶରୁ ଅହଙ୍କାରର ଜନମ
ଦୃଷ୍ଟିପାତକଲି ମୁହିଁ ତାହାକୁ ଯେ କ୍ଷଣ,
ଯଦ୍ୟପି ସେ ମୋ ଶରୀରେ ବାସ କରୁଥିଲା
ଶାରଦୀୟ ମେଘସମ ନିଷ୍ଫଳ ହୋଇଲା ।
ଚିତ୍ରାଙ୍କିତ ଅଗ୍ନି ଯଥା ପୋଡ଼ି ନ ପାରଇ
କୌଣସି ପ୍ରାଭବ ସେହୁ ଦେଇ ନ ପାରଇ ।
ଜଗତ ଓ ଅହଂଭାବ ହେଲେ ପରିଜ୍ଞାତ
ଉପୁଜାଇ ନ ପାରନ୍ତି କୌଣସି ଉତ୍ପାତ ।
ନିଷ୍ଫଳ ହୋଇ ସେମାନେ ରହିଥାନ୍ତି ପଡ଼ି
ଚିତ୍ରାଙ୍କିତ ଅଗ୍ନି ଯଥା ନ ପାରଇ ପୋଡ଼ି ।
ସମାଧି ସମୟେ ଅହଂକାର ତିରୋହିତ
ଜଗତ ବ୍ୟାପାରେ ତହିଁ ପୁଣି ମୁଁ ସଂସ୍ଥିତ,
ଏ ଉଭୟ ଅବସ୍ଥାରେ ମୋର ସମଜ୍ଞାନ
ଥିବାରୁ ମୁଁ ସମଭାବେ ରହିଅଛି ଜାଣ ।
"ଯେଣୁ ମୁଁ ଅହଂକାରର, କେହି ନୁହେ ଜାଣ
ଅହଙ୍କାର ଯେଣୁ ମୋ'ର କେହି ନୁହେଁ ପୁଣ ।"
ଏ ବିଶ୍ୱ ପ୍ରପଞ୍ଚ ସେହି କାରଣରୁ ରାମ
ଦର୍ଶିତ ହେବା ବିଧେୟ ଚିଦ୍‌ଘନ ସମ ।
ଏ ବିଷୟେ ମୋର ଅବା ଅନ୍ୟ ଜ୍ଞାନୀଙ୍କର
କଉଣସି ଭ୍ରମ ନାହିଁ ଜାଣ ରଘୁବୀର ।
ହେ ରାମ ! "ମୁଁ ନାହିଁ କିମ୍ବା ଅନ୍ୟ କେହି ନାହିଁ"
ଏହି ରୂପ ସିଦ୍ଧାନ୍ତକୁ ମନ ମଧ୍ୟେ ଥୋଇ,
ପାଷାଣ ସଦୃଶ ତୁମେ ନିଶ୍ଚଳ, ମଉନ
ରହିକରି ଚଲୁଥାଅ ହେ ରଘୁନନ୍ଦନ ।

ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଉତ୍ତର ଖଣ୍ଡେ ବିଦିତ ଦେବ ଅହଙ୍କାର
ବର୍ଣ୍ଣନେ ନାମ ୪୩ଶ ସର୍ଗଃ ।



## ୪୪ଶ ସର୍ଗଃ

## ଜଗତ ଜାଲ୍ ବର୍ଣ୍ଣନ

ଶ୍ରୀରାମ କହନ୍ତି ଶୁଣ ଆହେ ତପୋଧନ
ଆକାଶେ ସମାଧିମଗ୍ନ ରହିଲେ ଆପଣ ।
ଶତବର୍ଷ ସମାଧିରେ ଗତ ହୋଇଗଲା
ସମାଧି ଭଗନ ପରେ କି ଅବା ଘଟିଲା ?
କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ସମାଧି ଭଗନ ମୋର ହେଲା ପରେ ଜାଣ ।
ଅସ୍ପଷ୍ଟ ହେଲେହେଁ ଥିଲା ଅତି ମନୋହର
ଏପରି ଶବ୍ଦ ଶୁଭିଲା କର୍ଣ୍ଣକୁ ମୋହର ।
ଦୂରରୁ ଆସିବା ହେତୁ ସ୍ପଷ୍ଟ ତା ନଥିଲା
ରମଣୀର ସ୍ୱରବୋଲି ମୋର ମନେହେଲା ।
ପରେ ଯେତେବେଳେ ଚିଦାକାଶେ ପ୍ରବେଶିଲି
ବୀଣାଧ୍ୱନି ସମ ସେହି ଶବ୍ଦକୁ ଶୁଣିଲି ।
ପରେ ପୁଣି ତାହା ଆର୍ଯ୍ୟାଛନ୍ଦ ଧ୍ୱନି ପରି
ମନମୁଗ୍ଧ କରିଦେଲା, ବର୍ଣ୍ଣିନି ନ ପାରି ।
ଦୃଷ୍ଟିପାତ କରନ୍ତେ ମୁଁ ଦେଖିଲଇଁ ତହିଁ
ରମଣୀ ଗୋଟିଏ ମୋ ନିକଟେ ବସିଛଇଁ ।
ତା ଅଙ୍ଗ ପ୍ରଭାରେ ସେହି ଆକାଶ ପ୍ରଦେଶ
ଉଭାସିତ ହୋଇଥାଏ ଆହେ ରଘୁଈଶ ।
ପୁଣି ନିକଟ ହୋଇଣ ସେ ସୁନ୍ଦରୀ ବର
ସୁମଧୁର ସ୍ୱରେ ମୋତେ କହିଲାକ ଗୀର ।
ଆହେ ମୁନିବର ! ଆପଣଙ୍କ ଚଇତନ୍ୟ
ରାଗ, ଦ୍ୱେଷରେ ଦୂଷିତ ନୁହେ କଦାଚନ ।
ସଂସାରେ ମଗ୍ନ ଅଛନ୍ତି ଯେଉଁ ବ୍ୟକ୍ତିଗଣ
ଅବଲମ୍ବନ ଅଟନ୍ତି ତାଙ୍କର ଆପଣ ।
ତେଣୁ ଆପଣଙ୍କୁ ମୁହିଁ କରୁଛି ପ୍ରଣାମ
ଦୟା ରଖିଥିବେ ମୋଠି ଆହେ ତପୋଧନ ।
ତା ପ୍ରତି ନ କରି ମୁହିଁ ଆଦର ପ୍ରକାଶ
ଗମନେ ଉଦ୍ୟତ ହେଲି, ଦଶରଥ ଶିଷ୍ୟ ।

ସମ୍ମୁଖେ ଜଗଜ୍ଜନନୀ ମାୟାଙ୍କୁ ଦେଖିଣ
ତାଙ୍କ ପ୍ରତି ବି ଉପେକ୍ଷା କଲି ପ୍ରଦର୍ଶନ ।
ତହୁଁ ଚିଦାକାଶେ ଯାଇଁ ପହଞ୍ଚିଲି ମୁହିଁ
ସେ ସମୟେ ଭାବନା ମୋ କହି ନ ପାରଇ ।
ଚିଦାକାଶେ ଭ୍ରମି ଭ୍ରମି ଦେଖିଲଇଁ ମୁହିଁ
ତହିଁ ଅସଂଖ୍ୟ ଜଗତ ବିରାଜୁ ଅଛଇଁ ।
ଶୂନ୍ୟସ୍ୱରୂପ ଅଟନ୍ତି ସେ ସର୍ବ ଜଗତ
ତେଣୁ କଳ୍ପେ ମହାକଳ୍ପେ ଜାଣ ରଘୁନାଥ
ସେମାନଙ୍କ ସୃଷ୍ଟି ବିଷୟରେ ହେ ଶ୍ରୀରାମ
ଏକଇ ଭାବ ରହିଛି ଏକଥା ଜାଣିମ ।
ସେ ସକଳ ଜଗତରେ ଗୋଟିକର ଯେବେ
ପ୍ରଳୟ ହୁଏ ତା ଅନ୍ୟେ ନ ଜାଣନ୍ତି କେଭେଁ ।
ସେ ସବୁ ଜଗତ ମଧ୍ୟେ ଜାଣ ହେ ଶ୍ରୀରାମ
ଅସଂଖ୍ୟ ବ୍ରହ୍ମା, ଶଙ୍କର ଛନ୍ତି ବିଦ୍ୟମାନ ।
ବିଷ୍ଣୁ ଆଦିକରି ସର୍ବେ ପୃଥକ ଭାବରେ
ବିଦ୍ୟମାନ ରହିଛନ୍ତି ଜାଣ ରଘୁବୀରେ,
ଚିତ୍‌ଶକ୍ତି ମଧ୍ୟରେ ସେହି ସକଳ ଜଗତ
ବିରାଜିତ ରହିଛନ୍ତି ଆହେ ରଘୁନାଥ ।
ଚିତ୍ ଶକ୍ତିରୁ ହିଁ ଜାଣ ଜନମ ତାଙ୍କର
ସରବେ ଚିନ୍ମୟ ପୁଣ କୌଶଲ୍ୟା କୁମର ।
ଚିତ୍ ଶକ୍ତି ହିଁ ସର୍ବତ୍ର ସର୍ବରୂପ ଧରି
ବିରାଜମାନ କରନ୍ତି ଆହେ ରୂପଧାରୀ ।
ଯେ କାଳେ ଯେ ବାକ୍ୟ ରାମ କର ଉଚ୍ଚାରଣ
ସତ୍ୱରେ ତା ନାମ ରୂପ କରିଣ ଧାରଣ,
ଅର୍ଥସହ ସେହି ଚିତ୍‌ସ୍ୱରୂପ ଯେ ଆତ୍ମା
ଉଦିତ ହୋଇଣ ଥାନ୍ତି ଆହେ ଶୁଦ୍ଧ ଚେତା ।
ପୁଣି ଯେତେବେଳେ ଏହି ରୂପ ଆଉ ନାମ
ଆକାଶଠୁ ଶୂନ୍ୟ ବୋଲି ବୁଝିବ ଶ୍ରୀରାମ
ତତ୍‌କାଳେ ସେ ନାମ, ରୂପ ଚିତ୍ ସ୍ୱରୂପରେ
ବିଲୀନ ହୁଏ ଦେଖିବ ଆହେ ରଘୁବୀରେ ।
ଶବଦମୟ ଅଟଇ ଯେ ହେତୁ ଆକାଶ
ନାମ ରୂପମୟ ଜଗତ୍ ତାହାର ବିକାଶ ।
ପୁଣି ସେହି ଶବ୍ଦମୟ ଅଟେ ଯେ ଆକାଶ
କ୍ରମେ ଚିଦାକାଶ ମଧ୍ୟେ କରେ ସେ ପ୍ରବେଶ ।
ଏହିପରି ମୁହିଁ ସେହି ସକଳ ଦୃଶ୍ୟକୁ
ଆକାଶରୁ ଉତପନ୍ନ ବୋଲି ବୁଝି ତାଙ୍କୁ
ଅବିନାଶୀ ଚିଦାକାଶ ଅନୁଭବ କରି
ସେ ଆକାଶେ ମୋ ସାରୂପ୍ୟ ମୁହିଁ ଲାଭକରି,
ତାର ଅନ୍ତରସ୍ଥ ଦିଗ, ଦେଶ, କ୍ରିୟା, କାଳ
ଦ୍ରବ୍ୟ ଆଦି କରି ତହିଁ ଦେଖିଲି ସକଳ ।
ସେ ସକଳ ଦେଖି ମଧ୍ୟ ମୁଁ ତତ୍ତ୍ୱଦୃଷ୍ଟିରେ
ବୁଝିଲି ତା ସବୁ କିଛି ନାହିଁ ରଘୁବୀରେ ।
ତେଣୁ ବ୍ରହ୍ମମଧ୍ୟେ ନାହିଁ ଏହି ଯେ ଜଗତ
କେବଳ ବାକ୍ୟ ହିଁ ରହିଅଛି ରଘୁନାଥ ।
ତାହା ନାମରୂପାତ୍ମକ ଜଗତ୍ ଆକାରେ
ପ୍ରକାଶ ପାଏ ସନ୍ଦେହ ନାହିଁ ଯେ ଏଥିରେ ।
ତୁମ୍ଭର, ଆମ୍ଭର ପୁଣି ଅନ୍ୟମାନଙ୍କର
ନାମରୂପ ନାହିଁ ତେଣୁ କରି ରଘୁବୀର ।
ସର୍ବେ ସେ ପାଷାଣବତ ଚିଦାକାଶ ଭିନ୍ନ
ଅନ୍ୟ କିଛିହିଁ ନୁହନ୍ତି ହେ ରଘୁନନ୍ଦନ ।
ସେହି ଚିଦାକାଶ ମଧ୍ୟେ ଜାଣ ରଘୁବୀର
ଉଦୟ ହୁଅନ୍ତି ପ୍ରାଣୀ, ଜଗତ ଆବର
ଚିତ୍ ସ୍ୱରୂପରେ ତହିଁ ଥାଆନ୍ତି ସେମାନେ
ଚିଦାକାଶ ଭିନ୍ନ କିଛି ନୁହନ୍ତି ଏମାନେ ।
ବ୍ରହ୍ମ ସ୍ୱରୂପ ହେଲେ ହେଁ ବାହାରକୁ ଜାଣ
ବ୍ରହ୍ମେତର ନାନା ଭାବ, ଆକାର ସମ୍ପନ୍ନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଜଗତଜାଲ ବର୍ଣ୍ଣନେ ନାମ ୪୪ଶ ସର୍ଗଃ ।**



## ୪୫ଶ ସର୍ଗଃ
## ଜଗତ, ଆକାଶ, ଚିଦାକାଶ ଏକତ୍ୱବୋଧ

ଶ୍ରୀରାମ ବୋଲନ୍ତି ଦେବ ପ୍ରଳୟ ଅନ୍ତରେ
ମୁକ୍ତି ଲଭିଥାନ୍ତି ଯେଣୁ ଜୀବ ଚରାଚରେ ।
କାହାରି କୌଣସି ରୂପ ଅଜ୍ଞାନ ନଥାଇ
ଜଗତ ପୁଣି ଉତ୍ପନ୍ନ କିପରି ଲଭଇ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ପ୍ରଳୟାନ୍ତେ ଅବଶିଷ୍ଟ ଥାନ୍ତି ବ୍ରହ୍ମମାତ୍ର ।
ତେତେବେଳେ ତାଙ୍କୁ ଜାଣ କୌଣସି ବାକ୍ୟରେ
ନିର୍ଦ୍ଦିଷ୍ଟ କରି ନ ହେବ ଆହେ ରଘୁବୀରେ ।

ସେ ଯେଣୁ ଜଗତ ନିଜ ହୃଦୟ ମଧ୍ୟରେ
ଦରଶନ କରୁଥାନ୍ତି ଆହେ ରଘୁବୀରେ ।
ତେଣୁ କରି ଏ ଜଗତ ତାଙ୍କଠାରୁ ଜାଣ
କେବେହେଁ ପୃଥକ ନୁହେଁ ହେ ରଘୁନନ୍ଦନ ।
କୌତୁକ କ୍ରୀଡ଼ା ପରାୟେ ନିଜ ହୃଦୟରେ
ଜଗତ ଦର୍ଶନ କରନ୍ତି ଆବଦ୍ଧ ଭାବରେ ।
ମୁକ୍ତଭାବେ ନିମଜ୍ଜିତ ଥିଲାବେଳେ ରାମ
ଜଗତ ଦର୍ଶନ ହୋଇ ନ ପାରଇ ଜାଣ ।
ଆମ୍ଭମାନଙ୍କ ସଦୃଶ ନରଗଣ ଜାଣ
ବାସ୍ତବ ଜଗତ ସତ୍ତା ନପାନ୍ତି ଦର୍ଶନ ।
ତେଣୁକରି ଜଗତର ଉତ୍ପତ୍ତି, ବିଲୟ
ଅସମ୍ଭବ ଅଟେ ଜାଣ କୌଶଲ୍ୟା ତନୟ ।
ବିଶେଷରେ ଜଗତ୍ ଯେଣୁ ବ୍ରହ୍ମର ହୃଦୟ
ତେଣୁ କିପରି ସମ୍ଭବ ତାହାର ପ୍ରଳୟ ?
ତେଣୁ କାହାରି ନୁହଇ ବିନାଶ, ବିକାଶ
ଏକମାତ୍ର ସର୍ବରୂପୀ ବ୍ରହ୍ମ ପରକାଶ ।
ଏ ଜଗତ ଅଟେ ମହାଚିତ୍‌ର ଶରୀର
ତେଣୁ ତାହା ଅବିନାଶୀ ଆହେ ରଘୁବୀର ।
ଚିତ୍ ଯେଣୁ ଅବିନାଶୀ ଆହେ ରଘୁନାଥ
ଜଗତ ବିନାଶ ତେବେ ସମ୍ଭବ କେମନ୍ତ ?
ଅଚ୍ଛେଦ୍ୟ, ଅଦାହ୍ୟ ପୁଣି ଅକ୍ଲେଦ୍ୟ ଅଶୋଷ୍ୟ
ଯେ ସଂବିତ ଅଟେ ଜାଣ ଆହେ ରଘୁଶିଷ୍ୟ ।
ଅଜ୍ଞଜନେ ସେ ସଂବିତ ରହେ ଆଗୋଚର
କେବଳ ଜ୍ଞାନୀ ହିଁ ବୁଝେ ତାହାର ବେଭାର ।
ସଂବିତ ହୃଦୟେ ଯାହା କିଛି ଦୃଷ୍ଟ ହୁଏ
ସଂବିତ ବ୍ୟତୀତ ତାହା ଅନ୍ୟ କିଛି ନୁହେଁ ।
ତେଣୁ ବାସ୍ତବରେ କିଛି ନୁହଇ ଉତ୍ପନ୍ନ
ବିନାଶ ହେବାର ପ୍ରଶ୍ନ ଉଠିବ କେସନ ?
ସ୍ମୃତି, ବିସ୍ମୃତି ରୂପକ ସ୍ୱଭାବ ବଳରେ
ଅନନୁଭବ ବା ଅନୁଭବ ହୋଇପାରେ ।
ଯେ ବସ୍ତୁ ଯେଉଁ ପଦାର୍ଥେ ହୋଇଛି ନିର୍ମିତ
ସେ ପଦାର୍ଥ ନାଶ ନାହିଁ ତା ନାଶ ବ୍ୟତୀତ ?
ବ୍ରହ୍ମ ସ୍ୱରୂପ ଅଟଇ ଯେଣୁ ଏ ଜଗତ
ବ୍ରହ୍ମ ସମ ଅବିନାଶୀ ଆବର ସେ ନିତ୍ୟ ।
ପ୍ରଳୟାଦି ସବୁ ସେହି ମହାକାଳରୂପୀ
ବ୍ରହ୍ମଙ୍କ ଅଙ୍ଗ ପ୍ରତ୍ୟଙ୍ଗ, ଯେହୁ ସର୍ବବ୍ୟାପୀ ।

ତାହା ନୋହିଲେ ଅମୂର୍ତ୍ତ ସେହି ଚିଦାକାଶେ
ପ୍ରଳୟ ବିକାର ସମ୍ଭାବନା କାହୁଁ ଆସେ ?
ତେଣୁ ପ୍ରଳୟାନ୍ତେ ଭାବମୟ ଏ ଜଗତ
ସଂବିତ ସ୍ୱରୂପ ବ୍ରହ୍ମେ ବ୍ରହ୍ମରୂପେ ସ୍ଥିତ ।
ଅତୀତ, ଭବିଷ୍ୟ, ବର୍ତ୍ତମାନ ଆଦି ଯେତେ
ଏହି ଜଗତର ସୃଷ୍ଟି ପ୍ରଳୟ ସହିତେ,
ଆବର ସବୁପଦାର୍ଥ, ସେହି ବ୍ରହ୍ମଠାରେ
ତାହାର ସ୍ୱଭାବ ରୂପେ ଛନ୍ତି ରଘୁବୀରେ ।
ବ୍ରହ୍ମ ଆତ୍ମ-ସ୍ୱରୂପ ବା ବ୍ରହ୍ମର ସ୍ୱଭାବ
ଏଥିରେ କୌଣସି ଭେଦ ନାହିଁଟି ରାଘବ ।
ତେଣୁ ଏକମାତ୍ର ବ୍ରହ୍ମ ନିଶ୍ଚଳ ଭାବରେ
ବିରାଜମାନ ରହିଣଛନ୍ତି ଏ ବିଶ୍ୱରେ ।
**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଜଗତ ଆକାଶ ଚିଦାକାଶ ଏକତ୍ୱ ବୋଧ ବର୍ଣ୍ଣନେ ନାମ ୪୫ଶ ସର୍ଗଃ ।**



## ୪୬ଶ ସର୍ଗଃ
## ପାଷାଣ ଚୈତନ୍ୟ

ଶ୍ରୀରାମ କହନ୍ତି ଏବେ କହ ତପୋଧନ
ଯେପରି ଏ ତତ୍ତ୍ୱ ତବ ହେଲା ଦରଶନ ।
ସେ ଚିଦାକାଶେ କି ତୁମେ ତତ୍ତ୍ୱ ରୂପୀ ହୋଇ
ଜାଣି ପାରିଥିଲ ସବୁ ଆହେ ତପୀସାଇଁ ?
ଅବା ଉଡ଼ି ଉଡ଼ି ବୁଲି ପକ୍ଷୀଙ୍କ ସଦୃଶ
ଏ ଚରିତ ଦେଖୁଥିଲ ତହିଁ ତପୀଈଶ ?
କହନ୍ତି ବଶିଷ୍ଠ ତେବେ ଶୁଣ ହେ ଶ୍ରୀରାମ
ଚିଦାକାଶ ରୂପେ ସବୁ କଲି ମୁଁ ଦର୍ଶନ ।
ଯେଉଁ ପୂର୍ବ ସ୍ୱରୂପତା ଥିଲାକ ମୋହର
ଯିବା ଆସିବା ଶକତି ନ ଥିଲା ତାହାର ।
ତେତେବେଳେ ସର୍ବତ୍ର ମୁଁ ଥିଲି ବିଦ୍ୟମାନ
ତେଣୁ କାହିଁ ନ ଥିଲା ମୋ ଗମନା ଗମନ ।
ସେତେବେଳେ ନିଜ ମଧ୍ୟେ ପ୍ରତ୍ୟେକ ଘଟନା
ପ୍ରତ୍ୟକ୍ଷ କରୁଥିଲି ମୁଁ ରାମ ମହାମନା ।
ଏହି ଦେହେ ରହି ଯଥା ଆପାଦ ମସ୍ତକ
ସରବ ଶରୀର ହୋଇ ପାରଇ ପ୍ରତ୍ୟକ୍ଷ,

ସେହି ଭାବେ ତହିଁ ମୁହିଁ ଚିଦାକାଶ ପରି
ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟ ହୀନ ହୋଇ କରି,
ଜ୍ଞାନ ନେତ୍ରେ ଏ ସମସ୍ତ ହେଲି ପରିଜ୍ଞାତ
ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ ରଘୁନାଥ ।
ଚିଦାକାଶରୂପେ ଯେବେ ଥିଲି ମୁଁ ସଂସ୍ଥିତ
ସେକାଳେ ତନ୍ମଧ୍ୟବର୍ତ୍ତୀ ଅସଂଖ୍ୟ ଜଗତ,
ମୋର ଅବୟବ ପରି ହେଉଥାଏ ଦୃଶ୍ୟ
ନଥିଲା ସେ ଜଗତର ଅସ୍ତିତ୍ୱ ଅବଶ୍ୟ ।
ଆତ୍ମମୟ ଆକାରରେ ସେ ସର୍ବ ଜଗତ
ପ୍ରତିଭାତ ହେଉଥିଲେ ଜାଣ ରଘୁନାଥ ।
ଅବିକଳ ପୂର୍ବପରି ଆହେ ରଘୁନାଥ
ନାଚିଯାନ୍ତି ମୋ ନେତ୍ରରେ ଏବେ ସେ ସମସ୍ତ ।
ବାୟୁ ପ୍ରବାହକୁ ବାୟୁ ଦେବ ଯେଉଁପରି
ନିଜର ସ୍ପନ୍ଦନ ବୋଲି ଥାଆନ୍ତି ବିଚାରି ।
ଶୁଦ୍ଧ ଜ୍ଞାନମୟ ଆତ୍ମା ମଧ୍ୟ ସେହିପରି
ସର୍ବ ଜଗତକୁ ସ୍ୱ-ପ୍ରକାଶ ଜ୍ଞାନ କରି ।
ସକଳ ପ୍ରାଣୀଙ୍କୁ ମଧ୍ୟ ନିଜର ସର୍ଜନ
ମନେ କରିଥାନ୍ତି ଜାଣ ହେ ରଘୁନନ୍ଦନ ।
ଅଧିକ ବା କି କହିବି ହେ ରଘୁପୁଙ୍ଗବ
ବିବେକ ବଳେ ଯେ ଜ୍ଞାନ ରୂପ କରେ ଲାଭ,
ତାହାଙ୍କ ସହିତ ମଧ୍ୟ ଆମ୍ଭମାନଙ୍କର
ଅଭିନ୍ନତା ହୋଇଥାଏ କୌଶଲ୍ୟା କୁମର ।
ଯେହେତୁ ଯେଉଁ ଆତ୍ମାକୁ ସେମାନେ ଲଭନ୍ତି
ତାହାର ହିଁ ଅନୁଭବ ହୁଏ ଆମ କତି ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଚିଦାକାଶେ ତୁମେ ଥିଲାବେଳେ ବିଦ୍ୟମାନ,
ପୂର୍ବୋକ୍ତ ସେହି ରମଣୀ କରିଥିଲେ କିସ
ଆମୂଳ ଚୂଳ କରିଣ କରତା ପ୍ରକାଶ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁମଣି
ଆକାଶ ଶରୀର ଧାରୀ ସେହି ଯେ ରମଣୀ
ଅତୀବ ବିନୀତ ଭାବେ ସେହି ଆକାଶରେ
ଅବସ୍ଥାନ କରୁଥିଲା ଜାଣ ରଘୁବୀରେ ।
ପୂର୍ବରୁ ତାହାକୁ କେବେ ଦେଖିତ ନଥିଲି
ଆଶ୍ଚର୍ଯ୍ୟ ଲାଗିଲା ମୋତେ ତାକୁ ଦେଖି କରି ।
ଶ୍ରୀରାମ କହନ୍ତି ଶୁଣ ହେ ତପୀ ମଣ୍ଡନ
ଜିହ୍ୱା, ତାଲୁ ଉଭୟଙ୍କ ସାହାଯ୍ୟ ଘେନିଣ
ପ୍ରାଣ ମଧ୍ୟରୁ ହିଁ ବାକ୍ୟ ହୁଏ ଉଚ୍ଚାରଣ
ଏଥିରେ ସନ୍ଦେହ କିଛି ନାହିଁ ତପୋଧନ ।
ଆକାଶରୂପିଣୀ ସେହି ରମଣୀ ରତନ
ନିଶ୍ଚିତ ଭାବରେ ଥିଲା ସେ ଜିହ୍ୱାବିହୀନ ।
କିପରି ସେ କଲା ତେଣୁ ବାକ୍ୟ ଉଚ୍ଚାରଣ
ସଂଶୟ ଫେଡ଼ି ଦିଅନ୍ତୁ ଆହେ ତପୋଧନ ।
ଆବର ଯେଣୁ ସେ ଥିଲା ଆତ୍ମ ସ୍ୱରୂପିଣୀ
ତା ରୂପ ଦେଖିପାରିଲ କିପରି ସୁଜ୍ଞାନୀ ?
କହନ୍ତି ବଶିଷ୍ଠ ରାମ ସପନେ ଯେସନ
ରୂପ ଦେଖାଯାଏ, ବାକ୍ୟ ହୁଏ ଉଚ୍ଚାରଣ ।
ସେହି ଚିଦାକାଶ ମଧ୍ୟେ ସେହି ପରକାରେ
ଘଟିଥିଲା ତାହା ଜାଣ ଆହେ ରଘୁବୀରେ ।
ପରମାର୍ଥ ଦୃଷ୍ଟିରୁ ତା ଆକାଶ ସ୍ୱରୂପ
ବୁଝିବାକୁ ହେବ ଜାଣ ହେ ଜିଜ୍ଞାସୁ ନୃପ ।
ମୋର ପରିଦୃଷ୍ଟ ସେହି ଦୃଶ୍ୟ ଯେ କେବଳ
ଆକାଶମୟ ହୋଇଣ ଥିଲା ରଘୁବୀର ।
ଅସତ୍ୟ ଜାଣିବ ରାମ କଳ୍ପନା ଏପରି
ସବୁ ସୃଷ୍ଟି ବ୍ୟାପାର ହିଁ ଅଟେ ସେହିପରି ।
ସପନରେ ଯଥା ନାନା ବ୍ୟକ୍ତିଙ୍କ ସହିତ
ବ୍ୟବହାର କରାଯାଇଥାଏ ରଘୁନାଥ ।
ମୋର ମଧ୍ୟ ସେହି ନାରୀ ରତନ ସହିତ
ଅନୁରୂପ ବ୍ୟବହାର ହେଲା ରଘୁନାଥ ।
ସ୍ୱପ୍ନ ଘଟନା ଯେପରି ଆକାଶର ସମ
କେବଳ ଆକାଶେ ଘଟିଥାଏ ରଘୁରାଣ ।
ସମାଧି କାଳରେ ତଥା ସେହି ଜଗତକୁ
ଆବର ମୋତେ ଓ ମୋର କାର୍ଯ୍ୟ କଳାପକୁ,
ତଦ୍ରୂପ ଆକାଶମୟ ବୋଲିଣ ଜାଣିବ
ଜଗତ୍-ସ୍ୱପ୍ନ ଦ୍ରଷ୍ଟା ଚିଦାକାଶହିଁ ରାଘବ ।
ଚିଦାକାଶ ନିରାକାର ବିଶାଳ ହୃଦୟେ
ସ୍ୱଭାବତଃ ଯେଉଁ ସ୍ୱପ୍ନ ପ୍ରକାଶିତ ହୁଏ ।
ସେହି ସ୍ୱପ୍ନ ହିଁ ବୋଲାଏ ଜଗତ ଉତ୍ପତ୍ତି
କି କାରଣେ ଏହା ବୋଲାଯାଏ ରଘୁପତି ?
କଠିନ ଆକୃତି ତାର କିପରି ଭାବରେ
ଘଟିବା ସମ୍ଭବ ହେଲା ପୁଣ ରଘୁବୀରେ ?
ସ୍ଥୂଳଶରୀର ସମ୍ପର୍ଣ୍ଣ ଅଟନ୍ତି ଆପଣ
ତେବେ କି ଆକାଶମୟ ତୁମର ସପନ ।

ତେଣୁ କରି ଚିଦାକାଶ ବ୍ରହ୍ମର ସ୍ୱପନ
ଆକାଶରୂପ ନୋହିବ, ଅଛି କି କାରଣ ?
ଦେଖି ନ ଦେଖନ୍ତି ସେହୁ ଜଗତ-ସ୍ୱପନ
ହିରଣ୍ୟଗର୍ଭ ନାମକ ବିପ୍ର କଥା ଶୁଣ ।
ଚିଦାକାଶରୂପ-ମୂର୍ତ୍ତିକାରେ ସେ ବ୍ରାହ୍ମଣ
ସବୁ ନିର୍ମାଣି, ନ କରେ କିଛିହିଁ ନିର୍ମାଣ ।
ତୁମ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ଜଗଦ୍‌ଭାବ ଆଦି
ବାହାର ହିଁ ସତ୍ତା ନାହିଁ ଆହେ ରଘୁନିଧି ।
ପରିତ୍ୟାଗ କରିଦିଅ ଏ ସକଳ ରାମ
ପାଷାଣବତ ମଉନେ କର ଅବସ୍ଥାନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ପାଷାଣ ଚୈତନ୍ୟ-ଜଗତ ଏକତା ପ୍ରତିପାଦନ ବର୍ଣ୍ଣନେ ନାମ ୪୬ଶ ସର୍ଗଃ ।**



## ୪୭ଶ ସର୍ଗଃ
## ଜଗତ ଐକ୍ୟ ପ୍ରତିପାଦନ

କହନ୍ତି ଶ୍ରୀରାମ କହ ଆହେ ମୁନିବର
ଶୂନ୍ୟମୟ ଥିଲା ତୁମ ଦୁହିଁଙ୍କ ଶରୀର ।
ବିନା ଦେହରେ କିପରି କଥୋପକଥନ
କରିପାରୁଥିଲ କହ ଆହେ ମୁନିବର ?
କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ବାକ୍ୟ ଉଚ୍ଚାରଣେ ଦେହ ନୁହଇ କାରଣ ।
ଶବ କରି ନ ପାରଇ ବାକ୍ୟ ଉଚ୍ଚାରଣ
ଦେଖିଲା କଥା ତ ଏହା ସବୁରି ହେ ରାମ ।
ବାକ୍ୟର ଉତ୍ପତ୍ତି ନାସ୍ତି ତତ୍ତ୍ୱଜ୍ଞଙ୍କ ମତ
ତାକୁ ଉଚ୍ଚାରିବା ପାଇଁ ହେବ କେ ସମର୍ଥ ।
ଯଥାର୍ଥରେ ବାକ୍ୟ ଯଦି ହନ୍ତା ଉଚ୍ଚାରିତ
ସପନେ ଯେ ବାକ୍ୟ ତେବେ ହୁଏ ଉଚ୍ଚାରିତ ।
ପାର୍ଶ୍ୱସ୍ଥ ସଜାଗ ବ୍ୟକ୍ତି ଆହେ ରଘୁବୀର
କିମ୍ବା ଶୁଣି ନ ପାରନ୍ତା କହ ମୋ ଆଗର ?
ଜ୍ଞାନ ବିନା ସ୍ୱପ୍ନେ କିଛି ନ ଥାଇ ଯେ ଆନ
ତେଣୁ ସେହି ଜ୍ଞାନମୟ ଆତ୍ମାଠାରୁ ଜାଣ
ସ୍ୱତଃ ହିଁ ବାକ୍ୟ ପ୍ରକାଶ ହୋଇଥାଏ ରାମ
ଜ୍ଞାନମୟ ଆତ୍ମା କରେ ବାକ୍ୟ ଉଚ୍ଚାରଣ ।

ସେହିପରି ଚିଦାକାଶ ମଧ୍ୟରୁ ହେ ରାମ
ନିରନ୍ତର ହେଉଥାଏ ବାକ୍ୟର ସ୍ଫୁରଣ ।
ତେଣୁ ଚିଦାକାଶେ ଯାହାଙ୍କର ଅବସ୍ଥାନ
ସେମାନଙ୍କର ଶରୀର ନ ଥିଲେ ହେଁ ରାମ ।
ପରସ୍ପର ମଧ୍ୟେ ସେହୁ ବାକ୍ୟ ବିନିମୟ
କରିବା ପାଇଁ ସକ୍ଷମ ଜାଣ ରଘୁରାୟ ।
ସ୍ୱପ୍ନେ, ଚିଦାକାଶ ଧରେ ଜଗତ ଆକାର
ତେଣୁ ସେ ଜଗତ ଚିଦାକାଶ ରଘୁବୀର ।
ସ୍ୱପ୍ନ ଜାଗରଣ ଯେଣୁ ଏକ କଥା ରାମ
ଜାଗରଣେ ଯାହା ହୋଇଥାଏ ଦରଶନ ।
ପୁଣି ସମାଧିରେ ଯାହା ହୁଅଇ ଦର୍ଶନ
ସେ ସବୁହିଁ ଏକମାତ୍ର ଚିଦାକାଶ ଜାଣ ।
ଶ୍ରୀରାମ କହନ୍ତି ତେବେ ଶୁଣ ଭଗବନ୍
ଜଗତ ଦର୍ଶନ ଯେବେ ଅଟଇ ସ୍ୱପନ
ତେବେ ତାହାକୁ ଜାଗ୍ରତ ଅବସ୍ଥା ବୋଲିଣ
କିମ୍ପାଇ ବା କୁହାଯାଏ କହ ତା କାରଣ ?
ବଶିଷ୍ଠ ବୋଲନ୍ତି ତାହା ଶୁଣ ରଘୁରାଣ
ସ୍ୱାପ୍ନିକ ବସ୍ତୁ ସକଳ ଯା ହୁଏ ଦର୍ଶନ ।
ସ୍ୱପ୍ନଦ୍ରଷ୍ଟା-ଆତ୍ମାରୁ ତ ଅଟଇ ଅଭିନ୍ନ
ଜଗତ ସେପରି ଆତ୍ମାଠାରୁ ନୁହେଁ ଭିନ୍ନ ।
ବୀଜ ମଧ୍ୟେ ଅନ୍ୟବୀଜ ରହିଥିଲା ପରି
ଏ ଜଗତ ମଧ୍ୟେ ଅନ୍ୟ ଜଗତ ସେପରି ।
ଅଦୃଶ୍ୟ ଭାବରେ କରିଅଛି ଅବସ୍ଥାନ
ଏଥିରେ ସଂଶୟ ପାଇଁ ଅଛି କି କାରଣ ?
ଚେତାକାଳେ ଅଜ୍ଞାନରେ ଥିବାରୁ ଆଚ୍ଛନ୍ନ
ସର୍ବଦା ଦେଖନ୍ତି ସ୍ୱପ୍ନ, ସୁପ୍ତ ବ୍ୟକ୍ତି ସମ ।
ରାତ୍ରେ ସୁପ୍ତ ରହି ଜୀବ ସ୍ୱପ୍ନେ ବୁଡ଼ି ରହେ
ଦିନ-କଳ୍ପନାରେ ପୁଣି ଜାଗ୍ରତ ସେ ହୁଏ ।
ଉଭୟ ଅବସ୍ଥାକାଳେ ଏହି ଯେ ଜଗତ
ଏକ ଚିଦାକାଶୁ ଯେଣୁ ହୁଅଇ ଉଦ୍ଭୂତ,
ତେଣୁ ସେ ଜଗତ ଅଟେ ସେହି ଚିଦାକାଶ
ସଦାସର୍ବମୟ ହୋଇ ରାଜେ ସେ ଆକାଶ ।
ଅନାଦି ଅନନ୍ତ ବ୍ରହ୍ମ ଅଟେ ଯେ ଆକାଶ
ତା ସାକ୍ଷାତ୍‌କାର ଯେବେ ହୁଏ ରଘୁଈଶ,
ଯଥାର୍ଥ ଜାଗ୍ରତାବସ୍ଥା ତାହାକୁ ହିଁ କହି
ଅନ୍ୟାନ୍ୟ ଦର୍ଶନ ସ୍ୱପ୍ନ ପଦବାଚ୍ୟ ହୋଇ ।

କିବା ସୁପ୍ତ, କିବା ଦିନକଳ୍ପନା ଜାଗ୍ରତ
ଉଭୟ କାଳେ ଦର୍ଶନ ହୁଏ ଯେ ଜଗତ ।
ସ୍ୱପ୍ନ ପଦବାଚ୍ୟ ତାହା ଜାଣ ହେ ଶ୍ରୀରାମ
ସ୍ୱପ୍ନ, ଜାଗ୍ରତ ଅବସ୍ଥା ଭେଦ ଏବେ ଜାଣ ।
ପରମ ଆକାଶରୂପ ଅଟେ ଯେଉଁ ବ୍ରହ୍ମ
ଅସଂଖ୍ୟ ଚିତ୍ତ ତହିଁରେ ଛନ୍ତି ବିଦ୍ୟମାନ ।
ସେହି ଅସଂଖ୍ୟ ଚିତ୍ତରେ ଅସଂଖ୍ୟ ଜଗତ
ସ୍ଫୁରିତ ହେଉ ଅଛନ୍ତି ଜାଣ ରଘୁନାଥ ।
ସେସବୁ ଜଗତବାସୀ ପ୍ରତି ଜୀବ ଚିତ୍ତେ
ପୁଣି ପୃଥକ ଜଗତମାନ ଉଦେ ନିତ୍ୟେ ।
ଆବର ସେହି ଜଗତ-ପ୍ରାଣୀଙ୍କ ଚିତ୍ତରେ
ଭିନ୍ନ ଭିନ୍ନ ଜଗତ୍‌ମାନ ରହେ ରଘୁବୀରେ ।
ଏପରି ଏ ଜଗନ୍ମୟ ଦୃଶ୍ୟଭ୍ରମ ମାନ
ଅସମ୍ଭବ ତାର ସୀମା ନିର୍ଦ୍ଧାରଣ ରାମ ।
କିନ୍ତୁ ସେ ଜନ ତତ୍ତ୍ୱଜ୍ଞ ଯେହୁ ଏକା ରାମ
ଏ ସମସ୍ତ ସେହି ବ୍ରହ୍ମ ବୋଲି କରେ ଜ୍ଞାନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଜଗତ ଐକ୍ୟ ପ୍ରତିପାଦନେ ନାମ ୪୭ଶ ସର୍ଗଃ ।**



## ୪୮ଶ ସର୍ଗଃ
## ବିଦ୍ୟାଧରୀ ଉପାଖ୍ୟାନ

କହନ୍ତି ବଶିଷ୍ଠ ସେହି ରମଣୀକୁ ମୁହିଁ
କୁତୁହଳ ବଶେ ପୁଣି ପ୍ରଶ୍ନ କରିବଇଁ ।
କିଏ ତୁମେ ପଦ୍ମନେତ୍ରୀ, କାହିଁ ତୁମ ବାସ
କି କାରଣେ ଆଗମନ ତବ ମୋର ପାଶ ।
କି ଉଦ୍ଦେଶ୍ୟ ଘେନି ତୁମେ ଆହେ ଶୁଭ୍ରକେଶୀ
ଉପସ୍ଥିତ ହୋଇଅଛ ମୋ ନିକଟେ ଆସି ?
ବିଦ୍ୟାଧରୀ କହିଲେକ ଆହେ ମୁନିବର
ତବ କୃପା ଭିକ୍ଷା ପାଇଁ ଆଗମନ ମୋର ।
କୃପାକରି ମୋ ବୃତ୍ତାନ୍ତ କରିବା ଶ୍ରବଣ
ଭୂମଣ୍ଡଳେ ଲୋକାଲୋକ ଗିରି ବିଦ୍ୟମାନ ।
ତା ଶିଖରେ ସ୍ୱଚ୍ଛ ଶିଳାଖଣ୍ଡ ମାନ ରହି
ତହିଁ ଖଣ୍ଡେ ଶିଳା ମଧ୍ୟେ ମୁଁ ବାସ କରଇ ।
ମୋ ସ୍ୱାମୀ ସହିତ ତହିଁ ବୃହତ୍‌କାଳ ଧରି
ବାସକରି ରହିଅଛି ଆହେ ତପଚାରୀ ।
ପରିବାର ସହ ଆମେ ଦୁଇଜଣ ଜାଣ
ସେହି ଶିଳାମଧ୍ୟେ କରୁଅଛୁଁ ଅବସ୍ଥାନ ।
ମୋ ସ୍ୱାମୀ ଅଟନ୍ତି ବେଦନିଷ୍ଠ, ବ୍ରହ୍ମଚାରୀ
ଦିନେ ଆତ୍ମାରୂପ ଗୃହେ ଅବସ୍ଥାନ କରି ।
ଗୋଟିଏ ମାନସୀ ନାରୀ କଲେ ସରଜନା
ମୁହିଁ ସେ ମାନସୀ ନାରୀ ଜାଣ ମହାମନା ।
କଳ୍ପନାବଳେ ସେ ମୋତେ କଲେ ସରଜନ
ସେହୁ ସମଦର୍ଶୀ, ସମଦର୍ଶିନୀ ମୁଁ ଜାଣ ।
ମୋ ସ୍ୱାମୀ ସଦା ତପସ୍ୟା ସ୍ୱାଧ୍ୟାୟରେ ରତ
ମୁଁ ତାଙ୍କ କୁଳପାଳିନୀ ଭାର୍ଯ୍ୟା ମୁନିନାଥ ।
ସେ କାରଣୁ ଅବା ଅନ୍ୟ କାରଣ ପାଇଁ କି
ମୋ ବିବାହ ସମ୍ପାଦନ ରହିଅଛି ବାକି ।
ମୋ ସହିତ ସ୍ୱାମୀଯୋଗ୍ୟ ବ୍ୟବହାର ଛାଡ଼ି
ଏକାକୀ ନିର୍ଜ୍ଜନେ ଧ୍ୟାନେ ରହିଥାନ୍ତି ବୁଡ଼ି ।
ସ୍ୱାମୀ ସଙ୍ଗ ଅଭାବରେ ଜାଣ ଆହେ ଦେବ
ପତି-ଅନୁରାଗ ମୋର ପାଲଟେ ବୈରାଗ୍ୟ ।
ଏବେ ତବ ଉପଦେଶ ଲାଭ କରି ମୁନି
ନିର୍ବାଣ ଲଭିବା ପାଇଁ ବ୍ରତ ଅଛି ଘେନି ।
ଶରଣ ଆଶ୍ରୟ ଗଲି ତବ ପଦେ ମୁହିଁ
ଉପେକ୍ଷା କରନ୍ତୁ ନାହିଁ ମୋ ଘେନା ଗୋସାଇଁ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବିଦ୍ୟାଧରୀ ଉପାଖ୍ୟାନ ବର୍ଣ୍ଣନେ ନାମ ୪୮ଶ ସର୍ଗଃ ।**



## ୪୯ଶ ସର୍ଗଃ
## ବିଦ୍ୟାଧରୀ ବୈରାଗ୍ୟ

ବିଦ୍ୟାଧରୀଠାରୁ ଶୁଣି ତାହାର ବୃତ୍ତାନ୍ତ
ବଶିଷ୍ଠ ମୁନି ତାହାକୁ ପୁଚ୍ଛନ୍ତି ଏମନ୍ତ ।
ବିଦାଧରୀ ! ଧରି ଏହି ମୂର୍ତ୍ତିମତୀ ଦେହ
ଶିଳା ମଧ୍ୟେ କେଉଁପରି ରହୁଥିଲୁ କହ ?
ସୂକ୍ଷ୍ମ କେଶାଗ୍ର ପରାଏ ସୂକ୍ଷ୍ମ ବସ୍ତୁ ଯହିଁ
ପ୍ରବେଶ କରିବା ଜାଣ ଅସମ୍ଭବ ହୋଇ,

କିପରି ଭାବରେ ତେଣୁ ସେ ଶିଳା ମଧ୍ୟରେ
ଯାତାୟତ କରୁଥିଲ କହ ମୋ ଆଗରେ ।
ଆବର ଯେଉଁ କାରଣୁ ତହିଁ ତୋର ସ୍ଥିତି
ହୋଇଥିଲା କହ ମୋତେ ନ କରିଣ ଭୀତି ।
ବିଦ୍ୟାଧରୀ କହେ ତେବେ ଶୁଣ ମୁନିବର
ଏ ଜଗତ ଯେଉଁପରି ବିଶାଳ ଆକାର ।
ସେ ଶିଳାରେ ଏତାଦୃଶ ବିଶାଳ ଜଗତ
ପୃଥିବୀ, ପାତାଳ, ଗିରି, ସମୁଦ୍ର ସହିତ
ସୂର୍ଯ୍ୟଚନ୍ଦ୍ର, ବାୟୁ, ଗ୍ରହ, ତାରାଗଣ, ଦେବ
ଆବର ଦାନବ, ରାଜା, ତାର ପ୍ରଜାବର୍ଗ,
ରାଜ୍ୟ ଶାସନ ବ୍ୟବସ୍ଥା ପୁଣି ସବୁ ତହିଁ
ସେ ଶିଳାରେ ଏ ସମସ୍ତ ବିରାଜୁ ଅଛଇ ।
ସେହି ଶିଳା ମଧ୍ୟବର୍ତ୍ତୀ ଜଗତକୁ ଦେବ
କୃପା କରି ଥରେ ଯେବେ ପ୍ରବେଶ କରିବ
ମୋ କଥାର ଯଥାର୍ଥତା ଉପଲବ୍ଧି ପାଇଁ
ସକ୍ଷମ ହୋଇବ ନିଶ୍ଚେ ଆହେ ତପୀସାଇଁ ।
ତା କଥାରେ ରାମ ! ମୁହିଁ ହୋଇଲି ସମ୍ମତ
ସେ ଶିଳା ନିକଟେ ଦୁହେଁ ହେଲୁ ଉପସ୍ଥିତ ।
ଶୁଭ୍ରବର୍ଣ୍ଣ ଶିଳାଖଣ୍ଡ ମାନ ପଡ଼ିଛଇଁ
ଅନ୍ୟ କୌଣସି ବସ୍ତୁର ଦେଖା ନ ମିଳଇ ।
ତେଣୁ ସେ ବିଦ୍ୟାଧରୀକି କହିଲି ଏମନ୍ତ
"ଦେଖା କାହିଁ ଏଠି ତୋର ବର୍ଣ୍ଣିତ ଜଗତ ।"
ବଶିଷ୍ଠଙ୍କୁ ବିଦ୍ୟାଧରୀ କହଇ ଏପରି
ଯେ ଜଗତ କଥା ତୁମ ଆଗେ କହିଥିଲି ।
ସେ ସମସ୍ତ ଏହି ଶିଳା ଖଣ୍ଡ ମଧ୍ୟେ ମୁହିଁ
ଦେଖିତ ପାରୁଛି ଦେବ, ଏ ମୋ ଭ୍ରମ ନୋହି ।
ସେ ସମସ୍ତ ଅନୁଭବ କରେ ଯେଣୁ ନିତ୍ୟ
ମୋ ଦୃଷ୍ଟିରେ ସେ ସମସ୍ତ ହୁଅନ୍ତି ପ୍ରତୀତ ।
କେବେହେଲେ ଆପଣଙ୍କ ଚିତ୍ତେ ସେ ଜଗତ
ଅନୁଭୂତ ହୋଇ ନାହିଁ ଯେଣୁ ହେ ମହତ,
ତବ ଦୃଷ୍ଟିପଥେ ନ ପଡ଼ଇ ସେ ଜଗତ
ଏହାହିଁ କାରଣ ହୋଇପାରେ, ମୋର ମତ ।
ତବ ହୃଦୟରେ ଯେଣୁ ନୋହିଛି ଅଙ୍କିତ
ଦର୍ଶନ ନୋହୁଛି ତୁମ ତେଣୁ ବ୍ରହ୍ମସୁତ ।
କିନ୍ତୁ ଅଭ୍ୟାସବଳରେ ସବୁ ବିଷୟରେ
ସିଦ୍ଧିଲାଭ ହୋଇଥାଏ ଆହେ ମୁନିବରେ ।
ଆଧିଭଉତିକ ଜ୍ଞାନ ସମାଧି ବଳରେ
ନିବୃତ୍ତ ନ ହେବା ଯାଏ ଆହେ ମୁନିବରେ,
ଆତିବାହିକ ଜ୍ଞାନଟି ନହେବ ଉଦିତ:
ଯାହାବଳେ ସାକ୍ଷୀରୂପେ ଅନ୍ୟାନ୍ୟ ଜଗତ,
ଦର୍ଶନ କରିବା ହୋଇ ପାରିବ ସମ୍ଭବ
ତେଣୁ ସମାଧିସ୍ଥ ହେବା ଉଚିତ ହୋଇବ ।
ସମାଧିସ୍ଥ ହେଲେ ଆତିବାହିକ ଯେ ଭାବ
ଗ୍ରହଣ କରିବା ପାଇଁ ସମ୍ଭବ ହୋଇବ ।
ତତପରେ ଶିଳା ମଧ୍ୟେ ଜଗତ ଦର୍ଶନ
ସମ୍ଭବ ହୋଇ ପାରିବ ହେ ମୁନି ରତନ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ପାଷାଣ ଉପାଖ୍ୟାନ ବର୍ଣ୍ଣନେ ନାମ ୪୯ଶ ସର୍ଗଃ ।**



## ୫୦ତମ ସର୍ଗଃ
## ଶିଳାନ୍ତର ବର୍ଣ୍ଣନ

କହନ୍ତି ବଶିଷ୍ଠ ବିଦ୍ୟାଧରୀ ଉକ୍ତିମାନ
ଯୁକ୍ତି ଯୁକ୍ତ ମଣି ହେଲି ସମାଧି ମଗନ ।
ଅନନ୍ତର ସାକ୍ଷୀ ରୂପୀ ଆତ୍ମାର ତେଜରେ
ସମ୍ମୁଖସ୍ଥ ଶିଳାରାଶି ନ ପଡ଼େ ନେତ୍ରରେ ।
ଏକମାତ୍ର ସେ ପରମ ତତ୍ତ୍ୱହିଁ କେବଳ
ବିଦ୍ୟମାନ ରହିଥିଲା ଆହେ ରଘୁବାଳ ।
ସେକାଳେ ବୁଝିଲି ପରଂତତ୍ତ୍ୱ ଆତ୍ମା ଜାଣ
ଶିଳାଭାବ ଧରି, ଶିଳାରୂପେ ବିଦ୍ୟମାନ ।
ସପନରେ ଯଥା ଶିଳା ହୁଏ ଦୃଶ୍ୟମାନ
ସେହିପରି ସେ ନିର୍ମଳ ଚିଦାକାଶ ରାମ,
ଶିଳା ମୂର୍ତ୍ତି ଧରି ରହିଛନ୍ତି ବିଦ୍ୟମାନ
ଏହି ଜ୍ଞାନ ଭାସି ଉଠେ ମୋ ମନ ନୟନ ।
ଶିଳା ମଧ୍ୟବର୍ତ୍ତୀ ଜଗତରେ ବିଦ୍ୟାଧରୀ
ତତ୍‌କ୍ଷଣ ପରବେଶ କରେ ରୂପଧାରୀ ।
ମୁଁ ମଧ୍ୟ ସଙ୍କଳ୍ପ ବଳେ ତାହାର ସହିତ
ସେହି ଜଗତେ ପ୍ରବେଶ କଲି ରଘୁନାଥ ।
ତହିଁ ସେ ଜଗତ ବ୍ରହ୍ମାଙ୍କର ନିକଟରେ
ବିଦ୍ୟାଧରୀ ବସି ମୋତେ କହେ ଏ ପ୍ରକାରେ ।

"ଯାହା ମୁଁ କହୁଛି ଏବେ ଶୁଣ ମୁନିବର
ଏହି ସୃଷ୍ଟିକର୍ତ୍ତା ବ୍ରହ୍ମା ପ୍ରାଣପତି ମୋର ।
ବିଭା ଅର୍ଥେ ଏହି ମୋତେ ସଙ୍କଳ୍ପ ବଳରେ
ସୃଷ୍ଟି କରି ପୋଷି ଆସୁଛନ୍ତି ମୁନିବରେ ।
ଏ ଅଟନ୍ତି ଜରାଗ୍ରସ୍ତ ପ୍ରାଚୀନ ପୁରୁଷ
ମୁହିଁ ମଧ୍ୟ ଜରାକ୍ରାନ୍ତ ଆହେ ମୁନିଈଶ ।
ତେଣୁ କରି ଆମ୍ଭମାନଙ୍କର ବିଭାଘର
ହୋଇ ନ ପାରିଲା ଆଉ ଆହେ ମୁନିବର ।
ସେ କାରଣୁ ଆମେ ଦୁହେଁ ବୈରାଗ୍ୟ ବରିଣ
ପରମ ପଦରେ ଯାଇ କରିବୁ ବିଶ୍ରାମ ।
ବର୍ତ୍ତମାନ ଧ୍ୟାନମଗ୍ନ ଏ ମହାପୁରୁଷ
ଆମ୍ଭ ଦୁହିଙ୍କୁ ଦେଇଣ ତତ୍ତ୍ୱ ଉପଦେଶ
ପରମପଦେ କରିବା ହେଉ ଉପନୀତ
କାଳେ କାଳେ ତୁମ୍ଭଠାରେ ରହିବୁ କୃତାର୍ଥ ।"
ଧ୍ୟାନାବଲମ୍ବୀ ବ୍ରହ୍ମାଙ୍କୁ କରି ସମ୍ବୋଧନ
ବିଦ୍ୟାଧରୀ ଏହିଭାବେ କରେ ଉଦ୍‌ବୋଧନ ।
"ହେ ନାଥ ! ଏ ମୁନିଶ୍ରେଷ୍ଠ ଅତିଥି ଆମର
ଅନ୍ୟ ଏକ ଜଗତର ବ୍ରହ୍ମାଙ୍କ କୁମର ।
ପ୍ରବୁଦ୍ଧ ହୋଇ ଆପଣ ପାଦ୍ୟ, ଅର୍ଘ୍ୟ ଦେଇ
ପୂଜା କରନ୍ତୁ ତାଙ୍କର ବ୍ରହ୍ମାଣ୍ଡ ଗୋସାଇଁ ।"
ଏହା ଶୁଣି ସେହି ବ୍ରହ୍ମା ଧ୍ୟାନଭଗ୍ନ ହେଲେ
ପ୍ରଣବ ଉଚ୍ଚାରି ମୋତେ ଏମନ୍ତ କହିଲେ ।
"ସମସ୍ତଙ୍କ ସାରଭୂତ ଆତ୍ମାଙ୍କୁ ହିଁ ମୁନେ
ଦର୍ଶନ କରିଛ ଯେଣୁ, ଆନନ୍ଦ ମୋ ମନେ ।
କୁଶଳ ହେଉ ତୁମର, ଘେନ ଏ ଆସନ
ବିଶ୍ରାନ୍ତି ଲଭିଣ ରହ ହେ ମୁନି ରାଜନ ।"
କହନ୍ତି ବଶିଷ୍ଠ ମୁନି ହେ ରଘୁନନ୍ଦନ
ପ୍ରତ୍ୟାଭିବାଦନ ଦେଇ କହିଲି ଏସନ ।
"ନିଖିଳ ଐଶ୍ୱର୍ଯ୍ୟ, ଜ୍ଞାନ ସମ୍ପର୍ଣ୍ଣ ଆପଣ
କେଉଁ ଗୁଣ ତବ ମୁହିଁ କରିବି ବର୍ଣ୍ଣନ ?
କି କାରଣେ ଏ ରମଣୀ ମୋ ନିକଟେ ଯାଇ
ଉପଦେଶ ପ୍ରାର୍ଥୀ ହେଲେ ନ ଜାଣଇ ମୁହିଁ
ବିବାହ କରିବା ପାଇଁ ତାକୁ ସୃଷ୍ଟି କରି
ବିବାହ ନ କଲ କିମ୍ପା କହ ମୋତେ ଖୋଲି ।"
ଶୁଣି ବଶିଷ୍ଠ ମୁନିଙ୍କ ଏମନ୍ତ ବଚନ
ସେ ଜଗତ ବ୍ରହ୍ମା ତହୁଁ କହନ୍ତି ଏ ସନ ।

"ସେ ସବୁ ବୃତ୍ତାନ୍ତ କହୁ ଅଛି ମୁନିବର
ଶୁଣିଣ କୃତାର୍ଥ କର ମୋତେ ତପୀବର ।
ସଦା ଏକରୂପେ ସ୍ଥିତ ଚିତ୍ ପ୍ରକାଶରୁ
ଉଦ୍ଭୂତ ହୋଇଛି ମୁହିଁ ଆହେ ଜ୍ଞାନୀଗୁରୁ
ସେ କାରଣୁ ଆତ୍ମାରେ ମୁଁ ସଦା ବିରାଜିତ
ଅନ୍ୟ କିଛିରେ ଚଳିତ ନୁହେଁ ମୋର ଚିତ୍ତ ।
ଉତ୍ପନ୍ନ ହୋଇଣ ମଧ୍ୟ ଉତ୍ପନ୍ନ ମୁଁ ନୁହେଁ
କିଛି ନ କରଇ ମୁହିଁ ଜାଣ ତପୀରାଏ ।
କେବଳ ଚିଦାକାଶରେ ଚିଦାକାଶ ସମ
ବିରାଜମାନ ମୁଁ ଅଛି ହେ ମୁନି ଉତ୍ତମ ।
ବାସ୍ତବରେ ଜାଣ ଆହେ ବ୍ରହ୍ମାଙ୍କ ନନ୍ଦନ
ସକଳେ ଅଟନ୍ତି ସେ ଅଜାତ ଶାନ୍ତ ବ୍ରହ୍ମ ।
ଥରେ କିଛି ମଳିନତା ଜରା ହୋଇ ମନେ
ଅହଂ, ମମତା, ବାସନା ଉପୁଜେ ତକ୍ଷଣେ ।
ଏହି ରମଣୀ ହିଁ ଜାଣ ସେହି ମୋ ବାସନା
ଅନ୍ୟ କେହି ନୁହେ ସେହୁ ମୋ ବାସନା ବିନା ।
ଅନ୍ୟମାନଙ୍କ ଦୃଷ୍ଟିରେ ଏହି ଯେ କୁମାରୀ
ମୋଠାରୁ ପୃଥକ ବିବେଚିତ ତପଚାରୀ ।
କିନ୍ତୁ ମୋ ଦୃଷ୍ଟିରେ ସେହୁ ମୋଠାରୁ ଅଭିନ୍ନ
ବାସନାରୂପିଣୀ ମାତ୍ର, ଅଟେ ଅନୁତ୍ପନ୍ନ ।
ମୁଁ ଜାଣେ ମୁହିଁ ଅଟଇ କ୍ଷୟୋଦୟ ହୀନ
ଆତ୍ମସ୍ୱରୂପ ମୁଁ ସଦା ହେ ମୁନି ରତନ ।
ନିଜେ ମୁଁ ନିଜର ପ୍ରଭୁ ଜାଣ ତପୋଧନ
ଅନ୍ୟ ସକଳର ପ୍ରଭୁ ମୁହିଁ ଅଟେ ପୁଣ ।
ଯେ ବାସନା ଅଟେ ମୁନି ! ଜଗତ କାରଣ
ତାର ଅଧିଷ୍ଠାତ୍ରୀ ଦେବୀ ଏ ନାରୀ ରତନ ।
ସୃଷ୍ଟି କରି ନାହିଁ ଯାକୁ ମୁହିଁ ମୁନିବର
ସେ ପୁଣି ଗୃହିଣୀ କେଉଁ ନୁହଇ ମୋହର ।
ବ୍ରହ୍ମାର ଗୃହିଣୀ ମୁହିଁ ଏହା ଭାବି କରି
ନିରନ୍ତର ଦୁଃଖ ଭୋଗ କରୁଛି ଏ ନାରୀ ।
କହନ୍ତି ସେ ବ୍ରହ୍ମା ପୁଣ ଆହେ ମୁନିବର
ଶେଷ ହେଉଅଛି ସଙ୍କଳ୍ପିତ ଆୟୁ ମୋର ।
ଅଚିରେ ଏ ଜଗତର ପ୍ରଳୟ ହୋଇବ
ଆକାଶ ରୂପକୁ ମୋତେ ଧରିବାକୁ ହେବ ।
ତେଣୁ ଏହି ଜଗତକୁ ତେଜିବଇଁ ମୁହିଁ
ପରମ ଆକାଶରୂପ ମୁହିଁ ବରିବଇଁ ।

ସେ କାରଣୁ ଜାଣ ଆହେ ବ୍ରହ୍ମାଙ୍କ ନନ୍ଦନ
କ୍ଷୀଣକାୟ ହେଉଅଛି ଏ ନାରୀ ରତନ ।
ଗୁରୁ ଉପଦେଶ ବିନା ଆତ୍ମଜ୍ଞାନ ଲାଭ
ଯେଣୁ ହୋଇ ନ ପାରଇ ହେ ମୁନି ପୁଙ୍ଗବ ।
ଆପଣଙ୍କ ନିକଟକୁ ତେଣୁ ନାରୀବର
ଯାଇଥିଲା ଉପଦେଶ ଲୋଡ଼ି ମୁନିବର ।
ଚିଦାକାଶ ହିଁ ଏ ଶିଳା-ଜଗତ ରୂପରେ
ଅବସ୍ଥାନ କରିଅଛି ବ୍ରହ୍ମାଙ୍କ କୁମରେ ।
ବାୟୁର ଅଙ୍ଗପ୍ରବାହ ଅଟଇ ଯେସନ
ଆତ୍ମାର ଅଙ୍ଗ ଅଟଇ ଜଗତ ତେସନ ।
ବିଜ୍ଞାନଘନ ଆତ୍ମାକୁ ତେଣୁ ଅଜ୍ଞଜନ
ଜଗତ ବୋଲି ମଣନ୍ତି ଆହେ ତପୋଧନ ।
ହେଲେହେଁ ଏ ଚିତ୍‌ଶିଳା ଅନାଦି ଅନନ୍ତ
ଭ୍ରାନ୍ତି ବଶେ ଦୃଷ୍ଟ ହୁଏ ଆଦି ଅନ୍ତଃ ଯୁକ୍ତ ।
ଆପଣା ଜଗତେ ଫେରିଯାଅ ମୁନିବର
ତହିଁ ସମାଧି ସୁଖକୁ ଅନୁଭବ କର ।
ମୋର କଳ୍ପନା ପ୍ରସୂତ ଏହି ଯେ ଜଗତ
ଏହିକ୍ଷଣି ପରଂପଦେ ହୋଇଯିବ ଲୁପ୍ତ ।
ମୁହିଁ ମଧ୍ୟ ସେହି ବ୍ରହ୍ମ ପରମ ପଦରେ
ଲୀନ ହୋଇଯିବି ଜାଣ ଆହେ ମୁନିବରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ଶିଳାନ୍ତର ବର୍ଣ୍ଣନେ**
**ନାମ ୫୦ଶ ସର୍ଗଃ ।**



## ଏକାବନ ସର୍ଗଃ
## ସୃଷ୍ଟି ଅନୁଭବ ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ ସେ ବ୍ରହ୍ମା ଏପରି
କହିସାରି ପଦ୍ମାସନେ ସମାଧି ଆଚରି ।
ବାସନାରୂପିଣୀ ସେହି ଦେବୀ ମଧ୍ୟ ରାମ
ଆକାଶରୂପ ଧରିଣ ହୋଇଗଲେ ଲୀନ ।
ସେତେବେଳେ ଚିଦାକାଶେ ସ୍ଥିତ ରହି ମୁହିଁ
ଏହି ସମସ୍ତ ବ୍ୟାପାର ନେତ୍ରେ ଦେଖୁଥାଇ ।
କ୍ଷଣକାଳ ମଧ୍ୟେ ଜାଣ ସେ ବ୍ରହ୍ମା-ଜଗତ
ଶବ ଦେହ ପରି ହେଲା କ୍ଷୀଣ ଓ ବିକୃତ ।
ପ୍ରଳୟ ଉତ୍ପାତ, ତଥା ଉପଦ୍ରବ ମାନ
ଘୋଟି ଆସି କରିଦେଲେ ତାକୁ ଜୀର୍ଣ୍ଣଶୀର୍ଣ୍ଣ ।
ସେହି ଜଗତ ହୋଇଲା ପ୍ରଳୟରେ ଲୀନ
ଚିଦାକାଶେ ଦେଖୁଥାଏ ସେହି ଦୃଶ୍ୟମାନ ।
କହନ୍ତି ଶ୍ରୀରାମ ଶୁଣ ହେ ବ୍ରହ୍ମାନନ୍ଦନ
ତବ ଉପଦେଶରୁ ମୁଁ ବୁଝଇ ଏସନ ।
ବନ୍ଧନ, ମୁକତି, ପୁଣି ଜଗତ ମଧ୍ୟରେ
କୌଣସି ପ୍ରଭେଦ ନାହିଁ ଆହେ ମୁନିବରେ ।
ଏ ସବୁର ଆତ୍ମା ଯେହୁ ହେ ବ୍ରହ୍ମା ତନୟ
ଉଦୟାସ୍ତ ବିହୀନ ସେ ଅନିର୍ବଚନୀୟ ।
ହେ ଦେବ ! ସତ୍ୟ ବସ୍ତୁକୁ ଜାଣିଅଛି ମୁହିଁ
ତଥାପି ହେ ମୁନେ ! ମୋର ବୋଧ ବୃଦ୍ଧି ପାଇଁ
କିପରି ଅଟଇ ଏହି ସୃଷ୍ଟି ଅନୁଭବ
ପୁନର୍ବାର କହିବାକ ହେ ମୁନି ପୁଙ୍ଗବ ।
ବଶିଷ୍ଠ କହନ୍ତି ରାମ, ସ୍ଥାବର ଜଙ୍ଗମ
ଯାହାକିଛି ଦେଖୁଅଛ ନୟନରେ ତୁମ ।
ଏହାଙ୍କ ବିନାଶ, ପୁଣି ବ୍ରହ୍ମା ବିଷ୍ଣୁଙ୍କର
ଯେଉଁ ବିପର୍ଯ୍ୟୟ ଘଟେ ଆହେ ରଘୁବୀର,
ତାହାର ନାମ "ପ୍ରଳୟ" ଜାଣ ହେ ଶ୍ରୀରାମ
କେହି ହେଲେ ତହୁଁ ରକ୍ଷା ନ ପାଆନ୍ତି ଜାଣ ।
ପ୍ରଳୟାନ୍ତେ ଯାହା ଅବଶିଷ୍ଟ ରହେ ରାମ
ତାହାହିଁ ଅଜ, ଅନାଦି, ବାକ୍ୟାତୀତ ବ୍ରହ୍ମ ।
ଏପରି ସୂକ୍ଷ୍ମ ଅଟନ୍ତି ରାମ ସେହି "ବ୍ରହ୍ମ"
ତା ନିକଟେ ଏ ଆକାଶ ଅତି ସ୍ଥୁଳ ଜାଣ ।
ସେହି "ପରମ ଆକାଶେ" କରି ଅବସ୍ଥାନ
ଦିଗ, କାଳାତୀତ ଚିଦାକାଶ ଯେ ମହାନ ।
ସପନ ସମ "ଅତୀତ-ଜଗତ-ସଂସ୍କାର"
ଅନୁଭବ କରେ ଜାଣ ଆହେ ରଘୁବୀର ।
ସେହିପରି ଅନୁଭବ କରୁ କରୁ ରାମ
ନିଜ ମଧ୍ୟେ ନିଜର ସେ ଦ୍ରଷ୍ଟା ହୁଏ ଜାଣ ।
ପୁଣି ସେହି ଚିଦାକାଶ ନିଜ ମଧ୍ୟେ ରାମ
ଦୃଶ୍ୟ ଆଉ ଦ୍ରଷ୍ଟାରୂପେ ହୁଏ ବିଦ୍ୟମାନ ।
ନିଜ ଦେହକୁ ସେ ନିରାକାର ଚଇତନ୍ୟ
ଦୃଶ୍ୟ ଆକାରରେ ରାମ କରଇ ଦର୍ଶନ ।
କ୍ରମେ କ୍ରମେ ଅନୁଭବ ଶକ୍ତି ପ୍ରଭାବରେ
ସେ ଦୃଶ୍ୟ ଶରୀର ଯେତେ ସ୍ଫୀତ ଭାବ ଧରେ,

ସେହି କାଳୁ ଦେଶ, କାଳ, କ୍ରିୟା ଦ୍ରବ୍ୟ ଆଦି
ଅବ୍ୟକ୍ତ ରୂପେ ପ୍ରକାଶ ପାଏ ରଘୁନିଧି ।
ଚୈତନ୍ୟ ଯେଉଁ ଭୂମିରେ ହୁଅଇ ପ୍ରକାଶ
ତାହାର ନାମ ହିଁ "ଦେଶ" ହେ ରଘୁ ବିଳାସ ।
ସେହି ପ୍ରକାଶ କ୍ଷଣର ନାମ ଅଟେ "କାଳ"
ସେହି ପ୍ରକାଶଟି "କ୍ରିୟା" ଜାଣ ରଘୁବାଳ ।
କ୍ରିୟାଯୋଗେ ଯାହା ଲବ୍ଧ ତା ବୋଲାଏ "ଦ୍ରବ୍ୟ"
ଉପଲବ୍ଧିର ନାମହିଁ "ଦର୍ଶନ" ରାଘବ ।
ଯେହୁ ଉପଲବ୍ଧି କରେ ସେହୁ "ଦ୍ରଷ୍ଟା" ଜାଣ
ବୁଝିଲତ ସୃଷ୍ଟି ଅନୁଭବ ବିବରଣ ?
ଏହିପରି ଜାଣ ରାମ ସେହି ଚିଦାକାଶେ
ଆକାଶ ଆକୃତି ଦେଶ, କାଳ ପରକାଶେ ।
ତତପରେ "ପଞ୍ଚେନ୍ଦ୍ରିୟ", ତାଙ୍କର "ବିଷୟ"
"ପଞ୍ଚତନ୍ମାତ୍ରା" ଆଦିର ହୁଅଇ ଉଦୟ ।
ଗଗନ ସଦୃଶ ସୂକ୍ଷ୍ମ ଅଟନ୍ତି ଏମାନ
ଚୈତନ୍ୟ ପ୍ରକାଶରୂପ ଅଟେ ଯେ ଗଗନ,
କ୍ରମଶଃ ଘନ ଆକାର ପ୍ରାପତ ହୋଇଣ
"ଆତିବାହିକ ଶରୀର" ବୋଲାଏ ସେ ଜାଣ ।
ବିଷୟ ଅନୁସରଣ କରି ସେ ଶରୀର
ଅନୁଭବ କରେ "ପଞ୍ଚବିଧ ଇନ୍ଦ୍ରିୟର" ।
ବିଷୟ ଅନୁସନ୍ଧାନକାରୀ ଚୈତନ୍ୟର
ଯେ ପରିଦୃଷ୍ଟ ଅବସ୍ଥା ହୁଏ ରଘୁବୀର,
ତାହାର ନାମହିଁ "ଚିତ୍ତ" ବୋଲି ଖ୍ୟାତ ଜାଣ
ନିଶ୍ଚୟାତ୍ମକ ଅବସ୍ଥା ନାମ "ବୁଦ୍ଧି" ପୁଣ ।
ସଙ୍କଳ୍ପ ବିକଳ୍ପାତ୍ମକ ଅବସ୍ଥାର ନାମ
"ମନ" ବୋଲି ଜାଣିରଖ ହେ ରଘୁନନ୍ଦନ ।
ସେହି ମନ ଅହଂଭାବ କରିଣ ଗ୍ରହଣ
"ଦେଶ, କାଳ" ଦ୍ୱାରା ହୋଇଥାଏ ପରିଚ୍ଛିନ୍ନ
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ନାମରେ
"ଊର୍ଦ୍ଧ୍ୱ, "ଅଧଃ" ଆଦି "ଦିଗ" "ବିଦିଗ" ରୂପରେ
ଏହି ଚଇତନ୍ୟ ପାଇଥାନ୍ତି ପରକାଶ
ସୃଷ୍ଟି ଅନୁଭବ କ୍ରମେ ଜାଣ ରଘୁଈଶ ।
ଆକାଶରୂପୀ ଚୈତନ୍ୟ ଆକାଶ ରୂପରେ
ଏ ସବୁ ଭାବନା ରାମ ଅନୁଭବ କରେ ।
ପ୍ରଥମେ ନିଜକୁ ଆତିବାହିକ ଭାବଇ
ତାପରେ ଆଧିଭୌତିକ ଭାବକୁ ଘେନଇ ।

ସେହି ନିର୍ମଳ ଆକାଶ ଏପରି ଭାବରେ
ଜଗତ୍-ଭ୍ରମ ସୃଷ୍ଟି କରିଅଛି ରଘୁବୀରେ ।
ମରୀଚିକା ଜଳସମ ଏ ଜଗତ ଭ୍ରମ
ନିତାନ୍ତ ଅସତ୍ୟ ଅଟେ ହେ ରଘୁନନ୍ଦନ ।
ଏପରି ଏହି ଚୈତନ୍ୟ, ବ୍ରହ୍ମା, ବିଷ୍ଣୁ ଶିବ
ସ୍ଥାବର, ଜଙ୍ଗମ, କୃମି, କୀଟ ଆଦି ସର୍ବ
ରୂପଧରି ବିରାଜନ୍ତି ଏହି ଜଗତରେ
ସବୁ ହୋଇ ମଧ୍ୟ କିଛି ନୁହେଁ ସେ ଭାବିଲେ ।
ଆକାଶ ସ୍ୱରୂପ ଜ୍ଞାନେ, ଜ୍ଞାନହିଁ କେବଳ
ବିଦ୍ୟମାନ ରହିଅଛି ଆହେ ରଘୁବାଳ ।
"ହିରଣ୍ୟଗର୍ଭ ବ୍ରହ୍ମା" ହିଁ "ସମଷ୍ଟି ଚୈତନ୍ୟ"
ଏ ସମଷ୍ଟି ଶରୀରର ଆଶ୍ରୟ ସେ ପୁଣ ।
"ବ୍ୟଷ୍ଟି ଚୈତନ୍ୟ" ଆବର "ବ୍ୟଷ୍ଟି ଶରୀରର"
ସେହି ହିରଣ୍ୟଗର୍ଭ ହିଁ ଆଶ୍ରୟ ସବୁର ।
ତ୍ରୈଲୋକ୍ୟ ରୂପ ଲତାର ସେହି ଏକା ବୀଜ
ଅଦ୍ଭୂତ କରଣି ତାର ବୁଝ ରଘୁରାଜ ।
ମୁକ୍ତି-ମନ୍ଦିର କବାଟ ସୃଷ୍ଟି କିର୍ଲିଣୀରେ
କିଳିଦେଇ ବସିଛନ୍ତି ସେହୁ ନିରନ୍ତରେ ।
ସବୁରି ଆଦି, ସରବ କାର୍ଯ୍ୟର କାରଣ
କାଳ, କ୍ରିୟାର ଚଳକ ଅଟନ୍ତି ସେ ପୁଣ ।
ଉତ୍ପନ୍ନ ନ ହୋଇ ମଧ୍ୟ ଉତ୍ପନ୍ନ ସଦୃଶ
ପ୍ରତୀତ ହୁଅନ୍ତି ସେହୁ ଜାଣ ରଘୁଈଶ ।
ତାଙ୍କର ଉତ୍ପନ୍ନ-ଭାବ ଅଥବା ଶରୀର
ଭୌତିକ ନୁହେଁ, କେବଳ ଜ୍ଞାନର ଆକର ।
ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନଦୃଶ୍ୟ ଦରଶନ କରି
ବିଚଳିତ ହୋଇ ମଧ୍ୟ ସ୍ଥିର ଯେଉଁପରି,
ଜଗତ-ରୂପ ବିରାଟ ଦେହ ଧରି ସେହି
ଶରୀରହୀନ ଭାବରେ ନିଷ୍ଫଳେ ରହଇ ।
ତା ଦୃଷ୍ଟିରେ ଏ ଜଗତ ନୁହଇ ଅସତ
ଆବର ସତ ନୁହଇ ଜାଣ ରଘୁନାଥ ।
କୋଟି କୋଟି ଜଗତ୍-ରୂପେ ନିଜକୁ ବିସ୍ତାରି
ତଥାପି ସେ ଯେଉଁ ଅଣୁ, ସେହି ଅଣୁ ପରି ।
ସେହୁ ବୋଲାଏ ସ୍ୱୟମ୍ଭୁ ବିରାଟ ପୁରୁଷ
ବ୍ରହ୍ମାଣ୍ଡରୂପୀ ସେ ପୁଣି ବୋଲାଏ ଅବଶ୍ୟ ।
ଆକାଶମୟ ଅଟନ୍ତି ବାସ୍ତବରେ ସେହି
ଇନ୍ଦ୍ର, ଉପଇନ୍ଦ୍ର, ରୁଦ୍ର, ବାୟୁ, ମେଘ ହୋଇ ।

ମୂଳତଃ ହିରଣ୍ୟ ଗର୍ଭ, ଚଇତନ୍ୟ ରୂପ
ପରେ ଧରେ ତେଜୋମୟ-ଚିତ୍ତର ସ୍ୱରୂପ ।
ତା ପରେ ଧରଇ ଏହି ବ୍ରହ୍ମାଣ୍ଡ-ଶରୀର
ପରେ ମଣେ ବ୍ରହ୍ମାଣ୍ଡ ତା ନିଜ କଳେବର ।
ସ୍ପନ୍ଦନ-ସଂଙ୍କଳ୍ପେ କରେ ସ୍ପନ୍ଦନାନୁଭବ
ବାୟୁନାମେ ଖ୍ୟାତ ତାହା ହୁଅଇ ରାଘବ ।
"ବାତସ୍କନ୍ଧ" ନାମ ସପ୍ତ ବାୟୁ-ଚକ୍ରାକାରେ
ଅବସ୍ଥିତ ହୁଏ କ୍ରମେ ଏ ବିଶ୍ୱମଣ୍ଡଳେ ।
ଏହି ବାତସ୍କନ୍ଧ ଜାଣ ହେ ରଘୁନନ୍ଦନ
ତାର ପ୍ରାଣ, ଅପାନର ସ୍ପନ୍ଦନ କାରଣ ।
ପ୍ରଦୀପ୍ତ ଅଛଇ ଯେଉଁ ତେଜ ତା ଚିତ୍ତରେ
ଫୁଟି ଉଠେ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଆକାରେ ।
ସୃଷ୍ଟି ଆଦିକାଳୁ ସୃଷ୍ଟି ଲୀନ ହେବାଯାଏ
ବ୍ୟଷ୍ଟିଜୀବଙ୍କର ଯେଉଁ ବ୍ୟଷ୍ଟି ଦେହ ହୁଏ,
ବର୍ତ୍ତମାନ, ହେଉଅଛି, ଭବିଷ୍ୟରେ ହେବ
ଆଦି-ବୀଜ ତାର ଏହି ବ୍ରହ୍ମାଙ୍କୁ ଜାଣିବ ।
ଜୀବଗଣଙ୍କର ସର୍ବ ପ୍ରକାର ବାସନା
ତାର ତହିଁ ରହିଥାଏ ରାମ ମହାମନା ।
ତେଣୁ ଜୀବର ବାସନାମୟ ଏ ଶରୀର
ତହୁଁ ଜନମିଣ ତହିଁ ସ୍ଥିତ ହୁଏ ତାର ।
ହିରଣ୍ୟ ଗର୍ଭ ଚୈତନ୍ୟ ସମାନ ଭାବରେ
ପ୍ରତି ଜୀବେ ସର୍ବ ସ୍ଥାନେ ରାଜେ ସ୍ୱଚ୍ଛନ୍ଦରେ ।
ବ୍ରହ୍ମାର କଳ୍ପନାମୟ ଦେହ, ଏ ଜଗତ
ଏହି ତତ୍ତ୍ୱ ମନେରଖ ଆହେ ରଘୁନାଥ ।
ଏ ସକଳ ସେହି ଶାନ୍ତି ଚିଦାକାଶ ଜାଣ
ଚିଦାକାଶ ବିନା ଅନ୍ୟ ସବୁ ଭ୍ରମ ରାମ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ସୃଷ୍ଟି ଅନୁଭବ ବର୍ଣ୍ଣନେ**
**ନାମ ୫୧ତମ ସର୍ଗଃ ।**



## ୫୨ତମ ସର୍ଗଃ

## ଜଗତ୍ ନିରାକାର-ପ୍ରତ୍ୟକ୍ଷ ପ୍ରମାଣ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀରେ
ବ୍ରହ୍ମା କଳ୍ପିତ ଜଗତ ସେ ଶିଳା ମଧ୍ୟରେ
ଯାହାକୁ କି ପୂର୍ବେ ମୁହିଁ ଦେଖିଥିଲି ତହିଁ
ଅବିକଳ ଏ ଜଗତରୂପ ତା ଅଟଇ ।
ଅନାଦି ଅନନ୍ତ ଚିଦାକାଶ ହିଁ ଶ୍ରୀରାମ
ବ୍ରହ୍ମାଙ୍କ ପ୍ରଥମ ଦେହ ବୋଲିଣ ଜାଣିମ ।
ବ୍ରହ୍ମାଙ୍କର ଏ ଜଗତ-ରୂପ ଦେହ ରାମ
ସେ ପ୍ରଥମ ତୁଳନାରେ ଅତୀବ ନଗଣ୍ୟ ।
ଚିଦାକାଶ ମଧ୍ୟେ ସେହୁ ବିରାଜିତ ରହି
ବ୍ରହ୍ମାଣ୍ଡରୂପ କଳ୍ପିତ ଦେହକୁ ଦେଖଇ ।
ପାରମାର୍ଥିକ ଦୃଷ୍ଟିରୁ ତେଣୁ ହେ ଶ୍ରୀରାମ
ଆକାଶ ସ୍ୱରୂପ ଅଟେ ଏ ଜଗତ ଜାଣ ।
ପ୍ରଥମରେ ତେଜୋମୟ ହୋଇ କରି ସେହି
ସେ ତେଜ ଅଣ୍ଡକୁ ଦୁଇଭାଗ କରି ଦେଇ ।
ସେ ତେଜର ଦୂରବର୍ତ୍ତୀ ଅଂଶ ଗୋଟି ଉର୍ଦ୍ଧ୍ୱ
ନିମ୍ନାଂଶ ଯେ ପୃଥିବୀକୁ, ଜ୍ଞାନ କରେ ଅଧଃ ।
ନିଜେ ସେ ନିଜକୁ ଏହି ଦୁଇଭାଗ କରି
ବ୍ରହ୍ମାଣ୍ଡ ରଚନା ଖେଳ ନେଇଅଛି ବରି ।
ଉର୍ଦ୍ଧ୍ୱ ଭାଗଟି ଜାଣିବ ତାର ଶରଦେଶ
ନିମ୍ନ ଭାଗଟି ତାହାର ଅଟେ ପାଦଦେଶ ।
ଆକାଶ ନିତମ୍ବ ତାର, ତାଲୁ ତାର ସ୍ୱର୍ଗ
ବିନ୍ଦୁ ବିନ୍ଦୁ ରକ୍ତ ତାର ନକ୍ଷତ୍ର ବରଗ ।
ଦେବ, ଦାନବ, ମାନବ, ଏ ସମସ୍ତେ ଜାଣ
ତାହାର ପ୍ରାଣ, ବୁଦ୍ଧିର ସୂକ୍ଷ୍ମ ବୃତ୍ତିମାନ ।
ଭୂତ, ପ୍ରେତ, ପିଶାଚାଦି ତାହା ଶରୀରର
କୃମି, କୀଟ, ପତଙ୍ଗାଦି ଜାଣ ରଘୁବୀର ।
ନଦୀ ସକଳ ତା ଶୀରା, ଜଳ ତାର ରସ
ସୂର୍ଯ୍ୟ, ଚନ୍ଦ୍ର ତା ନୟନ, ମୁଖ ବ୍ରହ୍ମଦେଶ ।
ବନ, ଉପବନ, ସର୍ପ ପୁଣି ସରିସୃପ
ଏମାନେ ଅଟନ୍ତି ତାର ରୋମର ସ୍ୱରୂପ ।
ସେହି ବିରାଟ ପୁରୁଷ କୌଶଲ୍ୟା ତନୟ
ନିଜେ ବୁଦ୍ଧି, ନିଜେ ମନ, ନିଜେ ହିଁ ଇନ୍ଦ୍ରିୟ ।
ଯେ ବ୍ୟକ୍ତି ଯେଠାରେ ଯେଉଁ କର୍ମ କରିଥାଇ
ସେ ସମସ୍ତ ତାର କୃତ କର୍ମ ବୋଲାଯାଇ
ସର୍ବ ରୂପୀ ହୋଇ ସେହୁ ସର୍ବ କର୍ମ କରେ
ଜୀବପରି ଜନ୍ମମୃତ୍ୟୁ ତାହାକୁ ନ ଘାରେ ।
ଜଗତ ସୃଷ୍ଟିରେ ତାର ହୁଅଇ ଜନମ
ଜଗତ ପ୍ରଳୟ ତାର ପ୍ରଳୟ ଜାଣିମ ।
ବାୟୁ ଓ ତାର ପ୍ରବାହ ଏକବସ୍ତୁ ଯଥା
ବ୍ରହ୍ମ ଓ ଜଗତ ଏକ ବସ୍ତୁ ରାମ ତଥା ।

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଆକାଶ ସ୍ୱରୂପ ବ୍ରହ୍ମ ହୋଇଲେ ହେଁ ଜାଣ
ସଙ୍କଳ୍ପ ବଳରେ ହୋଇଥାନ୍ତି ମୂର୍ତ୍ତିବାନ
ତୁମ ଏ ଉକ୍ତି ହୋଇଛି ମୋ ହୃଦୟଙ୍ଗମ ।
କିନ୍ତୁ ସ୍ୱଦେହସ୍ଥ ବ୍ରହ୍ମଲୋକରେ କିମ୍ପାଇ
ବ୍ରହ୍ମ ବାସ କରୁଛନ୍ତି ଏହା ନ ବୁଝଇ ।
ଏହି କଥା ଏବେ ମୋତେ ଦିଅନ୍ତୁ ବୁଝାଇ
ଜୀବଥିବା ଯାକେ ଋଣୀ ରହିବଇଁ ମୁହିଁ ।
କହନ୍ତି ବଶିଷ୍ଠ ରାମ ସମାଧି କାଳରେ
ତୁମ ଦେହର ସ୍ୱ ସ୍ଥାନେ ତୁମେ ଯେ ପ୍ରକାରେ ।
ସଂସ୍ଥିତ ହୋଇଣ ରହ ଆହେ ଚାପଧାରୀ
ନିତ୍ୟ ସମାଧିସ୍ଥ ପିତାମହ ସେହିପରି ।
ସ୍ୱ ଦେହେ ସ୍ୱ ସ୍ଥାନ ବ୍ରହ୍ମଲୋକେ ତଥା ଜାଣ
ବିରାଜିତ ରହିଥାନ୍ତି ହେ ରଘୁନନ୍ଦନ ।
ବ୍ରହ୍ମାଣ୍ଡରୂପେ ସେ ମୂର୍ତ୍ତିମାନ ହୋଇଥାଉ
ଅବା ଆକାଶ ସ୍ୱରୂପେ ମୂର୍ତ୍ତିହୀନ ହେଉ,
ଅନ୍ତରେ, ବାହାରେ ତଥା ସରବ ସ୍ଥାନରେ
କେବଳ ହିଁ ସେହୁ ଏକା ରାଜେ ରଘୁବୀରେ ।
ଯେଣୁ ସେହି ବ୍ରହ୍ମଲୋକ ସର୍ବତ୍ର ପ୍ରସୂତ
କେବଳ ଯେ ପିତାମହ ଅଛନ୍ତି ଏମନ୍ତ ।
ଏପରି ଧାରଣା ନ ରଖିବ ରଘୁନାଥ
ତତ୍ତ୍ୱଜ୍ଞାନୀ ମାତ୍ରେ ମଧ ସେପରି ସଂସ୍ଥିତ ।
ଅନ୍ୟକୃତ ଅପରାଧ ପାଇଁ ଜ୍ଞାନୀଜନ
କେବେହେଲେ କ୍ରୁଦ୍ଧ ନ ହୁଅନ୍ତି ହେ ଶ୍ରୀରାମ ।
ଅନ୍ତଃରେ ପଥର ପରି ଅଚଳ ଭାବରେ
ସେମାନେ ରହି ଥାଆନ୍ତି ଜାଣ ରଘୁବୀରେ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଜଗତ୍ ନିରାକାର ବର୍ଣ୍ଣନେ ନାମ ୫୨ତମ ସର୍ଗଃ ।**



## ୫୩ତମ ସର୍ଗଃ

## ଭାବନା ଘେନି ଫଳ

କହନ୍ତି ବଶିଷ୍ଠ ଶୁଣ ଆହେ ବିଜ୍ଞବର
ଆନନ୍ଦ-ବ୍ରହ୍ମ କେବଳ ଛନ୍ତି ଏ ସଂସାର ।
ତାଙ୍କ ଛଡ଼ା ଅନ୍ୟ କା'ର ସତ୍ତା ଯେ ନ ଥାଇ
ସେହି ଚିନ୍ମୟ ବ୍ରହ୍ମଙ୍କୁ ଜାଣ ରଘୁବୀର ।
ସମଷ୍ଟି ଜୀବ ସ୍ୱରୂପ ସଂୟମ୍ଭୂ ମୂରତି
ଅଥବା ସେ ଧରି ରହୁ ସ୍ଥୂଳ ଦୃଶ୍ୟମୂର୍ତ୍ତି
ତା ଚିନ୍ମାତ୍ର ସ୍ୱରୂପରୁ ନୁହଇ ବିଚ୍ୟୁତି
ସେ ଯେଉଁ ଚିନ୍ମାତ୍ର ସେହି ଭାବେ ବିରାଜନ୍ତି ।
ପାରମାର୍ଥିକ ଦୃଷ୍ଟିରୁ ଏ ସ୍ୱୟମ୍ଭୂଭାବ
ଅଥବା ତା ସ୍ୱପ୍ନ-ଦୃଶ୍ୟାବଳୀ ହେ ରାଘବ
କିଛି ହେଲେ ଭେଦ ତାର ତହିଁ ନାହିଁ ରାମ
ଚିନ୍ମାତ୍ର ରୂପରେ ସଦା ବିରାଜନ୍ତି ବ୍ରହ୍ମ ।
ଆଦି ସୃଷ୍ଟିକାଳୁ ସେହି ଅଖଣ୍ଡ ଚୈତନ୍ୟ
ଅଜ୍ଞ ଦୃଷ୍ଟିରେ ଜଗଦାକାରେ ବିଦ୍ୟମାନ
ଚୈତନ୍ୟ ଓ ଏହି ସୃଷ୍ଟି ପ୍ରପଞ୍ଚ ମଧରେ
କୌଣସି ପାର୍ଥକ୍ୟ ତେଣୁ ନାହିଁ ରଘୁବୀରେ ।
ସ୍ୱର୍ଣ୍ଣର ସୁବର୍ଣ୍ଣଭାବ ଯଥାର୍ଥ ରାଘବ
ଅଳଙ୍କାରରୂପ ଯଥା ତା କୃତ୍ରିମ ଭାବ,
ଚଇତନ୍ୟ ସତ୍ୟ, ମାତ୍ର ପ୍ରପଞ୍ଚ ସକଳ
ତାହାର ଅଳୀକ ଭାବ ତଥା ରଘୁବୀର ।
ଅଜ, ଅନନ୍ତ, ଅକ୍ଷୟ ଏହି ଚିଦାକାଶ
କୋଟି କଳ୍ପେ ନାହିଁ ତାର ଜନ୍ମ ବା ବିନାଶ ।
ମୁହିଁ ସେହି ଚିଦାକାଶ, ତୁମେ ମଧ ତାହା
ଯେଠାରେ ଯା ଆସ୍ତି ନାସ୍ତି ସର୍ବେ ରଘୁନାହା ।
ସକଳେ ସେ ଚିଦାକାଶ ଜାଣ ହେ ଶ୍ରୀରାମ
ସେ ନୋହି ପାରେ ଦଗ୍ଧ, ନ ହେବ ବିଚ୍ଛିନ୍ନ ।
ସେହୁ ଯେବେ ଶରୀରକୁ ଛାଡ଼ି ଚାଲିଯାଏ
ସେ ଶରୀର ଶବ ନାମେ ପରିଚିତ ହୁଏ ।
ଚୈତନ୍ୟର ଯଦି ସତେ ଥାଆନ୍ତା ମରଣ
ଜଣକ ମୃତ୍ୟୁରେ ସର୍ବେ ଲଭନ୍ତେ ନିଧନ ।
ତେଣୁ ଏ ଚିନ୍ମୟ ଆତ୍ମା କେଉଁ ନ ମରଇ
ମୁଁ ସେହି ଚିନ୍ମାତ୍ର, ଦେହ ଇନ୍ଦ୍ରିୟ ମୁଁ ନୋହି ।
ଏପରି ବୁଝିଲେ ରାମ, ଜନମ ମରଣ
କିପରି ରହି ପାରିବ ହେ ରଘୁ ନନ୍ଦନ ?
"ଚୈତନ୍ୟ ମୁଁ" ଏହିପରି ଆତ୍ମ ଅନୁଭବେ
ଆସ୍ଥାବାନ ନ ହୁଅନ୍ତି ଯେବଣ ମାନବେ,
ଆତ୍ମଘାତୀ ଜନ ତାଙ୍କୁ ଜଗତେ ବୋଲାନ୍ତି
ଅନାସ୍ଥାର ଫଳ ଜନ୍ମ ମୃତ୍ୟୁ ଯେ ଭୋଗନ୍ତି ।
ନିର୍ବିକାର ଚଇତନ୍ୟ, ନିର୍ମଳ ଅନନ୍ତ
ନିଜକୁ ଦେଖନ୍ତି ତତ୍ତ୍ୱଜ୍ଞାନୀ ଏହିମତ ।

ଏଥିରେ ବିଶ୍ୱାସ ନ କରଇ ଯେଉଁ ଲୋକ
ସେହି ଆତ୍ମଘାତୀକୁ ଯେ ବୋଲିବାକ ଧିକ ।
ଚିଦାକାଶେ ଆତ୍ମଜ୍ଞାନ ନ ଥାଇ ଯାହାର
ମୃତ ସେହି ଜନ ଏହା ଜ୍ଞାନୀଙ୍କ ବିଚାର ।
ନିଜକୁ ଚୈତନ୍ୟ ବୋଲି ମଣେ ଯେଉଁ ନର
ଆତ୍ମ ଦରଶନ ଲାଭ ହୋଇଛି ତାହାର ।
ବିପଦ ଆପଦ ତାଙ୍କୁ ଛୁଇଁ ନ ପାରନ୍ତି
ତା ମନେ ରାଜତ୍ୱ କରେ ସଦା ଚିରଶାନ୍ତି ।
ନିଜ ଚିନ୍ମୟତ୍ୱ ଯେହୁ ହୋଇଣ ବିସ୍ମୃତ
ଦେହ, ଇନ୍ଦ୍ରିୟଙ୍କୁ ଆତ୍ମା ମଣେ ଯାର ଚିତ୍ତ
ସ୍ୱର୍ଣ୍ଣ ପରିତ୍ୟାଗ କରି କେବଳ ଭସ୍ମର
ସମାଦର କରିଥାନ୍ତି ସେହି ମୂଢ଼ ନର ।
ଶରୀରରେ ଆତ୍ମ ବୁଦ୍ଧି କରନ୍ତେ ସ୍ଥାପନ
ତେଜ, ବୁଦ୍ଧି, ବଳ ସବୁ ହୋଇଯାଏ ଲୀନ ।
ନିଜକୁ ଚିନ୍ମୟ ଆତ୍ମା ମଣେ ଯେଉଁ ଜନ
ସେସବୁ ଗୁଣର ଆବିର୍ଭାବ ହୁଏ ପୁଣ ।
ଚିଦାକାଶ ବୋଲି ମଣି ପାରିଲେ ନିଜକୁ
ଲୋଭ, ମୋହ, ଜନ୍ମ, ମୃତ୍ୟୁ ନ ଘାରେ ତାହାକୁ ।
ଦେହାତ୍ମବୋଧ ସମ୍ପର୍ଣ୍ଣ ବ୍ୟକ୍ତିକୁ ହିଁ ରାମ
ଲୋଭ, ମୋହ ଜନ୍ମ ମୃତ୍ୟୁ କରେ ଆକ୍ରମଣ ।
ଅଚ୍ଛେଦ୍ୟ, ଅଦାହ୍ୟ, ଚିତ୍ ସ୍ୱରୂପେ ଯେ ମୁହିଁ
ଏହି ଅନୁଭବ ଯାର ମନେ ଦୃଢ଼ ରହି,
ତୃଣପରି ମୃତ୍ୟୁକୁ ସେ କରେ ତୁଚ୍ଛଜ୍ଞାନ
ଦେହାତ୍ମବୋଧ ବିନାଶ ଫଳେ ରଘୁନାନ ।
ଚଇତନ୍ୟ ଯେଉଁ ରୂପ ଭାବନା କରଇ
ସେହିକ୍ଷଣ ତାହା ରାମ ଉଦିତ ହୁଅଇ ।
କୌଣସି ପରିବର୍ତ୍ତନ ନୁହେ ଚୈତନ୍ୟର
ଇଚ୍ଛାମୂର୍ତ୍ତି ଧରି ରହେ ସଦା ରଘୁବୀର ।
ସଂସାର ଭାବନା କରି ଆବଦ୍ଧ ହୁଅଇ
ପୁଣି ନିଜକୁ ଦର୍ଶନ କରି ମୁକ୍ତି ପାଇ ।
ଏମନ୍ତ ପଦାର୍ଥ କିଛି ଜଗତରେ ନାହିଁ
ଯାହାକି ଭାବନା ବଳେ ପ୍ରାପତ ନୁହଇ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଭାବନାନୁସାରେ ଫଳ ଲାଭ ବର୍ଣ୍ଣନେ ନାମ ୫୩ତମ ସର୍ଗଃ ।**



## ୫୪ତମ ସର୍ଗଃ
## ଚିନ୍ମୟ ଆତ୍ମାହିଁ କଳ୍ପବୃକ୍ଷ

କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ସ୍ୱପ୍ନସମ ପରମାତ୍ମା ଯେ ଦେଖେ ଅନ୍ତର,
ସେହି ଜଗତକୁ ବ୍ରହ୍ମାକାଶ ଜ୍ଞାନ କଲେ
ବ୍ରହ୍ମରୂପେ ପ୍ରତିଭାତ ତାହା ହୁଏ ଭଲେ ।
ସର୍ବେ ସତ୍ୟ ବ୍ରହ୍ମରୂପେ ଜଗତକୁ ଜାଣ
ପରିଜ୍ଞାତ ହେବାପାଇଁ ତେଣୁଟି ସକ୍ଷମ ।
ଦୃଶ୍ୟ ଦରଶନ ଯୋଗୁଁ ବଦ୍ଧ ଅବସ୍ଥାରେ
ମୁକତି ଲାଭ ନୁହଇ ଜାଣ ରଘୁବୀରେ ।
ବିନା ମୁକ୍ତିରେ ଆତ୍ମାର ପ୍ରକୃତ ଦର୍ଶନ
କେଉଁ ନୋହିପାରେ ଜାଣ କମଳ ଲୋଚନ ।
ତେଣୁ କରି ସତ୍ୟବସ୍ତୁମାନଙ୍କୁ ରାଘବ
ଗଗନ-ସମ ଦର୍ଶନ କରିବା କର୍ତ୍ତବ୍ୟ ।
ହେ ରାମ ! ଚିନ୍ମୟ ଆତ୍ମା କଳ୍ପବୃକ୍ଷ ସମ
ତାଙ୍କୁ ଯେଉଁ ଜନ, ଯେଉଁ ଭାବେ ଭାବେ ଜାଣ
ତାହାକୁ ସେ ସେହିରୂପ ଫଳକୁ ପ୍ରଦାନ
କରିଥାନ୍ତି ନିଃ ସନ୍ଦେହ ଏହା ରଘୁରାଣ ।
ତେଣୁକରି ସର୍ବସମ୍ପ୍ରଦାୟ ସର୍ବମତ
ସତ୍ୟ ବୋଲି ଜାଣ ମୋତେ ହୁଅଇ ପ୍ରତୀତ ।
ଆତ୍ମା ଆକାଶ ସଦୃଶ, ଆତ୍ମା ଚିନ୍ତାମଣି
ଭାବନାନୁରୂପ ଫଳ ଆତ୍ମା ଦିଏ ପୁଣି ।
ପରମପଦେ ବିଶ୍ରାମ ଲଭିଛି ଯେ ଜନ
ଧ୍ୱଂସ ହୋଇଥାନ୍ତି ଯେଣୁ ତାଙ୍କ ରିପୁଗଣ,
ନ ଥାଇ ତାଙ୍କର କେବେ ହରଷ ବିଷାଦ
ବସ୍ତୁ ସଞ୍ଚୟ ପାଇଁ ସେ ନୁହନ୍ତି ପ୍ରଲୁବ୍ଧ ।
ପ୍ରସ୍ଫୁଟିତ ପଦ୍ମ ଯଥା ଭ୍ରମରକୁ ରାମ
ଆନନ୍ଦ, ସୁଗନ୍ଧ-ରସ କରଇ ପ୍ରଦାନ,
ଉପସ୍ଥିତ ଜନତାକୁ ସେମାନେ ସେପରି
ଜ୍ଞାନୋପଦେଶ, ଆଶ୍ରୟ, ଅନ୍ନଦାନ କରି ।
ପରିତୃପ୍ତ କରିଥାନ୍ତି ତାଙ୍କ ମନ ଜାଣି
ପରମ ପଦ ମହତ୍ତ୍ୱ ବୁଝ ରଘୁମଣି ।
ସକଳେ ତାହାଙ୍କଠାରେ ବାଧିତ ରହନ୍ତି
ଯେଣୁ ତାଙ୍କର ସନ୍ତାପ ସେ ଦୂର କରନ୍ତି ।
ରାଜ୍ୟବିପ୍ଳବ, ଦୁର୍ଭିକ୍ଷ, ମହାମାରୀ ମାନ
ସ୍ୱୀୟ ତପ ଶକ୍ତିବଳେ ଦୂର କରି ରାମ ।

ସକଳ ପ୍ରାଣୀମାନଙ୍କୁ ସେ ରକ୍ଷା କରନ୍ତି
ତାଙ୍କ ବଦାନ୍ୟତା କେହି ଭୁଲି ନ ପାରନ୍ତି ।
ବୁଦ୍ଧିଭ୍ରଂଶ ହୋଇଥାଏ ଯାହାର ଶ୍ରୀରାମ
ବିଷମ ସଙ୍କଟେ ପଡ଼ିଥାଏ ଯେଉଁ ଜନ,
ଏହିପରି ସାଧୁଜନ ତାର ଏକମାତ୍ର
ଆଶ୍ରୟ ଓ ଗତି ହୋଇଥାନ୍ତି ରଘୁନାଥ ।
ସଂସାର ପଥେ ଭ୍ରମି ଯେ ଶାନ୍ତ, ପ୍ରପୀଡ଼ିତ
ଏହାଙ୍କ ଆଶ୍ରୟ ନେବା ତାହାର ଉଚିତ ।
ମାତ୍ର ଅସତ ବ୍ୟକ୍ତିର ସଙ୍ଗ ଲାଭ କଲେ
ବିଷମ ବିପଦ ଆସି ଗ୍ରାସକରେ ହେଳେ ।
ସଙ୍ଗଦୋଷୁ ସତ୍ ମଧ୍ୟ ହୁଅଇ ଅସତ
ତେଣୁ ସଦା ସାଧୁସଙ୍ଗ କରିବା ଉଚିତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଚିନ୍ମୟ ଆତ୍ମାହିଁ କଳ୍ପବୃକ୍ଷ ନାମ ୫୪ତମ ସର୍ଗଃ ।**



## ୫୫ତମ ସର୍ଗଃ

## ଅନୁଭବ ଯୋଗ

କହନ୍ତି ଶ୍ରୀରାମ ଶୁଣ ହେ ବ୍ରହ୍ମାନନ୍ଦନ
ନର ଦୁଃଖ ନାଶ ପାଇଁ ନାନାଦି ବିଧାନ,
ରହିଅଛି କିନ୍ତୁ କୀଟ ପତଙ୍ଗାଦି ପାଇଁ
ଅଛି କି ଉପାୟ ତାହା କହ ତପୀସାଇଁ ।
ତାଙ୍କ ଦୁଃଖ ନାଶ ପାଇଁ ଯଦି ନାହିଁ ବାଟ
କିପରି ବଞ୍ଚି ରହନ୍ତି କହ ତପୀଶ୍ରେଷ୍ଠ ।
କହନ୍ତି ବଶିଷ୍ଠ ଶୁଣ ରଘୁବୀର ରାମ
ଜଗତରେ ଛନ୍ତି ଯେତେ ସ୍ଥାବର ଜଙ୍ଗମ ।
ଭୋଗାଭୋଗ ରହିଅଛି ସେହି ସବୁଙ୍କର
ପରିତୃପ୍ତ ରହନ୍ତି ସେ ସ୍ୱଭୋଗ ବଶର ।
ହିରଣ୍ୟଗର୍ଭ ବିରାଟ ଶରୀର ଧରିଣ
ବିପୁଳ ଭୋଗେ ପ୍ରବୃତ୍ତ ଅଛନ୍ତି ଯେସନ,
କେଶାଗ୍ର ସଦୃଶ କ୍ଷୁଦ୍ର ବପୁ କୀଟ ମଧ୍ୟ
ନିଜ ଭୋଗରେ ପ୍ରବୃତ୍ତ ଅଛନ୍ତି ହେ ସିଦ୍ଧ ।
ନଭ ପଟେ ଯେଉଁ ସବୁ କ୍ଷୁଦ୍ର କ୍ଷୁଦ୍ର କୀଟ
କ୍ଷଣକ ପାଇଁ ଜନମି ପୁଣି ହୁଅନ୍ତି ନଷ୍ଟ,
ସେହି କ୍ଷଣିକ ଜୀବନେ ନିଜ ନିଜ ଭୋଗେ
ସୁଖ ଭୋଗ କରିଥାନ୍ତି ପରମ ସନ୍ତୋଗେ ।

ହେ ରାମ ! ଅହଂକାରର ପ୍ରଭାବ ଏସନ
ଅହଙ୍କାର ବଶେ ନାଚୁଥାନ୍ତି ଜୀବଗଣ ।
ତିମିନାମେ ତ୍ରସରେଣୁ ସମ ଏକ କୀଟ
ଦ୍ରୁତଗତିରେ ଭ୍ରମଇ ଆକାଶ ବିରାଟ ।
ଭୋଗାକାଙ୍‌କ୍ଷା ପରିତୃପ୍ତ କରିବା ନିମିତ୍ତ
ଆକାଶ ଭ୍ରମଣେ ସେହୁ ହୋଇଥାଏ ରତ ।
ମନୁଷ୍ୟ ସଦୃଶ କୀଟ ମାନେ ମଧ୍ୟ ରାମ
"ଏହି ମୋର ବାସଗୃହ ଏମନ୍ତ ଭାବିଣ
ବର୍ତ୍ତମାନ ଏହି କର୍ମ କରୁଅଛି ମୁହିଁ"
ରତ ରହିଥାନ୍ତି ସ୍ୱ ସ୍ୱ କର୍ମେ ରଘୁସାଇଁ ।
ବୃକ୍ଷାଦିଙ୍କ ପ୍ରାଣ ପୁଣି କିଛି ବୋଧଶକ୍ତି
ରହିଅଛି ଜାଣିରଖ ଆହେ ରଘୁପତି ।
ପ୍ରସ୍ତରାଦି ବସ୍ତୁ ପୂର୍ଣ୍ଣରୂପେ ଅଚେତନ
କୃମି କୀଟଙ୍କର ଅଛି ସ୍ୱପ୍ନ ଜାଗରଣ ।
ସ୍ୱପ୍ନକାଳେ ରହିଥାନ୍ତି ସେହୁ ଚେଷ୍ଟା ହୀନ
ଜାଗରଣେ ହୋଇଥାନ୍ତି କର୍ମ ପରାୟଣ ।
ଆମପରି ଦୁଃଖଶୋକ ଭୋଗନ୍ତି ସେମାନେ
ଅନ୍ୟକୁ ଜଣାଇ ନ ପାରନ୍ତି କଦାଚନେ ।
ଶୃଗାଳ, ନକୁଳ, ସର୍ପ, ଜୀବମାନଙ୍କର
ପାପ, ପୂଣ୍ୟ, ଭୂତ, ଭବିଷ୍ୟତ ଇତ୍ୟାଦିର,
ଜ୍ଞାନ ନାହିଁ ଜାଣିରଖ ଆହେ ରଘୁବୀର
ଅନ୍ୟସବୁ ବିଷୟରେ ମନୁଷ୍ୟ ପ୍ରକାର ।
ପର୍ବତମାନେ ବୁଝନ୍ତି ଅସ୍ତିତ୍ୱ ନିଜର
ଆଉ ମଧ୍ୟ ନିଜ ଦେହେ ଥିବା ତରୁଙ୍କର ।
ହିମାଳୟ, ମେରୁ ଆଦି କୁଳାଚଳ ମାନ
ତତ୍ତ୍ୱଜ୍ଞ ଅଟନ୍ତି ଜାଣ ହେ ରଘୁନନ୍ଦନ ।
ଚିଦାକାଶ ଅନୁଭବ ଲାଭ କରି ଚିତ୍ତେ
ସମାଧିରେ ମଗ୍ନ ରହିଛନ୍ତି ସେ ସମସ୍ତେ ।
ଗିରି ପୁଣି ବୃକ୍ଷଙ୍କର ଜଗଦାନୁଭବ
ନାହିଁ ବୋଲି ଜାଣିରଖ ହେ ରଘୁପୁଙ୍ଗବ ।
ଗାଢ଼ ନିଦ୍ରାରେ ମଗନ ଅଛନ୍ତି ସେ ଯେଣୁ
ନିଜସ୍ଥିତି ବିନା ଅନ୍ୟ ନ ଜାଣନ୍ତି ତେଣୁ ।
ଜଗତ, ପର୍ବତ, ବୃକ୍ଷ ଏହି ମାନଙ୍କର
ଅଖଣ୍ଡ ଚିଦାକାଶହିଁ ସତ୍ତା ରଘୁବୀର ।
ଯେତେକାଳ ଏ ଆତ୍ମାକୁ ନ ଚିହ୍ନିଛ ରାମ
ସେତେକାଳ ଏ ଜଗତ ହେବ ଦୃଶ୍ୟମାନ ।

ଆତ୍ମ ତଥା ନିଜତତ୍ତ୍ୱ ଜାଣିପାର ଯେବେ
ମୁହିଁ, ତୁହି, ସାନ, ବଡ଼ ଭେଦ ଯାଏ ତେବେ ।
ପାଷାଣ, ଉଦ୍ଭିଦଠାରେ ଆମ ଭେଦଭାବ
ରହି ନ ପାରିବ ତେବେ ହେ ରଘୁପୁଙ୍ଗବ ।
ପ୍ରସ୍ତର ସମ ସୁଦୃଢ଼ ଚିଦାକାଶ ମଧ୍ୟେ
ସ୍ୱାପ୍ନିକ ଦୃଶ୍ୟ ସଦୃଶ ଆହେ ରଘୁନିଧେ,
ଜଗତ ବୈଚିତ୍ର୍ୟମାନ ହୋଇଲେହେଁ ଦୃଶ୍ୟ
ଅପରିବର୍ତ୍ତିତ ରହେ ସେହି ଚିଦାକାଶ ।
ସୃଷ୍ଟିପୂର୍ବେ ଚିଦାକାଶ ଥିଲା ଯେଉଁପରି
ଅବିକଳ ଏବେ ମଧ୍ୟ ରହିଛି ସେପରି ।
ଆଉମଧ୍ୟ ଭବିଷ୍ୟରେ ସେହିପରି ଥିବ
ଏହି କଥା ମନେରଖି ଚଳ ହେ ରାଘବ ।
ସ୍ୱପ୍ନକାଳେ ଯେଉଁ ଦୃଶ୍ୟମାନ ଦେଖାଯାଏ
ଆକାଶ ଛଡ଼ା କି ତହିଁ ଅନ୍ୟ କିଛି ଥାଏ ?
ଏକମାତ୍ର ଅଜ୍ଞାନ ହିଁ ସେହି ଆକାଶରେ
ଦୃଶ୍ୟାଦି ଭ୍ରମମାନଙ୍କୁ ଉତପନ୍ନ କରେ ।
ସେହି ଆକାଶକୁ ଯେବେ ଜାଣିପାର ରାମ
ରହି ନ ପାରିବ ଆଉ ଜାଣ ସେହି ଭ୍ରମ ।
ପ୍ରବୁଦ୍ଧ ଜନଙ୍କୁ ଜାଣ ଏହି ବିଶ୍ୱଜାଲ
ଚିଦାକାଶର ସପନ ସମ ରଘୁବାଳ ।
ବାସ୍ତବରେ ଚିଦାକାଶେ ପୃଥିବ୍ୟାଦି ଭୂତ
କିଛିମାତ୍ର ନାହିଁ ଜାଣିରଖ ରଘୁନାଥ ।
ତୁମେ ମଧ୍ୟ ରାମ ତାକୁ ସ୍ୱପ୍ନପରି ମଣ
ଯାହାକୁ ସତ୍ୟମଣନ୍ତି ଅଜ୍ଞବ୍ୟକ୍ତି ଗଣ ।
ବାସ୍ତବରେ ଯାହା ସତ୍ୟ ତହିଁ ମଧ୍ୟେ ରାମ
ବିନ୍ଦୁମାତ୍ର ଜଡ଼ଭାବ ନାହିଁ ବୋଲି ଜାଣ ।
ବିଶୁଦ୍ଧ ଚିତ୍ ସ୍ୱରୂପ ଆତ୍ମାକୁ ନ ଜାଣି
ଜଗତର ସତ୍ୟଭାବ ଦୃଢ଼, ରଘୁମଣି ।
ଆତ୍ମାକୁ ଜାଣିଲେ ଏହି ଭ୍ରାନ୍ତି ଅବସାନ
ଭ୍ରାନ୍ତିହିଁ ସକଳଭବ-ଦୁଃଖର କାରଣ ।
ଯାହା ମୁହିଁ କହିଗଲି ହେ ରଘୁନନ୍ଦନ
ତାତ୍ପର୍ଯ୍ୟ ତାର ଯଦ୍ୟପି ହୁଏ ହୃଦଙ୍ଗମ,
ଦେଖିବ ତୁମେ ହୋଇଛିସେହି ଚଇତନ୍ୟ
ତହିଁସ୍ଥିତ ହେଲେ କାହିଁ ଦୁଃଖର କାରଣ ?

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଅନୁଭବ ଯୋଗ ନାମ ୫୫ତମ ସର୍ଗଃ ।**



## ୫୬ତମ ସର୍ଗଃ

## ଅନୁଭବ ଯୋଗ ବର୍ଣ୍ଣନ

କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ଭସ୍ମୀଭୂତ ଦେହ ପୁଣି କିପରି ଫେରିବ ?
ଚାର୍ବାକଙ୍କ ଏହି ମତ ଆସ୍ତିକ ବିରୁଦ୍ଧ
ତବପୂର୍ବ ଯୁକ୍ତି ବଳେ ହୁଏ ତାହା ସିଦ୍ଧ ।
ବୁଝାଇ ଦିଅନ୍ତୁ ମୋତେ ଆହେ ବ୍ରହ୍ମାସୁତ
କିପରି ବା ସେହିମତ ହୋଇପାରେ ସତ୍ୟ ?
କହନ୍ତି ବଶିଷ୍ଠ ରାମ ! ସଂବିତ ଅନ୍ତଃରେ
ଯେଉଁପରି ନିଶ୍ଚୟତା ସେ ଗ୍ରହଣ କରେ ।
ଅନୁଭବ ମଧ୍ୟ ଠିକ୍ ଠିକ୍ ସେହିପରି
ହୋଇଥାଏ ବୋଲି ଜାଣ ଆହେ ଧନୁର୍ଦ୍ଧାରୀ ।
ତେଣୁ ଅନୁଭବ ସିଦ୍ଧ ଯେ ଅଦ୍ୱୈତ ଭାବ
ବେଦାନ୍ତ ମତରେ ସମର୍ଥିତ ଯା ରାଘବ ।
ପୁଣି ଚାର୍ବାକ କଳ୍ପିତ ଯେ ଦେହାତ୍ମବାଦ
ଉଭୟ ହିଁ ଚିଦାକାଶ ବୁଝ ରାମଚନ୍ଦ୍ର ।
ଯେଉଁ ଅନୁଭବ ମନେ ହୁଅଇ ଉଦିତ
ପୁରୁଷ ଧରି ନିଅଇ ରୂପ ତଦବତ ।
ଚାର୍ବାକାଦିଙ୍କର ସେହି ଅନୁଭବମାନ
ଦେହାତ୍ମବୋଧ କାରଣ ହେ ରଘୁନନ୍ଦନ ।
ସେ ବିଷୟେ ଦେହ କେଉଁ ନୁହଇ କାରଣ
ଅନୁଭବ ହିଁ ସର୍ବଦା ତାହାର କାରଣ ।
ଆନନ୍ଦମୟ ହେଲେହେଁ ସ୍ୱରୂପ ଆତ୍ମାର
ଅନୁଭବ ଘେନି ଦୁଃଖ ଭୋଗ ପୁରୁଷର ।
ସତ୍ୟ ହେଉ ଅବା ମିଥ୍ୟା ହେଉ ଅନୁଭବ
କିଏ ତାକୁ ଅତିକ୍ରମ କରିଣ ପାରିବ ?
ମୀମାଂସକ, ସାଂଖ୍ୟ, ଚାର୍ବାକାଦି ମନିଷୀଙ୍କୁ
ନିଜ ନିଜ ଅନୁଭବ ଠାରୁ ଚାର୍ବାକଙ୍କୁ,
ଅବା ମୀମାଂସକ, ସାଂଖ୍ୟ ମତାବଲମ୍ବୀଙ୍କୁ
ପୃଥକ ଯଦ୍ୟପି କରାଯାଏ ରାମ ତାଙ୍କୁ
ଆଉ କିଛି ସତ୍ତା ରହିପାରେ କି ତାଙ୍କର ?
ସ୍ୱତନ୍ତ୍ରତା କିଛି ମାତ୍ର ନାହିଁ ତାହାଙ୍କର
ଅନୁଭବ ହିଁ ସମସ୍ତ ଜାଣିରଖ ରାମ
ଜ୍ଞାନ ଅବା ଅଜ୍ଞାନରୁ ଯେଉଁଠୁଁ ଉତ୍ପନ୍ନ ।

ଚିନ୍ମୟ ଆତ୍ମାର ସେହି ଅନୁଭବ ପ୍ରତି
ଦୃଷ୍ଟି ରଖିକରି ଜାଣ ଆହେ ରଘୁପତି ।
ସକଳ ମତକୁ ମୁହିଁ ମଣିଅଛି ସତ୍ୟ
ଧୀର ଭାବେ ଏ ବିଚାର କର ରଘୁନାଥ ।
ଚୈତନ୍ୟରେ ଯେ ଅବିଦ୍ୟା ହୁଏ ବିଦ୍ୟମାନ
ସେ ଅବିଦ୍ୟା ଭିନ୍ନ ଭିନ୍ନ ସମ୍ପ୍ରଦାୟେ ଜାଣ,
ଭିନ୍ନ ଭିନ୍ନ ଅନୁଭବ ରୂପରେ ପ୍ରକାଶ
ପାଇଅଛି ଏ ମୋହର ମତ ରଘୁଶିଷ୍ୟ ।
ସେ ଅବିଦ୍ୟା ଯେବେ ଶୁଦ୍ଧ ତତ୍ତ୍ୱଜ୍ଞାନ ମଧ୍ୟେ
ପର୍ଯ୍ୟବସିତ ହୁଅଇ ଆହେ ରଘୁନିଧେ ।
ବିଶୁଦ୍ଧ ଚିତ୍‌ସ୍ୱରୂପ ଅଟେ ଯେଉଁ ମୁକ୍ତି
ଉପସ୍ଥିତ ହୋଇଯାଏ ତେବେ ରଘୁପତି ।
ଅବିଦ୍ୟାଗ୍ରସ୍ତ ଚୈତନ୍ୟ ଧରେ ଜୀବ ନାମ
ତତ୍ତ୍ୱତଃ ପ୍ରତ୍ୟଗଚୈତନ୍ୟ ଯେବେ ସେ ଜାଣିମ ।
ସଂସାର ବନ୍ଧନ ତାର ହୋଇଯିବ ଛିନ୍ନ
ତା ବିନା ତା ଜଡ଼ଭାବ ନୁହେ ବିନାଶନ ।
ଚୈତନ୍ୟ ସ୍ୱରୂପ ନିଜେ ଅଟେ ସେ ପୁରୁଷ
ସ୍ୱରୂପ ନ ଜାଣି ଦେଖେ ଜଗତର ଦୃଶ୍ୟ ।
ତା ସ୍ୱରୂପ ଉଭାସିତ ନୁହେ ଯେତେଦିନ
ଅଜ୍ଞାନ କେବଳ ରହେ ତା ଅବଲମ୍ବନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାଖଣ୍ଡେ ଅନୁଭବ ଯୋଗ ବର୍ଣ୍ଣନେ ନାମ ୫୬ତମ ସର୍ଗଃ ।**



## ୫୭ତମ ସର୍ଗଃ
## ଚୈତନ୍ୟ ରୂପ ବର୍ଣ୍ଣନ

କହନ୍ତି ବଶିଷ୍ଠ ରାମ ଚୈତନ୍ୟ ହିଁ ଜାଣ
ପୁରୁଷ ଓ ଜଗତ୍ ରୂପେ ଅଛି ବିଦ୍ୟମାନ ।
ଚୈତନ୍ୟକୁ ତାଙ୍କଠାରୁ କରିଲେ ପୃଥକ
ଆଉ କିଛି ନ ରହିବ ହେ ରଘୁନାୟକ ।
ଆକାଶ ସ୍ୱରୂପ ଅଟେ ସେହି ଚଇତନ୍ୟ
ସେ ଚୈତନ୍ୟମୟେ ମଧ୍ୟ ଦ୍ରଷ୍ଟା, ଦୃଶ୍ୟ ପୁଣ ।
ଦ୍ରଷ୍ଟା ଦୃଶ୍ୟ ମଧ୍ୟେ ହେୟ ଅବା ଉପାଦେୟ
କିଛି ନାହିଁ ଜାଣିରଖ ହେ ରଘୁତନୟ ।
ସୁରାସୁର, ନାଗ, ନର, ସ୍ଥାବର ଜଙ୍ଗମ
ସକଳ ସଂଚିତ ଜାଣି ରଖ ରଘୁରାଣ ।
ମାତ୍ର ଭେଦ ବୁଦ୍ଧିଥିବା ବ୍ୟକ୍ତିଙ୍କ ନିମିତ୍ତ
ସବୁହିଁ ପୃଥକ ବିବେଚିତ ରଘୁନାଥ ।
ସଂବିତ ଠାରୁ ପୃଥକ ବିଶାଳ ଲୋଚନ
ଜଗତରେ କାହିଁ କିଛି ନାହିଁ ଏହା ଜାଣ ।
ସଂବିତ ବ୍ୟତୀତ ନିତ୍ୟ ପଦାର୍ଥ ଶ୍ରୀରାମ
କିସ ଅଛି କହ ଯେବେ ଏ ବିଶ୍ୱଭୂବନ ?
ସେହି ସଂବିତକୁ ଜାଣ ପରିତ୍ୟାଗ କରି
କୌଣସି ସମ୍ପ୍ରଦା କିଛି କହି ତ ନ ପାରି ।
ଏ ସଂବିତ ଆକଶକୁ ନାନାବିଧ ନାମେ
ଅଭିହିତ କରିଥାନ୍ତି ଜାଣ ନାନା ଜନେ ।
ଏପରି କଲେ ହେଁ ଜାଣ ସେ ଯେଉଁ ଚିନ୍ମାତ୍ର
ସେହି ଚିନ୍ମାତ୍ର ଭାବରେ ରହେ ରଘୁନାଥ ।
ନିଜେହିଁ ନିଜକୁ ସେହି ଆକଶ ରୂପରେ
ପରିଜ୍ଞାତ ହେଉଛନ୍ତି ଜାଣ ରଘୁବୀରେ ।
ଅନ୍ୟଥାଭାବ ଆକାଶ-ସ୍ୱରୂପରେ ତାର
ସମ୍ଭବି ନ ପାରେ କେଭେଁ ଧ୍ରୁବ ଏହି ଗୀର ।
ଦେହ ଚୂର୍ଣ୍ଣ ହେଉ ଅବା ଥାଉ ଶୈଳ ସମ
କ୍ଷୟ ବୃଦ୍ଧି ନ ଘଟଇ ଚିଦାକାଶେ ଜାଣ ।
ଅକ୍ଷୟ ସେ, ଜନ୍ମମୃତ୍ୟୁ ନାହିଁ ତାର କିଛି
ସର୍ବଦା ନିଜକୁ ନିଜେ ଜାଣି ସେ ପାରୁଛି ।
"କେବଳ ରୂପେ" ସେ ରହେ ସଦା ନିଜ ମଧ୍ୟେ
ଏ ବିଶ୍ୱ ଉଦିତ, ଅସ୍ତ, ହୁଏ ତହିଁ ମଧ୍ୟେ ।
ଏହି ଚିଦାକାଶ ପ୍ରାପ୍ତ ହୋଇଛି ଯେ ଜନ
ଚିନ୍ମାତ୍ର ହୋଇ ପାରୁଛି ସେହୁ ରଘୁନାନ ।
ଅବିନାଶୀ ଅଟେ ଯେଉଁପରି ଚିଦାକାଶ
ସେପରି ତାହାର କେଭେଁ ନୁହଇ ବିନାଶ ।
ଦେହର ପରିବର୍ତ୍ତନ ସର୍ବଦା ଘଟୁଛି
ଘଟିଥିଲା, ଘଟୁଥିବ ଜାଣ ରଘୁବଂଶି ।
ମାତ୍ର ସେଥିଯୋଗୁଁ ରାମ ସେହି ପୁରୁଷର
କୌଣସି ଦୁଃଖ ଉତ୍ପନ୍ନ ନୁହେଁ ରଘୁବୀର ।
ସ୍ୱରୂପ ତୁମର ରାମ ଅଟେ ଚିଦାକାଶ
ତେଣୁ ଅହଂବୁଦ୍ଧି ତେଜି ଦିଅ ରଘୁଶିଷ୍ୟ ।
ସ୍ୱଚ୍ଛଭାବେ ରହି ଉପସ୍ଥିତ କର୍ମମାନ
ସମ୍ପାଦନ କରୁଥାଅ ହେ ରଘୁନନ୍ଦନ ।

ହେଳା ନ କରନ୍ତି ସାଧୁ କର୍ତ୍ତବ୍ୟ କର୍ମରେ
ପବିତ୍ର ଭୋଗ୍ୟ ବସ୍ତୁକୁ ତ୍ୟାଗ ସେ ନ କରେ ।
ବିପଦ ଆପଦ ସବୁ ଉପେକ୍ଷା କରିଣ
ସ୍ୱସ୍ଥଭାବେ ବିରାଜଇ ହୋଇ ସାବଧାନ ।
ଜନ୍ମ, ମୃତ୍ୟୁ ତୁଚ୍ଛ ମନେ କରେ ଜ୍ଞାନୀଜନ
ଇଚ୍ଛା ତେଜି ସ୍ଥିର ରହେ ପର୍ବତ ସମାନ ।

**ଇତିଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଚୈତନ୍ୟ ରୂପ ବର୍ଣ୍ଣନେ ନାମ ୫୬ତମ ସର୍ଗଃ ।**



## ୫୮ତମ ସର୍ଗଃ

## ତତ୍ତ୍ୱଜ୍ଞ ଲକ୍ଷଣ

ଶ୍ରୀରାମ ବୋଲନ୍ତି ମୁନେ ଯେଉଁ ଜ୍ଞାନୀ ଜନ
ପରମପଦରେ କରିଥାଏ ଅବସ୍ଥାନ ।
କେଉଁ ପ୍ରକାରେ ସେ ରହେ, କହ ଆଉଥରେ
ସଂଶୟ ବିନାଶ ହେବ ମନୁଁ ମୋ ଯହିଁରେ ।
ବଶିଷ୍ଠ ବୋଲନ୍ତି ଶୁଣ ଆହେ ରଘୁନାଥ
ସର୍ବଜ୍ଞେୟ ତତ୍ତ୍ୱ ଯା'କୁ ହୋଇଅଛି ଜ୍ଞାତ ।
ନିର୍ଜନ ଅରଣ୍ୟେ ରହିଥିଲେ ହେଁ ସେ ଜନ
ରମ୍ୟ ପ୍ରାସାଦେ ରହିଲା ଭଳି ଭାବେ ମନ ।
ଗଛ ପତ୍ର ସମସ୍ତଙ୍କୁ କରେ ମିତ୍ରଜ୍ଞାନ
ବନ୍ୟ ଜନ୍ତୁଙ୍କୁ ମଣେ ସେ ଆତ୍ମୀୟ ସ୍ୱଜନ ।
ଶୂନ୍ୟ ବନ ତାହାପାଇଁ ଜନାକୀର୍ଣ୍ଣ ଗ୍ରାମ
ବିପଦକୁ ମଣେ ସେହୁ ମହୋତ୍ସବ ସମ ।
ଆପଣା ରାଜ୍ୟରେ ରହି ରାଜା ଯେଉଁପରି
କୌଣସି ଅଭାବ ବୋଧ ନ କରେ, ସେପରି ।
ନିର୍ଜନ ଅରଣ୍ୟେ ମଧ୍ୟେ ଜ୍ଞାନୀ ଜନ ଥାଇ
କୌଣସି ହେଲେ ଅଭାବ ବୋଧ ନ କରଇ ।
କାର୍ଯ୍ୟରତ ଅବସ୍ଥା ତା ଅଟଇ ସମାଧି
ଦୁଃଖ ହିଁ ସୁଖ ତାହାର ଜାଣ ରଘୁନିଧି ।
କର୍ମ ତାର ନିଷ୍କର୍ମତା ଜାଣ ହେ ଶ୍ରୀରାମ
ସକଳ କରମ କରି, ନ କରେ ସେ କର୍ମ ।
ରସିକ ହୋଇଣ ସୁଦ୍ଧା ଅଟେ ଆରସିକ
ମିତ୍ର ବତ୍ସଳ ହେଲେହେଁ ଆସ୍ନେହୀ ସେ ଲୋକ ।
ଦୟାଳୁ ହେଲେହେଁ ପୁଣି ଅଟେ ସେ ନିର୍ଦ୍ଦୟ
ତୃଷ୍ଣାଗ୍ରସ୍ତ ହୋଇ ପୁଣି ତୃଷ୍ଣାହୀନ ପ୍ରାୟ ।
ତାଙ୍କୁ ଦେଖି କେହି କେବେ ଭୟ ନ କରଇ
ତାଙ୍କୁ କେହି ଭୟ ଭୀତ କରି ନ ପାରଇ ।
ଉପସ୍ଥିତ ବିଷୟେ ତା ନଥାଇ ଆଦର
ଅନୁପସ୍ଥିତ ବିଷୟେ ବାଞ୍ଛା ନାହିଁ ତାର ।
ଯତ୍‌ପ୍ରାପ୍ତିରେ ତାର କେଉଁ ହର୍ଷ, କ୍ରୋଧ ନାହିଁ
ଉପଯାଚକ ଭାବେ ସେ କର୍ମ ନ କରଇ ।
ଅନୁରାଗହୀନ ହୋଇ, ଆସକ୍ତି ଦେଖାଇ
ସଂସାର ଭାବକୁ ଅନୁସରଣ କରଇ ।
ନଟପରି ଅନୁସାରେ ସଂସାର ବେଭାର
ମାତ୍ର ସ୍ୱଚ୍ଛ ରହେ ସଦା ଅନ୍ତର ମଧ୍ୟର ।
ପୁତ୍ର କଳତ୍ରାଦି ଯେତେ ସଂସାର-ସ୍ୱପନ
ବୁଦ୍ ବୁଦ୍ ପରାଏ ତାଙ୍କୁ ମଣେ ଅନୁକ୍ଷଣ ।
ସେମାନଙ୍କ ପ୍ରତି ସେହୁ ନ ରହେ ଆସକ୍ତ
ଅନୁରାଗ ଦେଖାଇ ସେ ରହେ ଅନାସକ୍ତ ।
ବାତ୍ସଲ୍ୟ ଭାବ ଦେଖାଏ ବାହ୍ୟ ବ୍ୟବହାରେ
ଉଦ୍‌ବେଗ ହୀନ ହୁଏ ସେ ଥାଏ ଅନ୍ତର ମଧ୍ୟରେ ।
ତତ୍ତ୍ୱଜ୍ଞାନୀ ଏହିପରି ସାଂସାରିକ କର୍ମ
ସମାପନ କରୁଥାଏ ଜାଣ ହେ ଶ୍ରୀରାମ ।
ଶ୍ରୀରାମ ବୋଲନ୍ତି ଗୁରୁଦେବ ଏବେ ଶୁଣ
ତତ୍ତ୍ୱଜ୍ଞ ଲକ୍ଷଣ ଯାହା କଲେକ ବର୍ଣ୍ଣନ ।
ଅତତ୍ତ୍ୱଜ୍ଞ ମଧ୍ୟ-ବାହାରକୁ ସେହିପରି
କୃତ୍ରିମ ଆଚରଣକୁ ନେଇ ପାରେ ବରି ।
ପ୍ରତିଷ୍ଠା, ଖ୍ୟାତି ଅର୍ଜନ କରି ତାର ବଳେ
ତତ୍ତ୍ୱଜ୍ଞଙ୍କ ପରି ବିଚରଣ କରିପାରେ ।
ବାସ୍ତବ ତତ୍ତ୍ୱଜ୍ଞ ପୁଣି କୃତ୍ରିମ ତତ୍ତ୍ୱଜ୍ଞ
କିପରି ଭାବରେ ଚିହ୍ନି ହେବେ ମହାଭାଗ ?
କହନ୍ତି ବଶିଷ୍ଠ ତେବେ ଶୁଣ ହେ ଶ୍ରୀରାମ
ତତ୍ତ୍ୱଜ୍ଞାନୀ ପୁରୁଷଙ୍କ ଯା ସବୁ ଲକ୍ଷଣ
ତୁମ ଆଗେ ଆଜ ତାହା କଲି ମୁଁ ବର୍ଣ୍ଣନ
ନିଃସନ୍ଦେହ ଜାଣ ତାହା ଉତ୍କୃଷ୍ଟ ବିଧାନ ।
କଉଣସି ଭଣ୍ଡ ଯଦି ତାହା ଅନୁସରି
ତହିଁରୁ ମଧ୍ୟ ସେ ଲାଭ ଉଠାଇଣ ପାରି ।
ଯେହେତୁ ଅନୁକରଣ ଅଭ୍ୟାସର ବଳେ
ସ୍ୱଭାବରେ ପରିଣତ କାଳେ ହୋଇପାରେ ।
ଚନ୍ଦନ ବୃକ୍ଷ ସୁଗନ୍ଧି ଦୂରରୁ ଯେସନ
ଉପଲବ୍ଧି ହୋଇଥାଏ ହେ ରଘୁନନ୍ଦନ ।

ସେପରି ତତ୍ତ୍ୱଜ୍ଞ ଅନ୍ତଃଶୀତଳତା ବୀର
ଦେଖିଲା ମାତ୍ରକେ ତାଙ୍କୁ ହୁଅଇ ଗୋଚର ।
ଦେଖାଇ ହୁଅନ୍ତି ଭଣ୍ଡବ୍ୟକ୍ତି ନିଜଜ୍ଞାନ
ତତ୍ତ୍ୱଜ୍ଞାନୀ ଜ୍ଞାନୈଶ୍ୱର୍ଯ୍ୟ ରଖଇ ଗୋପନ ।
"ଅନ୍ୟମାନେ ଆସି ମୋତେ ଦିଅନ୍ତୁ ସମ୍ମାନ
ଆଉମଧ କରୁଥାନ୍ତୁ ମୋହର ପୂଜନ" ।
ଅହଂକାରୀ ଜନଙ୍କର ବାସନା ଏସନ
ତତ୍ତ୍ୱଜ୍ଞର ସେହି ଇଚ୍ଛା ନୁହେ କଦାଚନ ।
ତତ୍ତ୍ୱଜ୍ଞ ଜନଙ୍କ ରାମ ସାନ୍ନିଧ୍ୟ ଲଭିଣ
ଶାନ୍ତିଲାଭ କରି ପାରିଥାନ୍ତି ସର୍ବଜନ ।
ଭଣ୍ଡ ଅହଂକାରୀ ଜନ ନିକଟକୁ ଯାଇ
କେହି ହେଲେ କେଉଁ ଶାନ୍ତି ଲଭି ନ ପାରଇ ।
ଏହି ସବୁ ଉପାୟରେ ଦୁହିଁଙ୍କ ପାର୍ଥକ୍ୟ
ବୁଝା ଯାଇପାରେ ଜାଣ ହେ ରଘୁନାୟକ ।
ମହାଜନମାନଙ୍କର ଚଲି ଚଳନର
କୌଣସି ନିର୍ଦ୍ଦିଷ୍ଟ ପନ୍ଥା ନାହିଁ ରଘୁବୀର ।
ଯାହାର ଯେପରି ଇଚ୍ଛା ସେହିରୂପ ଧରି
ଭ୍ରମଣ କରୁଣଥାନ୍ତି ସାରା ବସୁନ୍ଧରୀ ।
କେହୁ ଭିକ୍ଷୁ ବେଶଧରି, କେହୁ ନିର୍ଜ୍ଜନରେ
ତପସ୍ୟା ରତ ରହନ୍ତି ଲୋକ ଅଗୋଚରେ ।
ରାଜବେଶ ଧରି କେହୁ ଗୃହେ କରେ ବାସ
କେହୁ ସମାଧିସ୍ଥ କେହି ଧରେ ମୌନୀ ବେଶ ।
କେହୁ ପଣ୍ଡିତ କେହୁ ବା ଯଥା ଇଚ୍ଛାଚାରୀ
ନିକୃଷ୍ଟ ବେଶକୁ କେହୁଁ ରହଇ ଆବୋରି ।
ଉନ୍ମତ୍ତ ଭାବରେ କେହୁ ନାନା ସ୍ଥାନେ ବୁଲେ
ପରିବ୍ରାଜକ ବେଶ ବା କେ ଧାରଣ କରେ ।
ପୁରୁଷ ବାସ୍ତବରୂପ ଅଟଇ ଚୈତନ୍ୟ
ଦେହ, ମନ, ଚିତ୍ତ, ଇନ୍ଦ୍ରିୟାଦିରୁ ସେ ଭିନ୍ନ ।
ଅଚ୍ଛେଦ୍ୟ, ଅଦାହ୍ୟ, ସ୍ଥାଣୁ, ନିଶ୍ଚଳ ଓ ନିତ୍ୟ
ଅଶୋଷ୍ୟ, ଅକ୍ଳେଦ୍ୟ, ସର୍ବଗତ ପୁଣି ସତ୍ୟ ।
ଏହିଭାବେ ତାଙ୍କୁ ତୁମେ ଜାଣ ହେ ଶ୍ରୀରାମ
ଏଭାବେ ଉଦ୍‌ବୁଦ୍ଧ ହୋଇ ପାରିଛି ଯେ ଜନ,
ଯେଉଁଠାରେ ଯେଉଁ ଭାବେ, ଇଚ୍ଛାବଳେ ତାର
ସେଠାରେ ସେ ଭାବେ ସେହୁ କରଇ ବିହାର ।
ନିୟମର ବାଧବାଧକତା ନାହିଁ ତାର
ସଦା ଶାନ୍ତ, ଶିବ, ଯେଣୁ ସେହି ବିଜ୍ଞବର ।

ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଉତ୍ତରାଖଣ୍ଡେ ତତ୍ତ୍ୱଜ୍ଞ ଲକ୍ଷଣ ବର୍ଣ୍ଣନେ
ନାମ ୫୮ତମ ସର୍ଗଃ ।



## ୫୯ତମ ସର୍ଗଃ

## (ଚିଦାକାଶ) ପୁରୁଷର ଅନୁଭବ-ବିଶ୍ୱ

ଅନାଦି, ଅନନ୍ତ ଚିନ୍ମାତ୍ରକୁ ମୁହିଁ ରାମ
ଅଭିହିତ କରିଅଛି ପୁରୁଷ ନାମେଣ ।
ଯେତେବେଳେ ଯାହା ସେହୁ କରେ ଅନୁଭବ
ସେହି ଆକାରେ ନିଜକୁ ମଣେ ହେ ରାଘବ ।
ଜ୍ଞେୟବସ୍ତୁ କେବେହେଲେ ତାହାଠାରୁ ରାମ
ପୃଥକ ନୁହଇ ଏହା ନିଶ୍ଚିତ ଜାଣିମ ।
ଅବାଧ ସେ ଘନଚିତ୍ ଅନୁଭବ ପାଇଁ
ବାଧା ବିହୀନ ରହଇ ଜାଣ ସଦା ସେହି ।
ଯାହାଇଚ୍ଛା କରେ ତାହା କରେ ଅନୁଭବ
ତେଣୁ ସୃଷ୍ଟିର କାରଣ ତାହାର ସ୍ୱଭାବ ।
କିଛିତ ନଥିଲା ସୃଷ୍ଟି ଆଦ୍ୟେ ରଘୁନାଥ
ଚିଦାକାଶ ସୃଷ୍ଟ୍ୟାକାରେ ହେଲା ଆକାରିତ ।
ତେଣୁ ଦୃଶ୍ୟାକାରେ ଯାହା ହୁଅଇ ପ୍ରତୀତ
ସବୁ ସେହି ଚୈତନ୍ୟର ବିବର୍ତ୍ତନ ମାତ୍ର ।
ନିଜେ ଚିଦାକାଶ ଚମତ୍କାର ଚାତୁର୍ଯ୍ୟକୁ
ଜାଗ୍ରତ-ସ୍ୱପ୍ନ ପ୍ରଭାବେ ଦୃଶ୍ୟ ମଣେ ତାକୁ ।
ସୁଷୁପ୍ତି ସମୟେ ତାର ନଥାଇ ସେ ଜ୍ଞାନ
ଦୃଶ୍ୟବୋଧ, ଅବୋଧ ତା ସ୍ୱରୂପ ହିଁ ଜାଣ ।
ଚିଦାକାଶ ରୂପେ ଦୁହେଁ ଏକବସ୍ତୁ ଜାଣ
ଶବଦ ପାର୍ଥକ୍ୟ ମାତ୍ର ରହେ ହେ ଶ୍ରୀରାମ ।
ତେଣୁ ଦୃଶ୍ୟବସ୍ତୁ ବୋଲି କିଛି ନାହିଁ ଜାଣ
ତତ୍ତ୍ୱଜ୍ଞାନ ହେବା ପୂର୍ବେ ଯେ ଦୃଶ୍ୟ ଦର୍ଶନ,
ବିଚାର ଅଭାବ ହେତୁ ତାହା ଘଟିଥାଏ
ବିଚାର ବଳେ ସେ ଅବିଚାର ନାଶ ପାଏ ।
ବିଚାର ବା ଅନୁଭବ ବିଷୟରେ ରାମ
ବୁଦ୍ଧିର ଯେ ଚେଷ୍ଟା ଜାଣ ଅଭ୍ୟାସ ତା ନାମ ।
ସେ ଅଭ୍ୟାସ ବଳେ ସିଦ୍ଧ ଲାଭକରେ ଜୀବ
ସକଳ ଅବିଦ୍ୟା ନାଶ ଲଭନ୍ତି ରାଘବ ।

ଜ୍ଞାନ ଦୃଢ଼ତା ନ ଲଭେ ଅଭ୍ୟାସ ବ୍ୟତୀତ
ଅଧ୍ୟାତ୍ମ୍ୟଜ୍ଞାନ ଅଭ୍ୟାସେ ତେଣୁ ରହ ରତ ।
ତା ନୋହିଲେ ରାମ ! ଆତ୍ମା ହେଲେହେଁ ବିଜ୍ଞାତ
ଅଭ୍ୟାସ ବିନା ସେ ରହିଯିବ ଅବିଜ୍ଞାତ ।
ନଦୀ ସ୍ୱରୂପ ଅଟଇ ମାନବର ମନ
ବିବେକ ଓ ଅବିବେକ ଉଭୟ ଦିଗେଣ,
ପ୍ରବାହିତ ହେଉଥାଏ ଯେଣୁ ରଘୁବୀର
ଅବିବେକୀ ମୁଖୀ ଯେଉଁ ପ୍ରବାହ ତାହାର,
ଚେଷ୍ଟାଦ୍ୱାରା ଯଦି ତାକୁ କର ନିୟନ୍ତ୍ରିତ
ବିବେକ ଦିଗେ ସେ ବହି ଲଭିବ ସ୍ଥିରତ୍ୱ ।
ନିଜ ବିଚାର ବଳରେ ଜାଣ ହେ ଶ୍ରୀରାମ
ସଂସାର ବିନାଶକାରୀ ସେ ପରମ ଜ୍ଞାନ,
ଉଦିତ ହୁଅଇ ସ୍ୱାଭାବିକ ଭାବ ଧରି
ହଠାତ୍ ଉଦୟ ତାର ନୁହେ ରୂପଧାରୀ ।
ଅଭିଶାପ ଅବା ବର ପ୍ରାପ୍ତିରେ ଯେସନ
ଆଶୁଫଳ ମିଳିଥାଏ ହେ ରଘୁନନ୍ଦନ
ସେପରି ଅଦ୍ଭୁତ ଫଳ ନ ଫଳେ ଜଗତେ
ଅଭ୍ୟାସ ବଳବତ୍ତର ରହେ ସର୍ବକ୍ଷେତ୍ରେ ।
ଅଧ୍ୟାତ୍ମ ଶାସ୍ତ୍ରର ଅନୁଶୀଳନରେ ରାମ
ଯେରୂପ କଲ୍ୟାଣୋଦୟ ହୋଇଥାଏ ଜାଣ,
ପିତା, ମାତା, ଅବା ତୁମ ପୂର୍ବ କୀର୍ତ୍ତି, ପୁଣ୍ୟ
କେହି ହେଲେ ଦେଇ ନ ପାରନ୍ତି ସେ କଲ୍ୟାଣ ।
ସଂସାର ବନ୍ଧନ ସାଧୋ ! ଅତୀବ ବିଷମ
ଆତ୍ମଜ୍ଞାନ ବିନା କେଉଁ ନୁହେ ତା ଖଣ୍ଡନ ।
"ଅହଂ" ଆକାରୀୟ ମିଥ୍ୟା ଭାବନାର ବଳେ
ଆତ୍ମାର ଯେ ଶୋଚନୀୟାବସ୍ଥା ଘଟେ ହେଲେ ।
ଶାସ୍ତ୍ରାର୍ଥ ଅନୁଶୀଳନ ଦ୍ୱାରା ହେ ଶ୍ରୀରାମ
ଯଥାଶୀଘ୍ର ତହୁଁ ମୁକ୍ତି ଲଭି ହୁଅ ଧନ୍ୟ ।
ହାବୁଡ଼ି ଯିବଟି ଆଚମ୍ବିତେ ମୃତ୍ୟୁକାଳ
କିଛି କରି ନ ପାରିବ ତେବେ ରଘୁବାଳ ।
ଯାହା କହୁଅଛି ଏବେ ଶୁଣ ସଭ୍ୟଗଣ
ପରିତ୍ୟାଗ କରିଦିଅ "ମୋହ" ଏହିକ୍ଷଣ ।
ବିବେକ ପଥକୁ ସର୍ବେ ଆଶ୍ରୟ କରିଣ
ପଥିକ ହୁଅ ହେ ତୁମେ ମୁକତି ପଥେଣ ।
ନକର ସଂସାର ପଥେ ପୁନଃ ବିଚରଣ
ବିବେକ ପଥକୁ ଯେବେ କରିବ ବରଣ ।

ଆତ୍ମଜ୍ଞାନ ସେହି କାଳେ ହୋଇବ ଉଦୟ
ସର୍ବ ସଙ୍କଟ ସମୂଳେ ଲଭିବେ ବିଲୟ ।
ତୁମରି ମଙ୍ଗଳପାଇଁ ଦିବାରାତ୍ର ମୁହିଁ
ପରିଶ୍ରମ କରୁଅଛି କ୍ଳାନ୍ତି ନ ଜାଣଇ ।
ତେଣୁ ଧୈର୍ଯ୍ୟଧରି ଶୁଣ ମୋହର ବଚନ
ଦେହାତ୍ମବୋଧ ତେଜିଣ ବ୍ରହ୍ମେ ରୁହ ମଗ୍ନ ।
ମୃତ୍ୟୁ-ବ୍ୟାଧିର ଚିକିତ୍ସା ଜୀବ ଥାଉଁ ଥାଉଁ
ନକରେ ଯେ, ମୃତ୍ୟୁକାଳେ କରିବ କି ସେହୁ ?
ତୁମ ସମସ୍ତଙ୍କ ପ୍ରେମାସ୍ପଦ ଆତ୍ମା ମୁହିଁ
ବିଶୁଦ୍ଧ ସଂବିତ ତୁମେ ସର୍ବେ ରଘୁରାଇ ।
ଏହି ବଶିଷ୍ଠ ରୂପରେ ତୁମ ନିର୍ମଳାତ୍ମା
ଜ୍ଞାନ ଉପଦେଶ ଦିଏ ଆହେ ଶୁଦ୍ଧ ଚେତା ।
ତେଣୁ କରି ଯାହାକିଛି କହିଲଇଁ ମୁହିଁ
ଉପେକ୍ଷା କରିବ ନାହିଁ କେହି ରଘୁସାଇଁ ।
ଔଷଧ ସୁଲଭ ଯହିଁ ସେହିସ୍ଥାନେ ଥାଇ
ନରକ-ବ୍ୟାଧି ଚିକିତ୍ସା ଯେହୁ ନ କରଇ ।
ଔଷଧ ଦୁର୍ଲଭ ଯହିଁ, ସେ ସ୍ଥାନକୁ ଯାଇ
ନରକ ଭୋଗ ଛଡ଼ା ସେ କି କରି ପାରଇ ?
ବାସନାକ୍ଷୟ ବ୍ୟତୀତ ଆହେ ମହାବୁଦ୍ଧେ
ଆତ୍ମୋଦ୍ଧାର ସ୍ୱପ୍ନସମ ଜାଣ ସର୍ବ ସିଦ୍ଧେ ।
ଜାଗତିକ ବସ୍ତୁ ଯଦି ସତ ହୋଇଥାନ୍ତା
ବାସନା ବିଳାସ ଅନୁଚିତ ନ ହୁଅନ୍ତା ।
ନିତାନ୍ତ ମିଥ୍ୟା ଅଟନ୍ତି ଯେଣୁ ସେ ସକଳ
ତହିଁ ବନ୍ଧନ ରହିବ କିମ୍ପା ରଘୁବାଳ ?
କେବଳ ବିଚାରଶୀଳ ନୋହିବା କାରଣ
ଜାଗତିକ ବସ୍ତୁ ଦିଶେ ସତ୍ୟ, ମନୋରମ ।
ବିଚାର ସମ୍ପନ୍ନ ହେଲେ ସେ ସକଳ ରାମ
ଅଳୀକ ବୋଲିଣ ହୋଇଯିବେ ପ୍ରତିପନ୍ନ ।
ଚିଦାକାଶ ହିଁ ସକଳ ବସ୍ତୁର ସ୍ୱରୂପ
ସର୍ବ ଚିଦାକାଶମୟ ରଘୁକୁଳ ଦୀପ ।
ଚିଦାକାଶ ବିନା ଏହି ଯେ ବିଶ୍ୱ ବିପୁଳ
ଅନ୍ୟକିଛି ନୁହେଁ ଜାଣ ଦଶରଥ ବାଳ ।
ଚିଦାକାଶ ସ୍ୱରୂପରୁ ବିଚ୍ୟୁତ ନୋହିଣ
ବିବର୍ତ୍ତିତ ହେଉଛନ୍ତି ଯେ ସକଳ ଜାଣ
ଜଗତ ଅଟଇ ସେହି ବିବର୍ତ୍ତନ ନାମ
ଜଗତ ଓ ଚିଦାକାଶ ଏକବସ୍ତୁ ଜାଣ ।

ବାୟୁ, ତା ପ୍ରବାହ ଯଥା ଏକଇ ପଦାର୍ଥ
ଚିଦାକାଶ, ବିବର୍ତ୍ତନ, ନୁହନ୍ତି ତଫାତ ।
ହରିହର ଆଦି କରି ଯେତେ ଯୋଗୀଗଣ
ଚିଦାକାଶ ଧ୍ୟାନେ ରହିଛନ୍ତି ପ୍ରତିକ୍ଷଣ ।
କେବେହେଲେ ତହୁଁ ସେହୁ ନୁହନ୍ତି ବିଚ୍ୟୁତ
ତେଣୁ ରାମ ! ତୁମେ ସର୍ବବୋଧର ସହିତ,
ଏକତ୍ୱ ଲଭିଣ ସେହି ନିର୍ବାଣ ପଦରେ
ଆରୋହଣ କରିବାକ ଆହେ ରଘୁବୀରେ ।
କିଛି ନୁହେଁ ଏ ଦେହାତ୍ମବୋଧ ବା ଜଗତ
ଏହି ତତ୍ତ୍ୱ ତୁମ ତହିଁ ହେଉ ପ୍ରତିଭାତ ।

**ଇତିଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ପୁରୁଷ ଅନୁଭବ ବିଶ୍ୱ ବର୍ଣ୍ଣନେ ନାମ ୫୯ତମ ସର୍ଗଃ ।**



## ୬୦ତମ ସର୍ଗଃ
## ଚିଦାକାଶ ବର୍ଣ୍ଣନ

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଚିଦାକାଶ ବିଷୟରେ ଯା'କଲ ବର୍ଣ୍ଣନ
ସେ ଚିଦାକାଶ-ସ୍ୱରୂପ ବିଷୟରେ ଦେବ
ଆଉ କିଛି କହି କରି ପେଟ ପୁରାଇବ ।
କହନ୍ତି ବଶିଷ୍ଠ-ଶୁଣ ହେ ରଘୁନନ୍ଦନ
ଦୁଇପାତ୍ରେ ସଂରକ୍ଷିତ ଗୋରସ ଯେସନ
ଦୁଗ୍ଧ ହିସାବରେ ତାଙ୍କ ତହିଁ ଯଥା କିଛି
ପାର୍ଥକ୍ୟ ନଥାଏ ଜାଣ ଆହେ ରଘୁବଂଶୀ ।
ସେହିପରି ଜାଗରଣ ଆବର ସ୍ୱପନ
ଏକଇ ବସ୍ତୁ ଅଟନ୍ତି କୌଶଲ୍ୟା ନନ୍ଦନ ।
କଉଣସି ଭେଦ ନାହିଁ ସେ ଦୁହିଁଙ୍କ ମଧ୍ୟେ
ଉଭୟେ ନିର୍ମଳ ଚିଦାକାଶ ରଘୁନିଧେ ।
ସମ୍ପୂର୍ଣ୍ଣ ଭାବେ ଯା ଇଚ୍ଛା ହୋଇଛି ନିବୃତ୍ତ
ସେ ଶାନ୍ତ ପୁରୁଷ ସ୍ଥିତି ଅଟଇ ଯେମନ୍ତ,
ଚିଦାକାଶ ସ୍ଥିତି ତଥା ଜାଣିବ ଶ୍ରୀରାମ
ସଦା ଶାନ୍ତଭାବେ ସେହୁ କରେ ଅବସ୍ଥାନ ।
ନିଦ୍ରା ଆକର୍ଷଣ କଲାବେଳେ ରଘୁବୀର
ବିଷୟାରୁ ମନ ଯଥା ହୋଇଯାଏ ଦୂର,
ସ୍ୱଚ୍ଛ ସୁଖମୟ ଭାବ ଯାହା ଆସେ ମନେ
ତାହାମଧ୍ୟ ଚିଦାକାଶ ବୁଝ ରଘୁନାନେ ।
ଜୀବିତ ବ୍ୟକ୍ତି ମନନଶୂନ୍ୟ ଅବସ୍ଥାରେ
ଯେଉଁରୂପ ପ୍ରକାଶ ହୋଇ ଉଠେ ତା ଅନ୍ତରେ,
ଶରତ ଆକାଶ ସମ ଯାହା ସୁନିର୍ମଳ
ଚିଦାକାଶ ନାମେ ଖ୍ୟାତ ତାହା ରଘୁବାଳ ।
ପାଷାଣ ସଦୃଶ ଯେବେ ସଚେତନ ଜନ
ନିଶ୍ଚଳେ ନିଜ ଚୈତନ୍ୟେ କରେ ଅବସ୍ଥାନ,
ସେପରି ସ୍ୱରୂପେ ଅବସ୍ଥାନକୁ ତାହାର
ଚିଦାକାଶ ବୋଲା ଯାଇଥାଏ ରଘୁବୀର ।
ଦୃଶ୍ୟ, ଦରଶନ, ଦ୍ରଷ୍ଟା, ଏ ତ୍ରିପୁଟୀ ଜ୍ଞାନ
ଯା'ଠାରୁ ପ୍ରକାଶ ପାଇ ଯହିଁ ହୁଏ ଲୀନ,
ନିରାମୟ ଚିଦାକାଶ ନାମରେ ସେ ପୁଣ
ବିଦିତ ହୁଅଇ ଜାଣ ହେ ରଘୁନନ୍ଦନ ।
ଯାହା ବଳେ ନାନା ଦ୍ରବ୍ୟ ହୁଏ ଅନୁଭୂତ
ସେ ଅନୁଭବ ସକଳ ଯହିଁ ଅବସ୍ଥିତ,
ତାଙ୍କୁ ଚିଦାକାଶ ବୋଲି ଜାଣ ହେ ଶ୍ରୀରାମ
ଚିଦାକାଶେ ସର୍ବଭାବ ରହେ ବିଦ୍ୟମାନ ।
ଯାହାଠାରୁ ସର୍ବେ ହୋଇଛନ୍ତି ଉଦଭୂତ
ସର୍ବାକାରେ ଯେହୁ ହୋଇଥାନ୍ତି ପ୍ରକାଶିତ,
ସକଳ ବସ୍ତୁରେ ହୋଇପାରନ୍ତି ଯେ ଜଣା
ସେହି ସର୍ବମୟ ଚିଦାକାଶ ନାମେ ଗଣା ।
ସବୁରି ଅନ୍ତରେ ପୁଣି ସବୁରି ବାହାରେ
ସମଭାବେ, ସମନାମେ, ଦୀପ୍ତ ସର୍ବଠାରେ,
ସେହି ପ୍ରକାଶ ସ୍ୱରୂପ ଦେବଙ୍କୁ" ହେ ରାମ
ଚିଦାକାଶ ବୋଲାଯାଏ, ରଖ ତୁମ ମନ ।
ସୂତାରେ ଯେସନ ମାଳା ହୁଅଇ ଗ୍ରଥିତ
ଗ୍ରଥିତ ଯହିଁରେ ଏହି ସକଳ ଜଗତ,
ସକଳ ଜଗତ ପୁଣି ଯାର ଅବୟବ
ସେହି ଜାଣ ଚିଦାକାଶ ହେ ରଘୁପୁଙ୍ଗବ ।
ସୃଷ୍ଟି, ସ୍ଥିତି, ଲୟରୂପ କ୍ରିୟା ଯେଉଁଠାରେ
ସମ୍ପର୍ଣ୍ଣ ହେଉ ଅଛଇ କୌଶଲ୍ୟା କୁମରେ,
ସେ ସକଳ କ୍ରିୟା ଯାହାଠାରୁ ଉତପନ୍ନ
ପୁଣି ସେ ସକଳ କ୍ରିୟା ଯହିଁରେ ବିଲୀନ,
ଚିଦାକାଶ ବୋଲି ତାଙ୍କୁ ଜାଣିବ ଶ୍ରୀରାମ
ଚିଦାକାଶ ରୂପ ବୁଝି ଥାଆନ୍ତି ସୁଜାଣ ।

ସୁଷୁପ୍ତି ଶେଷେ ବିକ୍ଷେପ ଶକ୍ତି ଯୋଗ ବଳେ
ଯା'ଠାରୁ ଜଗଦୋଦ୍ଭବ ହୁଏ ରଘୁବୀରେ,
ବିକ୍ଷେପ ଶକ୍ତିର ତିରୋଧାନେ ପୁନର୍ବାର
ପୁଣି ସେ ଜଗତ ଯହିଁ ଲୀନ ହୁଏ ବୀର,
ଚିଦାକାଶ ବୋଲି ତାହା ଜାଣ ହେ ଶ୍ରୀରାମ
ଅମାପ, ଅକାଟ୍ୟ ତାହା ଚିନ୍ତାର ଅଗମ୍ୟ ।
"ନେତି ନେତି" ପରେ ସବୁ ହେଲେ ପରିତ୍ୟକ୍ତ
ଯାହା ରହେ ତାହା ଚିଦାକାଶ ରଘୁନାଥ ।
"ଚିଦାକାଶ ଠାରୁ ଭିନ୍ନ ଅଟେ ଏ ଜଗତ"
ବାସନା ବଶତଃ ଏହି ଭ୍ରମ ହୁଏ ଜାତ ।
ବାସନା ତେଜିଣ ତୁମେ ହେ ରଘୁକୁମର
ଯଦି ବା ବହିର୍ଜଗତ ଦରଶନ କର ।
ବିବେକରୂପତା ଲାଭ ହୋଇପାରେ ରାମ
ବାସନା-ହୀନ କର୍ମରେ କ୍ଷତି ନାହିଁ ଜାଣ ।
ଚିଦ୍‌ଘନ ସମ ମୌନୀ ହୋଇ କରି ରାମ
ପ୍ରସ୍ତର ପରି ଅଚଳ ରହ ଅନୁକ୍ଷଣ ।
ଦୃଶ୍ୟମାନ ଯାହାକିଛି ହୁଏ ରଘୁବୀର
ସେ ସବୁ ବ୍ରହ୍ମ ବିବର୍ତ୍ତ ଏ ସିଦ୍ଧାନ୍ତ ସ୍ଥିର ।
ଅବିକଳ ଭାବେ ତହିଁ ରହିଛନ୍ତି ବ୍ରହ୍ମ
ତଥାପି ଦୃଶ୍ୟ ଜଗତ ଅସତ୍ୟ ହେ ରାମ ।
ଭ୍ରମବଶେ ବ୍ରହ୍ମଠାରେ ସେ ଦୃଶ୍ୟ ଜଗତ
ପ୍ରତିଭାତ ହୋଇଅଛି ଜାଣ ରଘୁନାଥ ।
କହନ୍ତି ଶ୍ରୀରାମ ଦେବ ଯଦି ଏହା ହେବ
କାର୍ଯ୍ୟ କାରଣର ଭେଦ କିପରି ରହିବ ?
ବଶିଷ୍ଠ ବୋଲନ୍ତି ଏବେ ଶୁଣ ରଘୁବୀର
ବାସନାନୁସାରେ ଆତ୍ମସ୍ୱରୂପ ଈଶ୍ୱର,
ସତ୍ୟ ସଂକଳପ ଯୋଗେ ଯାହା ସେ ଭାବନ୍ତି
ସେହିରୂପ ହିଁ ଦର୍ଶନ ସେ କରିଥାଆନ୍ତି ।
ଏହି ଯେ କାରଣ ଆଉ କାର୍ଯ୍ୟରୂପୀ ଭାବ
ଏକମାତ୍ର ଚିଦାକାଶ ସେ ସବୁ ରାଘବ ।
"ମୋହ" ଅଟଇ ଏହାର ନିମିତ୍ତ-କାରଣ
ସେହି ଚିଦାକାଶ ଜାଣ ଯାର ଉପାଦାନ ।
ଏ ଚିଦାକାଶକୁ ଆତ୍ମା ଯେବେ ଜାଣିପାରେ
ତାର ମୋହ ଧ୍ୱଂସ ହୁଏ ଜାଣ ରଘୁବୀରେ ।
ନିଦ୍ରିତ ଜନ ଜାଗ୍ରତ ହେଲେ ଯେଉଁପରି
ନିଦ୍ରାଜନିତ ମୋହକୁ ପରିତ୍ୟାଗ କରି ।
ଜଗଦର୍ଶନ-ନିଦ୍ରାକୁ ଆତ୍ମା ସେହିପରି
ତେଜି ଚିଦାକାଶେ ଯେବେ ଜାଗେ ଧନୁର୍ଦ୍ଧାରୀ,
ତେବେ ଯାଇଁ ସେହି ମୋହ ଅସ୍ତଯାଏ ତାର
ଏହି କଥା ମନେରଖ ଆହେ ରଘୁବୀର ।
ଈଶ୍ୱର କର୍ତ୍ତୃକ ଜୀବଭାବ କଳପିତ
ଅବିଦ୍ୟା ଶକ୍ତିରେ ଜୀବ ହୋଇଣ ମୋହିତ,
କାର୍ଯ୍ୟ, କାରଣ କଳ୍ପନା କରେ ରଘୁନାଥ
ଆତ୍ମା ଏହି କଳ୍ପନାର କର୍ତ୍ତାଟି ସନ୍ତତ ।
ଏପରି ବା ଅଛି କିଏ ଏ ବିଶ୍ୱସଂସାରେ
ପ୍ରଶ୍ନ କରିବ ଆତ୍ମାକୁ ତାର ଏ କାର୍ଯ୍ୟରେ ?
ଚିଦାକାଶେ ଏହି ସୃଷ୍ଟି ହୁଏ ପ୍ରକାଶିତ
ତତ୍ତ୍ୱ ଅନୁସନ୍ଧାନରେ ସେ ସୃଷ୍ଟି ସମସ୍ତ,
ତତକ୍ଷଣେ ବ୍ରହ୍ମରୂପେ ହୁଏ ପରିଣତ
ତତ୍ତ୍ୱ ଅଜ୍ଞାତ ରହିଲେ ଏ ଦୃଶ୍ୟ ଜଗତ,
ଭ୍ରାନ୍ତି, ମାୟା ଆଦି ନାମେ ହୁଅଇ କଥିତ
ଏହି ସତ୍ୟ ମନେ ରଖିଥିବ ରଘୁନାଥ ।
ଚିନ୍ମୟାତ୍ମା ସେହି ଚିଦ୍ ଆକାଶ ମଧ୍ୟରେ
ଏହିପରି କଳପନା ମାନ କରିଥିଲେ ।
"ମୁଁ ଅଟେ ସାଗର, ବାୟୁ, ଅଗ୍ନି, ପରବତ
ମୁହିଁ ଅଟେ ରୁଦ୍ର, ଧ୍ୱଂସକାରୀ ଏ ଜଗତ ।"
କାରଣ ବିହୀନ ଯେଣୁ ତାର ଅନୁଭବ
କୌଣସି କାର୍ଯ୍ୟ ତହିଁରୁ ନୁହଇ ସମ୍ଭବ ।
ବିଚରାଭାବେ ସ୍ୱରୂପ ଜାଣି ନ ପାରିଣ
ନିରର୍ଥକ ଜୀବଗଣ ଜଡ଼ତତ୍ତ୍ୱେ ମଗ୍ନ ।
ବିଚରବନ୍ତ ପୁରୁଷ ଅଟଇ ଯେ ଜନ
ପ୍ରତ୍ୟଗଆତ୍ମା ତାହାପାଇଁ ସୁଲଭଟି ଜାଣ ।
ତେଣୁ ତୁମେ ଆପଣାର ଭାବନା ବଳରେ
ଜଗତକୁ ଚିଦାକାଶ ବୁଝ ରଘୁବୀରେ !
ଚିଦ୍‌ଘନ ରୂପେ ତେଣୁ ରହ ବିରାଜିତ
ବଶିଷ୍ଠ ବଚନ ସତ୍ୟ ମଣ ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ଚିଦାକାଶ ବର୍ଣ୍ଣନେ**
**ନାମ ଷଷ୍ଠିତମ ସର୍ଗଃ ।**

❑

# ୬୧ତମ ସର୍ଗଃ
# ଅବିଦ୍ୟା ବର୍ଣ୍ଣନ

କହନ୍ତି ଶ୍ରୀରାମ ଏବେ ! ଅବିଦ୍ୟା ବିଷୟେ
ପୁଣି ଆଉ କିଛି ମୋତେ କହ ମୁନିରାୟେ ।
କହନ୍ତି ବଶିଷ୍ଠ ରାମ, ଯେ ଅବିଦ୍ୟାଗ୍ରସ୍ତ
ଖୋଜି ନ ପାଆନ୍ତି ଅବିଦ୍ୟାର ଆଦିଅନ୍ତ ।
କହୁଅଛି ଏ ବିଷୟେ ଏକ ଉପାଖ୍ୟାନ
ମନ ଧ୍ୟାନ ଦେଇ ତାହା ଶୁଣ ରଘୁରାଣ ।
ଚିଦାକାଶ ମଧ୍ୟେ ଅନ୍ୟ ଏକ କୋଣେ ରାମ
ଏ ଜଗତ ପରି, ଜଗତେକ ଅଛି ଜାଣ ।
ସେ ଜଗତ-ଜମ୍ବୁଦ୍ୱୀପେ ସମତଳ ସ୍ଥାନେ
ପୁର ଏକ ବିଦ୍ୟମାନ 'ତତମିତି' ନାମେ ।
ବିପଶ୍ଚିତ ନାମେ ଏକ ରାଜା ଅଛି ତହିଁ
ନିଖିଳ ଶାସ୍ତ୍ରେ ଅଭିଜ୍ଞ ଯେଣୁ ସେ ଅଟଇ ।
ଏସନ ନାମକରଣ ହୋଇଛି ତାହାର
ବିପ୍ରଠାର ଭକ୍ତି ତାର ଥାଏ ନିରନ୍ତର ।
ଅଗ୍ନିଦେବ ଉପାସକ ଅଟେ ସେ ରାଜନ
ମନ୍ତ୍ରୀଙ୍କ ମଧ୍ୟେ ପ୍ରଧାନ-ମନ୍ତ୍ରୀ ଚାରିଜଣ ।
ସୈନ୍ୟାଧ୍ୟକ୍ଷ, ସୈନ୍ୟଗଣମାନଙ୍କ ସହିତ
ରାଜ୍ୟସୀମା ସଂରକ୍ଷଣେ ସେମାନେ ନିଯୁକ୍ତ ।
ଦିନେ ରାଜା ସିଂହାସନେ ବସିଥିଲା ବେଳେ
ମନ୍ତ୍ରୀ ପାରିଷଦ ଗଣ ବେଢ଼ି ରହିଥିଲେ ।
ଏହି ସମୟେ କ୍ରମଶଃ ଚାରିଜଣ ଦୂତ
ଗୋଟିକ ପରେ ଗୋଟିଏ ଆସି ଉପସ୍ଥିତ ।
ଚତୁଃସୀମା ରକ୍ଷାକାରୀ ଚାରି ମନ୍ତ୍ରୀଙ୍କର
ମୃତ୍ୟୁ ଖବର ଦିଅନ୍ତି ଶୋକରେ ଆତୁର ।
ସୈନ୍ୟାଧ୍ୟକ୍ଷ ସହ ସୈନ୍ୟଙ୍କର ପରାଜୟ
ଖବର ବାଢ଼ି ଦିଅନ୍ତି ଦୂତ ଚତୁଷ୍ଟୟ ।
ବୋଲନ୍ତି ରାଜନ ଶୁଣ ହୋଇ ସାବଧାନ
ତୁମ ରାଜ୍ୟେ ପ୍ରବେଶିଲେ ଶତ୍ରୁଙ୍କ ସଇନ ।
ରାଜଧାନୀ ଚତୁର୍ଦ୍ଦିଗେ ହୋଇ ସମବେତ
ଆକ୍ରମଣ ପାଇଁ ଜାଣ ଅଛନ୍ତି ଉଦ୍ୟତ ।
ଯାହା କି କର୍ତ୍ତବ୍ୟ ଦେବ ତାହା ଏବେ କର
ଛାମୁଁ ଦୋଷ ନ ଘେନିବ ଦୂତମାନଙ୍କର ।
ଦୂତମୁଖୁ ଏ ସମ୍ବାଦ ଶୁଣିଣ ରାଜନ
ଅନ୍ୟାନ୍ୟ ମନ୍ତ୍ରୀମାନଙ୍କୁ ଡକାଇ ବହନ ।
ଯୁଦ୍ଧ ସଜ୍ଜା ପାଇଁ ତାଙ୍କୁ ଦେଲେକ ଆଦେଶ
ନିଜେ ଯାଇଁ ଅଗ୍ନିଦେବ ମନ୍ଦିରେ ପ୍ରବେଶ ।
ଭକ୍ତିଭରେ ଅଗ୍ନି ଦେବ ଅରଚନା ସାରି
ପ୍ରାର୍ଥନା କରନ୍ତି ତହିଁ ରାଜନ ଏପରି ।
"ହେ ଦେବ କୃଶାନ ଏବେ ମୋ ମସ୍ତକ ଘେନ
ଆହୁତି ରୂପେ ତୁମ୍ଭଙ୍କୁ କରୁଛି ପ୍ରଦାନ ।
ମୋ ପ୍ରତି ପ୍ରସନ୍ନ ଯେବେ ହୁଅନ୍ତି ଆପଣ
ଏ ଅଗ୍ନି କୁଣ୍ଡରୁ ତେବେ ହୁଅନ୍ତୁ ଉତ୍ପନ୍ନ ।
ମୋ ଶରୀର ପରି ଚାରି ଶରୀର ହେ ଦେବ
ଏ ଅଗ୍ନି କୁଣ୍ଡରୁ ଜାଣ ଉତ୍ପନ୍ନ ହୋଇବ ।
ସେହି ଚାରି ଦେହଧରି ଚାରିଦିଗ ସ୍ଥିତ
ମୋ ଶତ୍ରୁଗଣଙ୍କ ଧ୍ୱଂସ ସାଧିବି ଯେମନ୍ତ ।"
ଏହା କହି ରାଜା ତୀକ୍ଷ୍ଣ ଖଡଗ ଧରିଣ
ଅନାୟାସେ ସ୍ୱ ମସ୍ତକ କରନ୍ତେ ଛେଦନ ।
ମସ୍ତକ ପଡ଼ିଲା ଯାଇଁ ଅନଳ କୁଣ୍ଡରେ
ଦୈବବଶ ଗଣ୍ଡି ମଧ ପଡ଼ିଲା ତହିଁରେ ।
ରାଜ ଶରୀର ଆହୁତି ଭୋଜନ କରିଣ
ଅତ୍ୟନ୍ତ ସନ୍ତୁଷ୍ଟ-ହେଲେ ଦେବ ହୁତାଶନ ।
ଅଗ୍ନିସମ ତେଜୋମୟ ଚାରି ପ୍ରତିମୂର୍ତ୍ତି
ଅବିକଳ ରାଜାପରି ଧରି ଦିବ୍ୟକାନ୍ତି ।
ସେ ଅଗ୍ନି କୁଣ୍ଡ ମଧ୍ୟରୁ ହୋଇଲେ ବାହାର
ପ୍ରତ୍ୟେକଙ୍କ ବେଶଭୂଷା ଏକଇ ପ୍ରକାର ।
ଝଟକି ଉଠେ ଶରୀର ସୁବର୍ଣ୍ଣ ବର୍ମ୍ମରେ
ହାର କେଉରର ଶୋଭା କିଏ ବର୍ଣ୍ଣିପାରେ ?
ଧନୁଶର ଶୋଭାପାଏ କର ଯୁଗଳରେ
ବଳ ଝଟକି ଦିଶଇ ଅନଳ ପ୍ରକାରେ ।
ସେହି ଚାରି ମୂର୍ତ୍ତିଙ୍କର ଅସାମାନ୍ୟ ଗୁଣ
କିଏ ବା କରିପାରିବ ତାହାର କଳନ ।
ହସ୍ତୀ, ଅଶ୍ୱ ଆଦି ଯେ କୌଣସି ବାହାନରେ
ଚାରି ମୂର୍ତ୍ତି ବିଜେକରି ଯୁଦ୍ଧେ ଉଭା ହେଲେ ।
ଶତ୍ରୁ ସେହି ବାହାନଙ୍କୁ କେବେହେଁ ବିନଷ୍ଟ
କରି ନ ପାରିବେ ଜାଣ ରଘୁକୁଳ ଶ୍ରେଷ୍ଠ ।
ଚାରି ଅଶ୍ୱ ଆରୋହଣ ମୂର୍ତ୍ତି ଚତୁଷ୍ଟୟ
ମୂର୍ତ୍ତିମାନ ଚାରିବେଦ ପରି ଶୋଭାମୟ ।

ଅଗ୍ନିକୁଣ୍ଡରୁ ନିର୍ଗତ ହୋଇଲେ ଶ୍ରୀରାମ
କେଉଁ କବି କରିପାରେ ତାଙ୍କର ବର୍ଣ୍ଣନ ?
ରାଜଧାନୀ ଚାରିପଟୁ ଲହରୀ ପରାଏ ।
ମାଡ଼ି ଆସୁଥାନ୍ତି ଶତ୍ରୁସେନା ରଘୁରାଏ ।
ଗ୍ରାମ, ନଗର ସକଳ କରନ୍ତି ଲୁଣ୍ଠନ
ପ୍ରଜାଗଣ ଭୟ ପାଇ କଲେ ପଳାୟନ ।
ବିପଶ୍ଚିତ ରାଜାଙ୍କର ସଇନ ସହିତ
ଘୋର ଯୁଦ୍ଧେ ଶତ୍ରୁ ସୈନ୍ୟ ରହିଲେ ବ୍ୟାପୃତ ।
ବହୁକାଳ ସେହି ଘୋର ସଂଗ୍ରାମ ଚାଲିଲା
ବିପଶ୍ଚିତ ସୈନ୍ୟବଳ କ୍ଷୟ ପାଇଗଲା ।
ତେଣୁ ବିପଶ୍ଚିତ-ଚତୁର୍ମୂର୍ତ୍ତି ଚତୁର୍ଦ୍ଦିଗେ
ଯୁଦ୍ଧଯାତ୍ରା ଆରମ୍ଭିଲେ ପୂଜି ଅଗ୍ନିଦେବେ ।
ରଣକ୍ଷେତ୍ରେ ପ୍ରବେଶିଣ ଦେଖନ୍ତି ଏମନ୍ତ
ଅଧିକାଂଶ ସୈନ୍ୟ ତାଙ୍କ ହୋଇଛନ୍ତି ହତ ।
ଚାରିଗୋଟି ଯମସମ ଦଣ୍ଡ ପାଶ ଧରି
ଯୁଦ୍ଧେ ପ୍ରବଶନ୍ତି ଚାରି ଦିଗକୁ ଆବୋରି ।
ଦେଖିଲେ ମରିପଡ଼ନ୍ତି ନିଜ ସେନାଗଣ
ସିନ୍ଧୁ ପରି ଶତ୍ରୁସେନା କରନ୍ତି ଗର୍ଜନ ।
ବାୟବ୍ୟ ଅସ୍ତ୍ର ପେଶନ୍ତେ ରାଜା ବିପଶ୍ଚିତ
ପ୍ରଚଣ୍ଡ ପବନ ତହୁଁ ହୁଏ ପ୍ରବାହିତ ।
ପ୍ରଳୟ ମାଡ଼ି ଆସିଲା ମଣି ଶତ୍ରୁସୈନ୍ୟ
ମଶାପରି ଯୁଦ୍ଧକ୍ଷେତ୍ରେ ଛାଡ଼ନ୍ତି ପରାଣ ।
ରଣଭଙ୍ଗ କରି ଯେହୁ ଭୟରେ ପଳାନ୍ତି
ବିପଶ୍ଚିତ ତାଙ୍କ ପଛେ ଗୋଡ଼ାଇ ପିଟନ୍ତି ।
ପଛେ ପଛେ ଧାଇଁ ରାଜା ବହୁ ଦୂର ଗଲେ
ଦୁଇପକ୍ଷ ହାନି ଦେଖି ଅସ୍ତ୍ର ତ୍ୟାଗ କଲେ ।
ପ୍ରସନ୍ନଭାବ ଧରିଲା ଆକାଶମଣ୍ଡଳ
ଦଶଦିଗେ ଖେଳିଯାଏ ଶାନ୍ତିର ଲହର ।
ଅନନ୍ତର ସେହି ଚାରି ବିପଶ୍ଚିତ ରାଜା
ମନ୍ତ୍ରୀ ଅନୁଚର ସହ ବଜାଇଣ ବାଜା ।
ସମୁଦ୍ର ତଟରେ ଯାଇଁ ଉପସ୍ଥିତ ହୋଇ
ରାଜ୍ୟ ମର୍ଯ୍ୟାଦା ଟେକିଣ ରଖିଲେକ ତହିଁ ।
ଚାରିରାଜା ଏହିପରି କରନ୍ତି ଚିନ୍ତନ
"ଅନଳ ଦେବତା ହେଲେ ଆମକୁ ପ୍ରସନ୍ନ ।
ତାଙ୍କରି ପ୍ରସାଦେ ପୁଣି ତାଙ୍କରି ବାହାନେ
ଯୁଦ୍ଧ କରି ଜୟଲାଭ କଲୁ ଆମ୍ଭେମାନେ ।
ଶତ୍ରୁମାନଙ୍କୁ କରିଣ ସମ୍ପୂର୍ଣ୍ଣ ନିର୍ମୂଳ
ଏବେ ହୋଇଲୁ ଆସିଣ ଏହିଠାରେ ଠୁଳ ।
ପ୍ରାର୍ଥନା କରିବା ପୁଣି ଦେବ ହୁତାଶନ
ଦର୍ଶନ ହେବ ଯେପରି ଦିଗ ସୀମାମାନ ।"
ଏହା ଭାବି ସର୍ବେ ଧାନ ଆସନେ ବସିଣ
ଅଗ୍ନିଦେବତାଙ୍କ ପାଦେ କରନ୍ତେ ଜଣାଣ ।
ଅନଳ ଦେବତା ତହିଁ ହୋଇ ଆବିର୍ଭୂତ
ଭକତମାନଙ୍କୁ ତହିଁ କହିଲେ ଏମନ୍ତ ।
"ଇଚ୍ଛା ଅନୁସାରେ ବର ମାଗ ପୁତ୍ରଗଣ
ଅଭିଳାଷ ତୁମ ନିଶ୍ଚେ କରିବି ପୂରଣ ।"
ବିପଶ୍ଚିତ୍ ରାଜାମାନେ କହନ୍ତି ଏସନ
"ଅନଳ ଦେବତା ଘେନ ଆମ ନିବେଦନ ।
ସ୍ଥୂଳ ଶରୀର ଆବର ମନର ଅଗମ୍ୟ
ଏପରି ସକଳ ଭଉତିକ ଦୃଶ୍ୟମାନ ।
ସେମାନଙ୍କ ଶେଷ ସୀମା କରିବୁ ଦର୍ଶନ
ଏହି ବର ଦାନ କର ଦେବ ହୁତାଶନ ।"
"ପ୍ରତ୍ୟକ୍ଷ, ଅନୁମାନାଦି ସକଳ ବିଷୟ
ଯାହାସବୁ ଶ୍ରୁତିଗମ୍ୟ ହୁଏ ମହୋଦୟ ।
ଦର୍ଶନଯୋଗ୍ୟ ହୋଇବେ ସେ ସର୍ବ ଯେପରି
ସେ ବର ଦିଅ ଅନଳ ଦେବ କୃପାକରି ।
ଯୋଗୀଜନ ଅଧିଗମ୍ୟ ଯେ ସକଳ ଭୂମି
ମନଦ୍ୱାରା ଯାହା ଦୃଶ୍ୟ ହେ ଅନଳ ସ୍ୱାମୀ ।
ଆମ ଏ ସ୍ଥୂଳ ଶରୀର ଯେପରି ହେ ଦେବ
ସେଠାକୁ ଗଗନକ୍ଷମ ହୋଇଣ ପାରିବ ।
ଏହିବର ଦେବା ହେଉ ଅନଳ ଦେବତା
ଯେପରି ଭବିଷ୍ୟତକୁ ନ ରହିବ ଚିନ୍ତା" ।
ରାଜାଙ୍କର ଏହିପରି ବଚନ ଶୁଣିଣ
ତଥାସ୍ତୁ କହି ଅନଳ ହେଲେ ଅନ୍ତର୍ଦ୍ଧ୍ୟାନ ।
ରାତ୍ରି ଯାଇ ଦିବା ଯେବେ ହୋଇଲା ପ୍ରକାଶ
ରାଜାମାନଙ୍କର ଥିଲା ଯେଉଁ ଅଭିଳାଷ ।
ସେ ସବୁ ବିଷୟମାନ ଦେଖିବା ନିମିତ୍ତ
ଉଦ୍‌ବେଗ ଜନମେ ରାମ ସେମାନଙ୍କ ଚିତ୍ତ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବିପଶ୍ଚିତ୍ ଗଳ୍ପ ବର୍ଣ୍ଣନେ ନାମ ୬୧ତମ ସର୍ଗଃ ।**

❑

## ୬୨ତମ ସର୍ଗଃ

## ବିପଶ୍ଚିତଙ୍କର ସମ୍ବିଦାକାଶରୂପ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀରେ
ପ୍ରଭାତ ହୁଅନ୍ତେ ବିପଶ୍ଚିତ ନରବରେ ।
ଗୃହରେ ପ୍ରବେଶ ହୋଇ ମନ୍ତ୍ରୀଙ୍କ ସହିତ
ରାଜ୍ୟ ରକ୍ଷାପାଇଁ ସବୁ କଲେ ବନ୍ଦୋବସ୍ତ ।
ପୂରବାସୀ, ସ୍ୱଜନ ବର୍ଗଙ୍କୁ ଡକାଇଣ
ବୁଝାଇ କହନ୍ତି ତାଙ୍କୁ ଏସନ ବଚନ ।
"ଦିଗ ଦିଗନ୍ତ ଦର୍ଶନ ଲଭିବାର ଆଶେ
ସମୁଦ୍ର ଅପରକୂଳ ଦେଖିବା ମାନସେ ।
ଯାତ୍ରା ଆରମ୍ଭ କରିବୁ ଆଜଟି ମୁକର
ଅଚିରେ ଫେରି ଆସିବୁ କିଛି ନ ବିଚର ।"
ଏହା କହି ସେହି ବିପଶ୍ଚିତ ଚତୁଷ୍ଟୟ
ଯାତ୍ରା ଆରମ୍ଭ କରନ୍ତି ଭୃତ୍ୟଗଣ ସହ ।
ସମୁଦ୍ର କୂଳରେ ଯାଇଁ ହେଲେ ଉପସ୍ଥିତ
ସାଗର ଲଂଘିବେ ଭାବି ହୁଅନ୍ତି ଉଛତ ।
ଅଗ୍ନିଦେବ ବରବଳେ ତରଙ୍ଗ ଉପରେ
ଗମନ କରିବା ପାଇଁ ସକ୍ଷମ ସେ ହେଲେ ।
ତୀରେ ରହି ଭୃତ୍ୟଗଣ ଦେଖନ୍ତି ଏସନ
ତରଙ୍ଗ ପରେ ସେମାନେ କରନ୍ତି ଗମନ ।
ଯହୁଁ ଯହୁଁ ହୋଇଗଲେ ନେତ୍ର ଅଗୋଚର
ଭୃତ୍ୟଗଣ ମନଦୁଃଖେ ଫେରିଗଲେ ଘର ।
ସାଗରେ ଭ୍ରମଣକାରୀ ବିପଶ୍ଚିତ ଗଣ
ଦୃଶ୍ୟରୂପୀ ଅବିଦ୍ୟାର ଧ୍ୱଂସ ପାଇଁ ରାମ
ସମୁଦ୍ରରୁ ଦ୍ୱୀପ, ପୁଣି ପର୍ବତ କାନନ
ପୁଣି ସମୁଦ୍ରେ କରନ୍ତି ଗମନାଗମନ ।
ପରେ ସେହି ଚରିରାଜା ବିଚ୍ଛିନ୍ନ ହୋଇଣ
ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଦିଗେଣ,
ଭିନ୍ନ ଭିନ୍ନ ଦିଗକୁ ସେ କରନ୍ତି ଗମନ
ଭ୍ରମଣ ନିଶାରେ କ୍ଷୁଧାତୃଷା ନାହିଁ ଜାଣ ।
କହନ୍ତି ଶ୍ରୀରାମ କହ ଆହେ ମୁନିବର
ଏକପ୍ରାଣ ଅଟନ୍ତି ସେ ଚରି ନରବର ।
ବିଭିନ୍ନ ଇଚ୍ଛା ତାଙ୍କର ହୋଇଲା କିପରି
ବୁଝାଇ କହିବା ହେଉ ଆହେ ତପଚରୀ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଏକ ସମ୍ବିଦାକାଶ ହିଁ ଧରେ ନାନାକାର ।
ବିଭିନ୍ନ ଇଚ୍ଛା ଧରନ୍ତି ବିଭିନ୍ନ ଆକୃତି
ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ ରଘୁପତି ।
ନାନାବ୍ୟକ୍ତି ରୂପଧରେ ସ୍ୱପ୍ନ କାଳେ ଚିତ୍ତ
ତାହାଙ୍କର ରହେ ନାନା କର୍ମ, ନାନା ମତ ।
ସେହିପରି ଚରି ବିପଶ୍ଚିତ ରାଜାଙ୍କର
ବିଭିନ୍ନ ଇଚ୍ଛା ହୋଇଲା ଜାଣ ରଘୁବୀର ।
ପରମାର୍ଥିକ ଏକତ୍ୱ ସତ୍ତ୍ୱେ ରଘୁନାଥ
ବ୍ୟାବହାରିକ ନାନାତ୍ୱ ନୁହେ ଅସଙ୍ଗତ ।
ତେଣୁକରି ସେହି ଚରି ରାଜା ବିପଶ୍ଚିତ
ଯା' ଆଗେ ଯେପରି ବସ୍ତୁ ହେଲା ଉପସ୍ଥିତ
ତା ପ୍ରତି ଆକୃଷ୍ଟ ହୋଇ କରି ସେ ତେମନ୍ତ
ଗମନରତ ରହିଲେ ସେ ଦୂର ଦୂରାନ୍ତ ।
ସେ କାରଣୁ ନିଜ ନିଜ ଇଚ୍ଛା ଅନୁସାରେ
ବିଚ୍ଛିନ୍ନ ହୋଇ ରହିଲେ ଦୂର ଦୂରାନ୍ତରେ ।
ଯୋଗୀ ଯଥା ଏକସ୍ଥାନେ ରହି ଉପସ୍ଥିତ
ନାନାସ୍ଥାନେ ନାନାକର୍ମ କରେ ରଘୁନାଥ
ବିପଶ୍ଚିତ ଚରିଜଣ ଜାଣ ସେହିପରି
ନାନା ସ୍ଥାନେ ନାନା କର୍ମ କଲେ ଚପଧାରୀ ।
ପଶ୍ଚିମ, ପୂର୍ବ, ଦକ୍ଷିଣ, ଉତ୍ତରେ ସେପରି
ନାନା କ୍ରୀଡ଼ା କରିଥିଲେ ସେହି ରାଜା ଚରି ।
**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବିପଶ୍ଚିତ ଚତୁଷ୍ଟୟ ସମ୍ବିଦାକାଶ ରୂପ ବର୍ଣ୍ଣନେ ନାମ ୬୨ତମ ସର୍ଗଃ ।**



## ୬୩ତମ ସର୍ଗଃ

## ଯୋଗ ପ୍ରଭାବ

ଶ୍ରୀରାମ କହନ୍ତି ତେବେ ଆହେ ତପୋଧନ
ଏକ ସ୍ଥାନେ ଅବସ୍ଥାନ କରି ଯୋଗୀଜନ,
ନାନାସ୍ଥାନେ ନାନା କାର୍ଯ୍ୟ କରନ୍ତି କିପରି ?
ମୋର ଜ୍ଞାନବୃଦ୍ଧି ପାଇଁ କହ ତପଚରୀ ।
କହନ୍ତି ବଶିଷ୍ଠ ରାମ ଯେ ନୁହେଁ ପ୍ରବୁଦ୍ଧ
ତା ଦୃଷ୍ଟିରେ ସ୍ଥୂଳବସ୍ତୁ ରହଇ ଆବଦ୍ଧ ।

ପ୍ରବୁଦ୍ଧ ଦୃଷ୍ଟିରେ ଏକ, ମନ ଛଡ଼ା ଆନ
କୌଣସି ବସ୍ତୁ ନପଡ଼େ ତାହାଙ୍କ ନୟନ ।
ତେଣୁ ସେ ଯେ ବହୁସ୍ଥାନେ ବହୁକର୍ମ ମାନ
କରି ପାରନ୍ତି ଏଥିରେ କି ଆଶ୍ଚର୍ଯ୍ୟ ପୁଣ ?
ସବୁ ଦୃଶ୍ୟ ଯା ଦୃଷ୍ଟିରୁ ହୋଇଛି ଅନ୍ତର
ଚୈତନ୍ୟମୟ ସରବ ଦେଖେ ସେହି ନର ।
ସତ୍ତାସାମାନ୍ୟ ରୂପକ ଚିନ୍ମାତ୍ରରେ ରାମ
ସର୍ବକାଳେ ରହିଥାଏ ଯାର ଅବସ୍ଥାନ,
ନିଜମଧ୍ୟେ ଏ ଜଗତ କରେ ସେ ଦର୍ଶନ
ତାଙ୍କ ପାଇଁ ଆଶ୍ଚର୍ଯ୍ୟ ବା କିସ ରଘୁରାଣ ?
ସବୁରି ଆତ୍ମସ୍ୱରୂପ ଯେଣୁ ସେ ଶ୍ରୀରାମ
ନାନାକାରେ ହୋଇପାରେ ସେ ପ୍ରକାଶମାନ ।
ଏଥିପାଇଁ କିଏ ତାକୁ ଦେଇପାରେ ବାଧା ?
ଏକ ରହି ବହୁ ହୋଇପାରେ ସେ ସର୍ବଦା ।
ଯୋଗୋ ପୁରୁଷ ହେ ରାମ ବହୁ ହୋଇ କରି
ଯେ ସ୍ଥାନେ ଯେ କର୍ମମାନ ଥାଆନ୍ତି ଆଚରି ।
ତହିଁ ଭୂତ, ଭବିଷ୍ୟତ, ବର୍ତ୍ତମାନ କାଳ
ସ୍ଥୂଳ, ସୂକ୍ଷ୍ମ ଭୂତ ସର୍ବେ ହୋଇଯାନ୍ତି ଠୂଳ ।
ସର୍ବାତ୍ମା ଯେ ଯେଣୁ, ତାଙ୍କ ଅନ୍ତର ମଧ୍ୟରେ
ସର୍ବଦା ରହନ୍ତି ଏ ସକଳେ ରଘୁବୀରେ ।
ଦୂର ବା ନିକଟ କିମ୍ବା କଳପ ନିମେଷ
ଅତୀତ ଓ ଅନୁଦିତ ଜଗତ ଅଶେଷ,
ମାୟାସହ ଏ ସମସ୍ତ ଜାଣ ହେ ଶ୍ରୀରାମ
ସେ ସତ୍ତାସାମାନ୍ୟ ସ୍ୱରୂପକୁ କଦାଚନ,
ତ୍ୟାଗକରି ନପାରନ୍ତି ଆହେ ରଘୁନାଥ
ବିଜ୍ଞାନଘନ ସ୍ୱରୂପ ତେଣୁ ତ୍ରିଜଗତ ।
ଆକାଶ କାମନା କରି ସେ ସର୍ବାତ୍ମା ବ୍ରହ୍ମ
ଆକାଶସ୍ଥ ହୋଇଛନ୍ତି ହେ ରଘୁନନ୍ଦନ ।
ମାୟା ଅଧିଷ୍ଠିତ ହୋଇ ପୁଣି ସେହୁ ଆପେ
ଉଦିତ ହେଉଅଛନ୍ତି ଦ୍ରଷ୍ଟା-ଦୃଶ୍ୟ ରୂପେ ।
ତେଣୁ ହେ ଶ୍ରୀରାମ ସେହୁ ଅଟନ୍ତି ଚିଦାତ୍ମା
ବିଶ୍ୱଦ୍ରଷ୍ଟା, ବିଶ୍ୱବପୁ, ସବୁ ସେ ମହାତ୍ମା ।
ସେ ପାଇଁ କୌଣସି ଭାବେ ତାହାଙ୍କର ଗତି
ନିରୁଦ୍ଧ ହୋଇ ନପାରେ ଜାଗ ରଘୁପତି ।
ଏଣୁକରି ବିପଶ୍ଚିତ ଚତୁଷ୍ଟୟଙ୍କର
ଏକ ଭାବାପନ୍ନ ଚିତ୍ତ ପ୍ରଭାବୁ ତାଙ୍କର ।
ସକଳ ବିଷୟେ ସେହୁ ଲଭିଥିଲେ ସିଦ୍ଧି
ଏବେ ସବୁ ବୁଝି ପାରୁଥିବ ରଘୁନିଧି ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଯୋଗୀ ପୁରୁଷ ପ୍ରଭାବ ବର୍ଣ୍ଣନେ ନାମ ୬୩ତମ ସର୍ଗଃ**



## ୬୪ତମ ସର୍ଗଃ
## ନକ୍ଷତ୍ର ଚକ୍ର ବର୍ଣ୍ଣନ

କହନ୍ତି ଶ୍ରୀରାମ ଏବେ କହ ଭଗବାନ
ନକ୍ଷତ୍ରଗଣଙ୍କ ଗତି ହେଉଛି ଯେସନ ।
କିପରି ଭାବେ ଧରିତ୍ରୀ କରେ ଅବସ୍ଥାନ
ଲୋକାଲୋକ ପର୍ବତ ଯେ ଅଟଇ କେସନ ।
ଶିଶୁର କଳ୍ପନାମୟ କନ୍ଦୁକ ଯେପରି
ଆକାଶରେ ଅବସ୍ଥାନ କରେ ଚାପଧାରୀ ।
ଚିତ୍ରରୂପୀ ବାଳକର କଳ୍ପିତ ଧରିତ୍ରୀ
ତେସନ ଆକାଶେ ଅବସ୍ଥିତ ରଘୁପତି ।
ସଙ୍କଳ୍ପମୟ ନଗ୍ରର ଆଧାର ଯେସନ
ଦେଖାଯାଏ ନାହିଁ ଜାଣ ଆହେ ରଘୁରାଣ ।
ତେସନ ଚୈତନ୍ୟ କଳପିତ ଧରଣୀର
ଚୈତନ୍ୟ ବ୍ୟତୀତ ଅନ୍ୟ କୌଣସି ଆଧାର,
ରହିପାରେ ନାହିଁ ଜାଣ ହେ ରଘୁନନ୍ଦନ
ସବୁ ତ କଳ୍ପନାମୟ, ଅସ୍ତିତ୍ୱ ବିହୀନ ।
ଚେତନା ଶକତି ଯେତେବେଳେ ଯେ ଆକୃତି
ଅନୁଭବ କରିଥାଏ ଆହେ ରଘୁପତି ।
ଚେତନାମୟ ସେହି ସେ ସକଳ ପଦାର୍ଥ
ଚେତନାରୂପେ ପ୍ରକାଶ ପାଇ ରଘୁନାଥ,
ଚେତନା ମଧ୍ୟରେ କରିଥାଏ ଅବସ୍ଥାନ
ଅନ୍ୟ ଆଧାର ତାହାର ନାହିଁ ରଘୁରାଣ ।
ସୃଷ୍ଟିକାଳେ ସଲିଳକୁ ଯଦି ଚିନ୍ମୟାତ୍ମା
ଉର୍ଦ୍ଧ୍ୱଗାମୀ ବୋଲି ତାକୁ କଳପି ଥାଆନ୍ତା,
ଅନଳ ଶିଖାକୁ ତଥା ଅଧୋମୁଖି ବୋଲି
ପ୍ରଜ୍ୱଳନଶୀଳ କଳ୍ପି ଥାନ୍ତା ଚାପଧାରୀ,
ଜଳ ଆଉ ଅନଳର ସେହିପରି ଧର୍ମ
ହୋଇ ରହିଥାନ୍ତା ଆହେ କୌଶଲ୍ୟା ନନ୍ଦନ ।

ପୃଥିବୀ ଭ୍ରମଣ ଆଉ ଊର୍ଦ୍ଧ୍ୱାର୍ଦ୍ଧ ଗମନ
ତେଣୁ ହିଁ ଅଜ୍ଞାନୀ ଜନ ମନ ସମକ୍ଷେଣ ।
ସତ୍ୟରୂପେ ପ୍ରତିଭାତ ହୁଏ ରଘୁବୀରେ
ବାସ୍ତବରେ ସତ୍ୟ ତାହା କେଭେଁ ନୋହିପାରେ ।
ଏ ଧରିତ୍ରୀ ଲୋକାଲୋକ ପର୍ବତ ପର୍ଯ୍ୟନ୍ତ
ବ୍ୟାପି ରହିଅଛି ଜାଣ ଆହେ ରଘୁନାଥ !
ତା ପରେ ଆକାଶ ସମ ସୁବୃହତ୍ ଗର୍ତ୍ତ
ଅନ୍ଧକାରେ ସଦା ରହିଅଛି ପରିବ୍ୟାପ୍ତ ।
ଲୋକାଲୋକ ଶୃଙ୍ଗ ଦ୍ୱୟ ମଧ୍ୟବର୍ତ୍ତୀ ସ୍ଥାନ
ଆଲୋକରେ ଉଦ୍ଭାସିତ ଜାଣ ରଘୁନାନ୍ଥ ।
ଅତିଶୟ ଭୟଙ୍କର ଅଟେ ସେ ପର୍ବତ
ଯେହେତୁ ଏକାଂଶ ତାର ଅନ୍ଧକାରାବୃତ ।
ଆବର ଅପର ଅଂଶ ଯେଣୁ ଆଲୋକିତ
ଲୋକାଲୋକ ନାମେ ତେଣୁ ହୋଇଛି ବିଖ୍ୟାତ ।
ସେ ପର୍ବତ ପରପାରେ ଯେ ମହାଆକାଶ
ନକ୍ଷତ୍ର-ଚକ୍ର ଭ୍ରମଇ ତାର ଦଶଦିଶ ।
ସେ ଚକ୍ରର ଊର୍ଦ୍ଧ୍ୱଦେଶେ ଏକଇ ମାତର
ଧ୍ରୁବ ନକ୍ଷତ୍ରଟି ମାତ୍ର ସଦା ରହେ ସ୍ଥିର ।
ତାହା ଛଡ଼ା ରହିଛନ୍ତି ତହିଁ ଯେ ନକ୍ଷତ୍ର
ଭୂଲୋକଙ୍କୁ ପ୍ରଦକ୍ଷିଣ କରନ୍ତି ନିୟତ ।
ନକ୍ଷତ୍ର ମାଳାର ଭୂଲୋକରେ ଏହି ଗତି
ଚିତ୍ କଳପନ ତାହା ମଧ୍ୟ ରଘୁପତି ।
ଯେତିକି ବିସ୍ତାର ଏହି ନକ୍ଷତ୍ର ମଣ୍ଡଳ
ତାର ଦୁଇଗୁଣ ଦୂରେ ଜାଣ ରଘୁବୀର ।
ଅନ୍ୟାନ୍ୟ ଆକାଶ ସହ ନକ୍ଷତ୍ର ମଣ୍ଡଳ
ବିସ୍ତାରିତ ରହିଛନ୍ତି ଅନ୍ତ ନାହିଁ ତାର ।
ସତ୍ୟ ସଙ୍କଳ୍ପ ବ୍ରହ୍ମଙ୍କ ଜଗତ କଳ୍ପନା
ଆଦି, ଅନ୍ତ କିଏ ତାର କରିବ କଳନା ?
ପରମାର୍ଥତଃ ଏ ସବୁ ଆକାଶ ବ୍ୟତୀତ୍
ଅନ୍ୟ କିଛି ନୁହେଁ ଜାଣିରଖ ରଘୁନାଥ୍ ।
ଏକମାତ୍ର ଚିଦାକାଶ ଜାଣ ରଘୁନାଥ
ସୂର୍ଯ୍ୟ, ନକ୍ଷତ୍ରାଦି ରୂପେ ହୋଇ ପ୍ରକାଶିତ,
ଜ୍ୟୋତିଷ୍ଚକ୍ର ଆକାରରେ କରେ ଅବସ୍ଥାନ
ତହିଁ ଊର୍ଦ୍ଧ୍ୱ, ଅଧଃ ଅବା ପୁରୁବ ପଶ୍ଚିମ,
ନାହିଁତ ଉତ୍ତର ଦିଗ ନଥାଇ ଦକ୍ଷିଣ,
କିଛି ହେଲେ ନାହିଁ ତହିଁ ଜାଣ ହେ ଶ୍ରୀରାମ ।
ସର୍ବେ ଊର୍ଦ୍ଧ୍ୱେ, ସର୍ବେ ଅଧେଃ, ସରବେ ପଶ୍ଚିମେ
ଅଥବା ସରବେ ପୂର୍ବେ ଛନ୍ତି ବିଦ୍ୟମାନେ ।
ଏପରି ଭାବରେ ତାହାଙ୍କର ଅବସ୍ଥାନ
ରହିଛି ବୋଲି କହିଲେ ହାନୀ ନାହିଁ ଜାଣ ।
ଏ ସମସ୍ତଙ୍କର ଯେଉଁ ଗମନାଗମନ
ପ୍ରତ୍ୟଗାତ୍ମାର ସ୍ଫୁରଣ ସବୁ ବୋଲି ଜାଣ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ନକ୍ଷତ୍ରଚକ୍ର ବର୍ଣ୍ଣନେ ନାମ ୬୪ତମ ସର୍ଗଃ**



## ୬୫ତମ ସର୍ଗଃ
## ବ୍ରହ୍ମାଣ୍ଡ ଦୃଶ୍ୟ ଅନୁଭବ କ୍ରମ

କହନ୍ତି ବଶିଷ୍ଠ ପୁଣି ଶୁଣ ହେ ଶ୍ରୀରାମ
ଲୋକାଲୋକ ଜ୍ୟୋତିଷ୍ଚକ୍ର ଆଦିଙ୍କ ସଂସ୍ଥାନ ।
ପ୍ରତ୍ୟକ୍ଷରେ ତାଙ୍କୁ ଦେଖିଛନ୍ତି ଯୋଗୀଗଣ
ଏ ସବୁ ନୁହଇ ତାଙ୍କ ଅନୁମାନ ଜାଣ ।
ଆଧିଭୌତିକ ଦେହକୁ ନୁହଇ ପ୍ରତ୍ୟକ୍ଷ
ଆତିବାହିକ ଶରୀର କରିପାରେ ଲକ୍ଷ୍ୟ ।
କୋଟି କୋଟି ବ୍ରହ୍ମାଣ୍ଡ ଯେ ବ୍ରହ୍ମ ଆକାଶରେ
ବିରାଜମାନ ଅଛନ୍ତି ଜାଣ ରଘୁବୀରେ ।
ପ୍ରତି ବ୍ରହ୍ମାଣ୍ଡ ଦକ୍ଷିଣ ଦିଗରେ ହେ ରାମ
ଲୋକାଲୋକ ପରବତ ଅଛି ବିଦ୍ୟମାନ ।
ତାଙ୍କର ଉତ୍ତର ଦିଗେ ଜାଣ ସେହିପରି
ସୁମେରୁ ପର୍ବତମାନ ରାଜେ ଚାପଧାରୀ ।
ପ୍ରତି ବ୍ରହ୍ମାଣ୍ଡ ବାହାରେ ହେ ରଘୁନାୟକ
ତନ୍ମଧ୍ୟସ୍ଥ ଜଳ ଦଶଗୁଣରୁ ଅଧିକ,
ଜଳ ଆବରଣ ଏକ ରହିଅଛି ଘେରି
ଆଧାର ବିହୀନ ତାହା ଜାଣ ଚାପଧାରୀ ।
ବ୍ରହ୍ମାଣ୍ଡ କପାଟ ସ୍ୱୀୟ ଆକର୍ଷଣ ବଳେ
ସେ ଜଳରାଶିକି ଧରିଅଛି ରଘୁବୀରେ ।
ପୁଣି ଏ ଜଳରାଶିକୁ ଘେରି ରଘୁବୀର
ସେ ଜଳରାଶିର ଦଶଗୁଣ ବହଳର,
ସୁନିର୍ମଳ ତେଜପୁଞ୍ଜ ଅଛି ବିରାଜିତ
ସେ ତେଜ ବାହାରେ ତାଠୁଁ ଦଶଗୁଣାତୀତ,

ବାୟୁମଣ୍ଡଳ ଅଛଇ ଜାଣ ରଘୁଈଶ
ତାକୁ ଘେରି ତାର ଦଶଗୁଣ ଯେ ଆକାଶ ।
ଅନାଦି, ଅନନ୍ତ ବ୍ରହ୍ମାକାଶ ତତପରେ
ବିରାଜମାନ ଅଛଇ ଜାଣ ରଘୁବୀରେ ।
ନଥାଇ ଅନ୍ଧାର ତହିଁ ନଥାଇ ଆଲୋକ
ଅବ୍ୟୟ, ସେ ବ୍ରହ୍ମାକାଶ ହେ ରଘୁନାୟକ ।
"ଚିଦ୍‌ଘନ-ସ୍ୱରୂପ ଯେ ଅଟଇ ତାହାର"
କଳ୍ପନା ଅତୀତ ବ୍ରହ୍ମାକାଶ ରଘୁବୀର ।
କେତେ ଯେ ବ୍ରହ୍ମାଣ୍ଡ ସେହି ବ୍ରହ୍ମାକାଶ ମଧେ
ପୁନଃ ପୁନଃ ଜନମନ୍ତି ଆହେ ରଘୁନିଧେ ।
ପୁଣି ତା ମଧ୍ୟେ କିପରି ହୁଅନ୍ତି ବିଲୀନ
ଇୟତ୍ତା ତା ଅସମ୍ଭବ ହେ ରଘୁନନ୍ଦନ ।
ବାସ୍ତବରେ ତହିଁ କିଛି ନୁହଇ ଉତ୍ପନ୍ନ
ଆବର କିଛି ତ ପୁଣି ନୁହଇ ବିଲୀନ ।
ବ୍ରହ୍ମହିଁ ନିଜକୁ ସେହି ସେହି ଆକାରରେ
ଅନୁଭବ କରୁଥାନ୍ତି ମାତ୍ର ରଘୁବୀରେ ।
ତୁମର ନିକଟେ ଦୃଶ୍ୟ ଅନୁଭବ କ୍ରମ
ଠିକେ ଠିକେ କହିଗଲି ମନେ ରଖ ରାମ ।
ଲୋକାଲୋକ ପର୍ବତରେ ବିପଶ୍ଚିତଙ୍କର
ଯେ ଅବସ୍ଥା ଘଟିଥିଲା ଶୁଣ ରଘୁବୀର ।
ଲୋକାଲୋକ ପର୍ବତର ଶିଖର ଦେଶରୁ
ଦିଗନ୍ତଦର୍ଶନ ଇଚ୍ଛା ପୂର୍ଣ୍ଣ କରୁ କରୁ ।
ରାଜା ବିପଶ୍ଚିତ ସେହି ଅନ୍ଧକାର ଗର୍ତ୍ତେ
ନିପତୀତ ହୋଇଥିଲେ ରାମ ଦଇବାତେ ।
ପ୍ରକାଣ୍ଡ ପକ୍ଷୀଏ କାହୁଁ ଅକସ୍ମାତେ ଆସି
ସେ ବିପଶ୍ଚିତ ରାଜାକୁ ଦେଇଥିଲା ଗ୍ରାସୀ ।
ପରେ ରାଜା ମନୋମୟ ଦେହକୁ ଧରିଣ
ଦିଗନ୍ତ ଦର୍ଶନ ପାଇଁ କରନ୍ତି ଉଦ୍ୟମ ।
ଶ୍ରୀରାମ କହନ୍ତି ଦେବ କୁହ ବୁଝାଇଣ
ଶରୀର ବିହୀନ ମନ ବିଚରେ କେସନ ।
ତା ପୂର୍ବ ଶରୀରଠାରୁ ଆହେ ଗୁରୁଦେବ
ଆତିବାହିକ ଦେହର ପ୍ରଭେଦ କହିବ ।
ବଶିଷ୍ଠ କହନ୍ତି ଅନ୍ତଃପୁରବାସୀ ମନ
ସଙ୍କଳ୍ପ ପଥରେ ଯଥା କରେ ବିଚରଣ ।
ବିପଶ୍ଚିତ ରାଜାଙ୍କର ମନ ସେହିପରି
ତାଙ୍କ ସଙ୍କଳ୍ପ ପଥରେ ବିଚରଣ କରି ।

ମନୋମୟ-ବାକ୍ୟ ମଧ୍ୟେ, ସ୍ୱପ୍ନ ଅବସ୍ଥାରେ
ଆବର ଅନ୍ୟ କା' କଥା ଶୁଣିବାର ପରେ,
ଯେ ରୂପ ଗତି ମନର ହୁଏ ରଘୁନାଥ
ବିପଶ୍ଚିତ ମନ ଗତି ଥିଲା ତଦବତ ।
**ଆତିବାହିକ ଶରୀର ମଧ୍ୟରେ ହିଁ ରାମ**
**ଭ୍ରମ ଜନମିଣ ଘଟେ ସ୍ୱପ୍ନ ଦରଶନ ।**
ଆଧି ଭଉତିକ ବୁଦ୍ଧି ହୁଅନ୍ତେ ଉଦିତ
ଆତିବାହିକ ଭାବନା ହୁଅଇ ବିସ୍ମୃତ ।
ଆଧିଭଉତିକ ଭ୍ରମ, ବିଚାର ବଳରେ
ବିନାଶ ହୁଅଇ ଯେବେ ଜାଣ ରଘୁବୀରେ ।
ଆତିବାହିକ ଭାବ ହିଁ ରହିଯାଏ ଶେଷ
ପୁଣି ଉତ୍ତମ ବିଚାର ଦ୍ୱାରା ରଘୁଈଶ ।
ଚିନ୍ମୟାତ୍ମା ସେହି କାଳେ ହୁଅନ୍ତି ଉଦିତ
ଜୀବଙ୍କ ଲକ୍ଷ ସେ କାଳେ ପୂର୍ଣ୍ଣ ରଘୁନାଥ,
ଆତିବାହିକ ଶରୀର ଧରି ସେ ରାଜନ
କରିବାକୁ ପଡ଼ିଥିଲା ଦିଗନ୍ତ ଭ୍ରମଣ ।
ଏବେ ସୁଦ୍ଧା ତା ଭ୍ରମଣ ହୋଇନାହିଁ ଶେଷ
କେ କହି ପାରିବ କେବେ ହେବ ରଘୁଈଶ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ବ୍ରହ୍ମାଣ୍ଡ ଅନୁଭବ-କ୍ରମ**
**ବର୍ଣ୍ଣନେ ବିପଶ୍ଚିତ ଉପଖ୍ୟାନୋ**
**ନାମ ୬୫ତମ ସର୍ଗଃ**



## ୬୬ତମ ସର୍ଗଃ
## ବିପଶ୍ଚିତ ଭ୍ରମଣ ବୃତ୍ତାନ୍ତ

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିବରେ
ଯେଉଁ ଦୁଇ ବିପଶ୍ଚିତ ଚନ୍ଦ୍ରଲୋକେ ଗଲେ ।
ତହୁଁ ଶାଲ୍ମଳୀ ଦ୍ୱୀପକୁ କଲେକ ଗମନ
କି ଘଟିଲା ତାହାଙ୍କର କହନ୍ତୁ ଆପଣ ।
ବଶିଷ୍ଠ କହନ୍ତି ତାହା ଶୁଣ ରଘୁବୀରେ
ଏକ ବିପଶ୍ଚିତ ତାର ବାସନା ବଶରେ ।
ଭ୍ରମଣ କରିଣ ସେହୁ ଚଳେ ନିରନ୍ତରେ
ଆତ୍ମ ଦରଶନ ପ୍ରାପ୍ତ ନୋହିଛି ତାହାରେ ।
ବ୍ରହ୍ମାଣ୍ଡରେ ଆବରଣ ଭେଦ କରି ଯାଇ
ପରମ ଆକାଶେ ସେହୁ ପ୍ରବେଶ ହୁଅଇ ।

ଏବେ ମଧ୍ୟ ତହିଁ କରେ ସଂସାର-ଦର୍ଶନ
ଅନନ୍ତ ଅଟଇ ଯାର ପରିସୀମା ରାମ ।
ଅନ୍ୟ ବିପଶ୍ଚିତ ଚନ୍ଦ୍ର ଲୋକକୁ ଯାଇଣ
ମୃଗସଙ୍ଗ ବଶେ ଲାଭକଲା ମୃଗଜନ୍ମ ।
ପରେ ସେହି ମୃଗ ଏକ ପର୍ବତ ଉପରେ
ଅବସ୍ଥାନ କରିଲାକ ଜାଣ ରଘୁବୀରେ ।
ଶ୍ରୀରାମ କହନ୍ତି ଶୁଣ ଆହେ ମୁନିବର
ଏକଇ ବାସନା ଥିଲା ଚାରିଜଣଙ୍କର ।
ଅଲଗା ଅଲଗା ଫଳ ଲଭିଲେ ସେ କିମ୍ପା
ସନ୍ଦେହ ଆସେ ମୋ ମନେ କୁହ କରି କୃପା ।
ବଶିଷ୍ଠ କହନ୍ତି ରାମ ପ୍ରାଣୀଙ୍କ ବାସନା
ଦେଶ, କାଳ, କ୍ରିୟା ବଳେ ଭିନ୍ନ ହୁଏ ସିନା ।
ଯେତେବେଳେ ଏ ପାର୍ଥକ୍ୟ ଲଭଇ ଦୃଢ଼ତା
କେବେହେଁ ନହୁଏ ତାର ପ୍ରଭାବ ଅନ୍ୟଥା ।
ତେଣୁ କରି ସେହି ଚାରି ରାଜା ବିପଶ୍ଚିତ
ଚତୁର୍ବିଧ ଫଳ ଲଭିଥିଲେ ରଘୁନାଥ ।
ତାଙ୍କ ମଧ୍ୟୁ ଜଣେ ମାତ୍ର ଲଭିଅଛି ମୁକ୍ତି
ଅବିଦ୍ୟାରୁ ଦୁଇଜଣ ଭ୍ରମଣ କରନ୍ତି ।
ଚତୁର୍ଥ ଜଣକ ଲଭିଅଛି ମୃଗଜନ୍ମ
ଚାରିଜଣ ଏହି ରୂପେ ଲଭିଲେ ସଂସ୍ଥାନ ।
ପଶ୍ଚିମ ଦିଗକୁ ଯେହୁ କଲାକ ପ୍ରସ୍ଥାନ
ଶମ, ଦମ ଆଦି ଗୁଣ ବଳେ ହେ ଶ୍ରୀରାମ ।
ଜୀବନ୍ ମୁକତ ହୁଏ ସେହି ନରବରେ
ଭ୍ରାନ୍ତି ହୀନ ହୋଇବାରୁ ପଉରଷବଳେ ।
ଭ୍ରାନ୍ତି ବୁଦ୍ଧି ହେତୁ ଅନ୍ୟ ତିନିଜଣ ରାମ
ଅବିଦ୍ୟା କବଳୁ ମୁକ୍ତ ନ ହୋଇଲେ ଜାଣ ।
ବ୍ରହ୍ମସମ ସେ ଅବିଦ୍ୟା ଅଟଇ ଅନନ୍ତ
ବ୍ରହ୍ମଶକ୍ତିଠାରୁ ଯେଣୁ ନୁହେଁ ସେ ସ୍ୱତନ୍ତ୍ର ।
ସେ ଶକ୍ତି ବ୍ରହ୍ମଙ୍କୁ ଚିହ୍ନି ନ ପାରଇ ଯେବେ
ଅବିଦ୍ୟା ରୂପେ ସେ ଶକ୍ତି ପ୍ରକାଶଇ ତେବେ ।
କିନ୍ତୁ ସେ ପୁରୁଷ ଯେବେ ବ୍ରହ୍ମ ଚିହ୍ନିପାରେ
ପର୍ଯ୍ୟବସିତ ହୁଅଇ ବ୍ରହ୍ମ ଆକାରରେ ।
ଶ୍ରୀରାମ ବୋଲନ୍ତି ଯେଉଁ ରାଜା ବିପଶ୍ଚିତ
ମୃଗଜନ୍ମ ଲାଭକରି ରହଇ ଅନ୍ୟତ୍ର ।
ତାର ସେ ଜଗତ ଦେବ ଅଛି କେଉଁଠାରେ
ଦୟାକରି କହ ମୋତେ ଆହେ ମୁନିବରେ ।
କହନ୍ତି ବଶିଷ୍ଠ ଶୁଣ ତାହା ରଘୁନାଥ
ମୃଗଜନ୍ମ ଲଭିଅଛି ସେହି ଏ ଜଗତ ।
କିଛିଦିନ ପୂର୍ବେ ରାମ ତ୍ରିଗର୍ତ୍ତ ରାଜନ
ତୁମ୍ଭଙ୍କୁ ଦେଲେ ଯେ ମୃଗ ଉପଢ଼ଉକନ ।
ଏବେ ମଧ୍ୟ ଅଟେ ଯେହୁ ତୁମ କ୍ରୀଡ଼ାମୃଗ
ସେହି ଏ ଚତୁର୍ଥ ବିପଶ୍ଚିତ ମହାଭାଗ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଭ୍ରମଣ ଉପାଖ୍ୟାନ ବର୍ଣ୍ଣନେ ନାମ ୬୬ତମ ସର୍ଗଃ**



## ୬୭ତମ ସର୍ଗଃ
## ବିପଶ୍ଚିତ ପୂର୍ବ ଶରୀର ପ୍ରାପ୍ତି

ଶୁଣି ବଶିଷ୍ଠ ମୁନିଙ୍କ ଏସନ ବଚନ
କୌତୁହଳ ଆଲୋଡ଼ିଲା ଶ୍ରୀରାମଙ୍କ ମନ ।
ସଭାସ୍ଥଳକୁ ସେ ମୃଗ ଆଣିବା ନିମିତ୍ତ
ଅନୁଚରଙ୍କୁ ପ୍ରେରଣ କଲେ ରଘୁନାଥ ।
କାନ୍ତିବାନ, ହୃଷ୍ଟପୁଷ୍ଟ ମୃଗ-ବିପଶ୍ଚିତ
ସଭା ସ୍ଥଳକୁ ଆନୀତ ହୋଇଲା ତ୍ୱରିତ ।
ତାକୁ ଦେଖି ସଭ୍ୟମାନେ କରନ୍ତି ଚିତ୍କାର
ଆହା ! କି ଅନନ୍ତ ଶକ୍ତି ଅଟଇ ମାୟାର ।
ବଶିଷ୍ଠ ମୁନିଙ୍କୁ ରାମ ପୁଚ୍ଛନ୍ତି ଏମନ୍ତ
"ଏ ମୃଗର ଦୁଃଖ ମୁନି କଟିବ କେମନ୍ତ" ?
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁଶିଷ୍ୟ
ଯେବଣ ଦେବତା ଅଟେ ଯାହାର ଉପାସ୍ୟ,
ସେହି ଦେବତା ବ୍ୟତୀତ ଅନ୍ୟ କେହି ଜାଣ
କରି ନ ପାରନ୍ତି ତା'ର ମଙ୍ଗଳ ସାଧନ ।
କରିଲେ ହେଁ ତାହା ନ ହୁଅଇ ଶୋଭାପ୍ରଦ
ପରିଣାମ ତାର ଯେଣୁ ଦିଅଇ ପ୍ରମାଦ ।
ବିପଶ୍ଚିତ ରାଜା ହେଲେ ଅଗ୍ନି ଉପାସକ
ଅଗ୍ନିରେ ହିଁ ପ୍ରବେଶିଲେ ଏ ମୃଗଶାବକ ।
ପୂର୍ବର ଆକୃତି ତର ସେ ଲଭିପାରିବ -
ସେ ବ୍ୟବସ୍ଥା ଏବେ କରୁଅଛି ହେ ରାଘବ ।
ଏସନ ବଚନ କହି ବ୍ରହ୍ମାଙ୍କ କୁମରେ
ଆଚମନ ଶେଷ କରି କମଣ୍ଡଳୁ ଜଳେ ।

ଅଗ୍ନିଦେବଙ୍କ ଧ୍ୟାନରେ ହୁଅନ୍ତି ନିମଗ୍ନ
ସଭାମଧ୍ୟେ ଅଗ୍ନିଦେବ ହେଲେ ବିଦ୍ୟମାନ ।
ସୁବର୍ଣ୍ଣ ମନ୍ଦିର ସମ ଦିଶେ କଳେବର
ଶିଖାହୀନ ପ୍ରଦୀପ କି ଜଳେ ସମ୍ମୁଖର ।
ନ ଥାଇ ଇନ୍ଧନ ତହିଁ ନ ଦିଶଇ ଧୂମ
ସମୁଜ୍ଜ୍ୱଳ ଅଙ୍ଗ ତାଙ୍କ ଉତ୍ତାପ ବିହୀନ ।
ଅଗ୍ନି ଅଭ୍ୟୁଦୟ ଦେଖି ସଭାସଦଗଣ
ଦୂର ଯାଇଁ ଉଭାହେଲେ କରକୁ ଯୋଡ଼ିଣ ।
ଅଗ୍ନିଦେବ ଦେଖି ମୃଗ ହୋଇ ଆନନ୍ଦିତ
ତାଙ୍କ ମଧ୍ୟେ ପ୍ରବେଶିବା ପାଇଁ ଅସ୍ତବ୍ୟସ୍ତ ।
କ୍ରମେ ତହୁଁ ଜ୍ୱାଳାମାନ ଅଗ୍ନିଦେବ ପାଶେ
ଉପସ୍ଥିତ ହେଲା ଯାଇ ମନର ହରଷେ ।
ଅଗ୍ନିଦେବଙ୍କୁ ବଶିଷ୍ଠ କରନ୍ତି ବନ୍ଦନ
"ଶୁଣିବା ହୁଅନ୍ତୁ ଦେବ ହେ ହବ୍ୟବାହନ !
ଆପଣଙ୍କ ପଦେ ମୃଗ ପୂର୍ବତନ ଭକ୍ତି
ସ୍ମରଣ କରିଣ ତାକୁ ଦିଅନ୍ତୁ ମୁକତି ।
ବିପଶ୍ଚିତ ରୂପ ତାକୁ ହେଉ ପରାପତ
ଘେନାକର ଏ ମିନତୀ ଆହେ ବିତିହୋତ୍ର ।"
ଶୁଣୁ ନ ଶୁଣୁ ମୁନିଙ୍କ ଏସନ ବଚନ
ତୀରପରି ଛୁଟିଯାଏ ସେ ମୃଗନନ୍ଦନ ।
ମୁହୂର୍ତ୍ତକ ମଧ୍ୟେ ଯାଏ ଅଗ୍ନିରେ ପ୍ରବେଶ
ପଲକ ମାତ୍ରକେ ନରରୂପ ପରକାଶ ।
ସଭାସଦଗଣ ତହିଁ ଏମନ୍ତ ଦେଖନ୍ତି
ଅଗ୍ନିମଧ୍ୟେ ସୂର୍ଯ୍ୟସମ ଜ୍ୟୋତିର୍ମୟ କାନ୍ତି ।
ସୁଢ଼ଳ ପୁରୁଷ ଏକ ବସିଅଛି ତହିଁ
ଗୋଟିଏ ଚାଉଳେ ଗଢ଼ା କଳେବର ବହି ।
ଏହାଦେଖି ଆଚମ୍ଭିତେ ସଭାସଦଗଣ
"ଅହୋଭା" ଉଚ୍ଚାରି ସର୍ବେକ୍ଷଣେ ହେଲେ ମୌନ ।
ସେହି ମୁହୂର୍ତ୍ତରୁ ଜାଣ ସେ ମହାପୁରୁଷ
'ଭାସ' ନାମ ଧରି ହେଲେ ଜଗତେ ପ୍ରକାଶ ।
ଅଗ୍ନିଦେବ ତହୁଁ ହୋଇଯାନ୍ତେ ଅନ୍ତର୍ହିତ
ସେ ପୁରୁଷ ବଶିଷ୍ଠଙ୍କ ପାଶେ ଉପନୀତ ।
ଆହେ ପ୍ରାଣପଦ ବ୍ରହ୍ମନ୍, ଆହେ ଜ୍ଞାନ ଅର୍କ
ନମସ୍କାର ତବ ପଦେ, ମୋତେ ଏବେ ରଖ ।
ଶିରେ କର ଦେଇ କହେ ବଶିଷ୍ଠ ମହର୍ଷି
ଅବିଦ୍ୟା ତୁମର ନାଶ ହେଉ ହେ ରାଜର୍ଷି ।
ଜୟସ୍ତୁ ବୋଲିଣ ଭାସ ରାମ ପାଶେ ଯାଇ
ନତମସ୍ତକରେ ତାଙ୍କୁ ପ୍ରଣିପାତ ହୋଇ ।
ଦଶରଥ ରାଜା 'ଭାସେ' କହନ୍ତି ଏସନ
ସବୁ ଚିନ୍ତା ଦୂର କରି କରନ୍ତୁ ବିଶ୍ରାମ ।
ବିଶ୍ୱାମିତ୍ରାଦି ମୁନିଙ୍କୁ କରି ନମସ୍କାର
ଆସନରେ ଉପବିଷ୍ଟ ହେଲ ନରବର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବିପଶ୍ଚିତ ପୂର୍ବ ଶରୀର ପ୍ରାପ୍ତି ବର୍ଣ୍ଣନେ ନାମ ୬୭ତମ ସର୍ଗଃ**



## ୬୮ତମ ସର୍ଗଃ
## ବିପଶ୍ଚିତ ଭ୍ରମଣ ବୃତ୍ତାନ୍ତ

ମୁନି ବିଶ୍ୱାମିତ୍ର ଆଗେ ରାଜା ଦଶରଥ
ଏହି ବିଷୟେ ଦିଅନ୍ତି ସ୍ୱୀୟ ମତାମତ ।
"ଏ ବିପଶ୍ଚିତ ରାଜନ ଅବିଦ୍ୟା ବଳରେ
ଯେଉଁ ସବୁ କର୍ମମାନ ସମ୍ପାଦନ କଲେ,
ଅପଣ୍ଡିତୋଚିତ ତାହା, ବିଚାରେ ମୁଁ ମନେ
ଅବିଦ୍ୟାର ଖେଳ ସିନା ଏହା ଧରାଧାମେ ।
ଅଜ୍ଞାନ ବଶରୁ ଯାହା ହୁଏ ପ୍ରତିଭାତ
ତାହାହିଁ ଦୁଃଖ କାରଣ ହୁଏ ତପୋବନ୍ତ ।
"କହୁଛନ୍ତି ବିଶ୍ୱାମିତ୍ର ଶୁଣ ଦଶରଥ
ଭବଦୀୟ ଉକ୍ତିମାନ ଅଟଇ ଯଥାର୍ଥ ।
ବଟଧାନା ଦେଶ ରାଜା କଥା ଏବେ ଶୁଣ
ତାଙ୍କର ଜନମିଥିଲେ ତିନୋଟି ନନ୍ଦନ ।
ବିପଶ୍ଚିତ ପରି ସେହି ରାଜପୁତ୍ର ଗଣ
ଜଗତର ଶେଷସୀମା ଦେଖିବା କାରଣ ।
ସଙ୍କଳ୍ପବଦ୍ଧ ହୋଇଣ ଘରୁ ବାହାରିଣ
ନିରନ୍ତର ନାନାସ୍ଥାନେ କରିଣ ଭ୍ରମଣ ।
ଜଗତର ଶେଷସୀମା ଦେଖି ନ ପାରିଲେ
ଦେଶାନ୍ତର ମାନ ମାତ୍ର ଦରଶନ କଲେ ।
ଅତଉଙ୍କ ଜନଙ୍କର ବାସନା ଏସନ
ଜନମ ହୋଇଣ ଥାଏ ଅଯୋଧ୍ୟା ରାଜନ ।"
ବିଶ୍ୱାମିତ୍ରେ ବିପଶ୍ଚିତେ କହନ୍ତି ଏସନ
ଭ୍ରମଣ ବୃତ୍ତାନ୍ତ ତବ କହ ନରରାଣ ।

କେଉଁ କେଉଁ ସ୍ଥାନେ ଭ୍ରମି କିସ ଦେଖିଥିଲ
ସ୍ମରଣ ଥିଲେ ସେ ସବୁ କହ ନରବର ।
କହୁଛନ୍ତି ବିପଶ୍ଚିତ ମହାମୁନି ଶୁଣ
ବହୁଦେଶ ବିଦେଶ ମୁଁ କଲଇଁ ଭ୍ରମଣ ।
ଅନଳ ଦେବତାଙ୍କର ବର ମୁଁ ପାଇଣ
ଅଦ୍ଭୂତ ଘଟନା କେତେ କଲି ଦରଶନ ।
ନାନା ଦେହ ଧରି ମୁହିଁ କରେ ବିଚରଣ
ଜଗତର ସୁଖ ଦୁଃଖ ଭୋଗେ ଅନୁକ୍ଷଣ ।
ବୃକ୍ଷ, ମୃଗ, କୌଞ୍ଚ, ପକ୍ଷୀ, ଶରଭ ତପସ୍ୱୀ
ବିଦ୍ୟାଧର ଆଦି ନାନା ଦେହ ଧରି ଋଷି,
ସେହି ସେହି ଶରୀରରେ ସ୍ୱାଭାବିକ ଭୋଗ
ଦୃଶ୍ୟାଦୃଶ୍ୟ ଆଦିକରି ଯାହାକି ସମ୍ଭବ,
ସେ ସକଳ ଅନୁଭୂତ ହୋଇଛି ମୋହର
ହେଜି ହେଜି କହୁଅଛି ଶୁଣ ମୁନିବର ।
ଏକବାର ବୃକ୍ଷରୂପ କରେ ମୁଁ ଧାରଣ
ସହସ୍ର ବରଷ ସେହିରୂପେ କଟାଇଣ ।
ଫୁଲ ଫଳରେ ରହିଣ ଥାଏ ସୁଶୋଭିତ
ଡାଳ ପତ୍ର ଛେଦନରେ ଭୋଗେ ବହୁକଷ୍ଟ ।
ଅନୁଭବ କରୁଥାଏ ପୀଡ଼ା ମୋ ହୃଦୟେ
ବୃକ୍ଷ ଦେହ ତେଜି ପରେ ସୁମେରୁକୁ ଯାଏ ।
ସୁବର୍ଣ୍ଣ କମଳ ରୂପ ତହିଁ ଥିଲା ମୋର
ସୁଶୋଭିତ କରୁଥିଲି ମାନସରୋବର ।
ପୁଣି ଅନ୍ୟ ଏକ ଦେଶେ ପକ୍ଷୀଜନ୍ମ ପାଇ
ଶତବର୍ଷ ପରେ ସେହି ଶରୀର ତେଜଇ ।
ତା'ପରେ ଶୃଗାଳ ଦେହ ଧରି ଜନମିଲି
କାଳେ ହାତୀ ପଦତଳେ ପ୍ରାଣତ୍ୟାଗ କଲି ।
ସୁମେରୁ ପର୍ବତେ ଯାଇ ପୁଣି ମୃଗ ହେଲି
ଦେବତା ଗନ୍ଧର୍ବ ସହ ବିହାରେ ମାତିଲି ।
ସେହି ଦେହ ତ୍ୟାଗ କରି ଦେବ ଉପବନେ
ମଞ୍ଜରୀ ରୂପକୁ ଧରି ଶୋଭିଲି ସେ ସ୍ଥାନେ ।
କିଛିକାଳ ପରେ ଦେବପତ୍ନୀ ମୁଁ ହୋଇଲି
ତାହାପରେ କିଛିକାଳ ସିଦ୍ଧ ରୂପ ନେଲି ।
ଅନ୍ୟ ଏକ ସୃଷ୍ଟିରେ ମୁଁ କରି ଅବସ୍ଥାନ
ଦେଖେ ସେଠାରେ ରହନ୍ତି ଖାଲି ନରଗଣ ।
ନାରୀ ବୋଲି ଗୋଟିଏତ ତହିଁ ଦେଖାନାହିଁ
ପୁରୁଷଠାରୁ ପୁରୁଷ ଜନମ ଲଭଇ ।

ଏପରି କୌଣସି ଦିଗ ନାହିଁ ମୁନିବର
ଯେଉଁ ସ୍ଥାନକୁ ଗମନ ନୋହିଛି ମୋହର ।
ଏପରି କୌଣସି ସ୍ଥାନ ନାହିଁ ବିଶ୍ୱବନ୍ଦ୍ୟ
ଯେଉଁଠାରେ ପଡ଼ିନାହିଁ ଏ ମୋହର ପାଦ ।
ଏପରି କୌଣସି ଦୃଶ୍ୟ ନାହିଁ ତ୍ରିଭୁବନ
ଯାହାକୁ କି ଦେଖି ନାହିଁ ଏ ମୋର ନୟନ ।
ଏକସ୍ଥାନେ ଆହେ ମୁନେ ! ଏକ ନାରୀ ମୂର୍ତ୍ତି
ଦେଖିଥିଲି ପଡ଼ିଯାଏ ଏବେ ମୋର ସ୍ମୃତି ।
ଦରପଣେ ପ୍ରତିବିମ୍ବ ଦିଶଇ ଯେମନ୍ତ
ତାର ଦେହେ ଦେଖଇ ମୁଁ ଏ ସାରାଜଗତ ।
ଦେଖିକରି ତାଙ୍କୁ ମୁହିଁ ପଚାରେ ଏମନ୍ତ
'ହେ ସୁନ୍ଦରୀ ! କିଏ ତୁମେ କହ ମୋ ଅଗ୍ରତ ।
କହନ୍ତି ସେ, ଜାଣ ଏହି ନିଖିଳ ଜଗତ
ଯାହାଙ୍କଠାରୁ ସମସ୍ତ ହୋଇଛି ଉଦିତ ।
ମୁହିଁ ସେହି ସୁ ବିଶୁଦ୍ଧ ଚିଦ୍‌ରୂପିଣୀ ଜାଣ
ନିଖିଳ ଜଗତ ମୋ ଶରୀର ବୋଲି ଘେନ ।
ଏ ଜଗତେ ନାନା ବସ୍ତୁ ଜୀବ ଦେଖେ ଯେବେ
ମୋର ଦରଶନ ସେହୁ ନ ଲଭଇ କେବେ ।
ଯେତେବେଳେ ଜାଣଇ ସେ ବସ୍ତୁର ସ୍ୱଭାବ
ତେତେବେଳେ ମୋ ଦର୍ଶନ ହୁଅଇ ସମ୍ଭବ ।
ବେଦସ୍ୱରୂପ ଅଟେ ଯେ ଅନାହତ ନାଦ
ପ୍ରାଣୀମାନେ କର୍ଣ୍ଣେ ସଦା ଶୁଣନ୍ତି ସେ ଶବ୍ଦ ।
ସେହି ସ୍ୱତଃ ସିଦ୍ଧ ନାଦ ମଧ୍ୟରୁ ଜାଣିବ
କର୍ତ୍ତବ୍ୟାକର୍ତ୍ତବ୍ୟ ଜ୍ଞାନ ହୁଅଇ ଉଦ୍ଭବ ।
ନିଖିଳ ଜଗତ, ପୁଣି ଦେହଧାରୀ ଯେତେ
ସେ ନାଦ ମଧ୍ୟେ ନିହିତ ରହନ୍ତି ସମସ୍ତେ ।
ସର୍ବ ବସ୍ତୁ ମୂଳ ଶବ୍ଦ ସତ୍ତା ଯେଉଁପରି
ଅନାହତ ନାଦ ମଧ୍ୟ ଅଟଇ ସେପରି ।
ଏହି ଜଗତ ରୂପକ ମାୟାମୟ ସ୍ୱପ୍ନ
ସଦା ମୋ ସହିତ ବାକ୍ୟାଳାପରେ ମଗନ ।
ସେହି ନାରୀ ମୂର୍ତ୍ତି ମୋତେ ଏହା କହି ଦେଇ
କେଉଁଆଡ଼େ ଚାଲିଗଲା ନ ଜାଣିଲି ମୁହିଁ ।
କେବଳ ଆକାଶମୟ ଏ ଗ୍ରାମ ନଗର
ଏହ ମଧ୍ୟ ଦେଖି ପାରିଥିଲି ମୁନିବର ।
ଏ ବୈଚିତ୍ର୍ୟମୟ ପ୍ରାଣୀଜଗତ ଆବର
ଦେବ ମାନବ ଇତ୍ୟାଦି ଯା ହୁଏ ଗୋଚର ।

ସରବେ ଜନମ ସେହି ଆକାଶରୁ ଜାଣ
ଅବଶେଷେ ସେ ଆକାଶେ ହୁଅନ୍ତି ବିଲୀନ ।
ଏକ ସମୟରେ ମୁହିଁ ମନ୍ଦର ପର୍ବତେ
ସାତବର୍ଷ କଟାଇଲି ଅପ୍‌ସରା ସହିତେ ।
ଆକାଶରେ ତାହା ସହ ଉଡ଼ି ଛଡ଼ି ମୁହିଁ
ବିହାର କରୁଣ ଥିଲି ଆହେ ତପୀସାଇଁ ।
ଅନ୍ୟ ଏକ ଜନ୍ମେ ଏକ ଉନ୍ମୁକ୍ତ ଜଗତ
ଦେଖିଥିଲି ମନେପଡ଼େ ଆହେ ବିଶ୍ୱାମିତ୍ର ।
ସୂର୍ଯ୍ୟ, ଚନ୍ଦ୍ର, ଦିବା, ରାତ୍ରି, ଦିଗ ବା ବିଦିଗ
କିଛିହିଁ ନଥିଲା ତହିଁ ଆହେ ମହାଭାଗ ।
ନଥିଲା ବେଦାଦି ଶାସ୍ତ୍ର କିଛି ସେ ଜଗତେ
ଦେବତା, ଦାନବ ଭେଦ ଯା ଅଛି ମରତେ ।
ଏ ସମସ୍ତ ଏକାକାର ସପ୍ରକାଶ ତହିଁ
ଅଗ୍ନି ଦେବଙ୍କ କୃପାରୁ ସବୁ ଦେଖିଲଇଁ ।
କିନ୍ତୁ ଏହି ଦୃଶ୍ୟ ରୂପ -ଅବିଦ୍ୟାର ଅନ୍ତ
କେବେହେଲେ ନ ପାରଇ କହେ ତପୋବନ୍ତ ।
ଏସବୁ ଦୃଶ୍ୟ ପଦାର୍ଥ ଅଟନ୍ତି ଅସତ
ଏପରି ବିଚାର ଭୁଲି ନାହିଁ କଦାଚିତ ।
ଅନନ୍ତ କାଳୁ ଅଭ୍ୟସ୍ତ ପ୍ରବଳ ସଂସ୍କାର
ନିବୃତ୍ତି ଲଭିଲା ନାହିଁ କେବେହେଁ ମୋହର ।
ତେଣୁ ସର୍ବକାଳେ ଏହି ଦେଶ, କାଳ, ଭେଦ
ଉଦୟ ହୋଇ ମୋଠାରେ, ଦିଅଇ ପ୍ରମାଦ ।
ଇସ୍ପିତ ବା ଅନିସ୍ପିତ ଜନ ସମାଗମେ
ସୁଖ ଦୁଃଖ ଭୋଗୀବାକୁ ପଡ଼େ ଯଥାକ୍ରମେ ।
ବନରାଜି ସୁଶୋଭିତ ଏକ ଶୃଙ୍ଗ କଥା
ମନେ ପଡ଼ିଯାଏ ମୋର, ମୁନି ସର୍ବଜ୍ଞାତା ।
ସୂର୍ଯ୍ୟଚନ୍ଦ୍ର ଆଦିକରି କୌଣସି ଜ୍ୟୋତିଷ୍କ
ଉଦିତ ହୁହନ୍ତି ତହିଁ ହେ ମୁନି ତିଳକ ।
ସ୍ୱୀୟ ପ୍ରଭାବଳେ ସେହି ଶୃଙ୍ଗ ଉଦ୍ଭାସିତ
ଏ ଜଗତ ତାର ସାନୁଦେଶେ ଅବସ୍ଥିତ ।
ବ୍ରହ୍ମରୂପୀ ସୁନିର୍ମଳ ମନୋରମ ସଙ୍ଗ
ଅଦ୍ୱୈତ ଆନନ୍ଦ ଢାଳେ ଅଭୟ-ତରଙ୍ଗ ।
ତତ୍ତ୍ୱଜ୍ଞାନୀ ପାଇଁ କିବା ରଖିଛି ସାଇତି
ଲୀନ ହୋଇଯିବ ତହିଁ ସେମାନଙ୍କ ସ୍ଥିତି ।

ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଉତ୍ତରଖଣ୍ଡେ ବିପଶ୍ଚିତ ରାଜା ଦୃଶ୍ୟ
ଦର୍ଶନ ବର୍ଣ୍ଣନେ ନାମ ୬୮ତମ ସର୍ଗଃ



## ୬୯ତମ ସର୍ଗଃ

## ମହାଶବ ବୃତ୍ତାନ୍ତ ଓ ରାକ୍ଷସର ମଶକଜନ୍ମ ପ୍ରାପ୍ତି

ସେ ବିପଶ୍ଚିତ ରାଜନ କହନ୍ତି ଏସନ
ଆଉ ଯା ଦେଖିଛି କହୁଅଛି ତପୋଧନ ।
ଅନ୍ୟ ଏକ ଆକାଶରେ କରେ ମୁଁ ଦର୍ଶନ
ଅପୂର୍ବ ଜଗତ ଏକ ହେ ମୁନି ରତନ ।
ସେ ଜଗତ ଅବସ୍ଥିତି ଏ ଜଗତ ପରି
ହୋଇଲେ ହେ, ତାହା ଥିଲା ମାତ୍ର ଶୂନ୍ୟପୁରୀ ।
ସେହି ଜଗତ ମଧ୍ୟସ୍ଥ କୌଣସି ଅଂଶରେ
ଛାୟା ଏକ ପଡ଼େ ଆସି ମୋ ନେତ୍ର ପଥରେ ।
କାହାର ସେ ଛାୟା ତାହା ଜାଣିବା ନିମିତ୍ତ
ଊର୍ଦ୍ଧ୍ୱଦେଶେ କରିଲଇଁ ମୁହିଁ ଦୃଷ୍ଟିପାତ ।
ପର୍ବତ ସଦୃଶ ଏକ ବୃହତ୍‌କାୟ ଶବ
ଦେଖିଲି ଖସି ପଡୁଛି ହେ ମୁନି ପୁଙ୍ଗବ ।
ସେ ଶବ ଶରୀର ଯେବେ ହେବ ନିପତିତ
ମୋ ସହିତ ସେହି ଧରା ହୋଇବ ନିପାତ ।
ଏପରି ଭୟ ଉଦୟ ହୁଅନ୍ତେ ମୋ ମନ
ଅଗ୍ନିଦେବତାଙ୍କୁ ମୁହିଁ କଲଇଁ ସ୍ମରଣ ।
ଆବିର୍ଭୂତ ହୋଇ ଅଗ୍ନି କହନ୍ତି ଏସନ
"ଭୟ ତେଜି ଅଗ୍ନିଲୋକେ ଚଳ ମୋ ସଙ୍ଗେଣ" ।
ଅଗ୍ନିବଳେ ଶବ ଶରୀରର ଏକ ଅଂଶ
ଦଗ୍‌ଧ କରି ଉଠିଗଲୁ ଆକାଶ ପ୍ରଦେଶ ।
ଏକମାତ୍ର ଅଙ୍ଗ ତାର ଜାଣ ତପୀସାଇଁ
ଏ ସାରା ପୃଥିବୀ ମଧ୍ୟେ ନ ପାରିବ ରହି ।
ଅନଳ ଦେବଙ୍କୁ ମୁହିଁ ତହୁଁ ପଚାରଇ
"ଏକି ଅଦ୍ଭୁତ ଘଟନା ଦିଅନ୍ତୁ ବୁଝାଇ ।
ଏ ବିରାଟ ଶବ ସହ ସୂର୍ଯ୍ୟାଦି ସକଳ
ଖସି ପଡୁଛନ୍ତି କିମ୍ବା ହେ ଦେବ ଅନଳ ?"
ଅଗ୍ନି ବୋଇଲେ ହେ ପୁତ୍ର ! ଏହି ବିଷୟରେ
ପରେ ମୁଁ କହିବି, ରହ ଧୈର୍ଯ୍ୟ ସହକାରେ ।

ଏହାପରେ ମୁନି, ଋଷି, ଅମର, ଦାନବ
ସମାଗତ ହୋଇ ତହିଁ କରିଲେକ ସ୍ତବ ।
"ମାଗୋ ଭଗବତୀ କାଳରାତ୍ରୀ ଏବେ ଶୁଣ
ପ୍ରଳୟରେ କର ଆମ ରକ୍ଷଣା ବେକ୍ଷଣ ।
ହେ ଚିନ୍ମୟ ଦେବି ! ଘେନ ଆମ ନିବେଦନ
ତୋ ପାଦପଦ୍ମରେ ସର୍ବେ ପଶିଲୁ ଶରଣ ।"
ସେ କାଳ ରାତ୍ରିକୁ ସ୍ତବ କରୁଥିଲା ବେଳେ
ଶବ ନିପତୀତ ହୁଏ ପୃଥିବୀ ଉପରେ ।
ଆଚ୍ଛାଦିତ ହୋଇଗଲା ସାରା ଧରାତଳ
ତାପରେ କହିଲେ ମୋତେ ସେ ଦେବ ଅନଳ ।
ଏ ଶବ ବାହୁ, ମସ୍ତକ ପୁଣି ଉରଦେଶ
ଟପିଅଛି ଲୋକାଲୋକ ଗିରି ଆରପାଶ ।
ପ୍ରାଣୀମାନଙ୍କ ଅଗମ୍ୟ ଅଟେ ସେହି ସ୍ଥାନ
ସେ ସ୍ଥାନ ଦର୍ଶନ ପାଇଁ ତେଣୁଟି ଅକ୍ଷମ ।
ଦେବଗଣ ଅମ୍ବିକାକୁ କହନ୍ତି ଏସନ
"ଏ ଶବ ତୁମକୁ ଦେବୀ କରୁଛୁ ଅର୍ପଣ ।
ଉପହାର ରୂପେ ଏହା କରନ୍ତୁ ଭକ୍ଷଣ ।"
ଦେବତାମାନଙ୍କ ଏହି ପ୍ରାର୍ଥନାକୁ ଶୁଣି
ପ୍ରାଣ ଶକ୍ତିରେ ସେ ଶବ-ରକ୍ତ ନେଲେ ଟାଣି ।
ରକ୍ତପାନ ପରେ ସେହି ଦେବୀ କୃଶୋଦରୀ
କ୍ଷଣକ ମଧ୍ୟରେ ପାଲଟିଲେ ଲମ୍ବୋଦରୀ ।
ପୀବରା ହୋଇଣ ମାତା ନୃତ୍ୟେ ହେଲେ ରତ
ପିଶାଚ, କୁଷ୍ମାଣ୍ଡ ଆଦି ମିଳିଲେ ତ୍ୱରିତ ।
ଶବ ର ଅଙ୍ଗପ୍ରତ୍ୟଙ୍ଗ କଲେକ ଭୋଜନ
ତା ଦେଖି ହରଷ ହେଲେ ସର୍ବ ଦେବଗଣ ।
ଯେଉଁ ଅଂଶ ପଡ଼ିଥିଲା ବ୍ରହ୍ମାଣ୍ଡ ବାହାରେ
କାଳ କର୍ତ୍ତୃକ କଳିତ ତାହା ହେଲା ପରେ ।
ଏହାଶୁଣି ରାମଚନ୍ଦ୍ର ସହାସ୍ୟ ବଦନ
ବିପଶ୍ଚିତ ରାଜନଙ୍କୁ ପୁଛନ୍ତି ଏସନ ।
ଯେ ଅଙ୍ଗପ୍ରତ୍ୟଙ୍ଗ ମାନ ସେ ମୃତ ଦେହର
ବ୍ରହ୍ମାଣ୍ଡ ବାହାରେ ରହିଥିଲା ନୃପବର ।
ଲୋକାଲୋକ ପର୍ବତକୁ ସେହି ଅଙ୍ଗମାନ
ଆବୃତ ନକଲା କିମ୍ବା କହ ହେ ରାଜନ ।
ବଶିଷ୍ଠ କହନ୍ତି ଶୁଣ ଆହେ ରଘୁରାଣ
ନିରାଟ ସତ୍ୟ ଏ ବିପଶ୍ଚିତଙ୍କ ବଚନ ।

ସେ ମହାଶବରେ ମଧ୍ୟଭାଗଟି ହିଁ ଜାଣ
ସପ୍ତଦ୍ୱୀପାପୃଥ୍ୱୀ କରିଥିଲା ଆଚ୍ଛାଦନ ।
ମସ୍ତକ ସହିତ ତାର ହସ୍ତ ପଦ ମାନ
ବ୍ରହ୍ମାଣ୍ଡ ବାହାରେ ପଡ଼ିଥିଲା ହେ ଶ୍ରୀରାମ ।
ତେଣୁ ତାର ପାଦ, ଉରୁ, କଟି ଦ୍ୱାରା ଜାଣ
ଲୋକାଲୋକ ଶୃଙ୍ଗ ନୋହିଥିଲା ଆଚ୍ଛାଦନ ।
ଶୃଙ୍ଗ ଉର୍ଦ୍ଧ୍ୱଭାଗ ତେଣୁ ଦେଖାଯାଉଥିଲା
ସନ୍ଦେହ ହେଲା କି ଦୂର ଦଶରଥ ବାଳା ?
ଶବ ମାଂସ ଭୂତଗଣ କରନ୍ତେ ଭୋଜନ
ଶବ ମେଦେ ଧରାପୃଷ୍ଠ ହୁଏ ଆଚ୍ଛାଦନ ।
ମେଦେ ଆଚ୍ଛାଦିତ ହେଲା ଯେଣୁ ଏ ଧରଣୀ
ସେହିଦିନୁ ନାମ ତାର ହୋଇଲା ମେଦିନୀ ।
ଏସନ ସେ ଶବ ହୋଇଯାନ୍ତେ କ୍ଷୟ ପ୍ରାପ୍ତ
ସୂର୍ଯ୍ୟାଦି ଗ୍ରହ ସ୍ୱସ୍ଥାନେ ହୋଇଲେ ସ୍ଥାପିତ ।
ପୂର୍ବପରି ମେରୁ ଆଦି ଗିରି ଦୃଶ୍ୟମାନ
ଦିବସ, ରଜନୀ ପୂର୍ବପରି ବିଦ୍ୟମାନ ।
ପରେ ପୁଣି ପ୍ରଜାପତି ପ୍ରଜା ସୃଷ୍ଟିକରି
ନୂତନ ଜଗତ ସୃଷ୍ଟି କଲେ ଧନୁର୍ଦ୍ଧାରୀ ।
ବିପଶ୍ଚିତ କହେ ଶୁଣ ଅଯୋଧ୍ୟା ରାଜନ
ଶବ ବିଷୟରେ ପୁଚ୍ଛା କଲି ହୁତାଶନ ।
ମୋ ସନ୍ଦେହ ନାଶ ପାଇଁ ଦେବ ହୁତାଶନ
ଯାହା କହିଥିଲେ ଶୁଣ ଦଶରଥ ରାଣ ।
"ବିପଶ୍ଚିତ ଶୁଣ ଏବେ ତାହାର ସନ୍ଦେଶ
ଆଦି ଅନ୍ତହୀନ ଯେଉଁ ପରମ ଆକାଶ ।
ଚିନ୍ମୟ ଅଟଇ ତାହା, ସପ୍ରକାଶମାନ
ଅସଂଖ୍ୟ ଜଗତ ତହିଁ ପରମାଣୁ ସମ ।
ସର୍ବାତ୍ମକ ସେ ଆକାଶେ କୌଣସି କାରଣେ
ସଂବେଦନମୟୀ ସଂବିତ୍ ଦୈବାତ୍ ଜନମେ ।
ସୁରାସୁର, ପ୍ରାଣୀ, ସମାକୂଳ ଏ ଜଗତ
ସେହି ସଂବିତରୁ ହୋଇଛନ୍ତି ଉଦ୍‌ଭୂତ ।
ଏକଇ ଅସୁର ତହିଁ ଦର୍ପାନ୍ଧ ହୋଇଣ
ଭସ୍ମ କରିଦିଏ ଏକ ମୁନିଙ୍କ ଆଶ୍ରମ ।
ସେ ମୁନିଙ୍କ ଅଭିଶାପ ଫଳରୁହିଁ ଜାଣ
ମଶକ ପାଲଟି ଗଲା ସେହି ଦୈତ୍ୟରାଣ ।
ଏ ସମ୍ବାଦ ଶୁଣି ପୁଚ୍ଛା କରନ୍ତି ଶ୍ରୀରାମ
ଏହା କିପରି ଘଟିବ ବ୍ରହ୍ମାଙ୍କ ନନ୍ଦନ ?

ଯୋନିରୁ ଜନମ ହୁଅନ୍ତି ସର୍ବ ପ୍ରାଣୀମାନ
ଅନ୍ୟ ଉପାୟରେ ତାଙ୍କ ଜନମ କେସନ,
ସମ୍ଭବ ହୋଇ ପାରିବ କହ ତପୋଧନ
ଅତୀବ ଆଶ୍ଚର୍ଯ୍ୟ ଏହା, ନ ଘେନେ ମୋ ମନ ।
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ଭ୍ରାନ୍ତିଜ, ବ୍ରହ୍ମଜ, ଜନ୍ମ ଏ ଦୁଇ-ପ୍ରକାର ।
ଅଜ୍ଞାନୀ ଜୀବଙ୍କ ଜନ୍ମ ଭ୍ରାନ୍ତିଜ ବୋଲାଇ
ଯୋନିଜ ବୋଲିଣ ସେମାନଙ୍କୁ କୁହାଯାଇ ।
ସୃଷ୍ଟି କାଳେ ବ୍ରହ୍ମ ଯେଉଁ ଜୀବଭାବ ଧରେ
ବ୍ରହ୍ମଜ ବୋଲି ନାମିତ ତାହା ରଘୁବୀରେ ।
କପିଳ ଆଦି ମହର୍ଷିଗଣ ଜାଣ ରାମ
ଅନୁଭବ କରିଥାନ୍ତି ବ୍ରହ୍ମଜ ଜନମ ।
ମଶକ ଆଦି ଅଜ୍ଞାନୀ ଯେତେ ପ୍ରାଣୀଗଣ ।
ଅନୁଭବ ନ କରନ୍ତି ବ୍ରହ୍ମଜ ଜନମ ।
ଭ୍ରାନ୍ତିରୁ ଉତ୍ପନ୍ନ ହୋଇଥିଲା ଏ ମଶକ
ବ୍ରହ୍ମଜ ଜନ୍ମ ନ ଜାଣେ, ହେ ରଘୁନାୟକ ।
ପରେ ସେହି ମଶା ପୁଣି ହରିଣ ଖୁରାରେ
ଆଘାତ ପାଇ ପରାଣ ତେଜିଲାକ ହେଲେ ।
ମରଣ ସମୟେ ଯେଣୁ ହରିଣ ଚିନ୍ତିଲା
ହରିଣ ଶରୀର ଧରି ପୁଣି ଜନ୍ମ ହେଲା ।
ବ୍ୟାଧଦ୍ୱାରା ହତ ହୋଇ ବ୍ୟାଧ ଜନ୍ମପାଏ
ବନେ ବୁଲି ବୁଲି ମୁନି ଆଶ୍ରମରେ ରହେ ।
"କହନ୍ତି ମୁନି ରେ ବ୍ୟାଧ ! କିମ୍ପା ପଡୁ ଭ୍ରମେ
କ୍ଷଣଭଙ୍ଗୁର ଶରୀର ପୋଷଣ କାରଣେ ।
ଧନୁଶର ଧରି ମୃଗଗଣ କରୁ ବଧ
ସୁଦୀର୍ଘ ଦୁଃଖ କଷଣ ଅର୍ଜୁଛୁ ନିର୍ବୋଧ ।
ମହାଫଳଟି ପ୍ରଦାନ କରେ ସେ ଅହିଂସା
ତାକୁ ତେଜି ବୃଥା କିମ୍ପା ଆଚରୁଛୁ ହିଂସା ?
ଜାଣ ତୁ ଅଭୟଦାନ ଶାସ୍ତ୍ରର ମହତ୍ତ୍ୱ
ପାଳନ ନକରୁ କିମ୍ପା ତାହା ଆରେ ଭୂତ ।
ଅସାର ସଂସାର ଦୃଶ୍ୟେ ଭୁଲୁଛୁ କିମ୍ପାଇଁ
କ୍ଷଣ ଭଙ୍ଗୁର ଏ ଭବ ନ ହେଜୁଛୁ ଭାଇ ।
ବିଜୁଳି ଚମକ ମେଘେ କ୍ଷଣକେ ବିଲୀନ
ସଂସାର ଭୋଗ ବିଳାସ କ୍ଷଣିକ ତେସନ ।
ପଦ୍ମପତ୍ରେ ଜଳପରି କ୍ଷଣିକ ଏ ଆୟୁ
ଟଳି ପଡ଼ିଲେ ଉଠି ତୁ ନ ପାରିବୁ ଆଉ ।
ଜଳ ସ୍ରୋତର ସମାନ ଯୌବନ ବିଳାସ
ଚଞ୍ଚଳ, ନ ବୁଝୁ କିମ୍ପା କରୁ ନିଜ ଧ୍ୱଂସ ?
ପରଲୌକିକ ଶାନ୍ତି ତୁ ପାଇବା ନିମିତ୍ତ
ସତ୍‌ସଙ୍ଗ, ଶାସ୍ତ୍ରାଧ୍ୟୟନ କରିବା ଉଚିତ ।"
ମୁନି ଉପଦେଶ ଶୁଣି ହିଂସା ଯାଏ ତାର
ବୈରାଗ୍ୟ ଉଦୟ ହୁଏ ମନରେ ତାହାର ।
ସତ୍‌ସଙ୍ଗ ପ୍ରଭାବେ ତାର ହୃଦୟେ ବିବେକ
ଉଦୟ ହୋଇଲା ଜାଣ ହେ ଜ୍ଞାନୀ ତିଳକ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ବିପଶ୍ଚିତ ଉପାଖ୍ୟାନେ ମହାଶବ ଓ ରାକ୍ଷସର ମଶକ ଜନ୍ମାଦି ବର୍ଣ୍ଣନେ ନାମ ୬୯ତମ ସର୍ଗଃ**



## ୭୦ତମ ସର୍ଗଃ
## ବିପଶ୍ଚିତ ମହାଶବ ଉତ୍ପତ୍ତି

ବିପଶ୍ଚିତ କହେ ପୁଣି ସେ ଦେବ ଅନଳ
ସେ ବ୍ୟାଧ ବିଷୟେ କହିଥିଲେ ଏ ପ୍ରକାର ।
"ମୁନି ଉପଦେଶ ସତ୍ତ୍ୱେ, ଅଭ୍ୟାସ ଅଭାବେ
ପରମ ପଦେ ବିଶ୍ରାନ୍ତି ସେ ବ୍ୟାଧ ନ ଲଭେ ।
ମନେ ଭାବୁଥାଏ ସେହୁ, ତପସିଦ୍ଧ ମୁନି
ତପବଳେ ଇତସ୍ତତଃ ତାକୁ କଲେ ଜାଣି ।
କେତେବେଳେ ଭାବେ ସେହୁ ନିଜ ତପବଳେ
ସୂକ୍ଷ୍ମ ଦେହରେ ଭ୍ରମିବ ଗଗନ ମଣ୍ଡଳେ ।
ଦୃଶ୍ୟ ଜଗତର ସୀମା ଦେଖିବ ନେତ୍ରରେ
ତା କାଳ କଟାଇ ଦେବମନ ଆହ୍ଲାଦରେ ।
ଏହା ଭାବି ବ୍ୟାଧ ସେହି ମୁନିଙ୍କ ସହିତ
ବହୁ କାଳ ତପସ୍ୟାରେ ରହିଲାକ ରତ ।
ଶୁଭକ୍ଷଣେ ବ୍ରହ୍ମା ତାହା ନିକଟେ ମିଳନ୍ତି
ତାକୁ ବର ଦେଇ ପୁଣି ବାହୁଡ଼ି ଯାଆନ୍ତି ।
ବର ବଳେ ଅବିଳମ୍ବେ ଆକାଶେ ଉଡ଼ିଲା
କ୍ରମେ କ୍ଷୁଦ୍ର ଦେହ ତାର ବର୍ଦ୍ଧିତ ହୋଇଲା ।
ପର୍ବତ ସମ ବୃହତ ଆକାର ଧରିଣ
ମହାକାଶେ ଯାଇଁ ରହେ ସେ ଉଡ୍ଡୀୟମାନ ।
ଗରୁଡ଼ ବେଗରେ ସଦା କଲେ ହେଁ ଧାବନ
ଅବିଦ୍ୟା ପ୍ରଭାବୁ ଦୃଶ୍ୟ ଶେଷ ନୁହେଁ ଜାଣ ।

ବହୁକାଳ ପରେ ତହିଁ ଯାଏ ତା ଜୀବନ
ତାହାରି ଶବ ଭୂ-ପୃଷ୍ଠେ ପଡ଼ିଲାଟି ଜାଣ ।
ସ୍ୱ ସ୍ଥାନେ ଗମନ ଏବେ କରହେ ରାଜନ
ପୃଥିବୀ ସ୍ଥିର ହୋଇଛି ଜାଣ ବର୍ତ୍ତମାନ ।
ପୂର୍ବପରି ଚାଲିଲାଣି ସର୍ବ କ୍ରିୟାମାନ
ସକଳ ଦୁର୍ଦ୍ଦଶା ତୁମ ଏବେ ନିବାରଣ ।"

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ବିପଶ୍ଚିତ ଉପାଖ୍ୟାନେ**
**ମହାଶବ ଉତ୍ପତ୍ତି ବର୍ଣ୍ଣନେ ନାମ**
**୭୦ତମ ସର୍ଗଃ**



## ୭୧ତମ ସର୍ଗଃ

## ବିପଶ୍ଚିତ ମୃଗଜନ୍ମ ଓ ମହାଶବ ବୃତ୍ତାନ୍ତ

ବିପଶ୍ଚିତ କହୁଚନ୍ତି ଶୁଣ ମୁନିବର
ଏହାକହି ଅଗ୍ନିଦେବ ହୁଅନ୍ତେ ଅନ୍ତର ।
ସେହି ଆକାଶରେ ମୁହିଁ ନାନାସ୍ଥାନ ବୁଲି
ନାନାଦୃଶ୍ୟ ଦେଖି ଦେଖି କାଳ କଟାଇଲି ।
ଦୀର୍ଘକାଳ ମନୋମୟ ଦେହେ ଏହିପରି
ନାନା ଦୃଶ୍ୟ ଦେଖି ଦେଖି ସ୍ପୃହାହୀନ ହେଲି ।
ମୁକ୍ତି ଲାଭ ବାଞ୍ଛା କରି ତପ ଆଚରିଲି
ଘୋର ତପେ ବହୁ କାଳ କଟାଇଣ ଦେଲି ।
"ଇନ୍ଦ୍ରଦେବ ଆସି ମୋତେ କହନ୍ତି ଏସନ
ମୃଗଜନ୍ମ ବାଞ୍ଛା ତୋର ଚିତ୍ତେ ଅଛି ଜାଣ ।
ବହୁକାଳ ଧରି ତାହା ରହିଚି ଉନ୍ମୁଖ
ଅବଶ୍ୟ ଘଟିବ ତାହା ନହେବୁ ବିମୁଖ ।
ଏହିକ୍ଷଣି ଆତ୍ମତତ୍ତ୍ୱ ଦରଶନ ପାଇଁ
ବିଚାର ଶକତି ତୁମ ଦୃଢ଼ ହୋଇନାହିଁ ।
ତେଣୁ ଯାଇ ବର୍ତ୍ତମାନ ପୃଥିବୀ ମଣ୍ଡଳେ
ମୃଗଯୋନିରେ ଜନମି ରହ ନିଶ୍ଚିନ୍ତରେ ।
ରାଜା ଦଶରଥଙ୍କର ଉଆସେ ରାଜନ
ତାଙ୍କ ପୁତ୍ରଙ୍କର ଖେଳ-ମୃଗ ହେବୁ ପୁଣ ।
ବଶିଷ୍ଠ ମୁନିଙ୍କ ମହାସଭାକୁ ତୁ ଯାଇ
ଅଗ୍ନିଦେବ ତେଜ ମଧ୍ୟେ ଝାସ ଦେବୁ ତହିଁ ।
ମୃଗରୁ ମନୁଷ୍ୟ ଦେହ କରିବୁ ଧାରଣ
ଅବିଦ୍ୟା ତୋ ନାଶ ତେବେ ହୋଇଯିବ ଜାଣ ।
ଦିବ୍ୟଜ୍ଞାନ ଲାଭ ତୋର ହୋଇବ ଅବଶ୍ୟ
ସେ କାଳେ ସ୍ମରଣ ହେବ ଏ ମୋର ସନ୍ଦେଶ ।"
ଇନ୍ଦ୍ର ଉପଦେଶ ଘେନି ହେଲି ମୁଁ ହରିଣ
ବନେ ବନେ ନାନା ସ୍ଥାନେ ବୁଲୁଥିଲି ଜାଣ ।
ତ୍ରିଗର୍ତ୍ତ ଦେଶ ରାଜନ ମୋତେ ଧରିନେଲେ
ତିନିଦିନ ମାତ୍ର ତାଙ୍କ ନଗ୍ରେ ରଖାଇଲେ ।
ତିନିଦିନ ଗତ ହୋଇ ଯାଆନ୍ତେ ଶ୍ରୀରାମ
ତୁମ ପାଇଁ ହେଲି ମୁହିଁ ତା ଉପଢ଼ୌକନ ।
ସକଳ ବୃତ୍ତାନ୍ତ ମୋର କହିଲି ଅନଘ
ଏବେ ଯାହା ଇଚ୍ଛା ତୁମ କର ମହାଭାଗ ।
ଏହା କହି ବିପଶ୍ଚିତ ହୁଅନ୍ତେ ନିବୃତ୍ତ
ଶ୍ରୀରାମ ତାହାଙ୍କୁ କହି ବସିଲେ ଏମନ୍ତ ।
ଆପଣଙ୍କ ଚିତ୍ତଗତ ମୃଗର ମୁରତି
ସକଳେ ପ୍ରତ୍ୟକ୍ଷେ ଦେଖି ଲଭିଲୁ ତୃପତି ।
ଅନ୍ୟପୁରୁଷର ସଙ୍କଳ୍ପିତ ବସ୍ତୁମାନ
ଆତ୍ମାମଧ୍ୟେ ଏହିପରି ପରିଦୃଷ୍ଟମାନ ।
କେଉଁପରି ଘଟେ ତାହା କହିବାକ ମୋତେ
ସଂଶୟ ମୋହର ଦୂର ହୋଇବ ଯେମନ୍ତେ ।
ବିପଶ୍ଚିତ କହିଲେକ ଶୁଣ ରାମଚନ୍ଦ୍ର
ଦୁର୍ବାସାଙ୍କୁ ପଦାଘାତ କରିଥିଲେ ଇନ୍ଦ୍ର ।
ଆକାଶୁ ଇନ୍ଦ୍ରଦେବତା ଓହ୍ଲାଇଲା ବେଳେ
ଅକସ୍ମାତେ ଦୁର୍ବାସାଙ୍କୁ ଝୁଣ୍ଟନ୍ତି ସେ କାଳେ ।
ସମାଧିସ୍ଥ ହୋଇ ମୁନି ରହିଥିଲେ ତହିଁ
ଅଜାଣତେ ଇନ୍ଦ୍ରଙ୍କର ପାଦ ବାଜି ଯାଇ ।
ବୁଢ଼ାମୁନି ରାଗିଯାଇ ଦେଲେ ଅଭିଶାପ
"ଶବମଣି ମୋତେ ତୁହି ଦିହିଲୁ ସନ୍ତାପ ।
ତେଣୁ ଅତିଶୀଘ୍ର ଜାଣ ହେ ଦେବରାଜନ
ବିରାଟେକ ଶବଦେହେ ଆକାଶୁ ଖସିଣ ।
ଚୂର୍ଣ୍ଣ କରିଦେବ ତୋର ଏହି ଯେ ଜଗତ
ତୋହର ଗରବ ଫଳ ଭୋଗିବୁ ତୁରିତ ।"
ଦୁର୍ବାସାଙ୍କ ଅଭିଶାପ ବେଳର କଳ୍ପନା
ବହିର୍ଜଗତରେ ତାହା ରୂପଧରି ସିନା ।
ସକଳ ପ୍ରାଣିଙ୍କ ଦୃଷ୍ଟି ପଥରେ ଶ୍ରୀରାମ
ପ୍ରକାଶ ଲଭିଣ ଥିଲା ନିଖୁଣ ରୂପେଣ ।
ସଙ୍କଳ୍ପମୟ ଜଗତ ଅଟଇ ଅସତ
ଆବର ବହିର୍ଜଗତ ସଦା ରହେ ସତ ।

ଏପରି ଭାବନା ରାମ ନୁହଇ ଉଚିତ
ତୁଲ୍ୟ ଭାବେ ଦୃଶ୍ୟ ଯେଣୁ ଉଭୟ ଜଗତ ।
ଯାହାଠାରେ ଅବସ୍ଥାନ କରେ ଏ ସମସ୍ତ
ସର୍ବମୟ, ସର୍ବବ୍ୟାପୀ ଅଟେ ସେ ସତତ ।
ସେ ବ୍ରହ୍ମ ପକ୍ଷରେ କିଛିହେଲେ ଅସମ୍ଭବ
ରହି କି ପାରଇ କହ ହେ ରଘୁ ପୁଙ୍ଗବ ?
ସର୍ବ ଶକ୍ତିମାନ ବ୍ରହ୍ମେ ସଙ୍କଳ୍ପ ସକଳ
ପରସ୍ପର ମଧ୍ୟେ ତାଙ୍କ ମେଳ ବା ଅମେଳ ।
ଉଭୟ ସମ୍ଭବପର ତହିଁ ହେ ଶ୍ରୀରାମ
ଆଲୋକ ଅନ୍ଧାର ତୁଲ୍ୟଭାବେ ବିଦ୍ୟମାନ ।
ଆପାତ ବିରୁଦ୍ଧାତ୍ମକ ବସ୍ତୁମାନଙ୍କର
ମିଳନ ହୋଇ ନପାରେ ଯଦି ପରସ୍ପର,
ବ୍ରହ୍ମ ସର୍ବସ୍ୱରୂପତା କିପରି ଭାବରେ
ପ୍ରମାଣ ହୋଇ ପାରିବ କହ ରଘୁବୀରେ ?
ସର୍ବଦା, ସର୍ବତ୍ର ଯେହୁ ସର୍ବରୂପେ ରହେ
ମାୟା ଯେ ତାହାଙ୍କୁ ମଧ୍ୟ ମୁଗ୍ଧ କରି ଦିଏ,
ଅତୀବ ଆଶ୍ଚର୍ଯ୍ୟ ଏହା ଆହେ ରଘୁବୀର
କାହାକୁ ନ ଛାଡ଼େ ମାୟା, ଏ ଭବ ସଂସାର
ବିଧି, ନିଷେଧ, ଯାଠାରେ ରହନ୍ତି ଏକତ୍ର
ନିଜ ମଧ୍ୟେ ଯେଉଁ ବ୍ରହ୍ମ ନିଜେ ଛନ୍ତି ବ୍ୟାପ୍ତ,
ତାହାଙ୍କ ଅସ୍ତିତ୍ୱ ହେତୁ ଅବିଦ୍ୟା ସମସ୍ତ
ଅନ୍ତବର୍ତୀ ଓ ଅନନ୍ତ ରୂପେ ବିରାଜିତ ।
ଯେତେକାଳ ଜୀବ ଦେଖୁଥିବ ଏ ଜଗତ
ବିଶୁଦ୍ଧ ତା ଜ୍ଞାନରୂପ ନୋହିବ ପ୍ରତୀତ ।
କିନ୍ତୁ ବ୍ରହ୍ମଙ୍କର ଯେବେ ନଥାନ୍ତା ଅସ୍ତିତ୍ୱ
କଳପ ଶେଷେ ବିନାଶ-ପ୍ରାପ୍ତ ଏ ଜଗତ,
ପୁନର୍ବାର ଉତପନ୍ନ ହୁଅନ୍ତା କେମନ୍ତ
ଧରିତ୍ରୀ, ଅନଳ, ସୂର୍ଯ୍ୟ, ବାୟୁ ଆଦି ଯେତ
ତାର ସ୍ୱଭାବ ପ୍ରକାଶ ତେଣୁ ଏ ଜଗତ
ଅନ୍ୟ କିଛି ନୁହେଁ ଜାଣିରଖ ରଘୁନାଥ ।
ଚିତ୍ ଶକ୍ତିର ବିଳାସ ବୁଝିପାର ଯେବେ
ପ୍ରତ୍ୟକ୍ଷ ହୋଇଣ ଯାଏ ତାହା ରାମ ତେବେ
ଜଗତ ଆକାରେ ଯେଣୁ ବ୍ରହ୍ମହିଁ ସ୍ଫୁରିତ
କେହି ନୁହନ୍ତି ସଂସାରେ ଜାତ ଅବା ମୃତ ।
ତେଣୁ ଜୀବନ, ମରଣ ବୋଲି କିଛି ନାହିଁ
ବ୍ରହ୍ମ ଏ ଉଭୟାକାରେ ସ୍ଫୁରିତ ରହଇ ।

ଚୈତନ୍ୟ ବ୍ୟତୀତ ଏହି ଜୀବନକୁ ରାମ,
ଅନ୍ୟ କେଉଁ ଭାବେ ଅବା କରିବ ବର୍ଣ୍ଣନ ?
ଅବିନାଶୀ ସଦାନନ୍ଦମୟ ସେ ଜୀବନ
ଚିନ୍ମୟ ସ୍ୱଭାବ ତାର, ସଦା ଭେଦ ହୀନ ।
ନାମ, ରୂପ ଆକାରେ ଯା ହୁଏ ଦୃଶ୍ୟମାନ
ଚିଦାକାଶର ବିଳାସ ସେ ସକଳ ଜାଣ ।
ସ୍ୱୟଂ ଆକାଶ ସ୍ୱରୂପ ଯେଣୁ ଏହି ଚିତ
ତାର ସକଳ ବିଳାସ ସେ ଆକାଶବତ ।
କୌଣସି କଠିନ ଦ୍ରବ୍ୟଭାବ ତାର ତହିଁ
ତେଣୁ ରହିବା କଦାପି ସମ୍ଭବ ନୁହଇ ।
ଚିଦାକାଶ ଯେଉଁପରି ଅଟେ ନିରାକାର
ଏ ଜଗତ ତଥା ଶୂନ୍ୟମୟ ନିରାଧାର ।
ଚତୁର୍ଦ୍ଦିଗେ ଯେ ଆକାଶ ହୁଅଇ ଦର୍ଶନ
ଚିଦାକାଶର ସ୍ଫୁରଣ ସେ ସମସ୍ତ ଜାଣ ।
ଭୂମି, ଜଳ, ଅଗ୍ନି, ବାୟୁ ଯେ ଭୂତ ସକଳ
ପୃଥକ ଭାବେ ହୁଅନ୍ତି ନୟନ ଗୋଚର,
ଆକାଶ ବ୍ୟତୀତ ସେ ସମସ୍ତ ଦୃଶ୍ୟରାମ
ଅନ୍ୟ କିଛି ହୋଇ ନ ପାରନ୍ତି ଏହା ଜାଣ ।
ଚିତ୍ତ ସଙ୍କଳ୍ପରୁ ଜାତ ଯେଣୁ ଏ ଜଗତ
ଐକ୍ୟଭାବ ତାର ତହିଁ ନୁହଇ ପ୍ରତୀତ ।
ଆବର ସକଳ ବସ୍ତୁ ଯେଣୁ ଚିତ୍ତମୟ
ତାଙ୍କ ମଧ୍ୟେ ଭେଦ ରହି ନ ପାରେ ନିଶ୍ଚୟ ।
ତେଣୁ ସକଳ ଜଗତ ବ୍ରହ୍ମର ପ୍ରକାଶ
ଏହାହିଁ ନିଶ୍ଚିତ ହେଲା ହେ ରଘୁବିଳାସ ।
ଏହି ଚିତରୂପୀ ବ୍ରହ୍ମ ନିଜେ ନିଜ ମଧ୍ୟେ
ସ୍ଫୁରିତ ହେଉଅଛନ୍ତି ଜାଣ ରଘୁନିଧେ ।
ତେଣୁ ତହିଁରେ କଳ୍ପିତ ପ୍ରତ୍ୟେକ ଅଣୁରେ
ଅସଂଖ୍ୟ ସୃଷ୍ଟି, ଅସଂଖ୍ୟ ଜୀବ ସୂକ୍ଷ୍ମାକାରେ,
ଅବସ୍ଥାନ କରିଛନ୍ତି ଜାଣ ରଘୁବୀରେ
ଦେଖି ନ ପାରନ୍ତି ଏକ ଅନ୍ୟକୁ ନେତ୍ରରେ ।
ଏହିଭାବେ କେତେ ଯୁଗ ଯୁଗାନ୍ତର ମୁହିଁ
ଭ୍ରମଣ ରତ ରହିଛି ଇୟତ୍ତା ତା କାହିଁ ?
ତତ୍ତ୍ୱଜ୍ଞାନ ଯେଉଁଯାଏ ନୋହିଛି ଉଦିତ
ମୋର ଏ ଭ୍ରମଣ କେବେଁ ନୋହିବ ନିବୃତ୍ତ ।

ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ
ଉତ୍ତରଖଣ୍ଡେ ବିପଶ୍ଚିତ ମୃଗଜନ୍ମ,
ମହାଶବ ବୃତ୍ତାନ୍ତ ବର୍ଣ୍ଣନେ
ନାମ ୭୧ତମ ସର୍ଗଃ



## ୭୨ତମ ସର୍ଗଃ

## ମନୋମୟ ଦେହେ ସ୍ୱର୍ଗ ନର୍କାଦି ଭୋଗ

କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ଭ୍ରମଣ ବୃତ୍ତାନ୍ତ କହୁ କହୁ ସେ ରାଜନ ।
ସୂର୍ଯ୍ୟଦେବ ସ୍ପର୍ଶକଲେ ପଶ୍ଚିମ ଗଗନ
ସଭା ମଉଳିଲା ଗଲେ ସର୍ବେ ଯେଝା ସ୍ଥାନ ।
ବିପଶ୍ଚିତଙ୍କ ଆତିଥ୍ୟ ବ୍ୟବସ୍ଥା କରିଣ
ରାଜା ଦଶରଥ ଗଲେ ଆପଣା ଭୁବନ ।
ଶ୍ରୀରାମଙ୍କ ସହ ଅନ୍ୟ ସଭାସଦଗଣ
ବଶିଷ୍ଠ ମୁନିଙ୍କ ପାଦ କରିଣ ପୂଜନ ।
ନିଜ ନିଜ ଆଶ୍ରମକୁ କଲେକ ପ୍ରସ୍ଥାନ
ପ୍ରଭାତରେ ପୁଣି ଉପସ୍ଥିତ ସଭାଜନ ।
ବୋଲନ୍ତି ବଶିଷ୍ଠ ମୁନି ଶୁଣ ହେ ରାଜନ
ଅବିଦ୍ୟା ଅସତ ବୋଲି ହେଲେ ହେଁ ପ୍ରମାଣ,
ସଦ୍‌ବସ୍ତୁ ସଦୃଶ ତାହା ରହେ ବିଦ୍ୟମାନ
ଅବିଦ୍ୟାର ଅବସାନ ଅତୀବ କଠିନ ।
ଅନେକ ଚେଷ୍ଟା ସତ୍ତ୍ୱେ ଏ ରାଜା ବିପଶ୍ଚିତ
ଅବିଦ୍ୟାର କବଳରୁ ନୋହିଛି ମୁକତ ।
ଯେତେକାଳ ତା ସ୍ୱରୂପ ରହିଛି ଅଜ୍ଞାତ
ଯେତେକାଳ ନ ମିଳିବ ତାର ଆଦି ଅନ୍ତ ।
ଅବିଦ୍ୟା ସ୍ୱରୂପ ହୋଇଗଲେ ପରି ଜ୍ଞାତ
ମରୀଚିକା ଜଳ ସମ ହୁଏ ସେ ବିଲୁପ୍ତ ।
ଅବିଦ୍ୟା ରୂପିଣୀ ଏକ ଶକ୍ତିକୁ ହିଁ ବ୍ରହ୍ମ
ଆପଣା ମଧ୍ୟରେ କରିଛନ୍ତି ପ୍ରକାଶନ ।
ଏଥିପାଇଁ ହୋଇଲେ ହେଁ ମିଥ୍ୟା ଏ ଅବିଦ୍ୟା
ସତ୍ୟରୂପେ ପ୍ରତିଭାତ ହେଉଥାଏ ସଦା ।
ବ୍ରହ୍ମରୂପେ ତାକୁ ଜାଣିପାରିଲେ ଏ ଜୀବ
ବ୍ରହ୍ମାକାର ହୋଇ ନିଜ ଅସ୍ତିତ୍ୱ ହାରିବ ।
ନିଦ ନ ଭାଙ୍ଗିବା ଯାଏ ସୁଷୁପ୍ତ ମଣିଷ
ସ୍ୱପ୍ନଦୃଶ୍ୟ ତାର ଯଥା ନ ହୁଅଇ ଶେଷ,
ଜାଗ୍ରତ ନହେବା ଯାଏ ତଥା ବ୍ରହ୍ମଜ୍ଞାନେ
ଜଗତ୍-ଦୃଶ୍ୟ ତାର, ଅନ୍ତ ନୁହେ କଦାଚନେ ।
ଦୃଶ୍ୟ ଜଗତ ଯଥାର୍ଥ ମଣଇ ଯେ ନର
ମରଣାନ୍ତେ ରହିଲେ ହେଁ ସେହୁ ନିରାକାର,
ଅପର ଦୃଶ୍ୟ ଜଗତ ତାକୁ ପ୍ରାପ୍ତ ହୋଇ
ସେ ଜଗତେ ପୁଣି ସେହୁ ଶରୀର ଧରଇ ।
ଭକ୍ଷ୍ୟ, ଭୋଜ୍ୟ, ପାନୀୟାଦି ସକଳ କ୍ରିୟାରେ
ସ୍ୱର୍ଣ୍ଣ, ରୌପ୍ୟ, ମଣି, ମାଣିକ୍ୟାଦି ବୈଭବରେ,
ତାର ସେ ଜଗତ କ୍ରମେ ହୋଇଯାଏ ପୂର୍ଣ୍ଣ
କିନ୍ତୁ ଚିଦାକାଶଠାରୁ ସେ ସବୁ ଅଭିନ୍ନ ।
ମୃତ ଜୀବର ବାସନା ଚିଦାକାଶ ମଧ୍ୟେ
ଏ ବୈଭବ ସମାବେଶ କରେ ରଘୁନିଧେ ।
ଶାସ୍ତ୍ରବିଧ ଶୁଭକର୍ମ ଏହି ଭାବେ ଜାଣ
ଫଳପ୍ରଦ ହୋଇଥାଏ ସଦା ହେ ରାଜନ ।
ବ୍ରହ୍ମ-ଚଇତନ୍ୟମୟ ଯେଣୁ ଏ ଜଗତ
ତେଣୁ ଏପରି ଘଟିଣ ଥାଏ ନିତ୍ୟବତ ।
ଇଚ୍ଛାମାତ୍ରେ ଏହିରୂପ ଭୋଗ ସମାବେଶ
ଘଟାଇ ପାରନ୍ତି ନାହିଁ କୌଣସି ମନୁଷ୍ୟ ।
ସୁଦୃଢ଼ ସଙ୍କଳ୍ପ ସହ ତୀବ୍ର ବାସନାର
ଅଭାବ ହେତୁ ନ ମିଳେ ଯେ ଭୋଗ ସମ୍ଭାର ।
ବାସନା, ସଙ୍କଳ୍ପ ଯେବେ ତୀବ୍ର ବେଗ ଧରେ
ଯେ କୌଣସି ଜନ ଏହା ସାଧି କରିପାରେ ।
ସଙ୍କଳ୍ପମୟ ନଗର ଅଧିବାସୀ ହୋଇ
ଅନ୍ୟ ଦେହ ଧରି ଭୋଗ କରିପାରେ ମହୀ ।
ନିଜ ସଙ୍କଳ୍ପ ଶକତି, ସଙ୍କଳ୍ପ ନଗ୍ରରେ
ଦୃଢ଼ ଆସ୍ଥାବାନ ହୋଇ ତାକୁ ଅନୁସରେ,
ମରଣାନ୍ତେ ଅବଶ୍ୟ ସେ ଯେ ସ୍ୱର୍ଗୀୟ ସୁଖ
ଭୋଗକ୍ଷମ ହୋଇଯିବ ହେ ରଘୁନାୟକ ।
ସତ୍ୟ ସଂକଳପ ବଳେ ସତ୍ୟ ବୋଲି ଯାହା
ଧାରଣା ହୁଏ, ଅନ୍ୟଥା କେଉଁ ନୁହେ ତାହା ।
ଯେ ସଙ୍କଳ୍ପ ଦେଇପାରେ ସ୍ୱର୍ଗ ସୁଖ ଭୋଗ
ନର୍କ ଭୋଗ ଦୁଃଖ ମଧ୍ୟ ତା ଦିଏ ରାଘବ ।
ସଙ୍କଳ୍ପବଳରେ ଅବା କର୍ମାନୁଷ୍ଠାନରେ
ମନେ ଯା ଅଙ୍କିତ ହୁଏ ଛବି ଆକାରରେ,
ମରଣାନ୍ତେ ତାହା ମନୋମୟ ଶରୀରରେ
ଅନୁଭୂତ ହୋଇଥାଏ ଜାଣ ରଘୁବୀରେ ।

ଭାବନା ବଳରୁ ଲୋକ ଆବର ଶରୀର
ଉଦ୍‌ଭୂତ ହୋଇଅଛନ୍ତି ଜାଣ ରଘୁବୀର ।
ଆକାଶରୂପିଣୀ ଯେଣୁ ଅଟେ ସେ ଭାବନା
ଶୁଭଭାବେ ପରିପୂର୍ଣ୍ଣ ଥାଏ ମହାମନା
ସେହି ଆକାଶେହିଁ ତାହା ଶୁଭଲୋକ ରୂପେ
ଦୃଷ୍ଟ, ଅନୁଭୂତ ହୁଏ ତାହାର ସମୀପେ ।
ଅଶୁଭ ଭାବନା ବଳେ ସେହି ଯେ ଆକାଶ
ଅଶୁଭଲୋକ ରୂପରେ ହୁଅଇ ପ୍ରକାଶ ।
ଚିତ୍ତ ବିଶୁଦ୍ଧ ଅଟଇ ଯେବଣ ବ୍ୟକ୍ତିର
ଦେବଲୋକ ଦରଶନ, ସ୍ୱର୍ଗଭୋଗ ତାର
ଚିତ୍ତ ବିଶୁଦ୍ଧ ନୋହିଛି ଯେଉଁ ପୁରୁଷର
ନରକ ଦର୍ଶନ, ନାନା ଦୁଃଖ ଭାଗ୍ୟେ ତାର ।
ଅବିଶୁଦ୍ଧଚିତ୍ତ ବ୍ୟକ୍ତି ମରଣାନନ୍ତର
ଅନ୍ଧାରେ ପଡ଼ିଲା ପରି ମନେ ହୁଏ ତାର ।
ନିସ୍ତାର ନାହିଁ ଭାବଇ ଏଥିରୁ ମୋହର
ଅସରନ୍ତି ଦୁଃଖ ଭୋଗ କରଇ କେବଳ ।
ସେ ଅନ୍ଧକାର ଗର୍ଭରେ ପଡ଼ନ୍ତେ ସେ ଯାଇଁ
ନାନା ଦୁଃଖ ମନେ ମନେ ଭୋଗ କରୁଥାଇ,
କାହିଁ ଅଗ୍ନି ବୃଷ୍ଟି ପୁଣି କାହିଁ ଶୀଳାବୃଷ୍ଟି
କାହିଁ ଶାସ୍ତ୍ରମାନ ପଡ଼େ ଶୂନ୍ୟପୁର ଘୋଟି,
କେତେବେଳେ କୃମିପୂର୍ଣ୍ଣ କୁଣ୍ଡେ ସେ ପଡ଼ଇ
କେବେ ପର୍ବତ ଶିଖରୁ ନିପତିତ ହୋଇ ।
ଜଳନ୍ତା ଅନଳ ମଧ୍ୟେ କେବେ ପଡ଼ିଯାଇ
ଦରପୋଡ଼ା ହୋଇ ଛଟପଟ ହେଉଥାଇ ।
ରକ୍ତବୃଷ୍ଟି ଭୋଗେ କାହିଁ, କାହିଁ ତପ୍ତଜଳ
ତପତ କର୍ଦ୍ଦମ ବୃଷ୍ଟି ଭୋଗେ କେଉଁଠାର ।
ତପ୍ତ ବୈତରଣୀ ନଦୀ ପଡ଼େ ଯେତେବେଳେ
ପୂଜ ରକ୍ତ ସ୍ରୋତ ମଧ୍ୟେ ଭାସେ ତେତେବେଳେ ।
ହସ୍ତୀ ଅଶ୍ୱ ପଦତଳେ କାହିଁ ହୁଏ ଦଳି
କୁଆ ଶାଗୁଣାଙ୍କ ଚେଟ ସହି କି ସେ ପାରି ?
ଏହିପରି ନାନା ଦୁଃଖ କ୍ଲେଶ ଭୋଗି କରି
ଅନୁତପ୍ତ ହୁଏ ନିଜ ଦୁଷ୍କର୍ମ ସୁମରି ।
ଏ ସବୁ ଦୃଶ୍ୟ ଦର୍ଶନ, ଦୁଃଖ ଭୋଗ ମାନ
ମନୋମୟ ହିଁ କେବଳ ହେ ରଘୁନନ୍ଦନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ମନୋମୟ ଶରୀରେ ସ୍ୱର୍ଗ ନର୍କାଦି ଯନ୍ତ୍ରଣା ଭୋଗ ବର୍ଣ୍ଣନେ ନାମ ୭୨ତମ ସର୍ଗଃ**



## ୭୩ତମ ସର୍ଗଃ
## ନିର୍ବାଣ ଉପଦେଶ (୧)

ଶ୍ରୀରାମ କହନ୍ତି ଶୁଣ ଆହେ ତପୋବନ୍ତ
ପୂର୍ବେ କହିଛ ଯେ ମୁନି, ବ୍ୟାଧଙ୍କ ବୃତ୍ତାନ୍ତ
ସ୍ୱପ୍ନପରି ଆପେ ଆପେ ଘଟିଛି କି ମୁନି
ଅଥବା ଅନ୍ୟ କାରଣ ଥିଲା ମୁଁ ନ ଜାଣି ।
କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ପରମାତ୍ମରୂପ ମହା ସମୁଦ୍ରରେ ଜାଣ,
ଆକାଶମୟ ଏସନ ଉର୍ମିମାଳା ମାନ
ସଦାସର୍ବଦା ଉତ୍‌ଥିତ ହୁଅଇ ଶ୍ରୀରାମ ।
ମୃତ୍ତିକା ଘଟ ଆକାରେ ହେଲେ ପରିଣତ
ମୃତ୍ତିକା ନାମେ ଯଥା ସେ ନୁହଇ କଥିତ,
ସେତେବେଳେ ଘଟ ବୋଲି ତାକୁ କୁହାଯାଇ
ତଥା ଏହି ଚିଦାକାଶ ଶୂନ୍ୟମୟ ଥାଇ ।
ନାନା ଆକୃତି ଭାବନା ବଳେ ଚିଦାକାଶ
ନାନାକାରେ ପ୍ରତିଭାତ ତଥା ରଘୁଈଶ ।
ସେହି ଆକୃତି ସକଳ ଚିଦାକାଶ ବୋଲି
କଥିତ ହୁଅନ୍ତି ନାହିଁ ଜାଣ ଋପଧାରୀ ।
ସେହି ଯେ ଆକୃତି, ବସ୍ତୁ ରୂପରେ କେବଳ
ଗଣ୍ୟ ହୋଇଥାନ୍ତି ଜାଣ ଆହେ ରଘୁବାଳ ।
ଚିନ୍ମୟ ବ୍ରହ୍ମଙ୍କ ଅବୟବ ରୂପେ ସର୍ବେ
ପରିଦୃଷ୍ଟ ହେଉଥାନ୍ତି ରଘୁନାଥ ତେବେ ।
ଚିନ୍ମୟ ବ୍ରହ୍ମ ମଧ୍ୟରେ ସେସବୁ ଆକୃତି
ସ୍ଥିତ ହୋଇଥାନ୍ତି ଜାଣ ଆହେ ରଘୁପତି ।
ବାସ୍ତବରେ ତାହାସବୁ ସତ ବା ଅସତ
କିଛି ନୁହେଁ ଜାଣିରଖ ଆହେ ରଘୁନାଥ ।
ଯଥାଯଥ ଭାବେ ଜ୍ଞାତ ହେଲେ ଏ ଜଗତ
ଚିଦାକାଶ ରୂପେ ତାହା ହୁଏ ପ୍ରକାଶିତ ।
ସମ୍ପୂର୍ଣ୍ଣ ରୂପେ ବ୍ରହ୍ମରେ ପୂର୍ଣ୍ଣ ଏ ଜଗତ
ଚିଦାକାଶ ରୂପେ ସଦା ଏହା ପ୍ରତିଭାତ ।

ଜଗତ ବୋଲିଣ ଏହାପ୍ରତି ତୁମେ ରାମ
ଆସ୍ଥାବାନ ହୋଇବାର ଅଛି କି କାରଣ ?
ବ୍ରହ୍ମରୂପେ ହିଁ ତାହାକୁ କର ଅନୁଭବ
ଦୃଶ୍ୟ-ଭ୍ରାନ୍ତି ଜ୍ଞାନ ତେବେ ଅପସରି ଯିବ ।
ତରଙ୍ଗ ଅଟଇ ଯଥା ଜଳର ବିକାର
ଆତ୍ମାରୁ ଉତ୍‌ଥିତ ତଥା ଏ ସର୍ବ ଆକାର ।
କାରଣ ରୂପରେ ସବୁ ହୋଇଣ ଉତ୍ପନ୍ନ
କାର୍ଯ୍ୟ ରୂପେ ପ୍ରତିଭାତ ହେଉଛନ୍ତି ପୁଣ ।
ନିଜକୁ ପରମଆତ୍ମା ସଙ୍କଳ୍ପ ବଳରେ
ଜ୍ଞାନ କରୁଛନ୍ତି ଏହି ଜଗତ ଆକାରେ ।
ପୃଥ୍ୱୀ ଅବା ଅନ୍ୟଘନ ବସ୍ତୁ ନାହିଁ ତହିଁ
ନିଜେ ତ ସେ ଚିଦ୍‌ଘନ ଜାଣ ରଘୁସାଇଁ ।
ଯେଣୁ ପୃଥିବ୍ୟାଦି ଅନ୍ୟ ଘନ-ଭାବ ନାହିଁ
ତେଣୁ ସମଗ୍ର ଜଗତ ଚିଦାକାଶ ହୋଇ ।
ପରମ ଜ୍ଞାନ ଅଟଇ ଏହି ଜ୍ଞାନ ରାମ
ସେ ଜ୍ଞାନୁ ଚ୍ୟୁତ ନୋହିଲେ, ମୁକ୍ତି ତାହା ଜାଣ ।
ବିଚାର ବଳରେ ବୁଦ୍ଧି ହୋଇଣ ମାର୍ଜିତ
ତୀକ୍ଷ୍ଣ-ବୁଦ୍ଧି ରୂପ ଯେବେ ଧରେ ରଘୁନାଥ,
ସେହି ତୀକ୍ଷ୍ଣବୁଦ୍ଧି ବଳେ ଆତ୍ମାକୁ ନିଜର
ନିଶ୍ଚଳ, ବିକଳ୍ପହୀନ ଯେବେ କରିପାର,
ତେବେ ଯାଇଁ ଚିତ୍ ସ୍ୱରୂପତା ଅନୁଭବ
ଲବଧ ହୋଇବ ଜାଣ ହେ ରଘୁପୁଙ୍ଗବ ।
ଅଜ୍ଞପାଶେ ଯେ ସଂବିତ ଜଗତ ଆକାରେ
ପ୍ରତିଭାତ ହେଉଅଛି ଜାଣ ରଘୁବୀରେ,
ବିଜ୍ଞ ବ୍ୟକ୍ତି ପକ୍ଷେ ସେହି ଜଗତ ଅସ୍ତିତ୍ୱ
ନାହିଁ ବୋଲି ଜାଣି ରଖ ମରୀଚିକା ବତ ।
ହେଲେହେଁ ସ୍ୱପ୍ନେ ସ୍ୱାପ୍ନିକ ଦୃଶ୍ୟ ଅନୁଭୂତ
ସ୍ୱପ୍ନକ୍ଷେତ୍ର ବୋଲି କାହିଁ ନାହିଁ କିଛି କ୍ଷେତ୍ର ।
ଆତ୍ମାରେ ଜଗତ ହୋଇଲେହେଁ ଅନୁଭୂତ
ଜଗତ ବୋଲିଣ ତହିଁ ନାହିଁ କିଛିମାତ୍ର ।
ଯଥା ସ୍ୱପ୍ନେ ଚିଦାତ୍ମାହିଁ ଦୃଶ୍ୟ ପ୍ରକାଶିଣ
ଦୀପ୍ତିବନ୍ତ ହେଉଥାଏ ଆହେ ରଘୁରାଣ ।
ଜାଗରଣେ ତଥା ସେହି ଚିଦାତ୍ମା ହିଁ ଜାଣ
ସାକ୍ଷୀ, ସପ୍ରକାଶ ରୂପେ ରହେ ବିଦ୍ୟମାନ ।
ଜିଇଁଥିବା ଯାଏ ନିଦ୍ରାକାଳେ ଯେଉଁପରି
ସ୍ୱପ୍ନଦର୍ଶନ-ଅଭାବ ନୁହେ ରୂପଧାରୀ,
ଅଜ୍ଞାନ ନିଦ୍ରାରେ ମଗ୍ନ, ଜଗତ-ଦର୍ଶନ
ମୁକ୍ତି ନ ଲଭିବା ଯାଏ ରହଇ ତେସନ ।
ନିଦ୍ରାରୁ ଉଠିଲା ପରେ ମନୁଷ୍ୟ ଯେସନ
ସ୍ମରଣ କରି ପାରଇ ସ୍ୱପ୍ନ ଦୃଶ୍ୟମାନ,
ଯୋଗୀ ତଥା ତାର ବହୁ ପୂର୍ବଜନ୍ମ କଥା
ସ୍ମରଣ କରି ପାରଇ ଆହେ ଧନୁହସ୍ତା ।
ଅନୁଭବରୂପୀ ଆତ୍ମା ଯେଣୁ ସର୍ବଠାରେ
ସମଭାବେ ବିଦ୍ୟମାନ ଆହେ ରଘୁବୀରେ ।
ସ୍ୱପ୍ନ, ଜାଗରଣ ଏହି ଉଭୟେ ହିଁ ଜାଣ
ଏକ, ଅଟନ୍ତି ତେଣୁ ସେ ହେ ରଘୁନନ୍ଦନ ।
ଜାଗ୍ରତ କାଳେ ଯେପରି ହୁଏ ଅନୁଭବ
ସ୍ୱପ୍ନକାଳେ ମଧ୍ୟ ସେହିପରି ତା ରାଘବ ।
ସ୍ୱପ୍ନେ ଦୃଷ୍ଟ ନଗରାଦି ଯଥା ଚିଦାକାଶ
ଜାଗରଣେ ଜଗତାଦି ତଥା ଚିଦାକାଶ ।
ନିତ୍ୟ, ମୁକ୍ତ ଅଟେ ଏହି ଆତ୍ମା ରଘୁନାଥ
ବଦ୍ଧ ବୋଲି ତାକୁ ମଣିବାଟା ଅନୁଚିତ ।
ଯେ ଆକାଶ ନିରାକାର ଚିନ୍ମୟ ବ୍ରହ୍ମ
କେବେ କି ତାର ବନ୍ଧନ ଘଟିପାରେ ରାମ ?
ଏଇ ଦୃଶ୍ୟ ଆକାରରେ ସେ ଚିନ୍ମୟାକାଶ
ପ୍ରକାଶ ପାଉଅଛଇ ହେ ରଘୁବିଳାସ ।
ବନ୍ଧନ ଅବା ମୁକତି ତେଣୁ ତାର ନାହିଁ
ଏହା ସୁନିଶ୍ଚିତ ଜ୍ଞାନ ଜାଣ ରଘୁସାଇଁ ।
ସ୍ୱପ୍ନେ, ଜାଗରଣେ ଅବା ସୁଷୁପ୍ତି କାଳରେ
ସାକ୍ଷି ଚୈତନ୍ୟ ରୂପେ ସେ ରାଜନ୍ତି ତ୍ରିକାଳେ ।
ତେଣୁ ଦ୍ୱୈତ ବା ଅଦ୍ୱୈତ, ଭେଦ ବା ଅଭେଦ
ସବୁ ସେହି ଚିଦାକାଶ ରଘୁକୁଳା ନନ୍ଦ ।
ସଚ୍ଚିଦାନନ୍ଦ ବ୍ରହ୍ମଙ୍କ ସତ୍‌ଅଂଶ ଯେପରି
ବୋଧ, ବୋଧଗ୍ରାହ୍ୟ ରୂପେ ଏକ ରୂପଧାରୀ ।
ଭେଦ ଓ ଅଭେଦଜ୍ଞାନ ସେହିପରି ଜାଣ
ଉଭୟେ ହିଁ ଏକ ବସ୍ତୁ, ଭେଦାଭେଦ ହୀନ ।
ଜ୍ଞାନ ଅଂଶେ ତହିଁ ନାହିଁ କିଛି ହିଁ ପ୍ରଭେଦ
ଅଜ୍ଞାନୀଙ୍କୁ ଘାରୁଥାଏ ଯେଉଁ ଭେଦାଭେଦ ।
ବ୍ରହ୍ମଙ୍କୁ ଭେଦାଭେଦର ସମଷ୍ଟି ବୋଲିଣ
ସେ କାରଣୁ କେଉଁ ନ ଭାବିବ ରଘୁରାଣ ।
ଭେଦାଭେଦମୟ ଏ ଜଗତ ପ୍ରପଞ୍ଚକୁ
ବ୍ରହ୍ମ ବୋଲିଣ ପ୍ରଥମେ ଧରିଣ ତାହାଙ୍କୁ,

ପରେ ନେତି, ନେତି କହି ସେହି, ଭେଦମାନ
ପରିହରି, ଚିଦାକାଶେ କର ଅବସ୍ଥାନ ।
ପାଷାଣ ସମ ଅଚଳ ରହିବ ରାଘବ
ବ୍ରହ୍ମଜ୍ଞାନ ଲାଭ ବିଧି ଏହାକୁ ଜାଣିବ ।
ଏ ଭାବେ ଚିନ୍ମୟ ବ୍ରହ୍ମେ ହୋଇ ଉପନୀତ
ସର୍ବକର୍ମ ସମ୍ପାଦନ କର ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ନିର୍ବାଣ ଉପଦେଶ ବର୍ଣ୍ଣନେ ନାମ ୭୩ତମ ସର୍ଗଃ**



## ୭୪ତମ ସର୍ଗଃ
## ନିର୍ବାଣ ଉପଦେଶ (୨)

ହେ ରାମ ! ଦୃଶ୍ୟବସ୍ତୁର ପ୍ରକାଶ ନିମିତ୍ତ
ଚିଦାକାଶ ହିଁ କାରଣ ଜାଣ ଏକମାତ୍ର ।
ତେଣୁ ଏହି ଜଗତର ଭିତରେ ବାହାରେ
ଚିଦାକାଶ ହିଁ ସର୍ବତ୍ର ଅବସ୍ଥାନ କରେ ।
ସପନରେ ନଗରାଦି ଯାହା ଦୃଶ୍ୟ ହୁଏ
ଦର୍ଶକର ଚୈତନ୍ୟ ହିଁ ସେ ଆକୃତି ନିଏ ।
ଚୈତନ୍ୟ ବ୍ୟତୀତ ତହିଁ ଅନ୍ୟ କିଛି ଆଉ
ନଥାଏ ଯେପରି ଜାଣି ରଖ ମହାବାହୁ,
ସେହିପରି ଜାଗରଣେ ଦୃଶ୍ୟ ଯେ ଜଗତ
ଚିଦାକାଶ ବୋଲି ତାକୁ ମଣ ରଘୁନାଥ ।
ଅଭିଜ୍ଞର ଦୃଷ୍ଟି ରହେ ଅନ୍ତରେ ନିହିତ
ଅନଭିଜ୍ଞ ଦୃଷ୍ଟି ବାହ୍ୟେ ଥାଏ ରଘୁନାଥ ।
ନିଶ୍ଚଳ ଆତ୍ମତତ୍ତ୍ୱକୁ ସେ ଅଭିଜ୍ଞଜନ
ଦରଶନ କରିବାକୁ ହୁଅଇ ଭାଜନ ।
ସଚଞ୍ଚଳ ବସ୍ତୁମାନ ଅନଭିଜ୍ଞ ଜନ
ଦ୍ରଷ୍ଟାଭାବେ ସଦା କରୁଥାଏ ଦରଶନ ।
ବୁଦ୍ଧିଗତ ପ୍ରକୃତ-ସ୍ୱରୂପ ଜଗତର
ଗଭୀର ଅନ୍ତର ଦେଶେ ଅବା ତା ବାହାର ।
କଉଣସି ସ୍ଥାନେ ଯେଣୁ ନ ହୁଅଇ ଦୃଶ୍ୟ
ଜ୍ଞାନୀ, ଅଜ୍ଞାନୀ ଦୁହିଙ୍କୁ ରହଇ ଅଦୃଶ୍ୟ ।
ଜଳର ଦ୍ରବତ୍ୱ ଗୁଣ ହେତୁ ରଘୁନାଥ
ଯେପରି ତରଙ୍ଗ ମାଳା ହୁଅଇ ଉତ୍ଥିତ,
ସେପରି ଚିନ୍ମୟ ଆତ୍ମା ଅସ୍ତିତ୍ୱରୁ ଜାଣ
ଚିତ୍‌ରୂପ ଏହି ସୃଷ୍ଟିତରଙ୍ଗ ଉତ୍‌ପନ୍ନ ।
ଚିତ୍ ପ୍ରକାଶ ବିନୁ ତେଣୁ ଏ ଜଗତ ରାମ
ଅନ୍ୟ କିଛି ନୁହଇ ଯା ସୁନିଶ୍ଚିତ ଜାଣ ।
କୌଣସି ବସ୍ତୁତ୍ୱ ରାମ ନ ଥାଇ ଯାହାର
ଚିଦାତ୍ମା ଅସ୍ତିତ୍ୱ ନିବନ୍ଧନ ହେତୁ ତାର,
ସ୍ୱରୂପ, ସତ୍ୟ ଭାବରେ ହୁଏ ପ୍ରତିଭାତ
ବସ୍ତୁତ୍ୱ ନଥାଇ ଯଥା ଜଗତ୍ ପ୍ରତିଭାତ ।
ମାୟାମଧ୍ୟେ ନିପତିତ ଚିତ ପ୍ରତିବିମ୍ବ
ଜଗତ, ଜୀବ, ଆକାରେ ପ୍ରକାଶେ ରାଘବ ।
ପ୍ରତିବିମ୍ବିତ ଘଟଟି ହେଲେହେଁ ଅମୂର୍ତ୍ତ
ଦେଖାଯାଏ ଯେପରି ତା ଅଟେ ମୂର୍ତ୍ତିମନ୍ତ ।
ଚିତ ପ୍ରତିବିମ୍ବ ସେହି ଜୀବ ଓ ଜଗତ
ମୂର୍ତ୍ତିହୀନ ହୋଇ ସୁଦ୍ଧା ଦିଶେ ମୂର୍ତ୍ତିମନ୍ତ ।
ତନ୍ମଧ୍ୟରେ ମୂର୍ତ୍ତିମାନ "ଏ ଶରୀର ମୁହିଁ"
ଭ୍ରାନ୍ତିମୟ ଦର୍ଶନ ଏ ସବୁ ଦୁଃଖ ଦେଇ ।
ମନୋମୟ ରାଜ୍ୟ ଅଟେ ଯେପରି ଅସତ୍ୟ
ଜ୍ଞାନୀ, ଅଜ୍ଞାନୀଙ୍କ ଦେହ ତଥା କାଳଗ୍ରସ୍ତ ।
ସେ ଶରୀର ପ୍ରତି ଆସ୍ଥାଭାବ କେଉଁପରି
ସଙ୍ଗତ ହୋଇବ କହ ଆହେ ରୂପଧାରୀ ?
ବିଶୁଦ୍ଧ ବୋଧସ୍ୱରୂପ ଆତ୍ମାରେ ହେ ରାମ
ବିଶ୍ରାନ୍ତି ଲଭିଣ ତେଜ ଚିତ୍ତ ବିକ୍ଷେପଣ ।
ଆତ୍ମାହିଁ ଆତ୍ମାର ବନ୍ଧୁ ଜାଣ ରଘୁବୀର
ଆତ୍ମାହିଁ ଆତ୍ମାର ଶତ୍ରୁ ଜାଣିବ ଆବର ।
ଆତ୍ମାକୁ ଆତ୍ମାରବଳେ ଜାଣ ହେ ରାଘବ
ଯେବେ କେବେହେଁ ଉଦ୍ଧାର କରି ନ ପାରିବ,
ତେବେ ଆତ୍ମାହିଁ ଆତ୍ମାର ଶତ୍ରୁ ପାଲଟିବ
ଏଥିରେ ସନ୍ଦେହ କେଭେଁ ନ ରଖ ରାଘବ ।
ଉଦ୍ଧୃତ ଆତ୍ମା ପରମ ବନ୍ଧୁ ପାଲଟଇ
ଆତ୍ମବଳେ ଆତ୍ମା ନିଜେ ନିଜକୁ ତାରଇ ।
ଏହା ବୁଝି ଅବିଳମ୍ବେ ଆହେ ରଘୁବୀର
ବିଶୁଦ୍ଧ ବୁଦ୍ଧି ନୌକାରେ ସଂସାର ସାଗର,
ପରପାରେ ଯିବାପାଇଁ ହୁଅ ଯତ୍ନବାନ
ନତୁବା ବାର୍ଦ୍ଧକ୍ୟ କାଳେ ହୋଇବ ଅକ୍ଷମ ।
ନିଜ ଶରୀର ନିଜକୁ ହେବ ଭାରବତ
ହାତରୁ ଛୁଟିଲେ ଶର ଯଥା ଅନାୟତ୍ତ ।

ଶୈଶବ, ବାର୍ଦ୍ଧକ୍ୟ ଦୁହେଁ ଜ୍ଞାନ ସାଧନର
ଉପଯୁକ୍ତ କାଳ ନୁହେଁ କୌଶଲ୍ୟା କୁମର ।
ଯଉବନେ ହୁଏ ଯଦି ବିବେକ ଉଦିତ
ଜ୍ଞାନ ସାଧନା ପାଇଁ ତା ହୁଏ ଉପଯୁକ୍ତ ।
ବିଦ୍ୟୁତ ସମାନ କ୍ଷଣସ୍ଥାୟୀ ଏ ଜନମ
ଲଭି ଯେ 'ମୋହୁ' ଆତ୍ମାକୁ ନ ଉଦ୍ଧାରେ ରାମ ।
ବୃଥା ତାହାର ଜୀବନ ତେଣୁ ରଘୁରାଣ
ତାର ଅନୁତାପ ବୃଥା ଅରଣ୍ୟ ରୋଦନ ।
ପ୍ରାଣ, ମନ ସହ ତୁମେ ଜିତେନ୍ଦ୍ରିୟ ହୋଇ
ଜ୍ଞାନ ଲଭି ପୁନର୍ଜନ୍ମ ରୋଧ ରଘୁସାଇଁ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ନିର୍ବାଣ ଉପଦେଶ ବର୍ଣ୍ଣନେ ନାମ ୭୪ତମ ସର୍ଗଃ**



## ୭୫ତମ ସର୍ଗଃ
## ଇନ୍ଦ୍ରିୟ ଜୟ

ପୁଛନ୍ତି ଶ୍ରୀରାମ ମୁନେ କେଉଁ ଉପାୟରେ
ଇନ୍ଦ୍ରିୟଙ୍କ ପରାଜୟ ଘଟେ ନିଶ୍ଚିତରେ ।
ସେହି ପଥ ଦରଶାଇ ଦେଇ ଆହେ ଦେବ
ଜଗତ ଜୀବଗଣଙ୍କୁ କୃତାର୍ଥ କରିବ ।
କହନ୍ତି ବଶିଷ୍ଠ ତାହା ଶୁଣ ରଘୁନାଥ
ଭୋଗାସକ୍ତ, ଧନାସକ୍ତ, ବ୍ୟସନ ଆସକ୍ତ ।
ଏହିପରି ହୋଇଥାନ୍ତି ଯେଉଁ ଜନମାନ
ଇନ୍ଦ୍ରିୟ ଜୟେ ଅକ୍ଷମ ହୁଅନ୍ତି ସେମାନ ।
ଚିନ୍ତା ବଶୀଭୂତ ହୋଇ ପୁରୁଷ ଚିନ୍ମାତ୍ର
ଜୀବନାମେ ହୋଇଛନ୍ତି ସେହୁ ପରିଚିତ ।
ସେହି ଜୀବ ଚିତ୍ତ ଦ୍ୱାରା ଯାହା ଯାହା ଭାବେ
ତହିଁରେ ତନ୍ମୟାଶକ୍ତି ହୋଇପଡ଼େ ଭବେ ।
ବ୍ରହ୍ମ ଚିନ୍ତନରେ ତେଣୁ ହେ ରଘୁନନ୍ଦନ
ଚିତ୍ତକୁ ତନ୍ମୟ କରି ପାରନ୍ତି ଯେ ଜନ ।
ଅନାୟାସେ ଜୀତେନ୍ଦ୍ରିୟ ହୋଇ ସେ ପାରିବ
ନିଶ୍ଚିତ ବଚନ ଏହା ଜାଣ ହେ ରାଘବ ।
ଇନ୍ଦ୍ରିୟ ସକଳ ହୋଇ ଚିତ୍ତରୁ ଉତ୍ପନ୍ନ
ତାହାରି ଦ୍ୱାରା ଚଳିତ ହେଉଥାନ୍ତି ପୁଣ ।
ଚିତ୍ତକୁ ଜିଣି ପାରିଲେ ତେଣୁ ରଘୁନାଥ
ଆପେ ଆପେ ପରାଜିତ ଇନ୍ଦ୍ରିୟ ସମସ୍ତ ।
ଯୋତା ପରିଧାନେ ପାଦେ ନ ଲାଗଇ ଧୂଳି
କଣ୍ଟା ଝଣ୍ଟା ଯଥା ପାଦେ ନ ପାରନ୍ତି ଗଳି ।
ବ୍ରହ୍ମ ଚିନ୍ତନରେ ତଥା ଚିତ୍ତକୁ ଆବୃତ୍ତ
କରନ୍ତେ ଇନ୍ଦ୍ରିୟ ଜୟ ହୁଏ ରଘୁନାଥ ।
ସଂବିତରୂପୀ ଜୀବାତ୍ମା ହୃଦେ ଅବସ୍ଥିତ
ତାକୁ ଯେବେ ବ୍ରହ୍ମାକାଶେ କରିଣ ସଂଯୁକ୍ତ,
ବ୍ରହ୍ମାକାରେ ପରିଣତ କରିପାର ରାମ
ଚିତ୍ତ ବିଜିତ ନିଶ୍ଚିତ ଭାବେ ହୁଏ ଜାଣ ।
ତାହାବଳେ ଅନାସକ୍ତି ଜନ୍ମଇ ଭୋଗରେ
ଅନାସକ୍ତି ବଳେ ଜୀବ ସବୁ କରିପାରେ ।
ଆସକ୍ତି ନ ରହେ ଯେବେ ବିଷୟ ଭୋଗରେ
ପରମ ପଦକୁ ଜୀବ ଲାଭ କରିପାରେ ।
ସେ ପରମପଦେ ଦୃଢ଼ ହୋଇଲେ ସଂସ୍ଥିତି
ବିଷୟ ବିତୃଷ୍ଣା ସିଦ୍ଧ ହେବ ରଘୁପତି ।
ତେଣୁ ଇନ୍ଦ୍ରିୟ ସକଳ ହେବେ ପରାଜିତ
ବିଷୟ ବାସନା ତ୍ୟାଗ ସର୍ବାଦୌ ଉଚିତ ।
ଶମ, ସନ୍ତୋଷ, ସମ୍ପର୍ଣ୍ଣ ଅଟେ ଯେଉଁ ଜନ
ଜିତେନ୍ଦ୍ରିୟ କହିଥାନ୍ତି ତାକୁ ଜ୍ଞାନୀଗଣ ।
ବିବେକ ସମ୍ପର୍ଣ୍ଣ ପୁଣି ଉଦାରାତ୍ମା ଯେହୁ
ଜିତେନ୍ଦ୍ରିୟ ହୋଇଥାଏ ଜାଣିରଖ ସେହୁ ।
ବାସନାରୂପ ତରଙ୍ଗ ବଳେ ସେ ବିକ୍ଷିପ୍ତ
କେବେହେଁ ହୋଇ ନ ପାରେ ଆହେ ରଘୁନାଥ ।
ଅଧ୍ୟାତ୍ମ ଶାସ୍ତ୍ର ବିଚାର, ସାଧୁସଙ୍ଗ ବଳେ
ଇନ୍ଦ୍ରିୟଙ୍କୁ ରଖିପାର ଯେବେ ଆୟତ୍ତରେ ।
ଜଗତର ସାର ଯେଉଁ ସତ୍ୟରୂପୀ ବ୍ରହ୍ମ
ଚିହ୍ନିପାରିବ ତାହାଙ୍କୁ ସହଜେ ଶ୍ରୀରାମ ।
ସତ୍ୟର ସାକ୍ଷାତ୍କାର ଘଟିପାରେ ଯେବେ
ସଂସାର-ଭ୍ରମ ନିବୃତ୍ତ ହୋଇଥାଏ ତେବେ ।
ନୁହେଁ ଦୃଶ୍ୟ ଏ ଜଗତ ଜାଣ ହେ ଶ୍ରୀରାମ
ଚିନ୍ମାତ୍ର ଆତ୍ମା ଜଗଦାକାରେ ବିଦ୍ୟମାନ ।
ଏ ଜ୍ଞାନରେ ଦୃଢ଼ଭାବେ ଆରୂଢ଼ ଯେ ଜନ
ବନ୍ଧନ ବା ମୁକ୍ତି ତାର କିଛି ନାହିଁ ଜାଣ ।
ତଚ୍ଚିତ୍ତ, ତଦ୍‌ଗତପ୍ରାଣ ହୋଇ ସେ ସେକାଳେ
ବ୍ରହ୍ମାନନ୍ଦେ ବିଚରଣ କରୁଥାଏ ହେଳେ ।

ସାମାନ୍ୟ ବୃକ୍ଷକୁ ମଧ୍ୟ ବିନା ଯତନରେ
ରକ୍ଷାକରି ନହୁଅଇ ଜାଣ ରଘୁବୀରେ ।
ତେଣୁ ବ୍ରହ୍ମତ୍ୱ ଲଭଇ ଯା'ବଳେ ଜଗତ
ବିନାଯତ୍ନେ ସେହି ତତ୍ତ୍ୱଜ୍ଞାନ ରଘୁନାଥ ।
ସିଦ୍ଧ ହୋଇବ କିପରି ହେଜ ରଘୁନାଥ୍
ବିନା ଯତ୍ନେ ସିଦ୍ଧି ପ୍ରାପ୍ତି ନୁହେଁ କଦାଚିତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ଇନ୍ଦ୍ରିୟ ଜୟ ବର୍ଣ୍ଣନେ**
**ନାମ ୭୫ ତମ ସର୍ଗଃ**



## ୭୬ତମ ସର୍ଗଃ

## ବ୍ରହ୍ମ ଓ ଜଗତର ଏକତ୍ୱ ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ସେ ଚିଦାଦିତ୍ୟରୁ ଯେଣୁ ଜଗତ ସ୍ଫୁରିତ ।
ତାର ଅବୟବ ରୂପେ ତେଣୁ ଜୀବଗଣ
ବିଦ୍ୟମାନ ରହିଛନ୍ତି ଆହେ ରଘୁରାଣ ।
ଅଗ୍ନି ଓ ତାର ସ୍ଫୁଲିଙ୍ଗ ସମ ଅବୟବ
ଚିଦାକାଶରୁ ଅଭିନ୍ନ ଜାଣ ହେ ରାଘବ ।
ଅବୟବ ହୀନ ବୋଲି ପୁଣି ସେ ପ୍ରସିଦ୍ଧ
ଅବୟବ ବିନୁ ଯେଣୁ ସବୁ କରେ ସାଧ ।
ଅନ୍ତଃକରଣ ରୂପକ ଉପାଧି ବଳରେ
ଜୀବ, ବ୍ରହ୍ମ ଭେଦ ଘଟିଥାଏ ରଘୁବୀରେ ।
ବ୍ରହ୍ମ ସାକ୍ଷାତକାର ବଳେ ସେହି ଭେଦ ପୁଣି
ବିଲୁପ୍ତ ହୋଇଣ ଯାଏ ଆହେ ରଘୁମଣି ।
ବିଦ୍ୟା ଉଦୟେ ଅବିଦ୍ୟା ହୋଇଲେ ନିରସ୍ତ
ବ୍ରହ୍ମରୁ-ଅଭିନ୍ନ-ଜ୍ଞାନ ହୁଏ ଉପସ୍ଥିତ ।
ଅବୟବ ଅବୟବୀ ମଧ୍ୟେ ସେତେବେଳେ
କିଛିମାତ୍ର ଭେଦ ରହି ନ ପାରଇ ତିଳେ ।
ଏଥିରୁ ଏପରି ମନେ ନକର ରାଘବ
ଉପାଧି ବଶରୁ ପୂର୍ବକାଳେ ଏହି ଜୀବ ।
ପରମବ୍ରହ୍ମଙ୍କଠାରୁ ଥିଲା ସେହୁ ଭିନ୍ନ
ଏକତ୍ୱ ଲଭିଛି ପରେ ପାଇ ତତ୍ତ୍ୱଜ୍ଞାନ ।
ଜୀବ ପରମ ମଧ୍ୟରେ କଉଣସି ଭେଦ
ନଥିଲା କାହିଁ ନୋହିବ ରଘୁକୁଳ ସିଦ୍ଧ ।
ତତ୍ତ୍ୱଜ୍ଞାନ ବଳେ ହୋଇ ଉପାଧି ବିମୁକ୍ତ
ଏକତ୍ୱ ଲଭିଛି ବ୍ରହ୍ମ ସହ ରଘୁନାଥ ।
ସର୍ବ ଅବସ୍ଥାରେ ବ୍ରହ୍ମ ଯେଣୁ ଭେଦହୀନ
ଆବର ଯେ ଏକରସ, ଅନାଦି ଅସୀମ ।
ଦ୍ୱୈତରୂପ ମଳ ତାଙ୍କଠାରେ କେବେହେଲେ
ରହି ନ ପାରଇ ଜାଣ ତେଣୁ ରଘୁବୀରେ ।
ତେଣୁ ଉପାଧି ହେତୁ ହିଁ ଏହି ଭେଦଜ୍ଞାନ
ଜୀବ ଦୃଷ୍ଟିରେ ପ୍ରତୀତ, ବ୍ରହ୍ମେ ନୁହେଁ ଜାଣ ।
ସେ କାରଣୁ ତୁମେ, ଆମେ ଆଦି ଭେଦଜ୍ଞାନ
ହୋଇ ନ ପାରଇ ତତ୍ତ୍ୱଜ୍ଞାନେ ସମୀଚିନ ।
କାରଣ ପରମତତ୍ତ୍ୱ ହେଲେ ସାକ୍ଷାତ୍କାର
ଭେଦାଭେଦ ଭ୍ରମଜ୍ଞାନ ହୋଇଯାଏ ଦୂର ।
ପୂର୍ବେ ବି ନ ଥିଲା କେଭେଁ ଏହି ଯେ ଜଗତ
ବର୍ତ୍ତମାନ ନାହିଁ, ନ ରହିବ ଭବିଷ୍ୟତ ।
ତେବେ ଯାହା କିଛି ଦେଖାଯାଏ ହେ ଶ୍ରୀରାମ ।
ସେ ସବୁ ଆକାର ବ୍ରହ୍ମଙ୍କର ପ୍ରକାଶନ ।
ବ୍ରହ୍ମହିଁ ଜଗତ ରାମ ଏହି ସତ୍ୟଜ୍ଞାନ
କେବଳ ଜୀବନ ମୁକ୍ତ କରନ୍ତି ଦର୍ଶନ ।
ଜଡ଼ଦ୍ରବ୍ୟ କିଛି ଅଛି ବୋଲି ତାହାଙ୍କର
କେଭେଁ ଜ୍ଞାନଗମ୍ୟ ହୁଏ ନାହିଁ ରଘୁବୀର ।
ସ୍ୱାପ୍ନିକ ଦୃଶ୍ୟରେ ଯଥା ଚିଦାକାଶ ଭିନ୍ନ
ଅନ୍ୟ କିଛି ଦେଖାଯାଏ ନାହିଁ ହେ ଶ୍ରୀରାମ ।
ଜଗତରେ ମଧ୍ୟ ସେହି ଚିତଇ ବ୍ୟତୀତ
ଅନ୍ୟ କିଛି ନ ମିଳଇ ଆହେ ରଘୁନାଥ ।
ଉପାଧିକୁ ପରିତ୍ୟାଗ କରିଦେଲେ ରାମ
ଜୀବର ଅନ୍ୟ ଆକୃତି ନ ରହଇ ଜାଣ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ବ୍ରହ୍ମ ଜଗତ ଏକତ୍ୱ**
**ପ୍ରତିପାଦନେ ନାମ ୭୬ତମ ସର୍ଗଃ**



## ୭୭ତମ ସର୍ଗଃ

## ବ୍ରହ୍ମ ଜଗତ୍ ଏକତ୍ୱ ପ୍ରତିପାଦନ ଉତ୍ତର ଭାଗ

## ନିର୍ବାଣ ପ୍ରକରଣ

ବୋଲନ୍ତି ବଶିଷ୍ଠ ଶୁଣ ଆହେ ରଘୁପତି
ଅଖ୍ୟାତି, ଅସତ୍‌ଖ୍ୟାତି ଓ ଅନ୍ୟ ଆଖ୍ୟାତି ।

ଆତ୍ମ ଖ୍ୟାତି ଆଦି କରି ସକଳ ଦର୍ଶନ
ବିଞ୍ଝ ପକ୍ଷେ ଶଶା ଶୃଙ୍ଗ ସମ ମିଥ୍ୟା ଜାଣ ।
ଜଗତ ଖ୍ୟାତି ହେ ରାମ ହେଲେ ବିଦ୍ୟମାନ
ଏହି ଚତୁର୍ବିଧ ଖ୍ୟାତି ରହିପାରେ ଜାଣ ।
କିନ୍ତୁ ଯେଣୁ ଜଗତର ଖ୍ୟାତିର ଅଭାବ
ଏହି ଚତୁଷ୍ଟୟ ଖ୍ୟାତି କାହୁଁ ସମ୍ଭବିବ ?
କିନ୍ତୁ ଜାଣି ରଖ ରାମ କୌଣସି ଖ୍ୟାତିର
ଅସ୍ତିତ୍ୱ ନାହିଁ ଏ କଥା ବୁଝ ନିରାଧାର ।
ସର୍ବ ଚିତ୍ତକ୍ରିୟା ଶୂନ୍ୟ ଯେ ପରମ ଶାନ୍ତ
ସେହି ଏକମାତ୍ର ଆତ୍ମାଛନ୍ତି ବିରାଜିତ ।
ଖ୍ୟାତିର ମୂଳ କାରଣ ଯେ ସକଳ ଭ୍ରାନ୍ତି
ଚିନ୍ମାତ୍ର ଆତ୍ମାଙ୍କଠାରୁ ତାଙ୍କର ଉତ୍ପତ୍ତି ।
କିନ୍ତୁ ଚିଦ୍‌ବ୍ୟୋମରୂପୀ ସେହି ଆତ୍ମାଠାରେ
ଯାହାସବୁ କଳପନା ହୁଏ ରଘୁବୀରେ ।
ଚିନ୍ମୟ ସ୍ୱଦୃଶ ତାହା ଦେଖୁଅଛି ମୁହିଁ
ସେ ଚିନ୍ମୟ ବିନାଭବେ ଅନ୍ୟ କିଛି ନାହିଁ ।
ନାନାବିଧ କ୍ରିୟାମୟ ହେଲେ ହେଁ ଜଗତ
ବାସ୍ତବରେ କ୍ରିୟାହୀନ ଏହା ରଘୁନାଥ ।
ଆକାଶ ପରି ନିର୍ମଳ, ନିସ୍ତବ୍ଧ ଅନନ୍ତ
ଅଦ୍ଭୁତ ଠାରୁ ଅଦ୍ଭୁତ ଅଟେ ଏ ଜଗତ ।
କହନ୍ତି ଶ୍ରୀରାମ ଜଗତ ପ୍ରକାଶରୁ ପ୍ରତି
ସ୍ମୃତି ହିଁ କାରଣ, ଏହା ମନେ ହୁଏ ଯତି ।
ତେଣୁ ସ୍ମୃତି ହେତୁ ଜଗତ୍ ହୁଏ ଦୃଶ୍ୟମାନ
ଭ୍ରାନ୍ତି ବଶେ ନୁହେଁ ଜାଣ ଆହେ ତପୋଧନ ।
କହନ୍ତି ବଶିଷ୍ଠ ଶୁଣ ରଘୁବଂଶ ମେରୁ
ଆକାଶମୟ ଚିତ୍‌ସତ୍ତା ସ୍ଫୁରଣ ହେତୁରୁ ।
ଯେଉଁ ଶରୀର ତହିଁରେ ହୁଅଇ ପ୍ରତୀତ
ତାହାର ନାମ ଜଗତ୍ ଜାଣ ରଘୁନାଥ ।
ସ୍ୱରୂପମୟ ନିମିତ୍ତ ଶୂନ୍ୟ ଏ ଜଗତ
ପରମାତ୍ମାଠାରେ ବିଦ୍ୟମାନ ସେ ସତତ ।
ଯେହୁ କିଛି ନୁହେଁ, କିନ୍ତୁ ହୁଏ ପ୍ରତିଭାତ
ନିର୍ମଳ ବ୍ରହ୍ମର ସେ ସ୍ୱଭାବ ରଘୁନାଥ ।
ସେହି ଚୈତନ୍ୟ ଯୋଗେ ହିଁ ତୁରୀୟ, ସୁଷୁପ୍ତି
ସ୍ୱପ୍ନ, ଜାଗ୍ରତ ଅବସ୍ଥା ଜାଣ ରଘୁପତି ।
ନିଜଠାରେ ନିଜକୁ ସେ ପ୍ରକାଶ କରନ୍ତି
ଅଚିନ୍ତ୍ୟ ବିଚିତ୍ର ଅଟେ ତାହାଙ୍କର ରୀତି ।

ବାସ୍ତବରେ ଏ ସକଳ କିଛିମାତ୍ର ନାହିଁ
ଏକାକୀ ପରମାକାଶ ବିରାଜୁ ଅଛଇ ।
ପକ୍ଷାନ୍ତରେ ବୁଝିବାକୁ ଗଲେ ସବୁ ସେହି
ସର୍ବଦା ସେ ଜାଗରଣଶୀଳ ରଘୁସାଇଁ ।
କାରଣ ଏ ଚିଦାତ୍ମାର ନିଦ୍ରା ଅସମ୍ଭବ
ସଦା ସ୍ୱପ୍ନମୟ ସେହୁ ହେ ରଘୁପୁଙ୍ଗବ ।
ତାଙ୍କଠୁଁ ଯା କିଛି ହୋଇଅଛି ଉତପନ୍ନ
ସେ ସବୁ କେବଳ ଭ୍ରାନ୍ତିମୟ ହେ ଶ୍ରୀରାମ ।
ଅଥଚ ସର୍ବଦା ସୁପ୍ତ ଅଚିନ୍ତ୍ୟ ଯେ ସେହି
ଯେଣୁ ଅବିଦ୍ୟାବରଣ ପ୍ରକାଶ କରଇ ।
ଆଉ ମଧ୍ୟ ସର୍ବଦା ସେ ଅଚିନ୍ତ୍ୟ ତୁରୀୟ
ତାହାର କାରଣ ଏବେ ଶୁଣ ରଘୁରାୟ ।
ଜାଗରଣ ଆଦି ତିନିଭାବ ଅତିକ୍ରମୀ
ଏକମାତ୍ର ବିରାଜନ୍ତି ସେହି ଦେବସ୍ୱାମୀ ।
ଆଉମଧ୍ୟ ଅଚିନ୍ତ୍ୟ ସେ ତୁରୀୟ ଅତୀତ
ଯେଣୁ ସେ ବର୍ଣ୍ଣନାତୀତ ଆହେ ରଘୁନାଥ ।
ସଂବିତର ସ୍ଫୁରଣ ବ୍ୟତୀତ ଅନ୍ୟ କିଛି
ନୁହଁନ୍ତି ଏ ସବୁ ଜାଣ ଆହେ ରଘୁବଂଶି ।
ସେ ସମ୍ବିତ ପରଂ ଚିଦ୍‌ବ୍ୟୋମ ଅଳଙ୍କାର
ଏ ଜଗତ ଅବୟବ ଅଟେ ସମ୍ବିତର ।
ତେଣୁ ଜଗତର ନାହିଁ ଉଦୟ ବା ଅସ୍ତ
ଏହି କଥା ସତ୍ୟ ବୁଝ କଉଶଲ୍ୟା ସୁତ ।
ପ୍ରଳୟ, ସୃଷ୍ଟି ରୂପକ ଯେ ରାତ୍ରି ଦିବସ
ପ୍ରକାଶ ପାଇଣ ଥାଏ ହେ ରଘୁ ବିଳାସ ।
ତାହା ଏହି ସମ୍ବିତର କେଶ ଆଉ ନଖ
ହେ ରାଜ ତନୟ ଏହା ମନେ ହେଜ ରଖ ।
ସେ ସଂବିତ ପ୍ରକାଶର ନାମ ଅଟେ ଚିତ୍
ତାର ଅପ୍ରକାଶ ମାୟା ନାମରେ ବିଦିତ ।
ବାୟୁ ପ୍ରବାହ ସଦୃଶ ଏହି ଯେ ସମସ୍ତ
ସେ ମହାଚିତ ସ୍ପନ୍ଦନ ମାତ୍ର ରଘୁନାଥ ।
ତେଣୁ କରି ଜାଗରଣ ଅଥବା ସ୍ୱପନ
ଏସବୁ ନୁହଁନ୍ତି କିଛି ହେ ରଘୁନନ୍ଦନ ।
ଏ ସକଳ କାରଣରୁ ହେ ରଘୁନାୟକ
ଏ ଦୃଶ୍ୟମାନ ଜଗତ ନୁହେଁ ଭଉତିକ ।
ଏହା ସବୁ ସେ ଚିତର ସ୍ୱଭାବ ହିଁ ମାତ୍ର
ଯଦି ରହେ ଭଉତିକ ଜଗତ ଅସ୍ତିତ୍ୱ ।

ତାହାର ଅନୁଭବରୁ ସ୍ମୃତି ଜନମଇ
ସେ ସ୍ମୃତି ଆଦି ସୃଷ୍ଟିର ହେତୁ ହୋଇଥାଇ ।
ଯେଣୁ ଭୌତିକ ଜଗତ ଅସ୍ତିତ୍ୱ ନ ଥାଇ
ସ୍ମୃତିରୁ ଜଗତ୍ ପ୍ରକାଶ କେହ୍ନେ ସମ୍ଭବଇ ?
ସେ ଜନଙ୍କ ସମୀପରେ ଏହି ଯେ ଜଗତ
ବିରାଟ ଆକାର ଧରି ହୁଏ ପ୍ରତିଭାତ ।
ତତ୍ତ୍ୱଜ୍ଞାନୀଙ୍କ ଦୃଷ୍ଟିରେ ସେହି ଯେ ଜଗତ
ଆକୃତି ସମ୍ପନ୍ନ ନୁହେଁ ଜାଣ ରଘୁନାଥ ।
ଏହି ଚିଦ୍‌ଘନ ଆତ୍ମା ଅଖଣ୍ଡିତ ରୂପେ
ବିରାଜମାନ କରନ୍ତି ଜ୍ଞାନୀଙ୍କ ସମୀପେ ।
ଏହି ଚିଦାକାଶ ଯେତେବେଳେ ଯାହା ଭାବେ
ବ୍ୟବହାର ପାଇଁ ତାହା ପରକାଶେ ତେବେ ।
ଯେତେବେଳେ ହୋଇଯାଏ ଭାବନା ଅଭାବ
ଦୂରୀଭୂତ ହୋଇଯାଏ ତା ପ୍ରକାଶ ଭାବ ।
ତେଣୁ କରି ଜଗତର ଉଦୟ ବା ଅସ୍ତ
କଳପିତ ହୋଇଥାଏ ଆହେ ରଘୁନାଥ ।
ବାସ୍ତବିକ ଚିଦ୍‌ଘନ ଆତ୍ମା ନିତ୍ୟୋଦିତ
ମହାଚିତ୍‌ର ପ୍ରକାଶ ଆକାଶର ବତ୍ ।
ସେହି ଯେ ଆକାଶମୟ ପ୍ରକାଶକୁ ତାର
ପୃଥିବୀ ଆଦି ରୂପରେ କରେ ବ୍ୟବହାର ।
ଏହି ଅବ୍ୟୟ ଚିଦାତ୍ମା 'ମୁଁ ପୃଥିବୀ' ବୋଲି
ନିଜକୁ ହିଁ ଅନୁଭବ କରେ ଋପଧାରୀ ।
ସେ ଅନୁଭବ ହେତୁରୁ ଅବ୍ୟୟ ଚିଦାତ୍ମା
ପୃଥିବୀ ଆକାରେ ଉଦେ ହୁଏ ହେ ମହାତ୍ମା ।
ଚିଦାକାଶେ ଯେ ସକଳ କାମନା ସ୍ଫୁରିତ
ତାହାହିଁ ଜଗଦାକାରେ ହୁଏ ପ୍ରକାଶିତ ।
ପୃଥିବୀ ଭୌତିକ ନୁହେଁ ଜାଣ ରଘୁନାଥ
ଆକାଶମୟ ଜଗତ ଆକାଶେ ହିଁ ସ୍ଥିତ ।
କେଉଁ ବସ୍ତୁ ସତ ପୁଣି କେ ଅବା ଅସତ
ତତ୍ତ୍ୱଜ୍ଞ ମାତ୍ରେ ହିଁ ଜାଣିଛନ୍ତି ରଘୁନାଥ ।
ତାଙ୍କୁ ହିଁ ଦର୍ଶନ ହୁଏ ଯାବତୀୟ ତତ୍ତ୍ୱ
ଅନ୍ୟମାନେ ଜାଣିବାକୁ ନୁହଁନ୍ତି ସମର୍ଥ ।
ଆତ୍ମାରୂପେ ସର୍ବ ହୃଦୟରେ ଅଧିଷ୍ଠାନ
ସେହୁ କରିପାରେ ଯାର ହୁଏ ତତ୍ତ୍ୱଜ୍ଞାନ ।
ତେଣୁ ତାହାଙ୍କଠାରୁ ଅନ୍ୟ ଉତ୍କୃଷ୍ଟ ଜ୍ଞାତା
କେହି ହୋଇ ନ ପାରନ୍ତି ହେ ବିଶୁଦ୍ଧ ଚେତା ।
ଦୃଶ୍ୟ, ଦ୍ରଷ୍ଟା ପୁଣି ବାହ୍ୟ ଅନ୍ତରାଦି ଭେଦ
ତାଙ୍କଠାରେ ପରିଦୃଷ୍ଟ ନୁହେଁ ଏ ପ୍ରମାଦ ।
ସଦା ଶାନ୍ତ ଶିବ ରୂପେ ତାଙ୍କ ଅବସ୍ଥାନ
ପରମ ପଦରେ ସଦା ରହିଥାନ୍ତି ଲୀନ ।
ସେ ପରମ ପଦେ ରାମ ନିଷ୍ଠାବାନ ରହି
ମୁକ୍ତି ଲାଭ କର ମୋର ଉପଦେଶ ଏହି ।

## ଶାଳ ଭଞ୍ଜନ ଉପଦେଶ

କହନ୍ତି ବଶିଷ୍ଠ ପୁଣି ଶୁଣ ହେ ଶ୍ରୀରାମ
ନିଜଠାରେ ପରମାତ୍ମା ଯେ ଗଗନୋପମ ।
ଜଗତ ପ୍ରପଞ୍ଚ ଯାହା କରନ୍ତି ବିସ୍ତୃତ
ତାଙ୍କ ବୁଦ୍ଧି ତହିଁ ମଧ୍ୟେ ନ ଥାଇ ଜଡ଼ିତ ।
ସାଗରେ ତରଙ୍ଗ ସ୍ୱତଃ ଉଠଇ ଯେସନ
ଆକାଶ ବପୁ ଈଶ୍ୱର ମଧ୍ୟରୁ ତେସନ ।
ବୁଦ୍ଧି ସଂଯୋଗ ବ୍ୟତୀତ ଏହି ଯେ ଜଗତ
ପ୍ରତିଭାସିତ ହୁଅଇ ଜାଣ ରଘୁନାଥ ।
ପରେ ସ୍ୱୀୟ ସମ୍ବିତକୁ ଜଗତ ଆକାରେ
ଆକାରିତ କରନ୍ତି ସେ ନିଜେ ରଘୁବୀରେ ।
ମନ, ବୁଦ୍ଧି, ଅହଙ୍କାର ଇତ୍ୟାଦି ଯେ ନାମ
ନିଜେ ସେହି ସମ୍ବିତକୁ କରନ୍ତି ପ୍ରଦାନ ।
ବୁଦ୍ଧି ରୂପେ ପରକାଶ ପାଇବାର ପରେ
ସଂକଳ୍ପାତ୍ମକ ସୃଷ୍ଟି ଯା' ହୁଏ ରଘୁବୀରେ ।
ତାହା ହିଁ ବୁଦ୍ଧି ପୂର୍ବକ ସୃଷ୍ଟି ବୋଲି ଖ୍ୟାତ
ସ୍ୱକୀୟ ସମ୍ବିତ ତାହା କରେ ରଘୁନାଥ ।
କାନ୍ଥରେ ଚିତ୍ରିତ ହେଲେ ଜଗତ ଯେପରି
କାନ୍ଥରୁ ନୁହଇ ଭିନ୍ନ ଯଥା ଋପଧାରୀ ।
ଚିତ୍ ଆକାଶେ ଉଦିତ ଏ ଜଗଦାଭାସ
ଅନ୍ୟ କିଛି ନୁହେଁ ମାତ୍ର ଅଟେ ଚିଦାକାଶ ।
ଚିଦାକାଶରେ ଉଦିତ ଯେ ପ୍ରପଞ୍ଚମାନ
ବିଭିନ୍ନ ନାମରେ ଯାହା ବିଦିତ ଶ୍ରୀରାମ ।
ଚିଦାତ୍ମା ହିଁ ନିଜେ ସେହି ନାମକୁ ପ୍ରଦାନ
କରିଥାନ୍ତି ଜାଣ ଆହେ କୌଶଲ୍ୟା ନନ୍ଦନ ।
ଏହି ପ୍ରପଞ୍ଚ ସକଳ ସେ ଚିଦ୍‌ବୃକ୍ଷର
ଶାଖା ପଲ୍ଲବାଦି ଜାଣ ଆହେ ରଘୁବୀର ।
ଏ ସକଳ ପ୍ରପଞ୍ଚାଦି ଯେଣୁ କରି ଚିତ
ଶାଖା ପଲ୍ଲବଙ୍କ ସ୍ଥାନ କାହିଁ ରଘୁନାଥ ?

ଚିଦ୍‌ବୃକ୍ଷେ ସ୍ଥାଣୁ ରୂପେ କରି ଅବସ୍ଥାନ
ଏ ଶାଖା ପଲ୍ଲବ ଆଦି ସ୍ୱପ୍ନ ଯୋଗୁଁ ଜାଣ ।
କାର୍ଯ୍ୟ କାରଣ ଭାବରେ ଲଭନ୍ତି ପ୍ରକାଶ
ଏହି କଥା ମନେରଖ ହେ ରଘୁ ବିଳାସ ।
ସାକାର ବୃକ୍ଷର ସାକାରତା ଦୃଷ୍ଟାନ୍ତରେ
ଚିରତର ଏହି ପାର୍ଥକ୍ୟ ଜାଣ ରଘୁବୀରେ ।
ନିରାକାର ଚିଦାକାଶ କଳପନା ବଳେ
ପ୍ରପଞ୍ଚ କଳ୍ପିତ ହୁଏ ଦଶରଥ ବାଳେ ।
ବାୟୁରେ ପ୍ରବାହ ରହିଥାଏ ଯେଉଁପରି
ଚିଦାକାଶେ ବୁଦ୍ଧି ଆଦି ଜାଣ ସେହିପରି ।
ଅଗ୍ନି ଓ ଉତ୍ତାପ ଯଥା ନ ହୁଅନ୍ତି ଭିନ୍ନ
ତଥା ଏ ଜଗତ ଚିଦାକାଶରୁ ଅଭିନ୍ନ ।
ସୃଷ୍ଟି ଆଦ୍ୟକାଳେ ଚିଦାକାଶର କର୍ତ୍ତୃକ
ଯାହାକି ଇକ୍ଷିତ ହୁଏ ହେ ରଘୁନାୟକ ।
କୌଣସି ହେଲେ କାରଣ ତାହାପାଇଁ ରାମ
ନ ଥିଲା ଏ ଗୂଢ଼ ତତ୍ତ୍ୱ ଘେନାକର ମନ ।
ତେଣୁ କରି ତାହା ଏହି ଚିଦାକାଶ ଠାରୁ
କିପରି ବା ଭିନ୍ନ ହେବ ରଘୁକୁଳ ମେରୁ ?
କାରଣ ନ ଥାଇ ଯାହା ହୁଅଇ ଉତ୍ପନ୍ନ
ଉତ୍ପନ୍ନ ହୋଇଲେ ସୁଦ୍ଧା ନୁହେଁ ଉତପନ୍ନ ।
ପୁଣି ଯାହା ଅନୁତ୍ପନ୍ନ ତାହା ହେ ଶ୍ରୀରାମ
ସମ, ଆଦ୍ୟ ଏକଭାବେ ରହେ ବିଦ୍ୟମାନ ।
ଏଣୁ ଏ ଜଗତ ଭ୍ରମ, ଅସତ, କୃତ୍ରିମ
ଚିନ୍ମୟ ଆତ୍ମା ହିଁ ସତ୍ୟ ପୁଣି ଅକୃତ୍ରିମ ।
ସଂକଳ୍ପମୟ ଜଗତ ବିସ୍ମୃତି ହିଁ ଭ୍ରମ
ତା' ତତ୍ତ୍ୱଗତ ସ୍ଫୁରଣ ନାମ ତତ୍ତ୍ୱଜ୍ଞାନ ।
ଜଡ଼ ଆକାରରେ ତାକୁ କରନ୍ତେ ଦର୍ଶନ
ସେ ଦର୍ଶନ କିଛି ନୁହେଁ କେବଳ ଅଜ୍ଞାନ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ତପୀସାଇଁ
ସ୍ମୃତି ଅନୁସରଣରେ ଯେବେ ସୃଷ୍ଟି ନୋହି ।
କଳ୍ପନାମୂଳକ ଯେବେ ସୃଷ୍ଟିର ଉତ୍ପତ୍ତି
ଅନୁଭବ ସଂସ୍କାର ହିଁ ଅଟେ ଯେଉଁ ସ୍ମୃତି ।
ସେ ସ୍ମୃତିରୁ ଯେ ପ୍ରତ୍ୟକ୍ଷ ଜ୍ଞାନ ଉତପତ୍ତି
ଏ ନିୟମ ସ୍ଥାନ, କେଉଁଠାରେ ବ୍ରହ୍ମପତି ।
କହନ୍ତି ବଶିଷ୍ଠ ମୁନି ଶୁଣ ହେ ଶ୍ରୀରାମ
ଜଗତ ବ୍ରହ୍ମସତ୍ତାରେ ନିତ୍ୟ ସତ୍ତାବାନ ।
ଚିଦାତ୍ମା ପ୍ରତିଭାସରେ ହେଲେ ହେଁ ପ୍ରକାଶ
କେବେ ଏହା ପ୍ରକାଶିତ ଭବେ ରଘୁଈଶ ।
କେବେ ଅବା ଅପ୍ରକାଶପରି ଭାସମାନ
ହେଉଥାଏ ଜାଣ ଆହେ କୌଶଲ୍ୟା ନନ୍ଦନ ।
ଅଖୋଦିତ ମୂର୍ତ୍ତୀ କାଷ୍ଠେ ରହିଥିଲା ପରି
ଚିଦାକାଶ ମଧ୍ୟେ ଏହି ଜଗତ ସେପରି ।
ଅପରିସ୍ଫୁଟ ଭାବରେ ରହେ ବିଦ୍ୟମାନ
ଏହି କଥା ହେତୁ ରଖ ହେ ରଘୁନନ୍ଦନ ।
ଶିଳ୍ପୀ ଯଥା ସେହି କାଷ୍ଠେ ଖୋଳଇ ମୂରତି
ଚିଦ୍‌ରୂପ-ସ୍ତମ୍ଭେ ଅନ୍ୟ କେହି ରଘୁପତି ।
ଜଗତ ପୁତ୍ତଳିକା କରି ନ ପାରେ ଖୋଦିତ
ତେଣୁ ତାର କେହି କର୍ତ୍ତା ନାହିଁ ରଘୁନାଥ ।
ଆବରଣ ହୀନ ଚିଦାତ୍ମାର ଅନ୍ତରରେ
ଏ ଜଗତ ଅଭିବ୍ୟକ୍ତ ଥାଏ ରଘୁବୀରେ ।
ଯେବେ କହ ପ୍ରଳୟ ଓ ସୁଷୁପ୍ତି କାଳରେ
ଏ ଜଗତ ନଷ୍ଟ ନୋହି ରହେ କି ପ୍ରକାରେ ।
ଉତ୍ତର ସ୍ୱରୂପ ଏହା କୁହାଯାଇପାରେ
ସତ୍ତା ସାମାନ୍ୟ ଆକାରେ ଜଗତ ସେକାଳେ ।
ଚିଦାତ୍ମାରେ କରିଥାଏ ସେହି ଅବସ୍ଥାନ
ଏଥିରେ ସନ୍ଦେହ ନାହିଁ ହେ ରଘୁନନ୍ଦନ ।
ପରେ ସୃଷ୍ଟିର ପ୍ରଥମେ ସେହି ଚିଦାକାଶ
କଳପଇ ଏ ଜଗତ ସ୍ୱୀୟ ହୃଦାକାଶ ।
ସତ୍ତା ସାମାନ୍ୟ ସ୍ୱରୂପ ଏ ଜଗତ ବୀଜ
ବ୍ରହ୍ମେ ଚିନ୍ମାତ୍ର ରୂପରେ ବିକାଶ ତା ତେଜ ।
ପ୍ରତିବିମ୍ବିତ ଚିତ୍ ରୂପେ ହୁଏ ବିରାଜିତ
ପୁନର୍ବାର ତାହା ହୋଇ ପ୍ରାଣ ସମନ୍ୱିତ ।
ଜୀବ, ଅହଙ୍କାର, ବୁଦ୍ଧି, ଚିତ୍ତ, କ୍ରିୟା, କାଳ,
ଆକାଶ, ଇନ୍ଦ୍ରିୟ ପୂର୍ଯ୍ୟଷ୍ଟକାଦି ସକଳ ।
ଆକାରେ ପ୍ରକାଶମାନ ହୁଏ ରଘୁବାଳ
ତେଣୁ କରି ଜାଣ ଚିଦାକାଶ ଏ ସକଳ ।
ଅଜ୍ଞଜନ ପରିଦୃଷ୍ଟ ଏ ଜଡ଼ ଜଗତ
ତାହାର ସ୍ମୃତି ଆବର ଏକତ୍ୱ ବହୁତ୍ୱ ।
ଇତ୍ୟାଦିର ସ୍ଥାନ କାହିଁ ହେ ରଘୁନନ୍ଦନ
ଅବିବେକୀ ମାତ୍ର ଏଠି ଧନ୍ଦି ହୁଏ ଜାଣ ।
ତେଣୁ କହୁଅଛି ଚିଦାକାଶେ ଚିଦାକାଶ
ସ୍ଫୁରିତ ହେଉ ଅଛଇ ହେ ରଘୁବିଳାସ ।

ଚିନ୍ମୟ ଆତ୍ମା ଚିନ୍ମୟ ଜଗତ ଲକ୍ଷଣ
କରି ବିରାଜୁ ଅଛନ୍ତି ହେ ରଘୁନନ୍ଦନ ।
ଏ ରୂପ ଯଥାର୍ଥ ଜ୍ଞାନ ଜଗତ ବିଷୟେ
ଉଦିତ ହେଲେ ଜଗତ ଆଉ ତ ନ ରହେ ।
ତେତେବେଳେ ସେହୁ ଆତ୍ମା ମଧ୍ୟରେ ହିଁ ଜାଣ
ପର୍ଯ୍ୟବସିତ ହୋଇଣ ରହେ ରଘୁରାଣ ।
ଏକମାତ୍ର ଚିଦାକାଶ ଯେହେତୁ ସ୍ଫୁରିତ
ସ୍ୱପ୍ନ, ସ୍ମୃତି, କାଳ, କଳ୍ପନାଦିର ଅସ୍ତିତ୍ୱ ।
କାହିଁ ସମ୍ଭବି ପାରିବ ହେ ବଶିଷ୍ଠ ଶିଷ୍ୟ
ଭାବୁଥିଲେ ନ ପାଇବ ରଜନୀ ଦିବସ ।
ଚିଦ୍‌ଘନ ଆତ୍ମା ସ୍ୱୀୟ ହୃଦୟ ମଧ୍ୟରେ
ଯେ ହୃଦୟମୟ ବିଶ୍ୱ ଦରଶନ କରେ ।
ସେ ଆତ୍ମାମୟ ଜଗତ ଅଜ୍ଞାନୀ ଦୃଷ୍ଟିରେ
ପ୍ରତିଭାତ ଭଉତିକ ଜଗତ ଆକାରେ ।
ବ୍ରହ୍ମପରି ଚିନମାତ୍ର ଜଡ଼ଭାବ ଶୂନ୍ୟ
ବାସ୍ତବରେ ଏ ଜଗତ, ଜାଣ ହେ ଶ୍ରୀରାମ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମ ଜଗତ୍ ଏକତ୍ୱ ପ୍ରତିପାଦନ ବର୍ଣ୍ଣନେ ନାମ ୭୬ତମ ସର୍ଗଃ**



## ୭୭ତମ ସର୍ଗଃ
## ବିଶ୍ରାନ୍ତ-ଚିତ୍ତ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ମୁକତ ଜନର ଅଟେ ଯେବଣ ବେଭାର ।
ଯାହାକୁ ସୁଖ ବା ଦୁଃଖ ଜନକ ବିଷୟ
ସୁଖ ଦୁଃଖ ଦେଇପାରେ ନାହିଁ ରଘୁରାୟ ।
ଯେ ଜନ ଅନ୍ତରଦୃଷ୍ଟି ସମ୍ପୂର୍ଣ୍ଣ ହୋଇଣ
ପ୍ରତ୍ୟକ୍ଷ ଚୈତନ୍ୟେ କରିଥାଏ ଅବସ୍ଥାନ ।
ଅବିଚଳିତ ଭାବରେ ଚିଦାକାଶେ ଯେହୁ
ସ୍ଥିତି ଲାଭ କରିଥାଏ ଜାଣ ମୁକ୍ତ ସେହୁ ।
ଏକାନ୍ତ ନିଷ୍ଠାବଶତଃ ଚିଦାକାଶେ ଯେହୁ
ସଦା ବିଶୁଦ୍ଧ ଜ୍ଞାନରେ ବୁଡ଼ିରହେ ସେହୁ ।
ଜୀବନ୍ମୁକ୍ତ ପୁରୁଷ ସେ ଜାଣହେ ରାଘବ
ଅଜ୍ଞାନରୁ ଯେଣୁ ସର୍ବ ସନ୍ଦେହ ଉଦ୍ଭବ ।
ଅଜ୍ଞାନ ବିନାଶେ ଯାର ସମସ୍ତ ସନ୍ଦେହ
ଦୂରୀଭୂତ ହୋଇଅଛି ହେ ରଘୁତନୟ ।
ଜାଗତିକ ବ୍ୟବହାରେ ହେଲେ ହେଁ ଆବଦ୍ଧ
ଅନୁରାଗ ବା ବିରାଗ ନ ଧାରେ ଯା ହୃଦ ।
ଆକାଙ୍‌କ୍ଷା ଆବର ସଙ୍କଳପ ଶୂନ୍ୟ ହୋଇ
ସକଳ କରମ ଯେଉଁ ଜନ ସମ୍ପାଦଇ ।
ପରମ ପଦେ ବିଶ୍ରାମ ସେହିମାନଙ୍କର
ହୋଇଅଛି ବୋଲି ଜାଣିରଖ ରଘୁବୀର ।
ଆଶ୍ରୟ, ବିଶ୍ରାମହୀନ, ସଂସାର ପଥରେ
ଆତ୍ମାକୁ ଚିନ୍ମୟ ଜାଣି ଯେ ଜନ ତହିଁରେ ।
ଆଶ୍ରୟ, ବିଶ୍ରାମ ଲାଭ କରିଥାଏ ରାମ
ଯଥାର୍ଥ ବିଜୟୀ ସେହି ଏ କଥା ଜାଣିମ ।
ବିଶ୍ରାନ୍ତ ହୋଇଛି ଯେଣୁ ସ୍ୱ ଆତ୍ମା ମଧ୍ୟରେ
କର୍ମ କରୁଥିଲେ ମଧ୍ୟ ନିର୍ଲିପ୍ତ ତହିଁରେ ।
ବିଷୟ ପ୍ରତି ଅନବଧାନ ଯେହୁ ରହେ
ମୁକ୍ତ ପୁରୁଷ ମଧ୍ୟରେ ସେହୁ ଗଣ୍ୟ ହୁଏ ।
ଦ୍ରଷ୍ଟା ଓ ଦୃଶ୍ୟ ବିହୀନ ସ୍ୱୀୟ ଚିଦାକାଶେ
ନିତ୍ୟୋଦିତ ସୂର୍ଯ୍ୟ ରୂପେ ସେ ଜନ ବିଳସେ ।
ବାହାରକୁ ଦେଖାଯାଏ ମୂଢ଼ଜନ ସମ
ଅନ୍ତରେ ପରମାନନ୍ଦେ ରହେ ସେ ନିମଗ୍ନ ।
ବାକ୍ୟ ଉଚ୍ଚାରଣ କେଉଁ ନ କରଇ ସେହି
'ସୁଖମୌନ' ନାମ ସେହି ଜନ ଅରଜଇ ।
ବାସ୍ତବିକ ଜଡ଼ଧର୍ମୀ, ମୂଢ଼ ଯେଉଁ ଜନ
ସୁଖମୌନୀ ହୋଇ ନ ପାରେ ସେ କଦାଚନ ।
ଅଜ୍ଞାନୀର ଯାହା ଦିନ ଜ୍ଞାନୀର ତା ରାତ୍ର
ଜାଗ୍ରତ ଯେ କାଳେ ଜ୍ଞାନୀ, ଅଜ୍ଞାନୀ ସୁଷୁପ୍ତ ।
ବିଷୟ, ଆସକ୍ତି ହେତୁ ଅଜ୍ଞାନୀ ସୁଷୁପ୍ତ
ବିଷୟ ଆସକ୍ତି ବିନା ସୁଜ୍ଞାନୀ ଜାଗ୍ରତ ।
ଜାଗ୍ରତାବସ୍ଥାରେ ମୁକ୍ତ ଆତ୍ମକ୍ରୀଡ଼ା କରେ
ଅଜ୍ଞାନୀ ଜନ ସେ କାଳେ ବିଷୟରେ ବୁଡ଼େ ।
କର୍ମରେ ଅନାସ୍ଥା ରଖି ଯେହୁ ଆତ୍ମସ୍ଥିତ
ଆତ୍ମାରାମ ନାମେ ସେହି ଜନ ପରିଚିତ ।
ଦୁଃଖ ଅତିକ୍ରମି ସେହୁ ଭବସିନ୍ଧୁ ପାର
ହୋଇଥାଏ ମନେରଖ କୌଶଲ୍ୟା କୁମର ।
ଭୋଗ ଲୋଲୁପ ଦୁର୍ଗମ ସଂସାର ପଥରେ
ଅସହାୟ ଭାବେ ଭ୍ରମୁଥାଏ ନିରନ୍ତରେ ।

ସୁଖଛାୟା ତାର ସେହି ସଂସାର ପଥରେ
ନିତାନ୍ତ ଦୁର୍ଲଭ ଜାଣ ଆହେ ରଘୁବୀରେ ।
ପାପହିଁ କେବଳ ତାର ଏକହିଁ ପାଥେୟ
ପ୍ରତିପଦେ କ୍ଷୟକ୍ଷତି ତାହାର ନିଶ୍ଚୟ ।
ଆତ୍ମବାନ ପୁରୁଷର ସମଗ୍ର ଜଗତ
କରତଳଗତ ଜାଣ ଆହେ ରଘୁନାଥ ।
ପରମପୂର୍ଣ୍ଣତା ଲାଭ କରିଣ ସେମାନେ
ସୁଖରେ ଶୟନ କରିଥାନ୍ତି ଅନୁକ୍ଷଣେ ।
ଅଦ୍ୱୈତ ସୁଖରେ ସଦା ରହନ୍ତି ନିମଗ୍ନ
ନିଜଦ୍ୱାରା ନିଜେ ହେଉଥାନ୍ତି ପ୍ରକାଶନ ।
ଲୋଡ଼ନ୍ତି ନାହିଁ କୌଣସି ସହାୟତା ଅନ୍ୟ
ତେଣୁ ସେ ଶୟନ ତାଙ୍କ ସୁଖର ଶୟନ ।
ଏବଂ ବିଧ ଆତ୍ମବାନ ପୁରୁଷ ଆତ୍ମାକୁ
ଅଣୁଠାରୁ ସୂକ୍ଷ୍ମ ବୋଲି ମଣନ୍ତି ତାହାକୁ ।
ପୁଣି ସ୍ଥୁଳ ଠାରୁ ସ୍ଥୁଳ ତାହାକୁ ମଣନ୍ତି
ଅନନ୍ତ ଚିଦାକାଶରେ ଶାୟିତ ରହନ୍ତି ।
ଏ ଅନନ୍ତ ଜଗତକୁ ହୃଦୟେ ଧରିଣ
ସୁଖେ ଶୟନ କରନ୍ତି ସେହି ଆତ୍ମବାନ ।
ସୃଷ୍ଟି, ସ୍ଥିତି, ଲୟକ୍ରିୟା ତା ଠାରୁ ନିର୍ଗତ
ଅଥଚ କାହିଁରେ ସେହୁ ନ ଥାଏ ସଂପୃକ୍ତ ।
କେବଳ ଆତ୍ମ ଆଲୋକ ଶଯ୍ୟାରେ ସେ ଜନ
ଶାୟିତ ରହନ୍ତି ଜାଣ ହେ ରଘୁନନ୍ଦନ ।
ଯେ କାଳେ ଜଗତ ପ୍ରତି କରେ ଦୃଷ୍ଟିପାତ
ସତ୍ତା ସାମାନ୍ୟ ଆକାରେ ଥାଇ ସେ ମହତ ।
ଗଗନଠାରୁ ବ୍ୟାପକ ଭାବ ଧରି ସେହି
ଏ ସୁଖ ଶୟନେ ସେହୁ ରହିଥାଏ ଶୋଇ ।
ସେହି ଜୀବନ ମୁକତ ପୁରୁଷ ମହତ
ପୂର୍ବ ଜନ୍ମମାନଙ୍କର ମିତ୍ରଙ୍କ ସହିତ ।
ବିହରଣ କରି କରି ଆୟୁ ଶେଷଯାଏ
ଏହି ରୂପେ ଅବସ୍ଥାନ କରେ ରଘୁରାୟେ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ବିଶ୍ରାନ୍ତି ଚିତ୍ତ ବର୍ଣ୍ଣନେ**
**ନାମ ୭୭ତମ ସର୍ଗଃ**



## ୭୮ତମ ସର୍ଗଃ

## ତତ୍ତ୍ୱଜ୍ଞାନ ବ୍ୟବହାର

କହନ୍ତି ଶ୍ରୀରାମ କହ ଆହେ ତପୋଧନ
ସେ ଜୀବନମୁକତଙ୍କ ମିତ୍ର କେଉଁମାନ ?
ସେମାନଙ୍କ ସହ ତାଙ୍କ ବିହାର କିପରି
ବୁଝାଇ କହିବା ହେଉ ଆହେ ତପଚାରୀ ।
କହନ୍ତି ବଶିଷ୍ଠ ରାମ ତାହା ଏବେ ଶୁଣ
ସେହି ଜୀବନମୁକ୍ତଙ୍କ ମିତ୍ର ଯେଉଁମାନ ।
ଅଧ୍ୟାତ୍ମ ଶାସ୍ତ୍ର ଅଭ୍ୟାସ, ଶୌଚ, ସମ, ଦମ,
ତିତିକ୍ଷା, ସନ୍ତୋଷ ଈଶ୍ୱରଙ୍କ ପ୍ରଣିଧାନ ।
ସଂଯମ ନିୟମମାନ ଆଦି କରି ଯେତେ
ଜୀବନମୁକ୍ତଙ୍କ ଶ୍ରେଷ୍ଠ ମିତ୍ର ଏ ସମସ୍ତେ ।
ଆଶ୍ୱାସ ଦିଅନ୍ତି ତାକୁ ପିତାଙ୍କ ସମାନ
କଳତ୍ର ପରି ସହାୟ ସଙ୍କଟ କାଳେଣ ।
ମଳିନ କର୍ମରେ ଯେବେ ଜନମେ ପ୍ରବୃତ୍ତି
ଏମାନେ ତାହାଙ୍କୁ ତହୁଁ ନିବୃତ୍ତ କରନ୍ତି ।
ଉତ୍ତାପକୁ ଅଗ୍ନି ଯଥା ତେଜି ନ ପାରନ୍ତି
ମିତ୍ରଗଣ ତାଙ୍କୁ କେଉଁ ଛାଡ଼ି ନ ଯାଆନ୍ତି ।
ଅଶୁଚି ଅବସ୍ଥା ଯେବେ ହୁଏ ଉପସ୍ଥିତ
ଅଗ୍ନିସମ କରିଥାନ୍ତି ତାଙ୍କୁ ସୁଶୋଧିତ ।
ହେୟ ଉପାଦେୟ ମାନ ନିର୍ଣ୍ଣୟ କରଣେ
ତାଙ୍କ ପଥ ପ୍ରଦର୍ଶକ ହୁଅନ୍ତି ଏମାନେ ।
ପୁନଶ୍ଚ ଅନିନ୍ଦ୍ୟ ବାକ୍ୟ ବ୍ୟବହାର ବଳେ
ଆହ୍ଲାଦିତ କରିଥାନ୍ତି ତାଙ୍କୁ ସଦାକାଳେ ।
ଅନ୍ଧାର ନ ରହେ ଯଥା ସୂର୍ଯ୍ୟ ଉଦେ ହେଲେ
ଅପ୍ରିୟ ନ ରହେ ଏହି ମିତ୍ର ପାଶେ ଥିଲେ ।
ଶ୍ରୀ କୁଳ ରକ୍ଷକ ସତ ସ୍ୱଭାବ ଏ ମିତ୍ର
ଆଧି ବ୍ୟାଧିରେ ଏମାନେ ଯେସନ ଅମୃତ ।
ସେ ସୁଧା ବର୍ଷଣେ ଚିତ୍ତ ହୁଏ ସଂଜୀବିତ
ଦୁଃଖରାଶି ତାର ହୋଇଯାନ୍ତି ଭସ୍ମିଭୂତ ।
ଭାଗ୍ୟବଳେ ଯାକୁ ମିଳେ ଏହିପରି ମିତ୍ର
ସର୍ବଜନ ତାହା ପ୍ରତି ହୁଅନ୍ତି ଅନୁରକ୍ତ ।
ଯଜ୍ଞ, ଦାନ, ତପସ୍ୟା ଓ ତୀର୍ଥ ପର୍ଯ୍ୟଟନ
ସତ୍‌କର୍ମ କରଣେ ତାଙ୍କୁ କରାନ୍ତି ସକ୍ଷମ ।

ସେହି ମିତ୍ରଗଣ ଯଦି ରହନ୍ତି ସଙ୍ଗତେ
ପୁତ୍ର, ଦ୍ୱାରା, ଭୃତ୍ୟ, ବନ୍ଧୁ, ବ୍ରାହ୍ମଣ ସହିତେ ।
ପାନ, ଭୋଜନ କରଣେ ନ ରହେ ବାରଣ
ସର୍ବସ୍ଥଳେ ମିତ୍ର ତାକୁ କରେ ସଂରକ୍ଷଣ ।
ମିତ୍ରଗଣଙ୍କ ସହିତ ସ୍ୱଜନଙ୍କୁ ନେଇ
ସ୍ୱାଭାବିକ ଭାବେ ଜୀବନ ମୁକ୍ତ ବିହରଇ ।
କାହାରି ପ୍ରେରଣା ପ୍ରତି ଅପେକ୍ଷା ନ କରେ
ସବୁ ସମ୍ପାଦନ କରେ ସ୍ୱବିବେକ ବଳେ ।
କହନ୍ତି ଶ୍ରୀରାମ ଶୁଣ ଆହେ ମୁନିଶ୍ୱର
ପୁତ୍ର କଳତ୍ରାଦି କିଏ ଜୀବନ୍ମୁକ୍ତର ?
କହନ୍ତି ବଶିଷ୍ଠ ଶୁଣ ଆହେ ମହାମତେ
ସ୍ନାନ, ଧ୍ୟାନ, ପାନ, ତପ, ତା'ପୁତ୍ର ସମସ୍ତେ ।
ଏହି ପୁତ୍ରଙ୍କ ସୁଗୁଣ ହେତୁ ରଘୁନାଥ
ସର୍ବେ ତାଙ୍କ ପ୍ରତି ରହିଥାନ୍ତି ଅନୁରକ୍ତ ।
ସମଦର୍ଶନ ହିଁ ଅଟେ ତାହାଙ୍କ କଳତ୍ର
ହୃଦ୍ ବିହାରିଣୀ ତୃପ୍ତି ପାତ୍ରୀ ରଘୁନାଥ ।
ତାଙ୍କ ପ୍ରତି ସଦା ଦୟା ପରବଶ ହୋଇ
ଚତୁର୍ଦ୍ଦିଗରେ ଏ ଐଶ୍ୱର୍ଯ୍ୟ ବିକୀର୍ଣ୍ଣ କରଇ ।
ମୈତ୍ରୀ ନାମେ ଅନ୍ୟ ଏକ ଭାରିଯା ତାଙ୍କର
ନିବିଡ଼େ ରହିଛି ସମଦର୍ଶନ ସଙ୍ଗର ।
ଭାର୍ଯ୍ୟା, ପୁତ୍ର, ପରିଜନେ ହୋଇଣ ବେଷ୍ଟିତ
ଲାଭ, କ୍ଷତିରେ ନୁହେଁ ସେ ହର୍ଷ ବା ଦୁଃଖିତ ।
ଜାଗତିକ କର୍ମ କରିଲେ ହେଁ ସମ୍ପାଦନ
କର୍ତ୍ତୃତ୍ୱ ଭାବ ନ ଥାଇ ତାର କଦାଚନ ।
ସବୁ ଅଭିମାନ ତେଜି ବ୍ରହ୍ମ ଚିନ୍ତନରେ
ଏକଭାବେ ବିରାଜିତ ଥାନ୍ତି ସଦାକାଳେ ।
ଅସାର ବାଦାନୁବାଦେ କେବେ ହେଁ ଶ୍ରୀରାମ
ପ୍ରବୃତ୍ତ ହୁଅନ୍ତି ନାହିଁ ସେହୁ କଦାଚନ ।
ଶ୍ରବଣ କରନ୍ତି ନାହିଁ ଅର୍ଥହୀନ ବାକ୍ୟ
ନିନ୍ଦିତ କର୍ମେ ରହନ୍ତି ନିଶ୍ଚେଷ୍ଟ ଅବାକ ।
କିନ୍ତୁ ଆର୍ଯ୍ୟଜନୋଚିତ ବ୍ୟବହାର କର୍ମେ
ଗୁରୁଙ୍କ ସମଦକ୍ଷତା ଦେଖାନ୍ତି ଆପଣେ ।
ପୁଣ୍ୟ କଥା ଆଳାପରେ ସର୍ବଦା ତତ୍ପର
କ୍ଷଣକେ ସର୍ବ ସନ୍ଦେହ କରିଦ୍ୟନ୍ତି ଦୂର ।
ପୁଣ୍ୟାଳାପ ପରାୟଣ, ସୁମଧୁର ଭାଷି
ସ୍ନିଗ୍ଧ କୋମଳ ଉଦାର ଗୁଣ ପରକାଶି ।
ସର୍ବତ୍ର ସମଦରଶୀ ହୋଇଣ ହେ ରାମ
ସେ ଜୀବନ ମୁକ୍ତ ମୁନି କରେ ବିଚରଣ ।
ପ୍ରବୁଦ୍ଧ ହୋଇ ଅଛଇ ଯେବଣ ସୁଜନ
ଏ ଗୁଣ ସ୍ୱତ ହିଁ ତାର ତହିଁ ଉତପନ୍ନ ।
ଚେଷ୍ଟାବଳେ କେବେହେଲେ ଏ ସକଳ ଗୁଣ
ପ୍ରକାଶ ହୋଇ ନ ପାରେ କୌଶଲ୍ୟା ନନ୍ଦନ ।
ସୂର୍ଯ୍ୟ, ଅଗ୍ନି ତେଜ ପୁଣି ଚନ୍ଦ୍ରମା ମାଧୁର୍ଯ୍ୟ
ସ୍ୱାଭାବିକ ଭାବେ ଯଥା ପ୍ରକାଶେ ହେ ଆର୍ଯ୍ୟ ।
ମହାପୁରୁଷମାନଙ୍କ ଏ ସକଳ ଗୁଣ
ସେହିପରି ସ୍ୱାଭାବିକ ହେ ରଘୁନନ୍ଦନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ତତ୍ତ୍ୱଜ୍ଞାନ ବ୍ୟବହାର ବର୍ଣ୍ଣନେ ନାମ ୭୮ତମ ସର୍ଗଃ**



## ୭୯ତମ ସର୍ଗଃ
## ଦ୍ୱୈତ-ଏକତ୍ୱ ଅଭାବ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଚିଦାକାଶର ଅଟଇ ଯେବଣ ସ୍ଫୁରଣ ।
ତାହା ହିଁ ଜଗତ ରୂପେ ହୁଏ ପ୍ରତିଭାତ
ଜଗତ ବୋଲିଣ କିଛି ନ ଥାଇ ସ୍ୱତନ୍ତ୍ର ।
ସୃଷ୍ଟିର ପ୍ରଥମେ ଯେଣୁ ଏକମାତ୍ର ସତ
ବିଦ୍ୟମାନ ରହିଥାଏ ଆହେ ରଘୁନାଥ ।
ଏପରି କୌଣସି ଦୃଶ୍ୟ-ବୀଜ ନାହିଁ ଜାଣ
ଯା'ଠାରୁ ଜଗତ ହୋଇ ପାରିବ ଉତ୍ପନ୍ନ ।
ଏ ଦୃଶ୍ୟ ଜଗତ ବୋଲି କିଛି ନାହିଁ ଜାଣ
ଜଗତ ବୋଲି ଯେ ଦୃଶ୍ୟ ବୁଦ୍ଧି ଅଛି ରାମ ।
ବନ୍ଧ୍ୟାପୁତ୍ର ସମ ତାହା ଅଟଇ ଅସତ
ଅଜ୍ଞାନୁ ଚିନ୍ମାତ୍ର ଏହି ରୂପେ ପ୍ରତିଭାତ ।
ସ୍ୱରୂପରୁ କେବେ ହେଲେ ସେ ପରମ ପଦ
ବିଚ୍ୟୁତ ହୁଅନ୍ତି ନାହିଁ, ରଘୁକୁଳାନନ୍ଦ ।
କିନ୍ତୁ ସୁଷୁପ୍ତିରୁ ସ୍ୱପ୍ନେ ଅବତରି ରାମ
ଚିଦାତ୍ମା ସ୍ୱାପ୍ନିକ ଦୃଶ୍ୟ ଦେଖନ୍ତି ଯେସନ ।
ସୃଷ୍ଟିର ପ୍ରଥମେ ଚିଦାକାଶ ସେହିପରି
ଦୃଶ୍ୟ ରୂପେ ଆପଣାକୁ ଅନୁଭବ କରି ।

ନିଜକୁ ଜାଣି ପାରିଲେ ଏ ଦୃଶ୍ୟ ଜଗତ
ପୁନଃ ପ୍ରତିଭାତ ନ ହୁଅଇ ରଘୁନାଥ ।
ସେତେବେଳେ ଏକମାତ୍ର ବ୍ରହ୍ମହିଁ ଜାଣିବ
ସୁପ୍ରକାଶ ସ୍ୱରୂପରେ ଆସି ପ୍ରକାଶିବ ।
ଏହି ଅବସ୍ଥାରେ ସ୍ଥୂଳ ପୃଥିବୀ ଓ ଜଳ
କିଛି ନ ରହଇ ଜାଣ କୌଶଲ୍ୟା ଦୁଲାଳ ।
ତେଣୁ କରି ଅଜ୍ଞ ଅବା ପ୍ରାଜ୍ଞର ନିକଟ
ସ୍ଥୂଳ, ସୂକ୍ଷ୍ମ ଯାହା କିଛି ହେଉନା ପ୍ରକଟ ।
ସେହି ସେହି ଭାବେ ଏହା ବ୍ରହ୍ମ ବିଦ୍ୟମାନ
ଏ ତତ୍ତ୍ୱ ନିହିତ ସର୍ବ ଶାସ୍ତ୍ର ଗର୍ଭେ ଜାଣ ।
ସପନ ଭାଙ୍ଗିଲା ମାତ୍ରେ ଯଥା ବୁଝାଯାଏ
ସ୍ୱପ୍ନ ଦୃଷ୍ଟ ବସ୍ତୁ ଆଦି ଆହେ ରଘୁରାୟେ ।
ଆକାର ହୀନ ଆକାଶେ ହେଉଥିଲା ଦୃଶ୍ୟ
କିଛି ନୁହେଁ ତାହା ସବୁ କେବଳ ଆକାଶ ।
ଆତ୍ମଜ୍ଞାନ ଲାଭ ହେଲେ ଏହି ଯେ ଜଗତ
ଶାନ୍ତ ଚିଦାକାଶ ବୋଲି ହୁଏ ପ୍ରତିଭାତ ।
ଜ୍ଞାନୀଙ୍କ ଦୃଷ୍ଟିରେ ଅଟେ ଏ ଜଗତ ବ୍ରହ୍ମ
ଜାଣେ ନା ମୁଁ ଅଜ୍ଞାନୀ ତା' ଦେଖଇ କେସନ ?
ଏକବାରେ ନାହିଁ ରାମ ଯେବଣ ଜଗତ
ସବୁରି ନେତ୍ରରେ ତାହା ହୁଏ ପ୍ରତିଭାତ ।
ଆଉ ପୁଣି ଯାହା ଛଡ଼ା ଅନ୍ୟକିଛି ନାହିଁ
ସେ ବ୍ରହ୍ମ ସର୍ବ ସମକ୍ଷେ ସତ୍ତାହୀନ ହୋଇ ।
ଏ ବଡ଼ କୌତୁକ ପୁଣି ଏ ବଡ଼ ବିଚିତ୍ର
ନୁହେଁ କି ତା ପରିତାପ ବସ୍ତୁ ରଘୁନାଥ ।
ନୁହେଁ କି ମାୟାର ଏହା ଅଦ୍ଭୁତ ପ୍ରଭାବ
ନଟ ରୂପେ ନଚଉଛି ସଭିଙ୍କୁ ରାଘବ ।
ନିଜ ଦିପ୍ତୀରେ ଦେଦିପ୍ୟମାନ ଯଥା ମଣି
ଚିଦାକାଶ ସେହିପରି ଆହେ ରଘୁମଣି ।
ନିଜ ଚିନ୍ମୟ ସୃଷ୍ଟିର ଦ୍ୱାରା ହିଁ କେବଳ
ପ୍ରସ୍ଫୁରିତ ରହିଛନ୍ତି ଆହେ ରଘୁବାଳ ।
ସୂର୍ଯ୍ୟଦେବ ସେହି ଶାନ୍ତ ପରଂପଦେ ରହି
ତାପ, ଆଲୋକ ପ୍ରଦାନ ସର୍ବଦା କରଇ ।
ଆଦିତ୍ୟ ବି ସେ ପରମ ପଦକୁ ହେ ରାମ
ପ୍ରକାଶ କରିବା ପାଇଁ ଅଟନ୍ତି ଅକ୍ଷମ ।
ବରଂ ସେହି ପରଂପଦ ଦ୍ୱାରା ପ୍ରକାଶିତ
ହୋଇଣ ତାପ, ଆଲୋକ ପ୍ରଦାନେ ସମର୍ଥ ।
ଚନ୍ଦ୍ରମା ଅନଳ ଆଦି ଅନ୍ୟ ଦେବଗଣ
ସେହି ବ୍ରହ୍ମଙ୍କ ଜ୍ୟୋତିରୁ ପ୍ରକାଶ ଲଭିଣ ।
ନିଜ ନିଜର କର୍ତ୍ତବ୍ୟ କରନ୍ତି ସାଧନ
ନର ପୂଜା ଘେନି ବ୍ରହ୍ମେ କରନ୍ତି ଅର୍ପଣ ।
ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁମାନଙ୍କର ପ୍ରଭା
ଚିଦାକାଶର ପ୍ରକାଶ ସର୍ବ ଦେବ ଦେବା ।
ଚିଦାକାଶରୁ ସେମାନେ କିପରି ପୃଥକ
ହୋଇ ପାରିବେ କହ ହେ ଅଯୋଧ୍ୟା ତିଳକ ।
ତାଙ୍କ ମଧ୍ୟେ ପୃଥିବ୍ୟାଦି ସକଳ ଅଛନ୍ତି
ଅଥଚ ତା' ତହିଁ କିଛି ନାହିଁ ରଘୁପତି ।
ସକଳ ଜୀବ ତାଙ୍କରି ଆଶ୍ରୟେ ରହନ୍ତି
ଅଥଚ ତା' ତହିଁ କିଛି ଜୀବଭାବ ନାସ୍ତି ।
ଅବୟବ ପରିତ୍ୟାଗ ନ କଲେ ହେଁ ରାମ
ସୂର୍ଯ୍ୟ, ଚନ୍ଦ୍ର ଆଦି ତହିଁ କରନ୍ତି ବିଶ୍ରାମ ।
ଅବୟବ ଶୂନ୍ୟ ଅଣୁ ଆକାରେ ସେମାନେ
ତାଙ୍କଠାର ବର୍ତ୍ତମାନ ଛନ୍ତି ରଘୁନାନେ ।
ନାନାକାରେ ପରିଦୃଶ୍ୟମାନ ଏ ଜଗତ
କେଉଁ ବିଭିନ୍ନ ନୁହଁନ୍ତି ଜାଣ ରଘୁନାଥ ।
ଏକମାତ୍ର ଚିଦାକାଶ ଏ ସର୍ବ ଆକାରେ
ପ୍ରକାଶ ପାଉଅଛନ୍ତି ଜାଣ ନିରନ୍ତରେ ।
ଜୀବ ଚୈତନ୍ୟ ଯେପରି ସ୍ୱପ୍ନ ଅବସ୍ଥାରେ
ନାନାଦି ଆକାର ଧରିଥାଏ ରଘୁବୀରେ ।
ଏହି ଚିଦାକାଶ ରାମ ଜାଣ ସେହିପରି
ପଞ୍ଚଭୂତଙ୍କ ଆକୃତି ଅଛି ସେହୁ ଧରି ।
ଜଡ଼ ଓ ଚେତନ ଜୀବଗଣଙ୍କ ଅନ୍ତରେ (ରହି),
ଚଳନ କରନ୍ତି ତାଙ୍କୁ, ତାଙ୍କ ଅଜ୍ଞାତରେ ।
ଅଥଚ ମନ ଇତ୍ୟାଦି କିଛି ନାହିଁ ତା'ର
ପରମାର୍ଥିକ ରୂପ ସେ ଜୀବ ଜଗତର ।
ଅନ୍ତରସ୍ଥ ଈଶ୍ୱରାତ୍ମାଠାରେ ଯେଉଁ ଜନ
ଅନୁରକ୍ତ ନ ହୋଇଣ ହେ ରଘୁନନ୍ଦନ ।
ବିଷୟ ଭୋଗରେ କରିବ ସେ ଅନୁରାଗ
ପ୍ରାଜ୍ଞଙ୍କ ମତରେ ସେହୁ ବୋଲାଯାଏ ଅଜ୍ଞ ।
ଆତ୍ମା ସୁଖେ ସୁଖୀ, ଆତ୍ମା ମୃତେ ପରିତୃପ୍ତ
ଅଭିଜ୍ଞ ଏପରି ଭାବେ ରହେ ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଦ୍ୱୈତ ଏକତ୍ୱ ଅଭାବ ବର୍ଣ୍ଣନେ ନାମ ୭୯ତମ ସର୍ଗଃ**



## ୮୦ତମ ସର୍ଗଃ

## ବ୍ରହ୍ମତ୍ୱ ପ୍ରତିପାଦନ

"ଯଥା ପୂର୍ବ ସଂକଳ୍ପବତ୍" କହନ୍ତି ବଶିଷ୍ଠ
ଶ୍ରୁତି କହେ ଏ ଜଗତ ବ୍ରହ୍ମାଙ୍କର ସୃଷ୍ଟ ।
ତେଣୁ ଏ ଜଗତ ଚିଦାକାଶରୁ ସ୍ଫୁରଣ
ନୁହେଁ ବୋଲି ନ ଧରିବ ହେ ରଘୁନନ୍ଦନ ।
ଯେଣୁ ବିରାଟ ପୁରୁଷ ସେହି ପ୍ରଜାପତି
ଜୀବନ ମୁକତ ଭାବେ ସେହୁ ବିରାଜନ୍ତି ।
ଉନମୁକ୍ତ ଚିଦାକାଶ ସେ ଅଟନ୍ତି ରାମ
ଏପରି ଦୃଢ଼ ଧାରଣା ଆସେ ମୋର ମନ ।
ମନନମୟ ଜଗତ କଳ୍ପନାର ପୂର୍ବେ
ସେ ହିରଣ୍ୟ ଗର୍ଭ ଥାଏ ଚିନ୍‌ମାତ୍ର ଭାବେ ।
ଜଳେ ତରଙ୍ଗ ଯେସନ ହୁଏ ବିବର୍ତ୍ତନ
ଜଗତ କଳ୍ପନା କାଳେ ସେ ମଧ୍ୟ ତେସନ ।
ମନନ ପୂର୍ବକ ନିଜ ମଧ୍ୟେ ନିଜ ମନ
ପ୍ରକାଶ କରନ୍ତି ସେହୁ ହେ ରଘୁ ନନ୍ଦନ ।
ସତ୍ତାସାମାନ୍ୟ ସ୍ୱରୂପ ଅଟନ୍ତି ଯେ ବ୍ରହ୍ମ
ତାଙ୍କ ତହିଁ ମନ, ବୁଦ୍ଧି ରହନ୍ତେ କେସନ ?
ସମୁଦିତ ମନ, ବୁଦ୍ଧି ଆଦି ରଘୁବୀର
ଚିତ୍ ଛଡ଼ା ଅନ୍ୟ କିଛି ନୁହେଁ ଏହା ସ୍ଥିର ।
ତେଣୁ କରି ପରମାର୍ଥ ଦୃଷ୍ଟିରୁ ହେ ରାମ
ତହିଁ ମନ, ବୁଦ୍ଧ, ବାସନାଦି ନାହିଁ ଜାଣ ।
ବ୍ୟବହାରିକ ଭାବରେ ହେଲେ ହେଁ ଏ ସତ୍ୟ
ପରମାର୍ଥିକ ଦୃଷ୍ଟିରୁ ଅଟନ୍ତି ଅସତ୍ୟ ।
ପୂର୍ବକଳ୍ପ ପ୍ରଜାପତିଙ୍କର ହେ ଶ୍ରୀରାମ
ପୁନରାଗମନ ନ ହୁଅଇ କଦାଚନ ।
ନୂତନ ପ୍ରଜାପତିଙ୍କ ଜଗତ୍ କଳ୍ପନାରେ
ପୂର୍ବ ସ୍ମୃତି ସମ୍ଭାବନା ହେବ କି ପ୍ରକାରେ ?
ଆଉ ମଧ୍ୟ ବିଦେହ ମୁକୁତ ପୁରୁଷର
ଜଗତ ସ୍ମୃତି ନ ଥାଏ ଜାଣ ରଘୁବୀର ।
ସେ କାରଣୁ ତାର ପୂର୍ବଦେହ ପରିଗ୍ରହ
ଘଟେ ନାହିଁ ଜାଣିରଖ କୌଶଲ୍ୟା ତନୟ ।
'ଯଥା ପୂର୍ବଂ' ବୋଲି କରି ଶ୍ରୁତି ଯାହା କହି
ଭେଦ ଦର୍ଶୀ ଅଜ୍ଞଙ୍କୁ ତା' ବୁଝାଇବା ପାଇଁ ।
କର୍ତ୍ତବ୍ୟ, କରମ ପାଇଁ ହେବେ ପ୍ରଣୋଦିତ
କେବଳ କୁହାଯାଇଛି ଆହେ ରଘୁନାଥ ।
ଚିନ୍‌ମାତ୍ର ପ୍ରଜାପତିର କୌଣସି ପ୍ରକାର
ସ୍ମୃତି ରହିବା, ଅଟଇ ଅସମ୍ଭବ ପର ।
ତତ୍ତ୍ୱଜ୍ଞଙ୍କ ଗୁରୁ ପ୍ରଜାପତିଙ୍କ ଦୃଷ୍ଟିରେ
ଏ ଜଗତ ଘନ ଚିଦାକାଶ ରଘୁବୀରେ ।
ପୁଣି ନିଜେ ନିର୍ବିକାର ଚିଦ୍‌ଘନ ସମ
ପ୍ରଜାପତିମାନଙ୍କର ଗତି ଏହା ଜାଣ ।
ଆଉ ମଧ୍ୟ ଅଜ୍ଞଗଣମାନଙ୍କ ପକ୍ଷରେ
ଚିଦାକାଶ ମୟ ଯେ' ଜଗତ ରଘୁବୀରେ ।
ବସ୍ତୁମୟ ଜଗତ୍‌ରୂପେ ହୁଏ ପ୍ରତିଭାତ
ଗୁରୁ ଉପଦେଶେ ତାହା ହୁଏ ଦୂରୀଭୂତ ।
ଅଜ୍ଞ ଯଦି ଗୁରୁପାଶେ ଜିଜ୍ଞାସୁ ହୋଇବ
ଦୃଶ୍ୟଜ୍ଞାନ, ସ୍ମୃତି ତାର ଯେ ପର୍ଯ୍ୟନ୍ତ ଥିବ,
ସେ ପର୍ଯ୍ୟନ୍ତ ଗୁରୁ ତାକୁ ଉପଦେଶ ଦାନ
ଦେଉଥିବେ ଜାଣିରଖ ହେ ରଘୁନନ୍ଦନ ।
ତତ୍ତ୍ୱଜ୍ଞଙ୍କ ବିଷୟରେ ଅଜ୍ଞ ଯଥା ଅନ୍ଧ
(ତଥା) ପାଇନାହିଁ ମୁଁ ଅବିଦ୍ୟା ନିର୍ବୋଧଙ୍କ ଗନ୍ଧ ।
ଯାହାଠାରେ ଯାହା ନାହିଁ ହେ ରଘୁ ପୁଙ୍ଗବ
ସେ କାହୁଁ କରିପାରିବ ତା'ର ଅନୁଭବ ?
କେବେ କି ସୂର୍ଯ୍ୟଦେବତା ରାତ୍ର ଅନୁଭବ
କରି ପାରିବେ କି କହ ହେ ରଘୁ ପୁଙ୍ଗ୍‌ବ ?
ଯେଣୁ ସଂସ୍କାରରୁ ରାମ ସ୍ମୃତିର ଉଦ୍ଭବ
ସଂସ୍କାର ବିହୁନେ ସ୍ମୃତି କାହୁଁ ସମ୍ଭବିବ ?
ଅନ୍ତକରଣ ବିନ୍ୟସ୍ତ ଚଇତନ୍ୟେ ଜାଣ
ବାହ୍ୟବସ୍ତୁ ମାନ ପ୍ରତିଫଳିତ ହୋଇଣ,
ସେ ବିଷୟେ ଯେ ବାସନା କରାଇ ଜନମ
ତାହାକୁ ସଂସ୍କାର ବୋଲି ଜାଣ ରଘୁରାଣ ।
ତତ୍ତ୍ୱଜ୍ଞଙ୍କଠାରେ ସେ ସଂସ୍କାର କେବେହେଲେ
ଦେଖାଯାଏ ନାହିଁ, ମନେରଖ ରଘୁବୀରେ ।
ସଂସ୍କାର ବିହୁନେ ସ୍ମୃତି ନ ଜନମେ ଯେଣୁ
ପ୍ରଜାପତି ସ୍ମୃତି ଜାତ-ଭବ ନୁହେଁ ତେଣୁ ।

କାରଣ ବିହୀନ ଅଟେ ଯେଣୁ ଏ ଜଗତ
ତେଣୁ ଏହା ବ୍ରହ୍ମ ସ୍ୱରୂପେ ହିଁ ପ୍ରତିଭାତ ।
ବ୍ରହ୍ମ ଅନୁଭବ ମାତ୍ର ଯାହାର ସ୍ୱରୂପ
ଅନ୍ୟ କିଛି ନୁହେଁ ତାହା ଚିଦାକାଶ ରୂପ ।
ତେଣୁ କରି ଏ ଜଗତ ଖାଲି ବ୍ରହ୍ମମୟ
ସାକାର ଜଗତ ସଦା ଅଟେ ଭ୍ରମମୟ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମତ୍ୱ ପ୍ରତିପାଦନ ବର୍ଣ୍ଣନେ ନାମ ୮୦ତମ ସର୍ଗଃ**

❑

## ୮୧ତମ ସର୍ଗଃ
## ପରମାର୍ଥ ଉପଦେଶ

କହନ୍ତି ଶ୍ରୀରାମ ଶୁଣ ହେ ତପୀ ମଣ୍ଡନ
ଏ ଜଗତ ଯଦି ଚିଦାକାଶର ସ୍ଫୁରଣ ।
ତେବେ ସେହି ଆକାଶର ସର୍ବସ୍ଥଳେ ଦେବ
ପ୍ରକାଶ ନୋହିଲା କିମ୍ପା ଏହି ଅହଂଭାବ ?
କେବଳ ଶରୀରେ ହୋଇଥାଏ ପରକାଶ
ସବିଶେଷ କରି କହ ଆହେ ତପୀଈଶ ।
ଚିଦାତ୍ମା ତ ନ ଛାଡ଼ଇ ଆପଣା ସ୍ୱରୂପ
ସପନେ କିମ୍ପା ସେ ଧରେ ପର୍ବତାଦି ରୂପ ?
ପୁଣି ଯେହେତୁ ଅଟନ୍ତି ସେହୁ ସର୍ବମୟେ
ପାଷାଣରେ କିମ୍ପା ସେହୁ ଅନୁଭୂତ ନୁହେ ।

କହନ୍ତି ବଶିଷ୍ଠ ରାମ ହସ୍ତେ ହସ୍ତାଭାବ
ପଦେ ପଦାଭାବ ଯଥା ହୁଅଇ ସମ୍ଭବ ।
ତଦ୍ରୂପ ସେହି ପରମ ଆତ୍ମାଙ୍କର ଦେହେ
ଶରୀରାବିଚ୍ଛିନ୍ନ "ଅହଂଭାବ" ଉଦେ ହୁଏ ।
କେବଳ ସେ ନରଠାରେ ଏହା ସମ୍ଭବଇ
ତାହା ନୁହେଁ ଜାଣିରଖ ହେ ଲକ୍ଷ୍ମଣ ଭାଇ ।
ବୃକ୍ଷାଦି ସକଳ ଯେଣୁ ଜୀବ ମଧ୍ୟେ ଗଣ୍ୟ
ପତ୍ରେ ପତ୍ରାଭାବ ଅଛି ହେ କଂଜନୟନ ।
ଶାଖାଠାରେ ଶାଖାଭାବ ବୃକ୍ଷେ ବୃକ୍ଷାଭାବ
ଏ ସବୁ ଭାବ ତାଙ୍କର ସିନା ଅହଂଭାବ ।
ଆକାଶ ମଧ୍ୟେ ନିହିତ ଯଥା ଶୂନ୍ୟଭାବ
ସର୍ବାତ୍ମାରେ ସେହିପରି ଅଛି ଧନଭାବ ।
ସ୍ୱର୍ଣ୍ଣ, ମଣି, ମୁକ୍ତା ଆଦି ଉପାର୍ଜନ ଯୋଗ୍ୟ
ଧନଭାବ ତାଙ୍କଠାରେ ଅଛି ମହାଭାଗ ।
ସପନରେ ଦୃଷ୍ଟ ହୁଏ ଯେଉଁ ଦୃଶ୍ୟମାନ
'ଚିତ୍ତ' ହିଁ ଅଟଇ ସେମାନଙ୍କ ଉପାଦାନ ।
ସେହି ଦୃଶ୍ୟ ଯେ ଅରୂପ ହେଲେହେଁ ସଙ୍ଗତ
ସ୍ୱପ୍ନଦ୍ରଷ୍ଟା ମଣେ ତାଙ୍କୁ ଯଥା 'ରୂପଯୁକ୍ତ' ।
ସ୍ୱପ୍ନ, ଜାଗ୍ରତ, ସୁଷୁପ୍ତି ଆଦି ଭାବମାନ
ତଦ୍ରୂପ ସେ ସର୍ବାତ୍ମାରେ ଛନ୍ତି ବିଦ୍ୟମାନ ।
ଚଇତନ୍ୟ ସମନ୍ୱିତ, ଶରୀରେ ଯେପରି
ଅଚେତନତା ପ୍ରସିଦ୍ଧ ଅଟେ ବ୍ରହ୍ମଚାରୀ ।
ସେହିପରି ସର୍ବବ୍ୟାପୀ ଯେ ଚିଦାତ୍ମା ଜାଣ
କାଠ ପଥରରେ ଥାନ୍ତି ହୋଇ ଅଚେତନ ।
ଯେ ଚେତନ, ଅଚେତନ ହେବା ଅସମ୍ଭବ
ମାୟା ପ୍ରଭାବରେ କିନ୍ତୁ ହୁଏ ତା ସମ୍ଭବ ।
କାଠ, ପଥର ଆକାରେ ସ୍ୱପ୍ନେ ଯଥାଚିତ୍ତ
ପ୍ରକାଶ ପାଇଣ ଥାଏ ହେ କମଳ ନେତ୍ର ।
ଚିଦାକାଶର ସେପରି ସୃଷ୍ଟିକାଳେ ଜାଣ
ଶରୀରଭାବ ଉତ୍ପନ୍ନ ହୁଏ ରଘୁରାଣ ।
ସ୍ଥାବର, ଜଙ୍ଗମ ପରିପୂର୍ଣ୍ଣ ଏ ଜଗତ
ତେଣୁ ଚିଦାତ୍ମା ଶରୀର ନାମେ ପରିଚିତ ।
ହୋଇଲେ ହେଁ ଏ ଜଗତ ଚିଦାତ୍ମା ଶରୀର
କୌଣସି ଆକୃତି ତାର ନାହିଁ ରଘୁବୀର ।
ସପନ ଭାଙ୍ଗିଲେ ଯଥା ସ୍ୱାପ୍ନିକ ପଦାର୍ଥ
ଅସତ୍ୟ ବୋଲିଣ ହୋଇଥାଏ ବିବେଚିତ ।
ଜ୍ଞାନ ଉଦୟ ହୋଇଲେ ଜାଣ ସେହିପରି
ଶରୀର ରୂପ ଜଗତ ଯାଏ ଅପସରି ।
ଅନନ୍ତ କାଳୁ ସମୁଦ୍ରେ ତରଙ୍ଗ ସଦୃଶ
ଚିଦାକାଶେ ଜଗତର ବିକାଶ ବିନାଶ ।
କିନ୍ତୁ ଜଗତ ଆଧାର ଏ ଚିଦାକାଶର
କିଛି ବ୍ୟତିକ୍ରମ ନ ଘଟଇ ରଘୁବୀର ।
ତରଙ୍ଗ ସ୍ଥଳେ ସମୁଦ୍ର ନାନାଦି ବୈଚିତ୍ର୍ୟ
ପ୍ରକାଶ କରୁଣଥାଏ ଯଥା ରଘୁନାଥ ।
ଚିଦାକାଶ ନିଜ ମଧ୍ୟେ ସେହିପରି ଜାଣ
ପ୍ରକାଶ କରେ ଜଗତ ବଇଚିତ୍ର୍ୟ ମାନ ।
ବୁଝି ନ ପାରନ୍ତି ଏହା ଅତତ୍ତ୍ୱଜ୍ଞ ଗଣ
ଏ ଜଗତ ବ୍ରହ୍ମ ବୋଲି ଜାଣେ ଜ୍ଞାନୀ ଜନ ।

ତରଙ୍ଗ ନିଜକୁ ଜଳ ବୋଲିଣ ବୁଝିଲେ
ତରଙ୍ଗ ଭାବ ତା'ଠାରେ ନ ରହଇ ଭଲେ ।
ଅଥବା ନିଜକୁ ଭାବେ ଜଳର ତରଙ୍ଗ
ତତ୍ତ୍ୱଜ୍ଞ ନିକଟେ ତଥା ଜଗତ ତରଙ୍ଗ ।
ଆଉମଧ୍ୟ ଜଳ ରୂପ ବ୍ରହ୍ମ, ରଘୁନାଥ
ଏ ଉଭୟ ବ୍ରହ୍ମରୂପେ ହୁଅନ୍ତି ପ୍ରତିଭାତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ପରମାର୍ଥ ଉପଦେଶ ବର୍ଣ୍ଣନେ ନାମ ୮୧ତମ ସର୍ଗଃ**



## ୮୨ତମ ସର୍ଗଃ
## ପରମାର୍ଥ ଗୀତା

ସ୍ୱରୂପ ନ ତେଜି ରାମ ଯେଉଁ ଚିଦାକାଶ
ସମଷ୍ଟି ମନ ଆକାରେ ଯା ଆତ୍ମ ପ୍ରକାଶ,
ସେ ମନ ହିଁ ପିତାମହ ବ୍ରହ୍ମା ବୋଲି ଜାଣ
ଚିନ୍ମାତ୍ର ଆଦି-ବ୍ରହ୍ମା ସେ କାରଣ ବିହୀନ ।
ସେହି ଅଜ ଚିନ୍ମାତ୍ର ସ୍ୱରୂପ ମଧ୍ୟରେ
ଯେବଣ ସମଷ୍ଟି ଅହଂଭାବ ରଘୁବୀରେ,
ଆବର ଯେଉଁ ଜଗତ ହୁଏ ପ୍ରତିଭାତ
ତାହାର ହିଁ ବ୍ୟଷ୍ଟିରୂପ ଆମେ ରଘୁନାଥ ।
ଆମ୍ଭେମାନେ ମଧ୍ୟ ସେହି ଚିନ୍ମାତ୍ର ଜାଣ
ଚିନ୍ମାତ୍ର ବ୍ୟତୀତ ନାହିଁ ଅନ୍ୟ ସତ୍ତା ରାମ ।
ଯା କିଛି ସ୍ଫୁରିତ ହୁଏ ସେ ଚିଦାକାଶରେ
ସେ ସକଳ ଚିଦାକାଶ ମାତ୍ର ରଘୁବୀରେ ।
ସେହି ସ୍ଫୁରଣର ନାମ ଜାଣ ରଘୁନାଥ
ସୃଷ୍ଟି, ସ୍ଥିତି, ଲୟମୟ ସଂବିତ୍, ସତତ ।
ଚିଦାକାଶେ ହେଉଥାଏ ଯେ ସ୍ଫୁରଣ ମାନ
'ସ୍ୱପ୍ନବ୍ରତ ଚିତ୍ତଭାବ' ଅଟେ ତାଙ୍କ ନାମ ।
ସେହି ତ 'ହିରଣ୍ୟଗର୍ଭ ପିତାମହ' ଜାଣ
ଆଦି ଅନ୍ତହୀନ ସୃଷ୍ଟି ତା ତହୁଁ ସ୍ଫୁରଣ ।
ଚିଦାକାଶର ସ୍ଫୁରଣ "ବିରାଟ" ନାମରେ
ପରିଚିତ ହୋଇଅଛି ପୁଣି ରଘୁବୀରେ ।
ହିରଣ୍ୟଗର୍ଭ ଅଟଇ ସେ "ବିରାଟ ମନ"
ଜଗତ, ଭୂତ ସମୁହ ତାହାର କଳ୍ପନ ।
ସ୍ୱାପ୍ନିକ ନଗ୍ର ସଦୃଶ ସେ କଳ୍ପନା ମାନ
ଆହା କି ବିଚିତ୍ରମୟ ସୃଷ୍ଟିର କଳନ !
ତେଣୁ ଯେ ବିରାଟ, ସେହିସୃଷ୍ଟି, ସେହି ସ୍ୱପ୍ନ
ସେ ସ୍ୱପ୍ନ, ସମଷ୍ଟି, ବ୍ୟଷ୍ଟି, ଶରୀରହିଁ ପୁଣ ।
ସୁଷୁପ୍ତି ଯେସନ ହୁଏ ସ୍ୱପ୍ନେ ପରିଣତ
ପ୍ରଳୟାନ୍ଧକାରେ ଆତ୍ମା ହୋଇଣ ଆବୃତ,
ସୃଷ୍ଟି ସଂବେଦନରେ ସେ ହୁଏ ସଂବେଦିତ
ଆତ୍ମା ସଂବେଦନରୁ ହିଁ ଉତ୍ପନ୍ନ ଜଗତ ।
ମନର କଳ୍ପନା ମାତ୍ର ଜଗତ ଆକାରେ
ସୁବିସ୍ତୃତ ହୋଇଥାଏ କୌଶଲ୍ୟା କୁମରେ ।
ଆକାଶ ଆତ୍ମାରୂପେ ହିଁ ବିରାଟ ପୁରୁଷ
ତେଣୁ ପରିଦୃଷ୍ଟ ହୁଏ ହେ ରଘୁ ବିଳାସ ।
ଚିଦାକାଶେ ଜୀବଭାବ ହୋଇଲେ ଉଦିତ
ସ୍ୱତଃ ପ୍ରକାଶିତ ହୁଏ ଯାହା ରଘୁନାଥ ।
ଜଗତ ନାମରେ ତାହା ହୁଅଇ ବିଦିତ
ତେଣୁ ତହିଁରେ ଆତ୍ମା ହିଁ ହୁଏ ଅନୁଭୂତ ।
ବିଭିନ୍ନ ମତବାଦୀଙ୍କ ଯେ ବିଭିନ୍ନ ମତ
ତତ୍ତ୍ୱଜ୍ଞଙ୍କୁ ତାହା ବ୍ରହ୍ମରୂପେ ହିଁ ବିଦିତ ।
ସର୍ବ ସ୍ୱରୂପ ଅଟନ୍ତି ଯେଣୁ ସେହି ବ୍ରହ୍ମ
ସବୁ ସେ କରି ପାରନ୍ତି ସର୍ବ ଶକ୍ତି ମାନ ।
କହନ୍ତି ବଶିଷ୍ଠ ରାମ ଏ ଚିଦାକାଶର
ସ୍ୱପ୍ନମୟ ସଂବିତରୁ ଏହି ଜଗତର,
ପ୍ରକାଶ ହୁଅଇ ଯେଣୁ ହେଲା ସୁନିଶ୍ଚିତ
ତେଣୁ ଜଗତ ହିଁ ବ୍ରହ୍ମ ଜାଣ ରଘୁନାଥ ।
ସେହି ଜ୍ଞାନ ଯେତେବେଳେ ହୁଅଇ ଉଦିତ
ବ୍ରହ୍ମ ସମୁଦ୍ର ତରଙ୍ଗ ଅଟେ ଏ ଜଗତ ।
ଏହା ଉପଲବ୍ଧ ହୋଇଥାଏ ରଘୁନାଥ
ଅଜ୍ଞଙ୍କ ଦୃଷ୍ଟିରେ ପ୍ରତିଭାତ ଯେ ଜଗତ ।
ସେହି ବ୍ରହ୍ମ ହୋଇ ଯାଇଥାଏ ଦୂରୀଭୂତ
ଖୋଲିଯାଏ ରାମ ଅଜ୍ଞାନୀର ଜ୍ଞାନନେତ୍ର ।
ଜୀବନ ମୁକ୍ତଙ୍କ ବ୍ୟବହାର ସିଦ୍ଧ ପାଇଁ
ଯେବଣ ଜଗତ ଅବଶିଷ୍ଟ ରହି ଯାଇ ।
ସତ୍ ଚିଦାନନ୍ଦ ରସମୟ ସେ ଜଗତ
ଅନୁଭବ କରି ଜୀବ ହୁଏ କୃତ କୃତ୍ୟ ।
ସୁଖ ଦୁଃଖର କାରଣ ଏକତ୍ୱ ବହୁତ୍ୱ
ତାହା ତହିଁ କିଛିନାହିଁ ଜାଣ ରଘୁନାଥ ।

ଥିଲେ ହେଁ ପାର୍ଥକ୍ୟ ସ୍ୱପ୍ନ ସୁଷୁପ୍ତ ମଧ୍ୟରେ
ଉଭୟ ଅବସ୍ଥା ନିଦ୍ରାମୟ ରଘୁବୀରେ ।
ଜୀବନ ମୁକ୍ତି ଆବର ବିଦେହ ମୁକ୍ତିରେ
ପାର୍ଥକ୍ୟ ଥିଲେ ହେଁ ଜାଣ କୌଶଲ୍ୟା ଦୁଲାଳେ ।
ଉଭୟ ମୁକତି ସୁଖ-ଏକ ରସମୟ
ସରବ ସଂସାର ଭାବ ହୁଏ ଯାହିଁ ଲୟ ।
ଦୃଶ୍ୟ ଅଦୃଶ୍ୟ ଯା କିଛି ସେହି ଅବସ୍ଥାରେ
ସର୍ବ ପ୍ରତିଭାତ ହୁଏ ଆତ୍ମା ଆକାରରେ ।
ସ୍ୱାପ୍ନିକ ନଗର ଯଥା ସ୍ୱପ୍ନ ଭଙ୍ଗ ହେଲେ
ଅସତ୍ୟ ବୋଲି ପ୍ରମାଣ, ଦଶରଥ ବାଳେ ।
ବିବେକୀ ପ୍ରତି ଜଗତ ମିଥ୍ୟା ହୋଇଗଲେ
ଆସ୍ଥା ନ ରହଇ ତାର ହେ ରାମ ତହିଁରେ ।
ଜଗତ ପ୍ରତି ଅନାସ୍ଥା ବିବେକୀ ଜନର
ଦୁଃଖ ବିନାଶ କାରଣ ହୁଏ ରଘୁବୀର ।
ତତ୍ତ୍ୱଜ୍ଞାନୀ ସୁବିବେକୀ ଜନ ନିକଟରେ
ଏ ଜଗତ ଅବାସ୍ତବ ଜାଣ ରଘୁବୀରେ ।
ତାଦୃଶ ଜ୍ଞାନ ବଳରେ ଭ୍ରାନ୍ତି ଓ ଅଜ୍ଞାନ
ବିନଷ୍ଟ ହୋଇ ଯାଆନ୍ତି ହେ ରଘୁନନ୍ଦନ ।
ଯେବଣ ଜୀବନ ମୁକ୍ତ ବିବେକୀ ଜନର
ଉପସ୍ଥିତ ହୋଇଥାଏ ଦଶରଥ ବାଳ ।
'ତୃତୀୟ ପ୍ରବୋଧ' ତାହା, ମୁକ୍ତି ବା ନିର୍ବାଣ
ନିର୍ବିକଳ୍ପ ସମାଧି ତା ହେ ରଘୁନନ୍ଦନ ।
ଏପରି ଯେ ବୋଧଘନ ଅବସ୍ଥା ହିଁ ଜାଣ
ଧ୍ୟାନ ନାମେ ସୁବିଦିତ ହେ ରଘୁନନ୍ଦନ ।
"ନାନ୍ୟତ୍ ପଶ୍ୟତି" "ନାନ୍ୟତ୍ ଶୃଣୋତି" ତାହା
"ନାନ୍ୟତ୍ ବିଜାନାତି" ଶ୍ରୁତି ବର୍ଣ୍ଣନଇ ଯାହା ।
ଦୃଶ୍ୟ ବିହୀନ ପରମପଦ ତାହା ପୁଣ
ବିଭିନ୍ନ ନାମ ଧରିଛି ସେହି ଏକା ଜାଣ ।
ଏକାନ୍ତ ଅସତ ଭାବ ଯହିଁରେ ଦୃଶ୍ୟର
ପ୍ରଥମ ସଂବେଦନ ସେ ଏ ଚିଦାକାଶର ।
ସର୍ବତ୍ର ବିରାଜମାନ ହୋଇଛନ୍ତି ଯେହୁ
'ତତ୍ ସର୍ବମ୍ ଅଭବତ୍' ଶ୍ରୁତି ବାକ୍ୟ ସେହୁ ।
ଏହି ଭାବେ ହୋଇଛନ୍ତି ସେ ସର୍ବ ବିଦିତ
ତାହାଙ୍କୁ ଜାଣି ପାରିଲେ ଜୀବ ହୁଏ ମୁକ୍ତ ।
ଏ ଜଗତ ହୋଇଯାଏ ତାର ତହିଁ ଲୀନ
ସେ ସବୁ ତା' ଛଡ଼ା ନାହିଁ ଅନ୍ୟ କିଛି ଭିନ୍ନ ।
ପିନ୍ଧିଲା ଲୁଗାକୁ ଯଦି ନିରେଖି ଦେଖିବ
ସୂତା ଛଡ଼ା ଅନ୍ୟ କିଛି ନୁହେଁ ତା ବୁଝିବ ।
ପୁଣି ସେ ସୂତାକୁ ଯଦି ନିରେଖି ଦେଖିବ
ତୂଳା ଛଡ଼ା ଅନ୍ୟ କିଛି ନୁହେଁ ତା ଜାଣିବ ।
ସେହିପରି ଜଳ, ଅଗ୍ନି, ବାୟୁ ଓ ଆକାଶ
ଏମାନଙ୍କୁ ଯେବେ ତେଜି ପାର ରଘୁଈଶ ।
ଏକମାତ୍ର ଚିନ୍ମୟ ଆତ୍ମା ଉପଲବ୍ଧ
ହୋଇଥାଏ ଜାଣିରଖ ରଘୁକୂଳ ସିଦ୍ଧ ।
ଏକବାରେ ଦୃଶ୍ୟ ନାହିଁ ଯାର ତହିଁ ରାମ
ଅବିକ୍ଷୁବ୍ଧ ରହିଥାଏ ଯେ ସର୍ବ କାଳେଣ ।
ସେ ଶାନ୍ତ ଆନନ୍ଦ ରୂପେ ଅବସ୍ଥାନ ଜାଣ
ପରମ ପୁରୁଷାର୍ଥତା, ପରଂପଦ ପୁଣ ।
ଏହି ଯେ ମୋକ୍ଷ ଶାସ୍ତ୍ରର ଅନୁଶୀଳନରେ
ସେ ବିଶୁଦ୍ଧ ବୋଧ ଜ୍ଞାନୋଦୟ ରଘୁବୀରେ ।
ସ୍ନାନ, ଦାନ, ତୀର୍ଥସେବା, ଯଜ୍ଞ କର୍ମମାନ
ପୁଣି ଆଧ୍ୟାତ୍ମ ବିଦ୍ୟାର ସାଧନ ଯେ ମାନ ।
ଏମାନଙ୍କ ଛଡ଼ା ଅନ୍ୟ କୌଣସି ବିଦ୍ୟାରେ
ସେହି ବୋଧୋଦୟ ନ ଘଟଇ ରଘୁବୀରେ ।
ସେ ହେତୁ ଭ୍ରାନ୍ତି ବଶତଃ ଏହା ସବୁ ସତ
ବ୍ରହ୍ମ ସାଧନ ସ୍ୱତନ୍ତ୍ର ବିଦ୍ୟା ରଘୁନାଥ ।
ନିଦ୍ରା ଶୂନ୍ୟ ଚିଦାକାଶେ ଜଗତର ସ୍ୱପ୍ନ
ଜଗତ ନାମେ ପ୍ରସିଦ୍ଧ ହେ ରଘୁନନ୍ଦନ ।
ସ୍ନାନ, ଦାନ ଇତ୍ୟାଦିରେ ସେହି ଯେ ସ୍ୱପନ
କେଉଁ ନିବୃତ୍ତ ନୁହଁଇ କୌଶଲ୍ୟା ନନ୍ଦନ ।
ତୀର୍ଥ ସେବା ଦ୍ୱାରା ହୋଇଥାଏ ସ୍ୱର୍ଗପ୍ରାପ୍ତି
ମାତ୍ର ନିର୍ବାଣ ନ ମିଳେ ତହୁଁ ରଘୁପତି ।
କହନ୍ତି ବଶିଷ୍ଠ ପରମାତ୍ମା ଯେତେ କାଳ
ଅପରିଜ୍ଞାତ ରହନ୍ତି ଆହେ ରଘୁବାଳ ।
ଅବିଦ୍ୟା ବୋଲି ତାହାକୁ ଘେରି ରହିଥାଏ
ତେଣୁ ଜୀବ ରୂପେ ସେହୁ ପ୍ରତିଭାତ ହୁଏ ।
ଆତ୍ମାଠାରୁ ନିଜକୁ ସେ ମଣଇ ସ୍ୱତନ୍ତ୍ର
ଆତ୍ମାକୁ ଜାଣି ପାରିଲେ ବ୍ରହ୍ମରୂପେ ଜ୍ଞାତ ।
ପରମ ଆକାଶେ ଜାଣ ମଳ ସଂଭାବନା
କୁତ୍ରାପି ନାହିଁ, ନୋହିବ ରାମ ମହାମନା ।

ପରମାତ୍ମାର ଯାହା କି ଶୁଦ୍ଧ ସଂବେଦନ
ସୃଷ୍ଟି କାଳେ ତାହା ସ୍ୱପ୍ନ-ନଗର ସମାନ ।
ଜଗତ ଆକାର ତାହା ହୁଏ ପରକାଶ
ତା ନୋହିଲେ କେଉଁପରି ଆହେ ଇଘୁଇଶ,
କାରଣ ବିହୀନ ଧରା ଆଦିର ଉତ୍ପତ୍ତି
ସମ୍ଭବ ହୋଇ ପାରନ୍ତା ଆହେ ରଘୁପତି ?
ଜଗତ ସୃଷ୍ଟିର ନାହିଁ କୌଣସି କାରଣ
ତେଣୁ ସେହୁ ଅଟେ ସ୍ୱପ୍ନ-ସମଭାବାପନ୍ନ ।
ତେଣୁ ଧରା, ମନ, ବୁଦ୍ଧି ଆଦି କରି ଜାଣ
ସେ ଚିଦାକାଶର ସର୍ବେ ଅଟନ୍ତି ସ୍ଫୁରଣ ।
ବାୟୁ ପ୍ରବାହର ସମ ସେହି ଚିଦାକାଶେ
ସ୍ୱତଃ ଯାହା ପ୍ରତିଭାତ ହେ ରଘୁ ବିଳାସେ ।
ନାମ ତାହାର ଜଗତ ପ୍ରକାଶ ହେ ରାମ
ଅନ୍ୟ ଆଶ୍ରା ନାହିଁ ତାର ଚିଦାକାଶ ଭିନ୍ନ ।
ଉଦିତ ହେଲେ ଜଗତ ଭାବ ଚିଦାକାଶ
ହିରଣ୍ୟ ଗର୍ଭ ରୂପେ ଏହି ଯେ ଆକାଶ,
ତହିଁ ମଧ୍ୟେ ଯାଇଁ ରାମ କରେ ସେ ପ୍ରବେଶ
ଜଗତ ପ୍ରକାଶ କ୍ରମ ଏହା ରଘୁଇଶ ।
"ମୁହିଁ ହିଁ ଜଗତ କର୍ତ୍ତା" ଏହି ଭାବ ଧରି
ନିଜକୁ ଐଶ୍ୱର୍ଯ୍ୟ ପୂର୍ଣ୍ଣ ବୋଲି ମନେ କରି,
ମନ, ବୁଦ୍ଧି ଓ ଧରିତ୍ରୀ ଆଦି କଳପଇ
ତ୍ରିଭୁବନ କର୍ତ୍ତାରୂପେ ନିଜକୁ ମଣଇ ।
ତେଣୁ ଏହି ଚିଦାକାଶ ହେ ରଘୁ ବିଳାସ
ଜଗତ ଆକାର ଧରି ଯେ ହୁଏ ପ୍ରକାଶ,
ତାହାର ନାମ ହିଁ 'ସୃଷ୍ଟି' ହେ ରଘୁନନ୍ଦନ
ତେଣୁ ଏ ଜଗତ ଚିଦାକାଶୁଁ ନୁହେଁ ଆନ ।
ଅନୁଶୀଳନ କରିଣ ଦେଖିଲେ ଏ ଜ୍ଞାନ
ଚିଦାକାଶେ ଚିତାକାଶ ହୁଅଇ ସ୍ଫୁରଣ ।
ସେହି ପରମ ଆକାଶ ସର୍ବଦା ନିର୍ମଳ
ନିଜକୁ ନିଜେ କଳନ କରେ ରଘୁବାଳ ।
ଏହି ଯେ ସକଳ ଦୃଶ୍ୟ ନେତ୍ରକୁ ଦିଶଇ
ପରିପୂର୍ଣ୍ଣ ରୂପ ତା'ର ଜାଣ ରଘୁସାଇଁ ।
ତେଣୁ ସୃଷ୍ଟିକାଳେ ଚିଦାକାଶ ହେ ଶ୍ରୀରାମ
ଦୃଶ୍ୟାକାରେ ନିଜକୁ ସେ କରେ ଦରଶନ ।
ତା ତହୁଁ ସେ ଦୃଶ୍ୟ ଜାଣ ଆହେ-ରଘୁନାଥ
ଅଣୁ ମାତ୍ର ଭିନ୍ନ ନୁହେଁ ଏକଥା ନିଶ୍ଚିତ ।

ନିଜ ଚିତ୍ ସ୍ୱଭାବରେ ଆହେ ରଘୁବୀର
ବ୍ରହ୍ମ ହିଁ ଜୀବତ୍ୱ କରିନିଏ ଅଙ୍ଗୀକାର ।
ସ୍ୱରୂପ ନ ତେଜି ମନୋମୟ ଭାବ ଧରେ
ସମଷ୍ଟି ମନ ରୂପେ ସେ ପ୍ରପଞ୍ଚ ବିସ୍ତାରେ ।
ଥିଲେ ହେଁ ତହିଁରେ ତାର ସର୍ବ ଅଧିକାର
ଜଗତ ସୃଷ୍ଟି କରଣେ ଇଚ୍ଛା ବଳେ ତାର ।
ସେହି ସମଷ୍ଟି ମନ ହିଁ ଆହେ ରଘୁବୀର
ହିରଣ୍ୟଗର୍ଭ ବ୍ରହ୍ମା ସେ ବୋଲାଏ ସଂସାର ।
ସୃଷ୍ଟି କ୍ରିୟାରେ ପ୍ରଚ୍ଛନ୍ନ ଭାବେ ରହି ସେହି
ସୃଷ୍ଟି ସର୍ଜନ, ସଂହାର ସଦା କରୁଥାଇ ।
ବ୍ରହ୍ମା ଯେ ଜଗତଦାକାରେ ହୁଏ ପ୍ରତିଭାତ
ନିରାକାର ସେ ଜଗତ ଆହେ ରଘୁନାଥ ।
ଅବିଦ୍ୟା ବଶତଃ ସେହି ନିରାକର ମନ
"ଅହଂ" ଆକାର ଶରୀର ଧାରଣ କରିଣ ।
ବୋଧ, ଅବୋଧ ରୂପରେ କରେ ଅବସ୍ଥାନ
ଏ ସଂସାରେ ଦୃଶ୍ୟ ବୋଲି କିଛି ନାହିଁ ଜାଣ
ଶରୀର ନାହିଁ କି, ଅହଂଭାବ ମଧ୍ୟ ନାହିଁ
ମନ ମାତ୍ର ହିଁ ଜଗଦାକାରେ ବିରାଜଇ ।
ଚିଦ୍‌ଘନ ଆତ୍ମା ହିଁ ନିଜ ମଧ୍ୟେ ନିଜେ ରାମ
ଦେଦିପ୍ୟମାନ ରହିଛି ସର୍ବକାଳେ ଜାଣ
ବାୟୁରୁ ପୃଥକ ନୁହେଁ ଯଥା ତା' ସ୍ପନ୍ଦନ ।
ଚିଦାଭାସ ଜୀବ ତଥା ବ୍ରହ୍ମରୁ ଅଭିନ୍ନ ।
ତେଣୁ ପରମାତ୍ମା, ଆତ୍ମା, ଚିଦାକାଶ ନାମ
ବ୍ରହ୍ମେ ପ୍ରଯୁକ୍ତ ହୋଇଣ ଅଛନ୍ତି ଯେସନ,
ତଦ୍ରୂପ ପ୍ରବୃଦ୍ଧ ଜୀବମାନଙ୍କ ପକ୍ଷରେ
ସେ ସବୁ ନାମ ପ୍ରଯୁକ୍ତ କରାଯାଇ ପାରେ ।
ସତ୍, ଅସତ୍, ଯା' କିଛି ଚିନ୍ମୟ ବ୍ରହ୍ମ
ଈକ୍ଷଣ କରନ୍ତି, ଜାଣ ଆହେ ସୁଖଧାମ ।
ତାହାକୁ ହିଁ ଚିଦାଭାସ ଜୀବମାନେ ଜାଣ
ପ୍ରତ୍ୟକ୍ଷ କରୁଥାଆନ୍ତି ହେ ରଘୁନନ୍ଦନ ।
ତନ୍ମଧ୍ୟରୁ ଯା'ର ମନ ଯେ ରସେ ରସଇ
ସେହି ଭାବ ସେହୁ ଲଭୁଥାଏ ରଘୁରାଇ ।
ବ୍ରହ୍ମ ରସରେ ଯା' ଚିତ୍ତ ହୁଅଇ ପ୍ଲାବିତ
ବ୍ରହ୍ମଙ୍କୁ ସେ ଲାଭ କରିଥାଏ ରଘୁନାଥ ।
ପୃଥିବୀରେ ଯେତେ ରତ୍ନ ତା'ର ବଦଳରେ
କ୍ଷଣ ପରିମିତ ଆୟୁ ଲାଭ ନୋହିପାରେ ।

ବୃଥାରେ ସେ ଆୟୁ କାଳ ନ କାଟ ରାଘବ
ଆଧ୍ୟାତ୍ମ ଶାସ୍ତ୍ରାଲୋଚନା ସବୁରି କର୍ତ୍ତବ୍ୟ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ପରମାର୍ଥ ଗୀତା ବର୍ଣ୍ଣନେ ନାମ ୮୨ତମ ସର୍ଗଃ**



## ୮୩ତମ ସର୍ଗଃ
## ବ୍ରହ୍ମାଣ୍ଡ ଉପାଖ୍ୟାନ

ଶ୍ରୀରାମ ବୋଲନ୍ତି ଶୁଣ ଆହେ ବ୍ରହ୍ମାସୁତ
ପରିମାର୍ଜିତ ହୁଅନ୍ତେ ଏ ଦୃଶ୍ୟ ସମସ୍ତ ।
ଚିତ୍ ସ୍ୱରୂପ ଆତ୍ମା ହିଁ ରହେ ଅବଶିଷ୍ଟ
ସେହି ତ ପରମ ପୁରୁଷାର୍ଥ ମୁନି ଶ୍ରେଷ୍ଠ ।
ସେ ପରମ ପୁରୁଷାର୍ଥ ଲାଭ ପାଇ ଦେବ
ଏହି ଯେ ଦୃଶ୍ୟ ଜଗତ ତେଜିବା କର୍ତ୍ତବ୍ୟ ।
କିଂତୁ ଅତୀତ, ଭବିଷ୍ୟ ଜଗତ ତ୍ୟାଗରେ
କି ଲାଭ ଅଛଇ ତାହା କହ ମୁନିବରେ ।
କହନ୍ତି ବଶିଷ୍ଠ ପଦ, ସେ ପଦର ଅର୍ଥ
ସମ୍ବନ୍ଧ ପୁଣି ଦୃଷ୍ଟାନ୍ତ ଇତ୍ୟାଦି ସହିତ ।
ସମ୍ପର୍କ ରହିଛି ଅତୀତର ରଘୁନାଥ
ତେଣୁ କରି ଅତୀତର ଉଲ୍ଲେଖ ବ୍ୟତୀତ,
ବିଚାର ମୂଳକ ଅଟେ ଯେ ଆଧ୍ୟାତ୍ମଶାସ୍ତ୍ର
ବର୍ଣ୍ଣିତ ହୋଇ ନ ପାରେ ଆହେ ରଘୁସୁତ ।
ଉଭୟ ଅତୀତ, ଭବିଷ୍ୟତ ସୃଷ୍ଟିକାଳେ
ସ୍ୱୟଂ ଏ ଚିନ୍ମାତ୍ର ଆତ୍ମା ଜଗତ୍ରୂପ ଧରେ ।
ପ୍ରତି ଚିଦାଣୁରେ ଯେଉଁ ଅସଂଖ୍ୟ ଜଗତ
ତା' ସଂଖ୍ୟା କରିପାରିବ କିଏ ରଘୁନାଥ ?
ଏ ବିଷୟେ ପୂର୍ବେ ଥରେ ମୋ ପିତା ବ୍ରହ୍ମାଙ୍କୁ
ଯେ ପ୍ରଶ୍ନ ମୁଁ କରିଥିଲି କହୁଛି ତୁମ୍ଭଙ୍କୁ ।
ହେ ପିତଃ ସଦୟ ହୋଇ କହିବାକ ମୋତେ
ଏ ବିଶ୍ୱଜାଲ ବିସ୍ତୃତ ଅଛି ଯେ ପର୍ଯ୍ୟନ୍ତେ ।
କେଉଁଠାରେ ଅବା ତା'ର ହୋଇଛି ପ୍ରକାଶ
ବୁଝାଇ କହନ୍ତୁ ମୋତେ ସର୍ବଜ୍ଞ ଦେବେଶ ।
କହିଥିଲେ ପିତୃଦେବ ଶୁଣ ମୁନି ଈଶ
ବ୍ରହ୍ମ ହିଁ ଜଗଦାକାରେ ହୋଇଛି ପ୍ରକାଶ ।
ଅସତ ହେଲେ ହେଁ ଜଗତ୍ ସତ୍ତା ଚିରକାଳ
ସତ୍ ସ୍ୱରୂପ ବ୍ରହ୍ମ ସତ୍ତା ହେତୁ ମୁନିବର,
ଏହାର ଅନ୍ତ ପାଇବା ଅଟେ ଅସମ୍ଭବ
ଅସମ୍ଭବକୁ ସମ୍ଭବ କେ କରି ପାରିବ ?
ଆକାଶରେ ଶୂନ୍ୟତାର ସଂସ୍ଥିତି ଯେସନ
ଚିଦାକାଶେ ଚିତ୍ ପରମାଣୁ ହିଁ ତେସନ,
ବିଦ୍ୟମାନ ରହିଛନ୍ତି ଜାଣରେ ନନ୍ଦନ
ପରମାଣୁ ଗଣ ଚିଦାକାଶରୁ ଅଭିନ୍ନ ।
ବସ୍ତୁମୟ ହୋଇଲେ ହେଁ ଭୌତିକ ଆକାଶ
ଯଥା ଆପଣାକୁ ଶୂନ୍ୟମଣେ ରଘୁଈଶ ।
ଚିତ୍ ପରମାଣୁ ଅଦର୍ଶନ-ନିଦ୍ରାଯୋଗେ
ସମଷ୍ଟି ଜୀବ ଦର୍ଶନ କରେ ନିଜ ଠାବେ ।
ଅପରିଣାମୀ ଚିଦାଣୁ ଆକାଶର ସମ
ସମଷ୍ଟି ଜୀବ ରୂପରେ ଅହଂଧରି ରାମ,
ନିଜର ଆକାଶ ରୂପ କରଇ ଦର୍ଶନ
ଅନନ୍ତର ବୁଦ୍ଧି ଦରଶନ କରେ ପୁଣ ।
ନିଶ୍ଚୟାତ୍ମିକା, ନିର୍ମାଣ ପଟୀୟସୀ ବୁଦ୍ଧି
ମାୟା ରୂପେ ପ୍ରତିଭାତ ହୁଏ ରଘୁନିଧି ।
ସେ ସମଷ୍ଟି ଅହଙ୍କାର ସଙ୍କଳ୍ପ ବିକଳ୍ପ
ଆଭାସ, ଅବଲମ୍ବନ କରି ଜ୍ଞାନୀ ଭୂପ,
ନିଜକୁ ମନ ଆକାରେ କରଇ ଦର୍ଶନ
ସେ ମନ ନିଜକୁ ମଣେ ପଞ୍ଚେନ୍ଦ୍ରିୟ ମନ ।
ଏହି ଭାବେ ସେହି ଚିତ୍ ପରମାଣୁ ରାମ
ସମଷ୍ଟିମନ ଆକାର ଧାରଣ କରିଣ ।
ନିଜ ତ୍ରିଭୁବନାତ୍ମକ ସେ ଆକାଶମୟ
ବିରାଟ ଦେହକୁ ଦେଖେ ହେ ରଘୁତନୟ ।
ସେହି ଭାସ୍ୱର ଶରୀର ସ୍ଥାବର, ଜଙ୍ଗମ
ଜୀବମାନଙ୍କ ଆଶ୍ରୟ ଜାଣ ହେ ଶ୍ରୀରାମ ।
କାଳର କଳନ ଆଦି ଅନ୍ୟାନ୍ୟ ସମସ୍ତ
ତହିଁରେ କଳ୍ପିତ ହୁଏ ଆହେ ରଘୁନାଥ ।
ପରେ ଏ ସମଷ୍ଟି ଜୀବ ନିଜ ମଧ୍ୟେ ଜାଣ
ବ୍ୟଷ୍ଟି ଜୀବଭାବକୁ ସେ ଦେଖେ ସ୍ୱପ୍ନସମ ।
ତେତେବେଳେ ସର୍ବ ବ୍ୟଷ୍ଟିଜୀବ ହେ ଶ୍ରୀରାମ
ସେହି ବିରାଟ ଶରୀର ମଧ୍ୟରେ ଜାଣିମ ।
ଦରପଣେ ପ୍ରତିବିମ୍ବ ପଡ଼ିଥିଲା ପରି
ଦ୍ରଷ୍ଟା ଦରଶନ ଦୃଶ୍ୟ ଆହେ ରୂପଧାରୀ ।

ଭୋକ୍ତା ଭୋଗ, ଭୋଗ୍ୟ ପୁଣି କର୍ତ୍ତା, କାର୍ଯ୍ୟ, କ୍ରିୟା,
ଏ ସର୍ବ-ତ୍ରିପୁଟ ଭାବ ଦେଖେ ରଘୁନାହା ।
ପରେ ସର୍ବେ ନିଜ ନିଜ ହୃଦୟ ଦର୍ପଣେ
ବାହ୍ୟ ଜଗତର ଛାୟା ଦେଖନ୍ତି ନୟନେ ।
ସର୍ବ ଚିତ୍ ପରମାଣୁ ଗର୍ଭରେ ଏପରି
ସର୍ବ ବିଶାଳ ଜଗତ ରହିଛନ୍ତି ଭରି ।
ଅବିଦ୍ୟା ପ୍ରଭାବେ ଜାଣ ସେ ସର୍ବ ଜଗତ
ସ୍ଥୁଳ ରୂପେ ପ୍ରତିଭାତ ହୁଏ ରଘୁନାଥ ।
ଜ୍ଞାନ ଉଦୟେ ଅବିଦ୍ୟା ହ୍ୱନ୍ତେ ଭସ୍ମିଭୂତ
ସରବେ ବ୍ରହ୍ମଙ୍କ ମଧ୍ୟେ ହୁଅନ୍ତି ମିଳିତ ।
ତେବେ ଦ୍ରଷ୍ଟା, ଦୃଶ୍ୟ, ଦ୍ୱୈତ ପୁଣି ତା କାରଣ
କାହାର କିଛି ଅସ୍ତିତ୍ୱ ନ ରହେ ଶ୍ରୀରାମ ।
ତେଣୁ ଏ ଦୃଶ୍ୟ ସକଳ ଯାହା ପ୍ରତିଭାତ
କେବଳ ସେ ଶାନ୍ତ ବ୍ରହ୍ମ ଯାହା କି ଅନନ୍ତ ।
ଆଦି, ଅନ୍ତ ବିହୀନ ସେ ତେଣୁ କରି ଜାଣ
ଏ ପାପ ନୟନେ ରାମ କେ ତାକୁ ଚିହ୍ନିମ ।
ସମୁଦ୍ର ଜଳ ଚଞ୍ଚଳ ହୋଇଣ ଶ୍ରୀରାମ
ଉତ୍‌ଥିତ ହୁଅନ୍ତି ଯେବେ ସେ ତରଙ୍ଗମାନ ।
ସଂଖ୍ୟାତୀତ ଜଳ ପରମାଣୁ ଯେଉଁପରି
ପରକାଶ ପାଇଥାଏ ଆହେ ଧନୁର୍ଦ୍ଧାରୀ,
ଅସଂଖ୍ୟ ବ୍ରହ୍ମାଣ୍ଡ ବ୍ରହ୍ମଠାରୁ ସେହିପରି
ଅଭିନ୍ନ ହୋଇଣ ମଧ୍ୟ ଆହେ ରୂପଧାରୀ,
ଭିନ୍ନ ଭାବେ ଅବସ୍ଥାନ କରନ୍ତି ସେମାନେ
ବ୍ରହ୍ମ ବ୍ୟାପକତା ବୁଝ ଆହେ ରଘୁନାନେ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମାଣ୍ଡ ଉପାଖ୍ୟାନ ବର୍ଣ୍ଣନେ ନାମ ୮୩ତମ ସର୍ଗଃ**



## ୮୪ତମ ସର୍ଗଃ
## ସତ୍ୟ ବର୍ଣ୍ଣନ

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ସ୍ୱପ୍ନ ପରି ଅଟେ ଯଦି ଜଗତ ଜନମ ।
କାରଣ ବିହୀନ ହୋଇ ବ୍ରହ୍ମଠାରୁ ଜାତ
ଧାନ୍ ଆଦି ଶସ୍ୟମାନେ କିପରି ସମ୍ଭୂତ ?
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ସ୍ୱପ୍ନସମ ଜଗତ୍ ଯେଣୁ କାରଣ ବିହୀନ ।
ଯଦି ଜଗତ ଏପରି ବ୍ରହ୍ମରୁ ଜନମ
ତେବେ ଧାନ ଆଦି ଶସ୍ୟ ଯେତେ ଅଛି ଜାଣ ।
ଭୂମି କରଷଣ ବୀଜ ବପନ ବ୍ୟତୀତ
ଶସ୍ୟ ଉତ୍ପନ୍ନ ନୋହିବ କିମ୍ବା ବ୍ରହ୍ମସୁତ ?
କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଅନାଦି କାଳରୁ ଦୃଢ଼ଭାବେ ଯେଉଁ ଜନ ।
ଯେପରି କଳ୍ପନା ମାନ ଆସୁଥାଏ କରି
ସେପରି କାର୍ଯ୍ୟ କାରଣ ସେ ଦର୍ଶନ କରି ।
କଳ୍ପନାକର୍ତ୍ତାର ବୁଦ୍ଧି ଅନୁସାରେ ରାମ
ବସ୍ତୁମାନଙ୍କର ଅନୁଭବ ହୁଏ ଜାଣ ।
ତେଣୁ ଯେପରି ଯାହାର କଳ୍ପନା ହୁଅଇ
ଅନୁରୂପ ବସ୍ତୁ ଜ୍ଞାନ ତାର ହୋଇଥାଇ ।
ଚେତନ ଶରୀରେ ଅଚେତନ ନଖ କେଶ
ପ୍ରତୀତ ହୁଅଇ ଯଥା ହେ ରଘୁବିଳାସ ।
କଳ୍ପନା ଓ ଅକଳ୍ପନା ଉଭୟ ଆତ୍ମକ
ଏ ଜଗତ ଜାଣିରଖ ହେ ରଘୁନାୟକ ।
ଏ ଜଗତେ 'ଯା' ଅଚିତ 'ତା' କଳ୍ପନାତ୍ମକ
କିନ୍ତୁ ଚିତ୍ ଅଟେ ରାମ 'ଅକଳ୍ପନାତ୍ମକ' ।
ବ୍ରହ୍ମଙ୍କ ସ୍ୱଭାବ ହେତୁ ଆହେ ରଘୁଈଶ
କଳ୍ପନାତ୍ମକ ଅଂଶର ହୁଅଇ ପ୍ରକାଶ ।
ତେଣୁ ତାତ୍ତ୍ୱିକ ଦୃଷ୍ଟିରୁ ଏ ଉଭୟ ରାମ
ବ୍ରହ୍ମଙ୍କ ମଧ୍ୟରେ ରହିଛନ୍ତି ବର୍ତ୍ତମାନ ।
କୌଣସି ବିରୋଧ ଭାବ ନ ଥାଇ ଏଥିରେ
ଏହି କଥା ନ ଭୁଲିବ ଆହେ ରଘୁବୀରେ ।
ଥିଲେ ହେଁ ଉଭୟଭାବ ବ୍ରହ୍ମେ ବିଦ୍ୟମାନ
କାରଣ ବିନା 'ଯା' ହୋଇଥାଏ ଉତପନ୍ନ,
କେବଳ ସେହି ବିଷୟ କରୁଛି ବର୍ଣ୍ଣନ
ମନ କର୍ଣ୍ଣ ଦେଇ ତାହା ଶୁଣ ରଘୁନାନ ।
ଉଦିତ ବିକଳ୍ପ ହେଲେ ବ୍ରହ୍ମଙ୍କ ମଧ୍ୟରୁ
ଅନ୍ୟକିଛି ଜନ୍ମିପାରେ ଧର୍ମ ମହାମେରୁ ।
ଯେଣୁ କରି ବଇଚିତ୍ର୍ୟମୟ ଏ ଜଗତ
ଆଦି ଅନ୍ତହୀନ ଭାବେ ହୁଏ ପ୍ରକାଶିତ,
ନାନା ହୋଇଲେ ହେଁ ତାହା ଏକମାତ୍ର ବ୍ରହ୍ମ
ତେଣୁ ବା କିଏ କାହାର ହୋଇବ କାରଣ ?

କିଛି ତ ଉତ୍ପନ୍ନ ନୋହି ବସ୍ତୁତଃ ଜଗତେ
କିଛି ହିଁ ବିନିଷ୍ଟ ନ ହୁଅଇ ରଘୁନାଥେ ।
କେବଳ ଆଦ୍ୟନ୍ତ ହୀନ ଏକ ଚିଦାକାଶ
ବିରାଜିତ ରହିଅଛି ହେ ରଘୁବିଳାସ ।
କେବଳ ସେ ଚିତ୍ ତତ୍ତ୍ୱ ଉପଦେଶ ପାଇଁ
"କେହି କାହାର କାରଣ ହୋଇ ନ ପାରଇ" ।
ଏହି କଥା ପୂର୍ବେ ମୁହିଁ କହିଅଛି ଜାଣ
ତତ୍ତ୍ୱ ଦୃଷ୍ଟିରେ ଏହା ହିଁ ସତ୍ୟ ବୋଲି ଘେନ ।
କିନ୍ତୁ କଳ୍ପନା ଦୃଷ୍ଟିରେ କାରଣ ନ ଥାଇ
କିଛି ମାତ୍ର ଉତ୍ପନ୍ନ ହୋଇ ନ ପାରଇ ।
ଶ୍ରୀରାମ ବୋଲନ୍ତି ବ୍ରହ୍ମନ୍ ! ତତ୍ତ୍ୱଜ୍ଞ ପୁରୁଷ
ଆଗ୍ରହୀ ଶିଷ୍ୟଙ୍କୁ ଦେବାପାଇଁ ଉପଦେଶ ।
ଅଜ୍ଞ ଜନୋଚିତ ଉଦାହରଣମାନଙ୍କୁ
ଯେପରି ସ୍ୱୀକାର କରିଥାଆନ୍ତି ତାହାଙ୍କୁ ।
ସେପରି ପ୍ରଧାନ ପୁଣି ପରମାଣୁ ଆଦି
କାର୍ଯ୍ୟ କାରଣାଦି ଭାବ, ଆହେ ତପୋନିଧି,
ସ୍ୱୀକାର କରିବେ ନାହିଁ କେବଣ କାରଣ
ବୁଝାଇ କହିବା ହେଉ ହେ ତପୀମଣ୍ଡନ ।
ବୋଲନ୍ତି ବଶିଷ୍ଠ ଏବେ ଶୁଣ ରଘୁନାଥ
ଯଦି କିଛି ବ୍ରହ୍ମଠାରୁ ଥାଆନ୍ତା ସ୍ୱତନ୍ତ୍ର ।
ପ୍ରଧାନ ପରମାଣୁର ଥାଆନ୍ତା ଅସ୍ତିତ୍ୱ
କାର୍ଯ୍ୟ କାରଣର ଭାବ ହୁଅନ୍ତା ସ୍ୱୀକୃତ ।
ତତ୍ତ୍ୱଜ୍ଞ ପକ୍ଷରେ ଯେଣୁ ବ୍ରହ୍ମଙ୍କ ବ୍ୟତୀତ
ଅନ୍ୟ କିଛି ସତ୍ତା ନାହିଁ ଆହେ ରଘୁସୁତ ।
ତେବେ ଆକାଶ ପାଦପ ବିରହ କିପରି
ସମ୍ଭବ ହୋଇପାରିବ ଆହେ ରଘୁଶିରୀ ?
ତତ୍ତ୍ୱଜ୍ଞ ଅଟନ୍ତି ଯେଉଁମାନେ ହେ ଶ୍ରୀରାମ
ଐକ୍ୟ ବୋଧ ସମ୍ପର୍ଣ୍ଣ ଅଟନ୍ତି ସେହିମାନ ।
ବିଜ୍ଞାନ ଘନ ବୋଲାନ୍ତି ଜାଣ ସେହିମାନ
ଘେନା ସେ କରନ୍ତି ନାହିଁ ଅସତ୍ ବସ୍ତୁମାନ ।
"ପକ୍ଷାନ୍ତରେ ବ୍ରହ୍ମ କିସ ନ ଜାଣଇ ମୁହିଁ"
ଏ ଅନୁଭବ କରନ୍ତି ତର୍କ କଲା ଭାଇ ।
ତେଣୁ ତାର ଦୃଷ୍ଟି କାର୍ଯ୍ୟ କାରଣର ପ୍ରତି
ଆବଦ୍ଧ ହୋଇଣ ଥାଏ ଆହେ ରଘୁପତି ।
"ବ୍ରହ୍ମ କିଏ ନ ଜାଣଇ" ଏହି ଭାବ ଜାଣ
ଏକ ପରକାର ବୋଧ, କୌଶଲ୍ୟା ନନ୍ଦନ ।

ଦୃଷ୍ଟି ରଖିପାର ଯଦି ଏହି ବୋଧ ପ୍ରତି
ହୃଦେ ହୁଏ ବ୍ରହ୍ମ ପ୍ରକାଶର ଅନୁଭୂତି ।
ଜ୍ଞାନର ସ୍ୱରୂପ ଅଟେ ଆତ୍ମା ସ୍ୱଭାବତ
ଅଜ୍ଞାନ ଯେ ଯାଏ ତହିଁ ନୁହେଁ ଆରୋପିତ,
ଜ୍ଞାନରେ ଅଜ୍ଞାନ କେଭେଁ ରହି ନ ପାରିବ
ହେତୁ ରଖିଥିବ ସଦା ହେ ରଘୁ ପୁଙ୍ଗବ ।
ଅଜ୍ଞାନମୟ ଅଟଇ ଏହି ଯେ ଜଗତ
ଚିନ୍ମାତ୍ର ଆତ୍ମାରେ ହୋଇଅଛି ଆରୋପିତ ।
ଆନନ୍ଦ ଅଟେ ଆତ୍ମାର ସ୍ୱରୂପ ଲକ୍ଷଣ
ଅନୁଭବି ନ ପାରନ୍ତି ତାହା ଅଜ୍ଞ ଗଣ ।
ଜଗତ କାରଣ ମାୟା ଅଜ୍ଞଙ୍କ ବୁଦ୍ଧିରେ
ଏହି ତତ୍ତ୍ୱ ଯଦି ରାମ ଧରା ଯାଇପାରେ ।
ଅଦ୍ୱୈତ ଜ୍ଞାନର୍ ତାହାଦ୍ୱାରା ରଘୁନାନ
କିଛିମାତ୍ର ହାନୀ ନ ହୁଅଇ କଦାଚନ ।
କାରଣ ବିହୀନ ପୁଣି କାରଣ ସମ୍ପର୍ଣ୍ଣ
ଉଭୟଭାବ ଅଛନ୍ତି ଏ ଜଗତେ ଜାଣ ।
ରଜ୍ଜୁରେ ସର୍ପର ଜ୍ଞାନ ହେ ରଘୁନନ୍ଦନ
ଉଦାହରଣ ଅଟଇ ଏହି ସ୍ଥଳେ ଜାଣ ।
ତନ୍ମଧ୍ୟେ ସଂବିତ ଦ୍ୱାରା ଯେ ରୂପ କଳ୍ପିତ
ତାହା କେବଳ ହୋଇଣଥାଏ ଅନୁଭୂତ ।
ତତ୍ତ୍ୱଜ୍ଞ ପାଇଁ ଚିନ୍ମାତ୍ର ଆତ୍ମା ହିଁ କେବଳ
ଅଖଣ୍ଡଭାବେ ବିରାଜେ କୌଶଲ୍ୟା ଦୁଲାଳ ।
ତେଣୁ କରି ସେମାନଙ୍କ ଦୃଷ୍ଟିରେ ସୃଷ୍ଟିର
ଅନ୍ୟ କୌଣସି କାରଣ ନାହିଁ ରଘୁବୀର ।
ବୈଶେଷିକ ଗଣ ସୃଷ୍ଟି କାରଣ ବୋଲିଣ
ଯେ' ପରମାଣୁ ଆଦିଙ୍କୁ କରନ୍ତି କଳ୍ପନ,
ଶ୍ରୁତି, ଯୁକ୍ତି, ଅନୁଭବ ବିରୁଦ୍ଧନା ଜାଣ
ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ପ୍ରତିକୂଳ ପୁଣ ।
ଭୋକ୍ତା, ଜୀବ ପୁରୁଷାର୍ଥ ସାଧନ ବିରୁଦ୍ଧ
ତେଣୁ ନିରର୍ଥକ ତାହା ରଘୁକୁଳ ସିଦ୍ଧ ।
ବୈଶେଷିକ ମାନଙ୍କର କାରଣ କଳ୍ପନା
ତତ୍ତ୍ୱଜ୍ଞାନୀ ମାନେ ତେଣୁ ନ କରନ୍ତି ଘେନା ।
ତେଣୁ ଜଗତ ସପନ ସମ ବୋଲି ଜାଣ
ଅନ୍ୟ କାରଣ କଳ୍ପନା ନୁହେଁ ସମୀଚୀନ ।
ସ୍ୱପ୍ନ ଦୃଷ୍ଟ ପଦାର୍ଥର ତତ୍ତ୍ୱ ନ ଜାଣିଲେ
ମହା ମୋହ ବିସ୍ତାର ସେ କରିଥାଏ ଭଲେ ।

କିନ୍ତୁ ପଦାର୍ଥର ତତ୍ତ୍ୱ ଜାଣିଲେ ରାଘବ
ମୋହ ବିସ୍ତାର କେବେହେଁ ଘଟି ନ ପାରିବ ।
ତାଦୃଶ ମଣିବ ଏହି ଜଗତକୁ ରାମ
ଜଗତ କାରଣ ଏବେ କହୁଅଛି ଶୁଣ ।
ଅଜ୍ଞାନ-ଆଚ୍ଛନ୍ନ-ଆତ୍ମା ବ୍ରହ୍ମଙ୍କୁ ଶ୍ରୀରାମ
ଜାଣି ନ ପାରିବା ଅଟେ ଜଗତ କାରଣ ।
ନିଦ୍ରାରେ ମନୁଷ୍ୟ ଯଥା ସ୍ୱପ୍ନ ସ୍ୱପ୍ନାନ୍ତର
ଦେଖି ସେହି, ସେହି ଭାବେ ଧାଏଁ ନିରନ୍ତର ।
ସୃଷ୍ଟିରୁ ସୃଷ୍ଟିକୁ ବ୍ରହ୍ମ ମଧ୍ୟ ସେହିପରି
ଦର୍ଶନ କରି ତନ୍ମଧ୍ୟେ ଅବସ୍ଥାନ କରି ।
ଅବାସ୍ତବ ରୂପମାନ ସ୍ୱପ୍ନ ସମୟରେ
ଯାହା ସବୁ ଦେଖାଯାନ୍ତି ଯେମନ୍ତ ରୂପରେ ।
ବାସ୍ତବରେ ସେମାନଙ୍କ ସେପରି ଆକାର
କେବେ ହେଁ ହୋଇ ନ ପାରେ କୌଶଲ୍ୟା କୁମାର ।
ସେହିପରି ନିରାମୟ ବ୍ରହ୍ମଙ୍କ ମଧ୍ୟରେ
ପୃଥିବୀ ପ୍ରଭୃତି ନ ଥିଲେ ହେଁ ରଘୁବୀରେ,
ସେହି ବ୍ରହ୍ମ ଗଗନରେ ସେ ଆକାରମାନ
ପ୍ରତିଭାତ ହେଉଥାନ୍ତି ହେ ରଘୁନନ୍ଦନ ।
ସର୍ବାନୁଭବ ଆତ୍ମାଙ୍କ ମଧ୍ୟରେ ଯେସନ
ଘଟ ପଟ ଆଦି ସାକାରରେ ବିଦ୍ୟମାନ ।
ବ୍ରହ୍ମମଧ୍ୟେ ସେହିପରି ଗତ, ବର୍ତ୍ତମାନ
ଅନାଗତ, ସୃଷ୍ଟିମାନ ଜାଣ ବିଦ୍ୟମାନ ।
ଶବ୍ଦ ଓ ସୃଷ୍ଟି ଉଭୟ ଯେଣୁ ଚିନ୍ମୟ
ବିଚାରର ପ୍ରୟୋଜନ କିସ ରଘୁରାୟ ?
ବାସନା ବିହୀନ ଆତ୍ମା କେବଳ ଶ୍ରୀରାମ
ମୁକତି ନାମରେ ଖ୍ୟାତ ଅଟଇଟି ଜାଣ ।
ବାସନା ଅଟଇ ଏହି ଜଗତର ବୀଜ
ସର୍ବାଦୌ ହେ ରଘୁଜାତ ତାହାକୁ ହିଁ ତେଜ ।
ବାସନା ବଶତଃ ଚିତ୍ ନାନା ଆକାରରେ
ପ୍ରତିଭାତ ହୁଏ ଯଥା ସ୍ୱପ୍ନ ସମୟରେ ।
ସେ ବାସନା ନାନାକାରେ ହେଲେହେଁ ପ୍ରକାଶ
ମୂଳତଃ ତା ଏକ, ଜ୍ଞାନ ମଧ୍ୟେ ତା ନିବାସ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମଗୀତା ସତ୍ୟ ବର୍ଣ୍ଣନେ ନାମ ୮୪ତମ ସର୍ଗଃ**



## ୮୫ତମ ସର୍ଗଃ
## ଇନ୍ଦୁ ଉପାଖ୍ୟାନ

କହନ୍ତି ଶ୍ରୀରାମ ଭବେ ମୂର୍ତ୍ତ ଓ ଅମୂର୍ତ୍ତ
ଦେଖା ଯାଇଥାନ୍ତି ଦୁଇ ପ୍ରକାର ପଦାର୍ଥ ।
ମୂର୍ତ୍ତ ପଦାର୍ଥ ସକଳେ ଅଟନ୍ତି ସଂଶ୍ଳିଷ୍ଟ
ଯେ ଅମୂର୍ତ୍ତ, ସେ ସଂଶ୍ଳିଷ୍ଟ ନୁହେଁ ତପୀଇଷ୍ଟ ।
ମୋ ମତରେ ସଂବେଦନ ଅଟଇ ଅମୂର୍ତ୍ତ
ଅସଂଶ୍ଳିଷ୍ଟ ଥାଇ ମୂର୍ତ୍ତ ପଦାର୍ଥ ସହିତ ।
ଉତ୍ପନ୍ନ ହୋଇଣ ଥାଏ, ତାହା ତପୋଧନ
ନୁହେଁ କି ଯୁକ୍ତି ସଙ୍ଗତ ମୋହର କଥନ ?
ପରସ୍ପର ସଂଶ୍ଳିଷ୍ଟ ଯେ ଏ ମୂର୍ତ୍ତ ଶରୀର
ଅମୂର୍ତ୍ତ ସଂବିତ ତାକୁ ଚଳେ କି ପ୍ରକାର ?
ସଂବିତକୁ ଯଦି ପରିଚାଳକ ଭାବରେ
ଅଙ୍ଗୀକାର କରାଯାଇପାରେ ମୁନି ବରେ ।
ତାହା ହେଲେ ତୃଷାକୁଳ ପଥିକ ଇଚ୍ଛାରେ
ଦୂରସ୍ଥ ଜଳ ନ ଆସେ କିମ୍ବା ନିକଟରେ ?
କହନ୍ତି ବଶିଷ୍ଠ ମୁନି ଶୁଣ ରଘୁବୀର
ମୂର୍ତ୍ତ ବା ସଂଶ୍ଳିଷ୍ଟ ବସ୍ତୁ ନାହିଁ ଜଗତର ।
ସର୍ବତ୍ର, ସର୍ବଦା, ସର୍ବରୂପେ ସେହି ଶାନ୍ତ
ସଂବିତ୍ କେବଳ ରହି ଅଛଇ ବିସ୍ତୃତ ।
ପୃଥିବ୍ୟାଦି ବସ୍ତୁ ରୂପେ ଯା କିଛି ଦେଖୁଛ
ସେ ସକଳ ସ୍ୱପ୍ନଦୃଷ୍ଟ ଆହେ ରଘୁବତ୍ସ ।
କିମ୍ବା ସଙ୍କଳ୍ପ ନଗର ସମ ସେହୁ ଶାନ୍ତ
ଶୁଦ୍ଧ ଓ ସଂବିତମୟ ଆହେ ରଘୁନାଥ ।
କେବେ ହେଁ ନୁହନ୍ତି ସେହୁ ସଂଶ୍ଳିଷ୍ଟ ବା ମୂର୍ତ୍ତ
ତେଣୁ ସେମାନେ ହେ ରାମ ଅଟନ୍ତି ଅମୂର୍ତ୍ତ ।
ଏ ସମସ୍ତ ଜଗତକୁ ତତ୍ତ୍ୱବିତ ମାନେ
ସଂବିତମୟ ଅମୂର୍ତ୍ତ କରିଥାନ୍ତି ଜ୍ଞାନ ।
ଆଉ ମଧ୍ୟ ଅସଂଶ୍ଳିଷ୍ଟ ଅଟେ ଏ ଜଗତ
ତତ୍ତ୍ୱଜ୍ଞାନୀମାନଙ୍କର ଜାଣ ଏହି ମତ ।
ଏ ଜଗତ ମନୋମୟ ବୁଝାଇବା ପାଇଁ
ଇନ୍ଦୁ ପୁତ୍ରଗଣ କଥା ପୂର୍ବେ କହିଛଇଁ ।
ଜଗତ ଯେ ଚିନ୍ମାତ୍ର, ଏ ନିର୍ବାଣ ସିଦ୍ଧି
ପାଇଁ ମୁଁ ସେ ଉପାଖ୍ୟାନ କହେ ରଘୁନିଧି ।

ତପସ୍ୟା, ବେଦ, କ୍ରିୟାର ଆଧାର ସ୍ୱରୂପ
ଇନ୍ଦୁନାମେ ପୂର୍ବେ ଥିଲେ ଜାଣ ଏକ ବିପ୍ର ।
ସତ୍ୟାଶ୍ରୟୀ, ସଦାଶୟ, ଦଶଟି କୁମର
ଜନମ ଲଭିଣ ଥିଲେ ସେହି ବିପ୍ରଙ୍କର ।
କାଳକ୍ରମେ ଇନ୍ଦୁ କରେ ସ୍ୱର୍ଗ ଆରୋହଣ
ପତ୍ନୀ ମଧ୍ୟ ତାଙ୍କ ସହ ଗଲେ ସ୍ୱର୍ଗଧାମ ।
ପାରଲୌକିକ କରମ ମାନ ସମ୍ପାଦନ
କରି ପୁତ୍ରମାନେ କଲେ ବନକୁ ଗମନ ।
ଉପଦ୍ରବ ଶୂନ୍ୟ ଏକ ପର୍ବତ ଗୁହାରେ
ପଦ୍ମାସିନାସନ ହୋଇ ସେ ଦଶ କୁମରେ ।
ପ୍ରତ୍ୟେକ ମନେ ଏସନ କରନ୍ତି କଳ୍ପନା
"ବ୍ରହ୍ମାଣ୍ଡ ଶରୀରଧାରୀ ମୁହିଁ ସେହି ବ୍ରହ୍ମା" ।
ଅବିଚଳିତ ରହିଣ ଏହି ଧାରଣାରେ
ପ୍ରତ୍ୟେକ ବ୍ରହ୍ମା ବୋଲିଣ ଅନୁଭବ କଲେ ।
କାଳକ୍ରମେ ସେହିମାନେ ଦଶ ବ୍ରହ୍ମାଣ୍ଡର
ଅଧିପତି ହୋଇଥିଲେ ସେ ବିପ୍ର କୁମର ।
ଏକପକ୍ଷେ ତାଙ୍କ ଚିତ୍ ଆହେ ରଘୁନାଥ
ବ୍ରହ୍ମାଣ୍ଡ ଓ ବ୍ରହ୍ମାକାରେ ହୁଏ ପରିଣତ ।
ପକ୍ଷାନ୍ତରେ ସେହି ଚିତ୍ ସ୍ୱଚ୍ଛ, ନିରାକାର
ରୂପଧରି ବିରାଜନ୍ତି ବ୍ରହ୍ମାଣ୍ଡ ମଧ୍ୟର ।
ଯେଣୁକରି ଏ ଜଗତ ଅଟେ ସଂବିତ୍‌ମୟ
ସେ ଜଗତ ଅଙ୍ଗରୂପ ହେ ରଘୁତନୟ ।
ମୃତ୍ତିକା, ପର୍ବତ, ଜଳ ଇତ୍ୟାଦିକୁ ତୁମେ
ଚିନ୍ମୟ ବୋଲି ମଣିବ ଆହେ ମହାତ୍ମନେ ।
ଇନ୍ଦୁପୁତ୍ରମାନଙ୍କର ସେହି ଯେ ଜଗତ
ସଂବିଦାକାଶ ବ୍ୟତୀତ ଆହେ ରଘୁନାଥ,
ଅନ୍ୟକିଛି ନୁହେଁ ଯଥା, ଏହି ଉକ୍ତି ସତ
ଆମ୍ଭମାନଙ୍କର ଏହି ଯେ ଦୃଶ୍ୟ ଜଗତ,
କାଷ୍ଠ, ଲୋଷ୍ଟ୍ର ପାଷାଣାଦି ଯାହା ତନ୍ମଧ୍ୟସ୍ଥ
ସେହି ସମସ୍ତ ଚିନ୍ମୟ ଜାଣ ରଘୁନାଥ ।
ଇନ୍ଦୁପୁତ୍ରଙ୍କ ଭାବନା ଯଥା ରଘୁନାଥ
ତଦୀୟ ଜଗଦାକାରେ ହେଲା ପ୍ରକାଶିତ ।
ସେହିପରି ବ୍ରହ୍ମାଙ୍କର ଚିନ୍ତା ରଘୁନାଥ
ଆମ ଏ ଦୃଶ୍ୟ ଜଗତ ରୂପେ ପ୍ରକାଶିତ ।
ତେଣୁ ଏ ପୃଥ୍ୱୀ, ପର୍ବତ, ସର୍ବ ଭୂତମାନ
ସମସ୍ତେ ଚିନ୍ମୟ ଜାଣ ହେ ରଘୁନନ୍ଦନ ।

ଚିତ୍‌ସ୍ୱରୂପ ପରମ ତତ୍ତ୍ୱ ହିଁ କେବଳ
ବୃକ୍ଷ, ନଭ, ସ୍ୱର୍ଗ, ନଗ, ରୂପେ ରଘୁବାଳ,
ପ୍ରକାଶ ପାଉଅଛନ୍ତି ଏ ସାରା ସୃଷ୍ଟିରେ
ଏହିକଥା ମନେରଖ ଆହେ ରଘୁବୀରେ ।
ଆଲୋକ ପ୍ରକାଶ ଯଥା ସୂର୍ଯ୍ୟର ଧରମ
ଅନ୍ଧକାର ପ୍ରକାଶିବା ନୁହେଁ ତା'ର ଧର୍ମ ।
ତଥା ଚେତନା ପ୍ରକାଶ ବ୍ରହ୍ମଙ୍କର ଧର୍ମ
ଜଡ଼ତ୍ୱ ପ୍ରକାଶ ନୁହେଁ ତାହାଙ୍କ ଧରମ ।
ଏଣୁକରି ଏ ସମସ୍ତ ଅଟନ୍ତି ଚେତନ
ଏଥିରେ ତୁମ୍ଭେ କେବେ ହେଁ ନୁହ ସନ୍ଦିହାନ ।
ଯେଣୁକରି ରଘୁନାନ ଏହି ଯେ ଜଗତ
ଚତୁରାନନ ବ୍ରହ୍ମାଙ୍କ ସଙ୍କଳ୍ପ ସମ୍ଭୂତ ।
ମନୋମୟ ରାଜ୍ୟପରି ତେଣୁ ଚିନ୍‌ମାତ୍ର
ବ୍ରହ୍ମା କେବଳ ଜଗଦାକାରେ ବିରାଜିତ ।
ଯେମାନେ ଏହାକୁ ଅଚେତନ ବୋଲି କହି
ପଣ୍ଡିତଙ୍କ ମତେ ଉପହାସ୍ୟ ଯୋଗ୍ୟ ସେହି ।
ଏ ଜଗତ ସଚେତନ ହୁଅନ୍ତେ ପ୍ରତୀତ
ସଦ୍ୟ ସଦ୍ୟ, ସର୍ବ ଦୁଃଖ ହୋଇଯାଏ ଅସ୍ତ ।
ଏପରି ପ୍ରତୀତି ଯେଉଁମାନଙ୍କର ନୋହି
ବଜ୍ରବତ ଏ ସଂସାର ତାଙ୍କୁ ଜଣାଯାଇ ।
କେବେ ହେଲେ ଶାନ୍ତି ଆସି ନ ପାରେ ତାଙ୍କର
ଶାନ୍ତି କି ଆଳୁ କଦଳୀ ଆହେ ରଘୁବୀର ?
ନିଜର ମଙ୍ଗଳକାଂକ୍ଷୀ ଅଟେ ଯେଉଁ ନର
ଏହି ଚେତନାକୁ କରିବ ସେ ଦୃଢ଼ତର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମଗୀତା ପ୍ରସଙ୍ଗେ ଇନ୍ଦୁ ଉପାଖ୍ୟାନ ବର୍ଣ୍ଣନେ ନାମ ୮୫ତମ ସର୍ଗଃ**



## ୮୬ତମ ସର୍ଗଃ
## ସର୍ବ-"ବ୍ରହ୍ମମୟ" ପ୍ରତିପାଦନ

କହନ୍ତି ବଶିଷ୍ଠ ଯେଣୁ ଜଗତ ଚିନ୍ମୟ
ତାର ମୂର୍ତ୍ତମନ୍ତା ଭାବ ହେ ରଘୁତନୟ ।
ଆବର ତା ପରସ୍ପର ସଂଶ୍ଳିଷ୍ଟ ଭାବର
ଉଦୟ ହୁଅଇ ଯାହା ଅଜ୍ଞାନୀ ହୃଦର,

ସେ ସବୁର ସମ୍ଭାବନା କିଛିନାହିଁ ରାମ
ବୁଦ୍ଧିମାନ ଜ୍ଞାନୀଙ୍କର ଏ ସିଦ୍ଧାନ୍ତ ଜାଣ ।
ଦେହ, ଅନ୍ୟ ପରସ୍ପର ସଂଶ୍ଳିଷ୍ଟ ବସ୍ତୁର
ସମ୍ବନ୍ଧ ବା କାହିଁ କହ ଆହେ ରଘୁବୀର ?
ଯାହା କିଛି ତୁମେ ଦେଖୁଅଛ ରଘୁବୀର
ଏକମାତ୍ର ଅସଂଶ୍ଳିଷ୍ଟ ବ୍ରହ୍ମ ହିଁ କେବଳ ।
ଏହିଭାବେ ସୁବିସ୍ତୃତ ହୋଇଅଛି ରହି
ଅଥଚ କାହାରି ସଙ୍ଗେ ସମ୍ପର୍କ ତା ନାହିଁ ।
ଆକାଶେ ଆକାଶ ଯଥା ରହେ ବିଦ୍ୟମାନ
ଶାନ୍ତ-ଚିଦାକାଶେ ଚିଦାକାଶ ବର୍ତ୍ତମାନ ।
ଲୌକିକ ମତେ କାରଣ ବ୍ୟତୀତ୍ କାର୍ଯ୍ୟର
ଉତ୍ପତ୍ତି ହୋଇ ନଥାଏ କୌଶଲ୍ୟା କୁମର ।
ତତ୍ତ୍ୱ ଦୃଷ୍ଟିରେ ଯେ, ବ୍ରହ୍ମ ବିକାର ବିହୀନ
ଆବର ଅଦ୍ୱୟ ଯେଣୁ ବ୍ରହ୍ମ ସନାତନ,
ଅନ୍ୟ କୌଣସି କାରଣ ଆଶଙ୍କା ତା ପାଇଁ
ରହି ନ୍ ପାରଇ ଜାଣ ଆହେ ରଘୁସାଇଁ ।
ତେଣୁ ସୃଷ୍ଟିର ଅଭାବ୍ ଯେବେ ହୋଇଯାଇ
ତାହାର ଅସତ୍ୟତା ହିଁ ପ୍ରମାଣିତ ହୋଇ ।
ଯାହାର ଯେପରି ନିଶ୍ଚୟତା ଜନ୍ମିଥାଇ
ତାହାକୁ ହିଁ ଦରଶନ ସେହୁ କରିଥାଇ ।
ଇନ୍ଦୁପୁତ୍ରଙ୍କ ସଙ୍କଳ୍ପମୟ ଯେ ଜଗତ
ଏ ବିଷୟରେ ଦୃଷ୍ଟାନ୍ତ ଆହେ ରଘୁନାଥ ।
ଏକଇ ସଂବିତ ବହୁଭାବେ ପ୍ରତିଭାତ
ବହୁଭାବେ ଯେଉଁମାନେ ଥାନ୍ତି ଅବସ୍ଥିତ,
ସେମାନଙ୍କ ମଧ୍ୟେ ମଧ୍ୟ ଏକତ୍ୱର ଭାବ
ପରିଦୃଷ୍ଟ ହୋଇଥାଏ ହେ ରଘୁ ପୁଙ୍ଗବ ।
ହେଲେ ହେଁ ବିଭିନ୍ନ ଶତ ଶତ ନଦୀମାନ
ସମସ୍ତେ ଜଳର ରୂପ ହେ ରଘୁ ନନ୍ଦନ ।
ଦିନ, ମାସ, ଋତୁ, ବର୍ଷ ହେଲେ ହେଁ ବିଭିନ୍ନ
ଏକମାତ୍ର କାଳ ତାହା ଜାଣ ରଘୁନାନ ।
ଏହି ରୂପେ ଏକମାତ୍ର ସଂବିତ ଆକାଶ
ବିଭିନ୍ନ ଶରୀର ଧରି ହେଲେ ହେଁ ପ୍ରକାଶ,
ସପନ ଦୃଷ୍ଟ ପର୍ବତ ସଦୃଶ ସେମାନ
ସମସ୍ତ ହିଁ ନିରାକାର ଅଯୋଧ୍ୟା ମଣ୍ଡନ ।
ଯେଣୁ କରି ଅନୁଭବ ରୂପୀ ଏ ସଂବିତ
ଦ୍ରଷ୍ଟା, ଦୃଶ୍ୟ, ଦରଶନ ରୂପେ ପ୍ରକାଶିତ,
ତେଣୁ କରି ଏ ଜଗତ ଚିଦାକାଶ ଭିନ୍ନ
ଆଉ କିସ ହୋଇପାରେ ହେ ରଘୁ ନନ୍ଦନ,
ପରମେଶ୍ୱର ଅଟନ୍ତି ଯେଉଁ ଚିଦାକାଶ
ତହିଁରେ ଜଗତଭାବ ମିଥ୍ୟା ରଘୁଈଶ ।
ସପନରେ ବ୍ୟାଘ୍ର ଦେଖି ଭୟପାଏ ନର
ସ୍ୱପ୍ନ ଭଂଗେ ଭୟ ତା'ର ଯଥା ହୁଏ ଦୂର ।
ତଥା ଜ୍ଞାନୋଦୟ ଜଗତ୍ ଦରଶନ ସ୍ୱପ୍ନ
ନିବୃତ୍ତ ହୁଅନ୍ତେ ଭୟ କରେ ପଳାୟନ ।
ଏକଇ ସଂବିତ ଯଥା ସ୍ୱପ୍ନ ଅବସ୍ଥାରେ
ପ୍ରତିଭାତ ହୋଇଥାଏ ନାନା ଆକାରରେ ।
ସେହିପରି ସୃଷ୍ଟି କାଳେ ବ୍ରହ୍ମ ନିରଞ୍ଜନ
ନାନା ଆକାରରେ ହୋଇଥାନ୍ତି ପ୍ରକାଶନ ।
ଭ୍ରାନ୍ତିବଶ ଆକାଶରେ ବୃକ୍ଷ ଦରଶନ
ଯେଉଁପରି ଘଟିଥାଏ ହେ ରଘୁନନ୍ଦନ ।
ଶିବରୂପୀ ଜଳକଣା ସେହିପରି ରାମ
ଶିବ ସମୁଦ୍ରରେ ହୋଇଥାଆନ୍ତି ସ୍ଫୁରଣ ।
ଅଜ୍ଞଜନ ନିକଟରେ ସେ ସ୍ଫୁରଣମାନ
ସୃଷ୍ଟି ରୂପେ ପ୍ରତିଭାତ ହୁଏ ରଘୁନାନ ।
ପ୍ରଭେଦ ଏତିକି ମାତ୍ର ତାଙ୍କ ମଧ୍ୟେ ଜାଣ
ଆକାଶ-ବୃକ୍ଷ ଆକାଶ ପରି ନୁହେଁ ଶୂନ୍ୟ ।
ତେଣୁ ସେ ଆକାଶଠାରୁ ଭିନ୍ନ ଦିଶେ ସିନା
ଏ କଥାକୁ ଜାଣିରଖ ଲକ୍ଷ୍ମଣଙ୍କ ନନା ।
ଶିବ ସମୁଦ୍ରେ ସ୍ଫୁରିତ ଜଳ କଣା ମାନ
ଶିବ ସିନ୍ଧୁଠାରୁ କିନ୍ତୁ ସେମାନେ ଅଭିନ୍ନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ସର୍ବ ବ୍ରହ୍ମମୟ ପ୍ରତିପାଦନେ ନାମ ୮୬ତମ ସର୍ଗଃ**



## ୮୭ତମ ସର୍ଗଃ
## ତାପସ ଉପାଖ୍ୟାନ

କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ଗୋଟିଏ ସଂଶୟ ମୋର ମୋଚନ କରିବ ।
ଯେତେବେଳେ ବିଦ୍ୟାଳୟେ ପଢୁଥିଲି ମୁହିଁ
ତପସ୍ୱୀ ବ୍ରାହ୍ମଣ ଏକ ଆସି ପହଞ୍ଚଇ ।

ଅଭିବାଦନ କରିଣ ସର୍ବଛାତ୍ରଗଣେ
ଆସନରେ ଉପବିଷ୍ଟ ହେଲେ ସେ ଆପଣେ ।
ମୁଁ ତାଙ୍କୁ ପୁଚ୍ଛିଲି ଶୁଣ ଆହେ ଦ୍ୱିଜବର
ଆପଣ କିଏ, କି ନାମ ଅଟଇ ଆବର ?
କି କାରଣେ କେଉଁଠାରୁ ଆସିଛ ଗୋସାଇଁ
ଫିଟାଇ କହନ୍ତୁ ତାହା ଅନୁଗ୍ରହ ବହି ।
କହନ୍ତି ବ୍ରାହ୍ମଣ ଶୁଣ ଆହେ ମହାଶୟ
ମୋହର ବୃତ୍ତାନ୍ତ ଶୁଣ ମନକରି ଥୟ ।
ବିଦେହ ଦେଶ ଅଟଇ ମୋର ଜନ୍ମ ସ୍ଥାନ
କୁନ୍ଦଦନ୍ତ ଶର୍ମା ଅଟେ ମୋର ଶୁଭନାମ ।
ମନ ମଧ୍ୟେ ବୈରାଗ୍ୟ ମୋ ହୁଅନ୍ତେ ଉଦିତ
ଦେଶ ଭ୍ରମଣରେ ମୁହିଁ ହୋଇଲି ଉଦ୍ୟତ ।
ନାନାଦେଶ ବୁଲି ବୁଲି ଏକ ଅରଣ୍ୟରେ
ପ୍ରବେଶ ହୋଇଲି ଯାଇ ହେ ରାଜକୁମାରେ ।
ତୃଣ ବୃକ୍ଷ ଶୂନ୍ୟ ଥିଲା ସେହି ଯେ ଅରଣ୍ୟ
ଆଲୋକ, ଅନ୍ଧାର, ମେଘ ନ ଥିଲା ସେ ସ୍ଥାନ ।
ଆକାଶ, ଆକାଶ ପୁଣି ଖାଲି ଯେ ଆକାଶ
ଅନନ୍ତ ଆକାଶ ତହିଁ ଥାଏ ପରକାଶ ।
ସ୍ତିମିତ ରଶ୍ମୀ, ସୂର୍ଯ୍ୟଙ୍କ ପରି ହେ ଶ୍ରୀରାମ
ତହିଁ ବହୁ ଶାଖା ଥିବା ବୃକ୍ଷ ବିଦ୍ୟମାନ ।
ତାହାର ଏକ ଶାଖାରେ ରଜ୍ଜୁବଦ୍ଧ ହୋଇ
ଏକଇ ପୁରୁଷ ଝୁଲୁଥିବା ଦେଖିଲଇଁ ।
ବହୁଦିନ ଧରି ତାଂକ ସେବା ମୁଁ କଲଇଁ
ଦିନେ ତାଙ୍କୁ ଏକ ପ୍ରଶ୍ନ ମୁହିଁ ପୁଚ୍ଛିଲଇଁ ।
ହେ ଦେବ ଆପଣ କିଏ କେବଣ କାରଣେ ?
ଏପରି କଠୋର ତପ କରୁଛ ଆପଣେ ।
ସେ କହିଲେ ହେ ତାପସ ମୋର ଜନ୍ମ ସ୍ଥାନ
ମଥୁରା ନଗରୀ ଅଟେ ଯମୁନା ତଟେଣ ।
ପରଶନ୍ତେ ଯଉବନ ଭୋଗ ଲିପ୍ସୁ ହୋଇ
ଜାଣିଲି ସକଳ ଭୋଗ ରାଜା ଆଶ୍ରେ ରହି ।
ତେଣୁ ଏ ପୃଥିବୀ ଅଧୀପତି ହେବା ପାଇଁ
ବାରବର୍ଷ ହେଲା ମୁହିଁ ତପ ଆଚରଇ ।
ସ୍ୱସ୍ଥାନେ ପ୍ରସ୍ଥାନ କର ଆହେ ଦ୍ୱିଜବର
ସିଦ୍ଧିଲାଭ ଯାଏ ତପ କରିବି ଏଠାର ।
ମୁଁ ତାଙ୍କୁ କହିଲି ସାଧୋଃ ଯେତେକାଳ ଯାଏ
ତପସ୍ୟାମଗନ ହେବ ତୁମ୍ଭେ ଏହି ଠାଏ ।
ତେତେକାଳ ତବ ସେବା କରିବି ଏଠାରେ
ମନସ୍ଥ କରିଛି ଜାଣ ଆହେ ତପୀବର୍ରେ ।
ମୋର ବାଣୀ ଶୁଣି ସେହୁ ରହିଲେ ମଉନ
ମୁଁ ତାଙ୍କ ସେବାରେ ତହୁଁ ହୋଇଲି ମଗନ ।
ଏହିପରି ଛଅମାସ ହୋଇଯାନ୍ତେ ଗତ
ସୂର୍ଯ୍ୟ ମଣ୍ଡଳରୁ ଏକ ପୁରୁଷ ନିର୍ଗତ ।
ପ୍ରଭା ସମ୍ପର୍ଣ୍ଣ ଦିଶନ୍ତି ସୂର୍ଯ୍ୟଙ୍କ ସଦୃଶ
ତପୀଙ୍କ ନିକଟେ ଆସି ହେଲେ ପରବେଶ ।
ଆମ୍ଭେ ଦୁହେଁଯାକ ତାଙ୍କୁ କରିଲୁ ଅର୍ଚ୍ଚନ
ଆମ୍ଭର ପୂଜାରେ ସେହୁ ସନ୍ତୋଷ ଲଭିଣ,
ମଧୁର ବାକ୍ୟରେ ସେହୁ ବୋଲନ୍ତି ବଚନ
ତପସ୍ୟା ନିବୃତ୍ତ ହୁଅ ତୁମ୍ଭେ ହେ ବ୍ରହ୍ମନ୍ ।
ଅଭିଷ୍ଟବର ତୁମ୍ଭର କରୁଛି ପ୍ରଦାନ
ଏବେ ସନ୍ତୋଷ ହୋଇଣ କର ହେ ଗ୍ରହଣ ।
ମୋର ବର ବଳେ ତୁମ୍ଭେ ସପ୍ତଦ୍ୱିପା ପୃଥ୍ୱୀ
ସସ୍ର ସସ୍ର ବର୍ଷ ଯାଏ ହେବ ଅଧୀପତି ।
ବର ଦେଇ ସେ ପୁରୁଷ ସୂର୍ଯ୍ୟ ମଣ୍ଡଳରେ
ଲୀନ ହୋଇଯିବା ତପୀ ଦେଖେ ନୟନରେ ।
ଏହା ଦେଖି ମୁଁ ତପୀଙ୍କି କହଇ ବଚନ
ଏବେ ଚାଲ ଫେରିଯିବା ଆମ୍ଭର ସଦନ ।
ଏହା କହି ମୁହିଁ ତାଙ୍କ ଚରଣ ବନ୍ଧନ
ଉନ୍ମୁକ୍ତ କରି ଦେଲଇଁ ହେ ରଘୁନନ୍ଦନ ।
ତିନିଦିନ ବୃକ୍ଷ ତଳେ ବିଶ୍ରାମ କରିଣ
ତାର ପାଦ ପିଡ଼ା ହୋଇଯାନ୍ତେ ନିବାରଣ ।
ମଥୁରାଭିମୁଖେ ଆମ୍ଭେ କରିଲୁ ପ୍ରସ୍ଥାନ
ଏହାପରେ ଯାହାହେଲା ଶୁଣ ହେ ଶ୍ରୀରାମ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ତାପସ ଉପାଖ୍ୟାନ ବର୍ଣ୍ଣନେ ନାମ ୮୭ତମ ସର୍ଗଃ**



## ୮୮ତମ ସର୍ଗଃ
## ଗୌରୀ ଆଶ୍ରମ ବର୍ଣ୍ଣନ

ସାୟଂ କାଳେ ବୋଧଗ୍ରାମେ ପହଞ୍ଚିଲୁ ଯାଇ
ଦୁଇଦିନ ଅବସ୍ଥାନ କଲୁ ଆମ୍ଭେ ତହିଁ ।

ପରେ ସେହି ଗ୍ରାମୁ ଆମେ ହୋଇଲୁ ନିର୍ଗତ
ଦୀର୍ଘପଥ ଅତିକ୍ରମ କରି ହେଲୁ କ୍ଳାନ୍ତ ।
ଭାଗ୍ୟକ୍ରମେ ଅନ୍ୟ ଏକ ଅରଣ୍ୟରେ ଯାଇ
ସୂର୍ଯ୍ୟଦେବ ସେ ସମୟେ ଅସ୍ତାଚଳ ହୋଇ ।
ଏମନ୍ତ ସମୟେ ଜାଣ ସେହି ଦ୍ୱିଜବର
କହିଲେ ସାତୋଟି ଭାଇ ଅଛନ୍ତି ତାଙ୍କର ।
ମୋହପରି ରାଜ୍ୟ ପ୍ରାପ୍ତି କାମନା କରିଣ
ଗଉରୀ ଆଶ୍ରମେ ଛନ୍ତି ତପସ୍ୟା ମଗନ ।
ଏହି ଅରଣ୍ୟ ମଧ୍ୟରେ ଅଛି ସେ ଆଶ୍ରମ
ବ୍ରହ୍ମ ଲୋକ ସମ ଅଟେ ସେ ଆଶ୍ରମ ଜାଣ ।
ଏବେଠାରୁ ଚାଲିଯିବା ସେ ଆଶ୍ରମ ଭୂଇଁ
ତା'ପରେ ପ୍ରବେଶ ହେଲୁ ସେ ଆଶ୍ରମେ ଯାଇଁ ।
ଦେଖିଲୁ ଯାଇ ସେଠାରେ କିଛି ମାତ୍ର ନାହିଁ
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ରାଜତ୍ୱ କରଇ ।
ବହୁଦୂରେ ଦେଖାଯାଏ ଏକ ସ୍ନିଗ୍ଧ ବୃକ୍ଷ
ବୃକ୍ଷ ତଳେ ବୃଦ୍ଧ ଏକ ଛନ୍ତି ସମାଧିସ୍ଥ ।
ଆମ୍ଭେ ଦୁହେଁ ସେହିସ୍ଥାନେ ପ୍ରବେଶିଲୁ ଯାଇ
ବହୁକାଳ କଟିଗଲା ଅପେକ୍ଷାରେ ତହିଁ ।
ସମାଧି ଭଗନ ଯେଣୁ ନୋହିଲା ତାଙ୍କର
ଉଚ୍ଚସ୍ୱରେ ଡ଼ାକଦେଲୁ ଆହେ ତପୀବର ।
ଡ଼ାକଶୁଣି ଚକ୍ଷୁ ଉନ୍ମିଳନ କଲେ ମୁନି
ଆକସ୍ମିକ ଭାବେ ପ୍ରଶ୍ନ ପଚାରନ୍ତି ପୁଣି ।
ତୁମ୍ଭେମାନେ କିଏ ? କାହିଁ ଗଉରୀ ଆଶ୍ରମ ?
କହ ମୋତେ କିଏ ଆଣି ରଖିଲା ଏ ସ୍ଥାନ ।
ମୁଁ କହିଲି ଦେବ ତବ ଜିଜ୍ଞାସ୍ୟ ବିଷୟ
ଅବଗତ ନୋହୁ ଆମ୍ଭେ ଆହେ ମହାଶୟ ।
ଯୋଗବଳେ ତୁମ୍ଭେ ତାହା ହୁଅ ଅବଗତ
ଆମ୍ଭକଥା ଶୁଣି ସେହୁ ହେଲେ ସମାଧିସ୍ଥ ।
ସମସ୍ତ ବୃତ୍ତାନ୍ତ ଅବଗତ ହୋଇକରି
କହିଲେ ହେ ସାଧୋ ! ଶୁଣ ବଚନ ମୋହରି ।
ଏହି ଯେ କଦମ୍ବ ବୃକ୍ଷ ଦିଶେ ଆଗେ ତୁମ୍ଭ
ଏହାହିଁ ଜାଣିବ ଅଟେ ମୋର ବାସସ୍ଥାନ ।
ଦିନଥିଲା ଯେତେବେଳେ ଭଗବତୀ ଗୌରୀ
ଦଶବର୍ଷ ଥିଲେ ଏଥି ବାଣୀରୂପ ଧରି ।
ତେଣୁ ଏହି ବନ "ଗୌରୀ ବନ" ନାମେ ଖ୍ୟାତ
ଶିବି ଶିରେ ଚନ୍ଦ୍ରକଳା ଶୋଭଇ ଯେମନ୍ତ ।
କଦମ୍ବ ସରସ୍ୱତୀଙ୍କ ରୂପେ ଗୌରୀ ମାତ
ଏ ଅରଣ୍ୟେ ଥିଲେ ଦଶ ବରଷ ପର୍ଯ୍ୟନ୍ତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଗୌରୀ ଆଶ୍ରମ ବର୍ଣ୍ଣନେ ନାମ ୮୮ତମ ସର୍ଗଃ**



## ୮୯ତମ ସର୍ଗଃ
## ସପ୍ତଦ୍ୱୀପ ଈଶ୍ୱର

ବୃଦ୍ଧ ତପୀ ତଦପରେ କହନ୍ତି ବଚନ
କଦମ୍ବ ବୃକ୍ଷକୁ ଦେବୀ ଗଉରୀ ତେଜିଣ,
ଆପଣା ମନ୍ଦିରେ ଯାଇ କରନ୍ତେ ପ୍ରବେଶ
ସାଧାରଣ ବ୍ୟବହାରେ ଆସେ ବନଦେଶ ।
ପୂର୍ବେ ମାଳବ ଦେଶର ରାଜାଥିଲି ମୁହିଁ
ରାଜ୍ୟ ତେଜି ନାନାଶ୍ରମ ମୁହିଁ ଭ୍ରମିଲଇଁ ।
ପରିଶେଷେ ଏ କଦମ୍ବ ତରୁ ତଳେ ଆସି
ଧ୍ୟାନସ୍ଥ ହୋଇ ରହିଛି ଜାଣ ହେ ତପସ୍ୱୀ ।
ପରେ ତୁମେ ସପ୍ତଭ୍ରାତାମାନଙ୍କ ସହିତ
ତପସ୍ୟା ପାଇଁ ଏସ୍ଥାନେ ହୁଅ ଉପସ୍ଥିତ ।
ପରେ ତୁମେ ଚାଲିଗଲ ଶିରୀ ପର୍ବତକୁ
ଦ୍ୱିତୀୟ ଚଳିଲେ କାର୍ତ୍ତିକଙ୍କ ନିକଟକୁ ।
ତୃତୀୟ ଭ୍ରାତା ଚଳିଣ ଯାନ୍ତି କାଶୀଧାମ
ଚତୁର୍ଥ କରନ୍ତି ହିମାଳୟକୁ ପ୍ରସ୍ଥାନ ।
ଅନ୍ୟ ଚାରି ଭ୍ରାତା ତୁମ୍ଭ ଏହି ସ୍ଥାନେ ରହି
ତପସ୍ୟା କରୁଣ ଥିଲେ ଜାଣ ହେ ଗୋସାଇଁ ।
ରାଜା ହେବା ପାଇଁ ତୁମ୍ଭ ଭାଇମାନଙ୍କର
ଅଭିଳାଷ ଥିଲା ଆହେ ବ୍ରାହ୍ମଣ କୁମର ।
ତୁମ୍ଭ ସମସ୍ତଙ୍କୁ ଦେବଗଣ ତୁଷ୍ଟ ହୋଇ
ଇପ୍‌ସିତ ବର ତୁମ୍ଭକୁ ଦେଇଛନ୍ତି ସେହି ।
ତୁମେ ସଂବୁ ଭାଇମାନେ ବର ଲାଭ କରି
ନିଜ ନିଜ ଗୃହେ ଯାଇଅଛନ୍ତି ସେ ଫେରି ।
ଏକା ହୋଇ ଏଠାରେ ମୁଁ ରହିଅଛି ଜାଣ
ନିକଟସ୍ଥ ଗ୍ରାମବାସୀ ବୃକ୍ଷକୁ କର୍ତ୍ତନ,
କରିଣ ବିନଷ୍ଟ କରିଛନ୍ତି ଏ ଅରଣ୍ୟ
ତେଣୁ ଏ ଅରଣ୍ୟ ହୋଇଅଛି ଶିରୀହୀନ ।

ଯେଣୁ ଏ କଦମ୍ବବୃକ୍ଷ ଗୌରୀ ବାସସ୍ଥାନ
ତାହା ତଳ ହୋଇଅଛି ମୋର ତପସ୍ଥାନ ।
ବୃକ୍ଷ ସହିତ ମୋତେ ସେ ଗ୍ରାମବାସୀମାନେ
ଆସି ପୂଜା କରୁଥାନ୍ତି ଅତି ସଯତନେ ।
ଧ୍ୟାନବଳେ ଏହାସବୁ ଜାଣିପାରି ମୁହିଁ
ତୁମ ଆଗେ ତାହାସବୁ ପ୍ରକାଶ କଲଇଁ ।
ଫେରିଯାଅ ସାଧୁଗଣ ନିଜ ନିଜ ସ୍ଥାନ
ଘରକର ଭାଇ ଭାର୍ଯ୍ୟା କୁଟୁମ୍ବ ଘେନିଣ ।
ବୃଦ୍ଧତପୀ ଏହିପରି କହିବାର ବେଳେ
ମୁହିଁ ତାଙ୍କୁ ପଚରଇ ଏସନ ପ୍ରକାରେ ।
ଏକମାତ୍ର ସପ୍ତଦ୍ୱୀପା ମହୀ ଏ ଜଗତେ
ବିରାଜମାନ ଅଛଇ ଜାଣନ୍ତି ସମସ୍ତେ ।
ତେଣୁ ଏକାବେଳେ ଆଠଭାଇ ବା କିପରି
ରାଜତ୍ୱ କରିବେ ତହିଁ କହ ତପଚାରୀ ।
କଦମ୍ବ ତପସ୍ୱୀ କହେ ଏହି ଆଠ ଭାଇ
ମୃତ୍ୟୁପରେ ଦେବ ବରେ ଗୃହାକାଶେ ରହି,
ସପ୍ତଦ୍ୱୀପା ପୃଥିବୀର ହେବେ ଅଧିପତି
ପୂର୍ବୁ ଏହା ସ୍ଥିର କରିଛନ୍ତି ପ୍ରଜାପତି ।
ଭାତୃଗଣ ତପସ୍ୟାର୍ଥ ଗୃହ ତେଜି ଗଲେ
ପତ୍ନୀମାନେ ଚାନ୍ଦ୍ରାୟଣ ବ୍ରତ ଆରମ୍ଭିଲେ ।
ପାର୍ବତୀ ସନ୍ତୁଷ୍ଟ ହୋଇ ଦେଲେ ଏହି ବର
ମୃତ୍ୟୁପରେ ସେମାନଙ୍କ ସ୍ୱାମୀ ମାନଙ୍କର,
ପ୍ରାଣ, ଗୃହାକାଶ ବାହାରକୁ ଯିବେ ନାହିଁ
ପ୍ରତ୍ୟେକଙ୍କ ପତିମାନେ ଦେହ ଅନ୍ତେ ଯାଇଁ
ସପ୍ତଦ୍ୱୀପା ପୃଥିବୀର ଅଧିପତି ହେବେ
ଏହିମାନେ ସେମାନଙ୍କ ଘରଣୀ ହୋଇବେ ।
ତପସ୍ୟାରେ ରତଥିଲେ ଯେବେ ଭ୍ରାତୃଗଣ
ତାଙ୍କ ପିତା, ମାତା, ବୋହୁ ମାନଙ୍କୁ ଘେନିଣ,
କଲାପ ଗ୍ରାମ ତୀର୍ଥର ଦରଶନ ପାଇଁ
ଚାଲି ଯାଇଥିଲେ ଜାଣ ବ୍ରାହ୍ମଣ ଗୋସାଇଁ ।
ମୁନିବର ଦୁର୍ବାସାଙ୍କୁ ପଥରେ ଦେଖିଣ
ପୂଜା ଅର୍ଚ୍ଚନ ନ କଲେ ତୁମ ପିତା ପୁଣ ।
ତେଣୁ ଅଭିଶାପ ଦେଲେ ସେହି ବୁଢ଼ା ମୁନି
ରେ ମୂର୍ଖ ! ଶୁଣ ତୁ ଏବେ ଏ ମୋହର ବାଣୀ ।
ତୋର ପୁଅ ବୋହୂମାନେ ତପସ୍ୟା ବଳରେ
ପାର୍ବତୀଙ୍କଠାରୁ ବର ପାଇଲେ ହେ ଭଲେ ।
ସେ ବର ଦ୍ୱାରା ସେମାନେ ସୁଖୀ ହେବେ ନାହିଁ
ଏହି ଅଭିଶାପ ଘେନ ଆରେ ମୂର୍ଖ ତୁହି ।
ଏହି ସବୁ କାରଣରୁ ଆଠ ଭାଇଙ୍କର
କଉଣସି ମତେ ସୁଖ ନୋହିବ ତାଙ୍କର ।
ଉଲ୍‌କା ଏବଂ ଧୂମକେତୁ ଆକାଶେ ଯେପରି
ପରକାଶ ପାଇଥାଏ ଆହେ ତପଚାରୀ ।
ସେହିପରି ଚିଦାକାଶ ସଂକଳ୍ପ ନଗରେ
ବହୁ ବିଚିତ୍ର ଘଟଣା ଘଟି ଥାଇପାରେ ।
ଯାହାକି ଅଦ୍ଭୁତ ପୁଣି ଅଟଇ ବିଚିତ୍ର
କେଭେଁ ପଡ଼ିନାହିଁ ପୁଣି ମାନବଙ୍କ ନେତ୍ର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ସପ୍ତଦ୍ୱୀପ ଈଶ୍ୱର ଉପାଖ୍ୟାନ ବର୍ଣ୍ଣନେ ନାମ ୮୯ତମ ସର୍ଗଃ**



## ୯୦ତମ ସର୍ଗଃ
## ଦ୍ୱୀପ ସପ୍ତକାଷ୍ଟକ

କହୁଛନ୍ତି କୁନ୍ଦଦନ୍ତ ଶୁଣ ହେ ଶ୍ରୀରାମ
ସେ କଦମ୍ବ ତପସ୍ୱୀଙ୍କୁ କରିଥିଲି ପ୍ରଶ୍ନ ।
ଗୃହାକାଶରୁ ଯେମାନେ ନିର୍ଗତ ନୋହିବେ
କିପରି ସେମାନେ ଦିଗ୍‌ବିଜୟ କରିବେ ?
ପୁଣି ସପ୍ତଦ୍ୱୀପା ପୃଥିବୀର ଅଧିପତି
ହୋଇପାରିବେ କିପରି କହ ଆହେ ଯତି ?
ଦେବତାଙ୍କ ଦତ୍ତ ବର ଅବା କି ପ୍ରକାରେ
ଅନ୍ୟଥା ହେବ ଅନ୍ୟର ଶାପ ପ୍ରଭାବରେ ।
କହନ୍ତି କଦମ୍ବତପୀ ଶୁଣ କୁନ୍ଦଦନ୍ତ
ମଥୁରା ଦେଶରେ ରହି ଏହି ଅଷ୍ଟଭ୍ରାତ ।
କିଛିକାଳ ସୁଖ ଭୋଗ କରିବାର ପରେ
ଅକସ୍ମାତ ପଡ଼ିବେ ସେ ମୃତ୍ୟୁ କବଳରେ ।
ସେମାନଙ୍କର ସମ୍ବିଦାକାଶମୟ ଜୀବ
ଯେବେ ପୃଥକ ପୃଥକ ଭାବରେ ହେ ଦେବ ।
କ୍ଷଣକାଳ ମୁରୁଚ୍ଛିତ ହୋଇଣ ରହିବ
ତାଙ୍କ ଚିଦାକାଶେ ତେବେ ଏମନ୍ତ ଘଟିବ ।
ବର ପୁଣି ଅଭିଶାପ ଫଳ ଏକାବେଳେ
ଫଳିବ ଜାଣି ରଖ ହେ ତପୀ ସେତେବେଳେ ।

ସେ କର୍ମର ଫଳଦାତା ଅଧିପତି ବେନି
ନିଜ କର୍ମକୁ ପୃଥକ କରି ସେହିକ୍ଷଣି,
ବର ଧାରଣ କରିବ ଗୋଟିଏ ଶରୀର
ଆଁବର ଶାପ ଧରିବ ଅନ୍ୟ କଳେବର ।
ବର ଦେହ କାନ୍ତି ହେବ ଚନ୍ଦ୍ରକାନ୍ତି ସମ
ଚତୁର୍ଭୁଜ ପଦ୍ମହସ୍ତ ହୋଇଥିବ ପୁଣ ।
ବ୍ରହ୍ମଦଣ୍ଡ ହେବ ପୁଣି ତାହାର ଯେ ହସ୍ତ
'ବର' ଶରୀର ଏପରି ହେବ ଦୀପ୍ତିବନ୍ତ ।
ଘୋର କୃଷ୍ଣ ବର୍ଣ୍ଣ ମେଘ କାନ୍ତି ଯେଉଁପରି
"ଅଭିଶାପ" ଦେହକାନ୍ତି ହେବ ସେହିପରି ।
ଭ୍ରୁକୁଟି କୁଟୀଳ ମୁଖ ହୋଇବ ତାହାର
ତ୍ରୀନୟନ ହେବ ସେହୁ ହସ୍ତରେ ତ୍ରିଶୂଳ ।
ସର୍ବ ଅଗ୍ରେ ଫଳ ପ୍ରଦ ହୋଇବା ନିମିତ୍ତ
ବେନିଙ୍କ ମଧ୍ୟେ କନ୍ଦଳ ହେବ ଉପସ୍ଥିତ ।
ପରିଶେଷେ ବ୍ରହ୍ମା ପାଶେ ପ୍ରବେଶିବେ ଯାଇ
ଉଭୟଙ୍କର କଳହ ମେଣ୍ଟାଇବା ପାଇଁ ।
ପ୍ରଜାପତି ବ୍ରହ୍ମାଙ୍କର ଉପଦେଶ ଫଳେ
ଶାପ ନିଜକୁ ଦୁର୍ବଳ ବୁଝିବ ଅନ୍ତରେ ।
କ୍ଷଣକ ମଧ୍ୟରେ ସେହୁ ହେବ ଅନ୍ତର୍ହିତ
ବର ତେଣୁକରି ହେବ ଯୁଦ୍ଧେ ଜୟଯୁକ୍ତ ।
ଗୌରୀଦେବୀ ଦତ୍ତବର ମୂର୍ତ୍ତୀମନ୍ତ ହୋଇ
ବ୍ରହ୍ମାଙ୍କୁ କହିବେ ଶାପସ୍ଥାନେ ଉଭା ରହି ।
ଭାବି ପୃଥ୍ୱୀପତି ଜୀବଗଣ ହେ ଦେବେଶ
ତେଜି ନ ପାରିବେ କେଭେଁ ତାଙ୍କ ଗୃହାକାଶ ।
ଆବଦ୍ଧ କରିଛି ମୁହିଁ ତାଙ୍କୁ ଗୃହାକାଶେ
ଦିଗ୍‌ବିଜୟ କରିବେ ସେ ଦୈବବର ବଶେ ।
ମୋ ସହିତ ତାଙ୍କ ଦ୍ୱନ୍ଦ ତେଣୁ ଅନିର୍ବାର୍ଯ୍ୟ
ଆମର କିସ କର୍ତ୍ତବ୍ୟ କହ ଦେବାର୍ଯ୍ୟ ।
ବ୍ରହ୍ମାଏ ବୋଲିବେ ଶୁଣ ଆହେ ଦୈବବର
ପୁଣି ଶୁଣ ସର୍ବ ଅବରୋଧକାରୀ ବର ।
ତୁମ ଦୁହିଁଙ୍କ ଆକାଙ୍କ୍ଷା ହୋଇଅଛି ସିଦ୍ଧ
ତେବେ ପରସ୍ପରେ କିମ୍ପା କରୁଛ ବିରୋଧ ।
ଦେହତ୍ୟାଗ ପରେ ପରେ ସେହି ଜୀବଗଣ
ନିଜ ନିଜ ଗୃହାକାଶେ କରି ଅବସ୍ଥାନ ।
ପ୍ରତ୍ୟେକ ହିଁ ସପ୍ତଦୀପା ପୃଥ୍ୱୀ ଅଧିପତି
ଯେଣୁ କରି ସେହିମାନେ ହୋଇ ପାରିଛନ୍ତି ।

ବେନି ପକ୍ଷ ସେତେବେଳେ ପୁଛିବେ ଏପରି
ଗୋଟିଏ ତ ସପ୍ତଦ୍ୱୀପା ପୃଥ୍ୱୀ ବିଶ୍ୱପୁରୀ ।
ଆଠଟି ପୃଥିବୀ ଆଠ ଜଣଙ୍କ ନିମିତ୍ତ
କିପରି ସମ୍ଭବ ହେବ କହ ଆହେ ପିତଃ ?
ପୁଣି ତାଙ୍କ ଏହି କ୍ଷୁଦ୍ର ଗୃହ ଆକାଶରେ
ସପ୍ତଦ୍ୱୀପା ପୃଥ୍ୱୀମାନ ରହେ କି ପ୍ରକାରେ ।
ବ୍ରହ୍ମାଏ ବୋଲିବେ ପୁଣ ତାହା ଏବେ ଶୁଣ
ସମଷ୍ଟି ବ୍ୟଷ୍ଟି ଜଗତ ଆକାଶ ରୂପେଣ,
ଚିତ୍ ପରମାଣୁ ମଧ୍ୟେ ଛନ୍ତି ବିଦ୍ୟମାନ
ସ୍ୱପ୍ନାକାରେ ତାଙ୍କୁ ସେହୁ ଅନ୍ତର ମଧ୍ୟେଣ,
ଅନୁଭବ କରୁଥାଏ ତାଙ୍କୁ ସଦାବେଳେ
ତେଣୁ ଏହି ଜୀବଗଣ ମାନଙ୍କ ଅନ୍ତରେ,
କିମ୍ବା ସେହି ଚିଦ୍‌ପରମାଣୁଙ୍କ ମଧ୍ୟେଣ
ଯେଉଁ ସପ୍ତଦ୍ୱୀପା ପୃଥ୍ୱୀଅଛି ବର୍ତ୍ତମାନ,
ସେହି ସପ୍ତଦ୍ୱୀପ ପୃଥ୍ୱୀ ଗୃହ୍ୱ ଆକାଶରେ
ସ୍ଫୁରିତ ହୋଇଅଛନ୍ତି ଏହା ନିରାଧାରେ ।
ଆଶ୍ଚର୍ଯ୍ୟ ବିଷୟ ଜାଣ ଏଥି କିଛି ନାହିଁ
ମୃତ୍ୟୁ ପରେ ଯେଣୁ ସମସ୍ତଙ୍କ ହୃଦେ ଏହି,
ଘନୀଭୂତ ଜଗତର, ହୁଅଇ ପ୍ରକାଶ
ବିସ୍ମୟ ପାଇଁ କି ତେଣୁ କାହିଁ ଅବକାଶ ?
ପ୍ରଜାପତି ବ୍ରହ୍ମାଙ୍କର ଏ ବଚନ ଶୁଣି
ସେହି ବରମାନେ ନିଜ ନିଜ ଭ୍ରମ ଜାଣି ।
ଆଧିଭୌତିକ ଶରୀର ପରିତ୍ୟାଗ କରି
ଆତିବାହିକ ଶରୀରମାନ ନେବେ ବରି ।
ପ୍ରଜାପତିଙ୍କୁ ସେ ବର ପ୍ରଣାମ କରିଣ
ସେହି ସେହି ଦେବ ଗୃହେ କରିବେ ପ୍ରସ୍ଥାନ ।
ପରେ ସେହି ଭାତୃଗଣ ସ୍ୱ ସ୍ୱ ଗୃହାକାଶେ
ସପ୍ତଦ୍ୱୀପା ପୃଥିବୀକୁ ଆଣି ନିଜ ବଶେ ।
ଅଧିପତ୍ୟକୁ ବିସ୍ତାର କରିବା ଦେଖିଣ
ବେନିବର ସେମାନଙ୍କ ଜୀବ ସଂବିତେଣ,
ମିଳିତ ହୋଇଣ ତାଙ୍କୁ କରିବେ ଆଦର
ତଦ୍ୱାରା ଆଶା ପୂରଣ ହୋଇବ ତାଙ୍କର ।
ତପସ୍ୟା ବଳରେ ଯାହା ପ୍ରତ୍ୟଗ୍ ଚୈତନ୍ୟରେ
ସ୍ଫୁରିତ ହୋଇଣ ଥାଏ ସୁଦୃଢ଼ ଭାବରେ ।
ତାହା ହିଁ ବାହ୍ୟ ଜଗତେ ହୁଏ ପରକାଶ
ମନେ ରଖିଥିବ ଏହି ମୋହର ସନ୍ଦେଶ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମ ତାପସ ଉପାଖ୍ୟାନେ ଦ୍ୱୀପ ସପ୍ତକାଷ୍ଟକ ବର୍ଣ୍ଣନେ ନାମ ୯୦ତମ ସର୍ଗଃ**



## ୯୧ତମ ସର୍ଗଃ

## କୁନ୍ଦ ଦନ୍ତ ଉପଦେଶ

କହେ କୁନ୍ଦଦନ୍ତ ମୁହିଁ ସେ ବୃଦ୍ଧ ତପୀଙ୍କୁ
ଏହିପରି ପ୍ରଶ୍ନଗୋଟି ପୁଛିଥିଲି ତାଙ୍କୁ ।
ସେହି ସ୍ୱଳ୍ପ ପରିମିତ ଗୃହ ଆକାଶରେ
ସୁବିଶାଳ ଭୂମଣ୍ଡଳ ରହେ କି ପ୍ରକାରେ ?
ତପସ୍ୱୀ ବୋଲନ୍ତି ସେହି ସର୍ବବ୍ୟାପୀ ଚିତ
ସ୍ୱରୂପ ନ ତେଜି ଜାଣ ଆହେ କୁନ୍ଦଦନ୍ତ ।
ହୋଇଲେ ହେଁ ସେହି ଚିତ୍ ପ୍ରପଞ୍ଚ ବିହୀନ
ନିଜକୁ ଜଗତ ରୂପେ କରଇ ଦର୍ଶନ ।
ପୁଣି କହେ କୁନ୍ଦଦନ୍ତ ଯେହୁ ଶିବବତ
ଆବର ଅଟଇ ଯେହୁ ଏକମାତ୍ର ତତ୍ତ୍ୱ,
ତା ତହିଁ ନାନାଦି ବସ୍ତୁ ପୁଣି ନାନାଭାବ
ପ୍ରକାଶ ପାଇ ପାରିବା କିପରି ସମ୍ଭବ ?
ତପସ୍ୱୀ ବୋଲନ୍ତି ଶୁଣ ଆହେ କୁନ୍ଦଦନ୍ତ
ନାନାବସ୍ତୁ ନାନାଭାବ ନୁହଁନ୍ତି ଯଥାର୍ଥ ।
ନାନା ଭାବେ ଯାହାକିଛି ହୁଅଇ ପ୍ରକାଶ
ତାହାକୁ ଜାଣିବ ସେହି ଶାନ୍ତ ଚିଦାକାଶ ।
ଜଳେ ତରଙ୍ଗ ସଦୃଶ ନାନା ଆକାରରେ
ଯାହାକିଛି ପ୍ରତିଭାତ ହୁଏ ଯେ ପ୍ରକାରେ,
ତାହା ଏ ଚିଦାକାଶର ଆହେ କୁନ୍ଦଦନ୍ତ
ଅନ୍ୟ ଏକ ରୂପ ବୋଲି ଜାଣ ସୁନିଶ୍ଚିତ ।
ଚିଦାକାଶରେ ଏହି ଯେ ସ୍ଫୁରଣ ଉଦୟ
ନୁହେଁ ତାଂ ପରମରୂପ, ନୁହେଁ ଭୂତମୟ ।
ଏକଇ ଚିତ୍ତ ଯେସନ ସ୍ୱପ୍ନ ସମୟରେ
ପରକାଶେ ଲକ୍ଷ ଲକ୍ଷ ସଂଖ୍ୟା ଆକାରରେ ।
ସେହିପରି ନାନା ମୂର୍ତ୍ତୀମୟ ଜଗତ୍ ଭାବ
ଚିଦାକାଶରୁ ଉଦ୍ଭବ ହୁଅନ୍ତି ଜାଣିବ ।
ନିଜ ମଧ୍ୟେ ନିଜେ ଚିଦାକାଶ ଯେତେବେଳେ
ଗତିଶୀଳ ହୋଇଥାଏ, ସେହି ସମୟରେ ।
ତା'ର ସେ ଗତିଶୀଳତା ଜଗତ ଆକାରେ
ପରିଦୃଷ୍ଟ ହୋଇଥାଏ, ଆହେ ଦ୍ୱିଜବରେ ।
ନାନାତ୍ୱ ଅବା ଜଗତ ତେଣୁକରି ଜାଣ
ଚିଦାକାଶଠାରୁ କେହି ନ ହୁଅନ୍ତି ଭିନ୍ନ ।
ଏକ ବସ୍ତୁ ବୋଲି ଚିଦାକାଶ ଓ ଜଗତ
ଦୃଢ଼ୀଭୂତ ହୁଏ ସେହିକାଳେ କୁନ୍ଦଦନ୍ତ ।
ଯେ କାଳେ ଅଧ୍ୟାତ୍ମ ଶାସ୍ତ୍ର ହୁଏ ବୋଧ ଗମ୍ୟ
ସୁନିଶ୍ଚିତ ଜାଣ ଏହା ହେ ବିପ୍ରନନ୍ଦନ ।
ଏପରି ନିଶ୍ଚୟାତ୍ମିକା ଜ୍ଞାନକୁ କେବଳ
ମୁକ୍ତିବୋଲି କହିଥାନ୍ତି ସୁଜ୍ଞାନୀ ମଣ୍ଡଳ ।
(ତେଣୁ) ବ୍ରହ୍ମା, ବିଷ୍ଣୁ, ରୁଦ୍ରମୟ ବୋଲି ଏ ଜଗତ
ଅନୁଭୂତ ହୁଏ ଯାହା ସବୁ ସ୍ୱପ୍ନବତ ।
ଜାଣିବା ଏହା ଅସ୍ତିତ୍ୱ କିଛି ମାତ୍ର ନାହିଁ
ବିଧାତା ଜଗତ୍ ସଂକଳ୍ପ ଅସତ୍ୟ ଅଟଇ ।
ମାତ୍ର ତାହା ସତ୍ୟପରି ହୁଏ ପ୍ରତିଭାତ
ସଂକଳ୍ପରୁ ସଂକଳପ ନଗ୍ର ଯଥା ଜାତ ।
ବିଧାତାର ସଂକଳପ ରୂପ ଏ ନିୟତି
ଅଦ୍ୟାପି ତା କ୍ରିୟାଶୀଳ ଆହେ ବ୍ରହ୍ମଯତି ।
ସେ ନିୟତି ପ୍ରଭାବରୁ ସ୍ଥାବରୁ ସ୍ଥାବର
ଜଙ୍ଗମୁ ଜଙ୍ଗମ ଜାତ ଆହେ ବିପ୍ରବର ।
ଜଳ ନିମ୍ନ ଅଭିମୁଖ, ଉର୍ଦ୍ଧ୍ୱ ମୁଖ ଅଗ୍ନି
ଗତିଶୀଳ ରହିଛନ୍ତି ସେ ନିୟତି ଘେନି ।
ସେ ନିୟତି ବଳେ ସୂର୍ଯ୍ୟ ଉତ୍ତାପ ଦିଅଇ
ପର୍ବତ ନିଶ୍ଚଳ, ବାୟୁ ପ୍ରବାହିତ ହୋଇ ।
ସଂକଳପମୟୀ ଏହି ନିୟତି ବଳରେ
ଭୂତଳ ବିଭକ୍ତ ହୁଏ ବିଭିନ୍ନ ଦ୍ୱୀପରେ ।
ସମୁଦ୍ର ପର୍ବତମାନ ସ୍ଥିର ଜଣାଯାନ୍ତି
ନାନାବସ୍ତୁ ନିଜ ନିଜ ଧର୍ମ ପ୍ରକାଶନ୍ତି ।
ବିଧାତାଙ୍କ ଏ ସଂକଳ୍ପ କୌଣସି ସ୍ମୃତିର
ଅଧୀନ ନୁହଇ ଜାଣ ଆହେ ଦ୍ୱୀଜବର ।
ଦିବ୍ୟଜ୍ଞାନେ ସେହୁ ଯାହା କରନ୍ତି ଦର୍ଶନ
ତାହାଙ୍କ ସଂକଳ୍ପ ଉଦେ ତା'-ଅନୁସରେଣ
ସ୍ୱସ୍ଥାନେ ଗମନ କର ଆହେ ବିପ୍ରବର
ସମାଧି ଲଭିବି ମୁହିଁ ତାକେ ମୋ ଅନ୍ତର ।
ସମାଧି ତେଜି ଯେ ଦୁଃଖ ଭୋଗୁ ମୁଁ ଅଛଇ
ନିବୃତ୍ତି ଲଭିବ ସେ ଦୁଃଖରୁ ଜାଣ ମୁହିଁ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ବ୍ରହ୍ମଗୀତା ତାପସ ଉପାଖ୍ୟାନେ କୁନ୍ଦଦନ୍ତ ଉପଦେଶ ବର୍ଣ୍ଣନେ ନାମ ୯୧ତମ ସର୍ଗଃ**



## ୯୨ତମ ସର୍ଗଃ
## କୁନ୍ଦଦନ୍ତ ବିଶ୍ରାନ୍ତି

କହୁଛନ୍ତି କୁନ୍ଦଦନ୍ତ ଶୁଣ ରଘୁନିଧି
ଏହା କହି ସେ ତପସ୍ୱୀ ଲଭିଲେ ସମାଧି ।
ବାରମ୍ବାର ଅନୁନୟ କରିଲେ ହେଁ ମୁହିଁ
ମୋ କଥାକୁ ସେ ତପସ୍ୱୀ କାନଦେଲେ ନାହିଁ ।
ପରେ ଆମେ ସେହି ସ୍ଥାନ ପରିତ୍ୟାଗ କରି
ପହଞ୍ଚିଲୁ ବିପ୍ର ଗୃହେ ମଥୁରା ନଗରୀ ।
କୁଳ ଦେବତାଙ୍କ ପୂଜା ଅର୍ଚ୍ଚନ କରିଣ
ବୁହକାଳ କଟାଇଲୁ ଆମ୍ଭେ ବେନି ଜନ ।
କାଳକ୍ରମେ ସାତ ଭାଇ ଗୋଟି ଗୋଟି ହୋଇ
ଇହଧାମ ତ୍ୟାଗ କଲେ ନିଜ ଭାଗ୍ୟ ନେଇ ।
କିଛିକାଳ ପରେ ମୋର ବନ୍ଧୁ ଦ୍ୱିଜବର
ଇହଲୀଳା ତ୍ୟାଗ କଲେ ଆହେ ରଘୁବୀର ।
ଲୁହ ନ କାନ୍ଦି କେତେ ଯେ ରକତ କାନ୍ଦିଲି,
ବାଡ଼େଇ କରଡ଼ି ହୋଇ ମୁଣ୍ଡ କୋଡ଼ି ହେଲି ।
ମୋଡ଼ି ମୋଡ଼ି ହୋଇ ସେହି କଦମ୍ବ ତପୀଙ୍କ
ନିକଟେ ଯାଇ ମିଳିଲି ହେ ରଘୁନାୟକ ।
ଗଣୁ ଗଣୁ ନବେ ଦିନ ତହିଁ କଟିଗଲା
ତାହାପରେ ସେ ତପୀଙ୍କ ସମାଧି ଭାଙ୍ଗିଲା ।
ବିନୀତ ଭାବରେ ମୁହିଁ ଜିଜ୍ଞାସା କରନ୍ତେ
ମୁନିବର ପ୍ରତ୍ୟୁତ୍ତର ଦେଲେ ଏହି ମତେ ।
ସଦାକାଳେ ସମାଧିସ୍ଥ ରହିବଇଁ ମୁହିଁ
ଉପଦେଶ ଦେବା ପାଇଁ ମୋର ବେଳ ନାହିଁ ।
ଅଯୋଧ୍ୟା ନଗରେ ରାଜା ଦଶରଥ ଘରେ
ରାମଚନ୍ଦ୍ର ଜନ୍ମିଛନ୍ତି କୌଶଲ୍ୟା ଉଦରେ ।
ବଶିଷ୍ଠ ମୁନିଙ୍କ ପାଶେ ପଢୁଛନ୍ତି ପାଠ
ଚାଲିଯାଅ ଦ୍ୱିଜବର ନ କରିଣ ମଠ ।
ବଶିଷ୍ଠ ରାମଙ୍କୁ ଦେବେ ଯେଉଁ ଉପଦେଶ
ତାହାଶୁଣି ପରଂପଦ ଲଭିବ ଅବଶ୍ୟ ।
ଏହା କହି ବୃଦ୍ଧ ମୁନି ହେଲେ ସମାଧିସ୍ଥ
ଆପଣଙ୍କ ନିକଟେ ମୁଁ ଏବେ ଉପସ୍ଥିତ ।
ସକଳ ବୃତ୍ତାନ୍ତ ମୋର ତୁମ ନିକଟରେ
ଠିକେ ଠିକେ କହିଗଲି ହେ ରାଜ କୁମରେ ।
ଶ୍ରୀରାମ ବୋଲନ୍ତି ଶୁଣ ଆହେ ଗୁରୁଦେବ
ସେହିଦିନୁ କୁନ୍ଦଦନ୍ତ ରହେ ଏହି ଠାବ ।
ଆପଣଙ୍କ ମୋକ୍ଷ ସଂହିତାକୁ ତପୋଧନ
ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କରିଛି ଶ୍ରବଣ ।
ଏବେ ସେହୁ ନିସଂଶୟ ହୋଇଛି କି ନାହିଁ ?
ତାକୁ ପଚାରି ବୁଝନ୍ତୁ ଆହେ ତପୀସାଇଁ ।
କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ରାମଙ୍କର ଏହିକଥା କରିଣ ଶ୍ରବଣ ।
କୁନ୍ଦଦନ୍ତଙ୍କୁ ଚାହିଁଣ କହନ୍ତି ବଶିଷ୍ଠ
କହ ଏବେ ମୋତେ କୁନ୍ଦଦନ୍ତ ତପୋନିଷ୍ଠ ।
ମୋର ଉପଦେଶ ଶୁଣି ଯାହା ବୁଝିଅଛ
ବର୍ଣ୍ଣନା କର ତା' ସବୁ ମୋ ନିକଟେ ବସ ।
କହୁଛନ୍ତି କୁନ୍ଦଦନ୍ତ ଶୁଣ ବ୍ରହ୍ମା ସୁତ
ତବ ଉପଦେଶେ ଲଭିଛି ମୁଁ ବ୍ରହ୍ମ ତତ୍ତ୍ୱ ।
ସକଳ ସଂଶୟ ମୋର ଏବେ ଦୂରୀଭୂତ
ଆଉ ଏବେ ମୁଁ କେବେହେଁ ନୁହେଁ ମୋହଗ୍ରସ୍ତ ।
ଜ୍ଞାତବ୍ୟ, ପ୍ରାପ୍ତବ୍ୟ କିଛି ବାକି ନାହିଁ ମୋର
ପରମ ପଦେ ବିଶ୍ରାନ୍ତି ହୋଇଛି ମୋହର ।
ଗୃହାକାଶ ମଧ୍ୟେ ସପ୍ତଦୀପା ପୃଥିବୀର
ବିଦ୍ୟମାନତା ସମ୍ଭବ ବୁଝିଛି ଏଥର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ କୁନ୍ଦଦନ୍ତ ବିଶ୍ରାନ୍ତି ବର୍ଣ୍ଣନେ ନାମ ୯୨ତମ ସର୍ଗଃ**



## ୯୩ତମ ସର୍ଗଃ
## ସର୍ବବ୍ରହ୍ମ ପ୍ରତିପାଦନ

କହୁଛନ୍ତି ବାଲମୀକ ଭରଦ୍ୱାଜ ଶୁଣ
କୁନ୍ଦଦନ୍ତଙ୍କ ଏସନ ବଚନ ଶୁଣିଣ ।
ସଭାରେ ବଶିଷ୍ଠ ମୁନି କହନ୍ତି ଏସନ
ଏ ମହାତ୍ମା ଉପଯୁକ୍ତ ଜ୍ଞାନକୁ ଲଭିଣ,
ଜଗତକୁ ବ୍ରହ୍ମରୂପେ କରନ୍ତି ଦର୍ଶନ
ଏହା ଦେଖି ଅତି ଆନନ୍ଦିତ ମୋର ମନ ।

ସଙ୍କଳ୍ପମୟ ହୁଅଇ ଯେ କାଳେ ସଂବିତ
ଉଦେ ହୋଇ ଲତା ପରି ବଢ଼େ ଏ ଜଗତ ।
ବ୍ରହ୍ମାଣ୍ଡକୁ ପରମାଣୁ ବୋଲା ଯାଇଥାଏ
ଯେଣୁ ଚିଦାକାଶେ ତାହା ବିଦ୍ୟମାନ ରହେ ।
ପରମାଣୁକୁ ବ୍ରହ୍ମାଣ୍ଡ ବୋଲା ଯାଇଥାଏ
ଯେଣୁ ପରମାଣୁ ମଧ୍ୟେ ଏ ଜଗତ ରହେ ।
ଯେଣୁ ଏ ସବୁ ନିର୍ବାଣମୟ ଚିଦାକାଶ
ଶରୀରରୁ କାଟିଦିଅ ବନ୍ଧନର ଫାଶ ।
ନିରାମୟ ହୋଇକରି ବ୍ରହ୍ମରୂପେ ରହ
କଟିଯିବ ସର୍ବମୋହ ଏହା ନିଃସନ୍ଦେହ ।
ବ୍ୟବହାରିକ ଦୃଷ୍ଟିରୁ ବ୍ରହ୍ମ ନିଜେ ଦୃଶ୍ୟ
ନିଜେ ଚିତ୍ତ, ଦ୍ରଷ୍ଟା, ଜଡ଼, ଆହେ ରଘୁଈଶ ।
ପରମାର୍ଥିକ ଦୃଷ୍ଟିରେ ସେହି ସପ୍ରକାଶ
ପୁଣି ଆନନ୍ଦ ସ୍ୱରୂପ ଆହେ ରଘୁଈଶ ।
ସେ ଶାନ୍ତ ବ୍ରହ୍ମ ଗଗନ ଯେ ସ୍ଥାନେ ଯେପରି
ବାସନାମୟ ହୁଅନ୍ତି ହେ ଭଦ୍ରମଣ୍ଡଳୀ ।
ସେ ସ୍ଥାନେ ସେହୁ ସ୍ୱରୂପେ ବର୍ତ୍ତମାନ ରହି
ନିଜ ମଧ୍ୟେ ତଦାକାର ପ୍ରାପ୍ତ ହୋଇଥାଇ ।
ଜଗଦାକାର ଗ୍ରହଣ କରେ ବୋଲି ବ୍ରହ୍ମ
ଦ୍ୱୈତ୍ୟ ବୁଦ୍ଧି ତାଙ୍କ ତହିଁ ନୁହେଁ ସମୀଚୀନ ।
ଯେଣୁ ସେ ବିକାରହୀନ ସର୍ବଦା ଅଟନ୍ତି
ଆକାଶ ପରି ନିର୍ମଳ ଭାବେ ବିରାଜନ୍ତି ।
ବ୍ରହ୍ମ ଯେଣୁ ଦୃଶ୍ୟଭାବ କରନ୍ତି ଧାରଣ
ତେଣୁ ଏ ଦୃଶ୍ୟ ହିଁ ବ୍ରହ୍ମ ସଭାସଦଗଣ ।
ଶାନ୍ତ ହୋଇ ମଧ୍ୟ ସେହୁ ଅଟନ୍ତି ଚଞ୍ଚଳ
ବହୁ ହୋଇଲେ ହେଁ ଏକ, ଜାଣ ରଘୁବାଳ ।
ମୂର୍ତ୍ତ ହୋଇଲା ହେଁ, ସେହୁ ଅଟନ୍ତି ଅମୂର୍ତ୍ତ
ଦେହାଦି ଭାବ ତା ତହିଁ ହେଲେ ହେଁ ପ୍ରତୀତ ।
ସେ ସବୁ ସଂବିତ ବିନା ଅନ୍ୟ କିଛି ନୁହେଁ
ଯେଣୁ ସମସ୍ତ ସଂବିତ୍‌ମୟ ରଘୁରାୟେ ।
ତେଣୁ ତାଙ୍କ ଜଡ଼ଭାବ କାହିଁ ବା ଆସିବ
ସଭାସଦଗଣ ଏହା ବିଚାର ବୁଝିବ ।
ମନୁଷ୍ୟ ନିଦ୍ରିତ ହେଲେ ତା'ର ଯେଉଁପରି
ଜଡ଼ଭାବ ଉପସ୍ଥିତ ହୁଏ ଚାପଧାରୀ ।
ଏ ସଂବିତ୍ ସ୍ୱପ୍ନମୟ ହୋଇଣ ତେମନ୍ତ
ଜଡ଼ ନାମେ ପରିଚିତ ହୁଏ ରଘୁନାଥ ।

ତେଣୁ ଯେତେକାଳ ଜୀବ ନ ଲଭେ ମୁକତି
ପୃଥ୍ୱି, ଅଗ୍ନି, ଜଳ, ବାୟୁ, ଆକାଶ ପ୍ରଭୃତି ।
ସେତେକାଳ ଜଡ଼ ବୋଲି ଏହାଙ୍କୁ ମଣଇ
କିନ୍ତୁ ମୁକ୍ତି ଜାଗରଣ ଯେବେ କି ଘଟଇ,
ଏ ସବୁ ସଂବିତମୟ ହୋଇବା କାରଣ
ତା'ର ବୋଧଗମ୍ୟ ହୋଇଥାଏ ରଘୁରାଣ ।
ଶ୍ରୀରାମ କହନ୍ତି ଶୁଣ ଆହେ ବ୍ରହ୍ମାସୁତ
ଦେବାସୁର ଭେଦେ କେତେ ପ୍ରକାର ଏ ଚିତ୍ତ ?
ଚିତ୍ତର ନିଦ୍ରା ଆବର ତା' ମଧ୍ୟ ଜଗତ
କି ରୂପ ଅଟଇ ତାହା କହ ତପୋବନ୍ତ ?
ପୁଣି କେତେ କାଳ ତାହା ରହେ ବିଦ୍ୟମାନ
କି ରୂପ ଅଟଇ କହ ଆମ୍ଭ ଦରଶନ ।
କହନ୍ତି ବଶିଷ୍ଠ ତାହା ଶୁଣ ରଘୁଈଶ
ଦେବ, ଅସୁର, ମନୁଷ୍ୟ, ପର୍ବତ, ରାକ୍ଷସ ।
ପକ୍ଷୀ, କୀଟ, ବୃକ୍ଷ ଆଦି ଯାହାକିଛି ଜାଣୁଁ
ଏସବୁ ଅଟନ୍ତି ରାମ ଚିତ୍ତର ପ୍ରମାଣ ।
କଉଣସି ପରିମାଣ ନାହିଁ ସେ ଚିତ୍ତର
ତେଣୁ ସେ ଅନନ୍ତ ଜାଣ ଆହେ ରଘୁବୀର ।
ଯେଣୁକରି ଏହି ଶତସହସ୍ର ଜଗତ
ସେ ଚିତ୍ତ ମଧ୍ୟରୁ ଜାତ ଆହେ ରଘୁନାଥ ।
ତେଣୁ କରି ଚିତ୍ତ ଅଟେ ଅସୀମ, ଅନନ୍ତ
କଠିନୁ କଠିନ ଅଟେ ଚିତ୍ତର ବୃତ୍ତାନ୍ତ ।
ବିଭୁତ୍ୱ ନିବନ୍ଧନରୁ ଜାଣ ହେ ଶ୍ରୀରାମ
ସବୁରି ଶରୀରେ ଚିତ୍ତ ରହେ ବିଦ୍ୟମାନ ।
ଶରୀର ମଧ୍ୟରୁ ଥରେ ହୋଇଲେ ନିର୍ଗତ
ପୁଣି ଶରୀରେ ନ ପଶେ ଜାଣ ରଘୁନାଥ ।
ଶରୀରେ ଯେପରି ଚିତ୍ତ ପ୍ରବେଶଇ ରାମ
ସେହିପରି ତାକୁ ମଧ୍ୟ ତେଜିଦିଏ ଜାଣ ।
ମରୀଚିକା ଜଳ ଜ୍ଞାନ ଯଥାର୍ଥ ଜ୍ଞାନରେ
ଦୂରୀଭୂତ ହୋଇଥାଏ ଯଥା ରଘୁବୀରେ,
ସେହିପରି ଜ୍ଞାନୋଦୟେ ଜାଣ ଏ ଚିତ୍ତର
ନିବୃତ୍ତି ହୁଅଇ ଦେହଭାବ ରଘୁବୀର ।
ଏହି ଯେ ନାନାଦି ଦୃଶ୍ୟ ଦେଖୁଛ ଶ୍ରୀରାମ
ଏ ସକଳ ଚିତ୍ତ ବୋଲି ଘେନା କର ମନ ।
ଜୀବ ମଧ୍ୟ ସେହି ଚିତ୍ତ ଏହା ନିରାଧାର
ଏହିକଥା ଜାଣିରଖ କୌଶଲ୍ୟା କୁମର ।

ଯେଣୁ ଜୀବ ଓ ଜଗତ ଅଟନ୍ତି ଅଭିନ୍ନ
ପଦାର୍ଥ ନାମରେ ଯାହା ପରିଚିତ ରାମ,
ଚିତ୍ ଛଡ଼ା ତେଣୁ ତାହା ଆହେ ରଘୁବୀର
ଅନ୍ୟ କିଛି ନୋହିପାରେ ଏହି ଯୁକ୍ତି ସ୍ଥିର ।
ସ୍ୱର୍ଣ୍ଣରେ ଭୂଷଣ ବୋଲି ଯାହା ପ୍ରତିଭାତ
ତାହା ମିଥ୍ୟା, ବସ୍ତୁତଃ ତା ସ୍ୱର୍ଣ୍ଣ ରଘୁନାଥ ।
ବ୍ରହ୍ମଚୈତନ୍ୟ ହିଁ ଦୃଶ୍ୟ ଭାବାପନ୍ନ ହୋଇ
ଭିନ୍ନଭାବେ ପରକାଶେ ଜାଣ ରଘୁସାଇଁ ।
କେଭେଁ ନୁହେଁ ସେହି ଦୃଶ୍ୟ ଭାବାପନ୍ନ ହୋଇ
ଭିନ୍ନଭାବେ ପରକାଶେ ଜାଣ ରଘୁସାଇଁ ।
ସେ ଶାନ୍ତ ସଂବିଦାକାଶ କେତେବେଳେ ହେଲେ
ସ୍ୱରୂପକୁ ନ ତେଜଇ ଜାଣ ରଘୁବାଳେ ।
ସିନ୍ଧୁଜଳ ସ୍ଫୁରଣରେ ଆବର୍ତ୍ତ ଯେସନ
ପରକାଶ ପାଇଥାଏ ହେ ରଘୁନନ୍ଦନ,
ସତ୍ୟ ସଙ୍କଳ୍ପ ହେତୁରୁ ଚିଦାକାଶେ ରାମ
ଯେ କମ୍ପନ ଉଠେ ତାହା ଜଗତ ହିଁ ଜାଣ ।
ବିଶ୍ୱ ବିଧାତା ସ୍ୱକୀୟ ଚିତ୍ତ ସ୍ୱରୂପରେ
ଯେ ଜଗତଭାବେ ପରକାଶେ ରଘୁବୀରେ ।
ତାହାକୁ ହିଁ ଶ୍ରୁତି କହେ "ସଃ ଅକାମୟତ୍",
ଏହି ଶ୍ରୁତି ବାକ୍ୟ ମନେ ରଖିବା ଉଚିତ ।
ତତ୍ତ୍ୱ ବିଚାରରେ ପୁଣି ଅଭ୍ୟାସ ବଳରେ
ଯଥାର୍ଥ ଜ୍ଞାନ ଉଦିତ ହେଲେ ରଘୁବୀରେ ।
ସେହି ଜ୍ଞାନୀଜନ ରାମ ଜାଣ ସେତେବେଳେ
ବାସ୍ତବ ବସ୍ତୁକୁ ଦରଶନ କରି ପାରେ ।
ସେତେବେଳେ ଯାହା ସେହୁ ସଙ୍କଳପ କରେ
ବ୍ୟତିକ୍ରମ ନୋହି ତାହା ଫଳେ ରଘୁବୀରେ ।
"ସତୀର ବଚନ ଯଥା ଅକାଟ ରହିଲା
ଏକ ରାତି ସାତ ରାତି ହୋଇ ପ୍ରକାଶିଲା" ।
ସ୍ୱାପ୍ନିକ ନଗର ସମ ଏହି ଯେ ଜଗତ
ହିରଣଗର୍ଭ ସଙ୍କଳ୍ପୁ ହୋଇଛି ସେ ଜାତ ।
ସୁନିର୍ମଳ ଚିତ୍ତ ହୋଇ ଯେ ସକଳ ଜନ
ହିରଣ୍ୟଗର୍ଭ ସାମର୍ଥ୍ୟ ଲଭିଛନ୍ତି ଜାଣ ।
ଯାହା କି ସଙ୍କଳ୍ପ କରିଥାନ୍ତି ସେହିମାନେ
ତାହା ହିଁ ଘଟିଣ ଥାଏ ଆହେ ରଘୁନାନେ ।
ହିରଣ୍ୟଗର୍ଭ ସଙ୍କଳ୍ପ ଜାତ ଜଗତରେ
"ବର" କିମ୍ବା "ଶାପ" ଯାହା ଫଳେ ରଘୁବୀରେ ।
ଏ ହିରଣ୍ୟଗର୍ଭ ଆତ୍ମା ପ୍ରଭାବରେ ତାହା
ସଫଳ ହୋଇଣ ଥାଏ ଆହେ ରଘୁନାହା ।
ପକ୍ଷାନ୍ତରେ ଯେଉଁମାନେ ଆବରଣ ଯୁକ୍ତ
ଲଭି ନ ଥାନ୍ତି ହିରଣ୍ୟ ଗର୍ଭର ସାମର୍ଥ୍ୟ ।
ସେହି ଭେଦବୁଦ୍ଧି ଯୁକ୍ତ ବ୍ୟକ୍ତି ମାନଙ୍କର
ବର କିମ୍ବା ଅଭିଶାପ ନୁହଁଇ ସଫଳ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଆବରଣ ମୁକ୍ତ ନୋହିଥାନ୍ତି ଯେଉଁ ଜନ,
କିନ୍ତୁ ଅଟନ୍ତି କଠୋର ତପ ପରାୟଣ
ତାହାଙ୍କର ଶାପ ଅବା ଫଳଇ କେସନ ?
କହନ୍ତି ବଶିଷ୍ଠ ରାମ ସୃଷ୍ଟି ପ୍ରଥମରେ
ବ୍ରହ୍ମା ନିଜ ମନେ ଯାହା ସଙ୍କଳପ କରେ ।
ତାହା ହିଁ ସେ ଅନୁଭବ କରିଥାନ୍ତି ଜାଣ
ତେଣୁ ତାହା ମିଥ୍ୟା ନ ହୁଅଇ କଦାଚନ ।
ନିଜକୁ ବୁଝନ୍ତି ଯେଣୁ ବ୍ରହ୍ମଙ୍କ ସମାନ
ମିଥ୍ୟା ନ ହେବାର ହେତୁ ଏହି ମାତ୍ର ଜାଣ ।
ତେଣୁ କରି ତାହାଙ୍କର ଜଗତ କଳ୍ପନ
ସଫଳ ହୋଇଣ ଥାଏ ହେ ରଘୁନନ୍ଦନ ।
ବେଦ, ଶାସ୍ତ୍ର, ଦାନ, ଧର୍ମ, ସ୍ମୃତି ତପସ୍ୟାଦି
ସେହି ବ୍ରହ୍ମାଙ୍କ କଳ୍ପନା ଆହେ ରଘୁନିଧି ।
ବେଦବେତ୍ତା ତପସ୍ୱୀର ବାକ୍ୟ ହେବ ସତ୍ୟ
ଏହାହିଁ ସେହି ବ୍ରହ୍ମାଙ୍କ କଳ୍ପନା ସମ୍ଭୁତ ।
ଭୂମିର କାଠିନ୍ୟ ପୁଣି ଅଗ୍ନିର ଉଷ୍ଣତା
ଜଳର ଦ୍ରବତ୍ୱ ପୁଣି ଆକାଶ ଶୂନ୍ୟତ୍ୱ,
ବାୟୁର ପ୍ରବାହ ଆଦି ଯାହା ଦେଖାଯାଏ
ସେ ପ୍ରଜାପତି କଳ୍ପନା-ବଳେ ଘଟିଥାଏ ।
ପ୍ରଜାପତିଙ୍କ ସ୍ୱରୂପ ଅଟଇ ସେ ଚିତ୍ତ
ଏହୁ ସବୁ ସିନା ତାଙ୍କ କଳ୍ପନା ସମ୍ଭୁତ ।
ଆକାଶ ବପୁ ହେଲେ ହେଁ ସେହି ପ୍ରଜାପତି
ସତ୍ୟ ସଙ୍କଳପତା ହେତୁ ସବୁ ସେ ଜାଣନ୍ତି ।
ଶୁଦ୍ଧ ଚିତ୍ତ ଯାହା ହୋଇଥାଏ ପରିଜ୍ଞାତ
ସେହି ରୂପ ଧରିବ ସେ ଏହା ଯେ ନିଶ୍ଚିତ ।
ଅଶୁଦ୍ଧ ଚିତ୍ତ ତାହାକୁ କେବେ ହେଁ ଶ୍ରୀରାମ
ଅନ୍ୟଥା କରିବା ପାଇଁ ନ ହେବ ସକ୍ଷମ ।
ସେ ଚିଦାକାଶ ଆପଣା ମଧ୍ୟରେ ଏ ଭାବେ
ଦୃଶ୍ୟ, ଦ୍ରଷ୍ଟା, ଦରଶନ ଏ ତ୍ରିପୁଟ ଭାବେ,

ପ୍ରକାଶ କରିଣ ସେହୁ ସାକ୍ଷୀ ରୂପେ ଥାଇ
ତେଣୁ ଦ୍ରଷ୍ଟା ଦର୍ଶନର ପାର୍ଥକ୍ୟ ନ ରହି ।
ଦ୍ରଷ୍ଟା ହିଁ ଦୃଶ୍ୟ ଆକାର କରଇ ଧାରଣ
ତେଣୁ ଏ ଜଗତ ବ୍ରହ୍ମ ଅଙ୍ଗ ବୋଲି ଜାଣ ।
ଏକ ବସ୍ତୁ ଯଥା ଶୂନ୍ୟ ଭାବ ଓ ଆକାଶ
ବ୍ରହ୍ମ ଓ ଜଗତ ତଥା ଏକ ରଘୁଇଶ ।
ଚୈତନ୍ୟ କଣା ବ୍ରହ୍ମରୁ ହୋଇଲେ ନିର୍ଗତ
ପ୍ରଥମେ ବ୍ରହ୍ମ ଆକାରେ ହୁଅନ୍ତି ସ୍ଫୁରିତ ।
ସେତେବେଳେ ଏହିସବୁ ଚୈତନ୍ୟ କଣାରେ
ବୁଦ୍ଧି, ମନ ଆଦି କିଛି ନ ଥାଏ ତହିଁରେ ।
ପରେ ମନ ବୁଦ୍ଧି ଆଦି କଳ୍ପନା କରିଣ
ଜଗତର ଭୋକ୍ତା ହୋଇ ପଡ଼ନ୍ତି ସେମାନ ।
ଏହିଭାବେ ଅଜ୍ଞାନରୁ ଜଗତ ଉଦ୍ଭବ
କାଳେ କାଳେ ହେଉଥାଏ ଜାଣ ତୁହେ ରାଘବ ।
ଯେଣୁ କରି ମୋର ମଧ୍ୟେ ନାହିଁ ସେ ଅଜ୍ଞାନ
ତେଣୁ ମୋ ପାଇଁ ଜଗତ କାରଣ ବିହୀନ ।
ଏ ପରିକି ଜଗତ୍ ବୋଲି କୌଣସି କରମ
କେବେ ହେଁ ଉଦ୍ଭିତ ନୁହେଁ ଜାଣ ହେ ଶ୍ରୀରାମ ।
ଏକ ଅଦ୍ୱୈତ ବ୍ରହ୍ମ ହିଁ ସର୍ବତ୍ର ହେ ରାମ
ବିରାଜମାନ ଅଛନ୍ତି ବୋଲି ତୁଘେନ ମନ ।
ମନ ବୋଲି କିଛି ବସ୍ତୁ ନାହିଁ ସେ ବ୍ରହ୍ମରେ
ବୁଦ୍ଧି ବୋଲି କିଛି ମଧ୍ୟ ନଥାଇ ତହିଁରେ ।
ସ୍ୱପ୍ନ ସୁଷୁପ୍ତି ଉଭୟେ ନିଦ୍ରାରେ ଯେସନ
ବିଦ୍ୟମାନ ରହିଥାନ୍ତି ହେ ରଘୁ ନନ୍ଦନ ।
ବ୍ରହ୍ମରେ ତେସନ ସର୍ବ ସୃଷ୍ଟି ଓ ସଂହାର
ବର୍ତ୍ତମାନ ରହିଛନ୍ତି ଆହେ ରଘୁବୀର ।
ନିଦ୍ରାରେ ଯଥା ପାଷାଣ ହୁଏ ଅନୁଭୂତ
ଜଡ଼ ସତ୍ତା ସେହିପରି ବ୍ରହ୍ମରେ ପ୍ରତୀତ ।
ଦିବସ, ରଜନୀ ଭେଦ ଆତ୍ମର ଯେପରି
ଅନୁଭୂତ ହୋଇଥାଏ ଆହେ ଚାପଧାରୀ,
ପରମ ଆତ୍ମାଙ୍କଠାରେ ମଧ୍ୟ ସେହିପରି
ସୃଷ୍ଟି, ସଂହାର, ସଂଚିତ ଅଛି ଧନୁର୍ଦ୍ଧାରୀ ।
ସାଗରେ ସ୍ୱତଃ ତରଙ୍ଗ ପ୍ରକାଶ ଯେମନ୍ତ
ପରମ ଆତ୍ମାରେ ସୃଷ୍ଟି ସଂହାର ତେମନ୍ତ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମଗୀତା ସର୍ବ ବ୍ରହ୍ମ ପ୍ରତିପାଦନେ ବର୍ଣ୍ଣନେ ନାମ ୯୩ତମ ସର୍ଗଃ**



## ୯୪ତମ ସର୍ଗଃ

## ଜୀବ-ସଂସାର

କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଉପଦେଶ ଶୁଣି ମୁହିଁ ବୁଝିଲି ଏସନ ।
କୌଣସି କାରଣ ଘେନି ଜଗତ ଉତ୍ପନ୍ନ
ହୋଇଣ ନ ଥାଏ ଏହି ଉକ୍ତି ସ୍ଥିର ଜାଣ ।
ଯେ କାର୍ଯ୍ୟ କାରଣ ଭାବ ଜଗତ,- ବସ୍ତୁରେ
ପରିଦୃଷ୍ଟ ହୋଇଥାଏ ଆହେ ତପୀବରେ ।
ତାହା ତେବେ କେଉଁଠାରୁ ହୋଇଲା ସମ୍ଭବ ?
କୃପା କରି ମୋତେ ଏହା ବୁଝାଇ କହିବ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀରେ
ସୃଷ୍ଟି ପ୍ରଥମେ ବିଧାତା ସଂକଳପ ବଳେ ।
ଯେସବୁ ନିୟମମାନ ହୋଇଥିଲା ସ୍ଥିର
କାର୍ଯ୍ୟ କାରଣ ରୂପେ ସେ ସବୁ ରଘୁବୀର,
ନିୟମାବଦ୍ଧ ହୋଇଣ ଜଗତ ନାମରେ
ପରିଚିତ ହୋଇଅଛି କୌଶଲ୍ୟା କୁମରେ ।
ସେ କାର୍ଯ୍ୟ କାରଣ ଯୁକ୍ତ ନିୟମର ନାମ
'ନିୟତି' ବୋଲି କହିଣଛନ୍ତି ସୁଧୀଗଣ ।
କେହି ତାକୁ ଅତିକ୍ରମ କରି ନ ପାରଇ
ନିୟତି ହିଁ ସଦାକାଳେ ତା' କାମ କରଇ ।
ସର୍ବ ଶକ୍ତିମାନ ବିଭୁ ଯାହା ସଂକଳ୍ପଇ
ତାହା ହିଁ ସତ୍ୟ ହୁଅଇ ଜାଣ ରଘୁସାଇଁ ।
ଆମ ସଂକଳପ ଠାରୁ ତାଙ୍କ ସଂକଳପ
ଦୃଢ଼, ସାରବାନ ଯେଣୁ ରଘୁକୁଳ ଦୀପ ।
କେବେ ହେଁ ସେ ସଂକଳ୍ପ ନ ହୁଅଇ ବ୍ୟର୍ଥ
ଅକ୍ଷରେ ଅକ୍ଷରେ ଏହା ଅଟଇ ଯଥାର୍ଥ ।
ଏ ହେବ ଏସନ ପୁଣି ସେ ହେବ ତେସନ
ଏପରି ନିୟମାନ କରି କଳପନ,
ଯେପରି ଭାବରେ ସେହୁ ହୁଅନ୍ତି ପ୍ରକାଶ
ତାକୁ ନିୟତି କହନ୍ତି ହେ ରଘୁ ବିଳାସ ।
ସେ ନିୟତି ଯା ନିୟମ କରଇ ବିଧାନ
କେବେ ହେଁ ଅନ୍ୟଥା ନ ହୁଅଇ ସେହିମାନ ।
ଜାଗରଣ ସ୍ୱପ୍ନ ଆଦି ବ୍ରହ୍ମେ ଯା ପ୍ରକାଶ
ବ୍ରହ୍ମରୁ ସ୍ୱତନ୍ତ୍ର କେଉଁ ନୁହଁନ୍ତି ଅବଶ୍ୟ ।

ଅଗ୍ନିରେ ଉତ୍ତାପ ସମ ବ୍ରହ୍ମରେ ଏମାନ
ଅଭିନ୍ନ ଭାବରେ ରହିଛନ୍ତି ବର୍ତ୍ତମାନ ।
ସୃଷ୍ଟି ଓ ପ୍ରଳୟ ଏହି ଯେ ଉଭୟ ଜ୍ଞାନ
ବ୍ରହ୍ମ ଚୈତନ୍ୟର ଏହା ଅଟଇ ସ୍ଫୁରଣ ।
ତେଣୁ ଚିତ୍ ଯେଉଁ ଭାବେ ହୋଇବ ସ୍ଫୁରିତ
କାର୍ଯ୍ୟରୂପୀ ଏ ପ୍ରପଞ୍ଚ ହେବ ତଦବତ
ଆକାଶ, ଆଲୋକ, ଦ୍ରବ୍ୟ, କାଳ, କ୍ରିୟା, ମନ
ଦେଶ ରୂପ ଆଦି କରି ଅଛନ୍ତି ଯେ ମାନ ।
ବ୍ରହ୍ମଙ୍କ କଳ୍ପନା ସବୁ ଏହି ଆକାରରେ
ପରକାଶ ପାଏ ଜାଣ ଆହେ ରଘୁବୀରେ ।
ଏ ସମସ୍ତ କଳ୍ପନାକୁ ଆକାଶ ସଦୃଶ
ଜାଣି ରଖିବ ତୁମେ ହେ ରଘୁକୁଳ ଇଶ ।
ସୃଷ୍ଟି ଓ ପ୍ରଳୟମୟ ଅଟେ ଯେ ଜଗତ
ବ୍ରହ୍ମ ସ୍ୱଭାବ ମଣନ୍ତି ତତ୍ତ୍ୱଜ୍ଞ ପଣ୍ଡିତ ।
ଉଷ୍ଣତା ଅଟଇ ଯଥା ଅଗ୍ନିର ସ୍ୱଭାବ
ଚିତ୍ ସ୍ୱରୂପତା ତଥା ଜୀବର ସ୍ୱଭାବ ।
ବୃତ୍ତି ଆକାରରେ ଯେଉଁ ସଂବିତ ପ୍ରକାଶ
ତା ମଧ୍ୟ ସ୍ୱଭାବ ଜାଣ ହେ ରଘୁବିଳାସ ।
କ୍ଷିତି, ଜଳ ଆଦିଙ୍କର କଳ୍ପିତ ଆକୃତି
ଚିଦାକାଶର ସ୍ୱଭାବ ତାହା ରଘୁପତି ।
ତେଣୁ ସେମାନେ ହିଁ ଚିତ୍ ଅଟନ୍ତି ଜାଣିମ
ଚିତ୍ ଛଡ଼ା ଅନ୍ୟ କିଛି ନାହିଁ ଆହେ ରାମ ।
ଚତୁର୍ମୁଖ ବ୍ରହ୍ମା ସ୍ୱୟଂ ଆକାଶ ହୋଇଣ
ସ୍ୱୀୟ ଚୈତନ୍ୟ ବିସ୍ମୃତି ସାଧନ କରିଣ ।
ନିଜେ ସେ ପୃଥିବୀ, ଅଗ୍ନି, ଜଳ ଆଦି ରୂପେ
ପ୍ରକାଶ ପାଉଅଛନ୍ତି ରଘୁକୁଳ ଦୀପେ ।
ଯେବେ ପ୍ରପଞ୍ଚ ମାନଙ୍କୁ ସେହୁ କାଢ଼ି ନେବେ
ତାଙ୍କ ମଧ୍ୟେ ସର୍ବେ ଯାଇ ବିଲୀନ ହୋଇବେ ।
ପଦାର୍ଥମୟ ଅଟଇ ଏହି ଯେ ଜଗତ
ଦୃଶ୍ୟ ନୁହଇ କି ସେ ଜଗତ ରଘୁନାଥ ।
ତତ୍ତ୍ୱଜ୍ଞାନୀମାନଙ୍କୁ ତା ଅଟେ ଚିଦାକାଶ
ତୁମେ ଆମ୍ଭେ ଏ ସମସ୍ତ ଆତ୍ମାର ପ୍ରକାଶ ।
ସେହି ଆତ୍ମା ଯେତେବେଳେ ଦେହ ଛାଡ଼ି ଯିବ
ସକଳ ବିନଷ୍ଟ ହେଲା ବୋଲି ମନେ ହେବ ।
ସ୍ୱପ୍ନପରି ସବୁ ମିଥ୍ୟା ହେବ ତେତେବେଳେ,
ଚିଦାକାଶେ ଚିଦାକାଶ ରହିବ କେବଳ ।

ତେଣୁ ସମସ୍ତଙ୍କ ଚିତ୍ ଆକାଶ ବ୍ୟତୀତ
ଅନ୍ୟ କିଛି ରୂପେ ନାହିଁ କଉଶଲ୍ୟା ସୁତ ।
ପୁଣି ଚିଦାକାଶ ରୂପୀ ବ୍ରହ୍ମଙ୍କ ମଧ୍ୟରୁ
କ୍ଷିତ୍ୟାଦି ସର୍ବ ଜଗତ ଉଦ୍ଭୂତ ତହିଁରୁ ।
ଅଜ୍ଞାନୀ ଜନଙ୍କୁ ଜ୍ଞାନ ଦେବାର ନିମିତ୍ତ
ଏପରି କଳ୍ପନାମାନ ହୋଇଛି ବିହିତ ।
ପ୍ରକୃତ ପକ୍ଷରେ ରାମ ବ୍ରହ୍ମତତ୍ତ୍ୱ ଜାଣ
ନିତ୍ୟ, ଶାନ୍ତ, ଦୁର୍ଭେଦ୍ୟ ସେ ଉଦୟାସ୍ତହୀନ ।
ବ୍ରହ୍ମସତ୍ତା ଯୋଗୁଁ ସତ୍ୟ ହେଲେ ହେଁ ଜଗତ
ଅଜ୍ଞାନୀ ତାହାକୁ ଦେଖୁଥାଏ ବିପରୀତ ।
ଅଜ୍ଞାନୀ ଦୃଷ୍ଟିରେ ଦୃଶ୍ୟ ହୁଏ ଯେ ଜଗତ
ପୂର୍ଣ୍ଣ ଭାବେ ସେ ଜଗତ, ଅଟଇ ଅସତ ।
ବାସ୍ତବରେ କିନ୍ତୁ ବ୍ରହ୍ମସତ୍ତାରୁ ସ୍ୱତନ୍ତ୍ର
ପୃଥକ ଜଗତ ସତ୍ତା ନାହିଁ ରଘୁନାଥ ।
ଆକାଶେ ଆକାଶ ସମ ବ୍ରହ୍ମ ଆକାଶରେ
ଏ ଜଗଦାକାଶ ରାଜେ ଜାଣ ରଘୁବୀରେ ।
କଳ୍ପନା କୁଶଳ ବ୍ରହ୍ମସ୍ୱୀୟ ଅବିଦ୍ୟାରେ
ଦେହ, ଇନ୍ଦ୍ରିୟ ଚିନ୍ତାରେ ସ୍ୱରୂପ ପାଶୋରେ ।
ତାଙ୍କ ବାସ ହୋଇପଡ଼େ ସଂସାରେ ଆବଦ୍ଧ
ସଂସାର ଅବାଦ୍ଧ ହେଲେ ହୁଏ ସେହୁ ଅନ୍ଧ ।
ପରମା ଚିତିଶକ୍ତିର ଯାହା ଅନୁଭବ
ତାହାହିଁ ଜଗତ ଜାଣ ହେ ରଘୁ ପୁଙ୍ଗବ ।
ଚଇତନ୍ୟ, ତଦାକାରେ ହେବାରୁ ସ୍ଫୁରିତ
ସେ ଜଗତ ସତ୍ୟବତ୍ ହୁଅଇ ପ୍ରତୀତ ।
ବାସ୍ତବରେ ଏ ଜଗତ ନୁହଇଟି ସତ
ବ୍ରହ୍ମସତ୍ତା ଯୋଗୁଁ ସତ୍ୟ ବୋଲି ପ୍ରତିଭାତ ।
ଭାବନାମୟ ଚିତ୍‌ରୁ ସଂକଳ୍ପ ଉଦିତ
ଅହଂଭାବନା ଅନ୍ତରେ କରେ ସେହି ଚିତ ।
ଅହଂଭାବମୟ ଚିତ୍ ଜୀବ ନାମ ଧରି
ଜଳେ ତରଙ୍ଗ ସଦୃଶ ଆତ୍ମାରେ ବିହରି ।
ଅହଂଭାବମୟ ସେହି ଚିତ୍ ପ୍ରଥମରେ
ଆକାଶ ତନମାତ୍ରାକୁ ଅନୁଭବ କରେ ।
ସେହି ଆକାଶ ତନ୍ମାତ୍ରା ସକଳ ଶବ୍ଦର
ବୀଜ ସ୍ୱରୂପ ଅଟଇ ଜାଣ ରଘୁବୀର ।
ଭାବି ବେଦାର୍ଥ ରୂପରେ ସେହି ଯେ ଶବଦ
ତହିଁରୁ ଜଗତ ଜାତ ଆହେ ପଦ୍ମପାଦ ।

ଏହି ଯେ ବ୍ରହ୍ମ ଚୈତନ୍ୟ ଜାଣ ରଘୁରାଏ
ନାମ ଓ ରୂପ ଗ୍ରହଣ ନ କରେ ଯେ ଯାଏ,
ତେତେ ଦିନ ଚିତ୍ ରୂପେ ରହେ ବର୍ତ୍ତମାନ
ନାମ ରୂପ ନ ଘେନିଲେ ଘଟଇ ଏସନ ।
ପରେ ନିଜ ମଧ୍ୟେ ନିଜେ ହୋଇଣ ସ୍ପନ୍ଦିତ
ସ୍ପର୍ଶବୀଜ ବାୟୁ ରୂପେ ହୁଏ ପ୍ରକାଶିତ ।
ତା'ପରେ ରୂପ ତନ୍ମାତ୍ର ପୁଣି ତେଜ ତତ୍ତ୍ୱ
ଶବ୍ଦ ତନ୍ମାତ୍ର ଆବର ଯେ ଆକାଶ ତତ୍ତ୍ୱ,
ଇତ୍ୟାଦି କ୍ରମରେ ଏହି ଚୈତନ୍ୟ ହିଁ ଜାଣ
ସର୍ବ ରୂପେ ପ୍ରକାଶିତ ହୁଏ ରଘୁରାଣ ।
ତେଣୁ ଅନନ୍ତ ଜଗତ ଆତ୍ମାର ହିଁ ସ୍ଥିତ
ପୁଣି ଆତ୍ମାରୁ ଅଭିନ୍ନ ରହଇ ସତତ ।
ବାସ୍ତବରେ ଜଗତର ଉଦୟ ବା ଅସ୍ତ
କିଛି ନାହିଁ ବୋଲି ଜାଣି ରଖ ରଘୁନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଜୀବ ସଂସାର ବର୍ଣ୍ଣନେ ନାମ ୯୪ତମ ସର୍ଗଃ**



## ୯୫ତମ ସର୍ଗଃ
## ଜୀବ ରୂପ ବର୍ଣ୍ଣନ

କହନ୍ତି ବଶିଷ୍ଠ ଶୁଣ କୌଶଲ୍ୟା ତନୟ
ଯେଉଁ ଚିଦାଭାସମୟ ଜୀବର ବିଷୟ,
ବର୍ଣ୍ଣନ କଲଇଁ ମୁହିଁ ତୁମ ସମ୍ମୁଖରେ
'ଆଦି ଜୀବ' ନାମେ ଖ୍ୟାତ ସେହୁ ଜଗତରେ ।
ସହଜରେ ତୁମ ବୋଧଗମ୍ୟ ହେବ ବୋଲି
ବ୍ରହ୍ମରୁ ପୃଥକ କରି ତାଙ୍କୁ ମୁଁ ବର୍ଣ୍ଣିଲି ।
ମାତ୍ର ବ୍ରହ୍ମସହ ତାର କୌଣସି ପାର୍ଥକ୍ୟ
ବାସ୍ତବରେ ନାହିଁ ଜାଣ ହେ ରଘୁନାୟକ ।
ବ୍ରହ୍ମଙ୍କର ସ୍ୱଭାବିକ ଉପାଧି ଜନିତ
ଅବୟବ ଯେଣୁ ତାହା ଆହେ ରଘୁନାଥ
ଦୃଶ୍ୟ ଭାବରେ ଉନ୍ମୁଖ ହୁଅନ୍ତେ ଏ ଚିତ
ସଙ୍ଗେ ସଙ୍ଗେ ଜୀବ ନାମେ ହୁଏ ଅଭିହିତ ।
କର୍ମେନ୍ଦ୍ରିୟମାନଙ୍କୁ ସେ ପ୍ରକାଶ କରିଣ
ପ୍ରାଣ ଓ ଜୀବନ ରୂପ କରଇ ଧାରଣ ।
ପୁଣି ଜ୍ଞାନେନ୍ଦ୍ରିୟ ମାନ ପ୍ରକାଶ କରିଣ
ଚେତନ ସ୍ୱରୂପ ଧରି ରହେ ବିଦ୍ୟମାନ ।
ଭୂତ, ଭବିଷ୍ୟ ବିଷୟେ ଉନ୍ମୁଖ ହୋଇଣ
ଚିତ୍ତ ନାମକୁ ସେ କାଳେ କରଇ ଗ୍ରହଣ ।
ବର୍ତ୍ତମାନ ଦୃଶ୍ୟାଦିରେ ଉନ୍ମୁଖ ହୋଇଣ
ଚିତ୍ତ ପଦବାଚ୍ୟ ସେହୁ ହୁଅଇଟି ଜାଣ ।
ନିଶ୍ଚୟ ଆତ୍ମକ ଜ୍ଞାନବାନ ଯେବେ ହୁଏ
ତେତେବେଳେ ରାମ ତାକୁ ବୁଦ୍ଧି ବୋଲାଯାଏ ।
ସଂକଳ୍ପ, ବିକଳ୍ପ ଜ୍ଞାନ ସମ୍ପନ୍ନ ହୋଇଣ
'ମନ' ଏବଂ 'ମୁହିଁ' ଏହି ଭାବକୁ ଧରିଣ,
ଅହଂକାର ନାମକୁ ସେ ବହଇ ସେ କାଳେ
ଅହଂକାର ହିଁ ଜୀବନେ ସବୁ ଖେଳ ଖେଳେ ।
ଅଜ୍ଞ ବ୍ୟକ୍ତିମାନଙ୍କର ବୁଝିବା ନିମିତ୍ତ
ଚିତ୍ତ ନାମେ ତାହାକୁ ମୁଁ କଲଇଁ ବିଦିତ ।
ତତ୍ତ୍ୱଜ୍ଞ ପଣ୍ଡିତଗଣ ବ୍ରହ୍ମଙ୍କୁ ହିଁ ରାମ
ଚିତ୍ତ ନାମେ ଅଭିହିତ କରିଥାନ୍ତି ଜାଣ ।
ଯେଉଁ ଆଦି ଜୀବ କଥା କହିଲଇଁ ମୁହିଁ
କ୍ରମେ କ୍ରମେ ସଙ୍କଳପମୟ ସେହୁ ହୋଇ,
ପୂର୍ଯ୍ୟଷ୍ଟକ ନାମେ ଜାଣ ହୁଏ ପରିଚିତ
ପ୍ରକୃତି ନାମରେ ମଧ୍ୟ ହୁଅଇ ସେ ଖ୍ୟାତ ।
ସଂସାର ମୂଳ କାରଣ ହେତୁରୁ ପ୍ରକୃତି
ନାମ ଦେଇଥାନ୍ତି ତାକୁ ସର୍ବଜ୍ଞାନୀ ବ୍ୟକ୍ତି ।
ସ୍ୱରୂପ ଜ୍ଞାନ ଉଦୟ ନିମିତ୍ତ ହେ ରାମ
ତାହାର ନ ଥାଇ କଉଣସି ଅବଦାନ ।
ତେଣୁ ଜ୍ଞାନୀଜନ ତାକୁ 'ଅବିଦ୍ୟା' ନାମରେ
ବିଦିତ କରି ଅଛନ୍ତି ଜାଣ ରଘୁବୀରେ ।
ଏ ଆଦି ଜୀବର ରାମ ଆଦି ଆଉ ଅନ୍ତ
କେବଳ ହିଁ ବ୍ରହ୍ମମୟ ଅଟେ ସେ ସମସ୍ତ ।
'ଆତିବାହିକ ଶରୀରୀ ଆଖ୍ୟା ଦେଇକରି
ତା' ଗୁଣ ଗାଉଥାଆନ୍ତି ପଣ୍ଡିତ ମଣ୍ଡଳୀ ।
ସଂକଳ୍ପ ନଗରୀ ସମ ଏ ଜଗତ୍-ଭ୍ରାନ୍ତି
ଏହାରି ଠାରୁ ହିଁ ଜାତ ଆହେ ରଘୁପତି ।
ପୂର୍ବୋକ୍ତ ଆତିବାହିକ ଶରୀର ହିଁ ଚିତ୍ତ
ଆକାଶଠାରୁ ତା ସୂକ୍ଷ୍ମ ଆହେ ରଘୁନାଥ ।
ମୁକ୍ତି ନ ହେବା ପର୍ଯ୍ୟନ୍ତ ରହେ ବିଦ୍ୟମାନ
ଏହି ଦେହରୁ ଘଟଇ ଅସଂଖ୍ୟ ଜନମ ।

ଏହି ଚିତ୍ତମୟ ଦେହ ଅନ୍ତରେ ବାହାରେ
ଗତ ରୂପେ ଉଦିତ ହୁଏ ନିରନ୍ତରେ ।
ବାସ୍ତବରେ ତାହା କିନ୍ତୁ ଆକାଶ ବ୍ୟତୀତ
ଅନ୍ୟ କିଛି ନୁହେଁ ଜାଣ ଆହେ ରଘୁନାଥ ।
ଏହି ଯେ ଆତିବାହିକ ଦେହକୁ ହେ ରାମ
ଶାସ୍ତ୍ରମାନେ ନାନା ନାମେ କରନ୍ତି କୀର୍ତ୍ତନ ।
କିଏ କହେ ସେ ବିରାଟ କିଏ ପ୍ରଜାପତି
ନାରାୟଣ, ସନାତନ ବୋଲି କେ ବୋଲନ୍ତି ।
ଏ ଦେହରୁ ପରପଞ୍ଚ ହେଲେହେଁ ଉଦ୍ଭୁତ
ବାସ୍ତବରେ କିଛି ତହୁଁ ନୁହେଁ ଉଦଭୁତ ।
ଖାଲି ଶାନ୍ତ ଆତ୍ମତତ୍ତ୍ୱ ଅଛି ବିରାଜିତ
ଆବିର୍ଭାବ-ତିରୋଭବ ଶୂନ୍ୟ ବ୍ରହ୍ମତତ୍ତ୍ୱ ।
ନିଜ ସ୍ୱରୂପ ଦର୍ଶନ ନ କଲେହେଁ ସେହି
ସତ, ଅସତ ଉଭୟ ରୂପେ ପ୍ରକାଶଇ ।
ସ୍ୱପ୍ନେ କାମିନୀ ସମ୍ଭୋଗ ଅନୁଭବ ସମ
ଏ ଆତିବାହିକ ଦେହ ଅନୁଭବେ ରାମ ।
ଏ ବିଶ୍ୱ ପ୍ରପଞ୍ଚ ସତ୍ୟସମ ପ୍ରତିଭାତ
ହୋଇଥାଏ ମନେରଖ ଆହେ ରଘୁନାଥ ।
ସ୍ୱପନେ ଆକାଶେ ଯଥା ନାନା ମୂର୍ତ୍ତିମାନ
ପରିଦୃଷ୍ଟ ହୋଇଥାନ୍ତି ହେ ରଘୁନନ୍ଦନ ।
ଆକାରବିହୀନ ଆତିବାହିକ ଦେହରେ
ଜଗତର ଅନୁଭବ ହୁଏ ସହଜରେ ।
ନିରାକାର ଓ ଅସତ ହେଲେ ହେଁ ଏ ଦେହ
କ୍ରମେ ତହିଁ ନାନାଭାବେ ଜନମଇଁ ମୋହ ।
"ଏହି ମୋ ସ୍ଥୁଳ ଶରୀର, ଅସ୍ଥି, ମାଂସ, ଶିରା
ସ୍ନାୟୁ, ହସ୍ତ, ପଦ ନାନା ଅବୟବ ଭରା ।
ହେଇଟି-ମୁଁ ଜନମିଲି ହେଲି କାର୍ଯ୍ୟରତ
ଆସଇ ବାର୍ଦ୍ଧକ୍ୟ ମାଡ଼ି ହେଲି ଜରାଗ୍ରସ୍ତ ।
ଏବେ ମୁଁ ମରିବି" ଏହିପରି ଚିନ୍ତା-ନଳ
ଅନୁଭୂତ ହେଉଥାଏ ସେ ଦେହେ କେବଳ ।
ଏହି ରୂପେ ସେହି ଆତିବାହିକ ଶରୀରୀ
ନିଜ କଳ୍ପିତ ଜଗତେ ସ୍ଥୁଳ ରୂପ ଧରି,
ଜ୍ଞାତା, ଜ୍ଞାନ ଜ୍ଞେୟ ଭାବମୟ ଏ ସଂସାର-
ରୂପର ସ୍ୱପ୍ନ ଦେଖୁଣ ଥାଏ ନିରନ୍ତର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ଜୀବରୂପ ବର୍ଣ୍ଣନେ**
**ନାମ ୯୫ତମ ସର୍ଗଃ**



## ୯୬ତମ ସର୍ଗଃ

## ବ୍ରହ୍ମ ଏକତା ପ୍ରତିପାଦନ

କହନ୍ତି ବଶିଷ୍ଠ ଶୁଣ ହେ ରଘୁତନୟ
ଆଦି ପ୍ରଜାପତି ଆତିବାହିକ ଯେ ଦେହ ।
ସେହି ଦେହ ଯେଉଁପରି କରେ ଅନୁଭବ
ସେହିପରି ଘଟିଥାଏ ଜାଣ ହେ ରାଘବ ।
ତେଣୁ ତା' ସତ୍ୟ ସଂକଳ୍ପ ବଶତଃ ହେ ରାମ
ଏ ଜଗତ ପ୍ରତିଭାତ ସର୍ବ ସମକ୍ଷେଣ ।
ଦ୍ରଷ୍ଟା, ଦୃଶ୍ୟ ଦରଶନମୟ ଏ ଜଗତ
କିନ୍ତୁ ଏକବାରେ ମିଥ୍ୟା ଜାଣ ରଘୁନାଥ ।
ବୋଲନ୍ତି ଶ୍ରୀରାମ ଶୁଣ ଆହେ ତପୋବର
ଆଦି ପ୍ରଜାପତି ଆତିବାହିକ ଦେହର,
ଅନୁଭବ ବା ସପନ କେଉଁ ପରକାରେ
ସତ୍ୟ ହୋଇଥାଏ କହ ଏବେ ମୋ ଆଗରେ
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଆତିବାହିକ ଶରୀର-ଜାତ ଏ ଦର୍ଶନ ।
ସଦା ସର୍ବଦା ଘଟୁଛି ଯେବଣ କାରଣ
ସତ୍ୟ ଦୃଢ଼ରୂପେ ପ୍ରତିଭାତ ତେଣୁ ଜାଣ ।
ବହୁକ୍ଷଣ ବ୍ୟାପି ପୁଣି ପ୍ରଗାଢ଼ ସ୍ୱପନ
ସତ୍ୟ ବୋଲି ପ୍ରତିଭାତ ହୁଅଇ ଯେସନ,
ସେପରି ଆତିବାହିକ ଭାବ ଦୃଢ଼ହୋଇ
ଆଧିଭୌତିକ ଆକାର ଧାରଣ କରଇ ।
ସେ ଆଧିଭୌତିକ ଭାବ ହେଲେହେଁ ଅଳୀକ
ସତ୍ୟ ବୋଲି ମଣେ ତାକୁ ଯେହୁ ଅବିବେକ ।
ବ୍ରହ୍ମାଙ୍କ ଆତିବାହିକ ଦେହ ଯେଉଁପରି
ଭାବନାରେ ଆଧିଭଉତିକ ଭାବ ଧରି,
ଜୀବର ଆତିବାହିକ ଶରୀର ସେପରି
ମୁହିଁ ମୋର ଏ ଆକାଶ ସର୍ବ ଦିଗ ଗିରି,
ଏପରି ଭ୍ରମ ଆତ୍ମକ ଦୃଶ୍ୟମାନ ଦେଖି
ସତ୍ୟ ବୋଲି ମନେକରେ ହେ କମଳ ଆଖି ।

'ମୁଁ ଅଟେ ଚିତ୍‌ସ୍ୱରୂପ' ଏ ଯଥାର୍ଥ ଜ୍ଞାନ
ପରିହାର କରିଦେଇ ହେ ରଘୁନନ୍ଦନ ।
"ପୃଥିବୀ ଆଧାର ମୋର, ଏ ଦେହ ମୋହର" ।
ଏ ବିପରୀତ ବୁଦ୍ଧିରେ ମଗ୍ନ ହୋଇ ନର
ଆସ୍ଥାବାନ ହୋଇ ରହେ ତାହାଙ୍କ ଉପରେ
ଏହି ଜଗଦ୍‌ଭ୍ରମ ସତ୍ୟ ବୋଲି ମନେକରେ ।
ଆତିବାହିକ ଦେହ ହିଁ ଆହେ ରଘୁବୀର
ଧରେ ଏ ଆଧିଭୌତିକ ଜଗତ ଆକାର ।
ତା' ଛଡ଼ା ଆଧିଭୌତିକ ଜଗତ ବୋଲିଣ
ଅନ୍ୟ କିଛି ନାହିଁ ଜାଣ ହେ ରଘୁନନ୍ଦନ ।
ସୃଷ୍ଟି କର୍ତ୍ତା ବ୍ରହ୍ମାଠାରୁ ଏ ମୋହ ଉଦ୍‌ଭୂତ
ତେଣୁ ପ୍ରାରବ୍‌ଧର କ୍ଷୟ ନୋହିବା ପର୍ଯ୍ୟନ୍ତ,
ତତ୍ତ୍ୱଦର୍ଶୀଙ୍କର ଜଗତ୍ ଦରଶନ ଭ୍ରମ
ଚାଲୁ ରହିଥାଏ ଜାଣ ରଘୁ କୁଳୋତ୍ତମ ।
ଆତ୍ମାର ଏହି ଦୁର୍ଦ୍ଦଶା ଆହେ ରଘୁବୀର
କେବଳ ଭ୍ରାନ୍ତି ବଶତଃ ଘଟେ ଏ ପ୍ରକାର ।
ଅଥବା ବ୍ରହ୍ମ ହିଁ ରାମ ଏହି ଆକାରରେ
ପ୍ରକାଶ ପାଇଅଛନ୍ତି ଏ ସୃଷ୍ଟି ମଧ୍ୟରେ ।
ବ୍ରହ୍ମଠାରେ ଯେଣୁ କାର୍ଯ୍ୟ କାରଣର ଭାବ
ଏକାନ୍ତରେ ଅସମ୍ଭବ ହେ ରଘୁପୁଙ୍ଗବ ।
ଜଗତକୁ ଭ୍ରାନ୍ତି ଛଡ଼ା ଅନ୍ୟ କି ଭାବରେ
ମନେ କରାଯାଇପାରେ କହ ରଘୁବୀରେ ?

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବ୍ରହ୍ମ ଏକତ୍ୱ ପ୍ରତିପାଦନେ ନାମ ୯୬ତମ ସର୍ଗଃ**



## ୯୭ତମ ସର୍ଗଃ
## ରାମ ବିଶ୍ରାନ୍ତି

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ଜ୍ଞେୟରେ ଭାବକୁ ଜ୍ଞାନ କରନ୍ତେ ଗ୍ରହଣ,
ବନ୍ଧନ ନାମରେ ତାହା ହୁଅଇ କଥିତ
ଯେତେବେଳେ ଜ୍ଞେୟଭାବୁ ଜ୍ଞାନ ହୁଏ ମୁକ୍ତ,
ସେତେବେଳେ ଯାଇଁ ଆତ୍ମା ହୋଇପାରେ ମୁକ୍ତ
ମୁକ୍ତିର ଏକ ପନ୍ଥା ଏହା ରଘୁନାଥ ।
କହନ୍ତି ଶ୍ରୀରାମ ଦେବ ଜ୍ଞାନ ଜ୍ଞେୟଭାବ
କିପରି ନିବୃତ୍ତି ହୁଏ ବୁଝାଇ କହିବ ।
କହନ୍ତି ବଶିଷ୍ଠ ସମ୍ୟକ୍ ଜ୍ଞାନ ଉଦେ ହେଲେ
ଜ୍ଞାନର ଜ୍ଞେୟ ଭାବଟି ଚାଲିଯାଇ ପାରେ ।
ତାହାର ନାମଟି ଜାଣ ଅଟଇ ମୁକତି
ହେତୁ ରଖିଥାଅ ଏହା ଆହେ ରଘୁପତି ।
କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ସମ୍ୟକଜ୍ଞାନ ଲକ୍ଷଣ ବୁଝାଇ କହିବ ?
କହନ୍ତି ବଶିଷ୍ଠ ଶୁଣ ହେ ରଘୁତନୟ
ଶାଶ୍ୱତଜ୍ଞାନ ଯାହା କି ଅନିର୍ବଚନୀୟ ।
କେବଳ ତାହା ହିଁ ସଦା ଅଛି ବିଦ୍ୟମାନ
ତାହା ଛଡ଼ା ଅନ୍ୟ କିଛି ନାହିଁ ବୋଲି ଜାଣ ।
ଏହି ବୋଧ ହିଁ ସମ୍ୟକ-ଜ୍ଞାନ ବୋଲି ଜାଣ
ଜ୍ଞାନୀଙ୍କ ମତରେ ଏହା ସବୁଠୁଁ ପ୍ରଧାନ ।
ଶ୍ରୀରାମ କହନ୍ତି ଶୁଣ ଆହେ ତପଚାରୀ
ଚିଦେକରସ ମଧ୍ୟରେ ତେବେ କେଉଁପରି,
ତାର ତହୁଁ ଭିନ୍ନଭେଦ ଜ୍ଞାନ ସମ୍ଭବିବ ?
କୃପାକରି ଏହିକଥା ବୁଝାଇ କହିବ ।
ଜ୍ଞାନ ଶବ୍ଦ କି କରଣ-ବାଚ୍ୟରୁ ନିଷ୍ପନ୍ନ
ଅଥବା ଭାବ ବାଚ୍ୟରୁ ତାର ଉତପନ୍ନ ?
କହନ୍ତି ବଶିଷ୍ଠ ଯାହା ବୋଧ ତାହା ଜ୍ଞାନ
ଭାବ-ବାଚ୍ୟରୁ ସେ ଜ୍ଞାନ ଶବ୍ଦ ଉତପନ୍ନ ।
ଶ୍ରୀରାମ କହନ୍ତି ଆହେ ମୁନିଙ୍କ ଅଧୀପ
ଜ୍ଞାନର ଯେବଣ ଜ୍ଞେୟ ରୂପକ ବିକଳ୍ପ ।
ଶଶା ଶୃଙ୍ଗ ପରି ସେହୁ ଅଟଇ ଅଳୀକ
ନାହିଁ ମୋ ସନ୍ଦେହ ଏଥି ହେ ମୁନି ତିଳକ ।
କହନ୍ତି ବଶିଷ୍ଠ ରାମ ତାହା ଏବେ ଶୁଣ
"ବସ୍ତୁ ଅଛି ବାହ୍ୟ ଜଗତରେ ବିଦ୍ୟମାନ" ।
ଏ ରୂପ ଭ୍ରାନ୍ତରୁ ଜନ୍ମେ ସେ ବିକଳ୍ପ ଜ୍ଞାନ
(ମାତ୍ର) ଅନ୍ତର୍ବହି କାହିଁ ହେଲେ ନୁହେଁ ସେ ଉତ୍ପନ୍ନ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋବନ୍ତ
ତୁମେ ଆମେ ଆଦି କରି ଯେତେକ ପଦାର୍ଥ
ଏହା ସବୁ ବାସ୍ତବରେ ସବୁରି ପ୍ରତ୍ୟକ୍ଷ
ଏହା ସବୁ ନାହିଁ ବୋଲି କିପରି ଯଥାର୍ଥ ?
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ଆଦି ପ୍ରଜାପତି ଯେବେ ନୋହିଥିଲେ ଜାତ,

ସୃଷ୍ଟି ପୂର୍ବେ ଜ୍ଞେୟ ବସ୍ତୁ ଥିଲା ବର୍ତ୍ତମାନ
କିପରି ଭାବରେ ଏହା କରିବ ପ୍ରମାଣ ?
ଏ ବିଷୟେ ଶ୍ରୁତି ଏକମାତ୍ର ହିଁ ପ୍ରମାଣ
ଲୌକିକ ପ୍ରତ୍ୟକ୍ଷ ହୋଇ ନ ପାରେ ତା ଜାଣ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୀଦକ୍ଷ
ତିନି କାଳେ ଯେ ଜଗତ ସବୁରି ପ୍ରତ୍ୟକ୍ଷ ।
କେଉଁ ଯୁକ୍ତି ବଳେ ତାକୁ କହ ଆହେ ଦେବ
ମିଥ୍ୟା କଥା ବୋଲି ତାକୁ ପ୍ରମାଣ କରିବ ?
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁଶ୍ରେଷ୍ଠ
ମରୀଚିକା ମଧ୍ୟେ ଯଥା ଜଳ ପରିଦୃଷ୍ଟ ।
ତତ୍ତ୍ୱଜ୍ଞଙ୍କୁ ଜଣାଯାଏ ମିଥ୍ୟା ଏ ଜଗତ
ମୋ ମତରେ ଏ ଉକତି ଅଟଇ ଯୁକତ ।
ଶ୍ରୀରାମ କହନ୍ତି ଶୁଣ ଆହେ ଭଗବନ
"ସୃଷ୍ଟିର ପୂର୍ବରୁ ଏ ଜଗତ ଉତପନ୍ନ" ।
ଏହି ଉକତିରେ ଅଛି କେବଣ ବା ଦୋଷ
ବୁଝାଇ କହିବା ହେଉ ଆହେ ମୁନିଈଶ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାନ
କିଛି ହିଁ ନ ଥାଇ ଯେଣୁ ପ୍ରଳୟ କାଳେଣ ।
ଯଦି ସେ କାଳେ ଜଗତ୍ ଉଦ୍‌ଭୂତ ହୋଇବ
ତାହାର କାରଣ କିସ ହେବ ହେ ରାଘବ ?
କହନ୍ତି ଶ୍ରୀରାମ ମୁନେ ବ୍ରହ୍ମଙ୍କୁ ହିଁ ମୁହିଁ
ସୃଷ୍ଟିର କାରଣ ବୋଲି ନିଶ୍ଚେ କହିବଇଁ ।
ବଶିଷ୍ଠ କହନ୍ତି ରାମ କାରଣରେ କାର୍ଯ୍ୟ
ସୂକ୍ଷ୍ମଭାବେ ଅବସ୍ଥାନ କରିଥାଏ ଆର୍ଯ୍ୟ ।
ପ୍ରଳୟରେ ଜଗତ ତ ସୂକ୍ଷ୍ମ ଭାବେ ବ୍ରହ୍ମେ
ରହି ତ ନ ଥାଏ ଜାଣ ଆହେ ମହାତ୍ମନେ ।
ଆଉମଧ ଏ ଜଗତ ଯେହେତୁ ଅସତ
ଅସତର ଉତ୍ପତ୍ତି ବା ହୋଇବ କେମନ୍ତ ?
ଶ୍ରୀରାମ କହନ୍ତି ମୁନି ପ୍ରଳୟ ଅନ୍ତରେ
ସୂକ୍ଷ୍ମଭାବେ ଜଗତ୍ ରହେ ବ୍ରହ୍ମଙ୍କ ମଧ୍ୟରେ ।
ତାହା ହିଁ ପୁଣି ପ୍ରକାଶ ପାଏ ତତ୍‌ପରେ ।
କି ଆପତ୍ତି ଅଛି ମୁନି ଏହା କହିବାରେ ?
କହନ୍ତି ବଶିଷ୍ଠ କହ ଆହେ ରଘୁନାଥ
ପ୍ରଳୟାନ୍ତେ ଜଗତର ଯେ ସୂକ୍ଷ୍ମ ଅସ୍ତିତ୍ୱ,
କେହି କି ତାହାକୁ କରିଅଛି ଅନୁଭବ
ଜାଣିଥିଲେ କହ ତାହା ହେ ରଘୁପୁଙ୍ଗବ ।

କହନ୍ତି ଶ୍ରୀରାମ ମୁନି ପ୍ରଳୟ ଅନ୍ତରେ
ଜ୍ଞାନସ୍ୱରୂପ ବ୍ରହ୍ମଙ୍କ ଅନ୍ତର ମଧ୍ୟରେ,
ଜଗତ ଜ୍ଞାନ ରୂପେ ହିଁ କରେ ଅବସ୍ଥାନ
ଦୋଷାବହ ହୋଇବ କି ଏପରି କଥନ ?
ବଶିଷ୍ଠ କହିଲେ ରାମ ତାହା ଯେବେ ହୁଏ
ବିଶୁଦ୍ଧ ଜ୍ଞାନ ହିଁ ଜଗତ୍ ଏହା ଆସିଯାଏ ।
ଆଉ ମଧ ତାହା ଅଟେ ଜୀବର ଶରୀର
ଏହା ମଧ ଆସିଯାଏ ଆହେ ରଘୁବୀର ।
ଅନିତ୍ୟ ବସ୍ତୁ ଅଥବା ଜନ୍ମ ମୃତ୍ୟୁ ଆଦି
କିଛି ରହି ନ ପାରଇ ଜାଣ ରଘୁନିଧି ।
ଶ୍ରୀରାମ କହନ୍ତି ଦେବ ତାହା ଯଦି ହୁଏ
ପୂର୍ବେ ଯେ ସୃଷ୍ଟି ନ ଥିଲା ବ୍ରହ୍ମାଙ୍କ ତନୟେ,
ଏବେ ପୁଣି ତାହା କିପରି ବା ସମ୍ଭବିଲା
ଭ୍ରାନ୍ତି ବୋଲି ତାକୁ କିପରି ବା କୁହାଗଲା ?
ବୁଝାଇ ଦିଅନ୍ତୁ ମୋତେ ସବିଶେଷ କରି
ବିନୟ ଭାବେ କହୁଛି ଆହେ ତପଚାରୀ ।
କହନ୍ତି ବଶିଷ୍ଠ ତେବେ ଶୁଣ ରଘୁସାଇଁ
କାର୍ଯ୍ୟ କାରଣର ଭାବ ବ୍ରହ୍ମେ ଯେଣୁ ନାହିଁ ।
ଭାବ ବା ଅଭାବମୟ କୌଣସି ପଦାର୍ଥ
ତେଣୁ ନାହିଁ ବୋଲି ଜାଣ ଆହେ ରଘୁନାଥ ।
ଜ୍ଞାନ, ଜ୍ଞାତା, ଜ୍ଞେୟ ଯାହା ହୁଏ ପ୍ରତିଭାତ
ଅନ୍ୟକିଛି ନୁହେଁ ତାହା ବ୍ରହ୍ମଙ୍କ ବ୍ୟତୀତ ।
ଦ୍ରଷ୍ଟା ଯେବେ ହୁଏ ଦୃଶ୍ୟ କହନ୍ତି ଶ୍ରୀରାମ
ତେବେ ଚିନ୍ମୟ ଈଶ୍ୱର ଜଡ଼ ହେବେ ଜାଣ ।
ବଶିଷ୍ଠ କୁହନ୍ତି ଦୃଶ୍ୟ ବସ୍ତୁ ମାନଙ୍କର
ଯେଣୁ ଅସ୍ତିତ୍ୱ ନ ଥାଇ ଆହେ ରଘୁବୀର ।
ପ୍ରକୃତ ପକ୍ଷେ ଯେ ଦ୍ରଷ୍ଟା ସେ ନୁହଁଇ ଦୃଶ୍ୟ
କେବଳ ହିଁ ବ୍ରହ୍ମ ସର୍ବ ସ୍ୱରୂପେ ପ୍ରକାଶ ।
ଶ୍ରୀରାମ କହନ୍ତି ଶୁଣ ଏ ଦୃଶ୍ୟ ଜଗତ
ବିଶୁଦ୍ଧ ଚୈତନ୍ୟେ ଯେବେ ଆହେ ତପୋବନ୍ତ,
ଅନୁଭୂତ ନ ହୋଇବ ତେବେ ତପୋଧନ
ଜଗତ ପ୍ରତୀତ ହୋଇ ନ ପାରିବ ଜାଣ ।
ଅସମ୍ଭାବନା ଦୃଶ୍ୟର ତେଣୁ କେଉଁପରି
ହୋଇପାରିବ ତା କହ ଆହେ ତପଚାରୀ ।
ଯେହେତୁ କାରଣ ନାହିଁ କହେ ବ୍ରହ୍ମାସୁତ
ଦୃଶ୍ୟରୂପ-କାର୍ଯ୍ୟ ସମ୍ଭବିବ ବା କେମନ୍ତ ।

ତେଣୁ ଆତ୍ମା, ସଦାମୁକ୍ତ ଅନିର୍ବଚନୀୟ
ଏହିକଥା ମନେରଖ କୌଶଲ୍ୟା ତନୟ ।
ଶ୍ରୀରାମ କହନ୍ତି ଆତ୍ମା ଯେବେ ସଦାମୁକ୍ତ
ଅହଂଭାବ କିପରି ବା ହୁଏ ଉଦଭୂତ ।
ପୁଣି ଜଗତର ଜ୍ଞାନ କିପରି ସମ୍ଭବ
ହୋଇଥାଏ ଏହା ମୋତେ ବୁଝାଇ କହିବ ।
କାରଣ ଅଭାବ ହେତୁ କହେ ବ୍ରହ୍ମାସୁତ
ଏହାସବୁ କିଛି ହେଲେ ନୁହଁଇ ଉଦ୍ଭୁତ ।
କେବଳ ଭ୍ରମ ବଶତଃ ଆହେ ରଘୁନାଥ
ପ୍ରତୀତ ହୁଅଇ ତାହା, ଏକଥା ଯଥାର୍ଥ ।
ଶ୍ରୀରାମ କହନ୍ତି ଶୁଣ ଆହେ ତପଶ୍ଚରୀ
ବାକ୍ୟାତୀତ ନିତ୍ୟ ମୁକ୍ତ ବ୍ରହ୍ମେ କେଉଁପରି ?
କାହାର କିପରି ଭ୍ରମ ହୋଇବା ସମ୍ଭବ
ଦୟାକରି କହ ମୋତେ ହେ ମୁନି ପୁଙ୍ଗବ ।
କହନ୍ତି ବଶିଷ୍ଠ ରାମ ପ୍ରକୃତ ପକ୍ଷରେ
କଉଣସି ମାତ୍ର ଭ୍ରମ ନ ଥାଏ ବ୍ରହ୍ମରେ ।
ତୁମେ, ଆମେ, ସମସ୍ତେ ହିଁ ଜାଣ ହେ ଶ୍ରୀରାମ
ସେହି ଅନାମୟ ବ୍ରହ୍ମ ବିନୁ ନୋହୁଁ ଆନ୍ ।
ଶ୍ରୀରାମ କହନ୍ତି ଶୁଣ ଆହେ ବ୍ରହ୍ମାସୁତ
ଏବେ ମଧ୍ୟ ଭ୍ରମେ ମୁହିଁ ରହିଛି ଜଡ଼ିତ ।
କେବେ ହେଁ ପ୍ରବୁଦ୍ଧ ମୁହିଁ ହୋଇ ନ ପାରଇ
ଅପ୍ରବୁଦ୍ଧ ରୂପେ ଏବେ ରହି ମୁଁ ଅଛଇ ।
କହନ୍ତି ବଶିଷ୍ଠ ଶୁଣ କୌଶଲ୍ୟା କୁମର
ନିଃସନ୍ଦିଗ୍ଧ ନ ହୋଇଛ ତୁମେ ଯେତେକାଳ ।
ତେତେକାଳ ପ୍ରଶ୍ନମାନ ପଚାରୁଣ ଥିବ
ନିଃସନ୍ଦିଗ୍ଧ ହେଲେ ପରଂପଦ ପ୍ରାପ୍ତି ହେବ ।
ଶ୍ରୀରାମ କହନ୍ତି ଶୁଣ ଆହେ ମୁନିବର
କାରଣ ଅଭାବେ ସୃଷ୍ଟି ଅସମ୍ଭବ ପର ।
ହୃଦୟଙ୍ଗମ ହୋଇଛି ଏ ତତ୍ତ୍ୱ ମୋହର
କିନ୍ତୁ ଏ ଦୃଶ୍ୟ, ଦର୍ଶନ, ଭ୍ରମ ଯେ କାହାର,
ବୁଝିବାକୁ ଅକ୍ଷମ ମୁଁ ତପସ୍ୱୀ ପ୍ରବର
ବୁଝାଇ ଦେଲେ କୃତଜ୍ଞ ହେବି ତୁମଠାର ।
କହନ୍ତି ବଶିଷ୍ଠ ମୁନି ଜଗତ୍ ଭ୍ରମ ନାହିଁ
ବୁଝାଇ ଏ କଥା ଏବେ ଜାଣୁଅଛି ମୁହିଁ ।
କିନ୍ତୁ ଦୃଢ଼ ଅଭ୍ୟାସ ଅଭାବୁ ରଘୁପତି
ପରମ ପଦରେ ତୁମ ନ ହୁଅଇ ସ୍ଥିତି ।

ଶ୍ରୀରାମ କହନ୍ତି ଶୁଣ ଆହେ ତପୋବନ୍ତେ
ଅଭ୍ୟାସ କାହାକୁ କହି ବୋଲିବାକ ମତେ ।
କହନ୍ତି ବଶିଷ୍ଠ ଜୀବନ୍ମୁକ୍ତ ଯୋଗୀଗଣ
ସର୍ବ ବସ୍ତୁକୁ ଚିନ୍ମୟ କରିଥାନ୍ତି ଜ୍ଞାନ ।
ତଦନୁସାରେ କରନ୍ତି କର୍ମ ସମ୍ପାଦନ
ତୁମେ ସେହି ଜ୍ଞାନେ କର୍ମେ ରତ ହୁଅ ରାମ ।
ତେବେ ତୁମର ଅଭ୍ୟାସ ଦୃଢ଼ ହୋଇଯିବ
ପରମ ପଦରେ ତହୁଁ ସ୍ଥିତି ମିଳିଯିବ ।
ଶ୍ରୀରାମ କହନ୍ତି କହ ଆହେ ତପୋଧନ
ତତ୍ତ୍ୱବୋଧ, ବୋଧ ବୋଲାଯାଏ କି କାରଣ ?
ବୋଧ ବୋଲିବାହିଁ କର୍ମ ଅପେକ୍ଷା କରଇ
ଅକର୍ମକ ବୋଧ ଶବ୍ଦ ପ୍ରସିଦ୍ଧ ନୁହଇ ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ଅପ୍ରବୁଦ୍ଧ ହୋଇ ରହିଅଛି ଯେଉଁ ବ୍ରହ୍ମ ।
ଅଜ୍ଞାନନାଶୀ ଫଳକୁ ଆଶ୍ରୟ କରିଣ
ବୋଧ କର୍ମ ତାକୁ ପ୍ରାପ୍ତ ହୋଇଥାଏ ଜାଣ ।
ବୋଧ ଶବ୍ଦ ସକର୍ମକ ହେବାରେ ହେ ରାମ
କଉଣସି ବାଧା ନାହିଁ ବୋଲିକରି ଜାଣ ।
ବଦ୍ଧ ଆତ୍ମା ପକ୍ଷେ ଏହା ଅଟଇ ପ୍ରଯୁଜ୍ୟ
ଆମ ପରି ଜୀବନ୍ମୁକ୍ତ ପକ୍ଷେ କିନ୍ତୁ ଆର୍ଯ୍ୟ,
ବୋଧ ଶବ୍ଦ ସକର୍ମକ ନୁହେଁ ବୋଲି ଜାଣ
ଅଜ୍ଞାନ ଯେଣୁ ଆମକୁ ଛୁଇଁ ନାହିଁ ପୁଣ ।
କହନ୍ତି ଶ୍ରୀରାମ ଏବେ ଶୁଣ ତପଶ୍ଚରୀ
'ଆମପରି' ଶବଦକୁ ବ୍ୟବହାର କରି ।
ଯେ ଅହଂଭାବ ପ୍ରକାଶ କରିଲେ ଆପଣ
ନିର୍ମଳ ଚିତ୍‌ସ୍ୱରୂପ ଅଟ ଯେ ଭବାନ୍ ।
ତାଙ୍କ ତହିଁ ଏହା ପୁଣି କାହୁଁ ସମ୍ଭବିଲା
କହିଦିଅ ଦେବ ମୋତେ ଆଶ୍ଚର୍ଯ୍ୟ ଲାଗିଲା ।
କହନ୍ତି ବଶିଷ୍ଠ ଶୁଣ ଆହେ ମହାତ୍ମନେ
ବୋଧସ୍ୱରୂପ ଆମର ବୋଧକୁ ହିଁ ଆମେ ।
ଅହଂଭାବ ବୋଲିକରି କହିଥାଉ ଜାଣ
ଅଜ୍ଞପରି ନାହିଁ ଆମ ଅହଂ ଅଭିମାନ ।
ପୁଣି କହନ୍ତି ଶ୍ରୀରାମ ଏବେ ଦେବ ଶୁଣ
ଆଉ ଏକ ସଂଶୟମୋ, କରିବା ମୋଚନ ।
ଜଳ, ତରଙ୍ଗ ଏକହିଁ ବସ୍ତୁ ଯେଉଁପରି
ଜୀବନମୁକ୍ତ ବ୍ୟକ୍ତିଙ୍କ ପକ୍ଷେ ସେହିପରି,

ବୋଧ, ବୋଧ୍ୟ, ଅହଂଭାବ ଆଦି ଏ ସମସ୍ତ
ଅଟନ୍ତି କି ଏକବସ୍ତୁ, କହ ତପୋବନ୍ତ ?
କହନ୍ତି ବଶିଷ୍ଠ ରାମ ତାହାହିଁ ଯଥାର୍ଥ
ଏହି ଜ୍ଞାନେ ଦୃଢ଼ଭାବେ ହେଲେ ଅବସ୍ଥିତ,
ପରମପଦକୁ ପ୍ରାପ୍ତ ହେବ ରଘୁନାଥ
ଅନୁସରି ଚଲୁଥାଅ ଏ ଅଦ୍ୱୈତ ତତ୍ତ୍ୱ ।
ଶ୍ରୀରାମ କହନ୍ତି ତେବେ ବିଶୁଦ୍ଧ ବୋଧରେ
ତୁମେ ଆମେ ଭେଦ କିଏ କଳପନା କରେ ?
କିଏ ଅବା ଏ ଜଗତ ଭ୍ରାନ୍ତି ଭୋଗକରି
ଉଲ୍ଲସିତ ହେଉଥାଏ ଆହେ ତପଋରୀ ।
ସେହି ରୂପ କଳ୍ପନାରେ ଆହେ ଗୁରୁଦେବ
ଜଗତଭ୍ରମ ବନ୍ଧନ ମୁକତି ଗ୍ରାସିବ ।
କହନ୍ତି ବଶିଷ୍ଠ ରାମ ଜ୍ଞେୟ ବସ୍ତୁଠାରେ
ବନ୍ଧନ ଘଟଇ, ସତ୍ୟଦୃଷ୍ଟି ସଂସ୍ଥାପିଲେ ।
ତତ୍ତ୍ୱଜ୍ଞାନଦ୍ୱାରା ଜାଣ ସେହି ଦୃଶ୍ୟ ବୁଦ୍ଧି
ବିଲୁପ୍ତ ହୁଅଇ ବୋଲି ଆହେ ରଘୁନିଧି,
ତତ୍ତ୍ୱଜ୍ଞାନୀଙ୍କ ପକ୍ଷରେ ସେହି ଦୃଶ୍ୟ ରାମ
ସତ୍ୟ ବୋଲି ପ୍ରତିଭାତ ନୁହେଁ କଦାଚନ ।
ସୁତରାଂ ପ୍ରାରବ୍ଧ କ୍ଷୟ ନୋହିବା ପର୍ଯ୍ୟନ୍ତ
ଏକମାତ୍ର ବୋଧକୁ ହିଁ ମଣନ୍ତି ପଦାର୍ଥ ।
ବନ୍ଧନ ଆଶଙ୍କା ତେଣୁ ନ ଥାଇ ତାଙ୍କର
ପ୍ରାରବ୍ଧ କ୍ଷୟରେ ମୁକ୍ତି ପଥ ପରିଷ୍କାର ।
ଶ୍ରୀରାମ କହନ୍ତି ଶୁଣ ଆହେ ତପୀଈଶ
ଜ୍ଞାନବଳେ ବାହ୍ୟବସ୍ତୁ ହୁଅଇ ପ୍ରକାଶ ।
ବାହ୍ୟ ପଦାର୍ଥକୁ ତେଣୁ ତତ୍ତ୍ୱଜ୍ଞାନୀଗଣ
ସତ୍ୟ ବୋଲି ନ ମଣିବେ କେବଣ କାରଣ ?
ବଶିଷ୍ଠ କହନ୍ତି ବିନା କାରଣରେ ରାମ
ଯେଉଁ ବାହ୍ୟ ବସ୍ତୁମାନ ହୁଅଇ ଉତ୍ପନ୍ନ,
ତାଙ୍କ ତହିଁ ସତ୍ୟବୁଦ୍ଧି କଲେ ଆରୋପଣ
ସେହି ସତ୍ୟବୁଦ୍ଧି ଭ୍ରାନ୍ତି ବୋଲି କରି ଜାଣ ।
ସେ ଅଜ୍ଞାନୁ ଯେଉଁ ଭ୍ରାନ୍ତି ହୁଅଇ ଉଦ୍ଭବ
ତତ୍ତ୍ୱଜ୍ଞର ସେ ଅଜ୍ଞାନ ଯେହେତୁ ଅଭାବ,
ବାହ୍ୟବସ୍ତୁ ତା ପାଇଁକି ଜାଣ ହେ ଶ୍ରୀରାମ
ମିଥ୍ୟା ବୋଲି ପ୍ରମାଣିତ ହୋଇଥାଏ ଜାଣ ।
ସ୍ୱପ୍ନସମ ଏ ଜଗତ ସତ ବା ଅସତ
ଯାହା ହେଉନା କାହିଁକି ଆହେ ତପୋବନ୍ତ ।
ତାହାର ଦୁଃଖଦାୟିନୀ ଶକ୍ତି କେଉଁପରି
ବିଲୁପ୍ତ ହୋଇବ କହ ଆହେ ତପଋରୀ ?
କହନ୍ତି ବଶିଷ୍ଠ ରାମ ସ୍ୱପ୍ନ, ଜାଗରଣ
ଉଭୟ କାଳେ କଠିନ ବସ୍ତୁ ଦରଶନ ।
ସେହି ଦରଶନ ଭ୍ରମ ଜାଣିବ ରାଘବ
ତତ୍ତ୍ୱଜ୍ଞାନ ବଳେ ସେହି ଭ୍ରମ ଘୁଞ୍ଚିଯିବ ।
ଭ୍ରମ ଘୁଞ୍ଚିଗଲେ ହେବ ଦୁଃଖ ଉପଶମ
ଭ୍ରମ ହିଁ ସର୍ବଦା କରିଥାଏ ହଇରାଣ ।
ବାହ୍ୟ ବସ୍ତୁର ସେ ପିଣ୍ଡିଭୂତ ଭାବ ଦେବ
କେଉଁ ରୂପେ ନଷ୍ଟହୁଏ ପୁଚ୍ଛନ୍ତି ରାଘବ ।
କହନ୍ତି ବଶିଷ୍ଠ ମୁନି ବିଋର ବଳରେ
ପ୍ରବୋଧ ଲବ୍ଧ ହୁଅନ୍ତେ ଆହେ ରଘୁବୀରେ,
ବାହ୍ୟବସ୍ତୁ ମାନଙ୍କର ପିଣ୍ଡିଭୂତ ଭାବ
ଆଉ ରହି ନ ପାରଇ ହେ ରଘୁପୁଙ୍ଗବ ।
କହନ୍ତି ଶ୍ରୀରାମ ଶୁଣ ଆହେ ବ୍ରହ୍ମସୁତ
ବିଋରରେ ଯା'ର ଜଗଦର୍ଶନ ନିବୃତ୍ତ ।
ସେହି ଯୋଗୀ ଜଗତକୁ କି ରୂପେ ଦେଖନ୍ତି
ଫେଡ଼ି କହିବା ହୁଅନ୍ତୁ ଆହେ ବ୍ରହ୍ମଯତି ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ଆକାଶେ ଯେସନ ଦିଶେ ଗନ୍ଧର୍ବ ନଗର ।
ଜଗତକୁ ମିଥ୍ୟା ବୋଲି ସେମାନେ ଦେଖନ୍ତି
ଜଗତର ଅଳୀକତା ସେମାନେ ବୁଝନ୍ତି ।
ଶ୍ରୀରାମ କହନ୍ତି ସେହି ଯୋଗୀମାନଙ୍କର
କି ଅବସ୍ଥା ଘଟେ କହ ଆହେ ତପୀବର ।
ବଶିଷ୍ଠ କହନ୍ତି କ୍ରମେ କ୍ରମେ ସେହିମାନେ
ନିର୍ବାଣ ଲଭନ୍ତି ଜାଣ ବାସନା ବିହୁନେ ।
ବହୁ ଜନ୍ମର ସୁଦୃଢ଼ ବାସନା ହେ ଦେବ
କିପରି ବିଲୀନ ହୁଏ ପୁଚ୍ଛନ୍ତି ରାଘବ ।
କହନ୍ତି ବଶିଷ୍ଠ ତେବେ ଶୁଣ ରଘୁନାଥ
ତତ୍ତ୍ୱଜ୍ଞାନରୁ ବିଲୀନ ହୁଅନ୍ତେ ଜଗତ,
ଯେତେବେଳେ ପ୍ରାରବ୍ଧର ହୋଇଯାଏ ଅନ୍ତ
ସଙ୍ଗେ ସଙ୍ଗେ ହୋଇଯାଏ ବାସନା ବିଲୁପ୍ତ ।
ଶ୍ରୀରାମ କହନ୍ତି ମୁନେ ! ଏ ଦୃଶ୍ୟ ଜଗତ
ଯେତେବେଳେ ହୋଇଯାଏ କାଠିନ୍ୟରୁ ମୁକ୍ତ,
ପୁଣି ଯେତେବେଳେ ହୁଏ ମିଥ୍ୟା ପ୍ରତିଭାତ
ଆଉ କି ଘଟଇ କହ କରିଣ ନିଶ୍ଚିତ ।

କହନ୍ତି ବଶିଷ୍ଠ ଜାଣ ଜଗତ ସେ କାଳେ
ଚିତ୍ ରୂପେ ପରିଣତ ହୁଏ ଅବହେଳେ ।
ଏ ସଂସାର ପ୍ରତି ସେତେବେଳେ ଯୋଗୀଜନ
ଆସ୍ଥାହୀନ ହୋଇଥାନ୍ତି ହେ ରଘୁନନ୍ଦନ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଜଗତ ପ୍ରତି ଆସ୍ଥା ଯଦି ଦୁଃଖର କାରଣ,
ବାଳକର ଦୁଃଖ ଅନୁଭବ ବିକାରଣ
ଜଗତପ୍ରତି ତ ଥାଏ ସେହୁ ଆସ୍ଥାହୀନ ।
କହନ୍ତି ବଶିଷ୍ଠ ଶୁଣ ହେ ରଘୁତିଳକ
ବିଚାରବାନ୍ ନୁହଁନ୍ତି ଯେହେତୁ ବାଳକ,
ତେଣୁ କରି ସେହୁ ଦୁଃଖ ଭୋଗ କରିଥାଏ
ସଙ୍କଳ୍ପମୟ ଚିତ୍ତ ହିଁ ସଦା ଦୁଃଖ ଦିଏ ।
ଚିତ୍ତ କାହାକୁ ବୋଲନ୍ତି ପୁଚ୍ଛନ୍ତି ଶ୍ରୀରାମ
ପୁଣି ତା କିପରି ହୁଏ ବିଚାର ସମ୍ପର୍ଣ୍ଣ ।
କହନ୍ତି ବଶିଷ୍ଠ ତାହା ଶୁଣ ରଘୁନାଥ
ଚୈତନ୍ୟର ଦୃଶ୍ୟୋନ୍ମୁଖୀ ଭାବ ନାମ ଚିତ୍ତ ।
ମୋ ମୁଖରୁ ଯାହା ଶୁଣୁଅଛ ରଘୁବୀର
ବିଚାର ଅଟଇ ଅନୁଶୀଳନ ତାହାର ।
ଏହି ବିଚାର ବଳରେ ବାସନା ସକଳ
କ୍ଷୟ ପ୍ରାପ୍ତ ହୋଇଯାଏ ଜାଣ ରଘୁବାଳ ।
ପୁଚ୍ଛନ୍ତି ଶ୍ରୀରାମ କହ ଆହେ ତପୋବନ୍ତ
ଚିତ୍ତ କିପରି ଅଚିତ୍ତେ ହେବ ପରିଣତ ?
କହନ୍ତି ବଶିଷ୍ଠ ଭାବି ଦେଖ ରଘୁସାଇଁ
ଦୃଶ୍ୟ ଯେବେ ନାହିଁ ତେବେ ଚିତ୍ତ ମଧ ନାହିଁ ।
ଶ୍ରୀରାମ କହନ୍ତି ଯାହା କରୁ ଅନୁଭବ
ତା'ର ଅପଳାପ ଅବା କିପରି କରିବ ?
ମୁନି କହନ୍ତି କଥିତ ଅନୁଭବ ତୁମ
ଅଜ୍ଞର ଅନୁଭବ ତା ବୋଲି ଏବେ ଜାଣ ।
କେତେବେଳେ ହେଲେ ତାହା ନୁହଁଇଟି ସତ୍ୟ
ତତ୍ତ୍ୱଜ୍ଞର ଅନୁଭୂତ ବ୍ରହ୍ମ ଏକା ସତ୍ୟ ।
ଶ୍ରୀରାମ କହନ୍ତି କହ ଆହେ ମୁନିବରେ
ଅଜ୍ଞ, ତତ୍ତ୍ୱଜ୍ଞ ଏହି ଯେ ଉଭୟ ଦୃଷ୍ଟିରେ ।
କେଉଁପରି ପ୍ରତିଭାତ ହୁଏ ଏ ଜଗତ
ବୁଝିବାକୁ ଅସମର୍ଥ, ମୁହିଁ ଏହି ତତ୍ତ୍ୱ ।
ବଶିଷ୍ଠ କହନ୍ତି ରାମ ତାହା ଏବେ ଶୁଣ
ଦେଶ କାଳ ବସ୍ତୁ ଦ୍ୱାରା ଜଗତ୍ ପରିଚ୍ଛନ୍ନ ।
ମାତ୍ର ତତ୍ତ୍ୱଜ୍ଞ ସମକ୍ଷେ ଏହି ଯେ ଜଗତ
ଏକବାର ଅନୁତ୍ପନ୍ନ ଭାବେ ପ୍ରତିଭାତ ।
ଶ୍ରୀରାମ କହନ୍ତି ଯାହା ନୁହଁଇ ଉତ୍ପନ୍ନ
ଅନୁଭବ ଅବା ତାର ହୋଇବ କେସନ ?
ଶୁଣ ଆହେ ରାମଚନ୍ଦ୍ର କହେ ବ୍ରହ୍ମାସୁତ
ଅନୁତପନ୍ନ ହୋଇଲେ ହେଁ ଜାଣ ଏ ଜଗତ ।
ଉତ୍ପନ୍ନ ହୋଇଲା ପରି ଜାଣ ପ୍ରତିଭାତ
ତେଣୁ ତାହା ହୋଇଥାଏ ଜନ ଅନୁଭୂତ ।
ଶ୍ରୀରାମ କହନ୍ତି ଆହେ ଗୁରୁଦେବ ଶୁଣ
ଜଗଦ୍ଦର୍ଶନ ବ୍ୟାଧିର ଚିକିତ୍ସା କେସନ,
କରିବା ଉଚିତ ତାହା ଦିଅନ୍ତୁ ବତାଇ
ଚିରକାଳ କୃତ କୃତ୍ୟ ହେବି ତୁମ ତହିଁ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁରାଣ
ଏହି ସଂସାରର ଅଟେ କିସ ଯେ କାରଣ ।
ତାହାହିଁ ବର୍ତ୍ତମାନର ବିଚାର ବିଷୟ
ଧୀର ସ୍ଥିର ଚିତ୍ତେ ତାହା ଭାବ ରଘୁରାୟ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୋଧନ
ଚିତ୍ତ ହିଁ ଜଗଦାକାରେ ହୁଏ ପ୍ରତିପନ୍ନ ।
ବିଚାର ଦୃଷ୍ଟିରେ ପୁଣି ବୁଝୁଅଛି ମୁହିଁ
ଚିତ୍ତ ହିଁ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ନୋହି ।
ବଶିଷ୍ଠ କହନ୍ତି ମହାମତେ ଏବେ ଶୁଣ
ଯଥାର୍ଥ ଭାବେ ବୁଝିଛ ଏ ତତ୍ତ୍ୱ ଆପଣ ।
ଚିତ୍ତ ହିଁ ଯେ ବ୍ରହ୍ମ, ଜାଣ ଏହି ବିଷୟରେ
କୌଣସି ସନ୍ଦେହ ନାହିଁ ଏହି ସିଦ୍ଧାନ୍ତରେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଶ୍ରୀରାମ ବିଶ୍ରାନ୍ତି ବର୍ଣ୍ଣନେ ନାମ ୯୭ତମ ସର୍ଗଃ**



## ୯୮ତମ ସର୍ଗଃ

## ମହାବାଦ ବୋଧନ (୧)

କହନ୍ତି ଶ୍ରୀରାମ ଶୁଣ ଆହେ ତପୋବନ୍ତ
ଯେଣୁ କରି ବ୍ରହ୍ମମୟ ଅଟେ ଏ ଜଗତ ।
ତେଣୁ ତା'ର ଉଦୟ ବା ଅସ୍ତ ବୋଲି କରି
କିଛି ରହି ନ ପାରଇ ଆହେ ତପଚାରୀ ।

ଯୁକ୍ତି ଦୃଷ୍ଟିରୁ ଯଦିଓ ଏହି ଯେ ଜଗତ
ଭ୍ରମ ବୋଲି କରି ମନେ ହୁଏ ପ୍ରତିଭାତ,
ତତ୍ତ୍ୱ ଦୃଷ୍ଟିରେ ଏମନ୍ତ ମନେହୁଏ ଜାଣ
"ଏକମାତ୍ର ବ୍ରହ୍ମ ରହିଛନ୍ତି ବିଦ୍ୟମାନ" ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାଥ
ନିଜ ମଧ୍ୟେ ନିଜେ ବ୍ରହ୍ମ ହୁଏ ବିକଶିତ ।
ସେହି ବିକଶିତ ଅଂଶ ପୁଣି ସେହି ବ୍ରହ୍ମ
ଅବର୍ଣ୍ଣନୀୟ ଅବିଦ୍ୟା ପ୍ରଭାବରୁ ଜାଣ,
ଜୀବ ଭାବକୁ ଗ୍ରହଣ କରିଣ ସେ ପୁଣ
ନିଜକୁ ଜଗଦାକାରେ କରେ ଦରଶନ ।
ତେଣୁ କରି ଦ୍ରଷ୍ଟା ଦୃଶ୍ୟ ବୋଲି କିଛି ନାହିଁ
କେବଳ ସେ ନିରାମୟ ବ୍ରହ୍ମ ବିରାଜଇ ।
ସେହି ବ୍ରହ୍ମ ଚଇତନ୍ୟ ନିଜ ମଧ୍ୟେ ନିଜେ
ପ୍ରକାଶ ପାଇଣ ଥାନ୍ତି ଜାଣ ରଘୁରାଜେ ।
ତେଣୁ କରି ସୃଷ୍ଟି ପୂର୍ବେ ଏକମାତ୍ର ଚିତ
ବିଦ୍ୟମାନ ଥାଏ ଜାଣ ଆହେ ରଘୁନାଥ ।
ପରେ ସେହି ଚିତ୍ ଜାଣ ସୃଷ୍ଟି ଆକାରରେ
ନିଜ ମଧ୍ୟେ ନିଜେ ଦ୍ରଷ୍ଟା, ଦୃଶ୍ୟ ରୂପ ଧରେ ।
ଚିତ୍‌ର ସ୍ୱଭାବ ଜାଣ ଅଟଇ ଏମନ୍ତ
ନିଜ ମଧ୍ୟେ ନିଜକୁ ସେ କରେ ପ୍ରକାଶିତ ।
ତେଣୁ ଏ ଜଗତ ଯାହା ହୁଏ ଅନୁଭୂତ
ଚିତ୍ ବିନୁ ଅନ୍ୟ କିଛି ନୁହେଁ ରଘୁନାଥ ।
ଗଗନ ସଦୃଶ ଚିତ୍ ନିଜେ ନିଜ ମଧ୍ୟେ
ପ୍ରକାଶ ହେଉଅଛଇ ଜାଣ ରଘୁନିଧେ ।
ସୃଷ୍ଟି ରୂପୀ ଚିତ ପ୍ରକାଶର ନାମ ରାମ
ସୃଷ୍ଟି ଅନ୍ତେ ଯା'ର ଆଦି ଅନ୍ତ ନାହିଁ ଜାଣ,
ଅନାଦି କାଳରୁ ତାହା ଆସୁଅଛି ଚଳି
ଅଜ୍ଞଙ୍କ ମତେ ଆଶ୍ଚର୍ଯ୍ୟ ଏହା ଯେଣୁ କରି ।
ଆମ୍ଭମାନଙ୍କ ଦୃଷ୍ଟିରେ ତାହା ସ୍ୱାଭାବିକ
ପଦାର୍ଥ ରୂପକ ସୃଷ୍ଟି ନାହିଁ ମନେରଖ ।
ଏକମାତ୍ର ଚିତ୍ ଏହି ସକଳ ଆକାରେ
ପ୍ରକାଶ ପାଉ ଅଛଇ ଆହେ ରଘୁବୀରେ ।
ଏହି ଜଗତକୁ ଚିତ ନିଜର ଶରୀର
ମଣେ ବୋଲି ଜାଣିରଖ ଆହେ ରଘୁବୀର ।
ତେଣୁ କରି ବାସ୍ତବରେ ଏ ନୁହେଁ ଜଗତ
ଆକାଶ ତୁଲ୍ୟ ମଣିବ ଯାକୁ ରଘୁନାଥ ।

ମୋର ଉପଦେଶ ବଳେ ତୁମେ ହେ ଶ୍ରୀରାମ
ପରମ ତତ୍ତ୍ୱ ବିଦିତ ହୋଇଣ ଆପଣ ।
ସେ ତତ୍ତ୍ୱରେ ତୁମେ ହୋଇକରି ସମାଧିସ୍ଥ
ବାହ୍ୟ ବିଷୟକୁ ପୁଣି ନୁହଁ ଆକର୍ଷିତ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ମହାବାଦ ବୋଧନ ବର୍ଣ୍ଣନେ ନାମ ୯୮ତମ ସର୍ଗଃ**



## ୯୯ତମ ସର୍ଗଃ

## ମହାବାଦ ବୋଧନ (୨)

କହନ୍ତି ଶ୍ରୀରାମ ଏତେ କାଳ ଯାଏ ମୁହିଁ
ଆତ୍ମତତ୍ତ୍ୱ ବିନା ଭବାକାଶେ ଭ୍ରମିଛଇଁ ।
ତବ ଅନୁଗ୍ରହେ ଆତ୍ମତତ୍ତ୍ୱ ଜ୍ଞାତ ହୋଇ
ସଂସାରଭ୍ରମ ଏବେ ମୋ ଦୂର ହୋଇଛଇ ।
ଆଉ କେବେ ଏହି ଭ୍ରମ ନୋହିବ ମୋହର
ସବୁ ଶାନ୍ତ ବ୍ରହ୍ମମୟ ମୋତେ ତପୀବର ।
ନ ଜାଣି ପାରିବା ହେତୁ ଏ ପରମାକାଶ
ସଂସାର ରୂପରେ ମୋତେ ହେଉଥିଲା ଦୃଶ୍ୟ ।
ଏ ପରମ ଆକାଶକୁ ଏତେ କାଳ ଧରି
ପୃଥ୍ୱୀ ଆଦି ଦ୍ୱୈତ ଭାବେ ଦରଶନ କଲି ।
ଇହଲୋକ, ପରଲୋକ, ସ୍ୱପନ, ସର୍ବତ୍ର
ଚିତ୍ ହିଁ ଦୃଶ୍ୟ ଆକାରେ ହୁଏ ପ୍ରକାଶିତ ।
ବାସ୍ତବ ଦୃଶ୍ୟର ଏଥି ସମ୍ଭାବନା କାହିଁ
ସକଳ ଦୃଶ୍ୟ ହିଁ ଜ୍ଞାନ ସ୍ୱରୂପ ଅଟଇ ।
ତେଣୁ ସ୍ୱର୍ଗ ବା ନରକ ଯେଉଁ ରୂପରେ
ଜ୍ଞାନର ଉଦୟ ହେବ ଆହେ ତପୀବରେ ।
ସଙ୍ଗେ ସଙ୍ଗେ ସେହି ରୂପ ଦେବ ଦରଶନ
ଯଥା ଜ୍ଞାନ ତଥା ଦୃଶ୍ୟ ହେ ତପୀମଣ୍ଡନ ।
ତେଣୁ ଦୃଶ୍ୟ ବା ଜଗତ ବୋଲି କିଛି ନାହିଁ
ଜାଗରଣେ ବା ସପନେ ଯାହା ଦେଖାଯାଇ,
ଏହା ମଧ୍ୟ ସତ୍ୟ ନୁହେଁ ଜାଣ ତପୀବର
କାହୁଁ ସେ ଭ୍ରମ ଆସଇ କହ ମୋ ଆଗର ।
ବିକାର ବିହୀନ ଏହି ପରମ ପଦରେ
ଏକବାରେ ଭ୍ରାନ୍ତି ନାହିଁ ଯେଣୁ ମୁନିବରେ ।

ତେଣୁ ଭ୍ରାନ୍ତିକୁ କେବଳ ହେ ତପୀମଣ୍ଡନ
ମିଥ୍ୟା ବୋଲିବା ହିଁ ସଦା ହେବ ସମୀଚୀନ
ବିଚାରବାନ ନୋହିବା ହେତୁରୁ ହିଁ ଜାଣ
'ଭ୍ରମ' ମହାତମାଙ୍କର ହୁଏ ପ୍ରକାଶନ ।
ବିଚାର ବଳରେ ତାହା ହୁଅଇ ବିନଷ୍ଟ
ଭ୍ରମ ବିନାଶରେ ଉଦେ ହୋଇଯାଏ ଇଷ୍ଟ ।
ଖାଲି ଏ ଜଗତ ଏବେ ନ କରେ ଦର୍ଶନ
ଜଗଦାକାରେ ଅନନ୍ତ ଆତ୍ମା ବିଦ୍ୟମାନ ।
ଆନନ୍ଦମୟ ବ୍ରହ୍ମରେ ହେ ତପୀମଣ୍ଡନ
ବ୍ରହ୍ମ ହିଁ ଦେଦୀପ୍ୟମାନ ମୋର ସମ୍ମୁଖେଣ ।
ବିନଷ୍ଟ ହୋଇ ଯାଆନ୍ତେ ମୋର ଅହଂଭାବ
ବ୍ରହ୍ମସାରୂପ୍ୟ ଲଭିଛି ଏବେ ଗୁରୁଦେବ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ମହାବାଦ ବୋଧନ ବର୍ଣ୍ଣନେ ନାମ ୯୯ତମ ସର୍ଗଃ**



## ୧୦୦ତମ ସର୍ଗଃ
## ବିଶ୍ରାନ୍ତି ବର୍ଣ୍ଣନ

ପୁଣି କହନ୍ତି ଶ୍ରୀରାମ ଯେ ପରମପଦ
ଦେବ, ଋଷି ଅଗୋଚର ଆହେ ପୂଜ୍ୟପାଦ ।
ସେହି ଏବେ ମୋର ସମୀପରେ ପ୍ରତିଭାତ
କିଛି ନାହିଁ ମୋ ଦୃଷ୍ଟିରେ ଯାହା କି ଜଗତ ।
ଦ୍ୱୈତ, ଅଦ୍ୱୈତ ଇତ୍ୟାଦି ସକଳ ସନ୍ଦେହ
ଅସ୍ତମିତ ଏବେ ମୋର ବିଧାତା ତନୟ ।
ମୋର ସେହି ନିରାମୟ ରୂପ ଶାନ୍ତିମୟ
ସୁବ୍ୟକ୍ତ ହୋଇଛି ଏବେ ଏହା ନିଃସନ୍ଦେହ ।
ନାନା ଆକାରେ ଯେ ହୋଇଥାନ୍ତି ପ୍ରକାଶିତ
ସେହି ବ୍ରହ୍ମପରି ଜ୍ଞାତ ହୋଇଯିବା ମାତ୍ର,
ଜୀବର ସଂସାର ଦୁଃଖ ହୁଏ ଦୂରୀଭୂତ
ସକ୍ରୀୟ ସେ ହେଉ କିମ୍ବା ରହୁ ଜଡ଼ବତ,
ଜ୍ଞାନସ୍ୱରୂପେ ପାଲଟିଯାଏ ସେ ଅନ୍ତରେ
ସବୁଭେଦ ବୁଦ୍ଧି ତା'ର ନଷ୍ଟ ମୁନିବରେ ।
ଏକମାତ୍ର ବ୍ରହ୍ମ ଜାଣ ସୁଖରେ ସ୍ୱରୂପ
ପରିଜ୍ଞାତ ହୋଇ ତାଙ୍କୁ ତପୀକୂଳ ଦୀପ,
ବୁଝିପାରିଅଛି ଏବେ ତାଙ୍କର ବ୍ୟତୀତ
ଅନ୍ୟ କାହା ସତ୍ତା ନାହିଁ ଏ ସାରା ଜଗତ ।
କୁଦୃଷ୍ଟି ଏବେ ମୋହର ହେବାରୁ ବିନଷ୍ଟ
ପ୍ରବୃଦ୍ଧ ହୋଇପାରିଛି ତପୀକୁଳ ଇଷ୍ଟ ।
ଏ ତିନି ଜଗତ ଏବେ ମୋତେ ତପୋଧନ,
ବୈଷମ୍ୟହୀନ ଆକାଶ ରୂପେ ଦୃଶ୍ୟମାନ ।
ଆତ୍ମ ଜ୍ଞାନରୁ ବଞ୍ଚିତ ଥିଲି ଯେତେବେଳ
ଜୀବ ବୋଲି ମଣୁଥିଲି ମୋତେ ତେତେକାଳ
ଏବେ ଆତ୍ମା ପରିଜ୍ଞାତ ହେବାରୁ ମୋହର
ବ୍ରହ୍ମସ୍ୱରୂପତା ଉପଲବ୍ଧ ହେଲା ମୋର ।
ଶୂନ୍ୟ ନୀଳବର୍ଣ୍ଣ ଏହି ଆକାଶ ଯେସନ
ଏକାକାରେ ପ୍ରତିଭାତ ଆହେ ତପୋଧନ ।
ସେପରି ବିଦ୍ୟା, ଅବିଦ୍ୟା, ଜ୍ଞାନ ଓ ଅଜ୍ଞାନ
ଇତ୍ୟାଦି ସକଳ ରୂପେ ବ୍ରହ୍ମ ପ୍ରକାଶନ ।
ଏହା ଜାଣି ଏବେ ମୁହିଁ ନିର୍ବାଣ ଲଭିଣ
ସୁଖେ ଅବସ୍ଥାନ କରୁଅଛି ତପୀରାଣ ।
ସଦା ସର୍ବସ୍ୱରୂପ ମୁଁ ହୋଇଲେ ହେଁ ଦେବ
ପ୍ରଶାନ୍ତି ମୁଁ ମୋର ତହିଁ ନାହିଁ ଅନ୍ୟଭାବ ।
ପରମ ଆଶ୍ଚର୍ଯ୍ୟ ଶାନ୍ତି ଯେବଣ ନିର୍ବାଣ
ପାଇଛି ମୁଁ, ନାହିଁ କିଛି ପାଇବାକୁ ଅନ୍ୟ ।
ଉଦୟାସ୍ତହୀନ ସପ୍ରକାଶ ବୋଧେ ମୁହିଁ
ପ୍ରତିଷ୍ଠିତ ହୋଇଅଛି ଆହେ ତପୀସାଇଁ ।
ଯେ ସ୍ୱରୂପ ଲାଭ ହେଲେ ମୃତ୍ୟୁ ତିରୋଧାନ
ଦୁଃଖ ଆଦି-ଅନର୍ଥଙ୍କ ନାମ ଚିହ୍ନବର୍ଣ୍ଣ,
ବିଲୁପ୍ତ ହୋଇଣ ଯାଏ ଆହେ ତପୀବର
ସେହି ସ୍ୱରୂପ ହିଁ ପ୍ରାପ୍ତ ହୋଇଛି ମୋହର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ବିଶ୍ରାନ୍ତି ବର୍ଣ୍ଣନେ ନାମ ୧୦୦ତମ ସର୍ଗଃ**



## ୧୦୧ତମ ସର୍ଗଃ
## ଶ୍ରୀରାମ ବିଶ୍ରାନ୍ତି

କହନ୍ତି ଶ୍ରୀରାମ ଏବେ ଶୁଣ ତପୋଧନ
ସପ୍ରକାଶ ଚିଦ୍‌ଆତ୍ମା ଜୀବ ମନେ ଜାଣ ।

ବୃତ୍ତି ଆକାରରେ ହୋଇ କରି ବିବର୍ତ୍ତନ
ନିଜେ ହିଁ ନିଜକୁ କରୁଥାଏ ନିରୀକ୍ଷଣ ।
ଦ୍ରଷ୍ଟା, ଦୃଶ୍ୟ ଓ ଦର୍ଶନ ରୂପରେ ହିଁ ବ୍ରହ୍ମ
ତ୍ରିପୁଟୀ ଭାବକୁ ନିଜେ ଧାରଣ କରିଣ ।
ନିଜମାୟା ବଳେ ହେଉଥାଏ ବିବର୍ତ୍ତିତ
ଏହା ମୁଁ ବୁଝିପାରିଛି ଆହେ ତପୋବନ୍ତ ।
ଏହି କାରଣରୁ ମୁନେ, ବ୍ରହ୍ମାଣ୍ଡ ସକଳ
ପରମ ସୂକ୍ଷ୍ମ ବ୍ରହ୍ମଙ୍କ ସ୍ୱଭାବେ କେବଳ,
ସଦା ସରବଦା ରହିଛନ୍ତି ବିଦ୍ୟମାନ
ତାଙ୍କର ସ୍ୱତନ୍ତ୍ର ସତ୍ତା ନାହିଁ ଅନ୍ୟ ଜାଣ ।
ପ୍ରତି ସିନ୍ଧୁ ଜଳ ବିନ୍ଦୁ ଯଥା ରସମୟ
ପ୍ରତି ପରମାଣୁ ମଧ୍ୟେ ବିଧାତା ତନୟ,
ଅନ୍ୟାନ ସର୍ଜ୍ଜନାମାନ ଛନ୍ତି ବିଦ୍ୟମାନ
ବ୍ରହ୍ମ ମଧ୍ୟେ ସୃଷ୍ଟି ସଂଖ୍ୟା ତେଣୁ ଅକଳନ୍
ଶରୀର ଶରୀର ମଧ୍ୟେ ଯଥା ଭେଦ ନାହିଁ
ବ୍ରହ୍ମ, ସୃଷ୍ଟି ମଧ୍ୟେ ଖାଲି ବାକ୍ୟ ଭେଦ ଥାଇ ।
ଏହି ବାକ୍ୟ ଭେଦ ଭିନ୍ନ ବ୍ରହ୍ମ ସୃଷ୍ଟି ମଧ୍ୟେ
ଅନ୍ୟ କିଛି ଭେଦ ନାହିଁ ଆହେ ତପୋନିଧେ ।
ଜଗତ ପ୍ରକାଶ କରି ସୂର୍ଯ୍ୟ ପ୍ରଭା ଯଥା
କର୍ତ୍ତାଭାବ ତହିଁ ମଧ୍ୟେ ନ ରଖଇ ତଥା,
ସୃଷ୍ଟିକର୍ତ୍ତା ହୋଇ ମଧ ବ୍ରହ୍ମ ସେହିପରି
ଅକର୍ତ୍ତାଭାବେ ସର୍ବଦା ରହେ ତପଚାରୀ ।
ତତ୍ତ୍ୱଜ୍ଞାନ ଉଦୟରେ ଆତ୍ମା ଯେତେବେଳେ
ଦେହାଦି ଅଧାତ୍ମ ଭାବୁ ମୁକ୍ତି ଲାଭକରେ,
ଅତୀବ ନିର୍ମଳ ରୂପେ ରହେ ବିରାଜିତ
ତାହାର ନାମ ନିର୍ବାଣ ଆହେ ତପୋବନ୍ତ ।
ଅବିଦ୍ୟା ବୃତ୍ତ୍ୟାବସ୍ଥାରେ ନିଦ୍ରିତ ସଦୃଶ
ବିଦ୍ୟମାନ କରିଲେ ହେଁ ଆହେ ତପୀଈଶ,
ଯେତେବେଳେ ସେ ଅବିଦ୍ୟା ହୁଏ ଦୂରୀଭୂତ
ପ୍ରବୃଦ୍ଧ ହୋଇଣ ସେହୁ ହୁଏ ପ୍ରକାଶିତ ।
ଯେ ଆନନ୍ଦ ସ୍ୱରୂପତା ତେବେ ପରକାଶ
ତାହା ହିଁ ପରମ ପୁରୁଷାର୍ଥ ମୁନିଈଶ ।
ତତ୍ତ୍ୱଜ୍ଞାନ ଉଦୟରେ ଯେଉଁମାନେ ଜାଣ
ଇହକାଳ, ପରକାଳ କର୍ମଫଳ ମାନ,
ଭୋଗ କରିବାକୁ ହୋଇଥାନ୍ତି ବିତସ୍ପୃହ
ମୋକ୍ଷ ସ୍ୱତଃ ସିଦ୍ଧି ତାଙ୍କ ବ୍ରହ୍ମାଙ୍କ ତନୟ ।

ସ୍ୱଭାବରେଁ ଥାଇକରି ସମାଧିସ୍ଥ ଜୀବ
ଇଚ୍ଛା ଅନିଚ୍ଛା ନ ରଖେ କାହିଁରେ ହେ ଦେବ ।
ମନନ କ୍ରିୟା କଲେ ହେଁ ସେହୁ କ୍ରିୟା ଶୂନ୍ୟ
ସର୍ବ ପ୍ରକାଶକ ହୋଇ ପ୍ରଦୀପ ଯେସନ,
ନିର୍ଲିପ୍ତ ହୋଇଣ ଥାଏ ଆହେ ତପୋଧନ
ସେପରି ନିଷ୍କ୍ରିୟ ରହିଥାଏ ଯୋଗୀଜନ ।
ସର୍ବ ଅବସ୍ଥାରେ ସେହୁ ଏକଇ ଭାବରେ
ବିରାଜିତ ରହିଥାଏ ଆହେ ତପୀବରେ ।
ସୃଷ୍ଟି ଲୟ ସର୍ବକାଳେ ତା' ଚିତ୍ ରୂପତା
ଅବ୍ୟାହତ ରହିଥାଏ ଜାଣ ହେ ମହାତ୍ମା ।
ବିଶ୍ୱ ରୂପେ ରହେ ସେହୁ ବ୍ୟୁଥାନ କାଳରେ
ବ୍ରହ୍ମ ରୂପେ ବିରାଜିତ ସମାଧି ବେଳରେ ।
ସୃଷ୍ଟି ହେଉ ବା ବିଲୟ ହେଉ ମୁନିବରେ
ଚିତ୍ ସ୍ୱରୂପତା ତା ରହିଥାଏ ସଦାକାଳେ ।
ସତ୍ୟ ଓ ଜ୍ଞାନ ସ୍ୱରୂପେ ସ୍ଥିତି ଲାଭ କରି
ସମାଧି ବ୍ୟୁଥନ ଏକ ବୋଲି ମନେଧରି ।
ସଂସାର ବନ୍ଧନୁ ସେହୁ ମୁକ୍ତି ଲାଭ କରେ
ଏକଭାବ ବାହାଦୂରୀ ବୁଝ ତପୀବରେ ।
ଶୂନ୍ୟ ଛଡ଼ା କିଛି ନୁହେଁ ଆକାଶ ମଣ୍ଡଳ
ଜ୍ଞାନ ଛଡ଼ା କିଛି ନୁହେଁ ପଦାର୍ଥ ସକଳ ।
ଦୃଢ଼ ହୋଇଅଛି ଯାହାଙ୍କର ତତ୍ତ୍ୱଜ୍ଞାନ
ଅନନ୍ତ ବୋଧ ଉଦୟ ତାହାଙ୍କ ମଧ୍ୟେଣ ।
ସେହି ବୋଧ ସ୍ୱରୂପତା ପରିପୂର୍ଣ୍ଣ ହୋଇ
ଅନିର୍ବଚନୀୟ ତାହା ଆହେ ତପୀସାଇଁ ।
ସେହି ବୋଧ ସ୍ୱରୂପରେ ବିଶ୍ରାମ ଲଭିଲେ
ପରମ ସତ୍ତା ହିଁ ଅବଶିଷ୍ଟ ତପୀବରେ ।
ନିର୍ବାଣ ନିମିତ୍ତ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର
ସେ ସତ୍ତା ଆକାଂକ୍ଷା କରୁଥାନ୍ତି ନିରନ୍ତର ।
ବହ୍ନି ସଦୃଶ ଉତ୍ତପ୍ତ ଏ ସଂସାର ଭୂଇଁ
ଅତି ସୁଶୀତଳ ଅଟେ ସେ ନିର୍ବାଣ ଭୂଇଁ ।
ସୁଶୀତଳ ସେ ନିର୍ବାଣ ଜାଣ ମୋହ ପାଇଁ
ଉତ୍ତପ୍ତ ସଂସାର ଭୂଇଁ ପୁଣି ନ ଦେଖଇ ।
ଅଖୋଦିତ ଅବସ୍ଥାରେ ପାଷାଣେ ଯେସନ
ପୁତ୍ତଳିକା ରହିଥାଏ ଗୁପତ ଭାବେଣ ।
ଅପରିଚ୍ଛିନ୍ନ ରହିଣ ବ୍ରହ୍ମ ସେହିପରି
ଜଗଦାକାରେ ପ୍ରକାଶ ପାଏ ତପଚାରୀ ।

ଜୀବଗଣେ ଯେଉଁପରି ଆତ୍ମାକୁ ଭାବନ୍ତି
ଆତ୍ମା ସେହି ରୂପ ଧରି ପାଶେ ପ୍ରକାଶନ୍ତି ।
ଏହି ଯେ ଜଗତ ଦେଖାଯାଏ ସାମନାରେ
ପରମଶାନ୍ତ ସେ ଶିବ ଅନ୍ତର ମଧ୍ୟରେ ।
ଏସନ୍ନ ଭାବନା ଯେବେ ହୁଅଇ ଉଦିତ
କାହିଁ ବା ଭ୍ରାନ୍ତିର ସ୍ଥାନ କହ ତପୋବନ୍ତ ?
ଜ୍ଞାନ ଉଦେ ହେଲେ, ଦେହ ଭୋଗ୍ୟ ବିଷୟରେ
ଅଶାନ୍ତି ନ ରହେ ଜାଣ ବିଧାତା କୁମରେ ।
ସଂସାର ବିତୃଷ୍ଣା ଯାହା ଘେନି ଜନମଇ
ପୁତ୍ର କଳତ୍ରଙ୍କଠାରେ ଆସକ୍ତି ନ ରହି,
ତାହା ହିଁ ଯଥାର୍ଥ ବୋଧ ପଦବାଚ୍ୟ ଦେବ
ବିତୃଷ୍ଣା ବିନା ପାଣ୍ଡିତ୍ୟ ମୂର୍ଖତା ଜାଣିବ ।
ସଂସାର ବିତୃଷ୍ଣା ପୁଣି ଆତ୍ମବୋଧ ମୁନେ
ଆତ୍ୟନ୍ତିକ ହୋଇ ଉଠିଥାଏ ଯେଉଁ କ୍ଷଣେ ।
ମୁକ୍ତିନାମେ ପରିଚିତ ହୋଇଥାଏ ସେହୁ
ଶୋକାଧୀନ ହୋଇବାକୁ ନ ପଡ଼ଇ ଆଉ ।
ଗନ୍ତବ୍ୟ ସ୍ଥଳରେ ମୁହିଁ ଏବେ ଉପନୀତ
ଶିବରୂପୀ ବ୍ରହ୍ମପଦେ ମୁହିଁ ସମାଗତ ।
ଅହଂକାର ଶୂନ୍ୟ ଏବେ ହୋଇଅଛି ମୁହିଁ
ବିତୃଷ୍ଣା ହୋଇଣ ଆତ୍ମାରାମ ଲଭିଛଇଁ ।
ଆକାଶପରି ନିର୍ମଳ, ସଙ୍କଳପ ଶୂନ୍ୟ
ଏବେ ମୋ ସ୍ଥିତି ଏପରି ହୋଇଅଛି ଜାଣ ।
ସସ୍ର ଲୋକ ମଧ୍ୟେ ଜଣେ ଜଣେ ବୀର୍ଯ୍ୟବାନ
ସିଂହ ଲୌହ ପିଞ୍ଜରକୁ ଭାଙ୍ଗଇ ଯେସନ ।
ତେସନ ବାସନା ଜାଲ କରିବାକୁ ଛିନ୍ନ
ସକ୍ଷମ ହୋଇଣ ଥାନ୍ତି ଆହେ ତପୀରାଣ ।
କରିପାରେ ଯେହୁ ତାହା ସେ ଅତି ସତ୍ତ୍ୱରେ
ଉଦ୍ଭାସିତ ହୋଇ ଶୁଦ୍ଧ ଜ୍ଞାନ ଜ୍ୟୋତି ବଳେ,
ପରମଶାନ୍ତି ସେ ଲାଭ କରିପାରେ ଜାଣ
ଶାନ୍ତି ହିଁ ଜୀବନ ଲକ୍ଷ ହେ ଜ୍ଞାନୀ ମଣ୍ଡନ ।
ସର୍ବ ବସ୍ତୁକୁ ପରମ ତତ୍ତ୍ୱଜ୍ଞାନ କରି
ଆକାଶ ସମ ନିର୍ଲିପ୍ତ ରହିବା ଯେପରି ।
ବାସନା ଶୂନ୍ୟ ଅବସ୍ଥା ତାହାକୁ ହିଁ କହି
ସେ ବାସନା ଶୂନ୍ୟ ବ୍ୟକ୍ତି ନିର୍ବାଣ ଲଭଇ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ରାମ ବିଶ୍ରାନ୍ତି ବର୍ଣ୍ଣନେ**
**ନାମ ୧୦୧ତମ ସର୍ଗଃ ।**



# ୧୦୨ତମ ସର୍ଗଃ

## ବୋଧ ପ୍ରକାଶିକରଣ ଯୋଗ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ରହେ ରଘୁ ନନ୍ଦନ
ପ୍ରବୁଦ୍ଧ ହୋଇ ଦିଅ ଯେ ଉପଦେଶମାନ ।
ସେହି ଉପଦେଶମାନ କରନ୍ତେ ଶ୍ରବଣ
ବିଧୌତ ପାପ ହୋଇଣ ଯେ ଅଜ୍ଞାନୀ ଜନ ।
ଜ୍ଞାନ ଲାଭ କରିବାକୁ ହୋଇବେ ସକ୍ଷମ
ଆନନ୍ଦ ଲାଭ କରିବେ ସର୍ବଜ୍ଞାନୀ ଜନ ।
ନିତାନ୍ତ ଅସତ ଅଟେ ଏହି ଯେ ଜଗତ
ସଂକଳ୍ପ ବିନାଶେ ଜଗତର ଲୟ ପ୍ରାପ୍ତ ।
ତେତେବେଳେ ଯେଉଁ ଶାନ୍ତି ହୁଏ ଉପସ୍ଥିତ
ତାହାହିଁ ନିର୍ବାଣ ତାହା ଶ୍ରେଷ୍ଠ ପୁରୁଷାର୍ଥ ।
ପ୍ରବାହ ଓ ଅପ୍ରବାହ ଉଭୟ ଯେପରି
କେବଳ ବାୟୁ ଅଟନ୍ତି, ହେ କୋଦଣ୍ଡ ଧାରୀ ।
ତେସନ କଳ୍ପନାମୟ ଯେ ବନ୍ଧନଦଶା
ଆବର କଳ୍ପନା ଶୂନ୍ୟ ଯେ ମୁକ୍ତ ଅବସ୍ଥା,
ଉଭୟେ ବ୍ରହ୍ମର ରୂପ ଏହା ସୁନିଶ୍ଚିତ
ବିଜ୍ଞ ଜନଙ୍କ ଏ ମତ ହେ ଅଯୋଧ୍ୟାନାଥ ।
ପରମପଦ ପ୍ରାପତ ହୋଇ ରଘୁବୀରେ
ସମାଧି ଓ ଲୋକ ବ୍ୟବହାର, ଉଭୟରେ ।
ଏକଭାବେ ଅବସ୍ଥାନ କରିଅଛି ମୁହିଁ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହିପଦେ ଥାଇ,
ସୃଷ୍ଟି ପାଳନ ସଂହାର ବ୍ୟବହାର ମାନ
ସମ୍ପାଦନ କରୁଛନ୍ତି, କୋଦଣ୍ଡ ଧାରଣ ।
ତୁମେ ମଧ୍ୟ ମୋ ପରି ସେ ନିରାମୟ ପଦ
ଆଶ୍ରୟ କରିଣ ଆହେ ଅଯୋଧ୍ୟା ସମ୍ପଦ,
ଜୀବନ ମୁକତ ସମ କର ହେ ବିହାର
କଠିନ ନ ହେବ ଆଉ ଏ କାର୍ଯ୍ୟ ତୁମର ।
କହନ୍ତି ଶ୍ରୀରାମ ଶୁଣ ହେ ତପୀମଣ୍ଡନ
ଆପଣଙ୍କ କୃପାରୁ ମୁଁ ଦେଖଇ ଏସନ ।
ଏ ଜଗତ ବ୍ରହ୍ମ ମଧ୍ୟେ ଅନୁତ୍ପନ୍ନ ରୂପେ
ପ୍ରତିଭାତ ହେଉଅଛି ମୋହର ସମୀପେ ।
ଏବେ ମୁଁ ତାହାକୁ ସ୍ୱର୍ଣ୍ଣେ ଭୂଷଣ ସଦୃଶ
ଦର୍ଶନ କରୁ ଅଛଇ ତପୀକୂଳ ଈଶ ।

କହନ୍ତି ବଶିଷ୍ଠ ଶୁଣ ଅଯୋଧ୍ୟାମଣ୍ଡନ
ସନ୍ଦେହ ମୋଚନ ମୋର କରିବା କାରଣ,
ତୁମକୁ ମୁଁ ପଚାରୁଛି ଏହିପରି ପ୍ରଶ୍ନ
ଉତ୍ତର ଦାନେ ସନ୍ଦେହ କରିବା ମୋଚନ ।
ଏହାଦ୍ୱାରା ତୁମ ଜ୍ଞାନ ହେବ ଦୃଢ଼ୀଭୂତ
କିଛି ମନେ ନ ଘେନିବ ଆହେ ରଘୁନାଥ ।
ଜଗତ ତ ସର୍ବଜନ ସର୍ବକ୍ଷଣ ଭରି
ଅନୁଭବ କରୁଛନ୍ତି ହେ କୋଦଣ୍ଡଧାରୀ ।
ତେଣୁ ଏ ଜଗତ ନାହିଁ ଏହା କେଉଁପରି
ବୋଲାଯାଇ ପାରେ କହ ରଘୁକୁଳ ଶିରୀ ?
କହନ୍ତି ଶ୍ରୀରାମ ଶୁଣ ଆହେ ତପୋବନ୍ତ
ଯେଣୁ ପୂର୍ବେ କେଉଁ ଜଗତ୍ ନୋହିଛି ଉଦ୍ଭୂତ ।
ବନ୍ଧ୍ୟାପୁତ୍ର ସମ ମିଥ୍ୟା କଳ୍ପନା ବ୍ୟତୀତ
ଅନ୍ୟକିଛି ନୁହେଁ ତାହା ଆହେ ବ୍ରହ୍ମାସୁତ ।
ଜଗତ ଭ୍ରାନ୍ତିର ନାହିଁ କୌଣସି କାରଣ
କାରଣ ବ୍ୟତୀତ କାର୍ଯ୍ୟ ହେବ ବା କେସନ ?
ବ୍ରହ୍ମ କେଉଁ ନୁହେଁ ଜାଣ ଜଗତ କାରଣ
ଯେଣୁ କରି ବ୍ରହ୍ମ ଅଟେ ବିକାର ବିହୀନ ।
ଯେବେ କହ ନିର୍ବିକାର ବ୍ରହ୍ମ ହିଁ କେବଳ
ବିବର୍ତ୍ତିତ ହୋଇଥାଏ ଘେନି ମାୟାବଳ,
ତାହା ହେଲେ କୁହାଯିବ ମିଥ୍ୟା ଏ ଜଗତ
ବ୍ରହ୍ମ ହିଁ କେବଳ ସତ କହିବା ଉଚିତ ।
ତେଣୁ ପରମ ପଦର ପ୍ରଥମ ସ୍ଫୁରଣ
ଯାହା କି ହିରଣ୍ୟଗର୍ଭ ହେ ତପୀମଣ୍ଡନ ।
ବିବର୍ତ୍ତିତ ହୋଇ ସେହି ବ୍ରହ୍ମାଙ୍କ କୁମର
ଧାରଣ କରଇ ଆତିବାହିକ ଶରୀର ।
ତେଣୁ କରି ତାହାକୁ ହିଁ ଜଗତ ଭ୍ରାନ୍ତିର
କାରଣ ବୋଲି କହନ୍ତି ଆହେ ତପୀବର ।
ସଂକଳ୍ପମୟ ହେ ମୁନେ ! ସେ ହିରଣ୍ୟ ଗର୍ଭ
ଦେଶକାଳ କ୍ରିୟାମୟ ଏ ଜଗତ ସର୍ବ ।
ଆକାଶ ମଧ୍ୟେ ହିଁ ଜାଣ କରେ ଦରଶନ
ଏହି ମିଥ୍ୟା ଜଗତକୁ ହେ ତପୀମଣ୍ଡନ ।
ଅନବରତ କରୁଣ ଥାଏ ପ୍ରବର୍ତ୍ତନ,
ବ୍ରହ୍ମର ସ୍ଫୁରଣ ଫଳ ତାହା ଜାଣ ରାମ ।
ସେ ପୁଣି ସ୍ୱୀକକଳ୍ପନାମୟ ଜଗତରେ
ବ୍ୟଷ୍ଟି ଜୀବ ରୂପେ ଅନୁପ୍ରବେଶି ତହିଁରେ ।
ପୁଣ୍ୟ ଅବା-ପାପ ଫଳେ ଊର୍ଦ୍ଧ୍ୱ ଅଧଃ ଦେଶେ
ସର୍ବଦା ପରିଭ୍ରମଣ କରୁଣଥାଏ ସେ ।
ଏହି ଭାବେ ସେ ପୁରୁଷ ଭ୍ରାନ୍ତି କଳ୍ପନାରେ
ବିଜଡ଼ିତ ହୋଇପଡ଼େ ଆହେ ମୁନିବରେ ।
ହରିଣ୍ୟଗର୍ଭର ସେ ସଙ୍କଳ୍ପ ପୂର୍ବପରି
ଏବେ ମଧ୍ୟ ଚାଲୁଅଛି ଆହେ ତପଚାରୀ ।
ପକ୍ଷାନ୍ତରେ ଜଗତକୁ ଯଦି ମଣ ସତ
ତେବେ କହିବାକୁ ହେବ ତା ବହୁ ଅନନ୍ତ ।
ନୁହେଁ ତାହା ସତ କିମ୍ବା ନୁହେଁ ତା ଅସତ
ଯଥାର୍ଥ ଅଟଇ ଏହି ଯୁକ୍ତି ତପୋବନ୍ତ ।
ଚିନ୍ମୟ ଆତ୍ମାର ମାୟା ସଂକଳ୍ପ ସ୍ୱରୂପ
ଯେ ଆତିବାହିକ ଦେହ, ହେ ତପୀ ଅଧୀପ ।
ତନ୍ମଧ୍ୟଗତ ସଂବିତ ଆକାଶ କେବଳ
ଜଗତ ରୂପେ ପ୍ରକାଶ ପାଏ ତପୀବର ।
ତେଣୁକରି ଯାହାକିଛି ଦେଖାଯାଏ ଦେବ
ସମସ୍ତ ହିଁ ସେହି ବ୍ରହ୍ମ-ଆକାଶ ଜାଣିବ ।
କାହିଁ ସୁଦ୍ଧା ନାହିଁ ମୁନି ଜଗତ ଅସ୍ତିତ୍ୱ
ଜଳକଣା ଯେଉଁ ପରି ଜଳେ ଏକୀଭୂତ,
ତତ୍ତ୍ୱଜ୍ଞ ପୁରୁଷମାନେ ଜାଣ ସେହିପରି
ପରଂପଦେ ଏକୀଭୂତ ଜାଣ ତପଚାରୀ ।
ଜୀବ ଏବଂ ଜଗତ ଯେ ବ୍ରହ୍ମରୁ ପୃଥକ
ବୋଲି ଜଣାଯାଏ ଜାଣ ହେ ମୁନି ତିଳକ ।
ବାସ୍ତବରେ ବ୍ରହ୍ମର ତା' ପର ଆକାରୀୟ
ସ୍ୱଭାବ ଜାଣି ରଖହେ ବ୍ରହ୍ମାଙ୍କ ତନୟ ।
ତା ନୋହିଲେ ସୁନିର୍ମଳ ପ୍ରଶାନ୍ତ ବ୍ରହ୍ମରେ
ଜୀବ ଓ୍ ଜଗତ ଭାବ ସମ୍ଭବି ନ ପାରେ ।
କହନ୍ତି ବଶିଷ୍ଠ କହ ହେ ରଘୁନନ୍ଦନ
ବୀଜ ମଧ୍ୟେ ଗୁପ୍ତଥାଇ ପାଦପ ଯେସନ ।
ସେହିପରି ବ୍ରହ୍ମ ମଧ୍ୟେ ଅବ୍ୟକ୍ତ ଭାବରେ
ଦୃଶ୍ୟସବୁ ରହିଥାନ୍ତି ଆହେ ରଘୁବୀରେ ।
କାଳକ୍ରମେ ତାହା ପାଇଥାଏ ପରକାଶ
ଏହିଭାବେ ଏହି ସୃଷ୍ଟି ପାଇଛି ପ୍ରକାଶ ।
ଏହା କହିଲେ ତହିଁରେ ଅଛି କେଉଁ ଦୋଷ
ଭାବି କରି କହ ମୋତେ ହେ ରଘୁବିଳାସ ।
କହନ୍ତି ଶ୍ରୀରାମ ଶୁଣ ଆହେ ତପୀବରେ
ବୃକ୍ଷର ଅବ୍ୟକ୍ତ ସତ୍ତା ଯେ ବୀଜ ମଧ୍ୟରେ,

ବୀଜ ରୂପେ ହିଁ କେବଳ ତାହା ଅନୁଭୂତ
ବୃକ୍ଷରୂପେ ଅନୁଭୂତ ନୁହେଁ କଦାଚିତ ।
ସେହିରୂପ ବ୍ରହ୍ମ ମଧ୍ୟେ ଯେ ଜଗତଭାବ
ଜଗତ ନ କହି ତାକୁ ବ୍ରହ୍ମ ହିଁ ବୁଝିବ ।
ପ୍ରଳୟାନ୍ତେ ବ୍ରହ୍ମ ମଧ୍ୟେ ଯେବେ ବ୍ରହ୍ମାସୁତ
ଅବ୍ୟକ୍ତ ଜଗତସତ୍ତା ହୋଇବ ସ୍ୱୀକୃତ ।
ତେବେ ତାହା ନିର୍ବିକାର ବ୍ରହ୍ମଙ୍କ ବ୍ୟତୀତ
ଅନ୍ୟ କେଉଁ ପ୍ରକାରେ ବା ହେବ ତା ବ୍ୟକତ ?
ତେତେବେଳେ ନ ଥାଇ ସେ ଜଗତ ଆକାରେ
ପରିଦୃଷ୍ଟ ହେଉଥାଏ ବ୍ରହ୍ମ ଆକାରରେ ।
ନିରାକାର ନିର୍ବିକାର ବସ୍ତୁଠାରୁ ପୁଣି
ସାକାର, ବିକାରବାନ ଉଦ୍ଭବ କି ଘେନି ?
ସ୍ୱପ୍ନ ସଦୃଶ ହିଁ ଜାଣ ତେଣୁ ଏ ଜଗତ
ଆତ୍ମାରେ ହିଁ ସଦାକାଳେ ରହେ ଅବସ୍ଥିତ ।
ଜଗତ ବିବର୍ତ୍ତାକାରେ ନିରାକାର ବ୍ରହ୍ମ
ଅବସ୍ଥାନ କରିଛନ୍ତି ବୋଲିଣ ଜାଣିମ ।
ଆତ୍ମା, ବ୍ରହ୍ମ ପୁଣି ଏହି ବିଶ୍ୱ ପରପଞ୍ଚ
ଅଜ୍ଞାନରୁ ଉଦିତ ସେ ହୁଅନ୍ତି ସ୍ୱପ୍ନବତ୍ ।
ଏ ସିଦ୍ଧାନ୍ତ ଧରି ଯେବେ ନିଜ ବ୍ରହ୍ମଭାବ
ଯଦି ତୁମେ କରିପାର ତାକୁ ଅନୁଭବ,
ତେତେବେଳେ ଜଗତରେ ଅସ୍ତିତ୍ୱ ନ ରହି
ଅନିର୍ବଚନୀୟ ବ୍ରହ୍ମ ମାତ୍ର ରହିଥାଇ ।
ସୁଶାନ୍ତ ଚିଦାକାଶରେ ତେତେବେଳେ ଜାଣ
ଦ୍ରଷ୍ଟା, ଦୃଶ୍ୟ, ଦର୍ଶନାଦି ଅହଂଭାବ ମାନ,
ପୁଣି ସୃଷ୍ଟିର ବିସ୍ତାର କେବେହେଲେ ଜାଣ
ପ୍ରକାଶ କରି ନ ପାରେ ହେ ମୁନି ରତନ ।
ମିଥ୍ୟା ଯେପରି ଅଟଇ ସଙ୍କଳ୍ପ ନଗର
ଏ ଜଗତ ସେହିପରି ମିଥ୍ୟା ତପୀବର ।
ଏକମାତ୍ର ନିରାମୟ ବ୍ରହ୍ମ ଅଟେ ସତ୍ୟ
ମୁଁ ଜାଣିଛି ସେହି ପୂର୍ଣ୍ଣବ୍ରହ୍ମ ଯେହୁ ସତ୍ୟ
ଏଥି ଥିବା ସଭାସଦ୍‌ଗଣଙ୍କୁ ହେ ଦେବ
ବ୍ରହ୍ମରୂପେ ଦର୍ଶନ ମୁଁ କରୁଥିବା ଧ୍ରୁବ ।
ଅଜ୍ଞଙ୍କ ପାଇଁ କି ଅଟେ ଏ ଜଗତ ସତ
ବିବେକୀ ପାଇଁ କି ମିଥ୍ୟା ଅଟେ ଏ ଜଗତ ।
ବ୍ରହ୍ମମୟ ଅଟେ ତାହା ବ୍ରହ୍ମଜ୍ଞ ଦୃଷ୍ଟିରେ
ଶାନ୍ତ ବ୍ରହ୍ମେ ଏକୀଭୂତ ଥାନ୍ତି ଯେଉଁ ନରେ ।
ତାଙ୍କୁ ଏ ଜଗତ ଶାନ୍ତ ପରମ ଆକାଶ
ଏହି ମୋ ଧାରଣା ଜାଣ ଆହେ ତପୀଈଶ ।
ସ୍ଥାବର ଜଙ୍ଗମମୟ ଏହି ଯେ ଜଗତ
ତତ୍ତ୍ୱଜ୍ଞାନୀଙ୍କୁ ଆକାଶ ରୂପେ ପ୍ରତିଭାତ ।
ମୁଁ ଆକାଶ ପୁଣି ଅନ୍ୟ ସମସ୍ତେ ଆକାଶ
ପୁଣି ଜଗତ ଆକାଶ ଏହି ଯେ ବିଶ୍ୱାସ ।
ଏହା ବଳେ ସର୍ବେ ଚିଦାକାଶର ସହିତ
ଏକତ୍ୱ ଲଭି ପାରନ୍ତି ଜାଣ ବ୍ରହ୍ମାସୁତ ।
ଆକାଶ ସମ ଅଛନ୍ତି ଯେ ପୁରୁଷମାନ
ତାଙ୍କ ମଧ୍ୟେ ସର୍ବଶ୍ରେଷ୍ଠ ଅଟନ୍ତି ଆପଣ ।
ନଭସମ ପୂର୍ଣ୍ଣାନନ୍ଦ ବ୍ରହ୍ମଙ୍କ ସହିତ
ଅଭିନ୍ନ ଆପଣ ଘେନ ମୋର ପ୍ରଣିପାତ ।
ଦ୍ୱନ୍ଦ୍ୱାତୀତ ବ୍ରହ୍ମପଦ ଲଭିଣ ଆପଣ
ଆକାଶ ସ୍ୱରୂପ ହୋଇ ଅଛ ହେ ମହାନ ।
ତବ ଅନୁଗ୍ରହେ ମଧ ଆହେ ଗୁରୁଦେବ
ଚିଦାକାଶ ପ୍ରାପ୍ତ ମୋର ହୋଇଛି ଜାଣିବ ।
ବାହ୍ୟ ଜଗତର ସ୍ଥିତି ବିଷୟରେ ମୁହିଁ
ଆପଣଙ୍କୁ ଯାହା ଯାହା କହି ମୁଁ ଗଲଇଁ,
ତର୍କ କଲା ଭାଇମାନେ ଏହି ବିଷୟରେ
ତର୍କ ଉଠାଇ ପାରନ୍ତି ଆସେ ମୋ ମନରେ ।
କିନ୍ତୁ ଆତ୍ମଜ୍ଞାନ ଲଭିଛନ୍ତି ଯେଉଁମାନେ
ଅବଶ୍ୟ ମୋ କଥା ଘେନା କରିବେ ସେମାନେ ।
ପ୍ରମାଣର ଅଗୋଚର, ଅଲିଙ୍ଗ ଯେ ବ୍ରହ୍ମ
ପୁଣି ଯେହୁ ସ୍ୱୀୟ ଅନୁଭବ ବେଦ୍ୟ ଜାଣ ।
ତର୍କଦ୍ୱାରା ତାଙ୍କୁ କେବେହେଲେ ଉପଲବ୍ଧ
କରି ନ ପାରିବ କେଉଁ ମୁନିକୁଳ ସିଦ୍ଧ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରଖଣ୍ଡେ ବୋଧ ପ୍ରକାଶି କରଣ**
**ଯୋଗ ବର୍ଣ୍ଣନେ ନାମ ୧୦୨ତମ ସର୍ଗଃ**



## ୧୦୩ତମ ସର୍ଗଃ

## କାଷ୍ଠ ବୈବଧିକ ଉପାଖ୍ୟାନ

କହନ୍ତି ବାଲ୍ମୀକି ଶୁଣ ଭରଦ୍ୱାଜ ମୁନି
ଏହା କହି ପରଂପଦେ ମଗ୍ନ ରଘୁମଣି ।
କିଛି କାଳ ଏହିପରି ଗତ ହେଲା ପରେ
ବଶିଷ୍ଠଙ୍କୁ ପୁଚ୍ଛାକଲେ ପୁଣି ରଘୁବୀରେ ।

ତତ୍ତ୍ୱଜ୍ଞାନ ଲାଭ ପାଇଁ ଗୁରୁ ଉପଦେଶ
ଶାସ୍ତ୍ରଜ୍ଞାନ ଲୋଡ଼ା କି ନା କହ ତପୀଈଶ ।
କହନ୍ତି ବଶିଷ୍ଠ ଶୁଣ ହେ କୋଦଣ୍ଡଧର
ତୁମ ପ୍ରଶ୍ନର ଉତ୍ତର ଅଟେ ଏ ପ୍ରକାର ।
କୀରକ ଜାତୀୟ ବହୁ ହତଭାଗ୍ୟ ନର
ଭାରବାହୀ ରୂପେ ଥିଲେ କୌଣସି ସ୍ଥାନର ।
ଅତି ଦରିଦ୍ର ସେମାନେ ହୀନ ଅକିଞ୍ଚନ
ସମ୍ବଳ ତାଙ୍କର ଥିଲା କନ୍ଥା ଖଣ୍ଡମାନ ।
କିପରି ଭାବେ କରିବେ ଜୀବିକା ଅର୍ଜନ
ଏହିକଥା ସଦାବେଳେ ଘାଣ୍ଟେ ତାଙ୍କ ମନ ।
ସ୍ଥିରକଲେ ନିକଟସ୍ଥ ବଣକୁ ସେ ଯିବେ
ଜାଳେଣି କାଠ ସଂଗ୍ରହ କରିଣ ବିକିବେ ।
ଅନ୍ନ ସଂସ୍ଥାନରେ ପନ୍ଥା ହେବ ସେ ତାଙ୍କର
ଏହା ଭାବି ଯାଉଥାନ୍ତି ଗହନ ବନର ।
କାଠଛଡ଼ା ସେ ବନରେ ଗୁପ୍ତ ଧନରତ୍ନ
ଭରପୁର ରହିଥାଏ ଜାଣ ରଘୁନାଥ ।
କେହି କେହି କରିଥାନ୍ତି ତାହା ଆହରଣ
ଅଧିକାଂଶ କାଠ ଘେନି ବାହୁଡ଼ନ୍ତି ଜାଣ ।
କିଛିଦିନ ପରେ ଜାଣ ଏମନ୍ତ ଘଟିଲା
ଚିନ୍ତାମଣି ରତ୍ନ ତାଙ୍କୁ ପ୍ରାପତ ହୋଇଲା ।
ସେହି ରତ୍ନ ପ୍ରଭାବରେ ସେମାନେ ସକଳେ
ଅନନ୍ତ ଐଶ୍ୱର୍ଯ୍ୟ ଅଧିପତି ହୋଇଗଲେ ।
ପରମ ସୁଖରେ ତାଙ୍କ କଟିଯାଏ କାଳ
ମୋହ, ଭୟ, ଦୁଃଖ ଆଦି ହୋଇଗଲା ଦୂର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ କାଷ୍ଠ ବୈବଧିକ ନାମ ୧୦୩ତମ ସର୍ଗଃ**



## ୧୦୪ତମ ସର୍ଗଃ
## ଶାସ୍ତ୍ର ମାହାତ୍ମ୍ୟ

କହନ୍ତି ଶ୍ରୀରାମ ଶୁଣ ଆହେ ମୁନିବର
ଯେଉଁ କୀରକ ବିଷୟ ବରନନ କଲ ।
ବୁଝି ନ ପାରିଲି ତା'ର ତାତ୍ପର୍ଯ୍ୟ କିସ
କୃପାକରି ବୁଝାଇଣ କହ ମୁନିଈଶ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
କୀରକଙ୍କ ବିଷୟଟି ଏମନ୍ତ ପ୍ରକାର ।
ପୃଥିବୀରେ ରହିଛନ୍ତି ଯେ ମନୁଷ୍ୟଗଣ
ଭାରବାହୀ କୀରକ ଅଟନ୍ତି ସେହିମାନ ।
ସେହି କୀରକମାନଙ୍କ ଯେ ଦାରିଦ୍ର୍ୟ ଦୁଃଖ
ନରଙ୍କ ଅଜ୍ଞାନୋତ୍ପନ୍ନ ସାଂସାରିକ ଦୁଃଖ
ଯେ ଅରଣ୍ୟ କଥା ମୁହିଁ କଲଇଁ ବର୍ଣ୍ଣନ ।
ଗୁରୁ ଉପଦେଶ ଶାସ୍ତ୍ର ଚର୍ଚ୍ଚା ସେ ଅରଣ୍ୟ
ଅରଣ୍ୟର କାଷ୍ଠ ସଂଗ୍ରହର ଅର୍ଥ ଜାଣ
"ଅନୁସରଣ ଶାସ୍ତ୍ରର ଉପଦେଶ" ମାନ ।
ଭୋଗ ସିଦ୍ଧି ପାଇଁ ପୁଣି ଶାସ୍ତ୍ର ଉପଦେଶେ
ପ୍ରବୃତ୍ତ ହୋଇବା କଥା ଜାଣ ରଘୁଶିଷ୍ୟେ ।
ଶାସ୍ତ୍ରମାନି ଚଳୁଥିବା ଲୋକଙ୍କ ମଧ୍ୟରେ
କେହି କେହି ଉଚ୍ଚପଦ ଲାଭ କରିପାରେ ।
ଗୁପ୍ତଧନ ପରାପତି ସେ ବନରୁ ଜାଣ
ଏହା ହିଁ ତାତ୍ପର୍ଯ୍ୟ ତା'ର ହେ ରଘୁ ନନ୍ଦନ
ଚିନ୍ତାମଣି ରତ୍ନ ଲାଭ ଅର୍ଥ ଏବେ ଶୁଣ
ଭୋଗ ସିଦ୍ଧି ପାଇଁ ଶାସ୍ତ୍ର ଆଲୋଚନା ମାନ ।
ତହିଁ ରତ ରହିଥିବ ସେହି ବେଳଯାଏ
ପରମପଦ ପ୍ରାପତ ନୋହିଛି ଯେ ଯାଏ ।
ଅଧ୍ୟାତ୍ମ ଶାସ୍ତ୍ରରେ ବ୍ରହ୍ମଜ୍ଞାନ ସର୍ବୋତ୍ତମ
ବୋଲି ବର୍ଣ୍ଣିତ ହୋଇଛି ହେ ରଘୁନନ୍ଦନ ।
ଉପାସନା, ଦାନ, ଶାସ୍ତ୍ର ଗୁରୁ ଉପଦେଶ
କାହୁଁ ସେ ଜ୍ଞାନ ନ ମିଳେ ହେ ରଘୁବିଳାସ ।
ଚିତ୍ତ ବିଶୁଦ୍ଧତା ପାଇଁ ଗୁରୁ ଉପଦେଶ
ଲୋଡ଼ା ହୋଇଥାଏ ଜାଣ ରଘୁକୁଳଈଶ ।
ଚିତ୍ତ ବିଶୁଦ୍ଧତା ଦ୍ୱାରା ଜ୍ଞାନ ଲାଭ ପଥ
ସୁଗମ ହୋଇଣ ଥାଏ ଆହେ ରଘୁନାଥ ।
ବିଶୁଦ୍ଧ ଚିତ୍ତରେ ଜ୍ଞାନ ଲାଭ ହେଲେ ଜାଣ
ପରମପଦର ମିଳିପାରେ ଦରଶନ ।
ଶାସ୍ତ୍ର ଆଲୋଚନା କଲେ ସାତ୍ତ୍ୱିକ ଭାବର
ବୃଦ୍ଧିପ୍ରାପ୍ତ ହୋଇଥାଏ କୌଶଲ୍ୟା କୁମର ।
ସାତ୍ତ୍ୱିକ ଭାବ ବୃଦ୍ଧିରେ ତମୋଭାବ ନାଶ
ତା'ର ତହୁଁ ବିଶୁଦ୍ଧତା ଲଭଇ ମନୁଷ୍ୟ ।
କାମ ଆଦି ତ୍ରିବର୍ଗ ସାଧକ ଶାସ୍ତ୍ରମାନ
ମୋକ୍ଷ ଉପଯୋଗୀ ନୁହେଁ ହେ ରଘୁନନ୍ଦନ ।
ଶାସ୍ତ୍ରଜ୍ଞ, ତତ୍ତ୍ୱଜ୍ଞ ପୁରୁଷଙ୍କ ଉପଦେଶ
ଜ୍ଞାନ ପାଇଁ ଶ୍ରେଷ୍ଠୋପାୟ ଆହେ ରଘୁଈଶ ।

ନିଜ ଶାସ୍ତ୍ର ଚର୍ଚ୍ଚା ତୁଚ୍ଛ ତା'ର ତୁଳନାରେ
ମନେ ରଖିଥିବ ସଦା ଆହେ ରଘୁବୀରେ ।
ଏହିପରି ଶାସ୍ତ୍ର ଅର୍ଥ ଅନୁଶୀଳନରେ
ଗୁରୁ ଉପଦେଶ ପୁଣି ସାଧୁସଙ୍ଗ ବଳେ ।
ଶମ ଦମ ଆଦିଙ୍କର ଅଭ୍ୟାସ ବଳରେ
ପରମ ସୁଖ ସ୍ୱରୂପ ବ୍ରହ୍ମପଦ ମିଳେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଶାସ୍ତ୍ର ମାହାତ୍ମ୍ୟ ବର୍ଣ୍ଣନେ ନାମ**
**୧୦୪ତମ ସର୍ଗଃ**



## ୧୦୫ତମ ସର୍ଗଃ
## ସମ ଦୃଷ୍ଟି ପ୍ରଶଂସା

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁସାଇଁ
ପୂର୍ବେ ସ୍ଥିତି, ଉପଶମ ପ୍ରକରଣେ ମୁହିଁ ।
ତୁମ ବୋଧଜ୍ଞାନ ଦୃଢ଼ ହେବାର ନିମିତ୍ତ
ଯାହା କହିଥିଲି ପୁଣି ଶୁଣ ସେ ବୃତ୍ତାନ୍ତ ।
ସମସ୍ତଙ୍କୁ ଯାହା ଆଶ୍ୱାସନା ଦେଇଥାଏ
ସବୁରି ସହ ସୌହାର୍ଦ୍ୟ ଯାହା ବଳେ ହୁଏ ।
ସେହି ସମ ଦରଶନ ଅନୁସରି ରାମ
ବିଚରଣ କରିବା ହିଁ କର୍ତ୍ତବ୍ୟ ପ୍ରଧାନ ।
ସମଦର୍ଶନ ଲତାରେ ଫଳେ ଯେଉଁ ଫଳ
ଅତିପବିତ୍ର, ସୌଭାଗ୍ୟ, ସମ୍ପଦ୍ ବୃଦ୍ଧିକର ।
ସମଦର୍ଶୀ ହୋଇ ଯେହୁ ସବୁରି ମଙ୍ଗଳ
କରିବା ପାଇଁ ସ୍ୱ କର୍ମ କରେ ଯେଉଁ ନର,
ସକଳେ ତା'ଠାରେ ଭୃତ୍ୟ ପରି ଅନୁଗତ
ହୋଇଥାନ୍ତି ଜାଣିରଖ ଆହେ ରଘୁନାଥ ।
ସମଦରଶନେ ଲବ୍ଧ ଯେ ନିର୍ମଳାନନ୍ଦ
ମିଳିଥାଏ ଜାଣିରଖ ରଘୁକୁଳାନନ୍ଦ ।
ରାଜ୍ୟ ଅବା ଜାଗତିକ କଉଣସି ଭୋଗ
ଦେଇ ନ ପାରିବ ଜାଣ ସେପରି ସଯୋଗ ।
ସର୍ବବିଧ ଦୁଃଖରୂପ ପ୍ରଚଣ୍ଡ ରୌଦ୍ରର
ନିବାରକ-ମେଘ, ସମଦୃଷ୍ଟି ରଘୁବୀର ।
ଦ୍ୱନ୍ଦ୍ୱଜାତ-ଦୁଃଖ, ଶ୍ରେଷ୍ଠ ଶାନ୍ତିର ଜନକ
ବୋଧଜ୍ୱର ମହୌଷଧି ହେ ରଘୁତିଳକ ।
ଯେଉଁ ବ୍ୟକ୍ତି ଅଟେ ରାମ ସମ ଗୁଣାନ୍ୱିତ
ବସ୍ତୁର ବାସ୍ତବ ରୂପ ଦର୍ଶନେ ସମର୍ଥ ।
ଶତ୍ରୁ ମଧ୍ୟ ତାହା ପ୍ରତି ମିତ୍ରତା ଆଚରେ
ଏପରି ପୁରୁଷ ଜାଣ ଦୁର୍ଲଭ ସଂସାରେ ।
ସମଗୁଣ ଅନୁସରି ଚଳେ ଯେଉଁ ନର
ସର୍ବ ଦୋଷ, ଗୁଣେ ପରିଣତ ହୁଏ ତାର ।
ସବୁ ଦୁଃଖ ସୁଖରୂପେ କରେ ଅନୁଭବ
ମୃତ୍ୟୁ ତା'ର ଜୀବନ୍ମୟ ପାଲଟେ ରାଘବ ।
ସମତା ସୌନ୍ଦର୍ଯ୍ୟେ ଯେହୁ ଦିଶଇ ସୁନ୍ଦର
ମୈତ୍ରୀ, କରୁଣା, ମୁଦିତା ରମଣୀ ସଂସାର ।
ଆଲିଙ୍ଗନ କରୁଥାନ୍ତି ତାଙ୍କୁ ସମାଜରେ
ସମଗୁଣ ସମସ୍ତଙ୍କୁ ଆପଣାର କରେ ।
ସମଦର୍ଶୀର କୌଣସି ଚିନ୍ତା ନ ରହଇ
ସଦା ଅଭ୍ୟୁଦୟଶୀଳ ସେ ଜନ ଅଟଇ ।
ସର୍ବବିଧ ସମ୍ପଦର ହୁଏ ଅଧିକାରୀ
ସମଗୁଣର ମହିମା କିଏ କହି ପାରି ?
ସମଦର୍ଶୀ ହୁଏ ଯେହୁ ସକଳ କର୍ମରେ
ଅପରାଧୀ ପ୍ରତି ମଧ୍ୟ କ୍ଷମା ଯେ ଆଚରେ,
ପ୍ରକୃତ କର୍ମର ଅଧିଷ୍ଠାତା ସେହି ନର
ଦେବଗଣ ବି ପ୍ରଶଂସା କରନ୍ତି ତାହାର ।
ସଦାଚରୀ ସର୍ବଜନ ହିତାକାଂକ୍ଷୀ ଜନ
ସର୍ବତ୍ର ସମଚିତ୍ତତା ଯା'ର ଥାଏ ପୁଣ,
ସଦା, ସର୍ବଦା ରହେ ସେ ଆମୋଦ ସମ୍ପୂର୍ଣ୍ଣ
ଏ କଥା ସ୍ମରଣ ରଖ ହେ ରଘୁନନ୍ଦନ ।
ଅଗ୍ନି କେବେ ଦଗ୍ଧକରି ନ ପାରଇ ତାକୁ
ଓଦା କରି ନ ପାରଇ ଜଳ ତା ଦେହକୁ ।
ଯଥା ଯଥ ଭାବେ ଯେହୁ କର୍ମ କରୁଥାଇ
ହର୍ଷ ବା ବିଷାଦ ନୋହି ସମଭାବ ବହି ।
ତାହା ପାଇଁ ଏ ଜଗତେ ଜାଣ ରଘୁବୀର
କୌଣସି ତୁଳନା ନାହିଁ ଏହା ନିରାଧାର ।
ପରମାର୍ଥ ତତ୍ତ୍ୱ ବୁଝି କର୍ତ୍ତବ୍ୟ କର୍ମର
ଅନୁଷ୍ଠାନ ମାନ କରୁଥାଏ ଯେଉଁ ନର,
ଶତ୍ରୁ, ମିତ୍ର ଆଦି କରି ସକଳ ତା ପ୍ରତି
ବିଶ୍ୱାସ ରଖନ୍ତି ଜାଣ ଆହେ ରଘୁପତି ।
ସମଦର୍ଶୀ ହୋଇଥାଏ ଯେବଣ ସୁଜନ
ନୁହେଁ ସେ ଲାଭରେ ହର୍ଷ, କ୍ଷତିରେ ବିଷର୍ଣ୍ଣ ।
ଯଥାଯଥ ଭାବେ ନିଜ କର୍ମ କରିଯାନ୍ତି
ଜିଜ୍ଞାସୁକୁ ଉପଦେଶେ ଉତ୍ସାହ ଦିଅନ୍ତି ।

ସମଦର୍ଶୀ ଜନମାନେ ଯାହା କରିଥାନ୍ତି
ସକଳେ ସେ ସବୁ କାର୍ଯ୍ୟ ପ୍ରଶଂସା କରନ୍ତି ।
ସମଦର୍ଶନ ପ୍ରଭାବେ ଶିବି ରାଜା ଜାଣ
କପୋତକୁ ନିଜ ମାଂସ କଲେକ ଅର୍ପଣ ।
ସର୍ବ ଅବସ୍ଥାରେ ମଧ୍ୟ ଜନକ ରାଜନ
ସମଭାବ ଅନୁସରୀ କଲେ ଅବସ୍ଥାନ ।
ଅନ୍ୟାନ୍ୟ ବହୁ ନୃପତି ଏହିପରି ଜାଣ
ଧର୍ମବ୍ୟାଧ ଆଦି କରି ନିଚ୍ଚ ଜାତି ଜନ ।
ସମଗୁଣ ଘେନିକରି ସକଳ ଲୋକର
ପୂଜ୍ୟ ହୋଇଛନ୍ତି ଜାଣ ହେ କୋଦଣ୍ଡ ଧର ।
ଇହଲୋକ, ପରଲୋକ ସିଦ୍ଧ ଲାଭ ପାଇଁ
ବୁଦ୍ଧିମାନ ସମଭାବ ଆଶ୍ରୟ କରଇ ।
ସମଦ୍ରଷ୍ଟା କାହାରିକୁ ହିଂସା ନ କରଇ
ମୃତ୍ୟୁ ବା ଜୀବନ କିଛି ବାଞ୍ଛା ତା ନଥାଇ ।
ଅବଶ୍ୟ କର୍ତ୍ତବ୍ୟ କର୍ମ କେବଳ କରଇ
ଅନାବଶ୍ୟକ କର୍ମରେ ତା ଦୃଷ୍ଟି ନ ଥାଇ ।
ଦୋଷ ବା ଗୁଣ ଯା ପ୍ରତି ଉଭୟେ ସମାନ
ସୁଖେ ଦୁଃଖେ ସମଦର୍ଶୀ ଅଟେ ଯେଉଁ ଜନ,
ମାନ ଅପମାନ ସବୁ ସମାନ ମଣଇ
ଅନାସକ୍ତ ଭାବେ କର୍ମ ସେହୁ ସମ୍ପାଦଇ ।
ସାଧୁମାନଙ୍କ ମଧ୍ୟରେ ଅଟଇ ସେ ଶ୍ରେଷ୍ଠ
ମନେରଖ ଏହା ସବୁ ରଘୁକୁଳ ଇଷ୍ଟ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ସମଦୃଷ୍ଟି ପ୍ରଶଂସା ବର୍ଣ୍ଣନେ**
**ନାମ ୧୦୫ତମ ସର୍ଗଃ**



## ୧୦୬ତମ ସର୍ଗଃ
## ମୁକ୍ତ ପୁରୁଷ ସ୍ଥିତି ବର୍ଣ୍ଣନ

କହନ୍ତି ଶ୍ରୀରାମ ଗୁରୁଦେବ ଏବେ ଶୁଣ
ବ୍ରହ୍ମେ ବିଶ୍ରାମ ଲଭନ୍ତି ଯେଉଁ ଜ୍ଞାନୀଜନ ।
କର୍ମତ୍ୟାଗ ନ କରନ୍ତି ସେମାନେ କିମ୍ପାଇଁ
ବୁଝାଇ କହିବା ହେଉ ଆହେ ତପୀସାଇଁ ।
କହନ୍ତି ବଶିଷ୍ଠ ହେୟ, ଉପାଦେୟ, ବୁଦ୍ଧି
ଦୂରୀଭୂତ ହୋଇଅଛି ଯା'ର ରଘୁନିଧି ।
କର୍ମ ବରଜନ ଅବା କର୍ମ ଅନୁଷ୍ଠାନ
ଉଭୟ ତାହାର ପକ୍ଷେ ଅଟନ୍ତି ସମାନ ।
ତତ୍ତ୍ୱଜ୍ଞାନୀ ଜନ ପାଇଁ କୌଣସି କରମ
ଉଦ୍‌ବେଗ ଜନକ ନୁହେଁ ହେ ରଘୁନନ୍ଦନ ।
ତେଣୁ କରି କର୍ମତ୍ୟାଗ ସେହୁ ନ କରଇ
ଯେଣୁ କରି ପ୍ରୟୋଜନ କିଛି ତା ନ ଥାଇ ।
କର୍ମର ଆକାଙ୍କ୍ଷା ମଧ୍ୟ ସେହୁ ନ କରଇ
କର୍ମ ଅବା କର୍ମତ୍ୟାଗ ସମାନ ତା ପାଇଁ ।
ତେଣୁ ଆଶ୍ରମ-ଉଚିତ ଯେ ସକଳ କର୍ମ
ସ୍ୱତଃ ଉପସ୍ଥିତ ହୁଏ ଯାହା ରଘୁରାଣ,
ତାହାକୁ ହିଁ ସେହି କରିଥାଆନ୍ତି ସମ୍ପନ୍ନ
ବ୍ରହ୍ମେ ବିଶ୍ରାମକାରୀଙ୍କ ଲକ୍ଷଣ ଏସନ ।
ଏ ଶରୀର ଯେ ପର୍ଯ୍ୟନ୍ତ ଥିବ ହେ ଶ୍ରୀରାମ
ସେ ପର୍ଯ୍ୟନ୍ତ ରହିଥିବ କର୍ତ୍ତବ୍ୟ କରମ ।
କର୍ମତ୍ୟାଗ କରିବାରେ ଅଛି କେଉଁ ଲାଭ
କର୍ତ୍ତବ୍ୟ କର୍ମ ସାଧନ ଶ୍ରେୟ ହେ ରାଘବ ।
କରମ କରିବ କିମ୍ବା କର୍ମ ନ କରିବ
ଜ୍ଞାନୀ ପକ୍ଷରେ ଉଭୟ ସମାନ ରାଘବ ।
ତେଣୁ ସେ ଆଶ୍ରମୋଚିତ କର୍ମ ସମ୍ପାଦନ
ତ୍ୟାଗ କରିବେ କିମ୍ପାଇ ହେ ରଘୁନନ୍ଦନ ?
ସମଦୃଷ୍ଟିରେ ଆବର ନିର୍ବିକାର ଚିତ୍ତେ
ଯାହା କରାଯାଇଥାଏ ଆହେ ରଘୁନାଥେ ।
କେବେହେଲେ ଦୋଷାବହ ନୁହଇ ତା ଜାଣ
କେବେ କେବେ ଜ୍ଞାନୀ କରି ବସନ୍ତି ସେ କର୍ମ ।
କିନ୍ତୁ ଜ୍ଞାନ, ସମଦର୍ଶନର ପ୍ରଭାବରେ
ତାଙ୍କୁ ପାପ ସ୍ପର୍ଶ ନ କରଇ ରଘୁବୀରେ ।
ନିର୍ଲିପ୍ତ ଚିତ୍ତେ ସେମାନେ ଉପସ୍ଥିତ କର୍ମ
ଗାରହସ୍ଥ୍ୟ ସଦାଚାର କରନ୍ତି ପାଳନ ।
ଜୀବନ ମୁକତ ରାଜରଷି ଗଣ ରାମ
ଅନାସକ୍ତ ଭାବେ ରାଜ୍ୟ କରନ୍ତି ପାଳନ ।
କେହୁ କରେ ଦେବ ପୂଜା କେହୁ ଅଗ୍ନି ହୋତ୍ର
ନାନା ସତକର୍ମ, ବର୍ଣ୍ଣ-ଆଶ୍ରମ ବିହିତ ।
କେତେ ଜ୍ଞାନୀ କର୍ମତ୍ୟାଗ କରିଣ ଅନ୍ତଃରେ
ଜାଗତିକ କର୍ମମାନ କରିଣ ବାହାରେ,
ଅଜ୍ଞ ଜନ ପରି କରୁଥାନ୍ତି ଅବସ୍ଥାନ
କେ ରହେ ନିର୍ଜନ ବନେ ସମାଧି ମଗନ ।
ପବିତ୍ର ତୀର୍ଥେ କେ କରିଥାନ୍ତି ଅବସ୍ଥାନ
ତପୋବନ ମଧ୍ୟେ କେହୁ କରନ୍ତି ଆସ୍ଥାନ ।

କାଶୀ, ଶ୍ରୀପର୍ବତ ପୁଣି ବଦ୍ରିକା, ପ୍ରୟାଗ
ଇତ୍ୟାଦି ପୁଣ୍ୟ କ୍ଷେତ୍ରରେ କରୁଥାନ୍ତି ଯାଗ ।
କୁଳଧର୍ମ କେହି କେହି କରନ୍ତି ପାଳନ
କେହି ପୁଣି କରିଥାନ୍ତି ତାହା ବରଜନ ।
ଉନ୍ମତ୍ତ ପରି କେ ପୁଣି ବୁଲେ ଇତସ୍ତତଃ
କିନ୍ତୁ ସର୍ବେ ସମ ଦରଶନର ଆଶ୍ରିତ ।
କର୍ମତ୍ୟାଗ ଅବା କର୍ମ ଅନୁଷ୍ଠାନ ମାନ
ଗୃହ, ଅରଣ୍ୟ, ତପସ୍ୟା, ପୁଣ୍ୟ ଅରଜନ ।
ଏମାନଙ୍କୁ ଘେନି ଏହି ସଂସାର ସାଗର
ପାର ହୋଇବା ସମ୍ଭବ ନୁହେଁ ରଘୁବୀର ।
ଏକମାତ୍ର ଆତ୍ମଜ୍ଞାନ ଉଦୟରେ ଜାଣ
ସମ୍ଭବପର ସଂସାରୁ ହେବାର ଉତ୍ତୀର୍ଣ୍ଣ ।
ବିଷୟାନୁରାଗ ଏକବାରେ ଯା'ର ନାହିଁ
ଶୁଭା ଶୁଭ କର୍ମ ଯାହା କରିଲେ ହେଁ ସେହି ।
ସଂସାରକୁ ଆଉ ତା'ର ପୁନରାଗମନ
କେବେହେଲେ ହେବ ନାହିଁ ହେ ରଘୁନନ୍ଦନ ।
ବିଷୟରେ ଅନୁରାଗୀ ରହେ ଯେଉଁ ଜନ
କର୍ମତ୍ୟାଗ କଲେ ମଧ୍ୟ ସଂସାର ବନ୍ଧନ,
ମହୁଫେଣା ପ୍ରତି ମହୁମାଛି ଯେଉଁପରି
ଆକୃଷ୍ଟ ହୋଇଣ ରହେ ଆହେ ତପଚାରୀ,
ମନମଧ୍ୟ ସେହିପରି ବିଷୟର ପ୍ରତି
ସଦା ଧାବମାନ ହୁଏ ଜାଣ ରଘୁପତି ।
ସେ ମନର ଆତ୍ମ ଦରଶନ ଅଭିଳାଷ
କ୍ୱଚିତ୍ କାହାର ମନେ ଜନ୍ମେ ଭାଗ୍ୟବଶ ।
ସମ୍ୟଦୃଷ୍ଟିବାନ ହୋଇ ବିଷୟ ତେଜିଣ
ଆତ୍ମବୋଧେ ଉଦ୍‌ବୁଦ୍ଧ ହୋଇଅଛ ରାମ ।
ଚିତ୍ତକୁ ଅଚିତ୍ତ କରି ଏବେ ହେ ଶ୍ରୀରାମ
ପରମ ଆକାଶ ରୂପେ କର ଅବସ୍ଥାନ ।
ତାହା ଯେବେ ହୁଏ, ତୁମ ଆଶଙ୍କା ସମସ୍ତ
ଦୂରୀଭୂତ ହୋଇଯିବ ଆହେ ରଘୁନାଥ ।
ଜନ୍ମ ମୃତ୍ୟୁ ହୀନ ସେହି ପବିତ୍ର ପରମ-
ପଦ ତୁମେ ନିଜେ ଅଟ ହେ ରଘୁନନ୍ଦନ ।
ଆଉ ମଧ୍ୟ ଏ ଜଗତ ଅଟେ ବ୍ରହ୍ମମୟ
ନିଜକୁ ବ୍ରହ୍ମ ବୁଝିଣ ଆହେ ରଘୁରାୟ ।
ନିଃସଙ୍କରେ ଏକରୂପେ ହୁଅ ବିରାଜିତ
ତୁମ ପାଇଁ ଜ୍ଞାନ, ଉପଦେଶ ଯଥାର୍ଥ ।
ସତ୍ୟ ସତ୍ୟ ବ୍ରହ୍ମ ତୁମ ହୃଦୟେ ଉଦିତ
ବିଦିତ ବେଦ୍ୟ ହୋଇଛ ତୁମେ ରଘୁନାଥ ।
କହନ୍ତି ବାଲ୍ମୀକି ବଶିଷ୍ଠଙ୍କ ଉପଦେଶ
ଶୁଣି ବାହ୍ୟ ଜ୍ଞାନ ଶୂନ୍ୟ ହେଲେ ରଘୁଈଶ ।
ଏବେ ସେ ବ୍ରହ୍ମ ପଦରେ ହୋଇଲେ ନିମଗ୍ନ
ନିଶ୍ଚଳେ ଧ୍ୟାନସ୍ଥ ହେଲେ ସଭାସଦଗଣ ।
ମହାମୁନି ବଶିଷ୍ଠ ବି ସେତେବେଳେ ଜାଣ
ବ୍ରହ୍ମାନନ୍ଦ ରସେ ହୋଇଗଲେ ନିମଗନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ମୁକ୍ତ ପୁରୁଷ ସ୍ଥିତି ବର୍ଣ୍ଣନେ ନାମ ୧୦୬ତମ ସର୍ଗଃ**



## ୧୦୭ତମ ସର୍ଗଃ

## ସାଧୁବାଦ (ଗୁରୁପୂଜା ମହୋତ୍ସବ)

କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ବଶିଷ୍ଠଙ୍କ ମୋକ୍ଷପ୍ରଦ ଉପଦେଶ ମାନ ।
ସମାପ୍ତ ହୁଅନ୍ତେ ସର୍ବ ସଭାସଦଗଣ
ଶାନ୍ତ ଚିତ୍ତେ ସମାଧିରେ ହୋଇଲେ ମଗନ ।
ସଭାକ୍ଷେତ୍ରେ ବିଶ୍ୱାମିତ୍ର, ନଭେ ସିଦ୍ଧଗଣ
ବଶିଷ୍ଠଙ୍କ ସାଧୁବାଦ କରନ୍ତି କୀର୍ତ୍ତନ ।
ଦୁନ୍ଦୁଭି ଧ୍ୱନୀ ଶୁଣିଣ କମ୍ପି ଉଠେ ଧରା
ତୁଷାରପାତ ସଦୃଶ ପୁଷ୍ପ ବୃଷ୍ଟି ହେଲା ।
ଆକାଶ ମାର୍ଗରେ ରହି ସିଦ୍ଧ ଓ ଚାରଣ
ମଙ୍ଗଳ ସଙ୍ଗୀତମାନ କରନ୍ତି ଗାୟନ ।
"ସୃଷ୍ଟି ଆଦିକାଳୁ ବହୁ ଉପଦେଶ ମାନ
ବହୁବାର ଆମ୍ଭେ କରିଥିଲୁଁ ତ ଶ୍ରବଣ ।
କିନ୍ତୁ ଏହିପରି ଉପଦେଶ କେବେହେଲେ
ପଡ଼ି ତ ନଥିଲା ଆମ ଶ୍ରବଣ ପଥରେ ।
ଏହି ଜ୍ଞାନାମୃତ ପାନ କରି ଆମ୍ଭେମାନେ
ନୂତନ ସିଦ୍ଧି ଲଭିଲୁ ବୋଲି ଆସେ ମନେ" ।
ଏପରି ଆକାଶବାଣୀ କରନ୍ତେ ଶ୍ରବଣ
ମୁଗ୍ଧ ହୋଇଗଲେ ସର୍ବ ସଭାସଦ୍‌ଗଣ ।
ପୁଷ୍ପାଞ୍ଜଳି ଅରପନ୍ତି ବଶିଷ୍ଠ ପୟରେ
ସାଧୁ ସାଧୁ ଧ୍ୱନୀ ଉଠେ ସାରା ଭୂମଣ୍ଡଳେ ।

ଏବେ ରାଜା ଦଶରଥ ଅର୍ଘ୍ୟ ପାତ୍ର ଧରି
ମୁନିବରେ ପୂଜା ବିଧି ଅପରଣ କରି ।
ବୋଲନ୍ତି ହେ ଅରୁନ୍ଧତୀ ପତେ ଏବେ ଶୁଣ
ଭବଦୀୟ କୃପାବାରି ଯା କଲା ବର୍ଷଣ
ଅକ୍ଷୟ ଜ୍ଞାନ ସମ୍ପଦେ ଏ ହୃଦୟ ମୋର
ପରିପୂର୍ଣ୍ଣ ହୋଇଗଲା ଆହେ ଜ୍ଞାନୀବର ।
ରାଜ୍ୟ ସହ ସର୍ବସ୍ୱ ମୋ ଶ୍ରୀଚରଣ ତଳେ
ଅର୍ପଣ କରୁଛି ବିଭୋ ! ଘେନ ସଦୟରେ ।
କହନ୍ତି ବଶିଷ୍ଠ ଶୁଣ ଅଯୋଧ୍ୟାଧିପତି
ପ୍ରଣାମ ମାତ୍ରେ ବ୍ରାହ୍ମଣେ ସନ୍ତୋଷ ଲଭନ୍ତି ।
ତାହା ତ ଆପଣ କରିଅଛନ୍ତି ରାଜନ
ରାଜଲକ୍ଷ୍ମୀ ରାଜାପାଶେ ଦିଅନ୍ତି ଶୋଭନ ।
ବ୍ରାହ୍ମଣର ରାଜ୍ୟ ଲାଭେ ନାହିଁ ପ୍ରୟୋଜନ
କାହିଁ ବ୍ରହ୍ମଚିନ୍ତା କାହିଁ ସାମ୍ରାଜ୍ୟ ଶାସନ ?
ରାମ ଲକ୍ଷ୍ମଣ ସହିତ ଭରତ ଶତ୍ରୁଘ୍ନ
ବାରମ୍ବାର ଗୁରୁପଦେ କରନ୍ତି ଅର୍ପଣ ।
ପାଦ୍ୟ ଅର୍ଘ୍ୟ ଦେଇଁ ଗୁରୁଦେବ ପୂଜାକରି
ଚରଣାମୃତ ପାଆନ୍ତି ହୃଦେ ମୋଦ ଭରି ।
ମୂଷଳ ଧାରାକୁ ଟପି ହୁଏ ପୁଷ୍ପ ବୃଷ୍ଟି
ଫୁଲଗଦା ପୋତିଦିଏ ମୁନି ଶରୀରଟି ।
ସବୁରି ପୂଜା ଏପରି ହୁଅନ୍ତେ ସମାପ୍ତ
ଆଡ଼େଇ ଦିଅନ୍ତି ପୁଷ୍ପ ସକଳ ଭକତ ।
ମୁନିଗଣଙ୍କୁ ବଶିଷ୍ଠ ସମ୍ବୋଧନ କରି
ଗୋଟି ଗୋଟି କରି ସେମାନଙ୍କ ନାମ ଧରି ।
ବିଶ୍ୱାମିତ୍ର, ଭୃଗୁ, ପୁଲସ୍ତ୍ୟ ଓ ବାମଦେବ
ସମସ୍ତଙ୍କ ସମକ୍ଷରେ କରନ୍ତି ପ୍ରସ୍ତାବ ।
ଆପଣମାନେ ଅଛନ୍ତି ଯେତେ ତପୋବନ୍ତ
ଯାହା ମୁଁ କହିଲି ଏଥି ସବୁ ଶୁଣିଲ ତ ?
ଅନ୍ୟାୟ, କଦର୍ଥ, ଅସଙ୍ଗତ ଯାହା କିଛି
ମୋର କହିବାରେ ଅବା ରହିଯାଇଅଛି ।
ଆପଣମାନେ ଏକ୍ଷଣି ଅନୁଗ୍ରହ କରି
ପ୍ରକାଶ କରନ୍ତୁ ତାହା ଆଗରେ ମୋହରି ।
କହୁଛନ୍ତି ମୁନୀଗଣ ଆହେ ତପୋବନ୍ତ
ବଶିଷ୍ଠ ବାକ୍ୟେ ରହିବ ଅନ୍ୟାୟ କଦର୍ଥ ।
ନୂଆକରି ତାହା ଆମ୍ଭେ ଶୁଣୁଛୁ ଏକ୍ଷଣ
ଆମ ଜନ୍ମ ଜନ୍ମାନ୍ତର ମଳ ତପୋଧନ,
ଭବଦୀୟ ଉପଦେଶେ ସେ ମଳ ସକଳ
ଧୋଇ ହୋଇଗଲା ଆଜ ହେ ବ୍ରହ୍ମାକୁମର ।
ଜ୍ଞାନ ଦାନ କରି ମୁନେ ଆମ ସମସ୍ତଙ୍କ
ଗୁରୁସ୍ଥାନ ଲଭିଅଛି ହେ ମୁନି ତିଳକ !
ପ୍ରଣାମ କରୁଛୁ ଗୁରୁଦେବ ପଦେ ତବ
ଏହାଶୁଣି ସଭ୍ୟଗଣ ରହନ୍ତି ନିରବ ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ସାଧୁବାଦ ବର୍ଣ୍ଣନେ**
**ନାମ ୧୦୭ ତମ ସର୍ଗଃ**



## ୧୦୮ ତମ ସର୍ଗଃ
## ବିଶ୍ରାନ୍ତି ପ୍ରକଟୀ କରଣ

କହନ୍ତି ବାଲ୍ମୀକି ଆହେ ଭରଦ୍ୱାଜ ଶୁଣ
ବିବେକ ସମ୍ପର୍ଣ୍ଣ ସର୍ବ ସଭାସଦ ଗଣ ।
ସମାଧିସ୍ଥ ହେଲା ପରି କଲେ ଅବସ୍ଥାନ
ତେଜସ୍ୱୀ ଗୁରୁଙ୍କୁ ଚାହିଁ ରହନ୍ତି ମଉନ ।
ଦଶରଥ ମହାରାଜା ଧ୍ୟାନସ୍ଥ ହୋଇଣ
ଜୀବନ ମୁକତ ସମ ହେଲେ ବିଦ୍ୟମାନ ।
ପୁନଶ୍ଚ ବଶିଷ୍ଠ ମୁନି କହନ୍ତି ହେ ରାମ
ଆଉ କିଛି ଶୁଣିବାକୁ ହେଉଛି କି ମନ ?
କେଉଁ ଅବସ୍ଥାରେ ତୁମେ ଅଛ ଏହି କ୍ଷଣ
କିପରି ଏ ଜଗତକୁ କରହେ ଦର୍ଶନ ?
କରଯୋଡ଼ି ରାମଚନ୍ଦ୍ର କହନ୍ତି ବଚନ
ଶରତ ଆକାଶପରି ନିର୍ମଳ ମୋ ମନ ।
କଉଣସି ମଳ ସହ ସମ୍ପର୍କ ମୋ ନାହିଁ
ଜନ୍ମ-ମୃତ୍ୟୁ ଭ୍ରମ ମୋର କିଛି ହେଲେ ନାହିଁ ।
ପରମଶାନ୍ତି ଲଭିଣ ସୁଷୁପ୍ତ ସଦୃଶ
ଅବସ୍ଥାନ କରୁଛି ମୁଁ ଆହେ ବ୍ରହ୍ମାଶିଷ୍ୟ ।
କିଛି ଆଉ ଶୁଣିବାକୁ ଇଚ୍ଛା-ମୋର ନାହିଁ
ସଙ୍କଳ୍ପ, ଭୋଗ, ବାସନା ହଜି ଅଛି କାହିଁ ।
ବିଷୟ ସୁଖ ମୋହର ହେବାରୁ ବିଲୁପ୍ତ
ନିର୍ବାଣ ସୁଖ ମୋହର ଏବେ ଅନୁଭୂତ ।
ଚିନ୍ମାତ୍ର ବ୍ରହ୍ମ ରୂପରେ ଏହି ଯେ ଜଗତ
ମୋ ନେତ୍ରରେ ଏବେ ହେଉଅଛି ପ୍ରତିଭାତ ।
ବିଲୟ ଲଭିଛି କାହିଁ ସେ ଦୃଶ୍ୟ ଜଗତ
ଆକାଶ ରୂପରେ ତାହା ଏବେ ପରିଣତ ।

ଜାଗ୍ରତ ରହିଛି ମୁହିଁ ସେହି ଆକାଶରେ
ସକଳ ସପନ ମୋର ପଡ଼ିଛି ପଛରେ ।
କହନ୍ତି ବଶିଷ୍ଠ ଆଜ ଗଡ଼ ଜିତିଲଇଁ
ମୋ ମନ ଆନନ୍ଦ ସୀମା କେ ପାରିବ କହି ?
ଯାହାକୁ ପାଇଲେ ଜାଣ ଆହେ ରଘୁସାଇଁ
ଶୋକାଗ୍ରସ୍ତ ହେବା ପାଇଁ ଆଉ ନ ପଡ଼ଇ ।
ଆକାଶସମ ନିର୍ମଳ ସେ ଶାନ୍ତ ଆତ୍ମାରେ
ବିଶ୍ରାମ ଲଭିଛି ଯେଣୁ କୌଶଲ୍ୟା ଦୁଲାଳେ ।
ସୌଭାଗ୍ୟ ବଶତଃ ଆଜ ତୁମେ ଶୋକାତୀତ
ଇହ ପର ଲଉକୀକ ଅଶୁଭ ସମସ୍ତ,
ସମ୍ଭାବନା ସବୁ ହୋଇଅଛି ଦୂରୀଭୂତ
ଆତ୍ମଜ୍ଞାନ ଆଣି ଦେଇଅଛି ଏ ସମସ୍ତ ।
ତତ୍ତ୍ୱଜ୍ଞାନ ଲାଭ କରି ଆଜ ହେ ଶ୍ରୀରାମ
ପବିତ୍ର କରିଛ ତୁମ ବଂଶାବଳୀ ମାନ ।
ବର୍ତ୍ତମାନ, ଭବିଷ୍ୟତ ଆବର ଅତୀତ
ସକଳ ବଂଶଧରଙ୍କୁ କରିଲ ପବିତ୍ର ।
ବିଶ୍ୱାମିତ୍ର ମହର୍ଷୀଙ୍କ କାମନା ପୁରୁଣ
କରିଦେଇସାରି ତୁମେ ହେ ରଘୁନନ୍ଦନ ।
ପିତା ସହ ପୃଥିବୀକୁ କର ହେ ପାଳନ
ଯେ ଘେନି ଜନ୍ମିଛ ତାହା କର ସମ୍ପାଦନ ।
ତୁମ୍ଭଙ୍କୁ ପାଇ ତୁମ୍ଭର ବନ୍ଧୁ ମିତ୍ର ଭୃତ୍ୟ
ସଇନ ସାମନ୍ତ ସହ ଯେତେକ ଅମାତ୍ୟ,
ଅଶ୍ୱ, ଗଜ ଆଦି ସର୍ବେ ହୁଅନ୍ତୁ ନିର୍ଭୟ
ମୋ ଆଶୀର୍ବାଦରୁ ସର୍ବେ ହୁଅନ୍ତୁ ନିରାମୟ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ବିଶ୍ରାନ୍ତି ପ୍ରକଟୀ କରଣ ବର୍ଣ୍ଣନେ ନାମ ୧୦୮ତମ ସର୍ଗଃ**



## ୧୦୯ତମ ସର୍ଗଃ
## ଆତ୍ମ ବିଶ୍ରାନ୍ତି ଅଙ୍ଗୀ କରଣ

ବାଲ୍ମୀକି ବୋଲନ୍ତି ସର୍ବ ସଭାସଦ ଗଣ
ବଶିଷ୍ଠଙ୍କ ସୁମଧୁର ବଚନ ଶୁଣିଣ ।
ଅନ୍ତରରେ ଶୀତଳତା ଅନୁଭବ କଲେ
ସ୍ତମ୍ଭୀଭୂତ ହୋଇ ରଘୁ ବୀରଙ୍କୁ ଚାହିଁଲେ ।
ଚନ୍ଦ୍ର ଉଦୟେ କ୍ଷୀରୋଦାର୍ଣ୍ଣବ ଯେଉଁପରି
ଶ୍ରୀରାମଙ୍କ ମୁଖପଦ୍ମ ଝଲସେ ସେପରି ।
ଶାନ୍ତ ଅନ୍ତଃ ହୋଇଯାନ୍ତେ ରାଜା ଦଶରଥ
ବଦନ ମଣ୍ଡଳ ହରେ ସଭ୍ୟଗଣ ଚିତ୍ତ ।
ପୁଣି କହୁଛନ୍ତି ରାମ ଶୁଣ ବ୍ରହ୍ମାସୁତ
ଅଜ୍ଞାନ ମଳ ଆମ୍ଭର ଏବେ ଦୂରୀଭୂତ ।
ପୂର୍ବେ ଏ ଦେହକୁ ଆତ୍ମା ମଣୁଥିଲି ମୁହିଁ
ଆତ୍ମାବୋଲି ଜଗତ ମୋ ନେତ୍ରେ ବିରାଜଇ
ଏବେ ମୁହିଁ ନିରାମୟ, ପୂର୍ଣ୍ଣ, ଶଙ୍କାଶୂନ୍ୟ
ଜାଗ୍ରତ ମୁଁ ଏବେ ଜାଣ ବିଧାତା ନନ୍ଦନ ।
ପରମାର୍ଥ ଜାଗରୀତ ହେବାରୁ ମୋହର
ନିତ୍ୟ ସୁଖ ଭୋଗେ ମୁହିଁ ଆହେ ମୁନିବର ।
ନିତ୍ୟସୁଖ ପ୍ରାପ୍ତ ହୋଇ ନିତ୍ୟୋଦିତ ଭାବେ
ବିରାଜିତ ରହେ ମୁହିଁ ଆହେ ଗୁରୁଦେବେ ।
ଆଉ କେବେଁ ଅସ୍ତଗତ ନୋହିବି ଯେ ମୁହିଁ
ତବ ପ୍ରସାଦୁ ସିନା ମୁଁ ଏହା ଲଭିଲଇଁ ।
ଏପରି ପଦେ ଆରୂଢ଼ ହୋଇଛି ମୁଁ ଆଜ
ଜଗତ ଅମୃତମୟ ମୋତେ ତପୀରାଜ ।
ପ୍ରସନ୍ନ ମୋ ଚିତ୍ତ ଆଜ ଶୋକ ଦୂରୀଭୂତ
ଅଜ୍ଞାନ, ତିମିର ମୋର ହୋଇଛି ବିଲୁପ୍ତ ।
ଆତ୍ମାନନ୍ଦ ଲାଭ କରି ଶୋଭାମୟ ମୁହିଁ
ଆପଣାକୁ ଆପେ ମୁହିଁ ପ୍ରଣାମ କରଇ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ଆତ୍ମ ବିଶ୍ରାନ୍ତି ଅଙ୍ଗୀ କରଣ ବର୍ଣ୍ଣନେ ନାମ ୧୦୯ତମ ସର୍ଗଃ**



## ୧୧୦ତମ ସର୍ଗଃ
## ନିର୍ବାଣ ବର୍ଣ୍ଣନ

କହନ୍ତି ବାଲ୍ମୀକି ମୁନି ଏହି ସମୟରେ
ମଧ ଗଗନେ ତପନ ଉପସ୍ଥିତ ହେଲେ ।
ମଧ୍ୟାହ୍ନ କାଳୀନ ଶଙ୍ଖଧ୍ୱନୀ ନିନାଦିତ
ଗୁରୁ ବଶିଷ୍ଠ ରାମଙ୍କୁ କହନ୍ତି ଏମନ୍ତ ।
ହେ ରାଘବ ! ଯାହା କିଛି ଅଟଇ ଶ୍ରୋତବ୍ୟ
ସକଳ ଶୁଣି ବୁଝିଛ ଜ୍ଞାନୀଙ୍କ ଗୌରବ ।
ମଧ୍ୟାହ୍ନ ସମୟ ଏବେ ଆସି ଉପସ୍ଥିତ
ମାଧ୍ୟାହ୍ନିକ କର୍ମମାନ ହେଉ ସମ୍ପାଦିତ ।

ଆଉ ଯଦି କିଛି ଇଚ୍ଛା ଶୁଣିବାକୁ ରାମ
ଅପେକ୍ଷା କର କାଲି ତା କରିବ ଶ୍ରବଣ ।
ମୁନିବର ବଶିଷ୍ଠଙ୍କ ଶୁଣି ଏ ବଚନ
ରାଜା ଦଶରଥ ସହ ସର୍ବ ସଭାଜନ ।
ପରସ୍ପରେ ଯଥାଯୋଗ୍ୟ ନମସ୍କାର କରି
ସ୍ୱ ସ୍ୱସ୍ଥାନେ ଚଳିଗଲେ ସେ ଭଦ୍ରମଣ୍ଡଳୀ ।
ପରଦିନ ପ୍ରଭାତରେ ସର୍ବସଭ୍ୟ ଗଣ
ପ୍ରାତଃ କୃତ୍ୟ ସାରି କଲେ ସଭାକୁ ମଣ୍ଡନ ।
କହନ୍ତି ଶ୍ରୀରାମ ଶୁଣ ଆହେ ଗୁରୁଦେବ
ଶ୍ରୋତବ୍ୟ, ଜ୍ଞାତବ୍ୟ ଆଦି ଯାହାକିଛି ଥିବ,
ବିବେଚନା କରି ଦେବ ସକଳ ବୁଝାଇ
କହିବ ତା' ମୁଁ ତ କିଛି ଜାଣି ନ ପାରଇ ।
କହନ୍ତି ବଶିଷ୍ଠ ଶୁଣ ଆହେ ରଘୁବୀର
ନିଜକୁ କିପରି ତୁମେ ଅନୁଭବ କର ।
ସେ ସବୁ ମୋର ସମୀପେ ପ୍ରକାଶ କରିବ
ତେବେ ଯାଇ ମୋର ମନେ ଶାନ୍ତ ବିକଶିବ ।
ଶ୍ରୀରାମ କହନ୍ତି ଦେବ ନିର୍ବାଣ ଲଭିଣ
ପ୍ରଶାନ୍ତ କୃତାର୍ଥ ହୋଇଅଛି ମୁହିଁ ଜାଣ
କିଛିମାତ୍ର ଅଭିଳାଷ ଏବେ ମୋର ନାହିଁ
ତବ ଉପଦେଶ ଏତେ ଦିନେ ଫଳିଛଇଁ ।
ତେବେ ବିଶ୍ରାମ କରନ୍ତୁ ଏବେ ଗୁରୁଦେବ
ଜ୍ଞାତବ୍ୟ, ପ୍ରାପ୍ତବ୍ୟ ସବୁ ପାଇଛି ଜାଣିବ ।
ଜୀବ, ବ୍ରହ୍ମ ପାର୍ଥକ୍ୟ ମୋ ଏବେ ଦୂରୀଭୂତ
ମୋ ପାଇଁ ସରବେ ବ୍ରହ୍ମ ରୂପେ ପରିଣତ ।
ତେଣୁକରି ଗୁରୁଦେବ ଏ କଥା ଜାଣିମ
ସଂସାର ମଧରୁ ମୁହିଁ ହୋଇଛି ଉତ୍ତୀର୍ଣ୍ଣ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତରାର୍ଦ୍ଧେ ନିର୍ବାଣ ବର୍ଣ୍ଣନେ**
**ନାମ ୧୧୦ତମ ସର୍ଗଃ**



## ୧୧୧ତମ ସର୍ଗଃ
## ଦୃଶ୍ୟ ପରିମାର୍ଜନ

କହନ୍ତି ବଶିଷ୍ଠ ଆହେ ଶୁଣ ମହାବାହୁ
ଆଉକିଛି ଉପଦେଶ ଶୁଣ ମୋର ତହୁଁ ।
ଦରପଣ ବାରମ୍ବାର ମାର୍ଜିତ ହୋଇଲେ
ଅଧିକ ନିର୍ମଳ ହୁଏ ଜାଣିରଖ ଭଲେ ।
ନାମ ଓ ରୂପକୁ ଯେବେ କର ପରିତ୍ୟକ୍ତ
ଦୃଶ୍ୟଭାବ ଚିତାଭାସେ ହେବ ପରିଣତ ।
ତେତେବେଳେ ଏ ଜଗତ ହେବ ସ୍ୱପ୍ନବତ
ଧ୍ରୁବ ସତ୍ୟ ଏହା ଜାଣ ଆହେ ରଘୁନାଥ ।
ଏହିଭାବେ ଜଗତ୍ ମିଥ୍ୟା ହେଲେ ପ୍ରମାଣିତ
ସ୍ୱପ୍ନଦୃଷ୍ଟ ବସ୍ତୁପରି ହୁଅଇ ପ୍ରତୀତ ।
ସ୍ୱାପ୍ନିକ ବସ୍ତୁ ଯଦି ବା ପୃଥକ ଆକାରେ
ଦେଖାଯାଇ ଥାଏ ଜାଣ ଆହେ ରଘୁବୀରେ ।
ପ୍ରକୃତ ପକ୍ଷରେ ତାହା ଅଟଇ ଯେ ଜ୍ଞାନ
ଜ୍ଞାନକୁ କିଏ ବା କରିପାରିବ ଗୋପନ ।
ଚିଦାକାଶରେ ଜନମ ଏହି ଯେ ଜଗତ
ସ୍ୱପ୍ନସମ ଜାଣ ତାହା ଆହେ ରଘୁନାଥ ।
ବାସ୍ତବରେ ତାର କଉଣସି ରୂପ ନାହିଁ
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ସଦା ବିରାଜଇ ।
ଶ୍ରୀରାମ କହନ୍ତି ଶୁଣ ବ୍ରହ୍ମାଙ୍କ ନନ୍ଦନ
ପୃଥିବ୍ୟାଦି ପଞ୍ଚଭୂତ ଯେପରି ସପନ ।
ତାହାସବୁ ଦେବ ମୋତେ ହୋଇଛି ଗୋଚର
ସେ ବିଷୟେ ଆଉ କିଛି କହ ମୁନିବର ।
କହନ୍ତି ବଶିଷ୍ଠ ଶୁଣ ଏବେ ରଘୁବୀରେ
କ୍ଷିତିଆଦି ପଞ୍ଚଭୂତ ସ୍ୱପ୍ନ ସମୟରେ ।
କିପରି ଉତ୍ପନ୍ନ ହୁଏ କେ କରେ ନିର୍ମାଣ
ସେ ସବୁର ରୂପ କାର୍ଯ୍ୟ ଅଟଇ କେସନ ।
ସବିଶେଷ କରି ତାହା କହ ଏବେ ମୋତେ
ଅପାର ଆନନ୍ଦ ତହୁଁ ଲଭିବି ଯେମନ୍ତେ ।
ଶ୍ରୀରାମ କହନ୍ତି ଆହେ ଶୁଣ ତପୀଈଶ
ସ୍ୱାପ୍ନିକ ଜଗତ ଅଟେ କେବଳ ଆକାଶ ।
ସେହି ଜଗତରେ ଭୂମି ପର୍ବତ ଇତ୍ୟାଦି
କିଛି ସତ୍ୟ ନୁହେଁ ଜାଣ ଆହେ ତପୋନିଧି ।
ଠିକ୍ ତଦ୍ରୂପ ଅଟଇ ଏହି ଯେ ସଂସାର
ନାହିଁ ତ ଆକାର ତା'ର ନାହିଁ ତ ଆଧାର ।
ଜଗତ ଆକାରେ ଯାହା ପ୍ରକାଶ ପାଇଛି
ତାହାହିଁ ଚିତ୍ ଅଟଇ ବିଧାତାର ବସ୍ତି ।
ମନର ଆକୃତି ଧରି କରି ସେହି ଚିତ୍ତ
ଦରଶନ କରୁଅଛି ଯଥା ସ୍ୱପ୍ନବତ୍ ।
ଗିରି, ଜଳ, ଦିଗ, କାଳ ଇତ୍ୟାଦି ଯେତେକ
ତତ୍ତ୍ୱଜ୍ଞଙ୍କ ମତେ ଚିଦାକାଶ ସୁବିବେକ ।

ତରଳ ଭାବ ତେଜିଣ ଜଳ ଯେଉଁପରି
କଠିନ କରକାକୃତି ଧରେ ତପଋରୀ ।
ସଂବିତ ମଧ୍ୟ ତାଦୃଶ ନଭ ଭାବ ଧରି
ନଭ ରୂପେ ଅବସ୍ଥାନ କରେ ତପଋରୀ ।
କ୍ଷିତି ଆଦି ଦୃଶ୍ୟଭାବ ନାହିଁ ଏକବାରେ
ଅନନ୍ତ ଚିଦାକାଶ ହିଁ ରାଜେ ସେ ଆକାରେ ।
ଆବର୍ତ୍ତ ତରଙ୍ଗ ଫେନାକାରେ ସିନ୍ଧୁ ଜଳ
ପ୍ରକାଶ ପାଇଣଥାଏ ଆହେ ମୁନିବର ।
ସେହିପରି ଚିଦାକାଶ ନାନା ଆକୃତିରେ
ପ୍ରତିଭାତ ହୋଇଥାଏ ଜାଣ ତପୀବରେ ।
ନିଜକୁ ସ୍ଥୁଳ ମଣିଣ ସେହି ଚିଦାକାଶ
ପର୍ବତ ରୂପ ଧରି ସେ ହୁଏ ପରକାଶ ।
ଶୂନ୍ୟ ଜ୍ଞାନ କରି ହୋଇଥାଏ ସେ ଆକାଶ
ନିଜକୁ ତରଳ ମଣି ଧରେ ଜଳ ବେଶ ।
ସ୍ପନ୍ଦନ ଜ୍ଞାନ କରି ସେ ବାୟୁ ରୂପ ଧରେ
ତାପ ମଣି ସେ ଅନଳ ରୂପରେ ବିହରେ ।
ଏ ସମସ୍ତ ହୋଇମଧ୍ୟ ଚିତ୍ ସ୍ୱରୂପତା
କେବେ ହେଲେ ତ୍ୟାଗ କରେ ନାହିଁ ବ୍ରହ୍ମବେତ୍ତା ।
ଚିଦାକାଶ ଏ ଭାବେ ଯେ ଧରେ ନନାକୃତି
ତା' ପାଇଁ କାରଣ କିଛି ନାହିଁ ଆହେ ଯତି ।
ଏହାହିଁ ଚିଦାକାଶର ସ୍ୱଭାବ ହିଁ ଜାଣ
ଅନ୍ୟକିଛି ସାର ନାହିଁ ଚିଦ୍‌ଆତ୍ମା ଭିନ୍ନ ।
ସେହି ହେତୁ ଅହଂ ତ୍ୱଂ ଭାବ ପରିହରି
ଶାନ୍ତ, ଚିଦାକାଶ ରୂପେ ରହିବ ଯେପରି ।
ସେହି ପଥ ଧରି ଚଲୁଥିବା ହିଁ କର୍ତ୍ତବ୍ୟ
ସତେ କି ଏହି ତତ୍ତ୍ୱକୁ ବୁଝିବ ମାନବ ?
ଅହଂକାର ଚିତ୍ତ, ଭୂତ, ଦିଗ୍, ବୁଦ୍ଧି, ମନ
ଏ ସକଳ ଚିଦାକାଶ ଆହେ ତପୋଧନ ।
ସ୍ୱରୂପତଃ ସେ ଅଟନ୍ତି ସ୍ଥିର ନିର୍ବିକାର
ଏ ରୂପରେ ତାଙ୍କୁ ଯଦି କରିବ ବିଋର,
ତେବେ ବୁଝିବ ଏ ଭବେ କିଛି ନ ଜନ୍ମଇ
କାହାରି ବିନାଶ ମଧ୍ୟ କେଭେଁ ନ ଘଟଇ ।
ଚଇତନ୍ୟ ରୂପୀ ଏକ ବ୍ରହ୍ମ ହିଁ କେବଳ
ଏ ସବୁ ଆକାରେ ପରକାଶ ମୁନିବର ।

ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ
ଉତ୍ତରାର୍ଦ୍ଧେ ଦୃଶ୍ୟ ପରିମାର୍ଜନ ବର୍ଣ୍ଣନେ
ନାମ ୧୧୧ତମ ସର୍ଗଃ



## ୧୧୨ତମ ସର୍ଗଃ

### ଚିଦାକାଶେ ଜଗତ ଏକତା ପ୍ରତିପାଦନ

କହୁଛନ୍ତି ରାମଚନ୍ଦ୍ର ଆହେ ତପୀଈଶ
ଜାଗ୍ରତ କାଳରେ ମଧ୍ୟ ଏ ପରମାକାଶ,
ଯେଉଁପରି ଦୃଶ୍ୟାକାରେ ହୁଅନ୍ତି ପ୍ରକାଶ
ନିଃସନ୍ଦେହେ ସ୍ୱପ୍ନକାଳେ ହୁଅନ୍ତି ତାଦୃଶ ।
କିନ୍ତୁ ନିରାକାର ଚିତ ଏ ଉଭୟକାଳେ
କିପରି ଶରୀର ଧରେ କହ ତପୀବରେ ?
କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ପୃଥିବ୍ୟାଦି ପଞ୍ଚଭୂତେ ଶରୀର ଗଠନ ।
ସେହି ପଞ୍ଚଭୂତ ସ୍ଥିତି ଯେଣୁ କରି ନାହିଁ
ଦେହ କିପରି ସମ୍ଭବି ପାରିବ ଗୋସାଇଁ ?
ବସ୍ତୁତ ଶରୀରାକାରେ ସେହି ଚିଦାକାଶ
ପ୍ରକାଶ ପାଉଅଛଇ ହେ ରଘୁବିଳାସ ।
ଚିଦାକାଶ ହିଁ ଅଟଇ ଯାହାର ବିକାଶ
ସ୍ୱପ୍ନସମ ସେହୁ ଧରେ ଶରୀର ଆଭାସ ।
ତହିଁ ମଧ୍ୟେ ହୁଅନ୍ତି ସେ ଶରୀର ସମ୍ପନ୍ନ
ଚିଦାତ୍ମା ହିଁ ନାନାରୂପ କରଇ କଳ୍ପନ ।
କ୍ଷିତି, ଅପ, ଆଦି କରି ନାମ ରୂପମାନ
ଉଦିତ ହୁଅନ୍ତି ତହିଁ ହେ ରଘୁନନ୍ଦନ ।
ଚିତ୍‌ର ଯେଉଁ ପ୍ରକାଶ ଜାଣ ରଘୁନାଥ
ସ୍ୱପ୍ନ, ଜଗତ ନାମରେ ତାହା ପରିଚିତ ।
ଆକାଶ ରୂପକୁ ଧରି ଥାଏ ତା ପ୍ରକାଶ
ସେହି ନିଜେ ସର୍ବ ସୃଷ୍ଟି ଆହେ ରଘୁଈଶ ।
ଶ୍ରୀରାମ କହନ୍ତି ଶୁଣ ଆହେ ତପୋଧନେ
ଲୀଳା ଉପାଖ୍ୟାନେ ପୁଣି ଭୃଷଣ୍ଡୋପାଖ୍ୟାନେ,
କୋଟୀ କୋଟୀ ସୃଷ୍ଟି ତୁମେ କରିଛ ବର୍ଣ୍ଣନେ
ଯେଉଁ ବ୍ରହ୍ମାଣ୍ଡରେ ଆମେ କରୁ ଅବସ୍ଥାନ,
ତାହା ବିଷୟରେ କିଛି କରନ୍ତୁ ବର୍ଣ୍ଣନ
ବଦଳିଯିବ ଏ ଭାଗ୍ୟ କରି ତା ଶ୍ରବଣ ।

କହନ୍ତି ବଶିଷ୍ଠ ଶୁଣ କୌଶଲ୍ୟା ତନୟେ
କୌତୂହଳ ଜନ୍ମିଥାଏ ଅଜ୍ଞାତ ବିଷୟେ ।
ଅପୂର୍ବ, ଅଦୃଷ୍ଟ ପୁଣି ଅଶ୍ରୁତ ବିଷୟ
ଦେଖିବାକୁ ଶୁଣିବାକୁ ହେ ରଘୁତନୟ,
ପ୍ରୀତିକର, ସୁଖକର ହୁଏ ସଦାକାଳ
ଚିତ୍ତାକର୍ଷକ ହୁଅଇ ସବୁ ଜନଙ୍କର ।
କିନ୍ତୁ ଯେ ଆମର ଏହି ବ୍ରହ୍ମାଣ୍ଡ ଅଟଇ
ବହୁତ ବର୍ଣ୍ଣନା ଶାସ୍ତ୍ର ମୁନି କରିଛନ୍ତି ।
ସେ ସକଳ ରାମ ତୁମେ ଅଛ ଅବଗତ
ଅତିରିକ୍ତ କିଛି ନାହିଁ ଯାହା ତୁମ ଜ୍ଞାତ ।
ଏ ବିଷୟେ ଆଉ କିଛି ତୁମକୁ ମୋହର
କହିବାକୁ ନାହିଁ ଜାଣ ଆହେ ରଘୁବୀର ।
ଶ୍ରୀରାମ କହନ୍ତି ସେହି ଚିଦାକାଶ ଦେବ
କିପରି ବ୍ରହ୍ମାଣ୍ଡ ମୂର୍ତ୍ତି ଧରିଲା କହିବ ।
କେତେକାଳ ଏହି ଭାବେ ରହିବ ଯେ ସେହି
କି ହେବ ତା ପରିଣାମ କହ ତା ବୁଝାଇ ।
କହନ୍ତି ବଶିଷ୍ଠ ଏବେ ଶୁଣ ହେ ଶ୍ରୀରାମ
ପରମ ଆକାଶରୂପୀ ଅନନ୍ତ ସେ ବ୍ରହ୍ମ ।
ଅନାଦି, ଅବ୍ୟୟ ପୁଣି ସେହୁ ଅବିନାଶୀ
ବାକ୍ୟ ନାହିଁ କହିବାକୁ ତାହାକୁ ପ୍ରକାଶି ।
ଯେଣୁ କରି ଏହି ବିଶ୍ୱ ତାହାର ବିବର୍ତ୍ତ
ତାର ମଧ୍ୟ ଆଦି ଅନ୍ତ ନାହିଁ ରଘୁନାଥ ।
ସପନରେ ନଗ୍ର ଯଥା ହୁଏ ଦୃଶ୍ୟମାନ
ଚିଦାକାଶର ସେପରି ହୁଏ ଯେଉଁ ଭାନ,
ଜଗତ ନାମ ତହାର ଜାଣ ରଘୁନାଥ
କେବେ ବି ହୋଇପାରିବ ସେ ନିଜେ ଜଗତ ?
ଆକାଶ, ସଲୀଳ, କାଳ, ପର୍ବତ ପ୍ରଭୃତି
ତା'ର ତହିଁ କିଛି ନାହିଁ, ଜାଣ ରଘୁପତି ।
ଯେହେତୁ ବୋଧସ୍ୱରୂପ ଅଟେ ସେ ମହାନ
ତାହା ତାର ମଧ୍ୟେ ହୋଇଥାଏ ପ୍ରକାଶନ ।
ସପନେ ପର୍ବତ ପରି ଯେପରି ଆକାଶ
ବ୍ରହ୍ମ ମଧ୍ୟେ ଜଗତର ସେପରି ବିଳାସ ।
ଚିଦାକାଶ ଆପଣାକୁ ଯେ ଭାବେ ଦେଖଇ
ସେହି ଅନୁଭବ ନାମ ଜଗତ ଅଟଇ ।
ତେଣୁ କରି ଜଗତର ନ ଥାଏ ଆକାର
କାରଣ ଅଭାବ ଯେଣୁ ରହି ରଘୁବୀର ।
ପ୍ରକାଶ ବା ଅପ୍ରକାଶ ବ୍ରହ୍ମ ଜଗତର
କିଛି ନାହିଁ ଜାଣିରଖ ଆହେ ରଘୁବୀର ।
ବ୍ରହ୍ମରେ ଜଗତ ଅଛି କହି ତ ନୁହଇ
ବ୍ରହ୍ମରେ ଜଗତ ନାହିଁ କେ ପାରିବ କହି ?
ଏହି ଅନାଦି ଅନନ୍ତ ବ୍ରହ୍ମ ହିଁ କେବଳ
ସଂକଳ୍ପ ବେଳେ ପ୍ରକାଶେ ସର୍ବ ରୂପ ତାର ।
ପ୍ରଳୟ କାଳ ପର୍ଯ୍ୟନ୍ତ ଏହି ଭାବେ ରାମ
ଆମ ବ୍ରହ୍ମାଣ୍ଡର ସ୍ଥିତି ରହିବ ଅକ୍ଷୁର୍ଣ୍ଣ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ଚିଦାକାଶ ଜଗତ୍, ଏକତା ପ୍ରତିପାଦନ ବର୍ଣ୍ଣନେନାମ ୧୧୨ତମ ସର୍ଗଃ**



## ୧୧୩ତମ ସର୍ଗଃ
## ମହାପ୍ରଶ୍ନ

କହନ୍ତି ବଶିଷ୍ଠ ଶୁଣ ରଘୁକୁଳ ଦୀପ
ଏ ଧରାରେ ଅଛି କୁଶ ଦ୍ୱୀପ ନାମେ ଦ୍ୱୀପ ।
ସେ ଦ୍ୱୀପରେ ଇଳାବତୀ ନାମେ ଏକ ଗ୍ରାମ
ପ୍ରଜ୍ଞାପ୍ତି ନାମରେ ରାଜା ତହିଁଥିଲେ ଜାଣ ।
କାର୍ଯ୍ୟବଶ ଦିନେ ରାଜା ନିକଟକୁ ଗଲି
ପାଦ୍ୟଅର୍ଘ୍ୟ ଆଦି ପୂଜା ଅର୍ଚ୍ଚନା ପାଇଲି ।
ରାଜା ପଚରନ୍ତି ମୋତେ କହ ମୁନିବରେ
ସକଳ ବିଲୟ ଯାନ୍ତି ଯେଣୁ ପ୍ରଳୟରେ,
ପରମ ଆକାଶେ ସର୍ବେ ହୁଅନ୍ତି ମିଳିତ
ତହୁଁ ପୁନଃ ସୃଷ୍ଟିଜାତ ହୁଏ ବା କେମନ୍ତ ?
କାର୍ଯ୍ୟ, କାରଣ ସରବ ଶବ୍ଦର କଳ୍ପନା
ବିଲୀନ ହୋଇଣ ଯାନ୍ତି ଆହେ ମହାମନା ।
ମହା ଆକାଶର ସତ୍ତା କେବଳ ସେକାଳେ
ଅବଶିଷ୍ଟ ରହିଯାଏ ଯେଣୁ ତପୀବରେ,
ଅବାଚ୍ୟରେ ମହାକାଶ, ତା' ତହୁଁ କିପରି
ପୁଣି ସୃଷ୍ଟି ସଞ୍ଚରଇ କହ ତପଚାରୀ ?
ନିମିତ୍ତ କାରଣ ସତ୍ତା ତହିଁ ତ ନଥାଇ
ଉପାଦାନର କାରଣ ଅସମ୍ଭବ ତହିଁ ।
ସୃଷ୍ଟି ସର୍ଜନା କିପରି ହୁଅଇ ହେ ଦେବ ?
ଦୟାକରି ଏହା ମୋତେ ବୁଝାଇ କହିବ ।

ଶ୍ରୁତି ପୁରାଣ ଇତ୍ୟାଦି କହନ୍ତି ଏମନ୍ତ
ମହାପ୍ରଳୟରୁ ସୃଷ୍ଟି ହୁଏ ସଞ୍ଚାରିତ
ଦ୍ୱିତୀୟ ପ୍ରଶ୍ନ ମୋହର ଶୁଣ ମୁନିବର
ଧର ଜମ୍ବୁଦ୍ୱୀପେ ମୃତ୍ୟୁ ହେଲା ଜଣକର ।
ଶରୀର ତ ତାର ହୋଇଯାଏ ଭସ୍ମ ତହିଁ
ପରଲୋକେ ଦୁଃଖ ସୁଖ ପରେ ସେ ଭୋଗଇ ।
ଯେଉଁ ଶରୀରରେ ତାହା ଭୋଗ ସେ କରଇ
ସେ ଶରୀରର କାରଣ କିଛି ତ ନଥାଇ ।
ଯଦି କୁହାଯାଏ ପାପ ପୁଣ୍ୟ ତା' କାରଣ
ସେହି ପାପ ପୁଣ୍ୟ ସ୍ୱୟଂ ନିରାକାର ଜାଣ ।
ନିରାକାରରୁ ସାକାର ଶରୀର କିପରି
ସମ୍ଭବ ହୋଇପାରିବ କହ ତପଚାରୀ ?
ଯଦି ଧରାଯାଏ ପାପ, ପୁଣ୍ୟ, ପରଲୋକ
କାହାରି ସତ୍ତା ନଥାଇ ହେ ମୁନି ନାୟକ ।
ଏପରି ସିଦ୍ଧାନ୍ତ ଜାଣ ଶ୍ରୁତି ପୁରାଣର
ବିରୋଧ କରୁଅଛନ୍ତି ଆହେ ତପୀବର ।
ଶ୍ରୁତି ପୁରାଣ କହନ୍ତି ମୃତ୍ୟୁ ପରେ ଜୀବ
ପରଲୋକେ ଯାଇ ସେହୁ କରୁଥାଏ ଠାବ ।
କର୍ମ ଅନୁସାରେ ଫଳ ଭୋଗଇ ସେ ତହିଁ
ସେ ଭୋଗ ଶରୀର ତା'ର ସମ୍ଭବିବ କାହିଁ ?
ନଥାନ୍ତି ଜନନୀ କିମ୍ବା ନ ଥାନ୍ତି ପିଅର
କିପରି ଭାବେ ଉତ୍ପତ୍ତି ହେବ ସେ ଶରୀର ?
ତୃତୀୟ ପ୍ରଶ୍ନ ମୋହର ଶୁଣ ମୁନିବର
ପରଲୋକେ ଗଲେ ଜୀବ ତେଜି କଳେବର ।
ଯେଉଁ ଦାନ, ପୁଣ୍ୟ ସବୁ ହୁଏ ତାହା ପାଇଁ
କିପରି ମିଳଇ ତାକୁ କହ ହେ ଗୋସାଇଁ ।
ଏବେ ମୋ ଚତୁର୍ଥ ପ୍ରଶ୍ନ ଶୁଣ ତପୋଧନ
ମହାପ୍ରଳୟାନ୍ତେ ଯେଉଁ ବ୍ରହ୍ମା ଉତପନ୍ନ ।
ସ୍ୱୟମ୍ଭୁ ନାମ ତାଙ୍କର କିପରି ହୋଇବ
ମହାପ୍ରଳୟେ ଯେଣୁ ସେ ଜନ୍ମ ନୋହିଥିବ ?
ମହାପ୍ରଳୟାନ୍ତେ ଶେଷ ଅଦ୍ୱୈତ କେବଳ
ଅବଶେଷ ରହିଥାନ୍ତି ସିନା ମୁନିବର ।
ତାଙ୍କ ତହୁଁ ଉତପନ୍ନ ହୋଇଥାଏ ଯା'ର
ସ୍ୱୟମ୍ଭୁ ବୋଲାଇବେ ସେ କେଉଁ ଯୁକ୍ତିବଳ ?
ଯଦି କିଛି ଆପେ ଆପେ ସ୍ୱୟମ୍ଭୁ ଜନ୍ମନ୍ତି
ଆତ୍ମାମଧ ଆପେ ଆପେ ଜନ୍ମ ଲଭିଥାନ୍ତି ।

ସର୍ବପ୍ରାଣୀଠାରେ ଯେହୁ ଆପେ ଆପେ ସ୍ଥିତ
ତାଙ୍କ ତହୁଁ ବ୍ରହ୍ମା କିମ୍ପା ନୋହିବେ ସମ୍ଭୂତ ?
ଏବେ ଶୁଣ ମୋ ପଞ୍ଚମ ପ୍ରଶ୍ନର ଚରିତ
ଜନୈକ ଲୋକର ଥାଏ ଏକ ଗୋଟି ମିତ୍ର ।
ଆଉ ମଧ୍ୟ ଥାଏ ତାର ଏକଇ ବଇରୀ
ଉଭୟେ ପ୍ରୟାଗ କ୍ଷେତ୍ରବରେ ଗଲେ ଚଳି ।
ଉଭୟେ ଝାସ ଦିଅନ୍ତି ସେହି କ୍ଷେତ୍ରବରେ
ମନ ମଧ୍ୟେ ରଖି ବାଞ୍ଛା ଏମନ୍ତ ପ୍ରକାରେ ।
'ଚିରଜିବୀ' ହେଉ ମୋର ମିତ୍ର, ଏହା ଭାବି
ପ୍ରୟାଗ ଜଳରେ ମିତ ଯାଏ ତାର ବୁଡ଼ି ।
ଶତୃଭାବେ ତା'ର ଶତୃ ସେହି ମୁହୂର୍ତ୍ତରେ
ପ୍ରାଣ ତେଜି ଚଳିଯାଉ ଶମନ ନଗରେ ।
ବିପରୀତାର୍ଥ ବୋଧକ ଉଭୟ ଉଦ୍ଦେଶ୍ୟ
କିପରି ଏକ ସମୟେ ଘଟିବ ମୁନିଶ ?
ଏବେ ଷଷ୍ଠ ପ୍ରଶ୍ନ ମୋର ଶୁଣ ମୁନିବର
ଧ୍ୟାନେ ମଗ୍ନ ହୋଇ ଯଦି ଏକସହସ୍ର ନର ।
ଇଚ୍ଛନ୍ତି ଆକାଶେ ଚନ୍ଦ୍ର ହୋଇ ବିରାଜିବେ
ସମ୍ଭବି ପାରେ କି ତାହା କହ ମୁନି ଏବେ ?
ଏକ ରମଣୀ କି ଲକ୍ଷକରି ସହସ୍ରନର
ପତ୍ନୀଭାବେ ଲଭିବାକୁ ଇଚ୍ଛିବେ ସତ୍ୱର ।
ପତିବ୍ରତାଧର୍ମଧାରୀ ଯେଣୁ ସେହି ନାରୀ
ଏକାବେଳେ ସହସ୍ରଭର୍ତ୍ତା ହେବେ ତା' କିପରି ?
ଅଷ୍ଟମ ପ୍ରଶ୍ନଟି ମୋର ଶୁଣ ତପିବର
ଏକ ପୁରୁଷ ଲଭିଣ ଥିଲା ଏହି ବର ।
"ଏବେ ତୁ ଯାଇଣ କର ମୃତ୍ୟୁକୁ ବରଣ"
ସପ୍ତଦ୍ୱୀପ ରାଜା ହୋଇ କର ତା' ପାଳନ ।
ଅଭିଶାପ ଦିଏ ତାକୁ ଅନ୍ୟ ଏକ ଜନ
"ତା ଜୀବାତ୍ମା ରହିଥିବା ତା' ଗୃହ ମଧ୍ୟେଣ ।
ମୃତ୍ୟୁପରେ ବାହାରକୁ ଯାଇ ନ ପାରିବ
ଗୃହାକାଶ ମଧ୍ୟେ ସଦା ଆବଦ୍ଧ ରହିବ ।
ଆଜ୍ଞା ! ଗୃହାକାଶ ମଧ୍ୟେ ଆବଦ୍ଧ ଥାଇଣ
ସପ୍ତଦ୍ୱୀପ ଅଧିକାରୀ ହେବ ସେ କେସନ ?
ବର, ଅଭିଶାପ, ଫଳ ଏକ ସମୟରେ
କିପରି ଫଳି ପାରିବ କହ ମୁନିବରେ ?
କାଠ ଖମ୍ବ ଦେଖି ଜଣେ ଏମନ୍ତ କହଇ
"ଅବିଳମ୍ବେ ସ୍ୱର୍ଣ୍ଣ ଖମ୍ବ ପାଲଟିବ ଏହି" ।

ଦେଖୁ ଦେଖୁ ହୋଇଯାଏ ତାହା ସ୍ୱର୍ଣ୍ଣଖମ୍ବ
କାଠ, ସୁନା ପାଲଟିବା କିପରି ସମ୍ଭବ ?
କାଠ, ସୁନା ପାଲଟିବା କାରଣ ନ ଥାଇ
କିପରି ସମ୍ଭବ ହେଲା କହ ତପିସାଇଁ ?
କାରଣ ନ ଥାଇ କାର୍ଯ୍ୟ କିପରି ସମ୍ଭବ ?
ବୁଝାଇ କହିବା ହେଉ ହେ ମୁନି ପୁଙ୍ଗବ !
ଧାନ ବୁଣିଲେ ଅବଶ୍ୟ ଧାନ ହିଁ ଫଳିବ
ହରଡ଼ ବୁଣିଲେ କାହୁଁ ଧାନ ବା ମିଳିବ ?
ହରଡ଼ ବୁଣିଲେ ଯଦି ଧାନ ଫଳୁଥାନ୍ତା
ତେବେ ସିନା କାଠ ଖମ୍ବ ସୁନା ପାଲଟନ୍ତା ।
ସଂକଳ୍ପ ବଳେ ଯଦି ବା ତାହା ସମ୍ଭବିବ
ମୋ ସଂକଳ୍ପେ କହ କିମ୍ପା ଫଳ ନ ଫଳିବ ?
ତେଣୁ ହେ ମୁନୀଶ ଏହା ହୁଏ ଅନୁମିତ
ସଂକଳ୍ପ ଫଳ ଫଳିବା ନୁହଇ ନିଶ୍ଚିତ ।
ମୋର ଏ ସବୁ ସଂଶୟ ଆହେ ମୁନିବର
ଦୟାକରି ଅବିଳମ୍ବେ କରିଦିଅ ଦୂର ।
ମହାନଙ୍କ ଦରଶନ ନ ହୁଏ ନିଷ୍ଫଳ
ନିରାଶ ନ କର ମୋତେ ହେ ଜ୍ଞାନୀ ପ୍ରବର ।

**ଇତି ଶ୍ରୀ ଯୋଗବାଶିଷ୍ଠେ ଉତ୍ତରଖଣ୍ଡେ
ନିର୍ବାଣ ପ୍ରକରଣେ ମହାପ୍ରଶ୍ନ ବର୍ଣ୍ଣନେ
ନାମ ୧୧୩ତମ ସର୍ଗଃ**



## ୧୧୪ତମ ସର୍ଗଃ
## ମହା ପ୍ରଶ୍ନ ଉତ୍ତର୍

କହନ୍ତି ବଶିଷ୍ଠ ରାଜା ଯେପରି ଭାବରେ
ତୁମର ସଂଶୟ ଦୂରୀଭୂତ ହୋଇପାରେ ।
ସେହିପରି ଭାବେ ତୁମ ପ୍ରଶ୍ନର ଉତ୍ତର
ଦେଉଛି ଶ୍ରବଣ କର ଆହେ ନୃପବର ।
ଭାବନା ପ୍ରଭାବେ ଜାଣ ଏହି ଜଗତରେ
ବସ୍ତୁ ଅସତ କି ଅବା ସତ ହୋଇପାରେ ।
ଯାହାକୁ କି ସତ ବୋଲି ଭାବିବ ମନରେ
ପ୍ରକାଶ ଲଭଇ ତାହା ସତ ଆକାରରେ ।
ଅସତ ବୋଲି ଭାବିବ ଯାହାକୁ ରାଜନ
ତାହା ହିଁ ଅସତ ହେବ ଧ୍ରୁବ ଏ ବଚନ ।
ଭାବାନମୟ ଯେହେତୁ ସଂବିତ ସ୍ୱଭାବ
ଉଲ୍ଲିଖିତ ଯେ ଘଟଣା ଘଟିବା ସମ୍ଭବ ।
ଭାବନା ବଳରୁ ଯେଣୁ ଏ ଦେହ ଗଠନ
ସଂବିତ ନିଜେ ସେ ଦେହ, ବୋଲି କରେ ଜ୍ଞାନ ।
ଭାବନାମୟ ସଂବିତ୍ ଅଟେ ଏହି ଦେହ
ଅନ୍ୟକିଛି ନୁହେଁ ତାହା ଏହା ନିଃସନ୍ଦେହ ।
କାରଣ ଅଭାବ ହେତୁ ଜଗତ ବୋଲିଣ
କୌଣସି ବସ୍ତୁ ଉଦ୍ଭୂତ ନୁହଇ ରାଜନ ।
ଚିନ୍ମୟ ଆତ୍ମା ହିଁ ଜାଣ ଜଗତ ସ୍ୱପନ
ଦର୍ଶନ କରୁଅଛଇ କୁଶଦ୍ୱୀପ ରାଣ ।
ବାସ୍ତବରେ ପରିଦୃଶ୍ୟମାନ ଏ ଜଗତ
ଅନ୍ୟକିଛି ନୁହେଁ ଆତ୍ମା-ସ୍ୱପନ ବ୍ୟତୀତ ।
ଏହି ନିର୍ବିକାର ବ୍ରହ୍ମ ଜଗତ ଆକାରେ
ପ୍ରକାଶ ପାଉଅଛନ୍ତି ଜାଣ ନରବରେ ।
ବେଦାଦି ସକଳ ଶାସ୍ତ୍ରେ ଏହାହିଁ ମିଳିବ
ଆମ ଅନୁଭବ ସିଦ୍ଧି ତାହାହିଁ ଜାଣିବ ।
ଜଗତର ଜ୍ଞାନ-ସ୍ୱରୂପତା ନ ବୁଝିଣ
ଜ୍ଞାନକୁ ମଣେ ଅନିତ୍ୟ ଶରୀରର ଧର୍ମ ।
ସେ ଅଜ୍ଞ ଅନ୍ଧଗଣଙ୍କ ସହ ଆମ୍ଭେମାନେ
ବାକ୍ୟାଲାପ କରୁନାହିଁ ଜାଣ କଦାଚନେ ।
ଆତ୍ମ ଚୈତନ୍ୟ ହିଁ ଯଦି ଶରୀର ଆକାରେ
ପରିଣତ ହୋଇଥାଏ ଆହେ ନୃପବରେ ।
ତେବେ ଏ ଶବ ଶରୀର ଚଇତନ ଯୁକ୍ତ
ହୋଇ ନ ଥାଏ କିମ୍ପାଇ କୁଶଦ୍ୱୀପ ନାଥ ?
ମୂର୍ଖମାନଙ୍କର ଏହି ଆଶଙ୍କା ଉତ୍ତର
ସମୁଚିତ ଭାବେ ଦିଏ ଆହେ ନରବର ।
ସ୍ୱପ୍ନକାଳେ ନଗ୍ରମାନ ଦେଖ ଯେଉଁପରି
ହିରଣ୍ୟ-ଗର୍ଭ ନାମକ ବ୍ରହ୍ମ ସେହିପରି ।
ସଂକଳ୍ପ ପ୍ରଭାବେ ଯାହା କରଇ ଦର୍ଶନ
ତା ଅଟେ ଏହି ଜଗତ, ପରିଦୃଶ୍ୟ ମାନ ।
କହିବାକୁ ଗଲେ ଏହା ଚିତ୍‌ର ସ୍ୱରୂପ
ସ୍ୱପ୍ନ ନଗ୍ରେ ପଦାର୍ଥର ଜ୍ଞାନ ଯେଉଁରୂପ ।
ଚଇତନ୍ୟ ବୋଲି ତାହା ମନେ ହୁଏ ନାହିଁ,
ଶବ ଦେହେ ତଥା ଚଇତନ୍ୟ ଦୃଶ୍ୟ ନୋହି ।
ସଂକଳ୍ପ ନଗ୍ରେ ତୁମର ଯାହା ସଂକଳପ
ତାହାହିଁ ଯେପରି ଅନୁଭୂତ ହୁଏ ନୃପ ।

ହିରଣ୍ୟ-ଗର୍ଭ ନିଜର ସଂକଳ୍ପ ବଳରେ
ସଂକଳ୍ପ ସମ୍ଭୂତ ଏହି ଜଗତ ମଧ୍ୟରେ,
"ସ୍ପନ୍ଦିତ ହୋଇବ ଏହି ଜୀବିତ ଶରୀର
ଶବ ଶରୀର ସ୍ପନ୍ଦିତ ନୋହିବ ଆବର,"
ଏହି ରୂପ କଳପନା ଯା କରି ଅଛଇ
ତାହା ଅନୁଭୂତ ହେଉଅଛି ନରସାଇଁ ।
ତାହାର ସଂକଳ୍ପମୟ ଏହି ଯେ ଜଗତ
ମହାପ୍ରଳୟ ପର୍ଯ୍ୟନ୍ତ ରହେ ବିରାଜିତ ।
ପ୍ରଳୟ ପରେ ଉଭୟ କାରଣ ଓ କାର୍ଯ୍ୟ
ସମସ୍ତ ବିଲୁପ୍ତ ହୁଏ ଜାଣ ଆହେ ଆର୍ଯ୍ୟ ।
ପରଂବ୍ରହ୍ମ କେଉଁପରି ରଚେ ଏ ଜଗତ
ଏହି ପ୍ରଶ୍ନ ପଚାରିଛି ଆହେ ନରନାଥ ।
ଆମ୍ଭମାନଙ୍କ ସିଦ୍ଧାନ୍ତ ଏହି ଯେ ନରେଶ
ସ-ପ୍ରକାଶ ବ୍ରହ୍ମ ଜଗତ୍ ଆକାରେ ପ୍ରକାଶ ।
ତାଙ୍କଛଡ଼ା ବସ୍ତୁମୟ ଜଗତ୍ କିଛି ନାହିଁ
ହିରଣ୍ୟ-ଗର୍ଭ ସ୍ୱରୂପେ ବ୍ରହ୍ମ ପ୍ରକାଶଇ ।
ଆପଣା ଆକାଶମୟ ରୂପକୁ ରାଜନ
ଜଗତ ଆକାରେ ସେହୁ କରେ ଦରଶନ ।
ଏଥିପାଇଁ ମୃତ୍ୟୁ ପରେ ସର୍ବ ଜୀବ ଗଣ
ଚିଦାକାଶେ, ଜଗତକୁ କରନ୍ତି ଦର୍ଶନ ।
ତତ୍ତ୍ୱଜ୍ଞଙ୍କ ପାଇଁ ଦେଶକାଳ ଯେଉଁ ପରି
ପ୍ରତିଭାତ ହୁଏ ନାହିଁ ଆହେ ଦଣ୍ଡଧାରୀ,
ସେହିପରି ମୃତ ଜୀବ ପାଇଁ ଇହଲୋକ
ଦେଶ, କାଳ, ଆଦି କିଛି ନୁହଇ ପ୍ରତ୍ୟକ୍ଷ ।
ପରନ୍ତୁ ଚିଦାକାଶ ହିଁ ତାର ସମକ୍ଷରେ
ପରକାଶ ହୋଇଥାଏ ଜଗତ ଆକାରେ ।
ଇହଲୌକିକ ଜଗତ ସମ ସେ ଜଗତ
ପରିଦୃଷ୍ଟ ହେଉଥାଏ ଆହେ ନରନାଥ ।
"ହେଇ ଏବେ ହେଲା, ମୋର ରାମନାମ ସତ୍ୟ
ହେଇ ମୁଁ କରୁଚି କୁଆଁରବ ଉଚ୍ଚାରିତ ।
ହେଇ ମୋତେ ଯମଗଣ ନେଉଛନ୍ତି ଧରି
ବେକରେ ଲାଗିଛି ମୋର ଚମର ଦଉଡ଼ି ।
ଶୁଭାଶୁଭ କର୍ମଫଳ ଭୋଗୁଅଛି ମୁହିଁ
ଏ ରୂପ ଭ୍ରମ ଦର୍ଶନ ଜୀବ କରୁଥାଇ ।"
ମୁକ୍ତିକୁ ହେଲା କରିଣ କାଟେ ଯେହୁ ଦିନ
ତାର ଏ ଭ୍ରମ ନିବୃତ୍ତ ନୁହେଁ କଦାଚନ ।

ତତ୍ତ୍ୱଜ୍ଞାନ ପାଇ ଯେହୁ ବାସନା ବିହୀନ
ସ୍ପର୍ଶ କରି ନ ପାରଇ ତାକୁ ଏହି ଭ୍ରମ ।
ବିହିତ, ନିଷିଦ୍ଧ କର୍ମ-ଅନୁଭବ ମାନ
ଅଜ୍ଞ ଯାହା ଅନୁଭବ କରେ ହେ ରାଜନ ।
ଧର୍ମ ଅଧର୍ମ ବାସନା ବୋଲି ତାକୁ କହି
ଚିଦାକାଶେ ତା ଆକାଶ ରୂପେ ରହିଥାଇ ।
ଯଥା ସମୟରେ ପୁଣି ଜଗତ ଆକାରେ
ପ୍ରତ୍ୟକ୍ଷ ହେଉଣ ଥାଏ ଆହେ ନରବରେ ।
ତେଣୁଟି ଆକାଶମୟ ହେଲେହେଁ ଜଗତ
କେବେ ହେଲେ ହୋଇ ନ ପାରଇ ସେ ଅସତ ।
ବ୍ରହ୍ମ ଚୈତନ୍ୟ କେବଳ ଏପରି ଆକାରେ
ପ୍ରକାଶ ପାଉ ଅଛଇ ଆହେ ନରବରେ ।
କେବଳ ଏହାକୁ ଜାଣି ନ ପାରନ୍ତି ଯେଣୁ
ସକଳ ଅନର୍ଥ ଆସି ଜୁଟି ଯାନ୍ତି ତେଣୁ ।
ଏହି ଜ୍ଞାନ ହୋଇଅଛି ଯାହାର ଉଦ୍ଭବ
କଲ୍ୟାଣମୟ ବ୍ରହ୍ମ ହିଁ ତା ପାଇଁ ଏ ଭବ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ମହା ପ୍ରଶ୍ନ ଉତ୍ତର ବର୍ଣ୍ଣନେ ନାମ ୧୧୪ତମ ସର୍ଗଃ**



## ୧୧୫ତମ ସର୍ଗଃ
## ମହାପ୍ରଶ୍ନ ମୋକ୍ଷଣ

କହନ୍ତି ବଶିଷ୍ଠ ଆହେ ପ୍ରଜ୍ଞପ୍ତି ରାଜନ
ଦୂରଦେଶସ୍ଥ ରାଜାର ଆଦେଶ ଯେସନ ।
ଅନ୍ୟ ଦେଶ ପ୍ରଜା ଭୋଗେ ଶୁଭାଶୁଭ ଫଳ
ତାହାର କାରଣ ଶୁଣ ଆହେ ନରବର ।
ସଙ୍କଳ୍ପ ନଗ୍ରେ ଯା ଯେଉଁଭାବେ ସଙ୍କଳ୍ପିତ
କାଳକ୍ରମେ ତା ସେପରି ହୁଏ ଅନୁଭୂତ ।
ଆପଣଙ୍କ ସଙ୍କଳପ ନିର୍ମିତ ପୁରୀରେ
ଯେପରି ସଙ୍କଳ୍ପକର, ଦେଖ ସେ ପ୍ରକାରେ ।
ବ୍ରହ୍ମସଙ୍କଳ୍ପ ସମ୍ଭୂତ ଜଗତେ ସେପରି
ସଙ୍କଳ୍ପ ବଳରେ ତା'ର ସବୁ ହୋଇପାରି ।
ଶୁଭାଶୁଭ କର୍ମଫଳ ପ୍ରଜା ଯା ଭୋଗଇ
ତପୀ ବର, ଅଭିଶାପ ଯେଉଁ ଫଳ ଦେଇ,
ବ୍ରହ୍ମର ସଙ୍କଳ୍ପ ବଳେ ଜାଣ ହେ ରାଜନ
ସେହି ସବୁ ଶୁଭାଶୁଭ ଫଳ ଘଟେ ଜାଣ ।

ଜଗତ୍ ଉପଲବ୍ଧି ପୂର୍ବକାଳେ ପ୍ରାଣୀଙ୍କର
ଯେହେତୁ ନ ଥିଲା ଜାଣ ଆହେ ନରବର,
ତେଣୁ ତା ଅସତ ବୋଲି ସର୍ବେ କହୁଥିଲେ
ପରେ ବ୍ରହ୍ମଙ୍କର ସଙ୍କଳପ ପ୍ରଭାବରେ,
ଅନୁଭବଗମ୍ୟ ହୋଇ ପାରିଛି ରାଜନ ।
ସତ୍ ପଦବାଚ୍ୟ ହୋଇ ପାରିଛି ରାଜନ ।
ତେଣୁ ଚିନ୍ମୟ ବ୍ରହ୍ମର ପ୍ରକାଶ ହିଁ ସୃଷ୍ଟି
ପ୍ରଳୟ ଅଟଇ ତା'ର ଅପ୍ରକାଶ ଗୋଟି ।
କହନ୍ତି ରାଜନ ଶୁଣ ଆହେ ବ୍ରହ୍ମାସୁତ
ବ୍ରହ୍ମସଂକଳ୍ପ ବଳେ ହିଁ ଏ ଜଗତ ସତ ।
ସୁଷୁପ୍ତି ଆବର ମୁକ୍ତ ଅବସ୍ଥାରେ ଜାଣ
ଅନୁଭୂତ ହୁଏ ନାହିଁ କେବଣ କାରଣ ?
କହନ୍ତି ବଶିଷ୍ଠ ତେବେ ଶୁଣ ମହୀଈଶ
ମାୟାଶକ୍ତିମାନ ଅଟେଯେଉଁ ଚିଦାକାଶ ।
ତାହାର ସଂକଳ୍ପମୟ ଅଟେ ଯେ ଜଗତ
ସ୍ୱପ୍ନ ବା ଜାଗ୍ରତ କାଳେ ହେବା ଅନୁଭୂତ,
ଆବର ସୁଷୁପ୍ତି ଏବଂ ମୁକତି କାଳରେ
ଅଦୃଶ୍ୟ ହେବା ସ୍ୱଭାବ ତା'ର ନରବରେ ।
ଆପଣ ନିଜେ ଯେପରି ସଂକଳପ ବଳେ
ନଗର ନିର୍ମାଣ କରି ଆହେ ନରବରେ,
କ୍ଷଣକାଳ ପରେ ତାର ରଚନ୍ତି ବିଳୟ
ସେହି ଉଭୟ ସମୟେ ଆହେ ନରରାୟ ।
ସ୍ୱ ଭାବ, ତବ, ଯେପରି ନିର୍ମାଣ ପ୍ରଳୟ
ଆକାରେ ସ୍ଫୁରିତ ହୋଇଥାଏ ନିଃସନ୍ଦେହ,
ସେପରି ଚିଦାକାଶରୁ ଏହି ଜଗତର
ଉନ୍ମେଷ, ନିମେଷ ଯାହା ହୁଏ ନରବର,
ବ୍ରହ୍ମ ସ୍ୱଭାବ ସ୍ଫୁରଣ ତାହା ହିଁ ଜାଣିବ
ଏହି କଥା ହେତୁ ରଖିଥିବ ହେ ଭୂଦେବ ।
ତେଣୁ କରି ତ୍ରିଭୁବନ ସଂବିତ୍ ଘନାକାଶ
ସେହି ନିଜେ ହୋଇଛନ୍ତି ଜଗତ ନରେଶ ।
ତେଣୁ ସେହୁ କରିଥାଏ ସଂକଳ୍ପ ଯେସନ
ସେହିପରି ଅନୁଭବ କରେ ନରରାଣ ।
ସେହି ଯେ ନିରାବରଣ ଚିଦାତ୍ମା ରାଜନ
ଶତଯୁଗ ପୂର୍ବେ କଲା ଯେ ସଂକଳ୍ପମାନ,
ଏବେ ମଧ୍ୟ ତାହା ସବୁ ହୁଏ କାର୍ଯ୍ୟକାରୀ
ଭବିଷ୍ୟରେ କାର୍ଯ୍ୟକାରୀ ରହିବ ସେପରି ।
ନିରାବରଣ ଅଦ୍ୱୟ କାରଣ ବଶତଃ
ଦେଶ, କାଳଗତ ଯେ ଅତୀତ, ଭବିଷ୍ୟତ ।
ସକଳ ଘଟଣା ଏବେ ଘଟୁଥିବା ପରି
ପ୍ରତ୍ୟକ୍ଷ କରୁଣଥାଏ ଆହେ ଦଣ୍ଡଧାରୀ ।
ଅଶୁଭେ, ଅଶୁଭ, ଶୁଭେ ଶୁଭ କର୍ମଫଳ
ଜୀବର ଏହି ଭାବନା ହେତୁ ନରବର ।
ପରକାଳେ ତା'ର ଫଳ ପାଇଥାଏ ଜୀବ
ଏଥିରେ ସନ୍ଦେହ ରଜା କେବେ ନ କରିବ ।
କିନ୍ତୁ ଉଦୟାସ୍ତହୀନ ବ୍ରହ୍ମ ଚଇତନ୍ୟ
ସଦା ସର୍ବଦା ହେଉଛି ତାହାର ସ୍ଫୁରଣ ।
ଦ୍ରଷ୍ଟା ଦୃଶ୍ୟ, ଦରଶନ ରୂପେ ତା କଳ୍ପନା
ପରିଣତ ହୋଇକରି ଆହେ ମହାମନା,
ଜଗତ ଆକାରେ ହେଉଅଛି ପ୍ରତିଭାତ
ଏହି ଉକ୍ତି ହିଁ ସମ୍ବଳ ତବ ନରନାଥ ।
ଜଗତ୍‌ଭାବ ପାଶୋରିଣ ଯେବେ ହେ ରାଜନ
ସ୍ୱରୂପରେ ସ୍ଥିତି ଲାଭ କରେ ସେହୁ ପୁଣ ।
ତେତେବେଳେ ତା'ର ନାମ ଶାନ୍ତ ଚିଦାକାଶ
ଶାନ୍ତ ଚିଦାକାଶେ ଜାଣ ବ୍ରହ୍ମଙ୍କ ବିଳାସ ।
ପ୍ରବାହ ଓ ଅପ୍ରବାହ ଉଭୟ ଯେପରି
ବାୟୁର ସ୍ୱଭାବ ଅଟେ ଆହେ ଦଣ୍ଡଧାରୀ ।
ପ୍ରକାଶ ଓ ଅପ୍ରକାଶ ତଥା ଜଗତର
ଉଭୟ ବ୍ରହ୍ମ ସ୍ୱଭାବ ଆହେ ନରବର ।
ଏ ଜଗତ ଯେତେବେଳେ ହୁଏ ସଂକଳ୍ପିତ
ସଂକଳ୍ପ ଦ୍ୱାରା ହିଁ ସେହୁ ଆହେ ନରନାଥ
ଔଷଧି ଇତ୍ୟାଦି ନାନା ବସ୍ତୁମାନଙ୍କର
ବିଭିନ୍ନ ସ୍ୱଭାବ ଗୁଣ କରିଥାନ୍ତି ସ୍ଥିର ।
ଯାହା ସେ ସଙ୍କଳ୍ପ କରିଛନ୍ତି ଥରେ ମାତ୍ର
ସବୁ କ୍ରିୟା ସେହିପରି ଋଲେ ଅବିରତ ।
ହେଲେ ହେଁ ଏକ ଚୈତନ୍ୟ ସକଳ ପଦାର୍ଥ
ବିଭିନ୍ନ ଆକୃତି ଗୁଣ ହୋଇଥାନ୍ତି ପ୍ରାପ୍ତ ।
ସ୍ଥାବର ଜଙ୍ଗମମୟ ଏହି ଜଗତରେ
ସର୍ବରୂପୀ ବ୍ରହ୍ମ ଯହିଁ ସ୍ଥିତ ଯେ ଭାବରେ,
ସେହିଠାରେ ସେହି ରୂପେ ସେହୁ ପ୍ରକାଶିତ
ବ୍ରହ୍ମଭିନ୍ନ ଅନ୍ୟ କିଛି ନାସ୍ତି ନରନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ମହାପ୍ରଶ୍ନ ମୋକ୍ଷଣେ ବର୍ଣ୍ଣନେ ନାମ ୧୧୫ତମ ସର୍ଗଃ**

❑

# ୧୧୬ତମ ସର୍ଗଃ
# ସର୍ବ ଅନୁଭୂତି ଦର୍ଶନ

କହନ୍ତି ବଶିଷ୍ଠ ଶୁଣ ଆହେ ନରବର
ବନ୍ଧୁ ଅବା ଶତ୍ରୁ ହୋଇ ଏକଇ ବ୍ୟକ୍ତିର ।
ଆୟୁ ବା ମୃତ୍ୟୁ କାମନା କରିଣ ତାହାର
ପ୍ରୟାଗ କ୍ଷେତ୍ରରେ ଦେହ ତେଜିଲେ ତାଙ୍କର ।
କିପରି ଭାବେ ସେ ଫଳ ତାକୁ ମିଳିଥାଏ
ତାହାର ଉତ୍ତର ଶୁଣ ଆହେ ନରରାଏ ।
ସୃଷ୍ଟ୍ୟାଦ୍ୟରୁ ବ୍ରହ୍ମା ଅଧିକାରୀ ଜୀବ ପାଇଁ
ପ୍ରୟାଗାଦି କ୍ଷେତ୍ରେ କୃତ କର୍ମ ସିଦ୍ଧି ନେଇ,
ନିର୍ଦ୍ଧିଷ୍ଟ କରିଅଛନ୍ତି କର୍ମଫଳ ମାନ
ସେହୁ ଅନୁସାରେ ସବୁ ଲବ୍ଧ ହୁଏ ଜାଣ ।
ତେଣୁ ପାପୀ ପୂଣ୍ୟକ୍ଷେତ୍ରେ କଲେ ଦେହ ତ୍ୟାଗ
ସେ ପୂଣ୍ୟ କ୍ଷେତ୍ର ମହିମା ଆହେ ମହାଭାଗ,
ପାପୀର ପ୍ରାଣ ବିନାଶ କରିବା ସାଧନ
ଆପେ ମଧ୍ୟ ବିନଷ୍ଟ ସେ ହୋଇଥାଏ ଜାଣ ।
ତେଣୁ କରି ସେତେବେଳେ ସେପରି ବ୍ୟକ୍ତିର
ପାପ ପୂଣ୍ୟ କିଛି ନ ରହଇ ନରବର ।
ସ୍ୱଳ୍ପପାପ ରହିଥାଇ ଯାହାର ରାଜନ
ତୀର୍ଥକ୍ଷେତ୍ର କୃତପୂଣ୍ୟ ବେଶୀ ହେଲେ ଜାଣ ।
ପାପ, ବିନଷ୍ଟ ହୋଇଣ ଅବଶିଷ୍ଟ ପୂଣ୍ୟ
ଫଳପ୍ରଦ ହୋଇଥାଏ ଏହା ଭଲେ ଜାଣ
ପାପ ପୂଣ୍ୟ ମାତ୍ରା ଯେବେ ସମାନ ହୁଅନ୍ତି
କେହି ତ କାହାରି କ୍ଷତି କରି ନ ପାରନ୍ତି ।
ତେଣୁ ଏ ଉଭୟ ଫଳ ଭୋଗିବା କାରଣ
ଦୁଇଟି ଦେହ ସେ ବ୍ୟକ୍ତି କରଇ ଧାରଣ ।
ଏହିପରି ବ୍ରହ୍ମଙ୍କର ସଙ୍କଳ୍ପ ବଳରେ
ପାପ, ପୁଣ୍ୟ-ଫଳ ଭୋଗ କରିଥାନ୍ତି ନରେ ।
ଚୈତନ୍ୟ ରୂପେ ବିରାଜେ ଯେ ସର୍ବ ଅନ୍ତରେ
ସେହି ଏକା ବ୍ରହ୍ମ ପୁଣି ବ୍ରହ୍ମା ନର ବରେ ।
ସେହି ଏକା "ତୁମେ ଆମେ" ନାନା ଆକାରରେ
ବ୍ୟକତ ହୋଇଥାଆନ୍ତି ସର୍ବ ସମୟରେ ।
ସେହି ବ୍ରହ୍ମ ଅବା ବ୍ରହ୍ମା ଯେ ବ୍ୟକ୍ତି ମଧ୍ୟରେ
ଅବସ୍ଥାନ କରିଥାଏ ଯେପରି ଭାବରେ ।
ବ୍ରହ୍ମ ସଂକଳ୍ପ ସଂମ୍ଭୁତ ଜଗତକୁ ସେହି
ତେସନ ରୂପରେ ଦରଶନ କରୁଥାଇ ।
ପାପୀ ଯଥା ନର୍କମାନ କରିଣ ସ୍ମରଣ
ଦୁଃଖ ଅନୁଭବ କରୁଥାଏ ନର ରାଣ ।
ପୂଣ୍ୟ କ୍ଷେତ୍ରେ କୃତ ପୂର୍ଣ୍ଣ୍ୟକର୍ମ ଫଳମାନ
ସେପରି ଭାବନା ଦ୍ୱାରା ଲାଗେ ସ୍ୱପ୍ନ ସମ ।
ପୁଣ୍ୟ କ୍ଷେତ୍ରେ ଶତ୍ରୁ-ମୃତ୍ୟୁ କାମନା କରିଣ
ଦେହତ୍ୟାଗ କରିଥାଏ ଯେଉଁ ବ୍ୟକ୍ତି ଜାଣ ।
ତାହାର ସେହି କରମ ପାପ କର୍ମ ବୋଲି
ଭୟ, ଅନଳ ଜଳଇ ଅନ୍ତରେ ତାହାରି ।
"ହେଇ ମୁହିଁ ମଲି, ବେଢ଼ିଲେଣି ଯମଗଣ
ବନ୍ଧୁ କୁଟୁମ୍ବ ଇତ୍ୟାଦି କରନ୍ତି ରୋଦନ ।
ପରଲୋକେ ଆସିଲଇଁ ଏକା ହୋଇକରି
ଗୋବର ପାଣି ପଡୁଛି ନ ଫେରିବି ବୋଲି" ।
ଭାରିଯା କାନ୍ଦଇ କାହିଁ ଗଲ ପ୍ରାଣନାଥ
ମୁଖାଗ୍ନି ଦେବା ନିମିତ୍ତ ଆସେ ଜ୍ୟେଷ୍ଠପୁତ୍ର ।
ଚିତ୍ତର କଳ୍ପନା ବଳେ ଏ ଭାବନାମାନ
ଉଦିତ ହୋଇ ତାହାକୁ ଦିଅନ୍ତି କଷଣ ।
ବନ୍ଧୁର ଦୀର୍ଘାୟୁ ପାଇଁ କାମନା କରିଣ
ପୂଣ୍ୟକ୍ଷେତ୍ରେ ଦେହତ୍ୟାଗ କରଇ ଯେ ଜନ ।
ବନ୍ଧୁ ପ୍ରତି ସ୍ନେହ ଭାବନାର ପ୍ରଭାବେଣ
ନିଜକୁ ମଣଇ ଜରା ମରଣ ବିହୀନ ।
ନିଜର ଜୀବନ ସତ୍ତା ଲାଭ କରି ପୁଣ
ସୁଖ ଅନୁଭବ କରୁଥାଏ ଅନୁକ୍ଷଣ ।
ଯେଣୁ କରି ଏ ଜଗତ ଅଟେ ଭ୍ରାନ୍ତିପୂର୍ଣ୍ଣ
କେତେ ଯେ ତା ମଧ୍ୟେ ରହିଛନ୍ତି ବିଦ୍ୟମାନ ।
କାହାର ବା ମେଧା ଅଛି କରିବ କଳନ
ଅନୁମାନ କର ତାହା ଆହେ ନରରାଣ ।
ପୁଛନ୍ତି ରାଜନ ଏବେ କହ ହେ ବ୍ରାହ୍ମଣ
ଅମୂର୍ତ୍ତ ଧର୍ମ ଅଧର୍ମ କେଉଁ ଉପାୟେଣ ।
ପରିଣତ ହୋଇଥାଏ ମୂର୍ତ୍ତ ଶରୀରରେ
କହି ସନ୍ଦେହ ମୋଚନ କର ମୁନିବରେ ।
କହନ୍ତି ବଶିଷ୍ଠ ଶୁଣ ଆହେ ମହାମତେ
ବ୍ରହ୍ମଙ୍କ କଳ୍ପନାମୟ ଏହି ଯେ ଜଗତେ,
ଅସମ୍ଭବ ବୋଲି କରି କିଛି ନାହିଁ ଜାଣ
କିନ୍ତୁ ଯାହା ଦେଖାଯାଏ ସବୁ ଭ୍ରମପୂର୍ଣ୍ଣ ।

ଏକମାତ୍ର ସମୁଜ୍ଜ୍ୱଳ ଚିଦାକାଶ ଜାଣ
ସାରବସ୍ତୁ ରୂପେ ଏହା ମଧ୍ୟେ ବିଦ୍ୟମାନ ।
ଏହି ଆକାଶ ମଧ୍ୟରେ ଯେଉଁ ଭାବେ ଯାହା
ଅନୁଭୂତ ହେଉଥାଏ ଆହେ ନର ନାହା ।
ତତ୍ତ୍ୱଜ୍ଞାନୀ ସମକ୍ଷରେ ତାହା ସେହିପରି
ପରିଦୃଷ୍ଟ ହେଉଥାଏ ଆହେ ଦଣ୍ଡଧାରୀ ।
ଇହଲୋକେ ଧର୍ମ ଅନୁଷ୍ଠାନ ଆଚରିଲେ
ସ୍ୱର୍ଗସୁଖ ଉପଭୋଗ କରେ ନର ଭଲେ ।
ଏହିରୂପ ଶାସ୍ତ୍ର ବାକ୍ୟେ ବିଶ୍ୱାସ କରିଣ
ଯେଉଁ ନର କରେ କର୍ମ ଅନୁଷ୍ଠାନ ମାନ ।
ମୃତ୍ୟୁପରେ ସ୍ୱର୍ଗ ରାଜ୍ୟେ ଗମନ କରିଣ
ଅବଶ୍ୟ ସେ ସୁଖଭୋଗ କରେ ନରରାଣ ।
"ଜଗତ୍ ମିଥ୍ୟା" ବୁଝିଛି ଯେ ନିଶ୍ଚିତ ଭାବରେ
ପରଲୋକେ ପରଲୋକ ଫଳ ତା ଭାଗ୍ୟରେ,
ମିଥ୍ୟା ବୋଲି ପ୍ରମାଣିତ ହୁଏ ନରବରେ
ବାସନାନୁସାରେ ସିଦ୍ଧିଫଳ ସବୁ ମିଳେ ।
ତବ ସଂକଳପମୟ ନଗ୍ରେ ହେ ରାଜନ
ଅସମ୍ଭବ ବୋଲି କିଛି ନ ଥାଏ ତେସନ ।
ତାଦୃଶ ବ୍ରହ୍ମ କଳ୍ପିତ ଜଗତ ମଧ୍ୟରେ
ଅସମ୍ଭବ ବୋଲି କିଛି ନାହିଁ ନରବରେ ।
ଯା'ର ଯେପରି ଭାବନା ହେବ ଉପସ୍ଥିତ
ତାହା ସେପରି ସମ୍ପନ୍ନ ହେବା ସ୍ୱଭାବତଃ ।
ଭାବନା ବା ଅନୁଭବ କେବେହେଲେ ଜାଣ
ଅନ୍ୟଥା ହୋଇବ ନାହିଁ ବ୍ରହ୍ମାଙ୍କ ବଚନ ।
ଯେଣୁ ଏ ଜଗତ ନୁହେଁ ବ୍ରହ୍ମଠାରୁ ଭିନ୍ନ
ବ୍ରହ୍ମରୂପେ ଦେଖ ତାକୁ ତୁମେ ହେ ରାଜନ !

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ସର୍ବ ଅନୁଭୂତି ଦର୍ଶନ ବର୍ଣ୍ଣନେ ନାମ ୧୧୬ତମ ସର୍ଗଃ**



## ୧୧୭ତମ ସର୍ଗଃ
## ମହାପ୍ରଶ୍ନ ବିବରଣ (୧)

କହନ୍ତି ବଶିଷ୍ଠ ରାଜା ଧ୍ୟାନ ପ୍ରଭାବରେ
ଚନ୍ଦ୍ରଭାବ ପ୍ରାପ୍ତ ହୋଇଥାନ୍ତି ଯେଉଁ ନରେ ।
ଆକାଶ ଚନ୍ଦ୍ରରେ ଯାଇ ନ ହୁଅନ୍ତି ସ୍ଥିତ
କିମ୍ବା ଆକାଶରେ ନ ହୁଅନ୍ତି ଦିପ୍ତୀବନ୍ତ ।
ଧ୍ୟାନବଳେ ନିଜକୁ ସେ ମଣେ ଚନ୍ଦ୍ରବତ
ତୁମ ପ୍ରଶ୍ନର ଉତ୍ତର ଏହା ନରନାଥ ।
ସଂକଳ୍ପକର୍ତ୍ତା ନିଜର ଇପ୍‌ସିତ ବସ୍ତୁକୁ
କେବଳ ସେ ଦେଖେ, ଅନ୍ୟ ନ ଦେଖେ ତାହାକୁ ।
ସଂକଳ୍ପକାରୀ ବ୍ୟକ୍ତିର ସଂକଳ୍ପକ ଶଶୀ
କଳ୍ପିତ ଆକାଶେ ତା'ର ଶୋଭା ପରକାଶି ।
ଅନ୍ୟ କାହିଁ ପରକାଶ ନୁହେ ସେହୁ ଜାଣ
କିପରି ତା ଅନ୍ୟମାନେ କରିବେ ଦର୍ଶନ ?
"ଆକାଶସ୍ଥ ଚନ୍ଦ୍ରେ ମୁହିଁ ପ୍ରବେଶ କରିଣ
ଅତି ସୁଖେ କରିବଇଁ ତହିଁ ଅବସ୍ଥାନ ।
ଏ ସଂକଳ୍ପ କରି ଯେହୁ ଧ୍ୟାନେ ହୁଏ ରତ
ଚନ୍ଦ୍ର ମଣ୍ଡଳକୁ ଯାଇ ହୁଏ ଆନନ୍ଦିତ ।
ସଂଚିତ ଦୃଢ଼ ଭାବରେ ଯାହା କି ଭାବଇ
ତାହାହିଁ ପ୍ରାପତ ଯେଣୁ ହୁଏ ନରସାଇଁ,
ଅବିକଳ ସେହିପରି ଆହେ ନରରାଣ
ଯଦି ଏକ ରମଣୀକୁ ଏକାଧିକ ଜନ
ନିଜ ନିଜ ପତ୍ନୀ ରୂପେ କରନ୍ତି ଚିନ୍ତନ
ତେବେ ନିଜ ନିଜ ଭାବ-ଜଗତରେ ଜାଣ,
ସେ ନାରୀକୁ ପତ୍ନୀରୂପେ ପାରନ୍ତି ଲଭିଣ
ପ୍ରକୃତରେ ସେ ନୁହଇ ତାଙ୍କ ପତ୍ନୀ ଜାଣ ।
ଆଉ ମଧ୍ୟ ତା'ର ପାତିବ୍ରତ୍ୟ ନଷ୍ଟ ନୋହି
ପାଇଲ ତ ତୁମ ପ୍ରଶ୍ନୋତ୍ତର ନରସାଇଁ ?
ଘରୁ ନ ବାହାରି ଯେଉଁ ବ୍ୟକ୍ତି ହେ ରାଜନ
ସପ୍ତଦ୍ୱୀପା ପୃଥିବୀରେ କରେ ରାଜପଣ ।
ସେହି ରାଜ୍ୟଲାଭ ଗୃହାକାଶେ ହିଁ ତାହାର
କଳ୍ପନାରେ ଘଟିଥାଏ ଆହେ ନରବର ।
ତପ, ଦାନ, ଶ୍ରାଦ୍ଧ, ଜପ ଆଦି କର୍ମମାନ
ଇହଲୋକରେ ଯାହାକି କରନ୍ତି ସାଧନ ।
ପରଲୋକେ ମୂର୍ତ୍ତୀବନ୍ତ ହୋଇ ସେ ସକଳ
କିପରି ଫଳ ଦିଏ ତା ଶୁଣ ନରବର ।
ଦୃଢ଼ତା ହେତୁ ତପସ୍ୟା ଫଳ ଲାଭ ପାଇଁ
ହେଲେ ହେଁ ଅମୂର୍ତ୍ତ ସବୁ କର୍ମ ନରସାଇଁ,
ଚିତ୍ତ ଶକ୍ତିର ପ୍ରଭାବେ ମରଣର ପରେ
ସ୍ୱପ୍ନ-ମୂର୍ତ୍ତୀସମ ହୋଇ ଫଳଦାନ କରେ ।
ଭ୍ରାନ୍ତି ଭିନ୍ନ ଏହା ସବୁ ନୁହେଁ କିଛି ଆନ
ଭ୍ରମନାଶେ ଚୈତନ୍ୟ ହିଁ ରହେ ବିଦ୍ୟମାନ ।

ଇହଲୋକେ ଜୀବ କରି କର୍ମ ଅନୁଷ୍ଠାନ
ଚୈତନ୍ୟର ତଦାକାର ପ୍ରତିଭାସ ମାନ ।
ପରଲୋକେ ଫଳ ରୂପେ ହୁଅଇ ପ୍ରାପତ
ଏ ଶାସ୍ତ୍ର ବାକ୍ୟ ଅନ୍ୟଥା ନୁହେ କଦାଚିତ ।
କଳ୍ପିତ ଜଗତେ ଦୃଢ଼ କଳ୍ପନା ବଳରେ
ଯାହା ଅନୁଷ୍ଠିତ ହୋଇଥାଏ ନରବରେ ।
ଲୋକାନ୍ତରେ ତାହା ହୋଇ ପାରିବ ଯେ ସିଦ୍ଧ
ମୋ ମତରେ ଏହା କେଉଁ ନୁହଁଇ ଅସିଦ୍ଧ ।
ତୁମ ସକଳ ପ୍ରଶ୍ନର ପାଇଲ ଉତ୍ତର
ଆଉ ଏକ କଥା କହେ ଶୁଣ ନରବର ।
ବ୍ରହ୍ମ ଚୈତନ୍ୟ କଳ୍ପନା ଅଟେ ଏ ଜଗତ
ପ୍ରତିବନ୍ଧକ ଏଥିରେ ନାହିଁ ନରନାଥ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ**
**ଉତ୍ତର ଖଣ୍ଡେ ମହାପ୍ରଶ୍ନ ବିବରଣ ବର୍ଣ୍ଣନେ**
**ନାମ ୧୧୭ତମ ସର୍ଗଃ**



## ୧୧୮ତମ ସର୍ଗଃ

## ମହାପ୍ରଶ୍ନ ବିବରଣ (୨)

କହନ୍ତି ରାଜନ କୁହ ଆହେ ମହୋଦୟ
ବିଦେହ ଚୈତନ୍ୟ କେହ୍ନେ କଳପଇ ଦେହ ?
ଭିତ୍ତି ନ ଥିଲେ ଯେସନ ଆଲୋକ ପ୍ରକାଶ
ଅସମ୍ଭବ ହୋଇଥାଏ ବ୍ରହ୍ମଙ୍କର ଶିଷ୍ୟ,
ତେସନ ପ୍ରଥମେ ଯଦି ନ ଥାନ୍ତା ଏ ଦେହ
ଚୈତନ୍ୟର ପ୍ରତିଭାସ ହ୍ୱନ୍ତା କି ଉଦୟ ?
କହନ୍ତି ବଶିଷ୍ଠ ଶୁଣ ଆହେ ମହାମତେ
ଦେହ ଶବ୍ଦର ପ୍ରୟୋଗ କଲ ଯେଉଁ ଅର୍ଥେ ।
ତତ୍ତ୍ୱଜ୍ଞଜନଙ୍କ ପାଇଁ ଜାଣ ସେହି ଅର୍ଥ
କେତେବେଳେ ହେଲେ ହୋଇ ନ ପାରେ ଯଥାର୍ଥ ।
ବ୍ରହ୍ମ ଏବଂ ଦେହ ଏହି ଉଭୟ ଶବ୍ଦର
ଏକ ଅର୍ଥ ଜାଣିରଖ ଆହେ ନରବର ।
ସଲିଳ ଓ ଅମ୍ବୁ ଏହି ଦୁଇଟି ଶବ୍ଦରେ
ଏକମାତ୍ର ଜଳକୁ ହିଁ ବୁଝନ୍ତି ସଂସାରେ ।
ସେହିପରି ଦେହ ଶବ୍ଦ ବ୍ରହ୍ମଙ୍କୁ ହିଁ ଜାଣ
ବୁଝିଥାନ୍ତି ସର୍ବମତେ ପଣ୍ଡିତ ପ୍ରବୀଣ ।
ସହଜରେ ବୁଝାଇବା ପାଇଁ ମୁଁ ତୁମ୍ଭଙ୍କୁ
ସପନ ବୋଲି କହିଛି ଜାଣ ଏ ଦେହକୁ ।
ପ୍ରକୃତ ପକ୍ଷରେ ତାହା ନୁହଇ ସ୍ୱପନ
ଚିଦାକାଶ ପ୍ରତିଭାତ ଯେଣୁ ଏ ଭୁବନ ।
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଚିନ୍ମୟ ବ୍ରହ୍ମରେ
ଏକବାରେ ନାହିଁ ଜାଣ ଆହେ ନରବରେ ।
ତେଣୁ ତୁମେ ଯାହାକିଛି ଦେଖୁଛ ରାଜନ
ଆକାଶ ରୂପୀ ନିର୍ମଳ ବ୍ରହ୍ମ ସବୁ ଜାଣ ।
ଦ୍ୱୈତ ବା ଅଦ୍ୱୈତ ପୁଣି ସତ ବା ଅସତ
ଶୁଭାଶୁଭ, ସ୍ୱପ୍ନ, ଜାଗରଣ ଆଦି ଯେତ ।
ତତ୍ତ୍ୱଜ୍ଞମାନଙ୍କ ମତେ ଏହା ସବୁ ଜାଣ
ପରମ ଚିଦାକାଶ ହିଁ ତାହା ନରରାଣ ।
ପୂର୍ଣ୍ଣ ବ୍ରହ୍ମ ହିଁ ସର୍ବତ୍ର ସରବ ରୂପରେ
ପ୍ରତିଭାତ ହୋଇଛନ୍ତି ଆହେ ନରବରେ ।
ଏ ଜଗତ ପୂର୍ଣ୍ଣବ୍ରହ୍ମ ରୂପେ ଅବସ୍ଥିତ
ଯହିଁ ଚିଦାକାଶ ତହିଁ କେବଳ ଜଗତ ।
ସର୍ବସ୍ଥାନେ ଦୀପ୍ତିଶୀଳ ଯେଣୁ ଚିଦାକାଶ
ଏ ଜଗତ ବିରାଜିତ ସର୍ବତ୍ର ନରେଶ ।
ଯାହାକୁ ଜଗତ ବୋଲି କହ ନରରାଣ
ତାହା ହିଁ ସେ ନିରାମୟ ବ୍ରହ୍ମ ବୋଲି ଜାଣ ।
ବ୍ରହ୍ମକୁ 'ସତ୍' କହନ୍ତି ବେଦ ଶାସ୍ତ୍ରମାନ
ଦ୍ୱୈତ ଜ୍ଞାନକୁ 'ଅସତ' କହିଛନ୍ତି ଜାଣ ।
ମୁହିଁ ମଧ୍ୟ ସେହି କଥା କହୁଛି ତୁମ୍ଭଙ୍କୁ
କିଏ ସେ ଅଗ୍ରାହ୍ୟ କରିପାରିବ ଏହାକୁ ?
ଅଜ୍ଞାନ ହେତୁ ସଂସାର ରହେ ବିଦ୍ୟମାନ
ଜ୍ଞାନୋଦୟେ ଚିଦାକାଶ ଯିବ ପାଲଟିଣ ।
ଅବିଜ୍ଞାତ ରହେ ଯେଣୁ ସେହି ଚିଦାକାଶ
ଜଗତ, ବନ୍ଧନ, ଆଦି ନାମେ ତା' ପ୍ରକାଶ ।
ବିଜ୍ଞାତ ହୁଅନ୍ତେ ତା'ର ଏ ସକଳ ନାମ
ରହି ନ ପାରଇ ବୁଝି ରଖ ହେ ରାଜନ ।
ଦୃଶ୍ୟକୁ ଜ୍ଞାତ ହୋଇଲେ ତା ଲଭେ ବିଲୟ
ଜ୍ଞାନ ପାଇଁ ସେହି ଦୃଶ୍ୟ ବ୍ରହ୍ମ ଚିନ୍ମୟ ।
ତତ୍ତ୍ୱଜ୍ଞଙ୍କ ନିକଟରେ ଯାହା ପ୍ରତିଭାତ
ବେଦ, ଶାସ୍ତ୍ରମାନଙ୍କର ଯାହା କି ସିଦ୍ଧାନ୍ତ,
ଅନୁଭବଗମ୍ୟ ହୋଇ ତାହାହିଁ ରାଜନ
ପରଂ ପୁରୁଷାର୍ଥ ରୂପେ ତା'ର ପ୍ରକାଶନ ।
ଅନ୍ୟ ସକଳ ବିଷୟ ପରିତ୍ୟାଗ କରି
ସେହି ପୁରୁଷାର୍ଥ ପାଇଁ ଯେବେ ଚେଷ୍ଟାକରି,

ନିଶ୍ଚୟ ତାହାକୁ କରାଯାଇ ପାରେ ଲାଭ
ଆଶ୍ଚର୍ଯ୍ୟ ନୁହଁଇ ଏହା ଜାଣ ହେ ଭୁଦେବ ।
ଏକନିଷ୍ଠ ଭାବେ କର ଯାହା ପାଇଁ ଯତ୍ନ
ନିଶ୍ଚୟ ପ୍ରାପତ ହୋଇଥାଏ ସେହି ରତ୍ନ ।
ଚିରନ୍ତନ ନିୟମ ଏ ଜାଣ ନରବର
ଅବ୍ୟର୍ଥ ଏହି ନିୟମ ଏ ସଚରାଚର ।
ଆପଣଙ୍କ ପ୍ରଶ୍ନର ମୁଁ ଦେଲି ଯେ ଉତ୍ତର
ତାହା ଅନୁସାରେ ତୁମେ ଏବେ କାର୍ଯ୍ୟକର ।
ବିଷୟରେ ଅନାସକ୍ତ ହୋଇଣ ରାଜନ
ଅନାମୟ ହୋଇ, କର ଉନ୍ନତି ସାଧନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ମହାପ୍ରଶ୍ନ ବିବରଣ ବର୍ଣ୍ଣନେ ନାମ ୧୧୮ତମ ସର୍ଗଃ**



## ୧୧୯ତମ ସର୍ଗଃ

## ପରମାର୍ଥ ଉପଦେଶ

କହନ୍ତି ବଶିଷ୍ଠ ଶୁଣ ହେ ରଘୁନନ୍ଦନ
ରାଜା ପ୍ରଜ୍ଞପ୍ତିଙ୍କୁ ମୁହିଁ କହନ୍ତେ ଏସନ ।
ଯଥାବିଧି ପୂଜା ସେହୁ କଲେକ ଅର୍ପଣ
କାମସାରି ସ୍ୱର୍ଗ ରାଜ୍ୟେ କଲି ମୁଁ ପ୍ରସ୍ଥାନ ।
ଆଜି ମୁହିଁ ତୁମ ଆଗେ ସେ ସବୁ ବିଷୟ
ପୁନର୍ବାର କହିଲଇଁ ହେ ରଘୁତନୟ ।
ଏହି ଅନୁସାରେ ଯଦି କାର୍ଯ୍ୟକାରୀ ହୁଅ
ପ୍ରଶାନ୍ତ ଚିତ୍ତ ହେ ରାମ ହୋଇବ ନିଶ୍ଚୟ ।
ଆକାଶ ସ୍ୱରୂପ ହୋଇ ସଦା ବିହରିବ
ଏଥିରେ ସନ୍ଦେହ ନାହିଁ ଏକଥା ବୁଝିବ ।
ଏହି ଦୃଶ୍ୟ ପରିପୂର୍ଣ୍ଣ ଜଗତ ରାଘବ
ନିର୍ମଳ ଆକାଶରୂପୀ ବ୍ରହ୍ମ ହିଁ ଜାଣିବ ।
ଆଦି ମଧ୍ୟ ଅନ୍ତ କିଛି ନ ଥାଇ ଏହାର
କେବଳ ଚୈତନ୍ୟ ମାତ୍ର ପ୍ରକାଶ ତାହାର ।
ତଦ୍ ବ୍ୟତୀତ ତାକୁ ଅନ୍ୟ କିଛି ବୋଲି ରାମ
କୁହାଯାଇ ନ ପାରିବ ଏକଥା ଜାଣିମ ।
ଶ୍ରୀରାମ କହନ୍ତି ଦେବ ତାହା ଯେବେ ହେବ
ବ୍ରହ୍ମା, ଯମ, ସିଦ୍ଧ, ସାଧ, ବିଦ୍ୟାଧର ଦେବ,
ଇତ୍ୟାଦିଙ୍କ ଲୋକମାନ ସବୁରି ଆଧାର
କିପରି ହୋଇପାରିଲା କହ ତପୀବର ?

କହନ୍ତି ବଶିଷ୍ଠ ଶୁଣ କୌଶଲ୍ୟା ନନ୍ଦନ
ଏମାନଙ୍କ ଆଗେ, ପଛେ, ଉର୍ଦ୍ଧେ, ଅର୍ଦ୍ଧେ ଜାଣ ।
ଅନ୍ୟ ବହୁ ଲୋକ ସ୍ଥାନଛନ୍ତି ବିଦ୍ୟମାନ
ଯେ ଚୂଡ଼ାଲା ଉପାଖ୍ୟାନେ କରିଛ ବର୍ଣ୍ଣନ ।
ତାହାର ଧାରଣା କରି ସେ ସକଳ ଲୋକ
ଦର୍ଶନ କରିପାରିବ ହେ ରଘୁନାୟକ ।
ଦୁଇପ୍ରକାର ଅଟଇ ଜାଣ ସିଦ୍ଧଲୋକ
ତହିଁ ମହ, ଜନ, ତପ, ସତ୍ୟ ଆଦି ଲୋକ,
ଅତୀବ ସୁଦୂର ପୁଣି ସର୍ବବ୍ୟାପୀ ଜାଣ
ଧାରଣା ଅଭାବେ ଦୃଶ୍ୟ ନୁହନ୍ତି ସେମାନ ।
ଧାରଣା ସିଦ୍ଧ ହୋଇଲେ ଏହି ଦୁଇଲୋକ
ଦେଖିପାରିବ ତୁମେ ହେ ରଘୁଙ୍କ ତିଳକ ।
ସେହିପରି ଧାରଣାର ନାହିଁ ପ୍ରୟୋଜନ
ଆମ ଲୋକ ପରି ତହିଁ ସର୍ବଲୋକ ଜାଣ ।
ଯଦି ଧ୍ୟାନ ବଳେ ତୁମେ ହେ ରଘୁନନ୍ଦନ
ତୁମ କଳ୍ପିତଲୋକଙ୍କୁ ସୁସ୍ଥିର ଭାବେଣ,
ଧରି ରଖି ପାର ତେବେ ଜାଣ ହେ ରାଘବ
ତେବେ ଯାଇ ତାହା ସ୍ଥାୟୀ ହୋଇଣ ପାରିବ ।
ତେତେବେଳେ ତୁମେ ମଧ୍ୟ ସିଦ୍ଧଗଣ ପରି
ସେହି ସଂକଳ୍ପରୁ ଜାତ ଲୋକକୁ ତୁମରି,
ଇଚ୍ଛାନୁସାରେ ବିସ୍ତୃତ, ସମ୍ପୃତ-ସମନ୍ୱିତ
କରିବା ପାଇଁ ସକ୍ଷମ ହେବ ରଘୁନାଥ ।
ସ୍ୱର୍ଗ ଅଭିମୁଖୀ ପୂଣ୍ୟବଳ ପ୍ରଭାବରେ
ସିଦ୍ଧଗଣ ନିଜ ନିଜ ସାମର୍ଥ୍ୟ ବଳରେ,
ସ୍ୱ ସ୍ୱ ସଂକଳ୍ପସମ୍ଭୁତ ଲୋକଙ୍କୁ ତାଙ୍କର
ସ୍ଥିରଭାବେ ରଖିବାକୁ ସକ୍ଷମ ହେ ବୀର ।
ଅନ୍ୟଜନ ପକ୍ଷେ ତାହା ଅତି କଷ୍ଟକର
ଯେ ଘେନି ଦୃଢ଼ ଧାରଣା ନ ଥାଏ ତାଙ୍କର ।
ଦୃଢ଼ଧାରଣା ଅଭ୍ୟାସ ନ ଥିଲେ ହେ ରାମ
ସଙ୍କଳ୍ପକୁ ସ୍ଥିର ରଖି ନ ହୁଅଇ ଜାଣ ।
ଆବର ବିନା ସଙ୍କଳ୍ପେ କାହାରି ପ୍ରକାଶ
ହୋଇ ନ ପାରଇ ଜାଣ ଆହେ ରଘୁଈଶ ।
ସଂକଳ୍ପ ଅଭାବେ ସେହି ସମସ୍ତ ବିଷୟ
ଆକାଶ ରୂପେ ହିଁ ରହିଥାଏ ରଘୁରାୟ ।
ସଂକଳ୍ପ ବଳେ ଯା କିଛି ହୁଅଇ ପ୍ରକାଶ
ଚିତ୍ତର ହିଁ ସ୍ଫୁରଣ ତା ହେ ରଘୁବିଳାସ ।

ସଙ୍କଳ୍ପ ହେତୁ ହିଁ ଘଟିଥାଏ ସେ ସ୍ଫୁରଣ
ନୋହିଲେ ନ ଘଟେ ତାହା ହେ ରଘୁନନ୍ଦନ ।
ଯଦି କହ ସେ ସଂକଳ୍ପ କାର୍ଯ୍ୟ ବା କାରଣ
କିସ ବା ଆପତ୍ତି ତହିଁ ଥାଏ ତପୋଧନ ?
ତେବେ ମୁଁ କହିବି ଶୁଣ ହେ ରଘୁନନ୍ଦନ
କେବଳ ଅନନ୍ତ ଚିଦାକାଶ ବିଦ୍ୟମାନ ।
କାରଣ ବୋଲି ତହିଁରେ ଅନ୍ୟ କିଛି ନାହିଁ
ରହି ନ ପାରିବ କେଭେଁ ଆହେ ରଘୁସାଇଁ ।
ତେଣୁ ଉତ୍ପନ୍ନ ସଦୃଶ ଯା କିଛି ପ୍ରତୀତ
ଆକାଶରେ ଆକାଶ ହିଁ ଯଥା ପ୍ରକାଶିତ ।
କୌଣସି ବାସ୍ତବ ରୂପ ନାହିଁ ତ ତାହାର
ତେଣୁ ଏକତ୍ୱ ବହୁତ୍ୱ ଯା' କିଛି ବିଚାର ।
ସେହି ଏକତ୍ୱ ବହୁତ୍ୱ ନ ଥିବା କାରଣ
ଯଥା ପୂର୍ବ ତଥା, ଚିଦାକାଶ ବର୍ତ୍ତମାନ ।
ସ୍ୱପନେ ଆକାଶ ଯଥା ପର୍ବତ ସଦୃଶ
ସଂକଳ୍ପରୁ ଚିତ୍ତ ତଥା ଦିଶଇ ତାଦୃଶ ।
ବାସ୍ତବରେ ତାହା ଯଥା ନୁହଇ ପର୍ବତ
ବ୍ରହ୍ମ ସେପରି ଜଗଦାକାରେ ପ୍ରକାଶିତ ।
ଜଳ ଯେପରି ଆବର୍ତ୍ତ ତରଙ୍ଗ ଆକାରେ
ବିବର୍ତ୍ତିତ ହୋଇଥାଏ ଆହେ ରଘୁବୀରେ ।
ବ୍ରହ୍ମେ ମଧ୍ୟ ସେହିପରି ଏହି ଯେ ଜଗତ
ପରିଦୃଷ୍ଟ ହେଉଥାଏ ଆହେ ରଘୁନାଥ ।
ଆକାଶ ଶୂନ୍ୟତା ଯଥା ଆକାଶରୁ ଜାଣ
କେବେ ହେଁ ପୃଥକ ନୁହେଁ ହେ ରଘୁନନ୍ଦନ ।
ନିରାକାର ଏ ଜଗତ ମଧ୍ୟ ସେହିପରି
ନିରାକାର ବ୍ରହ୍ମ ଭିନ୍ନ ନୁହେଁ ଧନୁର୍ଦ୍ଧାରୀ ।
ସଂକଳ୍ପ ନଗ୍ର ଯେସନ ନିରାକାର ହୋଇ
ସାକାର ଆକାରେ ପରିପୁଷ୍ଟ ହୋଇଥାଇ,
ବ୍ରହ୍ମେ ମଧ୍ୟ ଏହି ଜଗତର ସାକାରତ୍ୱ
ସେହିପରି ଅଟେ ଜାଣ ଆହେ ରଘୁସୁତ ।
ହେଲେ ହେଁ ପଞ୍ଚ ତତ୍ତ୍ୱାଦି କାର୍ଯ୍ୟ ସମ୍ପାଦକ
ଆବର ମୂରତିବନ୍ତ ହେ ରଘୁ ତିଳକ,
ସଂକଳ୍ପ ନଗରସମ ଯଥାର୍ଥରେ ତାହା
ନିରାକାର ଶୂନ୍ୟମୟ ଆହେ ରଘୁନାହା ।
ଚିତ୍ତର ସଂକଳ୍ପ ପୁଣି ସଂକଳ୍ପ ନଗର
ଯେପରି ଏକଇ ବସ୍ତୁ ଆହେ ରଘୁବୀର ।
ବ୍ରହ୍ମ ଆବର ଜଗତ ସେହିପରି ଜାଣ
ଏକଇ ବସ୍ତୁ ଅଟନ୍ତି କୌଶଲ୍ୟା ନନ୍ଦନ ।
ତେଣୁ କରି ଏ ଜଗତ ଆବର ବ୍ରହ୍ମକୁ
ଏକଇ ପଦାର୍ଥ ବୋଲି କହନ୍ତି ତାହାଙ୍କୁ ।
ରଜ୍ଜୁରେ ସର୍ପର ଭ୍ରମ ପରି ହେ ରାଘବ
ଏକବାରେ ଏ ଜଗତ ଅସତ ଜାଣିବ ।
ବାସ୍ତବରେ କହିବାକୁ ଗଲେ ଏହା ବ୍ରହ୍ମ
ବ୍ରହ୍ମ ବିନା ଅନ୍ୟ କାହିଁ କିଛି ନାହିଁ ଜାଣ ।
ସିଦ୍ଧ ଲୋକ ଆଉ ମଧ୍ୟ ସିଦ୍ଧ ଲୋକ ଭୋଗ
ସତ୍ୟ ହେଉ, ମିଥ୍ୟା ହେଉ, ହେ ରଘୁ ପୁଙ୍ଗବ,
ଜୀବନ୍ମୁକ୍ତ ଯୋଗୀ ତାଙ୍କୁ ନ କରେ ଆଦର
ଯେଣୁ ସେମାନେ ମଣନ୍ତି ସେ ସବୁ ଅସାର ।
ଅସାର ବୁଝିଣ ତାକୁ ତୁମେ ତ୍ୟାଗ କର
ଏହି ଭୋଗ ପାଇଁ ବୃଥା ଶ୍ରମ ପରିହର ।

**ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ପରମାର୍ଥ ଉପଦେଶ ବର୍ଣ୍ଣନେ ନାମ ୧୧୯ତମ ସର୍ଗଃ**



## ୧୨୦ତମ ସର୍ଗଃ
## ପରମାର୍ଥ ନିରୂପଣ

କହନ୍ତି ବଶିଷ୍ଠ ଶୁଣ ଆହେ ରଘୁନାନେ
ଗଗନ ସଦୃଶ ବ୍ରହ୍ମ ନିଜକୁ ପ୍ରଥମେ,
"ମୁଁ" ବୋଲିଣ ଅହଂଭାବେ ଧାରଣ କରଇ
ସେ ଅହଂଭାବ ହିରଣ୍ୟ ଗରଭ ବୋଲାଇ ।
ଅନନ୍ତର ସେହି ଗର୍ଭ ମଧ୍ୟେ ଏ ଜଗତ
ପରକାଶ ପାଇଥାଏ ଆହେ ରଘୁନାଥ ।
ହିରଣ୍ୟ ଗର୍ଭ ଓ ଜଗତ୍ ବୋଲି କିଛି ନାହିଁ,
କେବଳ ଅଜ, ବ୍ରହ୍ମ ହିଁ ବିରାଜୁ ଅଛଇ ।
ଜ୍ଞାନ ସ୍ୱରୂପ ବ୍ରହ୍ମରେ ଯେ ଜଗତ୍ ଭାବ
ପ୍ରକାଶ ପାଇଣ ଥାଏ ହେ ରଘୁ ପୁଙ୍ଗବ ।
କେବଳ ତା ପ୍ରତିଭାସ ଜାଣ ରଘୁବୀର
ମରୀଚିକା ଜଳ ସମ ସେ ଅଟେ ଅସାର ।
ଯାହା କିଛି ପରିଦୃଷ୍ଟ ହୋଇଥାଏ ଜାଣ
ତାହା ସେହି ନିରାମୟ ବ୍ରହ୍ମ ହେ ଶ୍ରୀରାମ ।
ଆକାଶ ବତ ବିସ୍ତୃତ ସେହି ଶାନ୍ତ ବ୍ରହ୍ମ
ନିଜେ ସେ ଚିତ୍ ସ୍ୱରୂପ ଯେ ହେତୁ ହେ ରାମ ।

ନିଜକୁ ନିଜେ 'ମୁଁ' ବୋଲି ସେ ଜ୍ଞାନ କରଇ
ତାହାର ବ୍ୟତୀତ ଜାଣ ଅନ୍ୟ କିଛି ନାହିଁ ।
ଶ୍ରୀରାମ କହନ୍ତି ଶୁଣ ହେ ତପୀମଣ୍ଡନ
ନିଜକୁ 'ମୁଁ' ଭାବେ ପୂର୍ବେ କେବେ କି ସେ ବ୍ରହ୍ମ ।
କେବେ କି ସେ ଅନୁଭବ କରି ନାହିଁ ଏହା
ଅବା ଏବେ କରୁଛନ୍ତି କହ ମୁନି ନାହା ।
ବଶିଷ୍ଠ କହନ୍ତି ବ୍ରହ୍ମ ସର୍ବଦା 'ମୁଁ' ବୋଲି
ଅନୁଭବ କରୁଥାଏ ଜିଜ୍ଞାସୁ ମଉଳି ।
କିନ୍ତୁ ମୁହିଁ ରୂପେ ତା'ର ଅଟେ ଯେ ପ୍ରକାଶ
ତାହା ଅନ୍ୟ ନିରପେକ୍ଷ ଜାଣ ରଘୁଈଶ ।
ସୃଷ୍ଟି ଓ ସୃଷ୍ଟି ଅଭାବ ଉଭୟ ହିଁ ଜାଣ
ବ୍ରହ୍ମର ରୂପ ଅଟନ୍ତି ଆହେ ରଘୁରାଣ ।
ସଦା ସର୍ବତ୍ର ସେ ବ୍ରହ୍ମ ଛନ୍ତି ବିରାଜିତ
ବ୍ରହ୍ମ ବିନା କା'ର ସତ୍ତା ନାହିଁ ତ୍ରୀଜଗତ ।
ଅଜ୍ଞାନ ହେଉ ଅଥବା ହେଉ ସେ ତତ୍ତ୍ୱଜ୍ଞ
ବାହ୍ୟ ବିଷୟ ଥାଉ ବା ନ ଥାଉ ହେ ପ୍ରାଜ୍ଞ,
କାହାରି ଦ୍ୱାରା ହିଁ ଜାଣ ବ୍ରହ୍ମଙ୍କର ଠାରେ
ଭିନ୍ନ ଭାବ ନ ଲାଗଇ ଆହେ ରଘୁବୀରେ ।
ସୁଜ୍ଞାନୀ ହେଉ ଅଥବା ଅଜ୍ଞାନୀ ସେ ହେଉ
ସମସ୍ତଙ୍କ କଳ୍ପନାରେ ଜାଣ ମହାବାହୁ ।
ଦୃଶ୍ୟମାନ ପରକାଶ ପାଇଥାଏ ଜାଣ
କଳ୍ପନା ବିନା କାହାରି ନ ହୁଏ ଦର୍ଶନ ।
ବାୟୁ ଓ ତା'ର ପ୍ରବାହେ ପାର୍ଥକ୍ୟ ଯେସନ
ନ ଥାଇ ଜାଣି ରଖ ହେ କୌଶଲ୍ୟା ନନ୍ଦନ,
ବ୍ରହ୍ମ ଏବଂ ବ୍ରହ୍ମଙ୍କର ଅହଂଜ୍ଞାନ ମଧ୍ୟେ
କୌଣସି ପାର୍ଥକ୍ୟ ନାହିଁ ଆହେ ରଘୁନିଧେ ।
ଏହି ଭାବେ ତାଙ୍କ ମଧ୍ୟେ ସଦାକାଳେ ଜାଣ
ଅହଂଭାବ ଗୋଟି ରହିଥାଇ ବିଦ୍ୟମାନ ।
ଅନାଦି ଅନନ୍ତ ବ୍ରହ୍ମ କେବଳ ଜଗତ
ବେଦ, ବେଦାନ୍ତ ଇତ୍ୟାଦି ରଟନ୍ତି ଏ ମତ ।
ବ୍ରହ୍ମକୁ ଅହଂ, ଅନହଂ ଭାବେ ତୁମେ ରାମ
ବ୍ୟବହାର କାଳେ କରିପାର ଦରଶନ ।
ମାତ୍ରକ ପରମାର୍ଥିକ ଭାବେ ତାଙ୍କ ଠହିଁ
ଅହଂଜ୍ଞାନ ନ ଦେଖିବ ଆହେ ରଘୁସାଇଁ ।
ବ୍ରହ୍ମ ଏବଂ ଅହଂ ଏହି ମିଶ୍ରଦୃଷ୍ଟି ଅର୍ଥ
"ବ୍ରହ୍ମ ସର୍ବସ୍ୱରୂପ" ତା ଜାଣ ରଘୁନାଥ ।

ସେହି ଏକା ସଦା ସର୍ବରୂପେ ସବୁ କିଛି
ଅନୁଭବ କରୁଛନ୍ତି ଆହେ ରଘୁବଂଶୀ ।
ବିଶୁଦ୍ଧ ଦୃଷ୍ଟିରେ ପୁଣି ବୋଧ ରୂପେ ସେହି
ବିରାଜମାନ ରହନ୍ତି ଆହେ ରଘୁସାଇଁ ।
ପର୍ବତ ଜନମେ ନାହିଁ ଆକାଶେ ଯେସନ
ଜଗତ ଉତ୍ପନ୍ନ ନୋହି ବ୍ରହ୍ମେ କଦାଚନ ।
ଯେବେ ତୁମେ ଏହା ଜାଣିପାର ହେ ଶ୍ରୀରାମ
ପରମଶାନ୍ତି ଅବଶ୍ୟ ଲଭିବଟି ଜାଣ ।
ଜ୍ଞାନ ପରିପକ୍ୱ ନ ହୋଇଛି ଯେ ପର୍ଯ୍ୟନ୍ତ
ଭେଦଜ୍ଞାନ ଆଶ୍ରେ କରିପାର ରଘୁନାଥ ।
ପରିପକ୍ୱ ହୋଇଯିବ ଯେତେବେଳେ ଜ୍ଞାନ
ଭେଦ ଦୃଷ୍ଟି ନ ରହିବ ଅଯୋଧ୍ୟା ମଣ୍ଡନ ।
ଜଗତ କଳ୍ପନାକାରୀ ପ୍ରଜାପତି ଠାରୁ
ଭେଦଜ୍ଞାନ ଉପୁଜିଛି ଆହେ ଧର୍ମମେରୁ ।
ଶ୍ରୀରାମ କହନ୍ତି ବ୍ରହ୍ମନ୍ ! ସେ ପଦ ପରମ !
ଅହଂ ଭାବେ ଭାବିତ ହୁଅନ୍ତେ ତପୋଧନ,
ପ୍ରଥମେ କି ଘଟିଥାଏ କୁହନ୍ତୁ ଆପଣ
କହନ୍ତି ବଶିଷ୍ଠ ମୁନି ତା ଉତ୍ତର ଶୁଣ ।
ବ୍ରହ୍ମଠାରେ ଅହଂଭାବ ହୁଅନ୍ତେ ଉଦିତ
ଆକାଶ, ଦିଗ ଓ କାଳ ହୁଅନ୍ତି ଉଦଭୁତ ।
ଏହିପରି ଦେଶକାଳ ହୁଅନ୍ତେ ଉଦିତ
ଦ୍ୱୈତଭାବ ଧରି ଆତ୍ମା ହୁଏ ଉଦଭୁତ ।
ନାମ ରୂପ ଆଦି ଭେଦ ଆକାଶେ ଯେ କାଳେ
କଳପିତ ହୋଇଥାଏ ଆହେ ରଘୁବୀରେ
ସେତେବେଳେ ସେହି ଭେଦ ଆକାଶ ଆକାରେ ।
ବିଦ୍ୟମାନ ରହିଥାଏ କୌଶଲ୍ୟା ଦୁଲାଳେ ।
ତହିଁ ପ୍ରପଞ୍ଚ ରୂପରେ ବ୍ରହ୍ମହିଁ କେବଳ ।
ପ୍ରତିଭାତ ହୋଇକରି ଆହେ ରଘୁବାଳ
ଯେପରି ସେ ବ୍ରହ୍ମ ନୁହେଁ ଏହି ଭାବ ଧରେ
ଦ୍ୱୈତଭାବ ବଳେ ଜଗତ୍-ସୃଷ୍ଟି କ୍ରିୟା କରେ ।
ଆକାଶ ରୂପୀ ହୋଇଣ ସେହି ଶାନ୍ତ ବ୍ରହ୍ମ
ଜୀବ ଭାବରେ ନିଜକୁ କରିଣ କଳ୍ପନ ।
ସେ ଆକାଶେ ନିଜକୁ ସେ ଦୃଶ୍ୟ ରୂପେ ଦେଖେ
ଯେତେକାଳ ତତ୍ତ୍ୱଜ୍ଞାନ ନ ହୋଇ ପ୍ରତ୍ୟକ୍ଷେ ।
ତେତେକାଳ ଶାନ୍ତ ବ୍ରହ୍ମ ଜୀବ ରୂପ ଧରି
ଅବସ୍ଥାନ କରି ରହେ ହେ କୋଦଣ୍ଡଧାରୀ ।

ଇତି ଶ୍ରୀ ଯୋଗବାଶିଷ୍ଟେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ପରମାର୍ଥ ନିରୂପଣ ବର୍ଣ୍ଣନେ ନାମ ୧୨୦ତମ ସର୍ଗଃ



## ୧୨୧ତମ ସର୍ଗଃ

## ପ୍ରାକ୍ତନ-ରାମ ଶିଷ୍ୟତ୍ୱ ଉପାଖ୍ୟାନ

କହନ୍ତି ବଶିଷ୍ଠ ଆହେ ଶତ୍ରୁ ନିସୂଦନ
ପୂର୍ବେ ଏକ କଳ୍ପେ ରାମ ରୂପକୁ ଧରିଣ ।
ଜନମ ଲଭିଣ ଥିଲ ଏହି ଧରା ଧାମ
ଏବେ ଯେଉଁ ପ୍ରଶ୍ନ ତୁମେ ପଚାରିଲ ପୁଣ ।
ସେହି ଜନ୍ମେ ଶିଷ୍ୟ ରୂପେ ତୁମ୍ଭେ ହେ ଶ୍ରୀରାମ
ପୁଚ୍ଛା କରିଥିଲ ମୋତେ ଏହିପରି ପ୍ରଶ୍ନ ।
ତେତେବେଳେ ତୁମେ ପୁଚ୍ଛିଥିଲ ହେ ଶ୍ରୀରାମ
ଅବିନଶ୍ୱର କେ ବସ୍ତୁ ନଶ୍ୱର କେ ପୁଣ ?
ଗୁରୁ ରୂପେ ତୁମକୁ ମୁଁ କହିଥିଲି ରାମ
ସ୍ୱପ୍ନାନ୍ତେ ସୁଷୁପ୍ତି ଉପସ୍ଥିତ ହେଲେ ଜାଣ,
ସ୍ୱାପ୍ନିକ ନଗର ଆଦି ଯଥା ପାଏ ନାଶ
ସେପରି ପ୍ରଳୟକାଳ ଆସିଯାନ୍ତେ ପାଶ,
ଧରା, ଗିରି, ଦିଗ, କାଳ, କ୍ରିୟା ଭୂତବର୍ଗ
କିଛି ବିଦ୍ୟମାନ ନ ରହଇ ହେ ସୁଭଗ ।
ଏପରିକି ନ ରହଇ ଆକାଶ ମଣ୍ଡଳ
ବ୍ରହ୍ମା ବିଷ୍ଣୁ ମହେଷାଦି ଦେବତା ସକଳ ।
ସର୍ବବିଧ କାରଣର କାରଣ ଯେମାନ
ସେମାନଙ୍କ ସତ୍ତା ମଧ୍ୟ ନ ରହେ ଶ୍ରୀରାମ ।
ଅବିନାଶୀ ଅଟେ ଯେଣୁ ରାମ ଏହି ଚିତ୍ତ
ଚିତ୍ତର ବିବର୍ତ୍ତ ପୁଣି ଅଟେ ଯେ ଜଗତ ।
ଅବଶିଷ୍ଟ ରହେ ଏକମାତ୍ର ଚିଦାକାଶ
ନଶ୍ୱର ଅବିନଶ୍ୱର ବୁଝ ରଘୁଈଶ ।
ତୁମେ କହିଥିଲ ପୁତ୍ରେ ! ଅସତର ସତ୍ତା
ପୁଣି କହିଥିଲ ମଧ୍ୟ ସତ ର ଅସତ୍ତା ।
ସମ୍ଭବପର କେବେ ହେଁ ହୋଇ ତ ନ ପାରି
ତେବେ ଏ ଜଗତ କାହିଁ ରହେ ତପଚାରୀ ।
"ତାହା ଠିକ୍", ଏହିପରି କହିଥିଲି ମୁହିଁ
ଜଗତକୁ ସତ ବୋଲି କେବେ କହି ନୋହି ।
ଯେହେତୁ ଦୃଷ୍ଟିଗୋଚରରେ ହୁଏ ତା ବିନାଶ
ସ୍ୱପ୍ନ ଦୃଷ୍ଟ ନଗ୍ରସମ ଆହେ ରଘୁଈଶ ।
ବିନଷ୍ଟ ହୁଅଇ ଯେଣୁ ଏ ଦୃଶ୍ୟ ଜଗତ
ତାହାକୁ ସତ୍ୟ ବୋଲିଣ କହିବ କେମନ୍ତ ।
ସ୍ୱପ୍ନ ଭାଙ୍ଗିଗଲେ ଯଥା ସପନ ନଗର
କେଉଁଆଡ଼େ ଚାଲିଯାଏ ନ ଥାଏ ଖବର ।
ପ୍ରଳୟ କାଳରେ ତଥା ଏ ଦୃଶ୍ୟ ଜଗତ
କେଣେ ଚାଲିଯାଏ କିଏ କହିବ କେମନ୍ତ ?
ତୁମେ କହିଥିଲ ରାମ ଏଦୃଶ୍ୟ ଜଗତ
ଅସତ ବୋଲିଣ ଯଦି ହୁଅଇ ଗୃହୀତ ।
କିଛି କାଳ ପାଇଁ ତଦାକାରେ ହେ ଗୋସାଇଁ
କିଏ ତେବେ ପରକାଶ ପାଏ ଦିଅ କହି ?
ପୁଣି ଜ୍ଞାନ ଉଦେ ହେଲେ ତାହା ସେହିପରି
କି କାରଣେ ପରିଦୃଷ୍ଟ ନୁହେଁ ତପଚାରୀ ?
ମୁହିଁ କହିଥିଲି ରାମ ସେହି ଚିଦାକାଶ
ବିକଶିତ ହୋଇ ଉଠେ ହେ ରଘୁବିଳାସ ।
ଶାମୁକାରେ ରୂପାଜ୍ଞାନ ହୁଏ ଯେଉଁପରି
ସେ ବିକାଶ ଜଗତ୍ ରୂପେ ଦିଶେ ସେହିପରି ।
ବାସ୍ତବିକ୍ ଜଗତ୍ ବୋଲି ଅନ୍ୟକିଛି ନାହିଁ
ସ୍ୱଭାବରେ ବିଦ୍ୟମାନ ରହିଣ ଯେ ସେହି,
ଏହି ରୂପେ ପ୍ରତିଭାତ ଜାଣ ହୋଇଥାଇ
ସେହି ପ୍ରତିଭାତ ଜାଣ ଏ ସୃଷ୍ଟି ବୋଲାଇ ।
ସେ ପ୍ରତିଭାତ ନୋହିଲେ ପ୍ରଳୟ ଘଟଇ
ଚିଦାକାଶ ସଦା ଜଗତ୍‌ରୂପେ ବିକଶଇ ।
ପୋଖରୀରେ ତୁମ ଛାଇ ଯେବେ ପଡ଼ିଯାଇ,
ତାଦ୍ୱାରା ତୁମେ ଯେପରି ଅନ୍ୟବ୍ୟକ୍ତ ନୋହି
ପୂର୍ବେ ଯେଉଁପରି ଥିଲ ସେହିପରି ଥାଅ
ପରେ ମଧ୍ୟ ସେହି ରୂପେ ରହିବ ନିଶ୍ଚୟ ।
ସୃଷ୍ଟି ଓ ପ୍ରଳୟ ଏହି ଉଭୟାବସ୍ଥାରେ
ଏକ ରୂପେ ଚିଦାକାଶ ରହେ ସେ ପ୍ରକାରେ ।
ଜାଗରଣେ, ସୁଷୁପ୍ତିରେ ସ୍ୱାପ୍ନିକ ଜଗତ
ଯେଉଁପରି ନ ରହଇ ଆହେ ରଘୁନାଥ ।
ଅଜ୍ଞାନାଚ୍ଛନ୍ନ କାଳରେ ଦେଖ ଯେ ଜଗତ
ଜ୍ଞାନ ଉଦୟରେ ତାହା ହୁଅନ୍ତେ ବିଲୁପ୍ତ,
ତେତେବେଳେ ଆଉ କିଛି ନ ରହଇ ଜାଣ
ଅଜ୍ଞାନ ହେତୁ ଜଗତ ହୁଅଇ ଦର୍ଶନ ।
ସେହି ସୃଷ୍ଟି ଓ ପ୍ରଳୟରୂପୀ ଚିଦାକାଶ
ଯେତେକାଳ ଅବିଜ୍ଞାତ ଥାଏ ରଘୁଈଶ,

ତେତେକାଳ ସଂସାରିକ ଦୁଃଖର ଅସ୍ତିତ୍ୱ
ଅବଗତ ହେଲେ ତାଙ୍କୁ ଦୁଃଖ ଯାଏ ଅସ୍ତ ।
ସଦା ସେ ଅବିଦ୍ୟମାନ ଅଜ୍ଞାନୀଙ୍କ ପାଇଁ
ତତ୍ତ୍ୱଜ୍ଞଙ୍କୁ ସର୍ବ ରୂପେ ପ୍ରତିଭାତ ହୋଇ ।
ଚିଦାକାଶ ରୂପୀ ସେ ପରମ ହେବ ରାମ
ଗିରି, ନଦୀ, ତୃଣ, ଅଗ୍ନି, ଘଟ, ପଟମାନ
ସ୍ଥାବର ଜଙ୍ଗମ ମୟ ଏ ସମଗ୍ର ବିଶ୍ୱ
ଏ ସମସ୍ତ ସେହି ଏକା ଜାଣ ରଘୁଈଶ ।
ଆସ୍ତି, ନାସ୍ତି କାଳ କ୍ରିୟା ପୃଥିବୀ ଆକାଶ
ଜନ୍ମ ମୃତ୍ୟୁ ଭାବାଭାବ ସଂପଦ ଓ ନାଶ,
ପୁଣି ଶୁଭାଶୁଭ କର୍ମ, ବନ୍ଧନ, ବିପଦ
ସର୍ବରୂପେ ବିରାଜିତ ସେ ପରମ ପଦ ।
ଏପରି କୌଣସି ବସ୍ତୁ ନାହିଁ ଏ ଜଗତେ
ଯାହା କି ନୁହନ୍ତି ସେହୁ ଆହେ ରଘୁପତେ ।
ଅଥଚ ଅଟନ୍ତି ସେହୁ ସକଳ ଅତୀତ
ସର୍ବମୟ, ସର୍ବ ରୂପେ ଦୃଷ୍ଟ ସେ ସର୍ବତ୍ର ।
ବ୍ରହ୍ମଭାବେ ତାଙ୍କୁ ନ ଦେଖିଲେ ରଘୁବୀର
ପ୍ରତି ଜୀବ, ବସ୍ତୁ, କର୍ତ୍ତା, ଭୋକ୍ତା, ମହେଶ୍ୱର ।
ଯେହେତୁ ସକଳ ପ୍ରାଣୀ ସକଳ ପଦାର୍ଥ
ଅନାଦି ଅନନ୍ତ ବ୍ରହ୍ମ ଆହେ ରଘୁନାଥ ।
ସେହି କଳ୍ପେ ତୁମେ ମୋର ଶିଷ୍ୟ ହୋଇ କରି
ଏ ଉପଦେଶ ଶୁଣିଛ ମୁଖରୁ ମୋହରି ।
ତେତେବେଳେ ତୁମେ ଏହା ବୁଝି ତ ନ ଥିଲ
ତେଣୁ ତ୍ରେତା ଯୁଗେ ଆସି ଜନମ ଲଭିଲ ।
ପୁଣି ମୋହଠାରୁ ଉପଦେଶକୁ ଗ୍ରହଣ
କରୁଅଛ ତୁମେ ଆହେ ଦଶରଥ ନାନ ।
ଏବେ ତୁମେ ସବୁ ଶୁଣୁଅଛ ହେ ଶ୍ରୀରାମ
ଜ୍ଞାନ ସ୍ୱରୂପତା ମଧ୍ୟ ଲଭିଛ ଆପଣ ।
ଆକାଶ ସଦୃଶ ତୁମେ ନିର୍ଲିପ୍ତ ରହିଣ
ଆଉ ମଧ୍ୟ ହୋଇ କରି କାମନା ବିହୀନ,
ଧର୍ମ ଅନୁସାରେ ପ୍ରଜା କର ହେ ପାଳନ
ସାର୍ଥକ କର ହେ ତବ ମାନବ ଜୀବନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ପ୍ରାକ୍ତନ ରାମଶିଷ୍ୟତ୍ୱ ଉପାଖ୍ୟାନେ ନାମ ୧୨୧ତମ ସର୍ଗଃ**



## ୧୨୨ତମ ସର୍ଗଃ

## ମହୋତ୍ସବ ବର୍ଣ୍ଣନ

କହନ୍ତି ବାଲ୍ମୀକି ଶୁଣ ଭରଦ୍ୱାଜ ମୁନି
ବଶିଷ୍ଠଙ୍କ ଉପଦେଶ ଶେଷ ହେବା ଜାଣି ।
କମ୍ପି ଉଠଇ ଆକାଶ ଦୁନ୍ଦୁଭି ଶବଦେ
ପୁଷ୍ପବୃଷ୍ଟି କରୁଥାନ୍ତି ସରଗୁ ବିବୁଧେ ।
ସଭାରେ ଉଚ୍ଚ ଆସନେ ବଶିଷ୍ଠ ମହର୍ଷି
ତାଙ୍କୁ ଘେରି ବସିଥାନ୍ତି ସକଳ ତପସ୍ୱୀ ।
ରାଜା ଦଶରଥ, ରାମ ଲକ୍ଷ୍ମଣ ପ୍ରଭୃତି
ବଶିଷ୍ଠ ସମୀପେ ବସି ସବୁ ଶୁଣୁଥାନ୍ତି ।
ତାଙ୍କ ପଛପଟେ ମନ୍ତ୍ରୀ ସାମନ୍ତ ରାଜନ
ପାତ୍ରଙ୍କ ସହ ସଭାକୁ କରନ୍ତି ମଣ୍ଡନ ।
ପରିଶେଷେ ଅନ୍ୟ ସଭ୍ୟ ବୃନ୍ଦମାନ ଥାଇ
ଉପଦେଶ ଶୁଣୁଥାନ୍ତି ସ୍ଥିର ଚିତ୍ତ ହୋଇ ।
ଆବାଳ ବୃଦ୍ଧ ବନିତା ସକଳେ ଉଠିଣ
ସେହି ଦିବ୍ୟ ପୁଷ୍ପରାଶି ସାଉଁଟି ଧରିଣ ।
ଅରପନ୍ତି ପୁଷ୍ପାଞ୍ଜଳି ଗୁରୁଙ୍କର ପାଦେ
ରାଜା ଦଶରଥ କହି ଉଠନ୍ତି ଆମୋଦେ ।
ଅନ୍ତର ଖୋଲି କହୁଛି ଆହେ ମୁନିବର
ଉତ୍ତୀର୍ଣ୍ଣ ହେଲି ମୁଁ ଆଜ ସଂସାର କାନ୍ତାର ।
ନବ ଜୀବନ ପାଇଲି ତବ ଉପଦେଶେ
ବାକ୍ୟ ନ ସ୍ଫୁରଇ ମୋର ଭାବ ପରକାଶେ ।
ଜ୍ଞାତବ୍ୟ ବିଷୟମାନ ପରିଜ୍ଞାତ ହୋଇ
ଆପଦର ଶେଷ ଉର୍ମି ଦର୍ଶନ କଲଇଁ ।
ପରମ ପଦେ ବିଶ୍ରାମ ଲଭିଛି ମୁଁ ଦେବ
ଦୂରୀଭୂତ ହୋଇଛି ମୋ ଦୃଶ୍ୟଜ୍ଞାନ ସର୍ବ ।
ଆକାଶ କୁସୁମ ହରୁଥିଲା ମୋର ଚିତ୍ତ
ସୁକ୍ତିରେ ମୁକ୍ତା ଝଟକୁ ଥିଲା ମୋର ନେତ୍ର ।
ମୃଗତୃଷ୍ଣା ଜଳ ହରୁଥିଲା ମୋର ଶୋଷ
ରଜ୍ଜୁକୁ ଉରଗ ମଣି ଉଡୁଥିଲା ହୋସ ।
ଦ୍ୱିତୀୟ ଚନ୍ଦ୍ର ମୁଁ ଦେଖିଥିଲି ନଭପଟେ
ସଂକଳ୍ପ ନଗର ନାଚୁଥିଲା ହୃଦ ତଟେ ।
ସୁନାମୁଦି ସ୍ୱର୍ଣ୍ଣତ୍ୱ ମୁଁ ଯାଇଥିଲି ଭୁଲି
ଆକାଶ ନୀଳିମା ଚିତ୍ତ ନେଉଥିଲା ହରି ।

ଏସନ ନାନା ଦୃଷ୍ଟାନ୍ତ ଉପଦେଶ ଛଳେ
ଅଜ୍ଞାନ ତିମିର ମୋର ବିନାଶ ଲଭିଲେ ।
ଶ୍ରୀରାମ କହନ୍ତି ମୁନିଶ୍ରେଷ୍ଠ ଗୁରୁବର
ମୋହ ମୁକ୍ତ ହେଲି ଅନୁଗ୍ରହରୁ ତୁମର ।
ବିଶୁଦ୍ଧ ବୁଦ୍ଧି ଲଭିଣ ଆହେ ଗୁରୁବର
ସାକ୍ଷାତ ପରଂବ୍ରହ୍ମ ମୁଁ କହେ ମୋ ଅନ୍ତର ।
ତେଣୁ କରି ମୋର ନାହିଁ କିଛି ହିଁ ସନ୍ଦେହ
ହଟିଛି ମାୟା ପଟଳ ମୁହିଁ ନିରାମୟ ।
ବିଜ୍ଞାନ ସ୍ୱରୂପେ ସ୍ଥିତି ଲଭିଛି ମୁଁ ଦେବ
ଧନ୍ୟ ମୁଁ ହୋଇପାରିଛି କରୁଣାରୁ ତବ ।
ସଜ୍ଜନ, ଦୁର୍ଜ୍ଜନ, ଶତ୍ରୁ, ମିତ୍ର ମୋ ଦୃଷ୍ଟିରେ
ସର୍ବେ ସମାନ ଦିଶନ୍ତି ହେ ତପସ୍ୱୀ ବରେ ।
ଆତ୍ମ ଚଇତନ୍ୟ ଜ୍ଞାତ ନୋହିବା କାରଣ
ହାୟ ! କି ଦୁଃଖ ଲଭନ୍ତି ସର୍ବ ପ୍ରାଣୀଗଣ ।
ଯେତେକାଳ ଏହି ଆତ୍ମା ରହଇ ଅଜ୍ଞାତ
ଜଗତ ଆକାରେ ହେଉଥାଏ ଅନୁଭୂତ ।
ତାକୁ ଜାଣିପାରି ଦେବ ଜଗତ ମୋ ପାଇଁ
ଶାନ୍ତ ଓ ସର୍ବାର୍ଥ ପୂର୍ଣ୍ଣ ଭାବେ ବିରାଜଇ ।
ଆପଣଙ୍କ ଅନୁଗ୍ରହ ବିନା ଆହେ ଦେବ
ଆତ୍ମାକୁ ଜାଣିବା ପାଇଁ ସକ୍ଷମ କେ ହେବ ?
ସେତୁ ବା ନଉକା ବିନା ସାଗର ଲଙ୍ଘନେ
କେହି କି ସକ୍ଷମ ହୁଏ ଆହେ ମହାତ୍ମନେ ?
ଯଥୋଚିତ ଉପଦେଶ କରିଣ ପ୍ରଦାନ
ଯେ ପ୍ରେରଣା ମୋର ହୃଦେ କଲ ଜାଗରଣ ।
ରାଜ୍ୟ ପାଳନାଦି ସର୍ବ କର୍ମ ସମ୍ପାଦନ
କରିବା ନିମିତ୍ତ ଯାହା କହିଛ ଆପଣ ।
ଆଦେଶ ମାନିଣ ତାହା ଅକ୍ଷରେ ଅକ୍ଷରେ
ପାଳନ କରିବ ଦୃଢ଼େ କହେ ସମକ୍ଷରେ ।
ଅନୁଜ ଲକ୍ଷ୍ମଣ ଏବେ କହନ୍ତି ବଚନ
ଜନ୍ମ ଜନ୍ମାନ୍ତର ସର୍ବ ଦୁର୍ବାସନାମାନ ।
ତତ୍‌ଜନୀତ ଉତପନ୍ନ ସନ୍ଦେହ ସକଳ
ବିନାଶ ସକ୍ଷମକାରୀ ତୁମ ବଚନର ।
ଜନ୍ମ ଜନ୍ମାନ୍ତର ପୂଣ୍ୟଫଳ ବିକଶିତ
କରିବା ପାଇଁକି ଯେଉଁ ବଚନ ସମର୍ଥ ।
ସେହି ଉପଦେଶ ମାନ କରିଣ ଶ୍ରବଣ
ମନମୋର ପ୍ରଫୁଲ୍ଲିତ ପୂର୍ଣ୍ଣ ଚନ୍ଦ୍ର ସମ ।

ପରମ ଆତ୍ମା ପ୍ରକାଶ ହୋଇଛି ମୋହର
ଆହ୍ଲାଦରେ ଉଲ୍ଲସିତ ମୋହର ଅନ୍ତର ।
ହେ ମହାନୁଭବ ତବ ଅମୃତ ବଚନ
ନିରତିଶୟ ଆନନ୍ଦ ଦିଏ ମୋର ମନ ।
ପ୍ରତ୍ୟକ୍ଷରେ ଆତ୍ମଦୃଷ୍ଟି ହୁଏ ଉପଲବ୍ଧ
ବର୍ଣ୍ଣିକି ପାରିବ ତାହା ମୋ ସମ ଅବୋଧ ?
ତଥାପି ଆହେ ମହାନ ଏ ମାନବ ଗଣ
ମହାପୁରୁଷ ସେବାରୁ ବଞ୍ଚିତ ରହିଣ,
ନାନା ଦ୍ୱେଷ, ଅହଙ୍କାର, ଜନମ, ମରଣ
ଦୁଃଖେ ସଢ଼ି ସଦା ଜଳୁଛନ୍ତି କାଷ୍ଠ ସମ ।
କି ଆଶ୍ଚର୍ଯ୍ୟ ! କେଡ଼େ ହତଭାଗ୍ୟ ଅଟେ ନର
ତବ ସଦୃଶ ମହାନୁଭବ ମାନବର,
ଉପଦେଶରୁ ବଞ୍ଚିତ ରହି ଏତେକାଳ
ସଂସାର ଯାତନା ଭୋଗୁଛନ୍ତି ଅବିରଳ ।
ଅଜ୍ଞାନ ଅନ୍ଧକାର ମୋ, ଅନ୍ତର ବାହାର
ନିଃଶେଷ ଭାବେ ନିବୃତ୍ତ କଲ ଗୁରୁବର ।
ଲୋକ ସମକ୍ଷରେ ଏହା ହେଲା ପ୍ରମାଣିତ
ସୂର୍ଯ୍ୟଠାରୁ ଶତ ଗୁଣ ତୁମେ ଦୀପ୍ତିବନ୍ତ ।
ବାହ୍ୟ ଅନ୍ଧକାର ସିନା ହରନ୍ତି ତପନ
ଆତ୍ୟନ୍ତିକ ହୁଏ କି ତା ଦେବ କଦାଚନ ?
ବାହାର ଭିତର ଅନ୍ଧକାର ମୋ ଆପଣ,
ଆତ୍ୟନ୍ତିକ ଭାବେ ଦୂର କରିଛ ମହାନ୍ ।
କହୁଛନ୍ତି **ଗାଧିଶିଷ୍ୟ** ଶୁଣ ସଭାଜନ
ବଶିଷ୍ଠ ମୁନି ବଚନ କରିଣ ଶ୍ରବଣ ।
ମନେହୁଏ ଗଙ୍ଗା ମଧ୍ୟେ ସହସ୍ରେକ ବୀର
ଅଭିସ୍ନାତ ହେଲି ମୁହିଁ ପୂତମୋ ଶରୀର ।
ପୁଣି କହନ୍ତି ଶ୍ରୀରାମ ଆହେ ସଭାଜନ
ରହି ନ ପାରେ ନ କହି ଦି ପଦ ବଚନ ।
ସକଳ ସମ୍ପତ୍ତି ମଧ୍ୟେ ଶ୍ରେଷ୍ଠ ଅଟେ ଆଶା
ଯାହା କି ନିରତିଶୟ ଆନନ୍ଦର ମାତା ।
ଦୃଷ୍ଟିର ଚରମସୀମା ଯେଉଁ ଆତ୍ମ ଦୃଷ୍ଟି
ଯାହାବଳେ ସର୍ବଜ୍ଞାନ ରହେ ହସ୍ତ ମୁଷ୍ଟି ।
ଅଧ୍ୟାତ୍ମ ଶାସ୍ତ୍ରଟି ଜାଣ ଶାସ୍ତ୍ର ଶେଷ ସୀମା
ଚରମ ପ୍ରମାଣ ଅଟେ ଯାହାର ଗାରିମା ।
ଧନ, ପୁତ୍ର, ପଶୁ ଆଦି ମାନଙ୍କର ନାଶ
ବିପଦ, ଚରମସୀମା ସଂସାର ବିନାଶ ।

ସଂସାର ନାଶ ବ୍ୟତୀତ ଅପର ବିନାଶ
କିଛି ନୁହେଁ ବୁଝି ରଖ ସକଳ ସଦସ୍ୟ ।
କାବ୍ୟ, ରସ, ଅଳଙ୍କାର ହେତୁ ସୁଶୋଭନ
ବାଣୀର ଚରମ ସୀମା ବଶିଷ୍ଠ ବଚନ ।
ସୁଖ ବିଶ୍ରାନ୍ତି କାରଣ ଆନନ୍ଦ ମହଲ
ଉଦ୍ୟାନ, ପର୍ବତ, ନଦୀ, ବେଳାଭୂମି ସ୍ଥଳ ।
ଯା'ର ଶେଷସୀମା, ପରମାତ୍ମ ଉପଦେଶ
ପରମବିଶ୍ରାନ୍ତି ହେତୁ ଜାଣ ହେ ସଦସ୍ୟ,
ବଶିଷ୍ଠଙ୍କ ଉପଦେଶ ଗର୍ଭରୁ ଏମାନ
ଆମ୍ଭଙ୍କୁ ପ୍ରାପତ ହେଲା ଜାଣ ସଭାଜନ ।
**ନାରଦ ମୁନି** କହନ୍ତି ଆହେ ମୁନି ଶ୍ରେଷ୍ଠ
ସାରା ବ୍ରହ୍ମାଣ୍ଡ ମଣ୍ଡଳ ବୁଲେ ମୁଁ ନିରତ ।
ବ୍ରହ୍ମଲୋକେ କେବେ ଯାହା ଶୁଣିନାହିଁ କାନ
ତୁମର ଏ ଜ୍ଞାନୋଦିତ ମଧୁର ବଚନ ।
ଏ ମୁଣ୍ଡୁ ସେମୁଣ୍ଡୁ ଯାଏ ସ୍ୱର୍ଗଲୋକେ ବୁଲେ
ଏହି ସାରଗର୍ଭ ବାଣୀ କାନେ ମୋ ନ ପଡ଼େ ।
କାନ ହେଲା ଦିନଠାରୁ ଏ ବିଶ୍ୱରେ ମୁହିଁ
ଶୁଣିତ ନଥିଲି ଯାହା ଏବେ ଶୁଣିଲଇଁ ।
ତତ୍ତ୍ୱଜ୍ଞାନପୂର୍ଣ୍ଣ ତବ ଉପଦେଶ ବାଣୀ
ପୁରୀ ଉଠେ ପେଟ, ପୂତ ମୋ ଶ୍ରବଣ ବେନି ।
ବଶିଷ୍ଠଙ୍କୁ ସମ୍ବୋଧିଣ କହନ୍ତି **ଶତ୍ରୁଘ୍ନ**
ତବ ଅନୁଗ୍ରହେ ଦେବ ମୁହିଁ ଭାଗ୍ୟବାନ୍ ।
ନିରତିଶ୍ରୟ ଆନନ୍ଦ ଲଭିଅଛି ମୁହିଁ
ଜୀବନ ମୁକତି ପ୍ରାପ୍ତ ମୋର ହୋଇଛଇଁ ।
ଅତ୍ୟନ୍ତ, ପ୍ରଶାନ୍ତ ମୁହିଁ, ପରଂପଦ ପ୍ରାପ୍ତ
ଆପ୍ତ କାମ ମୁଁ, ନିରତିଶୟ ସୁଖ ଯୁକ୍ତ ।
ଶେଷେ ପୁଣି **ଦଶରଥ** ବୋଲନ୍ତି ଏସନ
ଜନ୍ମ ଜନ୍ମାନ୍ତର ପୁଣ୍ୟ ଫଳ ଘେନି ଜାଣ ।
ମୁନିଶ୍ରେଷ୍ଠ କୂଳଗୁରୁ ମହର୍ଷି ବଶିଷ୍ଠ
ପରମ ପାବନ ତତ୍ତ୍ୱ, ଉପଦେଶ ଶ୍ରେଷ୍ଠ,
ଅନୁଗ୍ରହ କରି ଯାହା କଲେକ ପ୍ରଦାନ
ପରମ ପବିତ୍ର ଆମେ ସର୍ବେ ହେଲୁ ଜାଣ ।
କହନ୍ତି ବାଲ୍ମୀକି ମୁନି ଭରଦ୍ୱାଜ ଶୁଣ
ଉପସ୍ଥିତ ସଭ୍ୟଗଣ କଲେଯା ବର୍ଣ୍ଣନ ।
ସମ୍ମାନ ଜନକ ସେହି ସବୁ ଯେ ବଚନ
ବଶିଷ୍ଠଙ୍କ ଜ୍ଞାନବାଣୀ ମାର୍ଜିତ ଏମାନ ।
କହନ୍ତି ବଶିଷ୍ଠ ମୁନି ଶୁଣ ହେ ରାଜନ
ମୋକ୍ଷ କଥା ସମାପ୍ତିରେ ବ୍ରାହ୍ମଣ ପୂଜନ,
କରିବା ବିଧେୟ ଏହା ଶାସ୍ତ୍ରର କଥନ
ତେଣୁ କରି ଏବେ କର ବ୍ରାହ୍ମଣ ଅର୍ଚ୍ଚନ ।
ତଦୀୟ କାମନାମାନ କରନ୍ତୁ ପୂରଣ
ଅକ୍ଷୟ ଫଳର ଭାଗୀ ହୋଇବେ ଆପଣ ।
ଗୁରୁଦେବଙ୍କ ଏମନ୍ତ ବଚନ ଶୁଣିଣ
ବେଦଜ୍ଞ ଦ୍ୱିଜଙ୍କୁ ରାଜା କଲେ ନିମନ୍ତ୍ରଣ ।
ମଥୁରା ସୌରାଷ୍ଟ୍ର ପୁଣି ଗୌଡ଼ ଦେଶବାସୀ
ବେଦଜ୍ଞ ଶ୍ରେଷ୍ଠ ବ୍ରାହ୍ମଣେ ମିଳିଲେକ ଆସି ।
ନାନା ଦେଶୁ ଦଶସସ୍ର ବେଦଜ୍ଞ ବ୍ରାହ୍ମଣ
ଆସି ପହଞ୍ଚିଲେ ସର୍ବେ ପାଇ ନିମନ୍ତ୍ରଣ ।
ଯଥାବିଧି ଅର୍ଚ୍ଚନରେ ସରବେ ସନ୍ତୁଷ୍ଟ
ମନାସନ୍ତି ସର୍ବେ ପୁଣି ରାଜାଙ୍କର ଇଷ୍ଟ ।
ଶ୍ରାଦ୍ଧରେ ପିତୃଙ୍କୁ ପୁଣି ଯଜ୍ଞେ ଦେବଗଣ
ପୂଜା ଅର୍ଚ୍ଚନା ଅର୍ପିଲେ ଅଯୋଧ୍ୟା ରାଜନ ।
ନୃପ, ମନ୍ତ୍ରୀ, ଭୃତ୍ୟ, ଅନ୍ଧ, ଦରିଦ୍ର ଯେ ଥିଲେ
ଅର୍ଥ, ଅନ୍ନ, ପାନ, ଦାନ ପାଇ ତୋଷ ହେଲେ ।
ଏହି ଉପଲକ୍ଷ୍ୟେ ମହାରାଜା ଦଶରଥ
ମହୋତ୍ସବ ଆରମ୍ଭିଲେ ବାନ୍ଧବ ସହିତ ।
ଉତ୍ସବ ଚଳଇଧରି ସପତ ଦିବସ
ଯଥାବିଧି ଅର୍ଚ୍ଚନରେ ରାଜାହେଲେ ତୋଷ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରାର୍ଦ୍ଧେ ମହୋତ୍ସବ ବର୍ଣ୍ଣନେ ନାମ ୧୨୨ତମ ସର୍ଗଃ**



## ୧୨୩ତମ ସର୍ଗଃ
## ଗ୍ରନ୍ଥ ପ୍ରଶଂସା

କହନ୍ତି ବାଲ୍ମୀକୀ ମୁନି ଭରଦ୍ୱାଜ ଶୁଣ
ଏପରି ପରମ ତତ୍ତ୍ୱ ଲଭିଣ ଶ୍ରୀରାମ ।
ଶୋକାତୀତ ଭାବେ କରିଥିଲେ ଅବସ୍ଥାନ
ତୁମେ ମଧ ବ୍ରହ୍ମ ଦୃଷ୍ଟି ଆଶ୍ରୟ କରିଣ ।
ଜୀବନ ମୁକତ ଭାବେ ରାଜ ହେ ଆପଣ
ନୂତନ ଜୀବନ ତୁମେ କରିଲ ଅର୍ଜନ ।
ତୁମେ ତ ଏଥି ପୂର୍ବରୁ ହୋଇଛ ମୁକତ
ବିଶେଷରେ ମୁକ୍ତ ହେଲ ଶୁଣି ଏ ବୃତ୍ତାନ୍ତ ।

ବୁଦ୍ଧି ଯାହାର ନିର୍ମ୍ମଳ ତାହାର ବୃତ୍ତାନ୍ତ
କେଉଁ ବାକ୍ୟରେ ବର୍ଣ୍ଣିବି ଆହେ ତପୋବନ୍ତ ।
ଶୁଣିକରି ଏହି ମୋକ୍ଷଶାସ୍ତ୍ର ତପୋଧନ
ବାଳକ ମଧ୍ୟ ତତ୍ତ୍ୱଜ୍ଞ ହୋଇପାରେ ଜାଣ ।
ଏହି ମୁକ୍ତି ଶାସ୍ତ୍ର ଅନୁଶୀଳନରେ ପୁଣ
ସଂସାର ପ୍ରତି ଆସକ୍ତି କଟିଯାଏ ଜାଣ ।
ଆଉ ମଧ୍ୟ ଯାର ତତ୍ତ୍ୱ ବୁଝିଛି ଯେ ଜନ
ସଂସାରକୁ ତା'ର ନାହିଁ ପୁନରାବର୍ତ୍ତନ ।
ଗୁରୁଠାରୁ ଏହି ମୋକ୍ଷ ଶାସ୍ତ୍ର ଅଧ୍ୟୟନ
କରି ଅନ୍ୟକୁ ବୁଝାଏ ଯେବଣ ସୁଜନ ।
ଏ ଘୋର ସଂସାରୁ ମଧ୍ୟ ହେବ ସେ ମୁକତ
କହି ନୋହିବ ମୁଖରେ ଏ ଶାସ୍ତ୍ର ଗୁରୁତ୍ୱ ।
କାମନା ରଖି ଯେ କରେ ଏ ଶାସ୍ତ୍ର ପଠନ
ଅଥବା କେବଳ ଯେହୁ କରଇ ଶ୍ରବଣ ।
ବୁଝି ନ ପାରିଲେ ମଧ୍ୟ ଅର୍ଥକୁ ଏହାର
ଅଶ୍ୱମେଧ ଯଜ୍ଞ ଫଳ ଲଭେ ସେହି ନର ।
ଦେହାନ୍ତେ ଲଭିପାରିବ ପୁଣି ସ୍ୱର୍ଗବାସ
ଶ୍ରବଣ ପଠନଫଳ ଏହାର ଅଶେଷ ।
ଆହେ ଭରଦ୍ୱାଜ ତୁମ ନିକଟରେ ମୁହିଁ
ଆମୂଳଚୂଳ ଏ ଶାସ୍ତ୍ର ଗୋଟି କହିଲଇଁ ।
ଏହାର ଅନୁସରଣ କରିଣ ହେ ମୁନେ
ଜ୍ଞାନୈଶ୍ୱର୍ଯ୍ୟ ଲାଭ କର ଏହି ଧରା ଧାମେ ।
ଲୋକ ଅନୁଗ୍ରହ ପାଇଁ କିଛିକାଳ ତୁମେ
ଦେହସ୍ଥ ରହି ବିଚର ପୂର୍ଣ୍ଣାନନ୍ଦ ଧାମେ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତରଖଣ୍ଡେ ଗ୍ରନ୍ଥ ପ୍ରଶଂସା ବର୍ଣ୍ଣନେ ନାମ ୧୨୩ତମ ସର୍ଗଃ**



## ୧୨୪ତମ ସର୍ଗଃ
## ଶିଷ୍ୟର ଗୁରୁପ୍ରତି ଆତ୍ମ ନିବେଦନ

କହନ୍ତି ବାଲ୍ମୀକି ଶୁଣ ହେ ଅରିଷ୍ଟନେମି
ବଶିଷ୍ଠ ରାମେ ଅର୍ପିଲେ ଯେଉଁ ମୁକ୍ତି ବାଣୀ ।
ଅଗସ୍ତି ଯା କହିଥିଲେ ସୁତୀକ୍ଷ୍ଣ ମୁନିଙ୍କୁ
ସେହି ମୁକ୍ତି ଶାସ୍ତ୍ର ମୁହିଁ କହିଲି ତୁମକୁ ।
ଏହି ଅନୁସାରେ ଯେବେ କରିବ କରମ
ପରମପଦ ଅବଶ୍ୟ ଲଭିବ ଆପଣ ।
ଅରିଷ୍ଟନେମି ରାଜନ ବୋଲନ୍ତି ଏସନ
ଆପଣଙ୍କ ଅନୁଗ୍ରହ ଭୋ ଦେବ ଲଭିଣ ।
ଭବସାଗରୁ ଉଦ୍ଧାର ଲଭିଅଛି ମୁହିଁ
ନ ଜାଣେ କିପରି କୃତଜ୍ଞତା ଜ୍ଞାପିବଇଁ ।
ପୁଣି ସେ ଅରିଷ୍ଟନେମି ଦେବ ଦୂତେ ଚାହିଁ
ନମସ୍କାର କରି ତାଙ୍କୁ କହନ୍ତି ଘେନାଇ ।
ଇନ୍ଦ୍ରଙ୍କ ନିକଟ ଏବେ ଚଳନ୍ତୁ ଆପଣ
କିଛିଦିନ କାଟିବି ମୁଁ ରହି ଏହି ସ୍ଥାନ ।
ଉପଦେଶ ମାନ କରି ମୁଁ ଅନୁଶୀଳନ
ତତ୍ତ୍ୱଜ୍ଞାନ ଅରଜନେ ହେବି ଧ୍ୟାନ ମଗ୍ନ ।
ରାଜାଙ୍କଠାରୁ ବିଦାୟ ଘେନି ଦେବଦୂତ
ଇନ୍ଦ୍ରଙ୍କ ପାଶେ ଯିବାକୁ ହୋଇଲେ ଉଦ୍ୟତ ।
କରଯୋଡ଼ି ବାଲ୍ମୀକିଙ୍କୁ ବିନୟେ କହଇ
ବିଦାୟ ଦେବା ହୁଅନ୍ତୁ ଆହେ ତପୀସାଇଁ ।
କହନ୍ତି ବାଲ୍ମୀକି ଶୁଣ ଆହେ ଦେବଦୂତ
ସୁରୁଚି ଅପସରାକୁ କହିବୁ ସମସ୍ତ ।
ତୁମ ନିକଟକୁ ଭଦ୍ରେ ଯାଉଥିଲି ମୁହିଁ
ଭାଗ୍ୟ ବଶତ ପଥରେ ଭେଟଗଲା ହୋଇ ।
ଯାହା ଜାଣିବା ପାଇଁକି ପ୍ରଶ୍ନ କରିଥିଲ
ସବୁତ ଏବେ ମୋଠାରୁ ଅବଗତ ହେଲ ।
ବର୍ତ୍ତମାନ ଅନୁମତି ପାଇଲେ ମୁଁ ତୁମ
ଦେବରାଜ ଇନ୍ଦ୍ରପାଶେ କରିବି ଗମନ ।
ସୁରୁଚୀ ଅପସରା କହେ ଆହେ ଦେବଦୂତ
ତୁମଠାରୁ ଶୁଣି ମୁହିଁ ଜ୍ଞାନ ପରମାର୍ଥ ।
କୃତାର୍ଥ ଏବେ ମୁଁ ଜାଣ ପୁଣି ଶୋକାତୀତ
ଘେନ ମୋର ନମସ୍କାର ଆହେ ଦେବଦୂତ ।
ଚଳିଯାଅ ଏବେ ତୁମେ ଇନ୍ଦ୍ରଙ୍କର ପାଶ
ମଙ୍ଗଳ ହେଉ ତୁମର ଏହା ମୋ ଆଶୀଷ ।
ଅଗ୍ନିବେଶ୍ୟ କାରୁଣ୍ୟକୁ କହନ୍ତି ବଚନ
କେବଳ ଜ୍ଞାନ ଅଥବା କେବଳ କରମ ।
ଅଥବା ଉଭୟ ଅଟେ ମୁକ୍ତିର କାରଣ
ବଶିଷ୍ଠଙ୍କ ଉପଦେଶ ଯା କଲୁ ଶ୍ରବଣ ।
ଏ ବିଷୟେ ଯାହା ଥିଲା ସନ୍ଦେହ ତୋହର
ବୁଝି ପାରିଥିବୁ ତାହା ଆରେ ପୁତ୍ରବର ।

ଏବେ ତୋ ଇଚ୍ଛା ଯେପରି ଆରେ ପୁତ୍ରମଣି
ସେହିପରି କାର୍ଯ୍ୟକର ମୋ ଆଶୀଷ ଘେନି ।
କହନ୍ତି କାରୁଣ୍ୟ ପିତଃ ! ଏହି ସଂସାରକୁ
ମରୁମରୀଚିକା ସମ ମଣେ ମୁଁ ତାହାକୁ ।
ରାମପରି ଏବେ ମୁହିଁ ଇଚ୍ଛା ହୀନ ହୋଇ
ଉପସ୍ଥିତ କର୍ମମାନ ସବୁ କରିବଇଁ ।
କର୍ମ ଅନୁଷ୍ଠାନ ଅବା କରମ ବର୍ଜନ
ଉଭୟେ ମୋ ପାଇଁ ଏବେ ଅଟନ୍ତି ସମାନ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ସୁତୀକ୍ଷ୍ଣ
ଜ୍ଞାନ ସମନ୍ୱିତ କର୍ମେ ସଂସାର ବନ୍ଧନ ।
ଏପରି ସନ୍ଦେହ କେଉଁ ନୁହେଁ ସମୀଚୀନ
ବର୍ଣ୍ଣାଶ୍ରମ ଧର୍ମ କରୁଥିବ ହେ ପାଳନ ।
ଅଗସ୍ତିଙ୍କୁ ନମସ୍କାର କରିଣ ସୁତୀକ୍ଷ୍ଣ
ନମ୍ରଭାବେ କରଯୋଡ଼ି କହନ୍ତି ବଚନ ।
ତବ ଉପଦେଶେ ମୁହିଁ ଜ୍ଞାନଲାଭ କଲି
ଏକଥା ବୁଝିଛ ଜାଣ ଆହେ ତପଚାରୀ ।
କେବଳ ପରମଆତ୍ମା ଜଗତ ଆକାରେ
ପରକାଶ ପାଉଛନ୍ତି ବିଶ୍ୱ ଚରାଚରେ ।
ତେଣୁ କରି ଜାଣିରଖ କୌଣସି ପଦାର୍ଥ
ପରମଆତ୍ମାଙ୍କଠାରୁ ନୁହଇ ସ୍ୱତନ୍ତ୍ର ।
କେବଳ ତବ କୃପାରୁ ଆହେ ଭଗବନ
ଲାଭକରି ପାରିଅଛି ମୁଁ ପରମଜ୍ଞାନ ।
ସାଷ୍ଟାଙ୍ଗ ପ୍ରଣିପାତ ମୋ ଘେନ ତପୋଧନ
କାୟ ମନୋବାକ୍ୟେ କରେ ଆତ୍ମ ସମର୍ପଣ ।
ଅନ୍ୟ କେଉଁ କର୍ମ ଦ୍ୱାରା ଆହେ ଗୁରୁଦେବ
ଗୁରୁଙ୍କ ଋଣରୁ ଶିଷ୍ୟ ମୁକତି ଲଭିବ ?
ତେଣୁ ତବ ପାଦ ପଦ୍ମେ ମୋହର ପ୍ରଣାମ
ଋଣ ମୁକ୍ତି ପାଇଁ ଏହି କ୍ଷୁଦ୍ର ନିବେଦନ ।
ତବ ଏ ଅକ୍ଷମ ଶିଷ୍ୟ ଚିରକାଳ ଦାସ
ଏହାଛଡ଼ା ତା'ର ପାଇଁ କି ଅଛି ପ୍ରୟାସ ?
ତବ କୃପାବଳେ ଏବେ ଆହେ ଗୁରୁଦେବ
ଉତ୍ତୀର୍ଣ୍ଣ ହୋଇ ପାରିଛି ସଂସାର ଅର୍ଣ୍ଣବ ।
ବିଶ୍ୱ ବ୍ୟାପ୍ତି ପୂର୍ଣ୍ଣତାକୁ ଅଛି ମୁଁ ଲଭିଣ
ସରବ ସଂଶୟ ମୋର ହୋଇଛି ବିଲୀନ ।

**ଇତି ଶ୍ରୀ ଯୋଗବାଶିଷ୍ଠେ ନିର୍ବାଣ ପ୍ରକରଣେ ଉତ୍ତର ଖଣ୍ଡେ ଶିଷ୍ୟର ଗୁରୁପ୍ରତି ଆତ୍ମ ନିବେଦନ ବର୍ଣ୍ଣନେ ନାମ ୧୨୪ତମ ସର୍ଗଃ**



ଇତି

-ଯୋଗବାଶିଷ୍ଠ-ରାମାୟଣ ସମାପ୍ତି-



# ପୁସ୍ତକ ପରିଚୟ

ଯୋଗବାଶିଷ୍ଠ ରାମାୟଣ ବା ବଶିଷ୍ଠ ମହାରାମାୟଣ – ଅନୁବାଦକ ଶ୍ରୀ ମର୍ଦ୍ଦଗାଜି ରାୟ ।

ଏହି ଅନୁବାଦ ଗ୍ରନ୍ଥଟିର କଳେବର ବୃଦ୍ଧି ଆଶଙ୍କାରେ ଅନୁବାଦକ ଶ୍ରୀ ମର୍ଦ୍ଦଗାଜିବାବୁ ଆକ୍ଷରିକ ଅନୁବାଦରେ ହାତ ନ ଦେଇ ଭାବାନୁବାଦ କରିଛନ୍ତି । ମାତ୍ର ମୂଳ ଗ୍ରନ୍ଥଟିର ମର୍ଯ୍ୟାଦା ଓ ମହତ୍ତ୍ୱ ରକ୍ଷା ଦୃଷ୍ଟିରୁ କୌଣସି ଗୁରୁତ୍ୱପୂର୍ଣ୍ଣ ଅଂଶକୁ ବାଦ ଦେଇ ନାହାନ୍ତି ।

ଆଦିକବି ବାଲ୍ମୀକିଙ୍କ ଦ୍ୱାରା ଏ ଗ୍ରନ୍ଥଟି ରଚିତ ବୋଲି କୁହାଯାଇଥାଏ । ରାମଙ୍କ ପ୍ରଶ୍ନର ଉତ୍ତରରେ ଗୁରୁ ବଶିଷ୍ଠଙ୍କ ତୁଣ୍ଡରେ ଭାରତୀୟ ଅଧ୍ୟାତ୍ମବିଦ୍ୟାର ସମସ୍ତ ନିଗୁଢ଼ତତ୍ତ୍ୱ ଗଳ୍ପ ଓ ଆଖ୍ୟାୟିକା ଏଥିରେ ସନ୍ନିବେଶିତ କରାଯାଇ ଗ୍ରନ୍ଥଟିକୁ ଧର୍ମପିପାସୁ ଓ ଭକ୍ତ ତଥା ତତ୍ତ୍ୱଜିଜ୍ଞାସୁମାନଙ୍କ ଦୃଷ୍ଟିରେ ପ୍ରଥମ ଶ୍ରେଣୀର ଏକ ଆଧ୍ୟାତ୍ମିକ ଗ୍ରନ୍ଥର ରୂପ ନେଇଛି ।

ମୂଳ ଯୋଗବାଶିଷ୍ଠ ରାମାୟଣରେ ଥିବା ଛଅଟି ପ୍ରକରଣ ଓ ସେଥିରେ ଥିବା ବିଭିନ୍ନ ଗଳ୍ପ ଏବଂ ଆଖ୍ୟାୟିକାମାନ ଏହି ଭାବାନୁବାଦରେ ଯଥାରୀତି ସ୍ଥାନପାଇଛି । ଅନୁବାଦର ଭାଷା ସରଳ ସାବଲୀଳ ଓ ହୃଦୟଗ୍ରାହୀ ହୋଇଥିବା ସଂସ୍କୃତ ଅନଭିଜ୍ଞ ଓଡ଼ିଆ ପାଠକ ପାଠିକାମାନଙ୍କର କେବଳ ସୁଖପାଠ୍ୟ ନୁହେଁ, ବେଶ୍ ଉପଭୋଗ୍ୟ ହୋଇଛି ।

ଏହି ବିରାଟ ଗ୍ରନ୍ଥଟିର ମୁଦ୍ରଣ ପରିପାଟୀ ଓ ପ୍ରଚ୍ଛଦପଟର ବିନ୍ୟାସ ସୁନ୍ଦର ଓ ଆକର୍ଷଣୀୟ ହୋଇଅଛି ।

ଓଡ଼ିଆରେ ଯୋଗବାଶିଷ୍ଠର ଏପ୍ରକାର ସମ୍ପୂର୍ଣ୍ଣ ଭାବାନୁବାଦ ଗ୍ରନ୍ଥ ହିସାବରେ ଏହା ହେଉଛି ସର୍ବପ୍ରଥମ ଗ୍ରନ୍ଥ । ଓଡ଼ିଆ ଅଧ୍ୟାତ୍ମ ସାହିତ୍ୟ କ୍ଷେତ୍ରରୁ ଏକ ବଡ଼ ଅଭାବ ଏହି ଗ୍ରନ୍ଥ ପ୍ରକାଶ ଫଳରେ ଦୂର ହେଲା ବୋଲି ସ୍ୱୀକାର କରିବାକୁ ହେବ ।

ଆମ୍ଭେମାନେ ଗ୍ରନ୍ଥଟିର ବହୁଳ ପ୍ରସାର କାମନା କରୁ ।

ସମାଜ – ୧୦/୧୦/୧୯୭୯

❑